# କାହ୍ନୁଚରଣ ଗ୍ରନ୍ଥାବଳୀ

## ତୃତୀୟ ଖଣ୍ଡ

ଶ୍ରୀ କାହ୍ନୁଚରଣ ମହାନ୍ତି

ପ୍ରକାଶକ

ଗ୍ରନ୍ଥ ମନ୍ଦିର

# KANHUCHARAN GRANTHABALI. Vol. III

By

Sri Kanhucharan Mohanty,

Publishers
GRANTHA MANDIR
Cuttack-2 : Berhampur.

First Edition
March. 1966

Pri

ପ୍ରକାଶକ :
ଅଭିରାମ ମହାପାତ୍ର
ଗ୍ରନ୍ଥ ମନ୍ଦିର
କଟକ ୨ : ବ୍ରହ୍ମପୁର

ମୁଦ୍ରକ :
ଶ୍ରୀ ଅଜୟକୁମାର ଘୋଷ
ଶ୍ରୀ ହରନାଥ ପ୍ରେସ
କଟକ-୨

ପ୍ରଥମ ମୁଦ୍ରଣ
ମାର୍ଚ୍ଚ, ୧୯୬୬

ମୂଲ୍ୟ ଟ ୧୮-୦୦

ରାଜାବଗିଚ୍ଚା, କଟକ
୨୧ । ୧ । ୪୩

ଭାଇ କାଳିନ୍ଦୀ,

ଯେଉଁମାନେ ସ୍କୁଲ କଲେଜରେ ପଢ଼ୁଥିବାବେଳେ କଲମ ଧରନ୍ତି, ପରଜୀବନରେ ଯେତେବେଳେ ସେମାନଙ୍କୁ ଦୁନିଆ ସଙ୍ଗେ ଲଢ଼ିବାକୁ ପଡ଼େ, ହାତରୁ ଆପେ ଆପେ କଲମ ଖସିପଡ଼େ ।

ମୋ ଦେଶରେ ସାହିତ୍ୟ ସେବା କରି କେହି କେବେ ବଡ଼ଲୋକ ହୋଇନାହିଁ । ସାହିତ୍ୟକୁ ପେଷା କରି କଷ୍ଟେମଷ୍ଟେ ମୁଠାଏ ଖାଇବାର ଯୋଗାଡ଼ କରିବା ମଧ୍ୟ ଅସମ୍ଭବ । ତେଣୁ, ମୋ ଦେଶରେ ଲେଖକମାନଙ୍କର ସାହିତ୍ୟ-ଜୀବନର ଅକାଳ ମରଣ ହୁଏ ।

ଯେଉଁମାନେ ମାଡ଼ି ଚକଟି ଆଗକୁ ଚାଲିବାକୁ ଚେଷ୍ଟା କରନ୍ତି, ସେମାନଙ୍କର ଅବସ୍ଥା ହୁଏ କଅଣ ? ଯେ ଟିକିଏ ଆଗେଇ ଯାଇଥାନ୍ତି, ତାଙ୍କର ନାଲି ଆଖି, କୁତ୍ସାରଟନା ଶୁଣି, ଟୋକା—ଲେଖକ ଫେରେ । ସାହିତ୍ୟର ପବିତ୍ର କ୍ଷେତ୍ରରେ ଅଗୁଆମାନେ ରାଜନୀତି ଦେଖନ୍ତି, ଜାତିଭେଦ ଦେଖନ୍ତି । ସେଠି ବିକଳରେ ଟୋକା ଲେଖକ ଛାଡ଼େ କଲମ ।

ଭାଇରେ, ଯେ ତଥାପି ଆଗେଇ ଚାଲେ, ବହି ଲେଖେ, ପୋଷ ପୋଷ ଝାଳ ନିଗାଡ଼ି ଦିଏ ଦେହରୁ, ତାଆର ଅବସ୍ଥା ହୁଏ କଅଣ ? ତାଆର ପାଣ୍ଡୁଲିପି ପଡ଼େ ସେଇ । ଛପା ହେଲା ନାହିଁ । ନିଜେ ମଧ୍ୟ ଛପାଇ ପାରୁନାହିଁ ଅଭାବରୁ । ଲାଭ କଥା ପଚାରେ କିଏ ? କାଗଜ ଖାଏ ପୋକ । ଆଖିରୁ ଲୁହ ନିଗାଡ଼ି, ଟୋକା ଲେଖକ ଛାଡ଼େ କଲମ !

ଆସିଲେ ଜଣକେତେ ବହି ଛପାଳୀ । ଆହା, ଲହୁଲୁହ ଯେଉଁ ଲେଖକ ଢାଳି ଦେଇଛି ତାର ଲେଖାରେ; କେତେ ରାତି ଖାଇ ନାହିଁ କେତେ ରାତି ଶୋଇନାହିଁ, ପାଣ୍ଡୁଲିପିଟି ବହି ଆକାରରେ ଦେଖିବାକୁ ପ୍ରାଣ ତାର ଛଟପଟ ହେଉଛି । ପ୍ରକାଶକଙ୍କୁ ନେହୁରା ହୋଇ ଶେଷରେ ଶୁଣେ, ଲେଖାଟି ମନ୍ଦ ନୁହେଁ, ତେବେ ବଜାରରେ ବିକେଇବ ନାହିଁ । ମନ ମାରି ଫେରେ ବିଚରା ଲେଖକ । ପାଣ୍ଡୁଲିପି ଅଳିଆ ଗଦାରେ ରଖେ, କଲମ ଛାଡ଼େ !

ଆଉ କେତେ ସାହିତ୍ୟିକ ପ୍ରକାଶକ ବାହାରିଲେ ଅଣ୍ଡାଭଙ୍ଗ । ଛାପିଲେ ଖଣ୍ଡକେତେ ଉପନ୍ୟାସ । ନାଆଁର ପ୍ରସାର ହେଲା । ଆଖିରେ ହସିଲା ଠଙ୍କା । ବ୍ୟବସାୟର ଫନ୍ଦ ଖେଳିଲା ମନରେ । ଦୁଃଖର ସାଥୀ ଥିଲେ ଯେଉଁ ଲେଖକମାନେ ସେମାନଙ୍କୁ ଠେଲି ଦେଲେ ଦୂରକୁ । ହତାଶ ହୋଇ ଲେଖକ ଛାଡ଼ିଲା କଲମ !

ଏମିତି ତ କେତେ କଥାରେ ଭାଇ, ଅଙ୍ଗେ ନଭାଇଛ ତୁମେ, ଅଙ୍ଗେ ନଭାଇଛି ମୁଁ, ଆଉ ମୋର ଅନ୍ୟ ଲେଖକ ଭାଇମାନେ । ମୋ ଦେଶ ଗରିବ, ମୋ ଦେଶ ଅଶିକ୍ଷିତ, ମୋ ଦେଶରେ ବଢ଼ି ମାଡ଼େ, ତୋଫାନ ଉଠେ, ନୁଣି ଚରେ । ମୋ ଦେଶରେ ସାପ କାମୁଡ଼େ, ବାଘ ଘୋଷାରେ, ମେଲେରିଆ, ହଇଜା, ବସନ୍ତ ମାଡନ୍ତି, ନଅଙ୍କ ପଡ଼େ, ଲୋକେ ଖାଇବାକୁ ପାଆନ୍ତି ନାହିଁ । ମୋ ଦେଶରେ ଲୋକେ ଲଙ୍ଗଳା ହୋଇ ଜଙ୍ଗଲରେ ବୁଲନ୍ତି । ମୋ ଦେଶ ଗୋଲାର ଦେଶ, ବେଠିଆର ଦେଶ । ପରରାଇଜ ଜମିଦାରର ପରଜା ମୋ ଭାଇମାନେ । ପର ଦେଶରେ ମୋ ଭାଇ କୁଲିଗିରି କରେ, ମୋଟ ବୁହେ, ମାଡ଼ ସହେ । ମୋ ଦେଶର ହାତ ଗୋଡ଼ ନାହିଁ । ସାହିତ୍ୟ ଉଧାଇବ କିପରି ? ଲେଖକ ଛାଡ଼େ କଲମ ।

ମୋ ଦେଶରେ ଗୋଲା ପଲର ଲହୁରେ ମହାଜନର ରାଜ୍ୟ ବଢ଼େ, ବେଠିଆର ଲୁହରେ ବୋଇତ ଚାଲେ । ମୋ ଦେଶର ଝାଳରେ ବିଦେଶରେ କଳ କାରଖାନା ଗଢ଼ା ହୁଏ । ପ୍ରଜା ଭୁଣ୍ଡର ଆହାରରେ କେତେ କୋଠାରେ ବିଜୁଳିବତୀ ଜଳେ, ଆଉ ମୋ ଭାଇର କଲମ କାଳିରେ କେତେ ପ୍ରକାଶକଙ୍କର କୋଠାର ମୁଣ୍ଡ ଛୁଏଁ ଆକାଶକୁ । ପ୍ରକାଶକ ଚାହେଁ ତଳକୁ, ଧୀରେ ଧୀରେ ଆଖି ଆଗରୁ ଲେଖକ ହୁଏ ଅଦୃଶ୍ୟ । ଲେଖକ ହୁଏ ଛୁନଆଁ, ଛାଡ଼େ କଲମ !

ଭାଇ କାଳିନ୍ଦି, ତୁମେ ଏ କଥା ବୁଝିଥିଲ । ଅଭିମାନ କରି କହିଥିଲ ହନେ, ଓଡ଼ିଆରେ ଲେଖିବ କାହିଁକି ? ତୁମେ ବୁଝିବ ଲେଖକର ଦୁଃଖ ! ତୁମେହିଁ ଅନୁଭବ କରିବ, ତାର ଗୋଟିଏ ଧାଡ଼ି ଲେଖାରେ ସେ କେତେ ଲୁହଲହୁ ଅଜାଡ଼ି ଦେଇଛି । ଭଲମନ୍ଦ ଲେଖକ ବୁଝେନାହିଁ । ଭଲ ମନ୍ଦ କହେ ପାଠକ, ହୁଏତ ବୁଝେ ସେହି । ଲେଖକ ଲେଖେ, ଲେଖେ—

ତୁମେ ମୋତେ ପଚାରିବ । ଦୁନିଆଁର କେତେ ଦୁଃଖ ଜଞ୍ଜାଳ ମୁଣ୍ଡରେ ବୋହି, କଲମ ଧରିଛି । ତୁମେ ମୋର ନମସ୍ୟ । ମୋର ଏଇ **'ଅଦେଖା ହାତ'** ତୁମରି ହାତରେ ଦେଲି । କେତେ ଆଦରରେ, କେତେ ଯତ୍ନରେ **'ଗୀତା'**ଟିକୁ ସବୁ ସ୍ନେହ ଦେଇ ଗଢ଼ିଛି । ଅସୁନ୍ଦର ହୋଇ ପଡ଼ିଛି, ଯେତେ ଅବଗୁଣ ଥାଉ, ତାକୁ ତୁମେ ଆଦର କରିବ, ଏଇ ମୋର ଆଶା ।

**କାହ୍ନୁଚରଣ**

# ଅଦେଖା ହାତ

୧

ଶୁଭ କାଉଟିଏ ମାଇସଞ୍ଜବେଳେ ଆମର ନୁଆଁଣିଆ ଚାଳ ଉପରେ କା କା ଡାକୁଥିଲା । ଘର ଆଗ ମାଟିପିଣ୍ଡା ଉପରେ ବସି ଜଙ୍ଘ ଉପରକୁ ଲୁଗା ଟେକି ଏକ ମନରେ ସଞ୍ଜ ବଳୁଥିଲି । ବାଡ଼ିଆଡ଼ କୂଅରୁ ମାଠିଆଏ ପାଣି ନେଇ ବୋଉ ଆସି ଦୁଆର ମଝିରେ ଠିଆ ହେଲା । ଥରେ ମୋ ଆଡ଼କୁ ଓ ଥରେ କାଉଟି ଆଡ଼କୁ କଣେଇଁ ଚାହିଁଲା । ପାଣି ମାଠିଆ ରୋଷେଇଘରେ ରଖିଦେଇ ଆସି କାଉକୁ ଲକ୍ଷ୍ୟ କରି କହିଲା, ଶୁଭ କାଉରେ, ଉଡ଼ି ଯା, ଚାଲି ଯା, କିଏ ଆସୁଛି ?

କାଉଟି ଉଡ଼ିଗଲା ଡେଙ୍ଗା ନଡ଼ିଆ ଗଛ ଉପରକୁ ।

ବୋଉ କହିଲା, ଅଟେଲି ଗୀତା, ତୋ ବାପା ଆସୁଛନ୍ତି ପରା । ଦେଖୁନୁ, କାଉ କଟକମୁହାଁ ହୋଇ ଉଡ଼ିଗଲା । ବୋଉ ଗଲା ଚାଳରୁ କାଠ ଆଣିବାକୁ ।

ଭାବିଲି, ସତେ ବାପା ଆସୁଛନ୍ତି ? ଯଦି ଆସୁଥାନ୍ତି ସେହି ତ ଆସୁଥିବେ । ତାଙ୍କ ଛଡ଼ା ଆଉ ଆମର ଆପଣାର କିଏ ଅଛି ? ମାତୃକୁଳରେ କେହି ନାହାନ୍ତି । ଗରିବ ଘର ବୋଲି ଟିକିଏ ବେଶୀ ବୟସରେ ବାପା କୋଡ଼ିଏ ଟଙ୍କା ଦେଇ ବୋଉକୁ ବାହା ହୋଇଥିଲେ । ତାଙ୍କୁ ଯେତେବେଳେ ତେଇଶି ବର୍ଷ, ବୋଉ ଚଉଦ ବର୍ଷର ଝିଅ । ବାହାଘରର ଦି' ଚାରି ବର୍ଷ ପରେ ମାମୁଁ ମାଇଁ ଓଳାଉଠା ହୋଇ ଦିନ ଚାରିଟାରେ ଚାଲିଗଲେ । ବୁଢ଼ୀ ମାଆଟି ବଞ୍ଚି ରହିଥିଲା । ମୋର ଜନ୍ମର ଦଶବର୍ଷ ପରେ ସେ ମଧ୍ୟ ଚାଲିଗଲା ।

ମୋର ଜଣେ ଦାଦି ଥିଲେ । ପିଲାଦିନୁ ତାଙ୍କର ସ୍ୱଭାବ ଉଦାସିଆ । ଭେଣ୍ଡା ବୟସରେ ଘର ଛାଡ଼ି ଚାଲି ଯାଇଥିଲେ । କିଏ କହେ ସେ କୁମ୍ଭିପଟିଆ ବାବାଜି ହୋଇ ଦେଶ ଦେଶ ବୁଲୁଛନ୍ତି, ଆଉ କେହି କହନ୍ତି, ସେ ବାରମ୍ବାର ଚୋରି କରି ଜେଲଖାନାକୁ ଘର କରିଥାଆନ୍ତି । ଯାହା ହେଉ, ସେ ତ ମୋ ଜନ୍ମ ଆଗର କଥା । ବୋଉ ତାଙ୍କୁ ବର୍ଷେ ଦି ଛଅଟା ଦେଖିଥିବ । ତାଙ୍କର ଥିବା ନ ଥିବା ଆମ ପକ୍ଷରେ ସମାନ ।

ଅଦିନରେ ବାପା ଆସିବେ ବା କିପରି ? କଟକରେ ରାଣୀହାଟ ଅପର ପ୍ରାଇମେରୀ ସ୍କୁଲରେ ମାଷ୍ଟରୀ କାମ କରନ୍ତି । ମାସକୁ ଦଶଟି ଟଙ୍କା ବେତନ । ସେଇଥିରୁ ତିନି ଚାରି ଟଙ୍କାରେ କଷ୍ଟେମଷ୍ଟେ ଚଳି, ବାକି ଟଙ୍କା ଘରକୁ ପଠାନ୍ତି । ପହିଲା ରବିବାର ଦିନ ସାତଟା ଯାଇନାହିଁ । ସେଦିନ ଟଙ୍କା ଆସି ପହଞ୍ଚିଛି । ନଅ କୋଶବାଟ କଟକ । ବିଶେଷ ଦରକାର ଥିଲେ ଶନିବାର ଦିନ ଆସି ରାତି ଦି ଘଡ଼ିକୁ ଗାଁରେ ପହଞ୍ଚି ପୁଣି ସୋମବାର ଦିନ ରାତି ପାହାନ୍ତାରୁ ଉଠି କଟକ ଯାଆନ୍ତି । ନୋହିଲେ ଦିନକିଆ ଛୁଟିରେ ଘରକୁ ଆସିବା ଅସମ୍ଭବ ।

ସଞ୍ଜ ବଳା ଶେଷ ହେଲା । ନଡ଼ିଆ ଗଛ ଉପରକୁ ଚାହିଁଲି । କାଉ କେତେବେଳୁ ଉଡ଼ି ଗଲାଣି । ମତେ ହସ ମାଡ଼ିଲା । ଯେଉଁଦିନ ଯେତେବେଳେ କାଉଟିଏ ଆସି ବୋବାଏ ବୋଉ କହେ, ବାପା ଆସୁଛନ୍ତି ।

ବୋଉ ଚୂଲିରୁ କାଠ ଅଣି ଗୋଷଘରେ ରଖି କହିଲା, ଗୀତା, ନଗି ଖଣ୍ଡି ନେଇ ଯା ସଜନା ଗଛରୁ ଗଣ୍ଡାଏ ଛୁଅଁଠା ଛୁଇଁ ପାର ଆଣିବୁ । ସଞ୍ଜବଳତା ଦୁଆରବନ୍ଧ ଉପରେ କରେଇକର ରଖି ଦେଇ ଯା ।

କାଉ କଥା ମନରୁ ଯାଇ ନ ଥାଏ । ହସ ହସ ହୋଇ କହିଲି, ବୋଉ ଲୋ, ଅଜ ବୁଧବାରଠାରେ ବାପା ଆସିବେ କେମିତି ? ଦାଦା ଆସୁଛନ୍ତି କି କଅଣ !

ଗୋଷଘର ଭିତରେ ଥାଇ ବୋଉ ହସି ଉଠିଲା । କହିଲା, ହଁ ହଁ, ତତେ ଦେଖିବାକୁ ଆସୁଥିବେ । ପେଟରେ ଥିଲୁ, ସେ ଘର ଛାଡ଼ି ଯାଇଛନ୍ତି । ହେଲେ, ମୋ ପାଖରେ ଆଉ ଗହଣା ଟାଣି କିଛି ନାହିଁ ।

୨

ନଗି ଧରି ସଜନାମୂଳକୁ ଗଲି । ନଈ ବନ୍ଧକୁ ଲାଗି ଆମର ତଳ ବାଡ଼ିଟି । ବନ୍ଧପଟକୁ ନଘଅଁ ବେତ ବାଇଗବା ବାଡ଼ । ବାଡ଼ ମଝିରେ ଠାଏ ଠାଏ ଫାଙ୍କ । ଲୋକବାକ କି ଗୋରୁ ଗାଈ କେହି ବାଡ଼ି ଭିତରକୁ ପଶି ପାରନ୍ତି ନାହିଁ । ନଇରଖି ଚାହିଁଲେ ବନ୍ଧ ଉପରେ ଯା ଅସ କରୁଥିବା ଲୋକ ଦେଖା ଯାଆନ୍ତି । ଦୂରକୁ ଚାହିଁଲେ ନଈ, କଣ୍ଡିଆ, ନଈ ପଠା, ତା ଆରପାଖେ ଧୂସର ବାଲି, ଶେଷରେ ପାଣି ଗାରଟିଏ ଦେଖାଯାଏ ।

ତଳ ବାଡ଼ିକୁ ପଶି ଯାଉଁ ଯାଉଁ ଅଗ କୂଅ । ଚୂଆଦିନ କରକୁ ଦଉଟି ନଡ଼ିଆ ଗଛ । ଚାରି ପାଅଁବର୍ଷ ହେବ ଫଳୁଛି । ସେ ପାଖକୁ ବୁଢ଼ା ସଜନା ଗଛ, ଛୋଟ ପିଜୁଳି ଗଛ । ବାଡ଼ି ମଝିରେ ଗୋଟିଏ ଝଙ୍କା ବଉଳ ଗଛ । ତା ପାଖକୁ ସୋହଡ଼ିଆ ଡେଙ୍ଗା ଚମ୍ପା ଗଛଟି ।

ଦ ପାଖେ କଅବାଡ଼ ମଝିରେ ଗୋହିରି ବାଟ । ଦରକାର ବେଳେ ସେହି ବାଟେ ବନ୍ଧ ଉପରକୁ, ନଈକୁ ଯା ଅସ କରୁ । ଅଗ ବାଟେ ଗାଁ ଦାଣ୍ଡ । ଗାଁ ଗୋହିରି ଦେଇ ଯିବା ଅସୁବିଧା । ଲୋକବାକ ଥାନ୍ତି । ବାଟ ବ ଟିକିଏ ବୁଲାଣିଆଁ । ବାପା କଟକରୁ ଆସିଲେ ବନ୍ଧେ ବନ୍ଧେ ଆସି ବାଡ଼ିପଟେ ଘରେ ପଶନ୍ତି ।

ସଜନା ମୂଳରେ ଠିଆ ହୋଇ ବାଡ଼ ଫାଙ୍କବାଟେ ବନ୍ଧ ଆଡ଼କୁ ଚାହିଁଲି, ଆଖି ଯେତେଦୂର ପାଇଲା । ସିଧା ବନ୍ଧଟା ଆର ଗାଁର ଗଛ ଡାହାଳ ଭିତରେ

ବଙ୍କେଇ ଲୁଚିଯିବା ଯାଏ କେତେ ଲୋକ ଯା ଆସ କରୁଛନ୍ତି । ବାପାଙ୍କ ଚୁଲି ପଛ କାହାର ଚୁଲି ଦିଶୁନାହିଁ । ବେଳ ବେଳେ ସେ ସଞ୍ଜ ଆଗରୁ ଆସି ପହଞ୍ଚନ୍ତି ।

ମଗୁଶିର ମାସ । ସଞ୍ଜ ହେଉଁଣୁ ଦହ ଶୀତେଇଲାଣି । ରାତି ପଡ଼ିଲେ କେତେ ଶୀତ ହେବ । ଯଦି ଆସିବାର ଥାନ୍ତା ସେ ରାତିଯାଏ ରହନ୍ତେ ନାହିଁ । ନା, ସେ ଆସିବେ ନାହିଁ । କାଉଟାଏ ସିନା ଉଡ଼ିଗଲା, ତା ସଙ୍ଗେ ଯିବା ଆସିବାର ସମ୍ବନ୍ଧ ନାହିଁ ।

ହତାଶ ହୋଇ ନଗି ଧରି ଛୁଇଁ ତୋଳିବାକୁ ଲାଗିଲି । ଡେଙ୍ଗା ଗଛ । ପାଖରେ ଯେତେ ଥିଲା ସବୁ ନିତିଦିନ ତୋଳି ତୋଳି ଶେଷ ହୋଇଛି । ନଗି ଟେକି, ମୁଣ୍ଡି ବଙ୍କାଇ ଉପରକୁ ଚୁହିଁ ତୋଳିବାକୁ ହେବ । ଦି ଚାରୋଟି ତୋଳି ବନ୍ଧ ଆଡ଼କୁ ଚୁହିଁଲି । ଧୂସର ନଈର ଏ ପଟେ ସବୁଜ ଧୂଆଁ ପରି ପଠା । ତାକୁ ଲାଗି କରିଅଛି ହଳଦିଆ ସୋରିଷ ଫୁଲରେ ଉଛୁଳି ଉଠୁଛି । ସଞ୍ଜବେଳର ଶିରିଶିରିଆ ପବନରେ ଦୋହଲି ଦୋହଲି ସୁନ୍ଦର ଦିଶୁଛି ।

ଘଡ଼ିଏ ଚୁହିଁ ରହିଲି । କାହାର ଖଣ୍ଡିକାଶ ଶୁଣି ମୋ ମନ ଫେରି ଆସିଲା କେଉଁ ସପନପୁରୀର ଝରକା ବାଇକରୁ । ବନ୍ଧ ଉପରେ ମଦନ ବଡ଼ବାପା ବାଡ଼ି ଠୁକୁ ଠୁକୁ କରି ଯାଉଛନ୍ତି । ପଛରେ ତାଙ୍କର ଆଉ କିଏ ଦି ତିନି ଜଣ । ଜିଭ କାମୁଡ଼ି ବାଡ଼ କରି ଉହାଡ଼କୁ ଠିଆ ହେଲି । ଗୋଡ଼ ଦୁଇଟା ଭୟରେ ଥରୁଥାଏ ।

ବାପ୍‌ରେ, ମଦନ ଜେଠା ! ଗର୍ଭିଣୀ ଗାଈ ଡରରେ ବାଟ ଛାଡ଼େ । ଆଖିରେ ପଡ଼ିଲେ ଆଉ ରକ୍ଷା ନାହିଁ । ଚଉଦ ପୁରୁଷ ଉଗାଳିବେ । କହିବେ, କି ଅଲବ୍ୟ କାଳ ହେଲା ହେ, ଝିଅ ବୋହୂଗୁଡ଼ା ଘୋଡ଼ୀ ପରି ଫର ଫର ହେଉଛନ୍ତି । ମଣିଷ ମାନୁନାହାନ୍ତି ।

ମଦନ ଜେଠାଙ୍କ ଗାଳିର ଜବାବ୍ ଦେବାକୁ ଆଖପାଖ ପାଞ୍ଚ ଖଣ୍ଡି ଗାଁରେ କେହି ପୁଅ ସାହସ କରନ୍ତି ନାହିଁ । ଏକେ ତ ସେ ବଡ଼ଲୋକ, କୁବେର ପରି ସମ୍ପତ୍ତି ମାଡ଼ି ଯାଇଛି, ତହିଁରେ ପୁଣି ସମସ୍ତେ ତାଙ୍କର ଧାରୁଆ । କାହାର ସର୍ବନାଶ କରିବାକୁ ଇଚ୍ଛା ହେଲେ ଦିନ ପନ୍ଦରଠାରୁ ତାଙ୍କୁ ବେଶି ଲାଗେ ନାହିଁ ।

ମଦନ ଜେଠା ଚାଲିଗଲେ । ପିଣ୍ଡରେ ମୋର ପ୍ରାଣ ପଶିଲା । ଯାହାହେଉ, ମୋତେ ସେ ଦେଖି ନାହାନ୍ତି । ପୁଣି ସଜନା ମୂଳକୁ ଫେରିଆସି ଛୁଇଁ ତୋଳାରେ ମନ ଦେଲି । ମୁଣ୍ଡ ଉପରୁ ଲୁଗାଟା ଖସିଗଲା । ଦେହର ପାଖେ ଫୁଙ୍ଗୁଳା ହୋଇ ପଡ଼ିଲା । ସେ ଦିଗକୁ କିଆ ନଜର ନାହିଁ । ଯେଉଁ ଛୁଇଁ କେଣ୍ଡାକରେ ନଗି ଲଗାଇଥିଲି ତାକୁ ଧରି ଟାଣୁଛି । କଣେଇ କରି ଥରେ ଖଞ୍ଜା ଆଡ଼କୁ ଚୁହିଁଲି, କାଳେ ଏଣେ ବୋଉ ଆସୁଥିବ । ଦେହ ମୁଣ୍ଡ ଫୁଙ୍ଗୁଳା ଦେଖିଲେ ସେ ବିରକ୍ତ ହୋଇ ଆକଟି କହେ, ଲୁଗାଟା ବେଢ଼େଇ ପିନ୍ଧୁନୁ ଲୋ, ମୁଣ୍ଡ ଉପରକୁ ବେକ ଉପରକୁ ଟାଣି ଆଣୁନୁ । ମାଇକିନିଆ ଝିଅ—

ତାଅର ଡରରେ ଲୁଗାପଟା ନେଇ ବଡ଼ ସାବଧାନ ହୋଇ ଚଳେ । ଦେହରୁ ମୁଣ୍ଡରୁ କେଉଁଠୁ ଟିକିଏ ଲୁଗା ଖସିଗଲେ ବଡ଼ ଗୃଉଁଗୃଉଁଅ ଲାଗେ । ଅଟପ ଅଟପ ଅଖି ଦଣ୍ଟା ବୁଲିଯାଏ ଗୃହଅଡ଼କୁ ଡରରେ । ହଁ, ଡରରେ । ହୁଏତ ଲାଜ ସଂକୋଚ ବି ଟିକିଏ ମିଶିଥାଏ ତା ସାଥିରେ; କିନ୍ତୁ, ଲାଜ ସଂକୋଚରେ ଗାଳି ତାଡ଼ନା ତ ଆଉ ନାହିଁ ମୋର । ସେ ବୟସ ଡେଇଁ ଆସିଛି ।

୩

ନୂଆ ନୂଆ ଯେତେବେଳେ ତାରୁଣ୍ୟର କାଉଁରି ପରଶ ଲାଗି ଆସୁଥାଏ, ଦେହରେ ମନରେ ପରିବର୍ତ୍ତନର ସୁନେଲି ବାଆ ଖେଳି ଯାଉଥାଏ, ଲାଜ ସଂକୋଚ ମନକୁ ଅଟପ ଅପେ ଅଟେ । ବେଳ ବୋହିଯାଏ । ମନର ସୁନେଲି ଭାବନାଟା କୁଆର ପରି ମାଡ଼ି ଆସିଲେ ବି ଦେହର ପରିବର୍ତ୍ତନରେ ଆଉ ନୂଆ ସରାଗ କି ଚମକା ସଂକୋଚ ଅସେ ନାହିଁ । ବର୍ଷ ଭେଦ ଯୌବନ ଉଠେ, କିନ୍ତୁ ଲକ୍ଷ-କୋଟି ନାରୀତ୍ୱର ଗର୍ବ ବୋଲି ସଂକୋଚ ରହିପାରେ ନାହିଁ ବେଶି ବେଳ । ଲାଜ ଅଟେ ଛପି ଛପି, ଅଭ୍ୟାସଗତ ଲାଜ, ଯେଉଁଠି ପଡ଼େ ପୁରୁଷର ଛାଇ । ପୁରୁଷ, ଯାହାପାଇଁ ମନ କେମିତି ଛନ ଛନ ହୁଏ, ବାହୁନ ଉଠେ ।

ଅଖିରେ କଅଣ ପଡ଼ିଲା । କିଅଁ ଖୁଣ୍ଟା ଲାଗିଲା ପରି ଜଣାଗଲା । ନଗି ଛାଡ଼ିଦେଇ ନେଡ଼ରେ ଅଖି ମଳିବାକୁ ଲାଗିଲି । ପୋକଟାଏ । କେତେବେଳକେ ଖସିଗଲା । ଲୁଗାପଟା ଝାଡ଼ି ଭଲକରି ଦେହ ଉପରକୁ ଆଣିଲି । ନଇଁପଡ଼ି ସଜନା ଛୁଇଁ ଗୋଟାଉଛି, ଅଛି ପାଖରେ କାହାର ଦୀର୍ଘଶ୍ୱାସର ଆଭାସ ପାଇଲି । ଦେଖିଲି, ପିଜୁଳି ଓ ନଡ଼ିଆଗଛ ଉହାଡ଼ରୁ ଧୋବ ଫରଫର କାମିଜ ପିନ୍ଧି ହସି ହସି ଦାମ ଭାଇ ମୋରଅଡ଼କୁ ଅସୁଛନ୍ତି । ଲାଜ ସଂକୋଚରେ ବିବ୍ରତ ହେଲି ନାହିଁ ତ, ବରଂ ରାଗରେ ଜଳିଗଲି ଗୋଟାଗୁଏଁ ।

କେତେ ଅଭଦ୍ର, କେଡ଼େ ନିଲଠା ! ନିଜର ଆତ୍ମସମ୍ମାନ ନାହିଁ ବୋଲି କଅଣ ମନେ କରନ୍ତି ଅନ୍ୟ କାହାର ନାହିଁ ? କଅଣ ଦି ପଦ ଠାଣ ଠାଣ କହି- ଦେବି ଭାବିଲି । ମୁହଁ ଖୋଲି ହେଲା ନାହିଁ । ଅତୀତରେ କେବେ ଟିକେ ଭୁଲ କରିଥିଲି । ତାଙ୍କର ସ୍ନେହ ଶରଧାରେ ଲଣି ହୋଇ ଗାଁ ଅଣ୍ଡିଙ୍କର ଥଟ୍ଟାଳିଆ କଥାକୁ ସତ ମଣି ଦାମ ଭାଇ ହସି ହସି ପଚାରିଲାକୁ ନବେଳାରେ ଦିନେ ତୁନି ତୁନି କହି ଦେଇଥିଲି, ହଁ, ବାହା ହେବି ଯା । ଏଇ କଥା ଯେ କହନ୍ତି ନାହିଁ, ଯା ଭିତରେ ଯେ କଅଣ ଲାଜ ସରମ ଅଛି, ମୁଁ ଜାଣି ନ ଥିଲି । ସେହି ଭୁଲର ଭୂତଟା ଏଡ଼େ ଏଡ଼େ ଆଖି ଦେଖାଇ ମୋର ମୁହଁଟାକୁ ବନ୍ଦ କରିଦେଲା ।

ପାଖକୁ ଆସି ସେ ପଚାରିଲେ, କଅଣ କରୁଥିଲୁ ଗୀତା ?

ସାଙ୍ଗେ ସାଙ୍ଗେ କହି ପକାଇଲି, ତେମେ କଅଣ ଅନ୍ଧ କି ?

ଦାମ ଭାଇ କହିଲେ, ହଁ, ଅନ୍ଧ । ଅଜକାଲି ହୋଇଛି । ଦେଖୁନୁ ଆଖିରେ ଚଷମା ଲଗାଇଲିଣି । କାହିଁକି ଜାଣୁ ?

ମୋର ଜାଣିବାର ଦରକାର ନାହିଁ । ତେମେ ଏଠୁଁ ଯିବଟି ।

ଏମିତି ତଡ଼ି ପକାଉଛୁ କାହିଁକି ? ଅଜକାଲି ତୁ ଭାରି ବଦଳି ଗଲୁଣି । ଯେତେବେଳେ ଦେଖା ହୁଏ, ଖାଲି ତୋର ସେଇ କଥା ।

୪

ଅଜକାଲି ! ଏଇ ଗୋଟିଏ ପଦର ଅର୍ଥ ଏକା ବୁଝନ୍ତି ଦାମ ଭାଇ ଆଉ ବୁଝେ ମୁଁ । ଅଜକାଲିର ପଛଆଡ଼େ କେତେ ବଡ଼ ଅନ୍ଧାରିଆ ପାହାଡ଼ଟିଏ ଠିଆ ହୋଇଛି—ଭାବିଲେ ଡରମାଡ଼େ । ଅନୁତାପ ଆସେ ନାହିଁ, ଦୁଃଖ ଆସେ ନାହିଁ—ଡର ମାଡ଼େ । କେତେ ଦୂରକୁ ଗଲେ କେଜାଣି ସେହି ପାହାଡ଼ଟା ଆଖି ଉହାଡ଼ରେ ଛପି ଯିବ ମୁଁ କଳନା କରି ପାରେ ନାହିଁ ।

ଏଇ ଦାମ ଭାଇ ! ପିଲାଟି ଦିନୁ, ହେତୁ ପାଇଲା ଦିନୁ ତାଙ୍କୁ ଦେଖି ଆସିଛି । ବଡ଼ ଘରର ଗେହ୍ଲା ପୁଅ ସେ । ଆମ ଘରେ ତାଙ୍କର ବଡ଼ପଣିଆଁ ନ ଥାଏ । ବାପା ବୋଉ ତାଙ୍କୁ ସ୍ନେହ କରନ୍ତି । ସେ ବି ସେମାନଙ୍କୁ ଅତି ଭକ୍ତି କରନ୍ତି । ମୋତେ ଭଲ ପାଆନ୍ତି ।

ତାଙ୍କ ସଙ୍ଗେ ଏକୁଟିଆ ବୁଲି ଯିବାକୁ କି ଖେଳିବାକୁ କେହି କେବେ ବାଧା ଦେଉ ନାହାନ୍ତି । ବେଳେ ବେଳେ ଆଉ ଲେଖାର କେହି କେହି ଥଟ୍ଟାରେ କହନ୍ତି, ଦାମକୁ ତୁ ବାହା ହେବୁ କିଲୋ ? ଦାମଭାଇ ବିରକ୍ତ ହୋଇ ଉତ୍ତର ଦିଅନ୍ତି, ତମର ସବୁ ଖାଲି ବାହା ହେବା କଥା !

ସ୍ୱର ନରମ କରି କହିଲି, ସବୁଦିନ ସମାନ ନ ଥାଏ ଦାମ ଭାଇ, ସବୁଦିନେ ମଣିଷ ନିର୍ବୋଧ ରହି ପାରେ ନାହିଁ ? ଯାଉ ସେ କଥା । ତେମେ ଗଛ ଉହାଡ଼ରେ କେତେବେଳୁ ଠିଆ ହୋଇ କଅଣ କରୁଥିଲ ?

ତତେ ଦେଖୁଥିଲି । ବାପା ଯେତେବେଳେ ବନ୍ଧ ଉପରେ ଯାଉଥିଲେ, ତୁ ଆଡ଼ ହୋଇ ପଛେଇ ଆସିଲୁ । ଭାବୁଥିଲି ବୋଧହୁଏ ଧରା ପଡ଼ିଯିବ, କିନ୍ତୁ ତୁ ଅନ୍ୟମନସ୍କା ହୋଇ ଗୃହିଗଲୁ ଆଗକୁ ।

ମୁଁ ତ ତୁମକୁ ଆଡ଼ ହୁଏ ନାହିଁ । ତୁମେ ଯେ କୌଣସି ବେଳେ ଆସିଲେ ମୋତେ ଦେଖି ପାରନ୍ତ, ଏପରି ଗୃହର ପରି ଲୁଚି ଲୁଚି ମୋ ଆଡ଼କୁ ଗୃହିଁବାରେ ଅଧିକ ହେଲା କଅଣ ? ଆଜି ଯଦି କେହି ଆସି ଯାଇଥାନ୍ତା, କଅଣ ମନେ କରନ୍ତା ?

ଛବି ବହିରେ ଅନେକ ଛବି ଦେଖିବାକୁ ମିଳେ । ଅନ୍ୟ ସମୟରେ ତୋତେ ଦେଖିବା ଠିକ୍ ସେମିତି । ତୋର ଅସାବଧାନ ନିଃସଙ୍କୋଚ ରୂପ ସଙ୍ଗେ ସେ ସବୁ ତୁଳନା କରାଯାଇ ପାରେ ନାହିଁ ।

ତେମେ ଭାରି ବାଗେଇ କଥା କହିପାର, କିନ୍ତୁ ତମର କଥା ବା ତମର ଢଙ୍ଗ ମୋତେ ଭଲ ଲାଗେ ନାହିଁ ।

ଦିନେ ଭଲ ଲାଗୁଥିଲା ତ ।

ଆଜି ଆଉ ସେ ଦିନ ନାହିଁ । ମୁଁ ପିଲାଟୁଆ ହୋଇନାହିଁ । ତୁମେ ଏଠୁଁ ଯିବଟି ।

ନ ଗଲେ ବି କେହି କିଛି ଭାବିବେ ନାହିଁ ଜାଣୁ ତ ?

କହିଲି, ଜାଣେ । ତେମେ ବାହା ହୋଇଛ । କିନ୍ତୁ କାହିଁକି, କାହିଁକି ଆଉ ତେମେ ମୋ ସଙ୍ଗେ ଲାଗିଛ ଦାମ ଭାଇ ? ତମର କଥାରେ ଯଦି ତମ ସ୍ତ୍ରୀଙ୍କୁ ଭୁଲାଇ ପାର, ତମର ପିଲାଳିଆ ଖେଳକୌତୁକରେ ଯଦି ତାଙ୍କୁ ବଶ କରି ଆପଣାର କରିପାର, ତେବେ, ତେବେ ସେ ତ ନିଜକୁ ଭାଗ୍ୟବତୀ ମଣିବେ । ପର ଘରର ଅଭିଆଡ଼ୀ ଝିଅ ପାଖରେ ଏ ସବୁ ଶୋଭା ପାଏ ନାହିଁ ।

ଠିକିଏ ଭାବି କହିଲେ, ଦୋଷ ମୋର ନୁହେଁ ଗୀତା । ଦୋଷ ଭାଗ୍ୟର । ତୋ ସଙ୍ଗେ ମୋର ରକ୍ତର ସମ୍ବନ୍ଧ ନାହିଁ ଏ କଥା ସମସ୍ତେ ଜାଣନ୍ତି । ସେଥିପାଇଁ ପ୍ରଥମେ ଯେଉଁ ବାଧା ବା ଆପତ୍ତି ଉଠିଥିଲା, ସେତକ ବୋଉକୁ ଶିଖାଇ ମୁଁ କଟାଇ ଦେଇଥିଲି । ବାପା ଖୋଜିଲେ ଧନ । ଧନର କଅଣ ଅଭାବ ଅଛି ? ପୁଣି କହିଲେ, ଗାଁ କିଏ ସିଂଘାଣିନାକୀ । ପ୍ରକାରାନ୍ତରରେ ଖବର ପଠାଇଲି । ସେ ଶୁଣିଲେ ନାହିଁ । ସେ ଯେପରି ଅଣ୍ଡିଆ ଲୋକ ତ ଜାଣୁ, ତାଙ୍କର ଅବାଧ ହେବାକୁ ସାହସ ହେଲା ନାହିଁ ।

କେତେ କଅଣ କହିବାକୁ ପାଟି ଖଲଖଲ ହେଉଥିଲା । ଧୈର୍ଯ୍ୟର ସହିତ କଥାକୁ ବୁଲାଇ ନେବାକୁ କହିଲି, ଦାମ ଭାଇ, ଏ ସବୁ କାହିଁକି କହୁଛ ? ତମଠାରୁ ମୁଁ ଜବାବ ମାଗୁ ନାହିଁ । ଯାହା ହେବାର ହୋଇଛି । ଏବେ ତୁମେ ଯାଅ ନୋହିଲେ ଖୋଲି କହ, ମୋଠାରୁ ତୁମେ କଅଣ ଚାହଁ ।

ତୋଠାରୁ ମୋର ଅନେକ କିଛି ଚାହିବାର ଅଛି । କିନ୍ତୁ କିନ୍ତୁ...

ସଞ୍ଜର ମହଲଣ ଛାଇରେ ତାଙ୍କର ମୁହଁରେ ଲାଳସାର ପ୍ରଭା ଉକୁଟି ଉଠିଲା । ଆଖିରେ ପ୍ରଲୋଭନ ନିଆଁ ଜଳି ଉଠିଲା । ମୁଁ ବୁଝିଲି । ତାଙ୍କଠାରେ ସେପରି ଭାବ ମୁଁ ଅନେକ ଥର ଦେଖିଛି । ଭଲମନ୍ଦ ବୁଝିବାର ଜ୍ଞାନ ହେଲାଦିନୁ, ନାରୀତ୍ୱର ଦାୟିତ୍ୱ, ଆପଦ ବିପଦ ଜାଣିବା ଦିନୁ ତାଙ୍କ ପାଖରୁ କରେଇ ଆସିଛି । ଦୂରେଇ ଆସିଛି । ମୁଣ୍ଡଟିକୁ ଛାତିକୁ ଆଉଜାଇ ପିଠି ଆଉଁଷି ଗେଲ କରିବାକୁ ସୁଯୋଗ ଦେଇ ନାହିଁ । ବିବାହର ବାର ମାସ ପରେ ଆଜି ତାଙ୍କ ସଙ୍ଗେ ନିରୋଳାରେ ପ୍ରଥମ

ଦେଖା । ଭାବିଥିଲି, ସେ ବଦଳିଥିବେ । ନଜର ଓ ଅନ୍ୟର ଦାୟିତ୍ୱ ଭଲ ମନ୍ଦ ଉପଲବ୍ଧି କରିଥିବେ । କିନ୍ତୁ ମୋର ଧାରଣା ଭୁଲ୍ । ସଜନା ଛୁଇଁତକ ଗୋଟାଇ ଧରିଲି । କହିଲି, ସଞ୍ଜ ହେଲା, ମୁଁ ଯାଏଁ । ସଞ୍ଜବତୀ ଲଗାଇବି ।

ସେ ମୋ ବାହୁ ଉପରେ ହାତ ପକାଇଲେ । ରାଗରେ ଆଖି ଲାଲ କରି ହାତ ଛଡ଼ାଇ ଆଣୁ ଆସିଲି, କିନ୍ତୁ ତାଙ୍କର ବଳିଷ୍ଠ ହାତକୁ ଖସାଇ ପାରିଲି ନାହିଁ । କହିଲି ରୁକ୍ଷସ୍ୱରରେ, ଛାଡ଼ ।

ହସି ହସି ସେ କହିଲେ, ରାଗୁଛୁ କାହିଁକି ଗୀତା, ଶୁଣ ।

ଆହୁରି ବିରକ୍ତ ହୋଇ କହିଲି, ଛାଡ଼ କହୁଛି, ନୋହିଲେ—ତଥାପି ସେ ଛାଡ଼ିଲେ ନାହିଁ । ଡାକ ଛାଡ଼ିଲି, ବୋଉ,—

୪

ସେ ହାତ ଛାଡ଼ିଦେଲେ । ବୋଉ ବି ତେଣୁ ଜବାବ୍ ଦେଇ ଆସି ପହଞ୍ଚିଲା ! କଅଣ କହିବି ଭାବୁଛି, ଦାମ ଭାଇ ପକେଟରୁ ଖଣ୍ଡେ ଶାଢ଼ି କାଢ଼ି ବୋଉ ହାତକୁ ବଢ଼ାଇ ଦେଲେ । ସଙ୍ଗେ ସଙ୍ଗେ କହିଲେ, ଆଜି କଟକ ଯାଇଥିଲି ଖୁଡ଼ି । ତୋକି ଦାଦାଙ୍କ ସଙ୍ଗେ ଦେଖା ହୋଇଥିଲା । ସେ ଏ ଶାଢ଼ିଖଣ୍ଡି ଦେଇଛନ୍ତି, ନିଅ । ଭାରି ଆଗ୍ରହରେ ବୋଉ ଶାଢ଼ିଖଣ୍ଡ ନେଲା । ମୁଁ ରହ ରହ କହିଲି, କାଉ ପରି ରଡ଼ୁଥିଲା । ଦେଖିଲୁ ବୋଉ ! ମୋର ସ୍ୱର ଥରି ଉଠିଲା । ବୋଉ ହସିଲା । କହିଲା, ଭିତରକୁ ଆ ବାବୁ !

ମୁଁ କହିଲି, ଆସ ଦାମ ଭାଇ ଭିତରକୁ । ପାନ ନେବ ନାହିଁ ?

ସେ କହିଲେ, ଡେରି ହେଲାଣି ଯାଉଛି, ପରେ ଆସିବି ।

ଅଭିମାନର ଛଳନା କରି କହିଲି, ବୋଉ ମ, ଆଜିକାଲି କଅଣ ଦାମ ଭାଇଙ୍କର ବେଳ ଅଛି କି ? ବର୍ଷେ ହେଲା ତ ତାଙ୍କର ମୋଟେ ଦେଖା ଦର୍ଶନ ମିଳୁ ନାହିଁ । ସବୁବେଳେ ଖାଲି କାମ । କାମ ଏମିତି ବଢ଼ି ଯାଇଛି !

ସେ କହିଲେ, ଦେଖୁଛ ଖୁଡ଼ି, ଗୀତା କେମିତି ମିଛଟାରେ ଅପବାଦ ଦେଇ କହୁଛି ? ତମ ଜୋଇଁ ରାଣେ ସତ କହ, ମୁଁ ଆସେ ନାହିଁ ?

ମୁଁ ତୁନି ରହିଲି । ବୋଉ କହିଲା, ଆସୁ ଯେ ଠିଆ ଠିଆ ଯାଉ । ବସି କରି ପଦେ ଭଲକରି କହୁ ନାହିଁ କି ଗୀତା ସଙ୍ଗେ ବେଲଛେଲି ଲଗାଉ ନାହିଁ । ସେଇଥିପାଇଁ ସେ କହୁଛି । ଆଲୋ ଗୀତା, ସେ ପରା ଦଉଡ଼ ଦଉଡ଼ ଆସିଛି, ତେକ କରୁଥିବ ଯାଉ, କାଲିଆଡ଼କୁ ଆସିବ ।

ଖଞ୍ଜା ଭିତରକୁ ପଶି ଯାଉଁ ଯାଉଁ କହିଲି, କାଲି ନିଶ୍ଚେ ଆସିବ ଦାମ ଭାଇ । ତମକୁ ରାଣ ଅଛି, ତାଙ୍କର ରାଣ । କହିଲେ, ହଉ ।

କଣେଇଁ ଗୁହିଁଲି । ଦାମ ଭାଇ ଗୁଲି ଯାଉଛନ୍ତି । ଥରଟିଏ ସେ ଫେରି ଗୁହିଲେ ନାହିଁ । ମନଟା କପଟ ଗୋଳେଇ ହେଲା । ସତେ ଦାମ ଭାଇଙ୍କର ଦୋଷ ହେବ ନାହିଁ । ମୋ ଭୁଣ୍ଡର ପଦଟିଏ କଥାରେ ସେ ବିଶ୍ୱାସ କରିଥିଲେ । ଯେତେ ଯୁଅଡ଼ୁ ବାହାଘର ସମ୍ବନ୍ଧ ଅସିଲା ସେ ମନା କରିଦେଲେ । ମୋତେ ବାହା ହେବେ ବୋଲି ଅଡ଼ି ବସିଲେ । ସମସ୍ତେ ସିନା ମଙ୍ଗିଲେ, ମହନଜେଠା ନାହିଁ କରିଦେଲେ । ଦାମ ଭାଇକୁ ଧମକାଇଲେ, ପୁଣି ଚିଦ୍‌ଲେ । କହିଲେ, ଗୀତାକୁ ବାହାହେବା କଥା ଯଦି ଆଉ ଥରେ ଭୁଣ୍ଡକୁ ଅଣୁ ତ ଭେଲର ସର୍ବନାଶ କରିବ । ତଳତଳାନ୍ତ ହୋଇ ବାଟରେ ଠିଆ ହେବେ । ସେମାନଙ୍କର ମଙ୍ଗଳ ଗୁହୁଁ ତ ମୋ କଥା ମାନ । ଦାମ ଭାଇ ବାପାଙ୍କର ଅବାଧ୍ୟ ହେଲେ ନାହିଁ । ବରବେଶ ସାଜ ପରଗାଁକୁ ଯାଇ ବାହା ହୋଇ ଅସିଲେ । ଭଲକଲେ ତ, ଆଉ କାହାଁକ ନଲଠା ପଣ ?

ଆଖିରୁ ଲୁହ ଝରିଲା । କୋହ ଉଠିଲା ।

୬

ସଞ୍ଜବତୀ ଲଗାଇ ବୃନ୍ଦାବତୀଙ୍କ ଚଉରା ତଳେ ରଖି ପ୍ରଣାମ କଲି । ଠାକୁରଙ୍କ ପାଖରେ ଲୋକେ ଅନେକ ଦୁଃଖ ଜଣାନ୍ତି । ମୋର କିନ୍ତୁ କୌଣସି ଦୁଃଖ ଜଣାଇବାର ନ ଥିଲା । ତଥାପି କେଜାଣି କପଟ ମୋର ଆଖି ଆଗରେ ଜଣକର ମୂର୍ତ୍ତି ଅସି ଠିଆ ହେଲା । ମନର କେଉଁ ଅଜଣା କୋଣରେ ତାଙ୍କର ସେହି ସୁନ୍ଦର ମୂର୍ତ୍ତି ଆଉକୁ ଅମ୍ଳା ନଇଁପଡ଼ିଲା । ଦୁଇବର୍ଷ ତଳେ, ଏମିତି ସଞ୍ଜବେଳେ ସେହି ଚଉରା ପାଖରେ ତାଙ୍କ ସଙ୍ଗେ ମୋର ପ୍ରଥମ ଦେଖା । ତା ପରେ ତ ଅନେକ ଘଟଣା ଘଟିଯାଇଛି । ସ୍ମୃତିର ପରଦା ଉପରେ ଆନନ୍ଦ ନିରାନନ୍ଦର କେତେ ଛବି ଝଟି ହୋଇଛି ।

ବୋଉ ଡାକିଲା, ଗୀତା, ନଲଟଣ ଲଗାଇ ଚିଠି ଖଣ୍ଡି ପଢ଼ିଲୁ ମା ।

ଉଠିଅସି ନଲଟଣ ଲଗାଇଲି । ମହନ ଜେଠାଙ୍କ ଠାକୁର ମନ୍ଦିରରୁ ସଞ୍ଜ ଅରତିର ଘଣ୍ଟା ଶୁଭିଲା । ବୋଉ କାନ୍ଥରେ ମୁଣ୍ଡ ଲଗାଇ ପ୍ରଣାମ କଲା । କହିଲା, ହେ ରାଧା ମାଧବ ! ଗୁଣୁଗୁଣୁ କରି କଅଣ କହିଲା ମୁଁ ବୁଝିପାରିଲି ନାହିଁ ।

ଚିଠି ଖୋଲିଲି । ଗୋଟେ ବଡ଼ ଦୁଇଖଣ୍ଡି । ଖଣ୍ଡିଏ ଲେଖା ହୋଇଛି ମୋ ପାଖକୁ, ଆଉ ଖଣ୍ଡିକ ବୋଉ ପାଖକୁ ।

କେବେ କେମିତି ବାପା ଚିଠି ଦେଲେ ମୋ ପାଖକୁ ଲେଖନ୍ତି । ଯେଉଁଥର ବୋଉ ପାଖକୁ ଚିଠି ଥାଏ, ସେଥିରେ ମୋ ବାହାଘର ପ୍ରସଙ୍ଗରେ ଲେଖା ହୋଇ-ଥାଏ । ଏଥର ମଧ୍ୟ ସେମିତି କିଛି ହୋଇଥିବ ବୋଲି ମୁଁ ଅନୁମାନ କଲି ।

ବୋଉ କହିଲା, ପଢ଼ ମା ।
ମୁଁ ମୋ ଚିଠି ଅଗ ପଢ଼ିଲି—

ମା ଗୀତା,

ଏଥର ଘରୁ ଆସିଲାଦିନୁଁ ମୋ ଦେହ ସେତେ ଭଲ ରହୁନାହିଁ । ବେଳେ ବେଳେ ଆଣ୍ଠୁ ଗଣ୍ଠି ଦରଜ ହେଉଛି । ବେଁଶିରୀ ହାଡ଼ରେ କେମିତି ଗୋଟାଏ ଜଖମ ଅନୁଭବ କରୁଛି । ଡାକ୍ତରଖାନାରୁ ଔଷଧ ଖାଉଛି । ବର୍ତ୍ତମାନ ଦେହ ଟିକିଏ ଭଲ ଅଛି ।

ତୁ ଲେଖିଥିଲୁ, ଖଣ୍ଡେ ଶୀତ ସୋଇଟର୍ ପଠାଇବାକୁ । ଗୋଟାଏ ଟିଉସନ କୁଟିଛି । ମାସକୁ ଶହେ ଟଙ୍କା ଦରମା । ପନ୍ଦରଦିନ ଗଲାଣି । ଆଜ ପନ୍ଦର ଦିନକୁ ମାସ ପୂରିଲେ ବାବୁ ଟଙ୍କା ଦେବେ । ସେହି ଟଙ୍କାରେ ତୋ ପାଇଁ ଜାମା, ସୋଇଟର୍, କାଚ କିଣିଦେବ । ମା ମୋର, ମନକଷ୍ଟ କରିବୁ ନାହିଁ । ଠାକୁରେ ତ ଆମକୁ ଦରିଦ୍ର କଲେ, କଣ କରିବା ? ଚିଠି ଦେବୁ ! ତୋ ଚିଠି ପାଇଲେ ମୁଁ କେତେ ଖୁସି ହୁଏ ଜାଣୁ ? ଇତି ।

ତୋର, ବାପା

ଚିଠି ପଢ଼ିସାରି ବୋଉ ମୁହଁକୁ ଚାହିଁଲି । ତାର ଦୁଇ ଆଖି ଲୁହ ଛଳ ଛଳ ହୋଇ ଉଠିଛି । ମୋତେ ଚାହିଁ ଦୀର୍ଘନିଶ୍ୱାସ ପକାଇ କହିଲା, ସେହି ରୋଗ ତ ତାଙ୍କୁ ମଣିଷପଣିଆଁରୁ ରଖିଲାଣି ଲୋ । ଆଜିକୁ ପାଞ୍ଚବର୍ଷ ହେବ କି କଅଣ, ବେଳେ ବେଳେ ସେ ବେଁଶିରୀ ହାଡ଼ ଦରଜ କଥା କହନ୍ତି । ଯାହା ଅର୍ଜିଲେ ସବୁ ଘରକୁ ଦେଲେ । ଭଲକରି ଚିକିତ୍ସା କରିବାକୁ କଅଣ ତାଙ୍କର ମନ ହେଉଛି ?

ଭାବିଲି, ଆମରି ପାଇଁ ସିନା ସେ ଏତେ କଷ୍ଟ ପାଉଛନ୍ତି । ଆମରି ମୁହଁରେ ଆହାର ଦେବାକୁ ଟଙ୍କା କେଇଟା ପାଇଁ ବିଦେଶରେ ପଡ଼ି ଦିନରାତି ପରିଶ୍ରମ କରୁଛନ୍ତି । ତହିଁରେ ପୁଣି ଭଲକରି ମୁଠାଏ ଖାଇବାକୁ ପାଉ ନାହାନ୍ତି । ଯାହା ମିଳିଲା ନିଜ ହାତରେ କଅଁା ଦରସିଝା କରି ରାନ୍ଧି, ମୁଠିଏ ଖାଇ ଇସ୍କୁଲରେ ଖଟି ଖଟି ବେଲ କାଟୁଛି । ତହିଁରେ ପୁଣି ଟିଉସନ୍ କରୁଛନ୍ତି ।

ଘର ଭିତେ ଓ ବାରି କେଇ ଗୁଣ୍ଠ ଛଡ଼ା ଚାଷ କରିବାକୁ ବାଡ଼ ଗୋବରେ ଗୋବେ ଜମି ନାହିଁ । ଗାଁର ଅଉ ପାଞ୍ଚଟାଙ୍କ ପରି ବଲମାଟି ହାଡ଼ରେ ଲଦି କୁଟୁମ୍ବ ପୋଷିବାର ଉପାୟ ନାହିଁ । ଭେଣ୍ଡା ପୁଅ ନାହିଁ, ଚାରି ପଇସା ରୋଜଗାର କରି ଆଣିଦେବ । ମୁଁ ତ ଝିଅଟାଏ । ଓଲଟି ଗଲଗ୍ରହ । କଷ୍ଟ ଦେବାକୁ ମୋର ଜନ୍ମ । ମୋ ଚିନ୍ତା ତାଙ୍କୁ ଦିନୁଦିନ ବେଶି କ୍ଷୀଣ କରୁଛି । ନ ମଲି ଯାହା । ଜନ୍ମ ହୋଇଥିଲି ବାପ ମାଙ୍କୁ ଦହଗଞ୍ଜ କରିବାକୁ ।

ବୋଉ ଆଖିରୁ ଲୁହ ପୋଛି କହିଲା, ପଢ଼ ମା, ଆଉ ଚିଠି ଖଣ୍ଡି । ମୁଁ ଚିଠିଖଣ୍ଡିରେ ଥରେ ଆଖି ପକାଇଗଲି । ଲେଖିଛନ୍ତି, କଟକରେ ବଧୁବାବୁ ବୋଲି କଏ ଜଣେ ହାଇସ୍କୁଲ ମାଷ୍ଟର ଅଛନ୍ତି । ତାଙ୍କର ଗୋଟିଏ ପୁଅ, ବି.ଏ. ପାଶ୍ କରି କେଉଁ ସର୍କାରୀ ଅଫିସରେ କାମ କରନ୍ତି । ଷାଠିଏ ସତୁରି ଟଙ୍କା ଦରମା । ତାଙ୍କର ନାଆଁ ପ୍ରବୋଧ । ବଧୁବାବୁ ଚାହାନ୍ତି, ବୋହୂଟିଏ କରିବେ, ସୁନ୍ଦର ହୋଇଥିବ, ବୁଦ୍ଧି ଭଲ । ପାଠ କିଛି ପଢ଼ିଥିବ । ଧୀର, ଶାନ୍ତ, ସୁଚରିତା । ଦବାନବା ଚାହାନ୍ତି ନାହିଁ । ଭଗବାନ ତାଙ୍କୁ କୌଣସି କଥାରେ ଊଣା କରିନାହାନ୍ତି । ଗରିବଘରର ଝିଅ ହେଲେ ଉତ୍ତମ । ସବୁ କାମକୁ ଧୁରନ୍ଧର ହେବ । ଜାତକଟି ଏକା ଶୁଝିବ । ବାହାଘର ଠିକଣା ହେବା ଆଗରୁ ତାଙ୍କର ସ୍ତ୍ରୀ ଝିଅକୁ ଥରେ ଦେଖିବେ ।

ଅନନ୍ତ ଲେଖାଥିଲା, ମୁଁ କୁଆଡ଼େ ସବୁ ଗୁଣରେ ପରିପୂର୍ଣ୍ଣ । ଜାତକ ଶୁଝିଲେ ବାହାଘର ନିଶ୍ଚୟ ହେବ । କୌଣସି ଗୋଟିଏ ଅବସରେ ମୋତେ କଟକ ନେଇଗଲେ ବଧୁବାବୁଙ୍କ ସ୍ତ୍ରୀ ଦେଖିବେ । ଥରେ ଦେଖିଲେ ସେ କି ଆଉ ନାହିଁ କରି ପାରିବେ ? ମୋ ପରି ଝିଅ ଆଉ ସେ ଦେଖିଥିବେ କେଉଁଠି ଯେ !

ଅତି ଶୀଘ୍ର ମୋର ଖଣ୍ଡେ ଟିପ୍‌ପଣା ପଠାଇବାକୁ ସେ ବାରମ୍ବାର ଅନୁରୋଧ କରିଥିଲେ । ଚିଠିଟିରେ ପ୍ରବୋଧବାବୁଙ୍କ ରୂପ, ଗୁଣ, ଢଙ୍ଗଢାଙ୍ଗ ସମ୍ବନ୍ଧରେ ଅନେକ କଥା ଲେଖାଥିଲା ।

ମୋତେ ତୁନି ରହିବାର ଦେଖି ବୋଉ ପୁଣି କହିଲା, ପଢ଼ ସେ ଖଣ୍ଡି । ମୁଁ ତା ହାତକୁ ଚିଠିଟି ଦେଇ କହିଲି, ତୁ ପଢ଼ । ମୋ ମୁଣ୍ଡ କଅଣ ହେଉଛି । ଯାଉଛି ଶୋଇବି ।

ବୋଉର ଉତ୍ତରକୁ ଅପେକ୍ଷା ନ କରି ଶୋଇଲା ଘର ଭିତରକୁ ଗଲି । ଘର ବୋଲି ତ ମୋଟେ ଦୁଇ ବଖରା । ଖଣ୍ଡିକରେ ରୋଷାଇ ହୁଏ । ଆରଟିରେ ଶୁଆ ବସା କରୁଁ । ଡାହାଣ କରକୁ ଯେଉଁ ଛୋଟ ଗୃହଖଣ୍ଡିକ ସେଥିରେ କାଠ, ଘସି ଆଉ ସବୁ ଅଳୁକୁଳୁ ମାଳୁକୁଳୁ ଗଦା ହୋଇଥାଏ ।

ମୁଁ ଜାଣେ, ବୋଉ ଭଲ ପଢ଼ିପାରେ ନାହିଁ । ଅକ୍ଷର ଚିହ୍ନି କ, ବ, ଚ କରି ଯାହା ପଢ଼େ ସେଥିରୁ ସେ ଅଧେ ବୁଝିପାରେ ନାହିଁ । ଛୋଟ ଚିଠିଖଣ୍ଡେ ପଢ଼ିବାକୁ ତାକୁ ଅନ୍ୟତଃ ଦୁଇଘଣ୍ଟା ଲାଗେ । ତଥାପି ସେ ଆପତ୍ତି ନ କରି ଚିଠିଖଣ୍ଡି ନେଇ ଅଗଣାରେ ଖୋସିଲା । ସେ ବୋଧହୁଏ ବୁଝି ପାରିଲା, ଚିଠିରେ ମୋଓର ବାହାଘର ବିଷୟ ଲେଖା ହୋଇଛି ।

ନଳଟଣ ନେଇ ରୋଷେଇଘର ଭିତରକୁ ଗଲା । ମତେ ଶୁଣାଇ କହିଲା, ଗୀତା, ଶୋଇପଡ଼ିବୁ ନାହିଁ । ଗଣ୍ଡାଏ ଖାଇଦେଇ ଶୋଇବୁ ପଛେ । ତୋର ଯେଉଁ ହଦ !

କହିଲି, ମୁଁ ଚେଇଁକରି ଶୋଉଛି । ଡାକିଲେ ଉଠିବି ।

## ୨

ଅନ୍ଧାର ଘର । ଆଲୁଅ ଆସିବ ବୋଲି ବାଡ଼ପଟ ଝରକା ଖୋଲିଦେଲି । ଆକାଶର ମୁଣ୍ଡ ଉପରେ ମଥାମଣି ପରି ଅଷ୍ଟମୀର ଉଜ୍ଜ୍ୱଳ ଜହ୍ନ ଝଟକି ଉଠୁଛି । ଶିରଶିରିଆ ଥଣ୍ଡା ପବନ ନଈପଠା ଆଡ଼ୁ ସୋରିଷ ଫୁଲର ମହକ ଗୋଟେଇକରି ଘର ଭିତରକୁ ପଶି ଆସିଲା । ଦେହ ଠାକୁଁରି ଉଠିଲା । ହେଁସ ଖଣ୍ଡି ତଳେ ପାରି ଥଣ୍ଡା ସତରଞ୍ଜିଟି ତା ଉପରେ ପକାଇଲି । ଝରକା ବନ୍ଦକରି କାନ ଘୋଡ଼ିହୋଇ ଜାକିଜୁକି ଶୋଇପଡ଼ିଲି ।

ବାରକଥା ଆସି ମନରେ ପଶିଲା, ବାରଗୁଡ଼ିଆ ଚିନ୍ତା । ବାପାଙ୍କର ଚିଠିଖଣ୍ଡି ପୁଣି ଯେପରି କିଏ ଆଗରେ ମେଲିକରି ଧରିଲା । ମୋର ବାହାଘର କଥା । ନୂଆ ନୁହେଁ, ଗୃହବର୍ଷ ହେଲା କେତେ ପାତ୍ର କେତେ ପ୍ରସ୍ତାବ ଆସିଛି । କେଉଁଠି ଟିପଣୀ ଶୁଝିଛି ତ କେଉଁଠି ନାହିଁ । ଯେଉଁଠି ନାଗନାଡ଼ୀ କି ନରରାକ୍ଷସ ପଡ଼ିଛି ସେ ପ୍ରସ୍ତାବ ତ ଭାଙ୍ଗିଛି । ଯେଉଁଠି ଜାତକ ଶୁଝିଲା ମୋର ରୂପଗୁଣ ସମ୍ବନ୍ଧରେ ବରପକ୍ଷ ପଚରା ଉଚରା କରୁଛନ୍ତି । ଏ ପରୀକ୍ଷା ଡେଇଁଲେ ଦେବାନେବା କଥା ପଡ଼େ । ପ୍ରସ୍ତାବ ଭାଙ୍ଗେ ।

ପିଲା ଥିଲି । ଖେଳ କୌତୁକରେ ବେଳ କଟୁଥିଲା । ନୂଆ ଯୌବନର ଭେଳିକି ଯେତେବେଳେ ଦେହରେ ଉତ୍ତେଜନା ଆଣି ଦେଲା, ମନ ଚଞ୍ଚଳ ହୋଇ ଉଠିଥିଲା । ଯୁବକର ପରଶ ଆଣୁଥିଲା ପ୍ରାଣରେ ପୁଲକ । ଅଜଣା ପୁଲକ । ସେତିକି । ମିଳନ କଅଣ ଜାଣିନାହିଁ, ଜାଣିବାର ଆଗ୍ରହ କି ପ୍ରବୃତ୍ତି ହୋଇ ନ ଥିଲା । ବିବାହ କଥାଟା ମନରେ ପଶି ନ ଥିଲା । କିନ୍ତୁ ଯେଉଁଦିନ ସଞ୍ଜବେଳେ ଏହି ଅନ୍ଧାର ଘରେ ଦାମଭାଇ ମୋତେ ତାଙ୍କର ଛାତି ଉପରେ ଧରି ନଇଁଲା ମୁହଁରେ ବୋକ ଦେଲେ, କାନ ପାଖରେ ଗୁନଗୁନ କହିଲେ, ଗୀତା, ତୁ ମୋର, ଚିରଦିନ ମୋର, ଇହକାଳ ପରକାଳ ସବୁବେଳେ । ତୋତେ ମୁଁ ବାହା ହେବି, ଯେମିତି ହେଉ । ବାହା ହେବା କଥାଟି ପ୍ରଥମ କରି ମୋ ଶିରାପ୍ରଶିରାରେ ବିଜୁଳି ଚମକ ଆଣିଥିଲା ସେଦିନ ସଞ୍ଜରେ । ସେତେବେଳେ ମୋର ବୟସ ଚଉଦ । ଗୃହବର୍ଷ ତଳର କଥା ।

ସେଦିନରୁ ଦାମ ଭାଇଙ୍କ ପାଖରୁ ମୁଁ ଦୂରେଇ ରହିଛି । କିନ୍ତୁ କେହି କାରଣ ବୁଝି ପାରନ୍ତି ନାହିଁ । ବୁଝେ ମୁଁ, ଆଉ ବୋଧହୁଏ ବୁଝିଥିବେ ସେ । ତାଙ୍କୁ ବଡ଼ ଅସ୍ୱସ୍ତି ଲାଗୁଥିବ ।

ପିଲାଦିନୁ ସେ ମୋତେ ଭଲ ପାଆନ୍ତି । ଗରିବ ବଡ଼ଲୋକ ଭେଦଭାବ ତାଙ୍କଠାରେ ନ ଥାଏ । ମୋତେ ସେ ସଙ୍ଗରେ ନଈକୁ ଗାଧୋଇ ନିଅନ୍ତି । ମେଳଣ ଦେଖାଇବାକୁ ଆଖପାଖ ଗାଁକୁ ନିଅନ୍ତି । ଯାହା ଖର୍ଚ୍ଚ ଦିଅନ୍ତି, ତା ଛଡ଼ା ଯାହାରୁ

ଭଲ ଭଲ ଜିନିଷ କିଣି ମୋତେ ସେ ଦିଅନ୍ତି । ବାପା ବୋଉଙ୍କୁ ସେ ଭକ୍ତି କରନ୍ତି । ବେଳେ ବେଳେ ମଦନ ଜେଠାଙ୍କୁ ଘରର ଅଭାବ ଅସୁବିଧା କଥା ବୁଝନ୍ତି । ସେଥିପାଇଁ ବାପା ବୋଉ ମଧ୍ୟ ତାଙ୍କୁ ଭଲ ପାଆନ୍ତି । ତାଙ୍କ ସଙ୍ଗେ ମୋତେ ଛାଡ଼ି ଦେବାକୁ ଆପତ୍ତି କରିବା ପରିବର୍ତ୍ତେ ଆଗ୍ରହ ଆନନ୍ଦ ଅନୁଭବ କରନ୍ତି ।

ଦାମ ଭାଇଙ୍କ ସଙ୍ଗରେ ମୁଁ ତାଙ୍କ ଘରକୁ ଯାଏଁ । ପାଞ୍ଚ ଝିଅରେ ସେ କୋଳପୋଛା ପୁଅ । ପୁଣି, ଝିଅମାନେ ସମସ୍ତେ ପରଘରୀ । ମଦନ ଜେଠା ଓ ଜେଠେଇଙ୍କର ସେ ଆଖିର ପିତୁଳା । ଅଲିଅଳ, ଗେଲବସର । ଯାହା କରନ୍ତି ବାଧା ଦିଅନ୍ତି ନାହିଁ । ତାଙ୍କ ସଙ୍ଗେ ମୁଁ ଗଲେ ମୋତେ ବି ଜେଠା ଜେଠେଇ ସୁଖ ପାଆନ୍ତି । ଖାଇବାକୁ ଦିଅନ୍ତି । ଖେଳିବାକୁ କଣ୍ଢେଇ ଦିଅନ୍ତି । ମୋ ରୂପ ଓ ଢଙ୍ଗଢାଙ୍ଗକୁ ଜେଠେଇ ପ୍ରଶଂସା କରନ୍ତି ।

ଦାମଭାଇଙ୍କ ସଙ୍ଗେ ବୁଲିବାକୁ ବା ଖେଳିବାକୁ ମୋତେ ଭଲ ଲାଗେ । ବାପା ବୋଉଙ୍କ ପାଖେ ଯେଉଁ ବିଷୟରେ ସଙ୍କୋଚ, ତାଙ୍କ ପାଖରେ ସେ ସଙ୍କୋଚ ନ ଥାଏ । ମୋର ଦେହ, ମୋର ଲୁଗାପିନ୍ଧା, ମୋର ରୂପ ଉପରେ ଯେପରି ତାଙ୍କର ନଜର ବେଶୀ । ସେତେବେଳେ କିଛି ବୁଝି ନ ଥିଲି, ତାଙ୍କର ହାତର ପରଶ ସର୍ବାଙ୍ଗରେ ଅନୁଭବ କରି ପିଲାଳିଆ ମୋହରେ, ଅଜଣା ଆନନ୍ଦରେ ମୁଗ୍ଧ ହୋଇ ରହୁଥିଲି । କିନ୍ତୁ ବୁଝିଲି ସେଦିନ ସଞ୍ଜରେ, ସେହି ସେ ଗୋଟିଏ କଥା ମେ ମୋ କାନରେ କହୁଥିଲେ, ବାହା ହେବ ।

ଦିନ ଦିନକର ଘଟଣା ମନେ ପଡ଼ିଲେ ଆଜି ନିଜକୁ ଲାଜ ମାଡ଼େ । ସତେ ! କେତେ କଥା ସେ ଭୁଣ୍ଡି ଖୋଲି କହୁଥିଲେ । ମୁଁ ବି ନିଃସଙ୍କୋଚରେ ତାଙ୍କୁ ଜବାବ ଦେଉଥିଲି । ମୁହଁ ଖୋଲି କହିବାକୁ ଆଜି ଜିଭ ପଡୁନି ନାହିଁ । ତାଙ୍କୁ ଦେଖିଲେ କେବଳ ତାଙ୍କ ପରଶ ମୋହ ପାଇଁ ବ୍ୟାକୁଳ ହୋଇ ପଡ଼ୁଥିଲି । ବୋଉ ପାଖରୁ କବେଳାକୁ ବୁଲି ଆସିବାକୁ କେତେ ଅଳି ଧରି କଥା କହୁଥିଲି, ଦାମଭାଇ ମୋତେ ଦୁଇଟି ବଉଳଫୁଲ ତୋଳି ଦେଲେ । ଦାମଭାଇ, ମୋତେ ଗୋଟାଏ ଚିତ୍ର ଆଙ୍କି ଦେଲେ । ଏମିତି କେତେ କଅଣ ।

ବଉଳ ମୂଳକୁ ଦିହେଁ ଆସୁ । ଦୁହିଁଙ୍କ ମୁହଁରେ ହସ । ଦୁହିଁଙ୍କ ମନରେ ଅଜଣା ମୋହ । ନ ଜାଣିଲା ପରି ଜାଣି ଜାଣି ତାଙ୍କ ଦେହକୁ ଲାଗି ଲାଗି ଆସେ । ସେ ବି ମୋତେ ଆଉଜାଇ ନିଅନ୍ତି । ବଉଳ ଗଛରୁ ଫୁଲ ନ ତୋଳି କହନ୍ତି, ଭାରି ତ ବଉଳଗଛ, ଗୀତା । ହସି ହସି ଲେଟିଯାଏ ତାଙ୍କ ଉପରେ ।

ଆମର ଲୀଳାଖେଳାରେ ଯେ ସନ୍ଦେହର କୌଣସି କଥା ଥିଲା, ଏହା ଆଜିଯାଏ କାହାରି ମନରେ ପଶିନାହିଁ । ଅନ୍ୟମାନଙ୍କ ଉହାଡ଼ରେ ଦିଓଟି ଜୀବ ଯେ କେଉଁ ଅଜଣା ମୋହରେ ଲୁଚକାଳି ଖେଳୁଛନ୍ତି ସେ କଥା ବା ବିଶ୍ୱାସ କରିବ କିଏ କପରି ? ସବୁ ତ ପିଲାତଳେ ଯାଏ ।

ବାହାଘରର ଚିନ୍ତା ମନରେ ମୋର ପଶିଲା । ଭଲ ମନ୍ଦର ଭାବ ଆସି ମୋର ଅସ୍ଥିର ବିବେକକୁ ସ୍ଥିର କରିଦେଲା । ଅନ୍ୟମାନଙ୍କ ଆଗରେ ଦାମଭାଇଙ୍କ ପ୍ରତି ପୂର୍ବର ସ୍ନେହ ଓ ପୂର୍ବର ଭାବପୋଷଣ କଲେ ବି ନିରୋଳାରେ ତାଙ୍କ ପାଖରୁ ଦୂରେଇ ରହେ । ସେ ଜାଣନ୍ତି, ବୁଝନ୍ତି, ମୋର ମନରେ ପରିବର୍ତ୍ତନ ଆସିଛି । କିନ୍ତୁ କହି ପାରନ୍ତି ନାହିଁ । କହିବାର ସୁଯୋଗ ପାଆନ୍ତି ନାହିଁ । ମୁଁ ତାଙ୍କୁ ସେପରି ସୁଯୋଗ କେବେ ଦିଏନାହିଁ ।

ମନରେ କେତେ ଆଶା ଧରି ସେ ଆସନ୍ତି । ମୁଁ ବୋଉ ଆଗରେ ହସି ହସି ତାଙ୍କୁ କଥା କହେ । ପାନ ଭାଙ୍ଗି ଦିଏ । କେତେ ପ୍ରକାର ନିର୍ବାହ ଅନ୍ଥା କରେଁ, ପୁଣି ଆସିବାକୁ ଅନୁରୋଧ କରେଁ । ବୋଉ ଅନ୍ୟଆଡ଼େ ଚାଲିଗଲେ, ମୁଁ କାମର ବାହାନା କରି ଉଠିଯାଏଁ ।

ସେ କିଛି ନ ବୁଝିଲା ପରି ବଲ ବଲ କରି ମୋ ମୁହଁକୁ ଚାହିଁ ଧୀରେ ଧୀରେ ଫେରି ଯାଆନ୍ତି । ମୁଁ ସ୍ୱର କଅଁଳେଇ ତାଙ୍କୁ ଶୁଣାଇ କହେ, ଦାମଭାଇ, ତମକୁ ରାଣ ଅଛି, ନିଶ୍ଚୟ କାଲି ଆସିବ । ସେ ଓଠୁଁ ହଉଟିଏ କହି ଚାଲି ଯାଆନ୍ତି ।

ସେ ଆସନ୍ତି, ଆସନ୍ତି ଥରକୁ ଥର । ଲୋକ ଦେଖଣାରେ ମୋର ବ୍ୟବହାରରେ ପରିବର୍ତ୍ତନ ଦେଖି ପାରନ୍ତି ନାହିଁ । ସବୁ ବୁଝନ୍ତି, କିନ୍ତୁ ବୁଝନ୍ତି ନାହିଁ । ନିରୋଳାରେ ମୋତେ କେବେ ଦେଖିଲେ କଅଣ କହିବେ କହିବେ ହୁଅନ୍ତି । ହାତଧରି ଅଟକାଇ ରଖିବାକୁ ଚେଷ୍ଟା କରନ୍ତି । ମୁଁ ବାଁରେଇ ହୋଇ ନୋହିଲେ ହାତ ଝାଙ୍କିନେଇ ତାଙ୍କ ଆଗରୁ ଚାଲି ଆସେ ବୋଉ ପାଖକୁ । ସେ ଆସନ୍ତି ପଛେ ପଛେ । ବୋଉ ଆଗରେ ମୋର ପୂର୍ବ ସ୍ୱାଧୀନତା ଫେରିଆସେ ।

ଦିନେ, ବୋଉ ବାରିଆରେ ଅଛି, ହଠାତ୍ ସେ ଆସି ମୋ ଆଗରେ ଠିଆ ହେଲେ । ଘୁଞ୍ଚି ନେଉଛି ବେଳ । ଘର ଭିତରୁ ବାହାରି ଯିବାକୁ ଉପାୟ ରହିଲା ନାହିଁ ।

ପଚାରିଲେ, ଗୀତା, ତୁ ଆଜିକାଲି ମୋତେ ଭଲ ପାଉନାହୁଁ ?

ଓଠରୁ 'ହଁ' ଖସି ପଡ଼ିଲା । କହିଲି, କିପରି ଜାଣିଲ ?

ସେ ମୁହଁ ମଉଳାଇ କହିଲେ, ତୋର ଢଙ୍ଗରୁ ।

ମୁଁ ଟିକିଏ ଚୁପ ରହି କହିଲି, ମୋର ଢଙ୍ଗରେ କିଛି ବଦଳା ଦେଖୁଛ ?

ପଚାରୁଛୁ—ସତେ ଯେପରି କିଛି ଜାଣୁନାହୁଁ ।

ମୁଁ ତ କିଛି ଜାଣେ ନାହିଁ କହି ହସିଲି ।

ସେ ମୋର ହାତ ଧରିଲେ । ହାତ ଖସାଇ ନେଲି ।

ସେ କହିଲେ, ଏଇ ତ ତୋର ଢଙ୍ଗ ।

ସଫା ସଫା କହିଦେଲି, ମୋ ଦେହରେ ହାତ ଦିଅନାହିଁ ଦାମଭାଇ ।

ପଚାରିଲେ, କଅଣ ଦୋଷ ହେଲା ? ମୁଁ ଯେ ତତେ ବାହା ହେବି ଲୋ, ଗୀତା ।

ଲାଜରେ ମୁଣ୍ଡ ନୁଆଁଇଲି । କହିଲି, ସାହସରେ, ତା ଆଗରୁ ପରଝିଅ ଦେହରେ ହାତ ଦେବାର ଅଧିକାର ତମର ନାହିଁ ।

ସେ ଅବାକ୍ ହୋଇ କଅଣ ଭାବିଲେ । ମୁଁ ଘର ଭିତରୁ ଛୁଟିଗଲି ବାରି-ଅଡ଼କୁ । ଆଗ୍ରହରେ କହି ଉଠିଲି, ବୋଉଲୋ ଦାମଭାଇ ଆସିଛନ୍ତି ।

୮

ଛନୋଟି ବର୍ଷ କଟିଗଲା । ଆମର ଦରିଦ୍ର ଜୀବନ ଉପରେ ସୁଖ ଦୁଃଖର କେତେ ଢେଉ ଖେଳିଗଲା । ତଥାପି ଦାମଭାଇଙ୍କର ଆସିବାର ଊଣା ନ ଥାଏ । କି ମୋହରେ ଯେ ସେ ଆସନ୍ତି କେବଳ ତାଙ୍କୁହିଁ ଜଣା । ଦେଖା ହେଲେ ଆଗ୍ରହରେ ପାନ ଦି ଖଣ୍ଡି ଭାଙ୍ଗି ଦେବା ଛଡ଼ା, ହସି କରି ପଦେ ଅଧେ ଏଣୁ ତେଣୁ କହିବା ଛଡ଼ା, ତାଙ୍କୁ କେବେ ହେଲେ ଅଧିକ ପ୍ରଶ୍ରୟ ଦେଇନାହିଁ । କିନ୍ତୁ, ସେ ଯେପରି ଅନ୍ୟ କଅଣ ଚାହାନ୍ତି ।

ତାଙ୍କର ଅନ୍ୟଠାରେ ବାହାଘର ସ୍ଥିର ହେଲା । ମୋତେ କେଜାଣି କାହିଁକି ଖରାପ ଲାଗିଥିଲା । ତାଙ୍କୁ ଯେ ମୁଁ ବାହାହେବି ବୋଲି କଳ୍ପନା କରିଥିଲି ବା ଆଶା କରିଥିଲି ଏପରି ନୁହେଁ । ତାଙ୍କୁ ଯଦି ମୁଁ ବାହା ହୋଇଥାନ୍ତି ଜୀବନରେ ସୁଖୀ କି ଦୁଃଖୀ କଅଣ ହୋଇଥାନ୍ତି ସେ କଥା ମୁଁ କହି ପାରୁନାହିଁ । କେବେ ଭାବି ନ ଥିଲି । ମୋର ବାହାଘର ପାଇଁ ଯେଉଁମାନେ ବ୍ୟସ୍ତ ଓ ଦାୟୀ ହୁଏତ ସେମାନେ କଅଣ ଭାବିଥିବେ; କିନ୍ତୁ ତଥାପି ଯେଉଁଦିନ ଦାମଭାଇଙ୍କର ବାହା, ସେଦିନ ମୋର ମନ କେଉଁଠି ଲାଗିଲା ନାହିଁ । ଛାତି ଭିତରେ କୋହ ଭୁହାଇ ଭୁହାଇ ଉଠିଲା । ଆଖି ଥରକୁ ଥର ଲୁହରେ ଭରିଗଲା । ସେ ଦିନର ସେହି ସଞ୍ଜବେଳର କଥାଟି ଆସି ମନରେ ପଡ଼ିଲା ।

ନିଜକୁ ନିଜେ ପଚାରିଲି, କାହିଁକି ? ପିଲାଦିନର ଖେଳ କୌତୁକ, ସାଙ୍ଗ ମେଳ, ହାସ ପରିହାସ ବା ପରସ୍ପର ପ୍ରତି ଆକର୍ଷଣରେ ମୋହ ଉତ୍ତେଜନା ପାଇଁ ଯେଉଁ ନୁନଅଁ ଭୁଲା ଲାଜ ସଂକୋଚହୀନ ମିଶାମିଶି, ତହିଁରେ ବିବାହର ଚିନ୍ତା ତ କେବେ ଆସି ନ ଥିଲା । ପରସ୍ପର ସାନ୍ନିଧ୍ୟ ଭଲ ଲାଗେ, ମନରେ ଆନନ୍ଦ ଆଣେ, ସେତିକି ପାଇଁ ସିନା ଆମେ ପାଗଳ ! କିନ୍ତୁ, ନା, ମନର କେଉଁ ଅନ୍ଧାରି କୋଣରେ ଦିଳି ଦିଳି ଜଳୁଥିବା ଦୀପଟିଏ, କେଉଁଠୁ କେଜାଣି, ଅତି ଆପଣାର, ଅତି ପୁରୁଣା, ଜଣାଶୁଣା । ସେହି ବାଟେ ଦେଇ କେତେ ଭାବନା ଚାଲିଯାଉଛି, ଛନଦିନଆଁ

ଅଲ୍ଭଅଟିର ଦେଖଣା ବାଟରେ, କେବେ କେହି ତା ଆଡ଼କୁ ମୁଣ୍ଡ ଟେକି ଚାହିଁ ନାହିଁ । କିନ୍ତୁ ଯେଉଁଦିନ ଘାପଟି ଲଭିଗଲା, ଲଭିଗଲା ଚିରଦିନ ପାଇଁ, ଅନ୍ଧାର ହୋଇଗଲା ମନର ଭାବନା ।

ବାହାଘର ପରେ କେତେଦିନ ଯାଏ ଆମ ଘରକୁ ଯିବା ଅସିବା ବନ୍ଦ କରି ଦେଇଥିଲେ । ତା ପରେ ସେ ଆସିଲେ ବୋଉ ସଙ୍ଗେ ପଦେ ଅଧେ କଥା କହି ପାନ ଦି ଖଣ୍ଡି ନେଇ ଠିଆ ଠିଆ ଚାଲିଯାଆନ୍ତି । ମୋ ମୁହଁକୁ ଚାହିଁବାକୁ ବା ମୋ ସଙ୍ଗେ କଥା କହିବାକୁ ତାଙ୍କୁ ଲାଜ ମାଡ଼େ । ଧୀରେ ଧୀରେ ଏ ସଂକୋଚ ବି ଭାଙ୍ଗିଗଲା । ମୋତେ ନିରୋଳାରେ ପାଇଲେ କଅଣ ଯେପରି କହିବେ, ସେଥିପାଇଁ ସେ କେତେ ଇଶାରା ଦିଅନ୍ତି, ପ୍ରକାରାନ୍ତରରେ ବୁଝାଇ କହନ୍ତି ।

ସବୁ ବୁଝି ନ ବୁଝିବାର ଛଳନା କରେଁ ।

ଏତେ ଦିନକେ ଆଜି ସେ ମୋତେ ନିରୋଳାରେ ଦେଖିଥିଲେ । କେତେ କଅଣ କହିବେ ବୋଲି ଇଚ୍ଛା କରିଥିଲେ । ସେ ସୁଯୋଗ ତାଙ୍କୁ ଦେଲି ନାହିଁ ।

ଠିକ୍ କରିଛି କି ଭୁଲ୍ କରିଛି, ଭାବି ସ୍ଥିର କରି ପାରିଲି ନାହିଁ । ତାଙ୍କ ସଙ୍ଗେ ମୋର ଆଉ କି ସମ୍ବନ୍ଧ ? ପିଲାଦିନୁଁ ଭାଇ ବୋଲି ଡାକି ଆସିଛି, ଚିରଦିନ ସେ ମୋର ଭାଇ ହୋଇ ରହିବେ । ଭାଇର ଯେତିକି ସମ୍ମାନ, ଯେତିକି ସ୍ନେହ ମମତା ପ୍ରାପ୍ୟ ସେତିକି ତାଙ୍କୁ ଦେବାରେ ମୁଁ ତ୍ରୁଟି କରି ନାହିଁ, କରିବି ନାହିଁ ମଧ୍ୟ । ତାଙ୍କର ଭାବନା, ତାଙ୍କର ଉଦ୍ଦେଶ୍ୟ ଘେନି ସେ ରହନ୍ତୁ; ସେଥିରେ ମୋର ଯାଏ ଆସେ କଅଣ ?

ବୋଉ ନଲଟିଣ ନେଇ ଏ ଘରକୁ ଆସିଲା । ଡାକିଲା, ଗୀତା, ଉଠ୍ ମା ! ରାତି ପର ଡେରି ହେଉଛି । ଉଠ୍, ଗଣ୍ଡାଏ ଖାଇଦେଇ ଆ ଶୋଇବୁ । ମୁଁ ଉଠି ବସିଲି ।

ଏକୁଟିଆ ଶୋଇ କଅଣ ଏଣୁ ତେଣୁ ଭାବୁଛୁ ?

ପଚାରିଲା, ନିଦ ହୋଇନାହିଁ ?

ଠିଆ ହେଲି । ଗୋଟାଏ କିଛି କହିବାକୁ ତ ହେବ । କହିଲି, ନିଦ ହେଉ ନାହିଁ । ଭାବୁଥିଲି, ବାପାଙ୍କ କଥା । ବିଦେଶରେ ପଡ଼ିଛନ୍ତି, ଦେହ ଖରାପ,—

କହିଲା, ଠାକୁର ଅଛନ୍ତି ମା । ଗରିବର ସେହି ଏକା ସାହା ।

ଚିଠିରେ କ'ଣ ଲେଖା ହୋଇଛି ଜାଣିବାକୁ ବୋଉ ଉଦ୍‌ବିଗ୍ନ ହୋଇ ଉଠିଲା । ସକାଳୁ ମନେ ମନେ ଯେପରି କାହାକୁ ଖୋଜୁଥାଏ । ବାଡ଼ିଅଡ଼କୁ ଯାଇ ବାଡ଼ି ଉପରରୁ ଅନାଇଁ ଅଛେ । ଦାମଭାଇ ଆସିବେ ବୋଲି କହିଥିଲେ, କାଲେ ଆସିଥିବେ । ହତାଶ ହୋଇ ଫେରେ । ଦାଣ୍ଡ ଗୋହିରୀକୁ ଚୁହିଁ ଦେଇ ମନ ମାରି-ଫେରି ଆସେ ।

କଅଁଳ ଖରା ନୁଆଁଣିଆ ଚାଳଘରର ମଥାନ ଛୁଇଁ ଦୁଆରରୁ ଆସିଲା । କାକରଭିଜା ଗଛପତ୍ରରେ ସୁନେଲି ଖରାର ପରଶ ଲାଗି ଚକ୍ ଚକ୍ ଦିଶୁଥାଏ । କହିଲି, ବୋଉ, ଜଲ୍‌ଦି ଗାଧୋଇ ଯିବା ନାହିଁ କି ? ଖରା ପଡ଼ିଲାଣି, ଡେରି ହେବ ।

ବୋଉ ଅନ୍ୟମନସ୍କା ହୋଇ କହିଲା, ଆଜି କାହିଁକି ବଡ଼ ହେମାଳିଆ ଲାଗୁଛି । ଥଣ୍ଡା ବାଲିରେ ଗୋଡ଼ ତଳିପା କୋଳି ମାରିଯିବ । କୂଅ ପାଣି ଉଷୁମ ହୋଇଛି । ମୁଁ ଏଠି ଗାଧୋଇବ ।

ରାଧା ଯଦି ଆସି ଡାକେ ?

ମୋ କଥା ମୋ ତୁଣ୍ଡରେ ଅଛି, ବାହାର ବାଟେ ରାଧା ଆସି ପହଞ୍ଚିଲା ।

କହିଲି, କେତେ ଆଇମ ଲୋ, ତୋରି କଥା ମୋ ତୁଣ୍ଡରେ ଅଛି, ତୁ ଆସି ପହଞ୍ଚିଲୁ ।

ରାଧା କାହାର ଦୁଃଖରେ ନ ଥାଏ କି ସୁଖରେ ନ ଥାଏ । ନିଜର ଶ୍ରେଷ୍ଠ କୁଡ଼ିଆଟିରେ ସେ ତା'ର ପଡ଼ିଥାଏ । ପାଞ୍ଚଘରେ ସାତ ପାଇଟି କରେ, ବୋଲହାକ କରି ସମସ୍ତଙ୍କୁ ଭଜେଇ ରଖିଥାଏ । କେଉଁଦିନ କାହା ଘରେ ଖାଏ ତାର ଠିକଣା ନାହିଁ । ପଇସେ ଅଧେଲି ଯିଏ ଦିଏ ସେ ତାକୁ ସାଇତି ରଖେ । ପିଲାପିଚିକା କେହି ନାହାନ୍ତି । ଏଇ ଗାଁରେ ଜନ୍ମ, ଏଇ ଗାଁରେ ବାହା । ସମସ୍ତେ ମରିହଜି ଗଲେ । ଏକା ସେ ତାର ଜୀବ ଚଳାଇଛି । ପଇଁଚାଳିଶ ବର୍ଷ ହେଲା । ଦେଖିବାକୁ ସୁନ୍ଦର ନ ହେଲେ ବି କେହି କହିବ ନାହିଁ କୁତ୍ସିତ । ଦେହରେ ବଳ ଅଛି, କହନ୍ତି ଦୁଇଟା ମଇଁଷିର ବଳ ।

ସେ କହିଲା, ଆସ ସାନ୍ତାଣୀ, ଆସ ଦେଈ, ଗାଧୋଇ ଯିବ । କେତେ ମାଇପେ ନଈକୂଳ ଓସ୍ତମୂଳେ ଚାହିଁ ରହିଛନ୍ତି ।

ବୋଉ ମନା କଲା । ଗାମୁଛା ଖଣ୍ଡି ଧରି ମୁଁ ତା ସଙ୍ଗେ ବାହାରିଲି ।

ସତକୁ ସତ ଓସ୍ତମୂଳେ କେତେ ମାଇପେ, ବୁଢ଼ୀ, ବୋହୂ, ଝିଅ । ତାଙ୍କରି ସଙ୍ଗେ ମିଶି ନଈବାଲିକୁ ଗଲି । ଦୋଏ ବାଲି, ସେ ପାଖେ ଯାଇ ପାଣି ।

ବୋଉର କଥା ଲାଏ ପଡ଼ୁରହିଲା । ରାଧା ମନା କଲାରୁ ଅଷ୍ଟସ୍ଥି ହୋଇ କହିଲା, ଏଁ, ଅଲଗା ନାହିଁ ? ବଡ଼ିଲା ଝିଅଟାକୁ ଏକା ତୋ ସାଙ୍ଗେ ଗୁଡ଼ିଦେଲା ?

ଆପତ୍ତି ମାଇଲା ପରି ମତେ ଲାଗିଲା । ରାଧା କଥାକୁ ଚଳାଇ ନେଇ କହିଲା, ସେ କଣ ଗୁଡ଼ିଆଛନ୍ତି ଗୀତାକୁ ? ଶୁଣିଲେ, ତମେ ହେଉଛନା ଅସିଛ । ତମମାନଙ୍କଠୁଁ କଅଣ ଗୀତା ବୋଉ ବଡ଼ ? ଅଭ୍ କାହା ପ୍ରତିବାଦ ହେଲା ନାହିଁ । ନାକେ ସାବଧାନ ହେବାକୁ ମୁହଁରେ ଓଳଣା ଦେଇ ଅଳୁର ପାଖେ ପାଖେ ଚାଲିଲ ।

ଅରୁନ୍ଧତୀ ନଟେର ଦାଦାଙ୍କ ଝିଅ—ସମବୟସୀ । ପିଲାଦିନର ସାଙ୍ଗ । ବଲଟିଏ । ଦ ବର୍ଷ ହେବ ବାହା । ପୁଅଟିଏ ହୋଇ ଅଛିଟି । ଦେଇ ନେଇ ବାହା କରିଛନ୍ତି । ଭଲ ଘର, ଭଲ ବର ପାଇଛି ।

ଭୁନ ଭୁନ କରି ତା ସଙ୍ଗେ ଦ ଚାରି ପଦ କଥାଭାଷା ହେଉଛି, ବୟସ ବେଶୀ ନ ହେଲେ ବ ଅଭ ନେଖା ହେବ କଣେ, ଶୁଣେଇଁ କହିଲା, ଶିଖ୍ ନୋ ମା ଶିଖ, ଲୁଅ ଗୋରୁ ପାଇଛ ଅରୁଛି । କେତେ ନୂଆ କଥା ଜାଣି ଅସିଥିବ, ପଚାରି ସବୁ ବୁଝିନେ ।

ମୋର ପାଟି ବନ୍ଦ ହୋଇଗଲା । ଥଟ୍ଟା କଥା ହେଲେ ବ ମତେ କା ମୋର ହୃଦୟରେ ଛୁଟି ଚାଲିଗଲା । ଗାଁ ଚଣ୍ଡୋରେ ଘର କରି ଝିଅ ବୋହୂଙ୍କର ତୁଣ୍ଡ ଖୋଲିବାର ଅଧିକାର ନାହିଁ । ସିଏ ଯାହା କହୁ, ଶୁଣି ତୁନ ରହିବାକୁ ହେବ । ଅନୁତାପ କଲି । ବୋଉର କଥା ନ ମାନ ମୁଁ ଅସିଲି କାହିଁକି ?

ରାଧା କଅଣ ଭାବୁଥିଲା । ହଠାତ୍ କହି ଉଠିଲା, ଅଇଙ୍କ ମନରେ ଭାରି କଷ୍ଟ ଲୋ ଗୀତା, ତାଙ୍କଠୁଁ ନ ବୁଝି ଅରୁଠୁଁ ବୁଝୁଛୁ କଅଣ ? ଅରୁ ସିନା ଜଣକର କଥା କହିବ, ଗୋଟିଏ ଘାଟର ପାଣି ଚାଖିଛି, ଅଇ ତ ଅମର—

କଥାଟା ଠିକଣା ଜାଗାରେ ଅଧା ରଖିଦେଲା । ଅଉମାନେ ହସି ଉଠିଲେ । ଅଇ କଥାଟି ବାଁରେଇ ନେଲେ ।

ରାଧାକୁ ମନେ ମନେ ପ୍ରଶଂସା କଲି । ବାସୁ ଦାଦଙ୍କ ଝିଅ ରେଣୁ, ଖୁସିରେ ମତେ ଲୁଣ୍ଠାଇ ପକାଇ କହିଲା, ଦେଖିଲୁ କେମିତି ଜବତ୍ କଲା ଅଇକୁ ?

ମୁଁ ସାମାନ୍ୟ ହସିଲି । ହସିଲି ଭିନ୍ନ କାରଣରୁ । ରେଣୁଟା କାଲିକାର ପିଲା । ମୋଠାରୁ ଅଗରେ ଲଗିଲା । ତେରବର୍ଷ ଟପିଛି କି ନାହିଁ । ସେ ବ ରାଧା କଥାର ମର୍ମ ବୁଝିଲା । ମୁଁ ତୁନ ରହିଲି । ବେଶୀ କଥାବାର୍ତ୍ତା କଲିନାହିଁ ।

ଗାଧୁଆ ଘାଟରେ ମାଇପି ମହଲରେ କେତେ ବିଷୟରେ ଚର୍ଚ୍ଚା ହେଲା । ବାର ଘର ଗପ, ବାର ଘର କଥା । ମୁଁ କାନଡେରି ରହିଥାଏଁ । ମୋ କଥା ଲାଏ କଅଣ ପକାଇଲା କି ?

ବିମଳା ଭାଇଙ୍କ ସ୍ତ୍ରୀ, କାନ ଯାଏ ତାଙ୍କ ପାଟି ଚିରା । ତାଙ୍କର ଢମା ଢମା ଆଖିରେ ପଡ଼ିଗଲି ମୁଁ । ବାଳିଆ ମାଛ ପରି ପାଟି ପାକୁ ପାକୁ କରି, କଳାମୁହଁରେ ବଡ଼ ପାଟି ଧଳା ଦାନ୍ତ ଦେଖାଇ ମୋର ଆଡ଼କୁ କଣେଇ ଚାହିଁଲେ । ପାଖ ଆଇପିଠିର କାନ ପାଖରେ କହିଲେ, ଗୀତାବୋଉ ଖୁଡ଼ୀ ଗୁଢରେ ପଥର ଲଦି ଆତଯାତ ହେଉଛନ୍ତି । ଝିଅ, ଘିଅ । ଦେଖିଲୁ, ଗୀତା କଅଣ ଅଡ଼ିଆଡ଼ୀ ଝିଅ ପରି ଢଗୁଛି ? ଆଉ ଜଣକ ମୁହଁ ବୁଲାଇ ମୋ ଆଡ଼କୁ ଚାହିଁଲା । କିଛି କହିଲି ନାହିଁ ।

ସେ ପୁଣି କହିଲେ, କାହିଁକି ଆଉ ରଖି ବସିଛନ୍ତି କେଜାଣି ? ନାଁ ନନା, ଶୋ ନନା । ବାମନ ହୋଇ ଚନ୍ଦ୍ରକୁ ହାତ ବଢ଼ାଇଲେ କି ଲାଭ । ନିଜ ଶକ୍ତିକୁ ଚାହିଁ ମାଇଅ ମରୁଖ ଦେଖି ବୋଝ ଉଠାଇଲେ ସିନା ହୁଏ । ବେଳ ବୟସ କଣ ଅସୁଛି ଝିଅଠାର ?

ସେହି ନଈର ଅଥଳ ପାଣିରେ ବୁଡ଼ି ମରିବାକୁ ମନ ହେଲା । ଆଖିରୁ ମୋର ଲୁହ ଗଡ଼ି ପଡ଼ିଲା ।

ରୁକ୍ଷ ସ୍ୱରରେ ରାଧା କହିଲା, ଆଜି ଯଦି ତା ବୋଉ ଥାଆନ୍ତା ଲୋ, ତୋ ପାଟି ଦି ଫାଳ ଅନ୍ତର ଚିରି ଦେଇଥାନ୍ତା । ମନେ କରୁଛୁ, ସେ ଏକୁଟିଆ ଅସିଛି ବୋଲି ଯାହା ଇଚ୍ଛା ତାହା କହିଯିବୁ । ସେ କଥା ଭାବିବୁ ନାହିଁ । ଯେତିକି ଭଲ ସେତିକି ମନ୍ଦ । ଯଦି ପୁରାଣ ଖୋଲି ବସିବ ଏଇ ନଈରେ ବୁଡ଼ି ମରିବାକୁ ତୋର ବାର ସହିବ ନାହିଁ । ଭୁଲିଗଲୁ କାଟଲୋ, ବିମଳା ପରା ସାତଦିନ ଯାଏ ଘରେ ପଶି ନ ଥିଲା । କାହିଁକି ଠିକାଏ ମନେ କଲୁ ? ମନେ ପଡୁନାହିଁ ? ଜନ ଗାଁର ଜିଅ ଗୋହିରୀ ପାଖେ ଆଜି ବି ନିଶୂନ ଅନ୍ଧାର ରାତିରେ କଳା ପିଲାର କୁଆଁ କୁଆଁ ଶୁଣି ଦମ୍ଭିଲା ଲୋକର ଛାତି ଥରି ଉଠେ ।

ସମସ୍ତେ ରାଧା ଆଡ଼କୁ ଚାହିଁଲେ । ରାଧା ରାଗିଛି । ସେ ରାଗେ ନାହିଁ ସହଜରେ । ରାଗିଲେ ତାକୁ ତିନିପୁର ଅନ୍ଧାର ଦିଶେ । କଅଣ କହେ ତା'ର ବାଇସ ନହେ ନାହିଁ । କେହି କିଛି କହିଲେ ନାହିଁ । ବିମଳା ଭାଇଙ୍କ ସ୍ତ୍ରୀ ତୁନି ହୋଇ ରହିଲେ ।

ମୁଁ ଲୁଗା ପାଲଟି ନଈ କୂଳରେ ଠିଆହୋଇ ଭୟରେ ଗୋଠାଳୁଏଁ ଅଟୁଥାଏ । ମୋ ପାଖରେ ରେଣୁ ଓ ଅରୁ ଠିଆ ହୋଇଥାନ୍ତି ।

ଅରୁ କହିଲା, ଗୀତା ଅପା, ଆଗରେ ଯିବା ଚାଲ । ସେମାନେ ପଛରେ ଆସୁଥାନ୍ତୁ ।

ଆମେ ତିନିହେଁ ଚାଲି ଆସିଲୁଁ । ଖରା ଟାଣ ହୋଇ ଆସିଥାଏ ।

୧୦

କିଏ କଅଣ ଭାବୁଥାଏ କେଜାଣି, ମୁଁ ଭାବୁଥାଏ ମୋ ନିଜ ଦୁର୍ଭାଗ୍ୟର କଥା । ନବରଙ୍ଗ ଗାଁରେ ଏତେ ଝିଅ ଥିଲେ, ମୋ ପରି ଦଶହଣା କେହି ହୋଇନାହାନ୍ତି । ମୋଠୁଁ ସାନ ଝିଅମାନେ ପରଘରକୁ ଯାଇ ଭାଗ୍ୟ ଆଦର ସୁଖେ ଦୁଃଖେ ସଂସାର କଲେଣି । ମୋ ପରି ଦହଗଞ୍ଜିଆ ଜୀବନ କାହାର ଅଛି ?

ଅରୁନ୍ଧତୀ ମୋଠାରୁ ଦଶ ମାସ ସାନ । ଦୁଇ ବର୍ଷ ସଂସାର କରି ମନଖୁସିରେ ପୁଅଣୀ ହୋଇ ଅଛି । ନିରୁପମା ଗୋକୁଳଭାଇଙ୍କ ଝିଅ, ମୋଠାରୁ ସାନ୍ଦର । ଦଶ ବର୍ଷ ବୋହୂ ପଣିଆ କରି କୋଳରେ ଛଅ ମାସର ପୁଅ ଧରି ଅଛି । ଗାଁରେ ପାଞ୍ଚଟା ବୋହୂ ଆସିଲେଣି । ସେମାନେ ବୟସରେ ମୋଠୁଁ ସାନ ହେବେ ।

ଲୋକେ ମୋତେ ବାରକଥା କହିବେ, ନିନ୍ଦା କରିବେ, ଏଥିରେ ସନ୍ଦେହ କଅଣ ଅଛି ? କାହା ପାଟିରେ କିଏ ହାତ ଦେବ ? କିଏ କାଲେ କଅଣ କହିଦେବ, ସେହି ଲାଜରେ ଦୁଇବର୍ଷ ହେଲା କାହାରି ଘରକୁ ବୁଲି ଚାଲି ଯାଏ ନାହିଁ ।

ମନକୁ ମନ ବୁଝାଏଁ, ମୋର ବାହାଘର ତ ମୋର ହାତରେ ନାହିଁ । ଯେଉଁମାନଙ୍କ ହାତରେ ଅଛି ସେମାନେ କରିବେ କଅଣ ? ସବୁ ଚେଷ୍ଟା ଗୋଟାଏ ଆଡ଼େ, ଭାଗ୍ୟ ଗୋଟାଏ ଆଡ଼େ । ଲୋକେ କଅଣ ଏହି କଥା ବୁଝିପାରନ୍ତି ନାହିଁ ? ଦେଖାଇ ଶୁଣାଇଁ ଥଟ୍ଟା କରନ୍ତି, ପରିହାସ କରନ୍ତି । ମଦନ ଜେଠାଙ୍କ ପରି ଲୋକ, ସେଦିନ ଆମ ଘରକୁ ଆସି ଶୁଣାଇଁ ଶୁଣାଇଁ ବୋଉକୁ କହିଗଲେ, ଝିଅକୁ ଲେଖିଦିଅ ବୋହୂ, ଏଣିକି ଆଉ ଶୋଭା ପାଉନି । ଯେଉଁଠି ହେଲେ ଏଥର ମାଘରେ ନିମିତ୍ୟ ଉଠାଇ ଦେଉ । ଭଲମନ୍ଦ ବାଛିବାକୁ ବେଳ କଅଣ ଆଉ ଅଛି !

ଆଉ ଦିନେ, ନଟେଇ ଦାଦା ଆସି ବୋଉକୁ ଝିଙ୍ଗାସି ଗଲେ, ତମେ କଣ ଏକା ଝିଅ ଜନମ କରିନାହଁ । ଯେଉଁ ପାତ୍ରଗୁଡ଼ିକଙ୍କୁ ନାପସନ୍ଦ କରି କାଟିଦେଲ, ସେମାନେ ଓଠଥିବ ରହିବେ ? ଭଗବାନ ସେମାନଙ୍କ ପାଇଁ ତ ଝିଅ ଖଞ୍ଜିଛି ? ନା ନା, ଏ ସବୁ କଥା ଭଲ କରୁନା । ଥରେ ଭାବି ଦେଖ ।

ବୋଉ କହିଲା, ନଟେଇ, ଚୀତା ଟାଇ ବାଛୁରୀ ନୁହେଁ ଯେ ଯାହାର ପାଇଁ ଗୁହାଳରେ ବାନ୍ଧି ଦେଇ ଆସିବ । ତମର ତ ଝିଅ ଅଛି, କହିଲ, ଯେଉଁ ସବୁ ପାତ୍ର ଆସିଲେ, ତମ ଅଭୁକୁ ସେଠି ଦେଇଥାନ୍ତ ? ଠାକୁରେ ସିନା ଧନ ଦେଇ ନାହାନ୍ତି ନଟେଇ, ମନ ଦେଇଛନ୍ତି ସଭିଙ୍କୁ ।

ଆଉ ଦିନେ ବାସୁଦାଦା ଆସି ତେଜରେ କହିଲେ, ଶୁଣୁଛ ନୂଆବୋହୂ, ଏଇଟା ଭଲକଥା କରୁନାହଁ । ହାତରେ ଧନ ନାହିଁ ତ କେଉଁଠୁ ଦାଣ ପଗୃଣ ଆଣି ଗୀତାକୁ ଉଠାଇ ଦିଅ । ବାର ଗାଁରେ ନାଁ ପଡ଼ିବା ଭଲ ନୁହେଁ ।

ବୋଉ କହିଲା, ଯେଉଁମାନେ ନାଁ ପକାନ୍ତି ତାଙ୍କର ଝିଅ ଭଉଣୀ ନାହାନ୍ତି କି ?

ବୋଉର କଥା ଶୁଣିଲେ ମନରେ ସାହସ ଆସେ, ଦମ୍ଭ ଆସେ । ପରକ୍ଷଣରେ ମୁଣ୍ଡ ଗୋଳମାଳ ହୋଇଯାଏ । କେତେ ଜାଗାରୁ ଟିପଣା ଆସିଛି, ଟିପଣା ଫେରିଛି । କେଉଁଠି ଖାଇଙ୍ଗ ଦବା ନବା ପାଇଁ, କେଉଁଠି ବା ଦୋହବଙ୍କା ବର ବୋଲି ।

ଠାଏ ଦି ଠାଅର ବରପକ୍ଷ କଟକରୁ ଧାଇଁ ବସିଥିଲେ । ବାପା ମଙ୍ଗି ଯାଉଥିଲେ, ବୋଉ ଭାଙ୍ଗି ଦେଲା । ଗୋଟିଏ ପାତ୍ର ମିଶମିଶ କଳା । ବୋଉ ଜାଣେ, ମୁଁ କଳା ମଣିଷକୁ ନାକ ଟେକେ । ସେ କହିଲା, ଧନ ସମ୍ପତ୍ତିରୁ କଅଣ ମିଳିବ, ଝିଅ ଯଦି ମନ ଅଶାନ୍ତିରେ ଦିନ କାଟିବ ? ଆଉ ଜାଗାକୁ, ପାତ୍ର କୁଆଡ଼େ ସୁନ୍ଦର, ହେଲେ, ଦୋଏ ବୟସ । ମୋର ଦିଗୁଣ । ଗଣ୍ଡ ମୂର୍ଖ । ଘରେ କେହି ନାହାଁନ୍ତି ! ସେଠି ବି ଭାଙ୍ଗିଲା ।

ବେଳେ ବେଳେ ମୋ ଆଖି ଆଗରେ ଜଣଙ୍କର ରୂପ ଭାସି ଯାଏ । ସେ ଗରିବ, ବେଶୀ ପାଠ ପଢ଼ି ନାହାନ୍ତି । ତଥାପି ମୋ ମନ କେଜାଣି କାହିଁକି ତାଙ୍କରି ଆଡ଼କୁ ଢଳି ପଡ଼େ । ସୁନ୍ଦର, ସ୍ୱାସ୍ଥ୍ୟବାନ୍ ଯୁବକ । ଶାନ୍ତ, ଧୀର ! ହସ ହସ ମୁହଁ । ମିଠା କଥାରେ ଶୁଣିଲେ ଅଜଣା ମୋହ ଜାଗି ଉଠେ । ତାଙ୍କରି ସେବା କରିବାର ଅଧିକାର ଯଦି ଜୀବନରେ ପାଇ ପାରନ୍ତି ମୁଁ ଧନ୍ୟ ହୁଅନ୍ତି ।

ବାପା ବୋଉଙ୍କ ଆଖି ଏବେ ବି ଅର୍ଥ ଉପରେ । ତାଙ୍କୁ ଖିଆଲ ନାହିଁ । ସେ କାହିଁକି ଗରିବ ପିଲାଟିକୁ ଆଉ ଆଖିରେ ଗୁଣିବେ ? ମରିଯିବି ପଛେ କାହାରି ଆଗରେ ପାଟି ଖୋଲିବି ନାହିଁ । ଛି, ଝିଅ ଜନ୍ମ ପାଇ ବାହାଘର କଥାରେ ତୁଣ୍ଡ ଖୋଲିବାଠାରୁ ବଳି ଲାଜ କଥା ଆଉ କଅଣ ଅଛି ? ତାଙ୍କର ପୁଣି ବଡ଼ଭାଇ ଅଛନ୍ତି ।

ଭାଇ ଦିନେହେଁ ଆମ ଗାଁକୁ ଆସନ୍ତି । ବିମଳା ଭାଇଙ୍କ ବୋଉ ତାଙ୍କ ପିଉସୀ ଲେଖା । ଦୁଇବର୍ଷ ତଳେ ବିମଳା ବୋଉ ବଡ଼ମାଙ୍କର ମୃତ୍ୟୁଘରକୁ ଆସି ଆମ ଗାଁରେ ଦି ଚାରିଦିନ ରହିଥିଲେ । ସାନଭାଇ ଆସିଥିଲେ ଆମ ଘରକୁ ବୁଲି । ଦୁଇବର୍ଷ ତଳେ, ସଞ୍ଜବୁଡ଼େ ।

ସେଦିନଠୁଁ ଆମ ଗାଁକୁ ଯେବେ ସେ ଆସନ୍ତି, ଆମ ଘର ଆଡ଼େ ବୁଲି ଆସନ୍ତି । ବୋଉ ତାଙ୍କୁ ସୁଖ ପାଏ । ପୁତୁରା ଲେଖା କରେ । ବୋଉକୁ ସେ ଅପା ବୋଲି ଡାକନ୍ତି ।

ବନ୍ଧ ଉପରକୁ ଉଠିଲୁଁ । ଦେହର ଓଦା ଲୁଗା ଦାଉଣ୍ଟୁଖା ଦେଲାଣି । ରେଣୁ କହିଲା, ଗୀତା ଅପା, ଏଥର ତୁ ଘରକୁ ଯା, ଆମେ କେଣେ ଏ ବାଟେ ଯାଉଛୁ ।

କହିଲି, ହଉ ଯା ରେଣୁ, ଭୁଲିବୁ ନାହିଁ, ମନେ ରଖିଥିବୁ ।

:

୧୧

ଖଞ୍ଜା ଭିତରକୁ ଆସି ଦେଖିଲି, ପିଣ୍ଡା ଉପରେ ସପ ଧରା ହୋଇଛି । ଦାମ ଭାଇ ସେଇଠି ବସି କାଗଜ କଲମ ଧରି କଅଣ ଲେଖୁଛନ୍ତି । ବୋଉ ତାଙ୍କ ଆଗରେ ବସି ତନ୍ମୟ ହୋଇ ଚାହିଁ ରହିଛି । ମୁହଁ ପ୍ରଫୁଲ୍ଲ ଦେଖା ଯାଉଛି ।

ଘଟଣାଟି ବୁଝିନେଲି । କିନ୍ତୁ ନ ଜାଣିଲା ପରି ଚୋର ଚପି ଚପି ଘର ଭିତରକୁ ପଶି ଯାଉଥିଲି, ଦାମଭାଇ ମୁହଁ ଟେକି ଚାହିଁଲେ । ଲେଖା ବନ୍ଦକରି କହିଲେ, କି ଲୋ, ନଈରେ ପହଁରୁଥିଲୁ କି ?

ଉତ୍ତର ନ ଦେଇ ଘର ଭିତରକୁ ଗଲି ।

ଦାମଭାଇ କହିଲେ, ଚିଠି ଲେଖା ସରିଲା ଖୁଡ଼ୀ, ପଢ଼ି ଦେଉଛି ଶୁଣ ।

ପଢ଼ିଲେ—

—ତମ ଦେହ କଥା ଶୁଣି ଅତି ବ୍ୟସ୍ତ ଲାଗୁଛି । ଯଥାମତ ଔଷଧ ଖାଇବ । ଘରକୁ ଟଙ୍କା ନ ଦେଲେ ନାହିଁ ।

ଗୀତାର ଟିପଣା ପଠାଇଲି । ତମ ଚିଠିରୁ ଯାହା ବୁଝିଲି ପାଇଁଟି ମୋ ମନକୁ ପାଉଛି । ଗୀତାନାଖି ଏକା । ଯଦି ଦେବା ନେବା କଥା କେହି ଉଠାଏ, ଏକାଥରେ ନାସ୍ତି କରିବ ନାହିଁ । ଆମର ଘର, ଡିହ, ବାଡ଼ି ଅଛି । ବଖରାଟିଏ ଘର ପାଇଁ ଥାନ ରଖି ଆଉ ସବୁ ବିକିଦେବା—

ବୋଉ କହିଲା, ଚିଠିଟି ଆଜି ଯିବ କିପରି ?

ଦାମଭାଇ କହିଲେ, ଆଜି ଆମର ଲୋକ କଟକ ଯିବ । ତାଆରି ହାତରେ ପଠାଇ ଦେବ ।

ବୋଉ ତାଙ୍କ ସଙ୍ଗେ ଆହୁରି କେତେ କଅଣ କଥାଭାଷା ହେଲା । ମୁଁ ସେପଘରକୁ ଗଲି, ଶୁଣି ପାରିଲି ନାହିଁ ।

ମନରେ କେତେ ଭାବନା ଆସି ପଶିଲା । ଝିଅ ଜନ୍ମ କଲେ ଲୋକ କୁହୁଡ଼ି ପହଁରିବାକୁ ଆଶା କରେ । କଟକର ବଧୁବାବୁ ମାଷ୍ଟରଙ୍କ ପୁଅ ପ୍ରବୋଧ ବାବୁ, ଆଉ ନରସିଂଗାଁର ମୁଁ ! ଆକାଶ କଇଁଆ ଚଳିକା ମାଛ, ଯାହା ଏକାଠି ହେବାର ନୁହଁ । କେଉଁଠୁ କଅଣ ଶୁଣି ବାପା ହଇରାଣ ହେଉଛନ୍ତି । ଶେଷକୁ ହତାଶ ହେବେ । ମନ ଭାଙ୍ଗି ଯିବ ।

ବୋଉ ଆସି କହିଲା, ଗୀତା, ଜାଳଗୁଡ଼ା ଭୁସ୍ ଭୁସ୍ ଜଳୁଛି ।

ଦାମଭାଇ ରହସ୍ୟ କରି କହିଲେ, ଚୁଲି ଜଳାରେ କଅଣ ତାଅର ମନ ଅଛି ? ତାର ମନ ଧ୍ୟାନ ଅସି ଏଇ ଖଟିରେ ।

ନାଇଁରେ ପୁଅ, ବାହାଘର କଥା ପଡ଼ିଲେ ତା ମୁହଁ ଶୁଖିଯାଏ । ଦି ଅଖିରୁ ଗଳ ଗଳ ଲୁହ ଟପି ପଡ଼େ । ତାର ଇଚ୍ଛା ସବୁଦିନେ ସେ ମୋଅଣ୍ଟି ପାଖରେ ରହିବ, ପର ଘରକୁ ଯିବ ନାହିଁ ।

ଠିକଏ ରହି କହିଲା, ଗୀତା, ଯା ଭାଇକୁ ପାନ ଭାଙ୍ଗି ଦେଇ ଅସିବୁ ।

କହିଲି, ତୁ ଯା ।

ବୋଉ କହିଲା, ତୋ ହାତର ପାନଭଙ୍ଗା ତାକୁ ଭଲ ଲାଗେ । ଘିଣ ପକାଇଥିଲୁ ବୋଲି ଅଜି ସକାଳୁ ଉଠି ସେ ଅସିଛି । ତୋଠି ତାଅର କେତେ ଶରଧା ଦେଖ ।

କେଡ଼େ ନବୋଧ ମୋର ସ୍ନେହମୟୀ ବୋଉ ! ବାହାର ଦେଖି ସେ ସହଜରେ ଭୁଲିଯାଏ । ଦୁନିଅାଁରେ ସମସ୍ତଙ୍କ ଉପରେ ତାର ପୂର୍ଣ୍ଣବିଶ୍ବାସ । ବିଶେଷତଃ, ଦାମଭାଇଙ୍କୁ ସେ ପୁଅପରି ମଣେ, ବିଶ୍ବାସ କରେ । ଅତି ସରଳ ଅତି ନିର୍ମଳ ତାର ମନ ।

କହିଲି ପାଟି କରି, ମୋଠି ଦାମଭାଇଙ୍କର ଶରଧା ନୁହେ ବୋଉ, ଯେଉଁ ନୂଆବୋଉଙ୍କ ଘିଣ ଦେଇଥିଲି ତାଙ୍କଠି ଶରଧା ।

## ୧୨

ଏ ଘରକୁ ପାନ ଭାଙ୍ଗିବାକୁ ଅସିଲି । ଦାମଭାଇ ମୋ ମୁହଁକୁ ଚାହିଁ ହସି ହସି କହିଲେ, ତୁ ଅତି ଦୁଷ୍ଟ, ଗୀତା ।

ଉତ୍ତର ନ ଦେଇ ପାନ ଭାଙ୍ଗି ବସିଲି । ସେ ମୋର ଅଗରେ ବସି ମୋ ମୁହଁକୁ ଚାହିଁ ରହିଲେ । ଅଡ଼ୁଆ ଲାଗିଲା । କହିଲି, ଦାମଭାଇ, ତମ ଘରକୁ ଅନେକ ଦିନ ହେଲା ଯାଇ ନାହିଁ । ନୂଆବୋଉ ମୋ ଉପରେ ରାଗିଥିବେ ।

କହିଲେ, ସେ ଦିନେ ତୋ କଥା ପଚାରୁଥିଲେ ।

ମୋତେ ଲାଜ ମାଡ଼ିଲା । ଭାବିଲି, ମୋ କଥା ପଚାରୁଥିଲେ, ଦାମଭାଇ କଅଣ କହିଥିବେ ?

ମୋର କପାଳରେ ହାତ ବୁଲାଇ ସେ କହିଲେ, ବାଳି ଲାଗିଛି । କାହାକୁ ମୁଣ୍ଡିଅ ମାରୁଥିଲୁ କି ?

ବାଧା ନ ଦେଇ କହିଲି, ହଁ, ଠାକୁରଙ୍କୁ ।

ପ୍ରବୋଧ ପାଇଁ ?

ଭୁନ ଭୁନ କହିଦେଲି, ନା, ତମର ପାଇଁ !

ସେ ଅବାକାବା ହୋଇ ମୋ ମୁହଁକୁ ଚାହିଁଲେ । ବୋଉ ମାଠିଆଟି ଧରି ପାଣି ପାଇଁ ବାରିଆଡ଼କୁ ଗଲା ।

ଦାମଭାଇ ଭଙ୍ଗାସ୍ୱରରେ କହିଲେ, ପରିହାସ କରୁଛ ଗୀତା ?

କହିଲି, ନାହିଁ ।

ସେ ମୋର ହାତ ଧରି କହିଲେ, ସତ କହୁଛ ?

କହିଲି, ବରାବର ସତ କହି ଆସିଛି । ତମେ ଶୁଣି ନା, କି ଶୁଣୁ ନା । ଠାକୁରଙ୍କୁ ଜଣାଉଥିଲି, ମୋ ଦାମ ଭାଇଙ୍କ ଭଲ ମନ, ଭଲ ବୁଦ୍ଧି ଦିଅ । ସେ ମୋ ନୂଆବୋହୂକୁ ଭଲ ପାଆନ୍ତୁ । ତାଙ୍କ ଆଖି ଆଉ କେଉଁଠି ନ ପଡ଼ୁ ।

ପାନ ଦିଖଣ୍ଡି ତାଙ୍କ ହାତରେ ଦେଇ ଉଠି ଠିଆ ହେଲି । ସେ ମଧ୍ୟ ଉଠିଲେ । ଦୀର୍ଘଶ୍ୱାସ ଛାଡ଼ି କହିଲେ, ଗୀତା !

ତାଙ୍କର ସେହି ପଦକ ଡାକରେ କେତେ କଠୋରତା ଭରି ରହିଥିଲା । ମୋ ଛାତି ଥରି ଉଠିଲା ।

ସେ ସେମିତି ରୁକ୍ଷ ସ୍ୱରରେ କହିଲେ, ଗୀତା ! ମଣିଷର ମନରେ ଆଘାତ ଦେବା ଭଲ ନୁହେଁ । ତୁ ମୋତେ ଘୃଣା କରୁ କି ଭଲ ପାଉ କେବେ ହେଲେ କହିନୁ । ମୁଁ ମଧ୍ୟ ବୁଝିପାରି ନ ଥିଲି । ଅନ୍ଧପରି ତୋ ପଛେ ପଛେ ଗୋଡ଼ାଇ ଥିଲି । ଚାରିବର୍ଷ କଟିଲା । ପୂରା ଚାରୋଟି ବର୍ଷ । ତୋ ମୁହଁରୁ ସ୍ଥିର ଜବାବ୍ ନ ପାଇ ଅନ୍ୟଠି ବିବାହ କରିବାକୁ ମୁଁ ବାଧ୍ୟ ହେଲି । ବାପା ମୋ ଅନୁରୋଧ ରଖିଲେ ନାହିଁ । ତାଙ୍କର ଅବାଧ୍ୟ ହେବାକୁ ମୋର ସାହସ ହେଲା ନାହିଁ । ତୁ ଯଦି ଟାଣ ହୋଇଥାନ୍ତୁ ମତେ ସ୍ଥିର ଜବାବ ଦେଇଥାନ୍ତୁ, ମୁଁ କାହାରି ବାଧା ମାନି ନ ଥାନ୍ତି ।

କହିଲି, ଅନ୍ୟକୁ ବିବାହ କରିଛ, ସେଥିପାଇଁ ତୁମକୁ କେହି ଦୋଷ ଦେଉନାହିଁ । ପିଲାଦିନର ଖେଳ କୌତୁକ କଥା ଭୁଲି ନିଶ୍ଚିନ୍ତରେ ସୁଖ ଆନନ୍ଦରେ ସଂସାର କର । ମନରେ କୁତ୍ସିତ ଲାଳସା ରଖି ଭାଇର ରୂପ ଧରି ଆସି ଆଜି ବି ସମସ୍ତଙ୍କ ଆଖିରେ ଧୂଳି ପକାଇବାକୁ ଚେଷ୍ଟା କରୁଛ । ତୁମେ ବଡ଼ଲୋକର ପୁଅ, ମୁଁ ଗରିବର ଝିଅ । ତା ବୋଲି ତୁମେ ସପନରେ ବି କେବେ ମନେ କରିବ ନାହିଁ ଯେ ଗୀତା ତାର ଇହକାଳ ପରକାଳ ଭୁଲି ଦୁହିଁଙ୍କ ମୁହଁରେ କାଳି ବୋଳିବ । କୁଳ, ଗ୍ରାମ ଓ ସମାଜକୁ ଲାଜ ଅପମାନର ପଙ୍କରେ ଘାଣ୍ଟି ତାର ଏକମାତ୍ର ସମ୍ବଳ ମହତ୍ତ୍ୱକୁ ଅନ୍ଧପରି ତମରି ଗୋଡ଼ତଳେ ସମର୍ପି ଦେବ ।

କଥାଗୁଡ଼ା ତର ତର କରି କହିଦେଇ ପଦାକୁ ବାହାରି ଯାଉଥିଲି । ସେ ମୋର ହାତ ମୁଠାଇ ଧରି କହିଲେ, ଜାଣୁ ତ, ତୋର ଭବିଷ୍ୟତ ମୋରି ହାତରେ !

ହାତ ଛାଡ଼ିନେଇ କହିଲି, କାରଣ, କାହାରି ଭବିଷ୍ୟତ କାହାରି ହାତରେ ନାହିଁ । ଯାହାର ହାତରେ ଅଛି, ସେ ତମର ବଡ଼ପଣ କି ଧମକକୁ ଅପେକ୍ଷା କରି ବସି ନାହାନ୍ତି ।

ହାତ ଛାଡ଼ିନେଇ ସେଷ ଘରକୁ ପଶିଗଲି । ଦାମଭାଇ କହି ଉଠିଲେ, ଆଚ୍ଛା, ଦେଖିବା ରହ, କାହା ହାତରେ ଅଛି ।

ବାହାଅଡ଼ୁ ଶୁଣିଲି, ଦାମଭାଇ କହୁଛନ୍ତି, ଖୁଡ଼ୀ, ମୁଁ ଯାଉଛି । ଏଟି ଓ ଟିପଣୀ ନେଇ ଦାଦାଙ୍କ ପାଖକୁ ଆଜି ପଠାଇ ଦେବ ।

ଚାଲି ଭିତରକୁ ଜାଲ ଠେଲିଦେଇ ଆଖିରୁ ଲୁହ ପୋଛୁଥିଲି । ବୋଉ ଦୁଆରେ ଥାଇ ମୋତେ ଡାକିଲା । ମୁଁ ଜବାବ ଦେଲି, କଅଣ ବୋଉ ।

କହିଲା, ଆରେ, ରୋଷଘର ଧୂଆଁରେ ପଶିଛୁ କାହିଁକି ? ପଖାଳ ଗଣ୍ଡିଏ ବାଢ଼ି ଖାଇ ବସ୍ । ବେଳସଖିଠା ।

ଦାମଭାଇ କହିଲେ, ଗୀତା, ଆଜି ଆମ ଘରଆଡ଼େ ବୁଲିଯିବୁ ଲୋ ।

କହିଲି, ନୂଆବୋହୂଙ୍କ ଜନ୍ମଦିନ କି ?

ଉତ୍ତର ପାଇଲି ନାହିଁ ।

ଦାଣ୍ଡ କବାଟ ବାଟେ ଦାମଭାଇ ପଦାକୁ ବାହାରି ଗଲେ ।

## ୦୩

ଆର ଘରକୁ ଆସିଲି । ଝରକା ଖୋଲିଲି । ଖରା ପଡ଼ି ଘର ଭିତର ଉଜ୍ଜ୍ୱଳ ହେଲା । ଠଣା ଉପରୁ ପୁରୁଣା ଗପ ବହି ଆଣି ପଢ଼ି ବସିଲି । କେତେଥର ସେ ବହିଟି ପଢ଼ିଛି । ପଢ଼ିବାକୁ ଆଉ ମନ ହେଲା ନାହିଁ । ଦାମ ଭାଇଙ୍କର ଧମକ, ତୋର ଭବିଷ୍ୟ ମୋରି ହାତରେ, ଗୁଡ଼ରେଇ ଭୁରେଇ ମୋ ମନରେ ଘାଣ୍ଟି ଚକଟି ହେଲା ।

ମୋ ଭବିଷ୍ୟତ ତାଙ୍କ ହାତରେ ! କାହାର ଭବିଷ୍ୟତ୍ କିଏ ହାତରେ ରଖିପାରେ ? ତଥାପି, ସେ ଏପରି କହିଲେ କେଉଁ ଉଦ୍ଦେଶ୍ୟରେ ? ପ୍ରବୋଧ ବାବୁଙ୍କ ବିଷୟରେ ଯେଉଁ ସମ୍ବନ୍ଧ ପଡ଼ିଛି, ତାକୁ ସେ ଭାଙ୍ଗି ଦେବେ ? ସେ ଜାଣନ୍ତି, ମୁଁ କୌଣସି ବିଷୟରେ କାହାକୁ ଜିଦ୍ କହି ପାରିବି ନାହିଁ । ପ୍ରବୋଧ ବାବୁଙ୍କ ପ୍ରସଙ୍ଗ କିଛି ନୂଆ ନୁହେଁ । କେତେ ଏପରି ଆସିଛି, କେତେ ଟିପଣୀ ପଡ଼ିଛି, ସବୁ ଭାଙ୍ଗି ଯାଇଛି ।

ପୁଣି ଭାବିଲି, ମୋ ନାମରେ ଦୁର୍ନାମ ରଟାଇବେ ?

ଖରାପ ଲାଗିଲା । ଦୁର୍ନାମ ଯେ ଆମ ମାଇପି ଜାତିର କାଳ । ସତ ମିଛ କେହି ବୁଝନ୍ତି ନାହିଁ । ଦୁର୍ନାମ ଶୁଣିଲେ ବାହାଘର ପ୍ରସ୍ତାବ ଭାଙ୍ଗିଯାଏ । କେହି କାହାର କଣ୍ଠ ଦେଖି ନ ଥାଏ । ତଥାପି, ଦୁର୍ନାମ ଉଠେ, ବେଦୀ ଉପରୁ ବର ଫେରିଯାଏ । ଝିଅମାନେ ବାଛନ୍ଦ ପଡ଼ି ଯାଆନ୍ତି ।

ଏଇଥି ପାଇଁ କହନ୍ତି, ଝିଅ ବୋଝ ପଥର ବୋଝ । ଏଇଥି ପାଇଁ ଝିଅର ମା ସମସ୍ତଙ୍କ ପାଖରେ ମୁଣ୍ଡ ନୁଆଁଇ ଚାଲେ । ସତେ କି ଝିଅ ଜନ୍ମ କରିବା ଦୋଷ, ଯାହାର କ୍ଷମା ନାହିଁ ।

ଦାମୋଦରଙ୍କ ଧମକକୁ ଡରି, ତାଙ୍କୁ ପ୍ରଶ୍ରୟ ଦେବା ମୋ ପକ୍ଷରେ ଅସମ୍ଭବ । କୌଣସି ଝିଅ ପକ୍ଷରେ ଅସମ୍ଭବ । ଦୁର୍ନାମକୁ ଡରି ଲୋକ କୁକାର୍ଯ୍ୟ କୁସଙ୍ଗରୁ ଆଡ଼େଇ ରହେ ସିନା, ସେ ସବୁକୁ ପ୍ରଶ୍ରୟ ଦିଏ ନାହିଁ । ପ୍ରଶ୍ରୟ ଦେବା ଓଲମି ଛଡ଼ା ଆଉ କିଛି ନୁହେଁ ।

ମନରେ ଶକ୍ତି ଆସିଲା । ଯେଉଁ ଲୋକ ଏତେ ହୀନ, ଏତେ ସ୍ୱାର୍ଥପର, ତା ପାଖରୁ ଦୂରେଇ ରହିବା ଭଲ । ଧମକ୍ ଦେଇ ଯେ ପରଝିଅକୁ ନିଜର ପ୍ରବୃତ୍ତି ନିଆଁରେ ଆସ ଦେଇ ନିଜେ ବାହାଦୁରି ନେବାକୁ ଚାହେଁ ସେପରି ନିର୍ଲଜ ପାଖରୁ ଦୂରେଇ ରହିବା ଉଚିତ ।

ପିଲାଦିନେ ଅଜାଣତରେ ଭଲମନ୍ଦ ବୁଝିବା ଆଗରୁ କେବେ କିଏ କେଉଁଠି କିପରି ଟିକିଏ ଭୁଲ କରିଦିଏ । ସେଥିପାଇଁ ଅନ୍ୟମାନେ ଦାୟୀ । ବୟସ ହେଲେ, ଭଲ ମନ୍ଦ ବୁଝିବାର ଜ୍ଞାନ ଆସିଲେ ଅତୀତର କେଉଁ ଅସାବଧାନ ବେଳର ଭ୍ରମ ପାଇଁ ମଣିଷ ଅନୁତାପ କରେ । ଆଉ ଯେପରି ପଙ୍କକୁ ଗୋଡ଼ ନ ଯିବ ସେଥିପାଇଁ ସେ ସତର୍କ ହୁଏ । କେବେ ଟିକିଏ ଭୁଲ ହୋଇଥିଲା ବୋଲି ତାଆରି ଉପରେ ଜାଣି ଜାଣି କଏଣ ପୁଣି କାଦୁଅକୁ ଗୋଡ଼ ବଢ଼ାଇବ ?

ମନ ନାହିଁ ନାହିଁ କରି ଉଠିଲା । କଅଣ କି ମୋର ଭୁଲ ? ଗେଲ ଟିକିଏ କରିବାର ଆଗ୍ରହକୁ ପ୍ରଶ୍ରୟ ଦେଇ ତାଙ୍କର ଦେହକୁ ଆଉଜି ମୁହଁ ଦେଖାଇ ଥିଲି । ସେ ଆଲିଙ୍ଗନ କରିଥିଲେ । ଉତ୍ତେଜିତ ହୋଇ ମୋତେ ଗେଲ କରିଥିଲେ । ଏଇ ତ ? ଏଇଥିପାଇଁ ତାଙ୍କର ମନରେ ଆବିଲ ଧାରଣା ଧରି ସେ ରହନ୍ତୁ, ଦୂରେଇ ରହନ୍ତୁ । ସେ ବିବାହିତ । ତାଙ୍କର ସବୁ ସ୍ନେହ ସରାଗ ତାଙ୍କର ନବବଧୂ ଉପରେ ସେ ଅଜାଡ଼ି ଦେଲେ ନୁହେଁ ସୁଖୀ ହେବେ । ଲୁଚି ଲୁଚି ମୋ ପାଖରେ ତାଙ୍କ ନିର୍ଲଜ ପ୍ରେମ ପ୍ରକାଶ କରି ମୋର ସର୍ବନାଶ କରିବାର ତାଙ୍କର କୌଣସି ଅଧିକାର ନାହିଁ ।

ସ୍ଥିର କଲି, ଯିଏ ଯାହା ଭାବୁ, ଦାମୋଦରଙ୍କ ଆଗକୁ ଆଉ ଯିବି ନାହିଁ କି ତାଙ୍କୁ କଥା କହିବି ନାହିଁ । ସାନ୍ନିଧ୍ୟର ସୁଯୋଗ ନ ପାଇଲେ ବଳେ ସେ ଦୂରେଇ ରହିବେ ।

## ୧୪

ବୋଉ ଡାକିଲା, ଅଲୋ ଗୀତା, ଦେଖିଲୁ କିଏ ଆସିଛି ।

ବହି ଉପରୁ ଆଖି ଫେରାଇ ଚାହିଁଲି । ଗୋକୁଳ ଭାଇଙ୍କ ଝିଅ ନିରୁପମା ଓ ବାସୁ ଦାଦାଙ୍କ ଝିଅ ରେଣୁ ଆସିଛନ୍ତି । ରେଣୁର କୋଳରେ ଟିକି ପିଲାଟିଏ । ଉଠିଯାଇ ଦୁହିଁଙ୍କର ହାତ ଧରି ଟାଣିଲି । ନିରୁ ମୁହଁ ଲଦି କହିଲା, କାହିଁକି ବା ଏଡ଼େ ସୋହାଗ, ମୁଁ ତୋତେ ଦେଖିବାକୁ ଆସିଛି କି ? ମୋ ଆଈକୁ ଦେଖିବାକୁ ଆସିଛି ମ । ନେଇ ଯା ସେଇ ରେଣୁକୁ ।

ନିରୁ ପିଲାଦିନୁ ଅଭିମାନିନୀ । ସମ୍ପର୍କରେ ଝିଅଣ୍ଡି ସିନା, ସେ ମୋର ସମବୟସୀ । ମୋର ସେ ସାଙ୍ଗ । ପିଲାଦିନରୁ ବଡ଼ ହେବାଯାଏ, ସେ ଶାଶୁ ଘରକୁ ଯିବାଯାଏ ଆମେ ଏକାଠି ଖେଳିଛୁ, ଗପିଛୁ, କୁମାର ପୂନେଇଁ ଗୀତ ଶିଖିଛୁ ଓ ବୋଲିଛୁ ।

ମୁଁ କିଛି ନ କହି ତା'ର ହାତ ଧରି ଜୋରରେ ଟାଣି ଆଣିଲି । ପିଲାଦିନର ଧଡ଼ିଆ ଧେଡ଼ଙ୍ଗା ନିରୁ ତ ଆଜି ଆଉ ସେମିତି ନାହିଁ, ଦେହରେ ମାଂସ ଲାଗିଛି । ରଙ୍ଗ କେଡ଼େ ତେଜ ଦେଖା ଯାଉଛି । କେଡ଼େ ସୁନ୍ଦର ଦିଶୁଛି । ତାକୁ ଆଣି ପାଖରେ ବସାଇଲି । ରେଣୁ ଛୁଆଟିକୁ ଧରି ମୋ ପାଖରେ ବସିଲା । ମୋଟାମୋଟି ହୋଇ କେଡ଼େ ସୁନ୍ଦର ପୁଅ । ମୁହଁକୁ ଚାହିଁ କାତି କାତି ହୋଇ ହସୁଥାଏ । ଆନନ୍ଦରେ ମୋ ମନ ପୂରି ଉଠିଲା । ରେଣୁ କୋଳରୁ ପୁଅକୁ ନେଇ ଗେଲ କଲି । ପରିହାସ କରି କହିଲି, ଆଲୋ, ନିରୁ, ଏଇ ଅପୂର୍ବ କଣ୍ଢେଇଟିକୁ କେଉଁଠୁ ପାଇଲୁ ମ !

ନିରୁ କହିଲା, ତୋରି ପାଇଁ ଗଢ଼ିଛି ଲୋ ।

କହିଲି, ସତେ, ମୋରି ପାଇଁ ? ତେବେ ଆକୁ ଆଉ ତତେ ଦେବି ନାହିଁ ।

ପିଲାଟିକୁ କୋଳରେ ଯାକି ଧରିଲି । ନିରୁ ସଙ୍ଗେ କେତେବେଳଯାଏ କଥାଭାଷା ହେଲି । ସବୁ କଥା ମୋର ମନେ ନାହିଁ । ପ୍ରତିଦିନ ଜୀବନରେ କେତେ ଘଟଣା ଘଟିଯାଏ । କେତେଦିନ ଯାଏ ସେ ସବୁ ମନେ ରହେ, ପୁଣି ମନରୁ ପାଶୋରି ଯାଏ । କିନ୍ତୁ ଯେଉଁ ଘଟଣା ମଣିଷର ହୃଦୟ ଛୁଇଁଥାଏ, ମନରେ ଦୁଃଖର ଗହୀରଡ଼ା ଗାର ଟାଣି ଦେଇଥାଏ, ସେ ଘଟଣା ମନରୁ କେବେ ପୋଛି ହୋଇ ଯାଏ ନାହିଁ ।

ସେଦିନ ସେପରି ଗୋଟିଏ ଘଟଣା ଘଟିଥିଲା । ଅନ୍ୟମାନଙ୍କ ଆଖିରେ ଛୋଟ ହେଲେ ବି ମୋ ଆଖିରେ ସେ ଅତି ବଡ଼ ।

ପିଲାଟି ମୋ କୋଳରେ କାନ୍ଦି ଉଠିଲା । ମୁହଁକୁ ଏପାଖ ସେପାଖ କରି କଅଣ ଯେପରି ଖୋଜୁଥିଲା । ବୁଝିଲି, ତାକୁ ଭୋକ କଲାଣି, ମାଆର କ୍ଷୀର ଖାଇବାକୁ ସେ ଅସ୍ଥିର ହେଉଛି । ମୁଁ ଗୋଡ଼ ହଲାଇ ତାକୁ ଯେତେ ବୁଝାଇଲି ସେ ବୁଝିଲା ନାହିଁ । ମନ ଦୁଃଖରେ କହିଲି, ନରୁ, ପୁଅକୁ ଭୋକ କଲାଣି, ଟିକିଏ କ୍ଷୀର ଦେ ।

ସେ କହିଲା, ତୁ ଦେଉନୁ !

ମୋ ମୁହଁକୁ ଚାହିଁ ନରୁ ହସିଲା । ଲେଖାରେ ଝିଅଟି ହେଲେ ବି ପିଲାଦିନର ସଙ୍ଗିନୀ ତ । ତେଣୁ ଆଉ କିଛି ନ ଭାବି ତାର କଥାକୁ ନଶୁଣିଲା ଭଳି ମୁଁ ବି ହସି ହସି କହିଲି, ମୋ କ୍ଷୀର ସିନା ତୋ ପାଇଁ, ସେ କେମିତି ଖାଇବ, ନେ— ।

କାନ୍ଦୁଥିବା ପିଲାକୁ ତା କୋଳକୁ ବଢ଼ାଇ ଦେଲି । ସେ ନେଲା ନାହିଁ । କହିଲା, ନାଇଁ ନାଇଁ ତୁ ଦେ, ଦେଖିବା ସେ ଚୁପ ହେବ କି ନାହିଁ ।

କେଜାଣି କାହିଁକି ରେଣୁ ହସି ହସି ଗଡ଼ିଗଲା । ନରୁ ତାକୁ ଆଖି ଦେଖାଇଲା । ତା କଥାରେ ଯେ ଗୋଟାଏ ଉଦ୍ଦେଶ୍ୟ ଲୁଚି ରହିଥିଲା ମୁଁ ଏହା ବୁଝି ପାରିଲି ନାହିଁ । ଆଶ୍ଚର୍ଯ୍ୟ ହୋଇ ତାକୁ ଚାହିଁ ରହିଲି । ରେଣୁଟା ଉଦବେଗୀ । ନରୁର ଆଖି ଦେଖାକୁ ନ ମାନି ସେ କହିଲା, ବିମଳା ଭାଇ ସ୍ତ୍ରୀ ପରି କହୁଥିଲା, 'ତୋର ଭୁଅଟ୍ଟେ—

ନରୁ ତା ପାଟିରେ ହାତ ଚାପି ଧରି କହିଲା, ଚୋପ୍ ।

ରେଣୁ ଚୁପ ହୋଇ ଚୁପ ରହିଲା ।

କେତେ ଭାବନା କ୍ଷଣକରେ ମୋ ମୁଣ୍ଡରେ ଖେଳିଗଲା । ଦୁଇ ଆଖି ଭରିଗଲା ଲୁହରେ । କହିଲି, ମୋତେ ପରୀକ୍ଷା କରିବାକୁ ଆସିଥିଲୁ ନରୁ ? ଆଜିଯାଏ ତ ତୋର ଦେଖା ଦର୍ଶନ ନ ଥିଲା, ଆଜି କାହିଁକି ତୋର ସ୍ନେହ ଉଛୁଳି ପଡ଼ିଲା, ଏ ଘରେ ତୋର ପାଦ ପଡ଼ିଲା ଏବେ ମୁଁ ଜାଣିଲି ।

ନରୁ ଲାଜେଇ ହେଲା । କହିଲା, ନାଇଁ ଲୋ, ତୁ ଏଥିରୁ କଅଣ ପାଇବୁ ? ରେଣୁଟା ପିଲା ଝିଅ । ଗାଲ ଚିପିଲେ ଦୁଧ ବାହାରିବ । ତା କଥା ତୁ କାହିଁକି ଶୁଣୁଛୁ । ତୁ ପିଲାଦିନର ସାଙ୍ଗ ବୋଲି ପରିହାସ କରି କହିଲି ସିନା ।

ତା କଥାରେ କାନ ନ ଦେଇ କହିଲି, ପୁଅକୁ କ୍ଷୀର ତୁ ଦେ ନରୁ । ଆଉ ତୁ ତ ମୋର ପିଲାଦିନର ସାଙ୍ଗ ମୋରି ଝିଅଟି, ଝିଅଟିଏ ବଳି, ତୁଇ ନିଜେ ମୋତେ ପରୀକ୍ଷା କରି ଯା । ମୋର କ୍ଷୀର ତୁଇ ଟିକେ ଚାଖି ଯା । ତୋ ମନର ଶୋଷ ମରିବ । ବିମଳା ଭାଇର ଭାରିଯାକୁ ଯାଇ କହିବୁ । ସେ ତ ମୋର ଭାଉଜ । ତାଙ୍କ ଆଗରେ ମୁଁ ନଙ୍ଗଳା । ମୋର ଫୁଙ୍ଗୁଳା ଦେହ ସେ ସହସ୍ର ଥର ଦେଖିଥିବେ । ଉପକାରିଆ

ଭାଉଜଙ୍କୁ ମୋର ରାଣ ପକାଇ ନିଶ୍ଚେ ଥରେ କହିବୁ ଲୋ ନରୁ, ତାଙ୍କ ଭାଇମାନଙ୍କ ରାଣ, ମୋତେ ଦେଖିବାକୁ ଥରେ ସେ ଆସିବେ । କେଉଁଠୁ କଅଣ ଶୁଣି ଦାଣ୍ଡରେ ଦୁର୍ନାମ କରିବା ଆଗରୁ ଥରେ ସେ ବି ମୋତେ ପୁଛି ଯିବେ ।

କାନ୍ଦିଲା ପିଲାକୁ ତା କୋଳରେ ରଖିଲି । ନରୁର ମୁଣ୍ଡଟିକୁ ମୋ ଛାତି ଆଡ଼କୁ ନୁଆଇଁ ଆଣିଲି । ସେ ମୁଣ୍ଡ ଟାଣି ନେଇ କହିଲା, ଦୁନିଆଁରେ କାଏ କେତେ କଥା କହିବେ ଲୋ ଗୀତା, ସମସ୍ତଙ୍କୁ କଅଣ ତୁ ପରୀକ୍ଷା ଦେଇପାରିବୁ ? ନିଜେ ଭଲ ହେଲେ ନିଜ ଉପରେ ବିଶ୍ୱାସ ଥିଲେ ଦୁନିଆଁ ଲୋକଙ୍କ ହାସ ପରିହାସକୁ ହସି ଉଡ଼ାଇ ଦେବୁ । ତୋତେ ପରୀକ୍ଷା କରିବାକୁ ମୁଁ ଆସି ନ ଥିଲି ଲୋ ଗୀତା, ଆଖି ଛୁଇଁ ଶପଥ କରି କହୁଛି, ମୋ ଜୀବନାରୁ ଅଧିକ ମୋର ଏଇ ଝିଅ ଛୁଆକୁ କୋଳରେ ଧରି ମୁଁ କହୁଛି । ଦୁନିଆଁ ଲୋକଙ୍କର ଗୁହାରି ତୋତେ ଜଣାଇଁ ଦେବାକୁ ଆସିଥିଲି । ତୁ କଅଣ, ସେ କଥା କଅଣ ତୋର ପିଲାଦିନର ସାଙ୍ଗ ନରୁକୁ ଅଜଣା ଅଛି ? ତୁ ଛଳ କରିବୁ, ତୋ ମନରେ ଦୁଃଖ ହେବ, ଏହା ମୁଁ ଭାବି ପାରି ନ ଥିଲି । ତୋର ଗୋଡ଼ ଧରୁଛି ଗୀତା, ମୋତେ କ୍ଷମା କର ।

ନରୁର ଦୁଇ ଆଖିରୁ ଦୁଇଧାର ଲୁହ ଗଡ଼ି ଆସିଲା । ସେ ମୋର ଗୋଡ଼ ଧରିବାକୁ ନଇଁ ପଡ଼ନ୍ତେ ମୁଁ ତାର ମୁଣ୍ଡ ଧରି ଉଠାଇଲି । କହିଲି, ଥାଉ ନରୁ, ମୋର ଦୁର୍ଭାଗ୍ୟ ତୁମ ମନରେ କୌତୂହଳ ଆଣିଛି, ତୁମ ତୁଣ୍ଡରେ କଥା କୁହାଇଛି । ଏଥିପାଇଁ ମୁଁ କାହାରି କି ଦୋଷ ଦେଉନାହିଁ । କାହାରି ଉପରେ ମୋର ମାନ ଅଭିମାନ ନାହିଁ ।

ଆଖିରୁ ଲୁହ ପୋଛିଲି । ଆଜିଯାଏ ମନର ଗୋପନ କୋହକୁ ପୋଛି ପାରୁନାହିଁ ।

୧୫

ମାଇପି ଘର । ଅଭାବ ଅସୁବିଧା ପଡ଼ିଲେ କାହାକୁ କହିବାକୁ କେହି ନାହିଁ । ସେଥିପାଇଁ ଦୟା ପାଇ ରାଧା ବେଳେ ବେଳେ ଆସେ । ଆମର ଖବର ଅନ୍ତର ବୁଝେ । ଉପରେ ପଡ଼ି ପାଞ୍ଚ ପାଇଟି କରିଯାଏ ।

ଦିନେ ସେ ବୋଉ ଆଗରେ କହୁଥିଲା, ଶୁଣିଲଣି, ମହାନ ସାଆନ୍ତଙ୍କ ଘରେ ଅଶାନ୍ତି । ତାଙ୍କ ଘରକଥା ସିନା ପଦାକୁ ଫୁଟି ବାହାରେ ନାହିଁ, ହେଲେ ମତେ ତ କେଉଁ କଥା ଅଛପା ରହିବ ନାହିଁ । ବୋହୂଟା ସୁନ୍ଦର ହେଲେ କଅଣ ହେବ, ଗୁଣ କିମିଆ ଭଲ ନୁହେଁ । ଶାଶୂ ଶଶୁର ଅସନ୍ତୋଷ । ଦାମର ମନ ବି ସେତେ ମାନୁନାହିଁ ।

ତା କଥା ମୋ କାନରେ ପଡ଼ିଲା । ଖରାପ ଲାଗିଲା । ଏଡ଼େ ସୁନ୍ଦର ବୋହୂ, ତାଙ୍କର ଗୁଣ ପୁଣି ଖରାପ । କଥାଟା ଜାଣିବାକୁ ମନ ଛଟପଟ ହେଲା । ଆଗ୍ରହରେ ବାଉରେଇ ହୋଇ ପାନ ଦି ଖଣ୍ଡ ନେଇ ବୋଉ ପାଖକୁ ଗଲି । ମୋତେ ଦେଖି ରାଧା ଭିନ୍ନ ହେଲା । ଲାଜରା ହୋଇ ଘର ଭିତରକୁ ଆସି କବାଟ ଆଉଜାଇ ଦେଲି । କବାଟ ଫାଙ୍କରେ କାନ ଦେଇ ଶୁଣିଲି ।

ରାଧା ଥିଉଥିଉ ଯେତେ ଯାହା କହିଲା ସବୁ ଶୁଣିପାରିଲି ନାହିଁ । ଯେତିକି ଶୁଣିଲି ସେତିକିରୁ ବୁଝିଲି, ଦାମ ଭାଇର ସ୍ତ୍ରୀ ହାଉଡ଼ି, ସଉଣା ଟିକେ ନାହିଁ । ଶାଶୂ ଶଶୁରଙ୍କୁ ଜାଣନ୍ତି ମାନ୍ୟ କରିବାକୁ ନୁହେଁ, ଜାଣନ୍ତି ସେମାନଙ୍କର ସେବା କରିବାକୁ ନୁହେଁ, ଜଣାନାହିଁ । କଥା କଥାରେ ଅବଗୁଣ, ଖୁଣ୍ଟା । ଦାମଭାଇଙ୍କ ସଙ୍ଗେ କଳି କରେ । ଦିନଟିଏ ଶାନ୍ତିରେ କଟୁ ନାହିଁ । ସେ ବଡ଼ଘର ଝିଅ, ତେଣୁ ଏ ସବୁ ତ ଗୁଣ ଭିତରେ ଗଣା ହୁଏ ।

ରାଧା ଭ୍ରୂଲତା ଟେକି କହିଲା, ଦାମ ବୋଉ ସାହାଣୀ ବୁଢ଼ୀଙ୍କୁ କହିଲେ, ଟୋ ଝିଅ, ପୁଣି ଟେରେବ ବୋଲି ଗୀତା ତମ ମନକୁ ଆସିଲା ନାହିଁ । ମେ ଯଦି ଏ ଘରର ବୋହୂ ହୋଇ ଆସିଥାଆନ୍ତା କେଉଁ କଥାରେ କିଏ ତାକୁ ବାନ୍ଧି ଥାଆନ୍ତା କି ?

ବୋଉ କହିଲା, କପାଳ ଲୋ ରାଧା, ଯାହା ଭାଗ୍ୟ ଯେଉଁଠି ।

ମୋର ହୃଦୟର କେଉଁ ଅଜଣା କୋଣରେ ଆମୋଦ ଅନନ୍ଦର ଢେଉଟିଏ ଖେଳି ଯାଇଥିଲା । ତାଙ୍କ ଘରର ବୋହୂ ମୁଁ ନୁହେଁ, ହେବାର ତ ଆଉ ଆଶା ନାହିଁ, ତଥାପି ପରୋକ୍ଷରେ ମୋ ଗୁଣର ପ୍ରଶଂସା ଶୁଣି ସେମାନଙ୍କ ଘରର ଅଶାନ୍ତି କାହାଣୀ ଜାଣି ମୋତେ ଖୁସି ଲାଗିଥିଲା ।

ଦାମଭାଇ ଅନେକ ଦିନ ହେଲା ଆମ ଘରକୁ ଆସି ନାହାନ୍ତି । ମୋ ବାପାଙ୍କ ପାଖରୁ କୌଣସି ଚିଠିପତ୍ର ପାଇ ନାହୁଁ । ମୋର ମନେ ହେଲା ଯେପରି ଏହା ଭିତରେ ଦାମଭାଇଙ୍କର ସେଦିନର ଧମକର କିଛି ସମ୍ବନ୍ଧ ଅଛି । ହୁଏତ ବାପାଙ୍କ ପାଖକୁ ସେ ଆମର ଚିଠି ପଠାଇ ନାହାନ୍ତି କିମ୍ବା ଚିଠି ବଦଳାଇ ବୋଉ ନାମରେ ବନ୍ଧୁବାବୁଙ୍କ ଘର ସମ୍ବନ୍ଧ କଥା ମନାକରି ଲେଖି ଦେଇଛନ୍ତି । ତାଙ୍କ ପକ୍ଷରେ ଏତିକି କରିବା ଅସମ୍ଭବ ନୁହେଁ ।

ସେଦିନ ରାଧାର କଥାରୁ ତାଙ୍କ ଘରର ସବୁ ଖବର ବୁଝିଥିଲି । ଦାମ-ଭାଇଙ୍କର ସବୁ ଛଳନା, ଅପରାଧ, ଅଭଦ୍ରତା ସତ୍ତ୍ୱେ ତାଙ୍କପ୍ରତି ମନରେ ସହାନୁଭୂତି ଆସିଲା । ବାହା ହୋଇ ମଧ୍ୟ କାହିଁକି ସେ ମୋ ପ୍ରତି ଆକୃଷ୍ଟ, କାହିଁକି କରଛଡ଼ା ଦେବା ସତ୍ତ୍ୱେ ବାରମ୍ବାର ଆସି ମୋତେ ଖୁସି କରିବାକୁ ଚେଷ୍ଟା କରି ବିରକ୍ତ କରି ଯାଆନ୍ତି, ଏହାର କାରଣ ମୁଁ ବୁଝି ପାରିଲି । ଘରେ ଅଶାନ୍ତି, ସ୍ତ୍ରୀ କରି ହାତ ଧରି

ଘରକୁ ଅଣି ସ୍ତ୍ରୀଠାରୁ ଯେ ଯାହା ଆଶା କରନ୍ତି ପାଇ ନାହାନ୍ତି । ତାଙ୍କ ପକ୍ଷରେ ଅନ୍ୟ ସ୍ତ୍ରୀକୁ ଅନାଇବା ଆଶ୍ଚର୍ଯ୍ୟର କଥା ନୁହେଁ । ସେଥିପାଇଁ ସେ ମୋ ପାଖକୁ ଆସନ୍ତି । କେତେ କଥଣ କହିବାକୁ ମନ କରନ୍ତି । ମୁଁ ତାଙ୍କୁ କିଛି ଲୁହାଇ ଦିଏ ନାହିଁ । ହତାଶ ହୁଅନ୍ତି । ତାଙ୍କର ଆଶା ବିଫଳ ହେବାରୁ ସେ ମୋ ଉପରେ ପ୍ରତିଶୋଧ ନେବାକୁ ଅନ୍ୟ ଉପାୟ ପାଞ୍ଚିଛନ୍ତି ।

## ୧୭

ଅଳ୍ପର ଦୁଇଦିନ କଟିଗଲା ।

ବାପାଙ୍କ ପାଖରୁ ଦେଉରି ପାଇଲୁ ନାହିଁ । ସେଦିନ ଗାଧୋଇ ନେଉଛି ବେଳେ ପିଣ୍ଡାରେ ବସିଛି, ବୋଉ ମୋ ମୁଣ୍ଡ ବାନ୍ଧି ଦେଉଛି, ସେ ବିରକ୍ତ ହୋଇ କହିଲା, କେଡ଼େ ଅସଜାଡ଼ା ଲୋ ଗୀତା, ମୋର ତର ହୁଏ ନାହିଁ ସିନା, ନିଜ ହାତରେ ମୁଣ୍ଡ ବାନ୍ଧି ପାରୁନୁ ?

ନଈକୂଳଆ ପବନ ଥଣ୍ଡାଳିଆ ଲାଗୁଥାଏ । ଶୀତ ବେଶୀ ପକାଉଥାଏ । ବାଳ ଖୋଲି ବସିଥାଏଁ ବୋଉ ଆଗରେ । କିଏ ଜଣେ ଦାଣ୍ଡପାଖ ଜଞ୍ଜିର ଖଡ଼ ଖଡ଼ କରି ଡାକିଲେ, ଅପା, ଅପା ।

ଅତି ପରିଚିତ, ଅତି ଆପଣାର ସେ ସ୍ୱରଟି । ଅସମୟରେ ସେ କାହିଁକି ଆସିଛନ୍ତି ବୁଝିପାରିଲି ନାହିଁ । ଆଗ୍ରହ ହେଲା, ଉଠିଯାଇ କବାଟ ଖୋଲିବି । ଲାଜ ମାଡ଼ିଲା । ତୁନି ହୋଇ ବସି ରହିଲି ।

ପୁଣି ସେ ଡାକିଲେ ।

ବୋଉ ପଚାରିଲା, କିଏ କିଲୋ ଗୀତା ?

ମୁଁ ଜାଣେ, କିନ୍ତୁ ତୁଣ୍ଡରେ ତାଙ୍କର ନାମ ଉଚ୍ଚାରଣ କରିବାକୁ ଲାଜ ମାଡ଼ିଲା ।

ବୋଉ କବାଟ ଖୋଲିବାକୁ ଉଠିଗଲା ।

ପିଠି ଉପରେ ଅଳିଆ ବାଳ ଖୋଲା ହୋଇ ପଡ଼ିଥାଏ । ମୁଣ୍ଡ ଉପରକୁ ଲୁଗା କାନି ଟାଣି ତଳକୁ ଚାହିଁ ବସି ରହିଲି ।

ବୋଉ କବାଟ ଖୋଲିଲା । ମୁଁ କଣେଇ ଚାହିଁଲି । ଅମୂଲ୍ୟ ଝଙ୍କା ଭିତରକୁ ଆସିଲେ । ତଳେ ମୁଣ୍ଡ ଲଗାଇ ବୋଉକୁ ପ୍ରଣାମ କଲେ । ବୋଉ କବାଟ ବନ୍ଦ କରି ପଚାରିଲା, କେବେ ଆସିଛୁ ବାପ ?

ଅମୂଲ୍ୟ ମୋ ଆଡ଼କୁ ବଙ୍କେଇ ଚାହିଁ କହିଲେ, ଆଜି ।

ମୁଁ ପିଣ୍ଡା ଉପରେ ଠିଆ ହୋଇ ତାଙ୍କୁ ପ୍ରଣାମ କଲି । ସେ ମୁରୁକେଇ ହସିଲେ । କିଛି କହିଲେ ନାହିଁ । ମୋର ମନେ ହେଲା, ସେହି ହସରେ କେତେ ସ୍ନେହ ସହାଗ, କେତେ ହୃଦହୃଦତା ମୋହ ପୂର୍ଣ୍ଣ ହୋଇଥିଲା ।

ବୋଉ ଅଗିନା ଖଣ୍ଡେ ଆଣି କାନ୍ଥକୁ ଲଗାଇ ପାରିଦେଲା । ଦୁଇ ଛଅ ହାତ ଗୁଡ଼ି ସେ ମୋ ଆଗରେ ବସିଲେ । ବୋଉ ମୋ ମୁଣ୍ଡବନ୍ଧାରେ ଲାଗିଲା । ମୁଁ ଧୀରେ ଧୀରେ ଲୁଗାଟି ଟେକି ମୁହଁ ଘୋଡ଼ାଇ ବସିଲି ।

ଏଣୁ ତେଣୁ କେତେ କଥାଭାଷା ହେଲେ । ଆଜି ସେ ସବୁ ମୋର ମନେ ନାହିଁ । ବୋଉ ପଚାରିଲା, ଏ ବର୍ଷ ଅକୁର ବାହାଘର କରୁଛ ?

ଅଜୟ ତାଙ୍କର ବଡ଼ ଭାଇ ।

ସେ କହିଲେ, କେଉଁଠି ଠିକ୍ ହୋଇନାହିଁ । ବିମଳା ଭାଇଙ୍କି ସେହି କଥା ପଚାରିଥିଲି । ସେ କହିଲେ, ପାତ୍ର କୌଣସି ସ୍ଥାନରେ ଠିକଣା ହୋଇନାହିଁ । ବାହାଘର କରିବାକୁ ବସିଲେ କେତେ ଅପ୍ରୋଜନ ଲୋଡ଼ା । ଟଙ୍କା ପଇସା ଅଭାବ । ଜମି ଗୁଣ୍ଠମାଣ ଗୃଷ । ଏ ବର୍ଷ ବର୍ଷା ଅଭାବରୁ ଅଠଅଣା ଫସଲ ମିଳିନାହିଁ । ଏଇସବୁ କାରଣରୁ ଏ ବର୍ଷ ବାହାଘର ହେଲାପରି ଲାଗୁନାହିଁ । ଅକୁ ଭାଇଙ୍କର ତେଣିକି ମନଜ୍ଞାନ ନାହିଁ ।

ତାଙ୍କର କଥା ଶୁଣି ମନରେ ଦପ ଦପ ଜଳୁଥିବା ଆଶାର ଦୀପଟି ଥରି ଥରି ଲିଭିଗଲା ।

ବାରଦା ଆମ ଗାଁକୁ ବାଠ ଛଅ କୋଶ । ଗ୍ରେଟ ଗାଁଟି । ବାଦ ବିବାଦ, ଶତ୍ରୁତା, ସବୁବେଳେ ଗାଁଟାକୁ ଦୋହଲାଉଥାଏ ।

ଏ ଭାଇ ଦୁଇଟିଙ୍କର ଅବସ୍ଥା ଆଜି ଖରାପ ହୋଇଛି । ବାପ ଥାଉଁ ଥାଉଁ ମାଲିମକଦମାରେ ପୈତୃକ ସମ୍ପତ୍ତି ସବୁ ସରିଥିଲା । ଯେଉଁ ଦୁଇ ଗୁଣ୍ଠ ମାଣ ଥିଲା ସେଥିରେ କଷ୍ଟେ ମଷ୍ଟେ ଚଳନ୍ତି ।

ମୋର ମୁଣ୍ଡବନ୍ଧା ସରିଲା । ଧୀରେ ଧୀରେ ଘର ଭିତରକୁ ଅଣି ପାନ ଭାଙ୍ଗି ବସିଲି ।

ବୋଉ ପଚାରିଲା, ଅମୁ, ଅକୁ ସିନା ଘରଧନ୍ଦାରେ ବ୍ୟସ୍ତ ତୋର ତ କିଛି କାମ କରିବା ଦରକାର । ବସି ଖାଇଲେ ନଇବାଲି ସରିବ । ତୁ ପାଠସାଠ ପଢ଼ିଛୁ । କେଉଁଠି ଗୃକିରି ଚେଷ୍ଟା କରୁନୁ ।

ସେ କହିଲେ, ଆମପରି ଦରପାଠୁଆଙ୍କୁ ପଚାରୁଛି କିଏ ? ଆଜିକାଲି ଶିଳଶିଳପୁଅ ଗଗନେ ଉଡ଼ୁଛନ୍ତି । ତଥାପି, ଦିନେ ଦୁଇ ଦିନ ଭିତରେ ମୁଁ କଟକ ଯାଉଛି । କେଉଁଠି ରହିବାକୁ ଚେଷ୍ଟା କରିବ ।..

ପାନ ଦ', ଖଣ୍ଡି ଆଣି ଅମୁଭାଇଙ୍କ ହାତକୁ ବଢ଼ାଇ ଦେଲି । ପୁଣି ଘର ଭିତରକୁ ଆସିଲି ।

କିଏ ଦାଣ୍ଡ କବାଟ ଖଡ଼ ଖଡ଼ କଲା । ଅମୁଭାଇ କବାଟ ଖୋଲିଲେ । ପିଲାଟିଏ ଚିଠି ଖଣ୍ଡେ ଦେଇଗଲା । ପୋଷ୍ଟାପିଅନ ପଠାଇ ଦେଇଛି ।

୧୨

ଅତି ଆଗ୍ରହରେ ବୋଉ ଲଫାପା ଖୋଲିଲା । ଲଫାପା ଭିତରେ ମୋଟେ ଖଣ୍ଡିଏ ଚିଠି । ଅମୁଭାଇଙ୍କି ଦେଇ କହିଲା, ପଢ଼ିଲୁ ବାବୁ ।

ମୁଁ କବାଟ ପାଖକୁ ଘୁଞ୍ଚିଯାଇ କାନ ପାତିଲି ।

ଅମୁଭାଇ ପଢ଼ିବାକୁ ଆରମ୍ଭ କଲେ ।

—ମୋ ଦେହ ସେତେ ଭଲ ନାହିଁ । ଔଷଧ ଖାଉଛି । ତାଙ୍କର ପୁଅ ପ୍ରବୋଧ ବିଷୟରେ ଟିପଣୀ ଭଲ ବୁଝିଛି । ବିଧୁବାବୁଙ୍କ ଘରକୁ ମୁଁ ନିଜେ ଯାଇଥିଲି । ସେ କେତେ ମାନ୍ୟ କଲେ । ତାଙ୍କର ବଡ଼ଲୋକି ନାହିଁ । ଘରଦ୍ୱାର, ଭିତର ବାହାର ସବୁ ମୋତେ ଆଗ୍ରହରେ ଦେଖାଇଲେ । ତାଙ୍କର କୋଠାଘର ।

ପ୍ରବୋଧଟି ଅତି ସୁନ୍ଦର ପିଲା । ମୋତେ ଦେଖି ପ୍ରଣାମ କଲା । ଲାଜ ଲାଜ ହୋଇ ଯାଇକଲି ଧରି କୁଆଡ଼େ ଗୁଲିଗଲା । ତମର ସମୁଦୁଣୀ, କି ସୁନ୍ଦର ତାଙ୍କ ରୂପ, କଥା, ବ୍ୟବହାର । ଅତି ନମ୍ର । ଗୀତାର ଶାଶୁ ହେଲେ ଠିକ୍ ମା ଝିଅ ପରି ଦିଶିବେ । ମତେ କହିଲେ, ସମୁଦି, ମୁଁ ଆଉ କିଛି ଗୁହେଁ ନାହିଁ, ଖାଲି ବୋହୂଟି ମୋର ଲୋଡ଼ା । ସେ ହେବ ମୋ ଆଖିର ପିତୁଳା ।

କହିଲି, ମୁଁ ଅତି ଗରିବ । ଝିଅଟି ବ୍ୟତୀତ ଧନ ସମ୍ପତ୍ତି ଆଉ କିଛି ମୋର ନାହିଁ । ଜନ୍ମ ଦେଇଛି, ସ୍ନେହ ଆଦରରେ ବଢ଼ାଇଛି, ଗୁରି ଅକ୍ଷର ପଢ଼ାଇଛି । ପରଘରେ କିପରି ସଙ୍ଗୁଣରେ ଚଳିବ, ଶାଶୁ ଶଶୁରଙ୍କୁ ବାପ ମାଙ୍କଠୁଁ ଅଧିକ ମଣି ଭକ୍ତି କରିବ, ସେବା କରିବ, ସେ କଥା ଶିଖାଇଛି । ବେଶବାସ ଓ ଘରକାମ ସବୁ ସେ ଜାଣେ । ରୂପ, ଢଙ୍ଗକୁ ମୁଁ କାହିଁକି ପ୍ରଶଂସା କରିବ । ନିମିତ୍ୟ କରିବାକୁ ଆଗ୍ରହ ଥିଲେ ତମେ ସମୁଦୁଣୀ ନିଜେ ଦେଖ ।

ସ୍ଥିର ହେଲା, ତମେ ସବୁ ଧବଳେଶ୍ୱର ଆସିବ । ବିଧୁବାବୁ ତାଙ୍କ ସ୍ତ୍ରୀଙ୍କୁ ନେଇ ସେଠିକି ଯିବେ । ସେଇଠି ଦେଖା ସାକ୍ଷାତ ହେବ । ଯଦି ତାଙ୍କର ପସନ୍ଦ ହୁଏ, ଆଗ୍ରହ ହୁଏ, ସେ ଜବାବ୍ ଦେବେ । ସେ ଧନ ଦରବ ଗୁହାନ୍ତି ନାହିଁ, ଗୁହାନ୍ତି ମନମାଫି ବୋହୂଟିଏ । ରୂପଟି ପଛ, ଢଙ୍ଗଟି ଆଗ ।

ଧବଳେଶ୍ୱର କେବେ ଯିବାକୁ ହେବ, ମୁଁ ପରେ ଲେଖିବି । ମୋର ବେଳ ହେଲେ ମୁଁ ଯିବି, ନୋହିଲେ ମୁଁ ଲେଖିଲେ ଦାମ ଭାଇ ତୋକୁ ଝିଅକୁ ସାଙ୍ଗରେ ନେଇ

କଟକ ଆସିବ । ଯାହା ଧବଳେଶ୍ୱରଙ୍କର ଇଚ୍ଛା । ଆମେ ଚେଷ୍ଟା କରିବା, ଗୀତାର କପାଳରେ ଯାହା ଲେଖା ହୋଇଛି, ସେଇଆ ଫଳିବ ।

ଅମୁଭାଇ ଚିଠି ପଢ଼ି ସାରିଲେ । ଭାବିଥିଲି, ତାଙ୍କର ମୁହଁରେ ପରିବର୍ତ୍ତନର ଭାବ ଦେଖିବି, କିନ୍ତୁ କିଛି ଲକ୍ଷ୍ୟକରି ପାରିଲି ନାହିଁ । ସେ ଆନନ୍ଦିତ ହୋଇ କହିଲେ, ଭଗବାନଙ୍କର ଇଚ୍ଛା । ଗୀତା ପରି ସରଳ ସୁନ୍ଦର ଝିଅର ପିଲାକୁ ଭଗବାନ୍ ତାକୁ ତାର ଯୋଗ୍ୟ ଜାଗା ନିଶ୍ଚୟ ଦେବେ ।

ଦାମଭାଇଙ୍କ ପ୍ରତି ମନରେ ଯେଉଁ ସନ୍ଦେହ ପୋଷିଥିଲି ସେତକ ଉଭେଇ ଗଲା । ତାଙ୍କୁ ଯେଉଁ ନୀଚ ମନେ କରିଥିଲି ସେ ତାହା ନୁହନ୍ତି । ମତେ ଖୁସି ଲାଗିଲା । ଏଥର ସେ ଆସିଲେ ତାଙ୍କୁ ହସିକରି କଥା କହିବ ।

ଅମୁଭାଇ ଚାଲିଗଲେ । ମୁଁ ବୋଉ ପାଖକୁ ଆସି ଜାଣି ନ ଜାଣିଲା ପରି ପଚାରିଲି, ବାପାଙ୍କ ପାଖରୁ ପତ୍ର ଚିଠି ଆସିଛି ?

ବୋଉ କହିଲା, ହଁ, ଲେଖିଛନ୍ତି ଧବଳେଶ୍ୱର ଯିବାକୁ । ମୁଁ ଦିନେ ତାଙ୍କୁ କହିଥିଲି । ସେ ଚିଠି ଦେଲେ ଆମେ ଯାହା ସଙ୍ଗରେ ହେଲେ ଯିବା ।

ବେଶି ପଚାରିଲି ନାହିଁ । ସନ୍ଧ୍ୟାକନା ଧରି ସଳିତା ବଳି ବସିଲି । ମୁଣ୍ଡ ଭିତରେ କେତେ ଭାବନାର ସଂଘର୍ଷ ସୃଷ୍ଟି ହେଲା । ତିନୋଟି ରୂପ ଆଖି ଆଗରେ ଉଭା ହେଲା—ଦାମଭାଇ, ଅମୁଭାଇ, ଆଉ ଏ ନୂଆ ପ୍ରବୋଧ ବାବୁ । ଦାମଭାଇ ଆଜି ସଂସାରୀ । ତାଙ୍କ କଥା ମନରୁ ତଡ଼ି ଦେବାହିଁ ଭଲ । ଅମୁଭାଇ ବହୁତ ଦୂରରେ । ଅଜୁଭାଇ ବାହା ନ ହେବାଯାଏ ତାଙ୍କ ବାହା ପ୍ରଶ୍ନ ଉଠିବ ନାହିଁ ।

ପ୍ରବୋଧ ବାବୁ ! ରୂପରେଖ ଦେଖିନାହିଁ । ବାପାଙ୍କର ଚିଠିରୁ ଜାଣିଲି ଶୁଣିଲି, ସେ ସୁନ୍ଦର, ଗୁଣର, ଧନୀଘର ପୁଅ ।

ବଧୁବାବୁଙ୍କ ସ୍ତ୍ରୀ କଟକରେ କେତେ ସୁନ୍ଦରୀ ଝିଅ ଦେଖିଥିବେ । ତାଙ୍କ ଆଖିକି ଗାଉଁଲି ଝିଅଟା ଗୀତା କପରି ଦିଶିବ ? ଭଲ ଲୁଗା ଖଣ୍ଡେ ନାହିଁ । ଗହଣା ଗାଣ୍ଠି ନାହିଁ । ଆଖିରେ ଦି ଧାର କଜଳ ତାର ସମ୍ବଳ ।

ମୋର ରୂପ ଗୁଣର ପରୀକ୍ଷା ହେବ । ବଧୁବାବୁଙ୍କ ପୁଅ ପ୍ରବୋଧ ବାବୁ ତାଙ୍କର ରୂପଗୁଣର ପରୀକ୍ଷା ହେବନାହିଁ । ପୁଅହୋଇ ସେ ଜନ୍ମ ହୋଇଛନ୍ତି । ତେଣୁ ତାଙ୍କର ସବୁ ଭଲ ବୋଲି ଗ୍ରହଣ କରି ନେବାକୁ ହେବ । ପୁରୁଷପିଲାର ସବୁ ସୁନ୍ଦର । ଭଲ ମନ୍ଦ ଯାହାକଲେ ସବୁ କ୍ଷମଣୀୟ । ପୁରୁଷ ପିଲାର ମନ ଅଛି, ସାର ଅସାର କରିବାର ଅଧିକାର ଅଛି, ଆମର ନାହିଁ ।

ଅଭି ନଉଁଛଣା ଆମର ଝିଅ ଜନମ । ଜୀବନ, ମନ, ଅନ୍ତର ଉତ୍ତେଜନା ଧରି ଆତଯାତ ହେଉଥିଲେ ବି ଆମେ ନିର୍ଜୀବ କାଠ କଣ୍ଢେଇ । ଯେଉଁଠି ଥୋଇବ ସେଇଠି ରହିବୁ । ଯେପରି ନଚାଇବ ସେପରି ନାଚିବୁ । ହେଲାକୁ ଆମ ଜନମ, ବାଧାଦେଇ କହିବାକୁ ଆମର କ୍ଷମତା ନାହିଁ ।

୧୮

ଏହିପରି କେତେଦିନ ବିତିଗଲା । ବାପାଙ୍କ ପାଖରୁ ଧବଳେଶ୍ୱର ଯିବାକୁ ଚିଠି ଆସିଲା ନାହିଁ । ବୋଉ ଭାବନାରେ ପଡ଼ିଥାଏ । ବାପାଙ୍କର ଦେହପାଇଁ ଖବର ଜାଣିବାକୁ ଉଦ୍‌ବିଗ୍ନ ହୋଇ ରହିଥାଏ । ଧବଳେଶ୍ୱର ଯିବା କଥା ତୁଣ୍ଡରେ ଧରେନାହିଁ ।

ମୋ ମନରେ ତଥାପି ଆଶା ଥାଏ, ନିଶ୍ଚୟ ଧବଳେଶ୍ୱର ଯିବାକୁ ଚିଠି ଆସିବ । ସୁବିଧା ଅସୁବିଧା ଦେଖି ବାପା ଲେଖିବେ । ଆଗରୁ ଗ୍ଳାନିଆଁ ହେବା ଉଚିତ ନୁହେଁ । ମୁଁ ଏହି ଆଶାରେ ଅସ୍ଥିର ହୋଇ ବେଳ କାଟେ । ମୋର ପ୍ରୟେକ ଅଙ୍ଗ ସେଥିକରେ ନିଜକୁ ସଜାଇବାକୁ ଚେଷ୍ଟା କରେ । ଆଇନାରେ ନିଜର ରୂପ ଦେଖି ମନକୁ ହସେ, ପୁଣି ଗମ୍ଭୀର ହୁଏ । ଦେଖେ, ଆଉ କେତେ ଝିଅ ବୋହୂଙ୍କ ମୁହଁ ମନେ ପକାଇ ତୁଳନା କରେ । ମୋ ବିବେଚନାରେ ମୁଁ ହୁଏ ସବୁଠୁଁ ସୁନ୍ଦରୀ । ଖୁସି ହୁଏଁ । ବାପା ଲେଖିଥିଲେ, ବିଧୁବାବୁଙ୍କ ସ୍ତ୍ରୀ ସୁନ୍ଦରୀ । ତାଙ୍କର ଅଧିକ ସୁନ୍ଦର ଦିଶିବାର ଉପଯୁକ୍ତ ମୁଁ ? ମୋଠୁଁ ବଳି କେତେ ସୁନ୍ଦର ଝିଅ ତ କଟକରେ ଥିବେ, ସେ ଦେଖିଥିବେ ।

ସବୁଗ ମଉଳି ଯାଏ ।

ବୋଉ କହିଲା, ମଣିଷ ସିନା ହାଣ୍ଡି ଓଠାଉ ହୁଏ, ପଛରେ କାହାର ଅଦେଖା ହାତ ତାର ଭାଗ୍ୟର ଡୋରି ଧରି ଠିଆ ହୋଇଥାଏ ! ନିରୂପମା ଏବେ କେଉଁ ସୁନ୍ଦର । ରଙ୍ଗ କମ୍, ଦେହ ଛଡ଼ା । ନାକ ଶ୍ରେଷ୍ଠ । ସେ ପୁଣି ତାର ଶାଶୁଘର ଆଖିକି ଏତେ ସୁନ୍ଦର ଦିଶିଲା । ଧନ୍ୟ ଧନ୍ୟ ପ୍ରଶଂସାର ହୁରି ପଡ଼ିଗଲା । ଆଉ ଅରୁନ୍ଧତୀ, ନିଆଁଙ୍କ ଗାଁରେ ତା ପରି ରୂପର ଝିଅ ଜନ୍ମ ହୋଇ ନାହାନ୍ତି । ବୋଉ କେତେଥର କହେ । ଆଉମାନେ ବି କହନ୍ତି । କେଡ଼େ ବଡ଼ ଘରେ ସମ୍ବନ୍ଧ ଲାଗିଥିଲା । ସେମିତି ଟୋକାଏ ଆସିରେ କଟକ ଗଲେ ଝିଅ ଦେଖାଇବାକୁ । କାହାଘର ଭାଙ୍ଗିଗଲା । ପାହୀ କୁଆଡ଼େ ବରଘର ଆଖିକି ସୁନ୍ଦର ଦିଶିଲା ନାହିଁ । ସମସ୍ତେ ଆଶ୍ଚର୍ଯ୍ୟ ହେଲେ । ଅରୁନ୍ଧତୀର କିଅଣ ଅସୁନ୍ଦର କେହି କହି ପାରିଲେ ନାହିଁ । ତଥାପି, ସେ ହେଲା ଅସୁନ୍ଦର !

ଭାଗ୍ୟ !

ସତରେ ଏକା ଅଜଣା ଭଗବାନ, ଅଦେଖା ଭାଗ୍ୟ ଉପରେ ନିର୍ଭର କଲେ ମଣିଷର ମନରେ ସାନ୍ତ୍ୱନା ଆସେ । ସବୁ ଭୁଲ, ଭ୍ରାନ୍ତି, ଦୁଃଖ ଦୁର୍ଦ୍ଦଶା ଭାଗ୍ୟର ଫଳ ବୋଲି ଗ୍ରହଣ କଲେ ମଣିଷ ଶାନ୍ତିପାଏ ।

ଯେତେ ଯାହା ଭାବିଲେ ସୁଦ୍ଧା ମନ ମୋର ଦୋହଲି ଉଠେ । ଗୋଟାଏ ଅନାଗତ ଅନିଶ୍ଚିତ ପରୀକ୍ଷାର ଫଳ ପାଇଁ ଛାତିର ଦମ୍ଭ ଚହଲି ଯାଏ । ଧୈର୍ଯ୍ୟ ଉଛୁଣ୍ଠ ହୁଏ ।

୧୯

ଦିନେ ସଞ୍ଜବେଳେ ଦାମଭାଇ ଆମ ଘରକୁ ଆସିଲେ । ଅନ୍ଧାରିଆ ହୋଇଥାଏ ବାହାରେ । ଚୋପଘରେ ବୋଉ ଭାତ ରାନ୍ଧୁଛି । ତା ପାଖରେ ବସି ମୁଁ ପଢ଼ୁଥିବା ...ଛି । ସେ ଆସି ବୋଉ ପାଖରେ ବସିଲେ । ମୋ ଅଜାଙ୍କୁ ଥରଟିଏ ଖାଲି ଅନାଇଥିଲେ ।

ବୋଉ କହିଲା, ପୁଅରେ, ଛନଦନ ହେଲା କେମିତି ଖରାପ ଲାଗୁଛି, ମନ କେଉଁଠି ଲାଗୁନାହିଁ । ଚିଠି ଦେବେ ବୋଲି କହିଥିଲେ, ଅଜନା ଏ ଚିଠିପତ୍ର କି ପଇସା କଉଡ଼ିର ଦେଖା ନାହିଁ ।

ଦାମଭାଇ ଟିକିଏ ଭାବିଲେ । କହିଲେ, ଚିନ୍ତା କରିବାର କାରଣ ନାହିଁ ଖୁଡ଼ୀ, ଭୋଳିଦାଦ ଚୁଲିଖି ଲୋକ । ଗୀତାର ବାହାଘର ସ୍ଥିର କରିବାକୁ ସେ ବ୍ୟସ୍ତ ଥିବେ । ବୋଧହୁଏ ସେ ଚିଠି ଦେଇଛନ୍ତି । ଡାକଘରେ ପଡ଼ିଛି । କାଲି ଡାକପାଳି । ଅପେକ୍ଷା କର, ଯଦି ଚିଠି ନ ଆସିଥାଏ, ତମେ ସବୁ ଚିଠି ଲେଖି ଅମୁ ହାତରେ ଦେବ । କାଲି ଉପରବେଳା କଟକ ଯିବ ବୋଲି ଅମୁ କହୁଥିଲା । ସେ ନ ଗଲେ ମୁଁ ନିଜେ ଯିବି । ସବୁ ଖବର ବୁଝିଆସିବି ।

ବୋଉ ପଚାରିଲା, ଅମୁ କାମ ପାଇଲା କି ? ଏଇ ଗାଁରେ ଅଛି, ଟିକିଏ ଏଣେ ଆସିବାକୁ ତାକୁ ବେଳ ମିଳୁ ନାହିଁ ?

ଦାମଭାଇ କହିଲେ, ସେଇଟା ନିର୍ବୋଧ, ଅପଦାର୍ଥ, ଘାସକୁ ଟେଙ୍ଗି, ପାଲକୁ ଲମ୍ବ । ସେ କି କାମ କରିବ ? ବରଂ ଅଜୁଟି ମୂଲିଆ ହେଉ ମୂର୍ଖ ହେଉ, ପର ଦୁଃଖରେ ନ ଥାଏ, କି ସୁଖରେ ନ ଥାଏ । ଦିନ ସାରା କାମରେ ଲାଗିଥାଏ । ଅମୁ ଯେ ବାବୁ, ଏଣେ ପଚ୍ଛେ ପେଟ ହାକୁ ହାକୁ ଜଳୁଥାଉ । କଟକ ଯିବ ଯିବ ବୋଲି, ମୁଁ ଦେଖୁଛି କେତେ ଦିନ ଏ ଗାଁରେ ଅଲସୁଆ ହୋଇ ବସିଛି । ଆଜି ଟିକିଏ କଡ଼ା ପଦେ କହିବାକୁ ମନ ହେଉଛି, ପୁଣି ଭାବୁଛି, କି ଥାଏ ଆମର ?

ବୋଉ କହିଲା, ପୁରୁଷ ପିଲା ଉଦ୍‌ଯୋଗୀ ନ ହେଲେ ଚଳେଁ ଚୁଣା ।

ଦାମଭାଇଙ୍କ କଥା ଓ ବୋଉର ଟିପ୍‌ପଣୀ ମୋତେ ଖରାପ ଲାଗିଲା । ଅମୁଭାଇ ଭଲ ହେଉ ମନ୍ଦ ହେଉ କେବେ କାହା ଘରେ ମୁଠିଏ ଭାତ ପାଇଁ ହାତ ପତାଇ ନାହିଁ । ନିଜ ଦୁଃଖରେ ସେ ଅଛି । ସଂସାରରେ ମୁଣ୍ଡ ଟେକି ଠିଆ ହେବାକୁ ସେ ତାର ଉଦ୍ୟମ ବଳେ କରିବ । ଅନ୍ୟମାନଙ୍କର ଅଲଣା ସମାଲୋଚନାରେ ତାର ଲାଭ କି କ୍ଷତି ହେବ ନାହିଁ । ନିଜେ ଦାମ ଭାଇ କେଉଁ ଗୁଣରେ ତା' ଠାରୁ ବଡ଼ ? କି କାମ କରି କଅଣ ସେ ଉପାର୍ଜନ କରୁଛନ୍ତି ?

ମୋର ପଢ଼ିବା କଥା ସରିଥିଲା । ଆର ଘରକୁ ଉଠିଗଲି । ନିଲିଟେଣ ଡେଙ୍କି ବସିକି ପୁରୁଣା ଗପ ବହିଟି ପଢ଼ିବାକୁ ଚେଷ୍ଟା କଲି । ଦାମଭାଇ ବୋଉ ସଙ୍ଗେ

କଥାବାର୍ତ୍ତା ହୋଇ ଫେରି ଯାଉଥିଲେ । ମୁଁ ଘରେ ଥାଇ କହିଲି, ତମର ତ ଆଜିକାଲି ଦେଖା ଦର୍ଶନ ନାହିଁ, ଦାମଭାଇ !

ସେ ଘର ଭିତରକୁ ପଶିଆସି ଥଟ୍ଟାଳିଆ ସ୍ୱରରେ କହିଲେ, ସେଥିପାଇଁ ବୋଧହୁଏ ତୋତେ ଭାତ ରୁଚୁ ନ ଥିବ ।

ରାଗ ହେଲା । ତାଙ୍କ ମୁହଁକୁ ନ ଚାହିଁ କହିଲି, ଆମେ ଟହିବ, ଆମକୁ ଭାତ ମିଳେ ନାହିଁ । କୋଳଥ ମାଣ୍ଡିଆ ଆମର ଆହାର । ସେଇଆ ଆମକୁ ରୁଚେ ।

କହିଲେ, ଏବେ ଛିଣ୍ଡା ଘୁଷୀ ସ୍ୱପ୍ନ ଦେଖୁଥିବୁ ଲୋ । ହଉ, ଠାକୁରେ ତୋର ମଙ୍ଗଳ କରନ୍ତୁ । ଭଲରେ ନ ହେଲେ ମନ୍ଦରେ ବେଳେ ବେଳେ ତୋର ମନେ ପଡ଼ିବ । ଭୁଣ୍ଡରେ ନାମ ନ ଧରିଲେ ବି ମୁଣ୍ଡ ଭିତରୁ ତ ପୋଛି ପାରିବୁ ନାହିଁ ।

ଏତିକି କହି ସେ ବାହାରିଗଲେ । ପଛରୁ ଡାକି କହିଲି, ପାନ ନେଇଯାଅ ଦାମଭାଇ ।

ପଦାରୁ କହିଲେ, ଯାଚିବାକୁ ତୋର ମନ ହେଲା, ସେଇଥିରୁ ତୋର ସ୍ନେହ ଜଣାଗଲା ଯେ । ପାନ ନେଲେ ଅଧିକ ହେବ ନାହିଁ । କାମ ଅଛି, ଯାଉଛି ।

ସେ ଚାଲିଗଲେ ।

ମନକୁ ମନ କହିହେଲି, ନବୋଧ !

ହସ ମାଡ଼ିଲା । ଚାହିଁ ଚାହିଁ ସପନ ଦେଖିଲି, ବାପା ଖୁସି ହୋଇ ଚିଠି ଲେଖିଛନ୍ତି, ସବୁ ସ୍ଥିର ହୋଇଗଲା । ଦିନ ବାର ଠିକଣା ହେଲା । ପ୍ରବୋଧ ବାବୁ ଶିକ୍ଷିତ । କହିଲେ, ଦେବାନେବା କଥା ଉଠିବ ନାହିଁ । ଝିଅକୁ ଦେଖିବା ଲୋଡ଼ା ନାହିଁ । ତାଙ୍କ ବାପ ମା ମଙ୍ଗିଲେ । ଖୁସି ହେଲେ । ବାହାଘରର ଆୟୋଜନ କରିବାକୁ ଦିନେ ଦୁଇଦିନ ଭିତରେ ମୁଁ ଗାଆଁକୁ ଯାଉଛି—

ବୋଉର ଡାକରେ ମୋର ସପନ ଭାଙ୍ଗିଲା ।

## ୨୦

ପରଦିନ ସକାଳେ ଅମର ଭାଇ ଆସିଲେ । ବୋଉ ଘରଧନ୍ଦାରେ ବ୍ୟସ୍ତ ଥିଏ । କହିଲା, ଅମୁକୁ ପାନ ଦେ ଗୀତା । ମୁଁ ପାଣି ଦିଟା ଭିତରକୁ ନେଇ ଆସେ ।

ଅଧା ଆଡ଼ ହୋଇ ପିଣ୍ଡାରେ ବିଛଣା ପକାଇ ଦେଲି । କହିଲି, ବସନ୍ତୁ ।

ସେ ଆସି ବସିଲେ । ମୁଁ ପାନ ଭାଙ୍ଗି ଗୋଟିଏ କାଚ ଥାଳିଆରେ ପାଖରେ ରଖିଲି । ଉଠିଯାଇଁ ଘର ଭିତରେ ଦୁଆର ବନ୍ଧକୁ ଆଉଜି ଠିଆ ହେଲି । ଆଶା କରିଥିଲି, ସେ କିଛି ପଚାରିବେ । କିନ୍ତୁ ସେ କିଛି କହିଲେ ନାହିଁ । ତାଙ୍କୁ ସଙ୍କୋଚ

ଲାଗିଲା ପରା ! କେଜାଣି, ମୋ ସଙ୍ଗେ କଥାଭାଷା କରିବାକୁ ସେ ଅନୁଚିତ ମନେକଲେ ।

ମୁଁ ଟିକିଏ ଅପେକ୍ଷା କରି ବାରିଅଡ଼କୁ ଚାଲିଗଲି । ଦେଖିଲି, ବୋଉ ପାଣି ଆସିବା ବାହାନାରେ ଶାଗ ତୋଳୁଛି । ମତେ କିଛି ନ କହି ସେ ଭିତରକୁ ଆସିଲା । ମୁଁ ତା'ର ପଛେ ପଛେ ଆସିଲି । ବୋଉ ପଚାରିଲା, ଅମୁ, ତୁ ଆଜି କଟକ ଯାଉଛୁ ?

ସେ କହିଲେ, ଉପରଓଳି ଯିବି; ନୋହିଲେ କାଲି ସକାଳେ ।

ବୋଉ କହିଲା, ଯିବା ଆଗରୁ ଇଆଡ଼େ ଆସିବୁ । ତୋ ହାତରେ ତାଙ୍କ ପାଖକୁ ଖଣ୍ଡେ ଚିଠି ଦେବି । ସୁନା ପୁଅଟା ପରା ।

ଅମୁଭାଇ ସମ୍ମତି ଜଣାଇଲେ । ବୋଉ ସଙ୍ଗେ ଏଣୁ ତେଣୁ କେତେ କଥା ଭାଷା ହେଲେ । ବାହାଘର ବିଷୟ ପଡ଼ିଲା । ବାପାଙ୍କର ପତ୍ର, ପ୍ରବୋଧ ବାବୁଙ୍କ ସମ୍ବନ୍ଧ । ଅମୁଭାଇ ଖୁସି ହେଲେ । କହିଲେ, ଠାକୁରଙ୍କର ଦୟାଥିଲେ ଏ ସମ୍ବନ୍ଧ ନିଶ୍ଚୟ ସ୍ଥିର ହେବ । ଗୀତା ଯେପରି ସୁନ୍ଦରୀ, ଯେପରି ସୁଧୀର, ନମ୍ର, ନିଷ୍କପଟ, ସ୍ନେହୀ, ଭଗବାନ ତାକୁ ଉପଯୁକ୍ତ ପାତ୍ର ଅବଶ୍ୟ ଦେବେ ।

ସେ ଚାଲିଗଲେ । ବୋଉ କାମରେ ଲାଗିଲା ।

ମୁଁ ମୋର ପୁରୁଣା ଟପ ବହିଟି ଖୋଲି ଭାବି ବସିଲି; ଆହା, ଭାଇ ଦଉଟି ସଂସାରରେ ମୁଣ୍ଡ ଟେକି ବାଟ ଚାଲିବାକୁ ପରିଶ୍ରମ କରୁଛନ୍ତି । ଗରିବ ସେମାନେ; ଆମରି ପରି । ଗରିବର ଆଶା ଲତାଟି ଫଳ ଫଳିବା ଆଗରୁ ସୁଯୋଗ ଅଭାବରୁ ମାଟିରେ ଲୋଟେ । କେତେ କଅଣ କରିବାକୁ ସେ ଆଗ୍ରହୀ ହୁଏ । ହତାଶ ହୋଇ ଶୂନ୍ୟକୁ ଚାହେଁ । ଦୀର୍ଘଶ୍ୱାସ ଛାଡ଼ି ଥର ଥରକା ପଛକୁ ଫେରେ । ନୂଆ କାମରେ ହାତ ଦିଏ । ହେବ ବୋଲି ପରତେ ନ ଥାଏ ।

ଅମୁଭାଇଙ୍କର ସୁନ୍ଦର ଶାନ୍ତ ମୂର୍ତ୍ତିଟି ଆଖି ଆଗରେ ଠିଆହୁଏ, କିନ୍ତୁ ପୂର୍ବପରି ମନ ଟଳିପଡ଼େ ନାହିଁ । ଦୁଃଖର ସଂସାର, ସେହି ଦୁଃଖ ଜଞ୍ଜାଳରେ ଆଜୀବନ ଘାଣ୍ଟି ହେବାକୁ ମନ ଡାକେ ନାହିଁ, ଡର ମାଡ଼େ ।

## ୨୧

ବୋଉ ଆସି କହିଲା, ଝିଅ ଲୋ—କାଗଜ କଲମ ଆଣି ବାପା ପାଖକୁ ଖଣ୍ଡେ ଚିଠି ଲେଖେ । ଅମୁ ଆଜି କଟକ ଯାଉଛି, ତା ହାତରେ ଦେବା । କେତେଦିନ ହେଲା ବେଉରା ଦେଇ ନାହାନ୍ତି ।

ମୁଁ ଖଣ୍ଡେ କାଗଜ ଓ ଦୁଆତ କଲମ ଆଣିଲି । ବୋଉ ଡାକିଲା, ମୁଁ ଲେଖିଲି,—ଦେହର ହାଲଚାଲ ଲେଖିବ । ଚିଠି ନ ପାଇ ବ୍ୟସ୍ତରେ ଅଛୁ ।

ଧବଳେଶ୍ୱର ଯିବା କଥା କଅଣ ହେଲା ? ମୁଁ ଗୋଡ଼ ଟେକି ବସିଛି । ସେମାନଙ୍କଠାରୁ ବୁଝି ଲେଖିବ । ପଇସା କଉଡ଼ି ହାତରେ ନାହିଁ । ଯଦି ଦରମା ପାଇଥାଅ କିଛି ପଠାଇବ । ଧନକୁ ପାଇଁ ହେଲେ ନିଶ୍ଚୟ ଥରେ ଆସିବ । —

ଚିଠିଲେଖା ଅଧା ହୋଇଛି, ଦାଣ୍ଡ କବାଟ ଠେଲି ଅମୁଭାଇ ଫେରି ଆସିଲେ । ହାତରେ ଖଣ୍ଡେ ଲଫାପା ଧରିଛନ୍ତି । ମୁଁ ଚିଠି ଲେଖା ବନ୍ଦ କରି ମୁଣ୍ଡ ଉପରକୁ ଓଢ଼ଣା ଟାଣିଲି । ବୋଉ ପଚାରିଲା, କଅଣରେ ଅମୁ ?

ଅମୁଭାଇ କହିଲେ, ପୋଷ୍ଟପିଅନ୍ ସଙ୍ଗେ ବାଟରେ ଦେଖା ହେଲା । ସେ ଏ ଚିଠିଖଣ୍ଡି ଦେଇଛି । କହିଲା, ଛଅଦିନ ହେଲା ଆସିଲାଣି । କେହି ଲୋକ ଅସୁ ନ ଥିଲେ ବୋଲି ପଠାଇ ପାରି ନାହିଁ ।

ବୋଉର ଓଠରେ ହସ ଖେଳିଗଲା । ଚିଠିଖଣ୍ଡି ଆଗ୍ରହରେ ଅମୁଭାଇ ହାତରୁ ଆଣି ଏପାଖ ସେପାଖ ଓଲଟାଇ କଅଣ ଭାବିଲା । ବୋଧହୁଏ ଭାବିଲା, ମୋତେ ଦେବ କି ନାହିଁ । ଶେଷକୁ ଅମୁଭାଇ ହାତକୁ ବଢ଼ାଇ ଦେଇ କହିଲା, ପଢ଼ ତ ବାପ ।

ବୋଉର ଉଦ୍ଦେଶ୍ୟ ବୁଝିପାରିଲି । ଚିଠିରେ ନିଶ୍ଚୟ ମୋ ବାହାଘର କଥା ଲେଖାଥିବ ଜାଣି ମୋତେ ପଢ଼ିବାକୁ ଦେଲା ନାହିଁ । ମୁଁ ବି କିଛି ନ ଜାଣିଲା ପରି କବାଟ କଡ଼କୁ ଘୁଞ୍ଚି ଆସିଲି । ଉତ୍ତେଜନାରେ ଛାତିତଳ ଥରିବାକୁ ଲାଗିଲା । ବାପା ଚିଠି ଲେଖିଛନ୍ତି । ତାଙ୍କର ଆଶା ଠାକୁରେ ପୂରଣ କରିଛନ୍ତି ପରା ! ବଧୂବାବୁ ବୋହୂ କରିବାକୁ ମାଗିଲେ । ଗୀତାର ହେବ ବାହାଘର, ପ୍ରବୋଧ ବାବୁଙ୍କ ସଙ୍ଗରେ ! ବାପମାଙ୍କୁ ଛାଡ଼ି ସେ ଚାଲିଯିବ ପର ଘରକୁ ।

ଅବାଧ ଲୁହ ଦୁଇ ଆଖିରେ ପୂର୍ତ୍ତି ହେଲା ।

## ୨୨

ଅମୁଭାଇ ଚିଠି ପଢ଼ିବାକୁ ଆରମ୍ଭ କଲେ ।

—ଗୀତା, ତୁମର ବାପାଙ୍କ କହିବା ମତେ ଏ ଚିଠି ଲେଖୁଛି । ଆଜକୁ ଦିନ ଗୁରୁଦିନ ହେବ ଲୋକନାଥବାବୁଙ୍କ ଜର ହୋଇଥିଲା । ଦେହ ହାତ ଦରଜ ହୋଇଥିଲା । ସ୍କୁଲର ପିଲାମାନେ ଓ ମୁଁ ନିଜେ ଦିନରାତି ଜଗି ବସି ତାଙ୍କର ସେବା ଶୁଶ୍ରୂଷା କରୁଥିଲୁ । କାଲିଠାରୁ ସେ ବେହୋସ ହୋଇ ପଡ଼ିଲେ । ବାଧ ହୋଇ ତାଙ୍କୁ ଡାକ୍ତରଖାନାକୁ ନେଲୁ । ଆଜି ତାଙ୍କର ଦେହ ଟିକିଏ ଭଲ ଅଛି । ଜର ସାମାନ୍ୟ କମିଛି । ଜ୍ଞାନ ଫେରିଛି । ଡାକ୍ତରମାନଙ୍କ ମତରେ ଭୟର କାରଣ ନାହିଁ । ତମମାନଙ୍କୁ ଦେଖିବାକୁ ତାଙ୍କର ଇଚ୍ଛା । ତମେମାନେ ଶୀଘ୍ର ଆସିବ ।

ରହିବାର ଅସୁବିଧା ହେବନାହିଁ । ମୋ ବସା ପିଚ୍ଛିଣିସାହିରେ । ସେଇଠି ପହଞ୍ଚିଲେ ସୁବିଧା ହେବ ।—

ଚିଠି ଲେଖିଛନ୍ତି ରାଣୀହାଟ ସ୍କୁଲର ବଡ଼ ଶିକ୍ଷକ ଶରତ୍ ବାବୁ । ଅବିଶ୍ୱାସ କରିବାର କାରଣ ନାହିଁ ।

ବୋଉ ଥକ୍‌କା ହୋଇ ବସି ପଡ଼ିଲା, ଯେପରି କି ତା'ର ଦେହରେ ପ୍ରାଣ ନାହିଁ । ମୁଁ ଘର ଭିତରୁ ବାହାରି ଆସିଲି । ଅମୁଭାଇଙ୍କ ହାତରୁ ଚିଠିଖଣ୍ଡି ଝାଣି-ଆଣି ମନେ ମନେ ଆଉ ଥରେ ପଢ଼ିଲି । ଅବିଶ୍ୱାସର କଥା ନାହିଁ । ମୋତେ ଚାରିଆଡ଼ ଅନ୍ଧାର ଦିଶିଲା । ବାପା ମୋର ବେମାର ପଡ଼ିଛନ୍ତି ବିଦେଶରେ, ଡାକ୍ତରଖାନାରେ । ପାଖରେ ନିଜଲୋକ କେହି ନାହିଁ । ହତାଶ ଲାଗୁଥିବ । ପ୍ରାର୍ଥନା କଲି ଠାକୁରଙ୍କୁ, ବାପାଙ୍କୁ ମୋର ଆରୋଗ୍ୟ କରିଦିଅ ଭଗବାନ, ମୋର ଜୀବନ ମୁଁ ତମ ପାଖରେ ପାଣି ଛଡ଼ାଇ ଦେଉଛି । ମୋ ଆଖିରୁ ଗଳଗଳ ଲୁହ ଝରି ପଡ଼ିଲା ।

ଅମୁଭାଇ ସାନ୍ତ୍ୱନା ଦେବାକୁ କହିଲେ, ଡାକ୍ତରଖାନାରେ ରୋଗୀଙ୍କର ବିଶେଷ ଯତ୍ନ ନିଆଯାଏ । ଭୟର କାରଣ ନାହିଁ । ହୁଏତ ତାଙ୍କର ଦେହ ଭଲ ହୋଇ ଗଲାଣି ।

ବୋଉ ଦୀର୍ଘଶ୍ୱାସ ପକାଇ କହିଲା, ଚିନ୍ତା, ଚୁପ୍‌ହୁଁ ବସିଲେ ହେବ ନାହିଁ । ଯେତେ ଶୀଘ୍ର ସମ୍ଭବ କଟକ ଯିବାର ଯୋଗାଡ଼ କରିବା ଦରକାର ।

ସେ ଆଖିରୁ ଲୁହ ପୋଛିଲା ।

ମୁଁ କହିଲି, ହଁ ବୋଉ, ଯିଏ ଯେତେ ସେବା ଯତ୍ନ କଲେବି ପର । ଆପଣା ମଣିଷଙ୍କ ପରି ମନ ଜାଣି କରି ପାରିବେ ନାହିଁ । କଟକ ଯିବା କିପରି, କାହା ସଙ୍ଗରେ ?

ବୋଉ ମୋ କଥାର ଉତ୍ତର ନ ଦେଇ ଅମୁଭାଇଙ୍କୁ କହିଲା, ବାପ, ତୋର ତ ଯିବାର କଥା, ଆଜି ଆମ ସଙ୍ଗେ ଗଲେ ଭଲ ହୁଅନ୍ତା । କେତେ ଉପକାର କରନ୍ତୁରେ !

ଅମୁଭାଇ ଆପତ୍ତି କଲେ ନାହିଁ । କଟକ ଯିବା ସମ୍ବନ୍ଧରେ ଏଣୁ ତେଣୁ କଥାବାର୍ତ୍ତା କରି ସେ ଚାଲିଗଲେ । ବୋଉ ତାଙ୍କରି ହାତରେ ରାଧା ପାଖକୁ ଖବର ପଠାଇଲା ।

ଘଣ୍ଟାଏ ପରେ ରାଧା ଆସିଲା । ସେତେବେଳକୁ ବନ୍ଧାବନ୍ଧି କରି ଆମେ ପ୍ରସ୍ତୁତ ହୋଇ ସାରିଲୁଣି ।

ରାଧାକୁ ସବୁ କଥା ଶୁଣାଇଁ ବୋଉ କହିଲା, ଆମେ ଯିବାକୁ ସଜ ହୋଇଛୁ, ହାତରେ ପଇସା ନାହିଁ କି ଗାଡ଼ି ଠିକ୍ ହୋଇ ନାହିଁ । ତୋରି ଭରସାରେ ରହିଛୁ । ଏ ଥାଳ ପଟିକ ନେଇ ଯା, କେଉଁଠି ବନ୍ଧା ପକାଇ ଟଙ୍କା ଦି ଛଅଟା

ମୋତେ ଏଦ୍ଧି ଷଣ୍ଟି ଆଣିଦେ । ଧନାକୁ କହିଲେ ତାଆର ଗାଡ଼ିରେ କଟକ ଯିବୁ । ଯାହା ଭଡ଼ା ନେବାର ସେ ନେବ ।

ରାଧା କହିଲା, ଟଙ୍କା ଦି ତିନଟା ପାଇଁ ଥାଳି କଂସା ବନ୍ଧା ପକାଇବା ଦରକାର ନାହିଁ । ତମଠି କାହାର ଟଙ୍କା ବୁଡ଼ିଯିବ ନାହିଁ । ତମର ସେ ବିଷୟରେ ଚିନ୍ତା କରିବା ଦରକାର ନାହିଁ । ମୁଁ ସବୁ ଠିକଣା କରିଦେବି । ଯାଉଛି ।

ରାଧା ଚାଲିଗଲା ।

ଦିନ ଦୁଇଟା ବାଜିଲା । ରାଧା ସବୁ ବନ୍ଦୋବସ୍ତ କରି ଦେଇଥାଏ । କାଳେ ଫଳମୂଳ କିଣିବାକୁ ଦରକାର ହେବ ବୋଲି ହାତରେ ଅଧିକ ପାଞ୍ଚଟଙ୍କା ଦେଇ-ଥାଏ । ଧନା ବଳଦ ଗାଡ଼ି ନେଇ ଦାଣ୍ଡକୁ ଆସିଲା । ରାଧା କମା ଘର ଦେଇ ବୋଉ ଓ ମୁଁ ଗାଡ଼ିରେ ବସିଲୁ । ଅମୁଲ୍ୟ ମଧ୍ୟ ଆମର ପାଖରେ ବସିଲେ ।

ଗାଡ଼ି ଚାଲିଲା ।

ଆଖିରୁ ଲୁହ ପୋଛିଲି । କଟକ ଯାଉଛି, ଧବଳେଶ୍ୱର ମହାଦେବଙ୍କ ଦର୍ଶନ ପାଇଁ ନୁହେଁ, ବାପାଙ୍କ ରୋଗଶଯ୍ୟା ପାଖରେ ଜଗିବସି ତାଙ୍କର ସେବା କରିବାକୁ । ସୁଖରେ ନୁହେଁ, ଦୁଃଖରେ । ଦଇବ ମଣିଷର ସବୁ କଥାକୁ ଏମିତି ଓଲଟ ପାଲଟ କରିଦିଏ । ମନେ ମନେ ତାଙ୍କର ଉଦ୍ଦେଶ୍ୟରେ ପ୍ରଣାମ କଲି । ମାଗୁଣି କଲି, ମୋ ବାପାଙ୍କର ଦେହ ଭଲ କରିଦିଅ ଠାକୁରେ, ଏଇ ଗୋଟିଏ ମୋର ମାଗୁଣି । କଟକରେ ପହଞ୍ଚି ମୋ ବାପାଙ୍କର ହସ-ମୁହଁ ଦେଖେଁ । ତାଙ୍କର ଗେହ୍ଲାଳିଆ ଡାକ କାନରେ ଆଗ ବାଜୁ, ମା ଗୀତା—

୨୩

ଆମ ଗାଁରୁ କଟକ ଯିବାକୁ ଦୁଇଟି ବାଟ । ଗହୀର ମଝିରେ ଶଗଡ଼ ଗୁଳା ଧରି ଗଲେ ନଈ କୂଳଯାଏ ବାଟ ସାତକୋଶ । ଗାଁ ଗହୀର ପାରି ହୋଇ ଗୋପ ରାସ୍ତାରେ ଫୁଲନଖରା ବାଟେ ଗଲେ ନ କୋଶ ବାଟ ପଡ଼େ । ଗୋପ ରାସ୍ତା ବାଲିଆ । ଗାଡ଼ିବାଲା ଧନା ଗହୀର ବାଟରେ ଗାଡ଼ି ଚଳାଇଲା ।

ପହିଲି ପୁଷ । ବିଲରେ ଭଲ ହୋଇ ଶଗଡ଼ଗୁଳା ଛିଡ଼ି ନ ଥାଏ । ଗାଡ଼ି ପଡ଼ି ଉଠି ଧଡ଼ ଧଡ଼ ହୋଇ ଧୀରେ ଧୀରେ ଚାଲିଲା । ଦଣ୍ଡା ଧରିବାକୁ ଧନା ତା'ର ପୁତୁରା ଭଜନାକୁ ସାଙ୍ଗରେ ନେଇଥାଏ ।

ଗାଡ଼ିରେ ବସିଲା ବେଳରୁ ବୋଉ ଆଉ ପାଟି ଖୋଲିନାହିଁ । ମୁହଁଟି ତାର ଝାଉଁଳି ପଡ଼ିଥାଏ । କ'ଣ କେତେ ଭାବୁଥାଏ । ସାହସ କରି ମୁଁ ତାକୁ କହୁ

ପଚାରି ପାରିଲି ନାହିଁ । ମନେ ମନେ ପୁଣି ଠାକୁରଙ୍କୁ ଡାକୁଥାଏ, ଜଣାଣ କରୁଥାଏ । ହେ ଠାକୁରେ, ଆମେ ପହଞ୍ଚିଲା ବେଳକୁ ବାପା ମୋର ଭଲ ହୋଇ ଥାଉନ୍ତୁ ।

ଜର ଟିକିଏ ତ, କେତେ ଲୋକଙ୍କୁ ହୁଏ, ମୋତେ ବି କେତେଥର ହୋଇଛି, ଦିନେ ଦି ଦିନରେ ଭଲ ହୋଇଯାଏ । ସେମିତି ବାପାଙ୍କର ଜର ଭଲ ହୋଇ ଯାଇଥିବ । ଆମେ ସବୁ ବାପାଙ୍କ ସଙ୍ଗରେ ଘେନି ଫେରି ଆସିବୁ ।

ଫେରି ଆସିବୁ ? ଆଉ ଗୋଟିଏ ଭାବନା ମୁଣ୍ଡକୁ ଆସେ, ଧବଳେଶ୍ବର, ପ୍ରବୋଧ ବାବୁ । ଛି, ସେ ସବୁ କଥା ଏଇଠୁ କାହିଁକି ? ଜୋର୍ କରି ବାର-ମ୍ବାର୍ ଚିନ୍ତାକୁ ମନରୁ ତଡ଼ିଦିଏ ।

କାଲେ ·· ! ଭୟରେ ଥରି ଉଠେ ଛାତି । ଆକୁଳ ହୋଇ ଚାହେଁ ଥରେ ବୋଉ ମୁହଁକୁ, ଥରେ ଅମୁଭାଇଙ୍କ ମୁହଁକୁ । ମନରେ ସାହସ ଆସେ । ପୁଣି ଠାକୁରଙ୍କୁ ଡାକେ ମନେ ମନେ, ବାପା ମୋର ଭଲ ହୋଇଯାନ୍ତୁ ।

କେତେ ବାଟ ଚାଲି ଆସିଲୁଣି । ଗହ୍ନର, ତୋଠା, ମଶାଣି, ଗାଁ ଭିତର । ବାଟ ସରିବାକୁ ନାହିଁ । ଆହୁରି କେତେ ଦୂର ! ଗାଡ଼ିରେ ବସି ହଲି ହଲି ଦେହ ଅବଶ ଲାଗିଲା । ମୁଣ୍ଡ ଭିତରେ କେତେ ଚିନ୍ତା ଖେଳି ଯାଉଥିଲେ ମଧ୍ୟ ଆଖି ମାଡ଼ି ମାଡ଼ି ପଡ଼ିଲା । ପଚାରିଲି, ସାନା, କଟକ କେତେ ବାଟ ରହିଲା ? ସଞ୍ଜ ହେଲାଣି, ପହଞ୍ଚିବାକୁ ଆଉ କେତେ ଡେରି ଲାଗିବ ?

ସାନା ପଛ ଆଡ଼କୁ ମୁହଁ ବୁଲାଇ କହିଲା, ବାଟ ଆଉ ଛନି କୋଶ ଥିବ, ରାତି ଦି' ଘଡ଼ିକୁ ପହଞ୍ଚି ଯିବା ।

ସଞ୍ଜ ହେଲା । ଗହ୍ନର ମଝିରେ ଲାଲଟିଣ ଲଗାଇ ଭଜନା ଆଗକୁ ଗଲା । ଟାଡ଼ି ଏଥର ଆହୁରି ମଠେଇ ମଠେଇ ଚାଲିଲା । ତାଠିକୁ ଅଭିକ ବୋଉ ଆଖି ବୁଜି ଘୁମାଉ ଥାଏ କି କଅଣ ଭାବୁଥାଏ ମୁଁ ଜାଣେ ନାହିଁ ।

ଡାକିଲି, ବୋଉ, ବୋଉ ।

ବୋଉ ଜବାବ ଦେଲା ନାହିଁ । ଅମୁଭାଇ ଟେକା ପକାଇ ମୋ ପଛରେ ଟିକିଏ ଗୁଡ଼ିକରି ବସିଥାନ୍ତି । ତାଙ୍କୁ ଶୁଣାଇ କହିଲି, ବସି ବସି ଅଣ୍ଟା ବିନ୍ଧିଲାଣି ।

ସେ ମୋ ମନକଥା ବୁଝି ପାରିଲେ । ଗୋଟିଏ କଡ଼କୁ ଆଉଜି ଗଲେ । କହିଲେ, ତୁ ଟିକିଏ ଶୋଇପଡ଼ । କଟକ ପାଖ ହେଲେ ଉଠାଇ ଦେବି ।

ପ୍ରତିବାଦ ନ କରି ତାଙ୍କର ଆଡ଼କୁ ମୁଣ୍ଡ କରି ଶୋଇଲି । ଗାଡ଼ିରେ ହାତେ ବହଲର ପାଲଗୁଛା ପକା ହୋଇଥାଏ । ତା ଉପରେ ପଡ଼ିଥାଏ ହେଁସ । ଦେହକୁ କାଠ ନ ଥାଏ । ଲୁଗାପଟା ଭଲକରି ଘୋଡ଼ି ହୋଇ ପଡ଼ିଲି । ଜାଣେ ନା କେତେବେଳେ ନିଦ ହୋଇଗଲା ।

ଦେହ ଶୋଇ ପଡ଼ିଲେ ବି ମନ ସହଜରେ ଶୁଏ ନାହିଁ । ସୁଖ ଦୁଃଖର କେତେ ସପନପୁରୀରେ ବୁଲେ । କଅଣ ସପନ ଦେଖିଥିଲି ମୋର ମନେ ନାହିଁ । ଗାଡ଼ି ଚୋଟାଏ ଖାଲରେ ପଡ଼ିଲା । ଓଲଟିଲା ପରି ହେଲା । ଚମକି ପଡ଼ିଲି । ନିଦ ଭାଙ୍ଗି ଗଲା । ଜାଣିଲି, ମୋ ମୁଣ୍ଡ କାହାର ଜଙ୍ଘ ଉପରେ । ଧୀରେ ଧୀରେ ଆଖି ଫିଟାଇଲି । ଗାଡ଼ି ଭିତର ଅନ୍ଧାର । ବୁଝିଲି, ଅମୁଭାଇ ଗୋଡ଼ ଲମ୍ବାଇ ବସିଛନ୍ତି, ଆଉ ମୁଁ, ଛିଃ !

ଉଠି ବସିଲି । କାହାକୁ କିଛି କହିଲି ନାହିଁ । ମନକୁ ମନ ଲାଜ ହେଲି । ଭାବିଲି, ଅମୁଭାଇ କଅଣ କହିବେ । କାହିଁ, ମୁହଁ ଖୋଲିଲେ ନାହିଁ ତ ! ବୋଧ ହୁଏ ସେ ବି ଘୁମାଉ ଥାଆନ୍ତି । ମନ ହେଲା ପୁଣି ଥରେ ତାଙ୍କର ଜଙ୍ଘ ଉପରେ ମୁଣ୍ଡ ଦେଇ ଶୋଇ ପଡ଼ିବି । କିନ୍ତୁ କାଳେ ସେ ଚେଇଁଥିବେ, କାଳେ କଅଣ ଭାବିବେ ?

ଦାଦା କହିଲା, ଦେଖିରେ ଭଜି, ନଈ ସେପାଖରୁ କଟକର ଆଲୁଅ କେମିତି ସୁନ୍ଦର ଦିଶୁଛି ।

ମୁଁ ଡାକିଲି, ଅମୁଭାଇ, କଟକ ପାଖ ହେଲା, ଶୋଇଛ କି ?

ଅମୁଭାଇ ଜବାବ ଦେଲେ ସଙ୍ଗେ ସଙ୍ଗେ, ନା ।

ସେଇଥିକରେ ମୁଁ ଭୁନ ହେଲି । ଶୋଇ ନାହାନ୍ତି ? ଶୋଇ ନ ଥିଲେ ? ତେବେ, ତେବେ କେମିତି ମୋର ମୁଣ୍ଡଟା ତାଙ୍କର ଜଙ୍ଘ ଉପରକୁ ଗଲା ? ସେ କଅଣ— । ଉହୁଁ, ମୁଁ କଅଣ ଆଉ ନିଦ ବାଉଳାରେ—କଅଣ ସେ ଭାବିଥିବେ ? ଭାଗ୍ୟକୁ ଗାଡ଼ି ଭିତର ଅନ୍ଧାର ହୋଇଛି । ନୋହିଲେ ବୋଉ ଦେଖି ଥାନ୍ତା ।

ଏମିତି କେତେ ଭାବୁଛି, କାଠଯୋଡ଼ି ନଈ ଭିତରକୁ ଗାଡ଼ି ଗଡ଼ିଲା । ସମସ୍ତେ ଆଗକୁ ଝୁଙ୍କି ପଡ଼ିଲେ । ତାଟିକୁ ଧରିଲି । ବୋଉ କହିଲା, ଗୀତା, ସିଧା ହୋଇ ବସ୍, ଶୁଅନା । କଟକ ଆସି ହେଲା ।

କହିଲି, ମୁଁ ଶୋଇଛି କି ? କଥା ଅଧା ରହିଗଲା ।

ଅମୁଭାଇ କହିଲେ, ବଳଦ ଗାଡ଼ି, ଗହ୍ମାର ବାଟ । ସେଥିରେ କି ନିଦ ହେବ ?

ଭାବିଲି, ତେବେ ସେ ଜାଣନ୍ତି, ମୁଁ ବି ଶୋଇନାହିଁ । କେଜାଣି, ମୋତେ ଭୁଲାଇ କରି କହିଛନ୍ତି । ଅମୁଭାଇ ଯେତେବେଳ ଯାଏ ଆମ ପାଖରେ ରହିଲେ, ମୁଁ ଆଉ ମୁହଁ ଖୋଲି ନାହିଁ ।

ଗାଡ଼ ପିଚିଶି ସାହିରେ ପହଞ୍ଚିଲା । ଅମୁଭାଇ ତଳକୁ ଓହ୍ଲାଇ ପଚରାପଚରି କରି ଶରତ୍‌ବାବୁଙ୍କ ବସା ଠିକଣା କଲେ । ଗଲି ରାସ୍ତାଟି ବଙ୍କେଇ ବଙ୍କେଇ ସାହି ଭିତରକୁ ପଶିଛି । ରାସ୍ତା କଡ଼ରେ ଗୋଟିଏ ଛୋଟ ନୁଆଁଣିଆ ଚାଳ ଘର । ସେଇ ଘରଟି ଶରତ୍ ବାବୁଙ୍କର ।

ଆମେ ସବୁ ରାସ୍ତା ଉପରେ ଗାଡ଼ି ଭିତରେ ଥାଉଁ । ଅମୁଭାଇ ଶରତ୍‌ବାବୁଙ୍କୁ ଡାକିଲେ । କବାଟ ଖୋଲି ବାପାଙ୍କ ବୟସର ଜଣେ ଭଦ୍ରଲୋକ ହାତରେ ନଳଟଣ ଧରି ପଦାକୁ ଅସିଲେ । ଉଦ୍‌ବଗ୍ନ ହୋଇ ବୋଉ ଓ ମୁଁ ତାଙ୍କୁ ଚାହିଁ ରହିଲୁ ।

ଅମୁଭାଇ ପ୍ରଣାମ କରି କହିଲେ, ଭୋଳବାବୁଙ୍କର ପିଲାଏ ଆପଣଙ୍କ ଚିଠି ପାଇ ଗାଁରୁ ଆସିଛନ୍ତି ।

ଶରତ୍‌ବାବୁ କିଛି ଉତ୍ତର ଦେଲେ ନାହିଁ । ନଳଟଣଟି ତଳେ ରଖି କଅଣ ଯେପରି ଭାବିବାକୁ ଲାଗିଲେ । କେତେବେଳକେ ଥଙ୍ଗେଇ ଥଙ୍ଗେଇ କହିଲେ, ମୁଁ ଚାରିଦିନ ହେଲା ଚିଠି ଦେଲିଣି, ଆଜି ସେମାନେ ଆସୁଛନ୍ତି ?

ତାଙ୍କର ଏପରି କଥା ଶୁଣି ଅଜଣା ଭୟରେ ଛାତି ଥରି ଉଠିଲା । ସେ ଆଉ କଅଣ କହିବେ ଶୁଣିବାକୁ କାନ ଡେରି ରହିଲୁ ।

ଅମୁଭାଇ କହିଲେ, ଚିଠି ଖଣ୍ଡି ପୋଷ୍ଟ ଅଫିସରେ ତିନିଦିନ ପଡ଼ି ରହିବାରୁ ଡେରି ହୋଇଗଲା । ଆଜି ପାଇ ସଙ୍ଗେ ସଙ୍ଗେ ବାହାରି ଆସିଛନ୍ତି ।

ଶରତ୍‌ବାବୁ କହିଲେ, ଡେରି ହୋଇଗଲା ।

ଅମୁଭାଇ କହିଲେ ଦିନ ଦଶଟାରୁ ବାହାରିଥିଲୁ । ବଳଦ ଗାଡ଼ି ଧୀରେ ଧୀରେ ଆସୁଛି । ଗହୀର ବାଟ । ତେଣୁ ଡେରି ହେଲା ।

ଶରତ୍‌ବାବୁ କହିଲେ, ହଁ ହେବାର କଥା, ଦୂର ବାଟ । ଅଚ୍ଛା, ପିଲାଙ୍କୁ ଭିତରକୁ ଆସିବାକୁ କୁହ ।

ଅମୁଭାଇ ଗାଡ଼ି ପାଖକୁ ଆସି ବୋଉକୁ କହିଲେ, ବାବୁ କହୁଛନ୍ତି ଭିତରକୁ ଆସ ।

ବୋଉ ଶରତ୍‌ବାବୁଙ୍କୁ ଶୁଣାଇଁ ଅମୁଭାଇଙ୍କୁ କହିଲା, ଡାକ୍ତରଖାନାକୁ ଯାଇ ତାଙ୍କୁ ଦେଖି ଆସିଲେ ଭଲ ହୁଅନ୍ତା । ମନ ଛଟ୍‌ପଟ୍ ହେଉଛି । ବାବୁଙ୍କୁ କହ, ଆମ ସାଙ୍ଗରେ ଜଣେ କାହାକୁ ଦିଅନ୍ତୁ, ଏଇ ଗାଡ଼ିରେ ଯାଇ ତାଙ୍କୁ ଦେଖି ପଛେ ଫେରି ଆସିବୁ ।

ସେ ସବୁ ଶୁଣିଲେ । ପୁଣି କଅଣ ଭାବିଲେ । କହିଲେ, ଭୋଳବାବୁ ତ ଡାକ୍ତରଖାନାରେ ନାହାନ୍ତି ।

ନାହାନ୍ତି ? କହି, ବୋଉ ଚଳାର କରି ଉଠିଲା । ପଚାରିଲା, ସେ ତେବେ କାହାନ୍ତି । ଯେଉଁଠି ଅଛନ୍ତି ମୋତେ ସେଠିକି ଟିକେ ନେଇ ଚାଲନ୍ତୁ । ତାଙ୍କୁ ଆଗ ନ ଦେଖିଲେ— ।

ଅହା—ହା—, ଆପଣ ବ୍ୟସ୍ତ ହେଉଛନ୍ତି କାହିଁକି ? କହି, ଶରତ୍‌ବାବୁ ଚାଲି ଚାଲି ଆମର ଗାଡ଼ି ପାଖକୁ ଆସିଲେ । ଧୀର ଶାନ୍ତ ଭାବରେ କହିଲେ, ବ୍ୟସ୍ତ ହେବେ ନାହିଁ । ତାଙ୍କର ଦେହ ଭଲ ହୋଇ ଗଲାଣି । ସେ ଦୁ' ଦିନ ହେଲା ଡାକ୍ତରଖାନାରୁ ଚାଲି ଆସିଲେଣି । ସାମାନ୍ୟ ଟିକେ ତ ଜର ।

ବୋଉ ପଚାରିଲା, ସେ ଅଛନ୍ତି କେଉଁଠି ?

ଶରତ୍‌ବାବୁ କହିଲେ, ଏଇଠି ଥିଲେ । ଛୋଟ ବସା, ଅସୁବିଧା ହେଲା । ରୋଗୀର ଯତ୍ନର ଅଭାବ ହେଲେ ଜର ପୁଣି ନେଉଟିବ । ଏହି ଡରରେ ଗାଡ଼ି ସଜାଡ଼ି କରି ଆଜି ସଞ୍ଜ ଆଗରୁ ତାଙ୍କୁ ଘରକୁ ବିଦା କରିଦେଲି । ସାଙ୍ଗରେ ଲୋକ ଅଛି । କିଛି ଅସୁବିଧା ହେବନାହିଁ । ମୁଁ କହୁଛି କଅଣ କି, ରାତି ଆସି ଏତେ ହେଲାଣି । ଆଜି ଆପଣମାନେ ଏଇଠି ରହିଯାନ୍ତୁ । କାଲି ସକାଳୁ ଉଠି ଚାଲିଯିବେ । ସେ ବୋଧହୁଏ ଘରେ ପହଞ୍ଚି ସାରିବେଣି । ଘରେ ଲୋକ ଥିବେ ତ ।

ବୋଉ କହିଲା, ଘରେ ଲୋକ ଥିଲେ କଅଣ ହେଲା, ତାଙ୍କର ଅସୁବିଧା ହେବ । ଆମେ ରାତିଏ ରାତିଏ ଫେରି ଯିବୁଁ ।

ଶରତ୍ ବାବୁ ଅନେକ ବୁଝାଇଲେ । ରାତିଟା ରହିଯିବାକୁ ପ୍ରବର୍ତ୍ତାଇଲେ । ବୋଉ ଏକଜିଦ୍ ଧରି ବସିଲା । ତାଙ୍କ କଥା ମାନିଲା ନାହିଁ । ମନେ ମନେ ବୋଉ ଉପରେ ମୁଁ ଚିଡ଼ୁଥାଏ । ରାତିଟା ରହିଗଲେ କଅଣ କ୍ଷତି ହେବ ! ଘରେ ବାଧା ଅଛି । ବାପା ପହଞ୍ଚି ସାରିବେଣି । ଶୋଇବେଣି । ଅଧରାତିରେ କଷ୍ଟ ପାଇ ଯିବା ଦରକାର କଅଣ ? ବଳଦ ଗୁଡ଼ା ହାଲିଆ ହୋଇ ପଡ଼ିଛନ୍ତି ।

ଶରତ୍‌ବାବୁ ଦୁଃଖିତ ହୋଇ କହିଲେ, ଯିବେ ଯଦି ଫେରି ଯାଆନ୍ତୁ, ରାତି ବଳେଇ ପଡ଼ୁଛି । ବେଶୀ ଡେରି କରିବା ଭଲ ନୁହେଁ । ମୁଁ କହୁଛି, ଟିକିଏ ଜଳଖିଆ କରି ଯାଉନ୍ତୁ ।

ବୋଉ ରାଜି ହେଲା ନାହିଁ । ଜଳଖିଆ କରିବାକୁ ମୋତେ ଉପଦେଶ ଦେଲା ।

ଶରତ୍‌ବାବୁଙ୍କର ଆଦର କଥା ଶୁଣି ମୁଁ ଏକା ଟାଣିରୁ ଓହ୍ଲାଇଲି । ତାଙ୍କୁ ପ୍ରଣାମ କଲି । ସେ ମୋତେ ଆଶୀର୍ବାଦ କଲେ । କହିଲେ, ତୁ ମୋର ଝିଅ । କେତେଦିନୁ ତୋତେ ଦେଖିବି ବୋଲି ମୋର ଆଶା ଥିଲା । ଆ, ମା ।

ତାଙ୍କ ଘର ଭିତରକୁ ଗଲି । ଶରତ୍‌ବାବୁ ତାଙ୍କ ସ୍ତ୍ରୀଙ୍କ କାନରେ ଗୁନ ଗୁନ କରି କଅଣ କହିଲେ । ମୋତେ ଶୁଣାଇ କହିଲେ, ଗୀତାକୁ ଦେଖିବ ବୋଲି

କେତେଦିନ୍ରୁ କହୁଥିଲି । ଦେଖ । ଭୋଲାନାଥ ମୋର ବନ୍ଧୁ । ତାର ଝିଅ ଯିଏ, ମୋର ଝିଅ ସିଏ ।

ମୋର ମୁଣ୍ଡରେ ହାତ ବୁଲାଇଲେ ।

ଶରତ୍‌ବାବୁଙ୍କ ସ୍ତ୍ରୀ କେତେ ଭଲ ଲୋକ । ଯେଉଁ ଦଶ ପନ୍ଦର ମିନଟ ତାଙ୍କ ଘରେ ରହିଲି ସେଥିକରେ ସେ ମୋତେ କାଟଖାଇ କୁଣ୍ଡେଇ ଆପଣାର କରି-ନେଲେ । ଆମ ଘରକଥା, ଆମର କେତେ ସମ୍ପତ୍ତି, ଆଉ ସବୁ କିଏ କିଏ ଆତ୍ମୀୟ ଅଛନ୍ତି, ଇତ୍ୟାଦି କଥା ମୋ ଠାରୁ ବୁଝିନେଲେ । ଏଟା ଖା, ସେଟା ଖା, କହି କହି ପେଟେ ଖୁଆଇଲେ ।

ବାଲଦଗୁଡ଼ିଙ୍କୁ ଖୁଆଇ ପିଆଇ, ପାନା, ଭଜନା ଓ ଅମୃତ୍ତିଇ ଜଳଖିଆ କଲେ । ପାନା ଯେତେବେଳେ ଡେରି ହେଉଛି ବୋଲି ମୋତେ ଡାକିଲା, ଶରତ୍‌ବାବୁଙ୍କ ସ୍ତ୍ରୀ ମୋର ଓଠରେ ହାତ ଦେଇ ଲୁହଭରା ଆଖିରେ କହିଲେ, ମା ମୋର, ଜିନଟା ଛତରା ବାଳୁଙ୍ଗା ପୁଅ ଜନ୍ମ କରି ଦିନରାତି ଦହଗଞ୍ଜ ହୋଇ ମରିବା ଅପେକ୍ଷା, ତୋ ପରି ରତ୍ନଟିଏ ଯଦି ମୁଁ କୋଳରେ ପାଇଥାନ୍ତି ! ହଉ, ଠାକୁରେ ତତେ ସୁଖୀ କରନ୍ତୁ । ଭୋଲାବାବୁଙ୍କ ଝିଅ ତୁ, ମୋର ଝିଅ ପରି । ମନେ କରୁଥିବୁ ।

ବିଦାୟ ନେବାକୁ ତାଙ୍କୁ ପ୍ରଣାମ କଲି । ସେ ମୋତେ ତଳୁ ଉଠାଇଲେ । ଛାତିକୁ ଆଉଜାଇ ଧରି କହିଲେ, ଗୀତା, ତୁ ମୋର ଝିଅ ! ମୋତେ କାଳେ ଭୁଲିଯିବୁ, ମୁଁ ତ ଗରିବ, ତୋତେ କଣ ଦେଇ ପାରିବ ?

କାନରୁ କାଢ଼ି ସୁନାର ଦୁଲ୍ ଦିଓଟି ମୋତେ ପିନ୍ଧାଇ ଦେଲେ । କାହିଁକି ଯେ ସେ କାନ୍ଦ କାନ୍ଦ ହେଲେ ମୋର ବୁଝିବାର ଉପାୟ ନ ଥିଲା । ମୁଁ ତାଙ୍କର ଦୟା, ଆଦର, ଯତ୍ନରେ ଋଣୀ ହୋଇ ସାରିଥିଲି । କୃତଜ୍ଞତାରେ ମନ ନଇଁ ପଡ଼ିଲା ।

ପଦାକୁ ଆସିଲି । ସେ ମଧ୍ୟ ମୋ ସଙ୍ଗରେ ଆସିଲେ । ଶେଷଥର ବିଦାୟ ନେଇ ମୁଁ ଗାଡ଼ିରେ ବସିଲି । ଶରତ୍‌ବାବୁ ଥରେ ଘର ଭିତରକୁ ଯାଇ ଫେରି ଆସିଲେ ଗାଡ଼ି ପାଖକୁ । ଅମୃତ୍ତିଇଙ୍କ ହାତକୁ ପାଞ୍ଚଟଙ୍କାର ନୋଟ୍ ଖଣ୍ଡେ, ବଢ଼ାଇ ଦେଇ କହିଲେ, ଗୀତା ବୋଉଙ୍କୁ ଦେବ । ଭୋଲାବାବୁ ଗଲାବେଳକୁ ହାତରେ ଋଣ ନେଇଯାଇ ନାହାନ୍ତି ।

ଗାଡ଼ି ଫେରନ୍ତି ଚାଲିଲା ।

୨୫

ନଈ କୂଳରୁ ବିଦାୟ ନେଇ ଅମୁଭାଇ କଟକରେ ରହିଲେ । ବୋଉ ପଗୃରିଲାରୁ କହିଲେ, ତାଙ୍କର କଏ ଜଣା ଶୁଣା ଲୋକ ତେଲଙ୍ଗା ବଜାରରେ ଅଛନ୍ତି । ତାଙ୍କର ବସାରେ ରହି ଚାକିରି ଚେଷ୍ଟା କରିବେ । କଟକରେ ନ ମିଳିଲେ କଲିକତା କି କାଲିମାଟି ଯିବେ ।

ନଈ ପାରି ହୋଇ ଗାଡ଼ି ରାସ୍ତାଏ ରାସ୍ତାଏ ଚାଲିଲା ।

ପଗୃରିଲି, ବୋଉ, ବାପା ଏଇ ରାସ୍ତାରେ ତ ଯାଇଥିବେ । ଆମେ ଆସିଲା ବେଳକୁ ତ ଦେଖା ହୋଇଥାନ୍ତା ?

ବୋଉ କହିଲା, କେତେ ବଳଦ ଗାଡ଼ି ଯାଉଥିଲା, କେଉଁଥିରେ ସେ ଗଲେ ଆମେ ଜାଣି ପାରିଲୁ ନାହିଁ । କେଉଁ ବାଟରେ ତାଙ୍କ ଗାଡ଼ି ଗଲା, ସେ କଥା ବୁଝିଲେ ଜଣା ପଡ଼ିବ । ଘରେ ରାଧା ଅଛି । ତାଙ୍କର ଅସୁବିଧା ହେବ ନାହିଁ ଯେ, ଆମ ପାଇଁ ସେ ଦକ ଦକ ହେଉଥିବେ । ଆମ ଗାଡ଼ି ସହଳ ପହଞ୍ଚିଲେ ଭଲ ହୁଅନ୍ତା ।

ମୋତେ ନିଦ ମାଡ଼ୁଥିଲା । ମୁଁ ଲମ୍ବ ହୋଇ ଶୋଇ ପଡ଼ିଲି । ପୁଷମାସର ଶୀତ । ମନ୍ଥ ଥରି ଯାଉଥାଏ । ବଳଦଗୁଡ଼ା ଥରି ଥରି ଚାଲୁଥାନ୍ତି । ଭଜନା ନିଆଁ ବଳିଆ ଆଉ ନଳଝଣ ଧରି ଚାଲୁଥାଏ ଆଗେ ଆଗେ । ଦୀନା ମାଠ ଘୋଡ଼ି ହୋଇ ଗାଡ଼ି ଅଗରେ ବସି ବେଳେ ବେଳେ ପାଅଁଣରେ ବଳଦ ପିଠିରେ ପାହାର ମାରୁଥାଏ ।

ଭଜନା କହିଲା, ରାତି ଅଧରେ ବଲ ବାଟରେ ଯିବା ନାହିଁ ଦାଦ, ଅପନ୍ତରା ମଶାଣି ପଡ଼ିବ । ଏକୁଟିଆ ଗାଡ଼ି, ଭୂତ ପ୍ରେତ ହାବୁଡ଼ି ଯିବେ ।

ଦୀନା କହିଲା, ମୁଁ ସେଇଆ ଭାବୁଥିଲି । ଯୋହଲ ଗାଁ ମୁଣ୍ଡ ଝଙ୍କା ବରଗଛ ତଳେ କେତେ ଲୋକ ଡରନ୍ତି । ସଇତାନ୍ ଅଛି । ଜଣିକିଆ ଗଲେ ସେଇଠି ଶେଷ । ଚାରି ପାଅଁଜଣ ସାଙ୍ଗ ହୋଇ ଗଲେ ବି, ସଇତାନ ବାଟ ଛକି ଉରାଏ । ବାପ୍‌ରେ ! କଁଳା ବାଳୁଆ ପରି ବଡ଼ ।

ଭଜା କହିଲା, ସେଠି ଯାହା ହେଲେ ରକ୍ଷା, ହାତରେ ନିଆଁ ବଳିଆ ଥିଲେ କି ବଟୁଆରେ ଗୁଅକାଛ ଥିଲେ ସଇତାନ ପାଖରେ ପଶେ ନାହିଁ । ବଣିପୁର ପାଖ ସେ ଯେଉଁ ମଶାଣି ଦଣ୍ଡା, ବୁଦବୁଦକିଆ ବଣ, ସେଠି ସାତ ଭଉଣୀ ପିଚୁଣୁଣୀ ଆନ୍ତି । ସେମାନେ ନିଆଁ ମାନନ୍ତି ନାହିଁ କି ଲୁହା ମାନନ୍ତି ନାହିଁ । ଖଣ୍ଡିଆ ପୋଖରୀକୂଳ ତାଳଗଛ ମୂଳରେ ବସି ସାତଟା ପନକ ଧରି ମଡ଼ା କାଟି ଖାଆନ୍ତି । ବାପ୍‌ରେ, ମୋଉ କଳକଳା ରଡ଼ି, କାନରେ ପଡ଼ିଲେ ପିଳେହି ପାଣି ହେବ । ନାଇଁ ଦାଦ, ରାସ୍ତାରେ ଯିବା, ଡେରି ହେଲେ ହେବ ପଛେ ।

ଗାଡ଼ି ଆସି ଜଗନ୍ନାଥ ରାସ୍ତାରେ ଚାଲିଲା ।

ବୋଉ ମୋ ପାଖରେ ଶୋଇଲା । ଉପରେ ତା କୋଳକୁ ଘୁଞ୍ଚି ଶୋଇଲି ।

ପାହାନ୍ତା ବେଳକୁ ଗାଁରେ ପହଞ୍ଚିଲୁ । ଆଗ ମୋର ନିଦ ଭାଙ୍ଗିଲା । ବୋଉକୁ ଉଠାଇଲି । ସେ ଉଠି ବସିଲା ।

ଘର ଆଗରେ ପହଞ୍ଚି ଦେଖିଲି, ରାଧା ବାରଣ୍ଡାରେ ବସି ନିଆଁ ପୁହଁଉଛି । ଗାଡ଼ି ଦେଖି ସେ ଦାଣ୍ଡକୁ ଗଡ଼ିଲା । ବଳଦ ନ ଖୋଲୁଣୁ ମୁଁ ତଳକୁ ଡେଇଁ ପଚାରିଲି, ବାପା କାହାନ୍ତି ?

ସେ ବଲ ବଲ କରି ମୋ ମୁହଁକୁ ଚାହିଁଲା । ତା ଆଖିରୁ ମୁଁ କଅଣ ବୁଝିଲି ମୋର ମନେ ନାହିଁ, ଅଧିକ ଅସ୍ଥିର ହୋଇ ପଚାରିଲି, କହ, ବାପା କାହାନ୍ତି ?

ସେ ଉତ୍ତର ଦେଇ ପାରିଲା ନାହିଁ । ଆଖି ଦୁଇଟି ଲୁହରେ ଭରିଗଲା । ବୋଉ ଗାଡ଼ିରୁ ଓହ୍ଲାଇ ଆମ ପାଖକୁ ଛୁଟି ଆସିଲା । ତାକୁ ପାଖରେ ଦେଖି ରାଧା ମୋର ହାତ ଛାଡ଼ି ତାକୁ କୁଣ୍ଢାଇ ଧରିଲା । ସତ କଥାକୁ ଲୁଚାଇ ରଖି ପାରିଲା ନାହିଁ । ବାହୁନି ଉଠିଲା ..... ।

ସେ ଦିନର ସେହି କରୁଣ ଦୃଶ୍ୟଟି ଯେତେବେଳେ ମୋର ମନେ ପଡ଼େ ଛାତି ମୋର ଥର ଥର ହୋଇ କମ୍ପି ଉଠେ । ପିଣ୍ଡରୁ ପ୍ରାଣ ଛାଡ଼ିଲା ପରି ଲାଗେ । ସେ ଅନୁଭୂତି ବର୍ଣ୍ଣିବାକୁ ମୁଁ ଭାଷା ଖୋଜି ପାଉନାହିଁ । ଆଜି ବି ମନେ ପଡ଼ିଲେ ମୋର ଛାତି କରିଚି ହେଉଛି । ମୁଣ୍ଡ ଭିତରେ ମଶାଣି ନିଆଁ ଜଳି ଉଠୁଛି ।

କେତେ ଦୁଃଖ କେତେ ଯନ୍ତ୍ରଣା ଭିତର ଦେଇ ମୋର ଜୀବନ ଆଗେଇ ଆସିଛି । ସହି ସହି ଛାତି ପଥର ହେଲାଣି । ଏପରି କେତୋଟି ଘଟଣା ମୋ ଜୀବନରେ ଘଟିଛି ଯାହାର ସ୍ମୃତି ଆଜି ବି ମୋର ପଥର ଛାତିକୁ ଦୋହଲାଇ ଦେଉଛି । ସେ ଦିନର ସେହି ଘଟଣା ଛାତିରେ ଗମ୍ଭୀର ଗାର ଟାଣି ଦେଇଛି । ଚିତା ନିଆଁରେ ଦେହ ପୋଡ଼ି ପାଉଁଶ ନ ହେବାଯାଏ ସେ ଗାର ଲିଭିବ ନାହିଁ, ଲିଭିବ ନାହିଁ ।

ଶରତ୍‌ବାବୁ ଆମକୁ ଭୁଲାଇ ଫେରାଇ ଦେଲେ । ଆମେ କଟକରେ ପହଞ୍ଚିବା ଆଗରୁ ସେ ଜଣେ ଲୋକ ହାତରେ ଯେଉଁ ଚିଠି ଲେଖି ପଠାଇଥିଲେ ସେଥିରେ ମୋଟେ ଧାଡ଼ିଟିଏ ଲେଖାଥିଲା,—ଚୌଧୁରୀବାବୁ ଆଜି ଦିନ ଆଠଟା ବେଳେ ସେ ପୁରକୁ ଚାଲିଗଲେ ।—

## ୨୬

ଦୁଃଖର ପାହାଡ଼ ମୁଣ୍ଡରେ ବୋହି ବେଳ କାଟିଲି ।

ବୋଉର ଆଖିରୁ ଲୁହ ବନ୍ଦ ହେଲା ନାହିଁ । ଦିନ ଦିନ ହୋଇ ମାସଟିଏ କଟିଗଲା । ମାସ ନୁହେଁ ଯେ ଗୋଟାଏ ଯୁଗ । ଗାଁ ଲୋକେ କଏ କେତେବେଳେ ଆସି ସହାନୁଭୂତି ଦେଖାଇ ଗୃହକଥା ବୁଝାଇ ଗଲେ । ବୋଉ ସବୁ ଶୁଣିଲା । ତା ଦୁଃଖ କମିବା ପରିବର୍ତ୍ତେ ବଢ଼ିଲା ।

ମୋ କଥା ବା କଅଣ କହିବି ? ବାପା ମଲା ଦିନରୁ ସବୁ ଆଶା ଉତ୍ସାହ ମୋର ପୋଡ଼ି ଜଳି ପାଉଁଶ ହୋଇଥିଲା । ମୁଁ ଜାଣିଥିଲି ଯେ ମୋର ଭବିଷ୍ୟତଟା ନିବିଡ଼ ଅନ୍ଧାର ମଧ୍ୟରେ ଛପି ଯାଇଛି । ସଂସାରରେ ଯିଏ ମୋର ସୁଖ ଆନନ୍ଦ ପାଇଁ ମନ ପ୍ରାଣ ଦେଇ ଚେଷ୍ଟା କରୁଥିଲେ, ଭଗବାନ ତାଙ୍କୁ ନେଇଗଲେ । ମୋ ପାଇଁ ଭଲ ମନ୍ଦ ଖୋଜିବାକୁ ଆଉ କେହି ନାହିଁ । ଯେଉଁମାନେ ଉପରେ ପଡ଼ି ବାହାରିଆ ସହାନୁଭୂତି ଦେଖାଇବାକୁ ଆସିବେ, ସେମାନେ ଯେ କେବେ ନିସ୍ୱାର୍ଥ ଭାବରେ କିଛି କରିବେ, ଏ ଆଶା ମୋର ନ ଥିଲା । ପର ପାଇଁ କାହାର ମୁଣ୍ଡ ବଥାଇବ କାହିଁକି ? ସଂସାରରେ ସମସ୍ତେ ନିଜ ନିଜର ସୁଖ ଦୁଃଖ ନେଇ ବ୍ୟସ୍ତ ।

ଯେଉଁ ଜଣକ ମୋ ପାଇଁ ଭାବିବ, ମୋର ସୁଖ ଆନନ୍ଦ ଦେଖିବାକୁ ଆକୁଳ ହେବ ସେ ନିକର୍ତ୍ତବ୍ୟ ଲୋକ । କେବଳ ଭାବିବା ଛଡ଼ା ତାର ଆଉ କିଛି କରିବାର ନାହିଁ । ହାତରେ ଧନ ଥିଲେ ମଣିଷକୁ ବୁଦ୍ଧି ଦିଶେ । ସେ ଦିଗରେ ମଧ୍ୟ ଆମର ଅଭାବ ।

ଭବିଷ୍ୟତ କଥା ଭାବିବାକୁ ବେଳ ନ ଥିଲା, ଇଚ୍ଛା ମଧ୍ୟ ମରିଗଲା । କଅଣ କଲେ ବୋଉର ଦୁଃଖ କଷ୍ଟ ଦୂର କରି ପାରିବି, ତା ଆଖିର ଲୁହ ବନ୍ଦ କରିପାରିବି, ସେତିକି ହେଲା ମୋର ଭାବନା ଓ ଚେଷ୍ଟା । ବାପା ବଞ୍ଚିଥିବା ବେଳେ ଘରର କାମ ମୋତେ ବୋଉ କରିବାକୁ ଦେଉ ନ ଥିଲା । ଉପରେ ପଡ଼ି କିଛି କଲେ ସେ ବିରକ୍ତ ହୁଏ, କିନ୍ତୁ ବାପା ମଲା ପରେ ଯେତେବେଳେ ସେ ଦୁଇମାସ କାଳ କାନ୍ଦି କାନ୍ଦି ବିଛଣାଲାଗି ହେଲା, ମୋତେହିଁ ଘରର ସବୁ କାମ କରିବାକୁ ପଡ଼ିଲା ।

ଧୀରେ ଧୀରେ ବୋଉର ଦୁଃଖ କମି ଆସିଲା । ବିଛଣାରୁ ଉଠି ସେ ଘର ଆଡ଼କୁ ଓ ମୋ ଆଡ଼କୁ ନଜର ଦେଲା, କିନ୍ତୁ ତାର ପୂର୍ବ ସ୍ୱାସ୍ଥ୍ୟ ଆଉ ଫେରି ପାଇଲା ନାହିଁ । କାମଦାମ କରିପାରିଲା ନାହିଁ ।

ତାଆର ଦୁଃଖ ଦୂର କରିବାକୁ ମୋର ସାଧ୍ୟ ନାହିଁ । ମୁହିଁ ତ ତାର ପ୍ରଧାନ ଦୁଃଖ । ମୋତେ ଦେଖିଲେ ତାର ଆଖିରେ ଲୁହ ଆସେ । କାହିଁକି, ସେ କଥା ମୁଁ ଜାଣେ । ମୁଁ ବଡ଼ ଝିଅ, ବୟସ ବଳେଇ ଯାଉଛି, ପର ଘରକୁ ଯାଇନାହିଁ, ଏହାହିଁ ତାର ପ୍ରଧାନ ଭାବନା, ପ୍ରଧାନ ଦୁଃଖ ।

ରାଧା ବେଳେ ବେଳେ ଆସେ । ହାତରୁ ଛଡ଼ାଇ ଗୃହକାମ କରିଯାଏ । ବୋଉକୁ ବୁଝାଏ । କହେ, ତମେ ଏତେ ଅଧୀର ହେଲେ ଚଳିବ ନାହିଁ । ଠାକୁରେ ଯାହା ଭାଗ୍ୟରେ ଯାହା ଲେଖିଛନ୍ତି ମଣିଷ ତାକୁ ଅନ୍ୟଥା କରି ପାରିବ ନାହିଁ । ସେ ଚାଲିଗଲେ, ପୁଣ୍ୟବନ୍ତ ପୁରୁଷ, ଦୁଃଖର ସଂସାରରେ ପାଣ୍ଠି ହୋଇ ତମ ଆମ ଭଳି କଷ୍ଟ ପାଇବାକୁ ରହନ୍ତେ କାହିଁକି ?

ବୋଉ କାନ୍ଦି କାନ୍ଦି କହେ, ସେ ଚାଲିଗଲେ ସୁଖରେ ହଁ, ମୋଉଁର ଗୁଣ୍ଡରେ ପଥର ବୋଝ ଲଦି ଦେଇଗଲେ । ଥାଉଁ ଥାଉଁ ଯଦି ଗୀତାର ହାତକୁ ଦି ହାତ କରି ଯାଇଥାନ୍ତେ, ମୁଁ ଏତେ ଭାବନ୍ତି ନାହିଁ ଲୋ ରାଧା, ଏତେ କାନ୍ଦନ୍ତି ନାହିଁ । ହସି ହସି ତାଙ୍କର ପଛେ ପଛେ ଯାଇଥାନ୍ତି । ସେ ଇଚ୍ଛା ବେଳେ ବେଳେ ହୁଏ କିନ୍ତୁ, ରାଧା, ଗୀତାର ଅବସ୍ଥା କଅଣ ହେବ କହିଲୁ ? କିଏ ତାର ମୁହଁକୁ ଚାହିଁବ, ତାର ଭଲମନ୍ଦ ବୁଝିବ ?

ବୋଉ କାନ୍ଦେ ।

ରାଧା ସାନ୍ତ୍ୱନା ଦେଇ କହେ, ହଁ, ଗୀତା ହତଭାଗୀ । ତାର ଦାୟିତ୍ୱ ତମରି ଉପରେ ପକାଇ ସେ ଖସି ଯାଇଛନ୍ତି । ତମେ କାନ୍ଦିଲେ ବୋବେଇଲେ ଚଳିବ ନାହିଁ । ଗୀତାର ବାହାଘର କିପରି ଶୀଘ୍ର ହେବ ସେ କଥା ଏବେ ବିଚାର । ସେ ଦିଗରେ ଚେଷ୍ଟା କର । ସୁଖ ଦୁଃଖ ଭଲ ମନ୍ଦ ସଂସାରରେ ଲାଗିଛି । ଯେତେବେଳେ ଯାହା ଆସିବ ସହିବାକୁ ପଡ଼ିବ ।

ବୋଉ ତୁନି ରହେ ।

ରାଧା ପୁଣି କହେ, ଆଜିକାଲି ଯୁଗରେ ବାହାଘର ହେଉଛି ଟଙ୍କାର ଖେଳ । ମଣିଷ ଖୋଜୁଛି କିଏ ? ଟଙ୍କା ତ ହାଡ଼ କମାଉଛି । ଲୋକେ କଅଣ ସେ କଥା ବୁଝନ୍ତି ? ଗୀତା ପରି ରୂପର ଗୁଣର ଝିଅ, ତା ପାଇଁ ଭାବିବାକୁ ପଡ଼ନ୍ତା ନାହିଁ । କିନ୍ତୁ ଯେତେ ଯାହା ହେଉ, ସବୁ ଗୋଟାଏ ଅଡ଼େ, ଭାଗ୍ୟ ଗୋଟାଏ ଅଡ଼େ ।

ଦୁଃଖର କଥା କହିଲେ ବେଲ ସରିବ ନାହିଁ । ହୁଏତ ଶୁଣିବାକୁ କାହାରିକୁ ଭଲ ଲାଗିବ ନାହିଁ । ତଥାପି, ଯାହା ଅଙ୍ଗେ ଲାଗିଲାଇଛି, ମୁହଁ ଖୋଲି ନ କହିଲେ ମନରେ ଘାଣ୍ଟି ଚକଟି ହେଉଥିବ । ଗୁରୁପଦ କାହା ଆଗରେ କହିଗଲେ ଦୁଃଖର ବୋଝ ଟିକିଏ ଲାଘବ ହେବ ।

ବାପାଙ୍କ ମରିବାର ଚାରିମାସ କଟିଗଲା । ଦୁଃଖର ଛିଦ୍ର କମି ଆସିଲା । କିନ୍ତୁ, ଅଭାବ ଦିନକୁ ଦିନ ତୀବ୍ର ହୋଇ ପଡ଼ିଲା । ବାପାଙ୍କର ଅଳ୍ପ ରୋଜଗାରରେ ଆମର କୌଣସିମତେ ଦୁଇବେଳା ଦୁଇମୁଠି ଖାଇବା ଚାଲୁଥିଲା । ଭବିଷ୍ୟତ ପାଇଁ ସଞ୍ଚିବାର ଉପାୟ ନ ଥିଲା । ରଖିବା ଯେ ଦରକାର ଏ କଥା ଯେପରି ବାପା ବୋଉଙ୍କ

ମନକୁ ଆସି ନ ଥିଲା । ସେମାନେ ଭାବୁଥିଲେ, ମୋର ବାହାଘର ହୋଇଗଲେ ତେଣିକି ଆଉ ଦୁଃଖ ରହିବ ନାହିଁ । ଯାହା ରୋଜଗାର କରିବେ, ସେଥିରେ ଦୁଇଟି ପ୍ରାଣୀ ଦୁଃଖେ ସୁଖେ ଚଳି ଅଭାବ ଅସୁବିଧା ପାଇଁ ଭବିଷ୍ୟତକୁ ହାତରେ କିଛିପଇସା ରଖିଥିବେ ।

ଦଇବ ତାଙ୍କର ବିଗୁର ରଖିଲା ନାହିଁ ।

୧୬

ଘରେ ଖାଇବାକୁ କିଛି ନାହିଁ । ସକାଳୁ ଉପାସ । ଖରାଦିନ । ଗଛପତ୍ର ଜୀବ ଜନ୍ତୁ ଝାଉଁଳି ପଡ଼ୁଛନ୍ତି । ଆମର ଚଳେ କିପରି ? ଏତେ ବଡ଼ ଗାଁଟାରେ ଦୁଇଟା ପ୍ରାଣୀଙ୍କୁ ମୁଠାଏ ଖାଇବାର ଅଭାବ ହୁଅନ୍ତା ନାହିଁ, କିନ୍ତୁ ବିନା ସ୍ୱାର୍ଥରେ କିଏ କାହାକୁ ପଚାରିବ ନାହିଁ । ଯାହାର ସୁଝିବାର ସମ୍ବଳ ନାହିଁ ତାକୁ କେହି ଉଧାର ଦେବ ନାହିଁ । କେଉଁ ସାହସରେ ଆମେ ମାଗିବୁ ? କିଛିକି ଗଲାଦିନ ରାଧାଠାରୁ ଯେଉଁ ଟଙ୍କା ଧାର ଆଣିଥିଲୁ ସେତକ ଆଜିଯାଏ ସୁଝା ସରି ନାହିଁ । ସେ ଅବଶ୍ୟ କେବେ ମାଗେ ନାହିଁ । ତଥାପି, ମାଡ଼ି ମାଡ଼ି ପଡ଼େ । ସେ ବି ଆମରି ପରି ଚଳିବ ।

ଦାମଭାଇ ବେଳେ ବେଳେ ଆସନ୍ତି । ବୋଉ ସଙ୍ଗେ ପଦେ ଅଧେ କଥାଭାଷା ହୋଇ ବାହାରୁ ବାହାରୁ ଗୁଲିଯାଆନ୍ତି । ମୋ ସଙ୍ଗେ ଦେଖା କରିବାକୁ ଆଉ କେବେ ଆଗ୍ରହ ଦେଖାନ୍ତି ନାହିଁ । ଭାବନ୍ତି ବୋଧହୁଏ, ବୋଉ ତାଙ୍କୁ ସାହାଯ୍ୟ ମାଗିବ । କିନ୍ତୁ, ବୋଉ କେବେ ତାଙ୍କୁ ଆମର ଅସୁବିଧା ଅଭାବ କଥା କହେ ନାହିଁ । ଅମୂଭାଇ, ଶୁଣିଲି ସେ କିଠିକରେ କାମ କରୁଛନ୍ତି । ସେ କାମରେ ଛୁଟି ନାହିଁ । ବହୁଦିନ ହେଲା ତାଙ୍କ ସଙ୍ଗେ ଦେଖା ହୋଇ ନାହିଁ । ସେ ତ ସାତପର । ତାଙ୍କଠାରୁ ସାହାଯ୍ୟ ଆଶା କରିବା ଆମ ପକ୍ଷରେ ଅସମ୍ଭବ ।

ବୋଉ କହିଲା, ଗୀତା, ଘରେ ବସିଲେ ଚଳିବ ନାହିଁ । ମୁଁ ଟିକେ ରାଧା ଘରୁ ଆସେଁ । କେତେଦିନ ହେଲା ତାର ଦେଖା ନାହିଁ ।

ଖରାଟାରେ ଏକୁଟିଆ ଗାଁ ଦାଣ୍ଡରେ ଯିବୁ ?

ସବୁଦିନେ ସଂସାରରେ ମାନ ରଖି ଚଳିବା ଅସମ୍ଭବ ଝିଅ, ଯେତେବେଳେ ଠାକୁରେ ଯାହାକୁ ଯେପରି ରଖିଛନ୍ତି ସେ ସେପରି ଚଳିବ ।

କିଏ କ'ଣ କହିବ ।

ହଁ, ଲୋକେ କହିବେ । କହନ୍ତୁ । ସେଥିକି ଆମର ଗୁରା ନାହିଁ ।

ସେ ରାଧା ଘରକୁ ଗଲା । ମୁଁ ଘରେ ଏକୁଟିଆ ବସି ରହିଲି । ଆକାଶ ପାତାଳ ଭାବିଥାଏଁ । ବେଳ କେମିତି କଟିବ, କିଏ ଆମକୁ ସାହାଯ୍ୟ ହେବ ?

ମନକୁ ଗୋଟିଏ କଥା ଆସିଲା । ଅସ୍ତୁ, ଶରତ୍‌ବାବୁ ବାପାଙ୍କର ବନ୍ଧୁ ଥିଲେ । ତାଙ୍କର ସ୍ତ୍ରୀ ଭଲଲୋକ । ତାଙ୍କ ପାଖକୁ ଲେଖିଲେ ସେ କଅଣ କିଛି ସାହାଯ୍ୟ ଦେଇ ପାରିବେ ନାହିଁ ?

ପୁଣି ଭାବିଲି, ସେ ବା କରିବେ । ଛଅ ଛଅଟି ପୁଅ ନେଇ ଦାନସତ୍ର ମନସ୍ତାପ କରି କଟାଉଛନ୍ତି । ସେ କାହୁଁ ପାଇବେ ?

ଆଉ ଗୋଟାଏ କଥା ମୋ ମନକୁ ଆସିଲା । ସାହାଯ୍ୟ ନ ମାଗି ଆମର ଅବସ୍ଥା ତାଙ୍କୁ ଜଣାଇ ଦେଲେ କ୍ଷତି ହେବ ନାହିଁ । ମୋର ବାହାଘର କଥା ନିଶ୍ଚୟ ସେ ବାପାଙ୍କ ମୁହଁରୁ ଶୁଣିଥିବେ । ବାପା ଅବଶ୍ୟ ତାଙ୍କୁ ବିଧୁବାବୁଙ୍କ ଘରକଥା କହିଥିବେ । ଯଦି ଶରତ୍‌ବାବୁଙ୍କ ମନେ ପଡ଼େ କେଜାଣି ସେ ଚେଷ୍ଟା କରିପାରନ୍ତି ।

ମନେମନେ ବହୁତ ତର୍କ କରି ଶେଷକୁ ଠିକ୍ କଲି ଖଣ୍ଡେ ଚିଠି ଶରତ୍‌ବାବୁଙ୍କ ସ୍ତ୍ରୀଙ୍କ ପାଖକୁ ଲେଖିବି । ଦିନେକର ଦେଖାରେ ତାଙ୍କ କୋମଳ ମନର ପରିଚୟ ପାଇଛି । ସେ କେବେ ଅନ୍ୟଥା ଭାବିବେ ନାହିଁ । କାଗଜ କଲମ ଆଣି ଭାବି ଭାବି ଚିଠି ଲେଖିଲି ।

ଚିଠିରେ ତାଙ୍କୁ ବୋଉ ବୋଲି ସମ୍ବୋଧନ କରି ସତର୍କତାର ସହିତ ଆମର ଦୁଃଖ କଥା ଲେଖିଲି । ବୋଉ କପଟ ସବୁବେଳେ କାନ୍ଦି କାନ୍ଦି ଅସ୍ଥିର ହେଉଛି, ସେ କଥା ମଧ୍ୟ ଉଲ୍ଲେଖ କଲି । କନଅର ଷୀରରେ ଲଫାପା ବନ୍ଦ କରି ତା ଉପରେ ଠିକଣା ଲେଖିଲି । ସବୁ ତ ହେଲା, ଚିଠି ଯିବ କପଟ ? ଟିକଟ ଲଗାଇବାକୁ ପଇସା ନାହିଁ । ଡାକଘରକୁ ନେଇ ବେରିଙ୍ଗ ପକାଇବାକୁ ବା ଲୋକ କାହିଁ ?

କୂଅମୂଳେ ଠିଆହୋଇ ଭାବୁଛି, ବନ୍ଧ ଉପରେ ଦୁଧ ଭାର ନେଇ ଆର ଗାଁରୁ ଗଉଡ଼ ଯାଉଥିବାର ଦେଖିଲି । ସେମାନେ ନିତି କଟକ ଯାଆନ୍ତି, ସଞ୍ଜ ଦ ଘଡ଼ିକ ପୁଣି ଫେରି ଆସନ୍ତି । କାହାର ନାଁ ଜାଣେ ନାହିଁ । ସମସ୍ତଙ୍କୁ ଚହ୍ନେ । ପିଲାଦିନୁ ଦେଖି ଆସିଛି । ସେମାନେ ବି ପିଲାଦିନୁ ମତେ ଏଇଠି ଦେଖି ଆସୁଛନ୍ତି । ଲଜ୍ଜା କଅଣ ?

ଗୁରିଆଡ଼କୁ ଗୁହିଁ ବନ୍ଧ କଡ଼କୁ ଗଲି । ସେମାନେ ଯେପରି ପାଖକୁ ଆସିଲେ ଓଢ଼ଣା ଦେଇ ଚିଠିଟି ଜଣକ ଆଡ଼କୁ ବଢ଼ାଇ ଦେଲି । ପଛରେ ଯାଉଥିବା ଲୋକଟି ଚିଠି ଖଣ୍ଡି ମୋ ହାତରୁ ନେଇ ପଗୁରିଲା, ଟିକଟ ଲଗିନାହିଁ ମା ।

ମୁଁ କହିଲି, ବେରିଙ୍ଗ୍ ପକାଇ ଦେବ ।

ଗଉଡ଼ଟି ଆଶ୍ଚର୍ଯ୍ୟ ହୋଇ ମୋ ଆଡ଼କୁ ମୁହୂର୍ତ୍ତେ ଗୁହିଁଲା । ମୋର ରୂପ ଓ ବେଶ ଦେଖି ବୋଧହୁଏ ସେ ଆମର ଅବସ୍ଥା ଅନୁମାନ କଲା । ମୁଁ ତ ତାକୁ ପିଲାଦିନ ଦେଖି ଆସୁଛି, ନାମ ସିନା ଜାଣେ ନାହିଁ କି କେବେ କଥାଭାଷା

ହୋଇ ନାହିଁ । ମୁଁ କାହାର ଝିଅ ସେ ହୁଏତ ଜାଣିଥିବ । ନୋହିଲେ, ଦୁଃଖରେ ମୁହଁ ଶୁଖାଇ କାହିଁକି ସେ କହିଲା, ହଉ ମା, ମୁଁ ଚିଠି ପୋଷ୍ଟଅଫିସରେ ପକାଇ ଦେବ ।

ସେ ଆଗେଇ ଗଲା ।

୨୮

ମୁଁ ବାହଅଡ଼କୁ ଫେରିଲି । ଦେଖିଲି, ଦାମଭାଇ ଖଞ୍ଜା ଭିତରୁ ଆସୁଛନ୍ତି । ଆଶ୍ଚର୍ଯ୍ୟ ହୋଇ ଚାହିଁଲି ତାଙ୍କ ଆଡ଼କୁ ।

ପଚାରିଲେ, ଖୁଡ଼ୀ କାହାନ୍ତି ଗୀତା, ଦାଣ୍ଡ କବାଟ ବାଡ଼ କବାଟ ସବୁ ମୁକୁଳା । ଭାବିଲି, କୁଆଡ଼େ ଏମାନେ ଗଲେ ? ତୁ ଆସି ବାହଅଡ଼େ ।

ମନରେ ଭୟ ହେଲା । ଗଉଡ଼ଙ୍କୁ ଚିଠି ଦେବା କଅଣ ଦାମଭାଇ ଦେଖିଲେ ? କଅଣ ମନେ କରିଥିବେ ? ସଙ୍କୁଚିତ ହୋଇ କହିଲି, ବୋଉ ଗାଧା ଘରକୁ ଯାଇଛି ।

କେତେବେଳୁ ?

ଅଧଘଣ୍ଟାଏ ହେବ ।

ବାହାରେ ଥାଇଁଥାଇଁଆ ଖରା । ମୁଁ ନ ପାରି ଖଞ୍ଜା ଭିତରକୁ ଆସିଲି । ଦାମଭାଇ ମୋ ପଛେ ପଛେ ଆସିଲେ । ପିଣ୍ଡାରେ ଖଣ୍ଡେ ସପ ପାରିଦେଲି । ସେ ବସିଲେ । ପାନ ନାହିଁ । ତାଙ୍କର ଚର୍ଚ୍ଚା କରିବ କପରି ? ଗୁଆ ଦି ଖଣ୍ଡି ଭାଙ୍ଗି ଗୋଟିଏ କାଚ ଥାଳିଆରେ ତାଙ୍କ ପାଖରେ ଥୋଇ ଦେଇ ଦୁଆର ବନ୍ଧକୁ ଆଉଜି ଠିଆ ହେଲି ।

ସେ କେତେବେଳ ଯାଏ ତୁନ ହୋଇ ବସିଲେ । ମୁହଁ ଗମ୍ଭୀର ଦେଖା ଯାଉଥାଏ । କଅଣ ଭାବୁଥାନ୍ତି । ଭରସି କରି ପଚାରିଲି, ଭାଉଜ ବୋଉ କେମିତି ଅଛନ୍ତି ?

ମୋ ମୁହଁକୁ ଚାହିଁଲେ । ସାମାନ୍ୟ ହସି କହିଲେ, ଭଲ ଅଛନ୍ତି । ଟିକିଏ ରହି ଓଲଟି ପଚାରିଲେ, ଖୁଡ଼ୀ କେତେବେଳେ ଆସିବେ ?

ଆସୁଥିବ, ଆପଣ ବସନ୍ତୁ ଟିକିଏ ।

ସେ ପୁଣି ମୋ ମୁହଁକୁ ଚାହିଁ ହସିଲେ । ତୁନ ତୁନ କହିଲେ, ଆପଣ ?

ତାଙ୍କ ହସର ଅର୍ଥ ବୁଝିଲି । ତାଙ୍କୁ ମୁଁ ଆଗେ ତମେ ବୋଲି କହୁଥିଲି । ହଠାତ୍ ଆଜି ମୋ ପାଟିରୁ ଆପଣ ପଦଟି ବାହାରିଗଲା । ଆଗେ ସେ ବରାବର ଆସୁଥିଲେ । ଭଲଟାର ହେଉ ମନ୍ଦରେ ହେଉ ମୋ ସଙ୍ଗେ କଳିଆ କରୁଥିଲେ ।

ଏବେ ତ ଆଉ ଆସନ୍ତି ନାହିଁ । ଆସିଲେ ବି ମୋ ପାଖରୁ ଦୂରେଇ ରହନ୍ତି । କଥା ଭାଷା କରନ୍ତି ନାହିଁ । ଯେତେ ଆପଣାର ହେଲେ ମଧ୍ୟ ମଣିଷ ଦୂରେଇ ରହିଲେ ଡରମାଡ଼େ । ସେ ପର ହୋଇଯାଏ ।

ମୁଁ ଲାଜରେ ହୋଇ ଘର ଭିତରକୁ ପଶି ଆସିଲି ।

ସେ ପଚାରିଲେ, ରାଧା ଘରକୁ ଦିନଟାରେ ଯାଇଛନ୍ତି କାହିଁକି ?

କଅଣ ଉତ୍ତର ଦେବି ଭାବି ପାରିଲି ନାହିଁ । ଯେ ସୁଖରେ ଥାଏ, ତା ଆଖିକି ଅନ୍ୟର ଦୁଃଖ ଦେଖାଯାଏ ନାହିଁ । ଭାବିଚନ୍ତି କହିଲି, ମୁଁ ଜାଣେ ନାହିଁ ।

ତୁ ଜାଣୁ ନାହିଁ ?

ମିଛରେ କହିଲି, ନା—ଆଁ—।

ପଚାରିଲେ, ଗଉଡ଼ ହାତରେ କି ଚିଠି ଦେଉଥିଲୁ ? କାହାକୁ ?

ଯାହା ଡରୁଥିଲି ସେଇଆ ହେଲା । ଦାମଭାଇ ଦେଖିଛନ୍ତି । ଲୁଚାଇଲେ ଆଉ ଚଳିବ ନାହିଁ । କହିଲି, ହଁ, କାହାକୁ ।

ସଙ୍ଗେ ସଙ୍ଗେ ସେ ପଚାରିଲେ, ଆଜିକାଲି ଅମର କେଉଁଠି ଅଛି କି ?

ଅମର !

ସେ ଭାବିଛନ୍ତି ମୁଁ ଅମର ପାଖକୁ ଚିଠି ଲେଖି ଦେଇଛି । ମୁଣ୍ଡ ଘୂରିଗଲା । ବୃଥାରେ ଚିଠି ଖଣ୍ଡି ଲେଖିଲି । ହଟହଟା ହେବାକୁ ପଡ଼ିଲା । କାନ୍ଦ ମାଡ଼ିଲା । କୋହ ଚାପି ରଖିଲି, କାଳେ ମୋର ଦୁର୍ବଳ ମନର ପରିଚୟ ପାଇବେ । ଯାହା-ହେଉ, ଦାମଭାଇଙ୍କର ଯେ ମୋ ଉପରେ ମନଗଢ଼ା ସନ୍ଦେହ କେତେଦିନୁ ଜାଗି ଉଠିଛି, ଏଥିରେ ଭୁଲ ନାହିଁ । କିନ୍ତୁ ସେ ସନ୍ଦେହଟା କି ପ୍ରକାର ?

ପଚାରିଲେ, ଚୁପ ରହିଲୁ ଯେ !

କହିଲି, ଅମୁଭାଇଙ୍କ ଠିକଣା ମୋତେ ଜଣା ନାହିଁ ।

ସେ ହସି ଉଠିଲେ ।

ମୋତେ ବିରକ୍ତ ଲାଗିଲା । ତାଙ୍କ ଆଗକୁ ଆସି ପଚାରିଲି ରାଗିଲା ସ୍ୱରରେ, ଆପଣ ଭାବିଛନ୍ତି ମୁଁ ଅମୁଭାଇଙ୍କ ଚିଠି ଲେଖିଛି ?

ବିବ୍ରତ ନ ହୋଇ କହିଲେ, ମୁଁ ସେ କଥା କହୁନାହିଁ ।

ମୁଁ ଚୁପ ରହିଲି । ତାଙ୍କର ମନର ଧାରଣା ତାଙ୍କ ପାଖରେ ଥାଉ । ମୁଁ ଉପରେ ପଡ଼ି ତାଙ୍କୁ ଜବାବ ଦେବି ନାହିଁ । ବାରଆଡ଼କୁ ଚାଲି ଯାଉଥିଲି, ପଛରୁ ଡାକିଲେ, ଗୀତା, ଶୁଣ ।

ଫେରି ଆସି ପଚାରିଲି, କଅଣ ?

ରାଗିଲୁ କି ?

ତାଙ୍କର ନରମ ସ୍ୱର, ସହାନୁଭୂତି ପରଶଲଗା ପ୍ରଶ୍ନଟି ଶୁଣି ଉତ୍ତର ଦେଇ ପାରିଲି ନାହିଁ । ମୋ ଆଖିରେ ଲୁହ ଟଳ ଟଳ ହେଲା ।

କହିଲେ, ଗୀତା, ତୋ ମନରେ ଦୁଃଖ ବା ଆଘାତ ଦେବାକୁ ମୁଁ ଆସି ନ ଥିଲି । ମୋର ଜଳିଲା ପୋଡ଼ିଲା ମନ ଆପେ ଆପେ ଅଭିମାନିଆ କଥା କେଇପଦରେ ପଦାକୁ ବାହାରି ଆସିଲା । ମନରେ ଧରିବୁ ନାହିଁ । ତୋତେ ଏକୁଟିଆ ପାଖରେ ଦେଖିଲେ ମୋର କେତେ କଥା ମନେ ପଡ଼ିଯାଏ । ମନ ପାଗଳ ହୋଇ ଉଠେ । ସେଇଥିପାଇଁ ତ ଇଆଡ଼େ ଆସେ ନାହିଁ । ଆସିଲେ ବି ତୋ ସଙ୍ଗେ କଥାଭାଷା ନ କରି ଚାଲିଯାଏ । ନିଜର ଦୁଃଖ ନେଇ ମୁଁ ଥାଏ । ତୁ ମତେ ଘୃଣା କରୁ, କରୁ, ମୁଁ, ନା, କହିବି ନାହିଁ । ଜାଣେ ତୁ ହସିବୁ । ଯିଏ ଯାହାକୁ ଭଲ ପାଏ, ଆଉ ସେ ଯଦି ତାର ପ୍ରତିଦାନ ନ ପାଏ, ତାଅର ମନରେ ଈର୍ଷା ହୁଏ । ମୋଓର ଈର୍ଷାକୁ ମୁଁ ମୋର ପୋଡ଼ିଲା ପାଉଁଶ ତଳେ ଘୋଡ଼ାଇ ରଖିଥାଏ ।

ଆଖିରୁ ଲୁହ ପୋଛିଲି । ସେ ଉଠି ଠିଆ ହେଲେ । ମୋର ହାତଟି ଧରି କହିଲେ, ଯାଉଚି । ଖୁଡ଼ୀ ଆସିଲେ କହିଦେବୁ ଗୋଟାଏ ଜରୁରୀ କାମରେ ଆସିଥିଲି । ବାପା ପଠାଇଥିଲେ । ପୁଣି ସଞ୍ଜବେଳେ ଆସିବି ।

ମନର କୋହ ଦମନ କରି କହିଲି, ବୋଉ ଆସୁଥିବ, ବସନ୍ତୁ ।

ହସି ହସି ମୋର ହାତଟିକୁ ଚିପିଧରି କହିଲେ, ନିଜକୁ ଯେତେ ବୁଦ୍ଧିଆ ମଣୁଛୁ, ସେତେ ବୁଦ୍ଧିଆ ତୁ ନୋହୁ । ଘରେ ତୁ ଏକୁଟିଆ ଅଛୁ ପରା ।

ସତେ କି କେଉଁ ଅନିଚ୍ଛାରେ ଧୀରେ ଧୀରେ ସେ ମୋର ହାତଟି ଛାଡ଼ିଦେଇ ଦାଣ୍ଡ ଦୁଆରି ମୁହଁକୁ ଗଲେ । ମୁଁ ତାଙ୍କ ପଛେ ପଛେ କବାଟ ବନ୍ଦ କରିବାକୁ ଗଲି । ଦେଖିଲି, ବିମଳା ଭାଇଙ୍କ ସ୍ତ୍ରୀ ରେଣୁର ହାତ ଧରି ଆମରି ଘର ଆଡ଼କୁ ମୋହିଁଛନ୍ତି । ଦାମଭାଇଙ୍କୁ ଦେଖି କଅଣ ପଚାରିଲେ । ଦାମଭାଇ ତାଙ୍କୁ କଅଣ ଉତ୍ତର ଦେଇ ଚାଲିଗଲେ ।

ତାଙ୍କୁ ଦେଖି ମୋର ପିଣ୍ଡରୁ ସତେକି ଅଧେ ପ୍ରାଣ ଉଡ଼ିଗଲା । କବାଟ ଖୋଲି ତାଙ୍କୁ ଅପେକ୍ଷା କରି ରହିଲି ।

## ୨୯

ବିମଳା ଭାଇଙ୍କ ସ୍ତ୍ରୀଙ୍କୁ ଆଦର କରି ନେଇ ପିଣ୍ଡାରେ ବସାଇଲି । ରେଣୁ ତାଙ୍କ ପାଖରେ ବସିଲା । ଭାବୁଥାଏଁ, ଅଦିନିଆ ମେଘପରି ହଠାତ୍ ସେ ଆମ ଘରକୁ ଆସିଛନ୍ତି କାହିଁକି ? ଦିନେ କାଳେ ତାଙ୍କର ପାଦ କାହାରି ଘରେ ପଡ଼େ ନାହିଁ । ଗପ କରିବାର ଇଚ୍ଛା ନ ଥିଲେ ମଧ୍ୟ ଗପରେ ମନକୁ ମନ ଫୁଲି ଉଠୁଥାନ୍ତି ସବୁଦିନେ । କାହାରି ଆନନ୍ଦ କି ଶିରୀ ତାଙ୍କ ଆଖିରେ ଯାଏ ନାହିଁ ।

ସେ ଗମ୍ଭୀର ହୋଇ ବସିଥାଆନ୍ତି । ମୁଁ ଡର ଡର ସନ୍ଦେହଭରା ସ୍ୱରରେ ଓଠ ନପରକୁ ଟାଣି ଆଣି ପଚାରିଲି, ଅସୁସ୍ଥ କି ଅପା ? ମନେ ହେଉଛି ତ ପଚାରି ନାହିଁ, ଭାଉଜ ବୋଉ ।

କଳା ମେଘରେ ବିଜୁଳି ଖେଳିଲା ପରି ତାଙ୍କ କଳା ମିଚମିଚ ମୁହଁରେ ଦାନ୍ତ ଦି ପାଟି ଖୋଲିଗଲା । ଆଖି ମିଟିମିଟି କରି ନାକ ଫୁଲାଇ କହିଲେ, ତମକୁ ଦେଖିବାକୁ ପରା ଆସିଥିଲେ ଗୋ, ଖୁଡ଼ୀ କାହାକି ।

ସମ୍ପର୍କରେ ସେ ଅନ୍ଧା ହେବେ । ପରିହାସ କରି ପଚାରିଲି, ଶୁଣିଥିଲି କି ଆମେ ବାଧିକା ପଡ଼ିଛୁଁ ?

ସେମିତି କିଛି ଶୁଣି ନ ଥିଲି । ତମକୁ ଦେଖି ମନେ ହେଉଛି, ତମେ ବାଧିକା ପଡ଼ିଥିଲ ।

ରେଣୁ ତାଙ୍କ କଥାରେ କଥା ମିଶାଇ କହିଲା, ହଁ ଲୋ ଗୀତା ଅପା, ତତେ ଦେଖିଲେ ଚିହ୍ନି ହେଉ ନାହିଁ ! ତୁ ଶୁଖି ଯାଉଛୁ ।

କମଳା ଭାଇଙ୍କର ସ୍ତ୍ରୀ ପୁଣି ହସିଲେ । କହିଲେ, ଆଲୋ ତୁ ଜାଣିବୁ କଅଣ ? ଲୁଣ ଖାଏ ହାଣ୍ଡି, ଚିନ୍ତା ଖାଏ ଗଣ୍ଡି । ପିଲାଟାର କଣ୍ଠା ଦୋହଲୁଛି । ଖୁଡ଼ୀ କାହାକି ଗୀତା, ତାଙ୍କୁ ଗୋଟିଏ ଗୁପ୍ତ କଥା ପଚାରିବାକୁ ଆସିଥିଲି ।

ଗୁପ୍ତକଥା ! ବୋଉ ସଙ୍ଗେ ସ୍ୱାମୀଙ୍କର ପୁଣି ଗୋଟାଏ ଗୁପ୍ତକଥା କଅଣ ଥାଇପାରେ ? ନିଶ୍ଚୟ କିଛି କାଣ୍ଡ ଘଟିଛି । କହିଲି, ବୋଉ ରାଧା ଘରକୁ ଯାଇଛି ।

ରାଧା ନା ଶୁଣି ତାଙ୍କ ମୁହଁ କେଶରା ପଡ଼ିଗଲା । ସେ ଅଗ୍ରହ ଭଙ୍ଗା ସ୍ୱରରେ ପଚାରିଲେ, କାହିଁ କି ?

କହିଲି, ଜାଣେନାହିଁ ।

କେତେବେଳେ ଆସିବେ ?

କହିଲି, କେତେବେଳୁ ତ ଗଲାଣି, ଆସୁଥିବ ।

ଆଶ୍ଚର୍ଯ୍ୟ ହେଲାପରି ମନକୁ ମନ କହି ଉଠିଲେ, କେତେବେଳୁ ଗଲେଣି ? ମୋ ଆଡ଼କୁ ଅନାଇ ପଚାରିଲେ, ଦାମ ଆସିଥିଲେ ଯେ !

ଉତ୍ତର ଦେବାକୁ ଭାଷା ଖୋଜି ପାଇଲି ନାହିଁ । ଯେଉଁ କଥାକୁ ଡରୁଥିଲି ତାହାହିଁ ହେଲା ଶେଷକୁ । ମୁହଁ ଟାଣ କରି କହିଲି, ହଁ ସେ ଆସିଥିଲେ ।

ଅମୋଦିତ ହୋଇ କହିଲେ, ଓଃ, ତାଙ୍କର ପାଇଁ ପିଣ୍ଡାରେ ସପ ପଡ଼ିଥିଲା ପରା, କାଚ ଥାଳିଆରେ ଗୁଆ ବଢ଼ା ହୋଇଥିବ । ତୁମେ ତାଙ୍କ କଥା କହ ଗୀତା, ଆଉ ହୁଅ ନାହିଁ ?

ମୋ ମୁହଁ ଶୁଖିଗଲା । ଏତେବେଳେକେ ବୁଝିଲି ତାଙ୍କର ଉଦ୍ଦେଶ୍ୟଟା ସେତେ ଭଲ ନୁହେଁ । ମୋଠିରୁ ମୁହଁରୁ ରେଣୁ ଆଗରେ ଶୁଣି କଥାକୁ ବଢ଼ କରି

ଗାଁର ପାଞ୍ଚଜଣଙ୍କ ପାଖରେ ଦୁର୍ନାମ କରିବାକୁ ସେ ଏଡ଼େ ବ୍ୟଗ୍ର ହୋଇ ଧାଇଁ ଆସିଛନ୍ତି । ତଥାପି ଭଲରେ ଯେତେବେଳେ ପଚାରୁଛନ୍ତି, ଉତ୍ତର ନ ଦେଲେ ନ ଚଳେ । ଦୁର୍ନାମ କରିବେ ତ ମନ ଇଚ୍ଛା କରନ୍ତୁ ।

କହିଲି, ପିଲାଦିନୁ ତାଙ୍କୁ ମୁଁ ଆଉ ଛୁଏଁ ନାହିଁ, କଥା କହେ ।

ଥଟ୍ଟା କରି କହିଲେ, ଜନ୍ମରୁ କିଏ କାହାକୁ ଆଉ ଛୁଏଁ ନାହିଁ । ଝିଅ ପିଲାର ବୟସ ହେଲେ ମଣିଷର ଗୁଳ ପଡ଼ିଲେ ତ ଲାଜ ମାଡ଼େ । ଗାଁରେ ଏତେ ଲୋକ ଅଛନ୍ତି, ସମସ୍ତଙ୍କୁ କାହିଁକି ଲୁଚ, ଏକା ଏଇ ଦାମକୁ କଥା କହ ବା ?

ରାଗରେ ମୋର ବନ୍ଧୁ ଜଳି ଉଠିଲା । ମନରେ କୁତ୍ସିତ ଧାରଣା ନେଇ ସେ ଆସି ତର୍କ ତାର୍କରେ କଥା କହୁଛନ୍ତି । ତାଙ୍କୁ ମୁଁ କି ଉତ୍ତର ଦେବି ? କଅଣ ଗୁଡ଼ାଏ କହି ପକାଇବି ବୋଲି ଭାବିଥିଲି । ରାଗକୁ ଦମନ କରି ଥରିଲା କଣ୍ଠରେ କହିଲି, କାହିଁକି, ଷଣ୍ଢ କଅଣ ହେଲା ? ଦାମଭାଇ ମତେ ନିଜର ଭଉଣୀ ପରି ଭଲ ପାଆନ୍ତି । ମୁଁ ତାଙ୍କୁ ସେମିତି ଭକ୍ତି କରେ ।

ମୋ ତୁଣ୍ଡରୁ କଥା ଛଡ଼ାଇ ନେଇ କହିଲେ, ହଁ, ହଁ, ସେଇଥିପାଇଁ ତମକୁ ବାହା ହେବାକୁ ଦିନେ ସେ ଝିଅଙ୍କ ଧରି ବସିଥିଲେ ପରା । ତମ ଦୋଷ ମୁଁ ଦେଉ-ନାହିଁ ଗୀତା । ଖୁଡ଼ୀ ଭଲ ମଣିଷ । ଅନ୍ଧାର ଆଲୁଅ ତାଙ୍କ ଆଖିରେ ସବୁ ସମାନ । ହେଲେ, ତାଙ୍କର ବୁଝିବା ଦରକାର ଝୋଟକୁ ନିଆଁ ଖରି, ପୋଡ଼ିଯାଏ ଫର୍ ଫର୍ ।

ରେଣୁ କହିଲା, ତମେ ଗୀତା ଅପା ସାଙ୍ଗରେ ଏତେ ଲାଗ କାହିଁକି ? ହୋଉଥିପାଇଁ ଆସିଥିଲ ସେ କଥା କହ ନା ।

ବିମଳାଭାଇର ସ୍ତ୍ରୀ କହିଲେ, ଅଲୋ ରେଣୁ, ଗୀତା ମୋର ନଣନ୍ଦ ଲେଖା, ତା ସଙ୍ଗେ ଟିକିଏ ଥଟ୍ଟାରେ ଲଗାଇବାକୁ ମନ ହୁଏ । ଲୋକେ ପଛେ ଅବଗୁଣ ପାଆନ୍ତୁ, ମୁଁ ଭଲ କଥା କହେ । ତୁ ସିନା ପିଲାଲୋକ, ଗୀତା କଣ୍ଟ ପିଲା ହୁଅ ନୁହିଁ । ସେ କଅଣ ଜାଣେ ନାହିଁ, ନଗ୍ନେଲା ଘରେ ଟୋକାଟା ପାଖରେ ଟୋକୀ, ପରକୁ ପର, ଲାଜ ସଙ୍କୋଚ ନାହିଁ, ଡର ଭୟ ନାହିଁ । କଅଣ ହୁଏ ?

ହତାଶ ହୋଇ ବସି ପଡ଼ିଲି ତାଙ୍କର ପାଖରେ । ବୋଉ ଉପରେ ରାଗ ହେଲା । ଘଣ୍ଟାଏ ହେଲା ଗଲାଣି, ଏତେବେଳଯାଏ ଫେରୁ ନାହିଁ । ସେ ଥିଲେ ବିମଳା ଭାଇର ସ୍ତ୍ରୀ କଣ ପାଣିରେ ସର ପକାଇ ମୁହଁକୁ ଗୁହଁ ଗୁହଁ ଏପରି ନିନ୍ଦା କରି ଚରିତ୍ର ଉପରେ ଆଞ୍ଚ ଦେଇ କଥା କହି ପାରନ୍ତା ? ଯାହା ହେଉ, ମୋର ସହିବାର ସୀମା ଟପିଲା । ଧୈର୍ଯ୍ୟ ଭାଙ୍ଗିଲା । ଦୁର୍ନାମ ତ କଲେଣି ଆଉ ଅଧିକ କଅଣ କରିବେ ? ମୁହେଁ ମୁହେଁ ଜବାବ ଦେବି । ଆଖିରେ ଲୁହ ଅଟକାଇ ଥରିଲା ସ୍ୱରରେ ପଚାରିଲି, କଅଣ ହୁଏ ଭାଉଜ ବୋହୂ ।

ମୋ ପିଠରେ ହାତ ଦେଇ କହିଲେ, ଅହା ହା, ଜାଣିନାହିଁ ସତେ । ତମ ଆଖି ମୁହଁ ତ କହିଦେଉଛି । ଅଗୋ ଗୀତା, ତମର କି ଦୋଷ । ବୟସ ହେଲେ ସମସ୍ତଙ୍କ ମନ ଅରମାକୁ ଧାଏଁ । ତା ଆଗରୁ ବୁଦ୍ଧିଆ ଗଉଡ଼ ଦମ୍ଭ ଖୁଣ୍ଟ ଦେଖି ଠାଣ ସମୟରେ ଗାଈକୁ ବାନ୍ଧେ । ସେତକ ନ କଲେ ଗାଈ ମାଈର ଦୋଷ ଗୁଣ ଧରିବ କିଏ ? ଆମେ କଅଣ ଝିଅ ହୋଇ ନ ଥିଲୁ କି ?

ତାଙ୍କୁ କିଛି କହିବା ଆଗରୁ ସେ ଉଠି ଠିଆ ହେଲେ । କହିଲେ, ଆସ ରେଣୁ ଯିବା । ଖୁଡ଼ୀ ଆସୁ ଆସୁ କେତେ ଡେରି ହେବ । ଘରଧନ୍ଦା ଛାଡ଼ି ଆସିଥିଲି । ଆସ ।

ସେ ଦାଣ୍ଡ କବାଟ ଆଡ଼କୁ ଗଲେ । ରେଣୁ ଉଠିଲା । ମୁଁ ତା ହାତ ଧରି ଅଟକାଇ କହିଲି, ତୁ ରହ ରେଣୁ, ପଛେ ଯିବୁ ।

ମୋ ମନର ଦୁଃଖ ରେଣୁ ବୁଝି କହିଲା, ତମେ ଯାଅ, ମୁଁ ପଛରେ ଯିବି ।

ମୁହଁ ବୁଲାଇ ବିମଳା ଭାଇର ସ୍ତ୍ରୀ କହିଲା, କାହିଁକି ବା ? ଗୀତା କଅଣ ତମ ମାଙ୍ଗ ସାଙ୍ଗସା ? ତମ ବୋଉ ଶୁଣିଲେ ଗାଳି ଦେବେ ।

ରେଣୁ ମୁହଁ ଫଣ ଫଣ କରି କହିଲା, ବୋଉ ତମକୁ ଚିହ୍ନେ, ମୋ ଗୀତା ଅପାକୁ ବି ଚିହ୍ନେ । ତମ ସଙ୍ଗେ ଆସିଥିଲି ଶୁଣିଲେ ସେ ବେଶୀ ଚିଡ଼ିବ ।

କହିଲେ, ଜାଣିଥିଲୁ ତ ଆସିଲୁ କାହିଁକି ?

ରେଣୁ କହିଲା, ଆସିଥିଲି କଅଣ ତମକୁ ଜଗିବାକୁ ? ଗୀତା ଅପା ପାଖକୁ ଆସୁଥିଲି । ତମ ସଙ୍ଗେ ଦେଖା ହେଲା ସିନା ।

କହିଲେ, ଯାଉଛି ଲୋ, ତୋ ବୋଉ ଆଗେ ସବୁ କହିବି ।

ରେଣୁ କହିଲା, ହଉ ଯା—ଯା— ।

୩

ରେଣୁ କବାଟ ବନ୍ଦ କରି ମୋ ପାଖକୁ ଫେରି ଆସିଲା । ପିଲାଟାଏ ସେ, ମୋ ମନ ଭିତରର କୁହୁଳା ଦୁଃଖ କଅଣ ବୁଝିବ ? ମୋ ଆଖିରେ ଲୁହ ଦେଖି ଏଣୁ ତେଣୁ କଅଣ ବୁଝାଇ କହିଲା, ମନେ ନାହିଁ । ଲୁହ ପୋଛି କହିଲି, ମିଛ ଅପବାଦ ଦେଇ ମୋଉପର ଦୁର୍ନାମ କରିବାକୁ ସେ ଆସିଥିଲେ ରେଣୁ; ହଉ, ତାଙ୍କର ମନ ବୋଧ ହେଉ ।

ରେଣୁ ବିରକ୍ତ ହୋଇ କହିଲା, ତୁ ଭାରି ଓଲୁ । ମୁହେଁ ମୁହେଁ ଗୃହପଦ ବତାଇ ଦେଲୁ ନାହିଁ ? ମୁଁ ହୋଇଥିଲେ ତାର ଖଣ୍ଡିଆ ଚୁଟି କେଗ୍‌ରକ ଛିଣ୍ଡାଇ ଦେଇଥାନ୍ତି । ଭାରି କୁହାଳିଆ ହୋଇଛି !

କହିଲି, ରେଣୁ, ଯାହାର କପାଳ ପୋଡ଼ା, ନ କହିଲେ ଲୋକ ତାକୁ ଦେଖିଲେ ଗୃହପଦ କହିବେ । ମନରେ ଦୁଃଖ ହୁଏ, କାନ୍ଦ ମାଡ଼େ । ସେଥିକି କଅଣ କରିବା ? ବିମଳା ଭାଇର ସ୍ତ୍ରୀ ଆଜି ଏଇଥିପାଇଁ ଆସିଥିଲେ ।

ରେଣୁ କହିଲା, ନାଇଁ ଗୀତା ଅପା, ସେ ଆସିଥିଲେ ଭିନେ କାରଣରେ । ବାଟରେ ତୋ ରୂପ ଗୁଣକୁ ପ୍ରଶଂସା କରୁଥିଲେ । କହୁଥିଲେ, ତାଙ୍କର ଗୋଟିଏ ଦୂର ସମ୍ପର୍କର ଦିଅର ଅଛନ୍ତି । ବାରଦା ଗାଁରେ ଘର । ସେହି ବିଷୟରେ ତୋର ବାହାଘର ପ୍ରସ୍ତାବ ନେଇ ସେ ଆସିଥିଲେ ।

ବାରଦା ନାଁ ଶୁଣି ମୁଁ କଥାଟା ବୁଝିନେଲି । କଣ୍ଟମୁଁ ଅଜୁ ଭାଇର ବାହାଘର ପ୍ରସ୍ତାବ ନେଇ ସେ ଆସିଥିଲେ । ଆଖି ଆଗରେ ଅମୁ ଭାଇର ସୁନ୍ଦର ହସ ହସ ମୁହଁଟି ଠିଆ ହେଲା । ମନ ମଉଳିଗଲା । କଥାର ଗତି ବଦଳାଇବାକୁ ମୁଁ ଏଣୁ ତେଣୁ ପଚାରିଲି । ସେ ମୋ କଥାର ଉତ୍ତର ନ ଦେଇ ଗେହ୍ଲାଳିଆ କରି ପଚାରିଲା, ତୋ ମନକୁ କେମିତି ପାଉଚୁ ଗୀତା ଅପା ? ଭଲ ଘର, ଭଲ ବର । ହେଲେ ତୋ ବରଟା କଳା ମିଚମିଚ ଭୁଷୁଣ୍ଡା ଗଧ ହେବ । ମୁଁ ଦେଖିଚୁ ଯେ—

ହସି ହସି ତା ଗାଲରେ ହାତ ମାରି କହିଲି, ତୁ ଭାରି ଦୁଷ୍ଟ, ରେଣୁ ।

ସେ ଜିଗର ଧରି ପଚାରିଲା, କହ ଅପା, ତୋ ମନକୁ କେମିତି ପାଉଚୁ, କଳା ମଣିଷ ଦେଖିଲେ ତୁ ପରା ଡରୁ ।

ତୁନି ତୁନି ତା କାନ ପାଖରେ କହିଲି, ରେଣୁ, ବଡ଼ ହେଲେ ବୁଝିବୁ । ଯିଏ ଯାହା ଖୋଜେ, ସେ ତା ପାଏ ନାହିଁ । ଯାହା କପାଳରେ ଥିବ ହେବ । ସେଥିକି ଆଗରୁ ଭାବି ବସିଲେ ଲାଭ ନାହିଁ ।

ରେଣୁ କହିଲା, କାନ୍ଦୁ, କଳା ମଣିଷ ......

କହିଲି, ବାଛ ନା ଲୋ, କାହା କପାଳରେ କଅଣ ଅଛି କିଏ ଜାଣେ ?

ସେ ହସି ହସି ମୋଓର କୋଳରେ ଲୋଟି ପଡ଼ିଲା ।

ବୋଉ ଡାକିଲା ଦାଣ୍ଡରୁ, ଗୀତା... ।

ଜବାବ ଦେଲି, ଯାଉଚି ।

ରେଣୁର କାନରେ କହିଲି, ତତେ ମୋ ରାଣ ରେଣୁ, ବିମଳା ଭାଇଙ୍କ ସ୍ତ୍ରୀ ଯାହା ସବୁ କହିଗଲେ ବୋଉକୁ କିଛି କହିବୁ ନାହିଁ । ତା ମନରେ ଦୁଃଖ ହେବ ।

କବାଟ ଖୋଲିଲି । ବୋଉ ଓ ରାଧା ଦିହେଁ ଘରକୁ ଆସିଲେ । ରେଣୁକୁ ଦେଖି ରାଧା କହିଲା, କି ଗୋ ଦେଈ, ତୁମେ କୁଆଡ଼େ ?

ରେଣୁ କହିଲା, ଆସିଥିଲି ବିମଳାଭାଇ ଭାଉଜା ସାଙ୍ଗରେ । ବଡ଼ମାକୁ ଅପେକ୍ଷା କରି ସେ ଏଇକ୍ଷଣି ଗଲେ । ମୁଁ ରହିଚି ତୋ ସଙ୍ଗେ ଯିବି ।

ରାଧା ମୁହଁ ମୋଡ଼ି କହିଲା, ସେଇଟା କାହିଁକି ଆସିଥିଲା ବା ?

ରେଣୁ ତାଙ୍କର ଆସିବା ଉଦ୍ଦେଶ୍ୟ କହିଲା । ବୋଉ କହିଲା, ଅଟକାଇଲୁ ନାହିଁ, ରେଣୁ ! କମଳାର ସ୍ତ୍ରୀ, ଟିକିଏ ଭଲ ମଣିଷ ।

ରାଧା ଗୋଟିଏ ଠୋଙ୍ଗାରେ ଗୁଡ଼ ଆଣିଥିଲା । ପିଣ୍ଡା ଉପରେ ଥୋଇ-ଦେଇ କହିଲା, ନିଅ ଦେଇ । ଅଗ ଗୋଟିଏ ବସେଇବଟି । କାଲି ସଞ୍ଜରୁ ଉପାସ ପଡ଼ିଛ, ମତେ ଟିକିଏ ଖବର ଦେଲ ନାହିଁ ?

ଗୁଡ଼ ଠୋଙ୍ଗାଟି ନେଇ ରୋଷଘରକୁ ଗଲି । ରାଧା ରେଣୁକୁ ସଙ୍ଗରେ ନେଇ ଫେରିଲା ।

ବୋଉ ଆସି କହିଲା, ଝିଅ ଲୋ, ଥାଳି ଘଟି ବନ୍ଧା ନେଇ ଠଙ୍କା ଦି ତିନିଟା ପାଇଁ ରାଧା କେତେ ଘର ବୁଲିଲା । ମୁଁ ତା'ଅର ଘରେ ଅପେକ୍ଷା କରି ରହିଲି । ସେଇଥିପାଇଁ ଡେରି ହେଲା । ଜଗବନ୍ଧୁ ବିଚରା ଥାଳିଖଣ୍ଡି ରଖି ଠଙ୍କା ଦିଓଟି ଦେଲା । ଗୋଟିଏ ଠଙ୍କା ରାଧାକୁ ଦେଲି, ନଥିଲା, କେତେ ଲୁହା ବୋଲିରେ ନେଲା । ଠାକୁରେ ଏମିତି ଆଉ କେତେଦିନ ଚଳାଇବେ ମା । ବାପ ତୋର ଚାଲିଗଲେ । କେଡ଼େ ନିଦାରୁଣ ସେ ! ମୋତେ ଭଲି ସଙ୍ଗରେ ନେଇ ଯାଇଥାନ୍ତେ ।

ବୋଉକୁ କହିଲି, ମୁକୁଲେଇବାର ଆଶା ନାହିଁ । ବନ୍ଧା ଦେଲୁ କାହିଁକି ? ବିକ୍ରି କରି ଦେଇଥିଲେ ଭଲ ହୋଇଥାନ୍ତା ।

ବୋଉ କହିଲା, କିଣିବାକୁ ଏ ଗାଁରେ କେହି ରାଜି ହେଲେ ନାହିଁ ।

କଥାର ସୁଅ ବଦଳାଇ କହିଲି, ତୁ ଗଲାପରେ ଦାମଭାଇ ଆସିଥିଲେ । ମଦନ କେଠା କାହିଁକି ପଠାଇ ଥିଲେ । ଅନେକ ସମୟ ଅପେକ୍ଷା କରି ସେ ଚାଲିଗଲେ ।

ବୋଉ ପଚାରିଲା, କାହିଁକି ପଠାଇଥିଲେ ?

କହିଲି, ମୋତେ କିଛି କହିଲେ ନାହିଁ । ସଞ୍ଜକୁ ଆସିବେ କହିଛନ୍ତି ।

## ୩୧

ସଞ୍ଜବେଳେ ଦାମଭାଇ ଆସିଲେ ।

କମଳା ଭାଇଙ୍କର ସ୍ତ୍ରୀ ସେଦିନ ମୋତେ ଯେଉଁ ଶିକ୍ଷା ଦେଇ ଯାଇଥିଲେ ତା'ଅର ଫଳରେ ମୁଁ ଆଉ ତାଙ୍କ ପାଖକୁ ନ ଯାଇ ରୋଷଘରକୁ ଆସିଲି । ଆଉ ହେବା ଲୋକର ଆଗକୁ ହଠାତ୍ ଗଲେ ଯେମିତି ଖରାପ ଲାଗେ, ଆଉ ନ ହେବା ଲୋକ ପାଖରୁ ଦୂରେଇ ରହିଲେ ସେମିତି ଲାଗେ । କାଳେ ସେ ପାଖକୁ ଡାକିବେ, କ'ଣ ପଚାରିବେ, ଜବାବ ଦବାକୁ ତ ପଡ଼ିବ ।

ଦାମଭାଇ ମୋତେ ଆଉ ଡାକି ନାହାନ୍ତି । ପିଣ୍ଡାରେ ବସି ବୋଉ ସଙ୍ଗେ କଥା ଭାଷା ହେଲେ । ମୁଁ ରୋଷଘରେ ବସି ସବୁ ଶୁଣୁଥାଏଁ ।

ଦାମଭାଇ କହିଲେ, ଆଜି ସକାଳେ ବାପା ବୋଉ ଦୁହେଁ ମୋତେ ଡାକି ତମ ପାଖକୁ ପଠାଇଥିଲେ । ବାପା କହିଲେ, ଭୋଳଦାଦ ତ ଚାଲିଗଲେ, ଥାଉଁ-ଥାଉଁ ଝିଅଟାକୁ ଉଠାଇ ଦେଇ ଗଲେ ନାହିଁ । ଭଲ ଘର ଭଲ ବର ଖୋଜୁ ଖୋଜୁ ଝିଅକୁ ଦରବୁଢ଼ୀ କଲେ । ଯାହା ହେବାର ତ ହୋଇଛି । ଏବେ ଯେ କୌଣସି ଜାଗାରେ ନିମିତ୍ୟ ଉଠାଇବାକୁ ହେବ । ଆହୁରି ଡେରି କଲେ ନାଁ ନିନ୍ଦା, ଗାଁ ନିନ୍ଦା, ବାଛନ୍ଦ ପଡ଼ିବ । ବାପା ପୁଣି କହିଲେ ଆମର ଗୁମାସ୍ତା ହାଡ଼ିବନ୍ଧୁର ସାନଭାଇ ଜଟିଆ ବିଷୟରେ ସମ୍ବନ୍ଧ କଲେ ଭଲ ହେବ ।

ପ୍ରସ୍ତାବ ଶୁଣି ଦାମଭାଇଙ୍କ ବୋଉ ଜୁଆଡ଼େ ବିରକ୍ତ ହେଲେ । କହିଲେ, ଜଟିଆଟା ସଂକ୍ରାନ୍ତ ପୁରୁଷ, ଶ୍ୱାସ ରୋଗୀ, ପ୍ରାଣ ଯାଉଛି କି ଆଉଛି, ତହିଁରେ ପୁଣି ଗଜମୂର୍ଖ । ଚୂରି ପଇସା ରୋଜଗାର କରିବାର ଶକ୍ତି ନାହିଁ । ହାଡ଼ିଆ କଅଣ ତାକୁ ସବୁଦିନେ ପୋଷିବ ?

ତାଙ୍କ ବାପା ରଡ଼ି ଉଠିଲେ । କହିଲେ, ପ୍ରସ୍ତାବ ପଡ଼ୁ ପଡ଼ୁ ତମେ ଆଗରୁ ଭାଙ୍ଗୁଛ କାହିଁକି ? ତାଙ୍କର ଯେଉଁ ଅବସ୍ଥା, ଝିଅର ଯେଉଁ ବୟସ, ସେଥିରେ ତାଙ୍କୁ ଆଉ ଭଲ ପାତ୍ରଟାଏ ମିଳିବ ନାହିଁ । ଭାଗ୍ୟରେ ଥିଲେ ସେଇ ଜଟିଆକୁ ପୁଣି ଦିନେ ଦେଖିବ ।

ତାଙ୍କ ବୋଉ ତୁନି ରହିଲେ । ତାଙ୍କ ବାପା ତାଙ୍କୁ ଡାକି କହିଲେ, ତୁ ଗୀତାବୋଉର ପାଖକୁ ଯା, ତାଙ୍କୁ ବୁଝାଇ କହିବୁ । ଏ ପ୍ରସ୍ତାବରେ ସେ ମଙ୍ଗନ୍ତୁ । ହାତରେ ଗୋଡ଼ରେ ଲାଗିବ ନାହିଁ । ସୁରୁଖୁରୁରେ ବାହାଘର ହୋଇଯିବ ।

କହ ଖୁଡ଼ି, ତମର ମତ କଅଣ ?

ବୋଉ ଉତ୍ତର ଦେଇ ପାରିଲା ନାହିଁ । ଭାବିବାକୁ ଲାଗିଲା । ଅନ୍ଧାର ଘରେ ମୁଁ କାନ ପାରି ବସିଥାଏଁ । ବୋଉ କଅଣ କହିବ ଶୁଣିବାକୁ ଅଧୀର ପ୍ରାଣ ଠାକି ରହିଥାଏ । ସତେ ସେ ମଙ୍ଗିବ ?

ପଦଟିଏ ହଁରେ ମୋର ଜୀବନ ଯୌବନ, ଆଶା ଅଭିଳାଷ ପୋଡ଼ି ଛାରଖାର କରିଦେବ । ପ୍ରତିବାଦ କରି ପାରିବ ନାହିଁ । ନୀରବରେ ମଥା ପୋତି ବିନା ଦୋଷରେ ନିହତ ଦଣ୍ଡକୁ ଗ୍ରହଣ କରିବ । ବୋଉ, ରକ୍ତ ମାଂସରେ ଦେହଟା ମୋର ଗଢ଼ିଛି ଯେଉଁ ବୋଉ, ତାର ଅବାଧ୍ୟ ମୁଁ ହୋଇ ପାରିବ ନାହିଁ ।

ଦୀର୍ଘଶ୍ୱାସ ଛାଡ଼ି ବୋଉ ପଚାରିଲା, ଦାମ, ମୋର ଜବାବ ମାଗିବା ଆଗରୁ ମୁଁ ତମକୁ ପଚାରୁଛି ତମେ କହ, ତମର ମନ ମାନୁଛି ? ତମର ଯଦି ମନ ମାନେ ମୋର ଆପତ୍ତି ରହିବ ନାହିଁ ।

ଆଗ୍ରହରେ ଦାମଭାଇଙ୍କ ଉତ୍ତରକୁ ଅପେକ୍ଷା କରି ରହିଲି । ଦାମଭାଇ ପିଲାଦିନୁ ମୋତେ ଏତେ ଭଲ ପାଆନ୍ତି । ଦାମଭାଇ, ସଂସାରରେ ସେହି ଜଣକ, ଯାହାଙ୍କ ଆଗରେ ନିଃସଙ୍କୋଚରେ ମନ ପ୍ରାଣ ଖୋଲି ମୁଁ କଥା କହେ । ଘଗ

ଯୋଗଡରେ ବରଜ୍ଞ ହୁଏଁ । ତାଙ୍କର ଅଶ୍ଳୀଳ ଅଶା, କୁତ୍ସିତ ଅକର୍ଷଣକୁ ନଷ୍ଟୁର ଭାବରେ ଠେଲ ଦଏଁ । ତଥାପି, ସେ ନଶ୍ଚୟ ଜାଣିଥିବେ, ମୁଁ ତାଙ୍କୁ ଭଲ ପାଏଁ, ଭଲ ପାଏଁ ସେ ମୋତେ ବରଜ୍ଞ କରନ୍ତି ବୋଲି ।

ତାଙ୍କର ମତାମତ ଉପରେ ନର୍ଭର କର ବୋଉ ନଜର ଇଚ୍ଛା ପ୍ରକାଶ କରବ । ବୋଉ ଜାଣେ, ଦାମଭାଇ ମୋତେ ଭଲ ପାନ୍ତି । ତାଙ୍କର ପ୍ରତିଶୋଧ ନେବାର ବେଳ ଅସିଛି । ଅଜଣା ସ୍ୱାମୀର ଗୋଡ଼ତଳେ ମୋର ଯୌବନ, ପ୍ରେମ ଉତ୍ସର୍ଗ କରବ ବୋଲି କେତେ ଅକର୍ଷଣ, କେତେ ପ୍ରଲୋଭନକୁ ଗୋଡ଼ରେ ଦଳଛି । ଦାମଭାଇ ଏହା ଜାଣନ୍ତି । କ ମତ ଦେବେ ଜାଣିବାକୁ ଉଦ୍‌ବଗ୍ନ ହୋଇ ରହିଲି ।

ସେ ବ୍ୟସ୍ତ ହୋଇ କହିଲେ, ଖୁଡ଼ି, ମୋର ମତାମତ ପଗୃର ନାହିଁ । ମୋର ମତାମତରେ କିଛି ଯାଏ ଅସେ ନାହିଁ । ଦନେ ମୋ ମନକଥା କହିଥିଲି, ସମସ୍ତେ ଏହା ଜାଣନ୍ତି । ସମସ୍ତେ ହସିଥିଲେ ଏକା ମୁହିଁ କାନ୍ଦଥିଲି । ବାପାଙ୍କର ଅବାଧ୍ୟ ମୁଁ ହୋଇ ନ ଥିଲି । ଲଜ ସଙ୍କୋଚରେ ମୁଁ ତମ ଅଗରେ ମୁହଁ ଖୋଲି କେବେ ମନର କଥା କହି ନ ଥିଲି । ସେ ସାହସ ମୋର ନ ଥିଲା । କାଳେ ତମେ କଅଣ ଭାବବ, କାଳେ କହିବ, ମନରେ ଅସନା ଅଗ୍ରହ ଧର ଦାମ ଘରକୁ ଅସେ, ଗୀତାକୁ ଭଲ ପାଏ । ମନକଥା ମୁଁ କହିଥିଲେ ଏ ଘରୁ ମୋର ସ୍ୱାଧୀନ ଚଳନ ଲୋପ ହୋଇଥାନ୍ତା । ଖୁଡ଼ି, ଛଅଣ ପୋଡ଼ି ଯାଇଛି, ମନ ମରି ଯାଇଛି । ଯାହା ହେବାର ହୋଇ ସାରଛି । ମୋର ମନର କାମନା ମୋର ଅନ୍ତକାର ଅଗ୍ରହ ଓ ଆଶୀର୍ବାଦ ହେଉଛି, ଗୀତାଟି ଅନନ୍ଦରେ ରହୁ, ସୁଖରେ ରହୁ । ଏତିକ ଦେଖିଲେ ଜୀବନରେ ମୁଁ ଶାନ୍ତି ପାଇବ ।

ବୋଉ ତୁନ ରହିଲା । ଭାବଲି, ସତେ, ଦାମଭାଇଙ୍କ ମନରେ ଏତେ ଦୁଃଖ, ମତେ ସେ ଏତେ ଭଲ ପାଅନ୍ତି ?

ଦାମଭାଇ ପୁଣି କହିଲେ, ମୋର ମତାମତ ପଗୃରୁଛ ଖୁଡ଼ି ? କହୁଛି ଶୁଣ । କଟିଅ ଗୀତାର ଉପଯୁକ୍ତ ନୁହେଁ । ଲୋକେ କହୁଛନ୍ତି ଗୀତାର ବୟସ ବଳେଇ ପଡ଼ିଲା, ଏଣିକ ନନ୍ଦା ହେବ । ବାପାଙ୍କର କଥା ମାନ ତମକୁ ମୁଁ ପଗୃରବାକୁ ଅସିଲି । ତମେ ଯାହା ଉତ୍ତର ଦେବ, ମୁଁ ତାଙ୍କୁ ସେଇଆ କହିବ ।

ବୋଉ କହିଲା, ଦୁନଅାଁ ଲୋକଙ୍କ ଅଖିରେ ଗୀତା ଦରବୁଢ଼ୀ ହୋଇ-ପାରେ ବାପ, ମୋ ଅଖିରେ ସେ କାଲିକା ପିଲା । ବାପାଙ୍କୁ କହିବ, ଲୋକେ ନନ୍ଦା କରବେ ତ କରନ୍ତୁ । ଲୋକନନ୍ଦାକୁ ଡର ବାପ ନ ଥିଲା ଝିଅକୁ ପଙ୍କରେ ମାଡ଼ଦେବ ନାହିଁ । ମୁଁ ଗରବ ହେଲେ ମଧ୍ୟ ମୋ ମନ ତ ଗରବ ନୁହେଁରେ ବାପ । ମୁଁ ରଜା ଜମିଦାର ଖୋଜୁନାହିଁ । ମୂଲ ଲାଗି ଚଳୁଥିବା ପିଲାଟିଏ ହେଲେ ହେଲା । ଗୃହ ଅକ୍ଷର ପଢ଼ିଥିବ, ସ୍ୱାସ୍ଥ୍ୟ ଭଲଥିବ, ଚରତ୍ର ସ୍ୱଭାବ ଭଲ ହୋଇଥିବ,

ଏମିତିକ ମିଳୁଛି ହେଲେ ଗୀତାକୁ ତା ହାତରେ ଦେବ । ନ ମିଳିଲେ ଗୀତା ଅକ୍ଷଅଡ଼ୀ ରହିବ । ମୋ'ଠିରେ ମରଣ ହେଲେ ତମର ଯେଉଁଠି ମନ ସେଇଠି ତାକୁ ଦେବ । ଦେଖିବାକୁ ମୁଁ ନ ଥିବ । ବାପାଙ୍କୁ ଏଇଆ କହିବ ।

ଦାମଭାଇ ଉତ୍ତର ନ ଦେଇ ବଦାୟ ନେଲେ ।

ବୋଉ ମତେ ପାଖକୁ ଡାକିଲା । ମୁଁ ପିଣ୍ଡାକୁ ଯାଇ ତା ପାଖରେ ବସିଲି । ମୋ ମୁଣ୍ଡରେ ହାତ ବୁଲାଇ ଧୀରେ ଧୀରେ କହିଲା, ଶୁଣିଲୁ ତ ମା, ଦାମର କଥା । ଆଜି ଯଦି ତୋ ବାପ ବଞ୍ଚିଥାନ୍ତେ, ସାଆନ୍ତେ ଏମିତି ଅପସନ୍ଦ ପ୍ରସ୍ତାବ ପଠାଇବାକୁ ସାହସ କରି ନ ଥାନ୍ତେ । ଆମର ସାହା ଭରସା ଏକା ସେଇ ଭଗବାନ । ଯାହା ତାଙ୍କର ଇଚ୍ଛା । ତାଙ୍କୁ ହିଁ ଡାକ ।

ଦୁଇଧାର ଲୁହ ଗଡ଼ି ପଡ଼ିଲା ମୋ ଆଖିରୁ । ମନ କହିଲା, ଭଗବାନ ! ନିଷ୍ଠୁର ସେ ଭଗବାନ । ବାପାଙ୍କୁ ମୋର ନେଇ ଯାଇଛନ୍ତି ! ଉହାଲ ବିକଳ, ଛଟପଟ, ହାହାକାର କରି ଆମର ହଟ ସେ ଦେଖୁଛନ୍ତି ।

ଦୟାମୟ ସେ ?



୩୨

ଆହୁରି କେତେ ଦିନ ବିତିଗଲା । ଅଭାବରେ ପଡ଼ି ଘରର ଯାବତୀୟ ଚଳନ୍ତି ପଦାର୍ଥ ବିକ୍ରୀ ପକାଇ କଷ୍ଟେ ମଷ୍ଟେ ବେଳ କାଟିଲୁଁ । ଏହାପରି ଆଉ କେତେଦିନ ଚଳିବ ? ବସି ଖାଇଲେ ନଈବାଲି ସରେ । ରୋଜଗାର କରି ଘରକୁ ଦୁଇପଇସା ଆଣିବାକୁ କେହି ନାହିଁ । କାହା ଉପରେ ଆଶା ରଖି ଭବିଷ୍ୟତ ପାଇଁ ନିଶ୍ଚିନ୍ତ ରହିଲୁ ? ଭବିଷ୍ୟତ କଥା ଭାବି ବା ଲାଭ କଅଣ ? ଯେତିକି ଆଗକୁ ଚାହେଁ, ସେତିକି ହତାଶିଆ ଲାଗେ ।

ରାଧା ଯଥାସାଧ୍ୟ ଆମକୁ ସାହାଯ୍ୟ କରେ । ଦୁଃଖୀ ସେ, ଦୁଃଖୀର ଦୁଃଖ ବୁଝେ । ମନ ଥିଲେ ବି ତା ପାଖରେ ଧନ ନାହିଁ । ସାହାଯ୍ୟ କରିବ କିପରି ? ଦେହ ପରିଶ୍ରମ କରିବା ଦ୍ୱାରା ଯାହା ହୁଏ ସେତିକି ।

ଗୋଟାଏ ଦୁର୍ନାମ ମୋ ନାମରେ ରଟି ଯାଇଛି ଗାଁ ସାରା । ଯେଉଁ ଘଟଣାଟି ସେଦିନ ଘଟିଗଲା ତାଆରି ଫଳରୁ ବିମଳା ଭାଇଙ୍କ ସ୍ତ୍ରୀ ମୋ ନାମରେ ଦୁର୍ନାମ ରଟାଇଲେ । ଯେଉଁ ବାହାଘରର ପ୍ରସ୍ତାବ ନେଇ ଆସିଥିଲେ ତାକୁ 'ସେ ନିଜେ ଭାଙ୍ଗି ଦେଲେ ।

ରାଧା କହୁଥିଲା ବୋଉକୁ, ଶୁଣିଲଣି ବିମଳା ଭାଇଯାର ବଦିପ, ଗୀତା ଆଉ ଦାମ ନାମରେ ଯେଉଁ କଥାମାନ ଉଠାଇଛି ଶୁଣିଲେ କାନରେ' ହାତ ଦେବ ।

ସାଧୀ କହେ, ବୋଉ ଶୁଣେ, ଆଖିରୁ ଲୁହ ପୋଛେ ।

କଥାଟାକୁ ସେତେ ଗୁରୁତର ବୋଲି ଭାବି ନ ଥିଲି । କେଇଟି ଘଟଣାକୁ ପରେ ମୁଁ ବୁଝି ପାରିଲି । ମିଛ ଅପବାଦ ଲୋକଙ୍କ ମନ ଉପରେ କି ପ୍ରଭାବ ପକାଏ ତାହା ମୁଁ ନିଜେ ଅନୁଭବ କଲି ।

ଦାମଭାଇଙ୍କ ପୁଅର ଏକୋଇଶା ।

ଗାଁ ଯାକର ଲୋକେ ନିମନ୍ତ୍ରିତ ହୋଇଛନ୍ତି । ମହାନ ଭେଠା ଆନନ୍ଦରେ ଶହ ଶହ ଟଙ୍କା ଖରଚ କରୁଛନ୍ତି । କିଏ ଜଣେ ଆସି ଆମକୁ ନିମନ୍ତ୍ରଣ କରିଗଲା । ବୋଉର ମୁହଁଲଗି ପଡ଼ିଲା । ଦାମର ପୁଅ, ଗାଁ ମାଇପେ କେତେ ଆସିବେ, ଯାହାକୁ ଯାହା ମିଳିବ ଫଟେଇ ପୁଟେଇ ଉପହାର ଦେଇ ପୁଅକୁ ଦେଖିବେ । ଆମର ଘରେ ଖାଇବାକୁ ନାହିଁ । କଅଣ କରିବା ?

ବୋଉ କହିଲା, ନ ଯିବା ଭଲ ।

ମୁଁ କହିଲି, ବୋଉ, ନ ଗଲେ ଭଲ ହେବ ନାହିଁ । ଦାମଭାଇଙ୍କ ମନରେ କଷ୍ଟ ହେବ । ପୁଣି ଜାଣି ଜାଣି କାହିଁକି ଗାଁ ଲୋକଙ୍କ ପାଖରୁ ଅଲଗା ରହିବା କହିଲୁ ? ଲୋକେ କଅଣ କହିବେ ? ତୁ ସାଧୀ ପାଖକୁ ଯା ।

ବୋଉ କହିଲା, ଅନ୍ତ ଅନ୍ତରେ ଦିଓଟି ଟଙ୍କା ନ ଦେଲେ ଚଳିବ ନାହିଁ । ଘରେ କଅଣ ଅଛି ଯେ ବନ୍ଧା ଦେଇ ବା ବିକି କରି ଟଙ୍କା ଆସିବ ?

କହିଲି, ଅଛି ବୋଉ, ଯେତେ ଦିନଯାଏ ଗାଁ ଠାରେ ଘର କରି ରହିଥାଉଁ, ନିଜର ମାନ ମହତ ରକ୍ଷି ଚଳିବାକୁ ଚେଷ୍ଟା କରିବା । ଶେଷକୁ ଅଭାବରେ ପଡ଼ି ଯଦି ଦାଣ୍ଡରେ ଠିଆ ହେବାକୁ ପଡ଼େ, ସେତେବେଳେ ଯାହା ଭଲ ଦିଶିବ କରିବା । ଆଜିଠୁଁ ସେ କଥା ଭାବିବା ନାହିଁ ।

ଶରତ ବାବୁଙ୍କ ସ୍ତ୍ରୀ କଟକରେ ମୋତେ ଯେଉଁ ଦୁଲ୍ ଦିଓଟି ଦେଇଥିଲେ ତାକୁ କାନରୁ କାଢ଼ି ବୋଉକୁ ଦେଲି । ଅନିଚ୍ଛାରେ ବୋଉ ସେତକ ନେଇ ସାଧୀ ଘରକୁ ଗଲା । ମୁଁ ଦାଣ୍ଡ କବାଟ ବନ୍ଦ କରି ଘରେ ଏକୁଟିଆ ରହିଲି ।

ଖରାବେଳ ।

ନଈକୂଳିଆ ଚଇତ ପବନରେ ଘରର ମଥାନ ହୋହୋ ଉଠୁଥାଏ, ଠିକ୍ ଯେପରି ମୋ ଛାତିର କୋହ । ଖାଲି ଉପରକୁ ଚାହିଁ ମୁଁ ଘର ଭିତରେ ଶୋଇଥାଏ । ଅନ୍ଧାର ଭବିଷ୍ୟତ ଲମ୍ବି ଯାଉଥାଏ ମନ ଆଗରେ ସମୁଦ୍ର ପରି, କୂଳ କିନାରା କିଛି ଦିଶୁନାହିଁ । ବାରମ୍ବାର ଭାବନା ମନକୁ ଅସ୍ଥିର କରୁଥାଏ ।

ଦାଣ୍ଡ କବାଟ କିଏ ଖଡ଼ଖଡ଼ କଲା । ଚମକି ଉଠିଲି । ବୋଉ ଯିବାର ଦଶ ପନ୍ଦର ମିନିଟ୍ ହୋଇନାହିଁ । କିଏ ଆସିଲା ? ସିଏ ହୋଇଥାଉ ଅଥବା ନ ଦେଖିଲେ କବାଟ ଖୋଲିବି ନାହିଁ । ଦିନକର ଅସାବଧାନତା ପାଇଁ ଯେତେ କାଣ୍ଡ ଘଟିଯାଇଛି ମନରେ ସେ ସବୁ ଆଜି ବି ଜାଗି ରହିଛି ।

କବାଟ ପାଖକୁ ଯାଇଁ ଫାଙ୍କବାଟେ ପଦାକୁ ଚାହିଁଲି । ଦେଖିଲି ଦାଣ୍ଡରେ ରଙ୍ଗିଆ ଠିଆ ହୋଇଛି । ରଙ୍ଗିଆ ଦଶ ବାରବର୍ଷର ଭଣ୍ଡାରି ପିଲାଟିଏ । କବାଟ ଖୋଲିଲି । ଖଣ୍ଡେ ଚିଠି ଦେଇ କହିଲା ନିଅ ।

ମୁଁ କବାଟ ବନ୍ଦ କଲି ।

ଘର ଭିତରକୁ ଆସି ଚିଠି ଖୋଲିଲି । ଶରତ୍‌ବାବୁଙ୍କ ସ୍ତ୍ରୀ ଲେଖିଛନ୍ତି । ଖଣ୍ଡିଏ ମୋ ପାଖକୁ, ଆଉଖଣ୍ଡି ବୋଉ ପାଖକୁ । ଖୁସି ଲାଗିଲା । ଯାହା ହେଉ, ମାଉସୀ ମୋ ଚିଠିଖଣ୍ଡି ନିଶ୍ଚୟ ପାଇଛନ୍ତି ।

ପଢ଼ିଲି । ବେଶୀ କିଛି ଲେଖା ନାହିଁ । ବୋଉ କାନ୍ଦୁଛି ଶୁଣି ସେ ବଡ଼ ବ୍ୟସ୍ତ ହୋଇଛନ୍ତି । କିପରି ବୋଉର ସେବା କରିବାକୁ ହେବ ସେ ସମ୍ବନ୍ଧରେ ମୋତେ ଉପଦେଶ ଦେଇଛନ୍ତି । ଟିକିଏ ସୁବିଧା ହେଲେ ସେ ଥରେ ଆମ ଗାଁକୁ ଆମକୁ ଦେଖିବାକୁ ଆସିବେ ବୋଲି ଇଚ୍ଛା କରିଛନ୍ତି ।

ବୋଉ ପାଖକୁ ଯେଉଁ ଚିଠିଖଣ୍ଡି ଲେଖା ହୋଇଛି ସେଇଟି ଟିକିଏ ବଡ଼ । ଅନେକ ବୁଝାଇ ସୁଝାଇ ଲେଖିଛନ୍ତି । କଅଣ ଲେଖିଥିଲେ ସବୁ ମୋର ମନେ ନାହିଁ । ଯେଉଁ କେତେ ଧାଡ଼ି ପଢ଼ି ମୋର ଛାତିରେ ଚମକ ଲାଗିଥିଲା ସେତକ ଆଜଯାଏ ଭୁଲି ପାରି ନାହିଁ ।

ସେ ଲେଖିଥିଲେ,—ମୋ ବଡ଼ପୁଅ ଦେବ ବିଷୟରେ ଗୀତାର ବାହାଘର କରିବାକୁ ମୁଁ ପ୍ରସ୍ତାବ ପକାନ୍ତି, ହେଲେ ସାହସ ହେଉ ନାହିଁ । କାଳେ ତମେ କଅଣ ଭାବିବ । ଦେବଟି ଭଲ ପିଲା । ପାଠସାଠ ସିନା ହେଲା ନାହିଁ, ସ୍ୱଭାବ ଚରିତ୍ର ଭଲ । କଟକର ଗୋଟିଏ ମନୋହରୀ ଦୋକାନରେ ବିକ୍ରୀବଟା କରିବାକୁ ତା ବାପ ଦଶ ପନ୍ଦର ଦିନ ହେବ ରଖାଇ ଦେଇଛନ୍ତି । ହିସାବ କରି କାମ କଲେ ଭବିଷ୍ୟତରେ ଉନ୍ନତି ହେବ । ଗୀତାକୁ ଯଦି ମୁଁ ପାଆନ୍ତି, କୋଳରୁ ତାକୁ ତଳକୁ ଓହ୍ଲାଇ ଦିଅନ୍ତି ନାହିଁ । ତମର ଇଚ୍ଛା କଅଣ ମୋତେ ଲେଖି ଜଣାଇବ ।—

ଚିଠିଖଣ୍ଡି ପଢ଼ି ଆମୋଦ ଅନୁଭବ କଲି । କିନ୍ତୁ କିନ୍ତୁ ମାଉସୀ କଟକରେ କିନ୍ତୁ ପକାଇଥିଲେ, ତିନି ଚିନିଟା ବାଳୁଙ୍ଗା ପୁଅ ଜନ୍ମ କରିଛନ୍ତି । ବାଳୁଙ୍ଗା ! ଆଜି ବାହାଘର ପ୍ରସ୍ତାବ ପଢ଼ିବାରୁ ବାଳୁଙ୍ଗା ପିଲାଟିର ସ୍ୱଭାବ ଚରିତ୍ର ଭଲ ହୋଇଗଲା । ହସ ମାଡ଼ିଲା । ତଥାପି ଆମ ଉପରେ ତାଙ୍କର ଦୟା ଅଳ୍ପ ନୁହେଁ । ଯାହା ମନକୁ ଆସୁ, ସେ ତ ଭାବିଛନ୍ତି ଭଲ ହେବ ।

ଭାବିଲି, ଷିତି କଅଣ ? ମରଦ ପୁଅର ଭାଗ୍ୟ ପତର ତଳେ । ଠାକୁରେ ନେଲେ ସେହି ଦେବ ସଂସାରରେ ବଡ଼ ହୋଇ ଉଠିବେ । ଭଲ ପାଇବାକୁ ଇଚ୍ଛା-କଲେ ମଣିଷ ସମସ୍ତଙ୍କୁ ଭଲ ପାଇପାରେ । ତେବେ ତାହାହିଁ ହେଉ । ଅନ୍ତତଃ

ବୋଉର ଦୁଃଖ ଚିନ୍ତା ଘୁଞ୍ଚିବ । ମୋ ପାଇଁ ତାକୁ ଆଉ ଦହଗଞ୍ଜ ହେବାକୁ ପଡ଼ିବ ନାହିଁ । ମୋର ଭବିଷ୍ୟତ କଥା ଭାବି ରାତି ରାତି ଅନିଦ୍ରା ରହିବାକୁ ପଡ଼ିବ ନାହିଁ ।

ମୋତେ ବି କୌଣସି ବିଷୟରେ ଆଉ ଚିନ୍ତା କରିବାକୁ ପଡ଼ିବ ନାହିଁ । ମୋ ପାଇଁ ଭାବିବେ ଅନ୍ୟମାନେ । ଶରତ୍‌ବାବୁଙ୍କ ପରି ଶ୍ୱଶୁର ଆଉ ତାଙ୍କ ସ୍ତ୍ରୀଙ୍କ ପରି ଶାଶୁ ପାଇ ମୁଁ ନିଜକୁ ଭାଗ୍ୟବତୀ ମଣିବି । ସ୍ୱାମୀ ଅଧା ପାଠୁଆ, କିନ୍ତୁ ସ୍ୱଭାବ ଚରିତ୍ର ତ ତାଙ୍କର ଭଲ ।

ବାଳୁଙ୍ଗା !

ଛି ! କେବଳ ଶାଶୁ ଶ୍ୱଶୁର, ନଣନ୍ଦ ଦିଅରଙ୍କୁ ନେଇ ରହିବାକୁ ଝିଅ ବାହା ହୁଏନାହିଁ । ଝିଅ ଚାହେଁ ସ୍ୱାମୀ !

ବିଧୁବାବୁଙ୍କ ପୁଅ ପ୍ରବୋଧବାବୁଙ୍କ ସମ୍ବନ୍ଧରେ କିଛି ଲେଖା ନାହିଁ । ବାପାଙ୍କର ଶେଷ ଇଚ୍ଛା ସେ ଶରତ୍‌ବାବୁଙ୍କୁ କହି ନ ଥିଲେ ପରା ।

ଚିଠି ପଢ଼ିଲେ ବୋଉ ମିଛଟାରେ ଏଣୁ ତେଣୁ ଭାବିବ । କାଳେ ମାଉସୀଙ୍କ ପ୍ରସ୍ତାବରେ ହଁ ଭରିବ, ସେହି ଡରରେ ମୁଁ ତା ଚିଠି ଖଣ୍ଡି ଚିରି ଚିରି କରି ତଳ ଖତକୁଡ଼ ଗଦାରେ ପକାଇ ଦେଇ ଆସିଲି । ଭାଗ୍ୟରେ ଯାହା ଥିବ ତ ହେବ, ଜାଣି ଜାଣି ମଣିଷ ଅଜଣା ପାଣି ଭିତରକୁ ଡେଇଁବ କାହିଁକି ?

ମନରେ ଖିଆଲ ଆସିଲା, ସେମିତି ଯଦି ଖଣ୍ଡେ ଚିଠି ମୁଁ ପ୍ରବୋଧ ବାବୁଙ୍କ ପାଖକୁ ଲେଖେଁ ତ କ୍ଷତି କଅଣ ? ସେ ଶିକ୍ଷିତ, ସେ ବୁଦ୍ଧିମାନ୍, ନିଶ୍ଚୟ ଆମର ଦୁଃଖ ବୁଝିବେ । ଛି, କଅଣ ଭାବୁଛି ? କାଳେ ସେ ଆଉ କଅଣ ମନେ କରିବେ ! କାଳେ ଭାବିବେ, ଗାଁ ଝିଅ ହୋଇ ଏଡ଼େ ସାହସରେ ଯିଏ ଅପରିଚିତ ଲୋକ ପାଖକୁ ଚିଠି ଦେଇପାରେ ସେ କେବେ ଭଲ ଝିଅ ହୋଇ ପାରେନା । ମିଛରେ ନାମ ପଡ଼ିବ ।

ବୋଉ ଫେରିଲା ।

ରାଧା ନିଜେ ଦୁଇଟଙ୍କା ଧାର ଦେଇ ମୋ ଫୁଲ ଫେରାଇ ଦେଇଥିଲା । ବୋଉ କହିଲା, ଗୀତା ଲୋ, ରାଧା କହିଲା ମୋ ପାଖେ ଦୁଇଟଙ୍କା ଅଛି ନିଅ । ଏବେ ଘରକୁ ଚାଲିଯାଉ, ପରେ ଦେଖାଯିବ ।

ଚିଠି ବିଷୟରେ ବୋଉକୁ କିଛି କହିଲି ନାହିଁ ।

ସନ୍ଧ୍ୟାବେଳେ ଆମେ ଦୁହେଁ ମଦନ ଜେଠାଙ୍କ ଘରକୁ ଗଲୁ । ଆମେ ପହଞ୍ଚିଲା ବେଳକୁ ଗାଁ ମାଇପେ ତାଙ୍କ ଘରେ ରୁଣ୍ଡ ହୋଇ ସାରିଥିଲେ । ବୋଉ ଆଗ ଦାମଭାଇଙ୍କ ପୁଅକୁ କୁଲେଇଙ୍କା ଦେଇ ଦେଖିଲା । ସମସ୍ତେ ତା ଆଡ଼କୁ ଅନାଇଲେ । କିଏ ଜଣେ ଭୁନ ଭୁନ କରି ମୋ ପଛଆଡ଼େ କହିଲା, ନଈପାଣି ନଈକି ଯାଉ, ମୋ ଲୁଗାଟି ଶୁଖିଯାଉ ।

ଜଣେ ଦି ଜଣ ହସି ଉଠିଲେ । କଥାର ଅର୍ଥ ମୁଁ ସହଜରେ ବୁଝି ପାରିଲି ନାହିଁ । ପିଲାଏ ଯେତେବେଳେ ଗାଧୋଇ ସାରି ଓଦା ଲୁଗାକୁ ମାଳି ମାଳି କରି ବାନ୍ଧି ଲୁଗା ଶୁଖାଇ ନଈରୁ ଫେରନ୍ତି, ମନ ଆନନ୍ଦରେ ଲୁଗା ହଲାଇ ଏହି କଥା ସେମାନେ କହୁଥାନ୍ତି ।

ବୋଉ ତାର ସମବୟସୀ ମାନଙ୍କ ସଙ୍ଗରେ ଅନ୍ୟ ଘରକୁ ଗୁଡ଼ିଗଲା । ମୁଁ ଦାମଭାଇଙ୍କ ସ୍ତ୍ରୀ ଥିବା ଘରେ ରହିଲି । ପିଲାଟିକୁ ଠେଣାଠେଣି କରି ସିଏ ଇଚ୍ଛା ସିଏ ନେଉଥାନ୍ତି । କେତେ ଗେଲ କରୁଥାନ୍ତି । ମୁଁ ବସିଥାଏ ଚୁପ ହୋଇ । ପିଲାକୁ ଧରିବାକୁ ଆଗ୍ରହ ହେଉଥାଏ କିନ୍ତୁ ବହୁଦିନ ତଳର ଗୋଟିଏ ଘଟଣା ମନେ ପଡ଼ିଗଲେ ହାତ ଚଳେ ନାହିଁ ।

ମନେ ମନେ ଖୋଜୁଥାଏ ଲେଙ୍ଗୁକୁ । ଏତେ ଝିଅ ବୋହୂ ଆସିଛନ୍ତି । ଉପରେ ପଡ଼ି କାହାରି ସଙ୍ଗେ କଥା କହିବାକୁ କିପରି ସଙ୍କୋଚ ଲାଗୁଥାଏ । କାଳେ କିଏ କଅଣ କହିବ ?

ଲେଖାରେ ଝିଉଡ଼ି ହେବ ଜଣେ, ମୋ ଓଠରେ ହାତ ଦେଇ ମୁହଁକୁ ହଠାତ୍ ଟେକି ଦେଲେ । କହିଲେ, 'ଦେଖମ, ଚନ୍ଦ୍ରଉଦଅ ମୁହଁ, ସତେ କି ପୂନେଇ ଜହ୍ନ ଗୋ । ମୁଁ ଯଦି ମଣିପ ହୋଇଥାନ୍ତି...... ।

ହସି ହସି ମୁହଁ ନୋଇଁଲି । ତାଙ୍କ ପାଟିରୁ କଥା ଛଡ଼ାଇ ନେଇ ଆଉ ଜଣେ କହିଲେ, ମଣିପ ହୋଇଥିଲେ କଅଣ କରିଥାନ୍ତୁ ବଉଳ ? ଚାନ୍ଦମୁହଁରେ କାଳି ବୋଳି ଦିଅନ୍ତୁ ?

ଉତ୍ତର ପାଇଲେ, କାଳି ତ ଧୋଇ ଦେଲେ ଛୁଡ଼ିଯିବ । ଚାନ୍ଦ ମୁହଁରେ ଠେକୁଆ ଦାଗ ଆଙ୍କି ଦିଅନ୍ତୁ, ଯେମିତି ଲିଭନ୍ତା ନାହିଁ । ସିଏ ଦେଖନ୍ତା କହନ୍ତା ହାତୀଠାଏ ।

କିଛି କହିଲି ନାହିଁ । ଭାବିଲି, ସିଏ ଯାହା କହୁ ହସିଦେଲେ ଚଳିବ । ମୁହଁ ଖୋଲିଲେ ସମସ୍ତେ ଘେରି ପାରି କାଉ କାଉ କରି ଖାଇଯିବେ ।

ଚୁପ ହୋଇ ରହିଲେ ବି ନିଷ୍କୃତି ମିଳିଲା ନାହିଁ । କିଏ ଜଣେ କହିଲା, ସେହି ମୁହଁ ଦେଖି ଦାମାଣ୍ଡ ଦିନାକେତେ ପାଗଳ ହୋଇଥିଲା । ବେକାରେ କ୍ଷୁଆଣି ପଡ଼ିଲେ ବି କେବେ କେବେ ଓଡ଼ଲାଇ ବଳଦ ପରି କଅଣ ମୁହଁ ନ ବଢ଼ାଉଛି ?

ସମସ୍ତେ ହସି ଉଠିଲେ ।

ନିରୀହ ଶିଶୁଟି ପରି ମୁଁ ଥରେ ସମସ୍ତଙ୍କ ମୁହଁକୁ ଚାହିଁଲି, ସମସ୍ତେ ଯେପରି କୌତୂହଳରେ ମୋଓରେ ଆଡ଼କୁ ଚାହିଁଛନ୍ତି । ଏକା ଦାମଭାଇଙ୍କ ସ୍ତ୍ରୀ, ଗମ୍ଭୀର ହୋଇ ତଳକୁ ଚାହିଁଛନ୍ତି, କଅଣ ଭାବୁଛନ୍ତି ।

ସହିବାର ସୀମା ପାରି ହୋଇ ଆସିଛି । ଦୁର୍ନାମ ତ ଲୋକେ କରୁଛନ୍ତି କରିବେ । ମେଆଙ୍କ ଉତ୍ତର ମୁହଁ ବନ୍ଦ କରି ଅନ୍ୟମାନଙ୍କୁ ମଉଜ କରିବାକୁ ମୁଁ ସୁଯୋଗ ଦେବି ନାହିଁ । ଯିଏ ଯାହା କହୁ, ସିଏ ଯାହା ଭାବୁ ଏଥର ମୁହେଁ ମୁହେଁ ଜବାବ ଦେବି ।

କିନ୍ତୁ, ଆଉ କେହି କିଛି କହିଲେ ନାହିଁ ।

ବଡ଼ମା ଆସି ଖାଇବାକୁ ଡାକିଗଲେ ।

ଘରେ ଯେତେ ମାଇପେ ଥିଲେ ସମସ୍ତେ ଖିଦ୍‌ଖାଦ୍ ହୋଇ ଉଠିଗଲେ ପଦାକୁ । ଦାମଭାଇଙ୍କ ସ୍ତ୍ରୀ ପିଲାଟିକୁ କୋଳରେ ଧରି ବସିଥିଲେ । ମୁଁ ତାଙ୍କରି ପାଖରେ ରହିଲି ।

ମୋତେ କହିଲେ, ତୁମେ ଗଲ ନାହିଁ ଯେ, ଖାଇବ ନାହିଁ କି ?

ଉତ୍ତର ଦେଲି, ଯିବି ନୂଆବୋହୂ, ତମରି ସାଙ୍ଗରେ ।

ତାଙ୍କର ଦୁର୍ବଳ ମୁହଁରେ ହସ ଖେଳିଗଲା । କହିଲେ, ମୋ ସଙ୍ଗରେ କାହିଁକି ଯିବ ? ମୋତେ ଆଜି ଖାଇବାକୁ ମନା । ତୁମେ ଯାଅ ।

କହିଲି, ମୁଁ ପରେ ଖାଇବି । ନିରୋଳାରେ ତୁମ ପାଖରେ ବସି ଦି ଚାରିପଦ କଥାଭାଷା ହେବାକୁ ରହିଲି । ଆମେ ଗଲେ ବୋଲି ତୁମେ ତ ଦିନେ କେବେ ପଚାର ନାହିଁ ।

ସେ କହି ଉଠିଲେ, ମୋର ପଚାରିବାରେ ନ ପଚାରିବାରେ କଅଣ ଥାଏ ଗୀତା, ଯାହାଙ୍କର ପଚାରିବାର କଥା ସେ ତ ପଚାରୁଛନ୍ତି ।

କହିଲି, ଭାଉଜବୋଉ, ଦାମଭାଇଙ୍କ କଥା କହୁଛ ? ସତରେ, ସେ ପିଲାଦିନ ମତେ ଭଲ ପାଉଥିଲେ । ଆଗେ ବେଳେ ବେଳେ ଯାଉଥିଲେ, ଆମର ଭଲମନ୍ଦ କଥା ବୁଝୁଥିଲେ । ତମେ ଆସି କି ମନ୍ତ୍ର କଲ ଯେ ଆଜିକାଲି ତାଙ୍କର ଗୋଡ଼ ଆମ ଦୁଆରେ ପଡ଼େ ନାହିଁ ।

କେଡ଼େ ନିରୀହ ଭାବରେ କହିଦେଲି ଯିନା, ତାଙ୍କ ମନରେ କି ଧାରଣା ହେଲା କେଜାଣି, ସେ ମୋ ମୁହଁକୁ ଚାହିଁଲେ । ଆଖିରେ ରାଗ ଓ ଘୃଣା ଫୁଟି ଉଠିଲା । ମୋ ଛାତିରେ ଚମକ ଲାଗିଲା । ହସ ମିଳାଇଲା ।

କହିଲେ, ମନର ଯନ୍ତ୍ରର ଆମକୁ କହିଆସେ ନାହିଁ ଟୋ । ତୁମେ ସିନା ସେସବୁ ଜାଣ । ଭଲରେ ମନ୍ଦରେ ସବୁବେଳେ ଖାଲି ତୁମରି ନାମ, ମୁଁ ତାଙ୍କ ତୁଣ୍ଡରେ ଶୁଣେ । କଥା କଥାକେ ତମର ରୂପ ଗୁଣର ଉପଲକ୍ଷ ଦେଇ ମୋତେ ସେ କହନ୍ତି, ମୋ ଉପରେ ବିରକ୍ତ ହୁଅନ୍ତି, ଛିଗୁଲିଆ କହନ୍ତି । ମୁଁ କହିଲି, ଯଦି ଗୀତା ତୁମ ଆଖିରେ ଏତେ ସୁନ୍ଦର, ଏତେ ବଡ଼ ଦିଶେ ତେବେ ପର ଝିଅର ହାତ ଧରି ଘରକୁ ଆଣି ଦହଗଞ୍ଜ କରୁଛ କାହିଁକି ? ସେହି ଗୀତାକୁ ବାହାହୋଇ ରହିଲ ନାହିଁ ?

ମୁଁ କହିଲି, ଭାଉଜବୋଉ, ଦାମଭାଇ ମୋତେ ପ୍ରଶଂସା କରନ୍ତି, ସେଥିପାଇଁ ତୁମେ ଏତେ ବିରକ୍ତ ହୁଅ କାହିଁକି ? ଏଇ କଥା ଯଦି ଆଗରୁ କହିଥାନ୍ତ, ମୁଁ ନ ତାଙ୍କୁ ମୋଟେ କଥା କହନ୍ତି ନାହିଁ । ତୁମର ଏଇ ଅଶାନ୍ତିର ଫଳ କଅଣ ହୋଇଛି ଜାଣ ? ଦାଣ୍ଡରେ ହାଟରେ ମୋ ନାମରେ ମିଛରେ ଦୁର୍ନାମ ରଟିଛି ।

କହିଲେ, ମିଛ ହେଉ, ସତ ହେଉ, ତୁମର ଦୁର୍ନାମ ଆସି ମୋ କାନରେ ବାଜିଲା । ଲୋକେ ବାରକଥା କହିଲେ । ଆଉ କାହାର ନାମରେ ହୋଇଥିଲେ ମୁଁ କାନ ଦେଇ ନ ଥାନ୍ତି । ସ୍ୱାମୀଙ୍କର ନାମରେ··· । ଗୀତା, ଏ ଗାଁରେ ଗୋଡ଼ ଦେଲାଦିନୁ ତମର ନାମରେ କେତେ ଦୁର୍ନାମ ଶୁଣିଛି, ମନେ ମନେ କେତେ ରାଗିଛି, ତୁମକୁ କେତେ ଘୃଣା କରିଛି ।

ଆଖିରେ ଲୁହ ଟଳ ଟଳ ହେଲା । କରୁଣ ସ୍ୱରରେ ପଚାରିଲି, ଭାଉଜ-ବୋଉ, ଲୋକଙ୍କ ତୁଣ୍ଡର କଥା ଶୁଣି ତମେ ସତ ମଣିଲ ?

ସେ ପୁଣି ହସିଲେ । କହିଲେ, କାହିଁକି ଉପରେ ପଡ଼ି ଖୋଳେଇ ଖୋଳେଇ କଥା କାଢ଼ୁଛ ? ଭଲେଇ ହୋଇ ନିଜକୁ ସତୀ ସାବିତ୍ରୀ ପ୍ରମାଣ କରିବାକୁ ? ନିଆଁ ନ ଥିଲେ ଲୋକେ ଧୂଆଁ ଦେଖନ୍ତେ କେଉଁଠୁ ? ତା ଛଡ଼ା, ଲୋକେ ବି ଆଖିରେ ଦେଖିଛନ୍ତି—

ଚମକି ଉଠିଲି । ଲୁହପୋଛି କହିଲି, ଆଖିରେ ଦେଖିଛନ୍ତି ? କଅଣ ଆଖିରେ ଦେଖିଛନ୍ତି ? କିଏ ଏତେ ସାହସରେ କହିଲା ? ଭାଉଜବୋଉ, ବିମଳା ଭାଇର ସ୍ତ୍ରୀ ବିନା କାରଣରେ ମୋର ଶତ୍ରୁ । ସେହି ମୋର ଦୁର୍ନାମ ରଟାଇଛନ୍ତି । ଦୁନିଆରେ ସମସ୍ତେ ପଛେ ବିଶ୍ୱାସ କରନ୍ତୁ, ତୁମେ କେବେ ବିଶ୍ୱାସ କର ନାହିଁ । ଶୁଣିବ ସେ ଦିନର ଘଟଣାଟି ?

କହିଲି ।

ସେ ମନଦେଇ ଶୁଣିଲେ । ପଚାରିଲେ, କିନ୍ତୁ ମୁଁ ତ ଆଉ କେତେ କଥା ଶୁଣିଥିଲି ।

କହିଲି, ଆଜ ଯାହା ଶୁଣିଥିଲି ସବୁ ମିଛ । ତମେ ଦାମଭାଇଙ୍କୁ ପଚାର । ସେ ଭଗବାନଙ୍କର ଶପଥ ଦେଇ କହନ୍ତୁ । ଭାଉଜବୋଉ, ମୋ କଥାରେ ତମେ ବିଶ୍ୱାସ ନ କରିପାର, କିନ୍ତୁ .....

କହିଲେ, କିନ୍ତୁ ତାଙ୍କ କଥାରେ ? ଏତେ ଅରୁଚି ପରୁଚି କାହିଁକି ନେବ ? ଏତେ ଲୋକ ଥାଉଁଣୁ ତୁମେ ଆସି ମୋ ଆଗରେ ଭଲେଇ ହେଉଛ । ମୁଁ ତ ତୁମକୁ କିଛି ପଚାରୁ ନାହିଁ ? ବୁଝି ପାରୁନା, ତୁମେ ଭଲ ହୁଅ, ଖରାପ ହୁଅ, ତମ ଭଲ ତୁମ ଖରାପ ତୁମଠିଁ । ଯିଏ ମୋର ହାତ ଧରି ଆଣିଛନ୍ତି ସେ ଯଦି ତୁମ ଘରକୁ ନିତି ଦଉଡ଼ନ୍ତି, ତୁମେ ଯଦି ନିର୍ଲଜ୍ଜୀ ପରି ତାଙ୍କ ସଙ୍ଗେ ଧରାପରା ଥଟ୍ଟା ତାମସା ଲଗାଅ, ନିଜକୁ ସାକ୍ଷୀ କରି ଯେତେ କହିଲେ ତମର ଭଲ ପଣିଆଁ କେହି ବିଶ୍ୱାସ କରିବେ ? ଥଟ୍ଟା ତାମସା ଲଗାଇବାକୁ ଏ ଗାଁରେ କଅଣ ଆଉ କେହି ଅଭିଆଡ଼ା ଟୋକା ନାହାନ୍ତି ?

ଲାଜରେ ମୋର ମୁହଁ ଜଳିଗଲା । ଦୁଇ ହାତରେ ଆଖି ଘୋଡ଼ାଇ ଭାବିଲି, ଛି, ଯାହାର ହୃଦୟ ନାହିଁ, ଯିଏ ନିଜର ସ୍ୱାମୀଙ୍କୁ ବି ଅବିଶ୍ୱାସ କରନ୍ତି, ତାଙ୍କର ଜୀବନ ଚିରଦିନ ଅଶାନ୍ତିରେ କଟିବ । ଦୁନିଆରେ କାହାଠିଁ ତାଙ୍କର ପଡ଼ିଆରି ନାହିଁ । ଜୀବନର ସବୁ ଦୁଃଖ, ମନର ସବୁ ଭାବନା, ତାଙ୍କର ଆଗରେ ହୃଦୟ ଖୋଲି କହିବି ଭାବିଥିଲି, କିଛି ଲୁଚାଇବି ନାହିଁ, କିନ୍ତୁ ମଣିଷର ଦୁଃଖ ବୁଝିବା ପାଇଁ ଯାହାର ହୃଦୟ ନାହିଁ ସେପରି ପଥର ଆଗରେ ମନ ଖୋଲିବା ଦରକାର ନାହିଁ ।

ଏପରି କେତେ କଅଣ ଭାବିଲି । କିଏ ଜଣେ ପଛରୁ ଆସି ମୋର ଦୁଇଆଖି ବୁଜି ଧରିଲା । ଧୀରେ ଧୀରେ ତାଅର ହାତ ଖୋଲିଲି । ଚିହ୍ନିଲି, ରେଣୁ ।

ଦାମଭାଇଙ୍କ ସ୍ତ୍ରୀ ମୋ ପାଖରେ ବସିଥିଲେ, କୁଆଡ଼େ ଉଠିଗଲେ ।

୩୪

ରେଣୁ ମୋତେ କୁଣ୍ଢାଇ ଧରି କହିଲା, ଗୀତାଅପା, ତୁ ଆସି ଏଠି ବସିଚୁ, ମୁଁ ତୋତେ ଗାଁ ସାରା ଖୋଜି ଆସିଲିଣି । ଏଁ, ତୋ ଆଖିରେ ଲୁହ ଯେ !

ତା ପାଟିରେ ହାତଦେଇ କହିଲି, ଚୁପ୍ ଚୁପ୍, ଲୁହ ନୁହେଁ ପାଣି ।

ଆଖି ପୋଛିଲି । ସେ ଅଣ୍ଟେଇ ପଡ଼ି ଭୁନ ଭୁନ ପଚାରିଲା, କହ ଅପା, କାହିଁକି କାନ୍ଦୁଚୁ ? ଦାମଭାଇ ସ୍ତ୍ରୀ ତୋ ପାଖେ ବସିଥିଲେ, ସେ କଅଣ ତୋତେ କହିଲେ ?

ମୁଁ ତା ଓଠରେ ହାତ ଦେଇ ହସି ହସି କହିଲି, ନାଇଁ ଲୋ, କେହି ମୋତେ କିଛି କହିନାହାଁନ୍ତି । ମୋ ମୁଣ୍ଡ ବଥାଉଛି । ଜୀବନର କେତେ ଅକୁହା ଦୁଃଖ ପାଣି ହୋଇ ଆଖିରୁ ଗଡ଼ି ପଡ଼ୁଛି ।

ମୋ କଥା ମୋ ତୁଣ୍ଡରେ ଅଛି ରେଣୁବୋଉ ଖୁଡ଼ୀ ଘର ଭିତରକୁ ମୁହଁ ଗଳାଇ କଠୋର କଣ୍ଠରେ ଡାକିଲେ, ରେଣୁ, ରେଣୁ——

ରେଣୁ ଉତ୍ତର ଦେଲା, କଅଣ ବୋଉ ।

ସେ କହିଲେ, କଲୋ, ଗୀତା କଅଣ ତୋର ସାଙ୍ଗ ସଉସା ? ଆସୁନୁ ଏଣେ ।

ରେଣୁ ଉଠିଗଲା ।

ମୁଁ କାବା ହୋଇ ଚାହିଁ ରହିଲି । ସେ ବାସୁ ଦାଦାଙ୍କ ସ୍ତ୍ରୀ, ଗାଁରେ ତାଙ୍କ ଭଲପଣର ଏତେ ପ୍ରଶଂସା । ପର ଆପଣା ଭେଦ ସେ ଜାଣନ୍ତି ନାହିଁ । ମୋତେ ସେ ଏତେ ଭଲ ପାଉଥିଲେ । ଆଜି ସେ ପର କୁହାରେ ବିଶ୍ୱାସ କରିଛନ୍ତି । ମୋତେ ଘୃଣା ଚକ୍ଷୁରେ ଦେଖୁଛନ୍ତି । ସେଥିପାଇଁ ରେଣୁକୁ ମୋ ପାଖରୁ ଓଟାରି ନେଉଛନ୍ତି । ସତେ, ମୋ ଦେହର ପରଶ ଲାଗିଲେ ସେ ଅପବିତ୍ର ହେବ ।

ଦାମଭାଇଙ୍କ ସ୍ତ୍ରୀ ପିଲାଟିକୁ କାହାକୁ ଦେଇ ପୁଣି ସେ ଘରକୁ ଆସିଲେ । ଘୃଣାମିଶା ଚାହାଁଣୀରେ ମୋ ମୁହଁକୁ ଚାହିଁ ଅଲଗୁଣୀ ଉପରୁ ଖଣ୍ଡେ ଲୁଗା ନେଇ ଚାଲିଗଲେ ।

ମୁଁ ଉଠି ଠିଆହେଲି । ବିମଳା ଭାଇଙ୍କ ସ୍ତ୍ରୀ ହଠାତ୍ ସେ ଘର ଭିତରକୁ ପଶି ଆସିଲେ । ମୋତେ ଦେଖି ଉପରଠାଉରିଆ ଆଗ୍ରହରେ ମୋର ହାତ ଧରି କହିଲେ, କେତେବେଳେ ଆସିଲ ଗୀତା, ମୁଁ ତେଣେ କାମରେ ଲାଗିଛି, ତୁମକୁ ଦେଖି ପାରିନାହିଁ । ତୁମ ବୋଉ—?

କହିଲି, ବଡ଼ମାଙ୍କ ସଙ୍ଗରେ ସେ ଯାଇଛି ।

ଗାଁ ମାଇପେ ଖିଅଖିଆ ସାରି ପୁଣି ଆସି ସେ ଘରେ ରୁଣ୍ଡ ହୋଇଗଲେ । ସେମାନଙ୍କ ପାଟି ତୁଣ୍ଡ ହସ କୌତୁକରେ ସତେ କି ଖଞ୍ଜା ଫାଟି ପଡ଼ିବ । ବିମଳା ଭାଇଙ୍କ ସ୍ତ୍ରୀ ମୋ ହାତ ଛାଡ଼ି କୁଆଡ଼େ ଚାଲିଗଲେ ।

ବୋଉ ଆସି ମୋତେ ଡାକିଲା । ଅଖିଆ ଅପିଆ ଘରକୁ ଫେରିଲି ।

୩୫

ଦିନୁଦିନ ଯେ କି କଷ୍ଟରେ ମୋର ବେଳ କଟିଲା, କଥାରେ କହି ହେଉନାହିଁ । କୌଣସି କାମରେ ମନ ଲାଗେ ନାହିଁ । ହାତ ଚଳେ ନାହିଁ । ସବୁବେଳେ ଭାବେ, ବିନା ଦୋଷ ବିନା କାରଣରେ ଗାଁ ଲୋକଙ୍କ ଆଖିରେ ମୁଁ କଳଙ୍କିନୀ ହୋଇଛି । ମୋର ବୋଝ ଯେପରି ଗାଁ ଲୋକଙ୍କ ମୁଣ୍ଡରେ ଲଦା ହୋଇ ବେଳକୁବେଳ ବଳାଇ ପଡ଼ୁଛି ।

ଆମ ଘରକୁ ଆଉ କେହି ଆସନ୍ତି ନାହିଁ । ଏକା ରାଧାଠି ଆସେ । ତାଆର ଦୃଢ଼ ଧାରଣା ଯେ ମୋ ପରି ଝିଅ କେବେ ଖରାପ ହୋଇ ପାରନ୍ତି ନାହିଁ । ଲୋକେ ଦେଖି ନ ପାରି ନିଃସହାୟ ବୋଲି ବାରକଥା କହୁଛନ୍ତି । ରାଧା ଆସେ । ନିରୋଳାରେ ଫୁସ୍ ଫୁସ୍ କରି ବୋଉ କାନରେ କଅଣ କହି ଫେରିଯାଏ । ବୋଉ ମୁହଁ ଶୁଖାଏ । ବେଳେବେଳେ କାନ୍ଦେ, ମୋତେ କିଛି କହେ ନାହିଁ ।

ଥରେ ଅଧେ ରାଧାର କଥା ମୁଁ କାନ ପାରି ଶୁଣିଛି । ଗାଁର କେଉଁ ଲୋକ ମୋ ନାମରେ କି ଦୁର୍ନାମ ରଟାନ୍ତି ସେହି କଥା ସେ କହେ । ବୁଝିପାରି ମୁଁ ବି ଆଉ ଶୁଣିବାକୁ ଚେଷ୍ଟା କରେ ନାହିଁ ।

ଦିନେ ତାଆର କଥା ଶୁଣି ବୋଉ କହିଲା, ଆଉ ହେବ ନାହିଁ ଲୋ, କେଡ଼େ ଆଶାରେ କେତେ ଆଶା ମନରେ ଧରି ଏତେଦିନ କଟିଗଲା । ମଣିଷ ସବୁବେଳେ ଭଲ ଖୋଜେ । ଭଲ ନ ମିଳିଲେ ଭାଗ୍ୟରେ ଯାହା ମିଳେ ତାକୁହିଁ ଆଦରି ନଏ । ଏଣିକି ଆଉ ରଖି ହେବ ନାହିଁ । ଗୀତା ବାପା ମରିବାର ବର୍ଷେ ପୂରିଲା । ଯେଉଁଠୁ ସମ୍ବନ୍ଧ ଆସିବ, ସେଇଠି ରାଜି ହୋଇଯିବି । ବୟସ ବଳାଇଲାଣି । ଆଉ ରଖିବା ଠିକ୍ ନୁହେଁ । ତା ଭାଗ୍ୟରେ ଯାହା ଥିବ ହେବ ।

ରାଧା କହିଲା, ଗାଁ ଲୋକେ ଶତ୍ରୁତା ଆରମ୍ଭ କଲେଣି । ଭଲ ଖରାପ ଯେଉଁଠି ସମ୍ବନ୍ଧ ପଡ଼ିବ ଏଣୁ ତେଣୁ ବାରକଥା କହି ଆଗରୁ ଭାଙ୍ଗି ଦେବେ । ମୁଁ କହୁଛି, ଯାହାଘରେ ମୁଠିଏ ଖାଇବାକୁ ଥିବ, ଖଣ୍ଡେ ପିନ୍ଧିବାକୁ ମିଳି ପାରିବ, ସେମିତି ଘରୁ ସମ୍ବନ୍ଧ ଆସିଲେ ମଙ୍ଗିଯିବା ଭଲ । ମରଦ ପୁଅର ରୂପ ଗୁଣ କି ବୟସ ଧରାଯାଏ ନାହିଁ ।

ବୋଉ କହିଲା, ସେଇଆ କରିବ ଲୋ ।

ସେହି ପ୍ରସ୍ତାବ କରିବା ଛଡ଼ା ଅନ୍ୟ ଉପାୟ କିଛି ନ ଥିଲା । ମୁଁ ଭାବି ସ୍ଥିର କଲି, ଏ ବିଷୟରେ ମୋର ମୁଣ୍ଡ ଖରଚ କରିବା ଠିକ୍ ନୁହେଁ । ଭଲ ହେଉ ମନ୍ଦ ହେଉ ସେମାନେ ଯାହା କରିବେ ତାହାହିଁ ତ ହେବ । ମୋର ମତାମତ କେହି କେବେ ପଚାରିବେ ନାହିଁ । ପଚାରିଲେ ବା ମୁଁ କହିବି କଅଣ ? ଏ ଗାଁରେ ଆଉ ଏକ ମୁହୂର୍ତ୍ତ ରହିବାକୁ ମୋର ଇଚ୍ଛା ନାହିଁ । ଭାଗ୍ୟରେ ଯେଉଁଠି ଥିବ, ସେହି କର୍ମଭୂମିକୁ ଆଦରି ରହିବା ଭଲ ।

ଦିନେ ବୋଉକୁ କହିଲି, ବହୁଦିନ ତଳେ ବାପା ଧବଳେଶ୍ୱର ଦର୍ଶନ କରି ଯିବାକୁ ଲେଖିଥିଲେ । ଗଲେ ହୁଅନ୍ତା ନାହିଁ ବୋଉ, ମୁଁ ଧବଳେଶ୍ୱର ମହାଦେବଙ୍କୁ ଦେଖିନାହିଁ ।

ପ୍ରକାରାନ୍ତରେ ବିଧୁବାବୁଙ୍କ ଘର ପ୍ରସ୍ତାବ ତାର ମନେ ପକାଇଦେବା ମୋର ଉଦ୍ଦେଶ୍ୟ ଥିଲା । ମୋର ମୁହଁରେ ହାତ ବୁଲାଇ ଦୁଃଖମିଶା ସ୍ୱରରେ ବୋଉ କହିଲା,

ସିଏ ନେଇଯିବାକୁ କହିଥିଲେ ସେତ ନାହାନ୍ତି, ଯାଇ ଆଉ ଲାଭ କଅଣ ? ଯାଉ ଆସୁଁ ପାଞ୍ଚ ଟଙ୍କା ଖରଚ ହେବ । କାହୁଁ ପାଇବା ?

ମୁଁ ଚୁପ ରହିଲି । ମୋର ସବାଗ ଭଙ୍ଗା ମୁହଁକୁ ଚାହିଁ ଦୁଃଖରେ ସେ ସାନ୍ତ୍ୱନା ଦେଇ କହିଲେ, ଠାକୁରେ ଆୟସ ଦେଇଥିଲେ ସେତେ ଭଲ କଲେ, ଥରେ କାହିଁକି ଦଶଥର ଧବଳେଶ୍ୱର ଯିବୁ ମା, ସେଥିକି ଦୁଃଖ କର ନା ।

ଆଶାର ପ୍ରଦୀପଟି ବୋଉର କେଇ ପଦ ସାନ୍ତ୍ୱନା ବାଣୀରେ ଏକାଥରେ ନିଷ୍ପ୍ରଭ ହେଲା । ଭାବିଲି, ଅସମ୍ଭବ ଯଦି ତେବେ କି ହାତ ବଢ଼ାଇବାକୁ ତାର ସାହସ ପାଉନାହିଁ । ଭାବିଲି, କାହାରିକୁ କିଛି ନ କହି ଅପରିଚିତ ପ୍ରବୋଧବାବୁଙ୍କ ପାଖକୁ ଖଣ୍ଡେ ଚିଠି ଲେଖିବି । ହୁଏତ ସେ ଆଶ୍ଚର୍ଯ୍ୟ ହେବେ । ମୋର ଚିଠି ଖଣ୍ଡିକ ତାଙ୍କର ବନ୍ଧୁମାନଙ୍କ ଦେଖାଇ ପଛରେ କେତେ ଦୁର୍ନାମ କରିବେ । କରନ୍ତୁ, ମୁଁ ତ ଶୁଣିବି ନାହିଁ, ଜାଣିବି ନାହିଁ । ଦୁର୍ନାମର କେଉଁ ଅଭାବ ଅଛି ? କେଜାଣି ତାଙ୍କର ମନ ତରଳିବ । ବାପାଙ୍କର ଶେଷ ଆଶା ଜାଣି ସେ କଅଣ ପ୍ରତିକାର କରିବେ । ଫଳାଫଳ ଯାହା ହେଉ, ଚିଠି ଖଣ୍ଡେ ଲେଖିଦେଲେ ଅନ୍ତତଃ ମୋର ମନରେ କିଛିଏ ଶାନ୍ତି ଆସିବ । ଜୀବନଟା ଅନୁତାପ କରି କଟିବ ନାହିଁ । ତେବେ କି ସବୁ ଦୁଃଖ ସୁଖ ଭାଗ୍ୟ ଉପରେ ଛାଡ଼ି ନିଶ୍ଚିନ୍ତ ରହି ପାରିବି ।

କାଗଜ କଲମ ଧରି ଚିଠି ଲେଖି ବସିଲି । କିପରି ଆରମ୍ଭ କରିବି, କଅଣ ଲେଖିବି କିଛି ସ୍ଥିର କରି ପାରିଲି ନାହିଁ । ଧାଡ଼ିଏ ଲେଖେଁ, କେତେଥର ପଢ଼େ । ମନକୁ ଆସେ ନାହିଁ । ଲାଜ ମାଡ଼େ । ଭୟ ହୁଏ । କାଟିଦିଏ । ଶେଷକୁ ଚିଠି ଲେଖା ହୋଇ ପାରିଲା ନାହିଁ । କାଗଜ କଲମ ରଖିଦେଇ ଉଠି ଆସିଲି ବାରିଆଡ଼କୁ ।

ବଉଳମୂଳେ ଏକୁଟିଆ ଠିଆହୋଇ ନଈ ସେପାରି ଗଛ ଗହଳକୁ ଚାହିଁ ରହିଲି । ଭଲମନ୍ଦ କେତେ ଗତ ଘଟଣା ମନକୁ ଆସିଲା । ଦାମଭାଇଙ୍କ କଥା ମୋର ମନେ ପଡ଼ିଲା । ଦାମଭାଇ ଅନ୍ୟର ହାତଧରି ମଧ୍ୟ ଆଜି ଅଶାନ୍ତିରେ କାଳ କାଟୁଛନ୍ତି । ସ୍ତ୍ରୀଙ୍କୁ ସେ ଭଲ ପାଆନ୍ତି ନାହିଁ । ସ୍ତ୍ରୀଙ୍କ ଉପରେ ତାଙ୍କର ବିଶ୍ୱାସ ନାହିଁ । ସବୁବେଳେ ମୋରି କଥା କହି ତାଙ୍କର ମନରେ କଷ୍ଟ ଦଅନ୍ତି । ତାଙ୍କର ସ୍ତ୍ରୀ ମଧ୍ୟ ତାଙ୍କ ଉପରେ ବିଶ୍ୱାସ କରନ୍ତି ନାହିଁ । ମୋତେ ସନ୍ଦେହ କରନ୍ତି ।

ଦି ପହରେ ବୋଉକୁ ପଚାରିଲି, ଦାମ ଭାଇଙ୍କର ଆଜକାଲି ଦେଖା ଦର୍ଶନ ନାହିଁ କାହିଁକି ? ନୂଆ ବୁଅ ଦେଖି ଭୁଲିଗଲେ କି ?

ବୋଉର ମୁହଁଟି ଦୁଃଖରେ ଝାଉଁଳି ପଡ଼ିଲା । ସେ ମୋ ମୁହଁକୁ ଏପରି ଭାବରେ ଚାହିଁଲା, କେଜାଣି କାହିଁକି ଆପେ ନଇଁଗଲା ମୋର ଦୃଷ୍ଟି । ଅସନ୍ତୁଷ୍ଟ ହୋଇ କହିଲା, ନିଜ ଦୁଃଖକୁ ହାଡ଼ିଗୁହାରି ନାହିଁ, କାହାର ଗଲା ଆଇଲାରୁ ତତେ କଅଣ ମିଳିବ ?

ଆଉ କତ୍ର କହିବାକୁ ସାହସ ହେଲା ନାହିଁ । ମୋର ଧାରଣା ହେଲା, ବୋଉ ମନର କେଉଁ ଅନ୍ଧାର କୋଣରେ ସନ୍ଦେହର ତୋଫାନ ଉଠିଛି । ରାଗ ହେଲା । ଅଗରୁ ଉଠି ଆସିଲି । ମୋର ପୁରୁଣା ଗପ ବହି ଉପରେ ମୁହଁ ବୁଲାଇ ପଢ଼ିବା ବାହାନାରେ କାନ୍ଦି କାନ୍ଦି ତାଆର ପୁରୁଣା ପୃଷ୍ଠା ଉପରେ ଦୁଃଖ ଢାଳିଦେଲି ।

୯୬

ଦୁଃଖ ନୈରାଶ୍ୟରେ ବେଳ ଗଡ଼ି ଚାଲିଲା ।

ଚଇତ ମାସର ଅଧାଅଧି । ଅଭାବରେ ପଡ଼ି ଆମର ଆଉ ଦୁଇ ବେଳା ଚୁଲି ଜଳିଲା ନାହିଁ । ଘରେ ଯାହା ଥିଲା ପେଟ ପୋଷିବାକୁ ବକାଭଙ୍ଗା କରି ପ୍ରାୟ ସବୁ ଶେଷ ହେଲାଣି । କେତେକାଳର ପୁରୁଣା ଖଟଟି ଓ ମୋର ସେହି ଦୁଲ୍ ହଳକ ଖାଲି ଆଖିରେ ଦିଶୁଥାଏ । ଏତକ ଗଲେ ତେଣିକି ଆଉ କପଟ ଚଳିବ ଭାବି ପାରୁ ନାହିଁ । ତିନି ଓଳି ଉପାସରେ ଯେବେ ଯାହା ମୁଠିଏ ମିଳେ ସେ କେବଳ ଗାଧାର ଦୟାରୁ । ସେର ସେର କରି କେତେ ଚାଉଳ ସେ ଧାର ଦେଲାଣି । କେବେ ସୁତା ହେବ, କପଡ଼ା ସୁତା ହେବ ଏକଥା ଭାବିବା ଆଗରୁ ଆଗ ମନରେ ପଡେ କାଲି ପୁଣି ଚଳିବ କପଟ ?

ତିନି ଓଳିରେ ସେଦିନ ମୁଠିଏ ଖାଇବାକୁ ମିଳିଥିଲା । ଅବଶ ହୋଇ ମା ଝିଅ ଦୁହେଁ ଦିପହରେ ଘରେ ଶୋଇଲୁ । ବୋଉ କହିଲା, ଗୀତା, ଦେଖିଲୁ ଚାଳର ଅବସ୍ଥା । ଆର ବରଷ ଛାଆଣି ହୋଇ ପାରିଲା ନାହିଁ । ଖୁଆ ଦେଇ କୌଣସିମତେ ରକ୍ଷାରକ୍ଷଣ ହେଲା । ଏବର୍ଷ ଛାଆଣି ନ କଲେ ଚଳିବ ନାହିଁ । ମାଙ୍କଡ଼ ଡେଇଁ ସବୁ ଖସିଗଲାଣି ନଇଁକୁଳିଆ ପବନରେ ସେ ସବୁ ଉଲ୍ଟି ପଡ଼ିଲାଣି । ବର୍ଷାଦିନ ଆସୁଛି । ଘର ଖଣ୍ଡି ଛାଆଣି ନ କଲେ ମୁଣ୍ଡ ଗୁଞ୍ଜିବା କେଉଁଠି ?

ଦୁଃଖ ଦୁର୍ଦ୍ଦଶାର ମଝିରେ ପଡ଼ିଲେ ଚାରିଆଡ଼ ଅନ୍ଧାର ଦିଶେ । ବୋଉକୁ କି ବୁଦ୍ଧି ଦେବି କିଛି ବୁଝି ପାରିଲି ନାହିଁ । ପଚାରିଲି, କଅଣ କରିବା ବୋଉ ?

ସେ କହିବାକୁ ଲାଗିଲା, ଜମିଦାରଙ୍କର ତିନିବର୍ଷର ଖଜଣା ବାକି । କେତେଥର ଲୋକ ଆସି ଫେରିଲାଣି । ଆମର ଦୁଃଖ ସୁଖ ତ ସେ ଦେଖିବେ ନାହିଁ ? ତାଙ୍କର ଖଜଣା ଟଙ୍କାକ ନ ଦେଲେ କେଉଁଦିନ ଆସି ଘରେ ପିଆଦା ପଶି କବାଟ ଚଉକାଠ ତାଡ଼ିବେ ।

କହିଲି, ବୋଉ, ମୋର ଦୁଲ୍ ହଳକ ବିକି ଜମିଦାରଙ୍କ ଖଜଣା ଦେଇଦେ, ଘର ପଛେ ଛାଆଣି ନ ହେଉ ।

ଏତେ ଦୁଃଖରେ ସୁଦ୍ଧା ସେ ହସିଲା । କହିଲା, ସେତିକେ ତୋର ସମ୍ବଳ । ସେତିକ ବିକିଦେଲେ ସବୁ ହୋଇଯିବ, ନା ? ପାଗଳ ! ମୁଁ ଗୋଟାଏ କଥା ଭାବି ଠିକ୍ କରିଛି । ଆମର ତଳ ବାଉଁଶ୍ଖଣ୍ଡି ବନ୍ଧା ଦେବା, ନୋହିଲେ ବିକିଦେବା । ବାଉଁଶ ଖାଲି ପଡ଼ିଛି । କେଉଁ କାମକୁ ଆସୁନାହିଁ । କିଛି ଟଙ୍କା ମିଳିଲେ ଦିନା-କେତେ ଚଳିଯିବ ।

ବାଧା ଦେଇ ପଚାରିଲି, ଏ ବର୍ଷଟା ଯିନା ତଳବାଉଁ ବିକି କରି ସବୁ ହେବ, ଆରବର୍ଷ, ତହିଁ ଆର ବର୍ଷ ?

ଅନ୍ୟମନସ୍କ ହୋଇପଡ଼ି ବୋଉ କଅଣ ଭାବିବାକୁ ଲାଗିଲା । କହିଲା, ଆଗ-କଥା ଭାବିବା ନାହିଁ, ଗୀତା । ଏତେ ଆଗରୁ ଭାବିଲେ ଚଳିବ ନାହିଁ । ଭଗବାନ କଅଣ ସବୁଦିନେ ଆମକୁ ଏପରି ରଖିଥିବେ ?

ଉତ୍ତର ଦେଲି ନାହିଁ ।

୩୨

ରାଧାର ଚେଷ୍ଟାରେ ନଟବର ଦାଦା ଆମର ତଳବାଉଁ କିଣିବାକୁ ମଙ୍ଗିଲେ । ତିନିଗୁଣ୍ଠ ଜମି । ଠିକ୍ ହେଲା, ତିନିଶ ଟଙ୍କା ଦେବେ । ତା ଛଡ଼ା ରେଜିଷ୍ଟ୍ରି କରିବାକୁ ଓ କଟକ ଯିବା ଆସିବାକୁ ଯାହା ଖରଚ ହେବ ସେ ଦେବେ ।

କଟକ ଯିବାର ଦିନ ସ୍ଥିର ହେଲା । ଦୀନା ଗାଡ଼ିରେ ଆମେ ଦିହେଁ ରାଧାକୁ ସଙ୍ଗରେ ନେଇ କଟକ ଆସିଲୁ । ନଟବର ଦାଦା ମଧ୍ୟ ଆସିଲେ ।

କଟକରେ ପହଞ୍ଚି ଦିନ ଅଧଯାଏ ରେଜିଷ୍ଟ୍ରୀଖାନା ପାଖରେ ଅପେକ୍ଷା କରି ରହିଲୁ । କାମ ସରିଲେ ଆମେ ସେହି ଗାଡ଼ିରେ ଘରକୁ ଫେରିବୁ ।

ଡେରି ହେବାର ଦେଖି ବୋଉ କହିଲା, ଦିନଟା ଶରତ୍‌ବାବୁଙ୍କ ବସାରେ ରହିଲେ ଭଲ ହେବ ।

ମୁଁ ନାହିଁ କଲି । ସେଠିକି ଗଲେ ପୁଣି ତାଙ୍କର ସ୍ତ୍ରୀ ତାଙ୍କ ପୁଅ ସମ୍ବନ୍ଧରେ ମୋର ବାହାଘର ପ୍ରସ୍ତାବ ପକାଇବେ । ଶହେ କଥା କହିବେ । ମୁଁ ସେହି ଡରରେ ବାଧା ଦେଲି ।

ମନେ ମନେ ଅମୁ ଭାଇଙ୍କୁ ଖୋଜୁଥାଏ । ତାଙ୍କର ଦେଖା ଦର୍ଶନ ନାହିଁ । ସେ କେଉଁଠି ଅଛନ୍ତି କେହି ଜାଣନ୍ତି ନାହିଁ । ରାଧାକୁ କହିଲି । ଧବଳେଶ୍ୱର ପରା କଟକକୁ ପାଖ, ଥରେ ଗଲେ ଭଲ ହୁଅନ୍ତା ନାହିଁ ?

ସେ କହିଲା, ଆଜି ଆଉ ବେଳ ପାଇବ ନାହିଁ । ରାତିଟା ଯଦି କେଉଁଠି ରହନ୍ତେ କାଲି ସକାଳୁ ଯାଇ ଦର୍ଶନ କରି ସଞ୍ଜସରିକି ଫେରି ଗାଁରେ ପହଞ୍ଚନ୍ତେ । ଚିହ୍ନା ପରିଚୟ ଲୋକ ନ ଥିଲେ ମାଇପିଙ୍କ ପାଇଁ କଟକରେ ରହିବାକୁ ଥାନ ନାହିଁ ।

ବୋଉ ସବୁ ଶୁଣିଲା, କିଛି କହିଲା ନାହିଁ ।

ସବ୍‌ରେଜିଷ୍ଟ୍ରି ଖାନାରେ କାମ ସରୁ ସରୁ ପ୍ରାୟ ଗୁରଟା ବାଜିଲା । ନଟେଇ ଦାଦା କହିଲେ, ଭାଉଜବୋଉ, ତମେ ସବୁ ଫେରିଯାଅ । ମୁଁ କ୍ଳାନ୍ତ ହୋଇ ପଡ଼ିଛି । ଗାଡ଼ିରେ ଥାନ ହେବ ନାହିଁ । ଗ୍ଲଲି ଗ୍ଲଲି ଯିବାକୁ ମୋର ବଳ ପାଉ- ନାହିଁ । ମୁଁ ଆଜି କେଉଁଠି ରହିଯିବ । କାଲି ସକାଳୁ ଯିବ ।

ବୋଉ କହିଲା, ନଟେଇ, ଗୀତାକୁ କଷ୍ଟ ହେଲାଣି । ଦିନଯାକ ଉପାସ । କଟକରେ ରାତିଟିଏ ରହିବାକୁ କେଉଁଠି ଥାନ ମିଳିବ ନାହିଁ ?

ନଟେଇ ଦାଦା କହିଲେ, ଥାନ ନାହିଁ କାହିଁକି, ତେବେ ବଢ଼ିଲା ଝିଅକୁ ନେଇ କଟକରେ କେଉଁଠି ରହିବ ? ମୋ ବିବେଚନାରେ ଏହା ଭଲ ହେବ ନାହିଁ । ଘରକୁ ଫେରିଯିବା ଉଚିତ । ଗାଁରେ ବାରଲୋକ ବାରକଥା କହିବେ । ଲୋକଙ୍କ ତୁଣ୍ଡରେ କେହି ହାତ ଦେଇ ପାରିବେ ନାହିଁ । ପରର ଦୁର୍ନାମ ରଟାଇବାକୁ କେତେ ଅଲକ୍ଷଣ ଲୋକଙ୍କର ପାଟି ଖଲଖଲ ହେଉଥାଏ । କାହିଁକି ଏ ପ୍ରମାଦ ? ହାତେ ମାପି ଗୃହଖଣ୍ଡକରେ ଗ୍ଲଲେ ଶତ୍ରୁ ବି ମୁହଁ ଖୋଲି ପାରିବ ନାହିଁ । ତୁମେ ରାତାରାତି ଗ୍ରାମକୁ ଫେରିଯାଅ ।

୩

ନଟେଇ ଦାଦା ବିଦାୟ ନେଇଗଲେ । ଆମେ ସବୁ ନଈକୂଳକୁ ଫେରିଲୁ । ମୋର ମନର କେତେ ଆଶା କେତେ ସ୍ୱପ୍ନ ଭାଙ୍ଗି ଚୂନା ହୋଇଗଲା ।

ଭାଗ୍ୟରେ ଯାହା ଥାଏ ତାହା ଯଦି ହୁଏ, ବୃଥାରେ ମଣିଷ ନିଜ ତା ଜୀବନରେ ଏତେ ଅଶାନ୍ତି ଆଣେ କାହିଁକି ? ଆଶା ଅଭିଳାଷର ଭଙ୍ଗା ଗଢ଼ାର ଉତ୍ତେଜନାରେ ମଣିଷ ଛଟପଟ ହୁଏ କାହିଁକି ? କାହିଁକି ତା ମନରେ ଆଶାର ଆଲୁଅ ଜଳି ଉଠେ, ଜଳୁ ଜଳୁ ନିଷ୍ପ୍ରଭ ହୁଏ, ଲିଭି ଆସେ, ଲିଭୁ ଲିଭୁ ତେଜି ହୋଇ ଉଠେ ପୁଣି ଅଗ୍ନିକଣ ଅସୀମ ଅନ୍ଧାରରେ ଲୀନ ହେବାକୁ । ମନରେ ଗୁଡ଼ିଯାଏ ସ୍ମୃତିର ପୋଡ଼ା ପାଉଁଶ, ଯାହାକୁ ଦେଖି ଆତ୍ମା ବାହୁନି ଉଠେ । ସେହି ବାହୁନାର ଅଶାନ୍ତି ଭିତରେ ଟିକିଏ ଅଲୁହା ଛପିଲା ଆନନ୍ଦ ସେ ପାଏ ପରା !

ଦେବୀଗଡ଼ା ଘାଟ । ମୁହୂର୍ତ୍ତକ ପରେ ଗାଡ଼ି ନଈ ଭିତରକୁ ଓହ୍ଲାଆନ୍ତା । କେତେ ଆଶା ଉନ୍ମାଦନାକୁ ମନରେ ସମାଧି ଦେଇ ଗାଁକୁ ମୁଁ ଫେରି ଯାଉଥାନ୍ତି । ଯାହା ଘଟିଥାନ୍ତା ବରଣ କରି ନେଇଥାନ୍ତି । ବିନା ଆପତ୍ତିରେ । କିନ୍ତୁ ଭାଗ୍ୟର ଉପହାସ, ଅଦେଖା ହାତର ନିର୍ଦ୍ଦେଶ ଏଡ଼ିଦେଇ ଗ୍ଲଲିଯାଇ ହେଲା ନାହିଁ ।

ଦେବୀଗଡ଼ା ଘାଟ । ସେଇଠି ଦେଖାହେଲା ଅମର ଭାଇଙ୍କ ସଙ୍ଗରେ । କାହାକୁ ଅପେକ୍ଷା କରି ରାସ୍ତା ଉପରେ ସେ ଠିଆ ହୋଇଥିଲେ । ବୀନାକୁ ସେ ଚହିଁଲେ । ବୀନା ମଧ୍ୟ ତାଙ୍କୁ ଚହିଁଲେ ।

ଅମର ଭାଇ ଗାଡ଼ି ପାଖକୁ ଆସି ବୋଉକୁ ପ୍ରଣାମ କଲେ । ଆମେ କାହିଁକି କଟକ ଆସିଥିଲୁ ବୋଉ ତାଙ୍କୁ ଅଳ୍ପ କଥାରେ ବୁଝାଇ କହିଲା । ଆମେ ଯେ ବାଧ୍ୟ ହୋଇ ସେ ଦିନ ଗାଁକୁ ଫେରି ଯାଉଛୁ ଏ କଥା ଶୁଣି ଅମର ଭାଇ କହିଲେ, ଆଜି ରାତିରେ ଆମର ବସାରେ ରହିଯାଅ, ପାହାନ୍ତାରୁ ଉଠି ଥଣ୍ଡାଏ ଥଣ୍ଡାଏ ଗ୍ରାମକୁ ଫେରିଯିବ ଯେ ବାଧା ହେବ ନାହିଁ । ରାତିବେଳାଳି କ୍ଲାନ୍ତ ଦେହରେ ଫେରିଯିବା ଉଚିତ ନୁହେଁ ।

ରାଧା କହିଲା, କାଲି ସକାଳୁ ଧବଳେଶ୍ବର ଯାଇ ଗାଁକୁ ଫେରିଲେ ଭଲ ହେବ । ତମ ବସାରେ ମାଇପିଲୋକ ଅଛନ୍ତି ?

ସେ କହିଲେ, ମାଇପି ଲୋକ କେହି ନାହାନ୍ତି । ଆମେ ତିନିଜଣ ମେସ୍ କରି ରହିଛୁ । ଜଣକର ଦେହ ଖରାପ ବୋଲି ତିନିଦିନ ହେଲା ସେ ତାଙ୍କ ଗ୍ରାମକୁ ଯାଇଛି । ବାକି ଜଣକ ବୁଢ଼ା ଅତି ଭଲ ଲୋକ । ଆମର ମୁରବୀ ପରିକା । ବସାରେ ଥିଲେ କିଛି ଆପତ୍ତି ନାହିଁ । ତୁମ ମାନଙ୍କୁ ଦେଖିଲେ ସେ ନିଜେ ଆଡ଼େଇ ହୋଇ ରହିବେ ।

ବୋଉ ପଚାରିଲା, ତମ ବସା ଏଠିକି କେତେ ଦୂର ?

ଅମର ଭାଇ କହିଲେ, ବେଶି ଦୂର ନୁହେଁ । ରଘୁନାଥଜୀ ମନ୍ଦିର ପାଖେ, ବଧୁବାବୁ ମାଷ୍ଟରଙ୍କ ଘର ଆଗରେ ।

ମୋର ଛାତିରେ କିଏ ଖଣ୍ଡି ପଡ଼ିଲା । ବଧୁବାବୁ ମାଷ୍ଟର ! ପୁଣି କାହିଁକି ସେ ନାମଟା ମୋ କାନରେ ପଡ଼ିଲା ? ମୋର ଶୋଇଲା ଅଣା ଚେଇଁ ଉଠିଲା ପରକ୍ଷଣରେ ମୁଣ୍ଡ ନୁଆଁଇବାକୁ । ବୋଉର ଉତ୍ତରକୁ କାନ ଡେରି ରହିଲି ।

ବୋଉ କହିଲା, ବଧୁବାବୁ ମାଷ୍ଟର ! ତୁମେ ତାଙ୍କୁ ଚିହ୍ନ ଅଛ ?

ଅମର ଭାଇ କହିଲେ, ଚିହ୍ନେ । ବିଶେଷ ଆଳାପ ନାହିଁ । ସେ ବେଶି ବେଳ ଘରେ ରହନ୍ତି ନାହିଁ । ସବୁବେଳେ କାମରେ ବ୍ୟସ୍ତ । ତାଙ୍କ ପୁଅ ପ୍ରବୋଧ ବାବୁଙ୍କ ସଙ୍ଗେ ମୋର ଭଲ ଚିହ୍ନା ପରିଚୟ ଅଛି । ସେ ଅତି ଭଲ ପିଲା । ଯେପରି ସ୍ନେହୀ, ସେପରି ମିଳାପୀ । ଧୀର ସ୍ଥିର, ଚରିତ୍ରବନ୍ତ । ଆମେ ଗରିବ । ସେ କାହିଁ କେତେ ଉପରେ । ଲାଟସାହେବଙ୍କ ଅଫିସରେ ବଡ଼ କାମ କରନ୍ତି । ବିଦ୍ବାନ । ତଥାପି, ସେ ଆମ ବସାକୁ ଆସନ୍ତି, ଆମ ସଙ୍ଗେ ମିଶନ୍ତି, କଥାଭାଷା ହୁଅନ୍ତି । ବଡ଼ଲୋକି ଠିକଏ ନାହିଁ । ଆମର ସାଙ୍ଗୀ ପରି ବ୍ୟବହାର କରନ୍ତି । ଆମର ସଙ୍କୋଚ ପଣ ସେ ରଖାଇ ଦିଅନ୍ତି ନାହିଁ ।

ବୋଉ ଆଗ୍ରହରେ କହିଲା, ବଡ଼ଲୋକ ?

ଅମର ଭାଇ କହିଲେ, ବଡ଼ ଲୋକ ହେବ ସେ କପରି ଲୋକ । ଘଡ଼ିକରେ ପରକୁ ଆପଣାର କରି ନିଅନ୍ତି । ଆମେ ଗରିବ କିନ୍ତୁ ଦେଖା ହେଲେ କେତେ କଥା

କହନ୍ତି । ସୁଖ ଦୁଃଖ ପଚାରନ୍ତି । ଶୁଣିବ, ପନ୍ଦର କୋଡ଼ିଏ ଦିନ ତଳେ ମୋତେ ଜର ହୋଇଥିଲା । ଗୀତା ଝିଅଟା ଶୁଣିପାରି ନିଜେ ଆସି ଡାକ୍ତର । କେତେ କଥା ପଚାରିଲେ । ପୂଜାରୀ ନ ଥାଏ ବୋଲି ନିଜ ହାତରେ ବାର୍ଲି କରିଥିବ କରି ତାଙ୍କ ଘରୁ ମୋ ପାଇଁ ପ୍ରବୋଧବାବୁଙ୍କ ହାତରେ ପଠାଇ ଦେଲେ । ତୁମକୁ ସବୁ ଦେଖିଲେ ସେ ବଡ଼ ଧାଇଁ ଆସିବେ ଯେ, ଦେଖିବ ।

ବୋଉ କଅଣ ଭାବି କହିଲା, ହଉ ତେବେ ଅମୁ, ଆଜି ରାତିକ ଆମେ ତୁମ ଘରେ କୁଣିଆଁ ହେବୁଁ । କାଲି ସକାଳେ ଏକା ଆମକୁ ତୁମେ ଧବଳେଶ୍ୱର ନେଇ ଦିଅଁ ଦର୍ଶନ କରାଇ ଆଣିବ । ଗୀତା ଗୁରୁମାସ ହେଲା ମୋ ସଙ୍ଗେ ଲଟାଉଛି, ଧବଳେଶ୍ୱର ଦେଖିବ । କଟକ ଆସିବାକୁ ଆଉ କେବେ ସୁଯୋଗ ମିଳିବ କି ନାହିଁ କିଏ ଜାଣେ ? ଝିଅଟାର ଆଗ୍ରହ ଭାଙ୍ଗିବି କାହିଁକି ?

ଟାଉ ଫେରନ୍ତି ଗଲେ ।

ବାହାରେ ଅମୁଭାଇ କହିଲେ, ପରଘରେ ମୁଣ୍ଡ ବିକିଲେ ମଣିଷ ଆଉ ନିଜର ହୋଇ ରହି ପାରେ ନାହିଁ । କାଶୀବାବୁ ଓକିଲଙ୍କ ସିରସ୍ତାରେ ମୋହରିର କାମ କରୁଛି । ଚଳିବା ମାନଅଁ ରୋଜଗାର ହେଉଛି । ଓକିଲଙ୍କ ଠାରୁ ଛୁଟି ନ ନେଲେ ଧବଳେଶ୍ୱର ଯାଇ ପାରିବି ନାହିଁ । ତାଙ୍କୁ କହିବି । ଦେଖାଯାଉ କଅଣ ହେଉଛି ।

ରାଧା କହିଲା, ଦେଖାଯାଉ କହିଲେ ଚଳିବ ନାହିଁ, ଅମୁବାବୁ । ତୁମରି ଭରସାରେ ଆସିଛୁ । ଆମ ପାଇଁ ଦିନଟିଏ କଷ୍ଟ କରିବାକୁ ହେବ ।

ଅମୁଭାଇ ହସିଲେ, କହିଲେ, ଆଚ୍ଛା ।

ବୋଉ କଅଣ ଭାବୁଥିଲା, ହଠାତ୍ ପଚାରିଦେଲା, ଅମୁ, ବଧୂବାବୁଙ୍କ ପୁଅର କଅଣ ବାହାଘର ଠିକ୍ ହେଲାଣି ?

ଅମର ଭାଇ କହିଲେ, ପାତ୍ରିଟିଏ ଖୋଜୁଥିଲେ ତ । କେତେ ଜାଗାରେ ସମ୍ବନ୍ଧ ପଡ଼ୁଥିଲା । କେଉଁଠି ଠିକ୍ ହୋଇଛି କି ନାହିଁ ମୁଁ ଜାଣେ ନାହିଁ । କାହିଁକି ? ଓ, ବୁଝିଲି । ସତେ, ଗୀତା ଯଦି ପ୍ରବୋଧ ବାବୁଙ୍କ ହାତ ଧରନ୍ତା କେଡ଼େ ଭଲ ହୁଅନ୍ତା । ମୁଁ ନିଜେ ପଚାରିବି । ତୁମେ ରହ । ଠାକୁରଙ୍କ ଉପରେ ଭରସା ରଖ ।

ମୁଣ୍ଡର ଲୁଗାଟିକୁ ଟାଣି ଅନ୍ୟମନା ହେଲାପରି ରାଧାକୁ କହିଲି, ଧବଳେଶ୍ୱର ପରା ଡଙ୍ଗାରେ ଯାଆନ୍ତି ?

ରାଧା ମୋତେ ଚିମୁଟି ଦେଇ କହିଲା, ରହ, ଧବଳେଶ୍ୱର କଥା କାଲି ସକାଳେ ବୁଝିବା ।

ବୋଉ କହିଲା, ବଡ଼ଲୋକ ସେମାନେ ।

ଅମୁଭାଇ କହିଲେ, ସେ ଧନ ଖୋଜନ୍ତି ନାହିଁ । ସେ ଚାହାନ୍ତି ବୋହୂଟିଏ । ସୁନ୍ଦର, ଗୁଣର, ଠିକ୍ ଆମ ଗୀତା ପରି । ଠାକୁରଙ୍କର ଯାହା ବରାଦ ଥିବ ହେବ ।

ମନ୍ତ୍ରୀଙ୍କର କି ଗୁଣ ? ଦେଖାଯାଉ ପ୍ରସ୍ତାବ ପକାଇବା । ଗୀତାକୁ ସେମାନେ ଆଗ ଦେଖନ୍ତୁ । ସେମାନଙ୍କର ମନ ମାନୁ । ସେଇଠୁ ଯେଉଁ କଥା ।

ବୋଉ ତୁନି ରହିଲା ।

ଗ୍ୟାବଲ୍, ପରୀକ୍ଷା, ପରୀକ୍ଷାର ବେଳ ଆସିଛି, ଭାଗ୍ୟର ଖେଳ । ସେ ଗୃହାନ୍ତ ବୋହୂଟିଏ, ସୁନ୍ଦର, ଗୁଣର, ଠିକ୍ ମୋର୍ଚ୍ଚରି ପରି ! ଅମ୍ବୁଭାଇଙ୍କ ଆଖିରେ ଗୀତା ସୁନ୍ଦର, ଗୀତା ଗୁଣର । ଯେଉଁମାନେ ତାଆର ପରୀକ୍ଷକ ତାଙ୍କ ଆଖିକୁ ଗୀତା କିପରି ଦିଶିବ ?

୭୯

ଅମର ଭାଇଙ୍କ ବସାଟି ଛୋଟ । ବାହାର ଘରକୁ ଛାଡ଼ିଦେଲେ ଆଉ ଦୁଇଟି ଖଞ୍ଜା ଭିତରକୁ କବାଟ । ରାସ୍ତା ଆଡ଼କୁ ଗୋଟିଏ କାଠ ଝରକା । ଅଗଣା ଭିତରେ କୂଅ । କୂଅକୁ ଲାଗି ନୂଆ ତିଆରି ରୋଷାଇ ଘର ।

ବାହାରକୁ ଲାଗି ଯେଉଁ ଘରଟି ସେଇଥିରେ ଅମର ଭାଇ ରହନ୍ତି । ସେପାଖ ଘରଟି ଟିକିଏ ବଡ଼ । ତେଣୁ ଆଉ ଦୁଇ ଜଣ ସେଥିରେ ରହନ୍ତି । ଆମର ରହିବା ପାଇଁ ଅମର ଭାଇ ପ୍ରଥମ ବଖରାଟି ଛାଡ଼ିଦେଲେ ।

ରାସ୍ତା ପାଖ ଝରକାକୁ ଲାଗି ଖଟ ପଡ଼ିଛି । ଏ ପାଖ କାନ୍ଥକୁ ଲାଗି ଯେଉଁ ବେଞ୍ଚ, ତା ଉପରେ ଖଣ୍ଡିଏ ଟ୍ରଙ୍କ, ଗୋଟିଏ ବସ୍ତାନୀ ଓ କେତେ କାଗଜପତ୍ର, ନଥି ରଖା ହୋଇଛି । ଅଲଗୁଣୀରେ ଦୁଇ ତିନ ଖଣ୍ଡ ଲୁଗା ଓ ସତରଞ୍ଜି ।

ମୁଁ କ୍ଳାନ୍ତ ହୋଇଥିଲି । ଖଟ ଉପରେ ଯାଇଁ ବସିଲି । ବୋଉ ଓ ରାଧା ଅମରଭାଇ ସଙ୍ଗେ ଖଞ୍ଜା ଭିତରେ ବୁଲି କେଉଁଠି କିଏ ରହେ, କେତେ ଘର ଭଡ଼ା ଇତ୍ୟାଦି ଖବର ବୁଝିଲେ । ଦଶ ବାର ବର୍ଷର ଟୋକାଟିଏ ଭୀମା, ସେମାନଙ୍କର ରୋଷାଇ କରେ । ଅମର ଭାଇଙ୍କ କହିବା ମତେ ସେ ଲଣ୍ଠଣ ଜଳାଇ ମୋ ଥିବା ଘର ବେଞ୍ଚ ଉପରେ ଥୋଇ ଦେଇଗଲା ।

ସମସ୍ତେ ସେଇ ଘରକୁ ଫେରି ଆସିଲେ । ଅମର ଭାଇ ବୋଉକୁ କହିଲେ, ଦିନଯାକ ଉପାସ ପଡ଼ିଛ, ଭୀମା ରୋଷାଇ ବସାଉ । ଦିନାକୁ ସଙ୍ଗରେ ନେଇ ମୁଁ ବଜାରକୁ ଯାଉଛି, ପରିବା ପତ୍ର କିଣି ତା ହାତରେ ପଠାଇ ଦେବି । ମୁଁ ଟିକିଏ ଓକିଲ ବାବୁଙ୍କ ଘରକୁ ଯିବି । ଆସୁ ଆସୁ ଡେରି ହୋଇପାରେ ।

ସେ ବଜାରକୁ ବାହାରିଲେ । ଦିନା ତାଙ୍କ ସଙ୍ଗରେ ଗଲା । ଆମକୁ ଦେଖି ଅମ୍ବୁଭାଇ ଯେଉଁ କ୍ଷୀରାବାବୁଙ୍କ କଥା କହୁଥିଲେ, ସେ ମଧ୍ୟ କୁଆଡ଼କୁ ଚାଲିଗଲେ । ଭୀମାକୁ ରୋଷାଇରେ ସାହାଯ୍ୟ କରିବାକୁ ବୋଉ ଗଲା ରୋଷଘରକୁ । ରାଧା ମୋ ପାଖରେ ରହିଲା ।

ମୁଁ କହିଲି, ରାଧା, ଭାରି କ୍ଲାନ୍ତ ଲାଗୁଛି, ଶୋଇବାକୁ ଇଚ୍ଛା ହେଉଛି ।

ରାଧା କହିଲା, ଶୋଇ ପଡ଼ୁନ । ଉଠ, ମୁଁ ପାରିଦିଏଁ ।

ଖଟ ଉପରେ ସତରଞ୍ଜି ଖଣ୍ଡି ପାରିଦେଲା । ମୁଁ ବାହୁ ଉପରେ ମୁଣ୍ଡ ଦେଇ ଶୋଇଲି ।

କହିଲା, ତମେ ଏକୁଟିଆ ଥା ଦେଇ, ଡରିବ ନାହିଁ । ମୁଁ ବୋଉଙ୍କ ପାଖକୁ ଯାଏଁ ।

କହିଲି, ମୁଁ କଅଣ ପିଲାଛୁଆ ହୋଇଛି କି ଡରିବି ? ନାଲଟଣ କମାଇ ଦେଇ ତୁ ଯା, ମୁଁ ଶୋଉଛି ।

ନିଦ ହେଲା ନାହିଁ । ମଶାଙ୍କ ଦାଉରେ ଛଟପଟ ହୋଇ ଏକର ସେକର ହେବାକୁ ଲାଗିଲି । ଝରକା ବାଟେ ପଦାକୁ ଚାହିଁଲି । ରାସ୍ତା ସେ ପାଖେ ଏ ଘର ସାମନାରେ ବିଧୁବାବୁଙ୍କର ଘର ! ଉଚ୍ଚ ଏକମହଲା କୋଠା । ରାସ୍ତା ଉପରେ ବିଜୁଳି ଆଲୁଅରେ ଦେଖା ଯାଉଥାଏ । ଝରକା ଗୁଡ଼ିକ ସବୁ ବନ୍ଦ ହୋଇଛି । ଜଣା ଯାଉଛି, ଯେପରି ଘରେ କେହି ନାହିଁ ।

ଭାବିଲି, ଯାହା ଅସମ୍ଭବ ସେ କଥା ମନକୁ ଆଣି ବୃଥାରେ କାହିଁକି ହେବା ଉଚିତ ନୁହେଁ । ତଥାପି କେଜାଣି କାହିଁକି ମନ ହେଉଥାଏ, ଥରେ ପ୍ରବୋଧ-ବାବୁଙ୍କୁ ଦେଖନ୍ତି କି ! ଦେଖନ୍ତି ଦୂରରୁ..., କିନ୍ତୁ କାହିଁକି ? ସଂସାରରେ କେତେ ଧନୀ, କେତେ ବିଦ୍ୱାନ୍ ଅଛନ୍ତି । ପ୍ରବୋଧବାବୁଙ୍କୁ ଦେଖିଲେ ବେଶି କଅଣ ହେବ ?

ଅମର ଭାଇ ପାଗଳ । କେଉଁ ଆଶାରେ, କି ସାହସରେ ସମ୍ବନ୍ଧ ପକାଇବେ ? ଲୋକହସା ହେବେ । ମୋଓଟର ପାଇଁ ଲୋକହସା ହେବେ କାରଣ, ସେ ମୋତେ ଭଲ ପାଆନ୍ତି ? ଚମକି ପଡ଼ିଲି ନିଜର ଚିନ୍ତାରେ । ସେ ମୋତେ ଭଲ ପାଆନ୍ତି ନାହିଁ । ତା ହୋଇଥିଲେ ଅନ୍ୟ ଜଣକ ବିଷୟରେ ସମ୍ବନ୍ଧ ପକାଇବାକୁ ଆଗ୍ରହ ଦେଖାନ୍ତେ ନାହିଁ ।

ବୋଉ ଆସି ଡାକିଲା । ମୁଁ ଜବାବ ଦେଲି । ସେ କହିଲା, ଗୀତା, ଆ ଯିବା ରଘୁନାଥଜୀ ମନ୍ଦିରକୁ, ଦିଅଁ ଦର୍ଶନ କରି ଆସିବା ।

ରାଧା କହିଲା, ନାଇଁ, ସେ ଶୋଇଥାଉ, ଆସ ଆମେ ଯିବା । ଘରେ ତ ଭୀମା ଅଛି । ମନ୍ଦିର ତ ପାଖରେ ।

ବୋଉ କଅଣ ଭାବି କହିଲା, ହଉ ତେବେ ଥା । ଗୀତା, ତୁ ଥା, ଆମେ ଆସୁଛୁ ।

ମୁଁ ରହିଲି । ସେମାନେ ଚାଲିଗଲେ । ମଶା ଉତ୍ପାତରୁ ରକ୍ଷା ପାଇବାକୁ ମଶାରିଟା ପକାଇ ଶୋଇବାକୁ ଚେଷ୍ଟା କଲି ।

କେତେବେଳେ ମୋତେ ନିଦ ହୋଇଗଲା ମୋର ଖିଆଲ ନାହିଁ ।

୪୦

ଜୀବନର କେଉଁ ମୁହୂର୍ତ୍ତରେ କଅଣ ଘଟେ ସବୁ ମନେ ରହେ ନାହିଁ । ଭୁଲା ଅତୀତ ଆଡ଼କୁ ଆଖି ଫେରାଇଲେ ଯେଉଁ ଦୃଶ୍ୟ ମଣିଷର ଆଖିରେ ପଡ଼େ ସେ ସତ ହେଲେ ବି ସ୍ୱପ୍ନ ପରି ମନେ ହୁଏ । ଦୁଃଖ ଆସେ କି ସୁଖ ଆସେ କହିପାରିବି ନାହିଁ । ତେବେ, ମୋର ମନେହୁଏ, ବର୍ତ୍ତମାନର ଅବସ୍ଥା ଉପରେ ଅତୀତ ସ୍ମୃତିର ସୁଖ ଦୁଃଖ ନିର୍ଭର କରେ ।

କଟକରେ ଗୋଟିଏ ରାତି ।

ଯାହା ଯାହା ଘଟିଗଲା ଆଜି ଭାବିଲେ ମନେହୁଏ ସେ ସବୁ ଯେପରି ବାସ୍ତବ ନୁହେଁ, କେବଳ ସ୍ୱପ୍ନ । ଯାହା ଘଟିଥିଲା, ପର ଜୀବନ ଉପରେ ତାର ସ୍ଥିର, ତାର ପ୍ରଭାବ ପଡ଼ିଥିଲେ ମଧ୍ୟ ପର ଜୀବନର ଗତିକୁ ବଦଳାଇ ପାରି ନାହିଁ । ଯେତିକି ଭାବେ, ଭାଗ୍ୟ ବା ନିୟତି ବା କେଉଁ ଅଦେଖା ହାତର ଗୃଳନା ଉପରେ ବିଶ୍ୱାସ ସେତିକି ଦୃଢ଼ ହୁଏ । କ୍ଷଣକର ବ୍ୟବଧାନରେ ଜୀବନର ଗତି ବଦଳି ଯାଏ, ସୁଖ ଦୁଃଖ ଓଲଟ ପାଲଟ ହୋଇଯାଏ ।

ସ୍ୱପ୍ନ ପରି ଜଣା ଯାଉଥିଲା ମତେ କିଏ ଯେପରି ମୋର ମଶାରି ପାଖରେ ଠିଆହୋଇ ଡାକୁଛନ୍ତି, ଅମର, ଅମର, ସନ୍ଧବେଳଟାରେ ଶୋଇଛ କାହିଁକି ? ଦେହ ପୁଣି ଖରାପ ହେଲା କି ?

ନିଦ ମୋର ଭାଙ୍ଗୁଥାଏ, ପୁଣି କ୍ଲାନ୍ତ ଆଖିପତା ମାଡ଼ିହୋଇ ପଡ଼ୁଥାଏ ; ଅପରିଚିତ କାହାର ସ୍ୱର ! ଉଠି ବସିବାକୁ ଇଚ୍ଛା ହେଉଥାଏ । ଅବଶ ଦେହ ଉଠୁ ନ ଥାଏ ।

କାହା ହାତର ସ୍ପର୍ଶ ମୋର କପାଳରେ ଲାଗିଲା । ଉଠି ବସିଲି । କାହାର ହାତଟିଏ ମଶାରି ଭିତରୁ ପଦାକୁ ବାହାରିଗଲା । ଚମକି ଗୃହିଁଲି । କିଏ ? ଘର ଭିତରେ କମା ହୋଇଥିବା ନଲଟେଣଟି ତେଜା ହୋଇ ଉଜ୍ଜ୍ୱଳ ଭାବରେ ଜଳୁଛି । ମଶାରି ପାଖରେ ଜଣେ କିଏ ଠିଆ ହୋଇଛନ୍ତି । ଭୟରେ ଦେହ ଥରି ଉଠିଲା । ଡରି ଡରି ମଶାରି ଟେକି ପଦାକୁ ବାହାରି ଆସିଲି । ଅପରିଚିତ ଭଦ୍ରଲୋକଟି ଅପ୍ରସ୍ତୁତ ହୋଇ ପଛକୁ ଘୁଞ୍ଚିଗଲେ । ମୁଁ ତାଙ୍କୁ ଆଉଜି ଠିଆ ହେଲି ।

ଥରଟିଏ ତାଙ୍କ ମୁହଁକୁ ଗୃହିଁଛି, ଥରଟିଏ । ମନରେ କପରି ଧାରଣା ହେଲା, ସେଇ ସେ ପ୍ରବୋଧବାବୁ, ଯାହାଙ୍କ କଥା ମୁଁ ଶୁଣିଥିଲି, ଯାହାଙ୍କ ସମ୍ବନ୍ଧରେ କେତେ ରାତି ଉନିଦ୍ର ହୋଇ ଆଖି ଲୁହରେ ହାତ ଓଦା କରିଥିଲି । ଆଉଥରେ ଥରେ ଗୃହିଁବାକୁ ପ୍ରବଳ ଇଚ୍ଛା ହେଉଥାଏ । ଭୟରେ, ସଙ୍କୋଚରେ ଆଖି ଟେକି ପାରିଲି ନାହିଁ ।

ସେ ଫେରିପଡ଼ି ଦ୍ୱାରମୁହଁକୁ ଗଲେ । ଥରିଲା କଣ୍ଠରେ ଡାକଲେ, ଭାମା !

ଜବାବ ଦେଇ ଭୀମା ପାଖକୁ ଆସିଲା । ପଚାରୁଥିଲେ ଧୀରେ, କିଏରେ ?

ଭୀମା ଉତ୍ତର ଦେଲା, ଅମରବାବୁଙ୍କ ଘରୁ କିଏ ସବୁ ଆସିଛନ୍ତି ।

ଓଃ, କହି କଣେଇ ଚାହିଁଲେ ମୋ ଆଡ଼କୁ । ମୁଁ ଆଡ଼େଇ ଗଲି । ସେ ଦାଣ୍ଡ ଘରଆଡ଼େ ଯାଉଣୁ କହିଲେ, ଭୀମା, ବାପା ବୋଉ କୁଆଡ଼େ ଯାଇଛନ୍ତି କହିପାରିବୁ କିରେ ? ଆମ ଚାକରଟା ତ ଯେପରି ଓଲୁ ତୁ ଜାଣୁ, କିଛି କହିପାରୁ ନାହିଁ ।

ଭୀମା କହିଲା, ଦିନ ରତ ରତ ହେଉଥିଲା, ଘୋଡ଼ାଗାଡ଼ି ଚଢ଼ି ସେମାନେ କୁଆଡ଼େ ଗଲେ । ମୁଁ ଦାଣ୍ଡରେ ବସିଥିଲି ଦେଖିଛି ।

କହିଲେ, ଏତେବେଳଯାଏ ଆସି ନାହାନ୍ତି । ଅଚ୍ଛା, ଅମର ?

ସେ ଯାଇଛନ୍ତି ବଜାରକୁ ।

ତା ପରେ ଲୁଚି ଲୁଚି କଅଣ ପଚାରୁଥିଲେ । ଭୀମା କଅଣ ଉତ୍ତର ଦେଲା ମୁଁ ଶୁଣିପାରିଲି ନାହିଁ । ସେ ଫେରିଗଲେ । ମୁଁ ଝରକା ବାଟେ ପଦାକୁ ଚାହିଁଲି । ସାଇକେଲ୍ ଚଢ଼ି ସେ ସଙ୍ଗେ ସଙ୍ଗେ କୁଆଡ଼େ ଚାଲିଗଲେ ।

ମୋର ଦେହ ଗୋଟାଯାକ ଥରୁଥାଏ । ଭୀମାକୁ ପାଖକୁ ଡାକି ପଚାରିଲି, ସେ କିଏ ଭୀମ ?

କହିଲା, ଆମ ବସା ଆଗରେ ବାବୁଙ୍କ ଘର । ଅମରବାବୁଙ୍କୁ ଖୋଜୁଥିଲେ ।

ମୁଁ ରହି ରହି ପଚାରିଲି, ଲୁଚି ଲୁଚି କଅଣ ପଚାରୁଥିଲେରେ ?

ସେ ହସିଲା । କିଛି କହିଲା ନାହିଁ ।

ଟେକେଇ ପଚାରିଲି, କହୁନୁ ଭୀମ ?

ଭୀମ କହିଲା, ପଚାରିଲେ, ସେ ଘରେ ଯେଉଁ ଝିଅଟି ଅଛି ସେ କିଏ ?

ମୁଁ କହିଲି, ସେ ଅମରବାବୁଙ୍କର କଣ ହୁଅନ୍ତି ।

ଭୀମା ରୋଷାଇଘରକୁ ଗଲା ।

ମୁଁ ପୁଣି ମଶାରି ଟାଣି ଖଟଉପରେ ଶୋଇଲି । ଭାବିଲି, କଅଣ ସେ ମନେ କରିଥିବେ ? କେତେ ଚିନ୍ତା ମନକୁ ଆସିଲା । ସବୁ ଯେପରି ଗୋଳମାଳିଆ ହୋଇଗଲା । ଦୁଇଆଖି ଉଛୁଳି ଲୁହଧାର ଗଡ଼ି ଆସିଲା ।

## ୪୧

ସୁଲକ୍ଷଣରେ କି କୁଲକ୍ଷଣରେ ଜାଣେ ନାହିଁ, ଯାହାଙ୍କୁ ମୁଁ ମନେ ମନେ ଖୋଜୁଥିଲି ସେହି ପ୍ରବୋଧବାବୁଙ୍କ ସଙ୍ଗେ ମୋର ଅକସ୍ମାତ ଦେଖା ହେଲା । ସେ ମଧ୍ୟ ମୋତେ ଦେଖିଲେ, କିନ୍ତୁ ସେ ଜାଣିଲେ ନାହିଁ ମୁଁ କିଏ । ବୁଝିଲେ ନାହିଁ ମୋ ମନର ଗୋପନ ବେଦନା । ତାଙ୍କ ହାତର ଅରଟିଏ ସ୍ପର୍ଶ ମନରେ ଯେଉଁ

ଅଶା ଉନ୍ମାଦନାର ଢେଉ ଖେଳାଇ ଦେଇଥିଲା, ତାର ପ୍ରଭାବରେ ଆଉ ମୋର ନିଦ ହେଲା ନାହିଁ । କି ଅଶାରେ କେଜାଣି ମୋର ମନ ଉଲସି ଉଠିଲା ।

ବୋଉ ଓ ରାଧା ଫେରି ଆସିଲେ । ଅମର ଭାଇ ମଧ୍ୟ ଫେରିଲେ । ମୋ ଥିବା ଘରକୁ ଆସି ପଚାରିଲେ ବୋଉକୁ, ଗୀତା ଶୋଇ ପଡ଼ିଛି ?

ବୋଉ କହିଲା, ହଁ ।

ଅମରଭାଇ କହିଲେ, ଏତେବେଳଯାଏ ବଧୁବାବୁ କି ତାଙ୍କ ସ୍ତ୍ରୀ ଫେରି ନାହାନ୍ତି । ପ୍ରବୋଧବାବୁ ଆସି ମୋତେ ଖୋଜୁଥିଲେ । ଭାମା କହୁଛି, ସେ କୁଆଡ଼େ ଗୀତାକୁ ଦେଖି ଯାଇଛନ୍ତି ।

ବୋଉ କାଲେ କଅଣ କହିବ ବୋଲି ମୁଁ ଭୟରେ ସବୁ ଶୁଣି ତୁନି ହୋଇ ମିଛରେ ଶୋଇଥାଏ ।

ଭାମା ଆସି କହିଲା, ସେ ଏଇ ଦୁଆର ମୁହଁକୁ ଆସି ଦେଇଙ୍କି ଦେଖି ଫେରିଗଲେ । ମୁଁ ରୋଷଘରେ ଥିଲି । ସେତ ଜାଣନ୍ତି ନାହିଁ, ଆପଣଙ୍କ ଘରୁ କିଏ ସବୁ ଅସିଛନ୍ତି ବୋଲି ।

ଭାମାକୁ ରୋଷ ଘରକୁ ପଠାଇ ଦେଇ ଅମର ଭାଇ କହିଲେ, ଭଲ ହେଲା । ମୁଁ ନିଜେ ପ୍ରବୋଧବାବୁଙ୍କୁ କହିବି । ସେ ଯଦି ମଗନ୍ତି ତାଙ୍କର ବାପା ମା ଖୁସି ହେବେ ।

ଘଣ୍ଟାକ ପରେ ଗୋଟିଏ ଘୋଡ଼ାଗାଡ଼ି ଆସି ପ୍ରବୋଧବାବୁଙ୍କ ଘର ଆଗରେ ଠିଆ ହେଲା । ଗାଡ଼ିରୁ ଓହ୍ଲାଇ କିଏ ସବୁ ଘର ଭିତରକୁ ଗଲେ । ମୁଁ ଝରକା ବାଟେ ଚାହିଁ ରହିଥାଏ । କିଛି ସମୟ ପରେ ତାଙ୍କ ଘରର ଝରକା ସବୁ ଖୋଲି-ଗଲା । ବିଜୁଳି ଆଲୁଅରେ ଘର ଭିତର ଉଜ୍ଜ୍ୱଳ ଦେଖାଗଲା ।

ଅମରଭାଇ ତାଙ୍କ ଘରକୁ ଗଲେ । ପ୍ରାୟ ଅଧଘଣ୍ଟାକ ପରେ ଫେରି ଆସିଲେ । ମୁଁ ପିଣ୍ଡାରେ ଖାଲି ବସିଥାଏଁ । ସେ ବୋଉକୁ ଘର ଭିତରକୁ ଡାକି ନେଇଗଲେ । ରାଧା ମଧ୍ୟ ମୋ ପାଖରୁ ଉଠିଗଲା । ଘଟଣାଟି ବୁଝିବାକୁ ଆଗ୍ରହରେ କାନ ଡେରି ରହିଲି ।

ଅମର ଭାଇ କହିଲେ, ଭାଗ୍ୟରୁ ବଳି ବଡ଼ କିଛି ନାହିଁ । ସ୍ୱାମୀ ସ୍ତ୍ରୀ ଦୁହେଁ ଯାଇଥିଲେ ଆମର ଓକିଲଙ୍କ ଘରକୁ—କାଶୀବାବୁଙ୍କର ଗୋଟିଏ ଝିଅଟି ଅଛି ଯେ ତାକୁ ଦେଖିବାକୁ ।

ବୋଉ ପଚାରିଲା, କଅଣ ଦେଖିଲେ ?

ଅମରଭାଇ ଦୁଃଖିତ ହୋଇ କହିଲେ, ଝିଅଟିକୁ ମୁଁ ଦେଖିଛି । ସେତେ ସୁନ୍ଦର ନୁହେଁ, ତେବେ ସେ ପାଠ ପଢ଼ିଛି । ବାଳିକା ସ୍କୁଲକୁ ଯାଏ । ଭଲ ଗୀତ ବୋଲି ଜାଣେ । ବୁଣାବୁଣି କାଟିଗର କାମ ଜାଣେ ।

ରାଧା କହିଲା, ଝିଅପିଲାର ଏ ସବୁ ଜାଣି ଲାଭ ନାହିଁ । ଯେତେ ଯାହା ଜାଣିଲେ ଝିଅ ଜନମ ଚୁଲିମୁଣ୍ଡକୁ ।

ଅମର ଭାଇ କହିଲେ, ଯାହାର ଯେପରି ରୁଚି । ବ୍ରହ୍ମଚାରୀ ହେବେଁ ଅଙ୍କ ମି ର ଜବାବ ଦେଇ ଆସିଛନ୍ତି । ଥାଉ, ଯାହାର ଭାଗ୍ୟ ଯେଉଁଠି । କାହିଁ ଗୀତା, ଆଉ କାହିଁ ନମିତା ।

ମନରେ ଦୁଃଖ ହେଲା । ସେ ଦୁଃଖ ବେଶୀ ବେଳ ରହିଲା ନାହିଁ । ଆଶା ଉତ୍ତେଜନାର ଭଙ୍ଗା ଗଢ଼ା କେତେ ତ ସହିଛି । ଏଇ ସାମାନ୍ୟ ଘଟଣାରେ ବିବ୍ରତ ହେବି କାହିଁକି ? ତଥାପି, ପ୍ରବୋଧବାବୁଙ୍କ ହାତର ଉଷୁମ ପରଶର ସ୍ମୃତି ମୋର ମନ ବିଚଳିତ କରେ । ତାଙ୍କର ଥରଟିଏ ବାକୁଳି ଚାହାଣୀ ମୋ ଆଖି ଆଗରେ ପୁଣି ପୁଣି ଦିଶିଯାଏ । ହୃଦରେ ସ୍ପନ୍ଦନ ଦ୍ରୁତ ହୁଏ ।

୪୨

ଯେତେ ଚେଷ୍ଟା କଲି ଭାଗ୍ୟ ବା ନିୟତିର ଦୁହାଇ ଦେଇ ନିଶ୍ଚିନ୍ତ ରହିବି, ଅବୋଧ ମନ ମାନିଲା ନାହିଁ । ଏଣୁ ତେଣୁ କେତେ ଚିନ୍ତା ମନରେ ପଶିଲା । ଅମର ଭାଇ କହିଗଲେ, ପ୍ରବୋଧ ବାବୁଙ୍କର ବାହାଘର କେଉଁ କାଶୀବାବୁ ଓକିଲଙ୍କ ଝିଅଙ୍କ ସହିତ ସ୍ଥିର ହୋଇଗଲା । ସେଥିରେ ମୋର କଅଣ ଥାଏ ? ଦୁନିଆରେ କେତେ ପ୍ରବୋଧବାବୁ ଅଛନ୍ତି, କେତେ ନମିତା ଅଛନ୍ତି, ଆଉ ମୋଭଳି କେତେ ଦରିଦ୍ର ଗୀତା ମଧ୍ୟ ଅଛନ୍ତି । କାହା ଭାଗ୍ୟରେ ବିଧି କଅଣ ଲେଖିଛି ଆଗରୁ କହିହେବ ନାହିଁ ।

ବୋଉ ଓ ରାଧା ବିଧୁବାବୁଙ୍କ ଘରକୁ ବୁଲି ଯିବେ ବୋଲି ଆଗରୁ ପ୍ରସ୍ତାବ କରିଥିଲେ, କିନ୍ତୁ ଅମର ଭାଇଙ୍କ କଥା ଶୁଣି, ସେ ପ୍ରସ୍ତାବ ବନ୍ଦ ରହିଲା । ଅମର ଭାଇ କହିଥିଲେ, ବିଧୁବାବୁଙ୍କ ସ୍ତ୍ରୀ ଆମକୁ ଦେଖିବାକୁ ଧାଇଁ ଆସିବେ । କାହିଁ ଆସିଲେ ନାହିଁ ତ !

କଥା ହେଲା, ପାହାନ୍ତାରୁ ଉଠି ଆମେ ଧବଳେଶ୍ୱର ଯିବୁ । ଖରା ଟାଣ ହେବା ଆଗରୁ ଦର୍ଶନ କରି ତେଣେ ତେଣେ ଗାଁକୁ ଫେରିବୁ ।

ଖିଆପିଆ ସାରି ସମସ୍ତେ ଶୋଇଲେ । ରାସ୍ତାପାଖ ଝରକାକୁ ଲାଗିଥିବା ଖଟଉପରେ ମୁଁ ଶୋଇଲି । ଖଣ୍ଡେ ସତରଞ୍ଜି ପାରି ତଳେ ଶୋଇଲେ ବୋଉ, ଦୁଆର ମୁହଁ ପାଖକୁ ରାଧା । ମଶା କାମୁଡ଼ାରୁ ଉଦ୍ଧାର ପାଇବାକୁ ଅମୁଭାଇ ତାଙ୍କ ଉପରେ ମଶାମାରି ବତୀଟିଏ ଜାଳିଦେଇ ଯାଇଥାନ୍ତି । ସେ ଶୋଇଥାନ୍ତି ବାଟଘରେ ।

ବୋଉ ଓ ରାଧାକୁ ସଙ୍ଗେ ସଙ୍ଗେ ନିଦ ହୋଇଗଲା । ମୋ ମୁଣ୍ଡ ଉପର ଗରମ ହୋଇ ନାଉଥିଲା । ଏକଡ଼ ସେକଡ଼ ହୋଇ ଖାଲି ଛଟପଟ ହେଉଥାଏ । ବେଳେ ବେଳେ ଉଠି ବସୁଥାଏ । ଘର ଭିତରେ ଅନ୍ଧାର କିନ୍ତୁ ଗାତ୍ରୀ ଉପରେ ଦୂର ବିଜୁଳି ଆଲୁଅର ଫିକା ପରଶ ଲାଗିଥାଏ । ବନ୍ଧୁବାବୁଙ୍କ ଝରକା ଗୁଡ଼ିକ ଉଜ୍ଜ୍ୱଳ ଦିଶୁଥାଏ । ଶୁଏ, ଛଟପଟ ହୋଇ ପୁଣି ଉଠି ବସେ । ପଦାକୁ ଘଡ଼ିଏ ଅନାଏଁ, ପୁଣି ଶୋଇବାକୁ ଚେଷ୍ଟା କରେ ।

ଦୂରରୁ ଘଣ୍ଟାର ଶବଦ ଶୁଭିଲା । ଦଶଟା ବାଜିଲା । ଆଖି ବୁଜି ମୁହଁମାଡ଼ି ବିଛଣାରେ ପଡ଼ି ରହିଲି । କିଏ ଜଣେ ଦାଣ୍ଡ କବାଟ ଖଡ଼୍ ଖଡ଼୍ କରି ଡାକିଲେ, ଅମର, ଅମର ।

ମୋର ଗ୍ଲାନି ନିଦ ଭାଙ୍ଗି ଗଲା । ଆଖି ଖୋଲି କାନ ଡେରିଲି । ପୁଣି ସେହି ଡାକ, ଦୁଇ ତିନି ଘଣ୍ଟା ପୂର୍ବେ ଯେଉଁ ଡାକ ଅତି ପାଖରେ ମୁଁ ଶୁଣିଥିଲି । ଯାହାଙ୍କର ହାତର ଅମୃତ ପରଶ ମୋର କପାଳରେ ଲାଗିଥିଲା । ସେ ପ୍ରବୋଧବାବୁ । ଉଠି ବସିଲି । ଭାବିଲି ପୁଣି କେଉଁ ଉଦ୍ଦେଶ୍ୟରେ ରାତି ଅଧରେ ଆସି ସେ ଡାକୁଛନ୍ତି ? ମୁଣ୍ଡ ନୁଆଁଇ ମୁଁ କାନ ପାତି ରହିଲି ।

ପ୍ରବୋଧବାବୁ କହିଲେ, ଅମର, ସଞ୍ଜବେଳେ ତମକୁ ଖୋଜିବାକୁ ଆସି ଯେଉଁ ଓଲମି କରିଛନ୍ତି କଅଣ କହିବି । ଅଫିସରୁ ଆସି ଦେଖିଲି ଘରେ ବାପା ବୋଉ କେହି ନାହାନ୍ତି । ଭାବିଲି, ତମର ବସାରେ ବସି ଗଲେ କରି ଘଣ୍ଟାଏ ଅଧେ କଟାଇ ଦେବି, କିନ୍ତୁ .....

ସବୁ କହିଲେ । ଏଣେ, ଘର ଭିତରେ ମୁଁ ଗୋଟାଗୁଏଁ ଥରୁଥାଏ । ଅମର ଭାଇ କଅଣ ଭାବିଥିବେ । ଏ ସବୁ କଥା ମୁଁ ବୋଉଠାରୁ ଲୁଚାଇ ରଖିଛି । ସେ ଶୁଣିଲେ କଅଣ କହିବ । ଛି ।

ପ୍ରବୋଧବାବୁ ପଚାରିଲେ, ସେ ତୁମର କିଏ ହୁଅନ୍ତି ? ମୁଁ ପ୍ରଥମେ ଭାବିଥିଲି ··, କିନ୍ତୁ ତୁମେ ତ ବାହା ହୋଇ ନାହଁ ବୋଲି ମୋର ଧାରଣା ଥିଲା । ଭାମାକୁ ପଚାରିଲାରୁ ସେ କହିଲା ।

ଅମର ଭାଇ କହିଲେ, ସେ ମୋର ପିଉସୀ ଘର ଲେଖାରେ ଭଉଣୀ ହେବ । ଧବଳେଶ୍ୱର ଦର୍ଶନ କରିବାକୁ ଆସିଛନ୍ତି । ସକାଳେ ଚାଲିଯିବେ ।

କହିଲେ, ରାତି ଅଧରେ ତୁମକୁ ଉଠାଇ ଏ ସବୁ କହିବାର କାରଣ ହେଉଛି କାଳେ ତୁମେ କଅଣ ଭାବିବ ?

ଅମର ଭାଇ କହିଲେ, ଭାବିବି ? ମୁଁ କିଏ ଆପଣଙ୍କୁ ଚିହ୍ନେ ନାହିଁ ପ୍ରବୋଧବାବୁ ? ଗୀତା ମୋର ଭଉଣୀ, ସେ କଅଣ ଆପଣଙ୍କର ଭଉଣୀ ନୁହେଁ ?

ସେ ଉତ୍ତର ଦେଲେ ନାହିଁ । ଦିହେଁ ହାତ ଧରାଧରି ହୋଇ ଅଟକୁ ଗଲେ । ନିଜ ଉପରେ ବିରକ୍ତି ଆସିଲା । କାହିଁକି ମୁଁ ଅନିଦ୍ରାରେ ବସି ଛଟ୍‌ପଟ୍ ହେଉଛି,

କାହାଁକି ବା ଭବିଷ୍ୟତ କଥା ଭାବି ଅଶାନ୍ତିରେ ବେଳ କାଟୁଛି ? ଭାଗ୍ୟରେ ଯାହା ଥିବ ହେବ, ଆଉ, ଯାହା ହେବ, ନୀରବରେ ତାହାକୁ ବରଣ କରି ଅଦେଖା-ହାତର ନିର୍ଦ୍ଦେଶରେ ବାଟ ଚାଲିବାକୁ ହେବ ।

ଶୋଇଲି । ସପନ ଦେଖିଲି । ବେଦି ଉପରେ ବାପାଙ୍କ ପାଖରେ ବସିଛି । ଶଙ୍ଖ ମହୁରି ବାଜୁଛି । ଦୁଇଟି ହାତକୁ ଏକାଠି ବାନ୍ଧି ପୁରୋହିତେ ମନ୍ତ୍ର ଉଚ୍ଚାରୁଛନ୍ତି ।

ସପନ ଦେଖିଲି, ବିଜୁଳି ଆଲୁଅ ସେ ଜାଳିଲେ । ମୁଣ୍ଡରୁ ଓଢ଼ଣା ଘୁଞ୍ଚାଇ ତୁନି ତୁନି କହିଲେ ହସି ହସିକା, ଚିହ୍ନି ପାରୁଛ ?

ହସିଲି ।

ସେ ଯେ ପ୍ରବୋଧ ବାବୁ । ସେ ହସି ହସି ମୁହଁ ନୋଇଁଲେ । ଓଠର ମଧୁର ମୂର୍ଚ୍ଛନାଟିଏ ପରଶିଲେ ଆଖି ବୁଜିଲି । ଦେହକୁ ଆଉଜାଇ ନେଲେ ଛାତି ଉପରକୁ । ଆଖି ଖୋଲିଲି । ମୁଣ୍ଡଟେକି ମୋର ଜୀବନ ସର୍ବସ୍ୱଙ୍କର ହସ ହସ ମୁହଁକୁ ଚାହିଁଲି ।

ଚମକି ଉଠିଲି । ସେ ପ୍ରବୋଧବାବୁ ନୁହଁନ୍ତି, ସେ ଦାମଭାଇ । ତାଙ୍କୁ ଠେଲି ଦେଇ ପଛକୁ ଘୁଞ୍ଚି ଆସିଲି । ବୋଉକୁ ଡାକ ଛାଡ଼ିଲି ।

ନିଦ ଭାଙ୍ଗିଲା । ସପନ ଅପସରିଲା । ଦେହଟା ଥରଥର କରି ଥରୁ-ଥାଏ । ପାହାନ୍ତା ହେଲାଣି । କେତେବେଳୁ ବୋଉ ଓ ରାଧା ଉଠି ସାରିଲେଣି ।

୪୩

ରାତି ପାହାନ୍ତାରୁ ଆମେ ଧବଳେଶ୍ୱର ବାହାରିଲୁ । ବଧୁବାବୁଙ୍କ ଧଳା ଡେଙ୍ଗା କୋଠାକୁ ଅନାଇଁ ମୋର ନୀରବ ବିଦାୟ ଜଣାଇଲି । ବାପାଙ୍କର ଶେଷ ଇଚ୍ଛାର ସମାଧି ସେଇଠି । ଧବଳେଶ୍ୱର ଯିବା ଆଉ ଦରକାର ନ ଥିଲା । ମୋର ଇଚ୍ଛା ଓ ଆଗ୍ରହ ଭାଙ୍ଗି ଯାଇଥିଲା । ଘରକୁ ଫେରିଲେ ଭଲ ହୁଅନ୍ତା । ପୁରୁଣା ପରିସ୍ଥିତି ମଝିରେ ଆବଦ୍ଧ ରହିଲେ ନୈରାଶ୍ୟର ଦୁଃଖ ଓ ସପନର ଉତ୍ତେଜନା ଦୂର ହୁଅନ୍ତା । ନିଚ୍ଛିଦିନିଆ ଆଲୁଅ ଛାଇର ଜୀବନ ଚାଲନ୍ତା ତାର ମଡ଼ାବାଟ ଧରି ।

ଧବଳେଶ୍ୱର ଯିବାକୁ ହିଁ ହେବ । ଆଗରୁ ଯେଉଁଥିପାଇଁ ଏତେ ଆଗ୍ରହ ଦେଖାଇଛି, ଆଜି ମନା କରି ହେବ ନାହିଁ ।

ଭଲ ଲାଗିଲା । ବାଟରେ କେତେ ନୂଆ ନୂଆ ଦୃଶ୍ୟ ଦେଖି ମୋର ଆଖି ସେଥିରେ ଲାଖି ରହିଲା । କଟକ ସହରର ବଡ଼ ବଡ଼ କୋଠାବାଡ଼ି, ସୁନ୍ଦର ସେ

ପାଖେ ବୁଦବୁଦକା ଜଙ୍ଗଲ, ଶଗଡ଼ଗୁଳା ଲମ୍ବି ଯାଇଛନ୍ତି, ମହାନଦୀର ପଠା, ବାଲି- ଆଖି ପାଉନାହିଁ ।

ସକାଳ ହେଲା । କଅଁଳ ଖରାରେ ମହାନଦୀର ବଳୁଆ ବାଲି ଚକ୍ ଚକ୍ ଦିଶିଲା । ବାଲି ସେପାଖେ ପାଣିର ଧାର ଆଖିକୁ ଶୀତଳ ଲାଗୁଥାଏ ।

ଅମୃ ଭାଇ କହିଲେ, ଏଇ, ମନ୍ଦିର ଦିଶୁଛି । ବାଲିରେ ଆଉ ଗାଡ଼ି ଚକ ଗଡ଼ିବ ନାହିଁ । ଏଇଠି ସମସ୍ତେ ଓହ୍ଲାଅ । ଚାଲି ଚାଲି ଯିବା ।

ଗାଡ଼ି ରହିଲା । ଆମେ ଓହ୍ଲାଇଲୁ । କେତେ ଲୋକ ଯା ଆସ କରୁଥାନ୍ତି । ଆମର ଆଡ଼କୁ ଥରେ ଥରେ କଣେଇଁ ଚାହାନ୍ତି, ଚାଲନ୍ତି ଆଗକୁ । ଆମେ ପଛରେ ପଡ଼ୁ । ବୋଉ ଚାଲି ପାରୁ ନ ଥାଏ । ଅମର ଭାଇ ଆଗେ ଆଗେ ଯାଉଥାନ୍ତି । ଆମେ ପଛରେ ପଡ଼ିଲେ ସେ ଅଟକି ରହନ୍ତି । ଅପେକ୍ଷା କରନ୍ତି । ଆମେ ଯାଇଁ ମିଶି ଯାଉ ତାଙ୍କ ସଙ୍ଗରେ ।

ନଈଧାର ପାଖରେ ହେଲୁ । ଏଇଠି ପାରି ହେଲେ ଧବଳେଶ୍ୱର ମନ୍ଦିର । ଆଗରୁ କେତେ ଲୋକ ନଦୀ ଏପାଖେ ଅପେକ୍ଷା କରି ରହିଛନ୍ତି । ଡଙ୍ଗା ମଝି ନଈରେ, ସେ ପାଖକୁ ଯାଉଛି । ବସିଲା ଲୋକଙ୍କୁ ଛାଡ଼ି ଫେରି ଆସିଲେ ଆମ ଦଫାକୁ ପାରି କରିବ । କେତେ ଡେରି ହେବ କେଜାଣି କଅଁଳ ଖରା ଟାଣ ହୋଇ ଆସୁଛି । ଆମେ ସବୁ କ୍ଲାନ୍ତ ହୋଇ ପଡ଼ିଥିଲୁ । ଅଣଆଡ଼ଆ ହୋଇ ପାଣି କୂଳରେ ବସି ସେପାରିକି ଚାହିଁ ରହିଲୁ ।

ଡଙ୍ଗା ଫେରିଲା । ଅମର ଭାଇ ପଚାରିଲେ, ତୁମେ ସବୁ କଅଣ ଏଣୁ ଗାଁକୁ ଫେରିବ ? ଆମ ବସା ବାଟେ ଗଲେ ହେବ ନାହିଁ ?

ବୋଉ କହିଲା, ଏଇଠୁ ଫେରିଯିବୁ ବାପା, ଦୀନା ବ୍ୟସ୍ତ ହେଉଛି । କେତେ କାମ ତାଅର ମାରା ହେବଣି । ତମ ବସା ବାଟେ ଫେରିଲେ ବୃଥାରେ ଡେରି ହେବ ।

ଅମର ଭାଇ କହିଲେ, ବଧୂବାବୁଙ୍କ ସ୍ତ୍ରୀଙ୍କ ସଙ୍ଗେ ଦେଖା କରିବ ନାହିଁ ?

ବୋଉ କହିଲା, ଆଉ ଦରକାର ନାହିଁ । ସେମାନେ ପାଠୋଇ ବୋହୂ ଧନୀଘର ଝିଅ ଚାହାନ୍ତି । ଅନ୍ୟଠାରେ ଜବାବ ଦେଇ ସାରିଲେଣି । ନେଡ଼ି ଗୁଡ଼ି କହ୍ନୁଣୀକୁ ବହି ଯାଇଛି ।

ଅମର ଭାଇ ଗମ୍ଭୀର ହୋଇ କହିଲେ, ହଁ, ନେଡ଼ି ଗୁଡ଼ି କହ୍ନୁଣୀକୁ ବୋହୁଛି । ତେବେ,······

କଥା ଅପୂର୍ଣ୍ଣ ରହିଗଲା । ଦୂରକୁ ଚାହିଁଲେ । ଆଖି ଉଜ୍ଜ୍ୱଳ ଦିଶିଲା । କହିଲେ, ହେଇ, ପ୍ରବୋଧବାବୁ ଆସୁଛନ୍ତି । ଆଜି ତାଙ୍କର ଆସିବାର କଥା ଥିଲା ।

ସାଇକଲ୍ ଖଣ୍ଡି ଘାଟଘରକୁ ଅଡ଼ାଇ ପ୍ରବୋଧବାବୁ ଆମ ପାଖକୁ ଆସିଲେ । ଅମର ଭାଇ ଉଠିଗଲେ ତାଙ୍କ ଆଗକୁ । କହିଲେ, ଆପଣ ଥକି ଯାଇଛନ୍ତି ।

ପକେଟରୁ ରୁମାଲ କାଢ଼ି ମୁହଁରୁ ଝାଳ ପୋଛି ସେ କହିଲେ, ହଁ, ବାଲିରେ ସାଇକଲ ଠେଲି ଆସିବା କେଡ଼େ ମଜା ! ଅଛି କଷ୍ଟ ।

କଣେଇଁ ଚାହିଁଲି । ତାଙ୍କର କ୍ଳାନ୍ତ ମୁହଁରେ ମନଫୁଲକା ହସ ।

ସପନ ପ୍ରତିମା ! ଜୀବନଟା ଖାଲି ସପନ ହୋଇଥିଲେ ସବୁ ଦୁଃଖ ଦୂରେଇ ରହନ୍ତା ? ନା । ସୁଖର ସପନ ମଝିରେ ଦାମଭାଇ ଆସି ଉଭା ହୋଇଥିଲେ !

କାହିଁକି ସେ ଅମରର ପଛେ ପଛେ ଗୋଡ଼ାଇ ଆସିଛନ୍ତି ମୁଁ ବୁଝି ପାରିଲି ନାହିଁ । ଆଖି ଫୁଟାଇ ତାଙ୍କୁ ଭଲ କରି ଦେଖିଲି । କେତେ ଲୋକ ଯା ଆସ କରୁଛନ୍ତି । ସମସ୍ତେ ଅପରିଚିତ । ସେ ମଧ୍ୟ ସେହିପରି ଅପରିଚିତ । ଲାଜ ସଂକୋଚରେ ଅଡ଼ ହୋଇ ରହିବା ମନେ କଲିନାହିଁ । ଜୀବନରେ ଯାହାଙ୍କ ସଙ୍ଗେ ଦିନଟିଏ ଦେଖା, ଯାହାର ସ୍ୱାର୍ଥ ସଙ୍ଗେ ମୋର କୌଣସି ସମ୍ବନ୍ଧ ନାହିଁ, ଦୁନିଆର ଶହ ଶହ ଅଜଣା ଅଶୁଣାଙ୍କ ଭିତରୁ ଯେ ଜଣେ, ତାଙ୍କୁ ଅଡ଼ ହୋଇ ରହିବା ଆବଶ୍ୟକ ମଣିଲି ନାହିଁ । ଯିଏ ଯାହା ମନେ କଲେ କରୁ ପଛେ ।

ସେ ଆସି ବୋଉକୁ ପ୍ରଣାମ କଲେ । କହିଲେ, ଆପଣ ଅମରର ଆତ୍ମୀୟ, ତେଣୁ ମୋର ମାଉସୀ ।

ମୁଣ୍ଡ ଉପରକୁ ଓଢ଼ଣା ଟାଣିଲି । ବୋଉ ଲାଜ ଲାଜ ହୋଇ ଓଢ଼ଣା ଟାଣିଲା ।

ଅମର ଭାଇ ବୋଉକୁ କହିଲେ, ବନ୍ଧୁବାବୁଙ୍କ ପୁଅ ପ୍ରବୋଧବାବୁ ପରା ସେ ତ ତମ ପୁଅ ପରି, ତାଙ୍କୁ ଅଡ଼ ହେଉଛ କାହିଁକି ?

ମୋତେ କହିଲେ, ପ୍ରଣାମ କର ଗୀତା ।

ବାଧ୍ୟ ଆଗ୍ରହରେ ଚାହିଁଲି ।

ଅମର ଭାଇଙ୍କର କଥା ମାନିଲି । ଲାଜ ଲାଜ ହୋଇ ଦୁଇହାତ ଯୋଡ଼ି ମୁଣ୍ଡରେ ଲଗାଇଲି । ମୁଣ୍ଡ ନୁଆଁଇ ପ୍ରଣାମ କଲି । ତୁଣ୍ଡ ଖୋଲିଲି ନାହିଁ ।

ତାଙ୍କର ମୁହଁରେ ରଙ୍ଗ ଉକୁଟିଲା । ସେ ପ୍ରତି ନମସ୍କାର କରି ବୋଉକୁ କହିଲେ, ଆପଣମାନେ ଧବଳେଶ୍ୱର ଆସିବେ ବୋଲି ଅମୁବାବୁ କହୁଥିଲେ ।

ବୋଉ ହସିଲା । ଉତ୍ତର ଦେଲାନାହିଁ ।

୪୪

ତୁଲ ଘନଘଣ୍ଟା ଆମେ ଧବଳେଶ୍ୱରରେ ରହିଲୁ । କେତେ ଆଡ଼ ବୁଲିଲୁଁ । ସେ ପାଖରେ ଜଙ୍ଗଲ । ଗଛରୁ ଗଛ ଲଟା ଛନ୍ଦାଛନ୍ଦି । ଆବଡ଼ା ଖାବଡ଼ା ଉଠାପଡ଼ା ଗଳିବାଟ । ବୋଉ ଚାଲି ପାରିଲା ନାହିଁ । ପ୍ରବୋଧବାବୁ ବୋଉର ହାତ ଧରି ବାଟକଢ଼ାଇ ନେଲେ । କେତେ କଅଣ କହିଲେ । ବୋଉ ଉତ୍ତର ଦେଲାନାହିଁ ।

ମତେ ଖୁସି ଲାଗୁଥାଏ । ଏପରି ଅଭିଜ୍ଞତା ମୋର ତରୁଣୀ ଜୀବନରେ ତ ପ୍ରଥମ । ପ୍ରବୋଧବାବୁ ପଛରେ ଆସୁ ଥାଆନ୍ତି । ମୋର ଗୋଡ଼ ଅଟକି ଅଟକି ଯାଉଥାଏ । ରାଧାର ହାତ ଧରି ଯାଉଁ ଯାଉଁ ପଛକୁ ଫେରି ଚାହେଁ, ତାଙ୍କର ହସ ହସ ମୁହଁ, ଉଜ୍ଜ୍ୱଳ ଆଖି ଦେଖିବାକୁ । ହାତ ଥରି ଉଠେ । ଭୟ ଓ ପୁଲକର ଉଦ୍ବେଳନରେ ଛାତି ଭିତରେ କାପରି କଅଣ ଅନୁଭବ କରେ ପ୍ରକାଶ କରିବାକୁ ଭାଷା ଖୋଜି ପାଉ ନାହିଁ । ଝୁଣ୍ଟି ପଡୁ ପଡୁ ରାଧାର ହାତ ଧରି ଅଟକି ରହେ । ରାଧା ମୋର ମନର ମଧୁର ବିଚଳିତ ଭାବ ଜାଣେ । ମୋ ମୁହଁକୁ ଚାହିଁ ସାମାନ୍ୟ ହସେ । ହସୁ ହସୁ ମୁହଁ ମୋର ମଉଳି ଯାଏ । ଆଖି ତଳକୁ କରି ମୁଁ ଅଟକୁ ଚାଲେ ।

ଅମର ଭାଇ କେତେ ଦୂରରେ ହେଲେଣି । ବୋଉ ଆସି ମିଶି ଗଲାଣି ଆମ ସାଙ୍ଗରେ ।

ମନ୍ଦିର ପାଖରୁ ଫେରିଲା ବେଳକୁ ଖରା ଟାଣ ହୋଇଥିଲା । ପ୍ରବୋଧବାବୁ ବୋଉ ସଙ୍ଗେ ଆତ୍ମୀୟତା କରିନେଲେଣି । ବୋଉ ନିଃସଙ୍କୋଚରେ ତାଙ୍କ ସଙ୍ଗେ କଥା ଭାଷା ହୋଇ ଚାଲିଛି । ଅମର ଭାଇ ମଧ୍ୟ ତାଙ୍କ ସଙ୍ଗେ ସଙ୍ଗେ ଚାଲିଛନ୍ତି । ମୁଁ ଓ ରାଧା ପଛରେ ପଡ଼ି ଗଲୁଣି ।

ମୋର ଭାବନା କେଉଁ ଅଜଣା ସମୁଦ୍ରର ଲହରୀ ସଙ୍ଗେ ଉଠି ପଡ଼ି ଧାଇଁଥାଏ । ହତାଶା ଭିତରେ କେଉଁ କ୍ଷୀଣ ଆଶା ଆଲୁଅର ସନ୍ଧାନ ପାଉଥାଏ କହି ପାରିବ ନାହିଁ । ତାଙ୍କ ଆଡ଼କୁ ଚାହିଁ ମୁଁ ଚାଲିଥାଏ । ଅବଶ ଦେହ, ଉଦାସ ଭାବନା । ଅଜଣା ମୋହରେ ନିଜକୁ ଭୁଲି ଯାଇଥିଲି ।

ଝୁଣ୍ଟିଲି । ଖଣ୍ଡେ ଗୋଜା ପଥରରେ ଗୋଡ଼ ବାଜିଲା । ରାଧା ମୋ ବାହୁ ଧରି ଅଟକାଇ ନେଲା । କହିଲା, ତଳକୁ ଚାହିଁ ଚାଲୁନା ଦେଇ, ଦେଖେଁ କଅଣ ହେଲା ।

ସମସ୍ତେ ମୋ ଆଡ଼କୁ ଚାହିଁଲେ । ଲାଜରେ ମୋ ମୁହଁ ଜଳିଗଲା । କହିଲି, କିଛି ହୋଇନାହିଁ ।

ଦେଖିଲି, ମୋର ବୁଢ଼ା ଅଙ୍ଗୁଠିର ନଖ ଦଫାଳ ହୋଇ ରକ୍ତ ବାହାରୁଛି ।

ରାଧା ଦେଖି କହି ଉଠିଲା, ଗଲା,ନଖଟା, ଇସ୍, କେତେ ରକ୍ତ ବୋହୁଛି । ପଥୁରିଆ ବାଟ, ସାବଧାନ ହୋଇ ନ ଚାଲିଲେ ଏଇ ଦଶା ହୁଏ । କଅଣ କାଟୁଛି ।

ସମସ୍ତେ ଦୌଡ଼ି ଆସିଲେ ମୋ ପାଖକୁ । ଲାଜରେ ମୁଁ ମୁଣ୍ଡ ନୁଆଁଇଲି ।

ଅମର ଭାଇ ବ୍ୟସ୍ତ ହୋଇ ପଚାରିଲେ, କଅଣ ହେଲା ?

ମନବୋଧ ବାବୁ ଦୁଃଖିତ ହୋଇ ପଚାରିଲେ, କଅଣ ହେଲା ?

ଲାଜ ଲାଜ ହୋଇ ଦୁଇଜଣଙ୍କୁ ଉତ୍ତର ଦେଲି , ଝୁଣ୍ଟିଲି, କିଛି ହୋଇନାହିଁ ।

ରାଧା କହିଲା, କିଛି ହୋଇନାହିଁ ? ନଖ ଫାଟି ରକ୍ତ ଝରୁଛି ।

ପ୍ରବୋଧବାବୁ ପକେଟରୁ ଖଣ୍ଡେ ରୁମାଲ କାଢ଼ିଲେ । ଫର୍ କରି ଚିରି କାହାରିକୁ ଅପେକ୍ଷା ନ କରି ହାତରେ ମୋର ପାଦ ଧରି ଉଠାଇଲେ । ରକ୍ତ ପୋଛି ଦେଇ ରୁମାଲରେ ବୁଢ଼ା ଅଙ୍ଗୁଠିକୁ ବାନ୍ଧିଲେ । କନାଟିକୁ ଜୋର୍‌ରେ ଭିଡ଼ୁଣୁ ମୋ ମୁହଁକୁ ଚାହିଁ କଁଳେଇ ପଚାରିଲେ, କାଟୁଛି କି ?

ସେଇ ତ ମୋ ଜୀବନର ଗୋଟିଏ ଛାତିଥରା, ମନ ଦୋହଲା, ଆମୋଦ ଓ ଉତ୍ତେଜନାଭରା ଅଭୁଲା ମୁହୂର୍ତ୍ତ ! ତାଙ୍କ ହାତର ପରଶରେ ସାରା ଶରୀରରେ ବିଜୁଳିର ତରଙ୍ଗ ଖେଳିଗଲା । ମନରେ ଅଜୁହା କୋହ । ସ୍ୱପ୍ନେଇଲା ସପନ ସତ ହେବ କି ? କେଉଁ ଦେବତାର ଦୟାରୁ ତାଙ୍କର ଅମୃତ ହାତର ସରାଗ ବୋଳା ପରଶ ସେମିତି ଲାଗି ରହିଥାଆନ୍ତା କି, ସମୟର ଢେଉ ଦେହରେ ବାଜି ଦୂରରୁ ଦୂରକୁ ମାଡ଼ି ଯାଉଥାଆନ୍ତା, ମାସ ବର୍ଷ ଯୁଗ ଭାସି ଯାଉଥାନ୍ତା ସେହି ତରଙ୍ଗରେ, ମୋର ରକ୍ତାକ୍ତ ପାଦଟି ତାଙ୍କର ହାତ ପାପୁଲିରେ ସେମିତି ଥୁଆ ହୋଇଥାନ୍ତା ! ସେମିତି ଆଗ୍ରହରେ, ସେମିତି ଦୁଃଖରେ, ବ୍ୟସ୍ତ ହୋଇ ସେ ପଚାରୁଥାଆନ୍ତେ, କାଟୁଛି କି ?

ମୋର ଦୁଇ ଆଖିରୁ ଲୁହଧାର ଝରି ପଡ଼ିଲା, ଥରି ଉଠିଲା ମୋର କଣ୍ଠସ୍ୱର, ଅଟଙ୍କେଇ ଅଟଙ୍କେଇ କହିଲି, ନାଇଁ ତ ।

ମୁହଁରେ ହସ ଫୁଟାଇ, ମୋର ମୁହଁକୁ ବିସ୍ମୟ ଓ ସ୍ନେହମିଶା କଅଁଳ ଦୃଷ୍ଟିରେ ଆଉଁସି କହିଲେ, ନାଇଁ ତ ? ଆଖିରେ ତୁମର ଲୁହ ଯେ !

ଆଖିରେ ଲୁହ ! କଅଣ ବୁଝନ୍ତେ ସେ ପୁରୁଷ ହୋଇ, କାହିଁକି ଆମେ କାନ୍ଦୁ, କାହିଁକି ଆମେ ହସୁ । ଓଠ ଉପରେ ମୋର ଚମକି ଉଠିଥିଲା ଅବାଧ ବିଜୁଳି, ହତାଶର ବାଦଲ ଭିତରେ ପୁଣି ହଜିଯିବାକୁ ।

ରକ୍ତବୋଳା ହାତକୁ ଆଉ ଖଣ୍ଡେ ରୁମାଲରେ ସେ ପୋଛିଲେ । ରୁମାଲଟି ଗୁଡ଼ାଇ ପକେଟରେ ରଖିଲେ । ହସି ହସି ବୋଉକୁ କହିଲେ, ମାଉସୀ, ତମ ଗୀତାର ଧବଳେଶ୍ୱର ଆସିବା ଘଟଣା ଦିନାକେତେ ମନେ ରହିବ ।

ବୋଉ କହିଲା, ହଁ ପୁଅ, ମନେ ରହିବ । ଧବଳେଶ୍ୱର ଆସିବ ବୋଲି ସେ ଚାରିମାସ ହେଲା ମୋ ସଙ୍ଗେ ଲଗାଇଛି । ଅଥରପୀଠା !

ବୋଉର ମନ୍ତବ୍ୟ ମୋତେ ଭଲ ଲାଗିଲା ନାହିଁ । କହିଲି, ଦିଅଁଙ୍କ ଦର୍ଶନ କରିବାକୁ ତୋର ମୋଟେ ମନ ନ ଥିଲା ପରା !

ପ୍ରବୋଧବାବୁ ମୋ ମୁହଁକୁ ଚାହିଁ ମୁରୁକେଇ ହସିଲେ । ଲାଜରେ ହୋଇ ମୁଁ ଦୃଷ୍ଟି ନୁଆଁଇଲି ।

ରାଧା କହିଲା, ମନ ଥିଲା ଯେ ତମ ପରି ତ ଆଉ ସେ ତାଙ୍କର ଅଙ୍ଗୁଠି ଖଣ୍ଡିଆ କରି ନାହାନ୍ତି ? ହଉ, ତୁମେ ଏଥର ମୋ ପଛେ ପଛେ ଧୀରେ ଧୀରେ ଆସ । ଅବୁଡ଼ା ଖାବୁଡ଼ା ଠାଆଁ ସିଆ ବାଟ, ତଳକୁ ଦୃଷ୍ଟି ଦେଇ ଚାଲ ।

ରାଧାର ପଛେ ପଛେ ମୁଁ ଚାଲିଲି ସିନା, ଗୋଡ଼ ଅବାଟକୁ ମାଡ଼ି ଯାଉଥାଏ । ମୋ ପଛରେ ପ୍ରବୋଧବାବୁ ଚାଲି ଥାଆନ୍ତି । ଅମର ଭାଇ ସବା ଆଗରେ । ବୋଉକୁ କଅଣ ତୁନି ତୁନି କହୁ ଥାଆନ୍ତି ।

୪୧

ନଈକୂଳ ।

ଡଙ୍ଗା ପାଖକୁ ଆସି ପ୍ରବୋଧ ବାବୁ ବୋଉକୁ ପ୍ରଣାମ କଲେ । କହିଲେ, ଯାଅ ମାଉସି, ମୁଁ ଏଇଠି ସଞ୍ଜଯାଏ ରହିବି । ତମକୁ ଆଉ କେବେ ଦେଖି ନ ଥିଲି, କିନ୍ତୁ ତମର ସ୍ନେହରେ ମୁଁ ନିଜକୁ ପାଶୋରି ଯାଇଥିଲି ।

ବୋଉ କହିଲା, ତମ ପରି ପୁଅର ସଂସାରରେ ପର ହୋଇ କେହି ରହି ପାରିବେ ନାହିଁ ବାପା, ଠାକୁରେ ତମକୁ ଦୀର୍ଘାୟୁ କରନ୍ତୁ, ସୁଖରେ ରଖନ୍ତୁ ।

ମୋ ଆଖି ଛଳ ଛଳ ହେଲା ।

ବୋଉ ଅମର ଭାଇଙ୍କୁ କଣ ତୁନି ତୁନି କହିଲେ ।

ଡଙ୍ଗା ଛାଡ଼ିଲା ।

ସତେ କି ଗୋଟିଏ ଅତି ମୂଲ୍ୟବାନ ପଦାର୍ଥ ଛାଡ଼ି ଯାଉଛି । କୂଳକୁ ଚାହିଁଲି । ଦେଖିଲି, ତାଙ୍କର ଆଗ୍ରହଭରା ଆଖି ଦିଓଟି । ଚାହିଁଲି ଏକଦୃଷ୍ଟିରେ । ଆଖି ଲୁହରେ ତାଙ୍କ ରୂପଟି ଛପି ଯିବାଯାଏ ଅନାଇଁ ରହିଲି ।

ଆଉ ଦିନଟିଏ କଟକରେ ରହି ବିଭିନ୍ନ ସ୍ଥାନ ଦେଖିବାକୁ ଅମର ଭାଇ ବୋଉକୁ ଅନେକାଉ ଥିଲେ । ବୋଉ କେଜାଣି ରାଜି ହୋଇ ଥାଆନ୍ତା । ରାଧା ବୋଧହୁଏ ଆପତ୍ତି କରି ନ ଥାନ୍ତା । କିନ୍ତୁ ଗାଡ଼ିବାଲା ଦିନା ମାଗିଲା ନାହିଁ । ଅଗତ୍ୟା ଖରାଏ ଖରାଏ ଆମେ ଗ୍ରାମକୁ ଫେରିଲୁ ।

ବାଟରେ ବୋଉ ତାଙ୍କୁ କେତେ ପ୍ରଶଂସା କଲା । କହିଲା, ଅତି ମେଳାପି ପିଲାଟି ପ୍ରବୋଧ, ପର ଆପଣା ଭେଦଭାବନାହିଁ । ବଡ଼ଲୋକ ଚଙ୍ଗ ମୋଟେ

ନାହିଁ । ଅଳପ ସମୟ ଭିତରେ ସତେ କି ସେ ମୋତେ କିଣି ନେଲା ଲୋ, ମୁଁ ବି ସତେ କି ମଣିଲି ସେ ମୋର ନିଜ ଭଉଣୀର ପୁଅ ମୋର ପୁତୁରାଟିଏ ।

ରାଧା କହିଲା, କେଡ଼େ ସୁନ୍ଦର, ଗୁଣର । ଗୀତାଟି ସତେ ଯେପରି ତା ନିଜ ଭଉଣୀ । ସେମିତି ବ୍ୟବହାର ସେ କଲା । ସଂସାରର ମାୟା ସାଅନ୍ତାଣି, ମୁହୂର୍ତ୍ତିକରେ ପର ପୁଣି ମୁହୂର୍ତ୍ତିକରେ ଆପଣାର । ମୁହୂର୍ତ୍ତିକେ ଆପଣାର ପୁଣି ମୁହୂର୍ତ୍ତିକରେ ପର । ଯାହାର ଭାଗ୍ୟ ଯାହା । ଗୀତାଟି ଜନମ ଦୁଃଖୀ । ସେଇଥି ତ କଟକ ଆସିବା ହେଲା, ଦିନକ ଆଗରୁ ଆସିଥିଲେ କଅଣ ହୋଇ ନ ଥାନ୍ତା ? ବଧୂବାବୁ ଜବାବ ଦେଇ ସାରିଲେଣି । ଭାଗ୍ୟ ବାଟ କଢ଼ାଉଛି । ଯାହା ହାଣ୍ଡିରେ ଯିଏ ଗୁଡ଼ାଉଳ ପକାଇବ ଆଗରୁ କପାଳରେ ବିହି ଲେଖି ରଖିଛି । ଦଇବ ବିଧାନ କେ କରିବ ଆନ । କହନ୍ତି ପରା, ଜେଣେ ମନ ତେଣେ ଯା, ଭାଗ୍ୟ ଘେନି ବୁଲୁଥା ।

ବୋଉ କହିଲା, କିଏ ଜାଣିଥିଲା, ମଣିଷର କି ଗୁଣ ? ସତେଲୋ, ଠାକୁରେ ଯାହା ଭାଗ୍ୟରେ ଯାହା ଲେଖିଛନ୍ତି । ପୂର୍ବଜନ୍ମ ତପସ୍ୟାର ଫଳ ଭୋଗ କରିବାକୁ ହେବ । କେହି ଅନ୍ୟଥା କରି ପାରିବ ନାହିଁ ।

ଅମର ଭାଇ କହିଲେ, ବଧୂବାବୁ ସିନା ଜବାବ ଦେଇଛନ୍ତି, ଯଦି ପ୍ରବୋଧବାବୁ କାଶୀବାବୁଙ୍କ ଝିଅଟି ବିଷୟରେ ମତ ନ ଦିଅନ୍ତି, ସେ ପ୍ରସ୍ତାବ ଭାଙ୍ଗି ଦେବେ । ମୋର ଧାରଣା,—

କଥାଟି ଅଧା ରଖିଲେ ।

ଭାବିଲି, ପ୍ରବୋଧବାବୁ କଅଣ କହିବେ ? ବାପା ବୋଉଙ୍କର ଇଚ୍ଛା ବିରୁଦ୍ଧରେ ମତ ପ୍ରକାଶ କରିବେ ? ଆଗରେ ଉଭାହେଲା ତାଙ୍କର ହସିଲା ମୁହଁ, ଦିଶିଗଲା ତାଙ୍କର ଉଜ୍ଜ୍ୱଳ ଆଖି । ସେହି ଉଜ୍ଜ୍ୱଳ ଆଖି ଦିଓଟିରେ ଯାହା ମୁଁ ଦେଖିଥିଲି ମୋର ମନେ ହେଲା, ମୋ ପ୍ରଶ୍ନର ଉତ୍ତର ମୁଁ ପାଇଲି ।

ବୋଉ କହିଲା, ବାବୁ, ବାମନ ହୋଇ ଚନ୍ଦ୍ରକୁ ହାତ ବଢ଼ାଇବାକୁ ସମୟ କି ସମ୍ବଳ ମୋର ନାହିଁ । ଗୀତାର ବାପାଙ୍କ ବରଷିକିଆ ପୂରିଲେ ଯେଉଁଠୁ ଆଗ ସମ୍ବନ୍ଧ ଆସିବ ସେଇଠି ମୁଁ ଜବାବ୍ ଦେବି । ଭଲମନ୍ଦ ଖୋଜିବାକୁ ଆଉ ବେଳ ନାହିଁ । ଝିଅ ଘିଅ ସମାନରେ ଅମୃ, ରହିଲେ ଗନ୍ଧ ।

ଟିକିଏ ଭାବି ବୋଉ ପଚାରିଲା, ଅଜୁ ସମ୍ବନ୍ଧରେ ବିମଳାର ସ୍ତ୍ରୀ ପ୍ରସ୍ତାବ ପକାଇବାକୁ ଆସିଥିଲା । କଅଣ ଭାବି କେଜାଣି ସମ୍ବନ୍ଧେ ଆଉ ପକାଇଲା ନାହିଁ । ରାଧା ହାତରେ କେତେଥର ଖବର ପଠାଇଲି । ସେ କହି ପଠାଇଲା, ତା ପାଇଁ ଆଉ କେଉଁଠି ଠିକ୍ ହେଲାଣି ।

ରାଧା କହିଲା, ହଁ, ମତେ ସେଇଆ ସେ କହିଲେ । ତମେ ଜାଣିଥିବ, କେଉଁଠି ତମ ଭାଇର ବାହାଘର ଠିକଣା ହେଲା ।

ଅମର ଭାଇ କହିଲେ, ମୁଁ କିଛି ଜାଣେ ନାହିଁ । କମଳା ଭାଇ କ'ଣ କରୁଥିବେ ସେ ଜାଣନ୍ତି । ବ୍ୟସ୍ତ ହେଉଛ କାହିଁକି ? ଭାଗ୍ୟରେ ଥିଲେ ଗୀତାର ବାହାଘର ଏଇଠି ହେବ, ଦେଖିବ ରହ ।

ଅମର ଭାଇ ତାଙ୍କର ବସାକୁ ଯିବାକୁ ଆମକୁ ପୁଣି କେତେ ଅନୁରୋଧ କଲେ । ବୋଉ ଆଉ ମଙ୍ଗିଲା ନାହିଁ । ଗାଡ଼ିବାଲା ଖାନା ଖୁବ୍ ପ୍ରତିବାଦ କଲା, କହିଲା, ତାର କେତେ କାମ ମାରା ହେବ । ତା ସ୍ଥାନ ପୁଅକୁ ଜର । ଯେମିତି ହେଉ ସଞ୍ଜ ଆଗରୁ ଘରେ ପହଞ୍ଚିବାକୁ ହେବ ।

ଦେବୀଟଙ୍ଗା ଘାଟ ପାଖରେ ଆମକୁ ବିଦାୟ ଦେଇ ଅମର ଭାଇ ତାଙ୍କ ବସାକୁ ଫେରିଲେ ।

ଗାଡ଼ି ନଈ ଭିତରକୁ ଗଡ଼ିଲା ।

୪୬

ଘର ଛୁଆଣି ହେଲା । ଜମିଦାରଙ୍କର ଖଜଣା ଦିଆଗଲା । ଦିନ କେଇଟି ବେଶ୍ ଆନନ୍ଦରେ କଟିଲା । ନଡେଇ ଦାଦା ଆମର ବାଡ଼ି ଗୁହାପାଖେ ନବୁଜ ବାଡ଼ ପକାଇ ଦେଲେ । କୂଅ ମୂଳକୁ ପାଣି ପାଇଁ ଗଲେ କି ସଜନା ଗଛରୁ ଛୁଇଁ ତୋଳିବାକୁ ଗଲେ ବାଡ଼ଟି ଆଖିରେ ପଡ଼େ । ମନରେ ଦୁଃଖ ହୁଏ ।

ବଉଳ ଗଛଟି, କେତେ ସ୍ୱଚ୍ଛ ଯେମିତି ଠିଆ ହୋଇଛି । ସତେ କି ମୋର ଟିକିଏ ସ୍ପର୍ଶ ପାଇଁ କଅଁଳ ପବନରେ ହାତ ଠାରି ଡାକୁଛି । ଆଉ, ସେ ଦରଫୁଟିଲା ଚମ୍ପା କଢ଼ିଟି, ଜୁଲୁଜୁଲୁ କରି ଚାହିଁଛି ମୋ'ଆଡ଼କୁ । ସେ ସବୁ ଆଉ ଆମର ହୋଇ ରହିନାହିଁ । ସବୁ ହୋଇଛି ନଡେଇ ଦାଦାଙ୍କର ।

ଆଖିରେ ଲୁହ ଆସେ । ମନେ ପଡ଼ିଯାଏ କଟକରେ ସେହି ରାତିଟିର କଥା । ଅପରିଚିତ ପ୍ରବୋଧବାବୁଙ୍କ ହାତର ମୃଦୁସ୍ପର୍ଶ ମୋର କପାଳ ଉପରେ । ମନେପଡ଼େ, ସୁଖ ଦୁଃଖର ସପନ । ପୁଣି, ମୋର ରକ୍ତବୋଳା ପାଦରେ ତାଙ୍କ ହାତର ପରଶ । ବିଦାୟ ବେଳର ଭାବଭରା ଆଖି ଦିଓଟି ଦିଶିଯାଏ ।

ଆଙ୍ଗୁଠିର ଷତ ଭଲ ହୋଇ ଗଲାଣି, ଚିହ୍ନ ରହିଛି । ଛାତି ଭିତରର ଷତ ପୋଡ଼ି ଉଠେ ।

ମନେପଡ଼େ କଟକ, ମନେପଡ଼େ ଧବଳେଶ୍ୱର ।

ଆଖିରେ ଲୁହ ଆସେ ।

ଗାଁରେ ଦୁର୍ନାମର ହାଟ ବସିଗଲା । ଲୋକେ କହିଲେ, ବଢ଼ିଲା ଝିଅକୁ ନେଇ ବେହିଆ ପରି କଟକ ସହରରେ ଦୁଇଦିନ କାଳ ବୁଲାଇଲେ । ନଜର

ମାନମହତ୍ତ୍ୱ ନାହିଁ ସିନା, ଲୋକମୁଖରେ ଦୁର୍ନାମ ରହିଛି । ଗାଡ଼ିବାଲା ପାନାଠାରୁ କଥା ନେଇ ଭଲକୁ ତାଲ କରି ଲୋକ ପ୍ରଚାର କଲେ ।

ବୋଉ ଶୁଣିଲା, ଚୁପ ରହିଲା । ସେଧା ବୃଥାରେ କେତେ ଲୋକଙ୍କ ସଙ୍ଗେ ଝଗଡ଼ା କଲା । ଫଳ ହେଲା, କଥା ମାଜିଲେ ମୋଟ ।

୪୭

ଦିନେ ବିମଳା ଭାଇର ସ୍ତ୍ରୀ ଧାଇଁ ଅସିଥିଲେ ଆମ ଘରକୁ । ଏକା ନୁହେଁ, ସଙ୍ଗରେ ଅନ୍ୟ ଦୁଇଜଣ ଗାଁ ମାଇପେ ଥିଲେ । ବୋଉ ତାଙ୍କୁ ଆଦର କରି ଘରେ ବସାଇଲା । ମୁଁ ପାନ ଭାଙ୍ଗି ବସିଲି । ଗୁଆ ନେଉଥିବା ବେଳ ।

ମୁଣ୍ଡରେ ଓଢ଼ଣା ଦେଇ ବିନା ଅବତରଣିକାରେ ସେ ଆରମ୍ଭ କଲେ, ଖୁଡ଼ୀ, ଅଜୁର ବାହାଘର ଠିକଣା ହୋଇଗଲାଣି । ଏଇ ବୈଶାଖ ମାସରେ ହେବ ।

ଅଗ୍ରହ ଦେଖାଇ ବୋଉ କହିଲା, ସତେ, କେଉଁଠି ଠିକ୍ ହେଲା ?

ବଣଲପଡ଼ାରେ । ଭଲ ଝିଅଟିଏ । ବଂଶ ଘୋଲ କି ସତର ହେବ । ଦେବା ନେବା ଭଲ କରିବେ ।

ଅଜୁଭାଇର ବାହାଘର ସମ୍ପର୍କରେ କଥା ଉଠାଇବାର କାରଣ ମୁଁ ଅନୁମାନ କରି ପାରିଲି ନାହିଁ । ତେବେ, ତାଙ୍କର ଯେ ବାହାଘର ସ୍ଥିର ହୋଇଛି ଏକଥା ଶୁଣି ଖୁସି ଲାଗିଲା । ଅମୁଭାଇଙ୍କ ହସ ହସ ମୁହଁ ଆସି ଆଗରେ ଉଭା ହେଲା ଆଉ ତା ପଛରେ ପ୍ରବୋଧ ବାବୁଙ୍କର ଆଖିଦିଓଟି, ଉଜ୍ଜ୍ୱଳ, ଛଳଛଳ । ଗୁଆ କାଟୁକାଟୁ ମୋ ହାତ ବନ୍ଦ ହୋଇଗଲା ।

କହିଲେ, ବାହାଘର ସିନା ଠିକ୍ ହେଲା ଖୁଡ଼ୀ, ଠଙ୍କା ପଇସା କାହିଁର କିଛି ଠିକ୍ ନାହିଁ । ଅଜୁ ତ ଘରେ, ନ ପାରିଲା ଲୋକ ପରି । ଅମୁ କୁଆଡ଼େ ଭଲ ରୋଜଗାର କରୁଛି । ହେଲେ, କୁସଙ୍ଗରେ ପଡ଼ି ପଇସା ଉଡ଼ଉଛି । ଅବ୍ୟାଜରେ ଖରଚ କରୁଛି । ପାଞ୍ଚ ଖଣ୍ଡି ଗାଁର ଗଲା ଆଇଲା ଲୋକ ଯାଇଁ ତା ବସାରେ ପଶୁଛନ୍ତି । ସେ ସରଳଆ ପିଲା । ଯିଏ ଯାହା ମାଗିଲା ଦେଲା । ଠଙ୍କା ଏମିତି ଉଡ଼ୁଛି । ଘରକୁ ପଠାଇବ କଅଣ, ବାହାଘର ହେବ କିପରି ?

କଥାର ମର୍ମ ବୁଝିଲି । ତାଙ୍କ ବସାରେ ଯେ ଆମେ ରାତିଟିଏ କଟାଇଥିଲୁ ସେଥିପାଇଁ ବିମଳା ଭାଇର ସ୍ତ୍ରୀ ମନେ କରୁଛନ୍ତି ନିଶ୍ଚୟ ଅମୁଭାଇ ଆମକୁ ଶହେ କି ଷାଠିଏ ଅଜାଡ଼ ଦେଇଛନ୍ତି ।

ହସିଲି ।

ବୋଉ ତାଙ୍କର ଉଦ୍ଦେଶ୍ୟ ବୁଝି ପାରିଲା ନାହିଁ । କହିଲା, ହୋଇଥିବ ଲୋ ମା, ତମେ ତାକୁ ଜାବତା କରି ଶଠି ଲେଖିଦଅ । କାହିଁକି ସେ ଅବ୍ୟାଜରେ ଖରଚ କରିବ, କାହିଁକି ତାର ଦୁଃଖରେ ଅରଜିଲା ଧନ ପରଙ୍କ ପିଣ୍ଡ ଉଡ଼ାଇବ ?

ବିମଳା ଭାଇର ସ୍ତ୍ରୀ କହିଲେ ଆଜକାଲିକା ଟୋକାଟୋକୀ କାହାରି ଜାବତା ମାନୁନାହାନ୍ତି । ନିଜ ହାତରେ ନିଜେ ଚଢ଼ଦ ପା । ଯାହା ଥିବ ତାଙ୍କ କପାଳେ । ଠିକିଏ ରହି ପଚାରିଲେ, ଗୀତା ପାଇଁ କେଉଁଠି ପାତ୍ର ଠିକଣା କଲ ? ଆଉ କେତେଦିନ ଧରି ବସିବ ?

ବୋଉ କହିଲା, ତା ବାପାଙ୍କର ଚାଲିଯିବାର ବରଷ ନ ପୂରିଲେ ବାହାଘର ହୋଇ ପାରିବ ନାହିଁ । ବରଷ ପୂରୁ, ଯେଉଁଠି ଦେଖି ଉଠାଇ ଦେବ ଲୋ ମା । ଗୀତା ସିନା ମୋର ଝିଅ, ତାଆର ବାପ ଭାଇ କେହି ନାହିଁ ଯେ ତା ପାଇଁ ଭାବିବ, ତମେ ସବୁ ତ ଅଛ । ଯେଉଁଠି କହିବ ସେଇଠି ହେବ ।

ବିମଳା ଭାଇର ସ୍ତ୍ରୀ କହିଲେ, ବରଷ ପୂରିବାକୁ ଅନାଇଁ ବସିଲେ ଆଉ ଚଳିବ ନାହିଁ । ଏଇ ବର୍ଷ ବୈଶାଖ କି ଜ୍ୟେଷ୍ଠ ମାସରେ ନିମିତ୍ୟ ଉଠାଇ ଦିଅ । ଦିନୁଦିନ ଝିଅ ବାଛିନି ପଡ଼ିବ ।

ଯାହା ତା ଭାଗ୍ୟରେ ଥିବ ।

ବିମଳାଭାଇଙ୍କ ସ୍ତ୍ରୀ ଆଉ କେତେ କଣ କହିଥାନ୍ତେ । ଦାଣ୍ଡରୁ ରାଧାର ଡାକ ଶୁଣି ଧୀରେ ଧୀରେ ଉଠି ଚାଲିଗଲେ । ତାଙ୍କର ସାଙ୍ଗ ଦୁଇଜଣ ମଧ୍ୟ ତାଙ୍କର ଅନୁଗମନ କଲେ ।

ରାଧା ଆସି ବୋଉଠୁଁ ସବୁ ଶୁଣିଲା । ଆଖି ନାଲି କରି କହିଲା, ସତେ, ତାଙ୍କର ଅମରବାବୁଙ୍କୁ ଏତେ ପଇସା ମିଳେ ? ଭାରି କୁହାଳିଆ ପଡ଼ିଛି ବିମଳା ଭାଇଜା । କଅଁଳ ଲୁହା ବଳେଇ କାମୁଡ଼େ ପରା । ଭଲେଇ ହେବାକୁ ଆସିଥିଲା । ମଦନ ସାଆନ୍ତଙ୍କ ଘରେ ସଭା ବସିଛି, ଶୁଣି ଆଇଲି, ବିମଳା ପାଠି କରି କହୁଛି, ଖାଲି ଗୀତାର ଦୁର୍ନାମ । ଆଉ କି ଚନ୍ଦ୍ରା ତାଆର ? ସତେ ଯେମିତି ଗୀତାର ବୋଝ ତାଆରି ମୁଣ୍ଡରେ ଲଦା ହୋଇଛି । ଅଲାଜୁକ ।

ବୋଉ ଉଦ୍‌ବିଗ୍ନ ହୋଇ ପଚାରିଲା, କଅଣ ଶୁଣି ଅଇଲୁ ? କଅଣ ସେମାନେ କହୁଛନ୍ତି ?

ରାଧା କହିଲା, ଶୁଣିବାକୁ ରହିଲି ନାହିଁ । ଦାମ ବାଧା ଦେଇ ପଦେ କହିଲା ବୋଲି ଲୋକେ ତାକୁ କାଉ ପରି ବେଢ଼ିଯାଇ ଶୋଧୁଛନ୍ତି । ମଦନ ସାଆନ୍ତଙ୍କ ତୁଣ୍ଡରୁ ନ ବାହାରିବା କଥା ବାହାରୁଛି । ଗାଁ ଲୋକେ ପ୍ରସ୍ତାବ କରୁଛନ୍ତି, ବୈଶାଖର ମଝି ତିଥିରେ ଗୀତାକୁ ଯେଉଁଠି ପାରି ସେଠି ବାହା ଦେବେ ।

ବୋଉ ହତାଶ ହୋଇ କାନ୍ଦିବାକୁ ଲାଗିଲା । ରାଧା ବୁଝାଇ କହିଲା, ତମେ ବ୍ୟସ୍ତ ହୁଅନାହିଁ । କେଉଁ ପାଣି କେଉଁ ସୁଅରେ ଯାଉଛି ଦେଖ । ଉପରେ ଧର୍ମ ଅଛି, ଭଲମନ୍ଦ ଦେଖୁଛି, ତମେ ହତାଶ ହୁଅନାହିଁ ।

ରାଧା ଚାଲିଗଲା ।

କବାଟ ବନ୍ଦ କରି ବୋଉ ମୋ ପାଖକୁ ଆସି ମୋତେ ଧରି କାନ୍ଦିବାକୁ ଲାଗିଲା । କହିଲା, ମାଲୋ, ସମସ୍ତେ ଏକାଠି ହୋଇ ତୋତେ ବୁଡ଼ାଇ ଦେବାକୁ ବସିଛନ୍ତି । ମୁଁ କଅଣ କରିବି ଲୋ ?

ବୋଉର ଦୁଃଖ ଦେଖି ମୋର ଦୁଃଖ ବଳେଇ ପଡ଼ିଲା । ଇଚ୍ଛା ହେଉଥିଲା ବୁଝାଇ କହିବାକୁ, ତୁ କାନ୍ଦ ନା ବୋଉ, ରାଜ୍ୟ ଯାକର ଲୋକେ ଏକାଠି ହେଲେ ବି କାହାରି ଭାଗ୍ୟ କେହି ବଦଳାଇ ପାରିବେ ନାହିଁ ।

ବୋଉକୁ କିଛି କହି ହେଲା ନାହିଁ ।

୪

ସେହିଦିନ ସଞ୍ଜରେ—

ସଞ୍ଜବତୀ ଲାଗିଲାବେଳକୁ ମଦନ ଜେଠା ଆସି ମୋ ନାଁ ଧରି ଡାକିଲେ । ଗୁହାଳ ଭିତରେ ଥାଏ । ଲଣ୍ଠଣ ଲଗାଇ ପିଣ୍ଡାରେ ଥୋଇ କବାଟ ଖୋଲିଲି । ଆଡ଼ ହୋଇ ଘର ଭିତରକୁ ଆସିଲି । ବୋଉ ମଧ୍ୟ ଆଡ଼ ହୋଇ ଘର ଭିତରକୁ ଆସିଲା ।

ମଦନ ଜେଠା ଖଞ୍ଜା ଭିତରେ ପଶିଲେ । ତାଙ୍କ ପଛେ ପଛେ ଆହୁରି କେତେଜଣ ଲୋକ ଆସି ଦୁଆରେ ଠିଆ ହେଲେ । ବାସୁ ଦାଦା ଓ ଗୋକୁଳ ଭାଇ ଦୁହେଁ ଆସିଲେ ଦୁଆରବନ୍ଧକୁ ।

ବାସୁ ଦାଦା କହିଲେ, ଭାଉଜ ବୋଉ, ଆମେ ସବୁ ଆସିଛୁ ତମରି ପାଖକୁ । ମଦନ ଭାଇ ବି ଆସିଛନ୍ତି ।

ବୋଉ ପଚାରିଲା, କାହିଁକି ?

ବାସୁ ଦାଦା କହିଲେ, ଗୀତା ବାହାଘର ପ୍ରସ୍ତାବ ନେଇ । ତମେ ନିରାଶ୍ରୟ ଲୋକ । ଭୋଳି ଭାଇ ଅସମୟରେ ଅନାଥ କରି ଚାଲିଗଲେ । ଯାହା ହେଉ, ଗୀତାର ବାହାଘର ତ ପୁଣି ହେବ । ହାତରେ ଧନ ନ ଥାଇ ବଡ଼ଘର ଖୋଜିବା, କି ସତର ଜାଗାରେ ଚାଖିବା ଠିକ୍ ନୁହେଁ ।

ଗୋକୁଳ ଭାଇ କହିଲେ, ଯଦି ବେଳ ବୟସ ଥାଆନ୍ତା, ସେ କଥା ସୁନ୍ଦର ହୁଅନ୍ତା । ଗୀତାକୁ ଏକାଦଶୀ ପୂରିବାକୁ ବସିଲାଣି । ବାରଣି ପଶିବା ଆଗରୁ ଯେମିତି ହେଲେ ତାର ବାହାଘର କରିବାକୁ ହେବ ।

ବିମଳା ଭାଇ ଦୁଆରୁ ଡାକି କହିଲେ, ନୋହିଲେ ଏ ଗାଁରେ ଆଉ କେହି ଝିଅ ବାହାଘର କରିପାରିବେ ନାହିଁ । ଯେଉଁ ଗାଁରେ, ଯେଉଁ ଝିଅର ପ୍ରସ୍ତାବ ପଡ଼ୁଛି ଲୋକେ ଭାଙ୍ଗିଦେଇ କହୁଛନ୍ତି, ଛି ଛି, ନରସିଂ ଗାଁର ଝିଅଗୁଡ଼ା ଦରବୁଢ଼ୀ । ଆହୁରି ଯାହା କହନ୍ତି, କାନରେ ହାତ ଦେବ ।

ବୋଉ ସମସ୍ତଙ୍କୁ ଶୁଣାଇ କହିଲା, ପରଝିଅ ବୋଲି ଗୀତାକୁ ଉଡ଼ାଇ ଦଅ ନା ଗୋକୁଳ, ତାକୁ ଉଣେଇଶି ବର୍ଷ ଚାଲିଛି । ଏଇ ଗାଁରେ ମୋ ଦେଖାନ୍ତରେ କେତେ ଝିଅ ଚବିଶି ପଚିଶିରେ ବାହା ହୋଇଛନ୍ତି । ସେଇ ବୟସର ଝିଅମାନେ ତ ବୋହୂ ହୋଇ ଆସୁଛନ୍ତି । ଅଜ ଗୀତାର ବାପ ନାହିଁ ବୋଲି ତା ବିଷୟରେ ମିଛ କହିବାକୁ ଲୋକେ ସାହସ କଲେ । ବାପ ନାହିଁ ସିନା, ତମେମାନେ ତ ଅଛ, ତା ଚିନ୍ତା ପୁଣି ତମମାନଙ୍କୁ ଲାଗିଛି—

ମହନ ଜେଠା ଖୁସି ହୋଇ ଦୁଆରୁ କହିଲେ, ଗୀତା ବୋଉଙ୍କୁ ମୁଁ ଆରମ୍ଭରୁ ଜାଣେ । ସେ ଭଲ ମଣିଷ, ଭଲ କଥା ଶୁଣନ୍ତି । ବୁଢ଼ା ହେଲେଣି, ତାଙ୍କର ସୁଖ ଦିନେ ଦେଖି ନାହିଁ । ଗୀତାର ଭାର ସେ ତମ ଉପରେ ଦେଲେ । ତମେ ଏଥର ବୁଝିସୁଝି ତାକୁ ଉଠାଇ ଦଅ ।

ବୋଉ ତାଙ୍କ କଥାରେ କାନ ନ ଦେଇ କହିଲା ଅଧିକ ସାହସରେ, ତମମାନଙ୍କ ଝିଅ ପାଇଁ ପାତ୍ର ଜୁଟୁନାହାନ୍ତି, ପର ଗାଁର ଲୋକେ ବାରକଥା କହୁଛନ୍ତି, ସେଥିପାଇଁ ମୁଁ ଦାୟୀ ନୁହେଁ କି ଗୀତା ଦାୟୀ ନୁହେ ଗୋକୁଳ, ଦାୟୀ ତମେମାନେ । ତମରିମାନଙ୍କ ଦୋଷ ମୁଁ ଦେଉଛି ।

କିଏ ଜଣେ ପଚାରିଲା, କାହିଁକି ?

ବୋଉ ଉତ୍ତେଜିତ ହୋଇ କହିଲା, ଗୀତାର ବୟସ କଅଣ ପରଗାଁର ଲୋକଙ୍କୁ ଜଣାଥିଲା ? ଗୀତାର ଜନ୍ମ ଜାତକ କିଏ ଜାଣେ ? ସମସ୍ତେ ତମେ ଛିଲକୁ ତାଲ କରି କହୁଛ । ଲୋକଙ୍କ ଆଗରେ ନିନ୍ଦା କରୁଛ । ଗୀତାର ହାନିଲାଭ ଭଲମନ୍ଦ କେହି କେବେ ବୁଝିଛ ଭଲା ? ଯିଏ ଦୟା ପାଇ ପଦେ ପଚାରିଲା, ଓଲଟି ତା ନାମରେ ଉଠାଇଛ ଦୁର୍ନାମ ।

ସମସ୍ତେ ତୁନି ହେଲେ ।

ମହନ ଜେଠା ତୁଣ୍ଡ ଖୋଲିଲେ, ଶୁଣ, ସେ ସବୁ ବାଜେ କଥାରୁ କଅଣ ମିଳିବ ? ମୁଁ କହୁଛି, ଗୀତାର ବାହାଘର ଆସନ୍ତା ବୈଶାଖ ମାସରେ କରିବାକୁ ହେବ । ଖୋଲା ମରିବାର ବର୍ଷ ପୂରିବାଯାଏ ଅପେକ୍ଷା କରି ହେବ ନାହିଁ । ତେଣିକି ତାକୁ ତମ କହିବା ମତେ କୋଡ଼ିଏ ବର୍ଷ ଚାଲିବ । ଯୋଡ଼ା ବର୍ଷରେ ବାହାଘର ହୋଇ ପାରେ ନାହିଁ । ମିଛଟାରେ ଡେଉଁ ଡେଉଁ ହୋଇଯିବ ।'

ଗୋକୁଳଭାଇ କହିଲେ, ଅମମାନେ ନିୟମ ଧରି ବସିଲେ ଚଳିବ ନାହିଁ । ସବୁ ବିଷୟରେ ସର୍ବମଙ୍ଗଳ ଜଗନ୍ନାଥ ଭରସା ଭଲ ।

ବୋଉ କହିଲା, ମୋର ମତାମତ ପଚାରୁଛ କାହିଁକି ? ଯାହା ତୁମମାନଙ୍କୁ ଭଲ ଦିଶୁଛି କର । ତା'ର ବାପ ନାହିଁ, ତୁମେମାନେ ତାର ବାପ, ଦାଦା, ବଡ଼ବାପ । ତୁମର ସବୁ ବି ଝିଅ ଅଛନ୍ତି । ଆଉ ଅଧିକ ମୁଁ କ'ଣ କହିବ ?

ଆଖିରୁ ଲୁହ ପୋଛିଲା ।

ମହାନ ଜେଠା କହିଲେ, ଭଲ ପାତ୍ରଟିଏ ସ୍ଥିର କରିବାର ଦାୟିତ୍ୱ ଆମର ରହିଲା । ଗୀତାବୋଉ ନିଶ୍ଚିନ୍ତ ରହନ୍ତୁ । ଅସରେ ପିଲାଏ ।

୪୯

ଗାଁ ଲୋକେ ଫେରିଗଲେ ।

ବୋଉ କିଛି ନ କହି ତଳର ଲଗାଇ ରୋଷଘରକୁ ଗଲା । ମୁଁ ତୁନି ହୋଇ ଶୋଇ ଏଣୁତେଣୁ ବାରକଥା ଭାବିବାକୁ ଲାଗିଲି । କଟକ ଓ ଧବଳେଶ୍ୱର ଘଟଣା ଗୁଡ଼ିକ ମନକୁ ଆସୁ ଆସୁ ଭଙ୍ଗାବଉଦର ଚଳନ୍ତି ଛାଇ ପରି କୁଆଡ଼େ ଉଭେଇ ଗଲା । ଲାଗିଲା ଗୋଟିଏ ସ୍ୱପ୍ନ ପରି । କାହିଁକି ଆଉ ସେ ଆଶା ? କାହିଁକି ସେ ବିଷୟରେ ଭାବନା ?

ଖାଇ ପିଇ ମା ଝିଅ ଦିହେଁ ସହଳ ଶୋଇ ପଡ଼ିଲୁ । କାହାରିକୁ ନିଦ ହେଲା ନାହିଁ । ଦିହେଁ ନିଜ ନିଜ ଭାବନାରେ ବୁଡ଼ି ରହିଲୁଁ ।

ଗୃହଘଡ଼ିଆ ଜହ୍ନ କେତେବେଳୁ ବୁଡ଼ି ଗଲାଣି । ଅନ୍ଧାର ଘୋଟି ଗଲାଣି ଜୁନିଆଁ ସାରା । ଖୋଲା ଝରକା ବାଟେ ବାଟବଣା ହୋଇ ନଈକୂଳିଆ ପବନ ତୁହାଇ ତୁହାଇ ଘର ଭିତରକୁ ପଶି ଆସୁଛି । ଏ ପାଖ ସେ ପାଖ ଖୋଜି ଚୋରପରି ଛପି ଛପି ଫେରି ଯାଉଛି ।

କିଏ ବାଡ଼ି କବାଟ ଧଡ଼ ଧଡ଼ କରି ଡାକିଲା, ଖୁଡ଼ୀ, ଖୁଡ଼ୀ, ଗୀତା, ଗୀତା—

ଦାମଭାଇଙ୍କର ପାଟି ପରି ଶୁଭିଲା । ଚମକି ଉଠିଲି । ଦିନେ ନାହିଁ, କାଲେ ନାହିଁ, ହଠାତ୍ ରାତି ଅଧରେ ଆସି ଏପରି ଡାକିବାର କାରଣ କ'ଣ ? ନିଶ୍ଚୟ ଗୋଟାଏ ଗୁରୁତର ଘଟଣା ନେଇ ସେ ଆସିଛନ୍ତି ।

ବୋଉ କହିଲା, ଦାମର ପାଟିପରି ଶୁଭୁଛି ।

ମୁଁ କହିଲି, ହଁ ବୋଉ, ଦାମଭାଇ ।

ବୋଉ ମନକୁ ମନ କହିହେଲା, ଏତେ ରାତିରେ କାହିଁକି ଆସିଛନ୍ତି ବୁଝେଁ । ମୋତେ କହିଲା, ତୁ ଶୋଇଥା ଲୋ, ଉଠିବା ଦରକାର ନାହିଁ ।

ନକେ ଉଠିଗଲା । ଦାମଭାଇ ଆସି ସେହି ଅନ୍ଧାରରେ ପିଣ୍ଡାରେ ବସିଲେ, ବୋଉ ପାଖରେ । ଘଟଣା କଅଣ ଭଲ କରି ବୁଝିବାପାଇଁ ମୁଁ ଗୋଡ଼ ଚପି ଚପି କବାଟ ପାଖକୁ ଯାଇ କାନ ପାରିଲି ।

ଦାମଭାଇ କହିଲେ, ଖୁଡ଼ୀ, ମୋତେ ଦେଖି ତମେ ଆଶ୍ଚର୍ଯ୍ୟ ହେଉଛ ପରା । ଲୋକେ ମିଛରେ ବାରକଥା କହୁଛନ୍ତି ବୋଲି ମୁଁ ଆଜକାଲି ଆଉ ଏଣେ ଆସେ ନାହିଁ । ତୁମର କିଛି ଲାଭ ନାହିଁ । ବୃଥାରେ ମୋ ପାଇଁ ଅପବାଦ ଶୁଣିବ କାହିଁକି, ଅପମାନ ପାଇବ କାହିଁକି ?

ବୋଉ ଉତ୍ତର ଦେଲା ନାହିଁ ।

ଦାମଭାଇ କହିବାକୁ ଲାଗିଲେ, ଆଜି ଗୋଟାଏ ଘଟଣା ଘଟିଲା ଖୁଡ଼ୀ, ଯେଉଁଥିପାଇଁ ମୁଁ ସାବଧାନ କରିଦେବାକୁ ଅସମୟରେ ଆସିବାକୁ ବାଧ୍ୟ ହେଲି । ମୋର ଦେହ ସହିଲା ନାହିଁ । ଆମରି ଘରେ ବସି ଗାଁ ଲୋକେ ବିଚାର କରୁଛନ୍ତି, ବୈଶାଖ ଏକୋଇଶ ଦିନ କଟିଆ ସଙ୍ଗରେ ଗୀତାର ବାହାଘର କରିବେ । କାଲି ସକାଳେ ତମର ମତାମତ ପଚାରିବାକୁ ଆସିବେ । ଇଚ୍ଛା ହେଉଥିଲା, ମୁଁ ସେଇଠି ପ୍ରତିବାଦ କରିବି କିନ୍ତୁ ଭାବିଲି ମୋ କଥା କେହି ଶୁଣିବେ ନାହିଁ । ଲୋକେ ହସିବେ । ତେଣୁ, ତମକୁ ସାବଧାନ କରିଦେବାକୁ ଆସିଲି । କାଲି ଯଦି କେହି ଆସି ତମର ମତାମତ ମାଗେ, ତମେ ସଫା ସଫା ନାହିଁ କରିଦେବ ।

ତାଙ୍କର ପ୍ରତି କଥା ଭିତରୁ ଉଦ୍‌ବିଗ୍ନତା ଫୁଟି ବାହାରୁଥିଲା ।

ବୋଉ ପଚାରିଲା, ଏଥିରେ ତମ ବାପାଙ୍କର ମତ ଅଛି ?

ଦାମଭାଇ କହିଲେ, ଲୋକେ ତାଙ୍କର ମୁଣ୍ଡ ଗୋଳେଇ ଦେଇ ସାରିଛନ୍ତି । ତାଙ୍କର ମତାମତର ମୂଲ୍ୟ କଅଣ ? ସେହି ତ ଏ ପ୍ରସ୍ତାବ ପ୍ରଥମେ ଉଠାଇଥିଲେ । ମନେ ନାହିଁ, ସେ ଦିନ ତାଙ୍କରି ଆଦେଶରେ ମୁଁ ତୁମକୁ ପଚାରିବାକୁ ଆସିଥିଲି ?

ବୋଉ ଅଟକିଇ ଅଟକିଇ କହିଲା, ମନେ ଅଛି ।

ଦାମଭାଇ କହିଲେ, ତେବେ, ତାଙ୍କର ମତାମତ ଶୁଣି ଲାଭ ନାହିଁ ।

ବୋଉ କହିଲା, ସେମାନଙ୍କ କଥାରେ ମୁଁ ଆଉ ବାଧା ଦେଇ ପାରିବି ନାହିଁ ଦାମ, ମୋର ସେ ସାହସ ନାହିଁ, ବଳ ନାହିଁ ।

ଦାମଭାଇ ଉତ୍ତେଜିତ ହୋଇ କହିଲେ, ବାଧା ଦେଇ ପାରିବ ନାହିଁ ! ଜାଣୁ ଜାଣୁ ଗୀତାକୁ ଦରିଆ ମଝିକୁ ଠେଲିଦେବ !

ବୋଉ କହିଲା, ଯାହା ଥିବ ତା ଭାଗ୍ୟରେ । ଜାଣି ଜାଣି ଯଦି ଗାଁ ଲୋକେ ତାକୁ ଦରିଆକୁ ଠେଲି ଦେବେ ଦେଉନ୍ତୁ । ତାଙ୍କର ଧର୍ମ ତାଙ୍କଠି । ଗାଁ ଲୋକଙ୍କ ଇଚ୍ଛା ବିରୁଦ୍ଧରେ ଠିଆହୋଇ ଗୀତାକୁ ବାହା କରି ପାରିବି ନାହିଁ । ଦୁର୍ନାମର ବୋଝ ମୁଣ୍ଡରେ ବୋହି ଚଳିବି କେତେ ଦିନ ?

ଦାମଭାଇ କହିଲେ, ତା ବୋଲି ତାକୁ ଯେଉଁଠି ପାଅ ସେଠି— ।

ବାଧାଦେଇ ବୋଉ କହିଲା, ବାବୁ, ଗୀତାର ଅଭିଆଡ଼ୀ ଦୋଷ କଟିବ । ତା ବୋଝ, ତାର ଦାୟିତ୍ୱ ଆଉ ମୋତେ ଲାଗିବ ନାହିଁ । ତା ନାମରେ ଅପବାଦ ରହିବ ନାହିଁ । ତା ପାଇଁ ଆଉ ପାଞ୍ଚଟା ଝିଅ ବାଛନ୍ଦ ପଡ଼ିବେ ନାହିଁ ।

ବୋଉର ସ୍ୱର ଥରି ଉଠିଲା । ବୁଝିଲି, ତାର ପ୍ରାଣ କାନ୍ଦି ଉଠୁଛି । ଗୃହଆଡ଼ ଅନ୍ଧାର ଦେଖୁଛି । ସେହି ଅନ୍ଧାର ଭିତରେ ଟିକିଏ ଆଲୁଅ ଖୋଜୁଛି । ଆଲୁଅ, ମୋର ବାହାଘର, ଯେଉଁଠି ହେଉ ପଛେ ।

ଦାମଭାଇ ଗମ୍ଭୀର ହେଲେ । ପୁଣି କହିଲେ, ଗୀତା ଆଉ ଜଣିଆ ! ଜଣିଆ ମୂର୍ଖ । ପ୍ରାଣ ଯାଉଛି କି ଆସୁଛି । ଶ୍ୱାସରୋଗୀ । ଗୃହପଇସା ରୋଜଗାର କରିବାର ଶକ୍ତି ନାହିଁ । ଜଣିଆ ସଳଖ ହୋଇ ଠିଆହୋଇ ପାରେ ନାହିଁ । ମୁହଁରୁ ଗୃହିଁ କଥା କହିପାରେ ନାହିଁ । ଖୁଡ଼ୀ, ଜାଣି ଜାଣି ଗୀତାକୁ ଏପରି ଅପାତ୍ରରେ ଦେବା ଆଗରୁ ତାକୁ ଜହର ଦେଇ ମାରି ଦେଉନା, ନିଶ୍ଚିନ୍ତ ହେବାକୁ ଗୃହୁଁଚ ତ ? ସେମିତି ବି ତା ନେଇ ତମେ ନିଶ୍ଚିନ୍ତ ହେବ ।

ବୋଉ ଉତ୍ତର ଦେଲା, ଜଣିଆ ଯଦି ମୋର ପୁଅ ହୋଇଥାଆନ୍ତା ମୁଁ କଅଣ କରନ୍ତି ? ମରଦ ପୁଅର ରୂପ ଗୁଣ ବାଛିବ ନାହିଁ ।

ଦାମଭାଇ କହିଲେ, ଜଣିଆ ତମର ପୁଅ ନୁହଁ । ଜଣିଆ ତମର ପୁଅ ହୋଇଥିଲେ ଏପରି ହୋଇ ନ ଥାନ୍ତା ।

ବୋଉ କହିଲା, ବାପା, ଭାଗ୍ୟରୁ ବଳି ବଡ଼ କେହି ନାହିଁ । ଭାଗ୍ୟରେ ଯଦି ଥିବ, ଜଣିଆ ହେବ ମୋର ପୁଅ, ଆଉ ସେହି ଜଣିଆକୁ ଦିନେ ଲୋକେ ଧନ୍ୟ ଧନ୍ୟ କହିବେ । ଯିଏ ଯାହା କରିବାର କରୁ ମୁଁ ଆଉ ଆପତ୍ତି କରି ପାରିବି ନାହିଁ କି ବାଧା ଦେବି ନାହିଁ ।

ଦାମଭାଇ ପଚାରିଲେ, ଗୀତା କଅଣ ଶୋଇ ପଡ଼ିଛି ? ଅନେକ ଦିନ ହେଲା ତା ସଙ୍ଗରେ ଦେଖା ହୋଇନାହିଁ ।

ଗୀତା ଶୋଇପଡ଼ିଛି ।

ଉଠାଇଲେ ଉଠିବ ନାହିଁ ?

ତା ଦେହ ଭଲ ନାହିଁ ।

ଦାମଭାଇ ଦୀର୍ଘନିଶ୍ୱାସ ଛାଡ଼ି ଉଠିଲେ । କବାଟ କିଲି ବୋଉ ଆସି ଭୂଇଁ ହୋଇ ମୋ ପାଖରେ ଶୋଇଲା । କିଛି କହିଲା ନାହିଁ କି ପଚାରିଲା ନାହିଁ ।

୪୦

କେତେଦିନ କଟିଗଲା । ଗାଁ ଲୋକଙ୍କର ଦେଖାଦର୍ଶନ ମିଳିଲା ନାହିଁ । ଲୋଣିଆ ସମ୍ବନ୍ଧ ନେଇ ଦାମଭାଇ ଯାହା କହିଲେ ମିଛ ସତ ବୁଝିବାକୁ ଉପାୟ ମିଳିଲା ନାହିଁ ।

ଦିନେ ଦିପହରେ ରାଧା ଆସିଲା । ବ୍ୟସ୍ତ ଦେଖାଯାଉଥାଏ । ବୋଉ ବାଉଅଡ଼କୁ ଡାକି ନେଲା । ସେମାନେ କଅଣ କଥାଭାଷା ହେଲେ ମୁଁ ଜାଣିପାରିଲି ନାହିଁ । ବାଁରେଇ ହୋଇ କାମ ବାହାନାରେ ବାଉଅଡ଼କୁ ଗଲି । ଦେଖିଲି, ରାଧା ହାତ ହଲାଇ କଅଣ କହୁଛି, ଆଉ ବୋଉ ଆଖିରୁ ଲୁହ ପୋଛୁଛି ।

ଫେରି ଆସିଲି । ଆଖି ଲୁହରେ ଧୁଆ ମୋର ଜୀବନ, ଆଖି ଲୁହ ଦେଖି ଅସ୍ଥିର ହେବ କାହିଁକି ?

ବୋଉ ଓ ରାଧା ଫେରି ଆସିଲେ ଖଞ୍ଜା ଭିତରକୁ । ବୋଉ ଘର ଭିତରକୁ ଗଲା । ରାଧା ମୋ ପାଖକୁ ଆସି ଆଖି ଛଲଛଲ କରି ମୋର ଓଠ ଧରି ଗୁନ ଗୁନ କହିଲା, ଦେଈ, ଦାମର ସ୍ତ୍ରୀ ଆଜି କନଅର ମଞ୍ଜି ବାଟି ଖାଇବାକୁ ବସିଥିଲା, ଧରା ପଡ଼ିଲା । ବାରକଥା ଲାଗିଛି । କେତେ ଅରୁଗ୍ୟ ପରୁଗ୍ୟ ହେଉଛି ।

ଦାମଭାଇଙ୍କ ସ୍ତ୍ରୀ କନଅର ମଞ୍ଜି ବାଟି ଖାଇବାକୁ ବସିଥିଲେ । ତା ସଙ୍ଗେ ବୋଉ ବା ରାଧା ଆଖିରେ ଲୁହର କି ସମ୍ବନ୍ଧ ଅଛି, ମୁଁ ବୁଝିପାରିଲି ନାହିଁ । ତଳୁ ଉଠି ପଚାରିଲି, କାହିଁକି ଲୋ ରାଧା ?

ରାଧା କହିଲା, ସ୍ୱାମୀ ସ୍ତ୍ରୀ ଭିତରେ କଜିଆ । ଦାମ ତ ଟେଢ଼ା ଲୋକ, ଆଉ ତା ସ୍ତ୍ରୀ ବି ବଡ଼ ଅବୁଝା । ଦେଈ ଗୋଟିଏ କଥା କହୁଛି ମନେ ରଖିବ, ଦାମ କି ଆଉ କେହି ଆସିଲେ ତମେ ଆଉ ତାଙ୍କ ଆଗରେ ଠିଆ ହେବ ନାହିଁ ।

ଭାବିଲି, ବୋଧହୁଏ ମୋଓଳି ନେଇ ତାଙ୍କ ଘରେ କିଛି କାଣ୍ଡ ଘଟିଛି । ଘଟୁ । ସେଥିରୁ ମତେ କଅଣ ମିଳିବ ।

୪୧

ବୋଉ ଯେତେ ଗମ୍ଭୀର ହେବାକୁ ଚେଷ୍ଟା କଲେ ବି ତା ପେଟରେ କଥା ଛପି ପାରେ ନାହିଁ । ଅତି କଷ୍ଟରେ ଦି ତିନି ଦିନ ସେ ଚୁପ ରହେ । ଶେଷକୁ ନିଜ ମନକୁ ସେ ସବୁ କହି ପକାଏ । ପରଦିନ ଘଟଣାଟା ସେ ମୋତେ ବୁଝାଇ ଦେଲା ।

ଦାମଭାଇ ସେଦିନ ରାତିଅଧରେ ଆମଘରୁ ଫେରିଲେ । ସେଥିପାଇଁ ତାଙ୍କ ସ୍ତ୍ରୀଙ୍କ ଆଗରେ ତାଙ୍କୁ ଜବାବ୍ ଦେବାକୁ ପଡ଼ିଲା । ଯେତେ ବୁଝାଇଲେ ସେ ବୁଝିଲେ

ନାହିଁ । ବୃଥାରେ ଝଗଡ଼ା ସୃଷ୍ଟି କଲେ । ଅଶାନ୍ତିରୁ ରକ୍ଷା ପାଇବାକୁ ତାଙ୍କୁ ସବୁକଥା ସତ ସତ କହିଗଲେ । ବାହାରକୁ ଅଶାନ୍ତିଟା ଅବଶ୍ୟ କମିଗଲା, କିନ୍ତୁ ତାଙ୍କ ସ୍ତ୍ରୀଙ୍କ ମନରେ ସନ୍ଦେହ ନିଆଁ ଜଳିବାକୁ ଲାଗିଲା । ଶେଷକୁ ସେ ଏହି କାର୍ତ୍ତି କରି ବସିଲେ ।

ଫଳରେ ମଦନ ଜେଠା ସ୍ଥିର କରିଛନ୍ତି ଯେ କୌଣସିମତେ ଏଇ ବୈଶାଖରେ କନିଆ ସଙ୍ଗରେ ମୋର ବାହାଘର ଦେବେ । କାହାରି ବାଧା ମାନିବେ ନାହିଁ । ଆଉ ଯଦି କେହି ବାଧାଦିଏ, ସେ ତାର ସର୍ବନାଶ କରିବେ ।

ସେଇଦିନ ସଞ୍ଜବୁଡ଼େ ମଦନ ଜେଠା ଆମ ଘରକୁ ଆସିଲେ । ତାଙ୍କ ସଙ୍ଗେ ତାଙ୍କ ଗୁମାସ୍ତା ହାଡ଼ିବନ୍ଧୁ, ବିମଳା ଭାଇ ଓ ନଟେଇ ଦାଦା ଆସିଥିଲେ । କେଜାଣି କିପରି ଆଗରୁ ଖବର ପାଇ ରାଧା ଆସି ପହଞ୍ଚିଲା । ବୋଉର କହିବାମତେ ବାବୁ-ମାନଙ୍କୁ ସେ ବାରଣ୍ଡାରେ ବସାଇଲା । ଲଣ୍ଠଣ ଲଗାଇ ପାଖରେ ଥୋଇଦେଲା ।

ମୁଁ କବାଟ କଣରେ ଲୁଚିଲି । ବୋଉ ଆଡ଼ ହୋଇ ଦୁଆର ବନ୍ଧ ପାଖେ ରାଧା ପଛରେ ଠିଆ ହେଲା ।

ନଟେଇ ଦାଦା କହିଲେ, ଭାଉଜବୋଉ, ମଦନଭାଇ ଗୀତାର ବାହାଘର କଥା ତୁମକୁ ପଚାରିବାକୁ ଆସିଛନ୍ତି । ହାଡ଼ିବନ୍ଧୁର ସାନଭାଇ ଜଣକୁ ତମେ ଦେଖିଥିବ । ବରପକ୍ଷର ରାଜି । ତମର ମତ ଜାଣିଲେ ଏଇ ବୈଶାଖରେ ବାହାଘରର ଆୟୋଜନ କରାହେବ ।

ବିମଳାଭାଇ କହିଲେ, ଜଣେଟି ଭଲପିଲା । ସ୍ୱଭାବ ଚରିତ୍ର ଉତ୍ତମ । ମୋ ମତରେ ସେଇଠି ହେଲେ ଗୀତା ସୁଖରେ ରହିବ ।

ମଦନ ଜେଠା କହିଲେ, ଶୁଣ ହେ ହାଡ଼ିବନ୍ଧୁ, ଗରିବ ହେଲେ କଅଣ ହେଲା, ବାପ ମାଆଙ୍କର ଆଖିର ପିତୁଳା ଗୀତା । ଭାଇ ଆଜି ନାହିଁ, କିନ୍ତୁ ଯେତିକି ଦିନ ବଞ୍ଚିଥିଲା, ଗୀତାକୁ ଅତି ଗେଲବସର କରି ବଢ଼ାଇଥିଲା । ତମେ ତାକୁ ପିଲାଦିନୁ ଦେଖୁଛ; ତାର ଢଙ୍ଗଢାଙ୍ଗ ସ୍ୱଭାବ ଚରିତ୍ର ସବୁ ଜାଣ । ତାର ଯେପରି ଅସୁବିଧା ନ ହୁଏ, ସେ ଯେପରି ଦୁଃଖରେ ନ କାନ୍ଦେ, ସେତିକି ଦେଖିବ ।

ହାଡ଼ିବନ୍ଧୁ କହିଲେ, ଆପଣ ମୋର ଅନ୍ନଦାତା । ଆପଣଙ୍କ ଆଗରେ ବଡ଼ିମା କରି କହିବି ନାହିଁ । ସୁନା ମୋର ଝିଅ କିନ୍ତୁ ଗୀତା ଦେଈ ମୋ ଘରକୁ ଗଲେ ସେ ହେବେ ମୋର ଆଗ । ତା ପରେ ଆଉ ଗୋଟିଏ କଥା କହିବାକୁ ମୋର ସାହସ ହେଉନାହିଁ ।

ବିମଳାଭାଇ କହିଲେ, କହ କହ । ବାହା ନିମିତ୍ୟ ବିଷୟରେ ସବୁ ସନ୍ଦେହ ଆଗରୁ ତୁଟାଇ ଦେବା ଭଲ ।

ହାଡ଼ିବନ୍ଧୁ କହିଲେ, ଜଟିର ବାହାଘର ହୋଇଗଲେ, ମାଉସୀ ଏଠି ଚଳିବେ କପର ? ଘରେ ସମ୍ପତ୍ତି ବାଡ଼ି କିଛି ନାହିଁ । ମୁଁ କହୁଛି, ମୋର ମା ନାହିଁ, ମାଉସୀଙ୍କର ଯଦି ଆପତ୍ତି ନ ଥାଏ ସେ ଯାଇ ତାଙ୍କ ଝିଅ ପାଖେ ରହିବେ ।

ମଦନ ଜେଠା କହିଲେ, ଅହା, ସେ ସବୁ କଥା ଏତେ ଆଗରୁ ଭାବିବା ବା କହିବା ଦରକାର ନାହିଁ ହାଡ଼ିବନ୍ଧୁ ! ତାଙ୍କର ଯଦି ଇଚ୍ଛା ହୁଏ, ତମର ଯଦି ଶ୍ରଦ୍ଧା ଥାଏ, ଯେପରି ଭଲ ହେବ ସେପରି କରିବ । ଲୋହିଲା ଯଦି ଲୌକିକତାକୁ ଅନାଇ ସେ ତମ ଘରକୁ ଯିବାକୁ ରାଜି ନ ହୁଅନ୍ତି, ତେବେ କଅଣ ଭାବୁଛ, ଗୋଟାଏ ପେଟ ଏ ଗାଁରେ ଅପୋଷା ରହିଯିବ ? ମୁଁ ବଞ୍ଚିଥିବା ଯାଏ ତା କେବେ କରାଇ ଦେବି ନାହିଁ ।

ସମସ୍ତେ ତୁନି ରହିଲେ । କିଛି ସମୟ ପରେ ମଦନ ଜେଠା ପୁଣି କହିଲେ, ଆଚ୍ଛା ରାଧା, ବୋହୂଙ୍କୁ ପଚାର, ସବୁ କଥା ତ ଶୁଣିଲେ । ଯଦି ତାଙ୍କର ଇଚ୍ଛା ଥାଏ, ଜଟି ବିଷୟରେ ଜବାବ୍ ଦେଉନ୍ତୁ । ଟିପଣୀ ଶୁଝାଇବା ଦରକାର ନାହିଁ । ବାହାଘର କପରି ହେବ ଟଙ୍କା କେଉଁଠୁ ଆସିବ ସେ ବିଷୟରେ ଭାବିବା ଆବଶ୍ୟକ ନାହିଁ । ତାଙ୍କର ଜବାବ ପାଇଲେ ସବୁ ଠିକ୍ ହୋଇଯିବ ।

ବୋଉ କଅଣ କହିବ ଶୁଣିବାକୁ ମୁଁ କାନଡେରି ରହିଲି । ତାଆରି ପଦଟିଏ କଥା ମୋର ଭବିଷ୍ୟତ ଜୀବନର ସୁଖଦୁଃଖ ସ୍ଥିର କରିବ । ସତେ କି ଏତେ ଲୋକଙ୍କ ପଦ୍ମତୋଳାରେ ଭୁଲି ଫଣା ନୁଆଇଁବ ?

ସେ କହିଲା, ସାଆନ୍ତଙ୍କୁ କହ, ମୋର ମତାମତ ପଚାରୁଛନ୍ତି କାହିଁକି ? ଗୀତା ତାଙ୍କର ଝିଅ । ସେ ଯାହା କରିବେ ସେଇଆ ହେବ ।

ମଦନ ଜେଠା କହିଲେ, ଗୀତା ସୁଖରେ ରହିବ, ଏ ଧାରଣା ଯଦି ମୋର ନ ଥାନ୍ତା, ମୁଁ ନିଜେ ଆଜି ସମ୍ବନ୍ଧ ନେଇ ଧାଇଁ ଆସି ନ ଥାନ୍ତି ।

ବୋଉ କହିଲା, ମନ ଯାହା ଲୋଡ଼େ ସବୁବେଳେ ପାଏ ନାହିଁ । ସାଆନ୍ତେ ଯଦି ନମିତ୍ୟର ବୋଝ ମୁଣ୍ଡକୁ ନେଇ ନିର୍ବନ୍ଧ କରିବେ କରନ୍ତୁ ।

ବୋଉ ଜବାବ ଦେଲା ।

ମୋତେ ହତାଶିଆ ଲାଗିଲା । ପିଣ୍ଡରୁ ପ୍ରାଣ ଛାଡ଼ିଗଲା ପରି ସେଇ କବାଟ କଣରେ କାନ୍ଥ ଉପରକୁ ଢଳି ପଡ଼ିଲି । କିଏ କଣ କହିଲା, କେତେବେଳେ ସେମାନେ ଆମ ଘରୁ ଗଲେ, ମୁଁ ଜାଣେ ନାହିଁ ।

ରାଧା ଯେତେବେଳେ ହାତ ଧରି ଉଠାଇଲା, ମୋର ଜ୍ଞାନ ହେଲା । ଚାହିଁଲି, ଘର ମଝିରେ ନଳଟିଣ ଜଳୁଛି । ବୋଉ ଗମ୍ଭୀର ହୋଇ କାନ୍ଥକୁ ଆଉଜି ଠିଆ ହୋଇଛି ।

ରାଧା ମୋତେ ଗୁଡ଼କୁ ଆଉଜାଇ ପିଠିରେ ହାତ ବୁଲାଇ କହିଲା, ଝିଅ ହୋଇ ଜନ୍ମ ହେଲେ ସମସ୍ତଙ୍କୁ ଦିନେ ପରଘରକୁ ଯିବାକୁ ପଡ଼େ। ସେଥିପାଇଁ ମନରେ ଦୁଃଖ କଲେ ଚଳିବ ନାହିଁ । ଏମିତି ଅଧୀର ହୁଅନା ।

ଉତ୍ତର ଦେଲି ନାହିଁ । ମୋ ଆଖିରୁ ଲୁହ ପୋଛି ରାଧା ପୁଣି କହିଲା, ଛି, କାନ୍ଦୁଛ, ଚୁପ ହୁଅ । ତମେ ଯଦି ଏପରି ଅଧୀର ହୁଅ ତମ ବୋଉଙ୍କ ମନ କଅଣ ହେବ ବୁଝୁଛ ତ ? ତମର ଆଖିର ଲୁହ ସେ ସହିପାରିବେ କି ?

ବୁଝିଲି । ଗାଁ ଝିଅଙ୍କର ସ୍ୱାର୍ଥପାଇଁ, ଦାମଭାଇଙ୍କ ସ୍ତ୍ରୀର ଜୀବନ ପାଇଁ, ସୁଖ ପାଇଁ, ପୁଣି ଗାଁକୁ ଦୁର୍ନାମରୁ ରକ୍ଷା କରିବା ପାଇଁ ମୋଓରେ ବାହାଘର ହେଉଛି । ଭଲ ହେଉ ମନ୍ଦ ହେଉ, ମୁଁ ସୁଖରେ ରହେ କି ଦୁଃଖରେ ରହେ, ମୋର ଇଚ୍ଛା ଥାଉ କି ନ ଥାଉ, ମୋତେ ବାହା ହେବାକୁ ପଡ଼ିବ । ଆଖିର ଲୁହରେ ମଧ୍ୟ ମୋର ଅଧିକାର ନାହିଁ, ବୋଉର ଦୁଃଖ ହେବ, ବୋଉ ଭାଙ୍ଗି ପଡ଼ିବ ।

୫୨

ଦାମଭାଇ କେଉଁଠୁ ଆସି ଆମର ଆଗରେ ଠିଆ ହେଲେ ।

ତାଙ୍କୁ ଦେଖି ମୁଁ ଚମକି ଉଠିଲି । ରାଧାର କଡ଼କୁ ଘୁଞ୍ଚିଯାଇ ବଲବଲ କରି ତାଙ୍କର ମୁହଁକୁ ଅନାଇ ରହିଲି । ବୋଉ ବ୍ୟସ୍ତ ହୋଇ ଉଠିଲା । କଅଣ କହିବାକୁ ଯାଉଥିଲା, ତାଙ୍କର ଲୁହ ଟଳଟଳ ଆଖିକୁ ଚାହିଁ ପଡ଼ିଛି ଠିଆ ହେଲା ।

ଦାମଭାଇ ମୁହୂର୍ତ୍ତେ ଅପେକ୍ଷା କରି ଥରିଲା ସ୍ୱରରେ କହିଲେ, ଖୁଡ଼ୀ, ଶେଷକୁ ଏଇଆ କଲ, କଣିଆ ବରଯିବରେ ଜବାବ୍ ଦେଲ ? ତମକୁ ବର ମିଳିଲା ନାହିଁ ?

ତାଙ୍କ ଆଖିରୁ ଲୁହଧାର ଗଡ଼ି ପଡ଼ିଲା ।

ବୋଉ ସେ ଦଗକୁ ନଯା ନ ଦେଇ କହିଲା, ଦାମ, ମୋତେ ଆଉ ହଇହଇା କର ନାହିଁ । ତମେ ଯାଅ ଏଠୁଁ । ଗୀତାକୁ ମୁଁ ଜନ୍ମ ଦେଇଛି । ତାର ସୁଖ ଦୁଃଖ, ତାର ଭଲ ମନ୍ଦ ମୁଁ ବୁଝିବି । ମୋ କୁହା ମାନ । ତମେ ଏଠୁଁ ଚାଲିଯାଅ ।

ଅଛା କଲାପରି ସେ କହି ଉଠିଲେ, ଗୀତାକୁ ତମେ ଜନ୍ମ କରିଛ, ତାର ସୁଖ ଦୁଃଖକୁ ହାତରେ ଧରି ଖେଳ କର ନାହିଁ । ଖୁଡ଼ୀ, ମୋର ସାନକୁହା ମାନ। ଏବେ ବି ନାହିଁ କରିବାର ବେଳ ଅଛି । ତମେ ନାହିଁ କରି ପଠାଅ ।

ବୋଉ କହିଲା, ନାହିଁ କରିବାର ବେଳ ଅଛି, କିନ୍ତୁ ତା ପରେ ? ଗୀତାର ବାହାଘର ହେବ କିପରି ? ହେବ କେଉଁଠି ? ତାର ବାପ ଦାଦି କି ଭାଇ କେହି ନାହାନ୍ତି ଯେ ଭଲ ଘର ଭଲ ବର ଦେଖି ତାକୁ ଦେବେ । ଗାଁ ଲୋକେ ମନେ କରୁଛନ୍ତି ଗୀତା ସେମାନଙ୍କ ମୁଣ୍ଡରେ ବୋଝ ହୋଇଛି । ଯାହା ସେମାନେ କରୁଛନ୍ତି, କରନ୍ତୁ । ତା ପାଇଁ ଉପରେ ଭଗବାନ ଅଛନ୍ତି ।

ଦାମଭାଇ କହିଲେ, ଭଗବାନଙ୍କ ଉପରେ ବିଶ୍ୱାସ ଅଛି ତ ଅପେକ୍ଷା କର । ଏଡ଼େ ତରବର କାହିଁକି ? ବରଂ ସେ ଅଭିଆଡ଼ୀ ରହୁ ।

ବୋଉ କହିଲା, ଆଉ ମୋ ଉପର ମୁହଁ ତଳକୁ ହେଉ ? ତୁମେ ହସ, ଭଗାଣୀ ହସନ୍ତୁ, ଦୁର୍ନାମ ରଟୁ, ତୁମର ସ୍ତ୍ରୀ ଜୀବନ ହାରିବାକୁ ଚେଷ୍ଟା କରନ୍ତୁ । ତୁମେ ଭଲ କି ମନ୍ଦ, ଗୀତା ଭଲ କି ମନ୍ଦ, ଦୁନିଆଁର ଲୋକେ ତ ଜାଣିବେ ନାହିଁ ଦାମ, ସେମାନେ ତୁମର ଆତଯାତ ହେବା ଦେଖିବେ । ଆମର ଭାଗ୍ୟ ଧରି ଉପାସ ଭୋକରେ ଆମେ ବେଳ କାଟୁଛୁଁ । ତୁମ ପାଖେ କେବେ ହାତ ପାତି ନାହୁଁ । କେଉଁ କଥାରେ କାହାର ଧାରୁଆ ହୋଇନୁ । ନାକରେ ନିଶ୍ୱାସ ଥିବାଯାଏ ନିଜ କଥା ନିଜେ ବୁଝିବାକୁ ଚେଷ୍ଟା କରୁଛୁ । ଘରଟା ଭାଙ୍ଗି ପଡ଼ିଥାଉ । ଖଜଣା ପାଇଁ ଉଦି ନିଲାମ ହୋଇଥାଉ । ବାସନ ଭୁସନ ବିକାଲୁଁ । ବାଡ଼ି ବିକାଲୁଁ । ତୋକେ ପିଇ ଦଣ୍ଡେ ଜୀଉଁଛୁ । ଆଜି ଯେଉଁମାନେ ମୁରବି ବୋଲି ରଡ଼ ଛାଡ଼ୁଛନ୍ତି, ଭଲେଇ ହୋଇ ଉପଦେଶ ବାଢ଼ୁଛନ୍ତି, ଅନାଥା ବିଧବା ସ୍ତ୍ରୀର ଆଖିର ପିତୁଳାକୁ ପାଣିକି ଠେଲି ଦେବାକୁ ଚକ୍ରାନ୍ତ କରିଛନ୍ତି, ସେମାନେ ଥିଲେ କେଉଁଠି ବାପ, କେଉଁ କଥା ବୁଝି ଥିଲେ ? ତାଙ୍କର କଥା ରହୁ । ତୁମର ଅଲଣା ସ୍ନେହ ତୁମରି ପାଖରେ ଥାଉ । ମୋତେ ଆଉ ହଠହଠା କର ନାହିଁ । ଗୀତାର ଦୁର୍ନାମର ବୋଝ ଆଉ ବଢ଼ାଅ ନାହିଁ । ସମସ୍ତ ଲୋକହସା ହେବା ।

ବୋଉର ଧୈର୍ଯ୍ୟ ଭାଙ୍ଗିଲା । ସେ କାନ୍ଦି ପକାଇଲା ।

ରାଧା କହିଲା, ତୁମେ ଯାଅ ଦାମ ସାଆନ୍ତେ । ଏତିକି କଣ ବୁଝି ପାରୁନା, ଗୀତାର ଯଦି ସର୍ବନାଶ ହେଉଥାଏ ତେବେ ସେତିକି ହେଉଛି କେବଳ ତୁମରି ଅଲଣା ସୋଗ ପାଇଁ । ନିଜ ଧନ୍ଦାରେ ନିଜେ ଯାଅ ସାଆନ୍ତେ, ନିଜଘର କଥା ବୁଝ । ପର ଘର କଥାରେ ମୁଣ୍ଡ ଗଳାଅ ନାହିଁ । ନେହୁରା ହୋଇ କହୁଛି ।

ଦାମଭାଇ ନିର୍ବାକ୍ ହୋଇ ଶୁଣିଲେ । ମୁଣ୍ଡ ନୁଆଇଁ ପଦାକୁ ବାହାରିଗଲେ ।

୫୩

ବାହାଘର ସ୍ଥିର ହୋଇଗଲା । ଏ ବୃହ ହନରେ ମହାପ୍ରସାଦ ନିର୍ବନ୍ଧ ମଧ୍ୟ ସରିଯିବ ।

କେତେ ଆକାଶ କୁସୁମ ତୋଳୁଥିଲି ମନେ ମନେ । ସବୁ ଶୁଖି ଯାଉଛି । ଝଡ଼ି ପଡ଼ୁଛି । କାହାରକୁ କିଛି କହେ ନାହିଁ । ଯେଉଁଠି ବସେ ଅନ୍ୟମନସ୍କ ହୋଇ କେତେ ଭାବେ । ଗତ ଜୀବନର ଦିନ ଦିନକର ଶ୍ରେଷ୍ଠ ଶ୍ରେଷ୍ଠ ଘଟଣା ଗୁଡ଼ିକ ମନେ ପଡ଼େ । ଆଖିରୁ ଲୁହ ଧାର ଗଡ଼ିଆସେ । ଯେତେ ଲୁଚେଇବାକୁ ବସିଲେ ମଧ୍ୟ ବୋଉ ଜାଣେ । କିଛି କହେ ନାହିଁ ।

ସେ ବୁଝେ, ବାହାଘର ସ୍ଥିର ହେଲେ ସଂସାରର ଝିଅମାନେ କାନ୍ଦନ୍ତି । ମୁଁ ମଧ୍ୟ ସେପରି କାନ୍ଦୁଛି । ସେଇ କାନ୍ଦଣାରେ ନୂଆ କିଛି ନାହିଁ । ବାପଘରେ ଝିଅ ଜନ୍ମ ହୋଇ ସୁଖ ଦୁଃଖରେ କେତୋଟି ବର୍ଷ କାଟି ଯେତେବେଳେ ସ୍ୱାର୍ଥ ଓ ମମତା ଛାଡ଼ି ଅଜଣା ସ୍ଥାନ, ନୂଆ ଲୋକ, ଅପରିଚିତ ମଣିଷଙ୍କ ମଝିକି ଯିବାକୁ ବସେ, ସେହି ପରିବର୍ତ୍ତନର ଆଶଙ୍କାରେ ତା ମନରେ ଦୁଃଖ ଆସେ । ସେ କାନ୍ଦେ ।

କାହିଁକି କାନ୍ଦେ, ବୁଝିବ କିଏ ? ତା ଆଖିର ପ୍ରତି ବୁନ୍ଦା ଲୁହରେ କେତେ ସ୍ମୃତି ମିଶି ରହିଛି । ଭବିଷ୍ୟତର କେତେ ଚିନ୍ତା ସେ ଲୁହ ବୁନ୍ଦାକୁ ଗରମ କରିଛି ! ଲୋକେ ଦେଖନ୍ତି, ଝିଅ କାନ୍ଦେ ।

ତାର ମନର ଅନ୍ଧାରିଆ ଗୁହାର କବାଟ କେବେ ଖୋଲେ ନାହିଁ । ନିବିଡ଼ ଅନ୍ଧାର । କେହି ଦେଖନ୍ତି ନାହିଁ, କେହି ଜାଣନ୍ତି ନାହିଁ, ସେହି କଟିମିଟି ଅନ୍ଧାର ଭିତରେ କଅଣ ଅଛି, କଅଣ ରହେ । ବାହାରର ଆଲୁଅ ପଡ଼େ ବାହାରେ । ଅନ୍ଧାର ଘୁଞ୍ଚେ ନାହିଁ । ଅନ୍ୟର ଆଖିରେ ସବୁ ଦିଶେ ପରିଷ୍କାର, ଉଜ୍ଜ୍ୱଳ ।

ମନଗହନରେ ଲୁଚି ରହିଥାଏ ଅନ୍ଧାରି ଗୁହାଟି, କେତେ ସ୍ମୃତି, କେତେ ବେଦନା, ପୋଡ଼ିଲା ଜଳିଲା ଆଶା ଉତ୍ତେଜନାର ପାଉଁଶ ପେଟରେ ଭରି । ସେହି କବାଟରେ ଧୀରେ ବୁଲେ ଭାବନା । ଅତୀତ କବାଟର କଳଣୀ ଖୋଲି ଉଙ୍କି ମାରେ । ଚମକି ଉଠେ । ଥରି ଥରି ବୁଲେ ଆଗକୁ । ଝରିପଡ଼େ ଆଖିରୁ ମେଘ । ଦେଖନ୍ତି ସମସ୍ତେ । ବୁଝନ୍ତି ନାହିଁ କେହି । କହନ୍ତି, ଝିଅ କାନ୍ଦେ ।

୫୪

ଦଳ ଦଳ ହୋଇ ଗାଁ ମାଇପେ ମୋତେ ଦେଖିବାକୁ ଆସିଲେ । କିଏ କେତେ ପ୍ରକାର ମନ୍ତବ୍ୟ ଦେଇଗଲେ । ଶୁଣେ, ଦେହରେ ଛୁଟି ବୁଲିଯାଏ, ଭିନେ ଭୁନ କାନ୍ଦେ, ପାଟି ଖୋଲେ ନାହିଁ ।

ମଦନ ଜେଠା ବିମଳାଭାଇଙ୍କୁ ସଙ୍ଗରେ ନେଇ ଆସନ୍ତି । ବିମଳା ଭାଇ ବୋଉ ସଙ୍ଗେ ଭୁନ ଭୁନ କଥାଭାଷା ହୁଅନ୍ତି, ଫେରନ୍ତି ।

ଦିନେ ବିମଳାଭାଇ ସକାଳେ ଆସି ଆମ ଘରେ ବସିଲେ । ବୋଉ ସଙ୍ଗେ ଦୁଃଖ ସୁଖ ହେଲେ । ଗୋରୁଘର ମଝି କବାଟ ପାଖରେ ମୁଁ ପଇବା କାଟୁଥିଲି । କେବଳ ନଅଣ୍ଟା ହେବ ।

ବୋଉ କହିଲା, ପୁଅ, ବାହାଘର ସଙ୍ଗେ ସଙ୍ଗେ ମୁଁ ତାଙ୍କ ଘରକୁ ଯାଇ ପାରିବି ନାହିଁ । ଲୋକହସା ହେବ । ସୁବିଧା ହେଲେ ଯିବି, ନୋହିଲେ ନାହିଁ । ଏଇ କୁଡ଼ିଆ ଖଞ୍ଜିରେ ମୋର ଜୀବନ କାଳ କଟାଇବି । ତା ପରେ ଯାହା ହେବାର ହେଉଥାଉ ।

ପାଟିରୁ କଥା ଛଡ଼ାଇ ବିମଳାଭାଇ କହିଲେ, ସେଥିପାଇଁ ତମେ ଏତେ ଭାବ ନାହିଁ । ନମିତ୍ୟ ଉଠିଗଲେ ହାଡ଼ବନ୍ଧୁ ତମକୁ ଏଠି ରଖାଇ ଦେବେ ନାହିଁ । ପରଷ୍ଠା ତମର କଅଣ ହେବ ? ଯଦି ତମେ ଏଠି ରହିବ, କେହି ତମକୁ ବାଧାଦେଇ ପାରିବେ ନାହିଁ । ଜୀବନ ଥିବାଯାଏ ତମେ ଭୋଗ ଦଖଲ କରୁଥିବ । ତମ ଅନ୍ତେ ନଟେଇ ଦାଦା ଦଖଲ କରିବେ । ଏଇ କାଗଜରେ ସେଇ କଥା ଲେଖା ହୋଇଛି । ତମେ ଗୋଟାଏ ଦସ୍ତଖତ୍ କରିଦେଲେ ନଟେଇ ଦାଦା ଦଶ ଟଙ୍କା ମଦନ ଜେଠାଙ୍କ ମାରଫତ୍ ଦେବେ । ମଦନ ଜେଠା ଗାଁର ମୁରବି, ତମର ମୁରବି । ତେଣିକି ତମର ଖର୍ଚ୍ଚ, ବାହାଘରର ଖର୍ଚ୍ଚ ସେ ତୁଲାଇବେ । ଏଇ କାଗଜଟା ଦସ୍ତଖତ୍ ହୋଇନାହିଁ ବୋଲି ସବୁ ଡେରି ଡେରି ହୋଇ ଯାଉଛି । କେହି ଟଙ୍କା କାଢ଼ୁ ନାହାନ୍ତି ।

ସେ ତୁନି ହେଲେ । ବୋଉର ପାଟି ବି ଆଉ ଶୁଭିଲା ନାହିଁ । କାଗଜଟାର କଥା ଶୁଣି ମୋ ମନରେ ସନ୍ଦେହ ହେଲା । ମୁଁ ଠିଆ ହୋଇ କବାଟ କଣାବାଟେ ଚାହିଁଲି । ବିମଳା ଭାଇ ଫରଦେ ଧଳାକାଗଜ ମେଲାଇ ବୋଉ ଆଗରେ ଧରିଛନ୍ତି । ବୋଉ କଲମଟି ଧରି ତାଆରି ଆଡ଼କୁ ଚାହିଁ ରହିଛି ।

ମୋର ବୁଦ୍ଧି କଅଣ ହୋଇଗଲା । ନିଶ୍ଚୟ ଏହା ଭିତରେ ଗୋଟାଏ ଷଡ଼ଯନ୍ତ୍ର ରହିଛି । ବାହାଘର ଆଶା ଦେଖାଇ ସମସ୍ତଙ୍କ ମନ୍ତ୍ରଣାରେ ନିଃସହାୟ ସ୍ତ୍ରୀଟିଏ ଦେଖି ସେମାନେ ଆମର ସର୍ବନାଶ କରିବାକୁ ବସିଛନ୍ତି ।

ମୋତେ ଚାରିଆଡ଼େ ଅନ୍ଧାର ଦିଶିଲା । ସାତ କଥାରେ ସତୀ ଭୁଲେ । ବୋଉ ଏଇସବୁ ମାୟାତ୍ମକ ପ୍ରକୃତିର ଲୋକଙ୍କ ଉପରେ ବିଶ୍ୱାସ କରି କଅଣ କରିବାକୁ ଯାଉଛି ?

ବୋଉ ଦୁଆତରେ ପର କଲମଟି ବୁଡ଼ାଇ ସ୍ୟାହି ଝାଡ଼ି ଲେଖିବାକୁ ମୁଣ୍ଡ ନୁଆଁଇଲା । ମୁହୂର୍ତ୍ତକରେ ସର୍ବନାଶ ହେବ । କଅଣ କରିବି ? ନିଜେ ଯାଇପାରୁ ନାହିଁ । ବିମଳାଭାଇଙ୍କୁ ଆଡ଼ ହୁଏ । ମୋର ପୁଣି ବାହାଘର ଲାଗିଛି । କିଛି ଉପାୟ ନ ଦେଖି କଂସାଖଣ୍ଡ ହାତରୁ ଖସାଇ ପକାଇଲି । ଶବ୍ଦ ହେଲା । ଭାବିଥିଲି ବୋଉର ଦୃଷ୍ଟି ଟାଣିଆଣି ପାରିବି । କିନ୍ତୁ, ଫେରି ଚାହିଁଲେ ବିମଳା ଭାଇ ।

ସେ ବୋଉ ଆଡ଼କୁ ତୀକ୍ଷ୍ଣ ଦୃଷ୍ଟି ଫେରାଇ କହିଲେ, ଦିଅ, ନାମଟା ଲେଖିଦିଅ ।

ବୋଉ ଦସ୍ତଖତ୍ କରି କାଗଜଖଣ୍ଡି ତାଙ୍କ ହାତକୁ ଫେରାଇ ଦେଲା ।

ସେ ସଙ୍ଗେ ସଙ୍ଗେ ଉଠି ପଦାକୁ ଚାଲିଗଲେ ।

ଅସ୍ଥିର ହୋଇ ମୁଁ ବୋଉ ପାଖକୁ ଗଲି । ପଚାରିଲି, ବୋଉ, ଯେଉଁ କାଗଜରେ ତୁ ନାମ ଲେଖିଦେଲୁ, ସେଥିରେ କଅଣ ଲେଖା ହୋଇଥିଲା ପଢ଼ିଛୁ ?

ବୋଉ କହିଲା, ପଢ଼ି ପାରିଲି ନାହିଁ । ବିମଳା ଯାହା କହୁଥିଲା ସେଇଆ ତ ଲେଖା ହୋଇଥିବ ।

କହିଲି, ବୋଉ, ଅଉ କାହାକୁ ଟିକେ ଦେଖାଇଲୁ ନାହିଁ ?

ସେ ଆଶ୍ଚର୍ଯ୍ୟ ହୋଇ ମୋ ମୁହଁକୁ ଚାହିଁଲା । ପଚାରିଲା, ତୋର ବିମଳା କଥାରେ ବିଶ୍ୱାସ ହେଉ ନାହିଁ କି ମା ? ସେ ସେମିତି ଲୋକ ନୁହେଁ । ତୁ ପରଘରକୁ ଗଲେ ମୋର ଏ ଘର ଲୋଡ଼ା ହେବ ନାହିଁ । ବଞ୍ଚିବାଯାଏ ଚଳୁଥିବି, ମରିଗଲେ ଯିଏ ହେଲେ ତ ନବ । ନତେଇ ଏବେ ଅଜାଠୁଁ ନେଉନ୍ତୁ । ନମିତ୍ୟ ଦୁରୁଖୁରୁରେ ଉଠିଯାଉ ।

ବୋଉ ଆଖିରୁ ଦୁଇଧାର ଲୁହ ଗଡ଼ି ଆସିଲା । ମୁଁ ଥକକା ହୋଇ ତା ମୁହଁକୁ ଚାହିଁ ରହିଲି । ମୋ ମନ ଭିତରେ ଅହା ଅହାଳ କୋହ ଉଠିଲା । ଗୁଡ଼ାଏ ଥରର ଖରଶ୍ୱାସ ଛୁଟିଲା । ଧୈର୍ଯ୍ୟଧରି କୋହକୁ ଅଟକାଇ ଅଳ ଘରକୁ ଚାଲି ଆସିଲି ।

୫୬

ମହାପ୍ରସାଦ ନିର୍ବନ୍ଧ ହୋଇଗଲା ।

ନଜେ ମଦନ ଜେଠା ମହାପ୍ରସାଦ ଠେକିଲେ । ସେ କଅଣ ଭାବିଥିବେ କେଜାଣି, ଗାଁ ଲୋକେ ଅବଶ୍ୟ ଭାବିଥିବେ ଯେ ସେ ଗୋଟିଏ ପୁଣ୍ୟକାମ କରୁଛନ୍ତି । ଖାଲି ମୋଉ ହାତଟା ନେଇ କାଠ ପଥର ଯାହା ହାତରେ ଛନ୍ଦିଦେଲେ ନଜେ ସେ ସ୍ୱର୍ଗଗାମୀ ହେବେ, ଗାଁ ଲୋକଙ୍କୁ ସବୁ ଦୁର୍ନାମ ଓ ଅପମାନରୁ ରକ୍ଷା କରିବେ । ବୋଉ ମୁଣ୍ଡରୁ ବୋଝ ଖସାଇ କରି ମୋର ଅଭିଆଡ଼ୀ ଦୋଷ ଭାଙ୍ଗିବେ ।

ଯେଉଁଦିନ ମୋର ମହାପ୍ରସାଦ ନିର୍ବନ୍ଧ ହେଲା, ସେହିଦିନ ରାତି ଅଧରେ ରାଧା ଆମ ଘରକୁ ଆସିଲା । ବୋଉ ଆଗରେ କେତେ କଥା ଗପିଲା ।

ସେ କହିଲା, ଆଜି ମଦନ ସାଆନ୍ତଙ୍କ ଘରେ ଉଚ୍ଚବାଚ ଲାଗିଛି । ମହାପ୍ରସାଦ ନିର୍ବନ୍ଧ ଖବର ଶୁଣି ଦାମ ଆପତ୍ତି କରି କଅଣ ସବୁ କହୁଥିଲା । ବୁଢ଼ା ରାଗିଯାଇ ଦାମକୁ ଶୋଧିଲେ । ନାନା ପ୍ରକାର ଅକଥା କହିଲେ । ଦାମ କଡ଼ା ଜବାବ

ଦେଲା । କହିଲା, ମୁଁ ଯଦି ଏ ଗାଁରେ ଥିବି କଡ଼ିଆ ସଙ୍ଗେ ଗୀତାର ବାହାଘର କରାଇ ଦେବି ନାହିଁ କି ନଟେଇ ବାବୁ ତାଙ୍କର ଦ୍ୱାରମୁହଁ ମାଡ଼ି ପାରିବେ ନାହିଁ । ଦାମକୁ ଏପରି ରାଗିବାର କେହି କେବେ ଦେଖି ନ ଥିଲେ । ବୁଢ଼ା ଧକ୍କାରିଲ୍ରୁ ସେ ପୁଣି କହିଲା, ବାପା, ଆପଣ ଓ ଆପଣଙ୍କ ଗାଁ ଲୋକେ ମିଛରେ ମୋର ଦୁର୍ନାମ ରଟାଇଛନ୍ତି । ଆପଣଙ୍କ ସମ୍ମାନକୁ ଜଗି ମୁଁ ଚୁପ ହୋଇ ରହିଛି । ସେଥିପାଇଁ ମୋର ଦୁଃଖ ନାହିଁ । କିନ୍ତୁ, ଆଗରୁ ସାବଧାନ କରି ଦେଉଛି, କଅଁଶ୍ରୀ ବିଧବା ଓ ତାର ଝିଅଟିର ସର୍ବନାଶ କରନ୍ତୁ ନାହିଁ । କଲେ ଭଲ ହେବ ନାହିଁ ।

ବୋଉ ପଚାରିଲା, ଦାମ ଏପରି ବାଧା ଦେଉଛି କାହିଁକି, ଏପରି ଶତ୍ରୁତା ସାଧୁଛି କାହିଁକି ?

ରାଧା କହିଲା, ଶତ୍ରୁତା ସେ କରୁନାହିଁ । ଗୀତାକୁ ସେ ଭଉଣୀ ଠାରୁ ବଳି ଅଧିକ ଭଲ ପାଏ । ମଦନ ସାଆନ୍ତେ ବଞ୍ଚିଛନ୍ତି । ତେଣୁ ଦାମ ନିକର୍ତ୍ତବ୍ୟ । ସେ ସବୁବେଳେ ଗୀତାର ଭଲ କରିବାକୁ ମନ କରେ । ସାଆନ୍ତଙ୍କ ଦାଉରେ କିଛି କରିପାରେ ନାହିଁ ।

ଟିକିଏ ରହି ରାଧା ପୁଣି କହିଲା, ଶୁଣ କଅଣ ହେଲା । ମଦନ ସାଆନ୍ତେ ରାଗିଲେ । ସାଆନ୍ତାଣୀ ଯେତେ ବୁଝାଇଲେ ସେ କି ମାନିବା ଲୋକ ? ଯାହା ମାନି ଥାଆନ୍ତେ, ତାଙ୍କ ବୋହୂଙ୍କ କାନ୍ଦଣା ଶୁଣି ସେ ଏକାଥରେ ପାଗଲ । ଯାହା ପାଟିକୁ ଆସିଲା ଦାମକୁ ଗୁଡ଼ାଏ ବକିଲେ । ତ୍ୟାଜ୍ୟପୁତ୍ର କରିବେ ବୋଲି ଧମକ୍ ଦେଲେ ।

ଦାମ ରାଗରେ ଘରୁ ବାହାରି ଗଲା । କହିଗଲା, ଆପଣ ଯାହା କରୁଛନ୍ତି ଭଲକରି ଭାବିଚିନ୍ତି କରନ୍ତୁ । ମୋ ଥିବା ଦ୍ୱାରା ଯଦି ଆପଣଙ୍କର ଉଦ୍ଦେଶ୍ୟରେ ବାଧା ପଡ଼ୁଛି ତ ମୁଁ ଯାଉଛି । ଗୀତାର ବାହାଘର ସରିଲେ ମୁଁ ଗ୍ରାମକୁ ଫେରିବି । ମନେ ରଖନ୍ତୁ, ଉପରେ ଧର୍ମ ଅଛି । ବାପ ନ ଥିଲା ନିଃସହାୟ ଗରିବ ସରଳ ନିଷ୍କପଟ ଝିଅଟିର ଯଦି ସର୍ବନାଶ କରିବେ ତ ଦଇବ କେବେ ସହିବ ନାହିଁ ।

ଦାମ ଆଉ କହି ପାରିଲା ନାହିଁ ସାନ୍ତାଣୀ, ଆଖି ଛଳଛଳ କରି ଦହେ ଦହେ ବାହାରିଗଲା । ତଥାପି, ବୁଢ଼ା ଗର୍ଜି ଉଠିଲେ ।

ବୋଉ ପଚାରିଲା, ସେ କୁଆଡ଼େ ଗଲା ?

ରାଧା କହିଲା, କେଜାଣି ?

ବୋଉ କହିଲା, ଯାହା ଭାଗ୍ୟରେ ଯାହା ଥିବ ନିଶ୍ଚୟ ହେବ । ଆମେ ଯେତେ ଟାଣି ଓଟାରି ହେଲେ ଭାଗ୍ୟ ବଦଳାଇ ହେବ ନାହିଁ ଲୋ । ସାଆନ୍ତେ ଯଦି ଆମ ପାଇଁ ଗାତ ଖୋଳୁଥିବେ ଦେଖିବୁ ରହି ରାଧା, ନିଜେ ସେଇ ଗାତରେ ପଡ଼ିବେ । ହଉ, କିଏ କଅଣ କହୁଛି କହୁ, କିଏ କଅଣ କରୁଛି କରୁ । ଆମର ମାହା ଏକା ଭଗବାନ ।

୨୭

ବୋଉ ଆଦର କରି ମୋତେ ପଚାରୁଥିଲା, ଗୀତା, ତୁ ପିଲା ଛୁଆ ନୁହଁ, ସବୁ ବୁଝୁଛୁ ସବୁ ଜାଣୁଛୁ, କହିଲୁ ମା, ଲୋକଙ୍କ କଥାରେ ବିଶ୍ୱାସ କରି ମୁଁ ଯାହା କରୁଛି, ସବୁ ଭୁଲ୍ ? ସତରେ କଅଣ ଭଲ ଦେଖି ମୁଁ ଭୁଲୁଛି ମା ?

ଏହି କଥା ଯଦି ସେ ମୋତେ ଆଗରୁ ପଚାରି ଥାଆନ୍ତା ମୁଁ ତାର ଠିକ୍ ଉତ୍ତର ଦେଇ ପାରି ଥାଆନ୍ତି । କେଜାଣି ବା ମୋର ଜୀବନର ଗତି ବଦଳି ଥାଆନ୍ତା । ସବୁ କାମ ସରିଛି । ମନ ଖୋଲି କହିଲେ ଆଉ ଲାଭ ନାହିଁ । ଜନ୍ମ ଦେଇ କେତେ ଦୁଃଖ କଷ୍ଟ ସହି ବଢ଼ାଇ କରିଛି ନ ବୁଝି ନ ସୁଝି ହାଣ କାଠୁଣୀ ବେକକୁ ଅଣି ସାରିଛି । ତୁଣ୍ଡ ଖୋଲି ଶେଷ ବେଳରେ ପ୍ରତିବାଦ କଲେ ତାର ଦୁଃଖ ବଢ଼ିବ, ସେ ଭାଙ୍ଗି ପଡ଼ିବ । ହତାଶ ହୋଇ ବାଇଆଣୀ ପରି କଅଣ ନାହିଁ କଅଣ କରି ବସିବ ।

ବୋଉର କଥାରେ ଜବାବ ଦେଲି ନାହିଁ । ମନ କୋହରେ କାନ୍ଦିବାକୁ ଲାଗିଲି ।

ସେ କଅଣ ବୁଝିଲା କେଜାଣି, କହିଲା, ମା, ଅନ୍ୟ ଉପାୟ ଅନ୍ୟ ଗତି ଆଉ ନାହିଁ । ଭାଗ୍ୟରେ ଯାହା ଥାଏ ହୁଏ । ଆମେ ସିନା ମିଛରେ ଧନ୍ଦି ହେଉଁ । ଜୀବନରେ ଯାହା ଘଟିବ, ଧୈର୍ଯ୍ୟଧରି ଠାକୁରଙ୍କ ଉପରେ ନିର୍ଭର ରଖି ଆନନ୍ଦରେ ତାହା ନିଜର କରି ସହିନେବା ଭଲ ।

ତା ଛାତି ଉପରୁ ମୁଣ୍ଡ ଆଡ଼େଇ ଲୁହଭରା ଆଖିରେ ଥରିଲା ସ୍ୱରରେ କହିଲି, ବୋଉ, ଶେଷକୁ ଏଇଆ କରିବୁ ବୋଲି ଏତେ ସ୍ନେହ ଏତେ ଆଦରରେ ମୋତେ ବଢ଼ାଇ ଥିଲୁ ?

ବେଶୀ କହି ପାରିଲି ନାହିଁ । ଭାବିଥିଲି, ଯେତିକି କହିଲି ସେତିକିରୁ ସେ ମୋ ମନର କଥା ବୁଝିବ ।

ସେ କିଛି ନ ବୁଝିଲା ପରି ପଚାରିଲା, ମୋର ଆଉ କି ଗୃଷ ଅଛି କହ ମା, କଅଣ ଆଉ କରିଥାନ୍ତି ?

ମନ ହେଉଥିଲା କହି ଦେବାକୁ, ସହଜରେ, ହାତ ପାହାନ୍ତରେ ଯାହା ହୋଇ ପାରିଲା ତାହାହିଁ କଲୁ, କେବଳ ଗୋଟାଏ ଦାୟିତ୍ୱରୁ ଗୋଟାଏ ବୋଝରୁ ଉଦ୍ଧାର ପାଇବାକୁ ।

ପ୍ରବୋଧବାବୁଙ୍କ କଥା ମନେ ପଡ଼ିଲା । ଯାହାଙ୍କ ଆଡ଼କୁ ଦିନେ ମନ ଢଳିଥିଲା, ତାଙ୍କର ସ୍ମୃତି ଏଥର ମନରୁ ପୋଛି ଦେବାକୁ ହେବ । ତାଙ୍କ ବିଷୟରେ ଦିନେ କେବେ ବୋଉ କଥା ପକାଇ ନାହିଁ ।

ନିରୁତ୍ତର ରହିଲି ।

ବୋଉ କହିଲା, ଜଣିଟି ଭଲ ପିଲା । ନାଡ଼ିବନ୍ଧୁ ଯାହା କହୁଥିଲେ ତୁ ଶୁଣିଛୁ । ଗାଁ ଲୋକେ ସମସ୍ତେ ମିଶି ତୋତେ ଉସାଇ ଦେଉଛନ୍ତି ଏପରି ଧାରଣା କେବଳ ଧାମ ତୋ ମନରେ ଆଣି ଦେଇଛି ।

ଦାମଭାଇଙ୍କର ନିନ୍ଦା ସହିପାରିଲି ନାହିଁ । କହିଲି, ବୋଉ, ଦାମଭାଇଙ୍କ ଉପରେ ତୋର ଏତେ ରାଗ କାହିଁକି ?

ଦିନେ ତାଙ୍କୁ ଭଲ ପାଉଥିଲି । ମୋ ଆଖିରେ ସେ ଦିଶୁଥିଲା ଅଟା, ଆଉ ତୁ ପରୁଛ ମା ।

ଆଜି ତୋର ମନ ବଦଳିବାର କାରଣ ?

ଏ କଥା ତୁ ମତେ ପଚାରୁଛୁ ? ଜାଣୁନାହିଁ କି ସେ ହେଉଛି ତୋ ନିନ୍ଦାର କାରଣ ? ମୋ ଉପର ମୁହଁ ସେ ତଳକୁ କରିଛି ।

ରାଗ ହେଲା । କହିଲି, ବୋଉ, ଭାବିଥିଲି ତୋ ମନ ଅତି ନିର୍ମଳ । କିନ୍ତୁ ଦେଖୁଛି, ସେଥିରେ ବି କଳଙ୍କ ଲାଗିଛି । ଦାମ ଭାଇଙ୍କି ତୁ ସନ୍ଦେହ କର ନା, ବୋଉ, ଭଗବାନଙ୍କ ପାଖରେ ଦୋଷୀ ହେବୁ । ତାଙ୍କୁ ସନ୍ଦେହ କରିବା ଆଗରୁ ତୁ ମନ ଖୋଲି ମତେ କହ, ତୋର କଅଣ ଧାରଣା ଯେ ତୋ ଝିଅଟା ବି ଖରାପ ? ସେଇଥିପାଇଁ ନ ବୁଝି ନ ସୁଝି ଯେଉଁଠି ପାରି ସେଠି ମତେ ମାଡ଼ିଦେଇ ନିଶ୍ଚିନ୍ତ ହେବାକୁ ଚାହୁଁଛୁ ?

ଆଉ କହିପାରିଲି ନାହିଁ । କଇଁକଇଁ ହୋଇ କାନ୍ଦି ଉଠିଲି ।

ବୋଉ ନିର୍ବାକ୍ ହୋଇ ତଳକୁ ଚାହିଁ ବସି ରହିଲା । ଜାଣେ ନାହିଁ, ସେ କଅଣ ଭାବୁଥିଲା ।

କାନ୍ଦଣା ସ୍ୱରରେ କହିଲି, ବୋଉ, ଦାମଭାଇଙ୍କୁ ମୁଁ ଭାଇଠୁଁ ବଳି ଭଲପାଏଁ । ତାଙ୍କୁ ମୁଁ ବିଶ୍ୱାସ କରେ । ଲୋକେ ଦେଖି ନ ପାରି ବାରକଥା କହନ୍ତି । ଲୋକେ ବିଶ୍ୱାସ କରନ୍ତି, ତୁ ବି ବିଶ୍ୱାସ କଲୁ । କିନ୍ତୁ ବୋଉ, ଦିନ କେବେ ରାତି ହୋଇ ପାରିବ ନାହିଁ । ଦାମଭାଇ ମତେ ନିଜର ଭଉଣୀ ପରି ଭଲ ପାନ୍ତି । ତୁ ସିନା ବୁଝିବୁ ନାହିଁ, ମୁଁ ଜାଣେ ତାଙ୍କର ଭଲ ପାଇବା ଭିତରେ ସ୍ୱାର୍ଥ ନାହିଁ । ସେଥିପାଇଁ ସେ ମୋର ଭବିଷ୍ୟତ କଥା ଭାବନ୍ତି ।

ଆଉ କେତେ କଅଣ କହିଥାନ୍ତି । ବୋଉ କଠୋର କଣ୍ଠରେ କହି ଉଠିଲା, ଗୀତା...... !

ମୁଁ ଚମକି ଉଠିଲି ତାର ଡାକରେ । ମନେ ହେଲା, ସେହି ଡାକ ଭିତରେ ଗୋଟାଏ ନିଆଁ ଖୁଣ୍ଟା ଲୁଚି ରହିଥିଲା । କହିଲା, ଭୁଲ ନା, ମୁଁ ପିଲାଛୁଆ ନୁହେଁ !

ମୋର ମୁହଁ ସତେକି ଜଳିଗଲା । ବୋଉର କଥା କେଇପଦ ମୋର ଗ୍ରନ୍ଥିରେ ଯେଉଁ ଚୋଟ ଦେଇଥିଲା, ମରିବାଯାଏ ମୁଁ ଭୁଲିପାରିବ ନାହିଁ ।

୫୭

ବୈଶାଖ ଏକୋଇଶ ଦିନ ମୋର ବାହାଘର ହେବ ବୋଲି ସ୍ଥିର ହୋଇଥାଏ । ଦିନ ପାଖେଇ ଆସିଲା । ଦିନୁଦିନ ଆମ ଘରେ ଗହଳ ଚହଳ ବଢ଼ିଲା । ସବୁବେଳେ ଲୋକ ଯା ଆସ, ଦିଅ ନିଅ ଲାଗିଥାଏ । ମହନ ନେଠା, ନିତେଇ ଦାଦା, ବିମଳା ଭାଇ, ରାଧା ଭିନ୍ନ ଭିନ୍ନ କାମର ଭାର ନେଇଥାନ୍ତି । ଆମର ଗୁହାଳଘରଟି ସଫାସୁତୁରା କରି ଜିନିଷପତ୍ର ସେଇଠି ରଖା ହୋଇଥାଏ । ଲିପାପୋଛା ହୋଇ ଘରଦ୍ୱାର ସତେ କି ମୁରୁକିହସା ଦେଉଥାଏ ।

ବୋଉ ବ୍ୟସ୍ତ ଥାଏ କାମରେ । ମୋ ପାଖକୁ ଆସିବାକୁ ବେଳ ପାଏ ନାହିଁ । ମୋ ପାଖରେ ସବୁବେଳେ କେହି ନା କେହି ଥାଆନ୍ତି । ଗାଁ ମାଇପେ ଯା ଆସ କରୁଥାନ୍ତି । ମୋତେ ଦେଖି କିଏ କେତେ ପ୍ରକାର କହନ୍ତି, ଫେରନ୍ତି । ଭଲହେଉ, ମନ୍ଦହେଉ, ସବୁ ଶୁଣେ, ତୁନି ହୋଇ ରହେ । ମୋର ମନଟା ପଥୁରିଆ ପଡ଼ି ଯାଇଥାଏ । ସିଏ ଯାହା କହିଲେ ସେଥିରେ ପଶିପାରେ ନାହିଁ ।

ବେଳେ ବେଳେ ରେଣୁ ଆସେ, ସଞ୍ଜବେଳଯାଏ ରହେ । କେତେ ରହସ୍ୟ କଥା କହେ । ନିଜେ ଖୁସି ହୁଏ, ମତେ ଖୁସି କରେ, ସଞ୍ଜ ଆଗରୁ ଫେରିଯାଏ । ତା ସଙ୍ଗେ ଏଣୁ ତେଣୁ କଥାଭାଷା ହେବାକୁ ଡର ଲାଗେ । ମନେ ପଡ଼ିଯାଏ, ଦାମଭାଇଙ୍କ ଘରେ ସେ ଦିନ ରାତିର ଘଟଣା ।

କାମରୁ ଫୁରୁସତ୍ ମିଳିଲେ ବୋଉ ମୋ ପାଖକୁ ଆସେ । ଆଖିରେ ଲୁହଭରି ଏଣୁତେଣୁ କଅଣ ପଦେ ପଚାରି ଦିଏ । ମୁଁ କେବେ ଉତ୍ତର ଦେଲେ ଦିଏ ନୋହିଲେ ନାହିଁ । ବାହାରୁ ତାକୁ କିଏ ଡାକ ଛାଡ଼େ, ସେ ପୁଣି ଚାଲିଯାଏ ।

ଦିନ ଦିପହରେ ନୋହିଲେ ରାତି ଅଧରେ କେବେ କିପରି ନିରୋଳା ହେଲେ ବୋଉ ମୋତେ ବୁଝାସୁଝା କରେ । ପର ଘରେ ପରକୁ ଆପଣାର କରି କିପରି ଚଳିବାକୁ ହେବ ସେ କଥା ଶିଖାଏ । ସବୁ ଶୁଣେ, ଉତ୍ତର ଦିଏ ନାହିଁ । ସେ କାନ୍ଦେ, ମୁଁ କାନ୍ଦେ । କେହି କାହାର ମନର ଦୁଃଖ ବୁଝି ନାହିଁ । ରାତିରେ ତା ପାଖରେ ଶୁଏ ।

୫୮

ବାହାଘର ଦଶଦିନ ଅଛି । ଉତ୍ତୁଉଦିଆ ଦି ପହର । ବୈଶାଖୀ ଖରାର ତାଉ ସେ ଦିନ ନ ଥାଏ । ପାଗ ମେଘୁଆ ହୋଇଥାଏ । ଯିଏ ଯୁଆଡ଼େ ନିଜ ନିଜ ଘରକୁ ଗଲେଣି । ମୋ ପାଖେ ଏକା ବସିଥାଏ ରେଣୁ । କେତେ ନବରଙ୍ଗ ଥଟ୍ଟା ନକଲ ଲଗାଉଥାଏ । ବୋଉ ଆସି ଖଣ୍ଡେ ଲଫାପା ଚିଠି ଦେଇ କହିଲା, ପଢ଼ିଲୁ ମା, ଚିଠି କିଏ ଦେଇଛି । ସେ ପାଖରେ ବସିଲା ।

ରେଣୁ ଲଫାପା ଟାଣି ନେଇ ଛିଣ୍ଡାଇଲା । ବୋଉ ତାକୁ ବାଧା ଦେଲା ନାହିଁ । କଅଣ ଲେଖା ହୋଇଛି ଶୁଣିବାକୁ ଆଗ୍ରହରେ ଅନାଇଁ ରହିଲା । ମୁଁ ବା ବାଧା ଦିଅନ୍ତି କାହିଁକି ? ଲଫାପା ଭିତରୁ ଦୁଇଖଣ୍ଡ ଚିଠି କାଢ଼ି ଖଣ୍ଡେ ଅଣ୍ଟୁ ତଳେ ଯାକିଦେଇ ଆଉ ଖଣ୍ଡିକ ପଢ଼ିଲା--

ମାଉସୀ,

ମୋର ପ୍ରଣାମ ନେବ । ସେ ଦିନ ତମ ସାଙ୍ଗେ ଧବଳେଶ୍ୱରରେ ମୋର ଦେଖା । କେତେ ସମୟ ବା ଦେଖା ହେଲା, ସେତିକିରେ ମୋତେ ଆପଣାର କରିନେଲ । ତମର ଆଦର ସ୍ନେହ କଥା ସବୁବେଳେ ମନେ ପଡ଼େ । ଇଚ୍ଛା ହୁଏ, ଥରେ ଯାଇ ଦେଖି ଆସିବି । କାମର ଭିଡ଼ । ତର ହୁଏ ନାହିଁ । ଗୀତାକୁ କଲ୍ୟାଣ କହିବ । ତାର ଆଙ୍ଗୁଠି ଘା ଭଲ ହେଲାଣି ତ ? ଉତ୍ତର ଦେବ । ଇତି ।

ସ୍ନେହାଧୀନ,
ପ୍ରବୋଧ

ଚିଠି ପଢ଼ି ସାରି ରେଣୁ ଅବାକାବା ହୋଇ ବୋଉ ମୁହଁକୁ ଚାହିଁଲା । ମୁଁ କଣେଇ ଚାହିଁଲି । ଦେଖିଲି, ସେ ଗମ୍ଭୀର ହୋଇ ଉଠିଲା । ବିନା ଦୋଷରେ ମଧ୍ୟ ମୋତେ ସଙ୍କୋଚ ଲାଗିଲା । ପ୍ରବୋଧବାବୁ ଚିଠି ଦେଇଛନ୍ତି ବୋଉ ପାଖକୁ ! ଆଉ ଖଣ୍ଡିକ ତା ହେଲେ କଅଣ ମୋ ପାଖକୁ ଲେଖିଛନ୍ତି ? ଅସ୍ଥିର ଲାଗିଲା ।

ରେଣୁ ଚିଠି ଖଣ୍ଡି ତଳେ ଥୋଇ ବୋଉକୁ ପଚାରିଲା, ପ୍ରବୋଧ କିଏ ବଡ଼ ମା ?

ବୋଉର ମୁହଁରେ ଶୁଖିଲା ହସ ଖେଳିଗଲା । ଚିଠି ଖଣ୍ଡି ତଳୁ ଉଠାଇଧରି କହିଲା, ସେ ମୋ ପୁତୁରା ଲେଖା ହୁଏ ।

ରେଣୁ ପୁଣି ପଚାରିଲା, ଗୀତା ଅପା ଗୋଡ଼ରେ ଘା ହୋଇଥିଲା କି ?

ବୋଉ କହିଲା, ଘା ନୁହେ ଯେ, ଧବଳେଶ୍ୱରରେ ଝୁଣ୍ଟି ପଡ଼ିଥିଲା । ନଖ ଟିକିଏ ଖଣ୍ଡିଆ ହୋଇ ଯାଇଥିଲା । ସେଇ କଥା ସେ ଲେଖିଛି ।

ରେଣୁ ଅଣ୍ଟୁ ତଳୁ ଆଉ ଚିଠି ଖଣ୍ଡିକ କାଢ଼ିଲା । କେଜାଣି କାହିଁକି ରେଣୁ ପଢ଼ିବା ଆଗରୁ ବୋଉ ଚିଠି ଖଣ୍ଡିକ ଟାଣି ନେଇ କହିଲା, ଦେ ଲୋ, ଚିଠି ଶୁଣିବାକୁ ମୋର ତର ନାହିଁ । ପଛେ ପଢ଼ିବି । ଚିଠି ଦି ଖଣ୍ଡି ଅଣ୍ଟାରେ ଖୋସି ବୋଉ ଚାଲିଗଲା । ମୁଁ ନିଶ୍ୱାସ ମାରିଲି ।

ରେଣୁର ମନ ମାନିଲା ନାହିଁ । ଭୁନ ଭୁନ ମତେ ପଚାରିଲା, ଗୀତା ଅପା, ପ୍ରବୋଧବାବୁ କିଏ ? ତାଙ୍କ ନାଁ ଆଗରୁ ମୁଁ କେବେ ତୋ ଠାରୁ ଶୁଣି ନାହିଁ ? କଟକରେ ସେ କଅଣ କରନ୍ତି କି ?

କହିଲି, ମୁଁ ଜାଣେ ନାହିଁ । ବୋଉ ତାଙ୍କୁ ଚିହ୍ନେ । ତାକୁ ପଚାର ।

ରେଣୁ କଅଣ ଭାବି ମନକୁ ମନ କହିଦେଲା, ତୋ କଥା ସେ ଲେଖିଛନ୍ତି ଆଉ ତୁ ତାଙ୍କୁ ଚିହ୍ନୁନାହିଁ । ମତେ ଲୁଚଉଛୁ, ନାଁ ।

କହିଲି, ଜାଣିଥିଲେ ଲୁଚାନ୍ତି କାହିଁକି ଲୋ, ତୁ କଅଣ ଭଟବାଣ୍ଟି ନେବୁ କି ?

ରେଣୁ ଆଜିକାଲି ଚାଲାଖ ହୋଇଗଲାଣି । ମୁହଁ ଶୁଖାଇ କହିଲା, ସେଇ ଡର ଅଛି କି ଗୀତା ଅପା, ନୋହିଲେ ବଡ଼ମା ଆଉ ଛଅଟି ଖଣ୍ଡି ଏମିତି ନେଇ ପଳାନ୍ତେ କାହିଁକି ? ମୁଁ ସବୁ ଜାଣେ ଲୋ, ରାଧା ପରା ସେ ଦିନ ବୋଉ ଆଗେ କହୁଥିଲା ।

ରାଧା କଅଣ କହୁଥିଲା, ଜାଣିବାକୁ ବ୍ୟଗ୍ର ହୋଇ ପଡ଼ିଲି । ସେପରି ଆଗ୍ରହ ଦେଖାଇଲି ନାହିଁ । ଭାବିଥିଲି, ରେଣୁ ମନକୁ ସବୁ କହିବ । କିନ୍ତୁ ସେ କିଛି କହିଲା ନାହିଁ । ମୋ ମୁହଁକୁ ଚାହିଁ ହସିବାକୁ ଲାଗିଲା ।

କେତେବେଳକେ କହିଲି, ମତେ ଲୁଚଉଛୁ ନା ଲୋ ? ତୁ ଭାରି କପଟୀ । ଗୀତା ଅପା, ରାଧା କହୁଥିଲା, କଟକରେ କୁଆଡ଼େ କେଉଁ ବଡ଼ଘରେ ତୋ ବାହାଘର ଲାଗିଲା । ତମେ ସବୁ ତାକୁ ଧବଳେଶ୍ୱରରେ ଦେଖିଥିଲ । କେତେ ପ୍ରଶଂସା କରୁଥିଲା । ପ୍ରବୋଧ ବାବୁ ସେଇ ହେବେ କି କଅଣ । ମତେ ଲୁଚଉଛୁ କାହିଁକି ? ଦହିଁକି ବାହା ହବୁ କି ?

ସ୍ନେହରେ ତାକୁ ଗୃପଡ଼ା ମାରି କହିଲି, ଭାରି ଦୁଷ୍ଟ । ଏତେ ଲୋକଙ୍କ କଥାରେ ତୁ କାନ ଦେଉ କାହିଁକି ?

ରେଣୁ ସଞ୍ଜବେଳେ ତାଙ୍କ ଘରକୁ ଫେରିଲା ।

ମୁଁ ଏକୁଟିଆ ବସି ଭାବିବାକୁ ଲାଗିଲି, ସେଦିନ ଧବଳେଶ୍ୱରରେ ଯାହା ଘଟିଥିଲା ରାଧା କେତେ ଲୋକଙ୍କ ଆଗରେ ଗପିଥିବ । ମୋର ନିନ୍ଦା ହେବ ବା ଅନିଷ୍ଟ ହେବ ଏପରି ଧାରଣା ଥିଲେ ସେ ପର ଆଗରେ ମନ ଖୋଲି ଏପରି କହି ନ ଥାନ୍ତା । ଖୁସିରେ, ସରାଗରେ ମଣିଷ ମନକଥା ପର ଆଗରେ ଖୋଲିଦିଏ । ସେଥିପାଇଁ ତାକୁ ପରେ ଅନୁତାପ କରିବାକୁ ପଡ଼େ । କଥା ନିହସରେ ଯାହା ସେ ଗପି ଯାଇଥାଏ ପରେ ଅନୁତାପ କଲେ ଆଉ ଫେରେ ନାହିଁ ।

୫୯

ଦୋଷ ଗୁଣ ଧରିବାକୁ ବେଳ ନ ଥିଲା । ମନ ଛଟପଟ ହେଉଥାଏ କାପର ଆଉ ଛଅଟିଖଣ୍ଡି ହାତୁଡ଼େ ପଡ଼ିଲେ ପଢ଼ିବି । ବୋଉ ତାକୁ ସଦାବେଳେ ଅଞ୍ଚଳରେ ଖୋଷି ବୁଲିବ ନାହିଁ । ଶେଷକୁ ଆଣି ଠଣାରେ ଥୋଇଦେଇ ନିବ । ସୁବିଧା ପାଇଲେ ନିଶ୍ଚୟ ପଢ଼ିବି ।

ସେ ମୋ ପାଖକୁ କଅଣ ଲେଖିଥିବେ ଅନୁମାନ କରିବାକୁ ଚେଷ୍ଟା କଲି । କେତେ ଭାବନା ମନକୁ ଆସିଲା । କେତେ ଦୃଶ୍ୟ ଆଖି ଆଗରେ ଭାସିଗଲା । ବୃଥାରେ ମୋ ଚନ୍ଦ୍ରା ଉତଲା ହୋଇ ଧାଇଁଗଲା ଦୂରକୁ ଦୂରକୁ । କଅଣ ମୁଁ ଭାବୁଛି ? ଛି, କାହିଁକି ଆଜ ଆକାଶର ଫୁଲ ଆଡ଼କୁ ହାତ ବଢ଼ାଉଛି ?

ପାଣିର ଛାତିରେ ଆକାଶ ତାରାର ଛାଇ ପଡ଼େ । ଧୀର ପବନରେ ଦୋହଲି ଉଠେ ଲହଡ଼ି, ନାଚି ଉଠେ ଛାଇ । ତାରା କେବେ ନାଚେ ନାହିଁ । ସେମିତି ଦୃଢ଼, ସେମିତି ସ୍ଥିର ହୋଇ ଆକାଶ ଉପରେ ବସି ଚାହିଁଥାଏ ତଳକୁ ।

କେତେ ଦୂରରେ ସେ ଅଛନ୍ତି । ସ୍ମୃତିର ଛାଇଟି ପଡ଼ୁଛି ମୋର ଏ ଅଧୀର ଛାତି ଉପରେ । ଦୋହଲି ଉଠୁଛି, କିନ୍ତୁ କାହାନ୍ତି ସେ !

ବାହାରର ପବନ ଲାଗି ଭାବନା ଅସ୍ଥିର ହୋଇ ଉଠେ । ଆପେ ଆପେ ସ୍ଥିର ହୋଇଯାଏ । ସପନପୁରୀରୁ ଫେରିଆସେ ବାସ୍ତବ ଦେଶକୁ, ବର୍ତ୍ତମାନର ଆଖି ଆଗକୁ ।

ଅପସରି ଯାଏ ସ୍ମୃତି ।

୬୦

ଅଧିକ ବେଳ ଏକୁଟିଆ ରହି ପାରିଲି ନାହିଁ । କିଏ ଜଣେ ନଳଟଣ ଲଗାଇ ମୋ ଘରେ ରଖିଦେଇ ଗଲା । ସଙ୍ଗେ ସଙ୍ଗେ ଦଳେ ଗାଁ ମାଇପେ ଆସି ପହଞ୍ଚିଗଲେ । ମୋର ଭାବନା ଭାଙ୍ଗିଲା । ନୂଆ ବୋହୂ ପରି ଓଢ଼ଣା ଟାଣି ତୁନି ହୋଇ ବସିଲି । କିଏ କେତେ କହିଲେ ମୋର ମନେ ନାହିଁ ।

ସେମାନେ ଫେରିଲେ ।

ବୋଉ ଆସି କହିଲା, ଗୀତା, କିଛି ଖାଇବୁ ନାହିଁ ? ଆ, ଗଣ୍ଡାଏ ଖାଇଦେଇ ଆସିବୁ ।

ପ୍ରତିବାଦ ନ କରି ରୋଷଘରକୁ ତା ସଙ୍ଗେ ଗଲି । ଦରଖିଆ ହୋଇଛି, ରାଧା ଆସି କହିଲା, ବିମଳା ଭାଉଜା ଆସିଛି ଗୋ, ରାତି ଅଧରେ କାହିଁକି ଆସିଲା କେଜାଣି ?

ବିମଳାଭାଇଙ୍କ ସ୍ତ୍ରୀ ଆସିଛନ୍ତି ଶୁଣି ମୋର ଆଉ ଖାଇବାକୁ ମନ ହେଲା ନାହିଁ । ଦରଖିଆ ହୋଇ ହାତଧୋଇ ଉଠି ଆସିଲି ଏ ଘରକୁ । ବିମଳା ଭାଇଙ୍କ ସ୍ତ୍ରୀ ଯେତେବେଳ ଯାଏ ରହିଲେ ରାଧା ମୋର ପାଖେ ପାଖେ ଥାଏ । ପଦେ କିଛି ପଚାରିଲେ ସେ ତାର ଜବାବ ଦିଏ । ସେ ବି ଭାରି କରି ସେପରି କିଛି କହିଲେ ନାହିଁ ।

ଗଲାବେଳକୁ କହିଗଲେ, ଅଲୋ ରାଧା, ସବୁ ଭଲ ଯେ, ହେଲେ ଜହିଆ କଅଣ ଅଉ ଗୀତା ଲୁଖି ? ହଉ, ଠାକୁରେ ଆଉସ ଦଅନ୍ତ ଦେଉନ୍ତୁ ।

ରାଧା ଭଲେଇ ହୋଇ କହିଲା, ଯାହା କହିଲ ଠିକ୍ । ହେଲେ ଜହିଆ ତ ମରଦ ପିଲା । ରୂପଗୁଣ କଅଣ ବାଛିବା ? ସବୁ କପାଳ । ବିମଳା ଯେତେବେଳେ ବାହାହେଲେ, କେତେ ଲୋକ କେତେ କଥା କହିଲେ । ଭାଗ୍ୟ ସୁନ୍ଦର ହେଲେ ସବୁ ସୁନ୍ଦର । ଠାକୁରେ ଆଉସ ଦଅନ୍ତୁ ।

୬୧

ରାତିରେ କାମଦାମ ସାରି ବୋଉ ମୋ ପାଖରେ ଶୋଇବାକୁ ଆସିଲା । ମୁଁ ଶୋଇ ନ ଥାଏ । ରାଧା ମୋ ପାଖରେ ବସି ଏଣୁ ତେଣୁ ଗପ କରୁଥାଏ । ବୋଉ ଅଣ୍ଟାରୁ କାଢ଼ି ଛଅ ଟି ଦ ଖଣ୍ଡି ଠଣା ଉପରେ ରଖିଦେଇ ଆମ ପାଖରେ ବସିଲା । କେତେବେଳେ ଶୋଇ ପଡ଼ିଲି ।

ରାତି ନ ପାହୁଣୁ ଉଠିଲି । ବୋଉ କି ରାଧା କାହାରି ନିଦ ଭାଙ୍ଗି ନ ଥାଏ । ଠଣାରୁ ଛଅ ଟି ଦ ଖଣ୍ଡି ନେଇ ପିଣ୍ଡାକୁ ଆସିଲି । ପଢ଼ିବାକୁ ଚେଷ୍ଟା କଲି । ପାହାନ୍ତି ପହରର ଫିକା ଆଲୁଅ ଆସି ନ ଥାଏ । ଗୁଡ଼ୁଁଗୁଡ଼ୁଁଆ ଡର ଲାଗୁଥାଏ— କାଳେ ବୋଉର ନିଦ ଭାଙ୍ଗିଯିବ । ସେ ଦେଖିଲେ କଅଣ ମନେ କରିବ ? ଛଅ ଦଖଣ୍ଡି ଭାଙ୍ଗିଭୁଙ୍ଗି ହାତରେ ଧରିଲି । ଘର ଭିତରକୁ ଆସିଲି । ବୋଉର ନିଦ ଭାଙ୍ଗିନାହିଁ । ପଦାକୁ ଆସୁଛି, ରାଧା କର ଲେଉଟାଇ ଗୁହାଳି । ମୋତେ ଦେଖି ପଚାରିଲା, ଟାଟଧାଇ ଯିବ ଦେଇ, ପାଣି ଦେବ ?

ଅପ୍ରସ୍ତୁତ ହୋଇ କହିଲି, ନାଇଁ, ରାତି ପାହୁ ।

ଭାବିଥିଲି, ସେ ପୁଣି ଆଖି ବୁଜିବ କିନ୍ତୁ ସେ ଉଠି ବସିଲା । ତା ପଛେ ପଛେ ବୋଉ ମଧ୍ୟ ଉଠିଲା । ଛଅ ପଢ଼ିବାର ସୁବିଧା ପାଇଲି ନାହିଁ । କପଡ଼ ତାକୁ ଯଥା ସ୍ଥାନରେ ରଖିଦେବ ସେଇ ଓର ଉଣ୍ଡୁଥାଏ । ପାହାନ୍ତାର ଅଣ୍ଡା ଅଲୁଅ ଝରକାବାଟେ ଘରେ ପଶିଲା । ବୋଉ ଗେଲେଇ କହିଲା, ଟାଟଧାଇ ଯା ମା, ଦିନ ହୋଇଗଲେ ଲୋକବାକ ଆସିବେ ।

ବାଆଁରେଇ ହୋଇ ଝରକା ପାଖରୁ ଆସି ପଦାକୁ ଗୁହାଳି । ବୋଉ ରାଧା ଦହେଁ ପଦାକୁ ଗଲେ । ମୁଁ ଠଣା ପାଖକୁ ଆସି ଛଅ ଦ ଖଣ୍ଡି ରଖିଦେଲି । ମନେହେଲା ଯେପରି ମୁଣ୍ଡ ଉପରୁ କେଡ଼େ ବଡ଼ ବୋଝଟାଏ ଓହ୍ଲାଇ ଗଲା ।

୭୨

ସେଦିନ ଆଉ ଚିଠି ପଢ଼ିବାର ସୁବିଧା ପାଇଲି ନାହିଁ । କଅଣ ସେ ଲେଖିଥିଲେ ଜାଣିବାକୁ ଆଗ୍ରହ ହେଉଥାଏ । ବେଳେ ବେଳେ ନଗୋଲା ହେଲେ ଉଠି ଠଣାକୁ ଚାହେଁ । କାଳେ କିଏ ଆସିଯିବ ବୋଲି ଭୟରେ ତୁନି ହୋଇ ବସେ ।

ସଞ୍ଜବେଳେ ଦାମଭାଇଙ୍କ ବୋଉ ଓ ସ୍ତ୍ରୀ ବୁଲିବାକୁ ଆସିଲେ । ବଡ଼ମାଙ୍କୁ ଚାହିଁ ମୋତେ ଭାରି କାନ୍ଦ ମାଡ଼ିଲା । ଏଇ ବଡ଼ମା, ପିଲାଦିନେ କେତେ ଭଲ ପାଉଥିଲେ, କେତେ ପ୍ରଶଂସା କରି କହୁଥିଲେ । ବିନା ଦୋଷରେ ସେହି ପୁଣି ଓଲଟି ପଡ଼ିଲେ । ଲୋକଙ୍କ କଥାରେ ବିଶ୍ୱାସ କରି ଜାଣି ଜାଣି ମତେ ବୁଡ଼ାଇ ଦେବାକୁ ବସିଛନ୍ତି । ତାଙ୍କ ଗୋଡ଼ ଧରି ଜୋରରେ କେତେ ଲୁହ ଢାଳିଦେଲି ।

ଆଖି ତାଙ୍କର ଲୁହରେ ଭରିଗଲା । ମନର କଥା ବୁଝିବେ ପରା । ହାତରେ ମୋ ଆଖିରୁ ଲୁହ ପୋଛିଦେଲେ । କଅଣ କହିବେ କହିବେ ବୋଲି ତାଙ୍କର ଓଠ ଥରି ଉଠିଲା । କିଛି କହି ପାରିଲେ ନାହିଁ । ବୋଉ ପାଖକୁ ଆସିଲା । ବୋଉକୁ ସେ କହିଲେ, ଝିଅଟାର କଣ୍ଠା ଦୋହଲି ଗଲାଣି ଗୀତାବୋଉ । ତମେ ତ ତେଣେ କାମଦାମରେ ବ୍ୟସ୍ତ ରହିଲ, ତାର ଖିଆପିଆ ଖବର ବୁଝୁନା ପରା ।

ବୋଉ କହିଲା, ଗୀତା ଆଜିକି କେଇଦିନ ହେଲା ଖିଆପିଆ ଛାଡ଼ିଲାଣି । ଯେତେ ରାଣ ନିୟମ ପକାଇଲେ କଅଣ ପେଟ ପୂରାଇ ଖାଉଛି ? ଗୁଣ୍ଡାଏ ଦି ଗୁଣ୍ଡା ନେଇ ଉଠୁଛି । ସବୁବେଳେ ଭାବୁଛି, ସବୁବେଳେ କାନ୍ଦୁଛି ।

କହୁ କହୁ ବୋଉ କାନ୍ଦ ପକାଇଲା ।

ବଡ଼ମା କହିଲେ, ମାଆଟା ମୋର । କଅଣ ହେଲୁଣି ଲୋ, ଚନ୍ଦ୍ରଉଦିଆ ମୁହଁ କଳାକାଠ ପଡ଼ିଲାଣି । ସବୁବେଳେ କାନ୍ଦୁଛୁ କାହିଁକି ? ମୋ ରାଣ ତୁନିହ । ମାଆଟୋ, ଝିଅ ଜନ୍ମ ହୋଇଥିଲେ ଦିନେ ସବୁ ମାୟା ମମତା କାଟି ପରଘରକୁ ଯିବାକୁ ପଡ଼େ । ଆମେ ତ ପୁଣି ଦିନେ ଝିଅ ହୋଇଥିଲୁ ।

ତାଙ୍କର ସାନ୍ତ୍ୱନା କଥା କେଇ ପଦରେ ମୋ ମନର କୋହ ତୁହାଇ ଉଠିଲା । ଅଣ୍ଟା ଉପରେ ମୁଣ୍ଡ ରଖି କଇଁ କଇଁ ହୋଇ କାନ୍ଦିଲି । ସେ ମୋର ପିଠି ଆଉଁସି କେତେ କଅଣ ବୁଝାଇ କହିଲେ ଖିଆଲ ନାହିଁ । ମୋତେ ଦାମ-ଭାଇଙ୍କ ସ୍ତ୍ରୀଙ୍କ ପାଖରେ ଛାଡ଼ି ବୋଉଙ୍କ ସଙ୍ଗରେ ଭଣ୍ଡାର ଘରକୁ ଗଲେ ।

ଦାମଭାଇଙ୍କ ସ୍ତ୍ରୀ ପିଲାଟିକୁ କୋଳରେ ଧରି ମୋ ପାଖରେ ବସି ଥାଆନ୍ତି । ତାଙ୍କ ମୁହଁକୁ ଚାହିଁଲେ ମୋର ଛାତି ଭିତରେ କପଟ କୋହ ଉଠୁଥାଏ । ସେ ମୋତେ କିଛି କହୁ ନ ଥାନ୍ତି । ଅଗ ବଳପଡ଼ି ତାଙ୍କୁ ମୁଁ କଅଣ କହିବି ଭାବି ସ୍ଥିର

କରି ପାରିଲି ନାହିଁ । ଯାହା ହେବାର ତ ହୋଇଛି । ଆଜି ମନରଖା କଥା କାହିଁକି ? ଦିନେ ତାଙ୍କ ଆଗରେ ମନର ବ୍ୟଥା ଖୋଲି କହିଥିଲି । ପଥର ଆଗରେ କହିଥିଲେ ସେ ହୁଏତ ତରଳି ଥାଆନ୍ତା । ଦାମଭାଇଙ୍କ ସ୍ତ୍ରୀ, କେଡ଼େ ମାଣ ତାଙ୍କର ଗୁଣ, ସବୁ ଶୁଣି ଶେଷକୁ ମୋତେ ଅପମାନ ଦେଲେ । ସନ୍ଦେହରେ ଭରି ରହିଛି ଯାହାର ମନ, ତା ଆଗରେ ପ୍ରାଣର କଥା କହନ୍ତି କାହିଁକି ?

ବଡ଼ମା ଫେରି ଆସିଲେ । ଦାମଭାଇଙ୍କ ସ୍ତ୍ରୀଙ୍କୁ ଯିବାକୁ ଡାକିଲେ । ସେ ଉଠିଯିବା ଆଗରୁ ମୋ ହାତ ଧରି କହିଲେ, ଯାଉଛି ଗୀତା ।

ତାଙ୍କ ହାତକୁ ମୁଠାଇ ଧରି ଛଳଛଳ ଆଖିରେ କହିଲି, ଆଉ ଟିକିଏ ବସ ନାଆନ୍ତବାହ୍ନ ।

କହିଲେ, ବୋଉ ଯିବାକୁ ଡାକିଲେଣି ।

ଭାଉଜଙ୍କର ଦୁଇ ଆଖି ଲୁହରେ ଭରିଗଲା । ସେ ମୋ ମୁହଁକୁ ଅନାଇଁ ରହିଲେ । ଦୁଇଧାର ଲୁହ ଗାଲ ଉପରେ ଗଡ଼ି ଆସିଲା । ନିଜ ଅଂଚଳରେ ମୋ ଆଖିରୁ ଲୁହ ପୋଛିଦେଲେ । ସେ ଯେପରି କଅଣ କହିବାକୁ ମନ କରୁଥିଲେ, କିନ୍ତୁ ପେଟର କଥାକୁ ତୁଣ୍ଡରେ ଅଟକାଇ ରଖିବାକୁ ଅଦମ୍ୟ ଚେଷ୍ଟା କରୁଥିଲେ । ତାଙ୍କର ଓଠ ଦଫାଲି ଓ ନାକପୁଡ଼ା ଥରି ଉଠୁଥାଏ । କିଛି ପ୍ରକାଶ ନ କରି ସେ ଧୀରେ ଧୀରେ ଉଠି ଘର ଭିତରୁ ପଦାକୁ ବାହାରି ଗଲେ ।

## ୧୩

ଆର ଚିଠିଖଣ୍ଡି ଅମରଭାଇ ବୋଉକୁ ଲେଖିଥିଲେ । ପରଦିନ ଦିପହରରେ ସୁଯୋଗ ପାଇ ତର ତର କରି ମୁଁ ପଢ଼ି ଦେଇଥିଲି । କେତେ କଅଣ ଲେଖା ହୋଇଥିଲା, ଆଜି ମୋର ମନେ ନାହିଁ । ଚିଠିଟିର ପ୍ରଧାନ ବିଷୟ ଥିଲା, ପ୍ରବୋଧ ବାବୁଙ୍କ ଘରକଥା । ମୋତେ ବିବାହ କରିବାକୁ ତାଙ୍କର ଆଗ୍ରହ ଓ କୃବଧୁବାବୁଙ୍କର ପ୍ରତିବାଦ । ଶେଷକୁ ତାଙ୍କ ସ୍ତ୍ରୀଙ୍କର ସଙ୍କଳ୍ପ ଯେ ମତେ ଦିନେ ଓଳିକରେ ଦେଖି-ବାକୁ ଆସିବେ । ଯଦି ତାଙ୍କର ମନକୁ ପାଏ, ସ୍ଥିର ଜବାବ୍ ଦେଇଯିବେ । ତାଙ୍କ ପୁଅର ଆନନ୍ଦ ଓ ସୁଖ ପାଇଁ ଦରକାର ପଡ଼ିଲେ ନମିତା ବିଷୟରେ ସ୍ଥିର ହୋଇଥିବା ସମ୍ବନ୍ଧ ସେ ଭାଙ୍ଗି ଦେବେ । ସେଥିପାଇଁ ଯଦି କେହି ନିନ୍ଦା କରେ ସେ ସହିବେ । ଗୋଟିଏ ବୋଲି ପୁଅ । ବାହାଘର, ଜୀବନ ସୌଦା, କାହାର ମନ ରକ୍ଷା କରିବାକୁ ଯାଇ ବା ନିନ୍ଦା କି ଦୁର୍ନାମକୁ ଡରି କି ଦେବା ନେବା ଉପରେ ଆଖି ରଖି ପିଲାଟାକୁ ସାରା ଜୀବନ ଅଶାନ୍ତ ସେ କରିବେ ନାହିଁ ।

ଅମରଭାଇ ମୋର ପ୍ରଶଂସା କରି ଲେଖିଥିଲେ । ସବୁ ପ୍ରଶଂସା ପ୍ରବୋଧ ବାବୁଙ୍କ ମୁହଁରୁ ବାହାରିଥିଲା । ତାଙ୍କ ପାଖକୁ ଚିଠି ଲେଖିବାକୁ ବୋଉକୁ ସେ

ଅନୁରୋଧ କରୁଥିଲେ । ବୋଉଠାରୁ ଖଣ୍ଡେ ଚିଠି ପାଇବାକୁ ସେ ଗୃତକ ପର-ଗୃହ ରହିଛନ୍ତି ।

ଚିଠିଖଣ୍ଡି ପଢ଼ୁ ପଢ଼ୁ ଭାବିଲି, ବୋଉ ଏଡ଼େ ନିଷ୍ଠୁର ହେଲା କାହିଁକି ? ଯାହାକୁ ସେ ଆକାଶ-କୁସୁମ ମନେ କରୁଥିଲା, ନିଜେ ସେ ଆସି ହାତରେ ଧରି ଦେଉଛନ୍ତି । ତଥାପି, ତାର ବିଶ୍ୱାସ ହେଉନାହିଁ ?

ପ୍ରବୋଧବାବୁ ମୋତେ ଭଲ ପାଆନ୍ତି । ତାଙ୍କର ପରଶ ଓ ତାଙ୍କ ଆଖିର ନିବିଷ୍ଟ ଚାହାଁଣୀରେ ମୁଁ ତାର ସୂଚନା ପାଇଥିଲି । ମୋର ମନ ବି ତାଙ୍କର ଆଡ଼କୁ ଢଳି ପଡ଼ିଥିଲା । ଏ କଥା ସେ ଅନୁଭବ କରୁଥିବେ । କିନ୍ତୁ ଲୌକିକତାର ବାଡ଼ ଡେଇଁ ପରସ୍ପରର ସ୍ନେହମମତା ମିଶି ଏକାକାର ହୋଇପାରେ ନାହିଁ ।

## ୬୪

ଲୌକିକତାର ବାଡ଼ ।

ଏଡ଼େ ବଡ଼, ଏଡ଼େ ପ୍ରଖର ତାର ପ୍ରଭାବ ମଣିଷ ଜୀବନ ଉପରେ ! ମିଳନମୁଖୀ ଦୁଇଟି ଜୀବନକୁ ଦୁଇ ଆଡ଼କୁ, ଅଜଣା ଅଶୁଣା ସ୍ଥାନକୁ ଠେଲିଦିଏ, ଯେଉଁଠି ପଡ଼ି ଅନ୍ୟ ବନ୍ଧନୀ ଭିତରେ ରହି ଛଟପଟ ହୁଏ ଆତ୍ମା । ଦୁଇଟି ଆତ୍ମା ବନ୍ଧନୀ ଭିତରେ ନିଜକୁ ହଜାଇ ଦିଏ ନାହିଁ, ଅନ୍ୟକୁ ଅବଲମ୍ବନ କରେ ।

ଲୌକିକତାର ଦୁର୍ଭେଦ୍ୟ ବନ୍ଧନୀ !

ତାଆରି ଭିତରେ ସେ ତାର ଅବଲମ୍ବନକୁ ପୂଜା କରେ ମନର ଦେବତା କରି । ଏଇ ମୋର ମନର କୃଷ୍ଣ ! ଚେତନାର ଆଖିପତା ମୁଦ୍ରି ହୋଇଥାଏ । ଯେତେବେଳେ ଖୋଲେ, ଚମକି ଉଠି ଚିତ୍କାର କରେ, କାହିଁ ମୋର ପ୍ରାଣର କୃଷ୍ଣ ? ହତାଶାରେ ବୁଜି ହୋଇଯାଏ ଆଖିପତା । ଆଲିଙ୍ଗନ କରେ ଅବଲମ୍ବନକୁ । ଏଇ ମୋର କୃଷ୍ଣ ! ଏଇ ! ଲୌକିକତାର ବନ୍ଧନୀ ଭିତରେ ଗଢ଼ି ହୋଇଯାଏ ସ୍ୱାର୍ଥର ଅଟ୍ଟାଳି । ଲିଭିଯାଏ ନାହିଁ, ହଜିଯାଏ ମନର ଆଲୁଅ ।

ସେତେବେଳେ ଏତେ କଥା ବୁଝି ନ ଥିଲି । ଅନ୍ଧାର ଘରେ ଏକୁଟିଆ ବାଟୋଇ ପରି ଚେହେରା ଭିତରେ ଚିରୁଗୁଣୀ ଆଲୁଅକୁ ଲକ୍ଷ୍ୟ କରି ବାଟ ଭାବି ଅବାଟରେ ଧାଏଁ । ବାଟ ପାଏ ନାହିଁ । ଅରମାରେ ପଶେ । ତଥାପି ସେ ଧାଏଁ ।

ଆଶାର ଆଲୁଅ ପଛରେ ମନ ଉତଲା ହୋଇ ଧାଇଁଥିଲା, ମାନ ନ ଥିଲା ଅରମା । ଆକାଶର ତାରା ହସି ଉଠିଥିଲା । ପଞ୍ଚମୀର ଜହ୍ନ ହସି ଉଠିଥିଲା ସେହିପରି । ତଥାପି ଭାବୁଥିଲି, ଦିନେ ଓଲଟରେ ସେ ଆସିବେ, ସାଙ୍ଗରେ ଥିବେ ତାଙ୍କର ବୋଉ । ସବୁ ଓଲଟ ପାଲଟ ହୋଇଯିବ ?

୨୫

ପ୍ରବୋଧବାବୁ !

କେତେ ଗାଁ ଗଣ୍ଡା, ବିଲ, ନାଳ ସେପାରିରେ ସେ ଅଛନ୍ତି । ମନ ଉଡ଼ିଗଲା, ରଘୁନାଥଜୀ ମନ୍ଦିର ପାଖ ସେଇ ବଡ଼ କୋଠାଘର, ବକୁଳ ଅଳୁଅ, ନଈ ମଝି ଧବଳେଶ୍ୱର ମନ୍ଦିର ପଥର ଜଙ୍ଗଲ, ଅବଡ଼ା ଖାବୁଡ଼ା ରାସ୍ତା । ନଈ ମଝିରେ ଡଙ୍ଗା ।

ପ୍ରବୋଧ ବାବୁ !

ବୋଉ ପାଖକୁ ସେ ଯେଉଁ ଚିଠି ଖଣ୍ଡିକ ଲେଖିଥିଲେ ତାକୁ କେତେଥର ପଢ଼ିଲି । ସତେ ତ, ଥରଟିଏ ଦେଖାରେ କେଡ଼େ ଆପଣାର ସେ ହୋଇଗଲେ । ମୋତେ ପୁଣି କଲ୍ୟାଣ କହିଛନ୍ତି । ମନେ ହେଲା, ସେଇ ଚିଠି ବନ୍ଧନରେ ଯେପରି ସେ ଲୁଚି ରହିଛନ୍ତି । ବାହା ହେବାକୁ ବସିଛି, କାହିଁକି ପର ମଣିଷର ହାତଲେଖା ଚିଠିଖଣ୍ଡିକୁ ଆଖି ଲୁହରେ ଭିଜାଇ ଦେଲି । କାହିଁକି ନିର୍ଜୀବ ଚିଠିଟିକୁ ନିର୍ବୋଧ ପରି ଛାତିରେ ରଖିଲି ? ସତେ ସେ ମୋର ଅନ୍ତର ଡାକ ଶୁଣିବେ, ଛାତିର ସ୍ପନ୍ଦନ ଅନୁଭବ କରିବେ ?

ଗୋଟାଏ ଖିଅଲରେ ଚିଠିଟିକୁ ଲୁଚାଇ ରଖିଲି । ଦିନେ ଓଳିକରେ ସେ ତ ନିଶ୍ଚୟ ଆସିବେ । ସବୁ ଓଲଟିଯିବ । ଲୁହ ଝରି କାଳ ବଲବଲ ହୋଇଥିବା ଚିଠିଖଣ୍ଡି ତାଙ୍କୁ ଦିନେ ଦେଖାଇବି । ପଚାରିଲେ କହିବି, ସବୁ କହିବି ।

ସେ ଆସିବେ, ଏହି ଚିନ୍ତାରେ, କେଡ଼େ ଉଦ୍‌ବିଗ୍ନତାରେ ମୋର ବେଳ କଟିଗଲା । ଦିନ ପରେ ଦିନ, ରାତି ପରେ ରାତି ବିତିଲା । କାହିଁ, ଆସିଲେ ନାହିଁ ତ । ରାତିରେ ସମସ୍ତେ ଶୁଅନ୍ତି; କିନ୍ତୁ ମୁଁ କାହାର ପ୍ରତୀକ୍ଷାରେ ଜାଗର ହୋଇ ଚୁହିଁ ରହିଥାଏ ? ଛାତିରେ ସେହି ନିର୍ଜୀବ ଚିଠିଟି ଯେପରି ଜୀବନ୍ତ ହୋଇ ଉଠେ । ନିଦ ଆସିଲେ ମନ ସପନ ରାଇଜରେ ଭ୍ରମେ । ଫୁଲ ବଗିଚାରେ ସୁନେଲୀ ସଞ୍ଜରେ ମୋର ହାତ ଧରି ସେ ବୁଲୁଛନ୍ତି । ଭଅଁର ପରି ଗୁଞ୍ଜରି ଉଠୁଛନ୍ତି, ଗୀତା, ମୁଣ୍ଡରେ ଓଢ଼ଣା ଦେଇଛ କାହିଁକି, କେହି ତ ନାହିଁ ।

କହେଁ, ଜଣେ ଅଛି ଉପରେ ।

କିଏ ଗୀତା ?

କହେଁ, ଚନ୍ଦ୍ରମାମୁଁ ।

ଜୀବନଟା ଯଦି ଖାଲି ସପନ ହୋଇଥାନ୍ତା !

ଆଜି ଭାବୁଛି, ଜୀବନ ତ ସତେ ଗୋଟିଏ ସପନ, ଆଲୁଅ ଅନ୍ଧାରର ଖେଳ । ଜହ୍ନମାମୁଁ ପରି ନିଶ୍ଚିନ୍ତ ଚୁହିଁ ରହିଛି । କେବେ ହସୁଛି, କେବେ ମୁହଁ ଛପାଦେଇ ରହୁଛି ।

୨୭

ମଙ୍ଗଳ ଆଉ ପାଞ୍ଚଦିନ ରହିଲା । ପ୍ରାଣ ମୋର ଉଣ୍ଡୁଥାଏ ଦେହଲା ଘଡ଼ିକ ଘଡ଼ି । ସେମାନେ ଆସିଲେ ନାହିଁ । ଆସିବେ ନାହିଁ । ଯାହା ଅସ୍ପଷ୍ଟ ତାକୁହିଁ ମତେ ଅବଲମ୍ବନ କରିବାକୁ ହେବ । ନୟାଗଡ଼ର ନରେନ୍ଦ୍ର ଶିଂହଙ୍କ ମୁଣ୍ଡ ପାଖ ସହିବାକୁ ହେବ । ମୋର ମନ ଆକୁଳ ହୋଇ ଉଠେ ।

କନିଅଁ ଡାକରା କରି ଗାଁର ବନ୍ଧୁକୁଟୁମ୍ବ ମତେ ଡାକି ନିଅନ୍ତି । ଆଦର କରି କେତେ କଥା କହନ୍ତି । କାନରେ ସବୁ ବାଜେ, ମନରେ ପଶେ ନାହିଁ । ଦାମଭାଇଙ୍କର ସ୍ତ୍ରୀ ସେ ଦିନ ମନ ଖୋଲି କଥା କହିଲେ । ଭଲ ମନ୍ଦ କଅଣ କାନେ କାନେ ଶିଖାଇଲେ ।

କହିଲେ, ଗୀତା, ମନେ ରଖିଥା, କେବେ କଥା କହିବ ନାହିଁଟି ସେଦିନ ରାତିରେ ।

କାନ୍ଦିଲି । କାହାକୁ କଥା କହିବି ନାହିଁ, କାହାକୁ ? ସତେ କଅଣ ଜଣିଅର ହାତ ଧରିବାକୁ ହେବ ? ଜଣିଅ, ସେଇ ହେବ ମୋର ସ୍ୱାମୀ, ମୋର ଦେବତା ! ଇହକାଳ ପରକାଳର ଗତି ମୁକ୍ତି । ଭାଗ୍ୟରେ ଏହାହିଁ ଅଛି ?

ଦାମଭାଇଙ୍କର ସ୍ତ୍ରୀଙ୍କ କୋଳରେ ମୁଣ୍ଡ ରଖି ମନଇଚ୍ଛା କାନ୍ଦିଲି । ତାଙ୍କ ପାଖରେ ଏଇ ମୋର ଶେଷ କାନ୍ଦଣା, ଶେଷ ଅଳି । ମୋ ପାଇଁ ଆଉ ତାଙ୍କର ମନରେ ଅଶାନ୍ତି ହେବ ନାହିଁ । ଦାମଭାଇଙ୍କୁ ଆଉ ସେ ସନ୍ଦେହ କରିବେ ନାହିଁ । ବିଦାୟ ନେଉଛି । କାହିଁକି ଆଉ ସଙ୍କୋଚ, କାହିଁକି ଆଉ ଭୟ ?

ସେ ମଧ୍ୟ କାନ୍ଦିଲେ । ଆଦର କରି ମୋ ଆଖିରୁ ଲୁହ ପୋଛି କଁଳେଇ କହିଲେ, ଛି, କାନ୍ଦନା । ତୁମ ମନରେ ମୁଁ ନ ଜାଣି କେତେ କଷ୍ଟ ଦେଇଛି । ସବୁ ଭୁଲିଯିବ, ଗୀତା ।

ବେଳୁବେଳ ମୋର କୋହ ବଢ଼ିଲା । ସତେ ଦାମଭାଇଙ୍କ ସ୍ତ୍ରୀ ଆଜି ବଦଳି ଗଲେ ? ନିଜର ଭୁଲ ସେ ବୁଝି ପାରିଲେ ?

ତାଙ୍କର ହାତକୁ ଚାପି ଧରି ଲୁହଧୂଆ ଆଖିରେ କହିଲି, ସବୁ ଭୁଲିଯିବି ନୂଆବୋହୂ, ଖାଲି ତମର ଏଇ ମିଠା ମନଖୋଲା କଥା ପଦକ ମରିବାଯାଏ ଭୁଲି ପାରିବି ନାହିଁ । ନୂଆବୋହୂ, ଚିରଦିନ ମତେ ଘୃଣା କରି ଆସିଛ, ଅବିଶ୍ୱାସ କରି ଆସିଛ । ତୁମର ଘୃଣା ଓ ଅବିଶ୍ୱାସର ବୋଝ ମୁଣ୍ଡରେ ବୋହି ମୁଁ ସେ ପୁରକୁ ଯାଉଥାନ୍ତି । ଆଜି ଅବେଳରେ କାହିଁକି ମୋତେ ଭଲ ପାଇଲ ? କାହିଁକି ମୋ ପାଇଁ ଆଖିରୁ ଲୁହ ପୋଛିଲ ?

କହିଲେ, ତୁମେ ପାଗଳୀ ହେଲ କି ? କେବେ ତୁମକୁ ଘୃଣା କରିଥିଲି ? ଭୁଲ ବୁଝ ନା ଗୀତା । ଯିଏ ମୋର ହାତ ଧରିଛନ୍ତି ସେ ଅବହେଳା କଲେ,

ବାରହୁଣ୍ଡରୁ ବାର କଥା ଶୁଣିଲେ ମନ କଅଣ ହୁଏ ? ସ୍ତ୍ରୀ ଜନ୍ମ ପାଇଛ, ବେଲ ପଡ଼ିଲେ ବଳେ ବୁଡ଼ିବ ।

ଅବାଧ ଲୁହ ବାରଣ ମାନିଲା ନାହିଁ । ଟୋପା ଟୋପା ହୋଇ ଆଖିରୁ ଝରି ପଡ଼ିଲା ।

କହିଲି, ନୂଆବୋଉ, ଟୋକ ଘରେ ଝିଅ ହୋଇ ଜନମ ହେବା ଯଦି ଅପରାଧ ହୋଇଥାଏ, ସେଇ ଅପରାଧ ମୁଁ କରିଛି । ଗାଈକ ସଦାବେଳେ ସ୍ନେହ-କାଙ୍ଗାଳ । ଅନ୍ୟମାନେ ନାକ ଟେକିଲାବେଳେ ଦାମଭାଇ ଟିକିଏ ଆଦର ସ୍ନେହ କରୁଥିଲେ । ଭାଇର ସ୍ନେହ କଅଣ ମୁଁ କେବେ ଜାଣି ନ ଥିଲି । ମା ପେଟରୁ ଜନମିଲା ଭାଇ ପରି ତାଙ୍କୁ ମୁଁ ସ୍ନେହ ଭକ୍ତି କରି ଆସିଛି, ପିଲାଟି ଦିନୁ । ବଡ଼ ହେଲାରୁ ଆଉ ରହିନାହିଁ । ଏହା ନ୍ୟାୟ କି ଅନ୍ୟାୟ ମୁଁ ଜାଣେ ନାହିଁ । ଯେଉଁ ଗୀତାକୁ ପିଲାଦିନୁ କାଖେଇ ବୁଲାଇ ଗେଲକରି ଆସିଥିଲେ, ବଡ଼ ହୋଇ ଦୂରେଇ ରହିଲାରୁ ତା ପ୍ରତି ଯଦି ତାଙ୍କ ମନରେ ଅଲଗା ଧାରଣା ଜନ୍ମିଥାଏ, ସେଥିକି ଗୀତା ଦୋଷୀ ହେବ ନାହିଁ । ଦାମଭାଇ ଶରଦିନ ମୋର ଭାଇ । ଏତିକି ତୁମେ ବିଶ୍ୱାସ କର ନୂଆବୋଉ, ଏତିକି ମୋର ତୁମ ପାଖରେ ଶେଷ ମାଗୁଣି । ମନ କଥା ମୁଁ କହି ଦେଇଛି । ସେମାନେ ମତେ ହାଣମୁହଁକୁ ଟାଣି ନେଉଛନ୍ତି । ନେଉନ୍ତୁ । ମନା କରିବ ନାହିଁ, ଅଝଟ ହେବ ନାହିଁ, ହାଣ ମୁହଁକୁ ଚାଲିଯିବ; ବେକ ଦେଖାଇବ । ସେମାନେ ସୁଖୀ ହେଉନ୍ତୁ, ତୁମେ ସୁଖୀ ହୁଅ, ନିଶ୍ଚିନ୍ତ ହୁଅ ନୂଆବୋଉ—

ମୋ କଥା ଶୁଣି ସେ ଥକ୍କା ହୋଇ ମୋ ମୁହଁକୁ ଚାହିଁ ରହିଲେ । ଆଖିରେ ଲୁହ ଛଳ ଛଳ ହେଲା । କହିଲେ, ଗୀତା— !

ଆଉ କହି ପାରିଲେ ନାହିଁ । ମୋର ବେକକୁ ବେଢ଼ାଇ ଧରି ସେ କାହିଁ କାହିଁ ହୋଇ କାନ୍ଦି ଉଠିଲେ ।

୨୨

ପରଦିନ ସଞ୍ଜବେଳ, ନଡେଇ ଦାଦାଙ୍କର ବାରିଆଡ଼ ବଉଳ ମୂଳ ଗୁହାଳ ତଳେ ଅରୁନ୍ଧତୀ ପାଖେ ବସିଛି । କେତେ କଥା ସେ ଗପୁଛି । ସୁଖର କଥା, ତା ଜୀବନର ଆନନ୍ଦର କଥା । ଅଜଣା ମଣିଷ ଯେତେବେଳେ ସ୍ୱାମୀର ଅଧିକାର ପାଇ, ଆଗ୍ରହ, ଆନନ୍ଦରେ ପ୍ରେମର ଅର୍ଘ୍ୟ ନେଇ ଅପରିଚିତା ସ୍ତ୍ରୀ ପାଖକୁ ଆସେ, ସେତେବେଳେ କଅଣ କରିବାକୁ ହୁଏ ।

ଏଇ ଅଜଣା ମଣିଷକୁ ପାଇବା ପାଇଁ ପରା ଉପାସୀ ଆତ୍ମା କେତେ ଉଦ୍‌ବିଗ୍ନ ହୋଇ ଚାହିଁ ରହିଥାଏ ? ତଥାପି, କାହିଁକି ମୁହଁ ଟେକି ଭଲ କରି ଥରେ ଚାହିଁବାକୁ ଲାଜ ମାଡ଼େ । ଯାହାର ପରଶ ପାଇଁ ପ୍ରାଣ ମନ ଝୁରି ମରୁଥାଏ, ତାଙ୍କର

ପଦଟିଏ କଥା କାନରେ ବାଜିଲେ ଲାଜକୁଳୀ ଲତାଟି ପରି ଝାଉଁଳି ପଡ଼େ । ଯାହାର ଅମ୍ଭାରେ ଅମ୍ଭା ମିଳାଇ ଦେବାକୁ ସ୍ଥୂଳ ଦେହର ବନ୍ଧନୀ ଉପରେ ଦିନେ ବିରକ୍ତି ଆସେ, ତାଙ୍କର ପାଖରୁ ଇଚ୍ଛା ବିରୁଦ୍ଧରେ ଅପସରି ରହିବାକୁ ହୁଏ, ଟିକିଏ ଲାଜ ଟିକିଏ ସଙ୍କୋଚ ପାଇଁ । ଅଭୁଆର ଉପସ୍ଥିତି ସହି ହୁଏ ନାହିଁ ।

ଘାପ ଲିଭେ ।

ଜହ୍ନ ଅଭୁଅ ଗୃହଅଢ଼େ ବନ୍ଦୀ ହୋଇ ପଡ଼ିଥାଏ । ଅବଶ ମୁହଁରେ, ହାତ ବୋଳି ଦେଇ ଯାଉଥାଏ ଅଶ୍ରା ପବନ । କହିଲି, ଅରୁ, ମନେ ରଖିଥିବୁ ଲୋ, କେତେ ତ ଆଶା ଥାଏ, ଦିନେ ସବୁ ଜଳି ପୋଡ଼ି ଅଙ୍ଗାର ହୁଏ ।

ଅରୁନ୍ଧତୀ ମୋର ହାତ ଧରି ପଚାରିଲି, ଏପରି କାହିଁକି କହୁଛୁ ଗୀତା ଅପା ? ସ୍ୱାମୀ ସ୍ତ୍ରୀର ସମ୍ବନ୍ଧ ଭିତରେ ଧନ ଦଉଲତ ଠିଆ ହୋଇ ପାରେ ନାହିଁ । ଅଭାବ ଅସୁବିଧା କିଛି ରହେ ନାହିଁ ।

ଆଖିରୁ ଲୁହ ପୋଛି କହିଲି ଭଙ୍ଗାସ୍ୱରରେ, ମନର ଦେବତା ଯଦି ମନନାଖି ନ ହୁଏ ?

ବାଧା ଦେଇ ସେ କହିଲା, ମନ ନାଖି ନ ହେବ କାହିଁକି ? ଦେବତା ଯଦି ଅଜଣା, ଯେ ଆସିବେ ସେ ହେବେ ମନନାଖି । ମନକୁ ସଫା ରଖିଥିଲେ ହେଲା । ମନ ଯଦି ଝୁରି ମରୁଥିବ ଆଉ କାହା ପାଇଁ, ଜୀବନରେ ଶାନ୍ତି ମିଳିବ ନାହିଁ ।

ପ୍ରତିବାଦ କରିବାର ବେଳ ନ ଥିଲା, ଇଚ୍ଛା ବି ହେଲା ନାହିଁ । ବନ ପୋଡ଼ିଲେ ସମସ୍ତେ ଜାଣିବେ, ମନ ପୋଡ଼ିଲେ କେହି ଜାଣିବେ ନାହିଁ ।

୬

ସେଇ ରାତିରେ ନ'ଡେଇ ଦାଦାଙ୍କ ଘରୁ ବିମଳା ଭାଇଙ୍କ ଘରକୁ ଯାଉଥାଉଁ । ସଙ୍ଗରେ ମୋର ରାଧା ଥାଏ । ଆଉ ବି ଜଣେ ଦିଜଣ ଜାଏ ପଛେ ପଛେ ଆସୁଥାଆନ୍ତି ମୋର ମନେ ନାହିଁ । ନିମନ୍ତ୍ରଣ, କିନିଆଁ ଡାକରା । ଠାକୁର ଭୋଗ ଖାଇଲି ପରି ଦିନକୁ କେତେ ଘର ବୁଲି ନିମନ୍ତ୍ରଣ ରଖିବାକୁ ହେବ । ସମସ୍ତଙ୍କର ମାୟାମମତା କାଟି ପରଘରକୁ ଯିବାକୁ ପଡ଼ୁଛି । ଆଉ ତ କୌଣସି ସମ୍ପର୍କ ରହିବ ନାହିଁ, ଶତ୍ରୁ ହେଲେ ବି ତା ମନ ତରଳିବ ।

ବିମଳା ଭାଇଙ୍କ ଘରକୁ ଯିବାକୁ ଗୋଡ଼ ଚଳୁ ନ ଥାଏ । ଡରି ଡରି ମାଡ଼ୁଥାଏ । ତାଙ୍କ ସ୍ତ୍ରୀ ନେପରି ଲୋକ, କାଲେ କଅଣ କହିବେ ?

ବିମଳା ଭାଇ ସ୍ତ୍ରୀଙ୍କର ସେ ଦିନର ବ୍ୟବହାର ଦେଖି ଚେତକଥା ସ୍ୱପ୍ନ ପରି ଲାଗିଲା । କେତେ ଆଦର ଯତ୍ନ, କେଡ଼େ ଚେଣ୍ଡାଳିଆ କଥା । ଯେଉଁ ଅଧଘଣ୍ଟାଏ ତାଙ୍କ ଘରେ ରହିଲି, ଦେଖିଛି, ଆନନ୍ଦରେ କପାଳ ତାଙ୍କର ଗୋଡ଼ ତଳେ ଲାଗୁ

ନ ଥାଏ । କଥା କଥାରେ ମୋର ରୂପ ଗୁଣ, ବୁଦ୍ଧିର ପ୍ରଶଂସା କରି କେତେ କହୁଥାନ୍ତି । ସତେ, ନବାଙ୍ଗ ଗାଁରେ ଗୀତା ପରି ସର୍ବସହ୍ନଣୀ ଝିଅ କିଏ ଅଉ ହେବ ? ମାଛିକୁ ମ କହେ ନାହିଁ, ଶତ୍ରୁ ମିତ୍ର ସମସ୍ତେ ତା ପାଖେ ସମାନ । ଯେତେ ଛକେଇ କହିଲେ ଅବଗୁଣ ପାଏ ନାହିଁ, ଓଲଟି ଜବାବ ଦିଏ ନାହିଁ ।

ରାଧା କଅଣ କହିଥାନ୍ତା, ମୁଁ ତାକୁ ଆଗରୁ ରାଣ ପକାଇ ମନା କରିଥିଲି । କାହା କଥାରୁ କଅଣ ମିଳିବ ? ଲୋକେ ସତରେ ମିଛରେ ଗୁଡ଼ାଏ କହିବେ । କେହି କାହାର ଭାଗ୍ୟ ଓଲଟାଇ ପାରିବେ ନାହିଁ । କହିବା ଲୋକ ବଡ଼ ନୁହେଁ, ସହିବା ଲୋକହିଁ ବଡ଼ ।

ମୋ କଥା ଶୁଣି ସେ ଚୁପ ରହିଥିଲା । କିନ୍ତୁ, ଚୁପ ରହିବା ତାର ପ୍ରକୃତି ନୁହେଁ । ଯାହା ଶୁଣେ, ତା ମନକୁ ନ ଆସିଲେ ନବାବ୍ ପୁଅ ହେଲେ ବି ମୁହଁରେ ଜବାବ୍ ଦିଏ । ଖାଲରେ ପଡ଼ୁ କି ଢିପରେ ପଡ଼ୁ ସେ ଦାଗକୁ ନଜର ଦିଏ ନାହିଁ ।

ଜହ୍ନରାତି ।

ଦୁଆରେ ଖଣ୍ଡେ ସପ ପଡ଼ିଥାଏ । ସେଇଠି ଅମେ ବସିଥାଉଁ । ଡେଙ୍ଗା ନଡ଼ିଆ ଛେଳର ଛାଇ ପଡ଼ିଥାଏ ଦୁଆର ମଝିରେ । ରାଧା ସେଇଠି ଚୁପ ହୋଇ ବସି ସବୁ କଥା ଶୁଣୁଥାଏ ଆଗ୍ରହରେ । କମଳା ଭାଇଙ୍କ ସ୍ତ୍ରୀ ପଦେ କଅଣ କହିଲେ ସେ ଅସ୍ଥିର ହୋଇ ଉଠେ । ଦୀର୍ଘଶ୍ୱାସ ପକାଇ କହେ, ଦେଖ, ଜହ୍ନର ହେଉଛି, ଯିବ ନାହିଁ କି ?

କାଁଲେଇ କରି କମଳା ଭାଇଙ୍କ ସ୍ତ୍ରୀ କହନ୍ତି, ରହ ବା, ଏମିତି ଜହ୍ନଲ ହେଉନ୍ଥ କାହିଁକି ? ଅଉ ଏମିତି ରାତି କେବେ ଆସିବ ? ଅଲୋ, କିଏ କେତେ ଦିନ ରହିବ ? କିଛି ରହେ ନାହିଁ ଲୋ, ଏଇ ସ୍ନେହ ଶରଧାଟା ମଲାପାଏ ମନେ ରହେ ।

ସମ୍ଭାଳି ନ ପାରି ରାଧା କହିଲା, ହଁ ସାଆନ୍ତାଣୀ, ମଲାପାଏ ମନେ ରହିବ । ଯିଏ ଯାହାର ଭଲ ମନାସେ, ଭଲ କରେ, ସୁଖରେ ରହିଲେ ମଣିଷ ତାକୁ ଭୁଲିଯାଏ ସିନା, ଯିଏ ଯାହାର ଶିରୀ ଦେଖି ପାରେ ନାହିଁ, ପଛଆଡ଼ୁ ଗୋଡ଼ି କାଟେ, ସୁଖରେ ଦୁଃଖରେ ସବୁବେଳେ ସେ ମନେପଡ଼େ ।

ଏତିକି କହି ସେ ଉଠିଗଲା ଦାଣ୍ଡକୁ । କହିଗଲା, ମୁଁ ଦାଣ୍ଡରେ ଅଛି । ଗପ ସାରି ତମେ ଶୀଘ୍ର ଅସ, ଗୀତା ଦେଇ । ବୋଉ ତେଣେ ଗୁହାଁ ବସିଥିବେ ।

ତାର ଅନୁପସ୍ଥିତି କମଳାଭାଇଙ୍କ ସ୍ତ୍ରୀ ଖୋଜୁଥିଲେ । ସେ ଦାଣ୍ଡକୁ ଗୁଲିଯିବାରୁ, ମୋର ହାତଧରି ଅଟକାଇ କେତେ ଶିଖାଇଲେ । କପରି ପର ଘରେ ଚଳିବାକୁ ହେବ, କପରି କଅଣ କରିବାକୁ ହେବ ଇତ୍ୟାଦି । ଶେଷକୁ ଥଟ୍ଟାରେ ଥଟ୍ଟାରେ କହିଲେ, ଅଡ଼ ହେବ ନାହିଁ, ମୁହଁ ଲୁଚାଇ ମେଦଟିଏ ହୋଇ ଘର

କୋଣରେ ବସିବ ନାହିଁ ସେଦିନ ସଭାରେ । କଥା କହିବ ଅଳ୍ପଅରେ । ଶୁଣିଥିବ ଅଧିକ । ପଚାରିଲେ ଜବାବ୍ ଦେବ । ତା ହେଲେ, କଟିଯିବ ଦିନ ପରେ ଦିନ, ରାତି ପରେ ରାତି, ମନ ଦୁଃଖରେ ନୁହେଁ, ଆନନ୍ଦରେ ।

ଶୁଣିଲି । ଲାଜ ମାଡ଼ିଲା । ଉଠି ଆସିଲି ଦାଣ୍ଡକୁ । ସେ ମୋ ପଛେ ପଛେ ଦାଣ୍ଡକୁ ଆସିଲେ । କହିଲେ, ଗୁରୁମନ୍ତ୍ର ନେଲ ଗୀତା ଦେଇ, ଗୁରୁଙ୍କୁ ପଛେ ଭୁଲିଯାଅ, ମନ୍ତ୍ର ଭୁଲିବ ନାହିଁ ।

ରାତି ଅଧରେ ରାଧା ସାଙ୍ଗରେ ଫେରିଲି ।

୪୯

ନଶୂନ୍ ଗାଁ ଗୋହିରୀ ।

ଦୁଇପାଖେ କଣ୍ଟା ବାଡ଼ । ଗୁଡ଼ିଗୁଡ଼ିକା ଜହ୍ନଅଲୁଅ ଧୂଳି ବାଟ ଉପରେ ମେଞ୍ଚା ମେଞ୍ଚା ହୋଇ ଛିଟି ପଡ଼ିଥାଏ । ନଈକୂଳ ଆଡ଼ୁ ଥଣ୍ଡା ପବନ ବହି ଆସୁଥାଏ ଥିରିଥିରି । ବାଡ଼ ଗହଳି ଓ ଲୁଗା ପଣତ ଭିତରେ ଲୁଚକାଳି ଖେଳିବାକୁ ତାର ଆଗ୍ରହ । ଆଗରେ ଚାଲିଥାଏ ରାଧା, ପଛରେ ମୁଁ । ପବନ ପରଶରେ ମନଟା ହାଲୁକା ହୋଇ ଉଠିଲା ।

ଗାଁ ଦାଣ୍ଡ କଦମ୍ବ ମୂଳ, ଯେଉଁଠି ଗାଁ ଠାକୁରାଣୀ ଥାଆନ୍ତି ତାଆରି ପାଖରେ ରାଧା କହିଲା, ଡେରି ହେଲାଣି ଦେଇ, ଚାଲ ସିଧା ସିଧା ନଈ ବନ୍ଧକୁ ଉଠିଯିବା । ବଙ୍କେ ବଙ୍କେ ଗଲେ ଅଳବାଟ ପଡ଼ିବ । ଟିକିଏ ରହି ପୁଣି କହିଲା, ଏ ବିମଳା ଭାଉଜଟା କେଡ଼େ ଖରାପ ଲୋକ । ଚାକରଟାକୁ ସାଙ୍ଗରେ ଟିକେ ପଠାଇଥିଲେ ହୋଇ ନ ଥାନ୍ତା ?

ପରର ନିନ୍ଦା ଶୁଣିବାକୁ ଆଉ ଭଲ ଲାଗିଲା ନାହିଁ । କହିଲି, ଭଲ ମନ୍ଦ ଦୁନିଆରେ କଅଣ ? ଭାଗ୍ୟ ନେଇ ସବୁ ଫଳେ । ଭାଗ୍ୟରେ ଥିଲେ ଭଲଲୋକ ବି ଖରାପ ହୁଏ, ମିତ୍ର ହୁଏ ଶତ୍ରୁ, ନୋହିଲେ ସବୁ ଓଲଟିଯାଏ । ବିମଳା ଭାଇର ସ୍ତ୍ରୀ ଖରାପ ନୁହେଁ, ଖରାପ ମୋ ଭାଗ୍ୟ ।

ଓଠରେ ହୁଁ ଟିଏ କହି ସେ ତୁନି ରହିଲା ।

ନଈବନ୍ଧକୁ ଉଠିଲୁଁ । ନଈଆଡ଼କୁ ଚାହିଁଲା ବେଳକୁ ଖାଁ ଖାଁ ନିଘୋଟିଆ ଲାଗୁଥାଏ । ଜହ୍ନ ଆଲୁଅରେ ନଈପଠା, ନଈବାଲି ସୁନ୍ଦର ଦିଶୁଥାଏ କିନ୍ତୁ ତାଆରି ଭିତରେ କପର ହତାଶାର ସୂଚନା ପାଉଥାଏ ।

ନଈ ଉପର ଝଙ୍କା କୋଚିଲା ଗଛ, ଯାହା ଭିତରେ ପିଲାଦିନେ କେତେ ଲୁଚକାଳି, ବୋହୂବୋହୂକା ଖେଳିଥିଲୁଁ । ଆଜି ଆଖିକୁ କପର ଅନ୍ଧାରିଆ ଭୂତ ବସିଲା ପରି ଦିଶୁଛି ।

ପବନ ଜୋର୍‌ରେ ବହୁଥିଲା । ରାଧା କହୁଥିଲା, ଦେଖ, ଦେଖିଲ, ଆର ଗାଁର ଗଛ ଗହଳ ଦୂରକୁ କେଡେ଼ ଅନ୍ଧାରିଆ, ଭୟଙ୍କାରିଆ ଦିଶୁଛି । ପାଖରେ ତ ଏମିତି ଦିଶେ ନାହିଁ ।

କହିଲି, ଦୂରକୁ ସବୁ ସେମିତି ଦିଶେ । ପାଖକୁ ଆସିଲେ ସବୁ ଭ୍ରମ ଭ୍ରାନ୍ତି ଚାଲିଯାଏ ।

ଘର ପାଖେଇ ଆସିଲା । ରାଧାକୁ ଆଜି ଏକୁଟିଆ ପାଖରେ ପାଇଛି । ତା ଆଗରେ ଯଦି ମନକଥା ଖୋଲି ନ କହେ ଆଉ କେବେ କାହାରି ପାଖରେ କହିବାର ସୁବିଧା ପାଇବି ନାହିଁ । ତା ଉପରେ ମୋର ବିଶ୍ୱାସ । ଜାଣି ଜାଣି କେବେ ସେ ମୋ ମନରେ ଦୁଃଖ ଦେବ ନାହିଁ । କିଛି କରିବାର ଅଧିକାର ବା ଶକ୍ତି ନ ଥିଲେ କଅଣ ହେବ, ସାନ୍ତ୍ୱନା ଦେଇ ଦିପଦ କହିପାରିବ ।

କିପରି କଅଣ ଆରମ୍ଭ କରିବି ଭାବୁ ଭାବୁ ଆହୁରି ଖଣ୍ଡେ ଦୂର ଚାଲି ଆସିଲି । ଅନ୍ୟ ଉପାୟ ସ୍ଥିର କରି ନ ପାରି ତା ହାତ ଧରି ଅଟକାଇ ରଖି ଡାକିଲି, ରାଧା !

ସେ ଚକିପଡ଼ି ମୋ ଆଡ଼କୁ ଚାହିଁ ପଚାରିଲା, କଅଣ ଦେଈ ?

ମୋର ତୁଣ୍ଡ ଖୋଲିଲା ନାହିଁ । ତା ହାତକୁ କୋହଳାଇ ଦେଇ ଅଙ୍ଗେଇ ଥଙ୍ଗେଇ କହିଲି, କିଛି ନାହିଁ, ଚାଲ ।

ସେ ମୋ ମନକଥା ବୁଝି ପାରିଲା । ଗେହ୍ଲେଇ ପଚାରିଲା, କଅଣ କହିବାକୁ ବସିଥିଲ କହୁନା, ମୋ ଉପରେ ତୁମର ଅବିଶ୍ୱାସ ହେଉଛି ?

ଅବିଶ୍ୱାସ କାହିଁକି ହେବ ?

ତେବେ ଆଉ କଅଣ ? ଦେଈ, କେବେ ମନ ଖୋଲି ତୁମେ ମତେ କିଛି କହୁନାହଁ । ମୁଁ ସିନା ବଳେଇ ପଶେ, ତୁମେ ମତେ ଆଡ଼େଇ ଯିବାକୁ ଚାହଁ । ତୁମର ସାଙ୍ଗ ସରିସା ହେବାର ବିହିପ ମୋର ନାହିଁ । ତେବେ ବି ମନରେ ଦୁଃଖ ହୁଏ ।

ତୁ ଅନ୍ୟଥା ଭାବିବୁ ନାହିଁ । ମତେ କହିବାକୁ ମତେ ଲାଜ ମାଡ଼େ, ମନରେ ସଙ୍କୋଚ ଆସେ । କହିବି କହିବି ହୋଇ କହି ପାରେ ନାହିଁ । ସୁବିଧା ବି ମିଳେ ନାହିଁ ।

କେତେ ଗୋଳେଇ ହୋଇ ମତେ ସେ ପଚାରିଲା । ମୁଁ ମନ ଖୋଲି ସବୁ-କଥା ତା ଆଗରେ କହିଲି । ଚିଠି ଖଣ୍ଡି ଅଣ୍ଟାରୁ କାଢ଼ି ତାକୁ ଦେଖାଇଲି । ମୋ ମନର ଦୁଃଖ କେତେ ପରିମାଣରେ କମି ଆସିଲା ।

ସେ କହିଲା, ଦେଈ, ସବୁ ଠିକ୍ ହୋଇ ଯାଇଛି । ଇଆଡ଼େ ଚେଷ୍ଟା କରିବା କି ଅପେକ୍ଷା କରି ରହିବାକୁ ଆଉ ବେଳ ନାହିଁ । ତୁମ ବୋଉଙ୍କୁ ଏ କଥା କହିଲେ କି ବୁଝାଇଲେ ସେ ମାନିବେ ନାହିଁ । ଆକାଶର ଫୁଲ ତୋଳିବାକୁ ସେ ଆଉ ହାତ ବଢ଼ାଇବେ ନାହିଁ ।

ତା ମୁହଁରୁ ନିରାଶାର କଥା ଶୁଣିବ ବୋଲି ମୁଁ ଆଶା କରି ନ ଥିଲି । ଭାବିଥିଲି, ନିଶ୍ଚୟ ସେ ଗୋଟାଏ ଉପାୟ ବତାଇବ । ମୁଁ ମର୍ମାହତ ହୋଇ କହିଲି, ଯାହାର କପାଳ ପୋଡ଼ା, ତା ପାଇଁ ସମସ୍ତେ ନିଷ୍ଠୁର ହୁଅନ୍ତି । ଯାହାକୁ ଭଲପାଏ, ଯାହାଙ୍କ ଆଡ଼କୁ ମନ ଧାଏଁ, ତାଙ୍କର ସେବା କରିବାର ଅଧିକାର ଜୀବନରେ ପାଇବି ନାହିଁ । ଯାହାକୁ ମୁଁ ଘୃଣା କରେଁ, ଯାହାର ହାତ ଧରିବାକୁ ମୋର ଇଚ୍ଛା ନାହିଁ, ତାଅରି ହାତରେ ମୋତେ ଦେଇ ତମେମାନେ ନିଶ୍ଚିନ୍ତ ହେବ ମନେ କରିଛ । କିନ୍ତୁ, ତମ ମନକଥା ମନରେ ରହିବ··· ।

ତାର ତୁଣ୍ଡ ଖୋଲିଲା ନାହିଁ । ଖୁଣ୍ଟ ପରି ସେଇ ନଈବନ୍ଧ ଉପରେ ଠିଆ ହୋଇ ମୋ ଆଡ଼କୁ ଚାହିଁ ରହିଲା ।

ମୁଁ ଆଖିରୁ ଲୁହ ପୋଛି କହିଲି ଭଙ୍ଗା କଣ୍ଠରେ, ଚାଲ୍ ରାଧା ।

ଦେଇ !

ଚାଲ, ଡେରି ହେଉଛି ।

ନୀରବରେ ଆଗେ ଆଗେ ଚାଲିଲା । ହାତରେ ଧରିଥିବା ଛଟି ଖଣ୍ଡି ଚିକି ଚିକି କରି ଶର ବନ୍ଧ ଉପରେ ପକାଇ ଦେଲା । ରାଧାର ପଛେ ପଛେ ଚାଲିଲି ।

ସେ କଅଣ ଭାବୁଥିଲା କେଜାଣି, ମୁଁ ଭାବୁଥିଲି, ଦୁନିଆଁଟା ଖାଲି ଉତ୍ତେଜନାର ଖେଳ । ମନରେ କେତେବେଳେ କେଉଁ କାରଣରୁ କି ଭାବନା ଆସେ, ମନକୁ ଅସ୍ଥିର କରେ । ତାଅର ଶେଷ ଫଳ ଭଲ ହୁଏ କି ମନ୍ଦ ହୁଏ ଆଗରୁ ଜାଣି ହୁଏ ନାହିଁ ।

ଦୁର୍ଯୋଗରେ ଧବଳେଶ୍ୱରରେ ତାଙ୍କ ସଙ୍ଗେ ମୋର ଦେଖା ହୋଇଥିଲା । ମନରେ ଦୁଃଖ ସୁଖର ଲହଡ଼ି ଉଠିଥିଲା । ସବୁ ବୃଥା, ସବୁ ମିଛ । ମଣିଷ ଜୀବନକୁ ନିୟତିର ଏପରି ନିର୍ମମ ପରିହାସ । ଯାହା ହେବାର ନୁହେଁ, ସେଥିପାଇଁ ଏତେ କଲବଲ ହୁଏ ଜୀବନ !

ଘର ପାଖରେ ହେଲୁଁ । ବନ୍ଧ ଉପରୁ ଗଡ଼ି ବାରି ଗୋହିରି ବାଟେ ଯିବାର କଥା । ହଠାତ୍ ରାଧା ଅଟକି ଯାଇ କହିଲା, ଦେଇ, ତମେ ଏତେ ଅସ୍ଥିର ହୁଅ ନାହିଁ । ଭାଗ୍ୟରେ ଯାହା ଥାଏ ତା ଘଟେ । ମଣିଷ ମିଛରେ ମନ ଖରାପ କରେ । ସୁନାଟି, ଏଣୁ ତେଣୁ ଅଉ ଭାବ ନାହିଁ । ଯାହା ଆସୁଛି ଆନନ୍ଦରେ ତାକୁ ବରଣ କରିନିଅ ।

ମୋର ଓଠରେ ହାତ ଦେଇ ସେ ଅଧିକ କେତେ କଅଣ କହି ବୁଝାଇଲା ଆଜି ମୋର ମନେ ନାହିଁ । ତାଅରି କାନ୍ଧ ଉପରେ ମୁହଁ ରଖି ନୀରବରେ ଲୁହ ଢାଳିଦେଲି ।

କେତେବେଳକେ ମୁଣ୍ଡ ଟେକି କାନ୍ଦମିଶା ସ୍ୱରରେ କହିଲି, ରାଧା, ବୋଉକୁ କିଛି କହିବୁ ନାହିଁ ।

କହିଲା, କାହିଁକି କହିବ ? କହିଲେ ତମ କଅଣ କରି ପାରିବେ ?

୨୦

ସଇଟରେ ନିଦ ହେଉ ନାହିଁ ।

ଭାବିଲି, ଏମିତି ହୀନ କପାଳୀ କରି ଭଗବାନ ମୋତେ ଜନ୍ମ ଦେଇଛନ୍ତି । ଯେଉଁ ଗଛକୁ ଆଉଜିଲେ ସେ ଗଛ ଠାଇ ପଡ଼ୁଛି । ନିର୍ଲଜ ହୋଇ ମନର କଥା ନ କହିଲେ ଲୋକଙ୍କ ଆଗରେ କହିଲେ ମଧ୍ୟ ଲାଭ ନାହିଁ । ବୃଥାରେ ମନରେ ଅଶାନ୍ତି ଅସ୍ୱସ୍ତି, ଉତ୍ତେଜନା ବଢ଼ୁଛି । ଭାଗ୍ୟର ଲେଖା ବଦଲାଇବାର ଶକ୍ତି ଯଦି ମଣିଷର ନାହିଁ, ବୃଥାରେ ମନକୁ ଛଟପଟ କରି କି ଲାଭ ମିଳିବ ?

ଭାବିଲି, କାହାକୁ କିଛି ନ କହି ପ୍ରବୋଧ ବାବୁ କି ଅମର ଭାଇଙ୍କ ନିକଟକୁ ବୋଉ ନାମରେ ଖଣ୍ଡେ ଚିଠି ଲେଖିବି । ମୋର ବାହାଘର ଯେ ସ୍ଥିର ହୋଇଯାଇଛି ଏ ବିଷୟ ତାଙ୍କୁ ଜଣାଇ ଦେବି । ତେଣିକି ସେମାନଙ୍କର ଯଦି କିଛି କରିବାର ଥାଏ କରିବେ, ନୋହିଲେ ନାହିଁ । ଏକାଥରେ ଅଜଣା ପୁରୁଷର ଅଦେଖା ହାତ ଉପରେ ନିର୍ଭର କରି ଅନିଶ୍ଚିତତା ଭିତରେ ଅଗ୍ରସର ହେଲେ ଅନୁତାପ ଆସିବ ।

କାହାକୁ ଲେଖିବି ? ଅମର ଭାଇ ନିଶ୍ଚୟ ମୋର ହସ୍ତାକ୍ଷର ଚିହ୍ନିବେ । ପରେ ହୁଏତ ପ୍ରକଟ ହେବ । ପୁଣି, ଦୁର୍ନାମର ନିଆଁ ଜଳି ଉଠିବ । ବରଂ ପ୍ରବୋଧ ବାବୁଙ୍କ ପାଖକୁ ଲେଖିଲେ ଭଲ ହେବ । ଏହି ବିଷୟ ଭାବି ଭାବି ରାତି ପାହିଲା, ଆଖି କଣା ପଡ଼ିଲା ନାହିଁ ।

ପରଦିନ ଦି ପହରେ ସୁବିଧା ପାଇ ପ୍ରବୋଧ ବାବୁଙ୍କ ପାଖକୁ ଚିଠି ଲେଖି ବସିଲି । ତାଙ୍କ ପାଖକୁ ଚିଠି ଲେଖୁଛି । ଆନନ୍ଦରେ ଛାତି ନାଚି ଉଠୁଥାଏ କିନ୍ତୁ, ଭୟରେ ହାତ ଥରି ଉଠେ । ଅକ୍ଷର ଗୁଡ଼ାକ ବଙ୍କା ବଙ୍କା ହୋଇଯାଏ । ତଥାପି, ଲେଖିଲି । ହୃଦୟର ସବୁ ଉତ୍ତେଜନା, ମନର ସବୁ ଆଶା ଏକାଠି କରି ଚିଠି ଲେଖିଲି । ଅବନତ ଆତ୍ମା ମୋର ଢଳି ପଡ଼ିଥିଲା ପ୍ରତ୍ୟେକ ପଦରେ । ଆଖି ଲୁହରେ ଓଦା ହୋଇଥିଲା ଛୋଟ କାଗଜ ଖଣ୍ଡି ।

ସାହସ ହେଲା । ଯେତେ ଲୁଚାଇଲେ ଲୁଚିବ ନାହିଁ । ସେ ନିଶ୍ଚୟ ବୁଝିବେ, ଚିଠିଟି କିଏ ଲେଖିଛି । କେତେ ଜାଗାରେ କଟା କଟି ହୋଇଛି । ବୋଉ ନାମରେ ଲେଖୁ ଲେଖୁ ଠାଏ ଠାଏ ଗୀତା ପରିବର୍ତ୍ତେ ମୁଁ ଲେଖି ତାକୁ କାଟି ପୁଣି ଗୀତା କରିଛି । ଯାହା ହେଉ, ଆଉ ଥରେ ଉତାରିବାକୁ ବେଳ ନାହିଁ, କିଏ କାଳେ ଆସିଯିବ ।

ଚିଠିଖଣ୍ଡ ଲେଖିସାରି ଦାତ ଛିଆରି ଖଣ୍ଡେ ଲଫାପା ଭିତରେ ରଖିବା ଆଗରୁ ଲୁହଭରା ଆଖିରେ ଥରେ ପଢ଼ିଗଲି—

ସ୍ନେହର ପ୍ରବୋଧ,

ତମର ଚିଠି ପାଇ ଖୁସି ଲାଗିଲା । ସତେ ଏକା ଧବଳେଶ୍ୱରରେ ଥରଟିଏ ଦେଖା, ସେତିକିରେ ଆପଣାର କରିନେଲ । ଆମକୁ ଦେଖିବାକୁ ଏତେ ଆଗ୍ରହ କିଏ ? ଆମେ ଦରିଦ୍ର ବୋଲି ଆସିବାକୁ ବେଳ ମିଳେ ନାହିଁ ପରା !

ଗୀତା ତମର ସ୍ନେହ ଭୁଲିପାରି ନାହିଁ । ସେ ଦିନ ତା ଗୋଡ଼ ଅଙ୍ଗୁଠିରେ ରୁମାଲ ବାନ୍ଧି ଦେଇଥିଲ । ନିଜର ଭାଇ ହୋଇଥିଲେ କଅଣ ଏପରି କରି ପାରି ଥାଆନ୍ତା ?

ଗୀତାର ବାହାଘର ଠିକ୍ ହୋଇ ସାରିଛି । ଏଇ ମାସରେ ହେବ । ହୀନ କପାଳୀର ବାପ ଭାଇ ନାହାନ୍ତି ଯେ ତା ପାଇଁ ଭଲମନ୍ଦ ବାରିବେ । ଗାଁ ଲୋକେ ବୋଝ ଉଠାଇବାକୁ ବାହାଘର କରି ଦେଉଛନ୍ତି । ମୋର କି ଦୁଃଖ !

ତମର କଅଣ ବେଳ ହେବ ଆସିବାକୁ ? ମୁଁ ବା କି ସାହସରେ କହିବି । ଚିଠି ଲେଖିଥିଲ ବୋଲି ଜବାବ୍ ଦେଲି । କଲ୍ୟାଣ ନେବ । ତମର ବାପା ବୋଉଙ୍କୁ ଯଥାବିଧି ଜଣାଇଁ ଦେବ । ଗୀତା ପ୍ରଣାମ କହୁଛି । ଫେରନ୍ତା ଡାକରେ ଦେଉଥିବ ଦେବ । ଇତି,

ତୁମର

ମାଉସୀ

ଚିଠିଖଣ୍ଡି ବନ୍ଦକରି ପାଖରେ ଲୁଚାଇ ରଖିଲି । ଲଫାପା ଉପରେ ମନକୁ ଯାହା ଆସିଲା ଠିକଣା ଲେଖିଦେଲି । ଯାହାଙ୍କ ଉଦ୍ଦେଶ୍ୟରେ ଚିଠିଟି ଲେଖା ହୋଇଛି ସେ ପାଇବେ କି ନାହିଁ, ଠିକ୍ ବେଳରେ ପାଇବେ କି ନାହିଁ, ଜାଣେ ନାହିଁ । ପାଉନ୍ତୁ ବା ନ ପାଉନ୍ତୁ, ମନର ରହି ମେଣ୍ଟାଇବାକୁ ଚିଠି ଲେଖୁଛି । ଏଣିକି ଭାଗ୍ୟରେ ଯାହା ଘଟିବ ବିନା ଆପତ୍ତି ଅଭିଯୋଗରେ ମୁଣ୍ଡପାତି ସହିବାକୁ ହେବ । ମନ ସିନା ଚୁହେଁ ଗଙ୍ଗା, ଅଜଣା ପୁରୁଷର ଅଦେଖା ହାତ କେଉଁ ଅପନ୍ତରକୁ ଟାଣିନିଏ ।

ମାଇସଞ୍ଜ ବେଳକୁ ରାଧାକୁ ସଙ୍ଗରେ ନେଇ ବାରିଆଡ଼କୁ ଗଲି । ତଳ-ବାଡ଼ିର ଗୋଟିକିଆ ଅମ୍ବଗଛ ମୂଳେ ତାକୁ ନିରୋଳାରେ ପାଇ ମନକଥା ଖୋଲି କହିଲି । ସେ ସବୁ ଶୁଣିଲା । ତା ମୁହଁରେ ଭାବ ପରିବର୍ତ୍ତନର କୌଣସି ଚିହ୍ନ ଦେଖିପାରିଲି ନାହିଁ । ଭୟ ହେଉଥାଏ, କାଳେ ସେ ମୋ ପ୍ରସ୍ତାବରେ ରାଜି ନ ହେବ, କାଳେ ସେ ମୋ ଉଦ୍ଦେଶ୍ୟରେ ବାଧା ଦେବ ।

ସବୁ ଶୁଣି ସେ ଦୀର୍ଘଶ୍ୱାସ ପକାଇ କହିଲା, ଦେଇ, ମିଛଟାରେ ମନରେ ନିଆଁ ଜାଳି ସନ୍ତୁଳି ହୁଅନାହିଁ । ମଣିଷ ଯେତିକି ଆଶା କରେ ତାର ଦୁଃଖ ସେତିକି ବଢ଼େ । ତୁମେ ଆଜି ଚିଠି ଲେଖୁଛ, ଚିଠି ଯଦି ସେ ନ ପାଆନ୍ତି କି ଚିଠି ପାଇ ଯଦି କିଛି ନ କରନ୍ତି ?

ଚମକି ଉଠିଲି । ଶଠି ନ ପାଇବା ତ ଭିନ୍ନେ କଥା, ଶଠି ପାଇ ଯଦି ସେ କିଛି ନ କରନ୍ତି !

ମୋ'ଠିର ଆଖି ଆଗରେ ତାଙ୍କର ସୌମ୍ୟ ସୁନ୍ଦର ମୂର୍ତ୍ତିଟି ଆସି ଠିଆହେଲା । ସେଦିନ ସେଇ ନଈକୂଳରେ ତାଙ୍କର ଉଜ୍ଜ୍ୱଳ ଆଖି ଦିଓଟିରେ ଯାହା ମୁଁ ଦେଖିଥିଲି ସେଥିରେ ଏପରି ସନ୍ଦେହର ଚିହ୍ନ ପାଇ ନ ଥିଲି । ସେ ମୋତେ ଭଲ ପାଆନ୍ତି, ସେ ନିଶ୍ଚୟ କିଛି କରିବେ । ମୋର ଦୃଢ଼ ବିଶ୍ୱାସ, ନିଶ୍ଚୟ ସେ—କିନ୍ତୁ, କଅଣ କରିପାରିବେ ଶେଷ ବେଳରେ ? ଦିନ ପାଖେଇ ଆସିଲା ।

ଦୁଇଆଖି ଲୁହରେ ଭରିଗଲା । ହାତ ପାପୁଲିରେ ଲୁହ ପୋଛି ଆକୁଳ ହୋଇ କହିଲି, ଶଠି ଯଦି ସେ ନ ପାଆନ୍ତି, ଶଠି ପାଇ ଯଦି ସେ କିଛି ପ୍ରତିକାର ନ କରନ୍ତି, ତେବେ କଅଣ ଭାବିଛୁ, ଯାହା ଆସିବ ତାକୁ ମୁଁ ଆଖି ବୁଜି ସହିଯିବି ? କାହିଁକି ସହିବି ଲୋ ? ସହିବାର ଆଉ କଅଣ ବାକି ଅଛି ? ପିଲାଦିନୁ ସହି ସହି ଆସିଛି, କେତେ ଦୁଃଖ, କେତେ କଷ୍ଟ, କେତେ ଅପମାନ, ସବୁ ଭବିଷ୍ୟତ ଆଶାରେ । ତମେମାନେ ମୋର ଭବିଷ୍ୟତକୁ ଜାଣି ଜାଣି ପୋଡ଼ିଜାଳି ଦେବାକୁ ବସିଛ, କେଉଁ ଦୁର୍ନାମରୁ ରକ୍ଷା ପାଇବ ବୋଲି ।

ଉତ୍ତେଜିତ ହୋଇ ପଡ଼ିଥିଲି ।

ରାଧା ମୋର ଆଖିରୁ ଲୁହ ପୋଛି ଦେଲା । ଆର୍ଦ୍ର କଣ୍ଠରେ କହିଲା, ତମେ ପାଗଳ ହୋଇଛ ଦେଈ ?

ପାଗଳ କାହିଁକି ହେବି ? ତୁମେମାନେ ଗୃହୁଁଛ ଦୁର୍ନାମରୁ ରକ୍ଷା ପାଇବ । ଦେଖ୍ ରାଧା, ଆମ୍ବ ଗଛର ଏଇ ଡାଳଟି କପରି ତଳକୁ ନଇଁ ଆସିଛି । ଦଉଡ଼ି ଖଣ୍ଡେ ମିଳିବ ନାହିଁ କି ? ତେବେ ତ ତୁମେସବୁ ମୋ ନେଇ ନିଶ୍ଚିନ୍ତ ହୋଇ ପାରିବ ?

ମୋ ପାଟିରେ ହାତ ଦେଇ ସେ କହିଲା, ଛି ଦେଈ, ତୁମେ କଅଣ କହୁଛ ?

ତାର ହାତ ଥରି ଉଠିଥିଲା ।

କହିଲି, ମିଛ କହୁନାହିଁ । ମନର କଥା ତୋ ଆଗରେ ଖୋଲି କହିଲି ।

ତା ଆଖିରେ ଲୁହ ଦେଖିଲି । ସେଦିନ ସଞ୍ଜର ମଳିନ ଆଲୁଅରେ ମୋତେ ସେ ଗଛ ଉପରକୁ ଟାଣି ନେଇଥିଲା । ମୋର ପିଠି ମୁଣ୍ଡ ଆଉଁସି ତୁନି ତୁନି କାନପାଖରେ କହିଲା, ମଣିଷ ଯାହା ଖୋଜେ, ପାଏ ନାହିଁ ଦେଈ, ଯାହା ପାଏ ସେଇଥିରୁ ଅପଣାର କରିନେଲେ, ମନ ଶାନ୍ତିରେ ବେଳ କାଟେ । ନ ପାଇଲା ଜିନିଷକୁ ଝୁରିହେଲେ ଲାଭ ନାହିଁ । ମୁଁ ଅଳି ପୋଇଲୀ । ପର ଦୁଆରେ ପାଇଟି କରି ପେଟ ପୋଷେ । ଦିନେ ଖାଇଲେ ଦି ଦିନ ଉପାସ । ଆଗକୁ ପଛକୁ ହାତ

ବଢ଼ାଇଲେ କେହି ନାହିଁ । କହିଲି ଦେଇ, ଏଇଆ ମୁଁ ଚାହିଁଥିଲି ? ମୋ ମନରେ ବଡ଼ ଆଶା କେବେ ପଶି ନ ଥିଲା ?

ସବୁ ମଣିଷ ଏ ଦିଗରେ ସମାନ । ସମସ୍ତଙ୍କର ଆଶା ଥାଏ, ଇଚ୍ଛା ଥାଏ । ସମସ୍ତେ ସୁଖରେ ରହିବାକୁ ଚେଷ୍ଟା କରନ୍ତି । କିନ୍ତୁ, ସମସ୍ତଙ୍କ କପାଳ ସମାନ ନୁହେଁ । କାହା ଭାଗ୍ୟରେ କଅଣ ଥାଏ । ତଥାପି ଦେଇ, ଯାହା ଆସେ, ସେଇଥିକୁ ନେଇ ବେଳ କାଟିବାକୁ ପଡ଼େ । ଯେଉଁ ଅବସ୍ଥାରେ ପଡ଼ିଲେ ସୁଦ୍ଧା ମୁହଁରୁ ହସ ବାହାରେ । ମନ ଖୁସିରେ ମୁହୂର୍ତ୍ତେ ହେଲେ କଟେ । ଆଉ ଦହଗଞ୍ଜିଆ ଦୁଃଖର ଜୀବନରେ ସେହି ସୁଖ, ଆନନ୍ଦର ମୁହୂର୍ତ୍ତଟି ବଡ଼ ।

ସବୁଦିନେ ରାତି ନ ଥାଏ । ଆଉ, ସବୁ ରାତିରେ ବି ଅନ୍ଧାର ହୁଏ ନାହିଁ । ଅନ୍ଧାର ଭିତରେ ଜହ୍ନ ହସେ । ରାତି ଯାଇ ଦିନ ଆସେ । ଭାଗ୍ୟରେ ଥିଲେ ସେଇ କଟକୁ ନେଇ ଚିର ଦିନ କାଚ ସିନ୍ଦୂର ଧରି ସୁଖରେ ବେଳ କାଟିବ । ଯେଉଁମାନେ ଶତ୍ରୁତା ସାଧିବାକୁ ବସିଛନ୍ତି, ସେହିମାନେ ପୁଣି ଦିନେ ଝୁରିବେ, ଦେଖିବ ରହି । ଆଜିଠାରୁ ଏଡ଼େ ହତାଶ ହେଉଛ କାହିଁକି ?

ଗୀତା ଦେଇ, ସୁନା ଭଉଣୀଟି, ଆଉ ଏଣୁ ତେଣୁ ଭାବି ମନ କଷ୍ଟ କର ନାହିଁ । ସାନକୁହା ମାନ । ଭଗବାନଙ୍କ ଉପରେ ନିର୍ଭର କରି ଯାହା ଆସୁଛି, ଆନନ୍ଦରେ ଗ୍ରହଣ କରିନିଅ । ଚିଠିଖଣ୍ଡ ଲେଖିଛ । ମୋତେ ଦିଅ । ମୁଁ ତାକୁ ପଠାଇ ଦେବି । ମନର କ୍ରୋଧ ଶାନ୍ତ ହେବ ।

ମୋ ହାତରୁ ଚିଠି ଖଣ୍ଡ ସେ ଟାଣିନେଲା ।

ରାଧାର ଛାତି ଉପରୁ ମୁଣ୍ଡ ଟେକି ତାଆରି ମୁହଁକୁ ଚାହିଁଲି । କେତେ ସହାନୁଭୂତି, କେତେ ବ୍ୟଥା ଭରି ରହିଥିଲା ତହିଁରେ ।

## ୭୧

ଦିନ କେଇଟି ଗହଳ ଚହଳରେ କଟିଗଲା । ଯେଉଁ ଚିଠି ଖଣ୍ଡି ପ୍ରବୋଧବାବୁଙ୍କ ପାଖକୁ ଲେଖିଥିଲି, ଯାହାକୁ ରାଧା ମୋ ହାତରୁ ଟାଣି ନେଇଥିଲା, ତାର କି ଗତି ହେଲା ମୁଁ କେବେ ତାକୁ ପଚାରି ନାହିଁ ।

ମଙ୍ଗଳ ଦିନ ସକାଳେ ।

ଖଞ୍ଜାରେ ଲୋକ ଭିଡ଼ । ଆଜି ସାତ ମାଇପେ ଆସିବେ, ମଙ୍ଗଳ ହାଣ୍ଡି ବସାଇବେ । ସେଇଥିପାଇଁ ଆଗରୁ ବୋଉ ଯୋଗାଡ଼ କରିବାରେ ବ୍ୟସ୍ତ । ଗାଁ ମାଇପେ ମୋତେ ଘେରି ବସିଛନ୍ତି । ବେଳେ ବେଳେ ପଞ୍ଝା ପଞ୍ଝା ହୋଇ ଆସୁଛନ୍ତି । ମୋତେ ଦେଖି ଫେରି ଯାଉଛନ୍ତି । ଏକା ବସି ରହୁଥାଏ ରେଣୁ । କଅଣ କହିବାକୁ

ହୁଏ, ସୁବିଧା ନ ପାଇ ତୁଣ୍ଡ ଖୋଲି ପାରେ ନାହିଁ । ପାଖରେ ବସି ଗୋଟେଇ ଦେଉଥାଏ ।

ଟିକିଏ ସୁବିଧା ପାଇ ମୋର ଅଙ୍ଗୁଠି ଫୁଟାଇ ଏଣିକି ତେଣିକି ଚାହିଁ ସେ କହିଲା, ଗୀତା ଅପା, ଗୁପ୍ତ କଥାଟିଏ କହନ୍ତି ଯେ ଡର ମାଡୁଛି, କାଲେ—

କଥାଟି ଅଧା ରଖି ମୋ ମୁହଁକୁ ଚାହିଁଲା ।

ତୁନି ତୁନି କହିଲି, କହିବୁ ଯଦି କହୁନୁ, କାଲେ ପୁଣି କଅଣ ?

କାଲେ ତୋ ମନ କଷ୍ଟ ହେବ ।

ହସି ହସି କହିଲି, ଏମିତି କି କଥା ଯେ ମୋ ମନ କଷ୍ଟ ହେବ ଲୋ ରେଣୁ । କେତେ ତ ଶୁଣିଲିଣି, ସବୁ ମତେ ଅରେଇ ଗଲାଣି । କହ ।

ଟିକିଏ ଭାବି କହିଲା, କାଲି ବାପା ବୋଉ ଦୁହେଁ ତୁନି ତୁନି କଥାଭାଷା ହେଉଥିଲେ, ମୁଁ ଝିଙ୍କାଡ଼ରେ ଥାଇ ଶୁଣିଛି । ତୋ ବର କୁଆଡ଼େ ଗୁଲି ଖାଏ । ଆଉ, ସେଇଥିପାଇଁ ତାକୁ ତା ଭାଇ ଭାଉଜ ପଚାରନ୍ତି ନାହିଁ । ଘର ଭିତରେ ପଶିଲେ ତା ଭାଉଜ ତାକୁ ସବୁବେଳେ ଆଖିଏ ଆଖିଏ ରଖିଥାନ୍ତି । ଟୋଗାଡ଼େ ଟୋଗାଡ଼େ ଜଗିଥାନ୍ତି । କେତେବେଳେ କୁଆଡ଼େ କେଉଁ ଛିଟକରେ—

ତା ତୁଣ୍ଡରେ ହାତ ଦେଇ କହିଲି, ତୁନି ହ ରେଣୁ, ଆଉ କିଛି କହ ନା ।

ଆଉ ସେ କଅଣ କହିବାକୁ ଯାଉଥିଲା, ଶୁଣିବାକୁ ଇଚ୍ଛା ମୋର ନ ଥିଲା । ସତ ହେଉ, ମିଛ ହେଉ, ଏଣୁ ତେଣୁ ଶୁଣି ମନ କଷ୍ଟ କରିବିନାହିଁ ।

ରେଣୁ ତୁନି ହେଲା ନାହିଁ । କହିଲା, ଶୁଣ ମ ଗୋଟାଏ ମଜାର କଥା । ଥରେ କୁଆଡ଼େ ସେ କାହା ଘରୁ କଅଣ ଚୋରି କରି ବିକି ଗୁଲି ଖାଉଥିଲା ଯେ ପରେ ଧରାପଡ଼ିଲା । ମାଡ଼ ଖାଇଲା, ହାତ ଗୋଡ଼ ବାନ୍ଧି ତିନିଦିନ କାଳ ଉପାସରେ ଗୁହାଳ ଘରେ ପକାଇ ଦେଲେ ।

ଆଉ ସହି ପାରିଲି ନାହିଁ । କହିଲି, ରେଣୁ, ତୁ ବି ମୋତେ ଜାଳିପୋଡ଼ି ମାରିବାକୁ ବସିଛୁ ? ଏଗୁଡ଼ା କାହିଁକି ମୋ ଆଗରେ କହୁଛୁ ? ପର ମଣିଷର ଦୋଷ ଗୁଣ ଭଲମନ୍ଦ ଶୁଣିବାକୁ ମତେ ଭଲ ଲାଗେ ନାହିଁ । ସେ ସବୁ କଥାରେ ମୁଁ କାନ ଦିଏ ନାହିଁ ।

ରେଣୁ କହିଲା, ହାତଗଣ୍ଠି ନ ପଡ଼ୁଣୁ ତୋର ଏତେ ଯୋଗ ଲାଗିଗଲାଣି ଗୀତା ଅପା ? ଜଟାଧାରୀଙ୍କର ନିନ୍ଦା ସହି ପାରୁନୁ ? ସେ ଶିବକୁ ତୁ ତ ହେବୁ ସତୀ ପାର୍ବତୀ । ଭାରି ଭଲ ହେବ । ଖାଲି ବଡ଼ମା ଗୋଟାଏ ହଡ଼ା ଦାନ ଦେଲେ ସାରିବ ।

ହସି ହସି ଲୋଟି ପଡ଼ିଲା ।

ପ୍ରକୃତିସ୍ଥ ହୋଇ କହିଲି, ସେତକ କିଣିବାକୁ ତ ବୋଉ ପାଖେ ଖଡ଼ା ବି ନ ଥିବ । ତମର ଛଡ଼ାଟିକୁ ସାତମଙ୍ଗଳା ବାସିଯାଏ ଭଡ଼ା ଦେବାକୁ ଖୁଡ଼ୀ ମଙ୍ଗିବେ ?

ମନ ଦୁଃଖରେ ପୁଣି ହସିଲି ।

କହିଲି, କଥାଟା ମନକୁ ପାଇଲା ପରା ! ହସୁଛୁ ଯେ ?

ତା ଗାଲରେ ସରୁ ଗୁପୁଡ଼ା ମାରି କହିଲି, ହସିବି ନାହିଁ ତ କଅଣ କାନ୍ଦିବି ? ଅଟଲା ରେଣୁ, ଆଜି ମୋର ମଙ୍ଗନ, କାଲି ମୋର ବାହା । କହିଲୁ, ମନ ଖୁସିରେ ଆଜି ଟିକିଏ ହସିବି ନାହିଁ ତୋ ଆଗରେ ? ଜୀବନରେ ଆଉଥରେ ମଙ୍ଗନ ଆସିବ କି ? ଆଉ ଥରେ ବାହାଘର ହେବ କି ? ସରିଯିବ । କିଏ କଅଣ, କିଏ ଗୁଲି ଖାଇଲା କି ଗୋଟି କରି ମାଡ଼ ସହିଲା, ସେଥିରୁ ମତେ କିଛି ମିଳିବ ନାହିଁ । ସେ ସବୁ କଥା ଶୁଣି ସେ ବିଷୟରେ ଭାବି, ଜୀବନର ଏହି ଶୁଭଦିନଟି ନଷ୍ଟ କରିବି ନାହିଁ ।

ରେଣୁ କାବା ହୋଇ ମୋ ମୁହଁକୁ ଗୁହିଁଲା । ଥଙ୍ଗେଇ ଥଙ୍ଗେଇ ପଚାରିଲା, ଯାହାର ହାତ ଧରି ଯାହାର ସଂସାରକୁ ଯିବୁ ତା ସମ୍ବନ୍ଧରେ ଦି ପଦ ଶୁଣିବାକୁ ଆଗ୍ରହ ହେଉ ନାହିଁ ? ତାର ସ୍ୱଭାବ ଚରିତ, ଭଲମନ୍ଦ ଜାଣିବାକୁ ଇଚ୍ଛା ହେଉ-ନାହିଁ ? ଯେ ତୋଓର ସର୍ବସ୍ୱ, ଯେ ତୋଓର ଦେବତା—

କହିଲି, ଭୋକ କରେ ପୁଣି ଭୋକ ମରିଯାଏ । ଆଗ୍ରହ ଆସେ, ଆଗ୍ରହ ମରିଯାଏ । ରେଣୁ, ତୁ ଯାହା କହିଲୁ, ସେ ସବୁ ପର ଜୀବନର କଥା । ଆଜି ମୋର ମଙ୍ଗନ, କାଲି ମୋର ବାହା, ଆନନ୍ଦର ଦିନ ଦିଓଟି । ଭବିଷ୍ୟତକୁ ବଦଳାଇବାର ଶକ୍ତି ମୋର ନାହିଁ । ଭବିଷ୍ୟତ ମୋର ହାତରେ ନାହିଁ । କାହିଁକି ମୁଁ କାନ୍ଦିବି, ରେଣୁ ? କାନ୍ଦିବାର ବେଳ ପାଖେଇ ଆସୁଛି । ଆଜି ମୋତେ ହସିବାକୁ ଦିଅ । ପ୍ରାଣ ଭରି ଆଜି ଏ ଶୁଭଦିନରେ ତୋ ପାଖରେ ମୁଁ ହସେ, ମନ ଇଚ୍ଛା ହସେ । ତୁ ବି ମୋ ସଙ୍ଗରେ ହସ ରେଣୁ, ଆଉ ସାଙ୍ଗ ହୋଇ ହସିବାର ବେଳ ଏ ଜୀବନରେ ମୋର କେବେ ଆସିବ ନାହିଁ ।

ଗାଲ ଉପରେ ତତଲା ଲୁହର ଧାର ।

ରେଣୁ କହିଲା, ଏଇ ତୋର ମନଖୁସି ହସ, ଗୀତାଅପା ? ଏଇଥିପାଇଁ ମୁହଁଟାଣ କରି କଥା କହୁଥିଲୁ ?

ପଣତରେ ଆଖିରୁ ଲୁହ ପୋଛିଲି । ବୋଉ ଘର ଭିତରକୁ ପଶିଆସିଲା । ତା ପଛେ ପଛେ ରାଧା ।

୨୨

ବାହାଘର ଦିନ—

ଟହଲ ଚହଲ । ଖଞ୍ଜା ଫାଟି ପଡ଼ୁଥାଏ । ରାଜ ପାହାନ୍ତାକୁ ବର ଆସି ପହଞ୍ଚିଲା । ଅଲୁଅ, ବାଜା, ବାଣ । ନଗରଙ୍ଗ ଗାଁରେ ଧନ୍ୟ ଧନ୍ୟ ପ୍ରଶଂସାର ହୁରି ପଡ଼ିଥିଲା । ଏ ଗାଁରେ ଏମିତି ଆଡ଼ାରେ କାହାର ବର ଆସି ନ ଥିଲା ବୋଲି ମାଇପେ କୁହାକୁହି ହେଉଥାନ୍ତି । ସବୁ ଆୟୋଜନ ମହଜୀ ଜେଠା କରିଥିଲେ ।

ମ୍ଭ ଭିତରେ କଅଣ ହେଲା କେଜାଣି, ମୋତେ ବାଡ଼ୁଅପାଣି ଗାଧୋଇ ଦେଇ ମାଇପେ ହାଲିଆ ହୋଇ ବସି ପଡ଼ିଲେ । ବେଦୀର କର୍ମ ଆରମ୍ଭ ହେଲା ନାହିଁ । କେଜାଣି କାହିଁକି ବୋଉ ଶେଷଘରେ ବସି ଖାଲି କାନ୍ଦିବାକୁ ଲାଗିଲା । ଯିଏ ଯାହା ପଚାରିଲେ କି ବୁଝାଇଲେ କାହାରିକୁ କିଛି ଜବାବ୍ ଦେଲା ନାହିଁ । ଲୋକଙ୍କ ଭିତରେ ଗୁଞ୍ଜନ ଖେଳିଗଲା । କେତେ ପ୍ରକାରେ କିଏ ଭିନ ଭିନ କଥାଭାଷା ହେଲେ ମୋର କାନରେ ପଡ଼ିଲା ନାହିଁ । ଘଟଣା କଅଣ ମୁଁ କିଛି ବୁଝି ପାରିଲି ନାହିଁ ।

ଗାଁ ମାଇପେ, ଯେଉଁମାନେ ମୋତେ ଘେରି ବସିଥିଲେ, ବୋଉ ପାଖକୁ ଉଠିଗଲେ । ସେ କୁଆଡ଼େ ଘଡ଼ି ଘଡ଼ି ବେହୋସ ହୋଇ ପଡ଼ୁଥାଏ । ତାକୁ ଦେଖିବାକୁ ମୋର ମନ ଉଚ୍ଛନ୍ନ ହେଉଥାଏ । କିନ୍ତୁ, ଏତେ ଲୋକଙ୍କ ଆଗରେ ଉଠିଯିବାକୁ ସାହସ ହେଉ ନ ଥାଏ ।

ରାଧା ଗୋଡ଼ ଚପି ଚପି ଏ ଘରକୁ ଆସିଲା । ମନେ କରିଥିଲି, ସେ କିଛି କହିବ କିନ୍ତୁ, କିଛି କହିଲା ନାହିଁ । ମିନତିଭରା ଆଖିରେ ତା ଆଡ଼କୁ ଚାହିଁଲି । ମନର କଥା ସେ ବୁଝିଲା । ଆଖିରେ ତାର ଲୁହ ଭରି ଗଲା । କିଛି ନ କହି ସେ ଚାଲିଗଲା । ମୁଁ ସନ୍ଦେହରେ ପଡ଼ିଲି ।

ରେଣୁ ଧାଇଁ ଆସିଲା ଦାଣ୍ଡ ଆଡ଼ୁ । ମୋ ପାଖରେ ବସି ଏଣିକି ତେଣିକି ଚାହିଁ ଭିନ ଭିନ କହିଲା ଆଗ୍ରହରେ, ଦେଖି ଆସିଲି ଲୋ, ତୋର ଜଟାଧାରୀ ଶିବକୁ । ଦାଣ୍ଡଘରେ ବସିଛନ୍ତି । ଦେଖିବୁ ଗୀତା ଅପା, ଏବାଟେ ଗଲେ କେହି ଜାଣିବେ ନାହିଁ । ଦାଣ୍ଡ ଝରକାବାଟେ ଚାହିଁଦେଇ ଆସିବୁ । ସବୁ ସଫା ଦିଶୁଛି । ଯିବୁ ?

କହିଲି ତା କାନରେ, ତୁଇ ଦେଖ୍ ଲୋ, ଆଖି ପୂରାଇ ଦେଖ୍, ମୋର ଦରକାର ନାହିଁ ।

ପଚାରିଲା, ଦରକାର ନାହିଁ କାହିଁକି ?

ନିଜ ପ୍ରଶ୍ନର ଉତ୍ତର ନିଜେ ଦେଲା ଭ୍ରୂ ଲତା ଟେକି, ଓ, ବୁଝିଲି, ବୁଝିଲି, ସବୁଦିନେ ତ ଦେଖୁଥିବୁ, ଅଣ୍ଟା ଧୋଉଥିବୁ, ଗୁଣ ଗାଉଥିବୁ, ଆଜି ଏବେ ଥରଟିଏ ଅନାଇଁ ଆସିଲେ ଅଧିକ କି ହେବ ?

ତା କଥା ଶୁଣି ବିରକ୍ତ ଲାଗିଲା । ତୁନି ରହିଲି ।

ରେଣୁ କହିଲା, ମଜା କଥା ଶୁଣିଲୁଣି ଗୀତା ଅପା, ତୋ ବର ଜଟାଧାରୀ, କୁଆଡ଼େ ଅଧା ବାଟରେ ପାଲିଙ୍କିରୁ ଡେଇଁ ପଡ଼ିଥିଲା ଲୋ । ଲୋକେ ତାକୁ ଧରାଧରି କରି ଜବରଦସ୍ତି ଆଣିଛନ୍ତି ।

ରେଣୁ ମିଛ କହେ ନାହିଁ । ଘଟଣା ମିଛ ବୋଲି କହି ହସି ଉଡ଼ାଇ ଦେଇ ହେବ ନାହିଁ । ବିଷୟଟି ଜାଣିବାକୁ ଆଗ୍ରହ ହେଲା, କିନ୍ତୁ ରେଣୁକୁ କିଛି ପଚାରି ପାରିଲି ନାହିଁ । ପଚାରିଲା ଆଖିରେ ତା ମୁହଁକୁ ଚାହିଁ ସାମାନ୍ୟ ହସିଲି ।

ସେ କହିବାକୁ ଲାଗିଲା, ଶୁଣିଲୁଣି ଲୋ, ଜଣାଧାଷା ଲୁଆଡ଼େ ଅଧାପାଗଲ । ଗୁଲ୍‌ଧୂଆଁ ଟିକେ ପେଟରେ ନ ପଶିଲେ ମୁଣ୍ଡ ବଗିଡ଼ଯାଏ । ବର ହୋଇ ତ ପାଲଙ୍କିରେ ବସିଛ୍ଲା, କଏ ତାକୁ ଗୁଲ୍‌ଧୂଆଁ ଆଣିଦେବ ? ବିକଳା ଟଣ୍ଡିଆ, ଯିଏ ପାଲଙ୍କି ବୋହି ଗଲ୍‌ଥିଲା, ତାକୁ ପିକା ଖଣ୍ଡେ ମାଗିଲା । କଲେ ଝାଣି ଦେଇଥାନ୍ତା । ବିକଳା ମନା କଲାରୁ ତାକୁ ମାରିବାକୁ ସେ ପାଲଙ୍କିରୁ ଫକ୍‌କରି ତଳକୁ ଡେଇଁଲା । ବିକଳାର ଚୁଟି ଧରିଲାରୁ ସେ ଓଲଟିପଡ଼ି ଦେଲା ତ ବ୍ରହ୍ମଗୃପଡ଼ । ସେଇଠୁ—

ଆଉ କଅଣ କହିଥାନ୍ତା ଶୁଣିବାକୁ ଆଗ୍ରହ ହେଲା ନାହିଁ । କହିଲି, ରେଣୁ ତୁନ ହ । ମୋ ଆଗରେ ଏଗୁଡ଼ା ଗପୁଛୁ କାହିଁକି, ମୁଁ ତ ତୋତେ ପଚାରୁ ନାହିଁ ?

ରେଣୁ ତୁନ ହେଲା । ମୋ ପାଖରୁ ଉଠି ଚାଲିଗଲା ।

୭୩

ବୋଉ କାହିଁକି ଏତେ ଦୁଃଖରେ କାନ୍ଦୁଛି, ମୁଁ ଅନୁମାନ କରି ପାରିଲି । ଲୋକେ ତାକୁ ଠକିଛନ୍ତି । ସେମାନଙ୍କର କୁହାରେ ପଡ଼ି ସରଳବିଶ୍ୱାସୀ ବୋଉ ଅଜାଣତରେ ମୋର ସର୍ବନାଶ କରିବାକୁ ବସିଛି । ଶେଷ ବେଳରେ ସେ ଏହା ବୁଝିପାରିଛି ।

ଆର ଘରୁ ବିମଳା ଭାଇଙ୍କର ପାଟି ଶୁଭିଲା, ଏ କଅଣ କରୁଛ ଖୁଡ଼ୀ, ନିଜେ ଲୋକହସା ହେଉଛ, ଆମକୁ ବି ଲୋକହସା କରିବାକୁ ଯାଉଛ । ବାଜେ ଲୋକଙ୍କର ବାର କଥା ଶୁଣି ତୁମେ ପାଗଳ ହୋଇଛ । ଜଣି ପାଗଳ ନୁହେଁ କି ଗୁଲିଖୋର୍ ନୁହେଁ । ତୁମର ଯଦି ସନ୍ଦେହ ହେଉଛି, ଚାଲ ତା ସଙ୍ଗେ ଚାରିପଦ କଥାଭାଷା ହୋଇ ଆସିବ । ମନର ସନ୍ଦେହ ତୁଟିଯିବ ।

ବୋଉ ଚର୍କି ଉଠିଲା, ଥାଉ ଥାଉ ତମର ଭଲଲୋକ । ମୁଁ ମୋ ଝିଅକୁ ବାହା କରିବି ନାହିଁ । ଗାଁ ଲୋକେ ସମସ୍ତେ ଏକାଠି ହୋଇ ମୋ ପ୍ରାଣରୁ ଅଧିକ ମୋର ସୁନା କଣ୍ଢେଇ ଝିଅକୁ, ତାର ବାପ ଭାଇ ନାହାନ୍ତି ବୋଲି ବୁଡ଼େଇ ମାରିବାକୁ ବସିଛ । ବର୍ତ୍ତି ଥାଉଣୁ ସେ କଥା ମୁଁ କେବେ କରାଇ ଦେବି ନାହିଁ । ସେଥିପାଇଁ ତମେ ସବୁ ଯାହା କରିବାର କର ।

ବିମଳାଭାଇ କହିଲେ, ଆହା, ତୁମେ ଏତେ ଅଧୀର ହୁଅନା । ଶୁଣ, କଥାକୁ ଭଲ କରି ବୁଝ । ବର ଆସି ଦାଣ୍ଡ ଦୁଆରେ । ବିନା ଦୋଷରେ ସେ କଅଣ ଆଉ......... ।

ମୁହଁରୁ କଥା ଛଡ଼ାଇ ନେଇ ବୋଉ ପୂର୍ବପରି କଠୋର କଣ୍ଠରେ କହିଲା, ଫେରିଯିବ, ବର ଫେରିଯିବ । ତମେ ଯେଉଁମାନେ ମତେ ଗରିବ ନିଅଶ୍ରୀ ଦେଖି, ମୋର ଆଖିର ପିତୁଳା, ଜୀବନରୁ ବଳି ଅଧିକ, ଅଲଅଲ, ନିରମାଖୀ ଝିଅଟିକୁ

ହିନା ଦୋଷରେ ଅଥଳ ପାଣିକି ଠେଲି ବୁଡ଼ାଇ ମାରିବାକୁ ଚକ୍ରାନ୍ତ କରିଥିଲ, ସେହିମାନେ ଏଥିକୁ ଦାୟୀ ।

ବିମଳା ଭାଇ ବେହିଆପଣ କରି ପଗ୍ଭରିଲେ, ଗୀତାର ଅବସ୍ଥା କ'ଣ ହେବ ? ମଙ୍ଗୁଲା ଝିଅ, ବାଛନ୍ଦ ପଡ଼ିବ । ଗାଁ ନିନ୍ଦା, ନାଁ ନିନ୍ଦା । ଛି, ମିଛକଥା ଶୁଣି—

ବୋଉ ତୀବ୍ର ସ୍ୱରରେ କହିବାକୁ ଲାଗିଲା, ରଖ ତମର ଭଲଲୋକ ବିମଳା ! ତମେ ମୋ ଆଗରୁ ଚାଲିଯାଅ । ଗୀତା ମୋର ଝିଅ, ତମର ଝିଅ ନୁହଁ । ତା କଥା ମୁଁ ବୁଝିବି । ତା ବୋଝ ତମ ମୁଣ୍ଡରେ ଲଦା ହୋଇ ନାହିଁ । ମଙ୍ଗୁଳା ଝିଅ ହେଉ, ତା ଚିନ୍ତା ତମକୁ କି ଗାଁ ଲୋକଙ୍କୁ ଆଉ କରିବାକୁ ପଡ଼ିବ ନାହିଁ । ବରି ଫେରିଯାଉ— କହିହେଅ ।

ତମେ ବିମ, କାଗଜ ଖଣ୍ଡରେ ମୋର ଦସ୍ତଖତ କରାଇ ନେଇଛ । ଘର ଉହଟା ନିତେଇ ବନ୍ଧା ରଖିବେ ବୋଲି କହି ନିଜେ କିଣିଲ ବୋଲି ଲେଖିଛ । ଦଶ ଟଙ୍କା ଦେବ ବୋଲି କହି ଶହେ ଟଙ୍କା ସାଆନ୍ତଙ୍କୁ ବାହାଘର ପାଇଁ ଦେଇଛ । ତମ ଭଲପଣିଆଁ ଜଣାଗଲାଣି । ଗୀତାକୁ ପାଣିକି ଠେଲିଦେଇ, ମୋତେ ଦାଣ୍ଡରେ ବସାଇ ଏ ଘର ଦଖଲ ନେବ ବୋଲି ଚକ୍ରାନ୍ତ କରିଛ । ସେଥିପାଇଁ, ଗୀତାର ବାହାଘର ପାଇଁ ତମେ ଆଜି ଅଲୋଡ଼ା ମୁରବି ପଣ ଦେଖାଇ ବିକଳ ହୋଇ ଧାଇଁ ଆସିଛ । ପଳା ମୋ ଆଗରୁ । କାଗଜ ଖଣ୍ଡ ଧରି କ'ଣ କରୁଛ କର ।

ବିମଳା ଭାଇଙ୍କର ପାଟି ଶୁଭିଲା ନାହିଁ ।

୭୪

ଦାମଭାଇଙ୍କ ସତର୍କ ବାଣୀ ମୋର ମନେ ପଡ଼ିଲା । ବୋଉକୁ ସେ କେତେ ଅନୁରୋଧ, ଅନୁନୟ, ସାବଧାନ କଲେ, ବୋଉ ଶୁଣିଲା ନାହିଁ । ତାଙ୍କ ଉପରେ ଅବିଶ୍ୱାସ କରି ସନ୍ଦେହ କରି ତାଙ୍କୁ ଟାଣ କଥା କହି ଘରୁ ତଡ଼ି ଦେଲା । ସେହି ଅଭିମାନରେ ସେ ଆଉ ଆସି ନାହାନ୍ତି । ଗାଁ ଛାଡ଼ି ଚାଲି ଯାଇଛନ୍ତି । ଅଶାନ୍ତିରୁ ଦୂରରେ ରହିବାକୁ ମୋ ବାହାଘର ପରେ ଫେରିବେ ବୋଲି କହି ଯାଇଛନ୍ତି । ଆଜି ଅବେଳାରେ ଅଡ଼ିବସିଲେ ଆଉ ଲାଭ ନାହିଁ । ବୋଉର କଥା କେହି ଶୁଣିବେ ନାହିଁ ।

ମୁଁ ଗାଆଁର କଳଙ୍କ ବୋଲି ମତେ ଗାଁରୁ ତଡ଼ିବାକୁ ସମସ୍ତେ ଏକାଠି ହୋଇ ପଣ କରିଛନ୍ତି । ସେମାନେ ବୋଉର ବାଧା ମାନିବେ ନାହିଁ ।

ଦୁର୍ନାମର ମାତ୍ରା ବଢ଼ିବ । ମୁଇଁ ହେବି ହିଟହଟା । ବୋଉର ଦିନ ଅଶାନ୍ତିରେ କଟିବ । ଏତେ କଥାରୁ ମିଳିବ କ'ଣ ? ଜାଣିକରି ତ ଦହଗଞ୍ଜିଆ ଜୀବନ ।

ଭାଗ୍ୟକୁ ପୋଡ଼ା ଅଙ୍ଗାର କରି ଷଠୀ ଜନ୍ମ ଦେଇଛନ୍ତି । ଯେତେ ନୀଚ ବୁଦ୍ଧି ହେଲେ ନୃସିଂହର କବଳରୁ ପରିତ୍ରାଣ ମିଳିବ ନାହିଁ ।

ଆଜି ଅଶାନ୍ତି ସୃଷ୍ଟି ହେବ କାହିଁକି, ବର ଫେରିଯିବ କାହିଁକି ? ମୋର ବାହାଘର ହେବ । ସମସ୍ତେ ନିଶ୍ଚିନ୍ତ ହେବେ । ବୋଉ ମୁଣ୍ଡରୁ ବୋଝ ଖସିବ । ବାହାଘର ପରେ ଭବିଷ୍ୟତ କଅଣ ହେବ ସେକଥା କେହି ବୁଝିବେ ନାହିଁ କି ଜାଣିବେ ନାହିଁ । ମୋର ସୁଖ ଦୁଃଖ ନେଇ ମୁଁ ଜୀବନ କାଟିବି । କାହାରି ପାଖରେ ଗୁହାରି କରିବାକୁ ଆସିବି ନାହିଁ । ଦୁଃଖ ଯନ୍ତ୍ରଣା ଅସହ୍ୟ ହେଲେ ଯାହା ବୁଦ୍ଧି ଦିଶିବ, କରିବି ।

ଭାବିଲି, ବୋଉକୁ ଏକୁଟିଆ ପାଇଲେ ସବୁ ବୁଝାଇ କହିବି । କାଠ, ପଥର, ଜଡ଼ାଧାଗା, ମୋ ପକ୍ଷରେ ସବୁ ସମାନ । ବାହାଘର ତ ହେବାର କଥା, ଯାହା ସଙ୍ଗେ ହେଲେ କ୍ଷତି ବା ଲାଭ କିଛି ନାହିଁ । ବର ଫେରିଗଲେ ବିମଳାଭାଇ ଓ ମହନ୍ତି ଜେଠା ବୋଉ ଦେଇଥିବା କାଗଜ ଫେରାଇ ଦେବେ ନାହିଁ କି ଆଉ ଠିକ୍କା ଦେବେ ନାହିଁ । ମହନ୍ତି ଜେଠାଙ୍କର ବିନା ପରାମର୍ଶରେ ବିମଳାଭାଇ ନିଜେଇ ଦାଦାଙ୍କ ନାମ ଧରି ବୋଉକୁ ଠକି ନିଜ ନାମରେ ଘର ଭିହ ବିକି ହେଲା ବୋଲି ଲେଖାଇ ନେବାକୁ ସାହସ କରି ନ ଥାନ୍ତେ ।

ଚକ୍ରାନ୍ତଟା ଏଥର ଜଣା ପଡ଼ିଲା । ବାହାଘର ହେଉ କି ନ ହେଉ ଦିନ ସାତଟା ନ ପୂରୁଣୁ ବିମଳାଭାଇ ମହନ୍ତି ଜେଠାଙ୍କ ସାହାଯ୍ୟରେ ଏ ଘରେ ତାଲା ପକାଇବେ । ଆମର ଗତି ହେବ କଅଣ ? କେଉଁଠି ମୁଣ୍ଡ ଗୁଞ୍ଜିବୁ ? କିଏ ଆଶ୍ରା ଦେବ ? ଚଳିବୁ କପରି ?

ମହନ୍ତି ଜେଠାଙ୍କ ଘରେ ଆଶ୍ରା !

ଧାନକୁଟା, ବାସନ ମଜା, ପୋଇଲି ପଣ । ସତେ, ଶେଷକୁ ଏହା ବି ହେବ ? ଦାମଭାଇଙ୍କର କବଳରେ ପଡ଼ିବି ? ନିଆଶ୍ରା ଦରିଦ୍ର ଆଶ୍ରା ପାଇଲେ ଆଶ୍ରୟ ଦାତାର ମଡ଼ି ବିଚଳିତ ହେବ । ବରଂ ମରଣ ଭଲ । ଅତି ସହଜ । ହାତର କଥା ।

ମରଣ ଅପେକ୍ଷା ନୃସିଂହର ଶରଣ ପଶିବା ଭଲ ।

ନିରୋଳାରେ ବୋଉକୁ ପାଇଲେ ଏ କଥା ବୁଝାଇ ଦିଅନ୍ତି । କହନ୍ତି, ବର ଫେରିବ ନାହିଁ ।

୭୫

ଗାଁ ଲୋକଙ୍କର ଧମକ ଚମକରେ ବ୍ୟତିବ୍ୟସ୍ତ ହୋଇ ଗୁଇନେଉଁ ବେଳେ ବୋଉ ଦରପାଗଳୀ ପରି ମୋ ପାଖକୁ ଆସିଲା । ଗାଁ ମାଇପେ ତାକୁ ଘେରି ରହିଥାନ୍ତି । ତାର ସେତେବେଳକାର ରୂପଟି ଆଜି ବି ମୋର ଆଖି ଆଗରେ ଉଭା

ହୁଏ । ଅଲଗ ବାଳ, କୋରଡ଼ ଆଖି, ଅସଂଯତ ଲୁଗାପଟା । ମୁହଁରୁ କଲାପାଣି ନିଗିଡ଼ ପଡ଼ୁଛି । ଝଲଝଲ ଗୃଲୁଛି ।

ସେ ଆସି ମୋତେ କୁଣ୍ଢାଇ ଧରି ମନଇଚ୍ଛା ବାହୁନିବାକୁ ଲଗିଲା । ଯିଏ ଯେତେ ବୁଝାଇ କଲେ ସେ ମାନିଲା ନାହିଁ । ତାର ସେଇ ବାହୁନା ଭିତରେ ପୂରି ରହିଥିଲା ଗାଁ ଲୋକଙ୍କ ପ୍ରତି ଅଭିଶାପ । ଜଣ ଜଣ କରି ନାଁ ଧରି ସେ ମନଇଚ୍ଛା ଶୋଧୁଥାଏ । କହୁଥାଏ, ବର ଫେରିଯାଉ, ସେ ନିଜ ହାତରେ ମୋ ମୁହଁରେ ଜହର ଦେବ । ସବୁ ଜାଣି ଶୁଣି ମୋତେ ସେ ଗୋଟାଏ ଗୁଲିଖୋର, ଚୋର, ଦରପାଗଲା ଲୋକ ହାତରେ ସମର୍ପି ଦେବ ନାହିଁ ।

ଏ ସବୁ କାଣ୍ଡ ଦେଖି ମୁଁ ଥକା ହୋଇ ରହୁଥାଏଁ । ମୋର କାନ୍ଦ ବନ୍ଦ ହୋଇ ଯାଇଥାଏ । ତୁଣ୍ଡରୁ କଥା ବାହାରୁ ନ ଥାଏ । ଖାଲି ବଲବଲ କରି ଯିଏ ମୁହଁରୁ ତା ମୁହଁକୁ ଅନାଉଥାଏ । କଅଣ କହିବ, କଅଣ କରିବ, କିଛି ସ୍ଥିରକରି ପାରୁ ନ ଥାଏ । ମୋ ଥିବାଘରେ ମାଇପେ ଏପରି ଭିଡ଼ ହୋଇ ରହିଥାନ୍ତି ଯେ ନିଶ୍ୱାସ ମାରିବାକୁ ସୁଦ୍ଧା କଷ୍ଟ ହେଉଥାଏ । ଅଗଣାରେ ସେହିପରି ଲୋକଭିଡ଼ । ଧୋ-ଧାରେ କାନ ଅତଡ଼ା ପଡ଼ୁଥାଏ ।

ମହନ ଜେଠାଙ୍କର ପାଟି ଶୁଭିଲା ।

ମାଇପେ ହଉଗ ହୋଇ କଡ଼େଇଗଲେ । ମହନ ଜେଠା ଘର ଭିତରକୁ ପଶିଆସି ବୁଝାଇ କହିଲେ, ଏ କଅଣ କରୁଛ ଗୀତା ବୋଉ ? ହଁ, ଝିଅ ବାହାଘର ହେଉଛି, ମନରେ ଦୁଃଖ ହେବାର କଥା । ଦୁଃଖ କଲ, କାନ୍ଦିଲ ବୋବାଇଲ, ଆସି ଗ୍ଲାଇ ନେଉଟ ହେଲା, ଉପାସ ଭୋକରେ କୁଣିଆଁ ମୈନ୍ଧ ଠକ୍ ଠକ୍ ହେଉଛନ୍ତି । ଉଠ, ଝିଅକୁ ବେଦିକୁ ନିଅ । ଆଉ ଲୋକହସା କରନାହିଁ । ଝିଅ ମଙ୍ଗୁଳା ହୋଇ ବସିଛି । ଉପାସ ଭୋକରେ ଜୋଇଁ ପିଲାକୁ ଝୋଲା ମାରି ଯାଉଛି, ଉଠ— ।

ବୋଉର କାନ୍ଦଣା ବନ୍ଦ ହୋଇଗଲା । ଦେହଂଶୁର ମାନ୍ୟ ଗ୍ଲଡ଼ି ସେ ନିର୍ଭୟ ନିଃସଂକୋଚରେ ଜବାବ୍ ଦେଲା, ଝିଅ ବେଦୀକି ଯିବ ନାହିଁ । ଏପରି ଅପାତ୍ରରେ ମୁଁ ମୋର ଝିଅକୁ ଦେବ ନାହିଁ ।

ଆଶ୍ଚର୍ଯ୍ୟ ହେଲାପରି ମହନ ଜେଠା କହିଲେ, ଅପାତ୍ର ? ହା, ହା, ବାର ଲୋକଙ୍କର ବାର କଥା ଶୁଣି ତମର ମନ ଖରାପ ହୋଇ ଯାଉଛି । ଖଲଲୋକେ ଶତ୍ରୁ ଲୋକେ ଦୁର୍ନାମ କରିବେ । ସେଥିରେ କାନ ଦେଉଛ କାହିଁକି ? ଛି, ଉଠ । କାହାର ସ୍ତ୍ରୀ, କେଉଁ କୁଳର ବୋହୂ ତମେ, ମିଛ କଥାରେ କାନ ଦେଇ କୁଳର ମାନ ମହତ୍ତ୍ୱକୁ ହ କଡ଼ା କରୁଛ, ଗାଁର ମର୍ଯ୍ୟାଦା ହାନା କରୁଛ ? ବୁଢ଼ା ହେଲ, ଜୀବନର ଦ ପାଖେ ଦ ଗୋଡ଼ ଦେଇ ଗୃଲୁଛି, ହେତୁ ପାଇଲା ଦିନୁ ଏ ଗାଁରୁ

କେବେ ବର ଫେରିଯିବା କଥା ଶୁଣି ନାହିଁ । ଗ୍ଳାନି ନେଉଥିଲି, ଆଉ ଡେରି କର ନାହିଁ ।

ବୋଉ କହିଲା, ମୋତେ ବଳାନ୍ତୁ ନାହିଁ । ମୁଁ ଯଦି ଭୁଲ ବୁଝିଥାଏ ମୋର ଭୁଲଟା ମୋତେ ଠିକ୍ । ସାଆନ୍ତେ, କର୍ତ୍ତା ହୋଇ ଝିଅ ଦାନ କରିବାକୁ ବସିଛନ୍ତି, ଯେଉଁ ପାତ୍ର ହାତରେ ଝିଅଟିକି ଟେକି ଦେବେ, ସାଆନ୍ତଙ୍କ ହାତରୁ କନ୍ୟାଦାନ ନେବାର ଉପଯୁକ୍ତ ପାତ୍ର ତ ସେ ?

ମହନ ଜେଠା ଚୁପ ରହିଲେ ।

ବିମଳାଭାଇ ପଛରୁ କହି ଉଠିଲେ, ଖୁଡ଼ୀ ଯଦି ବେଦକାମ କରିବାକୁ ଅଣ୍ଟା ଭିଡ଼ୁନାହାନ୍ତି ତେବେ ଆଉ ଏତେ ମାଇପେ ଏଠି ଅଛନ୍ତି, ଝିଅକୁ ବେଦକି ଆଣନ୍ତୁ ।

ତାଙ୍କର କଥା ଶୁଣି ରାଗ ତମତମ ହୋଇ ତାଙ୍କର ସ୍ତ୍ରୀ ଗର୍ଜି ଉଠିଲେ, ତମକୁ ଏତେ ଭଲଲୋକ କରିବାକୁ କିଏ କହୁଛି ହୋ, ମାଇକିନା ଝିଅର ନିଃଶ୍ୱାସ ଯେ ନାଗସାପର ନିଶ୍ୱାସଠୁଁ ବଳି ଖର । ଜାଣି ଜାଣି କିଏ ତା ଦେହରେ ହାତ ଦେବ ? ବିଧବା ଦରିଦ୍ର ସ୍ତ୍ରୀଲୋକକୁ ମିଛ କହି, କେଉଁ ଅଲପାଆଇସାର ଶିକ୍ଷାରେ ପଡ଼ି, କାଗଜ କରେଇ ନେଇଛ । ଟଙ୍କା କେଉଁଠୁ ଆଣିଲ, ସେ କାଗଜଟା କଅଣ କଲ ମତେ ଆଜିଯାଏ କହିନ । ରାଣ୍ଡ ଖଣ୍ଡ୍ରୀଙ୍କର ଡିଅ ଆମର ଲୋଡ଼ା ନାହିଁ । ତାଙ୍କ କାଗଜ ତାଙ୍କୁ ଫେରାଇ ଦିଅ କହୁଛି, ନୋହିଲେ କଅଣ କରିବ ବଲେ ଦେଖିବ । ଗୀତା ପରିକା ସୁବର୍ଣ୍ଣ ପ୍ରତିମା ଝିଅ, ମାଛିକୁ ମ କହେ ନାହିଁ । ହଲିଲା ପାଣିକି ହାତ ବଢ଼ାଏ ନାହିଁ, ବୁଦ୍ଧିମତୀ, ସବୁ ଗୁଣରେ ବିଚକ୍ଷଣ ହେଲେ ବି ଯିଏ ସର୍ବସହଣୀ, ଯେତେ ଛିଗୁଲେଇ କରି କହିଲେ ବି ଯିଏ ଓଲଟି ପଦେ ଜବାବ ଦିଏ ନାହିଁ, ତାକୁ ଯେଉଁମାନେ ଫାଶୀ ଖୁଣ୍ଟରେ ଝୁଲାଇ ପୁଣ୍ୟ ଅର୍ଜିବାକୁ ଆଗେଇଛନ୍ତି ସେମାନେ ଯାହା କରିବାର କରନ୍ତୁ । ତମେ ପାଟି ଫିଟାଅ ନାହିଁ କହୁଛି । ତମ ପାପର ଭାଗୀ ହେବାକୁ ମୁଁ କେବେ ଏ ପୁରରେ ରହିବି ନାହିଁ ।

ଆଶ୍ଚର୍ଯ୍ୟ ହୋଇ ବିମଳା ଭାଇର ସ୍ତ୍ରୀଙ୍କ ଆଡ଼କୁ ସମସ୍ତେ କଣେଇଁ ଚାହିଁଲେ, ସତେ କି ତାର ମିଠି ମିଠି ଆଖିରୁ ନିଆଁ ଝରୁଛି । ଉତ୍ତର ନ ଦେଇ ବିମଳା ଭାଇ ପଛେଇ ଗଲେ ।

ମହନ ଜେଠା ଭାବିଚିନ୍ତି କହିଲେ, ତେବେ ଦାମ ବୋଉ, ତମେ ଗୀତାକୁ ନେଇ ଆସ । ଯେଉଁମାନେ ବାହାଘରରେ ଯୋଗ ନ ଦେବେ, ସେମାନେ ତଫାତ୍ ହୋଇ ଯାଉନ୍ତୁ । ସୁଆଙ୍ଗ ନୁହେଁ ଯେ ସମସ୍ତେ ଦେଖିବାକୁ ହାମୁଡ଼େଇ ପଡ଼ିବେ ।

ବଡ଼ମା ଉତ୍ତର ଦେବା ଆଗରୁ ବୋଉ ଗର୍ଜିଉଠି ଠିଆହେଲା । କହିଲା, ସତେ, ଏତେ ସାହସ କାହାର ଅଛି ? ମୁଁ ବଞ୍ଚି ଥାଉଣୁ ମୋର ଛାତି ଉପରୁ ମୋର

ଝିଅକୁ ଛାଣି ନେବ କିଏ ? ତାର ବାପ ନାହିଁ ବୋଲି ଯେଉଁମାନେ ଏପରି ଭାବୁଛନ୍ତି, ଆସନ୍ତୁ ଦେଖି ସେମାନଙ୍କର କେତେ ସାହସ ।

ମତେ ସବୁ ସ୍ୱପ୍ନପରି ଲାଗୁଥାଏ । ଛନପୁର ଅନ୍ଧାର ଦେଖା ଯାଉଥାଏ । ଏତେ ବାଦାନୁବାଦ ତର୍କବିତର୍କ ଶୁଣି ମୁଁ କାନ୍ଦି କାନ୍ଦି କହି ଉଠିଲି, ଆଉ ତୁ ବାଧା ଦେ ନା ବୋଉ, ମୋର ଭାଗ୍ୟ ମୋତେ ଛାଣି ନେଉଛି । ବର ଫେରିବ କାହିଁକି ?

ସମସ୍ତେ ଭୂନହୋଇ ମୋରି ଆଡ଼କୁ ଅନାଇଁଲେ ।

ବୋଉ ଥକ୍କା ହୋଇ ଚାହିଁଲା । ଆଖି ଛଳଛଳ କରି ମୋ ଓଠରେ ହାତ ଦେଇ ଭଙ୍ଗାସ୍ୱରରେ ପଚାରିଲା, ତୋ ମନରେ ଅଶାନ୍ତି ନାହିଁ ତ ମା ?

ମୁଣ୍ଡ ହଲାଇ କହିଲି, ନା—ଆଁ ।

ମହନ ଜେଠା କହି ଉଠିଲେ, ଦେଖିଲ ଦେଖିଲ, ଗୀତାର କେତେ ବୁଦ୍ଧି ! ମା ମୋର ଭଲ ପିଲା । ଭଲ ମନ୍ଦ ସବୁ ବୁଝିପାରେ । ଆଉ ଉଚ୍ଚୁର କରନା । ଝିଅକୁ ବେଦୀକୁ ଆଣ । ବରଯାତ୍ରୀ ବ୍ୟସ୍ତ ହେଲେଣି । ଶୁଭକାମ ଶୀଘ୍ର ସରିଲେ ସବୁ ମଙ୍ଗଳ ।

ନିଜ ମୁହଁରେ ମୁଁ ମୋର ମରଣ ଆଦେଶ ଶୁଣାଇଁ ଦେଇଛି । ଆଉ ଯେଉଁସବୁ କର୍ମ ହେବ ସେ ସବୁ ତ ଲୌକିକତାର ପ୍ରକରଣ—ବେଦୀ, ହାତଗଣ୍ଠି, ବିଦାବିଦ । ବାରିଆଡ଼ର ଆମ୍ବଗଛ, ନଇଁଲା ଡାଳ, ଶ୍ରେଷ୍ଠ ଖଣ୍ଡିଏ ଦଉଡ଼ି । ହଁ, ବିଦାବିଦ !

୨୨

ଲୋକଗହଳି ଠେଲି କିଏ ଜଣେ ମୋ ପାଖକୁ ଆସି ଥରିଲା ସ୍ୱରରେ କହିଲେ, ପାଗଳ, କାହା ଉପରେ ଅଭିମାନ କରି ନିଜର ସର୍ବନାଶ କରିବାକୁ ଯାଉଛୁ ?

ମୁଣ୍ଡଟେକି ଚାହିଁଲି । ଦୁନିଆରେ ଯେଉଁ ଜଣକ ମୋ ଆଖି ଲୁହର ଅର୍ଥ ବୁଝନ୍ତି ସେଇ ମୋର ଦାମଭାଇ, ମୋ ଆଗରେ ଠିଆ ହୋଇଛନ୍ତି । ଦୁଇ ଆଖିରୁ ଦୁଇଧାର ଲୁହ ଗଡ଼ି ପଡ଼ୁଛି ।

ଭୁଲିଗଲି ଏତେ ଲୋକଙ୍କର ଉପସ୍ଥିତି । ଭୁଲିଗଲି ନିଜକୁ । ଅଧୀର ହୋଇ ତାଙ୍କର ଗୋଡ଼ତଳେ ମୁଣ୍ଡ ଲଗାଇ ଦୁଇଗୋଡ଼ ଯାବୁଡ଼ି ଧରିଲି । ଆକୁଳ କଣ୍ଠରେ କହି ଉଠିଲି, ଭାଇ,ଭାଇ, ତମେ ଆଉ କାହିଁକି ଆସିଲ ? ତମେ ଯାଅ, ତମେ ଚାଲିଯାଅ ଏଠୁ । ତମର ଗେହ୍ଲା ଭଉଣୀ, ତମର ଟିକି ଭଉଣୀ, ଧାନକପାଳୀ ଗୀତାକୁ—

ଆଉ୍ କହି ପାରିଲି ନାହିଁ । ତାଙ୍କର ଦୁଇଟଗୋଡ଼କୁ ଅନ୍ଧର ଯୋର୍‌ରେ ଚୁପି ଧରିଲି । ଭେ଼ ଭେ଼ ହୋଇ କାନ୍ଦି ଉଠିଲି । ସେତେବେଳେ ମୋର ଭାବବାର ସବୁ ଶକ୍ତି ହଜି ଯାଇଥିଲା, ଛନପୁର ଅନ୍ଧାର ଦିଶୁଥିଲା । ଏକ ଆଖିରେ ଚାହିଁ ରହିଥିଲି । ମୋର ଦାମ ଭାଇର ଲୁହଝରା ମୁହଁକୁ ।

ମହନ ଜେଠା ଗର୍ଜି ଉଠିଲେ, ତୁ ଯା ଦାମ, ତୁ ଏଠୁ ଚାଲିଯା ।

ଦାମଭାଇ ଆଖିରୁ ଲୁହ ପୋଛିଲେ । କୋହମିଶା ଅସ୍ଥିର ସ୍ୱରରେ କହି ଉଠିଲେ, ସୁଅଙ୍ଗ ବେଶୀ ଦୂର ଅଗେଇ ଗଲାଣି । ଏଥର ଭାଙ୍ଗ । ଗୋଟିଏ ସରଳ, ନିରୀହ, ନିଷ୍କପଟ ଝିଅର ବାର ଦୁର୍ନାମ ମିଛରେ ରଟାଇ ମନ ସନ୍ତୋଷ ହେଲା ନାହିଁ ଯେ ଅଧିକ ତାର ସର୍ବନାଶ କରିବାକୁ ବସିଛ ? ଭାବିଛ କି ତାର କେହି ନାହିଁ ? ତୁମେ ସବୁ ଭୁଲ୍ ବୁଝିଛ । ଗୀତାର ବଡ଼ଭାଇ ଫେରି ଆସିଛି । ଗୀତାର ବାହାଘର ସେ କରିବ । ସଂସାରରେ ଗୀତାଲକ୍ଷ୍ମୀ ପାତ୍ରର ଅଭାବ ହେବେ ନାହିଁ । ମଙ୍ଗୁଳା ଝିଅ ପାଇଁ ଅଜ ମୁଁ ତା ଉପଯୁକ୍ତ ବର ଖୋଜି ଆଣିବ । ନ ଆଣିବାଯାଏ ଏ ଗାଁକୁ ଫେରିବ ନାହିଁ । ଗୁଲିଆ କଟିଆ ବାହୁଡ଼ି ଯାଉ । ତୁମେ ସବୁ ବି ଯାଇପାର । ଗୀତା ଭାଇ ଦାମ ଅଜ ପ୍ରତିଜ୍ଞା କରି ଆସିଛି ସେ ଅଜଠାରୁ ତ୍ୟାଜ୍ୟ ପୁତ୍ର ହେବ । ଆଉ କଅଣ ତୁମେ ଚାହୁଁଛ ?

ଦାମ ଭାଇ ମୋର ଥରିଲା ହାତ ଧରି ଉଠାଇଲେ । ଆଖି ଛଳ ଛଳ କରି କହିଲେ, ଭାଇ ତୋର ଫେରି ଆସିଛି ଗୀତା, ଚୁନ ହ । ଅଭିମାନ କରି ଚାଲି ଯାଇଥିଲି । ଦୂରରେ ଥାଇ ଏଇସବୁ ଦୃଶ୍ୟ ଅନୁମାନ କରୁଥିଲି । ସହି ପାରିଲି ନାହିଁ । ରହି ପାରିଲି ନାହିଁ । ଯେଉଁ ଛିକି ଭଉଣୀ, ଟେଲବସର ସୁନା ଭଉଣୀକୁ ପିଠିରେ କାଖରେ ଧରି ସ୍ନେହ କରୁଥିଲି, ମୋ ପାଇଁ ଯେଉଁ ନିର୍ଦୋଷ, ନିଷ୍କଳଙ୍କ ଭଉଣୀଟି ନିନ୍ଦା ଅପବାଦ, ଅପମାନର କୁହାଟ ଶୁଣି ନୀରବରେ ଲୁହ ଢାଳୁଛି, ବଞ୍ଚି ଥାଉଁଣୁ ମୁଁ ତାକୁ ହାଣ ମୁହଁକୁ ଯିବାର ଦେଖି ପାରିବି ନାହିଁ ।

ଆଉ କଅଣ କହିବାକୁ ବସିଥିଲେ କହି ପାରିଲେ ନାହିଁ । ଦୁଇ ହାତରେ ମୁହଁ ଲୁଚାଇ ପିଲାଙ୍କ ପରି ସେ କାନ୍ଦିବାକୁ ଲାଗିଲେ । ଗୋଟିଏ ଅଚଳ କାଠ ପିତୁଳା ପରି ମୁଁ ଠିଆ ହୋଇ ରହିଲି । ମୋର କାନ୍ଦଣା ବନ୍ଦ ହୋଇଗଲା ।

ଦାମଭାଇ ପ୍ରକୃତିସ୍ଥ ହେଲେ । ଆଖିରୁ ଲୁହ ପୋଛିଲେ ।

ମହନ ଜେଠା ପାଖକୁ ଆସି କହିଲେ, ଆରେ ଦାମ, ତୁ ତୋର ବାଇଆ ବୁଦ୍ଧି ଛାଡ଼ । ଶୁଭ କର୍ମରେ ବାଧା ଦେବା ଭଲ ନୁହେଁ ।

ଦାମଭାଇ ଉତ୍ତେଜିତ ହୋଇ କହିଲେ, ପିଲାଟି ଦିନରୁ ବହୁତ ଉପଦେଶ ଆପଣ ଶୁଣାଇଁଛନ୍ତି, କେବେ ଅମାନ୍ୟ କରିନାହିଁ । ମୁଁ ମନିଷ ହୋଇଛି କି ଅମଣିଷ ହୋଇଛି, ଲୋକେ ତାହା ବିଚାର କରିବେ । ପର ଝିଅର ଜୀବନକୁ ହାତରେ ଧରି ଖେଳିବାର ଯେଉଁ ଚକ୍ରାନ୍ତ ଓ ସେଥିପାଇଁ ଯେଉଁ ଉପଦେଶ ଆପଣ

ବାଡ଼ିବେ ସେତକ ନ ମାନିବାର ଦୋଷ ମୁଁ ଗ୍ରହଣ କରୁଛି । ଆପଣ ମୋତେ ତ୍ୟାଜ୍ୟପୁତ୍ର କରିବେ ତ କରନ୍ତୁ । ମୋର ପିଣ୍ଡରେ ପ୍ରାଣ ଥିବାଯାଏ ଗୋଟାଏ ଚୋର, ଗୁଲିଖୋର, ମୂର୍ଖ, ଅଧାପାଗଳ ବେଂଗଣା ଦରବୁଢ଼ା ଲୋକ ଜଟିଆ ସାଙ୍ଗରେ ମୋର ଏଇ ଗେଲବସର ଝିଅ ଭଉଣୀର ବାହାଘର ମୁଁ କଦାପି କରାଇ ଦେବ ନାହିଁ । ପ୍ରତି ମୁହୂର୍ତ୍ତରେ ଭୋଳ ଦାଦାର ଆତ୍ମା ମୋର ମନ ଭିତରେ ବାହୁନୁଛି ବାପା ! ଗୀତା ପାଇଁ ମୁଁ ସହରର ଗୁନ୍ଦ ଖୋଜି ଆଣିବ । ବରକୁ ବାହୁଡ଼ାଇ ଦିଅନ୍ତୁ । ଆପଣ ମାନେ ବି ଚାଲି ଯାଉନ୍ତୁ । ଗୀତାର ବଡ଼ଭାଇ ମୁଁ, ମୋ କାମ ମତେ କରିବାକୁ ଛାଡ଼ି ଦିଅନ୍ତୁ ।

ପୁଣି ଦାମଭାଇଙ୍କ ଆଖିରୁ ଲୁହଧାର ଗଡ଼ି ଆସିଲା ।

୨୨

ବର ଫେରିଗଲା ।

ଗାଁ ଲୋକେ ମଧ୍ୟ ଫେରିଗଲେ । ପଛରେ ସେମାନେ କିଏ କେତେ ସମାଲୋଚନା କରିଥିବେ କି ଦୁର୍ନାମ ରଟାଇ ଥିବେ ଶୁଣିବାକୁ ମୋର ସୁବିଧା ହୋଇନାହିଁ ।

ଗହଳ ଚହଳ ପାଟିତୁଣ୍ଡ ସବୁ ବନ୍ଦ ହୋଇଗଲା । କପର ଖରାପ ଲାଗିଲା ।

ଜହ୍ନ ଆଲୁଅ ବିସ୍ତି ହୋଇଥିଲା ଦୁନିଆ ସାରା । କିନ୍ତୁ ସେ ଆଲୁଅରେ ସତେ କି ସରସତା ନାହିଁ, ସ୍ନିଗ୍ଧତା ନାହିଁ, କୋମଳତା ନାହିଁ । ସେହି ମୌନ ଶୁଭ୍ର ଆଲୁଅ ଭିତରୁ ଝରି ପଡ଼ୁଥିଲା ବିଷାଦ, କାରୁଣ୍ୟର ବିକଳ ଭାବ ।

ସଞ୍ଜ ପବନ ବହି ଆସିଲା ସିଁରିସିଁରି । ଥରି ଥରି କାନ୍ଦି ଉଠିଲା ପ୍ରକୃତି ଆଜି ବାହାରର ସେହି କାନ୍ଦଣାର ପ୍ରଭାବ ମୋର ଛାତି ଭିତରେ ଗୁମୁରାଇ ଦେଲା ବ୍ୟଥାର ରାଗିଣୀ । କାହିଁକି ସେ ବିଷାଦ ଜାଣି ପାରିଲି ନାହିଁ ।

ମଙ୍ଗୁଲା କନ୍ୟା ମୁଁ, ଅଧା ଅନ୍ଧାର ଘରେ ବସିଛି, ମୌନ ହୋଇ । ପାଖରେ ବସିଛନ୍ତି ଦାମଭାଇଙ୍କ ସ୍ତ୍ରୀ । କୋଳରେ ତାଙ୍କର ପିଲାଟି ଶୋଇ ପଡ଼ିଛି ।

ରାଧା ଆଲୁଅ ନେଇ ଆସିଲା । ନୂଆବୋହୂ ମୁଣ୍ଡ ଟେକି ତା ଆଡ଼କୁ ଚାହିଁଲେ । ପଚାରିଲେ, କେତେବେଳେ ସେ ଫେରିବେ ଲୋ, ରାଧା ?

ଫେରୁଥିବେ । ବେଶୀ ବାଟ ନୁହେଁ ଯେ ।

ବୋଉ ?

ଗୀତାବୋଉଙ୍କ ପାଖରେ ଦାଣ୍ଡରେ ବସିଛନ୍ତି । ବିମଳା ଭାଉଜ କଅଣ କହୁଛି, ଶୁଣୁଛନ୍ତି ।

ନୂଆବୋହୂ କହିଲେ, ପିଲା ଶୋଇ ପଡ଼ିଲାଣି ।

ରାଧା କହିଲା, ତାକୁ ସେଇଠି ଶୁଆଇ ଦେଉ ନା ।

ସେ ଚାଲିଗଲା । ନୂଆବୋହୂ ପିଲାଟିକୁ ତଳେ ଶୁଆଇ ଦେଉଥିଲେ, ତାଙ୍କ ହାତରୁ ଆଣି ମୋଓଡ଼ର କୋଳରେ ଶୁଆଇଲି ।

ମନରେ ପ୍ରଶ୍ନ ଉଠୁଥାଏ, ଦାମଭାଇ ଗଲେ କୁଆଡ଼େ ? ବର ଫେରିଯିବା ପରେ ଏମାନଙ୍କ ସଙ୍ଗେ ଗୁପ୍ତରେ ସେ କଅଣ ପରାମର୍ଶ କଲେ ? ତା ପରେ ସଞ୍ଜ ଆଗରୁ ବାହାରି ଗଲେ କାହିଁକି ?

କାହାରିକୁ କିଛି ପଚାରିବାକୁ ସାହସ ହେଉ ନ ଥାଏ ।

## ୭୮

ଘଣ୍ଟାକ ପରେ ବୋଉ, ବଡ଼ମା ଓ ବିମଳାଭାଇଙ୍କ ସ୍ତ୍ରୀ ଫେରି ଆସିଲେ । ପିଣ୍ଡାରେ ବସିଲେ ।

ବଡ଼ମା କହିଲେ, ଏତେ ଡେରି କରୁଛ, ସେମାନେ କଅଣ ମାଗିଲେ ନାହିଁ ଗୀତାବୋଉ ? କାଲେ ଆଉ କେଉଁଠି ଠିକ୍‌କରି ନେଇଥିବେ । ମଙ୍ଗୁଳାବର, ଜମିଦାର ପୁଅ, ବେଶୀ ପାଠ ପଢ଼ିଛି, ବଡ଼ ଚାକିରି କରିଛି । ଦେବା ନେବା କଥା ଉଠିଲା ନାହିଁ କି ? ଦାମକୁ ମୁଁ କହି ଦେଇଥିଲି, ଯାହା ସେ ମାଗିବେ ନାହିଁ କରିବୁ ନାହିଁ । ମନଇଚ୍ଛା ଦେଇ ପାଞ୍ଚ ଝିଅ ପରଘରକୁ ପଠାଇଲି । ଆଉ ଝିଅଟିଏ ଥିଲେ ତ ପଚାରି ନ ଥାନ୍ତି । ସୁନା କଣ୍ଢେଇ ଗୀତା ପରି ଝିଅଟିଏ ପାଇଛି, ହଟିବ ନାହିଁ ଲୋ—

ବୋଉ କହିଲା, ଅପା !

ବିମଳା ଭାଇର ସ୍ତ୍ରୀ ରହି ରହି କହିଲେ, ଯଦି ଆଉ କେଉଁଠି ଠିକ୍ କରି ନେଇଥାନ୍ତି ତ—

ବୋଉ କହିଲା, ଏଥିକି ମୁଁ ଡରିନାହିଁ ଗୋ । ଯେତେବେଳେ ବର ଫେରାଇ ଦେଇଛି, ଭାଗ୍ୟରେ ଯାହା ଥିବ ହେବ । କୂଅ ପୋଖରୀ ତ ଅଛି । ଦାଉଡ଼ି ଦି ଖଣ୍ଡ କି ଜହର ଟିକେ ପାଇଁ କାହା ପାଖେ ହାତ ପାତିବାକୁ ପଡ଼ିବ ନାହିଁ ।

ବଡ଼ମା କହିଲେ, ଏପରି ଭାବୁଛି କାହିଁକି ଗୀତାବୋଉ ? ମଙ୍ଗୁଳା ଝିଅ, ଯେମିତି ହେଲେ ତ ଯେଉଁଠି ବାହା ହେବ ? ପାଞ୍ଚ ପାଞ୍ଚଟା ଝିଅ ଜନ୍ମ କରିଥିଲି, ଅର୍ଦଳି ସହିଥିଲି । ସେମାନଙ୍କୁ ପରଘରକୁ ବିଦା କରି ବୋହୂ ବିକଟେ ଆଣିଲି ଯେ ମୋ କୋଳର କେଉଁ କଣରେ ସେ ଲୁଚି ଯାଉଛି । ଦି ଆଖି ମୋର ପୂରୁ ନି ହେଉ ନାହିଁ । ଗୀତାକୁ ମୋ ଘରକୁ ନେଲେ, ଦି ଝିଅଙ୍କର ଅର୍ଦଳି କଅଣ ସହି ପାରିବ ନାହିଁ ?

ନୂଆବୋହୂ ମୋ ଓଠରେ ହାତ ମାରୁ ହସି ହସି ତୁନ ତୁନ କହିଲେ, କେଡ଼େ ଭଲ ହେବ ଗୀତା ଦେଇ, ତୁମେ ମୋ ପାଖକୁ ଗଲେ ଏଇ ପିଲାଟାର ଜଞ୍ଜାଳରୁ ମୁଁ ରକ୍ଷା ପାଇବ ।

ନୂଆ ବୋହୂଙ୍କର କଥା ଶୁଣି ମୁଁ ମୁଣ୍ଡ ନୋଇଁଲି । ଲଜରେ ମୋର ମୁହଁ ଜାଳିଗଲା । କହିଲି, ଛି ନୂଆବୋହୂ, ଅନାଇ କଥା, ପାପ କଥା ତୁଣ୍ଡକୁ ଆଣନା !

କହିଲେ, ଦିନେ ସେ ଏଇଆ ଗୃହୁଁଥିଲେ ତ ।

କହିଲି, ପୁରୁଷ ପିଲା, ଯାହାକୁ ସ୍ନେହ ଶରଧା କରେ, ତାଆର ସୁଖ ଆନନ୍ଦ ପାଇଁ ନ ବୁଝି ନ ସୁଝି, ବାଇଆଙ୍କ ପରି ଯାହା ତୁଣ୍ଡକୁ ଆସିଲା କହିଦେଲେ । ଏଥିପାଇଁ ଭାଇଙ୍କି ମୁଁ ଶାସନ କରୁଥିଲି । ତୁଣ୍ଡରୁ ବାହାରିଲା କଥା ପାଇଁ ଦୁର୍ନାମ ରହିଲା । ସେଥିକି ମୁଁ ଦାୟୀ ନୁହେଁ କି ମୋ ଭାଇ ଦାୟୀ ନୁହେଁ । ତାଙ୍କର ମୋ ପ୍ରତିଥିବା ସ୍ନେହ ହିଁ ଦାୟୀ । ନୂଆବୋହୂ, ତମ ଗୋଡ଼ର କଣ୍ଟା ହେବା ଆଗରୁ ମୋତେ ଜହର ଟିକେ ମିଳିବ ଯେ ।

ମୋ ମୁଣ୍ଡଟିକୁ ତାଙ୍କ ଗ୍ଣଡିକୁ ଆଉଜାଇ ନୂଆବୋହୂ ଗେଲ କଲେ । କହିଲେ, ଏହା କରିଲ ଦେବ ନାହିଁ ଗୀତା, ଏହି ଗ୍ଣଡି ଉପରକୁ ଏମିତି ଏ ମୁହଁଟିକୁ ଟାଣି ନେବ ।

ବାହାରୁ ବିମଳା ଭାଇଙ୍କ ସ୍ତ୍ରୀ କହିଲେ, ଏମିତି କଅଣ ହୁଏ ? କଥାକୁ ଘିନା କହିଲ । ଦାମ ଫେରି ଆସନ୍ତୁ । ସେଠି ଯଦି ସୁବିଧା ନ ହେଲା ପାହଟିଏ ତ ହାତରେ ଅଛି···

ରାଧା ପଚାରିଲା, କାହା କଥା କହୁଛ ?

ବିମଳା ଭାଇର ସ୍ତ୍ରୀ କହିଲେ, ଆମ ଅମୁ ବିଷୟରେ କହୁଛି । ଅଜୁ ପାଇଁ ପାତ୍ରୀ ଠିକ୍ ହୋଇ ସାରିଛି । ଦିନ ଦଶଟା ପରେ ବାହା । ଏକା ଡିଥିରେ ଅଜୁ ଅମୁଙ୍କର କମିତ୍ୟ ଉଠାଇ ଦେବା ।

କେହି ଉତ୍ତର ଦେଲେ ନାହିଁ ।

୨୯

ଘଣ୍ଟାକ ପରେ ଦାମଭାଇ ଫେରିଲେ । ଖଞ୍ଜା ଭିତରେ ଗୋଡ଼ ଦେଉଁଣୁ ପାଟି କରି କହି ଉଠିଲେ, ବୋଉ, ସବୁ ଠିକ୍ ହୋଇଗଲା । ବର ଅସୁଛି ।

ବଡ଼ମା ବ୍ୟଗ୍ରହୋଇ ପଚାରିଲେ, ଏତେ ଡେରିହେଲା କାହିଁକି ବାପ ?

ଦାମଭାଇ ପିଣ୍ଡା ଉପରକୁ ଆସି କହିଲେ, କହୁଛି, ଠିକଏ ରହ ।

ନୂଆବୋହୂ ଗେଲରେ ମୋ ନାକକୁ ଚିପିଦେଇ ଦ୍ୱାରବନ୍ଧ ପାଖକୁ ଉଠିଗଲେ । କେଜାଣି କାହିଁକି ମୋର ପିଞ୍ଜରା ଅଗର ଦୀର୍ଘଶ୍ୱାସ ପଦାକୁ ଛୁଟି ଆସିଲା । ଦେହ ବରଡ଼ା ପତ୍ର ପରି ଥରଲା ।

ଦାମଭାଇ କହିଲେ, ବନମାଳୀପୁର ଜମିଦାର ଉଚ୍ଛବ ବାବୁ । ତାଙ୍କର ବଡ଼ ପୁଅ ମାଧବାନନ୍ଦ । ବି. ଏ. ପାସ୍ କରି ସବ୍‌ଡେପୋଟି ହୋଇଛନ୍ତି । ରୂପ ଯେପରି ସୁନ୍ଦର, ସ୍ୱାସ୍ଥ୍ୟ ସେହିପରି ସୁନ୍ଦର । ଖାଲି ନାଁକତଲେ ଦଶ୍ରି ପରିକା ଠିକିଏ ନଣ । ହରଅନ୍ତା ଭଗୀରଥି ବାବୁଙ୍କ ଝିଅ ବିଷୟରେ ସମ୍ବନ୍ଧ ସ୍ଥିର ହୋଇଥିଲା । ବୋହୂ ସୁନ୍ଦର ବୋଲି ଅଗରୁ ଶୁଣିଥିଲେ ।

ବର ଆସିଲା । ଗାଁରେ ଭଗୀରଥିଙ୍କ ଶତ୍ରୁପକ୍ଷ ବାରକଥା କହିଲେ । ଝିଅ କୁଅଡ଼େ କାଳୀ, ବସନ୍ତମୁହିଁ, କଠଉପାଦୀ । ଏ ସବୁ ଶୁଣି ମାଧବ ଅଡ଼ି ବସିଲେ । ଉଚ୍ଛବବାବୁ କହିଲେ, ଝିଅକୁ ସେ ନଜେ ନ ଦେଖିଲେ ଫେରିଯିବେ ପଛେ ବାହାଘର କରିବେ ନାହିଁ ।

କେତେ ଘଣ୍ଟାଚକଟା ହେଲା । ସେମାନେ ଝିଅକୁ ଦେଖାଇବାକୁ ମଙ୍ଗିଲେ ନାହିଁ । ବର ଫେରି ଆସିଲା ।

ଉଚ୍ଛବବାବୁ କନ୍ୟାପାତ୍ର ଖୋଜିବାକୁ ପାଞ୍ଚଅଡ଼େ ଲୋକ ପଠାଇଥିଲେ । ଧନ ଦଉଲତ ସେମାନେ ଖୋଜୁନାହାନ୍ତି । କେଉଁଥିରେ ଭଗବାନ ତାଙ୍କୁ ଊଣା କରିଛନ୍ତି ଯେ ଧନ ଦଉଲତ ଖୋଜି ବସିବେ ? ଉଚ୍ଛବବାବୁ ସୁନ୍ଦର, ଗୁଣର ବୋହୂଟିଏ ଖୋଜୁଛନ୍ତି । ଗୀତା ପାଇଁ ପ୍ରସ୍ତାବ ପକାଇଲି । ପଦପଦ କରି ସବୁ ମତକଥା କହିଲି ଲୋ ବୋଉ, ଭାବିଲି କିଛି ଲୁଚାଇବି ନାହିଁ । ଇଚ୍ଛା ହେଲେ ମଙ୍ଗିବେ, ନୋହିଲେ ନାହିଁ । ସେ ମଙ୍ଗି ନ ଥିଲେ କେଉଁଠି ହେଲେ ମୂଲ୍ୟଅମୂଲ୍ୟ ହେଉ ପଛେ, ଭଲ ପିଲାଟିଏ ଖୋଜ ଥାଆନ୍ତି । ଅତି ଭଲଲୋକ ଉଚ୍ଛବବାବୁ, ମାଧବ ବି ସେମିତି । ମୋ କଥା ଶୁଣି ଦହେଁ ମଙ୍ଗିଲେ ତେବେ,...... ।

ବଡ଼ମା ପଚାରିଲେ, ଝିଅ ନ ଦେଖି ମଙ୍ଗିଲେ କେମିତି ?

ଦାମଭାଇ କହିଲେ, ସେଥିପାଇଁ ତ ଏତେ ଡେରି ହେଲା । ମୁଁ କହିଲି, ଜଣେ କାହିଁକି ଆପଣମାନେ ସମସ୍ତେ ଚାଲନ୍ତୁ ଝିଅକୁ ଦେଖିବେ । ଝିଅ ଯଦି ମନକୁ ନ ଆସେ ବାହାଘର ନ କରିବେ ।

ବୋଉ କହିଲା, ତେବେ ତ ପ୍ରସ୍ତାବଟା ପକ୍‌କା ହୋଇନାହିଁ ।

ଦାମଭାଇ କହିଲେ, ତୁମେ ଚନ୍ତା କରନା ଖୁଡ଼ୀ, ଗୀତାକୁ ଦେଖିଲେ ସ୍ୱର୍ଗର ଇନ୍ଦ୍ର ବି ନାହିଁ କରିପାରିବେ ନାହିଁ । ସତେମ ଖୁଡ଼ୀ, ତମ ସିଙ୍ଗାଣିନାକୀ ଅବରଜିଆ ଝିଅଟା ପାଇଁ ଚନ୍ଦ୍ରଟାଏ ଖୋଜୁ ଖୋଜୁ ଇନ୍ଦ୍ରଟାଏ ମିଳିଯିବ । ତମେ ନଶ୍ଚିନ୍ତ ରହ ।

ଭୋଳଦାଦା ସେପୁରରେ ଆଶୀର୍ବାଦ କରୁଛନ୍ତି । ତାଙ୍କର ପୁଣ୍ୟର ଫଳ ଅବଶ୍ୟ ଫଳିବ । ଗୀତାକୁ ସତ୍‌ପାତ୍ରରେ ଦେବାର ଆଶା ପୂର୍ଣ୍ଣହେବ ଖୁଡ଼ୀ, ଭଗବାନ୍ ଅନ୍ଧ ନୁହନ୍ତି । ମନ ଯେମିତି ସେ ଫଳ ଦିଅନ୍ତି । ବଡ଼ ଖେଳୁଆଡ଼ ସେ, ଯାହାକୁ ସେ ବେଶି ଭଲ ପାଆନ୍ତି ତାଆରି ସଙ୍ଗେ ଠିକେ ଖେଳିବ ଲଗାନ୍ତି । ଗୀତା ପବିତ୍ର, ତାଙ୍କ ସ୍ନେହର ଝିଅ । ମୁଁ ଆସେଁ ।

ସେ ଚାଲିଗଲେ ।

୮୦

ରାତି ଦି ଘଡ଼ିକି ବର ଆସିଲା ।

ପୁରୋହିତ ମୋର ଥରିଲା ହାତଟି ଅପରିଚିତ ମାଧବବାବୁଙ୍କର ହାତ ଉପରେ ରଖିଲେ । ଦେହରେ ଅଜଣା ସ୍ପନ୍ଦନ ଖେଳିଗଲା । ମନର କେଉଁ ଅନ୍ଧାର କୋଣରେ ବାହୁନି ଉଠିଲା ଅଜଣା ଦେବତା । ଆଶାର ଦରମଲା ଆଲୁଅ ଥରି ଉଠିଲା । ଦୁର୍ବଳ ସ୍ମୃତି ମୁହୂର୍ତ୍ତ ଧବଳେଶ୍ୱର ପଠାର ଅରମା ଭିତରକୁ ଲୁଚିଗଲା, ଯେଉଁଠି ପ୍ରବୋଧବାବୁ ମୋର ରକ୍ତବୋଳା ପାଦଟିକୁ ହାତ ପାପୁଲି ଉପରେ ରଖିଥିଲେ ।

ଲିଭିଗଲା ପୁରୁଣା ଆଶାର କ୍ଷୀଣ ଆଲୁଅ ଚିରଦିନ ଲାଗି । ମନ ଗହନର ଅନ୍ଧାର ଭିତରେ କେତେଦିନର ବଡ଼ ଶ୍ରେଷ୍ଠ କେତେ ସ୍ମୃତି ହଜାଇ ଦେଲେ ସତ୍ତା । ସେହି ଅସୀମ ଅନ୍ଧାରର ଗୋଟିଏ କୋଣରେ ଉଜଳି ଉଠିଲା ନୂଆ ତାରାଟିଏ, ଜୀବନର ଧ୍ରୁବତାରା, ଯାହାରି ଆଡ଼କୁ ଚିରଦିନ ମତେ ଚାହିଁ ରହିବାକୁ ହେବ ଏକ ଆଖିରେ, ଯାହାର ପାଦତଳେ ଦେହ, ମନ ଓ ଜୀବନ ନିଃଶେଷ କରି ଅଜାଡ଼ି ଦେବି ।

ସେହି ମୋର ସ୍ୱାମୀ, ସେହି ମୋର ଦେବତା ।

ଲୁହର ବାଦଲ ଭିତରେ ଆଗକୁ ଚାହିଁଲି । ବେଦ ବାଡ଼ିଁଶକୁ ଆଉଜି ଠିଆ ହୋଇଛନ୍ତି ଦାମଭାଇ । ଝାଉଁଳା ମୁହଁର ମଉଳା ଆଖିରେ ଛଳ ଛଳ ଲୁହ ।

ମହନ ଜେଠା କନ୍ୟାଦାନ କରୁଛନ୍ତି ।

୮୧

ଦିନ ଦି ଘଡ଼ିକି ବିଦାବିଦା ।

ଗାଁ ମାଇପେ ଚାରିପାଖେ ଘେରି ବସିଛନ୍ତି । ଏତେଦିନର ମାୟାମମତା କାଟି ପରଘରକୁ ଯିବାକୁ ହେବ । ଭାବିଲାବେଳକୁ ଛାତି କରିଛି ହୋଇଯାଉଛି । ଯେଉଁ ଅପରିଚିତଙ୍କର ହାତ ଧରି ସଂସାର କରିବାକୁ ଯାଉଛି ସେଇ ମୋର ଜୀବନ

ସ୍ୱପ୍ନ । ସ୍ରୋତର ଫୁଲ ପରି ସମୟର ଢେଉରେ ଭାସି ଭାସି ଯେଉଁ କୂଳରେ ଲାଗିଛି ସେଇଠି ମୋର ସ୍ଥାନ । ସେଇ ମୋର ସଂସାର । ମୋର ଶାଶୁ, ଶ୍ୱଶୁର, ସ୍ୱାମୀ, ଦେବର, ନଣନ୍ଦ ଓ ସେମାନଙ୍କର ଜ୍ଞାତି କୁଟୁମ୍ବ, ବନ୍ଧୁବାନ୍ଧବ, ଗ୍ରାମବାସୀମାନେ କଅଣ କହିବେ, କପରି ମୋତେ ଗ୍ରହଣ କରିବେ, ସେଇଥିକି ମୋର ଭାବନା । କପରି ସେମାନଙ୍କର ସେବା କରି ପାରିବି, ସେମାନଙ୍କୁ ସନ୍ତୁଷ୍ଟ କରି ପାରିବି ସେଇ ଶକ୍ତି ମନରେ ଦେବାକୁ ଭଗବାନଙ୍କ ନିକଟରେ ମୋର ଗୁହାରି ।

ବୋଉକୁ ବେଢ଼ି ଗାଁ ମାଇପେ ମନରେ ଈର୍ଷା, ତୁଣ୍ଡରେ ପ୍ରଶଂସା କରି କହୁଛନ୍ତି, କପାଳ ଲୋ ଗୀତା ବୋଉ, ରଜାପୁଅ ପରି ରୂପ କୋଉଁରି, ବଡ଼ଘରି, କୋଉଁ କେତେ ପାଠ ପଢ଼ି ହାକମ ହୋଇଛି, ଗୀତାଟି ସୁଖରେ ରହିବ ।

ବଡ଼ମା ମୋର ମୁଣ୍ଡ ଆଉଁସି ଦେଲେ । ଆଖିରୁ ଝରି ପଡ଼ୁଛି ଲୁହ । କହିଲେ, ପାଞ୍ଚ ଝିଅ ମୁଁ ଜନମ କରି ନ ଥିଲି ତ, ଛଅ ଝିଅ । ଗୀତାଟି ମୋର କୋଡ଼ପୋଛା । ବେକ ନଙ୍ଗଳା କରି ଶାଶୁ ଆଗରେ ସେ ଠିଆ ହେଲେ ମୋର ନାମ ହିନ୍ଦା ହେବ ।

ବଡ଼ ମା ତାଙ୍କ ବେକରୁ ପ୍ରଜାପତିଆ ହାରଟି କାଢ଼ି ମୋ ବେକରେ ଝୁଲାଇ ଦେଲେ ।

ବିମଳା ଭାଇଙ୍କ ସ୍ତ୍ରୀ ନୂଆ ଗଢ଼ାଇ ଥିବା କାନପାସା ଦିଓଟି ମୋ କାନରେ ଝୁଲାଇ କାନ୍ଦି କାନ୍ଦି କହିଲେ, ମୋ ଗୀତା ପରି ସବୁସହଣୀ ନଣନ୍ଦଟିଏ ମୁଁ ଆଉ ପାଇବି ନାହିଁ ଲୋ, କାହା ସଙ୍ଗେ ପୁଣି ଗେଲ ଲଗାଇବି ?

ହାତରୁ ଦି ହଳଟି ସୁନା କାଚ ଆଣି ମୋ ହାତରେ ପିନ୍ଧାଇ ଦେଲେ ଭାଉଜ । ଆଖି ଛଳ ଛଳ କରି କହିଲେ, ସୁନାର ଦେହ, ସୁନାର ମନ ନେଇ ମୋ ନଣନ୍ଦ ଗୀତାର ଜନମ, ଅଳଙ୍କାର ଖାଲି ବାହାର ଦେଖାଣ ଛଳ !

ଗାଁ ମାଇପେ ମୋର ହାତ ଦିଓଟି ଟାଣି ଆଙ୍ଗୁଠି ଗୁଡ଼ିକରେ ସୁନା ମୁଦିମାନ ପିନ୍ଧାଇ ଦେଲେ । ଚାହିଁ ରହିଥାଏ ବୋଉ ମୁହଁକୁ । ତା ଆଖିରେ ଲୁହ ନାହିଁ । ତୃପ୍ତିରେ ଉଜ୍ଜ୍ୱଳ ଦିଶୁଛି ମୁହଁ ।

ଆଉ ଗୋଟିଏ ମୁହଁ ଦେଖିବାକୁ ମୋର ମନ ବିକଳ ହେଲା । ପ୍ରାଣ ଛଟପଟ ହେଲା । ବଞ୍ଚିଥିବା ଯାଏ ଦେଖି ପାରିବି ନାହିଁ ତାଙ୍କର ସେ ହସିଲା ମୁହଁ । ପ୍ରାଣକୁ ବଳି ଭଲ ପାଉଥିଲେ । ଶେଷ ବେଳରେ ମୁହଁରେ ଟିକେ ପାଣି ଦେଇ ପାରିଲେ ନାହିଁ ।

ଆତ୍ମା ବିଳପି ଉଠିଲା, ବାପା, ବାପା—

ଛାତି ପଥର କଲି, ଥରିଲା ଓଠ ଚିପି ଧରିଲି । ଶବଦଟି ତୁଣ୍ଡରୁ ଖସିଲେ ବୋଉ ମୋର ଭାଙ୍ଗି ପଡ଼ିବ ।

ମନର କୋହକୁ ଅଟକାଇ ପାରିଲି ସିନା ଆଖିର ଲୁହ ତ ଅଟକାଇ ପାରିଲି ନାହିଁ ।

## ୮୨

ଅମର ଭାଇ ଓ ତାଙ୍କ ପଛରେ ଦୁଇଜଣ ଅପରିଚିତା ସ୍ତ୍ରୀ ଲୋକ ମୋ ଥିବା ଘରେ ପଶିଲେ ।

ଅମୁଭାଇ ବୋଉକୁ ଓଲଗି ହେଲେ । କହିଲେ, ପ୍ରବୋଧବାବୁଙ୍କ ବୋଉ ଆସିଛନ୍ତି ଅପା, ଯେ ହେଉଛନ୍ତି ତାଙ୍କ ଖୁଡ଼ୀ । ପ୍ରବୋଧବାବୁ ଦାଣ୍ଡରେ କାର୍‌ରେ ବସିଛନ୍ତି । ଭଡ଼ା ଗାଡ଼ିଟା, ଡ୍ରାଇଭର ବ୍ୟସ୍ତ ହେଉଛି । ଯେଉଁ କଦର୍ଯ୍ୟ ରାସ୍ତା ! ମୁଁ ମନା କରୁଥିଲି, ପ୍ରବୋଧବାବୁ ତମୁକୁ ଦେଖିବାକୁ ଆସିବେ ବୋଲି ଜିଗର ଧରିଲେ ।

ବୋଉ ଉଠି ପ୍ରବୋଧ ବାବୁଙ୍କ ମାଆଙ୍କର ହାତ ଧରିଲା । ତାଙ୍କର ଗମ୍ଭୀର ସଜଳ ମୁହଁକୁ ଚାହିଁ ମୁଁ ମୁଣ୍ଡ ନୋଇଁଲି ।

ସେ ମୋ ପାଖରେ ବସିଲେ । ମୋର ପିଠିକରେ ହାତ ଦେଇ ଗେଲେଇ କହିଲେ, ତୋର ମାଉସୀଶାଶୁ ମ ମୁଁ, ମାଧବ ପରା ମୋର ଅପାଙ୍କର ବଡ଼ ପୁଅ । ପ୍ରବୋଧଠାରୁ ସାତମାସ ବଡ଼ ।

ନିଜ ବେକରୁ ପଥର ବସା ଓଜନିଆଁ ସୁନା ହାରଟିଏ କାଢ଼ି ମୋ ବେକରେ ଲମ୍ବାଇ ଦେଲେ । ମୋ ମୁହଁଟିକୁ ଟେକି ଦେଖିଲେ, ମୁଁ ଆଖି ବୁଜିଥାଏଁ । କହିଲେ, ଦେଖିଲୋ ମୋର ବଡ଼ ବୋହୂର ମୁହଁ, ସାକ୍ଷାତ ଲକ୍ଷ୍ମୀ ଠାକୁରାଣୀଙ୍କ ମୁହଁ ପରି ଦିଶୁନାହିଁ କି ?

ବୁଝିଲି, ସେ ତାଙ୍କ ଜାଙ୍କୁ ଶୁଣାଇଁ କହୁଥିଲେ ।

ଅମୁଭାଇ କହିଲେ, ପ୍ରବୋଧ ବାବୁ ଏକା ବସିଛନ୍ତି, ମୁଁ ଯାଉଛି ।

ରେଣୁ ଧାଇଁଆସି କହିଲା, କଟକରୁ କିଏ ଗାଡ଼ିରେ ଆସିଛନ୍ତି ଯେ ଆମ ନୂଆ ଜୋଇଁଙ୍କ ହାତ ଧରି ହାମଭାଇଙ୍କ ସଙ୍ଗେ ଗାଁ ବୁଲିବାକୁ ଗଲେଣି ।

ଗୋଡ଼ର ବୁଢ଼ା ଅଙ୍ଗୁଠିକୁ ଚାହିଁଲି । କ୍ଷତ କେବଠୁଁ ଭଲ ହୋଇ ଗଲାଣି । ହାତଟା ଏକାଥରେ ଲୁଚି ନାହିଁ ।

କଟକ
୧୯୪୦

---

ସନ୍ଧ୍ୟା ଅତିକ୍ରମ କରିଗଲା । ପ୍ରକୃତିକୁ ନୀରବ କରି ରାତ୍ରି ତାର ଗୃହିଣୀ ପରଦାଟି ଆକାଶର କ୍ଲାନ୍ତ ବୁକୁ ଉପରେ ଲମ୍ବାଇ ଦେଲା । ତ୍ରୟୋଦଶୀର ଉଜ୍ଜ୍ୱଳ ଜହ୍ନ ଆକାଶ ଉପରେ ତା'ର ଭଗ୍ନ ନଗ୍ନ ଦେହଟିକୁ ଖଣ୍ଡ ବାଦଲର ଅନ୍ତରାଳରେ ଲୁଚାଇବାରେ ବ୍ୟସ୍ତ । ଅଂଶୁପା କୂଳରେ ଖଣ୍ଡେ ଉଚ୍ଚ ପଥର ଆସନ ଉପରେ ବସି ଜୟନ୍ତୀ ପ୍ରକୃତିର ଶୋଭା ଦେଖି ଆତ୍ମହରା ହେଉଥିଲେ । ସନ୍ଧ୍ୟାର ଶୀତଳ ସମୀର ଲହରରେ ଅଙ୍ଗଲତା ଶିହରି ଉଠୁଥିଲା । କିପରି ସେ ଜୟନ୍ତ ଆଗରେ ପ୍ରାଣର ଗୋପନ କଥା ମନର ଅନନ୍ତ ବ୍ୟଥା ପ୍ରକାଶ କରିବେ ? ଜୟନ୍ତ କାଲିକାର ପିଲା, କଣ ବୁଝିବ ଦୁନିଆର କଥା ?

ସେ ଜୟନ୍ତକୁ ଚାହିଁଲେ । ଜୟନ୍ତ ମାତାଙ୍କର ପାଖକୁ ଆଉଜି ବସି ଅଂଶୁପାର ଆର ପାଖରେ ଦେଖା ଯାଉଥିବା କେତେଗୁଡ଼ିଏ ଆଲୁଅକୁ ଚାହିଁ ରହିଥିଲା । ମନରେ ଆଜି ତା'ର ଆନନ୍ଦ । ମା'ଙ୍କ ମୁହଁରୁ ଅତୀତର ପ୍ରତ୍ୟେକ ଘଟଣା ସେ ଶୁଣିବ, ତେଣିକି ସେ ତାର କାର୍ଯ୍ୟପନ୍ଥା ସ୍ଥିର କରିବ ।

କୋଡ଼ିଏ ବର୍ଷର ଯୁବକ ସେ, ହେତୁ ପାଇଲା ଦିନରୁ ସେ ଏଇ ସରଣ୍ଡାଗଡ଼ ପାହାଡ଼ତଳ ଅରଣ୍ୟ ପ୍ରାନ୍ତରେ, କ୍ଷୁଦ୍ର କୁଟୀରଟିରେ ମାତାଙ୍କ ପାଖରେ ବଢ଼ି ଆସିଛି । ଅତି ଦୁଃଖ କଷ୍ଟରେ ସମୟ ଅତିବାହିତ କରିଛି । ମାତା ତାର ସନ୍ୟାସିନୀ । ଜୀବନ ଧାରଣ ପାଇଁ ନିଜେ ସେ ନିକଟ ଗ୍ରାମ ସୁବର୍ଣ୍ଣପୁରରେ ଅନ୍ୟମାନଙ୍କ ଘରେ କାର୍ଯ୍ୟ କରନ୍ତି । ଜୟନ୍ତ ବି ତାଙ୍କର ସଙ୍ଗେ ଥାଏ । ପରଘରର ଘରଣୀମାନେ ଯେଉଁ କାର୍ଯ୍ୟ ବତାନ୍ତି ସେ କରିବାକୁ କୁଣ୍ଠିତ ହୁଅନ୍ତି ନାହିଁ । ବାରକଥା ଶୁଣିଲେ ମଧ୍ୟ ସେ ଛଳ କରନ୍ତି ନାହିଁ । ଆଖିରୁ ଲୁହ ବହିଯାଏ କିନ୍ତୁ ମୁହଁରେ ହସ ।

ଜୟନ୍ତୀ ଥିଲେ ପ୍ରହେଳିକା । ଲୋକାପବାଦ ଶୁଣି ମଧ୍ୟ ସେ ପାହାଡ଼ ପରି ଅଟଳ ଥିଲେ । ନିଜେ ସେ ଜୟନ୍ତକୁ ଶିକ୍ଷା ଦେଉଥିଲେ । କାଳକ୍ରମେ ଜୟନ୍ତ ଅଧିକ ପଢ଼ିବାକୁ ଉପଯୁକ୍ତ ହେଲାରୁ ଓ ତାର ବୟସ ବଢ଼ି ଆସିବାରୁ ତାକୁ ସେ ଗ୍ରାମର ଚାଟଶାଳୀକୁ ପଠାଇଲେ । ସମସ୍ତେ ଜାଣନ୍ତି ଏହି ଅନାଥ ବାଳକଟି କେଉଁ ବିଜୟ ସିଂହଙ୍କର ପୁତ୍ର । କିଏ ସେ ବିଜୟ ସିଂହ, ସେ କେଉଁଠି ଥାଆନ୍ତି, କଅଣ କରନ୍ତି, ଏକଥା କେହି ଜାଣନ୍ତି ନାହିଁ । ଜୟନ୍ତୀ ଭୁଲବଶତଃ ବି କେବେ କାହାରି ପାଖରେ ପ୍ରକାଶ କରନ୍ତି ନାହିଁ । ଲୋକଙ୍କର ଧାରଣା, ବିଜୟ ସିଂହ ଯିଏ ହେଉନା ପଛେ ସେ ଏହି ନାରୀ ଓ ତାର

ପୁତ୍ରକୁ ପରିତ୍ୟାଗ କରିଛନ୍ତି । କାହିଁକି, କାହିଁକି ସ୍ୱାମୀ ଏପରି ଭୁବନମୋହିନୀ ପତ୍ନୀ ଓ ଇନ୍ଦ୍ର-କନ୍ଦର୍ପ ପରି ପୁତ୍ରକୁ ପରିତ୍ୟାଗ କରିପାରେ ?

ଲୋକେ କେତେକଥା ଅନୁମାନ କରନ୍ତି । ଅପବାଦ ଓ ଭିଣ୍ଡିବାଇଦ ମୁହଁରୁ ମୁହଁ ଡେଇଁଡେଇଁକା ଚାଲେ । କିଏ ତାର ଉତ୍ତର ଦେବ ? ତପସ୍ୱିନୀ ଜୟନ୍ତୀ ତ ନୀରବ । ପୂର୍ଣ୍ଣିମା ଚନ୍ଦ୍ରପରି ସୁନ୍ଦର ସୁଠାମ ମୁଖରେ ଅଳପ ମଧୁର ହସ । ନକ୍ଷତ୍ର ପରି ଝଟକିଲା ନେତ୍ର ଦୁଇଟିରେ ଦୁଇବିନ୍ଦୁ ବାରି । ସେତିକି ତାଙ୍କର ଉତ୍ତର ।

ସେ ବିଦୁଷୀ ଏହା ମଧ୍ୟ ଲୋକଙ୍କୁ ଅଗୋଚର ରହିଲା ନାହିଁ । କାମୁକର ଲୋଲୁପ ଦୃଷ୍ଟି ସେହି ପ୍ରଜ୍ୱଳିତ ପ୍ରତିମାକୁ ବେଷ୍ଟନ କରେ, ଛଟପଟ ଆକୁଳ ବିକଳ ହୁଏ । ଥରିଲା ଓଠରୁ ପ୍ରେମ ସମ୍ଭାଷଣ ଡରି ଡରି ବାହାରି ଆସେ । ଜୟନ୍ତୀଙ୍କର ସ୍ନେହଶୀଳ ପବିତ୍ର ଓଠରୁ ଧୀର ଓ ତୀକ୍ଷ୍ଣ ବାଣୀ ବାହାରେ, ମୁଁ ତପସ୍ୱିନୀ, ମୁଁ ବ୍ରହ୍ମଚାରିଣୀ, ମୁଁ ତୁମର ଜନନୀ ସଦୃଶା ! କାମୁକର ଲୋଲୁପ ଦୃଷ୍ଟି ତାଙ୍କର ପଦ ଲେହନ କରେ । ମନ ଶରଣ ପଶେ ।

ହଁ, ସେ ପ୍ରହେଳିକା । କିଏ ତାଙ୍କର ଜନନୀ ଜନକ ? କେଉଁଠି ତାଙ୍କର ନିବାସ ? କିଏ ସେ ସନ୍ନ୍ୟାସୀ ଯିଏ ବେଳେ ବେଳେ ଆସି ଜୟନ୍ତୀଙ୍କୁ ଦେଖା ଦିଅନ୍ତି ? ତାଙ୍କୁ ଓ ଜୟନ୍ତଙ୍କୁ ଆଶୀର୍ବାଦ କରି ପୁଣି କୁଆଡ଼େ ଚାଲି ଯାଆନ୍ତି । ସେଇ କଣ ଛଦ୍ମବେଶୀ ବିଜୟ ସିଂହ ? କାହିଁକି ସେ ସନ୍ନ୍ୟାସୀ ହେଲେ ? ଲୋକଙ୍କର ପ୍ରଶ୍ନ ମନରେ ମରେ ।

ଧୀରେ ଧୀରେ ବଢ଼ି ଉଠୁଛି ଏ ଜୟନ୍ତ ! ବିଚକ୍ଷଣ ବୁଦ୍ଧି, ସବୁ ବିଦ୍ୟା ସବୁ କର୍ମରେ ନିପୁଣ । ଦେହରେ ସିଂହର ପରାକ୍ରମ । ଅସ୍ତ୍ରଚାଳନା କୌଶଳ ଦେଖି କ୍ଷତ୍ରିୟମାନେ ଆଶ୍ଚର୍ଯ୍ୟ ଓ ମୁଗ୍ଧ ହୁଅନ୍ତି । କନ୍ଦର୍ପ ରୂପକୁ କେତେ ମୁଗ୍ଧା ତରୁଣୀଙ୍କର ଦୃଷ୍ଟି ଆକର୍ଷେ । ଜୟନ୍ତର ସରଳ ଚାହାଣୀ ଉତ୍ତର ଦିଏ, ତୁମେ ମୋର ମାତା, ତୁମେ ତ ମୋର ଭଗିନୀ ।

ଜୟନ୍ତ ଅପବାଦ ଶୁଣେ । ଜନନୀ ପାଖରେ ମୁହଁ ଶୁଖାଇ ବସେ । ସ୍ନେହମୟୀ ପୁତ୍ରକୁ ଚୁମ୍ବନ କରି କହନ୍ତି, ବାପ ତୁ ସିଂହ ଶିଶୁ । ତୁ ବଡ଼ ହେଲେ, ପିତାର ସ୍ୱରୂପ ହେଲେ, ମୁଁ ତୋତେ ସବୁ କହିବି । ଧୈର୍ଯ୍ୟଧର, ଲୋକଙ୍କ କଥାରେ ଛିଳ କରନା, ହସି ଦେ । ନୀରବ ରହ ।

ଜୟନ୍ତୀ ପୁଅର ମୁଣ୍ଡରେ ହାତ ରଖି କହିଲେ, ବାପ, ତୋ ପାଖରେ ମୋ ଅତୀତ ଇତିହାସ କହିବାକୁ ଆଜି ଆଉ କିଛି ଆପତ୍ତି ନାହିଁ । ପ୍ରତ୍ୟେକ ଘଟଣା ମନର ଭାବ ଓ ପ୍ରବୃତ୍ତିର ପ୍ରତିକ୍ରିୟାର ଫଳ । ଗୋଟିକୁ ଲୁଚାଇ ଅନ୍ୟଟିକୁ କହିଲେ କଥାର ସମ୍ବନ୍ଧ ଭାଙ୍ଗିଯିବାର ଭୟ । କିଛି ନ ଲୁଚାଇ ତୋ ଆଗରେ ସବୁ

କଥା କହିବାକୁ ମୋର କାହିଁକି ଇଚ୍ଛା ହେଉନାହିଁ । ତୁମେ ସବୁ ବୁଝିପାରିବୁ ସେ ବିଷୟରେ ମୁଁ ଏବେ ବି ସନ୍ଦେହରେ ପଡ଼ିଛି । ପ୍ରେମ ବା ନାରୀ ପୁରୁଷର ପରସ୍ପର ଆକର୍ଷଣ ଓ ମୋହ କଥା ବୁଝିବା ତୋ ପକ୍ଷେ ସହଜ ହେବ ନାହିଁ । ତଥାପି ବାପ, କହୁଛି ଶୁଣ, ସମାଜ କହେ ପୁତ୍ର ପାଖରେ ଜନନୀ ମୁଖରୁ ଏହି ସ୍ତ୍ରୀ ପୁରୁଷ ସମ୍ବନ୍ଧୀୟ ମୋହ ବିଷୟକ କୌଣସି କଥା ଶୁଣିବା ନୀତିବିରୁଦ୍ଧ, କିନ୍ତୁ ବାପ, ଯେଉଁ ମା' ତୋର ଦେହକୁ ତାର ରକ୍ତମାଂସ ଦେଇ ଗଢ଼ିଛି, ତୋତେ ହସି ଖେଳି ଶିଖାଇଛି, ସବୁ ଶିଖାଇଛି, ଲଜ୍ଜା ବା ନୀତିର ପ୍ରଭାବରେ ପ୍ରଭାବିତ ହୋଇ ଜୀବନର ପ୍ରଧାନ ଘଟଣା କହିବାକୁ ପଛାଇବ କାହିଁକି ? ପୁରୁଷ ସ୍ତ୍ରୀର ସମ୍ବନ୍ଧ ! ଜୀବନ ଉପରେ ପ୍ରେମ, ମୋହ ଓ ଆକର୍ଷଣର ପ୍ରଭାବ ଅଳ୍ପ ନୁହେଁ ବୋଲି ମୁଁ ଏହା କହିବାକୁ ବସିଛି । ଶୁଣ ତେବେ—

ଜୟନ୍ତୀ ପୁଅକୁ ଆହୁରି ନିକଟକୁ ଘୁଞ୍ଚାଇ ଆଣି ଆରମ୍ଭ କଲେ—

ଆଜି ଦୁନିଆଁର ସବୁ ଚିଜ ମୋ ଆଖିକି ଯେପରି ଦିଶୁଛି ସେତେବେଳେ ତ ସେପରି ଦିଶୁ ନ ଥିଲା । ମୁଁ ଥିଲି ପିଲା, କୋମଳମନା ସରଳା ନଅ ଦଶବର୍ଷର ଝିଅ । ଭଲମନ୍ଦ କାହାକୁ କହନ୍ତି ମନ ବୁଝୁ ନ ଥିଲା । ପ୍ରତି କଥାରେ ଯେ ଅଲ୍ପ ଅଳ୍ପ ଗୁଣର ସମ୍ବନ୍ଧ ପରି ଭଲମନ୍ଦ ଦିଟା ପାଖ ଥାଏ, ଏ ବିଷୟ ଜାଣିବାକୁ ମୋର ଆଗ୍ରହ ନ ଥିଲା । ଯହିଁରେ ଆନନ୍ଦ ଭୋଗ କରି ପାରୁଥିଲି ତାକୁହିଁ ଭଲ ବୋଲି ଗ୍ରହଣ କରି ନେଉଥିଲି । ସେହି ଆନନ୍ଦ ଉପଭୋଗର ମଝିରେ ପ୍ରତିବନ୍ଧକ ହାବୁଡ଼ିଲେ ମନେ କରୁଥିଲି, ଏହାହିଁ ମୋର ଶତ୍ରୁ ।

ରଙ୍ଗୀନ ପ୍ରଜାପତି ପରି ଆମର ସେହି କ୍ଷୁଦ୍ର ଗାଁରେ ପ୍ରତିସ୍ଥାନରେ ଘୂରି ବୁଲୁଥାଏ । ସାଥିରେ ଗାଁ ପିଲାଏ ଥାନ୍ତି । ହୁଏତ ମୁଁ ପିଲାମାନଙ୍କରେ ଦେଖିବାକୁ ସୁନ୍ଦର ବୋଲି କି ମୋର ବ୍ୟବହାର ଢଙ୍ଗ ଢାଙ୍ଗ ଗାଁ ଲୋକଙ୍କୁ ଭଲଲାଗେ କି ମୁଁ ଗଉଁତିଆ ନରୋତ୍ତମ ରାୟ ମହାସିଂହଙ୍କର ଏକମାତ୍ର ଅଲଅଲି ଝିଅ ବୋଲି ଲୋକେ ମୋତେ ଆଦର କରନ୍ତି ।

ନରସିଂହପୁର ଗାଁଟି କ୍ଷୁଦ୍ର । ଡାହାଣ ପାଖେ ମହାନଦୀ, ବାଁ ପାଖରେ ଅରଣ୍ୟ । ଆଗରେ କ୍ଷୁଦ୍ର ପାହାଡ଼ । ପଛପଟକୁ ହରିପୁର । ସେଇଟି ଆହୁରି ଖଣ୍ଡେ କ୍ଷୁଦ୍ର ଗାଁ । ଦି ଗାଁ ମଝିରେ ବଡ଼ ପଲାସବଣ । ମଝିରେ ଶ୍ରୀ ଜୟଗୋପାଳ ଠାକୁରଙ୍କ ମନ୍ଦିର । ମୋର ଚିରସ୍ମରଣୀୟ ମୋ ଜୀବନର ସୁଖ ଦୁଃଖ, ମୋ ଅତୀତର ସବୁ ସ୍ମୃତି ଏହି କ୍ଷୁଦ୍ର ମନ୍ଦିରଟି ସଙ୍ଗେ ଅତି ଘନିଷ୍ଠଭାବେ ବନ୍ଧା । ସାରା ଦି'ପହର କଟାଉଁ ମନ୍ଦିରର ମୁଖଶାଳରେ । ନାନାଜାତିର ଖେଳ ଖେଳୁଁ ସେଠି ।

ଦିନେ ଦିନେ ଖେଳୁ ଖେଳୁ ମୋତେ ନିଦ ମାଡ଼େ । ଆଉ ପିଲାଏ ଜଙ୍ଗଲକୁ ଖେଳିବାକୁ ବାହାରିଯାନ୍ତି । ମୁଁ ଏକା ସେହି ମୁଖଶାଳରେ କାନପାରି ଶୋଇପଡ଼େ । ଗୁଣି ନେଉଟେ, ବେଳବୁଡ଼ି ଆସେ, ମୁଁ ଜାଣିପାରେ ନାହିଁ ।

ଉଠି ଦେଖେ, ଗାଁ ପିଲାଏ ମୋତେ ଏକୁଟିଆ ଛାଡ଼ି ଚାଲି ଚଳେଣି । ମୋତେ ଡର ମାଡ଼େ । ମୁଁ ଧାଇଁ ଧାଇଁ ଘରକୁ ଫେରିଯାଏ । ଗାଁ ପିଲାଙ୍କ ଉପରେ ରାଗ ହୁଏ । ମନକୁ ମନ ପ୍ରତିଜ୍ଞା କରେ ଆଉ କେବେ ସେ ଚଗଲା ଅବାଧ୍ୟାସୀ ପିଲାଙ୍କ ସଙ୍ଗେ ଖେଳିବାକୁ ଯିବି ନାହିଁ । କିନ୍ତୁ ବାପ, ଯେତେ ପ୍ରତିଜ୍ଞା କଲେ ଘରେ ଏକୁଟିଆଟା ରହିପାରେ ନାହିଁ ।

ଦିନକର ଘଟଣା । ଉଦୁଉଦିଆ ଦି'ପହର, ବୈଶାଖ ମାସ । ପିଲାଏ ଦାରମଣ୍ଡଳା ତଗର ଫୁଲ ଆଣି ମୋ ଆଗରେ ଗଦା କଲେ । କହିଲେ, ତୁ ଫୁଲ ଗୁନ୍ଥୁଥା, ଆମେ ଆଉ ଫୁଲ ଆଣୁ । ମୁଁ ଖଣ୍ଡେ ପଥରେ ଫୁଲ ଗୁନ୍ଥି ବସିଲି । ସେମାନେ ଜଙ୍ଗଲ ଭିତରକୁ ଗଲେ । ମୋ'ର ଫୁଲଗୁନ୍ଥା ସରିଲା । ଅନେଇଁ ଅନେଇଁ କେହି ଫେରିଲେ ନାହିଁ । ଏଣେ, ଆକାଶରେ କଳାମେଘ ଘୋଟି ଚାଲିଛି । ଖରାତାଉ ଆଉ ନାହିଁ । ଥଣ୍ଡା ପବନ ସୁଲୁ ସୁଲୁ ବହୁଥାଏ । ମୋତେ ନିଦ ମାଡ଼ି ଆସିଲା । ଥଣ୍ଡା ପବନ ଦେହରେ ବାଜିବାରୁ ଆଖିପତା ମାଡ଼ି ପଡ଼ିଲା । ମୁଁ ଦେହରୁ ଲୁଗାକାନ୍ଧି ତଳେ ପାରିଲି, ବାହୁ ଉପରେ ମୁଣ୍ଡଭରା ଦେଇ ଆଖିବୁଜି ଶୋଇ ପଡ଼ିଲି । କେତେବେଳେ ନିଦ ଆସି ମୋ'ର ଆଖିପତା ମାଡ଼ି ବସିଲା ମୁଁ କେମିତି ଜାଣିବି ? ଖାଲି ଝଡ଼ ବରଷାର ସ୍ୱପ୍ନ ଦେଖୁଥାଏ ।

ସ୍ୱପ୍ନ ନୁହେଁରେ ବାପା, ସବୁ ସତ୍ୟ । ମୋର ନିଦ ଭାଙ୍ଗିଲା, ଦେଖିଲି, ଘୁରିଅନ୍ଧାର ଅନ୍ଧାର ଘୋଟିଛି । ପବନର ଦାଉରେ ଗଛସବୁ ଦୋହଲି ଉଠୁଛନ୍ତି— ଯେତେକ ଅରଣ୍ୟ, ମନ୍ଦିର ସବୁ ଉଡ଼ାଇ ନେବ । ଥଣ୍ଡା ପବନରେ ଲୋମମୂଳ ଟାଙ୍କୋଉ ଉଠୁଛି । ବର୍ଷାପାଣି ଝର ଝର ହୋଇ ଝରି ପଡ଼ୁଛି । ବିଜୁଳି ଚମକି ଉଠୁଛି । ମୁଁ ଉଠି ବସିଲି । ଭୟରେ ଗୁଡ଼ା ଭିତର ଥରି ଉଠିଲା ।

ବିଜୁଳି ମାରିଲା । ମୁଁ ଚମକି ଚାହିଁଲି । କିଏ ଜଣେ ଚାଲି ଚାଲି ମୋ ପାଖକୁ ଆସୁଛି । ଭୟରେ ମୋ'ର ପ୍ରାଣ ସତେକି ଉଡ଼ିଯିବ । ମୋ ତୁଣ୍ଡରୁ କଥା ବାହାରିଲା ନାହିଁ । ମୁଁ ଆଖି ବୁଜି ବିପଦର ପ୍ରତୀକ୍ଷାରେ ରହିଲି ।

କିଏ ଜଣେ ଧୀରେ ଧୀରେ ଡାକିଲା, ଜୟନ୍ତୀ, ଉଠିଲୁଣି କିଲୋ । ସତେକି ମୋ ପିଣ୍ଡରେ ପ୍ରାଣ ପଶିଲା । ମୁଁ ଉଠି ଠିଆ ହେଲି । ଥରିଲା ସ୍ୱରରେ ପଚାରିଲି, ତୁ କିଏ ? ଲୋକଟି ମୋର ଅତି ପାଖକୁ ଘୁଞ୍ଚି ଆସି କହିଲା, ଚିହ୍ନି ପାରୁନୁ ମୋତେ, ମୁଁ ତୋର ଅର୍ଜୁନ ଭାଇ ।

ଉତ୍ତର ଦେବାକୁ ଆଉ ବେଳ ପାଇଲି ନାହିଁ । ଅର୍ଜୁନ ଭାଇଙ୍କୁ କୁଣ୍ଢାଇ ଧଇଲି ଭୟରେ । ସେ ମୋତେ କୋଳ କରି ଗଛ ଉପରକୁ ଆଉଜାଇ ନେଲେ । ତାଙ୍କର କାନ୍ଧ ଉପରେ ମୋ'ର ମୁଣ୍ଡଟି ରଖି ଗୋଟିଏ ଦୀର୍ଘ ନିଶ୍ୱାସ ଛାଡ଼ିଲି ।

ଅର୍ଜୁନ ଭାଇ ପଚାରିଲେ, ତୁ ଏଠିକି ଆଇଲୁ କେମିତି ? ଏକୁଟିଆ ତଳଟାରେ ଶୋଇଥିଲୁ କାହିଁକି ? ମୁଁ ତମ ଘରକୁ ଆଜି ଯାଇଥିଲି । ମଉସା ମାଉସୀ ତୋତେ ଗାଁ ସାରା ଖୋଜୁଛନ୍ତି । ଅତି ବ୍ୟସ୍ତ ହେଉଛନ୍ତି ତୋ ପାଇଁ । ତମ ଘରୁ ଫେରି ଅସୁଣୁ ବାଟରେ ମେଘ ଉଠାଇଲା । ମନ୍ଦିର ଭିତରକୁ ଆସି ଦେଖେଁ ତ ତୁ ଶୋଇଛୁ । ପ୍ରବଳ ବର୍ଷା ହେଲା । ଶୀଘ୍ର ଫେରିଯିବାର ଆଶା ନ ଦେଖି ତୋତେ ଉଠାଇଲି ନାହିଁ ।

ବର୍ଷା କମିଗଲା । ଅର୍ଜୁନ ଭାଇ ମୋର ମୁଣ୍ଡ ଉପରେ ତାଙ୍କର ଚାମୁଚ୍ଛା ପକାଇ ଆମ ଘରକୁ ଫେରିଲେ । ମୋତେ ଦେଖି ବୋଉର ପିଣ୍ଡରେ ପ୍ରାଣ ପଶିଲା । ସେ ମୋତେ ଗେଲ କରି ଖାଲି ଏତିକି କହିଲା, ତୁ କୁଆଡ଼େ ଥିଲୁ ମା, ଅପରିଚ୍ଛିଅ ଅଛି ପିଲା, ଏକୁଟିଆ ଏଣେ ତେଣେ ବୁଲିବାକୁ ତୋତେ କେତେ ମନା କରିଥିଲି ?

ଅର୍ଜୁନ ଭାଇ ତାକୁ ସବୁ କଥା ବୁଝାଇ କହିଲେ ।

ତାପରେ, ସେହି ଯେ ଗୋଟିଏ ଦିନର ଘଟଣା, ମୋର ଶିଶୁ ପ୍ରାଣରେ ବଡ଼ ପରିବର୍ତ୍ତନ ଆଣିଲା । ବର୍ଷାପାଣିରେ ରାତିସାରା ଭିଜି ତହିଁ ଆରଦିନ ଜରରେ ପଡ଼ିଲି । ଅର୍ଜୁନ ଭାଇ ସଞ୍ଜ ସକାଳ ଦି ବେଳା ଆମ ଘରକୁ ଆସି ମୋର ଖବର ଅନ୍ତର ନିଅନ୍ତି । ଦରକାର ପଡ଼ିଲେ ପଥିପାଚନ କଥା ବୁଝନ୍ତି । ବୋଉ ବାଧ କଲେ ରାତିରେ ମଧ୍ୟ ଅଟକି ଯାନ୍ତି ।

ଜର ଭଲ ହେଲା । କିଛିଦିନ ପରେ ପୁଣି ପୂର୍ବ ସ୍ୱାସ୍ଥ୍ୟ ଫେରିପାଇଲି । ହୁନିଆଁର ନିତିଦିନିଆଁ କାମ ନିତିଦିନ ଚାଲିଲା ପୂର୍ବପରି । ଗାଁ ପିଲାଏ ମେଳ ବାନ୍ଧି ଅଗପରି ସବୁଦିନେ ଜଙ୍ଗଲକୁ ଯାଉଥାନ୍ତି । ବେଳେବେଳେ ଦେଖା ହେଲେ ମୋତେ ଆଖିଠାରି ଡାକନ୍ତି । ଯିବାକୁ ମନ ହୁଏ, କିନ୍ତୁ ସେଦିନ କଥା ମନେ ପଡ଼ିଲେ ମୁଁ ଯିବାକୁ ମନାକରି ମନ ଦୁଃଖରେ ଘରକୁ ଫେରିଆସେ ।

ବୋଉ ମୋର ମନ ଦୁଃଖ ବୁଝି ପାରିଲା । ଦିନେ ଅର୍ଜୁନ ଭାଇଙ୍କୁ କହିଲା, ଆରେ ଅର୍ଜୁ, ତୁ ତ ନିତି ଏଇବାଟେ ନଈକୂଳଆଡ଼େ ବୁଲି ଯାଉ, ଗଲାବେଳେ ଏହିବାଟେ ମୁହଁ ମାରିଦେଇ ଯାଉଥିବୁ ତ । ଦେଖିଲୁ, ଜୟନ୍ତୀର ମୁହଁ କିପରି ଶୁଖି ଯାଇଛି । ତାର ଯଦି ଇଚ୍ଛା ହେବ ସେ ତୋ ସଙ୍ଗେ ବୁଲିଯିବ । ଅର୍ଜୁନ ଭାଇ ଚଳାକରି କହିଲେ, ମୁଁ ସବୁଦିନେ ଏଇଆଡ଼େ ଆସେନାହିଁ । ଯେବେ ଆସିବି ତାକୁ ସଙ୍ଗରେ ନେଇଯିବି ।

ସେହି ଦିନଠାରୁ ପ୍ରତିଦିନ ମୁଁ ଅର୍ଜୁନ ଭାଇଙ୍କ ସଙ୍ଗେ ବୁଲିବାକୁ ବାହାରେ । ସେ ମୋର ହାତ ଧରି ସଙ୍ଗରେ ବୁଲାଇ ନେବାକୁ ଭଲ ପାଆନ୍ତି । କେବେ କେବେ ନଈ କୂଳକୁ ବୁଲିଯାଉଁ । କାହିଁ କେଉଁ ପଥର ଚଟାଣ ଉପରେ ଦିହେଁ ପାଖାପାଖି ବସି ସୁନ୍ଦର ପ୍ରକୃତିର ମନ ଭୁଲାଣିଆଁ ଛବି ଦେଖି ଆତ୍ମହରା ହୋଇ ପଡୁଁ । ମୁଁ ହସି ହସି ତାଙ୍କର କୋଳକୁ ଆଉଜି ପଡ଼େ । ସେ ମୋତେ ସ୍ନେହରେ କୋଳ କରନ୍ତି । ଗେଲ କରନ୍ତି । ନଅ ବର୍ଷର ଝିଅଟି ମୁଁ, ତାଙ୍କର ସ୍ନେହ ସୋହାଗ ମତେ ଭଲ ଲାଗେ ।

ସଞ୍ଜ ବୁଡ଼ି ଆସେ । ଆମେ ହାତ ଧରାଧରି ହୋଇ ଘରକୁ ଫେରୁ । ସେ ମୋତେ ଆମ ଘରେ ଛାଡ଼ି ନିଜ ଘରକୁ ଫେରିଯାଆନ୍ତି । ଦିନେ ଦିନେ ଆମେ ନଈ କୂଳକୁ ନ ଯାଇ ଜଙ୍ଗଲରେ ବୁଲୁ । ଫୁଲ ତୋଳୁ, କୋଳି ତୋଳୁ । ମୋ ହାତ ନ ପାଇଲେ ଅର୍ଜୁନ ଭାଇ ନିଜେ ମୋ ପାଇଁ ଫୁଲ ଫଳ ତୋଳି ଦିଅନ୍ତି । ନୋହିଲେ, ତାଙ୍କ କାନ୍ଧ ଉପରକୁ ଟେକି ଦିଅନ୍ତି, ମୁଁ ହାତ ବଢ଼ାଇ ତୋଳେ । ତାଙ୍କ ଉପରେ ମୋ'ର ପୂର୍ଣ୍ଣ ଅଧିକାର ବୋଲି ମୁଁ ମାନି ନେଇଥାଏ । ଭୟ କି ସଂକୋଚ କରେ ନାହିଁ ।

ବଣରେ କେତେ ଜୀବଜନ୍ତୁ । ଚଢ଼େଇ ଛୁଆଟିଏ ହାବୁଡ଼ି ଗଲେ ତାକୁ ଧରିବାକୁ ମୁଁ ଦଉଡ଼େ । ଅର୍ଜୁନଭାଇ ମୋ ହାତଧରି କହନ୍ତି ଛି ଜୟନ୍ତୀ, ପର ଛୁଆକୁ ଧରିବାକୁ ଯାଉଛୁ ? ତୋର କି ଅଧିକାର ଅଛି ତା ଉପରେ ? ଯାଉ, ସେ ଉଡ଼ିଯାଉ । ବଡ଼ ହେଲେ ଆମରି ଆଗରେ ଗଛ ଉପରେ ବସି କେତେ ଗୀତ ଗାଇବ, ଆମକୁ ଶୁଣାଇବ ।

ମୁଁ ତୁନି ରହେ । କେବେ କେମିତି ପଚାରେ, ଚଢ଼େଇ କଣ ଗୀତ ବୋଲନ୍ତି ?

ସେ କହନ୍ତି, ଶୁଣିବୁ ? ଆଚ୍ଛା, ତୁନି ହୋଇ ଶୁଣିଲୁ ।

ମୁଁ ଶୁଣେ । ବଣରେ କେତେ ଜାତିର ଚଢ଼େଇ ବା ନାହାନ୍ତି, ଟିକେ କାନ ଡେରି ଶୁଣିଲେ ସେମାନଙ୍କର କଳରବ ଆସି କାନରେ ପଡ଼େ । ଏଇଆକୁ ସେ କହନ୍ତି ଗୀତ ! କହେଁ, ନାହିଁ ନାହିଁ, ମୋତେ ଏ ଚଢ଼େଇ ଗୀତ ଭଲ ଲାଗୁନାହିଁ । ତମେ ଗୀତ ଗାଅ । ମୁଁ ଜିଗର ଲଗାଇଲେ ଅର୍ଜୁନ ଭାଇ ଗୀତ ବୋଲନ୍ତି ତାଙ୍କର କଣ୍ଠ ସ୍ୱର ମୋତେ ଭଲ ଲାଗେ । ମୁଁ କିଛି ବୁଝିପାରେ ନାହିଁ । ଦେଖେ, ଯେବେ ସେ ଗୀତ ବୋଲନ୍ତି ତାଙ୍କର ଆଖି ଛଳ ଛଳ ହୋଇ ଆସେ ।

ଦିନେ ପଚାରିଲି, ଅର୍ଜୁନ ଭାଇ ତୁମେ କଅଣ ବୋଲୁଛ କହିବ ନାହିଁ ? ମୁଁ କିଛି ବୁଝିପାରୁ ନାହିଁ, ଶୁଣିବାକୁ ଭଲ ଲାଗୁଛି ସିନା ।

ସେ କହନ୍ତି, ବୁଝିପାରୁନୁ ଏତେ ସହଜ କଥା ? ଅଚ୍ଛା ଶୁଣ । ତା ପରେ ସେ ଆକାଶ ଆଡ଼କୁ ହାତ ଦେଖାଇ କହନ୍ତି, ଦେଖୁଛୁ କେତେ ବଡ଼ ଏ ଆକାଶ ! ଏହାର ଭିତରେ ଆମର ଏହି ପୃଥିବୀ ପରି କେତେ ଲକ୍ଷ, କେତେ କୋଟି ପୃଥିବୀ ଲୁଚି ରହିଛି । ଏହି ବଡ଼ ବଡ଼ ସୂର୍ଯ୍ୟ, ଚନ୍ଦ୍ର ଓ ପୃଥିବୀଠୁ ଆରମ୍ଭ କରି ଆମପରି ଶ୍ରେଷ୍ଠ ମଣିଷ, ଆମଠୁ ଅଧିକ ଶ୍ରେଷ୍ଠ ପଶୁପକ୍ଷୀ କୀଟପତଙ୍ଗ ଏମାନଙ୍କୁ ଯିଏ ଗଢ଼ିଛି, ସେହି ପରମ ପିତା ପରମେଶ୍ୱରଙ୍କର ମହିମା ଗାନ କରନ୍ତି ବଣର ଏହି ପକ୍ଷୀ ଗୁଡ଼ିକ । ମୁଁ ବି ତାଙ୍କର ମହିମା କୀର୍ତ୍ତନ କରିବାକୁ ଗୀତ ବୋଲେ ।

କିଏ ସେ, ତାଙ୍କୁ ତ ଆମେ ଦେଖି ପାରୁନୁ । ସେ ଆମକୁ ଦେଖି ପାରନ୍ତି ? ଆମର ଗୀତ ଶୁଣି ଖୁସି ହୋଇ ପାରନ୍ତି ?

କିଏ କହିଲା ତାଙ୍କୁ ଆମେ ଦେଖି ପାରୁନୁ ? ତାଙ୍କର ହାତଗଢ଼ା ଏହି ବିଶ୍ୱଚରାଚର । ତା ଭିତରେ ନିଜେ ନିଜକୁ ଦେଖି ପାରୁଛୁ । ସେ ଯେ ଅଛନ୍ତି ସବୁବେଳେ ଆମ ପାଖେ ପାଖେ, ଆମ ଚାରିଆଡ଼େ, ଆମ ଭିତରେ ବାହାରେ, ଆମକୁ ବରାବର ଜଗି ରହିଛନ୍ତି, ଏଥିରେ ସନ୍ଦେହ ନାହିଁ । ଆମର ଗୀତ ସେ ଶୁଣନ୍ତି । ସେଠୁ କି ଖୁସୀ ହୁଅନ୍ତି ସେ କଥା କେମିତି କହିବ ? ବାପ ଅଜାଙ୍କର ପ୍ରଶଂସା ଶୁଣିଲେ ତାଙ୍କର ସନ୍ତାନ ବୋଲି ଆମର ମନରେ ଗର୍ବ ଆସେ । ସେମାନଙ୍କର ଗୁଣ ଗାଇଲେ ଆମେ ନିଜେ ଖୁସି ହେଉଁ । ପରମେଶ୍ୱର ସମସ୍ତଙ୍କର ପିତା । ତାଙ୍କର ନାମ କୀର୍ତ୍ତନ କଲେ ମନରେ ଆନନ୍ଦ ଆସେ ।

ଏହିପରି କେତେ ସେ ବୁଝାନ୍ତି । ମୁଁ ଅବାକାବା ହୋଇ ତାଙ୍କ ମୁହଁକୁ ଚାହିଁ ରହିଥାଏ । ଆକାଶରେ ଖଣ୍ଡେ ମେଘ ଭାସି ଯାଉଛି । ତା ଦେହରେ ଭଗବାନ ନାଲି, ନେଳୀ, କଳା ରଙ୍ଗ ବୋଳିଛନ୍ତି । ଗଛରେ ଫୁଲ ଫୁଟି ହସୁଛି । ନଦୀ ପାଣିରେ ତରଙ୍ଗ ଉଠୁଛି । ସଞ୍ଜ ପବନ ମନ୍ଥର ଅତି ଶୀତଳ । ଆକାଶରେ ତାରା ଗୁଡ଼ିକ ବାହାରି ହୋଇ ପଡ଼ନ୍ତି । ମୟୂର ଚିତ୍ରିତ ପୁଚ୍ଛ ଟେକି ନାଚେ । କୋଇଲି କୁହୁ କୁହୁ ଡାକେ । ଏ ସବୁ କୁଆଡ଼େ ସେହି ଭଗବାନଙ୍କର କାମ ।

ଅର୍ଜୁନ ଭାଇ ମୋତେ ସବୁଦିନେ ଏହି କଥା କହନ୍ତି ।

ମୁଁ ଘରକୁ ଫେରି ମା ଆଗରେ ସବୁ କଥା କହେ । ସେ ମନଦେଇ ଶୁଣେ । ଅର୍ଜୁନ ଭାଇକୁ ପ୍ରଶଂସା କରି କହେ, କୋଟି କରେ ଗୋଟିଏ ପିଲା ଅର୍ଜୁନ, ରୂପ ଯେମିତି ସୁନ୍ଦର ଗୁଣ ତହୁଁ ବଳି ଭଲ । ମା ମୋ ମୁହଁକୁ ଚାହେଁ । ତାର ହସ ହସ ସୁନ୍ଦର ମୁହଁର ଆଖି ଦିଓଟି ଉଜ୍ଜ୍ୱଳ ହୋଇ ଉଠେ । ସେ ମୋତେ ଛାତିକୁ ଟାଣି ନଏ ।

ଅର୍ଜୁନ ଭାଇର ପ୍ରଶଂସା ପର ମୁହଁରୁ, ବିଶେଷତଃ ମା ମୁହଁରୁ ଶୁଣିଲେ ମୋତେ ଖୁସି ଲାଗେ । ପୁଣି ଥରେ ତାଙ୍କୁ ଦେଖିବାକୁ ମନ ହୁଏ । ସତରେ ସେ କେଡ଼େ ଭଲ, ମୋତେ କେତେ ଭଲପାଆନ୍ତି, ସ୍ନେହ କରନ୍ତି । ବୁଲି ଯାଉଣୁ ବାଟରେ କଥା କହନ୍ତି । ସୀତା, ସାବିତ୍ରୀ, ପାର୍ବତୀ, ଦ୍ରୌପଦୀ, ଦମୟନ୍ତୀ, ଦୁର୍ଗାବତୀ, ଏମିତି ଆହୁରି କେତେ କଥା । ଆଜଯାଏ ସେ ସବୁ ମୋର ପଦ ପଦ ହୋଇ ମନେ ଅଛି ।

ଆମେ ବେଳେ ବେଳେ ସେଇ ପୁରୁଣା ମନ୍ଦିରକୁ ଯାଉଁ । ଅର୍ଜୁନ ଭାଇ ଫୁଲ ତୋଳି ଆଣେ । ମୁଁ କେବେ କପରି ତା ସଙ୍ଗରେ ଯାଇ ଫୁଲ ତୋଳେ । ଦୁହେଁ ଏକାଠି ବସି ମାଳ ଗୁନ୍ଥୁ । ଠାକୁରଙ୍କୁ ଉପହାର ଦେଉଁ । ଦିନେ ଦିନେ ମା ଆମ ସଙ୍ଗରେ ଠାକୁର ଦଶନ କରିବାକୁ ଆସେ । ଆମ ଦୁହିଙ୍କୁ ଆଗରେ ହାତ ଧରାଧରି ହୋଇ ଯିବାର ଦେଖିଲେ, ସେ ଖୁସି ହୁଏ । ମନେ ମନେ ପୁଣି କଣ ଭାବେ, ଡାକକରି କହେ, ଆଲୋ ଜୟନ୍ତୀ, ମୁଣ୍ଡରୁ ଲୁଗା ଖସି ଯାଇଛିମ, ଲୁଗା ଟାଣିଆଣ ।

ମୁଁ ଶୁଣିବା ଆଗରୁ ଅର୍ଜୁନ ଭାଇ ମୋ ମୁଣ୍ଡ ଉପରକୁ ଲୁଗା ଟାଣି ଆଣନ୍ତି । ମାଆଙ୍କୁ ଶୁଣାଇଁ କହନ୍ତି, ପିଲାଲୋକ—ଲୁଗାପ୍ରତି ନଜର ନାହିଁ । ମା କହନ୍ତି, ଜୟନ୍ତୀ ନଙ୍ଗୁଳୀଟାଏ । ବଡ଼ ହୋଇ ଆସିଲା, ସଜୁଣା ଶିଖିବ ନାହିଁ ?

ଦିନେ ଦର୍ଶନକରି ଫେରୁ ଫେରୁ ମୁଁ ପଚାରିଲି, ଅର୍ଜୁନ ଭାଇ, ଆମେ ଠାକୁର ବୋଲି ଗୋଟିଏ ପଥର ମୂର୍ତ୍ତିକୁ ପୂଜା କରିବା କାହିଁକି ? ସେ ମୋ ମୁହଁକୁ ଚାହିଁ ହସି ହସି କହିଲେ, କାହାରି କାହାରି ମନରେ ଏପରି ପ୍ରଶ୍ନ ଉଠେ ବେଳେ ବେଳେ । ମଣିଷ ପଥର ପୂଜା କରେ ନାହିଁ ଲୋ, ସେ ପୂଜାକରେ ତାର ଭକ୍ତିକୁ, ବିଶ୍ୱାସକୁ । ମଣିଷର ଯହିଁରେ ବିଶ୍ୱାସ ହୁଏ ସେ ତାକୁ ଠାକୁରବୋଲି ମାନି ନଏ ।

ପିଲା ମନ ମୋର, ତାଙ୍କର ସେ ଭକ୍ତି ତତ୍ତ୍ୱରେ ପଶି ପାରେ ନାହିଁ । ସେ ବୁଝାଇ ଯାଆନ୍ତି, ମୁଁ ଶୁଣିଯାଏ । କଣ ବୁଝେ କଣ ନାହିଁ ଏବେ ମୋର ମନେ ନାହିଁ । ତାଙ୍କର ମୁହଁଟିକୁ ମୁଁ ଚାହିଁ ରହେ ତନ୍ମୟ ହୋଇ ।

ଏତେ ତ କହିଗଲି ବାହାରର କଥା, ମନ ଭିତରର, ଦେହ ଫୁଲଙ୍କର କଥା ତୋତେ ମୁଁ କହିବାକୁ ଇଚ୍ଛା କରୁଛି । ସଂସାର ଯାହାକୁ ଲଜ୍ଜା ବୋଲି ଲୁଚାଇ ରଖିବାକୁ ଚାହେଁ, ଏପରିକି ସେ ପ୍ରସଙ୍ଗ ବିରୁଦ୍ଧରେ ନିୟମ ଗଢ଼ି ଲୋକଙ୍କୁ ମୂକ କରି ଅନ୍ଧ କରି ରଖିବାକୁ ଚାହେଁ, ସେହି ପ୍ରସଙ୍ଗଟି ମୁଁ ପିଲାଦିନୁ ଯେପରି ଭାବରେ ଅନୁଭବ କରିଛି, ଦେଖିଛି ଓ ଶୁଣିଛି, ସବୁ ଆଜି ତୋତେ ଖୋଲି କହିବି ।

ସ୍ତ୍ରୀ ପୁରୁଷ, ବାଳକ ବାଳିକାର ପରସ୍ପର ଆକର୍ଷଣ ବା ସମ୍ବନ୍ଧ, ଦୈହିକ ହେଉ ବା ମାନସିକ ହେଉ, ଲୋକେ ତାହାକୁ ଲଜ୍ଜା ସରମର, ଘୃଣା ସଂକୋଚର ଓ ଅତି ଗୋପନ କଥା ବୋଲି କହିଥାନ୍ତି । କିନ୍ତୁ ବାପ, ଅନ୍ଧାର ଘରେ ପାପ କାୟା ବଢ଼ାଇ ପାରେ ଅତି ସହଜରେ । ଅନ୍ଧାରକୁ ଦୂରୀଭୂତ କଲେ ଯାହାକୁ ଲୋକେ ପାପ ବୋଲି କହନ୍ତି, ସେହି ବିଷୟ ଦିନଆଁର ଆଖିକି ଜଳ ଜଳ ଦେଖାଯିବ । ଅଜଣା ବାଟରେ ଚାଲିଲେ ମଣିଷ ଝୁଣ୍ଟେ, ବାଟ ଜଣାଥିଲେ ଦୁର୍ଗମ ଘାଟରେ ଏକୁଟିଆ ଗଲେ ଡର ଭୟ କରୁ ନ ଥାଏ ।

ଅର୍ଜୁନଭାଇଙ୍କର ବୟସ ଷୋଳ କି ସତର । ସ୍ୱାସ୍ଥ୍ୟ ସୁନ୍ଦର, ସବଳ ଦେହ । ସୁନ୍ଦର ଚେହେରା । ଅନ୍ୟତଃ ମୋ ଆଖିକି ସେ ସୁନ୍ଦର ଦିଶନ୍ତି । ନିଜେ ସେ ନିଜର ଦେହର ଯତ୍ନ ନିଅନ୍ତି ନାହିଁ । ମୁଣ୍ଡର ବାଳଗୁଡ଼ିକ ବଢ଼ି ବଢ଼ି ଆସି ବେକରେ ମୁହଁରେ ପଡ଼େ । ତେଲ ନ ଲଗାଇବାରୁ ସେ ଗୁଡ଼ିକ ଅଡୁଆ ହୋଇ ଜଟା ଧରେ । କେହି ଯଦି କେବେ ସେଥିପ୍ରତି ତାଙ୍କର ଦୃଷ୍ଟି ଆକର୍ଷଣ କରେ, ତେବେ ସେ ସବୁ ମୂଳପୋଛିହୋଇ କଟାହୁଏ, ନୋହିଲେ ନାହିଁ । ଲୁଗା ପଟା ପ୍ରତି ସେ ସେହିପରି ଉଦାସ । ଖିଆ ପିଆରେ ଠିକ୍ ନ ଥାଏ । ମନେ ପଡ଼ିଲେ, ଇଚ୍ଛା ହେଲେ, ସେ ଖାଇବାକୁ ଯାଆନ୍ତି, ନୋହିଲେ ଭୋକିଲା ପେଟରେ ଏଣେ ତେଣେ ବୁଲୁଥାନ୍ତି । ଏକଥା ଜାଣିପାରି ମା ତାଙ୍କୁ ଯେବେ ଦେଖେ, ଆଗ ଖାଇବାକୁ ଡାକେ, ଖୋଇ ପେଇ ଛାଡ଼େ । ନିଜ ପ୍ରତି ନଜର ଦେବାକୁ ବୁଝାଇ କହେ ।

ସେ ଶୁଣନ୍ତି, ହସନ୍ତି ।

ପୋଥି ଖୋଜି ପଢ଼ିବା, ନଟଶାଳାରେ ବଣରେ ଗଛ ଛାଇରେ ପଡ଼ିଆ ଛାଇରେ ଏକୁଟିଆ ବସି ଉଦୁଉଦିଆ ଦିପହରେ ପୋଥି ଉତାରିବା, ତାଙ୍କର ଏକମାତ୍ର କର୍ମ । ନଈକୂଳରେ ନଟଶାଳାରେ ବସି ସେ ବଡ଼ ପାଟି କରି ପୋଥି

ପଢ଼ନ୍ତି । ପଢ଼ୁ ପଢ଼ୁ ତନ୍ମୟ ହୋଇ ମନକୁ ମନ ହସନ୍ତି, କାନ୍ଦନ୍ତି । ସେଥିପାଇଁ ଦେଖିଲା ଶୁଣିଲା ଲୋକେ ତାଙ୍କୁ ଅଡ଼ବାଇଆ କହନ୍ତି ।

ଅଡ଼ବାଇଆ ପିଲା ବୋଲି ଲୋକେ ଯାହାକୁ ଅବହେଳା କରି ଅନାନ୍ତି ନାହିଁ, ଅନାଇଁଲେ ମଣିଷବୋଲି ପାସଙ୍ଗରେ ପକାନ୍ତି ନାହିଁ, ତାଙ୍କର ସଂସର୍ଗରେ ମୋର ପିଲାଦିନଟା କଟିଗଲା । ତାଙ୍କରି ପାଖରେ ରହିବାକୁ ମୋତେ ଭଲ ଲାଗେ । ସେ କଥା କହନ୍ତି, ମୁଁ ମନଦେଇ ଶୁଣେ । ଓଲଟି ପଚାରିଲେ ମୁଁ କିଛି କହିପାରେ ନାହିଁ । ମୁଁ କଣ ଶୁଣୁଥିଲି ? ତାଙ୍କ ମୁହଁକୁ ଚାହିଁ ରହେ ଖାଲି । ତାଙ୍କ ମୁହଁର ଅପରୂପ ସରଳତାରେ ମୁଁ ମୁଗ୍ଧ ହୋଇଥିଲି ! ସେ ବିରକ୍ତ ହୁଅନ୍ତି ନାହିଁ । ହସି ହସି ଖେଳରେ ମୋତେ ଆପଡ଼ ମାରନ୍ତି । ମୁଁ ବି ଖେଳରେ ତାଙ୍କ ଉପରକୁ ଢଳି ପଡ଼େ । ତାଙ୍କର ଦେହର ସ୍ପର୍ଶ ମୋର ଦେହକୁ ଭଲଲାଗେ । କାହିଁକି ଭଲଲାଗେ ମୁଁ ଜାଣି ନ ଥିଲି । ତାଙ୍କ ଛଡ଼ା ଅନ୍ୟ କୌଣସି ଯୁବକର ଦେହର ସ୍ପର୍ଶ ସେପରି ଭଲ ଲାଗନ୍ତା କି ନାହିଁ ମୋର ସେ ଅଭିଜ୍ଞତା ନଥିଲା ।

ନଈକୂଳ କି ପାହାଡ଼ ଉପରେ ନିରୋଳାରେ ଦୁଇଜଣ ଏକାଠି ବସୁ । ଅର୍ଜୁନ ଭାଇ କେତେ କଣ କହେ, ମୁଁ ଶୁଣେ । ହଠାତ୍ ମୁଁ ତା କୋଳକୁ ଢଳି ପଡ଼େ । ମୋତେ ସେ ଆଦର କରି ସ୍ନେହରେ ଭୁଇଁ ଉପରୁ ଆଉଜାଇ ନିଅନ୍ତି । ଆଲିଙ୍ଗନ କରି ମୋ ମୁଣ୍ଡରେ ମୁଣ୍ଡ ଲଗାନ୍ତି । ମୋ କପାଳରେ, ଚିବୁକରେ ଚୁମ୍ବନ ଦିଅନ୍ତି । ମୋତେ ଭଲ ଲାଗେ । ତାଙ୍କୁ ବି ବୋଧହୁଏ ଭଲଲାଗେ ନୋହିଲେ ସେ ମୋତେ ଆଲିଙ୍ଗନ କରନ୍ତେ କାହିଁକି ? ବେଳେ ବେଳେ ସେ ମୋତେ ଦୂରକୁ ଠେଲିଦେଇ ଲାଜରେ ହେଲାପରି ହୁଅନ୍ତି । ତାଙ୍କର କଥା କୁହା ବନ୍ଦ ହୁଏ ।

ବାପ, ଏଇତ ମଣିଷ ଜୀବନର ରହସ୍ୟ । ପ୍ରକୃତିର ପ୍ରଥମ ଖେଳର ସୂଚନା । ବାଲ୍ୟକାଳ ଅତିକ୍ରମ ହୋଇନାହିଁ, ଯୌବନ ଅଦୂରର ଦ୍ୱାରରେ ଅଛି, ତଥାପି ଏହି ରହସ୍ୟର ଆରମ୍ଭ ହୁଏ କାହିଁକି ମଣିଷ ଜୀବନର ଅବେଳାରେ ? ପୁରୁଷ କହ ସ୍ତ୍ରୀ କହ ଅବା ବାଳକ ହେଉ ବା ବାଳିକା ହେଉ, ପରସ୍ପର ସଂସର୍ଗର ମୋହ ଓ ମିଳାମିଶାର ନିଶା ଆପେ ଆପେ ଯୋଟିଆସେ କାହିଁକି ?

ଆକର୍ଷଣ ବା ମୋହ ନରନାରୀ ଭିତରେ ପ୍ରକୃତି ସଜାଗ ରଖିଛି । ପରସ୍ପର ମିଳନରେ ଯଦି ଆନନ୍ଦର ଜନ୍ମ ହେଉ ନଥାନ୍ତା ସେପରି ମିଳନ ବା ହୁଅନ୍ତା କାହିଁକି ? ସେପରି ମିଳନର ଅଭିଳାଷୀ ଜୀବଜଗତ୍ ବିଶେଷତଃ ମଣିଷଜାତି, କରନ୍ତା କାହିଁକି ? ମିଳନ ବ୍ୟତିରେକେ ଏ ମଣିଷସମାଜ ଆଜିଯାଏ ବଞ୍ଚି ରହିଥାନ୍ତା କି ? ତେଣୁ କେବଳ ମଣିଷ ଜାତିର ଭବିଷ୍ୟତ ଜୀବନ ପାଇଁ ସ୍ତ୍ରୀ ପୁରୁଷର ମିଳନ ଲୋଡ଼ା ଓ ମିଳନପାଇଁ ଆକର୍ଷଣ ବା ମୋହର ସୃଷ୍ଟି । ସେହି ମୋହ, ମିଳନ ଓ ସୃଜନ ପାଇଁ ଗୋଟିଏ ସ୍ୱତନ୍ତ୍ର ଆନନ୍ଦ ମଣିଷର ମନରେ ଓ

ଦେହରେ ମୁକ୍ତିକର୍ତ୍ତା ସମ୍ବାଦ ରଖିଛନ୍ତି । କେବଳ ମଣିଷ ତ ନୁହେଁ, ଦୁନିଆଁର ସବୁ ଜୀବ, ବୃକ୍ଷଲତା ମଧ୍ୟ ମୁକ୍ତିଦାତାଙ୍କ ସହିତ ମିଳନ ଆକାଂକ୍ଷୀ ।

ହଁ, କହୁଥିଲି ପରା—

ଅର୍ଜୁନ ଭାଇ ଲଜ୍ଜିତ ହୋଇ ମୋତେ ଦୂରକୁ ଠେଲି ଦିଅନ୍ତି । ମୁଁ ପୁଣି ଡଳିପଡ଼େ ତାଙ୍କର ପିଠି ଉପରେ । ସେ ମୋତେ ଟାଣିନେଇ କୋଳରେ ବସାନ୍ତି, ମୋର ମୁହଁକୁ ଅନାଇଁ ରହନ୍ତି । ମୋର ଭ୍ରୂଲତା ଓ ମୁହଁକୁ ଆଉଁସି ଦିଅନ୍ତି । ମୋତେ ଟେଲିକରି କହନ୍ତି, ତୁ କେଡ଼େ ସୁନ୍ଦର ପିଲାଟିଏ ଜୟନ୍ତି !

ମୁଁ ପଚାରେଁ, ସତରେ ଅର୍ଜୁନଭାଇ ?

ହଁଲୋ, ସତରେ ।

ମୋତେ ଖୁସିଲାଗେ । ମୁଁ ଦୁଇ ହାତରେ ତାଙ୍କର ବେକକୁ ଭିଡ଼ିଧରେ ।

ସମୟ ଏହିପରି କଟିଗଲା ।

ଅର୍ଜୁନଭାଇ ସହିତ ଦିନୁଦିନ ଘନିଷ୍ଠତା ବଢ଼ି ଆସିଲା । ତାଙ୍କର କୋଳକୁ ଡଳିପଡ଼ିବାକୁ ମୋତେ ଆଉ ଲାଜ ମାଡ଼ିଲା ନାହିଁ କି ସେ ମଧ୍ୟ ମୋତେ ଆଲିଙ୍ଗନ କରି ସ୍ନେହରେ ମୋର ଗଣ୍ଡଚୁମ୍ବନ କରିବାକୁ ନିଜକୁ ସଙ୍କୁଚିତ ମନେକଲେ ନାହିଁ । ପରସ୍ପରଠାରୁ ପରସ୍ପରର ଭୟଜନିତ ସଙ୍କୋଚ ଭାଙ୍ଗିଗଲା । କିନ୍ତୁ ବାପ, ମୋର ମନେ ଅଛି, ଏକୁଟିଆ ବୁଲିଗଲା ବେଳେ, ସମସ୍ତଙ୍କର ଚକ୍ଷୁ ଅନ୍ତରାଳରେ ଆମେ ଦୁହେଁ ଯେପରି ମିଶୁ, ଗାଁ ମଝିରେ, ବାପ ମାଙ୍କ ଆଗରେ ସେପରି ମିଶିବାକୁ ସାହସ ହୁଏ ନାହିଁ । କାଲେ କିଏ ବାଣ୍ଟିଦେବ, କାଲେ କିଏ କଣ କହିବ ! ମୋର ମନ ରାଜ୍ୟରେ ସେ ବୟସରେ ଗୋଟିଏ ଆନନ୍ଦପ୍ରଦ ଆନ୍ଦୋଳନର ସୃଷ୍ଟି ହୋଇଥାଏ ।

ଦିନକର ଅର୍ଜୁନଭାଇ ଆମଘରେ ପହଞ୍ଚିଲା ବେଳକୁ ମୁଁ ବୋଉ ପାଖରେ ବସିଛି । ପ୍ରାୟ ପନ୍ଦରଦିନ ହେବ ସେ କୁଆଡ଼େ ଥିଲେ କେଜାଣି, ଆମ ଘରକୁ ବୁଲି ଆସି ନଥିଲେ । ତାଙ୍କୁ ଦେଖି ଆନନ୍ଦରେ ମୁଁ ଚିତ୍କାର କରି ଉଠିଲି, ତେମେ ଆଜିଯାଏ କେଉଁଠି ଥିଲ ?

ସେ ମୋତେ ଟେଲିକରି କହିଲେ, ଜଣେ ସାଧୁଙ୍କ ସଙ୍ଗେ ଥିଲି, ଆ, ବୁଲିଯିବା । ବୋଉ ଟିକିଏ ଗମ୍ଭୀର ସ୍ୱରରେ କହିଲା, ନାଇଁରେ ବାପ, ଆଜି ସେ ଯିବନାହିଁ । ମୋର ମନ ଭଲନାହିଁ । ଦେହ ଭଲନାହିଁ । ସେ ମୋ ପାଖରେ ରହୁ ।

ବୋଉର କଥାରୁ ମୁଁ କିଛି ବୁଝିପାରିଲି ନାହିଁ । ବର୍ତ୍ତମାନ ପରି ସେ ମୋତେ ଭଲରେ କେତେ କଥା କହୁଥିଲା, ହଠାତ୍ ତାର ଏମିତି କଣହେଲା ? ମୁଁ ତା ମୁହଁକୁ ଚାହିଁଲି । ମୁହଁ ତାର ଗମ୍ଭୀର ହୋଇଛି । ଆଖି ଦିଓଟାରୁ ଉଜ୍ଜ୍ୱଳ ଦୀପ୍ତି ଲିଭିଯାଇଛି । ମୋ ମନରେ ଡରହେଲା ।

ବୋଉ କହିଲା, ଜୟନ୍ତୀ, ମୋ ମୁଣ୍ଡ ଘଷିଦେଲୁ । ମୁଁ ଅର୍ଜୁନ ଭାଇର ହାତ ଛାଡ଼ି ତାର ମୁଣ୍ଡ ଘଷିଦେବାକୁ ଫେରି ଆସିଲି । କିଛି ପଚାରିବାକୁ ସାହସ ହେଲାନାହିଁ । ପଦେ ଅଧେ ଏଣୁ ତେଣୁ କଥାଭାଷା ହୋଇ ଅର୍ଜୁନ ଭାଇ ବିଦାୟ ନେଲେ ।

ମୁଁ ପଚାରିଲି, ବୋଉ, ତୋ ମୁଣ୍ଡ କଣ ହେଉଛି ?

ବୋଉ ପୂର୍ବପରି ଗମ୍ଭୀର ମୁହଁରେ କହିଲା, ନା କିଛିନାହିଁ । ଭଲ ହୋଇଗଲାଣି । ତାପରେ ସେ ଆରମ୍ଭ କଲା, ଜୟନ୍ତୀ, ମା ମୋର, ତୁ ଲାଜ ସରମ କିଛି ଶିଖିଲୁ ନାହିଁ । ସବୁଦିନେ କଅଣ ତୋର ସେହି ପିଲା ମନ ପିଲା ବୁଦ୍ଧି ସେମିତି ରହିଥିବ ? ତୁ ଆଉ ପିଲାନୁହଁ । ଏଥର ଲାଜ ସରମ ଶିଖ, ଆଡ଼ ଉଢ଼ୁଆଳ ହ । ମରଦ ପୁଅ ଦେଖିଲେ ମୁଣ୍ଡକୁ ଓଢ଼ଣା ଟାଣି ଆଡ଼ ହୋଇଯିବୁ । ପରପିଲାକୁ କଥା କହିବୁ ନାହିଁ । ଦେଖୁନୁ, ଗାଁର ଆଉ ଝିଅମାନେ କେମିତି ଚଳୁଛନ୍ତି । ଆଡ଼ ଉଢ଼ୁଆଳ ନ ହେଲେ, ପର ପୁଅକୁ ଲାଜ ସରମ ନ କଲେ, ଗାଁର ବାରଲୋକେ ବାରକଥା କହିବେ, ନିନ୍ଦା କରିବେ । ଛି ମା, ଏଥର ପିଲା ବୁଦ୍ଧି ଛାଡ଼ ।

ବାବୁରେ, ବୋଉ ଯେତେ କାନକାନ କରି ଶିଖାଇଲେବି ତାର ଉପଦେଶ ମୋର ମନେ ରହେ ନାହିଁ । କିଏ ଦାଣ୍ଡରେ ଡାକିଲେ ମୁଁ ଅଟପଟ ଦଉଡ଼ି ଯାଏଁ ଦରଲଙ୍ଗଳା ହୋଇ । କିଏ ପଦେ ପଚାରିଦେଲେ, ମୁଁ ପୂର୍ବପରି ତାର ଜବାବ ଠୋ ଠା ଦେଇଦିଏ । ମାର ହାବୁଡ଼େ ପଡ଼ିଗଲେ ସେ ମୋତେ ବାରକଥା କହି ଗାଳିଦିଏ । ସତକୁ ସତ ମୁଁ ଡରିଗଲି । ଯଦି କେବେ ପୂର୍ବ ଅଭ୍ୟାସରୁ ମୁଁ ଦାଣ୍ଡକୁ ଦଉଡ଼ି ଯିବାକୁ ବସେ, ବୋଉକଥା ମନେ ପଡ଼ିଗଲେ ଭୟରେ ପଛକୁ ଫେରି ଆସେ । ନିଜକୁ ସଂଯତ କରିନିଏ । ଚାରିଆଡ଼କୁ ଚାହେଁ, ମା ଦେଖିଲାକି ?

ଆଡ଼ହେବା ମୋର ଅଭ୍ୟାସ ହୋଇଗଲା । ଠୋକାଠୋକରି କେହି ଆଖି ଆଗରେ ପଡ଼ିଲେ ହାତ ଆପେ ମୁଣ୍ଡର ଓଢ଼ଣାକୁ ଟାଣିଦିଏ । କେଉଁ ମରଦର ପାଟି କାନରେ ବାଜିଗଲେ ମୋର ପାଟି ଆପେ ଆପେ ବନ୍ଦହୋଇ ଯାଏ । ମା କହେ, ଅହା, ଜୟନ୍ତୀ ମୋର କେଡ଼େ ଲକ୍ଷଣୀଲା ହେଲାଣି ।

ଦିନେ ଦିପହରେ ପିଣ୍ଡା ଉପରେ ବସି ମା ଝିଅ ଦିହେଁ ବାଘ ଛେଳି ଖେଳୁଥୁଁ, ଅର୍ଜୁନଭାଇ ହାତରେ ଖଣ୍ଡେ ପୋଥି ଧରି ଆମ ଆଗରେ ଆସି ଠିଆ

ହୋଇଗଲେ । ତାଙ୍କୁ ଦେଖି ମୁଁ ଅପ୍ରସ୍ତୁତ ହୋଇ ମୁଣ୍ଡ ଉପରକୁ ଓଢ଼ଣା ଟାଣି ଘର ଭିତରକୁ ପଶିଗଲି । କବାଟ ଅଳ୍ପ ଆଉଜାଇ ମୁଁ କବାଟ ଫାଙ୍କରେ ତାଙ୍କୁ ଚାହିଁ ରହିଥାଏ ।

ଅର୍ଜୁନଭାଇ ମୋର ବ୍ୟବହାର ଦେଖି ବୋଧହୁଏ ଟିକିଏ ବ୍ୟଥିତ ହେଲେ । ତାଙ୍କର ମୁହଁ ଗମ୍ଭୀର ଦେଖାଗଲା । ସେ ମୋର ମାଙ୍କୁ ଲକ୍ଷ୍ୟକରି କହିଲେ, ଏ କଅଣ ମାଉସି, ଜୟନ୍ତୀ ଉଠି ଚାଲିଗଲା କାହିଁକି ?

ମା କହିଲେ, ତାକୁ ଲାଜ ମାଡ଼ୁଛି ।

ଅର୍ଜୁନଭାଇ କହିଲେ, ବୁଲି ଫକରଟାକୁ ପୁଣି ଲାଜ ? ଏତିକି କହି ସେ ମୋ ଥିବା ଘର ଭିତରକୁ ପଶି ଆସିଲେ । ବାଧା ଦେବାକୁ ବୋଉର ଇଚ୍ଛା ଥିଲେ ମଧ୍ୟ ସେ କଣ କହି ବାଧା ଦେବ ସେହି କଥା ଭାବୁଣୁ ନୀରବ ରହିଗଲା । ଭୟରେ ମୋର ଦେହସାରା ଥରି ଉଠିଲା । ମୁଁ ମୁଣ୍ଡର ଓଢ଼ଣାକୁ ଆହୁରି ତଳକୁ ଟାଣି କାନ୍ଥ ଦେହରେ ମିଶି ଯିବାକୁ ବସିଲି । କାଳେ ବୋଉ କଣ ଭାବୁଥିବ ଏହାହିଁ ମୋର ଭୟର କାରଣ ।

ଅର୍ଜୁନଭାଇ ମୋର ହାତ ଧରି କହିଲେ, ଜୟନ୍ତୀ, ଶୁଣି ଯା, ତୁ ପଢ଼ିବା ପାଇଁ ଗୋଟାଏ ଭଲ ପୋଥି ଆଣିଛି ।

ମୁଁ କିଛି ଉତ୍ତର ଦେଲି ନାହିଁ ବୋଉ ଡରରେ ।

ସେ ମୋର ହାତ ଛାଡ଼ି ପଦାକୁ ଫେରି ଗଲେ । ମୁଁ ତାଙ୍କୁ କଥା କହିଲି ନାହିଁ । ସେଥିପାଇଁ ତାଙ୍କ ମନରେ ଯେ କଷ୍ଟ ହୋଇଥିବ ଏଥିରେ ତିଳେ ମାତ୍ର ସନ୍ଦେହ ନାହିଁ । ମୋ ଉପରେ ସେ ରାଗିଲେ କି ନାହିଁ ସେ ଜାଣନ୍ତି । ତେବେ, ରାଗିବାର କଥା ! ତାଙ୍କର କେତେ ସ୍ନେହ କେତେ ଆଦର ଆଗ୍ରହ ମୁଁ ଆଜି ଉପେକ୍ଷା କରିଛି । ତାଙ୍କର ମହତ୍ତ୍ୱର ଅବମାନନା କରିଛି ।

ମୁଁ ଦୀର୍ଘଶ୍ୱାସ ଛାଡ଼ି କବାଟ ଫାଙ୍କରେ ଅର୍ଜୁନଭାଇଙ୍କ ମୁହଁକୁ ଚାହିଁଲି । ଗଭୀର ଦୁଃଖରେ ତାଙ୍କର ମୁହଁଟି ମଉଳି ପଡ଼ିଛି । ସେ ନୀରବ ହୋଇ ବୋଉ ଆଗରେ ବସି କଣ ଚିନ୍ତା କରିବାକୁ ଲାଗିଲେ ।

ବୋଉ ପଚାରିଲା, ବାପ, ମୁଁ ଶୁଣୁଛି, ତୁ ଜୁଆଡ଼େ ଏବେ ଘରେ ପଶୁ ନାହୁଁ, ବାହାରେ ବାହାରେ ବୁଲି ସମୟ କଟାଉଛୁ, ଘରକଥା କିଛି ବୁଝୁ ନାହୁଁ । କାହିଁକି ବାବୁ ଏମିତି ବଗୁଲିଆ ବୁଦ୍ଧି କରୁଛୁ ? ତୋ ବାପା ଆସି ବେଳେ ବେଳେ ଏଠି ବ୍ୟସ୍ତ ହୁଅନ୍ତି । ତାଙ୍କର ଶୁଖିଲା ଆଖିପତା ଓଦା ହୋଇ ଆସେ ।

ବୋଉର ଭଲ କଥା ତାଙ୍କର କାନରେ ବାଜିଲା ନାହିଁ । ତାଙ୍କର ଆଖି କୋଣରେ ଲୁହ ଟଳଟଳ ହେଲା । ସେ କହିଲେ, ମାଉସି, ଘର କହ ସମାଜ କହ ଏ ସବୁଥିରେ ମୋର ସମ୍ପର୍କ ମୋଟେ ନାହିଁ । ସମ୍ପର୍କ ରଖିବାକୁ ମୋର ମନ ଡାକେ ନାହିଁ, ସେଇଥିପାଇଁ ମୁଁ ବାହାରେ ବାହାରେ ବୁଲୁଥାଏ ।

ଏକୁଟିଆ ଚଲିବାକୁ ଭଲପାଏ । ମାଉସି, ଏକା ଏଇ ତମର ଜୟନ୍ତୀକୁ ଦେଖିଲେ ମୋତେ ଖୁସି ଲାଗେ । ତାର ଟେକ୍‌ଲାଳିଆ କଥା ଶୁଣିଲେ, ପିଲାଳିଆ ଚାଳି ଦେଖିଲେ ମୋର ଆନନ୍ଦ ହୁଏ । ସେଇ ଆନନ୍ଦଟିକରେ ବି ତେମେ ବାଧା ଦେଉଛ ।

ତାଙ୍କର ଆଖିରେ ଲୁହ ଛଳ ଛଳ ହେଲା ।

ବୋଉ ଦୁଃଖିତ ହୋଇ କହିଲା, ବାପ, ଜୟନ୍ତୀ ବଡ଼ ହେଲାଣି । ଅଳକ କଷ୍ଟ ଆଉ କାନ୍ଥଆଳ କରି ନ ରଖିଲେ ଲୋକେ କଣ କହିବେ ? ଲୋକଙ୍କୁ ଘାଣିଲେ ସର ପକାଇବାକୁ ଡେରି ଲାଗେ ନାହିଁ । ଜନ୍ମ ଦିନା କରିଛି ମୁଁ, ପରର ଚିଜ, ପରଘରେ ନେଇ ତାକୁ ଥୋଇଲେ ତେଣିକି ମୁଁ ନିଶ୍ଚିନ୍ତରେ ନିଶ୍ୱାସ ମାରିବି ।

ବୋଉର କଥା ନ ସରୁଣୁ ବାପା ଆସି ସେଠାରେ ପହଞ୍ଚିଲେ । ବାପାଙ୍କୁ ଦେଖି ଅର୍ଜୁନ ଭାଇ ଉଠି ପ୍ରଣାମ କଲେ । ବାପା କହିଲେ, ଆରେ ଅର୍ଜୁନ, ଗୋଟାଏ ଭୟଙ୍କର କାଣ୍ଡ ଘଟିବାର ସମ୍ଭାବନା ଅଛି ଏ ଭିତରେ । ଟେଡ଼ିଲୁ ଖବର ପାଇଲି, ବୋଧହୁଏ ଗୋଟାଏ ଭୀଷଣ ଯୁଦ୍ଧ ହେବାର ଆଶା, ଟେଡ଼ା ସୀମା ଭିତରେ ।

ଅର୍ଜୁନ ଭାଇ ପଚାରିଲେ, କାହା ସଙ୍ଗେ ଯୁଦ୍ଧ ହେବାର କଥା ? ଯୁଦ୍ଧର କାରଣ କଣ ?

ବାପା କହିଲେ, ସେ ସବୁ ମୁଁ କିଛି ଜାଣେ ନାହିଁ । ଜାଣିବା ଦରକାର କଣ ? ଯୁଦ୍ଧ ହେବ, ଏତିକି ଖବର ପାଇଲେ ହେଲା । ତେଣିକି ଆମକୁ ପ୍ରସ୍ତୁତ ହେବାକୁ ପଡ଼ିବ । ଦଳବଳ ଘେନି ଯୁଦ୍ଧ ଭୂଇଁରେ ଶତ୍ରୁ ଆଗରେ ଠିଆ ହେବାକୁ ହେବ । ଯଦି ମତେ ଯିବାକୁ ପଡ଼େ, ତୁ ଟିକେ ଘର ପ୍ରତି ନଜର ରଖିଥିବୁ ମୁଁ ଫେରିବା ଯାଏ ।

ବାପା ଯୁଦ୍ଧକୁ ଯିବେ ଏ ଖବର ଶୁଣି ବୋଉର ମୁହଁ ଶୁଖିଗଲା । ଭୟରେ ମୋର ଛାତି ଭିତର ଥରିବାକୁ ଲାଗିଲା । ଯୁଦ୍ଧଭୂଇଁ କଥା, ଭଲ ମନ୍ଦ କିଏ କହି ପାରିବ ? ସେଠି ଗୋଡ଼ଦେଇ ଜୀବନ ଘେନି ଫେରି ଆସିବା ସହଜ କଥା ନୁହେଁ ।

ବୋଉ ପଚାରିଲା, ସତରେ କହୁଛଟି ? ବିନା ଦୋଷରେ ଗାଁ ଯାକର ଲୋକଙ୍କୁ ସଙ୍ଗରେ ଘେନି ହାଣ ମୁହଁକୁ ଯିବ ତେମେ ? ଯେତେ ଲୋକଙ୍କୁ ହାଣିବ ହଣାଇବ ସେ ପାପର ଭାଗୀ ହେବ କିଏ ?

ବାପା କହିଲେ, ଯୁଦ୍ଧଭୂଇଁରେ ହାଣିଲେ କି ହଣାଇଲେ ପାପ ହୁଏ ନାହିଁ । ଲୋକ ମରି ଅମର ହୁଏ । ସ୍ୱର୍ଗକୁ ଯାଏ ତାର ଆତ୍ମା । ଯିଏ ଯୁଦ୍ଧଭୂଇଁକୁ ଭଳି ପଛଘୁଞ୍ଚା ଦେଇ ଜୀବନ ବିକଳରେ ଘରକୋଣରେ ଲୁଚି ରହେ, ଜୀବନ

ମରଣ ହୁଲନ୍ତି ତା ପକ୍ଷରେ ସମାନ । ବଞ୍ଚିଥିବା ଯାଏ ଭୀରୁ କାପୁରୁଷ ବୋଲି ଲୋକ ମୁଖରେ ଅପମାନ ସହିବ, ମଲେ ତ ନରକ ଅଶ୍ରା କରିବାର କଥା ।

ଅର୍ଜୁନ ଭାଇ ବାଧାଦେଇ ପଚାରିଲେ, ମଉସା, ସ୍ୱର୍ଗଦ୍ୱାରରେ ଅପମୋକନ ଯେଉଁମାନଙ୍କର ତଣ୍ଟି କାଟିବାକୁ ଯିବେ କିମ୍ବା ଯେଉଁମାନେ ଆପଣମାନଙ୍କର ରକ୍ତ ପିଇବେ, ସେମାନଙ୍କର ପରସ୍ପର ଭିତରେ ତ କିଛି ବୈରତା ନ ଥାଏ ! ଯାହା ସଙ୍ଗେ ଜୀବନରେ କେବେ ଦେଖା ହୋଇ ନାହିଁ, ସେହି ଅପରିଚିତର ପ୍ରାଣ ନେଇ ଆପଣମାନେ ବାହାଦୁରୀ ନଅନ୍ତି, ରାଜଦ୍ୱାରରେ ସମ୍ମାନିତ ହୁଅନ୍ତି । ଅଥଚ ହୁଷ୍ଟ ସଇତାନ୍ ସମାଜକଣ୍ଟକ ପ୍ରତିବେଶୀର ଜୀବନ ନେଲେ ନରହତ୍ୟା ଅପରାଧରେ ଫାଶୀଖୁଣ୍ଟରେ ଝୁଲିବାକୁ ହୁଏ । ଏପରି ଯୁଦ୍ଧ, ଯହିଁରେ ମଣିଷର ରକ୍ତ ମାଂସ ନେଇ ଖେଳା, ତହିଁରେ ଯୋଗ ନ ଦେଇ ଅପସରି ରହିଲେ ତ ଭଲ ।

ବାପା କହିଲେ, ଦେଖ ଅର୍ଜୁନ, ରାଯ୍ବଂଶର ପିଲା ତୁ । ତୋ ମୁହଁରୁ ଏପରି କଥା ଶୁଣିବାକୁ ମୋତେ ଭଲ ଲାଗୁନାହିଁ । ତୋର ଅଜା, ପଣଅଜା ବୀରତ୍ୱର ନିଦର୍ଶନ ଦେଖାଇବାକୁ, ଦେଶକୁ ଶତ୍ରୁ କବଳରୁ ଉଦ୍ଧାର କରିବାକୁ, ରାଜ୍ୟ ପାଇଁ, ମାନ ପାଇଁ, ରଣଭୂଇଁରେ ଅଗଣିତ ଲୋକଙ୍କର ମୁଣ୍ଡ ଗଡାଇ ନିଜେ ମଧ୍ୟ ରଣଚଣ୍ଡୀର ନୈବେଦ୍ୟ ପାଇଁ ନିଜର ମୁଣ୍ଡ ଉପହାର ଦେଇଛନ୍ତି । ତୁ ଆଜି ଏପରି କହୁଛୁ ଶୁଣି ମୋତେ ହସ ମାଡୁଛି । ମୋର ମନରେ ଦୁଃଖ ହେଉଛି । ହୁଏ ତ ଏଥିପାଇଁ ତୋର ବୈରାଗ୍ୟ ଦାୟୀ । ନୋହିଲେ, ତୁ ଦେଶଦ୍ରୋହୀ, ରାଜଦ୍ରୋହୀ ।

ବାପା ଉତ୍ତେଜିତ ହୋଇ ପଡ଼ିଲେ । ଅର୍ଜୁନ ଭାଇ ତୁନି ହେଲେ ।

ବାପା ଡାକିଲେ, ଜୟନ୍ତ !

ମୁଁ ଉତ୍ତର ଦେଲି ନାହିଁ ।

ବୋଉ କହିଲା, ଅର୍ଜୁନ ଅଛି ବୋଲି ସେ ଅଡ଼ ହୋଇଛି ।

ବାପା ହସି ହସି କହିଲେ, ଅର୍ଜୁନକୁ ଅଡ଼ ହେବ କାହିଁକି ସେ । ଅର୍ଜୁନ ପରପିଲା ନୁହେଁ । ଅର୍ଜୁନ ତାର ଭାଇ । ଛି ଛି, ଏ ଗୁଡ଼ା ତାକୁ ଶିଖାଉଛ କାହିଁକି ? ତାର ମନର ଦୃଢ଼ତା ଭାଙ୍ଗିଯିବ ଯେ । ପୁଣି ଡାକିଲେ, ଜୟନ୍ତ, ଶୁଣିଲୁ ମା ।

ବାପାଙ୍କର ସ୍ନେହମିଶା ଡାକ ଶୁଣି ସବୁ ଲାଜ ଭୟ ଦୂରକୁ ପକାଇ ତାଙ୍କ ନିକଟକୁ ଯିବାକୁ ଇଚ୍ଛା ହେଉଥିଲେ ମଧ୍ୟ ଗୋଡ଼ ଚଳିଲା ନାହିଁ । ଆଗରୁ କହିଛି ତ, ଭୟର ରୂପାନ୍ତର ଲାଜ ଧୀରେ ଧୀରେ ଅଭ୍ୟାସଗତ ହୋଇ ପ୍ରକୃତିଗତ, ରକ୍ତଗତ ହୋଇଯାଏ । ମୁଁ ଯାଇ ପାରିଲି ନାହିଁ । ଅନୁତ୍ତର ଫଳୁଚେ ହୋଇ ରହିଲି ।

ବୋଉ କହିଲା, ବଡ଼ିଲା ଝିଅ, ବାପ ଭାଇଙ୍କ ଆଗକୁ ଆସିବାକୁ ଲାଜ ହେବାର କଥା ।

ବାପା ରାଗିଯାଇ କହିଲେ, ବଡ଼ିଲା ଝିଅ ବୋଲି ଯଦି ଦୁର୍ଗାବତୀ ଘର କୋଣରେ ଲୁଚି ରହିଥାନ୍ତେ କେତେଦିନରୁ ଏ ଜାତିର ନାମ ଲୁଚି ଯାଆନ୍ତାଣି ।

ବାପା ପୁଣି ଡାକ ଛାଡ଼ିଲେ, ଜୟନ୍ତୀ ଶୁଣିଯା ।

ପିତାଙ୍କର ଆଦେଶ ଅମାନ୍ୟ କରିବାକୁ ସାହସ ହେଲା ନାହିଁ । ସେ ସେପଟେ ଏକାବାଗିଆ ଲୋକ, ହୁଏତ ରଡ଼ିବେ । ମୁଁ ଧୀରେ ଧୀରେ ଘରୁ ବାହାରି ବାପାଙ୍କ ଆଗକୁ ଆସିଲି । ମୁଣ୍ଡର ଓଢ଼ଣା ଟିକିଏ ତଳକୁ ଟାଣି ଦେଇଥାଏ । ବାପାଙ୍କର ଆଦେଶରେ ପଦାକୁ ଆସି ମଧ୍ୟ ମୋର ମନେ ହେଉଥାଏ ସତେ କି ମୁଁ କିଛି ଅନ୍ୟାୟ କାମ କରୁଛି ।

ବାପା କହିଲେ, ଦେଖ ଅର୍ଜୁନ, ଜୟନ୍ତୀର ଅବସ୍ଥା । ସେ ଯଦି ଝିଅ ନ ହୋଇ ଆଜି ପୁଅ ହୋଇଥାନ୍ତା, ମୋ କି ବାପ ଭାଇଙ୍କ ଆଗରେ ଏପରି ନିର୍ଜୀବ ପଥର ମୂର୍ତ୍ତିପରି ଠିଆ ହୋଇ ରହିଥାନ୍ତା ? ଏହିତ ଆମର ନାରୀ ଜାତିର ଅବସ୍ଥା । ଏକେତ ଜନ୍ମରୁ ମୃତ୍ୟୁଯାଏ ଘର କୋଣରେ ଆବଦ୍ଧ ରହି ନିଜର ଦୈହିକ ଶକ୍ତି ହରାଇ ବସନ୍ତି, ବାହାରର କୌଣସି ଘଟଣା ନ ଦେଖି ସେମାନଙ୍କର ଚଳନ ଜ୍ଞାନ ସଙ୍କୀର୍ଣ୍ଣ ହୋଇ ପଡ଼େ । ଇଚ୍ଛାଶକ୍ତି ଦୁର୍ବଳ ହୋଇପଡ଼େ । ନିଜକୁ ରକ୍ଷା କରିବାକୁ ସେମାନେ ଅକ୍ଷମ ହୋଇ ପଡ଼ନ୍ତି ।

ଅର୍ଜୁନ ଭାଇ କିଛି ନ କହି ତଳକୁ ମୁହଁ ପୋତିଲେ ।

ବାପା ମୋର ହାତ ଧରି ପାଖରେ ବସାଇଲେ । ମୋ ମୁଣ୍ଡର ଓଢ଼ଣାଟିକୁ ହାତରେ ଘୁଞ୍ଚାଇ ଦେଇ ମୋ ମୁଣ୍ଡରେ ମୁଣ୍ଡ ଲଗାଇ ଗେଲ କରି କହିଲେ, ଜୟନ୍ତୀ, ଯାହାର ନିଜ ଚରିତ୍ର ଉପରେ ଦୃଢ଼ ବିଶ୍ୱାସ ଥାଏ, ଯେ ନିଜର ପ୍ରକୃତି ପ୍ରବୃତ୍ତିକୁ ନିଜର ଆତ୍ମାଧୀନ ରଖିପାରେ, ସେ କାହିଁକି ଲାଜରେ ଭୟରେ ଆଉ ହୋଇ ଘର କୋଣରେ ଲୁଚି ରହିବ ? ଏପରି ଲୁଚି ରହିଲେ ମନର ଦୁର୍ବଳତା ପ୍ରକାଶ ପାଏ । ବାପ ଭାଇ କି ସମାଜର ଅନ୍ୟାନ୍ୟ ଲୋକଙ୍କ ସଙ୍ଗେ ମିଳି ମିଶି ଭାବର ଆଦାନ ପ୍ରଦାନ କଲେ ସିନା ଜୀବନରେ ଅଭିଜ୍ଞତା ଆସେ ।

ବୋଉ ଗମ୍ଭୀର ହୋଇ ରହିଲା ।

ଆଜି ମୁଁ ଭାବୁଛି ପିତା ଯଦି ଉତ୍ତେଜନାର ବଶରେ ମୋତେ ସେହି ସ୍ୱାଧୀନତା ବାଣୀ ଶୁଣାଇ ନ ଥାନ୍ତେ ତେବେ ମୋର ଜୀବନର ଗତି କର୍ମର ପରିଣତି ଅନ୍ୟପ୍ରକାର ହୋଇଥାନ୍ତା । କଣ ଯେ ହୋଇଥାନ୍ତା, ମୁଁ ଅନୁମାନ କରି ପାରୁନାହିଁ । ଯଦି ଭାଗ୍ୟ ବା ଭଗବାନଙ୍କର ବିଧାନ ବୋଲି ପ୍ରତ୍ୟେକ କଥାକୁ ଧରି ନିଆଯାଏ, ତେବେ ମଣିଷ ଜୀବନର ଚରମ ପରିଣତି ନେଇ ଭାବିବାର କିଛି ନାହିଁ । ଯଦି ଭାଗ୍ୟ କଥାଟାକୁ ବାଦ ଦେଇ କାରଣ ଖୋଜିବାକୁ ଚେଷ୍ଟା

କରିଯାଏ, ତେବେ ମଣିଷର ଚିନ୍ତାଧାରା ଅନନ୍ତ ଅସମାପ୍ତ ଭିତରେ ନିଜକୁ ହଜାଇ ଦେବ । ବାସ୍ତବ କିଏ ସ୍ଥିର କରି ହେବ ନାହିଁ ।

ସେହି ଦିନଠୁଁ ପିଲାବେଳ ପରି ସ୍ୱାଧୀନ ହୋଇ ପଡ଼ିଲି । ନିର୍ଭୟରେ ସମାଜ ଭିତରେ ଅତିଯାତ ହେବାକୁ ଲାଗିଲି । କେବେ କେବେ ବାପାଙ୍କ ସଙ୍ଗେ ମନ୍ଦିରକୁ ନୋହିଲେ ନଦୀକୂଳ ବା ପାହାଡ଼ ଉପରକୁ ବୁଲିବାକୁ ଯାଏ । ସେ ମୋତେ କେତେ କେତେ ଉପଦେଶ କଥା ଶୁଣାନ୍ତି । ଦେଶର ଇତିହାସ, ତାଙ୍କ ପିଲାଦିନର କଥା କହନ୍ତି । ମୁଁ ସ୍ଥିର ମନରେ ସବୁ ଶୁଣେ, ବୁଝେ, ମନେ ରଖେ । ଦିନେ ଦିନେ ଅର୍ଜୁନ ଭାଇ ମଧ୍ୟ ଆମ ସଙ୍ଗରେ ଯାନ୍ତି । ସେଦିନ ଗୋଟିଏ ଗୋଟିଏ ସାମାନ୍ୟ କଥାରେ ସେ ଦୁଇଜଣଙ୍କ ଭିତରେ ବାଦାନୁବାଦ ଚାଲେ, ମୋତେ ଶୁଣିବାକୁ ଖୁସି ଲାଗେ ।

ଯେଉଁଦିନ ମୁଁ ଅର୍ଜୁନ ଭାଇ ସଙ୍ଗେ ବୁଲିବାକୁ ବାହାରେ, ଯେତେ କାମ ଥିଲେ ମଧ୍ୟ ସବୁ ପଛରେ ପକାଇ ବୋଉ ଆମ ସଙ୍ଗରେ ଯାଏ । ମୁଁ ତା ମନର କଥା ବେଶ୍ ବୁଝିପାରେ । ମାର ମନରେ କେବେହେଲେ ଶାନ୍ତି ଆସେ ନାହିଁ ଯେତେ ଯାହା କଲେ ମଧ୍ୟ । ପିଲାଝିଅଙ୍କର ଚାଲିଚଲନ ପ୍ରତି ସେମାନଙ୍କର ସବୁବେଳେ ଆଖି । ସବୁବେଳେ ସେମାନେ ତାଙ୍କର ଅନିଷ୍ଟ ଆଶଙ୍କା କରନ୍ତି ।

ମୋର ଏପରି ଚାଲିଚଲନ ଦେଖି ଗାଁ ଲୋକେ କେହି କେବେ ଆଗରେ କିଛି କୁହନ୍ତି ନାହିଁ, ହୁଏତ ବାପାଙ୍କ ଡରରେ । ଗାଁ ମାଇପଙ୍କ ଭିତରୁ କେହି ଜଗି ଜଗି ବୋଉକୁ ଶୁଣାଇଁ ନିଜ ଭିତରେ କଥା ଭାଷା ହୁଅନ୍ତି, ସେଇ ଝିଅଟା ଜାଣି କେମିତି ଥିଲା, ତା ଗୁଣ କେହି ମାଡ଼ି ନ ଥିଲେ, ଆଜି କପରି ବଦଳି ଗଲା ଟଲା... ।

ମୁଁ ଶୁଣି ନ ଶୁଣିଲା ପରି ଚାଲିଯାଏଁ ବାଁରେଇ ହୋଇ । ବୋଉ ମୁହଁ ଶୁଖାଏ ।

ଦିନେ ରଜାଘରୁ ଡାକରା ଆସିଲା । ବାପା ଗଡ଼କୁ ଗଲେ । ପରଦିନ ଗଡ଼ରୁ ଫେରି ବାପା ବୋଉ ଆଗରେ କହିଲେ, ଏଥର ଘର ସମ୍ଭାଳ । ରଜାଙ୍କ-ଠାରୁ ଯୁଦ୍ଧର ନିମନ୍ତ୍ରଣ ଆସିଛି । ବୀର ପରି ଯାଇ ଦେଶର ସମ୍ମାନ ପାଇଁ ଯୁଦ୍ଧ ଭୂଇଁରେ ଗୁଣ ଦେଖାଇବାକୁ ହେବ । ଶତ୍ରୁଙ୍କୁ ରାଜ୍ୟ-ସୀମା ମଡ଼ାଇ ଦେବାକୁ ହେବ ନାହିଁ ।

ବାପାଙ୍କ କଥା ଶୁଣି ବୋଉ ଅବାକାବା ହୋଇ ତାଙ୍କ ମୁହଁକୁ ଚାହିଁ ରହିଲା । ମୁଁ ପଚାରିଲି, ବାପା, ଯୁଦ୍ଧ କାହାଁକି ହେବ, କାହା ସଙ୍ଗେ ହେବ ?

ବାପା କହିଲେ, ରାଜା ପ୍ରତାପ ନରସିଂହ ଦେବ ଦିନେ ପୁରୀ ରାଜସଭାରେ ଆମ ରାଜାଙ୍କୁ ଅପମାନ ଦେଲେ । ସେହି ରାଗରେ ଆମ ରାଜା ବୁଢ଼ା ରାଜାଙ୍କୁ ବେଶ୍ ଚାରିପଦ ଶୁଣାଇଁ ଦେଇ କହି ଆସିଥିଲେ, ଆଜିଠାରୁ ମୁଁ ଆପଣଙ୍କର

ବଶ୍ୟତା ସ୍ୱୀକାର କରିପାରିବ ନାହିଁ । ସେହି ଦିନରୁ ଆମ ରାଜା ଠାକୁରରାଜାଙ୍କୁ କର ଦେଇ ନାହାନ୍ତି । ସେ ଏତେ ଦିନ ପରେ ଯୁଦ୍ଧଚିଠାଉ ପଠାଇଛନ୍ତି । ଖୁବ୍ ସମ୍ଭବ ସେମାନେ ଦିନେ ଦୁଇଦିନ ଭିତରେ ସୈନ୍ୟ ସାମନ୍ତ ଘେନି ଏ ଦେଶରେ ପଶିବେ । ଅଗରୁ ଆମର ସତର୍କ ରହିବା କଥା ତ ।

ମୁଁ ପଚାରିଲି, ବାପା, ଠାକୁରରାଜାଙ୍କ ସଙ୍ଗେ ବିବାଦ କରି କ'ଣ ଆପଣମାନେ ବିଜୟୀ ହୋଇ ପାରିବେ ? ସସାଗରା ଧରାର ଅଧିପତି ସେ ।

ଯୁଦ୍ଧର ନିମନ୍ତ୍ରଣ ଆସିଛି ମା, ଆମେମାନେତ ଆଉ ଡରିକରି ଶରଣ ପଶିବା ନାହିଁ ? ଆମର ରାଜ୍ୟ ଶ୍ରେଷ୍ଠ ହୋଇପାରେ, ଆମର ରାଜା ନରସିଂହ ଦେବଙ୍କର ସାମନ୍ତ ରାଜା ସତ, ଆମର ଶକ୍ତି, ସମ୍ମାନ ଓ ଜୀବନ ଶ୍ରେଷ୍ଠ ନୁହେଁ । ଅମେ ପଛେ ଯୁଦ୍ଧ ଭୂଇଁରେ ଠଲି ପଡ଼ିବୁ, ମୁଣ୍ଡ ନୁଆଁଇବୁ ନାହିଁ ।

ମୁଁ ଆଉ କିଛି ପଚାରିବା ପୂର୍ବରୁ ବାପା ପଦାକୁ ଚାଲିଗଲେ । ବୋଉ ମୁହଁକୁ ଚାହିଁଲି—ତାର ଆଖିରୁ ଦୁଇଧାର ଲୁହ ଝରି ପଡ଼ୁଛି ।

ଦୁଇଦିନ ପରେ ଗଡ଼ରୁ ପୁଣି କଅଣ ଖବର ଆସିଲା । ଦଳଦଳ ଲୋକ ଆସି ଆମ ଘର ଅଗରେ ଜମା ହେଲେ । ଦେଖିବାକୁ ସେ ଗୋଟାଏ ଅପୂର୍ବ ଦୃଶ୍ୟ । ଷାଠିଏ ବର୍ଷର ବୃଦ୍ଧାଙ୍କଠାରୁ ଆରମ୍ଭ କରି ସତର ବର୍ଷର ଟୋକାଙ୍କ ଯାଏ ସମସ୍ତେ ଯେ ଯାହାର ଅସ୍ତ୍ରଶସ୍ତ୍ର ଧରି ଆସି ଜମା ହୋଇଛନ୍ତି । କାହାରି ମୁହଁରେ ଦୁଃଖ, ବିମର୍ଷତା ବା ନୈରାଶ୍ୟର ଚିହ୍ନ ନାହିଁ । ଉତ୍ସାହ, ଆଗ୍ରହ, ଆନନ୍ଦରେ ସମସ୍ତଙ୍କର ପ୍ରାଣ ପୂର୍ଣ୍ଣ । ବାପାଙ୍କର ଆଦେଶ ପ୍ରତୀକ୍ଷାରେ ସମସ୍ତେ ଉଦ୍‌ଗ୍ରୀବ ହୋଇ ଚାହିଁ ରହିଛନ୍ତି ।

ବାପା ସେମାନଙ୍କୁ କହିଲେ, ତେମେମାନେ ପାଇକ ପୁଅ, ଯୁଦ୍ଧ ତମର ବେଉସା, ମଣିଷର ଜୀବନ ମରଣ ସଙ୍ଗେ ତମର ଖେଳ !

ସମସ୍ତେ କହିଲେ, ହଁ, ମହାନାୟକ ।

ବାପା କହିଲେ, ତମମାନଙ୍କ ଭିତରୁ ଯେଉଁମାନେ ମରଣକୁ ଭୟକର ସେମାନେ ଶୀଘ୍ର ଏ ସ୍ଥାନ ଛାଡ଼ି ଚାଲିଯାଅ, ଯୁଦ୍ଧବେଳେ ଯୁଦ୍ଧକ୍ଷେତ୍ରରେ ଯେପରି ପଛମୁଆଁ ଦେଇ ମାନ ମହତ୍ୱ ବୋ'କଡ଼ା ନ କର !

ସମସ୍ତେ କହିଲେ, ମରଣକୁ ଅମେ ଡରୁ ନାହିଁ ।

ବାପା କହିଲେ, ତେବେ, ତମେମାନେ ଘରକୁ ଯାଅ । କାଲି ସକାଳୁ ସମସ୍ତଙ୍କୁ ଗଡ଼କୁ ଯିବାକୁ ପଡ଼ିବ । କୋଡ଼ିଏ ବର୍ଷରୁ କମ୍ ଯେଉଁମାନଙ୍କର ବୟସ ଓ ପଚାଶ ବର୍ଷରୁ ଅଧିକ ଯେଉଁମାନଙ୍କୁ ସେମାନଙ୍କର ଯୁଦ୍ଧକୁ ଯିବା ଦରକାର ନାହିଁ ।

ଲୋକେ ଜୁହାରି ମାରି, ବାହାସ୍ଫୋଟ ଦେଇ ଘରକୁ ଫେରିଲେ ।

ପରଦିନ ବଡ଼ିସକାଳୁ, ସ୍ତ୍ରୀ ପୁରୁଷ, ବାଳକ ବାଳିକା ସମସ୍ତେ ଆସି ଅମ ଦାଣ୍ଡରେ ରୁଣ୍ଡହେଲେ । ପାଇକଙ୍କର କୁହାଟରେ ଗାଁଦାଣ୍ଡ ମୁଖରିତ ହେଲା ।

ବାପା ଯୁଦ୍ଧର ପୋଷାକ ପିନ୍ଧି ଅଗଣାରେ ଆସି ଠିଆ ହୋଇଥାନ୍ତି । ବୋଉ, କୋଶବନ୍ଧ ତରବାରୀ ଆଣି ତାଙ୍କର କାନ୍ଧରେ ଝୁଲାଇ ଦେଲା । ଅଗ୍ନି ମନ୍ତ୍ରରେ ଗୁନ୍ଥି ଥିବା ଫୁଲର ମାଳଟି ଆଣି ମୁଁ ତାଙ୍କ ବେକରେ ଲମ୍ବାଇ ଦେଲି । ସେ ଆନନ୍ଦରେ ମୋତେ ଆଲିଙ୍ଗନ କରି କହିଲେ, ମା, ପାଇକ ପୁଅର ସ୍ତ୍ରୀ କନ୍ୟା ଦେଶର ମଙ୍ଗଳ ପାଇଁ ଠିକ୍ ଏହିପରି ବିଦାୟ ଦିଅନ୍ତି ।

ମୁଁ ସାମାନ୍ୟ ହସିଲି, ବୋଉର ମୁହଁଟି ଶୁଖି ଯାଇଥାଏ ।

ବାପା ଧୀରେ ଧୀରେ ପଦାକୁ ଆସିଲେ । ମୁଁ ଓ ବୋଉ ତାଙ୍କ ପଛେ ପଛେ ପଦାକୁ ଆସିଲୁଁ । ବାପାଙ୍କୁ ଦେଖି ପାଇକମାନେ ନିଜ ନିଜର ଅସ୍ତ୍ରଶସ୍ତ୍ର ମୁଣ୍ଡ ଉପରକୁ ଟେକିଲେ । ପୁଣି ବୀରବାଜା ବାଜି ଉଠିଲା । ଶଙ୍ଖ, ମହୁରୀ, ସିଂଘାର ସ୍ୱର ସଙ୍ଗେ ପାଇକଙ୍କର ଲୁହାଟ ଓ କୁଳକାମିନୀଙ୍କର ହୁଳହୁଳି ଧ୍ୱନି ମିଶିଗଲା ।

ପାଇକମାନଙ୍କୁ ଚାହିଁ ବାପା କହିଲେ, ଆଉ ଡେରି କରିବା ନାହିଁ, ଚାଲ ଏଥର ଗଡ଼କୁ । ଏତିକି କହି ସେ ଆଗେ ଆଗେ ଚାଲିଲେ । ଜଣ ଜଣ ହୋଇ ପାଇକ ତାଙ୍କ ପଛେ ପଛେ ଚାଲିଲେ । ରାସ୍ତା ମୋଡ଼ର ସେପାଟେ ଅଦୃଶ୍ୟ ହେବାଯାଏ, ଆମେମାନେ ତାଙ୍କୁ ଚାହିଁ ରହିଥାଉଁ । ଗାଁ ଲୋକେ ଗଡ଼କୁ ଚାଲିଯିବା ପରେ, ଗାଁଟା ଶୁନ୍‌ଶାନ୍ ହୋଇଗଲା । ସତେକି ଗାଁରେ ଆଉ ଜୀବନ ନାହିଁ ।

ମୋର ସ୍ୱାଧୀନତା ଅତ୍ୟଧିକ ବଢ଼ିଗଲା ! ବୋଉ କି ଅର୍ଜୁନ ଭାଇଙ୍କ ସଙ୍ଗେ ପୂର୍ବପରି ବୁଲିବାକୁ ବାହାରେ । କେହି ନ ବାହାରିଲେ ମୁଁ ଏକୁଟିଆ ନଈକୂଳକୁ ଯାଏ । କୂଳରେ ବସି ନଈ ସେପାରିର ଧୂଆଁଳିଆ ପାହାଡ଼ ଦେଖେ । ଜଙ୍ଗଲରୁ ବଣଫୁଲ ତୋଳି ମାଳ ଗୁନ୍ଥେ । ନୋହିଲେ, ଏକୁଟିଆ ପଥର ଚଟାଣ ଉପରେ ବସି ଆକାଶକୁ ଚାହିଁ ଗୀତ ବୋଲେ । ବାପ, ଏହିପରି ଆନନ୍ଦରେ ମୋର ସମୟ କଟିଯାଏ । ଘୁଅଡ଼େ ବୁଲିଗଲେ ସୁଦ୍ଧା ସଞ୍ଜଅାଗରୁ ମୁଁ ନିଜ ଘରକୁ ଫେରେ ।

କେବେ କେବେ ଅର୍ଜୁନ ଭାଇ ଆସନ୍ତି । ଅର୍ଜୁନଭାଇ ଏକ ପ୍ରକାର ବାବାଜୀ ହୋଇ ଗଲେଣି । ପିନ୍ଧିଥାନ୍ତି ଖଣ୍ଡେ ଗେରୁଆ ଲୁଗା । ମୁଣ୍ଡବାଳ କହରା, ଫରଫର । ଖାଲି ଦେହରେ ମୁଠିଏ ପାଉଁଶ ବୋଳିବା ବାକିଅଛି । ସେ ଯାହା ହେଉ, ତାଙ୍କର ବଳିଷ୍ଠ ଦେହ, ସୁନ୍ଦର ମୁଖ କାନ୍ତି ଉଜ୍ଜ୍ୱଳ ଆଖି ଦେଖିଲେ ମନରେ ଆନନ୍ଦ ଜାଗି ଉଠେ ।

ଅର୍ଜୁନଭାଇ ସଙ୍ଗେ ବୁଲିଗଲେ ଏବିକି ସେ ଆଉ ଗଳ୍ପ କହନ୍ତି ନାହିଁ କି, କାବ୍ୟ ପୁରାଣରୁ ବାଛି ବାଛି ଭଲ ଉପାଖ୍ୟାନ ଶୁଣାନ୍ତି ନାହିଁ । ଖାଲି ନୀରସ

ଦର୍ଶନ ଚର୍ଚ୍ଚାରେ ବେଳ କଟାନ୍ତି । ମେଘ କାହାଁକି ସୃଷ୍ଟି ହେଲା, କୋଇଲକୁ ଭଗବାନ କଳା କଲେ କାହିଁକି, ମଣିଷ ଭଗବାନଙ୍କୁ କାହିଁକି ପୂଜା କରିବ, ଇତ୍ୟାଦି । ମୁଁ ନୀରବରେ ସବୁ ଶୁଣି ଯାଉଥାଏ । କିଛି ବୁଝି ପାରେ ନାହିଁ । ତାଙ୍କର ହାତ ଧରି ବୁଲିବା ହିଁ ମୋର ଏକମାତ୍ର ଆନନ୍ଦ ବୋଲି ମନେ କରେ ।

ଏତିକି କହି ଜୟନ୍ତୀ ନୀରବ ହେଲେ । ରାତି ଅଧ ହେଲା । ଅଣ୍ଡୁଂପା ହ୍ରଦର ଆରପାଖରୁ ଆସୁଥିବା କେତୋଟି କ୍ଷୀଣ ଆଲୋକ ରେଖା ମଧ୍ୟ ଲିଭିଗଲା । ତ୍ରୟୋଦଶୀର ଉଜ୍ଜ୍ୱଳ ଜହ୍ନ ସରଣ୍ଡା ପାହାଡ଼ର ପଛପଟେ ଲୁଚି ଯିବାକୁ ବସିଛି । ଅନ୍ଧକାର ଅଂଶୁପା ହ୍ରଦର ସେ ପାଖରୁ ଧୀରେ ଧୀରେ ମାଡ଼ି ଆସୁଛି । ପ୍ରକୃତି ନିସ୍ତବ୍ଧ । କେବଳ ଗିରି ଝରଣାର କଳ କଳ ଧ୍ୱନି ଜୀବନର କ୍ଷୀଣ ସୂଚନା ଦେଉଛି ।

ଜୟନ୍ତୀ ଜୟନ୍ତର ହାତଧରି କହିଲେ, ବାପ, ରାତି ବେଶି ହେଲାଣି, ଚାଲ ଏଥର ଘରକୁ ଫେରିବା । ମୋର କରୁଣ ଜୀବନର ଇତିହାସ ବର୍ତ୍ତମାନ ସୁଦ୍ଧା ଆରମ୍ଭ କରି ପାରି ନାହିଁ । ହଠାତ୍ ଏପରି ଭାବରେ ଆରମ୍ଭ କରିବା ମୋର ଇଚ୍ଛା ନ ଥିଲା । ଜୀବନର ପ୍ରତ୍ୟେକ ଅବସ୍ଥା ଓ ତା'ର ସଂସ୍କାର ପ୍ରଭାବ, ଅନ୍ୟ ଅବସ୍ଥା ଚିନ୍ତା ଓ କର୍ମ ଉପରେ ପ୍ରତିଫଳିତ ହୁଏ । ପିଲାଦିନର ଶିକ୍ଷା, ସଭ୍ୟତା ଓ ମନର କ୍ରମ ବିକାଶ ଜୀବନ-ବସନ୍ତ ଯୌବନର ଗତିକୁ ନିୟନ୍ତ୍ରିତ କରେ । ସେଥିପାଇଁ ବାଲ୍ୟ ଜୀବନର ପବିତ୍ର ସରଳ ଇତିହାସ ଯେତିକି ମନେ ପଡ଼ିଲା ସେତିକି ତୋତେ କହିଲି । ସମୟ ମିଳିଲେ କାଲି ପୁଣି ଜୀବନର ଦ୍ୱିତୀୟ ଅଧ୍ୟାୟ ଯୌବନର ଅଭିଜ୍ଞତା ସମ୍ବନ୍ଧରେ କହିବି । ଆ ବାପ, ଡେରି ହେଲାଣି ।

ଜୟନ୍ତ ଦ୍ୱିଧା ନ କରି ଉଠିଲା । ମାତାଙ୍କର ହାତଧରି ଧୀରେ ଧୀରେ ପଥର ଚଟାଣ ଉପରୁ ତଳକୁ ଓହ୍ଲାଇ କୁଟୀର ପଥରେ ଚାଲିଲା ।

ପରଦିନ ମଧ୍ୟାହ୍ନବେଳେ ପୁଣି ସେହି ପଥର ଚଟାଣ ଉପରେ ବସି ଜୟନ୍ତୀ ଆରମ୍ଭ କଲେ, ବାପ, ଯୁଦ୍ଧ ଆରମ୍ଭ ହେବାର ଖବର ଆମେ ପାଇଲୁ । ଭୟରେ ଦକ ଦକ ହୋଇ ଗାଁଯାକର ଅବଶିଷ୍ଟ ଲୋକଙ୍କର ବେଳ କଟିବାରେ କଟୁଥାଏ । ସ୍ତ୍ରୀଲୋକମାନଙ୍କର ଦଶା କହିଲେ ନ ସରେ । ସ୍ୱାମୀ, ପିତା, ପୁତ୍ର ସମସ୍ତେ ଯୁଦ୍ଧରେ ଲାଗିଛନ୍ତି; ମନରେ ଶାନ୍ତି ଆସିବ କିପରି ? ଦିନଟିଏ କଟିଲେ ଯୁଗଟିଏ କଟିଲା ପରି ଲାଗେ । କାହାରି ଖବର କେହି ପାଇ ପାରନ୍ତି ନାହିଁ । ଯେଉଁଦିନ ଗୁପ୍ତଚର ଆସି ଗାଁରେ ପହଞ୍ଚେ ସେ ଦିନ ଲୋକଙ୍କର ଗହଳି, ଲୋକଙ୍କର ଉଦ୍‌ବେଗତା କହିଲେ ନ ସରେ । ଆବାଳବୃଦ୍ଧବନିତା ସମସ୍ତେ ଆସି ତାର ଚାରି

ପାଖରେ ଲୁଣ୍ଠି ହୁଅନ୍ତି । ବେଳ ଅବେଳ ନ ମାନି କୁଳବଧୂଅସୁଣୀମାନେ ସୁଦ୍ଧା ଚର ନିକଟକୁ ଆସି ଆତ୍ମୀୟମାନଙ୍କ ଭଲ ମନ୍ଦ ଖବର ପଚାରି ଯାଆନ୍ତି ।

ଦେଶର ଲୋକ ଗଡ଼ରେ ଜମା ହୋଇ ଅବରୁଦ୍ଧ ଦୁର୍ଗକୁ ରକ୍ଷା କରୁଛନ୍ତି । କିଏ କେଉଁଠି ଅଛି ତାର ଠିକଣା ନାହିଁ । ଚରମାନେ ଖବର ପାଇବେ କେଉଁଠୁ ? ତଥାପି ସେ ସତମିଛ ଗପି ଲୋକଙ୍କ ମନରେ ଆଶା ଓ ଉତ୍ତେଜନା ଆଣନ୍ତି ।

ଦୁଇ ଚାରିଦିନ କଟିଯାଏ । କୌଣସି ଚରକୁ କେହି ଦେଖନ୍ତି ନାହିଁ । ଲୋକଙ୍କର ମନରୁ ସନ୍ଦେହର ମାତ୍ରା ଧୀରେ ଧୀରେ କମି ଆସେ ।

ମୋର ତରୁଣୀ ସୁଲଭ ବୁଲାମନ ଘରେ ରହେ ନାହିଁ । ଦିନେ ବୋଉକୁ କହିଲି, ଘରେ ରହି ରହି ଆଉ ଭଲ ଲାଗୁ ନାହିଁ, ଆ ବୁଲିଯିବା । ସେ ପ୍ରଥମେ ପୂର୍ବପରି ବାରଣ କଲା, ମୁଁ ତାକୁ ବାରକଥା କହି ଭୁଲାଇ ଦେଲାରୁ ସେ ମୋ ସଙ୍ଗରେ ବୁଲିଯିବାକୁ ମଙ୍ଗିଲା ।

ପୁଣି ବୁଲି ଯିବା ଆରମ୍ଭ କଲୁ । ବୋଉ ବରାବର ମୋ ସଙ୍ଗରେ ଯାଏ ନଈକୂଳକୁ, ପାହାଡ଼ ଉପରକୁ କମ୍ଭା ଜୟଗୋପାଳଙ୍କ ମନ୍ଦିରକୁ । ପାହାଡ଼ ଉପରକୁ ଗଲେ ମୁଁ ବୋଉର ହାତ ଧରିଥାଏଁ । ସେ ଅଣ୍ଟାରେ ହାତଭରା ଦେଇ ଉପରକୁ ଉଠେ । କ୍ଳାନ୍ତ ହୋଇ ମୋର ଅତି ପରିଚିତ ପଥର ଚଟାଣ ଉପରେ ଘଡ଼ିଏ କାଳ ବସିଯାଏ । ପାହାଡ଼ ଉପରେ ଥିଲା ବେଳେ ଯଦି ଝଡ଼ ବର୍ଷା ହୁଏ, ଆମେ ସେହି ପଥର ଚଟାଣ ତଳେ ଗୋଟିଏ ଛୋଟ ଗୁହାରେ ଲୁଚି ଆତ୍ମରକ୍ଷା କରୁ । ସବୁଦିନେ ଯା ଆସ କରି ଗୁହା ଭିତରଟିକୁ ମୁଁ ପରିଷ୍କାର ରଖିଥାଏ ।

ପାହାଡ଼ ତଳେ, ରାସ୍ତା ଉପରେ ଗୋଟିଏ ଛୋଟ କୁଡ଼ିଆ, ପାଗଳ-ବାବାଙ୍କର । ପାଗଳବାବା ଜାତିରେ ବ୍ରାହ୍ମଣ, ଭିକ ମାଗି ବେଳ କାଟନ୍ତି । ଅତି ବୁଢ଼ାହେଲେ କଣ ହେଲା ଯିବା ଆସିବାର ଶକ୍ତି ତାଙ୍କର ଅଦ୍ଭୁତ । ଯେତେବେଳେ ସେ ତାଙ୍କର ଜୟମଙ୍ଗଳ ଠେଙ୍ଗାଟିଧରି କାନ୍ଧରେ ଥଳିଟି ଝୁଲାଇ ଗଛ ଗହଳି ଭିତରେ ଗଳି ଗଳି ନିର୍ବିଘ୍ନରେ ଚାଲି ଯିବାକୁ ବସନ୍ତି ତାଙ୍କର ଲମ୍ବ ଲମ୍ବ ପାକଲା ଧଳା ଦାଢ଼ି ଓ ମୁଣ୍ଡବାଳ ଗଛ ପତ୍ରରେ ଲାଖିଯାଇ ତାଙ୍କୁ ଘଡ଼ିଏ ଅଟକାଇ ଦିଏ । ସେ ବିରକ୍ତ ହୋଇ ଗୁଣୁଗୁଣୁ କରି କେତେ କଣ କହନ୍ତି । ସେ କୁଆଡ଼େ ଯାଆନ୍ତି, କାହିଁକି ଯାଆନ୍ତି କାହାକୁ କିଛି କହନ୍ତି ନାହିଁ । କେହି କିଛି ପଚାରିଲେ ସେ ହସନ୍ତି, ସେଇଥି ପାଇଁତ ସେ ପାଗଳ ।

ତାଙ୍କ କୁଡ଼ିଆର ତାଟି ସବୁବେଳେ ଅଉଜା ହୋଇଥାଏ । ଯାହାର ଇଚ୍ଛା ସେ ପଶି ଦେଖେ । ଉପକରଣ ଭିତରେ କେଇଟି ମାଠିଆ, ଖଣ୍ଡେ ବାଘଛାଲ ଓ ଗୋଟିଏ ମାଟିର ଦୀପ ।

ଝଡ଼ବର୍ଷାରୁ ରକ୍ଷା ପାଇବାକୁ ଆମେ ସେହି ପାଗଳବାବାଙ୍କ କୁଡ଼ିଆରେ ଆଶ୍ରା ନେଉ । ସେତ ସବୁବେଳେ ଅନୁପସ୍ଥିତ, ଆମକୁ ଦେଖୁଛି କିଏ ? ବର୍ଷା

କମିଗଲେ ପୁଣି ଗ୍ରାମକୁ ଫେରିଆସୁ । ପାହାଡ଼ ଉପରକୁ ବୁଲିବାକୁ ଆସିଲେ ବୋଉ ଥକିଯାଏ ବୋଲି ସେ ଏଣିକି ଆଉ ବୁଲି ଆସିବାକୁ ମଙ୍ଗେ ନାହିଁ ।

ଦିନକର ଘଟଣା, ଗ୍ରୀଷ୍ମ ନେଉଟେ ବେଳ, ପାହାଡ଼ କଡ଼କୁ ବୁଲିଯିବି ଏହିକଥା ମନରେ ପାଞ୍ଚି ମୁଁ ଘର ଭିତରୁ ପଦାକୁ ଆସିଲି । ବୋଉ ଦାଣ୍ଡ ଚଉରା ପାଖରେ ତୁନିହୋଇ ବସି କଅଣ ଭାବୁଥାଏ । ମୋତେ ଦେଖି ଆଖିରୁ ଲୁହ ପୋଛିଲା । ମୁଁ ବ୍ୟସ୍ତହୋଇ କହିଲି, ବୋଉ, ଏକୁଟିଆ ଏପରି ମନମାରି ବସିଛୁ କାହିଁକି ? ଆ, ନଈକୂଳ ଆଡ଼େ ବୁଲିଯିବା ।

ବୋଉ ଦୀର୍ଘଶ୍ୱାସ ଛାଡ଼ି କହିଲା, ଆଜି ବୁଲି ଯିବାକୁ ମନ ଡାକୁ ନାହିଁ ମା, ତୁ ଯଦି ଯାଉଛୁ ଯା, ସଞ୍ଜ ଆଗରୁ ଫେରି ଆସିବୁ । ଆଜି ଚର ଗଡ଼ରୁ ଖବର ଆସିଛି ।

ମୁଁ ଉଦ୍‌ବିଗ୍ନ ହୋଇ ପଚାରିଲି ଚର କଅଣ କହୁଥିଲା କି ?

କହୁଥିଲା, ଗଜପତିଙ୍କ ସିପେଇମାନେ ଆମ ଲୋକଙ୍କୁ ରାତିରେ ଆକ୍ରମଣ କରି ଛେଳି ମେଣ୍ଢା ପରି ହାଣି ପକାଉଛନ୍ତି । କେତେ ଲୋକ ଯେ ମରିଛନ୍ତି ତା'ର କଳନା ନାହିଁ । ତେବେ, କିଏ କିଏ ମରିଛନ୍ତି ସେ କହି ପାରିଲା ନାହିଁ । ଏ ଖବର ଶୁଣିଲା ବେଳୁଁ ମୋର ଆଉ ଗୋଡ଼ ହାତ ଚଳୁନାହିଁ । ସତକଥା ବୁଝିବାକୁ ହାତ ୧୦ ଘର ଚରକୁ ପୁଣି ଗଡ଼କୁ ପଠାଯାଇଛି, ସେ ନ ଫେରିବା ଯାଏ ମନରେ ଶାନ୍ତି ଆସିବ ନାହିଁ ମା ।

ମୁଁ କହିଲି, ଚରର କଥାରେ କେଉଁ ସତ । ସେ ପରା କହୁଥିଲା ଗଜପତିଙ୍କ ସିପାହିମାନେ ଗାଁ ଗାଁରେ ପଶି ଲୁଟି କରୁଛନ୍ତି, କାହିଁ ଅନ୍ୟ କାହା ମୁହଁରୁତ ଏକଥା ଶୁଣା ଯାଉନାହିଁ । ତାପରେ, ଗଜପତିଙ୍କ ସୈନ୍ୟ କେବେ ରାତିରେ କାହାରିକୁ ଆକ୍ରମଣ କରି ଯୁଦ୍ଧର ନିୟମ ଭାଙ୍ଗିବେ ନାହିଁ । ଏଡ଼େ ଅଧର୍ମ ସେମାନେ କରିବେ ନାହିଁ ।

ବୋଉର ମୁହଁ ଉଜ୍ଜ୍ୱଳ ଦେଖାଗଲା । ମୋର ଆଶ୍ୱାସ ବାଣୀ ତା'ର ଅନ୍ତରରୁ ସବୁ ସନ୍ଦେହ ନିର୍ବାସିତ କରିଦେଲା । ସେ କହିଲା, ହୋଇପାରେ ମିଛ, ତେବେ ଜୀବନ ଉପରେ ପଡ଼ିଲେ ଲୋକ ସବୁ କରିପାରେ ।

ଆ, ବୁଲି ଯିବା ।

ମୁଁ ଯିବିନାହିଁ, ତୁ ଯା । ମେଘଟା ଆକାଶରେ ଘୋଟି ଆସିଲାଣି, ଟିକିଏ ସହଳ ସହଳ ଫେରି ଆସିବୁ ମା, ନୋହିଲେ ସେଦିନ ପରି ଜୁଡ଼ୁବୁଡ଼ୁ ହୋଇ ଫେରିବୁ । ବେଶି ଦୂରକୁ ଯିବୁନାହିଁ ।

ବୋଉଠାରୁ ଅନୁମତି ପାଇ ମୁଁ ମନ ଖୁସିରେ ନାଇକୂଳକୁ ଚାଲିଲି । ଆକାଶର ମେଘ ଆଉ ମୋତେ ଡରେଇ ପାରିଲା ନାହିଁ । ଝୁଲୁଝୁଲିଆ ଥଣ୍ଡା ପବନଟା ମଧ୍ୟ ମୋର ଚାଲିଲା ଗତିକୁ ମନ୍ଥର କରି ପାରିଲା ନାହିଁ । ନାଇକୂଳ ଖଣ୍ଡେ ଦୂର ଅଛି, ଦେଖିଲି ମୋର ଅତି ପରିଚିତ ପଥର ଚଟାଣ ଉପରେ ସନ୍ନ୍ୟାସ ବେଶୀ ଜଣେ କିଏ ବସି ନଈଆଡ଼କୁ ଚାହିଁ ରହିଛନ୍ତି ।

ଆହୁରି ନିକଟକୁ ଯାଇଁ ଗୋଟିଏ ବୁଦା ଅନ୍ତୁଆଳରେ ଲୁଚି ଦେଖିଲି, ପଥର ଚଟାଣ ଉପରେ ଅର୍ଜୁନଭାଇ ଭୂନତହୋଇ ବସିଛନ୍ତି । ସୁଦୂର ପଶ୍ଚିମ ଦିଗ୍‌ବଳୟରେ ଅସ୍ତୋନ୍ମୁଖୀ ସୂର୍ଯ୍ୟର ବଉଦ ସଂଯୁକ୍ତ ଅର୍ଦ୍ଧ ଲୁକ୍କାୟିତ ଲୋହିତ ଛବି ଉପରେ ତାଙ୍କର ଆଖି ଦିଓଟି ସ୍ଥିର । ନିକଟରେ ଦୁଇ ଚାରିଖଣ୍ଡି ପୋଥି ସଜଡ଼ା ହୋଇ ରଖା ହୋଇଛି । ମୁଁ ବୁଦା ପଛରୁ ବାହାରି ଦୁଇ ହାତରେ ପଛଆଡ଼ୁ ତାଙ୍କର ଆଖି ବୁଜି ତାଙ୍କୁ ସହସା ଚମକାଇ ଦେବାକୁ ମନ କରୁଛି, ଦେଖିଲି, ସେ ହାତ ଦିଓଟି ଉପରକୁ ଟେକି ଗୋଟିଏ ଅଧମଉଳା ଫୁଲ ମାଳକୁ ଅତି-ଯତ୍ନରେ ସଜାଡ଼ିବାର ଚେଷ୍ଟା କରୁଛନ୍ତି ।

ମୋ ମନ କଥା ମନରେ ରହିଲା । ସେ କ'ଣ କରିବେ କେବଳ ସେଇଆ ଦେଖିବାକୁ ମୁଁ ପୂର୍ବପରି ଚାହିଁ ରହିଲି । ମୁଁ ଜାଣେ, ସେ ଯେଉଁ ଫୁଲମାଳଟି ହାତରେ ଧରିଛନ୍ତି, ସେ ଖଣ୍ଡି ପୂର୍ବଦିନ ସନ୍ଧ୍ୟାରେ ସେହି ଚଟାଣ ଉପରେ ବସି ମୁଁ ଗୁନ୍ଥୁଥିଲି । ତର ତର ହୋଇ ଘରକୁ ଫେରିଲା ବେଳେ ଭୁଲରେ ଫୁଲମାଳଟି ସେହି ପଥର ଚଟାଣ ଉପରେ ଛାଡ଼ି ଯାଇଥିଲି ।

ଅର୍ଜୁନଭାଇ ସେ ଖଣ୍ଡିକ ନେଇ ଛାତି ଉପରେ ରଖିଲେ । କିଛିକ୍ଷଣ ପରେ ତାକୁ ହାତରେ ଧରି ଚୁମ୍ବନ କଲେ । ଭକ୍ତି-ଜଡ଼ିତ ଚକ୍ଷୁରେ ଚାରିଆଡ଼କୁ ଚାହିଁଥାନ୍ତି । ଏହାର ଅର୍ଥ ମୁଁ ବୁଝିପାରିଲି ନାହିଁ । ତୁଚ୍ଛା ଗୋଟାଏ ଅଧ-ମଉଳା ଫୁଲମାଳକୁ ଛାତିରେ ଚାପିଧରି ଚୁମ୍ବନକରି ଅର୍ଜୁନଭାଇ ପରି ଜଣେ ନିର୍ବିକାର ସନ୍ନ୍ୟାସୀର ମନରେ କି ଆନନ୍ଦ ଆସିପାରେ ? ଏ ବିଷୟ ମୁଁ ଅନୁମାନ କରିପାରିଲି ନାହିଁ । ତନ୍ଦ୍ରାରେ ବିଭୋର ହୋଇ ଧୀରେ ଧୀରେ ବୁଦା ଉହ୍ଲୁଆଳରୁ ବାହାରି ଅର୍ଜୁନଭାଇ ନିକଟକୁ ଚାଲି ଆସିଲି । ତାଙ୍କ ମୁହଁକୁ ବାରମ୍ବାର ଫେରି ଚାହିଁବାକୁ ମନ ହେଉଥାଏ । ଯେତେଥର ଚାହେଁ, ଦେଖେଁ ମୋର ସେହି ଅଧ-ମଉଳା ଫୁଲମାଳଟି ତାଙ୍କର ଅଧର-ସଂଲଗ୍ନ ହୋଇଛି । ଆଖିରୁ ଲୁହଧାର ଗଡ଼ି ପଡ଼ୁଛି ।

ଅର୍ଜୁନଭାଇ ସନ୍ନ୍ୟାସୀ, ତଥାପି ସେ ଯୁବକ ! ମୋ ପ୍ରତି ଯେ ସେ ଆକୃଷ୍ଟ ଏ କଥା ପୂର୍ବରୁ ମୁଁ ବା ସେ ସ୍ୱତନ୍ତ୍ର ଭାବରେ ଅନୁମାନ କରୁଥିଲେ ମଧ୍ୟ ବିଶ୍ୱାସ କରିବାକୁ ମନ ଡାକେ ନାହିଁ । ଆକର୍ଷଣ ବା ପ୍ରଲୋଭନ ଆସୁ ଆସୁ ସେ ନିଜର କର୍ମପନ୍ଥା ଓ କର୍ତ୍ତବ୍ୟ ଜ୍ଞାନ ମନେ ପକାଇ ନିଜକୁ ସମ୍ଭାଳି ନିଅନ୍ତି । କେତେଥର

ସେ ମୋତେ ଅଭିନନ୍ଦନ କରିଛନ୍ତି, କପାଳରେ ମୁହଁ ଲଗାଇଛନ୍ତି । ମୁଁ ଲତାଟି ପରି ତାଙ୍କର କାନ୍ଧ ଉପରେ ଝାଉଁଳି ପଡ଼ିଲେ ସେ ପୁଣି କଣ ଭାବି ମୋତେ ଧୀରେ ହାତରେ ଦୂରକୁ ଠେଲି ଦେଇ ଚାଲି ଯାଇଛନ୍ତି । ଯୁବକ ଯୁବତୀ ସୁଲଭ ଆକର୍ଷଣ ତ ଆସିବା ଅତି ସ୍ୱାଭାବିକ, ସେ କିନ୍ତୁ ତାଙ୍କର ଆଦର୍ଶ ବ୍ରହ୍ମଚର୍ଯ୍ୟ ଜୀବନର କର୍ମପନ୍ଥା ମନେ ପକାଇ ସତର୍କ ହୋଇ ସେହି ଆକର୍ଷଣ ମଧ୍ୟରୁ ନିଜକୁ ଦୂରକୁ ବହୁଦୂରକୁ ଟାଣି ନେଇ ପାରିଛନ୍ତି ମନର ଜୋର୍‌ରେ । ତେବେ, ଅଜି ତାଙ୍କ ମନରେ ଏପରି ଦୁର୍ବଳତା ସ୍ଥାନ ପାଇଲା କିପରି ?

ଏହି ବିଷୟ ଭାବି ମୁଁ ଚାଲି ଚାଲି ଆସି ପାହାଡ଼ ଉପରେ ଉପସ୍ଥିତ ହେଲି । ପାହାଡ଼ର ମୁଣ୍ଡଉପରେ ଠିଆ ହୋଇ ମୁଁ ଚାରିଆଡ଼କୁ ଚାହିଁଲି । ମନରେ ଭୟ ଜାତ ହେଲା । ସଞ୍ଜ ବୁଡ଼ିଆସୁଛି । ପଶ୍ଚିମ ଦିଗ୍‌ବଳୟ କୋଳରେ ସୂର୍ଯ୍ୟଦେବ କେତେବେଳୁଁ ଲୁଚି ଗଲେଣି । ମହାନଦୀର ପରପାରରୁ ଅନ୍ଧକାର ମାଡ଼ିମାଡ଼ି ଆସୁଛି । ଦେଖୁ ଦେଖୁ ନଦୀର କ୍ଷୀଣ ଧାରକୁ ନିଜ ଗର୍ଭ ଭିତରେ ଲୁଚାଇ ଦେବ । ଏଣେ ଆକାଶର ଅବସ୍ଥା ଅତି ଭୟଙ୍କର । ବିଜୟୋଲ୍ଲାସୀ ସେନା ପରିକିପରି ବାଦଲମାଳା ଆକାଶସାରା ଘୁରି ହୋଇ ସଦର୍ପରେ ପରସ୍ପରକୁ ଅତିକ୍ରମ କରି ଚାଲିଯିବାକୁ ଅଦେଇ । ଠିକ୍ ସେହିବେଳେ ପ୍ରବଳ ଝଡ଼ ତାର ନବରୂପ ଯେମିତି ମାଡ଼ି ଆସିଲା । ମୋର ଦୁର୍ବଳ ମନର ଚମକକୁ ଦ୍ୱିଗୁଣ ବଢ଼ାଇଲା । ମୁଁ ଆତ୍ମରକ୍ଷା କରିବାକୁ ପଥର ଚଟାଣ ତଳେ ଆଶ୍ରୟ ନେଲି । ଝଡ଼ ଯଦି ବନ୍ଦ ହୋଇଯାଏ ଘରକୁ ଫେରି ଯିବାକୁ କଷ୍ଟ ହେବ ନାହିଁ ।

ଝଡ଼ କମିଲା ନାହିଁ । ବେଳୁବେଳ ବଢ଼ିବାକୁ ଲାଗିଲା । ତହିଁରେ ପୁଣି ଘୋର ବର୍ଷା । ଚାରିଆଡ଼ୁ ଅନ୍ଧାର ଘୋଟି ଆସିଲାଣି । ଯଦି ରାତିଯାକ ଏହିପରି ବର୍ଷା, ଝଡ଼ ତୋଫାନ ହୁଏ ଘରକୁ ଫେରିବି କିପରି, ବାଟ ଘାଟ ତ ବାରି ହେବ ନାହିଁ ?

ଏହିପରି କେତେ ସମୟ କଟି ଗଲା । ଝଡ଼ ବର୍ଷା ଟିକିଏ କମିଲାପରି ବୋଧ ହେଲା । ଘରକୁ ଫେରିବାକୁ ମନ ଅଥୟ ହେଉଥାଏ । ଆଉ ସମ୍ଭାଳି ପାରିଲି ନାହିଁ । ଛୋଟ ଦମ୍ଭକରି ଗୁହା ଭିତରୁ ପଦାକୁ ବାହାରି ପଡ଼ିଲି । କିନ୍ତୁ ପ୍ରକୃତରେ ଝଡ଼ କମି ନ ଥାଏ । ଚାରିଆଡ଼ର ଭୟଙ୍କର ଦୃଶ୍ୟ ଦେଖି ମୋର ପ୍ରାଣ ଭୟରେ କାନ୍ଦି ଉଠିଲା । ତଥାପି ଅନ୍ଧାରରେ ଅଣ୍ଡାଳି ଅଣ୍ଡାଳି ପାହାଡ଼ ଉପରୁ ତଳକୁ ଓହ୍ଲାଇବାକୁ ଚେଷ୍ଟା କଲି । କ୍ଷଣକରେ ବର୍ଷାପାଣିରେ ଜୁଡ଼ୁବୁଡ଼ୁ ହେଲି । ଗୋଡ଼ ଚପି ଚପି ଧୀରେ ଧୀରେ ଡାଳପତ୍ର ଧରି ତଳକୁ ଓହ୍ଲାଇଲା ବେଳେ

କେତେ ଥର ଗୋଡ଼ ଖସିଯାଇ ପଥର କି ଗଛ ଦେହରେ ଅଟକିଯାଏ । କେତେ ବେଳେ ପଥର ଖଣ୍ଡେ ଝୁଣ୍ଟି ଖସି ଅସ୍ପ ଅସ୍ପ ଗଛ ଦେହରେ ଲୁଗା ଲାଗିଗଲେ ଅଟକିଯାଏ । ଲୁଗାପଟାର ଅବସ୍ଥା କହିଲେ ନ ସରେ । ସେଥିପ୍ରତି ମୋର ଭ୍ରୂକ୍ଷେପ ନ ଥାଏ ।

ଖଣ୍ଡେଦୂର ଆସି ମୁଁ ଅତି କ୍ଳାନ୍ତ ହୋଇ ପଡ଼ିଲି । ସତେ କି ମୋ ଦେହରୁ ସମସ୍ତ ଶକ୍ତି ନିଃଶେଷ ହୋଇଛି । ମୁଁ ଟିକିଏ ଅଣ୍ଡା ଲୋଡ଼ି ଖଣ୍ଡେ ଅକର୍ମ୍ମ ଶିଳାକୁ ଭରା ଦେଇ ଠିଆ ହେଲି । ପାହାଡ଼ ଉପରୁ ପାଣି ଧାର ପ୍ରବଳ ବେଗରେ ମୋର କଡ଼ଦେଇ କୁଳୁ କୁଳୁ ହୋଇ ଗଡ଼ି ଯାଉଥାଏ । ଠିକ୍ ସେହିପରି ମୋ ମୁଣ୍ଡ ଉପରୁ ବର୍ଷାପାଣି ଗଡ଼ି ପଡ଼ୁଥାଏ ପିଠିବାଟେ ତଳକୁ । ମୋର ମନର ସବୁ ଦମ୍ଭ, ସବୁ ସାହସ କୁଆଡ଼େ ଉଭେଇ ଗଲା ।

ଅନ୍ଧାର ଭେଦକରି ଗୋଟିଏ କ୍ଷୀଣ ଆଲୋକ ରେଖା ମୋର ଆଖିରେ ପଡ଼ିଲା । ଅନ୍ତର ଭିତରେ ସତେକି ନମ୍ର ଭ ଆଶାଲୋକ ମିଞ୍ଜି ମିଞ୍ଜି ହୋଇ ଜଳି ଉଠିଲା । ଏଇ ତ ପାଗଳବାବାଙ୍କ କୁଡ଼ିଆ ଭିତରର ଆଲୁଅ ! ପାଗଳବାବା ତେବେ ଅଛନ୍ତି, ମୋର ଆଉ ଭୟ କଣ ? କୌଣସି ମତେ ସେଠାରେ ଉପସ୍ଥିତ ହୋଇ ପାରିଲେ ରକ୍ଷା । ସେହି ଆଲୋକକୁ ଲକ୍ଷ୍ୟକରି ଥରଥର ଡାଳପତ୍ର ଧରି ମୁଁ ଆଗକୁ ଚାଲିଲି ।

କପରି ଯେ ମୁଁ ପାହାଡ଼ ଉପରରୁ ଓହ୍ଲାଇ ପାଗଳବାବାଙ୍କ କୁଡ଼ିଆ ଆଗରେ ଉପସ୍ଥିତ ହେଲି, ମୋର ମନେ ପଡୁନାହିଁ । ଅତି ଆନନ୍ଦରେ ମୁଁ ପାଗଳବାବାଙ୍କ କୁଡ଼ିଆ ଭିତରକୁ ପଶିଗଲି । ସହସା ମୋର ଆଖିରେ ଯେଉଁ ଦୃଶ୍ୟ ପଡ଼ିଲା ମୁଁ ସ୍ତମ୍ଭିତ ହେଲି । ଘରର ଗୋଟିଏ କୋଣରେ ରୁଖା ଉପରେ ମାଟିର ଦୀପ ମିଞ୍ଜି ମିଞ୍ଜି ହୋଇ ଜଳୁଛି । ଘର ମଝିରେ ଶୁଖିଲା କାଠ ଏକାଠି ଜମାଇ ସେଥିରେ ଅଗ୍ନି ସଂଯୋଗ କରାଯାଇଛି । ନିଆଁ ହୁ ହୁ ହୋଇ ଜଳି ଘରକୁ ଆଲୋକିତ କରୁଛି । ଜ୍ୱଳନ୍ତ ନିଆଁକୁ ବେଷ୍ଟନକରି ଗୁଡ଼ିଏ ଜଣ ସୈନିକ ବସି ମଧୁରାଳାପ କରୁଛନ୍ତି । ଦେହର ଓଦାପୋଷାକ ଖୋଲି ନିଆଁକୁ ଦେଖାଇ ଶୁଖାଇବାକୁ ଚେଷ୍ଟା କରୁଛନ୍ତି । ପାଗଳବାବାଙ୍କର ଦେଖାନାହିଁ ।

ମୋ ମନରେ ଭୟ ହେଲା । ଚରର ସେ ଦିନର କଥା ମୋର ମନେ ପଡ଼ିଲା, ରାଜପତିଙ୍କ ସିପାହୀମାନେ ଗାଁ ଗାଁରେ ପଶି ଯାହା ପାଉଛନ୍ତି ଲୁଟି ନେଉଛନ୍ତି । ସୁବିଧା ପାଇଲେ ଓ ଏକୁଟିଆ ଦେଖିଲେ ପରର ସ୍ତ୍ରୀ ପିଲାଙ୍କ ଉପରେ ଅତ୍ୟାଚାର କରିବାକୁ ପଛାଉ ନାହାନ୍ତି ।

ଭୟରେ ମୁଁ ପଥର ପାଲଟିଯାଇଥିଲି । ପଳାଇ ଯାଇ ଆତ୍ମରକ୍ଷା କରିବାକୁ ମୋ ଗୋଡ଼ର ସବୁ ଶକ୍ତି କିଏ କୁହୁକ ବଳରେ ହରଣ କରି ନେଲାଣି ।

ସିପାହୀମାନେ ମୋର ଉପସ୍ଥିତି ଅନୁଭବ କରି ମୋରି ଆଡ଼କୁ ଚାହିଁଲେ । ସେମାନଙ୍କର ପ୍ରଥମ ଜିଜ୍ଞାସୁ ଚାହାଣୀ ଭିତରେ ମୁଁ ବିସ୍ମୟ ଓ ଭୟର ସୂଚନା ପାଇଲି । କିନ୍ତୁ, ମୋର ଦୁରବସ୍ଥା ଉପଲବ୍ଧି କରିବା ସଙ୍ଗେ ସଙ୍ଗେ ସେମାନଙ୍କ ଚାହାଣୀରୁ ଭୟବିହ୍ୱଳତାର ଆଭାସ ଲୁଚିଗଲା । ସଙ୍ଗେ ସଙ୍ଗେ ତା ପରିବର୍ତ୍ତେ ପୈଶାଚିକ ଆନନ୍ଦର ଦାରୁଣଦୀପ୍ତି ଜଳି ଉଠିଲା । ମୁଁ ଉପସ୍ଥିତ ବିପଦର ଅଗ୍ନି ଅଭିନୟ ଦେଖିବାକୁ ସ୍ଥିର ଅଚଞ୍ଚଳ ରହିଲି ।

ମୋର ଅବସ୍ଥା ଦେଖି ସିପାହୀମାନେ ଜ୍ୱଳନ୍ତ ନିଆଁ ପାଖରୁ ଉଠି ଆସିଲେ । ସେମାନଙ୍କର ବଳିଷ୍ଠ ଅଙ୍ଗ, ଅକରୁଣ ଦୃଷ୍ଟି ଦେଖିଲେ ମହା ଦାମ୍ଭିକ ପୁରୁଷର ଛାତି ମଧ୍ୟ ଥରି ଉଠିବ । ମୁଁ ତ ଜଣେ ଦୁର୍ବଳା ବାଳିକା, ଏକାକିନୀ ଓ ନିଃସହାୟା ।

ସେମାନଙ୍କ ମଧ୍ୟରୁ ଜଣେ ମୋର ଅତି ନିକଟକୁ ଘୁଞ୍ଚିଆସି ନରମ ସ୍ୱରରେ ପଚାରିଲା, ଏ ଦୁର୍ଗମ ଗଡ଼ରେ ତେମେ କଅଣ ବାଟବଣା ହୋଇ ଏଠାକୁ ଆସିଛ ?

ମୁଁ ସାହସ କରି କହିଲି, ମୁଁ ନିଆଶ୍ରା ।

ଆଉ ବେଶୀ କିଛି କହିପାରିଲି ନାହିଁ । ମୋର ପାଟିରୁ କଥା ଛଡ଼ାଇ ନେଇ ଜଣେ କହିଲା, ନିଆଶ୍ରା କାହିଁକି ? ତମପରି ସୁନ୍ଦରୀ ସ୍ତ୍ରୀ ଯଦି ଦୁନିଆଁରେ ନିଆଶ୍ରା ହୁଏ, ତେବେ !

କଥାଟା ଅଧା ରହିଗଲା ତା ତୁଣ୍ଡରେ । ତାର ଏପରି କଥା ଶୁଣି ମୋତେ ବିରକ୍ତି ଲାଗିଲା । ମୋର ରୂପନେଇ ସେ ତାର ମତ ପ୍ରକାଶ କରିବାକୁ କିଏ ? କିନ୍ତୁ, ଭୟରେ ମୁହଁ ଖୋଲି ତାକୁ ମୁଁ କିଛି କହିପାରିଲି ନାହିଁ ।

ଆଉ ଜଣେ ପଚାରିଲା, ତମର ଘର ?

ମୁଁ କହିଲି, ଏଇ ନିକଟରେ, ଗୋଟିଏ ଗାଁରେ ।

ଅସମୟରେ ଏଠାରେ କାହିଁକି ଅଛ ?

ମୁଁ ବୁଲିବାକୁ ଆସିଥିଲି, ହଠାତ୍ ଝଡ଼ବର୍ଷା ହେଲା । ଘରକୁ ଫେରିପାରିଲି ନାହିଁ ।

ତମର କଅଣ ଘରେ ବାପ ଭାଇ ନାହାନ୍ତି ? ସେମାନେ ଅବଶ୍ୟ ଆସି ତମକୁ ଏଠାରୁ ନେଇଯିବେ । ଭୟ କାହିଁକି ? ଓଦା ସର ସର ହୋଇ ଶୀତରେ ତ ଥରୁଛ, ନିଆଁ ପାଖକୁ ଘୁଞ୍ଚି ଆସ ।

ଲୋକଟିର କଥା ଶୁଣି ଓ ତାର ଆତ୍ମୀୟତା ଦେଖି ମନରେ ସାହସ ହେଲା । ମୁଁ ଉତ୍ତର ଦେଲି, ମୋର ବାପା ଯୁଦ୍ଧକୁ ଯାଇଛନ୍ତି, ମୋର କେହି ଭାଇ ନାହିଁ । ଘରେ ବୋଉ ଏକୁଟିଆ ଅଛି । ଯଦି ତମ ଭିତରୁ କେହି ମୋତେ ଘରେ ଛାଡ଼ିବାକୁ ସଙ୍ଗରେ ଯାଆନ୍ତ ତ ଅତି ଉପକାର କରନ୍ତ । ଏକା ବୋଉ ମୋର ଘରେ ଦକ୍ ଦକ୍ ହେଉଥିବ ।

ସେ ଭିତରୁ ଜଣେ ମୋ କଥା ଶୁଣି ଠୋ ଠୋ ହସି କହିଲା ପରର ବେଠି କରିବାକୁ ବାପା ଆମକୁ ଶିଖାଇ ନାହାନ୍ତି ।

ବୋଧହୁଏ ଧନ ଲୋଭରେ ଏପରି କହୁଛି ଭାବି ମୁଁ କହିଲି, ତମର ପରିଶ୍ରମ ପାଇଁ ବୋଉ ନିଶ୍ଚୟ ତମକୁ ଧନରତ୍ନ ପୁରସ୍କାର ଦେବ ।

ସେ ପୂର୍ବପରି କହିଲା, ଧନରତ୍ନ ! ସେ ସବୁ କଅଣ ତମଠାରୁ ବେଶୀ ମୂଲ୍ୟବାନ । ତମପରି ମୂଲ୍ୟବାନ ରତ୍ନକୁ ଯେ ହାତରେ ପାଇଛି ତାର ଆଉ କେଉଁ ଧନରତ୍ନ ଲୋଡ଼ା ?

ସେ ମୋର ନିକଟକୁ ଘୁଞ୍ଚି ଆସିଲା । ସେତେବେଳେ ବାହାରର ଝଡ଼ବର୍ଷା ମୋ ଆଖିରେ ବିପଦର କାରଣ ପରିବର୍ତ୍ତେ ବରଂ ରକ୍ଷା ପାଇବାର ଏକମାତ୍ର ଉପାୟପରି ବୋଧ ହେଲା । ମୁଁ ବୁଲି ପଡ଼ି କୁଡ଼ିଆ ଭିତରୁ ବାହାରି ଆସିବାକୁ ଚେଷ୍ଟା କଲି ।

କିଏ ଜଣେ ପଛଆଡୁ ମୋ'ର ହାତଟାକୁ ଚିପିଧରି ରୁକ୍ଷ ସ୍ୱରରେ କହିଲା, ଏକୁଟିଆ ଯାଅ ନା କହୁଛି, ଅନ୍ଧାରୁଆ ଦୁର୍ଗମ ବାଟ, ବାଘ ସାପର ଭୟ ବି ଅଛି ।

ମୁଁ ବୁଲି ପଡ଼ି ରାଗିଯାଇ କହିଲି, ପାଷଣ୍ଡ, ମୋର ଦେହ ଛୁଇଁବାର ଅଧିକାର ତୋତେ ଦେଲା କିଏ ? ଛାଡ଼ ମୋ ହାତ । ହାତଟିକୁ ଟାଣି ନେବାକୁ ଚେଷ୍ଟା କଲି, ପାରିଲି ନାହିଁ । ଆଉ ଜଣେ ସିପାହୀ ବୁଲିଆସି ମୋର ଅନ୍ୟ ହାତଟିକୁ ତାର ବଜ୍ର-ମୁଠା ଭିତରେ ବନ୍ଦୀକଲା ।

ମୋର କଥା ଶୁଣି ସିପାହୀ କହିଲା, ମୋର ମନ ଓ ତୋ'ର ଜଳିଲା ରୂପ, ଛଳେଇଲା ଉବ ଉବ ଯୌବନ ମୋତେ ସେ ଅଧିକାର ଦେଇଛି ।

ମୋର ଦେହ ହାତ ଥରି ଉଠିଲା । ବାଧା ଦେଇ ଏମାନଙ୍କ ଆଗରୁ ପରିତ୍ରାଣ ପାଇବା ମୋ ପରି ନିଃସହାୟ ଦୁର୍ବଳ ନାରୀ ପକ୍ଷରେ ସମ୍ପୂର୍ଣ୍ଣ ଅସମ୍ଭବ । ମୋ'ର ଦୁଇ ଆଖିରୁ ଲୁହଧାର ଝରି ପଡ଼ିଲା । ମୁଁ ଅତି କରୁଣ ସ୍ୱରରେ କହିଲି, ତମେମାନେ ମୋର ପିତୃସ୍ଥାନୀୟ ! ତମର ମଧ୍ୟ ମା, ଭଉଣୀ, ଝିଅ ଅଛନ୍ତି । ସେମାନଙ୍କୁ ମନେ ପକାଇ ମୋତେ ଛାଡ଼ିଦିଅ । ମୁଁ ତମମାନଙ୍କର ଅନ୍ୟ କୌଣସି ସାହାଯ୍ୟ ଲୋଡ଼ୁନାହିଁ ।

ମୋ କଥାରେ କେହି କାନ ଦେଲେ ନାହିଁ । ମୋର ସେତେବେଳର ଅବସ୍ଥା ଦେଖିଥିଲେ ପାହାଡ଼ର ପଥର ସୁଦ୍ଧା ତରଳି ଯାଇଥାନ୍ତା, କିନ୍ତୁ ଏହି ନୃଶଂସ ସୈନିକମାନଙ୍କର ମନର ପରିବର୍ତ୍ତନ ହେଲା ନାହିଁ । ସେମାନଙ୍କ ମଧ୍ୟରୁ ଜଣେ ହସି ହସି ନିମ୍ନ ସ୍ୱରରେ ଯେଉଁ ଘୃଣିତ ପ୍ରସ୍ତାବ କଲା, ସେ କଥା ଶୁଣି ମୋର ହୃଦୟର ସ୍ପନ୍ଦନ ବନ୍ଦ ହୋଇ ଆସିଲା ।

ସବୁ ବିନୟ ପ୍ରାର୍ଥନା ବିଫଳ ହେଲା । ଜଣେ ସୈନିକ ଭଲ ମନ୍ଦ ବିଚାର ନ କରି ବିବେକର ଡାକ ନ ଶୁଣି କେବଳ ଉତ୍ତେଜନା ଓ ଅନ୍ଧାରର ପ୍ରବଳ ହୀନ ଲାଳସାର ବଶବର୍ତ୍ତୀ ହୋଇ ପାଗଳପରି ଛୁଟି ଆସିଲା । ମୋର ଦୁର୍ବଳ କଟିକୁ ଦୁଇ ହାତରେ ବେଷ୍ଟନ କଲା । ମୋତେ ଭୂମି ଉପରକୁ ଆଉଜାଇ ନେଲା । ମୋର ଶରୀରରେ ତାର ଦୂଷିତ ଅଧର ଲଗାଇବାକୁ ଯାଉଁଣୁ ତାର ଚଞ୍ଚଳ ଦୃଷ୍ଟି କାହାର ସ୍ଥିରମୂର୍ତ୍ତି ଉପରେ ପଡ଼ିଲା । ସେ ଅବାକ୍ ହୋଇ ଠିଆ ହୋଇ ରହିଲା । ତାର ହାତ ଦୁଇଟା ଶିଥିଳ ହୋଇ ମୋର କଟି ଦେଶରୁ ତଳକୁ ଖସି ପଡ଼ିଲା ।

କିଏ ଜଣେ ଅନ୍ୟ କାହାକୁ କହିବାର ଶୁଣାଗଲା, ଆସ ବାବା ଭିତରକୁ, ପଦାରେ ଠିଆ ହେଲ କାହିଁକି, ବର୍ଷା ଯେ ହେଉଛି ।

ନୈରାଶ୍ୟ ଭିତରେ ଟିକିଏ ଆଶାର ସନ୍ଧାନ ପାଇଲି । ଜାଣେ ନାହିଁ, କି ଅବୋଧ ଭାଷାରେ ମୁଁ ଆକୁଳ ହୋଇ ଚିତ୍କାର କରି ଉଠିଲି, ମୋତେ ରକ୍ଷାକର ।

ସିପାହୀ ଦୁଇଜଣ ମୋର ହାତ ଛାଡ଼ି ପଛକୁ ଘୁଞ୍ଚିଗଲେ । କ୍ଷଣକ ଭିତରେ ଦୁଇଜଣ ଲୋକ କୁଡ଼ିଆ ଭିତରକୁ ପଶି ଆସିଲେ । ପ୍ରଥମ ଲୋକଟି ନିଜେ ପାଗଳ ବାବା । ଅନ୍ୟ ଜଣକ ଜଣେ ତେଜସ୍ୱୀ ଯୁବକ । ସେମାନଙ୍କୁ ଦେଖି ମୋ ପିଣ୍ଡରେ ପ୍ରାଣ ପଶିଲା ।

ବୀରବେଶୀ ସୈନିକ ଗୁଡ଼ିକଙ୍କର ଅବସ୍ଥା କହିଲେ ନ ସରେ । ଆଗନ୍ତୁକ ଯୁବକଟି ଆଖି ତରାଟି ସେମାନଙ୍କର ମୁହଁକୁ ଚାହିଁଲେ । ସେମାନେ କାନ୍ଥକୁ ଆଉଜି ଯୋଡ଼ହସ୍ତ କରି, ମଥା ପୋତି ଠିଆ ହେଲେ । ଏହା ଭିତରେ ଯେ କି ଗୂଢ଼ ରହସ୍ୟ ଛପି ରହିଛି ସେ କଥା ମୁଁ ବୁଝନ୍ତି କପରି ?

ଯୁବକ ରୁକ୍ଷ ସ୍ୱରରେ କହିଲେ, ତମେମାନେ ଗଜପତିଙ୍କର ସୈନିକ ପରି ଦିଶୁଛ ତ ! କାହାର ଆଦେଶରେ ଯୁଦ୍ଧ ଭୂଇଁ ଛାଡ଼ି ଆସିଛ ଶୁଣେ ? ସିପାହୀମାନେ ଉତ୍ତର ଦେବା ପରିବର୍ତ୍ତେ ଭୟରେ ଅସ୍ଥିର ହୋଇ କାନ୍ଥ ପାଖକୁ ଘୁଞ୍ଚିଗଲେ ।

ଯୁବକ ପୁଣି କହିଲେ, ବୁଝିଲି, ତମଭଳି ମାନଙ୍କର ଅସତ୍ ବ୍ୟବହାର ପାଇଁ ଗଜପତିଙ୍କର ନିର୍ମଳ ନାମରେ କଳଙ୍କ ଲାଗିଛି । ଘରେ ଘରେ ଗଜପତିଙ୍କର ଦୁର୍ନାମ ରଟଣା ହେଉଛି । ତାହାର ସତ୍ୟାସତ୍ୟ ବୁଝିବା ପାଇଁ ମୁଁ ଆଜି ଛପି ଛପି ତମର ଅନୁସରଣ କରିଥିଲି । ଦୁଇ ଆଖିରେ ଯାହା ଦେଖିଲି ସେଥିରେ ମୋର ସବୁ ସନ୍ଦେହ ଦୂର ହୋଇଗଲା । ନିଜର ଘୃଣିତ କର୍ମ ପାଇଁ ଅବଶ୍ୟ ତୁମ୍ଭଙ୍କୁ ଯଥାଯୋଗ୍ୟ ଦଣ୍ଡ ଭୋଗିବାକୁ ପଡ଼ିବ । ତା ପୂର୍ବରୁ ମୋତେ କହ, ଏହି ବାଳକାଟି କିଏ ।

ସେମାନେ ଉତ୍ତର ଦେବା ପୂର୍ବରୁ ନିଜେ ପାଗଳବାବା ମୋ ମୁହଁକୁ ଚାହିଁ ଯୁବକଙ୍କୁ ଉତ୍ତର ଦେଲେ, ସର୍ଦ୍ଦାରଙ୍କର ଝିଅ ଜୟନ୍ତୀ । ଯୁବକଟି ଏକ ଆଖିରେ ମୋ'ର ଅର୍ଦ୍ଧ-ନଗ୍ନ ଦେହ ଓ ମୁହଁକୁ ଅନାଇଁ ରହିଥିଲେ । ମୋତେ ଲକ୍ଷ୍ୟକରି କହିଲେ, ତୁମେ ଏକାକିନୀ ଏଠାକୁ କପରି ଆସିଲ ?

ମୁଁ ପୂର୍ବପରି ତଳକୁ ଚାହିଁ ଧୀରେ ଧୀରେ ସବୁ ଘଟଣା ବର୍ଣ୍ଣନା କଲି । ମୋର କଥା ଶେଷ ହେଲା । ଯୁବକ କହିଲେ, ଭୟର କାରଣ ନାହିଁ । ମୁଁ ନିଜେ ତୁମକୁ ତୁମର ମାଆଙ୍କ ପାଖରେ ଛାଡ଼ି ଆସିବି । ସିପାହୀମାନଙ୍କୁ ଚାହିଁ କହିଲେ, ଏହି ବାଳିକାଟି ଯାହା କହିଗଲେ ସେଥିରେ ପ୍ରତିବାଦ କରି କହିବାର କିଛି ଅଛି ?

ଯୁବକଙ୍କର ଗୋଡ଼ତଳେ ମୁଣ୍ଡ ଲଗାଇ ସେମାନେ କରୁଣ ସ୍ୱରରେ କହିଲେ, ଆମ୍ଭେମାନେ ଦୋଷୀ, ଆମକୁ କ୍ଷମା କରନ୍ତୁ ।

ପାଗଳବାବା ଆମ ଦୁହିଁଙ୍କର ମୁହଁକୁ ଚାହିଁ ହସି ହସି ମନକୁ ମନ ତାଙ୍କର ପ୍ରଳାପ ଆରମ୍ଭ କଲେ, ଦୋଷୀ ସମସ୍ତେ ଯେତେବେଳେ ଆକାଙ୍କ୍ଷା ଏକମୁଖୀ ହୁଏ, ପ୍ରତ୍ୟୁତ୍ତର ନ ପାଏ । ଦୋଷୀ କେହି ନୁହନ୍ତି ଯେତେବେଳେ ଆକାଙ୍କ୍ଷା ଦୁଇଆଡ଼ୁ ଆସେ, ପ୍ରତିବନ୍ଧକ ନ ପାଇ ମିଶି ଏକାକାର ହୁଏ । ଯେ ବଞ୍ଚିତ ସେ ଦୋଷୀ, ଯେ ବିଜୟୀ ସେ ନିର୍ଦ୍ଦୋଷ !

ତାଙ୍କର ପ୍ରଳାପରେ କାନ ନ ଦେଇ ଯୁବକ କହିଲେ, ଆସ ଦେବୀ, ତୁମକୁ ମୁଁ ତୁମର ମାଆଙ୍କ ନିକଟରେ ଛାଡ଼ି ଆସେଁ । ସୈନିକ ମାନଙ୍କୁ ଚାହିଁ କହିଲେ, ମୋର ଫେରିବା ଯାଏ ତୁମେମାନେ ଏଠାରେ ଅପେକ୍ଷା କରି ରହିବ ।

ବାହାରକୁ ଆସି ଦେଖିଲୁ, ଝଡ଼ବର୍ଷାର ବିରାମ ନାହିଁ । ମୁଁ ତାଙ୍କର ହାତଧରି ପଛେ ପଛେ ଚାଲିଥାଏଁ । ନଈକୂଳ ପାରି ହୋଇ ଆମଘରର ଅତି ନିକଟକୁ ଆସିଲୁ । ମନରେ ସାହସ ଆସିଲା । ତାଙ୍କର ହାତଟିକୁ ଦୁଇ ହାତରେ ଚିପିଧରି କହିଲି, ଏଇ, ଆଗରେ ଆମର ଘର ।

ଗୋଟିଏ କୋଠରୀରେ ବିଜୟ ମଲ୍ଲିକଙ୍କର ଶୋଇବାର ବ୍ୟବସ୍ଥା କରା ହୋଇଥିଲା । ପଦାରୁ ଆସି ତାଙ୍କୁ ଦେଖିବାକୁ ମୋର ଇଚ୍ଛା ହେଲା । ଆହା, କେଡ଼େ ଉପକାରୀ ସୁପୁରୁଷ । କାଳେ ତାଙ୍କର କିଛି ଅସୁବିଧା ହେବ !

ମୁଁ ତାଙ୍କ କବାଟ ପାଖକୁ ଗଲି । କବାଟ ମୁକୁଳା ଥିଲା କିନ୍ତୁ ଭିତରକୁ ଯିବାକୁ ମୋର ସାହସ ହେଲାନାହିଁ, କାଳେ କିଏ ଦେଖିବ । ଭୟାକୁଳ ଏବଂ ସନ୍ଦେହ ଚକ୍ଷୁରେ ଚାରିଆଡ଼କୁ ଚାହିଁଲି । କେହି ନାହିଁ । ହୃଦୟର ସ୍ପନ୍ଦନର ବେଗ ବଢ଼ିବାକୁ ଲାଗିଲା । ଦେହ ହାତ ଥରି ଉଠିଲା । ତଥାପି ବାପ, ପ୍ରଲୋଭନ ସମ୍ଭାଳି ପାରିଲି ନାହିଁ । ଅଳ୍ପ ଅଳ୍ପ ଧରି ଭିତରକୁ ଗଲି । ସେ ନିଶ୍ଚିନ୍ତ ହୋଇ ଶୋଇଛନ୍ତି । ତାଙ୍କର ସୁନ୍ଦର ମୁହଁଟିରେ ମୋର ଆଖି ଲାଗି ରହିଲା । ମୋର ପ୍ରାଣଟା ତାଙ୍କର ଆଡ଼କୁ ଟାଣିହୋଇ ଆସିଲା । ବାପ, ଯୁବକ ଯୁବତୀର ପ୍ରାଣରେ ଯେତେବେଳେ ମୋହ ଆସି ଆସନ ପାତେ, ସେମାନେ ବାହ୍ୟ ଜ୍ଞାନ ଶୂନ୍ୟ ହୋଇ ପଡ଼ନ୍ତି । ବିଶ୍ବଟା ତାଙ୍କୁ ଶୂନ୍ୟ ଦେଖାଯାଏ । ନିଜକୁ ମଧ୍ୟ ନିଜେ ପାଶୋରି ପକାଇ ନିଜର ସତ୍ତା ଅନ୍ୟର ହୃଦୟରେ ଉପଲବ୍ଧି କରନ୍ତି ।

ହୃଦୟର ଅଦମ୍ୟ ପିପାସାକୁ ଦମନ କରି ଫେରି ଆସି ପାରିଲି ନାହିଁ । ଇଚ୍ଛା ହେଲା, ତାଙ୍କର କପାଳରେ ମୁହଁ ଲଗାଇବି । ଭୟ ହେଲା, ସେ ଅପରିଚିତ, ଯଦି ନିଦ ଭାଙ୍ଗିଯାଏ ମୋତେ କଣ ମନେ କରିବେ ? ତାଙ୍କର ନିଦ୍ରାରେ ବ୍ୟାଘାତ ଆଣିବାକୁ ମୋର ବା କି ଅଧିକାର ଅଛି ? ନାଁ, ଫେରିଯିବି । କିନ୍ତୁ ଫେରି ପାରିଲି ନାହିଁ । କେଜାଣି କିପରି ଧୀରେ ଧୀରେ ଡାହାଣ ହାତଟି ନେଇ ତାଙ୍କର କପାଳ ଉପରେ ରଖିଲି ।

ସେ ଚମକି ଚାହିଁଲେ । ଉଠି ବସି ମୋର ହାତଟିକୁ ଧରି ଟିକିଏ ବିସ୍ମିତ ହୋଇ ପଚାରିଲେ, କଅଣ ଚାହୁଁଛ ଜୟନ୍ତୀ ?

ମୋର ଅନ୍ତରାତ୍ମା ଥରି ଉଠିଲା । ସେ ଯେ ଚେଇଁ ରହିଛନ୍ତି, ଶୋଇ ନାହାନ୍ତି । କଅଣ ମନେ କରୁଥିବେ । ମୋର ଦେହ ଝାଳରେ ବୁଡ଼ିଗଲା । ମୁଁ ରହି ରହି କହିଲି, ମୋର ଭୟ ହେଲା, ହୁଏତ ମୋ ପାଇଁ ବର୍ଷା ପାଣିରେ ଭିଜି ଆପଣଙ୍କର ଦେହ ଅସୁସ୍ଥ ଥିବ । ଆପଣ ଶୋଇଛନ୍ତି ଜାଣି, ଦେହର ଉତ୍ତାପ ପରୀକ୍ଷା କରିବାକୁ ଆସିଥିଲି ।

ବିଜୟ ମୋର ଦୁଇ ଆଖିକି ଚାହିଁ ହସିଲେ । ବାପ, ସେ ହସ ଭିତରେ କଅଣ ଲୁଚି ରହିଥିଲା କେଜାଣି, ଲାଜରେ ମୁଁ ଏକାଥରେ ମଳିଙ୍କପରି ହୋଇ ରହିଲି । ମୁହଁକୁ ଚାହିଁବାକୁ ମୋର ଆଉ ସାହସ ହେଲାନାହିଁ । ତଳକୁ ଚାହିଁଲି । ଦୀପ ଧରିଥିବା ହାତଟି ଏପରି ଭାବରେ ଥରିବାକୁ ଲାଗିଲା ଯେ କାଳେ ପଡ଼ିଯିବ ବୋଲି ମୁଁ ତାକୁ ଖଟ ଖୁରା ଉପରେ ରଖିଦେଲି । ଭାବିଲି, ଛି, ମୁଁ କେଡ଼େ ଅନ୍ୟାୟ କରିଛି ।

ବଜଯ୍ନମଲ୍ଲ ପୂର୍ବପରି ମୋର ହାତ ପାପୁଲି ଧରି ମୋର ମୁହଁକୁ ସହାସ୍ୟ ବଦନରେ ଚାହିଁ କହିଲେ, ଜୟନ୍ତ, ବରଂ ତୁମେ ଅସୁସ୍ଥ ଅଛ । ତମର ହାତଟି ଗରମ ଲାଗୁଛି ନେ । ତମ ବୋଉ କାହାନ୍ତି ?

ସେ ଶୋଇବାକୁ ଗଲାଣି ।

ଝଡ଼ ବର୍ଷା କଣ କମିନାହିଁ ? ମୋତେ ବର୍ତ୍ତମାନ ଫେରିଯିବାକୁ ହେବ ।

ଝଡ଼ ବର୍ଷାତ କମିନାହିଁ ।

ମୁଁ ଆଉ ରହିପାରିବ ନାହିଁ ଜୟନ୍ତ, ମୋତେ କର୍ତ୍ତବ୍ୟ ଡାକ ଦେଲାଣି ।

ଆଉ କଅଣ କେବେ ଦେଖାହେବ ନାହିଁ ?

ହୁଏତ ହୋଇ ନ ପାରେ ।

ତେବେ କଅଣ ଏହି ଗୋଟିଏ ରାତିର ଘଟଣା, ଏକମାତ୍ର ସ୍ମୃତି, ଜୀବନର ସମ୍ବଲ ହେବ ମୋର ?

ମୁଁ କଅଣ କହିଲି ନିଜେ ମୁଁ ମଧ୍ୟ ବୁଝିପାରିଲି ନାହିଁ । ମୋର ଆଖି କୋଣରୁ ଲୁହଧାର ଝରି ପଡ଼ିଲା । ସେ ଲକ୍ଷ୍ୟକରି ପାରିଛନ୍ତି । ତାଙ୍କର ମୁହଁରେ ହର୍ଷ ଓ ବିସ୍ମୟର ଭାବ ଫୁଟିଉଠିଲା ।

ସେ ମୋର ଦୁଇହାତକୁ ତାଙ୍କର ଦୁଇହାତରେ ଧରି କହିଲେ, ଜୟନ୍ତ ! ଆଉ କଣ କହିବାକୁ ବସିଥିଲେ ସତେକି କଥାଗୁଡ଼ାକ ଟୋକି ନେଲେ । ମୁଁ ଉତ୍ତର ନ ଦେଇ ମୌନ ରହିଲି ।

ସେ ପୁଣି କହିଲେ, ଜୟନ୍ତ, ମୋତେ କଅଣ ଆଉଥରେ ଅତିଥିରୂପେ ପାଇବାକୁ ତୁମେ ଇଚ୍ଛାକର ? ମୋର ଏତେ ଯତ୍ନ ନେଇ ସୁଦ୍ଧା କଣ ତେମେ ମନେ କରୁଛ ତମର କୃତଜ୍ଞତା ତମେ ସୁଝାଇ ପାରିନାହଁ ? କିନ୍ତୁ, ଏତେ କୃତଜ୍ଞ ହେଉଛ କାହିଁକି ତୁମେ ? ମୁଁ କେବଳ ମୋର କର୍ତ୍ତବ୍ୟ କରିଛି ।

କେଜାଣି କପରି କହି ପକାଇଲି, ଥରେ ନୁହେଁ, ତୁମକୁ ଅତିଥି ରୂପେ ବହୁବାର ପାଇବାକୁ ବାସନା କରିଥିଲି । ମୁଁ ଯେ ଆମରଣ ତମର ଋଣ ସୁଝାଇ ପାରିବ ନାହିଁ । ତୁମେ ମୋର ଜୀବନ ଓ ମାନ ମହତ୍ତ୍ୱ ରକ୍ଷା କରିଛ ।

ସେ ଚିନ୍ତାମଗ୍ନ ହେଲେ । ମୋର ଅଶ୍ରୁସିକ୍ତ ମୁଖକୁ ଚାହିଁ ସେ କହିଲେ, ତେମେ ଭାବନା କରନା ଜୟନ୍ତ, ତମର କୃତଜ୍ଞତା ସୁଝାଇବାକୁ ମୁଁ ତୁମକୁ ସୁବିଧା ଦେବାକୁ ଅବଶ୍ୟ ଚେଷ୍ଟା କରିବ । ତୁମର ଦେହ ଅସୁସ୍ଥ, ତୁମେ ବିଶ୍ରାମ ନେବ ଯାଅ । ମୁଁ ଦୁଃଖିତ ହେଲି କି ସୁଖୀ ହେଲି କହିପାରିବ ନାହିଁ । ତାଙ୍କର କଥା ମାନି ନିଜର କୋଠରୀକୁ ଫେରି ଆସିଲି । ବିଛଣା ଉପରେ ପଡ଼ି ପୁଣି ନାନାପ୍ରକାର ଚିନ୍ତା କରୁ କରୁ କେତେବେଳେ ନିଦ ହୋଇଗଲା ଜାଣି ପାରିଲି ନାହିଁ ।

ଉଠି ଦେଖିଲି, ଦିନ ପହରେ ହେଲାଣି । ଆକାଶରୁ ମେଘ ମାଳା ଉଭେଇ ଗଲାଣି । ଝଡ଼ବର୍ଷା ଆଉ ନାହିଁ । ବୋଉ ମୋର ମୁଣ୍ଡ ପାଖରେ ବସିଛି ନୀରବରେ । ମୁଁ ଉଠିବସି ମନେ ମନେ ଯାହାଙ୍କୁ ଖୋଜୁଥିଲି ତାଙ୍କୁ ନ ଦେଖି ବ୍ୟସ୍ତହୋଇ ବୋଉକୁ ପଚାରିଲି, ବିଜୟମଲ୍ଲ କାହାନ୍ତି ବୋଉ ?

ବୋଉ କହିଲା, ସେ ରାତି ନ ପାହୁଣୁ ଚାଲିଗଲେଣି ମା ।

ମୋତେ ନ କହି ଚାଲିଗଲେ ?

ମୁଁ ତତେ ଉଠାଇବାକୁ ବସିଥିଲି । ସେ ମନାକରି କହିଲେ, ଉଠାଅ ନାହିଁ ।

ଆଉ କେବେ ଆସିବେ, କାହିଁ ଯାଇଛନ୍ତି ?

ସେ କଥାତ ମୁଁ ତାଙ୍କୁ ପଚାରି ନାହିଁ ।

ମୋର ମନରେ ଦୁଃଖ ହେଲା, ସେ ଠକି ଦେଇ ଚାଲିଗଲେ ! ଆଖିରେ ଲୁହ ଛଳ ଛଳ ହୋଇ ଆସିଲା । ବୋଉ କଅଣ ସନ୍ଦେହ କରି କହିଲା, ଅତିଥି ସେ, ଆସିଥିଲେ ଚାଲିଗଲେ ସେଥିପାଇଁ ଦୁଃଖ କାହିଁକି ?

ମୁଁ କହିଲି, କିଛି ନାହିଁ ମା, ସେ ଆମର କିଏ କି ତାଙ୍କ ପାଇଁ ମନରେ ଦୁଃଖ ହେବ ?

ମୋ କଥାରେ ବୋଉର ମନରୁ ସନ୍ଦେହ ଦୂର ହେବା ପରିବର୍ତ୍ତେ ଯେପରି ଘନୀଭୂତ ହେଲା ।

ଦୁଇ ତିନି ଦିନ ପରେ ମୋର ଦେହ ସମ୍ପୂର୍ଣ୍ଣ ଭଲ ହୋଇଗଲା ।

ଏ ଭିତରେ ଅର୍ଜୁନଭାଇ ଥରେ ମୋତେ ଦେଖିବାକୁ ଆସିଥିଲେ । ସେ ଆଜକାଲି ସମ୍ପୂର୍ଣ୍ଣ ସନ୍ନ୍ୟାସୀ ହୋଇ ଗଲେଣି । ଖାଲି ଭେକ ନେବାଟା ବାକି ଅଛି । ଜଣେ ସଦ୍‌ଗୁରୁର ସନ୍ଧାନରେ ଅଛନ୍ତି ।

ମୋ ମୁହଁରୁ ସେ ରାତିର ଘଟଣା ଗୁଡ଼ିକ ଶୁଣି ଟିକିଏ ଚକିତ ହୋଇ କହିଲେ, କିଏ, ବିଜୟମଲ୍ଲ ! ସେ ତ ଗଜପତି ମହାରାଜା ପ୍ରତାପ ନରସିଂହ ଦେବଙ୍କର ସେନାପତି । ବଡ଼ ଭାଗ୍ୟବାନ ସେ ଜୟନ୍ତ, ରାଜାଙ୍କର ସବୁ ସ୍ନେହର ଅଧିକାରୀ ସେ ।

ମୁଁ କହିଲି, ସେ ଆଉଥରେ ଦର୍ଶନ ଦେବାକୁ ପ୍ରତିଶ୍ରୁତି ଦେଇଛନ୍ତି ।

ଅର୍ଜୁନଭାଇ ପରିହାସ କରି କହିଲେ, କଳିଙ୍ଗାଧିପତିଙ୍କ ସେନାପତି ସେ, ଗଙ୍ଗାରୁ ଗୋଦାବରୀ ଯାଏ ପାଞ୍ଚଶ କୋଶ ରାଜ୍ୟର ଶାନ୍ତି ଶୃଙ୍ଖଳା ରକ୍ଷାର ଦାୟିତ୍ୱ ତାଙ୍କର ଉପରେ । ଆମ ରାଜାଙ୍କୁ ଦୁର୍ବୁଦ୍ଧି ଘୋଟିଲା ବୋଲି ବଜର୍ଦ୍ଧ ମଲ୍ଲଙ୍କର ପାଦ ପଡ଼ିଲା ଏ ଭୂଇଁରେ, ପୁଣି ତୁମର କୁଡ଼ିଆରେ । ସେ ଆକାଶର ଚନ୍ଦ୍ର ଲୋ ଜୟନ୍ତୀ, ତୁ ତ ବାମନ ।

ଅର୍ଜୁନ ଭାଇ ନୀରବ ହେଲେ । ମୁଁ ଉତ୍ତର ଦେଲି ନାହିଁ ।

ପରଦିନ ଚର ଆସି ଖବର ଦେଲା, ଗଜପତିଙ୍କର ସୈନିକମାନେ ଦେଶ ସିପାହୀ ମାନଙ୍କୁ ବ୍ୟତିବ୍ୟସ୍ତ କରି ପକାଇଲେଣି । ଅଧିକାଂଶ ତ ଜୀବନ ହରାଇଲେଣି, ଯେଉଁମାନେ ଅଛନ୍ତି ସେମାନେ ମଧ୍ୟ ଆତ୍ମରକ୍ଷା କରିବାକୁ ମନସ୍ଥ କଲେଣି । ଏହା ଦେଖି ରାଜା ନିଜେ ଆତ୍ମସମର୍ପଣ କରିବାକୁ ଇଚ୍ଛା କରିଥିଲେ, କିନ୍ତୁ ସରଦାର ରାଜାଙ୍କୁ ବୁଝାଇ କହିଲେ, ବିଜିତ ଦେଶର ବିଜିତ ରାଜାର ଜୀବନ ଅପେକ୍ଷା ମରଣ ବାଞ୍ଛନୀୟ । ସରଦାରଙ୍କର କଥା ଶୁଣି ରାଜା ଆତ୍ମସମର୍ପଣ ନ କରି ପୁଣି ଯୁଦ୍ଧ ଚଳାଇଛନ୍ତି ।

ଚରର କଥା ଶୁଣି ପିତା ଯେ ଜୀବିତ ଅଛନ୍ତି ଏହା ଆମେ ବୁଝି ପାରିଲୁ । ବୋଉର ଆନନ୍ଦ ଦେଖି ମୁଁ ମଧ୍ୟ ଆନନ୍ଦିତ ହେଲି । ବଜର୍ଦ୍ଧ ଯେ ଫେରି ଆସିବେ ନାହିଁ ଏକଥା ମୁଁ ଭଲକରି ବୁଝି ପାରିଥିଲେ ମଧ୍ୟ ଅବୋଧ ମନଟା କେଜାଣି କାହିଁକି ପୁଣି ଆଶା ବାନ୍ଧି ବସେ । ନିରୁଦ୍ଦିଷ୍ଟ ଭାବରେ ଏକାକିନୀ ନଦୀକୂଳରେ କି ପାହାଡ଼ ଉପରେ ବୁଲିଲାବେଳେ ଅବୋଧ ଆଖି ଦୁଇଟା କେଜାଣି କାହିଁକି କାହାର ଅନ୍ୱେଷଣ କରେ ସୁଦୂର ଦିଗ୍‌ବଳୟ କୋଳରେ ।

ବୋଉ ମନା କରେ, ତାର ମନା ନ ମାନି କେବଳ ଗୋଟିଏ ଆଶାର ସଙ୍କେତରେ ପରିଚାଳିତ ହୋଇ ମୁଁ ପ୍ରତିଦିନ ବୁଲିବାକୁ ଯାଏ । ହତାଶ ହୋଇ ନିତି ଘରକୁ ଫେରେ । ବେଳେ ବେଳେ ଫେରୁ ଫେରୁ ରାତି ହୋଇଯାଏ । ମନରେ ଉଦେ ଆଶା, ପୁଣି ସେ ଦିନର ଶୁଭ ସନ୍ଧ୍ୟାଟି ଫେରି ଆସିବ ପରା । ଏଡ଼େ ବୀର, ଏଡ଼େ ଉଦାର, ମହତ ସୁପୁରୁଷଙ୍କର ଆଉ ଥରେ ଦର୍ଶନ ମିଳିବ ପରା ।

ଦିନେ ସେ ଆସିଲେ, ବେଳ ବୁଡ଼ି ଆସୁଛି, ହଠାତ୍ ଦେଖା ହେଲା ପର୍ବତର ଠିକ୍ ତଳେ । ସ୍ୱର୍ଗର ଚନ୍ଦ୍ର ପାଇଲା ପରି ତାଙ୍କୁ ମୁଁ ଅଶ୍ୱପୃଷ୍ଠରେ ଦେଖି ପାଟିକରି ଉଠିଲି । ମୋତେ ଦେଖି ସେ ଘୋଡ଼ାରୁ ଓହ୍ଲାଇ ପଶ୍ଚିକୁ ଗଛରେ ବାନ୍ଧିଲେ ।

ମୁଁ ପ୍ରଣାମ କରି କହିଲି, ଆପଣ ତା ହେଲେ ଆପଣଙ୍କର ବାକ୍ୟ ଭୁଲି ନାହାନ୍ତି ? ନଈ ନଈ ମୁଁ ବୁଲି ଆସେ, ନବୀନ ହୋଇ ଫେରେ ।

ସେ କହିଲେ, ଜୀବନଟା ତ ଆଶା ନିରାଶାର ଖେଳ । ସେଥିକି ଚିନ୍ତା କିଣ ? ଦେହ ଭଲ ଅଛି ତ ? କହୁଁ କହୁଁ ସେ ପାଗଳବାବାଙ୍କର କୁଡ଼ିଆ ଆଡ଼େ ଚାହିଁଲେ ।

ମୁଁ ତାଙ୍କୁ ଅନୁସରଣ କରି କହିଲି ହଁ, ଦେହ ଭଲ ଅଛି ।

ପାଗଳବାବାଙ୍କର କୁଡ଼ିଆ ପାଖକୁ ଯାଇ ଦେଖିଲି, ଘରଟି ସବୁଦିନ ପରି ମୁକୁଳା ପଡ଼ିଛି, କେହି ନାହାଁନ୍ତି । ଘର ମଝିରେ ପାଉଁଶ, ଅଙ୍ଗାର ଓ ଦରପୋଡ଼ା କାଠ ଗଦା ହୋଇଛି । ହାଣ୍ଡି ମାଠିଆ କେଇଟି ଭାଙ୍ଗି ଛିନ୍ନଛତର ହୋଇ ପଡ଼ିଛି ।

ବିଜୟ ମୋତେ ଚାହିଁ କହିଲେ, ସେ ଦିନ ଯଦି ଠିକ୍ ବେଳରେ ଆମେ ନ ଥାନ୍ତୁ ତ— । ବାକ୍ୟ ଅଧା ରଖିଲେ ।

ଉଲ୍ଲସିତ ହୋଇ କହିଲି, ଜୟନ୍ତୀକୁ ଆଉ କେହି ଏ ଜଡ଼ ଜଗତରେ ଦେଖନ୍ତେ ନାହିଁ । ସେଥିପାଇଁ ଆପଣଙ୍କ ନିକଟରେ ମୁଁ ଚିର କୃତଜ୍ଞ ଓ ଋଣୀ ।

ବିଜୟ ମୋର ହାତ ଧରି କହିଲେ, ବାରମ୍ବାର ସେହି ପୁରୁଣା କଥା କହୁଛ କାହିଁକି ଜୟନ୍ତୀ, ସର୍ବଶକ୍ତିମାନ ପରମେଶ୍ୱରଙ୍କ ବ୍ୟତୀତ ମଣିଷ କାହାରି ପାଖରେ କୃତଜ୍ଞ ନୁହେଁ । ସବୁ ଆପଦ ବିପଦରୁ ଉଦ୍ଧାର କରନ୍ତି ସେଇ ଭଗବାନ । ସେ ନିଜେ ଆସି ବିପନ୍ନ ଆଗରେ ଉଭା ହୁଅନ୍ତି ।

ମୁଁ ତାଙ୍କ ତୁଣ୍ଡରୁ କଥା ଛଡ଼ାଇ ନେଇ କହିଲି, ଏ କ୍ଷେତ୍ରରେ ତୁମେ ହିଁ ମୋର ଭଗବାନ୍ ସ୍ୱରୂପ । ମୁଁ ତାଙ୍କ ମୁହଁକୁ ଚାହିଁ ହସିଦେଲି । ତାଙ୍କର ଦୁଇ ଆଖିରେ ଆଗ୍ରହ ଓ ପିପାସାର ମଧୁର ଆଭା ଉପଲବ୍ଧି କଲି ଯେପରି ।

ବିଜୟ ମୋର ଦୁଇହାତ ଧରି କହିଲେ, ଭକ୍ତ ଭଗବାନଙ୍କର ଆରାଧନା କଲା ପରି ତୁମେ ମୋର ଆରାଧନା କରି ଋଣ ସୁଝାଇବାକୁ ମନ କରୁଛ ଜୟନ୍ତୀ ? ତୁମେ ସୁନ୍ଦରୀ, ବୁଦ୍ଧିମତୀ ! ଏଇ ବନ ଭୂମିର ଗୋଟିଏ ହାସ୍ୟମୟ ସୁନ୍ଦର ମନ ମୁଗ୍ଧକର ସୁବାସିତ ଚଳନ୍ତି ସୁମନ ପରି ।

ତାଙ୍କର କଥା ଶୁଣି ଓ ପରଶ ପାଇ ମୋର ସାରା ଶରୀର କି ଏକ ଅକଥନୀୟ ପୁଲକରେ ଥରି ଉଠିଲା । ରକତର ପ୍ରବାହ ସତେକି ଚଞ୍ଚଳ ହେଲା । କହିଲି ଥରିଲା କଣ୍ଠରେ, ମୁଁ ଯଦି କୁସୁମଟିଏ ତ ଆପଣ ଦେବତା, ପଦତଳେ ନିଜକୁ ଉତ୍ସର୍ଗ କରୁଛି ।

ନିଜ ଅଜାଣତରେ ବିଜୟ ମଲ୍ଲଙ୍କ ପାଦତଳେ ମୁଣ୍ଡ ଲଗାଇଲି ।

ସେ ମୋତେ ତଳୁ ଉଠାଇ ଠିଆକଲେ । କହିଲେ ତମପରି ଫୁଲର ସ୍ଥାନ ଦେବତାର ମସ୍ତକରେ ସିନା, ପାଦରେ ନୁହେଁ ।

ଅନୁଚର ହୋଇ ମୁଁ କହିଲି, ତମର ଆରାଧନା କରିବାକୁ ମୁଁ ଇଚ୍ଛାକରେ କିନ୍ତୁ ଏତିକି ମାଗୁଛି ଆଜୀବନ ସେ ଅଧିକାରରୁ ଯେପରି ବଞ୍ଚିତ ନ ହୁଏ ।

କିଛି କିଛି କଣ କହି ପକାଇଲି ମୁଁ ଜାଣିପାରିଲି ନାହିଁ । ଭୟ ଓ ସଂକୋଚରେ ହାତ ଦୁଇଟି ଟାଣି ଆଣି ଅପରାଧିନୀ ପରି ତଳକୁ ଚାହିଁଲି ।

ବିଜୟ ଟିକିଏ ଚିନ୍ତା କଲେ । କ'ଣ ଭାବି କେଜାଣି ମୋର ମୁଣ୍ଡ ଉପରେ ଡାହାଣ ହାତଟି ରଖି ଥରିଲା କଣ୍ଠରେ କହିଲେ, ସତେ, ଦେବତା ନିକଟରେ ଭକ୍ତର ଅଦେୟ କିଛି ନାହିଁ ।

ମୋର ଇଚ୍ଛା ହେଉଥିଲା କହି ପକାଇବି, କିଛି ନାହିଁ, କିଛି ନାହିଁ, କିନ୍ତୁ, ଭୟରେ ଲାଜରେ ମୋର ପାଟି ଫିଟିଲା ନାହିଁ । ଦେହ ସାରା ଥରି ଉଠିଲା ।

ସେ ମୋର କଟିକୁ ତାଙ୍କର ସୁଦୀର୍ଘ ବାହୁଦ୍ୱାରା ବେଷ୍ଟନ କରି ପଚାରିଲେ, ଜୟନ୍ତୀ, ସୁନ୍ଦରୀ କହ— ।

ତାଙ୍କର କଣ୍ଠସ୍ୱର ଥରି ଉଠୁଥିଲା । ଏତିକି ମାତ୍ର ଜାଣେ ମୋ'ଠି ଉତ୍ତର ଦେବାର ଶକ୍ତି ନ ଥିଲା । ସତେ କି ନିର୍ଜୀବ ପିଣ୍ଡଟା ମୋ'ର ଆଶ୍ରା ଲୋଡ଼ିଲା ପରି କାହାର ବକ୍ଷ ଉପରେ ଢଳି ପଡ଼ିଲା । କେଜାଣି କାହିଁକି ଆପେ ଆପେ ମୋର ଆଖିପତା ବୁଜି ହୋଇ ପଡ଼ିଲା । କାହା ହୃଦୟର ଘନ ସ୍ପନ୍ଦନ ଶୁଣିଲି । ମୋ'ର ତୃଷିତ ଗଣ୍ଡରେ କାହାର ଚୁମ୍ବନର ଉଷ୍ଣତା ଅନୁଭବ କଲି ବାରମ୍ବାର । ମନ ହେଲା, ଆହା, ସେହି ବିରାଟ ସ୍ପନ୍ଦିତ ବକ୍ଷ ଉପରେ ଅନନ୍ତ କାଳ ପାଇଁ ଯଦି ଆଶ୍ରୟ ପାଇ ପାରନ୍ତି ।

ବେଳ ବୁଡ଼ି ଗଲାଣି ତଥାପି ଦିନର ଆଲୁଅ ଲିଭି ନାହିଁ । ତାଙ୍କର ବାହୁ ବନ୍ଧନରୁ ମୁକ୍ତହୋଇ ମୁଁ ଲାଜରେ ଅଡ଼ହୋଇ ଠିଆ ହୋଇଛି । ବିଜୟ କହିଲେ, ଜୟନ୍ତୀ, ମୋତେ ବିଦାୟ ଦିଅ ।

ମୁଁ କିଛି କହିବା ଆଗରୁ ପାଗଳବାବା ଓ ଅର୍ଜୁନଭାଇ ସେଠାରେ ଉପସ୍ଥିତ ହେଲେ । ସେମାନଙ୍କୁ ଦେଖି ସତେକି ଭୟରେ ମୁଁ ଅଜ୍ଞାନ ହୋଇ ପଡ଼ିବି । ମୁଁ ଅର୍ଜୁନ ଭାଇଙ୍କୁ ଚାହିଁଲି ଆକୁଳ ଚକ୍ଷୁରେ । ଦେଖିଲି, କେଜାଣି କାହିଁକି ତାଙ୍କର ଆଖି ଦୁଇଟି ଲୁହରେ ଢଳ ଢଳ ହେଉଛି । ସେ ଲୋତକର ଅର୍ଥ ମୁଁ ଅନୁମାନ କରି ପାରିଲି ନାହିଁ ।

ପାଗଳବାବା ଅର୍ଜୁନ ଭାଇର ହାତ ଧରି କୁଡ଼ିଆରୁ ବାହାରି ଗଲେ । ଖଟଣ୍ଡୁଦ୍ୱାର ମାରି ଅର୍ଜୁନ ଭାଇ ଅଶ୍ରୁଭରା ଚକ୍ଷୁରେ ଫେରି ଚାହିଁଥିଲେ ଥରେ । ତା'ପରେ ଗଛ ଉହାଡ଼ରେ ଜଙ୍ଗଲ ଭିତରେ ଲୁଚିଗଲେ ।

ବିଜୟ କହିଲେ, ମୋତେ ବିଦାୟ ଦିଅ ।

ମୁଁ କହିଲି, ବୋଉ ସଙ୍ଗେ ଥରେ ଦେଖାକରି ଯିବାକୁ ହେବ ।

ସେ ମଙ୍ଗିଲେ ।

ବୋଉ ଅତି ଆଗ୍ରହ ଓ ଆଦରରେ ତାଙ୍କର ଅଭ୍ୟର୍ଥନା କଲା । ବିଜୟ ସେଦିନ ଆମର ଆତିଥ୍ୟ ଗ୍ରହଣ କଲେ ।

ବୋଉ ଯେତେବେଳଯାଏ ବିଜୟ ମଲ୍ଲଙ୍କ ପାଖରେ ବସି ଗଳ୍ପ କରୁଥାଏ, ମୁଁ ଅନ୍ୟପଟେ ବସି ଅର୍ଜୁନ ଭାଇ ପ୍ରଦତ୍ତ ଖଣ୍ଡିଏ ପୋଥି ପଢ଼ିବାକୁ ଚେଷ୍ଟା କରୁଥାଏ । ଯେତେ ପଢ଼ିଲେ ସୁଦ୍ଧା ମନ ସେଥିରେ ପଶେ ନାହିଁ । କାନ ଦୁଇଟି ତାଙ୍କର କଥାଭାଷା ଶୁଣିବାକୁ ସତର୍କ ଥାଏ, ଆଉ ମନଟା, କେତେ ରଙ୍ଗୀନ ଛବି ଦେଖୁଥାଏ, ଭବିଷ୍ୟତର ଅସୀମ ଚିନ୍ତା ରାଜ୍ୟରେ । ସେମାନଙ୍କ କଥାଭାଷାରେ ଯୋଗ ଦେବାକୁ ବୋଉ ମତେ ଡାକ ପକାଉଛି । ଯିବାକୁ ଇଚ୍ଛା ହେଉଥିଲେ ମଧ୍ୟ ଲାଜମାଡ଼େ । ଯାଉଛି, ଯାଉଛି, କହି ଯାଇପାରେ ନାହିଁ ।

ବୋଉ ତାର ଗଳ୍ପ ଶେଷକରି ଶୋଇବାକୁ ଚାଲିଗଲା । ଘରର ଘରଣୀମାନେ ବାହାର ଖଞ୍ଜାକୁ ଗଲେ । ମୁଁ ସତର୍କତାର ସହିତ ଧୀରେ ଧୀରେ ତାଙ୍କ ପାଖକୁ ଗଲି । ସେ ଆଗ୍ରହରେ ମୋ ଆଗମନକୁ ଅନାଇଁ ରହିଥିଲେ । କେତେ ସୁଖ ଦୁଃଖ, କେତେ ଅତୀତ ଭବିଷ୍ୟତ୍ ବିଷୟରେ କଥାଭାଷା ହେଲୁ ।

ରାତି ଶେଷ ହୋଇ ଆସିଲା, ଆଖି କଷା ପଡ଼ୁନାହିଁ । ବିଦାୟ ନେଇ ମୋର ନିଜ କୋଠରୀକୁ ଫେରି ଆସିବା ପୂର୍ବରୁ ପଚାରିଲି, ତୁମେ ଆଉ କେବେ ଆସିବ ବିଜୟ ? ମୋ'ର ଆଖି ଛଳ ଛଳ ହେଲା । କହିଲି, ମୋତେ ଭୁଲିଯିବ ନାହିଁ ତ ମୋର ବନ ଦେବତା ?

ସେ ହସି କହିଲେ, ଭୁଲିଯିବ ମୋର ବନଲକ୍ଷ୍ମୀକୁ ? ତେବେତ ନିଜକୁ ଭୁଲିବାକୁ ପଡ଼ିବ ଅଗ । ଅବସର ପଡ଼ିଲେ ଅବଶ୍ୟ ତୁମ ସଙ୍ଗେ ଦେଖା କରିବି ।

ମୁଁ ଖୁସିହୋଇ ଶୋଇବାକୁ ଫେରିଲି ।

ଏତିକି କହି ଜୟନ୍ତ ଜୟନ୍ତର ମୁଣ୍ଡ ଉପରେ ହାତରଖି କହିଲେ, ବାପ, ଆଜି ଆଉ ଅଧିକ କିଛି ତୋ ପାଖରେ କହି ପାରୁନାହିଁ । ଅତୀତର ସୁଖ ଦୁଃଖର କଥା କହୁଣୁ ଛାତି ଭିତର ଘାଣ୍ଟି ଚକଟି ହେଉଛି । କେତେ ଲୋକଙ୍କ ଉପରେ ରାଗ କରିବାକୁ ମନ ହେଉଛି । ପୁଣି ମନେ ହେଉଛି, ସେହି ସୁଦୂର ଅତୀତର ଗୋଟିଏ ଭ୍ରମ ପାଇଁ ମୁଁ ତ ନିଜେ ଦାୟୀ, ରାଗିବି ବା କାହା ଉପରେ ?

ବାପ, ସବୁ ଘଟଣା ଅନନ୍ତ ସମୟ ସମୁଦ୍ର ଭିତରେ ନିଜର ସତ୍ତା ହଜାଇ ବସେ, କିନ୍ତୁ ମନର ପରଦା ଉପରେ ମଣିଷର ଅନୁଭୂତିର ଚିହ୍ନ ରହିଯାଏ ଆଜୀବନ । ଅରକ୍ଷିତ ଦୁଃଖ ହତାଶର ପ୍ରବଳ ଝଞ୍ଜା ବହେ ହୃଦୟରେ ସ୍ମୃତିର ତରଙ୍ଗ ପଡ଼ି ଉଠି ଧାଏଁ ଅନୁଭୂତିର ଚିହ୍ନକୁ ଧୋଇ ଲିଭାଇ ଦେବାକୁ, କିନ୍ତୁ କରେ କଣ ? ସେହି ଚିହ୍ନ, ସେହି ଦାଗକୁ ଆହୁରି ଗଭୀର କରି ଖୋଳି ଦେଇଯାଏ ।

ଓ ବାପ । ଜୟନ୍ତର ହାତଧରି ଜୟନ୍ତୀ ସବୁ ବ୍ୟଥା ହୃଦୟରେ ଲୁଚାଇ ଫେରି ଆସିଲେ ତାଙ୍କର ଅଶ୍ରୟସ୍ଥଳୀ କୁଟୀରକୁ ।

ପରଦିନ ସଞ୍ଜବେଳେ ସେହି କୁଟୀର ଆଗରେ ବସି ଜୟନ୍ତ ପଚାରିଲା, ମା, ଆଉ କଣ ବିଜୟମଲ୍ଲଙ୍କ ସଙ୍ଗେ ତୋର ଦେଖା ହୋଇ ନାହିଁ ସେହି ଦିନରୁ ?

ଜୟନ୍ତୀ କହିଲେ, ସେତ ଅନେକ ଥର ଆସିଥିଲେ ତାପରେ, ଦେଖାହୁଏ ସେହି ପାଗଳବାବାଙ୍କ କୁଟୀରରେ । ଯେତେବେଳେ ଯୌବନର ଆକର୍ଷଣ, ସୌନ୍ଦର୍ଯ୍ୟର ମୋହ, ମିଳନର ଆକାଙ୍‌କ୍ଷା, ଯୁବକ ଯୁବତୀଙ୍କର ମନକୁ ଘୋଟି ଆସେ, ସେମାନେ ଅନ୍ଧ ହୁଅନ୍ତି, ପାଗଳ ହୁଅନ୍ତି । ପଶୁପରି ବିବେକ ନିର୍ଦ୍ଦିଷ୍ଟ ପଥଭ୍ରଷ୍ଟ, କର୍ତ୍ତବ୍ୟରେ ଅବହେଳା କରି, ବିପଥରେ ଗତିକରନ୍ତି, ଅଥଚ ବିପଥ ବୋଲି ଜାଣି ମଧ୍ୟ ଜାଣନ୍ତି ନାହିଁ, ବୁଝି ମଧ୍ୟ ବୁଝନ୍ତି ନାହିଁ । ବିଜୟମଲ୍ଲ ପ୍ରତ୍ୟହ ମୋ ସଙ୍ଗେ ଦେଖା କରିବାକୁ ଆସନ୍ତି । ମୁଁ ବି ଗୃହକର୍ମ ପରି ତାଙ୍କର ଆସିବା ବାଟକୁ ଚାହିଁ ରହିଥାଏ । ଯେଉଁଦିନ ସେ ଅକସ୍ମାତ୍ ଆସି ନ ପାରନ୍ତି, ମୁଁ ହତାଶ ହୋଇ ଫେରେ । ମନରେ ବାରପ୍ରକାର ଦୁଶ୍ଚିନ୍ତା ଆସେ ।

ଏହିପରି କେତେ ଦିନ ବେଶ୍ ଆନନ୍ଦରେ କଟିଲା ଗୋପନରେ । ମୁଁ ନିତାନ୍ତ ବାଧ୍ୟ କଲେ ସେ ଆମ ଘରକୁ ଆସନ୍ତି । ବୋଉ ସବୁଦିନ ପରି ତାଙ୍କୁ ଆଗ୍ରହରେ ରାତିଟି ଆମଘରେ ରହିବାକୁ ଅନୁରୋଧ କରେ । ସେ ତାର ଆଗ୍ରହ ରକ୍ଷାକରି ଆମ ଘରେ ଅଟକି ଯାଆନ୍ତି । ଦିନେ କେବେ ପ୍ରତିବାଦ କରନ୍ତି ନାହିଁ, କାଳେ ମୋ ମନରେ ଦୁଃଖ ହେବ ।

ବାପ, ମଣିଷର ଜୀବନ, ମନ, ଚଳନ ଉପରେ ଦୁନିଆଁର ସମସ୍ତ ପ୍ରାଣୀଙ୍କର ପ୍ରଭାବ ପଡ଼େ, ସେଇ ସବୁ ପ୍ରଭାବର ପ୍ରବାହରେ ସେ ଭାସି ଭାସି ଯାଏ, କେଉଁଠି ଯାଇ ଲାଗେ ସେ ଜାଣିପାରେ ନାହିଁ । ମୋର ଜୀବନଟି ଏହି ସ୍ୱାଭାବିକ ନିୟମରୁ ବାହାର ନୁହେଁ । ଛୋଟ ବଡ଼ ଓ ଭଲମନ୍ଦ ଘଟଣାର ସମଷ୍ଟିରେ ଯାହାର ଜୀବନ ଇତିହାସର ପ୍ରତ୍ୟେକ ପୃଷ୍ଠା ରଚିତ, ତାର ମନ, ଚରିତ୍ର ଓ ଜୀବନ ଉପରେ ଅନେକ ଲୋକଙ୍କର ପ୍ରଭାବ ପଡ଼ିଛି । ପ୍ରତ୍ୟେକ ଲୋକର କଥା ବା ପ୍ରତ୍ୟେକ ଘଟଣା ଯଦି ମୁଁ କହି ବସେ, ଶୁଣିବାକୁ ତୋର ଧୈର୍ଯ୍ୟଚ୍ୟୁତ ହେବ । ସେଇଥିପାଇଁ ମୋର କର୍ମର ଗତି ଉପରେ ଯେଉଁମାନଙ୍କର ପ୍ରଭାବ ପ୍ରବଳ, କେବଳ ସେହିମାନଙ୍କ ବିଷୟରେହିଁ ମୁଁ କହୁଛି ଓ କହିବାକୁ ବସିଛି ।

ଦିନକର କଥା । ମୋର ଜଣେ ଅତି ଆପଣାର ପିଲାଦିନର ସଙ୍ଗିନୀ ଆମ ଘରକୁ ବୁଲିଆସିଥିଲା । ଦିପହର । ବୋଉ ଶୋଇ ପଡ଼ିଛି । ମୋତେ ନିରୋଳାରେ ସେ ଡରି ଡରି କହିଲା, ଜୟନ୍ତୀ, ମନରେ କିଛି ଭାବିବୁ ନାହିଁତ ? ଯାହା ଭାବି ପଛେ, ମୁଁ କହିବାକୁ ଆସିଛି, ନିଶ୍ଚୟ କହିବି ।

ମୁଁ ହସି ହସି କହିଲି, କଣ କହିବୁ କହୁନୁ, ଏତେ ଡର କାହାକୁ ବା ?

ସେ କହିଲା, ଶୁଣ, ଗାଁ ମାଇପେ ତୋ ନାମରେ ବାର କଥା ଉଠାଇଛନ୍ତି । ଘରେ ଘରେ ତୋର କଥା ପଡ଼ିଛି, ସଭା ବସିଛି । ଛି, ଛି, ସେ ଯେଉଁ କଥାମାନ କହୁଛନ୍ତି ଲୋ, ଶୁଣିଲେ କାନରେ ହାତ ଦେବୁ ।

ପଚାରିଲି, କଅଣ ଶୁଣେ ?

ସେ କହିଲା, ତୁ କୁଆଡ଼େ କେଉଁ ଅଜଣା ଲୋକ ସଙ୍ଗରେ ଏକୁଟିଆ ବଣ ଜଙ୍ଗଲରେ ବୁଲୁଛୁ, ତା ସଙ୍ଗେ ଥଟ୍ଟା ମଜଲି ହେଉଛୁ । ସେ କୁଆଡ଼େ ଆସି ତମ ଘରେ କୁଣିଆଁ ହୋଇ ରହୁଛି, ଏ କଣ ସତ ?

ମୁଁ କହିଲି, ଯଦି ଲୋକେ ଏତେ କଥା ଜାଣନ୍ତି, ତେବେ ସେ ଅପରିଚିତ ବୋଲି ସେମାନେ ଜାଣିଲେ କପରି ?

ଅନୁମାନ । ସେ ଲୋକଟି ଅନ୍ୟ କାହାରି ପରିଚିତ ନୁହେଁ ।

ଯଦି ମୋର ପରିଚିତ ହୋଇଥାଏ ?

ହେଲେ କଣ ହେଲା, ଗୋଟାଏ ପୁରୁଷ ପିଲା ସଙ୍ଗେ ଏପରି ମିଳାମିଶା କରିବା କଣ ଭଲ ? ଆମେତ ଆଉ ପିଲା ହୋଇନୁ ।

ଲୋକେ ଯେଉଁ ଭୟ ଦେଖାଇ ଏ ସବୁ କହୁଛନ୍ତି, ଯଦି ସେ ଭୟ ମୋର ନ ଥାଏ ?

ସେତ ନିଆରା କଥା । ତେବେ, ଭୟ ନ ରହିବ କେମିତି ? ଆମେ ପରା ଅଭିଆଡ଼ୀ ?

ମୁଁ କହିବାକୁ ଯାଉଥିଲି, ଯଦି ମୁଁ ତାଙ୍କୁ ବିବାହ କରିଥାଏଁ ? କଥାକୁ ଚୋରକନେଇ କହିଲି, ଲୋକଙ୍କର ଅଲଣା କଥାରୁ କଣ ମିଳିବ ? ତାପରେ ଏଣୁ ତେଣୁ କହି ତାକୁ ଭୁଲାଇ ଦେଲି । ସେ ବିଦାୟ ନେବା ପରେ ତାର କଥାକୁ ମୁଁ ଭଲକରି ଭାବିଲି, ମୁଁ କଣ ସତେ ଅନ୍ୟାୟ କରୁଛି ? ଯେତେ ଯାହା ଭାବିଲେ ମଧ୍ୟ ମୋର ଭାବନା ଗୁଡ଼ାକ ନିଜ ନିଜ ଭିତରେ କଜିଆ ଆରମ୍ଭ କରିଦେଲେ । ମୁଁ ସିଦ୍ଧାନ୍ତରେ ପହଞ୍ଚି ପାରିଲି ନାହିଁ । ମୋର ନିଦ ହୋଇଗଲା । ସ୍ୱପ୍ନ ଦେଖିଲି, ବିଜୟମଲ୍ଲ ମୋ ପାଖକୁ ଆସି ଦୁଇହାତ ବଢ଼ାଉଛନ୍ତି, ଆଉ ମୁଁ, ତାଙ୍କର ଛାତି ଉପରକୁ ଢଳି ପଡ଼ିବାକୁ ଯାଉଛି ।

ବୋଉ ଦିନେ ଆମର ବୁଢ଼ୀ ଧାଈଟିକୁ କହୁଥିବାର ମୁଁ ଶୁଣିପାରିଲି, ଯଦି ଏଇ ବିଜୟମଲ୍ଲପରି ଜ୍ୱାଇଁ ମୋତେ ମିଳନ୍ତା ! ଯେପରି ସୁନ୍ଦର, ବଳିଷ୍ଠ ରୂପ,

ବୁଦ୍ଧିସୁଦ୍ଧି ସେହିପରି । ପଦେ କଥା ତା ତୁଣ୍ଡରୁ ଶୁଣିଲେ ମୋର ପେଟ ପୂରିଉଠେ । ସତେ, ବିଧାତା ଜୟନ୍ତୀକୁ ଏପରି ଭାଗ୍ୟବତୀ କରିବେ !

ବୋଉର କଥା ଶୁଣି ମୁଁ ଗୌରବ ବୋଧ କଲି । ଯଦି ବୋଉ ଜାଣନ୍ତା ଯେ ସେ ଯାହା ମନରେ ପାଞ୍ଚୁଛି କାର୍ଯ୍ୟରେ ତାହା ପରିଣତ ହୋଇ ସାରିଲାଣି, ତେବେ ସେ ସୁଖୀ ହୁଅନ୍ତା ! କହିବାକୁ ସାହସ ହେଲା ନାହିଁ । ଲଜ୍ଜା ବୋଧ କଲି । ପୁଣି, କହିବି ନାହିଁ ବୋଲି ଯେ ମୋର ଦେବତା ପାଖରେ ମୁଁ ପ୍ରତିଜ୍ଞାବଦ୍ଧ ।

ଏବେ ଭାବୁଛି, ସେଦିନ ସବୁ ସତକଥା ବୋଉ ଆଗରେ ଖୋଲି କହିଥିଲେ ବୋଧହୁଏ ଜୀବନର ଗତି ଅନ୍ୟ ପ୍ରକାର ହୋଇଥାନ୍ତା । ଭବିଷ୍ୟତ ଜାଣିବାର ଶକ୍ତି ଯେବେ ଏ ମଣିଷର ଥାଆନ୍ତା, ତେବେ ଦୁନିଆଁର ଅବସ୍ଥା କଣ ହୁଅନ୍ତା କାହିଁ ହେଉ ନାହିଁ । ସେ ସୁଯୋଗ ମଣିଷର ନାହିଁ । ଦୁନିଆକୁ ଜାଣିବାର ଓ ଚିହ୍ନିବାର ଅଭିଜ୍ଞତା ମଣିଷପିଲା ଜନମରୁ ଲଭି କରେ ନାହିଁ । ଯେଉଁମାନଙ୍କର ସେ ଅଭିଜ୍ଞତା ଅଛି ସେମାନେ ଯଦି ମଣିଷପିଲାଙ୍କୁ ଶିଖାଇ ମଣାଇଁ, ଆକଟ କରି, ଭଲମନ୍ଦ ବୁଝାଇ, ବାଟ ନ ଦେଖାଇବେ, ଭବିଷ୍ୟତର ଭୁଲଭ୍ରାନ୍ତି ଓ ତାର ପରିଣତି ପାଇଁ ସତର୍କ ନ କରାଇବେ ତେବେ ଫଳାଫଳ ଅତି ଦୁଃଖଦାୟକ ଏବଂ ମର୍ମନ୍ତୁଦ ହେବ—ଯେପରି ହୋଇଛି ମୋର । ପିଲାଙ୍କ ପ୍ରତି ସ୍ନେହ ଓ ବିଶ୍ୱାସର ସୀମାଅଛି, ସ୍ୱାଧୀନତା ଦେବାର ପରିଧି ଅଛି । ଯେତିକି ଲୋଡ଼ା ତହିଁରୁ ଅଧିକ ହେଲେ ପରିଣାମ ମଙ୍ଗଳପ୍ରଦ ହୁଏ ନାହିଁ । ମୋ ଜୀବନହିଁ ତାର ଉଦାହରଣ ।

ଗଡ଼ରୁ ଖବର ଆସିଲା, ଗଜପତିଙ୍କ ଲୋକେ ଆମର ସିପାହୀମାନଙ୍କୁ ପରାସ୍ତ କରି ଦୁର୍ଗ ଅଧିକାର କରିଛନ୍ତି । ରାଜା ନିଜେ ଆତ୍ମସମର୍ପଣ କରି ସନ୍ଧି କରିଛନ୍ତି । ଦେଶ ଲୋକଙ୍କ ମନର ଅବସ୍ଥା କହିଲେ ନ ସରେ । ଯୁଦ୍ଧରେତ ଯେତେ ଲୋକ ମରିବାର ମଲେ, ଯେଉଁମାନେ ରହିଲେ, ସେମାନେ ପ୍ରାଣ ବିକଳରେ ଯିଏ ଯୁଆଡ଼େ ପଳାଇଲେ ।

ଏ କଥା ଶୁଣି ମୁଁ ଭାବିଲି, ରାଜା ତ ସନ୍ଧି କଲେ, ତାଙ୍କର ଏହି ଯୁଦ୍ଧରେ କଣ ହେଲା ? ତାଙ୍କର ସ୍ତ୍ରୀ ପିଲା ଆଉ ଅନାଥ ହୋଇ ହତାଶ ହୋଇ ମୁଠିଏ ଭାତ ପାଇଁ ଦାଣ୍ଡରେ ହାଟରେ ବୁଲିବେ ନାହିଁ ? ରାଜାର ଯେଉଁ ଆର୍ଥିକ କ୍ଷତି ହେଲା ସେ କ୍ଷତି ପୂରଣ କରିବ କିଏ କି ? ଆମପରି ଗରିବ ପ୍ରଜାଏ ସିନା !

ଯୁଦ୍ଧ ଶେଷ ହେଲାରୁ ଅଳ୍ପ କେତେଜଣ ସିପାହୀ ଘରକୁ ଫେରି ଆସିଲେ । ଗ୍ରାମର ସ୍ତ୍ରୀ ପିଲାଏ ସେମାନଙ୍କ ନିକଟକୁ ଯାଇ ସ୍ୱାମୀ ପୁତ୍ରଙ୍କର ଖବର ବୁଝି ଆସିଲେ । ବୋଉ ସଙ୍ଗରେ ମୁଁ ମଧ୍ୟ ଯାଇ ବାପା କାହିଁକି ଫେରିଲେ ନାହିଁ, ସେ ଖବର ପଚାରିଲି । ଯାହାକୁ ପଚାରିଲୁଁ ସେ କହିଲା, ଶେଷ ଯୁଦ୍ଧରେ ଗଜପତିଙ୍କ ସେନାପତି ବିଜୟମଲ୍ଲଙ୍କ ହାତରେ ସେ ନିହତ ହୋଇଛନ୍ତି । ବାପା ଯୁଦ୍ଧରେ ମରିଛନ୍ତି, ଏ ଖବର ପାଇ ବୋଉ ମୋହହୋଇ ପଡ଼ିଯିବ ବୋଲି ଭାବିଥିଲି, କିନ୍ତୁ ଦେଖିଲି ଭିନ୍ନ କଥା । ସେ ପଥର ପରି ସବୁ କଥା ଶୁଣିଗଲା । ଆଖିରୁ ବୁନ୍ଦାଏ ହୋଇ ଲୁହ ଗଡ଼ିଲା ନାହିଁ । ବଡ଼ ଅଦ୍ଭୁତ କଥା । ବରଂ, ଗାଁ ମାଇପଙ୍କୁ ସେମାନଙ୍କର ଦୁଃଖ ପାଇଁ ସହାନୁଭୂତି ଦେଖାଇ ବୋଧ ଶୋଧ ଦେଇ କହିଲା— ଯେ ମରିଯାଏ, ସେ ଆଉ ଫେରେ ନାହିଁ, ବୃଥାରେ କାନ୍ଦି କାନ୍ଦି ମନସ୍ତାପ କରି ବେଳ କଟାଇବା ଭଲନୁହେଁ । ଯେଉଁମାନଙ୍କର ଧୈର୍ଯ୍ୟ ଅଛି, ସେମାନେ ତାଙ୍କର ପିଲା ଝିଲାଙ୍କର ମୁହଁକୁ ଅନାଇଁ, ତାଙ୍କୁ ମଣିଷ କରିବାକୁ ବଞ୍ଚିରହ । ଯେଉଁମାନେ ସ୍ୱାମୀର ମରଣ ସହି ଜୀବନ ଧରି ରହିବା ଅସମ୍ଭବ ମଣୁଛ, ସେମାନେ ଜ୍ୱଳନ୍ତ ନିଆଁରେ ଝାସ ଦେବାକୁ ପ୍ରସ୍ତୁତ ହୁଅ ।

ମୋର ପେଟ ଭିତରୁ ଦୁଃଖର କୋହ ଉଠୁଥାଏ ଭୁହାଇ ଭୁହାଇ । ଇଚ୍ଛା ହେଉଥାଏ, ବୋଉର ବେକ ଧରି କାନ୍ଦି କାନ୍ଦି ସବୁ ଆଖି ଲୁହ ଶେଷ କରି ଢାଳିଦେବି । ମନର ରୁଦ୍ଧ ବେଦନାର ଦାଉ ସହି ପାରିବି ନାହିଁ । ବାପା ମରିଛନ୍ତି ଯୁଦ୍ଧ ଭୂଇଁରେ, ମାରିଛନ୍ତି ବିଜୟମଲ୍ଲ, ମୋର ଅତି ପ୍ରିୟ ବିଜୟମଲ୍ଲ ! ଯେତେବେଳେ ସେ ମୋ ସଙ୍ଗେ ଦେଖା କରିବାକୁ ଆସିବେ, କିପରି ମୁଁ ତାଙ୍କର ମୁହଁକୁ ଚାହିଁବି, ହସିବି, କାନ୍ଦିବି ? ମୋର ପ୍ରିୟହିଁ ମୋର ପିତୃହନ୍ତା, ଏହାଠାରୁ ବଳି ଦୁଃଖ କଣ ହୋଇପାରେ ?

ବାପ, ଏଥର ଆମର ଦୁଃଖ ଦୁର୍ଦ୍ଦଶା କଥା କହିବାର ସମୟ ଆସୁଛି । ଦୁଃଖ ସମୁଦ୍ରର ଜୁଆର ପରି ମାଡ଼ି ଆସେ, ତାର ଗତିରୋଧ କରିବାର ଶକ୍ତି ମଣିଷ ହାତରେ ନାହିଁ । ମୋର ଶିଶୁ-ଜୀବନର ହସ ଖେଳ ଓ ତାରୁଣ୍ୟର ଉନ୍ମାଦନା ଯେ ଶୀଘ୍ର ଶେଷ ହୋଇଯିବ, ମୋତେ ଯେ ମହା ବିପଦର ଘୂର୍ଣ୍ଣିବାୟୁ ଭିତର ଦେଇ ସଂସାର ପଥରେ ଚାଲିବାକୁ ହେବ, ସେ କଥା ମୁଁ ସ୍ୱପ୍ନରେ ସୁଦ୍ଧା ଭାବି ନ ଥିଲି ।

ପିତାଙ୍କର ମୃତ୍ୟୁ ଖବର ଶୁଣିବାର ଦୁଇଦିନ ଯାଏ ବୋଉ ବିଛଣାରେ ପଡ଼ି ରହିଲା । କାହାରିକୁ କିଛି କହିବା ତ ଦୂରର କଥା, କେହି ପାଖକୁ ଗଲେ ସେ ମୁହଁ ଟେକି ଚାହିଁଲା ନାହିଁ । ଅଖିଆ ଅପିଆ ଦୁଇଦିନ ଗୋଟାଏ ବିଛଣାରେ ପଡ଼ି ଖାଲି କାନ୍ଦି କାନ୍ଦି ବେଳ କଟାଇଲା । ତାର ଏପରି ଅବସ୍ଥା ଦେଖି ମୋର ମଧ୍ୟ ଦୁଃଖର ସୀମା ରହିଲା ନାହିଁ । ମୁଁ ଅସ୍ଥିର ହୋଇ କାନ୍ଦିବାକୁ ଲାଗିଲି ।

ବାଜସ୍ରମଣ୍ଟଙ୍କ ଉପରେ ରାଗି କେତେଥର ପ୍ରତିଜ୍ଞା କଲି, ଏଥର ଯଦି ଦେଖା ହୁଏ, ତାଙ୍କୁ ଆଉ କଥା କହିବି ନାହିଁ । ଯଦି କହେଁ, ଶେଷଥର ପାଇଁ କହି ତାଙ୍କଠାରୁ ସବୁ ସମ୍ପର୍କ ତୁଟାଇ ଆସିବି ।

ନିଜେ ଭାବି ନିଜେ ମୁଁ ଚମକି ଉଠିଲି । ସମ୍ପର୍କ ତୁଟାଇବି କିପରି ? ଏ ଜୀବନରେ ତ କେବେହେଲେ ପାରିବି ନାହିଁ, ସେ ଯେ ମୋର ସ୍ୱାମୀ !

ତାଙ୍କର ଦୋଷ କଣ ? ଯୁଦ୍ଧ କ୍ଷେତ୍ରରେ କିଏ କାହାକୁ ଚହ୍ନିଛି ? ମୋର ପିତା ବୋଲି ସେ ଜାଣନ୍ତେ କିପରି ? ମନକୁ ଏହିପରି ବୁଝାଏ । ଇଚ୍ଛା ହୁଏ, ପୁଣି ଥରେ ପାହାଡ଼ ପାଖକୁ ବୁଲିଯିବି, କାଳେ ସେ ମୋ ସଙ୍ଗେ ଦେଖା କରିବାକୁ ଆସି ନ ଦେଖି ଫେରିଯିବେ । ମୋର ପ୍ରବଳ ଇଚ୍ଛାକୁ ମୁଁ ଦମନ କରେ । ଲୋକେ କଣ କହିବେ, ବୋଉ କଣ ଭାବିବ ?

ଦୁଇ ଦିନ ପରେ ବୋଉ ସକାଳୁ ଉଠି ମୋ ପାଖକୁ ଆସି ମୋତେ ବିଛଣାରୁ ଉଠାଇଲା । ମୁଁ ନିଦରୁ ଉଠି ବୋଉକୁ ଦେଖି କାବା ହୋଇଗଲି । ତାର ହସ ହସ ପ୍ରଫୁଲ୍ଲ ମୁହଁକୁ ଚାହିଁ ମୋର ମନରେ ଯେଉଁ ଆନନ୍ଦ ଆସିଥିଲା, ମୁଁ ଆଜି ବାକ୍ୟରେ ପ୍ରକାଶ କରି ପାରୁନାହିଁ । ମୋର ପ୍ରାଣର ବେଦନା ସତେ କି ଅଧେ ଊଣା ହୋଇଗଲା । ଭାବିଲି, ଦୁଇଦିନ କାଳ ଭାବି ବୋଧହୁଏ ବୋଉ ତାର ମନ ବଦଳାଇଛି ।

ବୋଉ ମୋର ମୁଣ୍ଡକୁ ଛାତି ଉପରକୁ ଆଉଜାଇ କହିଲା, ଧନ ମୋର, ଏତେବଡ଼ଟିଏ ତ ହେଲୁଣି କିଛି ଶିଖିଲୁ ନାହିଁ, ପର ଘରକୁ ଗଲେ ଚଳିବୁ କେମିତି ?

ମୁଁ କିଛି ଉତ୍ତର ଦେଲି ନାହିଁ । ବୋଉ ପୁଣି କହିଲା, ମା ମୁଁ ଦୁଇଦିନ କାଳ ବିଛଣାରେ ପଡ଼ି ଖାଲି ତୋରି କଥା ଭାବୁଥିଲି । କିନ୍ତୁ, ଆଉ ଭାବିବାକୁ ମୋର ତର ନାହିଁ । ତୋର ବାପାଙ୍କର ମଲା ଖବର ଶୁଣି ମୁଁ ଯେ ଦୁଇଦିନ ବଞ୍ଚି ରହିଲିଣି, ସେଥିପାଇଁ ମୁଁ ଅନୁତାପ କରୁଛି । କିପରି ଦୁନିଆଁ ମୋର ପୋଡ଼ାମୁହଁ ଦେଖିବ ?

ସତେ କି ମୋ ମୁଣ୍ଡରେ ବଜ୍ର ପଡ଼ିଲା । ବୋଉର ଉଦ୍ଦେଶ୍ୟ ମୁଁ ବୁଝି ପାରିଲି । କହିଲି, ମୋତେ କାହା ଜିମା ଦେଇଯିବୁ ବୋଉ ?

ସେ ସାଶ୍ରୁ ନୟନରେ ଉତ୍ତର ଦେଲା, ଭଗବାନ୍ ଅଛନ୍ତି ।

ବାପ, ମୋତେ ସଂସାରର ଜଟିଳ କଣ୍ଟକିତ ପଥରେ ଏକାକୀ ଛାଡ଼ି ମା ମୋର ହସି ହସି ଜ୍ୱଳନ୍ତ ନିଆଁରେ ଝାସ ଦେଲା । ଗ୍ରାମ ଲୋକେ, ଗଡ଼ଲୋକେ ସମସ୍ତେ ଧନ୍ୟ ଧନ୍ୟ ପ୍ରଶଂସା କଲେ । କହିଲେ, ସେ ଯେ ସତୀ ଶିରୋମଣି !

ମୁଁ ହେଲି ସଂସାରରେ ଏକାକିନୀ । ସାହା ଭରସା କେହି ନାହିଁ ।

ଅଛ ଦୁଃଖରେ ମୋର ବେଳ କଟିବାକୁ ଲାଗିଲା । ଦୁନିଆଁଟା ମୋତେ ଶୂନ୍ୟ ଦିଶିଲା । ନୈରାଶ୍ୟ ଭିତରେ ବିଜୟମଲ୍ଲଙ୍କୁ ଭାବିବସେ । ଅନ୍ତରର ରୁଦ୍ଧ ଆବେଗ ବାହାରକୁ ଫୁଟିଉଠେ । ଏତେ ବଡ଼ ବିପଦରେ ସେ ଥରେ ଦେଖା କରିବାକୁ ଆସିଲେ ନାହିଁ । ପୁରୁଷ ଜାତି ଏତେ଼ ନିଷ୍ଠୁର ! ପୁଣି ଭାବେ, ସେ ବୋଧହୁଏ ଦେଶକୁ ଫେରି ଯିବେଣି । ମୋତେ ନେବାକୁ ଶୀଘ୍ର ଲୋକ ପଠାଇବେ । ହୁଏ ତ ନିଜେ ଆସିବେ, ନିଶ୍ଚୟ ଆସିବେ । ମୋ ମନରେ ଆଶା ଉଦୟ ହୁଏ । ପରକ୍ଷଣରେ ନୈରାଶ୍ୟ ଭିତରେ ମୁହଁ ଲୁଚିଯାଏ ।

ଦିନେ ଅର୍ଜୁନ ଭାଇ ଆମ ଘରକୁ ଆସିଲେ । ସେ ହେଲେଣି କୌପୀନ-ଧାରୀ ସନ୍ନ୍ୟାସୀ । ତାଙ୍କୁ ଦେଖି ମୁଁ କାନ୍ଦି ପକାଇଲି । ଆଖିରେ ଲୁହ ଦେଖି ସେ କହିଲେ, ଦେବି, ହସ କାନ୍ଦର ଦୁନିଆଁ ତ ଏ, ସୁଖ ଦୁଃଖ, ଆଲୁଅ ଅନ୍ଧାର ସବୁବେଳେ ହାତ ଧରାଧରି । ପରମେଶ୍ୱରଙ୍କ ଉଦ୍ଦେଶ୍ୟ ଅବଶ୍ୟ ପୂର୍ଣ୍ଣ ହେବ । ସେଥିକି ଭାବନା କଣ ? ଧୈର୍ଯ୍ୟଧରି ସେହି ପରମେଶ୍ୱରଙ୍କର ଆଶ୍ରା ଧରି ପଡ଼ିଥାଅ । ସେ ନିଶ୍ଚୟ ତମକୁ ସଦ୍‌ବୁଦ୍ଧି ଦେଇ ବିପଦରୁ ଉଦ୍ଧାର କରିବେ ।

ଅର୍ଜୁନ ଭାଇଙ୍କର ସାନ୍ତ୍ୱନା ବାଣୀ ଶୁଣି ମୋର ମନରେ ଦମ୍ଭ ଆସିଲା । କିନ୍ତୁ, ତାଙ୍କର କଥା ଶୁଣି ମୁଁ ବିସ୍ମିତ ହେଲି । ଆଜି ଏପରି ସମ୍ବୋଧନ କାହିଁକି ? ଦେବି ! ପଚାରିବି ମନେ କରିଥିଲି; କିନ୍ତୁ ତାଙ୍କର ମୁହଁକୁ ଚାହିଁ କଥାକୁ ଢୋକିନେଇ କହିଲି, ଆଜିଯାଏ କୁଆଡ଼େ ଥିଲ ଅର୍ଜୁନ ଭାଇ, ମୁଁ ତମର ମନେ ପଡ଼େ ନାହିଁ ?

ସେ କହିଲେ, ଜୟନ୍ତି, ତମର ଅର୍ଜୁନ ଭାଇ ଅନେକ ଦିନରୁ ଦେହ-ତ୍ୟାଗ କଲେଣି । ଏଠାକୁ ଆଉ ଅର୍ଜୁନ ଭାଇ ବୋଲି ଡାକିବ ନାହିଁ । ଏଠାତ ବାରବୁଲା ଫକୀରଟା, ଏହାର ମନେ କେହି କେବେ ପଡ଼ିଲେ ପଡ଼ନ୍ତୁ, ନୋହିଲେ ନାହିଁ ।

ତାଙ୍କର କଥା ଶୁଣି ମୁଁ ବିସ୍ମିତ ହୋଇ ତାଙ୍କର ମୁହଁକୁ ଚାହିଁ ରହିଲି । ସେ ପୁଣି କହିଲେ, ତମର ସ୍ୱାମୀ କଣ ତମର ଖବର ନିଅନ୍ତି ନାହିଁ ? ଯୁଦ୍ଧ ସରିଲାରୁ ସେତ ଦେଶକୁ ଫେରିଗଲେ, ତୁମେ କାହିଁକି ଏଠାରେ ଏକୁଟିଆ ଅଛ ?

ଭୟରେ ମୁଁ ଚାରିଆଡ଼କୁ ଚାହିଁଲି । ଯେଉଁ ବିଷୟଟି ମୁଁ ଆଜିଯାଏ ଗୋପନ ରଖିଥିଲି, ତାହା କିଏ ଶୁଣିଲା କି ? ଲାଜ ମାଡ଼ୁଥିଲା, କି ଉତ୍ତର ତାଙ୍କୁ ଦେବି । ତଥାପି ସାହସ କରି କହିଲି, ଗୋଟିଏ ଅନୁରୋଧ ମୋର ଅଛି ।

କଅଣ ଶୁଣେ ?

ମୁଁ କହିଲି, ତୁମେ ଯାହା ଜାଣ ସେକଥା ଯେପରି ଆଉ କେହି ନ ଜାଣନ୍ତି ।

ସେ ପଚାରିଲେ, କାହିଁକି, ତୁମେ କଣ ବିଜୟମଲ୍ଲଙ୍କ ସଙ୍ଗେ ହୋଇଥିବା ତୁମର ଗାନ୍ଧର୍ବ ବିବାହକୁ ଅସ୍ୱୀକାର କରୁଛ ?

କହିଲି, ଏତେ ଶ୍ରେଷ୍ଠ ଓ ଏଡ଼େ ହୀନ ବୋଲି ମୋତେ ଭାବ ନାହିଁ । ଯେଉଁଦିନ ସେ ମୋତେ ଦୁଷ୍ଟ ସିପାହୀମାନଙ୍କ କବଳରୁ ଉଦ୍ଧାର କଲେ, ଅତି ଦୁର୍ଗମ ଅନ୍ଧାର ରାତିରେ ମୋର ହାତ ଧରି ଆମ ଘରକୁ ଆଣିଦେଲି, ସେହି ଦିନରୁ ସେ ମୋତେ ଅପଣାର କରି ସାରିଥିଲେ । ତାଙ୍କୁ ଜୀବନର ଦୋସର ବୋଲି ମୁଁ ଗ୍ରହଣ କଲି । ତାପରେ ହେଲା ଆମର ଗୋପନ ବିବାହ । ଅସ୍ୱୀକାର କରିବି କାହିଁକି ?

ଅର୍ଜୁନ ଭାଇ ପଚାରିଲେ, ତେବେ— ?

ମୁଁ କହିଲି, ପ୍ରକାଶ କରିବାକୁ ସେ ମୋତେ ବାରଣ କରିଛନ୍ତି । ମୁଁ ମଧ୍ୟ ପ୍ରତିଜ୍ଞା କରିଛି ।

ସେ ଗମ୍ଭୀର ହୋଇ ପଚାରିଲେ, କାହିଁକି ?

ମୁଁ କହିଲି, ସେ କହିଛନ୍ତି, କୌଣସି ବିଶେଷ କାରଣରୁ ଆମର ଏ ଗୋପନ ଗାନ୍ଧର୍ବ ବିବାହ ଓ ସମ୍ବନ୍ଧ କିଛିଦିନ ପାଇଁ ଗୋପନ ରଖିବାକୁ ହେବ । ସମୟ ଆସିଲେ ସେ ନିଜେ ସବୁ ପ୍ରକାଶ କରି ମୋତେ ଏଠାରୁ ଘେନିଯିବେ ।

ମୋ କଥା ଶୁଣି ବାବାଜୀ ଅର୍ଜୁନ ଭାଇ ହସିଲେ । କଣ ଭାବି ସେ କହିଲେ, ସବୁ ଛଳନା ନୁହେଁ ତ ଜୟନ୍ତୀ ?

ମୁଁ ଚମକି ଉଠିଲି । ଛାତି ଥରିବାକୁ ଲାଗିଲା । ବିଜୟମଲ୍ଲ ଛଳନା କରିବେ ? ଅସମ୍ଭବ ! କହିଲି, କେବେ ନୁହେଁ, ଛଳନା କେବେ ନୁହେଁ । ବିଜୟମଲ୍ଲ ଛଳନା କରି ପାରିବେ ନାହିଁ ।

ବାବାଜୀ ମୋର ଅନ୍ତରର ବେଦନା ବୁଝି ପାରିଲେ, ମୋର ପ୍ରାଣର କରୁଣ କ୍ରନ୍ଦନ ଶୁଣି ପାରିଲେ । ମୋତେ ସାନ୍ତ୍ୱନା ଦେବାକୁ କହିଲେ, ନ ହୋଇ ପାରେ, କିନ୍ତୁ ଏକଥା କଣ ଗୋପନ କରି ରଖିପାରିବ ତାଙ୍କର ଫେରିବାଯାଏ ? ସେ କେବେ ଫେରିବେ ତାହାର ତ ଠିକଣା ନାହିଁ । ଅଚ୍ଛା—, ଠିକ୍‌ଏ ରହି ପୁଣି କହିଲେ, ଏଥରକୁ ବିଦାୟ ଦିଅ ମା, ଦରକାର ବେଳେ ଏଠା ଅବଶ୍ୟ ତମର ଭଲ ମନ୍ଦ ବୁଝିବାକୁ ଆସିବି ।

ଏତିକି କହି ସେ ବିଦାୟ ନେଲେ । ମୁଁ ଥକ୍‌କା ହୋଇ ଠିଆହୋଇ ରହିଲି । କେତେଥର ମୁଁ ଏକୁଟିଆ ବସି ଭାବିଛି । ସତରେ କଣ ବିଜୟମଲ୍ଲ ପ୍ରତାରକ, ସତରେ ସେ ଛଳନା କରି ମୋପରି ଗୋଟିଏ ନିରୀହା ବାଳିକାର

ସର୍ବନାଶ କରୁଛନ୍ତି ? ମୋ ପ୍ରଶ୍ନର ଉତ୍ତର ନିଜେ ଦେଇପାରେ ନାହିଁ । ମୁଁ ଯେତିକି ଭାବେ, ମନ ସେତିକି ଖରାପ ହୁଏ । କାହା ପାଖରେ ମନ ଖୋଲି ପ୍ରାଣର ବ୍ୟଥା ପ୍ରକାଶ କରିବି ? ଏପରି ଆପଣାର ମୋର କେହି ନାହିଁ । ମୋର ଦୁଃଖହିଁ ମୋର ଚିରସାଥୀ, ଅତି ଆପଣାର ! ଆଖିର ଲୁହ ମୋର ସାନ୍ତ୍ୱନା ।

ବିଜୟମଲ୍ଲଙ୍କ କଥା ମନେ ପକାଇ ଦିନେ ମୁଁ ଏକୁଟିଆ ବସିଥିଲି, ଇଚ୍ଛା ହେଲା ଥରେ ମୋର ଚିରପରିଚିତ ପାହାଡ଼ ଉପରକୁ ଯିବି । ଯେଉଁ ଚଟାଣ ଉପରେ ବସି ମୁଁ ମୋର ଦେବତାଙ୍କର ପ୍ରେମାଳାପ ଶୁଣୁଥିଲି, ସେହି ନିର୍ଜୀବ ଚଟାଣକୁ ହେଲେ ମନର ଗୋପନ କଥା ଜଣାଇବି । ଯାହା ଗୁମ୍ଫା ଉପରେ ଦୁଇଟି ପ୍ରାଣୀ ଅଟମ ପ୍ରେମରେ ବିଭୋର ହୋଇ ନିଜକୁ ଅନ୍ୟ ଭିତରେ ହଜାଇ ଆତ୍ମବିସ୍ମୃତ ହୋଇ ଯାଉଥିଲୁ, ପ୍ରକୃତି ପ୍ରେମମୟ ଓ ପ୍ରେମ ଶାଶ୍ୱତ, ତାହାରି ରୁକ୍ଷ ବକ୍ଷ ଉପରେ ମୋର ନୀରବ ଉଷ୍ଣ ଅଶ୍ରୁ ଗଡ଼ାଇ ଆସିବି । କେହି ସିନା ଆମ ସମ୍ବନ୍ଧ ଜାଣନ୍ତି ନାହିଁ, ପାହାଡ଼ର ଅକମ୍ପ ଶିଳା, ଗଛ ବୃକ୍ଷ, ଜୀବ ଜନ୍ତୁ, ଉପରର ସୁନୀଳ ଆକାଶ, ନିମ୍ନର ସଜୀବ ମହାନଦୀ ତ ସବୁ ଦେଖିଛନ୍ତି, ସବୁ ଜାଣିଛନ୍ତି !

ଉଦ୍‌ବିଗ୍ନ ହୋଇ ବାହାରି ପଡ଼ିଲି ସେ ଦିନ । କାହାରିକୁ କିଛି କହିଯିବାକୁ ଇଚ୍ଛା ହେଲାନାହିଁ । ଆମର ବୁଢ଼ୀ ଗୃହିଣୀ ମୋ ଆଗକୁ ଆସି ଦୁଇଆଖି ଲୁହରେ ଭଲ ଭଲ କରି କହିଲା, ଅବେଳାଟାରେ କୁଆଡ଼େ ଯାଉଛ ଦେଇ, କଣ ହୋଇଛି ଯେ ଏତେ କାନ୍ଦୁଛ ? ଦୁର୍ଦ୍ଦିନର ସହାୟ ସେ ମୋର, ତଥାପି, ତାର ଆକୁଳତାର ଉତ୍ତର ନ ଦେଇ ବୁଲିପଡ଼ି ମୁଁ ପଦାକୁ ଚାଲିଲି ।

ପାହାଡ଼ ଉପରକୁ ଉଠି ପରିଚିତ ସେହି ପଥର ଚଟାଣ ଉପରେ ବସି ନୀରବଅଶ୍ରୁ ତ୍ୟାଗ କଲି । ସୁଇ ନେଉଥିଲି । ମୋର ଦୁଃଖରେ ସଜୀବ ପ୍ରକୃତି ମଧ୍ୟ ସହାନୁଭୂତି ଦେଖାଇଲା ନାହିଁ । ଘରକୁ ଫେରିଯିବାକୁ ମନେ କରି ପଥର ଚଟାଣ ତଳର ଗୁହା ଭିତରକୁ ଗଲି । ଅସ୍ତଗାମୀ ସୂର୍ଯ୍ୟର ଶେଷ ଲୋହିତ କିରଣରେ ଗୁହାଟି ବେଶ୍ ଆଲୋକିତ ହୋଇଥାଏ । ଫେରିଲା ବେଳକୁ କାନ୍ଥ ଦେହରେ ଖଡ଼ିରେ ବଡ଼ ଅକ୍ଷରରେ ଲେଖା ହୋଇଥିବା କେତେ ଧାଡ଼ି ଅକ୍ଷର ଉପରେ ମୋର ନଜର ପଡ଼ିଲା । ମୁଁ କୁତୂହଳୀ ହୋଇ ପାଖକୁ ଗଲି । ଅକ୍ଷର ଗୁଡ଼ିକ ପରିଷ୍କାର ପଢ଼ି ହେଉଥାଏ ।

ଲେଖା ଥିଲା—ଅପେକ୍ଷା କରି ହତାଶ ହୋଇ ଫେରୁଛି, ରାଣି ନ ପାହୁଣୁ ଦେଶକୁ ଫେରିଯିବି । କେତେ ଗୋପନ କଥା କହିବାର ଥିଲା, ବାକି ରହିଗଲା ।

ତୁମର ଘରକୁ ବି ଯାଇ ପାରୁନାହିଁ । କିଛିଦିନ ପାଇଁ ବିଦାୟ ଦିଅ । ମୋର ପ୍ରତୀକ୍ଷାରେ ରହି ପାରିବ ତ ?—ବିଜୟ—

କିଏ ଲେଖିଛି ବୁଝିବାକୁ ଆଉ ବାକି ରହିଲା ନାହିଁ । ବିଜୟ, ମୋର ପ୍ରାଣର ବିଜୟ ପ୍ରତାରକ ନୁହନ୍ତି, ପ୍ରବଞ୍ଚକ ନୁହନ୍ତି । ସେ ମୋର, ସେ ଚିରଦିନ ମୋର । ଦେହରେ ମୋର ପ୍ରାଣ ଥିବା ଯାଏ ତାଙ୍କର ପ୍ରତୀକ୍ଷାରେ ରହିଥିବି ।

ଦିନେ ସେହି ପଥର ଚଟାଣ ଉପରେ ବସି ମୁଁ ମୋର କରୁଣ ଜୀବନର ଇତିହାସ ମନେ ମନେ ଆଲୋଚନା କରୁଛି, ଅର୍ଜୁନ ଭାଇ ମୋତେ ଖୋଜି ଖୋଜି ଆସି ସେଠାରେ ଉପସ୍ଥିତ ହେଲେ । ମୁଁ ତାଙ୍କୁ ପ୍ରଣାମ କରି ପଚାରିଲି, ବାବାଜି ମହାରାଜ, ବିଜୟମଲ୍ଲଙ୍କ ସମ୍ବନ୍ଧରେ ଆପଣ କିଛି ଖବର ପାଇଛନ୍ତି କି ? ସେ ବର୍ତ୍ତମାନ କେଉଁଠି ?

ସେ ହସ ହସ ହୋଇ କହିଲେ, ଏହା ତ ଜାଣେ ନାହିଁ । ବର୍ତ୍ତମାନ ତାଙ୍କର ଖବର ରଖିବା ଆବଶ୍ୟକ ପଡ଼ିଲାଣି ପରା ! ଲୋକଙ୍କ ମୁହଁରୁ ଯେଉଁ କଥା ତୁମ ସମ୍ବନ୍ଧରେ ଶୁଣା ଯାଉଛି, ଯଦି ସତ ହୋଇଥାଏ, ତେବେ ତମର ଗୁପ୍ତ ପ୍ରଣୟ ଖବର ପ୍ରକାଶ ନ କଲେ ଆଉ ରକ୍ଷା ନାହିଁ ।

ସଂକୋଚ ଲଜ୍ଜାରେ ମୁଁ ମିଳାଇଯିବି । ମୋର ମୁହଁରୁ ପଦେ କଥା ମୁଦ୍ଧା ବାହାରିଲା ନାହିଁ । ଅନ୍ୟ ଆଡ଼କୁ ମୁହଁ ଫେରାଇଲି ।

ବାବାଜି ଖୁସି ହୋଇ କହିଲେ, ଭାଗ୍ୟବତୀ ତୁମେ, କିନ୍ତୁ ଅନୁମତି ଦିଅ, ଲୋକଙ୍କ ଆଗରେ ସବୁ ସତ୍ୟ ପ୍ରକାଶ କରିବି; ନୋହିଲେ ସମାଜରେ ରହି ଲୋକଙ୍କ ମୁହଁରୁ ଅପବାଦ ଶୁଣି ଚଳିହେବ ନାହିଁ । ତୁମେ ନାରୀ !

ମୁଁ କହିଲି, ତାଙ୍କର ଆଦେଶ ଲଙ୍ଘନ କରିବି କିପରି ? ଗୋପନ ରଖିବାକୁ ମୁଁ ପ୍ରତିଜ୍ଞାବଦ୍ଧ ।

ବାବାଜି କହିଲେ, ଲୋକଙ୍କର କଥା ସହି ରହିପାରିବ ତ ?

ମୁଁ କହିଲି, ସହିବାକୁ ଚେଷ୍ଟା କରିବି । ଖାଲି କଥା ତ ନୁହେଁ, ସେମାନଙ୍କର ବ୍ୟବହାର ମୋ ପ୍ରତି ନିଷ୍ଠୁର ହୋଇ ପଡ଼ିବ । ହେଉ ।

ଭଲ, ତେବେ ତୁମେ ଯେ ବିବାହିତା ଏହା ଲୋକଙ୍କ ଆଗରେ ପ୍ରକାଶ କରିପାର । କାହାକୁ ବିବାହ କରିଛ କେବେ ବିବାହ କରିଛ ନ କହିଲେ ହେଲା ।

ମୁଁ କୌଣସି ଉତ୍ତର ଦେଲିନାହିଁ । ବାବାଜି ବିଦାୟ ନେଲେ । ମୁଁ ଅନ୍ୟ ବାଟରେ ଘରକୁ ଫେରିଲି ।

ମୋର ପେଟ ଭିତରେ ଯେତେବେଳେ ତୋ'ର କୋମଳ ପାଦ ଦୁଇଟିର ମୃଦୁ ଆଘାତ ଲାଗେ, ମୁଁ ଭାବେ, ମୁଁ ଭାଗ୍ୟବତୀ । ଯେତେବେଳେ ଗାଁ ଲୋକଙ୍କର ନିର୍ମମ କଥାଭାଷା ଶୁଣେ, ନିଷ୍ଠୁର ବ୍ୟବହାର ଦେଖେ, ପାହାଡ଼ ଉପରକୁ ଯାଇ ସେହି ଅକ୍ଷର ଗୁଡ଼ିକୁ ଚୁହିଁ ସବୁ ଦୁଃଖ ପାଶୋରେ । ସେ ନିଶ୍ଚୟ ଫେରିବେ ଏହାହିଁ ମୋର ଦୃଢ଼ ଧାରଣା ।

ଦିନପରେ ଦିନ ବହିଗଲା । ଆଖିରୁ ପାଣି ମଲା, ସେ ଆସିଲେ ନାହିଁ । ମୋର ଖବର ଅନ୍ତର ବୁଝିବାକୁ ଲୋକଟିଏ ମଧ୍ୟ ପଠାଇଲେ ନାହିଁ । ତଥାପି, ମୋର ମନରେ ଆଶା ଥାଏ ସେ ଆସିବେ ।

ଦିନେ, ଶୁଭ୍ର ଶରତର ଦିଗ୍‌ଦିଗନ୍ତ ଉଜ୍ଜ୍ୱଳ କରି ବାଲାରୁଣ ପୂର୍ବ ଦିଗ୍‌ବଳୟର ତୋରଣ ଭିତରୁ ସୁନ୍ଦର ଲୋହିତ ମୁହଁଟିରେ ଉଜ୍ଜ୍ୱଳ ଦିସଟିଏ ଫୁଟାଇ ମୋର ମୁକ୍ତ ବାତାୟନ ବାଟେ ହର୍ଷମୁଖରେ ଚୁହିଁଲେ । ସେ ଦେଖିଲେ, ତାଙ୍କର ପ୍ରତିଦ୍ୱନ୍ଦ୍ୱୀ ଶିଶୁଟିର କୋମଳ ମୁହଁଟି ମୋର କୋଳରେ ଶରତ୍‌ର ଶେଫାଳୀ ପରି ଉଜ୍ଜ୍ୱଳ ଦିଶୁଛି । ତୋର କୋମଳ କପାଳରେ ପ୍ରଥମ ଚୁମ୍ବନ ଦେଲେ ସେହି ।

ମାତୃତ୍ୱର ଗର୍ବରେ ମୋର ଛାତି ଫୁଲିଉଠିଲା । ତୋର ମୁହଁର ପ୍ରଥମ ଦର୍ଶନରେ ମୋର ସବୁ ଦୁଃଖ କଷ୍ଟ, ସବୁ ମାନ ଅପମାନ କ୍ଷଣକରେ କୁଆଡେ଼ ଚାଲିଗଲା । ଖାଲି ଏତିକି ଭାବିଲି, ଆହା, ଯଦି ସେ ପାଖରେ ଥାନ୍ତେ !

ଦଳ ଦଳ ହୋଇ ଗାଁ ମାଇପେ ପୁଅ ଦେଖିବାକୁ ଆସିଲେ । ମୋ ଘରେ ପାଦ ପକାଇ ଯେ ଛୁଆଁ ହେବାକୁ ପଡ଼େ ଏକଥା ସେମାନେ କ୍ଷଣକ ପାଇଁ ଭୁଲିଗଲେ । ଯିଏ ତୋତେ ଦେଖିଲା, ତୋର ରୂପକୁ ପ୍ରଶଂସା କଲା । କେହି ତୋତେ କିଛି ଉପହାର ଦେଲେ ନାହିଁ । କଲ୍ୟାଣଟିଏ ମଧ୍ୟ କେହି କଲେ ନାହିଁ । ମୋତେ ଶୁଣାଇ ନିଜ ନିଜ ଭିତରେ କୁହାକୁହି ହୋଇ ଫେରିଲେ, ଜାରଜ ପିଲା ଏମିତି ହୁଅନ୍ତି ଲୋ ମା !

ମୋର କଲିଜାରେ ସତେ କି କିଏ ଛୁରି ମାରିଦିଏ । ଆଖିବୁଜି ଧୈର୍ଯ୍ୟଧରି ସହିଯାଏ । ଯାହାର ପିତା କଳିଙ୍ଗର ସେନାପତି ମହାପ୍ରତାପୀ ସୂର୍ଯ୍ୟପରି ତେଜୋବାନ୍ ବିଜୟମଲ୍ଲ, ତାକୁ ସେମାନେ ମଣିଲେ ଜାରଜ !

ବାବାଜି ଆସିଲେ । ତୋତେ କୋଳକୁ ନେଇ ସେ ଖୁସି ହେଲେ । କଲ୍ୟାଣ କଲେ । କହିଲେ, ଜୟନ୍ତ, ବିଜୟମଲ୍ଲର ପୁଅକୁ ଏଠି କଣ ଉପହାର ଦେବ ? ସେ ଜଗତ୍‌ରେ ମଣିଷ ହେଉ, ପିତା ମାତାଙ୍କର ନାମ ନେଇ ଲୋକ-ମୁଖରେ ସେ ଜୟନ୍ତ ନାମରେ ପରିଚିତ ହେଉ ।

ବାବାଜି ତୋର ନାମ ଦେଇଥିଲେ ଜୟନ୍ତ । ତୋ ମୁହଁକୁ ଚାହିଁଲେ ତୋ' ପିତାଙ୍କର ମୁହଁ ମନେ ପଡ଼େ । ସତେକି ସେ ଆଗରେ ଠିଆହୋଇ ହାତ ବଢ଼ାଇ ମାଗନ୍ତି, କହନ୍ତି ଦିଅମ ଜୟନ୍ତ, ପୁଅ ମୋ'ର—ଏବିକଲ ମୋର ମୁହଁ, ମୋର ପରି—

ବାପ, ତୋର ମୁହଁ ଦେଖି ତୋର ହସଖେଳ ଦେଖି ଦୀର୍ଘ ଚଉଦଟି ବର୍ଷ କଟାଇ ଦେଲି । କେତେ ଦୁଃଖ କେତେ କଷ୍ଟ ଆସିଲା, ସତେ କି ମୋର ହୃଦୟ ଭାଙ୍ଗି ପକାଇବ, କିନ୍ତୁ ତୋତେ ଛାତିରେ ଧରି ତୋର ଚକୁକ ଚୁମ୍ବନ କରି, ଦୁଇବୁନ୍ଦା ତତଲା ଲୁହ ଆଖିରୁ ଝରାଇ, ମୁଁ ଧୈର୍ଯ୍ୟଧରି ସବୁ ସହିଲି । ମୋର ମନ ଯେତେବେଳେ ଦୁର୍ବଳ ହୋଇଆସେ, ବାବାଜି ଅନନ୍ତରୁ କେଉଁଠୁ ଆସି ମୋତେ ସାନ୍ତ୍ୱନା ଦେଇ, ମୋର ମନର ଶକ୍ତି ବଢ଼ାଇ ଦେଇଯାଆନ୍ତି ।

ଦିନେ ପଥର ଚଟାଣ ଉପରେ ତୁ ବସି ଖେଳୁଥିଲୁ, ମୁଁ ତୋ ପାଖରେ ବସି ପଦ୍ମର ଗୋଟିଏ ମାଳ ଗୁନ୍ଥୁଥିଲି, ଆଖି ଫେରାଇ ପଛକୁ ଅନାଇଲି । ଦେଖିଲି ଗୋଟିଏ ଅଁଳାଗଛର ପଛଆଡ଼ୁ ବିବ୍ରତ ଏକଚକ୍ଷୁରେ ମୋ ଆଡ଼କୁ ଚାହିଁଛି । ମୁଁ ଦେଖି ନ ଦେଖିଲା ପରି ମୁହଁପୋଛି ପଦ୍ମ ଗୁନ୍ଥିବାରେ ଲାଗିଗଲି ।

ଜୟନ୍ତ ପଚାରିଲା, ବିବ୍ରତ କିଏ ମା ?

ସେ ମୋର ପିଲାଦିନର ଜଣେ ସଙ୍ଗୀ । ଯୁଦ୍ଧରେ ପରାସ୍ତ ହୋଇ ଆତ୍ମରକ୍ଷା କରି ଯୁଦ୍ଧ ଭୂଇଁରୁ ପଳାଇଥିଲା । ସନ୍ଧି ହେଲା ପରେ ପୁଣି ଗ୍ରାମକୁ ଫେରି ଆସିଲା । ଯେତେବେଳେ ଦେଶ ସାରା ମୋର ଅପବାଦ ନାଟରେ ବାଜିଉଠିଲା, ଆବାଳ-ବୃଦ୍ଧ-ବନିତା ମୋତେ ଘୃଣା କରିବାକୁ ଲାଗିଲେ, ଏକା ସେହି ମୋର ହୋଇ ଲୋକଙ୍କ ବିରୁଦ୍ଧରେ କହିବାକୁ ସାହସ କଲା । ଲୋକେ ତାକୁ ମଧ୍ୟ ନାନାପ୍ରକାର କୁକଥା କହିଲେ, କିନ୍ତୁ ସେ କାହିଁରେ କାନ ଦେଲାନାହିଁ ।

ସେ ମୋ ପାଖକୁ ଆସିବାକୁ ସାହସ କରେ ନାହିଁ । ଲୁଚି ଲୁଚି ମୋର କଥା ଶୁଣିବାକୁ, ମୋତେ ଦେଖିବାକୁ ଭଲପାଏ । ମୋର ଦୃଷ୍ଟି ପଡ଼ିବାର ଦେଖି ବିବ୍ରତ ଗଛ ଉହାଡ଼ରୁ ଆସି ମୋ ଆଗରେ ଠିଆ ହେଲା । ମୁଁ ଓଢ଼ଣା ଟାଣିଲି, ଓଢ଼ଣା ଭିତରୁ ଚାହିଁଲି, ସେ ମୋର ମୁହଁକୁ ଚାହିଁ ରହିଛି ।

ମୋର ଦୃଷ୍ଟି ପଡ଼ିବାରୁ ସେ କହିଲା, ଜୟନ୍ତ, ଗୋଟିଏ କଥା କହିବାକୁ ମୋତେ ଅନୁମତି ଦେବ ?

ମୁଁ ଉତ୍ତର ଦେଲି ନାହିଁ ।

ସେ ମୋ ପାଖକୁ ଘୁଞ୍ଚିଆସି କହିଲା, ଗୃହବର୍ଷରୁ ଊର୍ଦ୍ଧ୍ୱ ହେବ କହିବି କହିବି ହୋଇ କହି ପାରୁନାହିଁ ।

ମୁଁ ପଚାରିଲି, କି କଥା କହିବ ବିବ୍ରତ ?

ସେ କହିଲା, ଦୁନିଆଁରେ ମୋର କେହି ନାହିଁ । ମୁଁ ଏକାକୀ । ଟିକିଏ ଭୁନହୋଇ ଦୀର୍ଘଶ୍ୱାସ ଛାଡ଼ି ପୁଣି କହିଲା, ଜୀବନଟା ମୋର ତମର ସେବାରେ ଅର୍ଘ୍ୟ ଦେବି ଭାବୁଛି ଯଦି ଅନୁମତି ଦିଅ । ଅନେକ ଦିନ ଅପେକ୍ଷା କଲିଣି ଜୟନ୍ତ !

ରାଗରେ ମୋର ରକ୍ତ ଗରମ ହୋଇଉଠିଲା । ମୁଁ ଚକ୍ଷୁତର୍କିଟି ତାର ମୁହଁକୁ ଚାହିଁଲି । ତାର ଆଖିର ଲୁହ ଓ ତାର ମୁଖର କରୁଣଛାୟା ଦେଖି ମୁଁ ମୂକ ହୋଇ ରହିଲି । ତଳକୁ ମୁହଁପୋତିଲି ।

ସେ ବିନୀତ ହୋଇ ନମ୍ର ସ୍ୱରରେ କହିଲା, ରାଗିଲ କି ? ମୁଁ ସବୁବେଳେ ତମର କ୍ଷମାର ପାତ୍ର । ତମର ଟିକିଏ ଉପକାର କରିବାକୁ ମୁଁ ଅକ୍ଳେଶରେ ପ୍ରାଣ ଦେବାକୁ ପ୍ରସ୍ତୁତ । ସେ ମୋର ହାତଧରି କହିଲା, ରାଗ·ନା ଜୟନ୍ତ ।

ମୁଁ କ୍ରୋଧରେ ହାତଟାକୁ ଟାଣି ଆଣିବାକୁ ଇଚ୍ଛାକଲି, ପାରିଲି ନାହିଁ । ଖାଲି ଏତିକି କହିଲି,—ବିବ୍ରତ !

କିଅଣ ଜୟନ୍ତ !

କହିଲି, ତୁମେ ଏବେ ଏଠାରୁ ଚାଲିଯାଅ । ମୋତେ ଟିକିଏ ଅବକାଶ ଦିଅନ୍ତୁ ।

ସେ କହିଲା, ମୋର ଭିକ୍ଷା—

ମୁଁ କହିଲି, ମୋତେ ଏକୁଟିଆ ବସି ତମର କଥା ଭାବିବାକୁ ଦିଅ ବିବ୍ରତ ।

ସେ ପ୍ରେମର ପିଲାଟି ପରି ଧୀରେ ଧୀରେ ମୋର ହାତ ଛାଡ଼ି ସେଠାରୁ ଚାଲିଗଲା । ମୁଁ ଆକାଶ ପାତାଳ କେତେ କଣ ଭାବିବାକୁ ଲାଗିଲି । ଠିକ୍ ସେହିକ୍ଷଣିକବେଳେ ବାବାଜି ଆସି ସେଠାରେ ଉପସ୍ଥିତ ହେଲେ । ଲଜ୍ଜାରେ ଭୟରେ ମୁଁ ସଙ୍କୁଚିତ ହୋଇପଡ଼ିଲି । କିଛି କହି ପାରିଲି ନାହିଁ ।

ବାବାଜି ମୋତେ କୋଳକୁ ନେଇ କହିଲେ, ଜୟନ୍ତ, ବିଜୟମଲ୍ଲ ତୁମର ପାଖେ ପାଖେ ଅଛନ୍ତି, ତଥାପି ତମର ମନରେ ଦୁର୍ବଳତା ପ୍ରବେଶ କଲା କାହିଁକି ? ଜୟନ୍ତ ଯେ ବିଜୟମଲ୍ଲଙ୍କର ପ୍ରତିଛବି ।

ଲଜ୍ଜାରେ ମୁଁ ମୁହଁ ପୋତିଲି । ବାବାଜି ସବୁ ଦେଖିଛନ୍ତି, ସବୁ ଶୁଣିଛନ୍ତି । ସେ କହିଲେ, ମନ ତୁମର ଦୁର୍ବଳ ହୋଇଅଛି, ଏଣିକି ବିଜୟଙ୍କୁ ଛାଡ଼ି ତମର

ଏକୁଟିଆ ରହିବା ଉଚିତ ନୁହେଁ । ଲଜ୍ଜାରେ ମୁଖ ଅବନତ କରୁଛ କାହିଁକି ? ସମାଜରେ ରହି, ସଂସାରୀ ହୋଇ ସମୟ କାଟିବାକୁ ସଙ୍କଳ୍ପ କରି, ରକ୍ତମାଂସର ଦେହଧରି, ମଣିଷ ପ୍ରଲୋଭନକୁ ଜୟ କରିପାରେ କେତେ ଦିନ ? ମହା ମହା ଯୋଗୀ ମୁନି ତ ଝୁଣ୍ଟି ପଡ଼ିଛନ୍ତି, ସାଧାରଣ ମଣିଷ କଥା ପଚୁରେ କିଏ ? ତୁମେ ଯେ ଅଦ୍ୟାପି ନିଷ୍ଠଳଙ୍କ ଭାବରେ ସମୟ କାଟିଛ, ଏହା ତମ ପକ୍ଷରେ ଅବଶ୍ୟ ପ୍ରଶଂସାର କଥା । ପାପ ବର୍ତ୍ତମାନ ସୁଦ୍ଧା ତମର ପବିତ୍ର, ନିଷ୍କଳଙ୍କ ମନରେ ତାର ରାଜ୍ୟ ସ୍ଥାପନ କରିପାରି ନାହିଁ । କିନ୍ତୁ, ତମର ମନକୁ ଦୁର୍ବଳ ଦେଖି, ସେ ପ୍ରବେଶ କରିବାକୁ ଚେଷ୍ଟା କରୁଛି । ଏଥିରେ ସନ୍ଦେହ ନାହିଁ । ଏହା ତମେ ସହଜରେ ବୁଝିପାରୁଥିବ । ଆରମ୍ଭରୁ ତାର ଗତିରୋଧ କରିବା ବାଞ୍ଛନୀୟ । ନୋହିଲେ, ପରେ ଆଉ ବଳ ପାଇବ ନାହିଁ । ଉପାୟ କଣ ଜାଣ, ଜୟନ୍ତ ?

ମୁଁ ଜିଜ୍ଞାସୁ ନେତ୍ରରେ ବାବାଜିଙ୍କୁ ଚାହିଁଲି ।

ବାବାଜି କହିଲେ, ଚାହୁଁ ଚାହୁଁ ପ୍ରାୟ ପାଞ୍ଚବର୍ଷ କଟିଗଲା । ବିଜୟମଲ୍ଲ ତମର କୌଣସି ଖବର ନେଲେ ନାହିଁ । ଟୋଟାଏ ସ୍ୱପ୍ନପରି ହୁଏତ ସେ ତୁମର ପ୍ରଣୟକୁ ଭୁଲି ଯାଇଛନ୍ତି । ପୁରୁଷ ସେ, ସମାଜର ପ୍ରଚଳନ ରୀତିର ପ୍ରବର୍ତ୍ତକ, ତହିଁରେ ପୁଣି ଉଚ୍ଚପଦସ୍ଥ ରାଜକର୍ମଚାରୀ । ତାଙ୍କ ପକ୍ଷରେ ଭୁଲିଯିବା ସମ୍ଭବ ହୋଇ ପାରେ । ନାରୀ ତୁମେ, ପ୍ରଣୟ ତୁମର ଜୀବନ, ତୁମେ କାହିଁକି ଭିନ୍ନ ରହିବ ? ସବୁ ମାନ ଅଭିମାନ ଦୂରକୁ ପକାଇ ତାଙ୍କର ପଦତଳେ ଆଶ୍ରୟ ନେବାକୁ ତମେ ଚେଷ୍ଟା କର, ଅବଶ୍ୟ ସୁଫଳ ଫଳିବ ।

ମୁଁ କହିଲି, କପରି ଚେଷ୍ଟା କରିବି ? ବାବାଜି, ଆଜି ତମେ ମୋର ଆଖି ଫିଟାଇଛ । ଯେଉଁ ଅନ୍ଧକାରଟା କରାଳ ମୂର୍ତ୍ତି ଧରି ମୋର ମନୋବୃତ୍ତିକୁ ଗ୍ରାସ କରିବା ପୋଟି ଆସୁଥିଲା, ସତ୍ୟର ଆଲୋକ ଦେଇ ତାକୁ ତମେ ଦୂରୀଭୂତ କରିଛ । ତମେ ମୋର ଗୁରୁ । ତାଙ୍କର ପାଦତଳେ ମୁଣ୍ଡ ଲଗାଇଲି । ତୀବ୍ର ଅନୁଶୋଚନାରେ ପ୍ରାଣ ଜଳିଉଠିଲା ।

ବାବାଜି କହିଲେ, ନାରୀର ଦେବତା, ନାରୀର ଗୁରୁ, ତାର ସ୍ୱାମୀ । ତମେ ଯେ ଆଜି କ୍ଷଣିକ ମୋହପାଇଁ ଅନୁତାପ କରୁଛ, ତମର ଅନ୍ତରର ମିଥ୍ୟା ଆବିଳତା ଆଜି ପରିଷ୍କାର ହୋଇଛି ।

ମୁଁ ଉତ୍ତେଜିତ ହୋଇ କହିଲି, ଗୁରୁଦେବ ! ମୋତେ ଆଲୋକ ଦିଅ, ମୋତେ ପଥ ଦେଖାଅ, ମୁଁ ନିଜେ ଯାଇ ତାଙ୍କର ଗୋଡ଼ତଳେ ତାଙ୍କର ଶିଶୁ ସନ୍ତାନଟି ରଖି ଶରଣ ପଶିବି । ଆବଶ୍ୟକ ହେଲେ ତାଙ୍କର ପଦଧରି ମୋର ଏହି ଅସ୍ଥିର ଜୀବନ ଉତ୍ସର୍ଗ କରିବି । ବହୁତ ସହିଛି, ବହୁତ ଅପେକ୍ଷା କରିଛି । ତାଙ୍କ

ଛାଡ଼ି କ୍ଷଣେମାତ୍ର ରହିବାକୁ ମୋର ଆଉ ଇଚ୍ଛା ନାହିଁ । ରହିପାରିବି ନାହିଁ । କହ, ସେ କେଉଁଠି ?

ମୋ' ଆଖିରୁ ଲୁହ ଝରିଲା, କେତେଦିନର ରୁଦ୍ଧ ଅଶ୍ରୁ ସେ !

ବାବାଜି କହିଲେ, ବିଜୟମଲ୍ଲ ତ ପାଖରେ ନାହାନ୍ତି ଜୟନ୍ତ, ସେ ବହୁ ଦୂରରେ । ଭୀଷଣ ବଣ ଜଙ୍ଗଲ ମଧ୍ୟରେ ଯିବାକୁ ହେବ । ତମେ ଯାଇ ପାରିବ ତ ?

ମୁଁ ଅଧୀର ହୋଇ କହିଲି, ଅର୍ଜୁନ ଭାଇ ଯେତେବେଳେ ସଙ୍ଗରେ ଅଛନ୍ତି, ମୁଁ ନିଶ୍ଚୟ ଯାଇ ପାରିବି । ମୋ'ର ଡରଭୟ ନାହିଁ ।

କେତେଦିନ କେତେରାତି ଚାଲିବାକୁ ପଡ଼ିଲା । କେତେ ଆପଦ ବିପଦରୁ ବାବାଜି ଆମକୁ ଉଦ୍ଧାର କଲେ । କେଉଁଠି ପଥର ଗୁହାଭିତରେ, କେଉଁଠି ଗଛମୂଳେ ଆଶ୍ରୟ ନେଇ ରାତି କଟାଇଲୁଁ । ବାଘ ଭାଲୁଙ୍କର ଭୟ ତ ସବୁବେଳେ ଥାଏ । ନିକାଏ ପତର ଖଡ଼ ଖଡ଼ ହେଲେ ଭୟରେ ତୋତେ ଛାତିରେ ଜାକିଧରେଁ । ତୋର ପିତା ବିଜୟମଲ୍ଲଙ୍କର ଚରଣ ଦର୍ଶନ କରିବାର ବ୍ୟାକୁଳତା ମୋ'ର ପଥଶ୍ରାନ୍ତି ଦୂର କରେ ।

ଆମର ଆହାର ଥିଲା ଫଳ ମୂଳ । ତୋତେ କେବଳ ମୋର ବକ୍ଷରସ ଦେଇ ବଞ୍ଚାଇ ରଖିଲି । ଅରଣ୍ୟ ମଧ୍ୟରେ, ପାହାଡ଼ ପର୍ବତ କନ୍ଦରରେ କେବେ କେବେ ଗ୍ରେଟ ଗ୍ରେଟ ପଲ୍ଲୀରେ ମଧ୍ୟ ଆଶ୍ରା ନେଇଥିଲୁ । ସେ ସବୁ ପଲ୍ଲୀରେ ବନଗୁହା ଆଦିମ ଅଧିବାସୀ—କନ୍ଧ ବା ଶବରମାନେ ରହନ୍ତି । ବାବାଜି ସେମାନଙ୍କର ଭାଷା ଜାଣନ୍ତି । ସେମାନେ ସ୍ନେହୀ, ବିଶ୍ୱାସୀ ଓ ପରୋପକାରୀ । ସେମାନଙ୍କର ମୁଖର ଭାଷା ଯିନା ମୁଁ ବୁଝେ ନାହିଁ, ସେମାନଙ୍କର ହସ, ଠାର ଓ ବ୍ୟବହାର ହିଁ ମନର ଭାଷା ବୁଝାଇ ଦିଏ । ଶବର-ଜନନୀମାନେ ତୋତେ କୋଳରେ ଧରନ୍ତି, ସ୍ତନ୍ୟ ପାନ କରାନ୍ତି । ସମସ୍ତଙ୍କର ସ୍ନେହ ଓ ଆଶୀର୍ବାଦ ନେଇ ଆମେ ଆଗେଇ ଚାଲୁ, ପୁଣି ଅରଣ୍ୟ ମଧ୍ୟରେ ପ୍ରବେଶ କରୁଁ ।

ସେଠିରେ କେତେଦିନ ବିତିଗଲା । ଦିନେ ସନ୍ଧ୍ୟାବେଳେ ଆମେ ଆସି ପୁଣ୍ୟତୋୟା ମହାନଦୀ କୂଳରେ ପହଞ୍ଚିଲୁ । ବାବାଜୀ ନଦୀର ଆର ପାଖକୁ ଅଙ୍ଗୁଳି ନିର୍ଦ୍ଦେଶ କରି ମୋତେ ଦେଖାଇ କହିଲେ, ଜୟନ୍ତ, ନଦୀର ସେ ପାଖରେ ଯେଉଁ ନଭଶ୍ଚୁମ୍ବୀ ଅଟ୍ଟାଳିକା ଦେଖୁଛ, ସେହି ହେଉଛି ଗଜପତି ମହାରାଜା ପ୍ରତାପ ନରସିଂହ ଦେବଙ୍କର ପ୍ରାସାଦ । ସୁଦୂର ପ୍ରସାରୀ କଳିଙ୍ଗ ରାଜ୍ୟର ରାଜଧାନୀ ବାରାଣସୀ କଟକର ଶୋଭା ନଦୀ ଏ ପାଖରୁ ମନୋରମ ଦେଖାଯାଉଛି ।

ବାପ, ସେତେବେଳେ କଟକର ଶୋଭା ଦେଖି ମୁଗ୍ଧ ହେବାକୁ ମୋର ଧୈର୍ଯ୍ୟ ନ ଥିଲା । ଗଜପତିଙ୍କ ରାଜଧାନୀ ବାରାଣସୀ, ଏତିକ ଶୁଣିବା ମାତ୍ରେ ଦୁଇଆଖି ସଜଳ ହେଲା । କ୍ଲାନ୍ତ ମନ, କ୍ଲାନ୍ତ ଦେହ ଆହୁରି ଅବଶ ହୋଇ ଆସିଲା । ବଜ୍ରମଲ୍ଲ, ମୋର ଦେବତା ବଜ୍ରମଲ୍ଲ ଜୀବନର ଧ୍ରୁବତାରା ସତେ କି ଆଗରେ ଆସି ଉଭା ହେଲେ । ଏହି ବାରାଣସୀ ତାଙ୍କର କର୍ମକ୍ଷେତ୍ର । ବାରାଣସୀ ମୋର ମହାତୀର୍ଥ ଭୂମି ! ଏହିଠାରେ ତାଙ୍କର ଚରଣ ଦର୍ଶନ କରିବ ଏଇ ଆଶାରେ କେତେ କଷ୍ଟ ସହି ମୁଁ ଧାଇଁଆସିଛି । ଅବଶ୍ୟ ଦେଖା ହେବ । ତୋର ଠିକ ମୂର୍ତ୍ତି ଦେଖି ନିଜକୁ ସେ ଚହ୍ନିବେ । ଯେଉଁ ରତ୍ନ ମୁଦ୍ରିକା ସେ ମୋ ବାମ ଅଙ୍ଗୁଳିରେ ପିନ୍ଧାଇ ଦେଇଥିଲେ ସେହି ମୁଦ୍ରିକା ଦେଖିଲେ ଅତୀତ ଜୀବନ୍ତ ହୋଇ ତାଙ୍କ ଆଗରେ ଠିଆହେବ । ସେ ତୋତେ କୋଳକୁ ନେବେ ।

ବାବାଜି ଆସି କହିଲେ, ଦୂରରୁ ଯେଉଁ ନୌକାଟି ଆସୁଛି, ସେଇଥିରେ ବସି ନଦୀ ପାରହେବା ।

ପଗ୍ଗୁରିଲି, ଆମେ ଆଶ୍ରୟ ନେବା କେଉଁଠି ? ଜୟନ୍ତ ମୋର କେତେ ଦୁଃଖ ସହିଲାଣି ।

ସେ କହିଲେ, ଆଶ୍ରୟ ନେବାକୁ ଭଗବାନଙ୍କର ବିରାଟ ବିଶ୍ବରେ ସ୍ଥାନର ଅଭାବ ହେବ ନାହିଁ । ଅରଣ୍ୟ ମଝିରେ, ପର୍ବତ କନ୍ଦରେ, କନ୍ଧ ଶବରଙ୍କର ପର୍ଣ୍ଣ କୁଟୀରରେ, ବଣ୍ୟ ଜନ୍ତୁଙ୍କର ଗହ୍ବର ଭିତରେ ଯେଉଁ ଦୟାମୟ ଆଶ୍ରୟ ଦେଉଛନ୍ତି, ଆଶୀର୍ବାଦର ଘଣ୍ଟଘୋଡ଼ାଇ ଜୀବନ ରକ୍ଷା କରୁଛନ୍ତି, ତାଙ୍କର କରୁଣାରୁ ଅବଶ୍ୟ ଆଶ୍ରା ମିଳିବ । ଗଜପତିଙ୍କର ରାଜଧାନୀରେ ଆଶ୍ରା ମିଳିବ ନାହିଁ, ଏପରି ଆଶଙ୍କା କର ନାହିଁ । ଆସ ଜୟନ୍ତ, ନୌକା କୂଳରେ ଲାଗିଲାଣି । କେତେ ଆଡ଼ର କେତେ ପନ୍ଥାରି ନଦୀ ପାରିହେବାକୁ ଆଗେଇ ଯାଉଛନ୍ତି । ଆସ—

ତୋତେ ଗ୍ରୀବରେ ଜାକ ନୌକା ଆଡ଼କୁ ଗଲି ।

ଆମକୁ ନେଇ ଚୋଟିଏ ଶ୍ରେଷ୍ଠ ଧର୍ମଶାଳାରେ ପହଞ୍ଚିଲେ । ଘରଟି ବାରାଣସୀ ସହରର ବହିର୍ଦ୍ଦେଶରେ ନିର୍ଜନ ସ୍ଥାନରେ । ମହାନଦୀର ଶାଖାନଦୀ କାଠଯୋଡ଼ୀ ଉଗ୍ରବେଗରେ ତାର ସମ୍ମୁଖରେ ପ୍ରବାହିତ । ଧର୍ମଶାଳାର ଗୃହପାଖେ ଘଞ୍ଚ ଅରଣ୍ୟ । ନା, ଅରଣ୍ୟ ନୁହେଁ ତ, ଉପବନ, ନନ୍ଦନ କାନନ, ଅତି ମନୋରମ । ନାନାଜାତିର ଫଳ ପୁଷ୍ପ ବୃକ୍ଷ ଲତା ସେହି କାନନର ରୂପ ବର୍ଦ୍ଧନ କରୁଛନ୍ତି ।

ଦିନ ପରେ ଦିନ ଗଡ଼ିଯିବାକୁ ଲାଗିଲା । ଯେଉଁ ଉଦ୍ଦେଶ୍ୟରେ ମୋର କୋଳର ଶିଶୁଟିକୁ ନେଇ ଘରଗୁଡ଼ି ଦାଣ୍ଡର ଭିଖାରିଣୀ ହୋଇ ଶେଷକୁ ଧର୍ମଶାଳାରେ ଆଶ୍ରା ନେଲି, ସେ ଉଦ୍ଦେଶ୍ୟ ପୂରଣ ହେଲା ନାହିଁ ତ । ବାବାଜି କିଛି କହିଲେ ନାହିଁ । ମୁଁ ନିଜେ ସେ ବିଷୟରେ କେତେ ଭାବେ, ଛଟପଟ ହୋଇ ସମୟ କଟାଏ; କିନ୍ତୁ ବାବାଜିଙ୍କୁ କିଛି କେବେ ପଚାରିବାକୁ ସାହସ କରେ ନାହିଁ । ନିଜର ଚିନ୍ତାରେ ମୁଁ ପୋଡ଼ିଜଳି ହୋଇ ମରୁଥାଏ । ମନ ବେଶି ଖରାପ ହେଲେ ତୋତେ ସଙ୍ଗରେ ନେଇ ନଈକୂଳକୁ ଯାଇ ବୁଲେ, ମନ ଭୁଲାଇବାକୁ ଚେଷ୍ଟା କରେ ।

ଦିନେ ଦିପହରେ ତୋତେ ସଙ୍ଗରେ ନେଇ କାଠଯୋଡ଼ୀ କୂଳରେ ବୁଲୁଛି, କେଉଁଠୁ ବାବାଜି ଆସି ପାଖରେ ପହଞ୍ଚିଲେ । ତାଙ୍କୁ ଦେଖି ମୋର ମନରେ କ୍ରୋଧ ଉଠିଲା । ମୁଁ ଧୈର୍ଯ୍ୟଚ୍ୟୁତ ହୋଇ ପଚାରିଲି, କେତେଦିନ ଆଉ ବ୍ୟର୍ଥ ଆଶାରେ ବଞ୍ଚି ରହି ପାରିବି ? ଦୂରରେ ଥିଲି, ତାଙ୍କର ସ୍ମୃତିକୁ ମନରେ ଧରି ବେଳ କାଟୁଥିଲି । ପାଖକୁ ଆସି ମଧ୍ୟ ଦେଖା ହେଲା ନାହିଁ ।

ତାଙ୍କର ମୁହଁ ମଳିନ ହେଲା । ସେ ନିଶ୍ଚୟ ମୋର ପ୍ରାଣର ବେଦନା ବୁଝି ପାରିଲେ । କହିଲେ, ସତି ! ସ୍ୱାମୀ ଯଦି ଅପରାଧୀ ହୁଏ, ସ୍ତ୍ରୀର କର୍ତ୍ତବ୍ୟ କଣ ଜାଣ ?

ମୁଁ ଉତ୍ତର ନ ଦେଉଣୁ ସେ କହିଲେ, ଧୈର୍ଯ୍ୟଧରି ସହିବ । ବିଜୟମଲ୍ଲ ତମ ନିକଟରେ ଅପରାଧ କରିଛନ୍ତି । ସେ ଅନ୍ୟ ବିବାହ କରିଛନ୍ତି । ସେ ପତ୍ନୀ ଓ ନବଜାତ କନ୍ୟାଟିକୁ ଧରି ସୁଖରେ ସଂସାର କରୁଛନ୍ତି । ସେ ତୁମକୁ ଭୁଲି ଯାଇଛନ୍ତି ।

ଗଭୀର ଦୁଃଖରେ ମୋତେ ପୃଥିବୀ ଶୂନ୍ୟ ଦେଖାଗଲା । ମୋର ମୁଖରୁ କଥା ବାହାରିଲା ନାହିଁ । ଯାହାଙ୍କୁ ଜୀବନର ସର୍ବସ୍ୱ ଅର୍ପଣ କଲି, ଯାହାଙ୍କ ପାଇଁ ସହସ୍ର ଯାତନା, ଲକ୍ଷ ଅପମାନ ସହି ଅପବାଦର ବୋଝ ଜାଣି ଜାଣି ମୁଣ୍ଡକୁ ଟାଣି ନେଇ ଲୋକମୁଖରେ, ସଂସାର ଚକ୍ଷୁରେ କଳଙ୍କିନୀ ହେଲି, ସତକୁ ସତ ସେହି ବିଜୟମଲ୍ଲ ମୋ ନିକଟରେ ପ୍ରତାରଣା କରିଛନ୍ତି ! ଯାହାଙ୍କୁ ଦେବତା ମଣି ଯାହାଙ୍କର ସ୍ମୃତିକୁ ଏତେ ପବିତ୍ର ବୋଲି ଦିନେ ଶୟନେ ସ୍ୱପନେ ନାମଟିକୁ ଜୀବନର ଜପାମାଳି କରିଥିଲି, ସେ ମୋତେ ଠକିଛନ୍ତି ! କାନ ସିନା ଶୁଣିଲା ବାପ, ହୃଦୟ ବିଶ୍ୱାସ କରିବାକୁ ଝଟପଟ ହେଉଠିଲା ।

ବାବାଜି କହିବାକୁ ଲାଗିଲେ, ତୁମର ଦୁଃଖ କରିବାର କାରଣ ନାହିଁ । ପୁରୁଷ ପ୍ରକୃତି ଏହିପରି ଚଞ୍ଚଳ । ନାରୀ ତୁମେ, ବିଜୟମଲ୍ଲଙ୍କ ଛଡ଼ା ତମର ଅନ୍ୟଗତି ଆଉ ନାହିଁ । ତାଙ୍କର ଚରଣତଳେ ତମକୁ ଆଶ୍ରୟ ନେବାକୁ ପଡ଼ିବ ।

ମୁଁ ରାଗିଯାଇ କହିଲି, ଆପଣଙ୍କର ଉପଦେଶ ଶୁଣିବାର ଧୈର୍ଯ୍ୟ ଆଉ ମୋର ନାହିଁ । ଆଉ ବିଳମ୍ବ ନ କରି ଚାଲନ୍ତୁ ଫେରିଯିବା ।

ଫେରିଯିବ ? ଫେରିବ କେଉଁଠିକି ?

ଯେଉଁଠାରୁ ଆସିଥିଲି ।

ସେଠାରେ ତମର କିଏ ଅଛି ? କେହି ନାହିଁ, କେବଳ ପ୍ରଲୋଭନ ଛଡ଼ା । ଜୟନ୍ତ ! ପ୍ରଲୋଭନ ମଧ୍ୟଦେଇ ନରକକୁ ବାଟ ପଡ଼ିଥାଏ, ଏହା କଣ ତମେ ଜାଣ ନାହିଁ ? ପୁରୁଷ ତ ଶତ ବିବାହ କରିପାରେ । ସେ ସ୍ୱାଧୀନ, ସେ ନିଷ୍କଳଙ୍କ । ବିଜୟମଲ୍ଲ ଏକମାତ୍ର ବିବାହ କରିଛନ୍ତି ତମକୁ ଛାଡ଼ି । ଲକ୍ଷ୍ମୀ ସରସ୍ୱତୀଙ୍କ ପରି ତୁମେ ଦୁଇଜଣ କଣ ଗୋଟିଏ ଦେବତାର ସେବା କରିପାରିବ ନାହିଁ ? ସଂସାରରେ ତ ଏପରି ଦୃଷ୍ଟାନ୍ତର ଅଭାବ ନାହିଁ ଜୟନ୍ତ ! ସପତ୍ନୀ ବୋଲି ଯଦି ଜଣେ ନାରୀକୁ ନିଜର କରି ସ୍ୱଗୁଣରେ କିଣି ନେବାର ଶକ୍ତି ତମର ନାହିଁ, ସ୍ୱାମୀକୁ ପରିତ୍ୟାଗ କରି ଜଟିଳ ସଂସାରର ଶତ ପ୍ରଲୋଭନ ଭିତରେ ସହସ୍ର ଲୋକଙ୍କୁ ଆପଣାର କରି ଚଳିବ କିପରି ? ଧୈର୍ଯ୍ୟଧର । ମଣିଷ ଜାଣି ଜାଣି ହେଉ କି ଅଜାଣତରେ ହେଉ ଥରେ ଯେଉଁ ଭୁଲ କରେ, ତାର ଫଳ ତାକୁ ଭୋଗିବାକୁ ପଡ଼େ ଆଜୀବନ । ସନ୍ଧି-ଯୌବନର ପ୍ରାରମ୍ଭରେ ଉତ୍ତେଜନାକୁ ଆୟତ୍ତ କରି ନ ପାରିଲେ, ଅପରିଣତର ପଦତଳେ ନିଜକୁ ସମର୍ପିଦେଲେ ଅପବାଦ, ଅପମାନ, ଦୁଃଖ ଓ ଅନୁଶୋଚନା ଜୀବନରେ ଅବଶ୍ୟ ଆସିବ । ପରମ ପିତା ଭଗବାନଙ୍କ ନିକଟରେ ତୁମେ ଦୁଃଖ ଜଣାଅ । ସ୍ୱାମୀଙ୍କୁ ଅବଶ୍ୟ ଫେରିପାଇବ ।

ମୁଁ ମୂକ ପରି ସବୁ ଶୁଣିଲି । ପ୍ରତିବାଦ କରି ପଦେ କହିବାର ସାହସ ମୋର ହେଲା ନାହିଁ । ବାବାଜି ତୋର ହାତଧରି ମୋ ପାଖରୁ ଟିକିଏ ଆଗକୁ ଚାଲିଗଲେ । ମୁଁ କାଠଯୋଡ଼ୀର ଜଳକୁ ଚାହିଁ ଅଳପ ହସିଲି । ସେ ଜଳ ଗଭୀର, ନୀଳ ଓ ନିର୍ମଳ । ସେ ଜଳ ଶୀତଳ ଓ ଶାନ୍ତ । ସେଇ ମୋତେ କୋଳରେ ସ୍ଥାନ ଦେଇ ପାରିବ ତ, ମୋ ଦେହ ଓ ମନର ଜ୍ୱାଳାକୁ ହରଣ କରି ପାରିବତ । ଭାବିଲି, ଆଉ ଦୁଃଖ କରିବି ନାହିଁ ।

ଦୁଇଦିନ କଟିଗଲା । ମୋର ସମୟ କିପରି କଟିଲା ମୁଁ ଜାଣେ ନାହିଁ । ଗୋଟାଏ ନିର୍ଜୀବ ପିତୁଳା ପରି ମୁଁ ଆତଯାତ ହୁଏ । ଶିଶୁଟିର ଜୀବନ ବଞ୍ଚାଇବାକୁ କାମ କରେ । ଅବସର ପାଇଲେ ନଈକୂଳରେ ବସି ତାର ଜଳରେ ପ୍ରତିଫଳିତ ଆକାଶକୁ ଚାହିଁ ବେଳ କାଟେ । ଭାବେ, କାଠଯୋଡ଼ୀର ସ୍ୱଚ୍ଛ ସଲିଳ ମୋତେ ନିମନ୍ତ୍ରଣ କରୁଛି । ତାଅରି କୋଳରେ ଆଶ୍ରା ନେବି । ତଥାପି, ଅପେକ୍ଷା କରେ ।

ବାବାଜି ଆସି କହିଲେ, ଜୟନ୍ତ, ବିଜୟମଲ୍ଲ କିଏ ଜାଣ ?

ମୁଁ ଆକୁଳ ଦୃଷ୍ଟିରେ ପଚାରିଲା ପରି ତାଙ୍କର ମୁହଁକୁ ଚାହିଁଲି ।

ସେ କହିଲେ, ବିରାଟ କଳିଙ୍ଗ ଭୂଖଣ୍ଡର ମହା କ୍ଷମତାଶାଳୀ ସମ୍ରାଟ୍ ପ୍ରତାପ ନରସିଂହ ଦେବଙ୍କର ସୁବିଖ୍ୟାତ ପ୍ରଧାନ ସେନାପତି । ସମ୍ରାଟଙ୍କର ଏକମାତ୍ର ସନ୍ତାନ ଇନ୍ଦିରା ଦେବୀଙ୍କୁ ସେ ବିବାହ କରିଛନ୍ତି ।

ମୋର ଶୂନ୍ୟ ମସ୍ତିଷ୍କ ଭିତରେ ଯେତେ କି ପ୍ରଳୟର ଶିଖା ଜଳିଉଠିଲା । ମୁଁ କ୍ରୋଧରେ ଅନ୍ଧ ହୋଇ ବାବାଜିଙ୍କୁ କହିଲି, ତମର କି ଅପରାଧ କରିଥିଲି ମୁଁ ଅର୍ଜୁନ ଭାଇ, ଜାଣି ଜାଣି ତୁମେ ମୋତେ କାହିଁକି ଯନ୍ତ୍ରଣାର ମଝିକୁ ଟାଣି ଆଣିଲ ? ମୋତେ ହାସ୍ୟାସ୍ପଦ କରିବାର ଅଧିକାର ତମର ନାହିଁ । ବୃଥା ଆଶା ଦେଇ ମୋତେ ମୋ ଘରୁ ଆଣି ଅପମାନରେ ଗୋଡ଼ିଛ । ତା ପରିବର୍ତ୍ତେ ଆତ୍ମହତ୍ୟା କରିବାକୁ ଉପଦେଶ ଦେଲ ନାହିଁ କାହିଁ କି ?

ସେ ହସିଲେ, ମୋର ମନେ ହେଲା ତାଙ୍କର ସେଇ ହସରେ ତୀକ୍ଷ୍ଣ ଛୁରିକା ଲୁଚି ରହିଥିଲା । ମୋ ଛଟପଟ ମନରେ ବାରମ୍ବାର ଆଘାତ କଲା । ଭାବିଲି ସେ ଉପହାସ କରୁଛନ୍ତି । ପ୍ରତିଶୋଧ ନେବାକୁ ମୋତେ ପଥଶ୍ରାନ୍ତ କରାଇ ଏତେ ଦୂରକୁ ନେଇ ଆସିଛନ୍ତି । ସୂଚାଇ ଦେଉଛନ୍ତି ଯେ, ମୁଁ ଭୁଲ କରିଛି । ଅର୍ଜୁନ ଭାଇର ମନପ୍ରାଣର ଢାଳିଲା ପ୍ରେମକୁ ପ୍ରତ୍ୟାଖ୍ୟାନ କରି ଅପରିଚିତକୁ ବରଣ କରିଛି । ସେଇଥି ପାଇଁ ସେ ଆଜି ସନ୍ନ୍ୟାସୀ । ତାଙ୍କର ଦୟା, ଉଦାରତା ଓ ମହାନୁଭୂତି କେବଳ ବଦ୍‌ଲା ପର ରୂପାନ୍ତର ।

ମୁଁ କହିଲି, ବିଜୟମଲ୍ଲ ରାଜାର ଜାମାତା । ବିଜୟମଲ୍ଲ ଦେଶର ସେନାପତି । ସ୍ୱପ୍ନପରି ଗଡ଼ ବିଜୟ ସଙ୍ଗେ ସଙ୍ଗେ ନିଶ୍ଚୟ ମୋତେ ସେ ପାଶୋରି ପକାଇଛନ୍ତି । ଏହିପରି କେତେ ବିଜୟ ସେ କରିଥିବେ । କେତେ କଇଁନ୍ତୀର ସର୍ବନାଶ କରି ଦିନକ ପରେ ସେ ଭୁଲି ଯାଇଥିବେ । ପୁରୁଷ ସେ, ସ୍ୱାଧୀନ ଓ ନିଷ୍କଳଙ୍କ । ମୋର କର୍ତ୍ତବ୍ୟ କଠଯୋଡ଼ୀର ଦୂରର ଶୀତଳ ବକ୍ଷରେ ଅଶ୍ରୟ ନେବା । ମୁଁ କାହିଁକି ରାଜ-ଦୁହିତାର ପ୍ରତିଦ୍ୱନ୍ଦ୍ୱୀ ହୋଇ ଦେଶର ସେନାପତି ରାଜାର ଜାମାତାର ଚରଣ ତଳେ ଅଶ୍ରୟ ଲୋଡ଼ିବି ? ସେ ଅଧିକାର, ସେ ଇଚ୍ଛା ମୋର ନାହିଁ । ଚାଲ ଅର୍ଜୁନ ଭାଇ, ଫେରି ଚାଲ ।

ମୁଁ କାନ୍ଦି ପକାଇଲି । ମୋର କାନ୍ଦ ଦେଖି ତୁ ମଧ୍ୟ କାନ୍ଦିଲୁ । ନଦୀ କୂଳଟିକୁ ମୁଖରିତ କଲୁ ତୋର କାନ୍ଦଣା ସ୍ୱରରେ ।

ତୋତେ କୋଳକୁ ନେଇ ବାବାଜି କହିଲେ, କାନ୍ଦନା କଇଁନ୍ତି, ହତାଶ ହୁଅନା । ହତାର ଦୁଃଖ ଭଗବାନ ସହି ପାରନ୍ତି ନାହିଁ । ଜାଣ, ବିଜୟମଲ୍ଲ ପ୍ରଥମେ ବିବାହ କରିଥିଲେ ତୁମକୁ, ପରେ ବାଧ୍ୟ ହୋଇ ସେ ରାଜକନ୍ୟାଙ୍କୁ ବିବାହ କଲେ । ଏହି କଳଙ୍କରେ ଓ ଏହି ଅପରାଧ ପାଇଁ ସେ ତୁମକୁ ଦେଖିବାକୁ ଓ ଆଣିବାକୁ ଯାଇ ପାରି ନାହାନ୍ତି । ସେ ଅଟେ ତୁମର । ଇନ୍ଦିରା ତୁମରି ସ୍ୱାମୀକୁ, କଇଁନ୍ତିର ପିତାକୁ

ବିବାହ କରିଛନ୍ତି । ତମର ସ୍ୱାମୀ ରାଜାର ଜାମାତା, ଦେଶର ସେନାପତି, ଏହା କଅଣ ତମ ପକ୍ଷରେ ଗୌରବର ବିଷୟ ନୁହେଁ ?

ଭାବିଲି, ଅର୍ଜୁନ ଭାଇ ପୁଣି ଉପହାସ କରୁଛନ୍ତି । ମୋ ମନର ଜଳନ୍ତା ଅନଳରେ ଘୃତାହୁତି ଦେଉଛନ୍ତି । ପ୍ରତିବାଦ କରିବାକୁ ମୋର ସାହସ ନ ଥିଲା । ମୁଁ ତଳକୁ ମୁହଁ ପୋତି କହିଲି, ସେ ମୋତେ ପାଶୋରି ପକାଇଛନ୍ତି । ମୋତେ ଗ୍ରହଣ କରିବେ କାହିଁକି ? ମୁଁ କେଉଁ ଭରସାରେ ତାଙ୍କ ସଙ୍ଗେ ଦେଖା କରିବାକୁ ଯିବି ?

ବାବାଜି ମୋ କଥାର ଉତ୍ତର ନ ଦେଇ ପଚାରିଲେ, ଯଦି ସେ ତୁମକୁ ନ ଚିହ୍ନନ୍ତି ଓ ଗ୍ରହଣ ନ କରନ୍ତି, ତେବେ କଣ କରିବ ବିଚାରିଛ ?

କହିଲି, ମୁଁ ଜାଣେ ନାହିଁ । ସେତେବେଳେ ଯାହା ବୁଦ୍ଧି ଦଶିବ କରିବ ।

ପଚାରିଲେ, ମହାରାଜ ନରସିଂହ ଦେବଙ୍କ ସମ୍ମୁଖରେ ଅଭିଯୋଗ କରିବ ?

ପାରିବ ନାହିଁ ସନ୍ନ୍ୟାସି ।

କାହିଁକି ? ତମ ପ୍ରତି ବିଜୟମଲ୍ଲ ଅନ୍ୟାୟ ଓ ଅବିଚାର କରିଛନ୍ତି । ତାହାର ବିରୁଦ୍ଧରେ ଅଭିଯୋଗ କରିବାର ଅଧିକାର ତମର ଅଛି ।

କହିଲି, ସ୍ୱାମୀର ବିରୁଦ୍ଧରେ ଅଭିଯୋଗ, ରାଜଦରବାରରେ ? ଅସମ୍ଭବ କଥା କହୁଛ । ସେ ନ ଚିହ୍ନନ୍ତୁ ପଛେ, ମୋତେ ଗ୍ରହଣ ନ କରନ୍ତୁ, ସେ ମୋର ଦେବତା । ମୋର ଜୟନ୍ତର ଜନକ । ତାଙ୍କ ବିରୁଦ୍ଧରେ ରାଜ ସମ୍ମୁଖରେ ତ ସାମାନ୍ୟ କଥା, ଭଗବାନଙ୍କ ନିକଟରେ ମଧ୍ୟ ଅଭିଯୋଗ କରି ପାରିବ ନାହିଁ । ତାଙ୍କର ଅକଲ୍ୟାଣ ହେବ । ମନରେ ଦୁଃଖ ହେବ କି ଅନୁଶୋଚନା ଆସିବ ଏ ଭାବନା ମୁଁ ମନକୁ ଆଣି ପାରିବ ନାହିଁ । ଯେଉଁ ଅଙ୍ଗୁରୀୟ ମୋତେ ଉପହାର ଦେଇଥିଲେ, ଅତି ଯତ୍ନରେ ତାକୁ ମୁଁ ସାଇତି ରଖିଛି । ତାକୁ ଦେଖିଲେ ସେ ଚିହ୍ନିବେ ନାହିଁ କି ?

ତଥାପି ଯଦି ନ ଚିହ୍ନନ୍ତି ରାଜକନ୍ୟା ଇନ୍ଦିରାଙ୍କ ଆଗରେ ଅଭିଯୋଗ କରିବ, ନା, ଅନୁଯୋଗ କରିବ । କହିବ ତମର ସ୍ୱାମୀଙ୍କର ଏହି ଶିଶୁ ପୁତ୍ରଟିକୁ ଚରଣରେ ଆଶ୍ରୟ ଦିଅ ଦେବୀ, ଏତିକି ମୋର ମାଗୁଣି । ନାରୀ ସେ, ମୋ ଅନ୍ତରର କଥା ନିଶ୍ଚୟ ବୁଝିବେ । ବିଜୟମଲ୍ଲଙ୍କର ପୁତ୍ର ଏଇ ଶିଶୁଟି ସିଂହର ସନ୍ତାନ । ତୁମର ପୁତ୍ର ସେ ।

ତୁମେ କାହିଁକି ତାଙ୍କ ନିକଟରେ ଆଶ୍ରୟ ନ ଲୋଡ଼ିବ ?

କ୍ଷମା କରନ୍ତୁ ସନ୍ନ୍ୟାସି, ସେତିକି ମୁଁ କରି ପାରିବ ନାହିଁ । ମୋର ସ୍ୱାମୀର ଦ୍ୱିତୀୟ ପତ୍ନୀର ଅନୁଗତା ହୋଇ, ତାରି ଦୟାଧୀନା ହୋଇ ରହିବାକୁ ମୋର

ମନର ବଳ ନାହିଁ । ଦରିଦ୍ରର କନ୍ୟା ମୁଁ ହୋଇପାରେ; ତଥାପି ସପତ୍ନୀର ସେବିକା ମୁଁ ହୋଇପାରିବି ନାହିଁ ।

ତେବେ, ତୁମର ଏହି ସୁଦୀର୍ଘ ଜୀବନ କଟାଇବ କିପରି ?

ଯେଉଁ ପରମେଶ୍ୱରଙ୍କର ଆଶ୍ରା ନେଇ ମୋର ଅର୍ଜୁନ ଭାଇ ତାର ସୁଦୀର୍ଘ ଜୀବନ ବିତାଇବ ବୋଲି ସାହସ କରି ବ୍ରହ୍ମଚାରୀ ହୋଇଛନ୍ତି, ମୁଁ ତାଙ୍କର ଆଦର୍ଶ ଅନୁସରଣ କରିବି । ମୋର ସ୍ୱାମୀ ପୁତ୍ରଙ୍କର ମଙ୍ଗଳ କାମନାରେ ପରମ ପିତା ପରମେଶ୍ୱରଙ୍କର ସେବା କରି ଆଜୀବନ ବ୍ରହ୍ମଚାରିଣୀ ହୋଇ ରହିବି ।

ଶାପରେ, ସାମାନ୍ୟ ଉତ୍ତେଜିତ ହୋଇ କହିଦେଲି ସିନା, ମୋର ଆଖିରୁ ଅଶ୍ରୁଧାର ବହି ଆସିଲା । ଲୋତକର ବାଦଲ ଭେଦ ଦୃଷ୍ଟି ଫେରିଗଲା କାଠଯୋଡ଼ି ନଦୀର ବକ୍ଷକୁ । କଅଁଳା ସୂର୍ଯ୍ୟର ନରମ ଆଲୋକରେ ସୁନୀଳ ସଲୀଳ ଉଜ୍ଜ୍ୱଳ ଦିଶୁଛି । କଳ କଳ ଛଳ ଛଳ ହୋଇ ସତେ କି ମତେ ଆହ୍ୱାନ କରୁଛି । ଚାଲିଆ ମୋର କୋଳକୁ ଆଲୋ ହତଭାଗିନି ! ଏଇ ମୋର କୋମଳ ଶୀତଳ ଉଦାର କୋଳରେ ତୋ ପରିକା କେତେ ଦୁଃଖିନୀ କାମିନୀ ଦୁନିଆର ନିର୍ଯାତନା ସହି ନ ପାରି ଆତ୍ମଗୋପନ କରିଛନ୍ତି । ଆ, ଚାଲିଆ ।

ମୋ ମନକଥା ଅର୍ଜୁନ ଭାଇ ବୁଝିଲେ ନାହିଁ । ତୁଣ୍ଡର କଥା ଶୁଣି ତାଙ୍କର ନୟନ ଉଜ୍ଜ୍ୱଳ ଦିଶିଲା । ସେ ହସି ହସି କହିଲେ, ଶୁଣ ଜୟନ୍ତୀ, ବିଜୟମଲ୍ଲ କାଲି ଏଠାକୁ ଆସିବାକୁ କହିଛନ୍ତି । ବୋଧହୁଏ ସେ ଆସିବେ ।

ମୁଁ ଅଧୀର ହୋଇ ପଚାରିଲି, ବିଜୟମଲ୍ଲ ଆସିବେ ? ମୋତେ ସେ ଭୁଲି ନାହାନ୍ତି ତେବେ ? ବାବାଜି, ସତ କୁହ··· । ମୋର କଣ୍ଠ ରୁଦ୍ଧ ହୋଇଆସିଲା । ଆନନ୍ଦ ଓ ଉତ୍‌କଣ୍ଠାରେ ଦେହ ଥରିଉଠିଲା ।

ବାବାଜି କହିଲେ, ତୁମେ କିଏ ସେ ଏହା ଜାଣନ୍ତି ନାହିଁ । ମୁ ସେ ବିଷୟ ତାଙ୍କୁ କହି ନାହିଁ । ସେ ଦୟାର ଅବତାର । ମୋର ଅନୁରୋଧ ରକ୍ଷା କରି ସେ ଅବଶ୍ୟ ଏଠାକୁ ଆସିବେ ।

ଉଦ୍‌ବିଗ୍ନ ହୋଇ ପଚାରିଲି, କଣ କହି ତାଙ୍କୁ ଏଠାକୁ ଆଣୁଛ ବାବାଜି ?

ବାବାଜି କହିଲେ, ଗୋଟିଏ ନିରାଶ୍ରୟା ବାଳିକା ଓ ତାର ସନ୍ତାନକୁ ଘରେ ଆଶ୍ରୟ ଦେବାକୁ ଭିକ୍ଷାକଲି । ସେ ପ୍ରତିଶ୍ରୁତି ଦେଇଛନ୍ତି ନିଜେ ଆସିବେ ।

ଏତିକି କହି ବାବାଜି ମୋ ପାଖରୁ ଚାଲିଗଲେ । ମୁଁ ତୋତେ କୋଳକୁ ଆଣି ତୋର ମୁଖ ଚୁମ୍ବନ କଲି । ଭାବିଲି, ମୋର ପୁଅ ତାର ପିତାର ମୁହଁ ଦେଖିବ । ମୋର ଆନନ୍ଦର ଆଉ ସୀମା ରହିଲା ନାହିଁ ।

ସେହି ମୁହୂର୍ତ୍ତରୁ ମୋର ମନରେ କେତେ ଚିନ୍ତାର ସ୍ରୋତ ଛୁଟିଲା । ସ୍ୱାମୀ ମୋର ଆସିବେ, ଦୀର୍ଘ ପାଞ୍ଚବର୍ଷ ତପସ୍ୟା ପରେ ତାଙ୍କର ଚରଣ ଦର୍ଶନ କରିବି । ମୋ ଠାରୁ ବଳି ଭାଗ୍ୟବତୀ ଆଉ କିଏ ଅଛି ? ଗୋଟିଏ ନିରାଶ୍ରୟା ବାଳିକା ଓ ତାର ସନ୍ତାନକୁ ଘରେ ଆଶ୍ରୟ ଦେବାକୁ ଯିଏ ଦୟାରେ ବିଗଳିତ ହୋଇ ନିଜେ ଆସି ନେଇଯିବାକୁ ବାକ୍ୟ ଦେଇଛନ୍ତି, ସେ କଣ ତାଙ୍କର ସ୍ତ୍ରୀ ପୁତ୍ରକୁ ଜାଣୁ ଜାଣୁ ବାଟରେ ଛାଡ଼ି ଚାଲିଯିବେ ? ଚାଲି ଯିବାକୁ ଛାଡ଼ି ଦେବ କାହିଁକି ? ତାଙ୍କର ଚରଣ ତଳେ ତାଙ୍କର ଶିଶୁ ପୁତ୍ରଟିକୁ ଅର୍ପଣ କରି ମୁଁ ସବୁ ଦୁଃଖ ବର୍ଣ୍ଣନା କରିବି । ଲୋତକ ଧାରରେ ପଦ ପଖାଳିଦେବି । ସେ କଣ ଗୋଡ଼ରେ ଆଡ଼େଇ ଦେବେ ?

ରାତି ପାହିଲା । ସବୁଦିନ ପରି ସେ ଦିନ ମଧ୍ୟ ବିଶ୍ୱ କୋଳାହଳମୟ ହୋଇ ଉଠିଲା । ବଣମଲ୍ଲୀର ଫୁଲଗୁଡ଼ିକ ହସି ହସିକା ଶୁଭ ସକାଳକୁ ଅଭିନନ୍ଦନ ଜଣାଇଲେ । ଶୀତଳ ମୃଦୁ ସମୀରଣ ବୃକ୍ଷଲତାର ଅଙ୍ଗ ଦୋହଲାଇ ନୂତନ ଦିବସର ଶୁଭାଗମନ ଜଣାଇଲେ । ବିହଗର କାକଳି ଓ କାଠଯୋଡ଼ୀର କୁଳୁକୁଳୁଧ୍ୱନିରେ ଧର୍ମଶାଳା ମୁଖରିତ ହୋଇଉଠିଲା । ସବୁ ପୁରାତନ, ସବୁ ନୂତନ ଓ ଚିରନ୍ତନ !

ବାପ, ମୋର ଆଖିକି ସବୁ ନୂଆ ଦିଶିଲା । ଉଜ୍ଜ୍ୱଳ ଦିବାଲୋକରେ ମୁଁ ଦେଖିଲି ବିଷାଦର ମଳିନତା ଦେଖିଲି । ବିଶ୍ୱର ଶୁଭ କୋଳାହଳରେ ଶୁଣିଲି ଗଭୀର ବ୍ୟଥାର ରାଗିଣୀ । କୁସୁମର ପବିତ୍ର ହସରେ ଉପଲବ୍ଧି କଲି ଉପହାସର ଛଳନା । ବିହଗର କୋମଳ କୂଜନ ମୋର କର୍ଣ୍ଣକୁ ତିକ୍ତ ଲାଗିଲା । ଅନ୍ତର ଅଜଣା ବ୍ୟଥାରେ ଭାବଗ୍ରସ୍ତ ହେଲା । ମୁଁ ଆକୁଳ ଦୃଷ୍ଟିରେ ଶିଶିରସିକ୍ତ ପ୍ରକୃତିକୁ ଚାହିଁଲି । ଆଖିକୋଣ ମୋର ସିକ୍ତ ହୋଇ ଆସିଲା ।

ଦି ପହରରେ, ସେହି ଧର୍ମଶାଳାର ଗୋଟିଏ କୋଠରୀରେ କାନପାରି ଆଖିବୁଜି ଶୋଇଛି । ନିଦ ହୋଇନାହିଁ । ବାହାରେ ପତ୍ରଟିଏ ଖଡ଼ ଖଡ଼ ହେଲେ ଆଖି ମେଲି ଚାହୁଁଛି, ସେ ଆସିଲେ କି ? ଅଧୀର ହୋଇ ପଦାକୁ ଉଠିଯାଇ ଦେଖେ, କେହି ନାହିଁ । ପୁଣି ଫେରିଆସି ଆଖି ବୁଜି ଶୋଇବାକୁ ଚେଷ୍ଟାକରେ । ତୋର ନିଦ୍ରିତ କପାଳରେ ହାତମାରି ତୋତେ ବାରମ୍ବାର ଗେଲ କରୁଥାଏ । ଗତ ରାତିର ଅନିଦ୍ରା ହେତୁ କେତେବେଳେ ମୋତେ ନିଦ ହୋଇଗଲା, ମୁଁ ଜାଣେ ନାହିଁ ।

ବାପ, ଯେତେବେଳେ ମୋର ନିଦ ଭାଙ୍ଗିଲା, ଦେଖିଲି ତୁ ମୋର ପିଠିକି ଆଉଜି ବସିଛୁ । ତୋ ମୁହଁଟି ଶୁଖି ଯାଇଛି । ଆଖିରେ ଲୁହ ଟଳ ଟଳ ହେଉଛି । ତୋତେ କୋଳକୁ ନେଇ ହାତ ପାପୁଲିରେ ତୋର ଆଖି ପୋଛି ପଚାରିଲି, କାନ୍ଦୁଛୁ କାହିଁକି ଧନ, ଭୋକ ଲାଗିଛି କି ?

ତୁ ମୋର ବେକରେ ଓହଳପଡ଼ି କହିଲୁ, ବୋଉ, ବାପା ଆସିଥିଲେ ଯେ !

ମୁଁ ଚମକି ଉଠିଲି । ତୋତେ ପଚାରିଲି, କିଏ ଆସିଥିଲେ ?

ତୁ ଓଠ ଥରାଇ କହିଲୁ, ସେ ଯେଉଁ ବାପା ଆସିବେ ବୋଲି ବାବାଜି କହୁଥିଲେ, ସେହିପରି ଘୋଡ଼ାଚଢ଼ି ଆସିଥିଲେ ଲୋ । ମୁଁ ଏଇ ବାଟରେ ଖେଳୁଥିଲି ।

ତୋ ମୁହଁରେ ଏଇ ବାପା କଥାଟି ଶୁଣି ମୋର ପେଟ ପୂରିଗଲା । ତୋତେ କୋଳକରି ପଚାରିଲି, ସେ କାହାନ୍ତି ରେ, କୁଆଡ଼େ ଗଲେ ।

ତୁ ପୁଣି ଗୁଲୁ ଗୁଲୁ କରି କହିଲୁ, ସେଇ ଗଛରେ ଘୋଡ଼ା ବାନ୍ଧି ସେ ତଳେ ବସିଲେ । ମତେ କେତେ କଥା ପଚାରିଲେ, ପୁଣି ଘୋଡ଼ା ଚଢ଼ି ଚାଲିଗଲେ ।

ମତେ ଉଠାଇଲୁ ନାହିଁ ବାପ ?

ଉଠେଇଲି ପରା, ସେ ଦୁଆର ମୁହଁରେ ଠିଆ ହୋଇଥାନ୍ତି । ତତେ କେତେ ଡାକିଲି ତ, ତୁ ଉଁ ଉଁ କଲୁ, ଉଠିଲୁ ନାହିଁ ତ, ସେ ଫେରିଗଲେ ।

ମୋତେ ସେ ଦେଖିଛନ୍ତି, ହଇରେ ?

କେଜାଣି ସେତ ଏଇଠି ଠିଆ ହେଲେ । ତୁ ଦ୍ୱାରବନ୍ଧ ପାଖକୁ ଯାଇ ତାଙ୍କର ଠିଆ ହୋଇଥିବା ସ୍ଥାନଟି ଦେଖାଇ ଦେଇ କହିଲୁ, ଏଇଠି ପରା ।

ମୁଁ ଲଜ୍ଜିତ ହେଲି, ସେ କଣ ଆଉ ଚହ୍ନି ପାରିଛନ୍ତି !

ମୁଁ ପଚାରିଲି, କେତେବେଳେ ସେ ଫେରିଲେ ?

ତୁ କହିଲୁ, କେତେବେଳୁ ମ, ଖରା ଥିଲା ତ !

ସନ୍ଧ୍ୟା ହୋଇ ଆସିଥିଲା । ତୋତେ କାଖକରି ପଦାକୁ ନେଇ ଆକୁଳ ଦୃଷ୍ଟିରେ ରାଜପଥକୁ ଚାହିଁଲି । ଭାବିଲି ଏଇ ବାଟରେ ସେ ଯାଇଛନ୍ତି । ଫେରି ଆସିବେ କି ? ଚାହିଁ ଚାହିଁ ଆଖିରୁ ପାଣି ମଲା, କେହି ଫେରିଲେ ନାହିଁ । ସନ୍ଧ୍ୟା ହେଲା, ଏକାଦଶୀର ଉଜ୍ଜ୍ୱଳ ଜହ୍ନଟି ପୂର୍ବଦିଗର ଗଛଗହଳି ଭିତରୁ ଉଠି ଆସୁଥାଏ । ତୋତେ ସଙ୍ଗରେ ନେଇ ନଈକୂଳକୁ ଗଲି ।

ଶୀତଳ ବାୟୁ ଲାଗି ମୋର ଚଞ୍ଚଳ ମନ ଟିକିଏ ଶାନ୍ତ ହେଲା । ତୋତେ ଏଣୁ ତେଣୁ କେତେ କଥା କହି ଭୁଲାଇ ପଚାରିଲି, ତୋତେ ସେ କଣ କହିଲେ ଧନ ?

ତୁ ଖୁସିହୋଇ କହିଲୁ, ସେ ପଚାରିଲେ, ବାବାଜି କାହାନ୍ତି ? ମୁଁ କହିଲି, ସେ ନାହାନ୍ତି, ବୋଉ ଅଛି । ସେ ମୋ ମୁହଁକୁ ଘଡ଼ିଏ ଚାହିଁଲେ, ମୁଁ ତାଙ୍କୁ ପଚାରିଲି ତେବେ କଣ ମୋ ବାପା ?

ତୁ କାହିଁକି ପଚାରିଲୁ ?

କାହିଁକି, ମାଆ ତ ତତେ କହୁଥିଲେ, ମୋ ବାପା ଆସିବେ । ସେ କଣ ମୋ ବାପା ନୁହେଁ ?

ହଁରେ, ହଁ, ସେଇ ତୋର ବାପା । ସେ କଣ କହିଲେ ରେ ?

କିଛି ନାହିଁ, ମୋ ହାତକୁ ଧରି ପୁଣି ମୋ ମୁହଁକୁ ଚାହିଁଲେ ।

ତୁ ଡରିଲୁ ନାହିଁ ।

କାହିଁକି ? ବାପାମାନଙ୍କୁ କଣ ଡରନ୍ତି ?

ନା, ନା, ଡରନ୍ତି ନାହିଁ, ସେଇଠୁ ?

ସେ ମୋ ହାତ ଛାଡ଼ିଲେ । ମୁଁ ଧାଇଁ ପଳେଇଆସିଲି, ତତେ ଉଠେଇଲି, ଉଠିଲୁ ନାହିଁ । ସେ ଠିଆହୋଇଲେ । ମତେ କିଛି କହିଲେ ନାହିଁ । ଘୋଡ଼ା ଚଢ଼ି ଫେରିଗଲେ ।

ଆନନ୍ଦରେ ତୋତେ ଆଲିଙ୍ଗନ କଲି । ମୋର ଆଖି ଖୋଲିଗଲା, ଗୃହ ପାରିବାରିକ ଶିଶୁଟି ତୁ, ତୋର ଯେ ସବୁକଥା ବୁଝିବାର ଶକ୍ତି ହୋଇଛି ଏହା ଜାଣିପାରି ମୋତେ ଖୁସି ଲାଗିଲା । ଭଗବାନଙ୍କୁ ଡାକିଲି, ତୋତେ ସେ ଆଇଷ ନିହାତ ଦିଅନ୍ତୁ ।

ମୋର ଅପ୍ରୀତିକର ଘଟଣା ।

ଆଶା ନିରାଶା, ସୁଖ ଦୁଃଖ ଉତ୍ତେଜନାରେ ପୂର୍ଣ୍ଣ । କେବଳ ମୋର ଜୀବନ କାହିଁକି, ତୋର ଜୀବନ ଉପରେ ସେହି ଘଟଣାର ପ୍ରଭାବ ଅଳ୍ପ ନୁହେଁ । ଗୋଟାଏ ସାଧାରଣ ଉତ୍ତେଜନା ଫଳରୁ ଆଜି ମୁଁ ତପସ୍ୱିନୀ ହୋଇ ତାଙ୍କର ସ୍ମୃତିକୁ ପୂଜା କରିବାକୁ ବସିଅଛି । ତୋତେ ମଧ୍ୟ ଅନାଥ କରି ତୋର ପ୍ରାକୃତିକ ବୁଦ୍ଧି ବୃତ୍ତି ବିକାଶରେ ଅନ୍ତରାୟ ହୋଇଛି । ଯଦି ସେହି କ୍ଷଣିକ ଉତ୍ତେଜନାକୁ ଦମନ କରି ସେହି ପାନ୍ଥଶାଳାରେ ଆଉ ଦଣ୍ଡେ ପ୍ରହର ଅପେକ୍ଷା କରି ରହିପାରି ଥାନ୍ତି, ତେବେ ଗ୍ରାମବାସୀ ତୋତେ ଜାରଜ କହି ଉପହାସ କରିବାକୁ ଭରସା କରି ନ ଥାନ୍ତେ ।

ବାପ, ସେହି ନଦୀକୂଳରେ ବସି କେତେ କଣ ଭାବିଲି, ସେ ତୋତେ ଦେଖି ତୋର କଥା ଶୁଣି ଏପରି ନିର୍ବାକ୍ ଭାବରେ ଚାହିଁ ରହିଲେ କାହିଁକି ? ତୋ ମୁଖ, ତୋ ଅବୟବ ଚାହିଁ, ତୋର ଠାରେ ତାଙ୍କ ରୂପର ଛଟା ଦେଖି ମୁଁ ଯେପରି ତୋତେ ଚାହିଁ ରହେଁ, ଅନ୍ତର ଭିତରେ ଅସୀମ ତୃପ୍ତିର ଆନନ୍ଦ ଅନୁଭବ କରେଁ, ସେ କଣ ଆଉ ସେହିପରି ତୋର ରୂପ ଭିତରେ ମୋର କିଛି ଲକ୍ଷ୍ୟ କରୁଥିଲେ ? ମୋର ନିଦ୍ରିତ ମୁଖ ଦେଖି ମନର ଦ୍ୱନ୍ଦ୍ୱ ଭାଙ୍ଗିବାକୁ ସେ କଣ ଦ୍ୱାରବନ୍ଧ ପାଖରେ

ଠିଆହୋଇ ମୋତେ ଚାହିଁଥିଲେ ! ସେ ତେବେ ଜାଣିଛନ୍ତି, ଜାଣି ମଧ୍ୟ ଅପେକ୍ଷା ନ କରି ତାଙ୍କର ପରିଣୀତା ପତ୍ନୀକୁ ଉପେକ୍ଷାକରି ଚାଲି ଯାଇଛନ୍ତି । ଅବିଶ୍ୱାସ, ପ୍ରତାରଣା ? କିଛି ସ୍ଥିର କରିପାରିଲି ନାହିଁ । ଦୁଃଖରେ, କ୍ଷୋଭରେ, ଅଭିମାନରେ ମୋର ମନ ଛିନ୍ନ ହୋଇଉଠିଲା । ସୁନିର୍ମଳ ଚନ୍ଦ୍ରକାସ୍ନାତ ପ୍ରକୃତିର ସୌନ୍ଦର୍ଯ୍ୟ, ମୃଦୁ ସାନ୍ଧ୍ୟ ସମୀରର କୋମଳ ଶୀତଳ ସ୍ପର୍ଶ, ଦୂର ଅବଗୁଣ୍ଠନବତୀ ଶ୍ୟାମ ବନାନୀର ଶୁଭ ଆହ୍ୱାନ ସବୁ ମୋତେ ବିଷପରି ଲାଗିଲା । ମୁଁ ତୋତେ ସଙ୍ଗରେ ନେଇ ପାନ୍ଥଶାଳାକୁ ଫେରିଲି ।

ପାନ୍ଥଶାଳା ନିକଟକୁ ଆସି ଦେଖିଲି, କିଏ ଜଣେ ଘର ଆଗରେ ଧୀରେ ଧୀରେ ଠହଲୁଛନ୍ତି । ମନେ କରିଥିଲି ବାବାଜି, ଟିକିଏ ପାଖକୁ ଆସି ଦେଖିଲି ସେ ନୁହନ୍ତି, ନିଶ୍ଚୟ ଆଉ କେହି । ଆଉ କିଏ ? ଛାତି ଭିତର ମୋର ଦମକି ଉଠିଲା । ମୁଁ ଗୋଟିଏ ଗଛକୁ ଆଉଜି ଠିଆ ହୋଇରହିଲି ।

ଏଡ଼ିକି ନିର୍ଦ୍ଦୟ, ଏଡ଼ିକି ଦୁଷ୍ଟ ତୁ, ମୋତେ ଅପେକ୍ଷା ନ କରି କିଛି ନ କହି ତାଙ୍କ ପାଖକୁ ସିଧା ସିଧା ଚାଲିଗଲୁ । ବିମଳ ଜ୍ୟୋତ୍ସ୍ନାଲୋକରେ ସବୁ ସ୍ପଷ୍ଟ ଦେଖା ଯାଉଥାଏ । ତୋତେ ମୁଁ ବାଧା ଦେଲିନାହିଁ । ବାଧା ଦେଇ ପାରିଲି ନାହିଁ । ଗୋଟାଏ ଅଧୀର ଅସ୍ପଷ୍ଟ ଚିନ୍ତାର ଛାୟା ମୋର ମନଟାକୁ ଘୋଡ଼ାଇ ରଖିଲା । ମୁଁ ଏକ ଚକ୍ଷୁରେ ତୋର ଶିଶୁ-ସାହସ ଦେଖିବାକୁ ତନ୍ମୟ ହୋଇ ଚାହିଁ ରହିଲି ।

ତୁ ତାଙ୍କ ନିକଟରେ ହେଲାରୁ ସେ ତୋତେ ଦେଖି ଠିଆ ହେଲେ, ତୁ ମଧ୍ୟ ଠିଆ ହୋଇ ରହିଲୁ । ମୁଁ ଚାହିଁଲି, ଜ୍ୟୋତ୍ସ୍ନାଲୋକରେ ତାଙ୍କର ମୁହଁଟି ଠିକ୍ ଚିହ୍ନି ହେଉଥାଏ, ବିଜୟ ମୋର ଚିର ଆରାଧ୍ୟ ଦେବତା, ତୋର ପିତା ବିଜୟମଲ୍ଲ । ଚିହ୍ନନ୍ତି ନାହିଁ ? କେତେ ଜ୍ୟୋତ୍ସ୍ନାରାତି ତାଙ୍କରି ସଙ୍ଗେ ମହାନଦୀ କୂଳରେ ବୁଲିଛି । ବର୍ଷ ଆଉଣୁ ସେ ସୁନ୍ଦର ମୁହଁଟିକୁ ଭୁଲି ପାରନ୍ତି କେମିତି ? ଦେଖିଲି, ସେ ଦିନ ଯାହା ଆଜି ମଧ୍ୟ ସେଇଆ । ଟିକିଏ ପରିବର୍ତ୍ତନ ନାହିଁ । ମୁଁ ମୁଗ୍ଧ ଚକ୍ଷୁରେ ତାଙ୍କର ଚନ୍ଦ୍ରିକା-ଧୌତ ମୁହଁଟିକୁ ଚାହିଁ ରହିଲି ।

ତୁ ତାଙ୍କୁ ଚିହ୍ନିପାରି ଆନନ୍ଦରେ ଚିତ୍କାର କରି କହିଲୁ, ହଇଲୋ ବୋଉ, ସେଇ ବାପା ଆଇଚି । ଛୁଟି ପଳାଇ ଆସିବାକୁ ଦୁଇପାଦ ଆଗକୁ ଆସିଛୁ, ସେ ବିଜୁଳି ବେଗରେ ଆସି ତୋତେ ଧରି ଶୂନ୍ୟେ ଶୂନ୍ୟେ ଉଠାଇନେଲେ । ତୋତେ ଛାତିରେ ଭିଡ଼ିଧରି ତୋର ନଗ୍ନ ଦେହକୁ ହାତରେ ଆଉଁସିବାକୁ ଲାଗିଲେ । ପିତା ପୁତ୍ରର ସେହି ପ୍ରଥମ ମିଳନ ଦେଖି ମୁଁ ନିର୍ବାକ୍ ନିସ୍ପନ୍ଦ ହୋଇ ରହିଲି ।

ସେ ତୋତେ ସେହିପରି ଧରି ମୋ ପାଖକୁ ଆସି ମୋ ଆଗରେ ଠିଆ ହେଲେ । ଇଚ୍ଛା ହେଲା ତାଙ୍କର ଦୁଇପାଦ ଧରି, କେତେ କଣ କହିଯିବି । ଗୋଡ଼

ଚାଲିଲି ନାହିଁ । ପୂର୍ବପରି ଗଛକୁ ଆଉଜି ଠିଆହୋଇ ରହିଲି । ଦୁଇ ଆଖିରେ ଲୋତକ ପୂର୍ଣ୍ଣ ହୋଇଗଲା । ମୁଁ ତାଙ୍କ ମୁହଁକୁ ଚାହିଁ ମଧ୍ୟ ଭଲକରି ଦେଖି ପାରିଲି ନାହିଁ ।

ସେ ଆକୁଳ କଣ୍ଠରେ ଡାକିଲେ, ଜୟନ୍ତ !

ମୋର ପେଟ ଭିତରୁ କୋହ ଉଠିଲା । ମୁଁ ନିରୁତ୍ତର ରହିଲି ।

ସେ ଭଗ୍ନ କଣ୍ଠରେ କହିଲେ, ଜୟନ୍ତ, ମୁଁ ତମ ନିକଟରେ ଅପରାଧୀ । କ୍ଷମା ପାଇବାର ଆଶା ମୋର ନାହିଁ । ତଥାପି, କ୍ଷମା ମାଗୁଛି । ସେ ଟିକିଏ ତୁନି ରହି ପୁଣି କହିଲେ, ପ୍ରତ୍ୟେକ ଦୋଷର କୈଫିୟତ୍ ଥାଏ ପ୍ରିୟେ; ମୋର ଦୋଷର ମଧ୍ୟ କୈଫିୟତ୍ ଅଛି । ତମକୁ ମୁଁ ଭୁଲି ନାହିଁ, କିନ୍ତୁ ତମ୍ଭକୁ ମୁଁ ଅବହେଳା କରିଛି । ତମର ନ୍ୟାଯ୍ୟ ଅଧିକାରରୁ ବଞ୍ଚିତ କରିଛି । କାହିଁକି ଜାଣ ? କେବଳ ସ୍ୱାର୍ଥ ପାଇଁ ।

ଏତିକି କହି ସେ ତାଙ୍କ ଆଖିରୁ ଲୁହ ପୋଛିଲେ । କହିଲେ, ନିରୁତ୍ତର ରହୁଛ କାହିଁକି ? ତୁମେ ଶୁଣ, ଜୀବନର ଭୟରେ ମୁଁ ଏତେବଡ଼ ଅନ୍ୟାୟ କରିଛି, ତମର ଜୀବନକୁ ଦୁଃଖମୟ କରି ମୋର ଏହି ଶିଶୁଟିକୁ ଅନାଥ କରିଛି । ମୁହିଁ ପାଷଣ୍ଡ, ମୋତେ କ୍ଷମା କର ।

ଯୁଦ୍ଧରେ ସନ୍ଧି ହେଲା ପରେ ଫେରି ଯିବାକୁ ଯେତେବେଳେ ରାଜାର ଆଦେଶ ପାଏଁ, ମୁଁ ଆଉ ଅପେକ୍ଷା କରିବାକୁ ବେଳ ପାଇଲି ନାହିଁ । ତଥାପି, ଫେରିବା ପୂର୍ବରୁ ଥରେ ଦେଖା କରିବାକୁ ଯାଇଥିଲି, ଦେଖା ହେଲା ନାହିଁ । ପଥର ଉପରେ ତର ତର ହୋଇ ଦୁଇ ଚାରୋଟି ଧାଡ଼ି ଲେଖି ମୁଁ ଫେରି ଆସିଲି । ମହାରାଜାଙ୍କ ଭୟରେ ତୁମକୁ ସଙ୍ଗରେ ଆଣିପାରିଲି ନାହିଁ । ଭାବିଥିଲି, ପରେ ତାଙ୍କର ଅନୁମତି ନେଇ ତୁମକୁ ନେଇଆସିବି । ସଂସାର ଆଗରେ ତମ୍ଭକୁ ଧର୍ମପତ୍ନୀ ରୂପେ ଗ୍ରହଣ କରିବି ।

କିନ୍ତୁ ହେଲା କଅଣ ଜାଣ ଜୟନ୍ତ ? ଦେଶକୁ ବିଜୟୀ ହୋଇ ଫେରିଲା ପରେ ମହାରାଜା ମୋ ଉପରେ ସବୁ ସମ୍ମାନ ଢାଳି ଦେଲେ । ମୋତେ ସେନାପତି ପଦରେ ବରଣ କରି ତାଙ୍କର ଏକମାତ୍ର କନ୍ୟା ଇନ୍ଦିରା ଦେବୀଙ୍କ ସଙ୍ଗେ ମୋର ବିବାହ ପ୍ରସ୍ତାବ ଉଠାଇଲେ । ରାଜ୍ୟର ରାଜକର୍ମଚାରୀଙ୍କ ଠାରୁ ଆରମ୍ଭ କରି, ଦେଶଲୋକେ ସମସ୍ତେ ଏ ପ୍ରସ୍ତାବ ଶୁଣି ଖୁସି ହେଲେ । ବିବାହ ପୂର୍ବରୁ ବୃଦ୍ଧା ରାଣୀ, ମୋତେ ଜାମାତା ଚକ୍ଷୁରେ ଦେଖି, ମୋତେ ସମ୍ମାନ ଦେଖାଇଲେ । କେବଳ ଉଚ୍ଚାଶା ଲୋଭରେ, ରାଜାର ଅପ୍ରିୟପାତ୍ର ହେବା ଭୟରେ, ମୁଁ ସବୁ ବିଷୟ ଗୋପନ ରଖିଲି । ନରାଧମ ମୁଁ । ଏଣେ ଇନ୍ଦିରାଦେବୀଙ୍କ ସଙ୍ଗେ ମୋ'ର

ଘନିଷ୍ଠତା ଦିନୁଦିନ ବଢ଼ିବାକୁ ଲାଗିଲା । ଜୟନ୍ତ, ପ୍ରିୟତମେ, ଯୁବତୀର ରୂପମୋହ, ଚଳନ ଭଙ୍ଗୀ, ଯୁବତୀର ତୀବ୍ର କଟାକ୍ଷ ସହି ଧୈର୍ଯ୍ୟଧରି ରହିବା ତରୁଣ ପକ୍ଷେ ସହଜ ନୁହେଁ ।

ତମ ନିକଟରେ ଲୁଚାଇ ରଖିବାର ମୋର କିଛି ନାହିଁ । ଯେତେବେଳେ ଶେଷରେ ତମକୁ ମୁଁ ହୃଦୟରେ ଚିରଦିନ ବାନ୍ଧି ରଖିବାକୁ ଫେରି ପାଇଛି, ମୋର ଦୁଃଖ ଭବିଷ୍ୟତରେ ତମେ ସବୁ ଶୁଣିବ । ବର୍ତ୍ତମାନ ସବୁକଥା ଠିକ ଠିକ କରି ବର୍ଣ୍ଣନା କରି କହିବାକୁ ମୋର ଧୈର୍ଯ୍ୟ ନାହିଁ । ଅପରାଧୀ ପରି ମୁଁ ! ବିବେକର ତୀବ୍ର ତାଡ଼ନା ବିରୁଦ୍ଧରେ ଯୁଦ୍ଧକରି ସମ୍ମାନ ଲୋଭରେ, ରାଜକନ୍ୟାର ରୂପ ମୋହରେ, ମୁଁ ପଶୁତ୍ୱ ବରଣ କଲି ଜୟନ୍ତ, ରାଜକନ୍ୟାକୁ ବିବାହ କଲି ।

କିଛିଦିନ ପରେ ମୋର ଅନୁତାପ ମୂର୍ତ୍ତିମାନ ହୋଇ ଉଗ୍ରମୂର୍ତ୍ତି ଧରି ମୋ ଆଗରେ ଠିଆହେଲା । ଜ୍ୱଳନ୍ତ ମାନସିକ ଯନ୍ତ୍ରଣାରେ ଛଟପଟ ହୋଇ ମୋ'ର ବେଳ କଟିଲା । ସେତେବେଳେ ଆଉ ଉପାୟ କଣ ଅଛି ଜୟନ୍ତ, ମୋର ଭାବନାର ସବୁ ପଥ ରୁଦ୍ଧ ହୋଇଯାଇଛି । ମୁଁ ଯେ ତୁମକୁ ବିବାହ କରିଥିଲି, ଏକଥା ତ କେହି ଜାଣନ୍ତି ନାହିଁ । ଯଦି ଆଜି ପ୍ରକାଶ କରେ, ମୋର ଗତି ହେବ କଅଣ ? ଇନ୍ଦିରା ଭାବିବେ କଅଣ ! ରାଜା ଓ ରାଜପୁତ୍ରଙ୍କର କୋପରୁ ନିବର୍ତ୍ତି ପାରିବି ତ ? ଦେଶରେ ଯେଉଁ ନିନ୍ଦା ରଟିବ, ସେଥିକି ଭାବନା ନାହିଁ । ଆମର ଗୁପ୍ତ ବିବାହ କଥା ଜାଣିଲେ, ରାଜାର କୋପବହ୍ନି ପ୍ରଜ୍ୱଳିତ ହୋଇଉଠିବ । ଗଜପତିର କ୍ରୋଧ, ଯମର କ୍ରୋଧରୁ ଅଳ୍ପ ନୁହେଁ ଜୟନ୍ତ । ସ୍ନେହ ମମତାରେ ଜଳାଞ୍ଜଳି ଦେଇ ସେ ଅକ୍ଳେଶରେ ନିଜର ପୁତ୍ରକୁ ଶୂଳି ଖୁଣ୍ଟରେ ଚଢ଼ାଇ ପାରନ୍ତି । ମୁଁ ତ ସାମାନ୍ୟ ଲୋକଟିଏ ।

ଜୀବନ ଭୟରେ ମୁଁ ଅଦ୍ୟାପି କିଛି କାହାରି ଆଗରେ ପ୍ରକାଶ କରିନାହିଁ । ତମ ସଙ୍ଗେ ଦେଖା କରିବାକୁ ଅନେକ ସମୟରେ ମୋର ଇଚ୍ଛା ହୁଏ, ପ୍ରାଣ ମୋର ଅସ୍ଥିର ହୋଇପଡ଼େ । କିନ୍ତୁ, ତମପ୍ରତି ଯେଉଁ ଅନ୍ୟାୟ କରିଛି, କେଉଁ ସାହସରେ ମୁଁ ତମକୁ ମୋର ନିଲଜ ମୁହଁ ଦେଖାଇବି କହିଲ ?

ଏତିକି କହି ବିଜୟ ପୁଣି ଆଖିର ଲୁହ ପୋଛି କହିଲେ, ମୋତେ କ୍ଷମାକରି ଦେବ, ମୋର ପାପର ପ୍ରାୟଶ୍ଚିତ୍ତ ନାହିଁ । ଅନୁତପ୍ତ ସ୍ୱାମୀକୁ କ୍ଷମା କରିବାର ସମ୍ପୂର୍ଣ୍ଣ ଅଧିକାର ତମର ଅଛି । ମୁଁ ପାଷାଣ, ମୁଁ ମୂର୍ଖ । ଯାହା କରିଛି, ସ୍ୱାର୍ଥ ପାଇଁକରିଛି । ସେନାପତିର ଅଯୋଗ୍ୟ ମୁଁ, ବଡ଼ ଭୀରୁ, ବଡ଼ କାପୁରୁଷ ।

ସେ ପୁଣି କହିଲେ, ଦୁଃଖର ଦିନ ଆମର ଶେଷ ହୋଇଛି । ଆଜି ମୋର ଏହି ଶିଶୁ ପୁତ୍ରକୁ ବକ୍ଷରେ ଧରି ମୁଁ ମହାଶାନ୍ତି ଉପଲବ୍ଧି କରୁଛି । ରାଜା ଜାଣନ୍ତୁ, ଇନ୍ଦିରା ଜାଣନ୍ତୁ, ରାଜ୍ୟଲୋକେ ସମସ୍ତେ ଜାଣନ୍ତୁ । ମୋର ଆଉ ସେଥିକି ଭାବନା ନାହିଁ, ଭୟ ନାହିଁ । ରାଜା ଯେଉଁ ଦଣ୍ଡ ମୋ ଉପରେ ନ୍ୟସ୍ତ କରିବେ, ମୁଁ

ଅମ୍ଳାନ ବଦନରେ ତାହା ବରଣ କରିବ । ତଥାପି, ବିଶ୍ୱଆଗରେ ଜୟନ୍ତ ସଙ୍ଗରେ ମୋର ସମ୍ବନ୍ଧ ଅବଶ୍ୟ ପ୍ରକାଶ କରିବ । ପାପର ପ୍ରାୟଶ୍ଚିତ୍ତ ହେବ, ହେଉ । ମୋର ଅନୁତାପର ଅନ୍ତ ହେବ ତ । କଥା କହ ଜୟନ୍ତ, ତୁନି ରହୁଛ କାହିଁକି ?

ମୁଁ ମୋର ହୃଦୟର ଉଦ୍‌ବେଗକୁ ଅତି କଷ୍ଟରେ ଚାପି ରଖି କହିଲି, କଣ କହିବ ପ୍ରଭୁ ! କଦର୍ଯ୍ୟା ତମର ସମ୍ପୂର୍ଣ୍ଣ ଅଯୋଗ୍ୟା··· ।

ଆଉ କହିପାରିଲି ନାହିଁ ।

ସେ ତୋତେ ତଳେ ଓହ୍ଲାଇ, ମୋ'ର ହାତ ଧରି କହିଲେ, ଅଭିମାନ କରି, ମୋର ପ୍ରାଣର ଦାରୁଣ ଅନୁତାପାନଳରେ ଆଉ ଘୃତାହୁତି ଦିଅ ନା ପ୍ରିୟେ ! ବରଂ, ମୁଁ ତୁମର ଅଯୋଗ୍ୟ ସ୍ୱାମୀ । ସତୀ ନାରୀର ସ୍ୱାମୀ କହି ବିଶ୍ୱବକ୍ଷରେ ଟେକି ଅନୁଭବ କରିବାର ଭରସା ମୋ ପରି ଜଣେ ସ୍ୱାର୍ଥପର, ଲମ୍ପଟର ନାହିଁ··· । ନା, ତମର ଏହି ଦୀନହୀନ ବେଶ ଦେଖି ମୁଁ ଆଉ ସହିପାରିବ ନାହିଁ । ମୋ ପାଇଁ ଅନେକ କଷ୍ଟ ସହିଛ, ଆଉରି ଗୋଟିଏ ରାତି ସହିବାକୁ ହେବ । ମୋତେ ବିଦାୟ ଦିଅ । ମୁଁ ତୁମକୁ ଏପରି ଦୀନହୀନ ବେଶରେ ଗ୍ରହଣ କରିବ ନାହିଁ ।

ଦେବି, ଗୋଟିଏ ରାତି ଅପେକ୍ଷା କର । କାଲି ସକାଳେ, କେହି ଜାଣିବେ ନାହିଁ, ମୁଁ ଆସି ତୁମକୁ ରାଜରାଣୀର ସମ୍ମାନ ଦେଇ ନେଇଯିବ । ତାପରେ ଇନ୍ଦିରା ଜାଣନ୍ତୁ, ରାଜା ଜାଣନ୍ତୁ, ରାଜ୍ୟଲୋକେ ଜାଣନ୍ତୁ । ସେନାପତିର ଆସନରୁ ଓହ୍ଲାଇବାକୁ ହେବ, ଚିନ୍ତା ନାହିଁ । ରାଜ୍ୟ ଛାଡ଼ି ଚାଲିଯିବାକୁ ଯଦି ଆଦେଶ ହୁଏ, କ୍ଷତି ନାହିଁ । ପ୍ରାଣଦଣ୍ଡ ହେଲେ ମଧ୍ୟ ଭୟ ନାହିଁ । ତମ ପ୍ରତି ଯେଉଁ ଅନ୍ୟାୟ କରିଛି, ତାର ପ୍ରାୟଶ୍ଚିତ୍ତ କରିବାକୁ ମୁଁ କୁଣ୍ଠିତ ନୁହେଁ ଜୟନ୍ତି, ବିଦାୟ ଦିଅ ଗୋଟିଏ ରାତି ପାଇଁ । ତମର ଏ ମଳିନ ବେଶ ଦେଖି ସହିବାର ଧୈର୍ଯ୍ୟ ଆଉ ମୋର ନାହିଁ ।

ମତେ ସବୁ ସ୍ୱପ୍ନପରି ଲାଗୁଥାଏ ବାପ, ବିଜୟ ଯାହା କହୁଥାନ୍ତି, ସବୁ ଶୁଣୁଥାଏ; ମାତ୍ର ବୁଝିବାର ଶକ୍ତି ସେତେବେଳେ ମୋର ନ ଥିଲା । ସେ ଉତ୍ତେଜିତ ହୋଇ ପଡ଼ିଥିଲେ । ପାଗଳ ପରି କେତେ କଣ କହିଗଲେ । ସବୁ ଶୁଣୁଥାଏଁ,—ଏତିକି ମାତ୍ର ବୁଝିଲି ବାପ, ତାଙ୍କର ପ୍ରତ୍ୟେକ କଥାରୁ ଗଭୀର ଅନୁଶୋଚନା, ଜ୍ୱଳନ୍ତ ବ୍ୟଥା ଓ ଉନ୍ମାଦନା ଫୁଟି ଉଠୁଥାଏ । ଯେତେବେଳେ ସେ ମୋର କପାଳ ଚୁମ୍ବନ କରି, ମୋଠାରୁ ରାତିକ ପାଇଁ ବିଦାୟ ନେଇ ପାଗଳ ପରି ଅସ୍ଥିର ହୋଇ ଚାଲିଗଲେ, ମୁଁ ଉଦାସ ଚକ୍ଷୁରେ ତାଙ୍କର ଗତିପଥକୁ ଚାହିଁ ରହିଲି ।

କେତେବେଳ ଯାଏ ଶୁଇଁ ରହିଲି, ମନେ ମନେ କେତେ କଣ ଭାବିଲି, ମୁଁ କହି ପାରିବି ନାହିଁ । ତାପରେ ତୁ ମୋର କାନ ଟାଣି ପଚାରିଲୁ, ବୋଉ, ବାପା ଆଉ କେବେ ଆସିବ ?

ମୁଁ ମୋର ତନ୍ଦ୍ରା ରାଜ୍ୟରୁ ଫେରି ଆସିଲି ବାସ୍ତବ ଜଗତକୁ । ତୋତେ କୋଳରେ ଧରି ଧର୍ମଶାଳକୁ ଫେରି ଆସିଲି, ତନ୍ଦ୍ରାକୂଳ ପ୍ରାଣରେ । ତୋ'ର କଥାର ଉତ୍ତର ଦେବାକୁ ଭୁଲିଗଲି ।

ଏକାଦଶୀର ଚନ୍ଦ୍ର ପଶ୍ଚିମ ଆକାଶକୁ ଢଳିପଡ଼ିଲା । ରାତି ଅଧିକ ହେବାରୁ ତୁ ମଧ୍ୟ ନିଦରେ ମୋ କୋଳରେ ଢଳିପଡ଼ିଲୁ । ମୁଁ ପାନ୍ଥଶାଳାର ବାରଣ୍ଡା ଉପରେ ବସି ତାଙ୍କର ପ୍ରତ୍ୟେକ କଥାକୁ ଭଲ କରି ଭାବି ବୁଝିବାକୁ ଚେଷ୍ଟା କଲି । ବୁଝିଲି—ସେ ନିଶ୍ଚୟ କାଲି ଆସି ଆମ ଦୁହିଙ୍କୁ ନେଇଯିବେ । ଜଗତ୍ ଆଗରେ ସବୁ ସତ୍ୟ ପ୍ରକାଶ କରିବେ । ହୁଏ ତ ତାଙ୍କୁ ରାଜାର ବିରୋଧୀ ହେବାକୁ ପଡ଼ିବ, ମୋରି ପାଇଁ । ଫଳରେ ରାଜାର କଠୋର ଦଣ୍ଡାଜ୍ଞା ବରଣ କରିବାକୁ ହେବ ମୋରି ପାଇଁ— ।

ଅନିଶ୍ଚିତ ଆଶଙ୍କାରେ ମୋର ଛାତି ଥରିଉଠିଲା । ମୋ'ରି ପାଇଁ ତାଙ୍କୁ ଏତେ ଦୁଃଖ ବରଣ କରିବାକୁ ହେବ ? ମୁଁ ଜୀବନରେ ଥାଉଁଣୁ କପରି ତାଙ୍କର ଦୁଃଖ ଦେଖି ସବୁ ସହି, ସ୍ଥିର ହୋଇ ରହିପାରିବି ? ତାଙ୍କର ଜୀବନ ଅଶାନ୍ତିମୟ ହେବ ? ମୁଁ କାହିଁକି ଜାଣି ଜାଣି ମୋର ପ୍ରିୟତମ ସ୍ୱାମୀର ଅଶାନ୍ତିର କାରଣ ହେବି ? ହୁଏ ତ, ତାଙ୍କୁ ପାଇ ମଧ୍ୟ ରାଜାର କୋପରୁ ତ୍ରାହି ପାଇପାରିବି ନାହିଁ ।

ମୋର ସ୍ୱାମୀ ଜୀବିତ, ମୋର ସ୍ୱାମୀ ଦେଶର ସେନାପତି, ମୋର ସ୍ୱାମୀ ତାଙ୍କର ସ୍ତ୍ରୀ ପୁତ୍ର ପାଇଁ ସବୁ ବିପଦ, ସବୁ ଅପମାନ ହସି ହସି ଗ୍ରହଣ କରିବାକୁ ପ୍ରସ୍ତୁତ ! ଏଇ ତ ମୋର ଯଥେଷ୍ଟ ! ସେ ପ୍ରତାରକ ନୁହନ୍ତି, ସେ ଭୀରୁ କାପୁରୁଷ ନୁହନ୍ତି । ସେ ମୋତେ ଭଲ ପାଆନ୍ତି । ତାଙ୍କର ଅଜାଣତରେ ଜନ୍ମ ହୋଇଥିବା ତାଙ୍କର ପୁତ୍ରକୁ ସେ କୋଳକୁ ନେଇଛନ୍ତି । ତାଙ୍କର ମୋ ଉପରେ ଅକୁଣ୍ଠିତ ବିଶ୍ୱାସ । ତାଙ୍କର ପ୍ରେମ ଜୀବନ୍ତ ଓ ପବିତ୍ର । ଧନ୍ୟ ତାଙ୍କ ହୃଦୟର ବିଶାଳତା, ନରମ ମହତ୍ତ୍ୱ ।

ନା, ତାଙ୍କର ଉନ୍ନତିପଥରେ କଣ୍ଟକ ହେବି ନାହିଁ କେବେ । ମୋରିପାଇଁ ତାଙ୍କର ପାରିବାରିକ ଜୀବନକୁ ଛିନ୍ନ କରିବି ନାହିଁ । ଜାଣି ଜାଣି ସ୍ୱାମୀଙ୍କୁ ବିପଦଗ୍ରସ୍ତ କରିବି ନାହିଁ । ମୁଁ ଜାଣେ ଓ ସେ ଜାଣନ୍ତି, ସେ ମୋର ସ୍ୱାମୀ ଓ ମୁଁ ତାଙ୍କର ପତ୍ନୀ । ତ୍ୟାଗହିଁ ନାରୀର ଧର୍ମ ! ସହିବା ନାରୀର ଶ୍ରେଷ୍ଠ କର୍ତ୍ତବ୍ୟ, ତା ପୁଣି ପରପାଇଁ ନୁହେଁ, ସ୍ୱାମୀ ପାଇଁ, ଦେବତା ପାଇଁ !

ଭାବୁ ଭାବୁ ମୁଁ ଉତ୍ତେଜନାରେ ବହ୍ୱଳ ହୋଇପଡ଼ିଲି । ଅତୀତର ପୁଞ୍ଜୀଭୂତ ବେଦନା ମୋ ହୃଦୟରୁ ଅନ୍ତର୍ହିତ ହେଲା । ମୋ ମନରେ ନୂତନ ଆନନ୍ଦର ଢେଉ ଖେଳିଗଲା । ତ୍ୟାଗ, ତ୍ୟାଗ, ତ୍ୟାଗର ମହତ୍ତ୍ୱ ଦିନେ ବିଶ୍ୱ ବୁଝିବ ! ତ୍ୟାଗର ମହାମନ୍ତ୍ରରେ ବିଶ୍ୱର ଶତ ସହସ୍ର ପ୍ରାଣୀ ଦୀକ୍ଷିତ ହେବେ ମୋରି ଆଦର୍ଶ ନେଇ !

ମୁଁ ଦୀର୍ଘଶ୍ୱାସ ଛାଡ଼ିଲି । ପ୍ରାଣର ସବୁ ଦୁଃଖ କୁଆଡ଼େ ଉଭେଇଗଲା ।

ପୁଣି ଭାବିଲି, କୁଆଡ଼େ ଯିବି, କାହିଁ ବା ଆତ୍ମଗୋପନ କରିବି ? ଶିଶୁଟିର ପ୍ରାଣ ବଞ୍ଚାଇ ରଖିବି କିପରି ? ହତାଶ ହେଲି । କିପରି ବା ଯିବି ? ମୋ ସାଧନା ପଥର ସହାୟକ ହେବ କିଏ ? ଯହିଁ ଯାଏଁ ଆଜି ରାତ୍ରି ନ ପାହୁଣୁ ଯିବାକୁ ହେବ । ନୋହିଲେ ରକ୍ଷା ନାହିଁ । ସକାଳେ ବିଜୟମଲ୍ଲ ଆସିବେ । ସେ ଉତ୍ତେଜିତ ହୋଇଛନ୍ତି । ମୋ ମନକଥା ଜାଣିପାରିଲେ ମୋତେ ଆଉ ଛାଡ଼ି ଦେବେ ନାହିଁ । ସଙ୍ଗରେ ନେବେ ! ସମସ୍ତେ ଜାଣିବେ ।

ମହାରାଜା କୋପ କରିବେ, ବିଜୟମଲ୍ଲ ପ୍ରତାରଣା କରିଛନ୍ତି । ଆଗରୁ ପତ୍ନୀ ଓ ପୁତ୍ର ଥାଇ ମଧ୍ୟ ସବୁ ବିଷୟ ଗୋପନ ରଖିଛନ୍ତି । ରାଜଜେମାଙ୍କର ପାଣି ଗ୍ରହଣ କରିଛନ୍ତି । ସେ ଅପରାଧୀ । ଅପରାଧୀଙ୍କୁ କି ଦଣ୍ଡ ଦିଆଯିବ ?

ପ୍ରାଣଦଣ୍ଡ !

ମୁଁ ହେବି ମୋର ଜୀବନ ସର୍ବସ୍ୱ ପତିଙ୍କର ମରଣର କାରଣ ? ମୋର ଶିଶୁ ପୁତ୍ର ଜୟନ୍ତର ପିତୃହନ୍ତା ? ଦେହ ଥର ଥର ହୋଇ କମ୍ପିଲା । ଆତ୍ମା କୁହାଟ ଛାଡ଼ିଲା, ନା, ନା, ନା,—

କେଜାଣି କିପରି ସେ ଦିନ ବାବାଜୀ ସନ୍ଧ୍ୟାପରେ ଆସି ଉପସ୍ଥିତ ହେଲେ । ତାଙ୍କୁ ଦେଖି ମନରେ ମୋହର ସାହସ ହେଲା । ସେ ମୋତେ ଦେଖିବା ସଙ୍ଗେ ସଙ୍ଗେ ପାଖକୁ ଆସି କହିଲେ ଦେବି, ଧବଳେଶ୍ୱର ମହାଦେବଙ୍କୁ ଦର୍ଶନ କରିବାକୁ ଯାଇଥିଲି । ତୁମର ସବୁ ଦୁଃଖ ତାଙ୍କୁ ଜଣାଇଛି । ସମାଧିସ୍ଥ ହୋଇ ଧ୍ୟାନ କରୁଥିଲି । ମନେହେଲା ସ୍ୱୟଂ ଦେବ ଦେବ ମହାଦେବ ମୋ ଆଗରେ ଆସି ଦଣ୍ଡାୟମାନ ହେଲେ । କହିଲେ, ମହାସତୀ ଜୟନ୍ତୀର ମନକାମନା ପୂର୍ଣ୍ଣ ହେବ । ତାର ପୁତ୍ର ଜୟନ୍ତ ଦିନେ ରାଜଚକ୍ରବର୍ତ୍ତୀ ହେବ । ଏଇ ଦୈବବାଣୀ ତୁମକୁ ଜଣାଇ ଦେବାକୁ ଆସିଛି ।

ବାବାଜୀଙ୍କର ସ୍ନେହଶୀଳ ପ୍ରଲାପ ଶୁଣିବାକୁ ମୋର ଆଗ୍ରହ ନ ଥାଏ । କିପରି ମୋର ସ୍ୱାମୀଙ୍କର ଜୀବନ ଓ ସମ୍ମାନ ରକ୍ଷା କରିପାରିବି ସେହି କଥା ମୁଁ ଭାବୁଥାଏ । ଗୋଟି ଗୋଟି କରି ପ୍ରତ୍ୟେକ ଘଟଣା ବର୍ଣ୍ଣନା କଲି । ବାବାଜୀ

ଅତି ଆଗ୍ରହରେ ସବୁ ଶୁଣିଗଲେ । ମୁଁ ମୋର ଉଦ୍ଦେଶ୍ୟଟି ଖୋଲି କହିଲି । ସେ ବ୍ୟସ୍ତ ହୋଇ କହିଲେ, ଜୟନ୍ତ, ଯେଉଁ ତ୍ୟାଗ କରିବାକୁ ବସିଛ, ଯେପରି ସହଜ ମନେ କରୁଛ, ସେପରି ନୁହେଁ । ତମର ଉଦ୍ଦେଶ୍ୟ ଅବଶ୍ୟ ଅତି ମହତ୍; କିନ୍ତୁ ସାଧନା କରିବାକୁ ସାହସ, ଶକ୍ତି, ଧୈର୍ଯ୍ୟ ଥିଲେ ହେଲା । ପାରିବ ତ ? ଦୁଃଖ କଷ୍ଟ ସହି, ମାନାଭିମାନକୁ ଦୂରକୁ ଫିଙ୍ଗି ସନ୍ନ୍ୟାସିନୀ ହୋଇପାରିବ ?

କହିଲି, କାହିଁକି ପାରିବ ନାହିଁ ? ଯଦି ମୋର ଅର୍ଜୁନ ଭାଇ, ମୋର ପରମଗୁରୁ ମହାସନ୍ନ୍ୟାସୀ ମୋର ପଥପ୍ରଦର୍ଶକ ହୁଅନ୍ତି, ମୁଁ ତାଙ୍କର ପଛେ ପଛେ ଚାଲିବି । ମୋର ଦେବତା, ମୋର ସ୍ୱାମୀ ବିଜୟମଲ୍ଲଙ୍କର ଆତ୍ମଜ ଏଇ ଠିକ ବିଜୟମଲ୍ଲ ଜୟନ୍ତକୁ କୋଳରେ ଧରିଲେ ମଣିବି ବିଜୟ ମୋର ପାଖେ ପାଖେ ଅଛନ୍ତି । ଗୁରୁଦେବ, ମୋତେ ସହାୟ ହୁଅ । ରାତି ନ ପାହୁଣୁ ଅନ୍ୟ କେଉଁ ଗୋପନ ସ୍ଥାନକୁ ଆମକୁ ନେଇଚାଲ ।

ମୋତେ ଉତ୍ସାହିତ କରି ସେ କହିଲେ, ସାଧୁ ତମର ଉଦ୍ଦେଶ୍ୟ ଜୟନ୍ତ, ସ୍ୱାମୀର ମଙ୍ଗଳ କାମନା କରି ଯେଉଁ ନାରୀ ସ୍ୱାର୍ଥରେ ଜଳାଞ୍ଜଳି ଦେଇ ଜୀବନର ସବୁ ଆଶା ଭରସା ତ୍ୟାଗକରି ତପସ୍ୱିନୀ ହେବାକୁ ପ୍ରତିଜ୍ଞା କରେ, ନାରୀ ସମାଜରେ ସେ ଧନ୍ୟା । ଦେବଦେବ ମହାଦେବ ତାର ସହାୟ ହେବେ । ଶିଶୁଟି ପାଇଁ ଭାବନା କରୁଛ ? ଗୋଟିଏ ଶିଶୁ ? ଯେଉଁ ଭଗବାନଙ୍କର ଅପାର କରୁଣାରୁ କୋଟି କୋଟି ମାନବଶିଶୁ ସହସ୍ର ଦୁଃଖ ଦୈନ୍ୟର ମଝିରୁ ଉଠି ସେମାନଙ୍କର ଉନ୍ନତ ଶିର ଟେକି ବିଶ୍ୱବକ୍ଷରେ ବିଚରଣ କରୁଛନ୍ତି, ତାଙ୍କର ଦୟାର ଅଣୁମାତ୍ର ଲାଭ କରି ଜୟନ୍ତ କଣ ମଣିଷ ହୋଇପାରିବ ନାହିଁ ? କହିଲି ପରା, ଦେବତାଙ୍କର ଆଶୀର୍ବାଦରୁ ଦିନେ ଜୟନ୍ତ ରାଜଚକ୍ରବର୍ତ୍ତୀ ହେବ । ଆତ୍ମଗୋପନ କରିବାକୁ ସ୍ଥାନ ଖୋଜୁଛ ଜୟନ୍ତ ? ପରମପିତା ପରମେଶ୍ୱରଙ୍କ ରାଜ୍ୟରେ କଣ ସ୍ଥାନର ଅଭାବ ଅଛି ?

ତାଙ୍କର ଉତ୍ସାହବାଣୀ ଶୁଣି ମନରେ ସାହସ ହେଲା । କୃତଜ୍ଞତାରେ ତାଙ୍କର ପଦତଳେ ମୁଣ୍ଡ ଲଗାଇ କହିଲି, ଗୁରୁଦେବ, ନାରୀ ମୁଁ, ଅତି ଦୁର୍ବଳା, ନିଃସହାୟା, ଅଜ୍ଞାନମାତ୍ର । ଭଗବାନଙ୍କର ଉଦ୍ଦେଶ୍ୟ ପୂର୍ଣ୍ଣ କରିବାକୁ ମୋର ହୃଦୟରେ ବଳ ଦିଅ । ମୋତେ, ଆଲୋକ ଦେଇ ପଥ ଦେଖାଅ । ମୁଁ ମୋର ନୀରବ କର୍ମରେ ବ୍ରତୀ ହେବାକୁ ସାହସୀ ହୁଏଁ ।

ସେ ହାତ ଉଠାଇ ବିହ୍ୱଳ ସ୍ୱରରେ କହିଲେ, ଆଶୀର୍ବାଦ କରୁଛି, ତମ ମନକାମନା ପୂର୍ଣ୍ଣ ହେଉ— ।

ତୋତେ କାଖରେ ପକାଇ ପାନ୍ଥଶାଳା ପଶ୍ଚାତ୍ୟାଗ କରିବାକୁ ବାବାଜୀଙ୍କର ଅନୁସରଣ କଲି । ମୋର ଚକ୍ଷୁ ଆର୍ଦ୍ର ହୋଇଆସିଲା । ହୃଦୟରେ ତୀବ୍ର ବେଦନା ଅନୁଭବ କଲି । ଆହା, ମୋର ପ୍ରାଣର ଦେବତା ବିଜୟଙ୍କୁ ପାଇ ପୁଣି ଜାଣି ଜାଣି ଛାଡ଼ି ଯାଉଛି କେତେ ଦୁଃଖରେ । ଜୀବନରେ କଣ ତାଙ୍କର କରର ମଧୁର ସ୍ପର୍ଶ ଏ ଅଧୀର ବ୍ୟଥିତ ହୃଦୟ ଅନୁଭବ କରିବ ନାହିଁ ? ଜୀବନଟା କି ଖାଲି ଆକୁଳ ପ୍ରତୀକ୍ଷାର ଜ୍ୱାଳାମୟ ବେଦନାରେ ପୂର୍ଣ୍ଣ ହୋଇରହିବ ? କେବଳ ଅତୀତ ଜୀବନର ବିଫଳ ଗୀତ ହୃଦୟର ପ୍ରତ୍ୟେକ ତନ୍ତ୍ରୀରେ ଗୁମରି ଉଠୁଥିବ ଚିରଦିନ ?

ଦୁଇ ଆଖିରୁ ମୋର ଅଶ୍ରୁଧାର ନିର୍ଗତ ହେଲା ।

ଏକାଦଶୀର ଚନ୍ଦ୍ର ଦିଗ୍‌ବଳୟ କୋଳରେ ମୁହଁ ଲୁଚାଇଲେ । ପୃଥିବୀ ଅନ୍ଧାର ହେଲା । ସେହି ଅନ୍ଧକାର ଭିତରେ ଚକ୍ଷୁର ଲୋତକ ଲୁଚାଇ ଲୁଚାଇ ବାବାଜିଙ୍କର ପଛେ ପଛେ ଚାଲିଲି, ନିର୍ମଳ ଆକାଶରେ ଫୁଟିଥିବା ଲକ୍ଷ ତାରକାର ଅସ୍ପଷ୍ଟ ଆଲୋକରେ ।

ଏହି ନଡ଼ିଆ କୁଟୀରଟିରେ ନାନା ଦୁଃଖର ଆଘାତ ସହି ପନ୍ଦରଟି ବର୍ଷ କଟିଗଲାଣି । ତୋର ମୁଖ ଦେଖି, ତୋର କଥା ଶୁଣି, ତୋର ସେବାକରି ସବୁ ଦୁଃଖ ଭୁଲି ସମୟ କଟାଇଛି । ତଥାପି ଧନ, ବିଜୟଙ୍କର ସ୍ମୃତି ମୋର ଜୀବନକୁ ସବୁବେଳେ ଆବୋରି ରହିଛି । ବେଳେ ବେଳେ ଭାବେଁ ଜୀବନଟି କି କେବଳ ପ୍ରତୀକ୍ଷାରେ କଟିବ !

ଜୟନ୍ତର ଦୁଇ ଆଖିରୁ ଅଶ୍ରୁଧାର ଝରିଆସିଲା । ସେ ଜନନୀର ଦୁଇ-ପାଦରେ ମସ୍ତକ ଲଗାଇ କଇଁ କଇଁ ହୋଇ କାନ୍ଦି ଉଠିଲା । ଜୟନ୍ତୀ ତାକୁ ତଳୁ ଉଠାଇଲେ । ମୁଖ ଚୁମ୍ବନ କରି କହିଲେ, ଦୁଃଖୀଧନ ମୋର, ତୋ ପିତାର ଜୀବନ ଓ ସମ୍ମାନ ରକ୍ଷା ପାଇଁ ତୋତେ ମୁଁ ଦୁଃଖ ଅପମାନରେ ବୁଡ଼ାଇ ରଖିଛି । ଏବେ ବି ବୃଦ୍ଧ ମହାରାଜ ଜୀବିତ ଅଛନ୍ତି । ପରିଚୟ ଦେଲେ ଏବେ ବି ତୋ' ପିତାର ଅନିଷ୍ଟ ହୋଇପାରେ ।

ଜୟନ୍ତ କହିଲା, ମୋର ସ୍ନେହମୟୀ ଜନନୀଙ୍କର ଇଚ୍ଛା ହିଁ ମୋର କର୍ତ୍ତବ୍ୟ ।

ସେ ପୁଣି ଜୟନ୍ତୀଙ୍କର ପଦତଳେ ମଥା ନତ କଲା ।

ସେ ବର୍ଷ ଭାରି ଶୀତ ପଡ଼ୁଥାଏ । ଫଗୁଣ ମାସ । ବେଳ ଦ'ଘଡ଼ି ପାହି ହୋଇଗଲାଣି । ମା ସକାଳୁ ଉଠି ଗଉଡ଼ ଘର ଅମାର ଲିପିବାକୁ ଚାଲିଗଲା । ରାତିରେ ଅନେକ ଉପାସ ଥାଉଁ । ଘରେ ଶଗଡ଼ ଧୋଇବାକୁ ପାଣି ଟୋପାଏ ବି ନ ଥାଏ । କୂଅରୁ ଦ'ଟା ପାଣି ଆଣିଲେ ଯୋଗେଇ ହେବ ।

ମାଟିଆ ଦ'ଟା ଧରି ମିଶ୍ରଘର ତୋଟା ପାଖକୁ ଆସିଲି ଶୀତରେ । ଦେହ ଥରୁଥାଏ । ପିନ୍ଧିଥାଏ ଖଣ୍ଡେ କୋଚଟ ମଇଳା ସାତଟାଇଣ୍ଡା ଦରବା । ସେତିକି ମୋ'ର ସମ୍ବଳ । ମା'କୁ କେତେଥର କହିଲଣି, କିନ୍ତୁ ସେ ବା କରିବ କ'ଣ ? ହାତରେ ପଇସା ନାହିଁ । ଦେଖିଦା ଖଣ୍ଡେ ମାଗିଲେ କେହି ଦେଉ ନାହାନ୍ତି । ଶୀତଦିନ । ମଣିଷଙ୍କର ଛିଣ୍ଡା କନାକୁ ଆଶା । ରାତିଟା ହେଁସ ମସିଣା ଘୋଡ଼ି ହୋଇ କଟେ । ସକାଳେ ଚଳିବ କିପରି ? ଘରୁ ନ ବାହାରିଲେ ବି ହେବ ନାହିଁ । କାମ କରିବାକୁ ହିଁ ପଡ଼ିବ । ମା କହୁଥାଏ—ଫୁଲ, ଏଡ଼େଟିଏ ହେଲୁଣି, ଏମିତି ଅଭେକା ହୋଇ କୁଆଡ଼େ ତୁ ଯିବୁ ନାହିଁ । ଘରେ ରହ । ମୁଁ ଯାଉଛି ଟୋଆଁକୁ । ତା'କଥା ମାନ ମୁଁ ଘରେ ରହେଁ । ସେଦିନ ସକାଳେ କୂଅ ପାଖକୁ ପାଣି ଆଣିବାକୁ ଗଲି । ସକାଳର ପତଳା କୁହୁଡ଼ି ଭାଙ୍ଗି ଯାଉଥାଏ । ଖରା ପଡ଼ି ନ ଥାଏ । ଘାସ ଉପରେ ପଡ଼ିଥିବା କାକର ଗୋଡ଼ରେ ଲାଗି ଦେହ ଶୀତେଇ ଉଠୁଥାଏ । କୂଅ ପାଖରେ ପହଞ୍ଚିଲି । ମାଟିଆ ଦ'ଟା ତଳେ ରଖି ଫନ୍ଦ ଉପରେ ବସି ଲୁଗାପଟା ସଜାଡ଼ିନେଲି । ଚାରିଆଡ଼େ ଖରା । ଶୀତ ସମ୍ଭାଳିବ କେଉଁଠୁ ?

କୂଅ ପାଖରୁ ପୂର୍ବପଟକୁ ଟାହାର ଲମ୍ବି ଯାଇଛି । ଆଖି ପାଏ ନାହିଁ । ଟାହାର ସେପାରି ଅନ୍ଧାରିଆ ଗଛ ଗହଳ ଉହାଡ଼ରୁ ଧୀରେ ଧୀରେ ସୂର୍ଯ୍ୟ ଉଠିଲେ । କେଡ଼େ ଖୁସି ଲାଗିଲା । ଗରିବଙ୍କର ସେ ସାହାଭରସା ।

ସୂର୍ଯ୍ୟ ଆଡ଼କୁ ପିଠି କରି ଖରା ପୁହୁଁଛି; କେତେବେଳେ କାହାର ଛାଇ ପଡ଼ିଲା ମୋ ଉପରେ । ଚମକି ଚାହିଁଲି ପଛକୁ । ମିଶ୍ରଘର ପୁଅ । ବ୍ୟସ୍ତ ହୋଇ ଉଠି ଠିଆ ହେଲି । ହାତ ଯୋଡ଼ି ଓଳଗି ହେଲି । ତାଙ୍କ ଆଡ଼କୁ ପଛ କରି ଟିକିଏ ଅଡ଼େଇଗଲି । ଲାଜରେ ସଢ଼ିଗଲି ତ । ନଙ୍ଗଳା ବୟସ ମୋର କେବଠୁଁ ଗଲାଣି । ପିଲା ଦିହଟା ଆଉ ଜାଡ଼କା ହୋଇ ଆସୁଛି । ଲୋକେ ଏଣିକି ମୁହଁକୁ ଛାଡ଼ି ଦେହକୁ ଅନାଉଁଛନ୍ତି । ଅଡୁଆ ଲାଗୁଛି । ସେ ପାଖକୁ ଆସି ପଚାରିଲେ, ଫଲ କଲେ, ସକାଳେ ଏଠି ଠାରେ ଠିଆ ହୋଇ ଶୀତରେ ଥରୁଛୁ କାହିଁକି ?

କହିଲି, ସକାଳ ହୋଇଛି ସାଆନ୍ତେ ? ରାତି କେତେବେଳୁ ପାହିଲାଣି

କୁହୁଡ଼ିଆ ଠା ହୋଇଛି ବୋଲି ବେଲ ଜଣା ପଡୁନାହିଁ । ପାଣି ନବାକୁ ଆସିଥିଲି ।
ଆପଣ କୁଆଡ଼େ ?

କହିଲେ, ତୋ ଆଡ଼େ ବୁଲି ଆସିଥିଲି । ସକାଳେ ବୁଲିବାକୁ ମତେ ଖୁସି ଲାଗେ ।

ମୁଁ ଚୁପ ରହିଲି । ସେ କେତେବେଳଯାଏ ମୋ ଆଡ଼କୁ ଚାହିଁ ରହିଲେ । କଣ ଭାବିଲେ କେଜାଣି, ପଚାରିଲେ, ତୋ'ର କ'ଣ ଲୁଗା ନାହିଁ କି, ଛିଣ୍ଡା ଲୁଗା ପିନ୍ଧି ଏମିତି ଶୀତରେ ଥରୁଛୁ ଯେ ?

ସେ ମତେ ଆଡ଼େଇ ଚାହିଁଲେ । ଲାଜରେ ଝାଉଁଳି ପଡ଼ିଲି । ସଙ୍କୁଚିତ ହୋଇ କହିଲି, ନାହିଁ ସାଆନ୍ତେ, ମୋର ଆଉ ଲୁଗା ନାହିଁ ।

ମନ ହେଉଥିଲା, ଛିଣ୍ଡା ଫୁଟା ଲୁଗା ଖଣ୍ଡେ ମାଡ଼ିବି । ପାରି ପାରୁ ନଥିଲି ନାହିଁ । ହାତ ଥରି ଉଠୁଥାଏ । ଦଉଡ଼ିର ଫାଶଟି ମାଠିଆର ବେକରେ ଲଗାଇଲି । ଶୁଣ ସାଆନ୍ତେ କହିଲେ, ଲୁଗା ନାହିଁ, ଭାରି କଷ୍ଟ ତ ହେଉଥିବ । ଆସ୍ତା ଦି'ପହରେ ଏଇ ତୋ ଠାକୁ ଆସିବୁ । ମୁଁ ବୁଲି ଆସିଲାବେଳେ ତୋ ପାଇଁ ଖଣ୍ଡେ ଲୁଗା ଆଣିଥିବ । ସେ ପଛକୁ ଚାହିଁ ଚାହିଁ ତୋଠା ଆଡ଼େ ଚାଲିଲେ । ପାଣି ଦି'ମାଠିଆ ନେଇ ଘରକୁ ଆସିଲି । ଭାବିଲି, ଶୁଣ ସାଆନ୍ତେ କେଡ଼େ ଭଲ, କେଡ଼େ ଦୟାବନ୍ତ । ସେଇଥି ପାଇଁ ଗାଁଲୋକେ ତାଙ୍କୁ ଏତେ ପ୍ରଶଂସା କରନ୍ତି । ନନ୍ଦ ମିଶ୍ରଙ୍କ ପୁଅ, ବଡ଼ ଲୋକ । ପରର ଦୁଃଖ ସହିପାରନ୍ତି ନାହିଁ ।

ମାକୁ କହିଲି । ସବୁ ଶୁଣି ସେ କହିଲା, ଦି'ପହରେ ତୋଠାକୁ ଯିବୁ ଲୋ ଫୁଲ, ସାଆନ୍ତେ ବଡ଼ଲୋକ, ତତେ ଦେଖି ତାଙ୍କର ଦୟା ହୋଇଛି । ଲୁଗା ଖଣ୍ଡେ ଦେବେ କହିଛନ୍ତି, ଭଲ ହେବ । ମା କାମକୁ ଗଲା । ଲୁଗା ଖଣ୍ଡି ଲୋଭରେ କେତେ ଆଶା କରି ମୁଁ ତୋଠାକୁ ଆସିଲି । ଅପେକ୍ଷା କରି କରି ଖରାବେଳ କଟିଲା । ସେ ଆସିଲେ ନାହିଁ । ଭାବିଲି, ଲୋକେ ସିନା ମୁହଁ ଖୋଲି ସହଜରେ କହି ଦିଅନ୍ତି, ଦେଲା ବେଳକୁ ପଛାନ୍ତି ।

ମନର ସବୁ ଭାଙ୍ଗିଗଲା । ଘରେ ଜାଳ ନାହିଁ ଭାବି ଶୁଖିଲା ଡାଳ ପତ୍ର ଗୋଟାଇ ଜମା କରୁଥାଏ । ଖରା ନେଉଟିଲା । ହତାଶ ହୋଇ ଫେରି ଆସିବାକୁ ବସିଛି, ଦେଖିଲି—ସା'ନ୍ତେ ତୋଠା ସେ ପାଖରୁ ଆସୁଛନ୍ତି । ପୁଣି ମୋର ନଭିଲା ଆଶା ଜଳିଉଠିଲା । ଆଗ୍ରହରେ ତାଙ୍କର ଆଡ଼କୁ ଚାହିଁରହିଲି । ସା'ନ୍ତେ ପାଖକୁ ଆସିଲେ । କେତେବେଳଯାକେ ମୋ ଆଡ଼କୁ ଚାହିଁ ଥଙ୍ଗେଇ ଥଙ୍ଗେଇ ପଚାରିଲେ, ତୋ ମା' କାହିଁ ଗଲେ ?

କହିଲି, ଗାଁ ଭିତରକୁ ଯାଉଛି ।

ସାଆନ୍ତେ ଗାମୁଛା ଭିତରୁ ଖଣ୍ଡେ ନୂଆ ଲୁଗା କାଢ଼ିଲେ । ହାତରେ ଧରି କହିଲେ, ନେ । ଲୁଗାଖଣ୍ଡି ଦେଖି ମୋର ଭାରି ଆନନ୍ଦ ହେଲା । ଲାଜେଇ ଲାଜେଇ ତାଙ୍କ ଆଗକୁ ଯାଇ ଦୁଇହାତ ବଢ଼ାଇଲି । ସାଆନ୍ତେ ଲୁଗାଖଣ୍ଡି ମୋ ହାତକୁ ଏପରି ଭାବରେ ପକାଇ ଦେଲେ ଯେ, ତାଙ୍କର ହାତ ମୋ ଦେହରେ ବାଜିଲା । ମୁଁ ଚମକିପଡ଼ିଲି । ମୁହଁ ଶୁଖାଇ କହିଲି, ଆପଣ ଛୁଆଁ ହେଲେ ସାଆନ୍ତେ ।

ହସିଲେ । କହିଲେ, ଷଣ୍ଢ କ'ଣ ?

ମୁଁ କହିଲି, ଆମେ ବାଉରି ଜାତି । ଆମକୁ ଛୁଇଁଲେ ଲୁଗା ବଦଳାଇବାକୁ ପଡ଼ିବ ।

ପଚାରିଲେ, ତା'ପରେ ତ ଆଉ କିଛି ଦୋଷ ରହିବ ନାହିଁ ?

କହିଲି, ନା ।

ହସ ହସ ମୁହଁରେ ମୋ ପାଖକୁ ଘୁଞ୍ଚି ଆସିଲେ । ମୁଁ କିଛି କହିବା ଆଗରୁ ମୋର ଡାହାଣ ହାତଟାକୁ ଧରି କହିଲେ, ଯଦି ଗାଧୋଇବାକୁ ପଡ଼ିବ, ତେବେ ଭଲକରି ଛୁଏଁ । ମତେ ଭାରି ଖରାପ ଲାଗିଲା । କାଳେ କିଏ ଆସିଯିବ । କହିଲି, ମା'ନ୍ତେ, ଆମେ ଅଛୁଆଁ । ମୋ ହାତ ଧରିଛନ୍ତି, କେହି ଯଦି ଦେଖେ, ଆପଣଙ୍କୁ କ'ଣ କହିବ ?

ପଚାରିଲେ, କ'ଣ ଆଉ କହିବ ? କହିବ, ଛୁଆଁ ହେଲି ।

ମୁଁ କିଛି ଜବାବ ଦେଲି ନାହିଁ । ଲୁଗାଖଣ୍ଡି ପାଇ କୃତଜ୍ଞତାରେ ମନ ନଇଁ ପଡ଼ିଥାଏ । ସେ ମୋ ମୁହଁକୁ ଚାହିଁ ମୁଣ୍ଡର ନୁଖୁରା ଫୁରୁ ଫୁରୁ ବାଳକୁ ହାତରେ ପରଖି କହିଲେ, ବାସ୍, ଏଇଥିପାଇଁ ଲୋକେ କହନ୍ତି ଫୁଲଟା ସୁନ୍ଦର ? ତୁ ଏଡ଼ିକି ଅସନା, ମୁଣ୍ଡ କୁଣ୍ଡାଇ ପାରୁନୁ, କେତା ପରି କରୁଛୁ ?

ଭାରି ଲାଜମାଡ଼ିଲା । ମୁଣ୍ଡଟା କୁଣ୍ଡିଆ ହୋଇ ନାହିଁ ତେଲ ଅଭାବରୁ । ତାଙ୍କ କଥାର କିଛି ଜବାବ ଦେଲି ନାହିଁ । ସେ ଚାଲିଯାଉଥିଲେ, ତୋଟା ଅଧରୁ ମୁହଁ ଫେରାଇ ଡାକିଲେ—ଫୁଲି, ଶୁଣ । ମୁଁ ସେତେବେଳକୁ ଲୁଗାଖଣ୍ଡି ପିନ୍ଧି ସାରିଥିଲି । ଚିରା ଲୁଗାଟି ପଥର ଉପରେ ରଖିଦେଇ ତାଙ୍କ ପାଖକୁ ଛୁଟିଗଲି, ପଚାରିଲି, କ'ଣ ?"

କହିଲେ, ମୁଁ ତତେ ଲୁଗା ଦେଇଛି ବୋଲି କାହାକୁ କହିବୁ ନାହିଁଟି ।

ପଚାରିଲି, କାହିଁକି ?

କହିଲେ, ସଂସାରରେ କେତେ ଜାତିର ଲୋକ ଅଛନ୍ତି । କିଏ କ'ଣ ଭାବିବ ।

କିଏ କ'ଣ ଭାବିବ, ଏ କଥା ମନରେ ପଶିବାର ବୟସ ସେତେବେଳେ ମୋ'ର ହୋଇ ନ ଥିଲା । ବାର ତେର ବର୍ଷର ଝିଅ । ଦିନ ରାତି କାମରେ କଟେ ।

ବଡ଼ଘରର ପିଲାଙ୍କ ପରି ଅଯ୍ୟସରେ ରହି ଭଲ ମନ୍ଦ ବାରକଥା ଶିଖିବାକୁ କି ଭାବିବାକୁ ବେଳ ନ ଥାଏ ।

ଗୁଣ ସାଆନ୍ତଙ୍କ ମୁହଁରୁ ଏପରି କଥା ଶୁଣି ମୁଁ ଅବାକାବା ହୋଇ ପଚାରିଲି, ଲୋକେ କ'ଣ ଭାବିବେ ?

ସେ ଟିକିଏ ତୁନି ରହିଲେ । କ'ଣ ଭାବି ମୋ' ପିଠିରେ ହାତ ବୁଲାଇ କହିଲେ, ବଡ଼ ସରଳ ପିଲାଟି ତୁ ଫୁଲ । ସେଥିରୁ କ'ଣ ପାଇବୁ ? କାହାକୁ ନ କହିଲେ ହେଲା । ବୁଝିଲୁ ?

ମୁଁ ମୁଣ୍ଡ ହଲାଇ କହିଲି, ହଁ ।

ସେ ଚାଲିଗଲେ ।

ମୋଠୁ ସବୁ କଥା ଶୁଣି ରାତିରେ ମା କହିଲା, ଆହା, ଷୋଳ ସତର ବର୍ଷର ପିଲା ସିନା, ହେଲେ, ଗୁଣ ସା'ନ୍ତଙ୍କର କେଡ଼େ ବୁଦ୍ଧି । ମନରେ ଦୟାଗୁଣ ଯେତିକି, ଚାକରଅଡ଼କୁ ନଘା ନଜର ସେତିକି । ମତେ କହିଲା, ଠାକୁର ଲୋ ଫୁଲ ସେ, ଛତିଶ ପାଟକର ରଜା ବ୍ରାହ୍ମଣ । ଟିକିଏ ଦୂରେଇ ଠିଆ ହେବୁ ମା । ତତେ ସିନା ସେ ସୁଖ ପାଆନ୍ତି ଲୋ, ହେଲେ ସେ ଛୁଇଁଦେଲେ ଆମର ଅଧର୍ମ ହେବ ।

ପରଦିନ ଦି ପହରରେ ପତର ଗୋଟାଇବାକୁ ତୋଟାକୁ ଗଲି । ସେଦିନ କେମିତି ସେ ଆସି ପହଞ୍ଚିଲେ । ଓଲଟି ହୋଇ ପଚାରିଲି, କୁଆଡ଼େ ଆସିଥିଲ ସାଆନ୍ତେ ? ଥଟ୍ଟାରେ କହିଲେ, ଏଇଠିକି ତ, ତତେ ଦେଖିବାକୁ ।

ମତେ ହସମାଡ଼ିଲା । କହିଲି, କାହିଁକି, ମୁଁ କ'ଣ କି ?

କହିଲେ, ତୁ, ତୁ ପରି ଫୁଲ । ସତେ, ଧୋବ ଫର ଫର କଇଁଫୁଲ ପରି ତୋ ରଙ୍ଗ । ମୁହଁଟି ଯେ ଦରଫୁଟା ଗୋଲାପ ଫୁଲ ପରି, ଛେଳି ଫୁଲ ପରି ତ ନାକଟି, କଳା ଭଅଁର ପରି ଆଖି, ନାଲି କଇଁ ପରି ଓଠ, ଚମ୍ପାକଢ଼ି ପରି ଅଙ୍ଗୁଠି, କେତେ କହିବି ? ସବୁ ଫୁଲ ତୁ ଠୁଳ କରି ତୋ ଦେହରେ ରଖିଛୁ । ମତେ ଛୁଇଁବାକୁ ସେ ହାତ ବଢ଼ାଇଲେ । ପଛକୁ ଘୁଞ୍ଚିଯାଇ ଡରିଲା ସ୍ୱରରେ କହିଲି, ଛୁଅଁ ନା, ମା' କହୁଛି ତମେ ଠାକୁର । ଛୁଇଁଲେ ଆମର ଅଧର୍ମ ହେବ ।

ସେ ମାନିଲେ ନାହିଁ । ମୋ ହାତ ଧରି କହିଲେ, ସତେ ? ମୁଁ ଠାକୁର ! ବାଃ, ଏଥର ଫୁଲମାଳ ଆଣି ମୋ ଗଳାରେ ଦେଇ ଦଣ୍ଡବତ ହେବୁ ।

ମତେ ହସମାଡ଼ିଲା । କହିଲି, ମା' ଜାଣିଲେ ଦେଖିବ, ମୋତେ ଗାଳିଦେବ ।

ସେଦିନ ସଞ୍ଜବୁଡ଼ ଯାଏ ସେ ତୋଟାରେ ରହିଲେ । ଏଣୁ ତେଣୁ କେତେ କଥା କହିଲେ । ଆମର ଦୁଃଖ, ଆମର ଅଭାବ ମୋ'ର ମୁହଁରୁ ଶୁଣି ବ୍ୟସ୍ତ ହେଲେ । ସଞ୍ଜ ବୁଡ଼ିଆସିଲା । କହିଲେ, ଫୁଲ, ଭଗବାନ କେତେବେଳେ କାହାକୁ କି ଦୁଃଖ ଦିଅନ୍ତି ବୁଝିବା ସହଜ ନୁହେଁ । ଦୁଃଖ ସବୁଦିନେ ରହେ ନାହିଁ । ତୋର ଦୁଃଖ ଅଭାବ ମୁଁ ଘୁଞ୍ଚାଇ ପାରିବି, ସାମାନ୍ୟ କଥା । ମୋ ମନରେ ଦୁଃଖ ଅଛି, ତାକୁ ତ କେହି ଘୁଞ୍ଚାଇ ପାରିବେ ନାହିଁ ।

ମତେ ଆଶ୍ଚର୍ଯ୍ୟ ଲାଗିଲା । ଗୁଣ ସା'ନ୍ତଙ୍କର କେଉଁ କଥାର ବା ଅଭାବ, ତାଙ୍କର ପୁଣି ଦୁଃଖ କ'ଣ ? ପଚାରିଲି, ଆପଣଙ୍କର ଦୁଃଖ କ'ଣ ସାଆନ୍ତେ, ଆପଣ ବଡ଼ଲୋକ । ଅଭାବ ଜାଣନ୍ତି ନାହିଁ । ଆମ ପରି ଉପାସ ଭୋକରେ ଦିନ କଟେ ନାହିଁ ।

ସେ ମୋ ଆଖିକୁ ଚାହିଁଲେ । ହସି ହସି ଆଗ୍ରହରେ ହାତ ଧରି କହିଲେ, ଅଭାବ, ମୋ ଅଭାବ, ଅତି ବଡ଼ । ତୁ ବୁଝିପାରିବୁ ନାହିଁ ।

ତାଙ୍କର ପରଶରେ ମୁଁ ଅସ୍ମହିସ ହୋଇ ପଡ଼ିଥିଲି । କହିଲି, କ'ଣ କହନ୍ତୁ, କହିଲେ ସିନା ଜାଣିବି ।

ମୋତେ ସେ ଛାତିକି ଅଉଜାଇ ନେଲେ । ବୋବକଦେଇ କାନ ପାଖରେ କହିଲେ, ଆଜି ନୁହେଁ—କହିବି ଦିନେ ।

ଗୁଣ ନନା ଗେଲ କଲାରୁ ମୋତେ ଖୁସିଲାଗିଲା, ଡର ବି ଲାଗିଲା । ମୋ' ହାତରେ ଟଙ୍କାଟିଏ ଗୁଞ୍ଜି ଦେଇ ହସିହସିକା ସେ ଫେରିଗଲେ ।

ସଞ୍ଜ ଅନ୍ଧାର ମାଡ଼ି ଆସୁଛି । ଘରକୁ ଫେରିଲି । ମାଆକୁ କିଛି କହିଲି ନାହିଁ । କେମିତି ଲାଜ ମାଡ଼ିଲା । କାଳେ ସେ ଗାଳିଦେବ । ସାଆନ୍ତେ ମୋ'ର ଆଖିକୁ ଚାହିଁ ଚାହିଁ ମୁହଁଟିକୁ ଛାତି ଉପରକୁ ଅଉଜାଇ ନେଲେ—ସୋହାଗରେ । ମନେ ହେଲା, ତାଙ୍କର ସେହି ସୋହାଗର ଦାଗ ମୋର ଛାତି ଭିତରେ ଆଙ୍କି ହୋଇ ଯାଇଛି ।

ସେଇ ଛୋଟ ଘଟଣାଟିର କଥା ଯେମିତି ଭାବିଲି, ଅଜଣା ପୁଲକରେ ମନ ପୂରିଉଠିଲା । ସଙ୍ଗେ ସଙ୍ଗେ ଲାଜ ଓ ଭୟ ମୋ'ର କେତେ ଭାବନାକୁ ଘୋଡାଇ ରଖିଲା । ଗୁଣ ନନା କେଡ଼େ ଭଲ, କେଡ଼େ ସୁନ୍ଦର । ତମ୍ବା ତାର ପରି ଉଜ୍ଜ୍ୱଳ ଦେହ, ବଳିଲା ପରି ବଳିଷ୍ଠ ହାତ ଗୋଡ଼ । ଷୋଳ ସତର ବର୍ଷର ପିଲା । ନଶ ଦାଡ଼ି ଗଜୁରି ଆସୁଛି । ଗୁନ୍ଦ ପରି ଗୋଲିଆ ମୁହଁରେ ଜଳଲା ପରି ଆଖି । ସେ ଆଖି ଦିଓଟି ଯେମିତି ସବୁ ବେଳେ ହସିଲାପରି । ଓଠରେ ତ ହସ ଲାଗି ରହିଥାଏ । ଅଜାଣତରେ ମନ ଓଟାରେ ।

ସେହି ଦିନରୁ ମୋ'ର ମନର ପରିବର୍ତ୍ତନ ହେଲା । ମୁଁ ଆଉ ବେଳ ଅବେଳରେ ତୋଟା ଆଡ଼େ ଯାଏ ନାହିଁ । ଯେତେ ଶୀତ ହେଲେ ବି ଗାଧି

ପାହାନ୍ତାରୁ ପାଣି ଆଣି ରଖିଥାଏ । ମନ ହୁଏ, ଇଚ୍ଛା ହୁଏ, ଧାଇଁ ଯିବି, ତାଙ୍କର ଉଜ୍ଜ୍ୱଳ ଭାବଭରା ଆଖିର ଆଲୁଅରେ ମୋ' ମନର ଅନ୍ଧାର ଘୁଞ୍ଚାଇବି ।

ଲାଜ ମାଡ଼େ । ମନ ଉଡ଼ିଯାଏ ସିନା ତାଙ୍କ ପାଖକୁ, ଗୋଡ଼ ଚଳେ ନାହିଁ । ଦେହ ଅବଶ ଲାଗେ । ସ୍ୱପ୍ନରେ ଅବା ଜାଗ୍ରତ ଅବସ୍ଥାରେ ସେହି ସଞ୍ଜବେଳର ଘଟଣା ମୋର ଭାବନାରେ କେତେଥର ଘଟିଯାଏ । ମନେ ହୁଏ, ତାଙ୍କର ସେହି ସୋହାଗର ଦାଗଟିକ ମୋର ଗାଲ ଭିତରେ ଅଙ୍କି ହୋଇ ରହିଛି । ଯେତେ ପୋଛିଲେ ଯେତେ ଲିଭାଇଲେ ଲିଭୁ ନାହିଁ । ଦେହ ଶିହରିଉଠେ । କିଏ ନେପଥ କହିଦିଏ ମୋ'ର କାନରେ—ଗାଲରେ ଦାଗ ଲିଭିବ ନାହିଁ, ଲିଭିବ ନାହିଁ ।

ପରିବର୍ତ୍ତନ ଆସିଲା ମୋ'ର ଜୀବନରେ । କେଉଁଠି ମନ ଲାଗେ ନାହିଁ । ସବୁବେଳେ ଭାବେ, ଆଉ ଯାହା ଭାବେ, ମୋର ମନେ ହୁଏ, ମୁଁ ଆଉ ତେର ବର୍ଷର ପିଲାଟିଏ ହୋଇ ରହି ନାହିଁ । ସାତ ଆଠଟି ଦିନରେ ଯେପରି ମୁଁ ବୟସରେ ସାତ ଆଠ ବର୍ଷ ବଢ଼ିଯାଇଛି ।

ଦିନକର, ସୂର୍ଯ୍ୟ ବୁଡ଼ିଆସୁଛନ୍ତି । ସ୍ତ୍ରୀଅଣ୍ଟ୍ରି ମୁଠାଟି ଧରି ଘରପୋଛା ଆରମ୍ଭ କରିଛି । ପଦାରୁ କିଏ ଡାକିଲେ, ଫୁଲ, ଫୁଲ । ଯେ ଡାକିଲେ ମୁଁ ଜାଣେ । ଜବାବ ଦେବାକୁ ସାହସ ହେଲା ନାହିଁ । କାନ୍ଥକୁ ଆଉଜି ଠିଆ ହୋଇ ରହିଲି ।

ପୁଣି ସେ ଡାକିଲେ, ଫୁଲ ଅଛୁ କି ଲୋ ! ମନରେ ସାହସ ବାନ୍ଧି ଧୀରେ ଧୀରେ କହିଲି, ଅଛି ସାଆନ୍ତେ ।

ଲାଜରେ ପଦାକୁ ଆସିଲି । ସାଆନ୍ତେ ଅଟଣାରେ ଠିଆ ହୋଇଥାନ୍ତି । ମୁହଁଟି ମଉଳି ଯାଇଛି । ମନରେ ସରାଗ ନାହିଁ । ଥରି ଥରି ତାଙ୍କ ପାଖକୁ ଗଲି । ଓଲଗି ହୋଇ କରେଇ ଠିଆହେଲି । ମୋତେ ଦେଖି କହିଲେ, ମୁହଁଟା ଶୁଖିଲା ଦିଶୁଛି କାହିଁକି ଫୁଲ, ଦେହ ଭଲ ନାହିଁ ?

ଉତ୍ତର ଦେଲି, ମୋ ଦେହ କିଛି ଖରାପ ହୋଇନାହିଁ ତ । ଦି'ପହରେ ଶୋଇପଡ଼ିଥିଲି ।

ପଚାରିଲେ, ଆଜି କାଲି ତୋଟାଆଡ଼େ ଯାଉନାହୁଁ କି ? କେତେଥର ଆସି ମୁଁ ଫେରିଗଲିଣି ।

କ'ଣ ଉତ୍ତର ଦେବି ଭାବିପାରିଲି ନାହିଁ । ବାଆଁରେଇ ଦେବାକୁ କହିଲି, ବେଳ ହୁଏନାହିଁ ସାଆନ୍ତେ । ସେ କହିଲେ, ଜାଣେ । ସେଥିପାଇଁ ଆଜି ଏଠାକୁ

ଅସିଲି । ତତେ ନ ଦେଖିଲେ ମନଟା ଖରାପ ହୁଏ । ଏପାଖ ସେପାଖ ହୋଇ ଫେରିଯାଏ ।

ପକେଟରୁ କାଢ଼ି ଦଶଟି ନୂଆ ଟଙ୍କା ମୋ ହାତରେ ଦେଲେ । କହିଲେ, କାଲି ତୋ' ଜନମ ଦିନ ବୋଲି ଶୁଣିଥିଲି । ହଠାତ୍ ମନେ ପଡ଼ିଗଲା । ତୋ ବୋଉକୁ ଦେବୁ । କହିବୁ, ଲୁଗା କିଣିଦେବ ।

ନାହିଁ କରିପାରିଲି ନାହିଁ ।

ଏଣୁ ତେଣୁ ଗପ କରୁ କରୁ ସଞ୍ଜ ହେଲା । ଆମେ ସେଇଠି ସେମିତି ଠିଆ ହୋଇଥାଉଁ । ସେ ଭାବୁଥାନ୍ତି କ'ଣ ତାଙ୍କୁହିଁ ଜଣା । ମୁଁ ଭାବୁଥାଏ, ଗୁଣ ସାଆନ୍ତେ ମୋତେ ଏତେ ଭଲ ପାଆନ୍ତି କାହିଁକି ? ଆଖିରେ ପଡ଼ିଲେ କୌଣସି ଅଭାବ ରଖାଇ ଦିଅନ୍ତି ନାହିଁ । ଧନୀ ଘରର ପିଲା । ଆଉ କ'ଣ କେହି ସଂସାରରେ ନାହାନ୍ତି, ଯାହାକୁ ସେ ଭଲ ପାଇପାରନ୍ତେ । ମନ ଇଚ୍ଛା ଦେଇ ପାରନ୍ତେ । ସମାଜ ଯାହାକୁ ଘୃଣା କରେ, ଅଛୁଆଁ ବୋଲି ଲୋକେ ଯାହାକୁ ଦଶହାତ ଦୂରରେ ଠିଆ କରାନ୍ତି, ତାକୁ ସାଆନ୍ତେ ଭଲ ପାନ୍ତି କାହିଁକି ?

କଣ ମନ ହେଲା, କହିଦେଲି, ସାଆନ୍ତେ ଆପଣ କେବେ ମୋତେ ଆଉ କିଛି ଦେବେ ନାହିଁ ।

ସେ ପଚାରିଲେ, କାହିଁକି ?

କହିଲି, ଆପଣଙ୍କର ଦୟା ମୁଁ ଶୁଝାଇ ପାରିବି ନାହିଁ ।

ହସି ହସି କହିଲେ, ଦରକାର ନାହିଁ । ଯିଏ ଯାହାକୁ ଭଲ ପାଏ, ସେ ଖାଲି ତାକୁ ଦେବାକୁ ଚାହେଁ । ଦେବାରେ ହିଁ ତାର ଆନନ୍ଦ । ସେ କେବେ କିଛି ନେବାକୁ ଚାହେଁ ନାହିଁ ।

ତାଙ୍କର କଥା ମୁଁ ବୁଝି ପାରିଲି ନାହିଁ । ହଁ, ଧନ ଅଛି । ଯାହା ସେ ଦେଉଛନ୍ତି ତାଙ୍କ ଦେହର ମଳି ପରି । ତାଙ୍କର ଊଣା ହେବ ନାହିଁ । ଆମ ପରି ଗରିବଙ୍କର ଉପକାର ହେଉଛି । ପିଲାଟିଏ ହୋଇଥିଲି । ମିଶ୍ର ଘର ଜମିରେ ହଳ କରୁଁ କରୁଁ ଚଡ଼କ ପଡ଼ିଲା । ବଳଦ ଦି'ଟାଙ୍କ ସଙ୍ଗେ ବାପ ବି ଜଳିପୋଡ଼ି ମଲା । ଆମେ ହେଲୁଁ ନିଅଶ୍ରା । ମିଶ୍ର ଘରେ ବାପ କୋଠିଆ କାମ କରୁଥିଲେ । ସେ ମଲାରୁ ଆଉ କେହି ପଚାରିଲେ ନାହିଁ ।

ଗୁଣ ନନା ସେଇ ଘର ପୁଅ । କଟକରେ ପାଠ ପଢ଼ୁଥିଲେ । ଏକୋଇର ବଳା । ମା ନାହିଁ । ବାପଙ୍କର ଗେଲବସର । ପାଠ ଛାଡ଼ି ଘରେ ରହିଛନ୍ତି । ମନରେ ଦୟା ହେଲା । ଦେଉଛନ୍ତି ଦେଉଛନ୍ତି । ମା ଖୁସି ହେଉଛି ।

ଦୁଇ ବର୍ଷ କଟିଗଲା ।

ଗୁଣ ସାଆନ୍ତଙ୍କ ସଙ୍ଗେ ଦିନୁ ଦିନ ଘନିଷ୍ଠତା ବଢ଼ିବାକୁ ଲାଗିଲା । କିପରି ଓ କାହିଁକି ଯେ ମୁଁ ଏତେ ତାଙ୍କୁ ଭଲ ପାଇଲି, ବୁଝିପାରେ ନାହିଁ । ଦିନଟିଏ ନ ଦେଖିଲେ ମନ ଛଟପଟ ହୁଏ, ସେ ବି ମୋତେ ଦେଖିବାକୁ ଉଚ୍ଛନ୍ନ ହୋଇ ପଡ଼ନ୍ତି ।

ସେ ଆମ ଘରକୁ ପ୍ରତିଦିନ ଆସନ୍ତି । ତାଙ୍କୁ ଦେଖିଲେ ମା' କୋଟିନିଧି ପାଇଲା ପରି ହୁଏ । ମାଆ ଥିବା ଅବସ୍ଥାରେ ବି ଯେଉଁ ଦିନ ସେ ଆସନ୍ତି, ବାରଣ ନ ମାନି ଆମ ଘର ଭିତରକୁ ପଶିଯାଆନ୍ତି । ଘରେ ବସି ଏଣୁ ତେଣୁ କଥା ପକାନ୍ତି । ଖେଳରେ ଟେଳରେ ମତେ କେତେ ନିର୍ବାହ ଅଙ୍କା କରନ୍ତି । ଭାରି ଖୁସି ଲାଗେ । ହେଲେ, ମୁଁ ଖେଳରେ ମା'କୁ କହେ । ମା' ହସେ ।

ବେଳେ ବେଳେ ମା' ଆଗରେ ମୋତେ ସେ ଛୁଇଁ ଦିଅନ୍ତି । ମା' ଚମକି ଉଠେ ! କହେ, ବାପ ଛୁଇଁଲ ! ଭଉଣୀ ପରି ଭଲ ପାଅ ସିନା ଫୁଲକୁ, ହେଲେ ସେ ପରା ବାଉରି—ଅଛୁଆଁ—

ଗୁଣ ସା'ନ୍ତେ କହନ୍ତି, ଫୁଲ କେବେ ଅଛୁଆଁ ହୁଏ ନାହିଁ । ଫୁଲ ପରା ଏଡ଼େ ପବିତ୍ର, ଠାକୁର ମୁଣ୍ଡରେ ଚଢ଼େ ।

ମୋ ମନରେ ଆନନ୍ଦ ହୁଏ । କହେ ଗୁଣ ଭାଇନା, ମୋ ନାଁ ସିନା ଫୁଲ, ମୁଁ କ'ଣ ଆଉ ସତରେ ଫୁଲ ?

ମା' ହସେ । ପୁଣି, ତା' ଆଖିରେ ଲୁହ ଭରିଯାଏ । ମୁଁ ଗୁଣ ସା'ନ୍ତଙ୍କୁ ଭାଇ ବୋଲି ଡାକିଲେ ଆନନ୍ଦ ଆଗ୍ରହରେ ତାର ପେଟ ପୂରିଉଠେ । ଗୁଣ ସା'ନ୍ତେ ଗଲେ ସେ ଆକଟି କହେ, ଛି ଫୁଲ, ଯେତେ ହେଲେ ସେ ବ୍ରାହ୍ମଣ ଲୋ, ଛତିଶ ପାଟକର ରଜା । ଗୋଡ଼ଧୂଳି ମୁଣ୍ଡରେ ମାରିଲେ କେତେ ଜନ୍ମର ପାପ କ୍ଷୟ ହୋଇଯାଏ । ଗୁଣ ସା'ନ୍ତେ ପିଲା, କିଛି ବୁଝନ୍ତି ନାହିଁ, ଆମର ଆଡ଼େଇ ରହିବା କଥା ।

ମୁଁ ଉତ୍ତର ଦିଏ ନାହିଁ ।

ସେ ପୁଣି କହେ, କେତେ ପାପରୁ ଆଜି ଏ ଦଶା, ଆହୁରି କପାଳେ କ'ଣ ଅଛି କିଏ ଜାଣେ । ଏ ଜନ୍ମଟା ସିନା ଗଲା, ଆର ଜନ୍ମକୁ ପାପ ଅର୍ଜି ରଖିବା ନାହିଁ । ଟିକିଏ ଆଡ଼େଇ ରହିବା ଭଲ ମା ।

ମୁଁ ତୁନି ରହେ । ମା'ର କଥା ଶୁଣି ଅନ୍ୟ ଆଡ଼େ ଚାଲିଯାଏ । ଭାବେ, ମା' ମନରେ କ'ଣ ସନ୍ଦେହ ହେଲା କି ? ଆମେ ଅଛୁଆଁ ଜାତିର ଲୋକ । ପିଣ୍ଡା

ତଳେ ପଶୁଣ ହାତ ଦୂରରେ ଆମର ସ୍ଥାନ । ସବୁ ଶ୍ରେଷ୍ଠ କାମ, ଅସନା କାମ କରିବାକୁ ଆମ ଜନମ । ଗୁହାଳ ପୋଛା, ପିଲା ବଡ଼ଙ୍କର ମଇଳା ମହଳ ଧୂଆ, ବାସନମଜା, ଘରଲିପା, ଖତକୁଡ଼ ସଫା, ଏପରି ଆଉ କେତେ କାମ । ଆମେ ଟେଣ୍ଡା କୋଠଅ ଖାଉଁ, ଆମକୁ ଛୁଇଁଲେ ଲୁଗା ପଇତା ମାରି ହୁଏ । ତଥାପି ଗୁଣ ନନା ମୋତେ ଛୁଅଁନ୍ତି । ଗେଲ କରନ୍ତି । ବୋଉ କ'ଣ ଅନ୍ୟଥା ଭାବେ କି ?

ଦିନେ ଦିନେ ସେ ଆସିଲା ବେଳେ ମା' ନ ଥାଏ । ସବୁଦିନ ପରି କେତେ ରହସ୍ୟ ଲଗାନ୍ତି । ସେ ହସନ୍ତି, ମୁଁ ହସେ । ମୋର ଅସତର୍କ ଅବସ୍ଥାରେ ମୋତେ ନିଜ ଆଡ଼କୁ ଟାଣିନିଅନ୍ତି । ହାତ ଦେଖାଇ, ପ୍ରତିବାଦ କରିବା ଆଗରୁ କେଡ଼େ ବେଗି ମୋର ମୁହଁକୁ ତାଙ୍କ ଛାତି ଉପରେ ଲଗାନ୍ତି । ଗେଲ କରନ୍ତି । ମୁଁ ଘୁଞ୍ଚି ଆସେ । ମୁହଁ ଶୁଖାଇ ବିରକ୍ତିର ଭାବ ଦେଖାଇ କହେ, ଏ ସବୁ ମୋତେ ଭଲ ଲାଗେ ନାହିଁ, ଛି— । ଯିଏ ଦେଖିବ କ'ଣ ଭାବିବ ? ମୁଁ ମୁହଁ ଶୁଖାଏ ।

ସେ ଅପ୍ରସ୍ତୁତ ହୋଇପଡ଼ନ୍ତି । ଲାଜରେ କି ଦୁଃଖରେ ତାଙ୍କର ମୁହଁ ମଉଳି ଯାଏ । ତାଙ୍କର ଦୁଃଖ ଦେଖି ମନରେ ମୋର କଷ୍ଟ ହୁଏ । ଇଚ୍ଛା ହୁଏ, ଗୋଡ଼ତଳେ ମୁଣ୍ଡ ଲଗାଇ କ୍ଷମା ମାଗିବି । କହିବି, ତୁମକୁ ତ ମୁଁ ମନ ପ୍ରାଣ ଉତ୍ସର୍ଗ କରିଛି । ଏତେ କଥା ସିନା ଭାବେ, ମୁହଁ ଖୋଲେ ନାହିଁ । ତାଙ୍କ ମନରେ କାଳେ ଦୁଃଖ ହୋଇଥିବ ବୋଲି ମୁଁ କାନ୍ଦିପକାଏ । ଭାବେଁ, ଯେଉଁ ଛିପିଛିପିକା ରଙ୍ଗ ଶାଢ଼ୀ ପିନ୍ଧିଛି, ଦେହରେ ଯେଉଁ ଜାମା ଗଳେଇ ମନ ଖୁସିରେ ଫୁଲେଇ ହେଉଛି, ସବୁ ତ ତାଙ୍କର ଧନରେ କିଣା ହୋଇଛି । ପିନ୍ଧିଛି ପୁଣି ତାଙ୍କରି ପାଇଁ । ସେ ଦେଖିବେ, ଖୁସି ହେବେ । ବାସନା ତେଲ ଲଗାଇ ଯତ୍ନ କରି ବୋଉ ମୁଣ୍ଡ ବାନ୍ଧି ଦେଇଛି । ଜୁଡ଼ାରେ ବାନ୍ଧିଛି ଫୁଲ ମାଳ । ଆଖିରେ କଜ୍ଜଳଲଗାଇଛି ।

ମୋ ଆଖିରେ ଲୁହ ଦେଖି ସେ କାତର ହୋଇପଡ଼ନ୍ତି । କ'ଣ ଗୋଟାଏ ଅପରାଧ କଲାପରି ଡରି ଡରି କହନ୍ତି, ମୁଁ କ'ଣ ଜାଣି ଜାଣି ଏହା କରେ ? ତୋ'ର ମୁହଁରେ ହସ ଦେଖିଲେ ମୁଁ ସବୁ ଭୁଲିଯାଏ ।

ତାଙ୍କ କଥା ଶୁଣି ମୁଁ ବେଶୀ ବେଶୀ କାନ୍ଦଉଠେ । ଭାବେ, ତୁମେ ଯଦି ମୋ'ର ଛାତି ଭିତରର କଥା ଜାଣିପାରନ୍ତ, ଏପରି ଧସ୍ତୁରି କଥା କହନ୍ତ ନାହିଁ । ମୋ ମନର କଥା ଅକୁହା ରହିଯାଏ । ମୋ'ରି ଆଖି ଆଗରେ ସେ ଧୀରେ ଧୀରେ ଆମ ଘରୁ ବାହାରି ଯା'ନ୍ତି । ଇଚ୍ଛା ହୁଏ ଧାଇଁ ଯାଇ ଆଗରୁ ବାଟ ଓଗାଳି କହିବି, କୁଆଡ଼େ ଯାଉଚ, କଳୁ ଗୋଡ଼ ଚଳେ ନାହିଁ ।

ଅତି କଷ୍ଟରେ ଦୁଇ ତିନି ଦିନ ସେ ଆସନ୍ତି ନାହିଁ । ସେତିକି ମୋ ଅପରାଧର ଦଣ୍ଡ । ଦୁଇ ତିନି ଦିନ ମୋର ଯେ କି କଷ୍ଟରେ କଟେ, ମୁଁ କହିପାରୁ ନାହିଁ । ସେ ପୁଣି ଆସନ୍ତି, ଗୋଟାଏ ଏଣୁ ତେଣୁ ଛଳନା କରି । ପିଲାଙ୍କ ପରି

ଗୋଟେଇ ଦିଅନ୍ତି । ମୁଁ ଅଭିମାନଆ କଥା କହେ । ସେ ଶୁଣନ୍ତି । ଦିନେ ଦୁଇଦିନ ଟିକିଏ ଦୂରେଇ ରହନ୍ତି । ମନେ ମନେ ମୁଁ ହସେ । ପୁଣି ଯେଉଁ କଥାକୁ ସେଇ କଥା ।

ଦିନେ ଦିନେ ମା' ତାଙ୍କୁ କହେ, ବାପ, ଫୁଲ ତ ଏଡ଼େ ଝିଅ ହେଲାଣି, ଲୋକେ ନିନ୍ଦାମିନ୍ଦା କରୁଛନ୍ତି, କେତେ ଗାଁରୁ କେତେ ଲୋକ ଆସୁଛନ୍ତି ପ୍ରସ୍ତାବ ନେଇ, ଫୁଲ କେଉଁଠି ମଙ୍ଗୁ ନାହିଁ । ମୁଁ କ'ଣ ସବୁଦିନେ ବଞ୍ଚିଥିବି ? ତା' ହାତକୁ ଦି'ହାତ ହେଲେ, ସେ ପର ଘରକୁ ଗଲେ ମୁଁ ନିଶ୍ଚିନ୍ତରେ ଆଖିବୁଜିବି । ମୁଁ ଭାବୁଛି, ତେମେ ଯେଉଁଠି ଠିକ୍ କରିବ ସେଇଠି ହେବ । ତମ କଥାରୁ କେହି ବାହାର ହେବ ନାହିଁ ।

ମା' କଥା ଶୁଣି ବାଁରେଇ ହୋଇ ଅଧାକାନ୍ଥି ସେପାଖ ରୋଷଘରକୁ ଚାଲିଯାଏ । ଗୁଣ ସା'ନ୍ତେ ମା'କୁ କ'ଣ ଜବାବ ଦେବେ ସେଇ କଥା ଶୁଣିବା ପାଇଁ କାନଡେରି ରହେ । ସେ କିଛି ସମୟ ତୁନି ହୋଇ ରହନ୍ତି । କହନ୍ତି, ଫୁଲଟା ତ କାଲିକାର ପିଲା । ବାହାହେବା ବୟସ କଣ ବଳେଇ ପଡ଼ୁଛି ? କେବେ କେବେ କହନ୍ତି, ବାଉରି କୁଳରେ ଫୁଲ ନାଁକି ପାଏଁ ଟିଏ ଖୋଜି ପାଇବା କଷ୍ଟ । ବାହା ପଛେ ନ ହେବ, ଏମିତି ଯିଆଡ଼ୁ ପାରି ସିଆଡ଼ୁ ଗୋଟାଏ ଲୋକ ହାତରେ ତାକୁ ନେଇ ଥୋଇଦେଲେ କାନ୍ଦି କାନ୍ଦି ତାର ପ୍ରାଣ ଯିବ ।

ମା' ତୁନି ରହେ ।

ମୁଁ କେତେ କଥା ଭାବେଁ । ଗୁଣ ସା'ନ୍ତେ ଫେରନ୍ତି ।

ଦିନକର ଘଟଣା ।

ସଞ୍ଜ କେତେବେଳୁ ବୁଡ଼ିଗଲାଣି । ଏକାଦଶୀର ଉଜ୍ଜ୍ୱଳ ଜହ୍ନ ଆଲୁଅରେ ଗୁରୁଆଡ଼ ହସିଉଠୁଛି । ଆଖି ପାଉ ନାହିଁ, ଗହୀର—ଜହ୍ନ ଆଲୁଅରେ ପାଚିଲା ଧାନ କ୍ଷେତ ଚକ୍ ଚକ୍ ଦିଶୁଛି । ଧୀରେ ଧୀରେ ପବନ ବୋହୁଛି । ମିଚ୍ଛୁଘର ତୋଟା କର ଏକୁଟିଆ କଦମ୍ବଗଛ ମୂଳ ମାଟି ଚଉତରା ଉପରେ ବସିଛୁଁ ସେ ଓ ମୁଁ । ସେ ହଠାତ୍ ପଚାରିଦେଲେ, ଫୁଲ, ଆମର ଦିନ କ'ଣ ସବୁଦିନେ ଏମିତି କଟିବ ?

ତାଙ୍କ ପ୍ରଶ୍ନର ଅର୍ଥ ମୁଁ ବୁଝିପାରିଲି ନାହିଁ । କି ଉତ୍ତର ବା ଦେବି ? ଆକାଶକୁ ଚାହିଁଲି । ଖଣ୍ଡେ କଳାମେଘ ଭାସି ଭାସି ଜହ୍ନର ମୁହଁକୁ ଘୋଡ଼ାଇ ଦେଲା ।

ସେ ମୋର ଡାହାଣହାତ ପାପୁଲି ଉପରେ ମୃଦୁ ଚାପ ଦେଇ କହିଲେ, ବୁଝି ପାରିଲୁ ନାହିଁ ମୋ କଥା ? ଆମର ଏ ଆନନ୍ଦ ଚିରଦିନ ଏହିପରି ଥିବ ଟି ? ସ୍ୱାଧୀନ ଭାବରେ ଚିରଦିନ ଏହିପରି ମିଳାମିଶା କରି ପାରୁଥିବା ? ବୟସ ହେଲାଣି ବୋଲି ତୋତେ ପରଘରକୁ ତଡ଼ିଦେବାକୁ ତୋର ମା ବଡ଼ ବ୍ୟସ୍ତ ହୋଇ ପଡ଼ିଲେଣି । ତୁ ଆଉ କେତେଦିନ ମନା କରିପାରିବୁ ?

ଉତ୍ତର ଦେଲି ନାହିଁ । କେତେ କଥା ମନକୁ ଘାଣ୍ଟି ଚକଟି ପକାଇଲା । ମୋ'ର ଦୁଇ ଆଖିରୁ ଲୁହଧାର ଝରିବାକୁ ଲାଗିଲା । ଜହ୍ନ ଉପରୁ କଳା ମେଘଟା ଘୁଞ୍ଚିଗଲାଣି କେତେବେଳୁ । ସେ ମୋ ଆଖିରୁ ଲୁହ ପୋଛି ଦେଲେ । ମୁହଁରେ ମୁହଁ ଲଗାଇବାକୁ ନଇଁ ଆସୁଥିଲେ, ମୁହଁ ବୁଲାଇ ନେଲି ।

କହିଲି, ସା'ନ୍ତେ ଜାଣି ଜାଣି ତେମେ ମୋତେ ଏତେ କଷ୍ଟ ଯନ୍ତ୍ରଣା ଦେଉଛ କାହିଁକି, ମୁଁ କି ଅପରାଧ କରିଛି ? ଗରିବ ବାଉରି ଘରର ଝିଅ, ନିଜ ଦୁଃଖରେ ଥିଲି । ତମର ଦୟା ତମର ସହାନୁଭୂତି କେବେ ଆଶା କରି ନ ଥିଲି, କେବେ ହେଲେ ମାଗି ନ ଥିଲି । ଉପରେ ପଡ଼ି ଆମକୁ ଦୟା ଦେଖାଇଲ, ଫେରି ପାଇବାର ଆଶା ନ କରି ସବୁ ସ୍ନେହ ମମତା ଅଜାଡ଼ି ଦେଲ । ପାଇଲ କ'ଣ ? ତେମେ ଜାଣ ନାହିଁ, ମୁଁ ବି ଜାଣେ ନାହିଁ ।

ଭାରି ଆଗ୍ରହରେ ମୋ କଥା ସେ ଶୁଣୁଥିଲେ । କହିଲେ, ମୁଁ କ'ଣ ଦେଇଛି, ମୁଁ ଜାଣେ ନାହିଁ, କିନ୍ତୁ ମୁଁ ତୋଠାରୁ ଯାହା ପାଇଛି, ମୋ ପକ୍ଷେ ତାହାର ମୂଲ୍ୟ ଯଥେଷ୍ଟ । ତୋ'ର ହୃଦୟ, ମନ, ମମତା, ପ୍ରେମ— ।

ମୁହଁରେ ହାତ ଦେଇ କଥାଟାକୁ ତାଙ୍କୁ ସରିବାକୁ ଦେଲି ନାହିଁ । ଓଲଟି କହିଲି, ଅସମ୍ଭବ ! ତେମେ ବ୍ରାହ୍ମଣ ଘରର ପିଲା, ତେମେ ବାହା ହୋଇଛ । ମୁଁ ଅଛୁଆଁ । ତଥାପି ଜାଣି ଜାଣି କାହିଁକି ତେମେ ମୋତେ ସ୍ନେହ କଲ, ମୋର ହୃଦୟ ଲୁଟି କରିନେଲ ? ତୁମେ ତ ମୋତେ ବିବାହ କରି ପାରିବ ନାହିଁ । ସଂସାର ଆଗରେ ସମାଜ ଆଗରେ ମୋତେ ଛୁଇଁ ବି ପାରିବ ନାହିଁ ।

କେତେ ଦିନ ହେଲା ଯେଉଁ ଚିନ୍ତାଟା ମନର ମମତାକୁ ଦୋହଲାଇ ଏପାଖ ସେପାଖ କରୁଥିଲା, କେତେ ଦୁଃଖରେ ଆଜି ତାହା ଖୋଲି ହୋଇଗଲା ତାଙ୍କର ଆଗରେ । ମୋ'ର ଦୁର୍ବଳତା ଥିଲା, କିନ୍ତୁ ଆତ୍ମସଂଯମ ରକ୍ଷା କରିବାର ସାହସ ମଧ୍ୟ ଥିଲା । ଜଣକୁ ହୃଦୟ ଦେଇ ଭଲ ପାଉଥିଲି ବୋଲି ଯେ କିଛି ନ ଭାବି ନ ଚିନ୍ତି ତାହାରି ପାଖରେ ଦେହଟା ସମର୍ପିଦେବି, ସେ କଥା କେବେହେଲେ ଭାବିନାହିଁ । ସେ ମତେ ଭଲ ପା'ନ୍ତି, ମୁଁ ମଧ୍ୟ ତାଙ୍କୁ ଭଲ ପାଏଁ – । ସେ ଉତ୍ତେଜିତ ହୋଇ

ପଡ଼ନ୍ତି । ମୁଁ ମଧ୍ୟ । କିନ୍ତୁ ଦୃଇଟା ଦେହର ମିଳନ ଭିତରେ ମୋ'ର ଗୋଟାଏ ଭାବନା, କେଜାଣି ବା ଭୟ, ଗୋଟାଏ ଦୁର୍ଭେଦ୍ୟ ପାଚେରି ଗଢ଼ିଦିଏ । ସବୁ ମୋହ, ସବୁ ଉତ୍ତେଜନା, ଇଚ୍ଛା, ଆକର୍ଷଣ ସେଇଠି ବାଜି ଫେରି ଆସେ ପଛକୁ ।

ସେ କହିଲେ, ଫୁଲ, ମୁଁ ବାହା ହୋଇଛି ସତ କିନ୍ତୁ ମୁଁ ତ ନିଜେ ବାହା ହୋଇ ନାହିଁ । ସେତେବେଳେ ମୋ'ର ଜ୍ଞାନ ନ ଥିଲା । ଭାବୁଥିଲି, ବାହାଘର ଗୋଟେ ଖେଳଘର । ଅଜ୍ଞାନ ଅବସ୍ଥାରେ ଯାହାର ହାତରେ ମୋ'ର ହାତ ମିଳାଇ ଦେଇଥିଲେ, ତାକୁ ମୁଁ ଚିହ୍ନେ ନାହିଁ । ତା'ର ରୂପ ମୁଁ ଦେଖି ନାହିଁ । କହ ତ, ମୁଁ ତାକୁ ଭଲପାଇବି କିପରି ?

ମୁଁ ଚୁପ ରହିଲି । ସେ ପୁଣି କହିଲେ, ମୋ'ର ମନ, ପ୍ରାଣ, ସ୍ନେହ, ମମତା ସର୍ବସ୍ୱ ମୁଁ ତତେ ହିଁ ଦେଇଛି । ଯେଉଁ ଅପରିଚିତା କାଲି ଆସି ମୋ'ର ଘରର ମାଲିକ ହେବ, ସେ ସବୁ ପାଇପାରେ, କିନ୍ତୁ ତୁ ଯାହା ପାଇଛୁ ସେ ତ ଆଉ ତାହା ପାଇବ ନାହିଁ ।

ଅନେକ କଥା ପଚାରିବାକୁ ଇଚ୍ଛା ଥିଲା । ମୁହଁ ଖୋଲିଲି ନାହିଁ । କାଳେ ତାଙ୍କର ମନରେ ଦୁଃଖ ହେବ । ରାତି ଅଧିକ ହେଉଛି ଦେଖି ସେ ବିଦାୟ ନେବାକୁ କହିଲେ, ଯାଉଛି ଫୁଲ, ସଂସାରରେ ମୋଠୁ ବଳି ଦୁଃଖୀ କେହି ନାହିଁ । ଟିକିଏ ଅପେକ୍ଷା କରି ମୋ'ର ହାତ ଧରି କହିଲେ, ମୋର ବିଶେଷ ଦୁଃଖ ହେଉଛି ଯେ, ତୁ ମତେ ଚିହ୍ନିଲୁ ନାହିଁ ।

ବିଦାୟ ଆଗରୁ ସବୁଦିନ ପରି ସେ ମୋ'ର ମୁଣ୍ଡକୁ ତାଙ୍କର ଛାତି ଉପରକୁ ଆଉଜାଇ ନେଲେ ନାହିଁ । ଆଗ୍ରହରେ ଉତ୍ସାହରେ କହିଲେ ନାହିଁ, ଫୁଲ, ଏ ପାଗଳା ଭଉଁରଟାକୁ ମନେ ରଖିଥିବୁ ।

ବଡ଼ ଅଶାନ୍ତିରେ ଘରକୁ ଫେରିଲି, କେତେବେଳୁ ମା' ଆସି ପିଣ୍ଡାରେ ବସିଥିଲା । ମତେ ଦେଖି ବିରକ୍ତ ହୋଇ କହିଲା, ଏତେ ବେଳଯାଏ କେଉଁଠି ଥିଲୁ ଲୋ । ଦି'ଘଡ଼ି ହେଲା ଆସି ମୁଁ ପିଣ୍ଡାରେ ବସିଛି, ତୋ'ର ଦେଖା ଦର୍ଶନ ନାହିଁ ।

ଭୟରେ ଥରି ଉଠିଲା ମୋ'ର ଛାତି ଭିତର । ପଟିଏ କଥା ବାହାରିଲା ନାହିଁ । କହି ପକାଇଲି, ଗୁଣ ଭାଇ ଆସିଥିଲେ ଯେ—ତାଙ୍କୁ ଛାଡ଼ିଦେବାକୁ ଯାଇଥିଲି ।

ସେ କହିଲା, ହୁଁ—ଉଁ ।

ମୋ'ର ମନେ ହେଲା ତା'ର ସେହି ଗୋଟିଏ ପଦ ହୁଁ ଭିତରେ କେତେ ସନ୍ଦେହ, କେତେ ଦୁଃଖ ଭରିରହିଥିଲା । କିଛି ନ କହି ଥରିଲା ଗୋଡ଼ରେ ଘର ଭିତରକୁ ପଶିଲି । ଅଶାନ୍ତିରେ ମୋ'ର ରାତି କଟିଲା । କେତେ ଦୁଷ୍ଟିନ୍ତା, କେତେ ଭୟ !

ବେଳେ ବେଳେ ଗୁଣ ସା'ନ୍ତେ ଆସନ୍ତି । ମୁଁ ବୁଝିପାରେ, ତାଙ୍କ ମନରେ କେତେ ଭାବନା ଭରି ରହିଥାଏ । କଥାକଥାକରେ ସେ ହସନ୍ତି,ହେଲେ ସେ ହସରେ ସରାଗ ନ ଥାଏ । ତାଙ୍କ ସାଙ୍ଗରେ ବୁଲିଯିବାକୁ କେତେ ଥର ଡାକନ୍ତି, ମୁଁ ମନା କରେ କାମ ବାହାନାରେ । କେବେ କେବେ କହେ ଦେହ ଭଲ ଲାଗୁ ନାହିଁ । ତାଙ୍କ ସଙ୍ଗେ ବୁଲି ଯାଇ ଘଣ୍ଟା ଅଧଘଣ୍ଟା ପଦାରେ ରହିଲେ ମା' ମନେ ମନେ ବିରକ୍ତ ହୁଏ । ମୁହଁରେ ସାହସ କରି କିଛି କହିପାରେ ନାହିଁ । ଏ କଥା ବା ମୁଁ ତାଙ୍କୁ କହିବି କପରି ?

ମୋ'ର ଏପରି ଢଙ୍ଗରୁ ସେ ବୋଧହୁଏ ଭାବିଲେ, ମୁଁ ତାଙ୍କୁ କରିଛଡ଼ା ଦେଉଛି । ଦିନେ ରହି ରହି ପଚାରିଲେ, ତମ ଘରକୁ ଏତେ ଯା' ଆସ କରୁଛି ବୋଲି ବିରକ୍ତ ହେଉଛ ? ସତରେ ଯଦି ତମର ଅସୁବିଧା ହେଉଥାଏ, କହିଦେଲେ ତ ଆସନ୍ତି ନାହିଁ ।

ତାଙ୍କ ତୁଣ୍ଡରୁ ଏପରି କଥା କେବେ ଶୁଣିବି ବୋଲି ଆଶା କରି ନ ଥିଲି । ଜାଣେ, ସତେ ଯଦି ବିରକ୍ତ ହୋଇ ତାଙ୍କୁ ଘର ମନା କରେ ସେ ରହିପାରିବେ ନାହିଁ । ମୋତେ ଦିନଟିଏ ନ ଦେଖିଲେ ସେ ପାଗଳ ପରି ହୋଇଯିବେ ।

ତାଙ୍କ କଥାର ଉତ୍ତର ଦେଇ ପାରିଲି ନାହିଁ । ମୁଁ ଜାଣେ ସେ ମୋତେ ଭଲ ପାନ୍ତି । ସେ ଜାଣନ୍ତି, ମୁଁ ଅଛୁଆଁ ବାଉରି, ଗରିବ । ତଥାପି ସେ ମୋତେ ଭଲପାଇଲେ କାହିଁକି ? ମୁଁ କାହିଁକି ମୋ'ର ମନର ସବୁ ସ୍ନେହ ତାଙ୍କରି ଗୋଡ଼ତଳେ ଢାଳିଦେଲି ? ଏକଥା ଅନେକ ଥର ଭାବେ, ମନେ ହୁଏ, ଭଲ ପାଇବାଟା ଗୋଟାଏ ଝୁଙ୍କ । ମଣିଷର ମନରେ ପଶିଲେ ଅତୀତ ବା ଭବିଷ୍ୟତ ଦେଖାଯାଏ ନାହିଁ । କ୍ଷଣସ୍ଥାୟୀ ବର୍ତ୍ତମାନଟା ତାକୁ କେତେ ବଡ଼ ଜଣାଯାଏ ।

ମୋତେ ତୁନି ହେବା ଦେଖି ସେ ପଚାରିଲେ, କହ ଫୁଲି, ସତେ ମୁଁ ପାଗଳ ହୋଇ ମରୀଚିକାର ପଛରେ ଦୌଡ଼ାଉଛି । ଧାଇଁ ଧାଇଁ ଶେଷକୁ ମରଣ ହେବ, ଟୋପାଏ ପାଣିର ଦେଖା ପାଇବି ନାହିଁ ।

ତାଙ୍କର ଆଖି ଛଳ ଛଳ ହେଲା । ମୋ'ର ଦୁର୍ବଳ ମନ ତରଳି ଆସିଲା । ତାଙ୍କ କଥାର ମର୍ମ ବୁଝି ପାରିଲି । କହିଲି, ଏକା ତେମେ କାହିଁକି ମରୀଚିକା ପଛରେ ଗୋଡ଼ାନ୍ତି, ମତେ ମଧ ସେହି ବାଟରେ ନେଇଛ । ଜାଣି ଜାଣି କାହିଁକି ତା'ର ପଛରେ ଧାଇଁବା ? ବେଳ ଅଛି, ଫେରିଯିବା ଆସ ।

କହୁ କହୁ ତଣ୍ଟି ବନ୍ଦ ହୋଇଆସିଲା । ଅଜଣା ଦୁଃଖରେ ସତେ କି ମୋର ଛାତି ଫାଟିପଡ଼ିବ ।

ସେ ମୋ'ର ଲୁହଭରା ଆଖିକି ଚାହିଁଲେ । ଦୁଇ ହାତ ଧରି କହିଲେ, ଫେରିଯିବା ? ଫେରି ପାରିବୁ ଫୁଲ ? ମଶାଣିକୋଳ ପଛରେ ଅଛି ପରି ଧାଇଁବାରେ ବି ଆନନ୍ଦ ଅଛି, ସେ ଆନନ୍ଦ ମରଣ ମୁହଁକୁ ପଡ଼ିଛି ଟାଣି ନେଉ ।

ତଳି ପଡ଼ିଲି ତାଙ୍କରି ଛାତିଉପରେ । ଆଖି ଲୁହରେ ଛାତି ଭିଜାଇଲି । ସେ ଧୀରେ ଧୀରେ ମୋ' ପିଠିରେ ହାତ ବୁଲାଇଲେ । ତାଙ୍କର ସେହି ଅମୃତ ସ୍ପର୍ଶରେ ମୋ'ର ସବୁ ଚିନ୍ତା ଉଭେଇଗଲା । ମତେ ଜଣାଗଲା, ଏହି ନିଷ୍ଠୁର ସଂସାରର ଶୂନ୍ୟତା ଭିତରେ ଆମେ କେବଳ ଦୁଇଜଣ ବାଟୋଇ—ସେ ଓ ମୁଁ । ଚାଲିଛୁଁ କେଉଁ ଅଜଣା ଆଶା ପଛରେ । ସୀମା ନାହିଁ ସେ ବାଟର । ପଛକୁ ଚାହିଁବାର ବେଳ ନାହିଁ । ଆଗକୁ ଚାହିଁବାକୁ ଇଚ୍ଛା ନାହିଁ । ସେ ଚାହିଁଛନ୍ତି ମତେ, ଆଉ, ମୁଁ ଚାହୁଁଛି ତାଙ୍କୁ ।

କେତେବେଳ ଯାଏ ମୁଁ ସେହିପରି ଅବସ୍ଥାରେ ରହିଲି ମୋର ଖିଆଲ ନାହିଁ । ସେ କରୁଣ ସ୍ୱରରେ ଡାକିଲେ, ଫୁଲ ! ଗଲା ଥରିଉଠିଲା । ତାଙ୍କର ଦୁଇ ବାହୁର ବନ୍ଧନୀ ମଝିରେ ଥାଇ ମୁଁ ମୁଣ୍ଡଟେକି ତାଙ୍କରି ମୁହଁକୁ ଚାହିଁଲି । ଢଳ ଢଳ ଆଖି ଦୋଅଟି ଭିତରେ ଯେଉଁ ମନଭୁଲା ଆଭାର ସନ୍ଧାନ ପାଇଲି, ସେତିକିରେ ଲତାଟି ପରି ଛନ୍ଦି ହୋଇଗଲି ତାଙ୍କ ବଳିଷ୍ଠ ଦେହରେ । ସେ ମୁଣ୍ଡରେ ମୁଣ୍ଡ ଲଗାଇ କାନ ପାଖରେ ଗୁନଗୁନ କହିଲେ, ଫୁଲ, ଅତୀତରେ କ'ଣ ହୋଇଥିଲା ଓ ଭବିଷ୍ୟତରେ କ'ଣ ହେବ, ସେ କଥା ଭାବିଲେ ସଂସାରରେ କେହି ସୁଖୀ ହୋଇପାରେ ନାହିଁ । ବର୍ତ୍ତମାନଟି ଯେ ବଡ଼ !

ତାଙ୍କ କଥା ବୁଝିବା ଭଳି ଅବସ୍ଥା ମୋ' ମନରେ ସେତେବେଳେ ନ ଥିଲା । ମୁଁ ଆଖି ଟେକି କେବଳ ଚାହିଁଲି ତାଙ୍କରି ମୁହଁକୁ । ସେ ଦରହସିଲା ଓଠପତା ଥରାଇ କହିଲେ, ଫୁଲ, ବୁଦ୍ଧିମାନ୍ ଲୋକ ବର୍ତ୍ତମାନର ସୁବିଧା ଭିତରେ ମଜ୍ଜି ରହେ । ଜୀବନର ଯେଉଁ ମୁହୂର୍ତ୍ତିଟି ଭଲରେ, ଆନନ୍ଦରେ କଟେ, ମଣିଷ ଜୀବନରେ ସେତିକି ଲାଭ, ସେତିକି ସାର୍ଥକତା ।

କିଛି ବୁଝିଲି ନାହିଁ କଥାର ମର୍ମ । ତାଙ୍କର ଆଖି ଆଲୁଅ ଭିତରେ ପତଙ୍ଗ ପରି ଝାସ ଦେବାର କାମନା ବଳେଇପଡ଼ିଲା ।

କହିଲେ, ତେବେ ବୃଥା ଆଉ ଏତେ ଛଳନା, ବୃଥା ଆଉ ଏତେ ଅଭିମାନ କାହିଁକି ? ଯେଉଁ ଭୟ ବା ସଙ୍କୋଚ ଆମର ଏହି ଲୋକିଲା ସ୍ନେହ ଦୁଇଟାର ମଝିରେ ବାଡ଼ ପକାଇଛି, ସେତକ ଘୁଞ୍ଚି ଯାଉ । ଦୁଇଟା ଆତ୍ମା ଦୁଇଟା ଦେହ ମିଶି ଏକାକାର ହେଉ ଫୁଲ । ମୋର ଚିବୁକ ଚୁମ୍ବନ କରିବାକୁ ନୁଆଇଁ ଆଣିଲେ ତାଙ୍କର ତୃଷିତ ମୁହଁଟି । ଛାତି ଭିତରେ ଯନ୍ତ୍ରଣା ଅନୁଭବ କଲି । ମାଡ଼ ମାରିଲା ପରି ଦୁଇ ହାତରେ ତାଙ୍କର ମୁଣ୍ଡଟି ଠେଲିଦେଇ ଦୂରକୁ ଘୁଞ୍ଚିଆସିଲି । ହାତ ଦେଖାଇ ଭୟରେ କହି ପକାଇଲି, ନା, ନା, ମୋତେ ଆଉ ତମର ଆଖିର

ଜିଲାନ୍ତା ନଅଁ ଭିତରକୁ ଟାଣି ନିଅ ନା ଗୁଣ ଭାଇ, ମୋତେ ଦୟା କର, କ୍ଷମାକର । ତମକୁ ମୁଁ ଭଲପାଏ । ତା' ବୋଲି ତମର ଲାଳସା ନିଆଁରେ ମୋତେ ଆସ ଦେବାକୁ କହ ନାହିଁ । ତେମେ ଯାଅ, ତେମେ ଏଠୁ ଯାଅ । ମୋତେ ଭାବିବାକୁ ଦିଅ, କାନ୍ଦିବାକୁ ଦିଅ । ତେମେ ଯାଅ ଗୁଣ ଭାଇ—

କେତେ ଭାବିଲି, କେତେ କାନ୍ଦିଲି । ମୋ'ର ଦୁଃଖ, ମୋ'ର ଭାବନାର ଶେଷ ନାହିଁ । କିଛି ଠିକ୍ କରିପାରିଲି ନାହିଁ ତ । ଯେତେ ଭାବେ ଗୁଣଭାଇନା-ଙ୍କର ସ୍ମୃତିଟାକୁ ମନରୁ ପୋଛି ପକାଇବି. ସ୍ମୃତି ଭିତରେ କେତେ ଦିନର ଛୋଟ ବଡ଼ କେତେ ଘଟଣା ଗମ୍ଭୀର କରି ସୁଖ ଦୁଃଖର ଗୀତ ଟାଣିଦିଏ ।

ସେହିଦିନରୁ ସେ ଆଉ ଆସି ନାହାନ୍ତି । ରାଗରେ କି ଅଭିମାନରେ ଜିଭ ଖୋଲିଟାଇ ମୁହଁରେ କହି ତଡ଼ିଦେବା ତ କ୍ଷଣିକର ଉତ୍ତେଜନାର କଥା, କିନ୍ତୁ ମନ ଭିତରୁ ତଡ଼ିବା କେଡ଼େ କଷ୍ଟ, ଅସମ୍ଭବ । ସବୁବେଳେ ପ୍ରାଣ ଛଟପଟ ହୁଏ । ମନ ଭିତରେ ଗୋଳମାଳ ଆରମ୍ଭ ହୁଏ । ଭାବେ, ଭଲ ପାଇବା ଭୁଲ ନୁହେଁ, ଭଲ ପାଇବା ପାପ ନୁହେଁ । ତା ହୋଇଥିଲେ ମଣିଷ ମନରେ ଭଲପାଇବାର ପ୍ରବୃତ୍ତି ଜାଗନ୍ତା ନାହିଁ । ଭଲ ପାଇବା ଗୋଟାଏ ରୋଗ, ଗୋଟାଏ ପାଗଳାମି । ସେଇଥି ପାଇଁ ମଣିଷ ଭୁଲ କରେ । ଲୋକ ଆଖିରେ ଯେଉଁଟା ପାପ, ଯେଉଁଟା ଅନ୍ୟାୟ, ତାହା ମଧ୍ୟ କରିବାକୁ ପଛାଏ ନାହିଁ ।

ଭୟ ହେଲା—ନ ଆସି ସେ ରହିଛନ୍ତି କିପରି ? ଦେହ କିଛି ଖରାପ ହୋଇନାହିଁ ତ । ସବୁଦିନେ ହୁଏ ମାଆକୁ ପଚାରିବି, କିନ୍ତୁ ପଚାରିପାରେ ନାହିଁ । ଦିନେ ଦି'ପହରେ ସାହସ କରି ପଚାରିଲି, ମା ଗୁଣଭାଇ କାହିଁକି ଆଉ ଇଆଡ଼େ ଆସନ୍ତି ନାହିଁ ? ସେ କ'ଣ ଗାଁରେ ନାହାନ୍ତି ?

ସେ ଭାବିଲା । କହିଲା ମୁଁ ତାଙ୍କୁ ଅନେକ ଦିନ ହେଲା ଦେଖୁ ନାହିଁ । ଟିକିଏ ରହି କହିଲା, ଶୁଣିଲି ଗୁଣମଣିଙ୍କର ସ୍ତ୍ରୀ ତିନି ଚାରିଦିନ ଭିତରେ ଆସୁଛନ୍ତି । ଦେଖି ଆସିଲି ଭାରି ଆୟୋଜନ ଲାଗିଛି ।

କିଛି ଉତ୍ତର ଦେଲି ନାହିଁ । ଖରାପ ଲାଗିଲା । ମା ପୁଣି କହିଲା, ନିଧି ସାନ୍ତେ କହୁଛନ୍ତି, କାଲି ତାଙ୍କର ଘର ଲିପିବାକୁ ଯିବି । ଏକୁଟିଆ ପାରିବି ନାହିଁ ଫଲ, କୁଟୁମ୍ବ ଯିନା କମ୍, ଘର ତ କମ୍ ନୁହେଁ । ତୋତେ ବି ଯିବାକୁ କହୁଛନ୍ତି ।

କହିଲି, ମୁଁ ନ ଗଲେ ତାଙ୍କର କାମ ଅଟକି ରହିବ ନାହିଁ ।

ମା' କହିଲା, ଅଲୋ ଫୁଲ, ଏତ ସବୁଦିନିଆ କଥା ନୁହେଁ, ଦିନକର କଥା, କାଲକାଲକୁ ମନେ ରହେ । କାହା ବିନା କାହାର କାମ ଅଟକିଯାଏ ନାହିଁ ।

ସୁଲଭ କଥା ଏ ମା, ତୋ'ର ଗୁଣ ନନାର ବାହା । ନୂଆବୋହୂ ଆସିବେ, ଘରର ଲକ୍ଷ୍ମୀ, ଗରବଙ୍କର କେତେ ଆଶା ଭରସା ।

ମୁଁ ମୁହଁ ବୁଲାଇ ଷ୍ଟେଘର ଅଧାକାନ୍ଥି ଆର ପାଖକୁ ଚଲି । ଭିତ୍ରି କାନ୍ଦ ମାଡ଼ିଲା ।

ପରଦିନ ଘର ଲିପୁ ଲିପୁ ଗାଧୁଆବେଳ ଛଳିଗଲା । କାମ ସରିଲା ନାହିଁ । ଯାହାଙ୍କର ଥରଟିଏ ଦେଖା ପାଇବାର ଆଶାରେ ଉପାସ ଭୋକରେ ଏତେ ପରିଶ୍ରମ କଲି, ତାଙ୍କୁ ଦେଖି ପାରିଲି ନାହିଁ । ସେ କ'ଣ ଘରେ ନାହାନ୍ତି ? ଆମର କାମ ଦେଖିବାକୁ ବେଳେ ବେଳେ ନିଖି ସାଂନ୍ତେ ନଇଲେ ତାଙ୍କର ବୁଢ଼ୀ ନାନୀ ପଦାକୁ ଆସନ୍ତି । ମିଛଟାରେ ହେଲେ କେତେ ଖୁଣନ୍ତି । ନିଖି ସାଂନ୍ତେ କହିଲେ, ଅଲୋ ବୁଢ଼ି, ତୁ ପଦା କାନ୍ଥ ଲିପୁଥା, ଫୁଲ ଭିତର କାନ୍ଥ ଲିପୁ । ହାତ ଫୁର୍ତ୍ତି କର ଲୋ, ଜଲ୍‌ଦି ସାର ।

ଖଞ୍ଜା ଭିତର କାନ୍ଥ ଲିପିବାକୁ ଆସିଲି । ଉଚ୍ଚ କାନ୍ଥ । ସିଢ଼ି ଲଗାଇ ଲିପୁଥାଏ । ସୂର୍ଯ୍ୟ ମୁଣ୍ଡ ଉପରକୁ ଆସିଲେ । ମାଟି ଗୋବର ପାଣିରେ ଦେହ ମୁଣ୍ଡ ଓଦା ହୋଇଗଲାଣି । ହାତ ଗୋଡ଼ ଆଉ ଚଳୁ ନାହିଁ । ନାନୀକୁ କହିଲି, ବେଳ ଆସି ଏତେ ହେଲା ସାଆନ୍ତାଣୀ, ଆଜି ଏତିକି ଥାଉ, କାଲି ସକାଳୁ ଆସି କାମ କରିଦେବି । ସେ ବିରକ୍ତ ହୋଇ କହିଲେ, ତୋ ମୁହଁ ପୋଡ଼ୁ ଲୋ ଛତରଖାଇ । ଆହା ହା, ଲବଣୀ ପିତୁଳା, ଖରା ଲାଗିଲେ ତରଳିଯିବ ପରା । କହିଲି, ରାଗୁଛ କାହିଁକି ? ସକାଳ ପହରୁ ଅଖିଆ ଅପିଆ ଖଟୁଛି । ଯେତେ କାମ କଲେ ତମ ମନକୁ ଆସେ ନାହିଁ ।

ମୋ କଥା ମୋ ତୁଣ୍ଡରେ ଅଛି, ସେ ଚମକି ଆସିଲେ । ବଡ଼ପାଟି କରି ଗର୍ଜି ଉଠି କହିଲେ, ଛତରଖାଇ ମୁହଁ କେଡ଼େ ଟାଣ ବା, ଗୁଆଁଣ୍ଠୀ ମୁଠାରେ ମୁହଁ ଭାଙ୍ଗି ଦେବି, ଜବାବ ଦେଉଛୁ । ମୁଁ କହିଲି, ସାଆନ୍ତାଣୀ, ରାଗୁଛ କାହିଁକି, ଗରିବ ବୋଲି ଆମର ଜୀବନ ନାହିଁ ?

ସେ ତଳୁ ଗୋଟାଇ ସଢ଼େଇ ଫାଲଟାଏ ଧରି ମୋ' ମୁହଁକୁ ପକାଇଲେ । କହିଲେ, ଜୀବନ, ପୋଡ଼ ଯାଉ ତୋ ଜୀବନ । ଉହିରି ଟୋକି, କଥା କଥାକେ ଜବାବ ଦିଆ ଶିଖୁଛି ।

ସଢ଼େଇଟା ମୋ କପାଳରେ ବାଜି ତଳେ ପଡ଼ିଲା । ସିଢ଼ି ଉପରୁ ଓହ୍ଲାଇ ଆସିଲି, ମୁଣ୍ଡରେ ହାତ ଦେଇ ଠିଆହେଲି ।

ସେ ସେମିତି କହିବାକୁ ଲାଗିଲେ, ଦେଖ ମ୍ଁ, କେଡ଼େ ବହପ ଏ ଛଇଛଟକୀ ଟୋକିଟାର ! କାମ ନ କରି ମୁହଁରେ ଜବାବ ଦେଉଛି ! ଗୁଣନନା କେଉଁଠୁ ଆସି ପହଞ୍ଚିଲେ । ପଚାରିଲେ, ନାନୀ, କାହା ଉପରେ ଚିଡ଼ୁଛ ?

ଚାହିଁଲି ତାଙ୍କ ମୁହଁକୁ । ଶୁଖି କଲାକାଠ ହୋଇଛି, ଆଖି ଦି'ଟା ନାଲି ପଡ଼ିଛି । ମୋ ଅଡ଼ିକୁ ଅନାଇଁ ନରମ ସ୍ୱରରେ କହିଲେ, ଦେଖିଲି ନାନୀ, ତାଙ୍କୁ ଫାଟି କପାଳ ରକ୍ତ ବାହାରୁଛି । ମୋ' ଅଡ଼ିକୁ ଆସିଲେ । ନାନୀଙ୍କ ଆଗରେ କାନ୍ଦୁଅ ହାତରେ କପାଳ ପୋଛି ସିଡ଼ି ଉପରକୁ ଉଠିଲି । ସେ ଡାକି କହିଲେ, ତଳକୁ ଓହ୍ଲାଇଲୁ ଫୁଲ, ଦେଖେ କ'ଣ ହୋଇଛି ।

କହିଲି, କିଛି ନାହିଁ ଯାଆନ୍ତୁ, ସିଡ଼ି ବାଜି ମୁଣ୍ଡରୁ ଟିକିଏ ମଳଚମ ଛିଡ଼ିଯାଇଛି । ବୁଢ଼ୀ ନାନୀ କାବା ହୋଇ ମୋ ଅଡ଼ିକୁ ଚାହିଁଲେ । ମୁଁ ମୁରୁକେଇ ହସିଲି । ଗୁଣ ନନା ଗମ୍ଭୀର ହୋଇ ପାଖ ଘର ଭିତରକୁ ପଶିଲେ ।

ଦି'ପହରେ ଆଉ କାମ କଲି ନାହିଁ । ଏକା ମା' ଗଲା, ମୁଁ ଘରେ ଶୋଇ ନାନା କଥା ଭାବିଲି—ଗୁଣନନା ଘରେ ଅଛନ୍ତି । ଅଥଚ ଆଜଯାଏ ଆସି ନାହାନ୍ତି କାହିଁକି ? କେଡ଼େ ଆଗ୍ରହରେ ସେଦିନ ସେ ଆସିଥିଲେ, ସ୍ନେହରେ ମୋତେ ସେ ଆଲିଙ୍ଗନ କରିଥିଲେ, କାହିଁକି ତାଙ୍କ ଆନନ୍ଦରେ ବାଧା ଦେଲି ? ଯାହାଙ୍କୁ ମୁଁ ମନପ୍ରାଣ ସମର୍ପଣ କରିଛି, ତାଙ୍କର ପ୍ରେମର ପ୍ରବାହକୁ ଅଟକାଇଲି କାହିଁକି ? କେତେ ଭାବିଲି, କେତେ କାନ୍ଦିଲି । ତୃପ୍ତି ବା ଶାନ୍ତି ମିଳିଲା ନାହିଁ । ବେଳୁବେଳ ମନଟା ଅସ୍ଥିର ହେଲା, ଉଚ୍ଚାଟ ହେଲା । ତାଙ୍କ ଘରକୁ ଯାଇ ତାଙ୍କର ଶୁଖିଲା ମୁହଁଟି ଦେଖିବାକୁ, ନିରୋଳାରେ ପଦେ ପଚାରିବାକୁ ମନ ଉପନ୍ଧି ହେଲା ।

ଦିନର ଆଲୁଅ ଲିଭିଲିଭି ଆସିଲା । ମୋ'ର କାନରେ ବାଜିଲା କିଏ ଯେପରି ଥରିଲା ସ୍ୱରରେ ଡାକୁଛନ୍ତି ଫୁଲ, ଫୁଲ । ମନର ଅନ୍ଧାର ଭିତରେ ଝଡ଼ ତୋଫାନ ମଝିରେ ସେଇ କ୍ଷୀଣ ଡାକଟି ହଜିଗଲା ।

ପୁଣି କିଏ ଡାକିଲେ ଫୁଲ, ଫୁଲ ଲୋ—

ଏଥର ବୁଝିଲି, ସ୍ୱପ୍ନ ନୁହେଁ, ଭ୍ରମ ନୁହେଁ, ସେ ଆସିଛନ୍ତି, ଯାହାଙ୍କ କଥା ମୁଁ ଭାବୁଥିଲି । ଅସ୍ତବ୍ୟସ୍ତ ହୋଇ ଉଠିଲି । ଶ୍ଳେଟ ଲୁଗାଟିକୁ ଦେହରେ ବେଢ଼ାଇ ଦେଇ ପଦାକୁ ଆସିଲି । ସଞ୍ଜର ମହଳ ଆଲୁଅରେ ଦେଖିଲି ଆମର ବାଡ଼ ପାଖରେ ଖୁଣ୍ଟକୁ ଆଉଜି ଗୁଣ ନନା ଠିଆ ହୋଇଛନ୍ତି ।

କିଛି ନ ଭାବି ଧାଇଁଗଲି ତାଙ୍କ ପାଖକୁ । ଉଦ୍‌ବିଗ୍ନତା ସହି ନ ପାରି ଆକୁଳ ହୋଇ କହିଉଠିଲି, ତେମେ ଆସିଛ ଗୁଣ ନନା, ଏତେ ଦିନକେ ମନେ ପଡ଼ିଲା । ଅମାନିଆଁ ଲୁହ ଦୁଇ ଆଖିରୁ ମୋ'ର ନିଗିଡ଼ିପଡ଼ିଲା । ଆଉ କେତେ କ'ଣ କହିଥାନ୍ତି, ମୁହଁ ଖୋଲିଲା ନାହିଁ । ସେ ସେଇଠି ସେମିତି ଠିଆହୋଇ ପଚାରିଲେ, ତୋ ମୁଣ୍ଡ କେମିତି ଅଛି ?

ମୁଁ ଉତ୍ତର ଦେଲି, ଏଇଆ ବୁଝିବାକୁ ଆସିଥିଲ ? ଭଲ ଅଛି । ସେମିତି କିଛି ଅଘାତ ହୋଇ ନ ଥିଲା । ଟିକିଏ ରହି ପୁଣି ପଚାରିଲି, ତେବେ କ'ଣ ଏଠିକି ଆଉ ଆସିବ ନାହିଁ, ଗୁଣ ନନା ? ସେଦିନ କ'ଣ କହିଦେଲି ବୋଲି ଛଳ କରୁଛ ? ଉତ୍ତରକୁ ଅପେକ୍ଷା ନ କରି ତାଙ୍କ ପାଖକୁ ଗଲି । ହାତ ଧରି କହିଲି, ଆସ । ସେ ବାଧା ଦେଲେ ନାହିଁ, ମୋ ପଛେ ପଛେ ଆସିଲେ, ପିଣ୍ଡା ଉପରେ ମୋ ପାଖରେ ବସି କହିଲେ; ମୁଁ ତୋ ଉପରେ ରାଗି ନାହିଁ । ତୋ'ରି କଥା ଆଜିଯାଏ ବସି ଭାବୁଥିଲି ।

ଅଗ୍ରହରେ ପଚାରିଲି, ସତେ, କ'ଣ ଭାବୁଥିଲ ?

କହିଲେ, ଭାବି ଭାବି କିଛି ଠିକ୍ କରିପାରିଲି ନାହିଁ । ତୁ ଜାଣୁ, କାଲି ଗୁରୁ ପଅରଦିନ ମୋ'ର ସ୍ତ୍ରୀ ଆସୁଛନ୍ତି । ତାଙ୍କୁ ମୁଁ ଜାଣେ ନାହିଁ, ଚିହ୍ନେ ନାହିଁ । କେବେ ଦେଖିଛି ବୋଲି ମନେ ହେଉ ନାହିଁ । ସେହି ଅପରିଚିତାକୁ ଯେନି ଚିରଦିନ ମତେ ଚଳିବାକୁ ହେବ । ମୋ'ର ସବୁ ମମତାର ଅଧିକାରୀ ହେବ ସେହି । କେମିତି, ଭଲ ହେବ ନାହିଁ ଫୁଲ ?

ଥଙ୍ଗେଇ ଥଙ୍ଗେଇ କହିଲି, ଭଲ ନ ହେବ କାହିଁକି ? ସମସ୍ତେ ସବୁଦିନ ଅପରିଚିତା ନ ଥା'ନ୍ତି । ପରିଚୟ ଅପେ ଅପେ ହୁଏ । ପର ଅପଣାର ହୋଇ ମନ ପ୍ରାଣ ଅଧିକାର କରେ । ଏ ତ ସଂସାର କଥା ।

ସେ କହିଲେ, ହଁ ଏହା ସଂସାର କଥା, କିନ୍ତୁ ମୁଁ ତ ସଂସାରରୁ ବାହାର । ପ୍ରତିବାଦ କରିଥିଲି, ବାଧା ଦେଇଥିଲି । ନନା ଅନେକ କଥା ବୁଝାଇଲେ, କହିଲେ, ତୋ'ର ମା ମରିବା ଦଶବର୍ଷ ପୂରିଗଲା । ନାନୀ ସବୁ ଘରକାମ ଚଳାଉଥିଲେ । ତାଙ୍କର ବଳ ବୟସ ରହିଲା, ସେ ଆଉ ପାରୁ ନାହାନ୍ତି । ଯେତେ ଶୀଘ୍ର ସମ୍ଭବ ବୋହୂ ଆସି ଘରର ଭାର ନେଲେ ସୁବିଧା ହେବ, ମୁଁ ନିଶ୍ଚିନ୍ତ ହେବ । ତାଙ୍କର କାର୍ଯ୍ୟରେ ବାଧା ଦେବ କାହିଁକି ଫୁଲ ? ବୋହୂ ଆଣିବେ, ଘର କାମ ଚଳିବ । ପୁଝାରି ଚାକର ନିଯୁକ୍ତ କରିବାରୁ ଉଦ୍ଧାର ପାଇବେ । ତାଙ୍କର ମନକଥା ପୂର୍ଣ୍ଣ ହେବ । ବୋହୂ ଆଣିବାକୁ ଆତୁର ହେଉଛନ୍ତି, ବୋହୂ ପାଇବେ, କିନ୍ତୁ ପୁଅ ପାଇବେ ନାହିଁ ।

ମନରେ ପାପ ପଶିଲା । ପଚାରିଲି, ଏ କଥା ତମେ କାହିଁକି କହୁଛ ? ପୁଅ ପାଇଁ ସିନା ବୋହୂ । ପୁଅର ସୁଖ, ପୁଅର ଆନନ୍ଦ ଦେଖିବାକୁ ସିନା ଘରକୁ ବୋହୂ ଅଣୁଛନ୍ତି ? ସେ ମୋ'ର କଥାରେ କାନ ନ ଦେଇ ହଠାତ୍ କହିଲେ, ଫୁଲ ମୁଁ ତତେ ଗୋଟିଏ କଥା ପଚାରିବାକୁ ଚାହେଁ । ତତେ ଜବାବ୍ ଦେବାକୁ ହେବ ।

କହିଲି, ପଚାର ?

କହିଲେ, ଆଜିଯାଏ ତୁ ମତେ ଠକିଆସିଛୁ ?

ବୁଝି ପାରିଲି ନାହିଁ ତାଙ୍କ କଥା । ପଚାରିଲି, କାହିଁକି, ତମର ଏପରି ଭାବିବାର କାରଣ ?

କହିଲେ, କାରଣ ତୁ ଜାଣୁ ନାହୁଁ ?

କେତେ କଥା ମୋ ମନ ଭିତରେ ଖେଳିଗଲା । ମନର କଥା ଯଦି ଦେଖାଇବାର ଶକ୍ତି ଥାନ୍ତା, ତା ହେଲେ ସିନା ମୁଁ ଦୃଢ଼କରି କହିପାରନ୍ତି ମୁଁ କପରି ତାଙ୍କୁ ଭଲ ପାଏ । କିନ୍ତୁ ସେ ଉପାୟ ତ ନାହିଁ । ଭଲ ପାଇବାର ଶେଷ ଯଦି ଦେହ ଦେହର ମିଳନରେ ହୁଏ, ତେବେ ମୁଁ ପ୍ରତାରଣା କରିଛି । ମୁଁ ଦୋଷୀ । ଦେହଟାକୁ ତାଙ୍କର ତୃପ୍ତି ପାଇଁ ଉତ୍ସର୍ଗ କଲେ ଯଦି ସେ ପ୍ରମାଣ ପାଇବେ, ମୁଁ ତାଙ୍କୁ ଭଲ ପାଏ, ତେବେ ତାହାହିଁ ହେଉ ।

ଆଖିରୁ ଲୁହ ପୋଛି କହିଲି, କାରଣ ମୁଁ ଜାଣେ ନାହିଁ । ତୁମର ମୁହଁରୁ ମୁଁ ଶୁଣିବାକୁ ଚାହେଁ ।

ସେ ଆକାଶକୁ ଚାହିଁ କେତେ ଭାବିଲେ । ଦୀର୍ଘଶ୍ୱାସ ଛାଡ଼ି କହିଲେ, ତୁ ଭାବିଛୁ ଦେହର ମିଳନଟା ମୋ ପକ୍ଷରେ ସବୁଠାରୁ ବଡ଼ ? ତା ନୁହେଁ, ଦେହ ଅପେକ୍ଷା ମନଟାକୁ ମୁଁ ବଡ଼ ବୋଲି ମଣେ । ଉତ୍ତେଜନାରେ କେବେ କେବେ ଇଚ୍ଛା ହୁଏ, ତୋତେ ଅତି ପାଖରେ ପାଇବାକୁ, କିନ୍ତୁ ତୁ ସବୁଦିନେ ବାଧା ଦେଇ ଆସିଛୁ । ମୁଁ ପ୍ରତିବାଦ କରି ନାହିଁ, ଅଭିମାନ କରି ନାହିଁ । ପାହାଡ଼ ପରି ତୋର ଅଟଳ ଧୈର୍ଯ୍ୟକୁ ମନେ ମନେ ପ୍ରଶଂସା କରିଛି । କିନ୍ତୁ ଫୁଲ, ତୁ ମତେ ଯେତିକି ଆଡ଼େଇଦେଉ, ମୋ ଆଖିରେ ତୁ ସେତିକି ବଡ଼ ଦେଖାଯାଉ । ଯେତିକି ତୁ ଦୂରରେ ରହିବା ଚେଷ୍ଟା କରୁ, ସେତିକି ତୁ ମୋର ହୃଦୟର ପାଖକୁ ଘୁଞ୍ଚିଆସୁ । ତଥାପି ମଣିଷ ସବୁବେଳେ ମଣିଷ । ରକ୍ତ ମାଂସର ଆକର୍ଷଣ, ରୂପର ମୋହ, ବୟସର ଉତ୍ତେଜନା ବେଳେ ବେଳେ ମନକୁ ବିଚଳିତ କରେ । ଆଉ ଯଦି ସେହି ମୁହୂର୍ତ୍ତରେ ମଣିଷ ନିଜକୁ, ସଂସାରକୁ ଭୁଲି ନଇଁପଡ଼େ, ତା ଦୋଷ ଏଡ଼େ ବଡ଼ ଯେ, ତୁ ତଡ଼ିଦେଉ ଆଖିଆଗରୁ ? ତା'ର ଭଲ ପାଇବାର କିଛି ମୂଲ୍ୟ ନାହିଁ ।

ଆଖିରେ ଲୁହ ଭରିଗଲା । ତାଙ୍କର ମୁହଁକୁ ଚାହିଁ କହିଲି, ତେମେ ମତେ ଏତେ ଭଲପାଅ ଗୁଣନିଧି ? କାହିଁକି ? କେତେ ଦିନ ବା ଭଲପାଇ ପାରିବ ? କାଲି ଯେତେବେଳେ ତମର ସ୍ତ୍ରୀ ଆସି ତମର ଘର ଉଜ୍ଜ୍ୱଳ କରିବେ, ତେତେ ଆଉ ମତେ ଭଲପାଇ ପାରିବ ? ଆଜି ଯେଉଁ ଆଖିରେ ମତେ ଦେଖୁଛ, ସେତେ-ବେଳେ ମତେ ସେହି ଆଖିରେ ଦେଖିପାରିବ ?

ମନଭୁଲା ଆଖିରେ ସେ ମୋତେ ଚାହିଁଲେ । କପାଳ ଉପରେ ହାତ ବୁଲାଇ ବ୍ୟଥାଭରା ସ୍ୱରରେ କହିଲେ, କ'ଣ କଲେ ତୁ ମୋ କଥାରେ ବିଶ୍ୱାସ ଯିବୁ ? ଯେ ଆସିବ ସେ ଘରର ଘରଣୀ ହୋଇ ଆସିବ; ମୋ ହୃଦୟର ରାଣୀ ହୋଇ ତ ଆସିବ ନାହିଁ ।

ପଗ୍ଭରଦେଲି, ସେ ଯଦି ମୋଠାରୁ ବେଶୀ ସୁନ୍ଦରୀ ହୋଇଥାନ୍ତି ! କହିଲେ, ଦୁନିଆର ଆଖିକି ସେ ହୁଏ ତ ସୁନ୍ଦର ହେବେ, ମୋ ଆଖିକି ତୋ ଛଡ଼ା ଆଉ କେହି ସୁନ୍ଦର ଦିଶେ ନାହିଁ । ଭଲପାଇବାଟା ଖାଲି ସୁନ୍ଦରପଣର ସୀମା ଭିତରେ ଆବଦ୍ଧ ରହେ ନାହିଁ । ସେ ଚୁପ ହେଲେ । ମୁଁ କହିଲି ତେବେ ଶୁଣିଥିବ, ମୋର ବାହାଘର ପାଇଁ ମା ବ୍ୟସ୍ତ ହୋଇପଡ଼ିଲାଣି, କିନ୍ତୁ ମୁଁ ବାଧା ଦେଉଛି କାହିଁକି ତୁମେ ଜାଣ ?

ଅଗ୍ରହରେ କହିଲେ, ଜାଣେ । ତୁ ମତେ ଭଲପାଉ ।

କହିଲି, ତୁମେ ମତେ ଭଲ ପାଅ, ତଥାପି ତ ସ୍ତ୍ରୀ ଅଣିବାକୁ ଯାଉଛ । ସେହିପରି ଯଦି ମୁଁ ବିବାହ କରେ ଆଜି ଯେମିତି ମୋତେ ଯେଉଁ ଆଖିରେ ଦେଖୁଛ, ସେତେବେଳେ ସେହି ଆଖିରେ ଦେଖି ପାରିବ ? ବିବାହ ଓ ପ୍ରେମ ଦୁଇଟା ଅଲଗା କଥା ?

ସେ ମୋ ମୁହଁକୁ ସନ୍ଦେହଭରା ଆଖିରେ ଗ୍ଭହିଁଲେ, କେତେବେଳକେ ପଗ୍ଭରିଲେ, ତୁ ବାହା ହୋଇଯିବୁ ଫୁଲି ?

ମୁଁ ସଲଜ ହୋଇ ବସି କହିଲି, ଚିରଦିନ ଏମିତି ଅଭିଆଡ଼ୀ ହୋଇ କେହି ରହେ ନାହିଁ । ମୁଁ ତୁମକୁ ଯେତେ ଭଲପାଏଁ ପଛେ ଅନ୍ତତଃ ଲୋକ-ଲଜ୍ଜାକୁ ଡରି ମୋତେ ଦିନେ ପରଘରକୁ ଯିବାକୁ ହେବ । ଆଉ, ଯେଉଁଦିନ ମୁଁ ପରକୁ ନେଇ ସଂସାର କରିବାକୁ ଯିବି, ପିଲାଦିନର ଏ ସବୁ ସ୍ମୃତି ପଛରେ ପଡ଼ି ରହିବ । ଗୋଟାଏ ସ୍ୱପ୍ନ, ଗୋଟାଏ ଝାପ୍‌ସା ଛବିପରି ସବୁ ଭୁଲିଯିବ ।

ପଗ୍ଭରିଲେ, ଭୁଲିପାରିବୁ ତ ?

କହିଲି, କହିପାରୁ ନାହିଁ କ'ଣ ହେବ, କିନ୍ତୁ ନ ଭୁଲି ଆଉ ଉପାୟ କ'ଣ ଅଛି ? ମଣିଷ ଯଦି ବଞ୍ଚିରହିବାକୁ ଗ୍ଭହେଁ, ତାକୁ କେତେ କଥା ଭୁଲିବାକୁ ପଡ଼ିବ । ଯାହା ସଙ୍ଗେ ଜୀବନ ମରଣର ସମ୍ପର୍କ, ଯାହା ସଙ୍ଗେ ସୁଖ ଦୁଃଖର ସ୍ୱାର୍ଥ ଜଡ଼ି ରହିବ, ତାକୁ ଅବହେଳା କି ପ୍ରତାରଣା କରିହେବ ନାହିଁ । ତା ସଙ୍ଗେ ଲୁଚକାଳି ଖେଳିହେବ ନାହିଁ । ସେଇଟା ଅଧର୍ମ, ସେଇଟା ପାପ । ତେଣୁ ଯାହାର ମୁଁ ହାତ ଧରି ଯିବି, ତାକୁ ମନ ପ୍ରାଣ ଦେଇ ଭଲପାଇବି ।

ଗୁଣ ଭାଇଙ୍କ ହାତ ପାପୁଲିକୁ ମୁଠାଇ ଧରି ଅନୁରୋଧ କଲି, କହ ଗୁଣ ଭାଇ ! ଏହାଛଡ଼ା ଅନ୍ୟ କି ଉପାୟ ଅଛି ? ତେଣୁ ମୋତେ ଭଲପାଅ, ମୁଁ ତୁମକୁ ଭଲପାଏ, କିନ୍ତୁ ଯେଉଁ ତୃତୀୟ ଲୋକଟି କାଲି ଆସି ଆମର ଏହି ଭଲ ପାଇବାର ପଥ ମଝିରେ ପ୍ରତିବନ୍ଧକ ହୋଇ ଠିଆହେବ, ତାର ପ୍ରଭାବ ତ ଜୀବନ ଉପରେ ଅଳ୍ପ ନୁହେଁ ? ସେହି ପ୍ରତିବନ୍ଧକକୁ ଡେଇଁ ଆସିବାର ସାହସ ତମର ରହିବ ନାହିଁ ।

ସେ କହିଲେ, ଆଜିଠାରୁ ଏ କଥାର ଉତ୍ତର ତୋତେ ଦେବାକୁ ମୁଁ ଚାହେଁ ନାହିଁ । ମଣିଷ ହୃଦୟରେ ଯାହା ଅନୁଭବ କରେ, ମନରେ ଯାହା ପାଏଁ, ତୁଣ୍ଡରେ କହିଲେ ତାର ମୂଲ୍ୟ କମିଯାଏ । ମଣିଷର କାର୍ଯ୍ୟ ଉଦ୍ଦେଶ୍ୟର ପରିଚୟ ଦିଏ । ଠିକ୍ ଏ ରହି କହିଲେ, ଯେଉଁ ପ୍ରତିବନ୍ଧକ କଥା କହୁଛୁ, ତାହା ଯେ ଦିନେ ଆସିବ, ଏ କଥା ମୁଁ ଭଲକରି ଜାଣିଥିଲି; ତଥାପି ମୁଁ ତତେ ଭଲପାଇଛି । ପ୍ରତିବନ୍ଧକକୁ ଦୂର କରିହେବ ନାହିଁ ସିନା, ଏଡ଼ିଦେଇ ଆସିବା କଷ୍ଟ ହେବ ନାହିଁ ।

କହି ଆସୁଥିଲି, ଭଲପାଇବାଟାକୁ ଯଦି ଏତେ ବଡ଼ ଭାବୁଛ, ତେବେ ତାରି ପାଇଁ ସ୍ୱାର୍ଥକୁ ପଛରେ ରଖି ଅସୁନା ? ଜାତିର ଡର, ଲୋକନିନ୍ଦାର ଭୟ, ସମ୍ପତ୍ତିର ଲୋଭ—ଏଇସବୁ ତମ ମନର ସ୍ୱାଧୀନତାକୁ ବାନ୍ଧିରଖିଛି । ତମର ଭଲ-ପାଇବାଟା ଗୋଟାଏ ସାମୟିକ ଉତ୍ତେଜନା । ତୁଣ୍ଡ ଖୋଲିଲି ନାହିଁ ।

ସେ ଉଠି ଠିଆ ହେଲେ । ମୁଁ ମଧ୍ୟ ଉଠିଲି । କେତେବେଳୁ ସଞ୍ଜ ବୁଡ଼ିଲାଣି । ଅନ୍ଧାର ଘୋଟିଗଲାଣି ଦୁନିଆଁ ସାରା । ସେ ବ୍ୟଥାଭରା ସ୍ୱରରେ କହିଲେ, ଯାଉଛି ଫୁଲ ।

କହିଲି, ଚାଲ, ତମକୁ ମୁଁ ତୋଟା ସେପାଖେ ଛାଡ଼ିଦେଇ ଆସିବି ।

ସେ ବାରଣ କଲେ । ଯିବା ଆଗରୁ ଅନ୍ଧାରରେ ମୋ'ର ହାତ ଧରି କହିଲେ, ଫୁଲ ଗୋଟାଏ କଥା କହିବି, କିଛି ମନେ କରିବୁ ନାହିଁ ?

ମୁଁ କହିଲି, କୁହ ।

ଠିକ୍ ଏ ଭାବିଲେ । କହିଲେ, ନା, ନା, ଥାଉ । ଯାହା କହିବି ହୁଏତ ସ୍ଥିର ହୋଇ ଭାବିବା ଭଳି ଅବସ୍ଥା ତୋର ମନର ନାହିଁ । କହିବି, ସମୟ ଆସୁ ।

ସେ ଚାଲିଗଲେ । ଅନ୍ଧାର ଭିତରେ ଲୁଚିଗଲେ । ମୁଁ କେବଳ ଥକ୍କା ହୋଇ ଚାହିଁ ରହିଥାଏ । ଚାରିଆଡ଼ ଶୂନ୍‌ଶାନ । ସେଇ ଶୂନ୍ୟତା ଯେପରି ମନ ଭିତରେ କହିଉଠୁଛି, ନିଆଁ ସଙ୍ଗେ ଆଉ ଖେଳ ନା ଫୁଲ, ଜଳିଯିବୁ, ପୋଡ଼ି ଯିବୁ, ପଛେଇ ଅ— ।

ଦୁଇଦିନ ବିତିଲା । ଘରୁ ବାହାରି ନାହିଁ । ନିଖି ସାଆନ୍ତଙ୍କର ନିମିତ୍ତ ବୋଲି ମା ଯାଇଁ ସବୁବେଳେ ତାଙ୍କ ଘରେ ପଶିଥାଏ । ରାତିଅଧରେ ଆସେ । ମୋ ସଙ୍ଗେ କଥାବାର୍ତ୍ତା କରିବାକୁ ବେଳ ପାଏ ନାହିଁ । ରାତି ପାହାନ୍ତାରୁ ମଧୁପୁର ଗାଁ କମ୍ପୁଛି । ରାତି ପାହିଲେ ମିଶ୍ରଘର ବୋହୂ ଆସିବ—ଗୁଣ ନନାଙ୍କ ସ୍ତ୍ରୀ । ନିଦଟା କେତେବେଳୁ ଭାଙ୍ଗିଯାଇଥିଲା । ମନରେ ବାର ଚିନ୍ତା, ବାର କଥା ପଡ଼ୁଥିଲା । ଦୁଇଦିନ ଭିତରେ ଗୁଣନନା ଥରଟିଏ ଆସିଥିଲେ—ଦି ପହରେ । ବେଶି କିଛି

କହି ନାହାନ୍ତି । ମୋର ମଧ୍ୟ ପଗୁରିବାର କୌଣସି କଥା ନ ଥିଲା । ଏଣୁ ତେଣୁ ହିପଦି କହି ସେ ଗୁଲିଗଲେ । ମୋର ମନେ ହେଲା, କ'ଣ ଗୋଟାଏ କହିବ କହିବ ହୋଇ ସେ କହି ପାରନ୍ତି ନାହିଁ ।

ତହିଁ ଆରଦିନ ଗାଧୁଆ ବେଳ ଗଡ଼ିଗଲାଣି । ଠାଇଁଠାଇଁଆ ଖବରେ ମା ଆସି ଘରେ ପହଞ୍ଚିଲା । ମୁଁ ଘରେ ନଡ଼ିଆ ଗୃଞ୍ଚିବ ପାଞ୍ଚ ଉପରକୁ ଗୃହିଁ ଶୋଇଛି । ମା ମୋତେ ଡାକି କହିଲା, ଶୋଇଛୁ କଲେ ଫୁଲ, ଉଠିବୁ ନାହିଁ ?

ମୁଁ ଉଠି ବସିଲି । ଦେଖିଲି ମା ଖଣ୍ଡିଏ ଫୁଲଟଡ଼ିଆ ନୂଆ ଲୁଗା ପିନ୍ଧିଛି, ଗ୍ଲେଟ ପୁଟଳିଟିଏ ହାତରେ ଧରିଛି । କହିଲା, ନେ'ଲେ ଫୁଲ । ନାନୀ ତୋ ପାଇଁ ପିଠା ଦେଇଛନ୍ତି । ମୁଁ କହିଲି, ରଖିଥା ତୁ । ମୋ'ର କିଛି ଖାଇବାକୁ ଇଚ୍ଛା ହେଉ ନାହିଁ ।

ମୋ କଥାରେ କାନ ନ ଦେଇ ସେ କହିଲା, ଯେତେ କହିଲି ତୁ ଶୁଣିଲୁ ନାହିଁ ଲେ ମା । ଯାଇଥାନ୍ତୁ, ନୂଆ ସା'ନ୍ତଙ୍କ ବୋହୂକୁ ଦେଖି ଆସିଥାନ୍ତୁ । ଗାଁଯାକ ସମସ୍ତେ ଗଲେ, ଏକା ତୁ ରହିଲୁ ବାକି । ସାକ୍ଷାତ୍ ଲକ୍ଷ୍ମୀ ପରି ରୂପ—ଗୃନ୍ଦଉଦିଆ ! ଗୃହିଁଦେଲେ ପେଟ ପୂରିଉଠୁଛି । ଏଡ଼କି ଟିକେ ପିଲା, କଥା ଚଉଦ ପନ୍ଦରର ଝିଅ । ଯାହାର ମନ ଯେମିତି ସେ ପାଏ ସେମିତି । ପିଲାଟି ଏକା ଗୁଣନାଖି ହୋଇଛି ।

ମା ମୁହଁରୁ କଥା ଗୁଡ଼ାକ ଶୁଣି ମତେ ଖରାପ ଲାଗିଲା । ମନ ଭିତରେ ମୁଁ ଗୁଣି ହେଲି, ମୋଠୁଁ ସେ ସୁନ୍ଦର ?

ମା କହିଲା, ମିଶ୍ରଙ୍କର ହାତ ମୁଠା ଆଜି ଖୋଲି ଯାଇଛି । ଦୁଃଖୀ ରଙ୍କୀ ଗଲା ଅଇଲା, କେହି ଆଉ ତାଙ୍କ ଘରୁ ଖାଲି ପେଟରେ ଖାଲି ହାତରେ ଫେରୁ ନାହାଁନ୍ତି । ଦୁଃଖୀ ରଙ୍କୀ ଦେଖି ନୁଗାପଟା ବି ଦେଉଛନ୍ତି ନିଜ ହାତରେ । ମା କହିବାକୁ ଲାଗିଲା, କାଲି ତୁ ଯିବୁ ଫୁଲ, ନିଜ ଆଖିରେ ଦେଖିଆସିବୁ । ବୁଡ଼ୀନାନୀ କେତେକଥା କହୁଛନ୍ତି ।

ମୁଁ ପାଟି ଖୋଲିଲି, କାହିଁକି ମୁଁ, ବୁଢ଼ୀ ନାନୀଙ୍କର ହାତ ଗଲା ମରି ନାହିଁକି ? ନଡ଼ିଆ ସଡ଼େଇ ମାଡ଼ରେ ମୋ' ମୁଣ୍ଡ ଦରକି ଯାଇ ନାହିଁ । ତାଙ୍କ ଦୁଆରକୁ ଆଉ ଯିବ ? ତାଙ୍କର କିଏ ଖାଏ ନା ଧାରେ ? ମା ମୋ ଓଠ ଧରି କହିଲା, ରାଗ ରୋଷରେ କେତେବେଳେ କ'ଣ ହୋଇଥାଏ, ସେ କଥା କି ସବୁଦିନେ ରହେ ? ପର ଦୁଆରେ ଠିଆ ନ ହେଲେ ଆମର ପେଟ ପାଟଣା ଚଳିବ ନାହିଁ । ଆମର କି ରୁଷା ? ରୁଷିଲେ ନିଜ ସେରକ ହାନି ହେବ ସିନା !

କିଛି ଉତ୍ତର ଦେଲି ନାହିଁ ।

ମାଇ ସଞ୍ଜବେଳେ । ପିଣ୍ଡାରେ ବସି ଏଣୁ ତେଣୁ କେତେ କଥା ଭାବୁଛି । ଦେଖିଲି, କାନ୍ଧରେ ଗାମୁଛା ଖଣ୍ଡେ ପକାଇ ଗୁଣ ସା'ନ୍ତେ ଡୋଟା ଆଡୁ ଆସୁଛନ୍ତି ।

କେତେ ଥର ତ ଆସନ୍ତି, ତାଙ୍କୁ ଦୂରରୁ ଦେଖିଲେ, ଖୁସି ଲାଗେ; କିନ୍ତୁ ସେ ଦିନ କାହିଁକି ଖରାପ ଲାଗିଲା । ଛାତି ଭିତରେ ଦୁଃଖ କି ଅଭିମାନର କୋହ ଉହ୍ଲାଇ ଉଠିଲା ।

ସେ ପାଖେଇ ଆସିଲେ । କ'ଣ କରିବି, କେମିତି କ'ଣ କହିବି ମୋତେ ବୁଦ୍ଧି ଦିଶିଲା ନାହିଁ । ସେ ଯେତିକି ପାଖେଇ ଆସୁଥାନ୍ତି, ମତେ କାହିଁକି ସେତିକି କାନ୍ଦ ମାଡ଼ୁଥାଏ । ମନ ହେଉଥାଏ, ମା କେମିତି ଆସି ପହଞ୍ଚନ୍ତା କି, ମୁଁ ନିଶ୍ଚିନ୍ତ ହୁଅନ୍ତି; କିନ୍ତୁ ମା' ଆସିବାର ବେଳ ହୋଇନାହିଁ ।

ଛାତିର ଦୁଃଖ ଆଉ ସହିହେଲା ନାହିଁ । ଗୋଟାଏ ଖିଆଲରେ ଘର ଭିତରକୁ ଉଠିଗଲି । କବାଟ ଆଉଜାଇ ନେଇ ବାହୁ ଉପରେ ମୁଣ୍ଡ ରଖି ତଳଟାରେ ଶୋଇପଡ଼ିଲି । କାନ୍ଦଣାକୁ ଯେତେ ଚାପିବାକୁ ଚେଷ୍ଟା କଲି, ଚାପି ରଖିପାରିଲି ନାହିଁ । ଦୁଇ ଆଖି ଭରି ଲୁହ ଝରିପଡ଼ିଲା, ଭାରି କୋହ ଉଠିଲା । ଓଠକୁ ଚାପିରଖି କାନ୍ଦିଲି ।

ତାଙ୍କର ଗୋଡ଼ର ଶବ୍ଦ ଶୁଣିଲି । ସତେ ଯେମିତି ସେ ଆସି ଆମର ପିଣ୍ଡା ତଳେ ଠିଆ ହେଲେ । ଡାକିଲେ—ଫୁଲ, ଫୁଲ ! ତାଙ୍କର ସେ ଡାକ କେଡ଼େ କରୁଣ ! ମନ ହେଉଥିଲା ଉଠି ଧାଇଁଯିବି ତାଙ୍କ ପାଖକୁ, ଗଳା ଚାରିପାଖେ ହାତ ବେଢ଼ାଇ କହିବି, ତେମେ ଆସିଛ, ତେମେ ମତେ ଏତେ ଭଲପାଅ ?

ଗୋଡ଼ ଉଠିଲା ନାହିଁ । କୋହ ରହିଲା ନାହିଁ ।

କାନରେ ବାଜିଲା, ପୁଣି ଡାକୁଛନ୍ତି, ଫୁଲ ଲୋ, ଫୁଲ !

ମନ ଟାଣ କରି ଦେହ କାଠ କରି ସେମିତି ପଡ଼ି ରହିଲି ମୁହଁରେ ଲୁଗା ଦେଇ । ସେ ଧୀରେ ଧୀରେ କବାଟ ଖୋଲିଲେ । ମୋ' ପାଖକୁ ଆସି କହିଲେ, ଅବେଳଟାରେ କାହିଁକି ଶୋଇଛୁଲୋ ? ମୁଁ କିଛି କହିଲି ନାହିଁ । ମନ ହେଉଥାଏ କହିବାକୁ, ତେମେ ଯାଅ ଗୁଣନିଧି । ପୁଣି କାହିଁକି ଆସିଲ ? ଘରେ ମୁଁ ଏକୁଟିଆ ଅଛି । କିଏ ଦେଖିଲେ କ'ଣ ଭାବିବ ?

କିନ୍ତୁ କାହାର ଦେଖିବାର ସମ୍ଭାବନା ନାହିଁ । ଗାଁ ମୁଣ୍ଡରେ କଣଅଡ଼ିଆ ଆମର ଘର । ତିନି ବର୍ଷ ହେଲା ଏଇଠି ତ କେତେ ଦିନ କେତେ ରାତି କଟିଛି । କେହି ଦେଖି ନାହାନ୍ତି ।

ସେ ମୋ'ର ମୁଣ୍ଡ ଉପରେ ହାତ ରଖି କହିଲେ, ଫୁଲ ଉଠିବୁ ନାହିଁ, କଥା କହିବୁ ନାହିଁ ?

କହିଲି, ମୋ'ର ଦେହ ଭଲ ନାଇଁ, ମୁଣ୍ଡ ବୁଲାଉଛି ।

ସେ ବିସ୍ମିତ ହୋଇ କହିଲେ, ମୁଣ୍ଡ ବୁଲାଉଛି ? ମୋ'ର ମୁହଁ ଉପରୁ ଲୁଗାଟି ଘୁଞ୍ଚାଇ ଦେଲେ । ଆଖି ଟେକି କହିଲେ, କାନ୍ଦୁଛୁ ? କପାଳ ଉପରେ ହାତ ରଖିଲେ । ମୋତେ ଭାରି ସରମ ଲାଗିଲା, କହିଲି, ମୁଣ୍ଡ ବିନ୍ଧୁଛି । ସେ

ବସିଲେ । ଦୁଇ ହାତରେ ମୁଣ୍ଡ ଟେକି ତାଙ୍କର ଜଙ୍ଘ ଉପରେ ରଖି କପାଳ ଚିପିବାକୁ ଲାଗିଲେ । ମୁଁ ବାଧା ଦେବାକୁ ସାହସ କଲି ନାହିଁ । ବାଧା ଦିଅନ୍ତି କପରି ! ତାଙ୍କର ବ୍ୟବହାରରେ ସବୁ ଦୁଃଖ ଅଭିମାନ ଭୁଲି ଯାଇଥିଲି । ମନେ ହେଲା, ଭଲପାଇବାଟା କେବଳ ମନ ମନର ମିଳନ ଉପରେ ନିର୍ଭର କରେ ନାହିଁ । ମନ ଆଡ଼କୁ ମନଟା ଟାଣିହୋଇ ଆସେ ସତ, ଏହା ଛଡ଼ା ଭଲପାଇବା ସଙ୍ଗେ ଦେହଟାର ସମ୍ପର୍କ ମଧ୍ୟ ଥାଏ । ମନ ମନର ମିଳନ ଲୋଡ଼ା; କିନ୍ତୁ ଦେହ ଦେହର ମିଳନ ଛଡ଼ା ଭଲପାଇବାଟା ପୂର୍ଣ୍ଣ ହୋଇପାରେ ନାହିଁ ।

ସେ କହିଲେ, ଆଉ ଏ ଅଶାନ୍ତ ଜୀବନ ଭଲ ଲାଗୁନାହିଁ । ଜାତିର ଡରରେ କି ଲୋକଦେଖାଣିଆ ମାନ ଖାତିରରେ ସମାଜ ଭିତରେ ଥାଇ ସମାଜ ସଙ୍ଗେ ଲୁଚକାଳି ଖେଳପାରିବି ନାହିଁ । ସମାଜକୁ ଅବଜ୍ଞା କରି ଚାଲିବାର ସାହସ ନାହିଁ; କିନ୍ତୁ ସମାଜ, ଧନ ସମ୍ପତ୍ତି, ଦେଶ ଛାଡ଼ି ବିଦେଶକୁ ଯିବାକୁ ସାହସ ଅଛି । ଦେହର ଶକ୍ତି ଉପରେ ଭରସା ଅଛି । କହିଲୁ ତୋ'ର ସେ ସାହସ ଅଛି କି ନାହିଁ ?

ଉଠି ବସିଲି । କିଛି ନ କହି ତାଙ୍କର ମୁହଁକୁ ବଲବଲ କରି ଚାହିଁ ରହିଲି । ଆଖି ଲୁହରେ ଭରିଗଲା । ତାଙ୍କର ସେ ସରଳ ନିରୀହ ଚାହାଣୀ ଭିତରେ କି କୁଟିଳତା ରହିପାରେ ? ଅସମ୍ଭବ । ସନ୍ଦେହୀ ମନଟା ସିନା ସନ୍ଦେହ-ଦୋଳାରେ ଏପାଖ ସେପାଖ ହୁଏ, କିନ୍ତୁ ତାଙ୍କର ଦୃଢ଼ତାଟା ତ ହିମାଳୟ ମହାମେରୁ, ଟଳିବ ନାହିଁ କି କଳିହେବ ନାହିଁ ଆଖିର ଲୁହ ପୋଛି କହିଲି, ତମର ବୀଣା ଦେଈଙ୍କୁ ଛାଡ଼ି ତେମେ କୁଆଡ଼େ ଯିବ ଗୁଣଭାଇ ? ସେ ତମର ସ୍ତ୍ରୀ, ଘରର ଲକ୍ଷ୍ମୀ । ତଣ୍ଟି ବନ୍ଦହୋଇ ଆସିଲା !

କହିଲେ, ବୀଣାକୁ ମୁଁ ଭଲ ପାଏ ନାହିଁ । ଘରର ବୋହୂ କରି ତାଙ୍କୁ ଆଣିଛନ୍ତି, ସେ ଘରର ବୋହୂ ହୋଇ ପାରନ୍ତି; କିନ୍ତୁ ମୋ'ର ସେ କେହି ନୁହନ୍ତି ।

କହିଲି, ତେମେ ତାଙ୍କୁ ବାହା ହୋଇଛ । ସାରା ଜୀବନ ତାଙ୍କୁ ନେଇ ସଂସାର କରିବାକୁ ହେବ । ଗୁଣଭାଇ, ତେମେ ଫେରିଯାଅ, ବୃଥା ତାଙ୍କ ମନରେ କଷ୍ଟ ଦିଅ ନାଇଁ ।

ସେ ମୋର ଲୁହଭରା ଆଖିକୁ ଚାହିଁ କହିଲେ, ଯାହାକୁ ଭଲପାଏ ନାଇଁ, ତା ପାଖକୁ ଫେରିଯିବି ନାହିଁ ।

ହସିଲି । କହିଲି—କାହିଁକି ତାଙ୍କୁ ଭଲପାଅ ନାଇଁ ? ସେ କଣ ସୁନ୍ଦର ନୁହନ୍ତି ?

କହିଲେ, ଯାହାକୁ ମୁଁ ଭଲପାଏ ତାକୁ ପ୍ରାଣ ଦେଇ ଭଲପାଏ । ସିଏ ସୁନ୍ଦର, କିଏ ଅସୁନ୍ଦର ସେ କଥା ମନରେ ପଶେ ନାହିଁ । ବୀଣା ସୁନ୍ଦର କି

ଅସୁନ୍ଦର କହି ପାରିବ ନାହିଁ, କିନ୍ତୁ ମୋ ଆଖିକୁ ତୋ ଛଡ଼ା ଆଉ କେହି ସୁନ୍ଦର ଦିଶନ୍ତି ନାହିଁ ।

ପରିହାସ କରି ପଚାରିଲି, ତେବେ କ'ଣ ବୀଣା ଦେଈଙ୍କୁ ସତରେ ଦେଖି-ନାହଁ ଗୁଣ ଭାଇ, ସତ କହିଲ ?

ହସିଲି । ଆଗ୍ରହରେ ଚାହିଁଲି ତାଙ୍କ ଆଖିକୁ ।

ସେ କହିଲେ, ଥରୁଟିଏ ଦେଖା, କିନ୍ତୁ ସେ ଯେଉଁ ଯନ୍ତ୍ରଣା, କଥାରେ କହିପାରୁ ନାହିଁ । ଘରଟି କେଡ଼େ ସୁନ୍ଦର ହୋଇ ସଜା ହୋଇଥିଲା ଆଗରୁ । ସେ ସାହିର ଗୋକୁଳ ଭାଇନାଙ୍କ ସ୍ତ୍ରୀ, ସେ ଆସି ଆମ ଘରେ ଅଛନ୍ତି । ସେହି ତ ସବୁ ଅଶାନ୍ତିର ମୂଳ । ରାତି ଅଧରେ ମୋତେ ଡାକି ନେଇଗଲେ । ଥଟ୍ଟାରେ କେତେ କଥା କହିଲେ । ଭାରି ଖରାପ ଲାଗୁଥାଏ । ମୋତେ ସେ ସଜା ହୋଇଥିବା ଘରେ ଛାଡ଼ିଦେଇ ଗଲେ । ସେ ଘରେ ତ କେହି ନାହିଁ, ପଲଙ୍କ ଉପରେ ଚୁପ ହୋଇ ଶୋଇଲି । ନିଦ ହୋଇଗଲା ।

କେତେବେଳକେ ନିଦ ଭାଙ୍ଗିଲା । ଆଖି ମେଲିଲି, ଖଟବାଡ଼କୁ ଆଉଜି ଝିଅଟିଏ ଠିଆହୋଇଛି । ଆଲୁଅଟା ସିଧା ପଡ଼ୁଛି ତା ମୁହଁରେ । ମୋତେ ଦେଖି ସରମରେ ସେ ଓଢ଼ଣା ଟାଣିଲା, ମୁହଁ ବୁଲାଇଲା । ସେତିକବେଳେ ତୁ ମୋ'ର ମନେ ପଡ଼ିଥିଲୁ ଫୁଲ । ଇଚ୍ଛା ହେଉଥିଲା ଉଠି ଆସିବି ତୋରି ପାଖକୁ । ଆସିପାରିଲି ନାହିଁ ଦ'ଟା କାରଣରୁ । କହିବି, ତୁ ଶୁଣିବୁ ?

ମୁଁ କହିଲି, କହିଗୁଣଭାଇ, ମୋର ଅପରାଧ କ'ଣ ?

କହିଲେ, ଅପରାଧ ନୁହେଁ, ତୋର ସନ୍ଦେହ । ମୁଁ ତତେ ଯେପରି ସରଳ ବ୍ୟବହାର କରେ, ତୁ ତ ତାହା ବୁଝୁନାହୁଁ । ତୁ ଯେପରି ଗୋଟାଏ ସନ୍ଦେହ ଆଖିରେ ମତେ ଦେଖୁ । ଯଦି ରାତି ଅଧରେ ଉଠି ଆସିଥାନ୍ତି ତୁ ମତେ ଗ୍ରହଣ କରି ପାରିଥାନ୍ତୁ ?

କହିଲି, ସେତେବେଳେ କ'ଣ ହୋଇଥାନ୍ତା କହିପାରୁ ନାହିଁ, କିନ୍ତୁ ଦେଖୁଛି ସନ୍ଦେହଟା ତ ତମରି ମନରେ ରହିଛି । ଯାହା ହେଉ, ତମକୁ ଆଦର କରି ନେବାରେ କ'ଣ ବାଧା ନାହିଁ ? ଟିକିଏ ରହି ପଚାରିଲି, ଆଉ କାରଣଟି ?

ରହି ରହି କହିଲେ, ଯଦି ଉଠିଆସିଥାନ୍ତି, ରାତି ନ ପାହୁଣୁ ଘରେ ନିଆଁ ଲାଗି ସାରନ୍ତାଣି । ସମସ୍ତେ ଜାଣନ୍ତେ, କେତେ ଆନ୍ଦୋଳନ ହୁଅନ୍ତା । ତୋର ବିନା ପରାମର୍ଶରେ ଏତେ କଥା ହେବାକୁ ଦେବି ନାହିଁ ।

ପାହାନ୍ତିଆ କାଉର ଡାକରେ ନିଦ ଭାଙ୍ଗିଲା । ଉଠି ଦେଖିଲି, ବୀଣା ସେଇ ଘର ତଳଟାରେ କାନି ପାରି ଶୋଇପଡ଼ିଛନ୍ତି । ଖଟ ଉପରୁ ଉଠିଆସିଲି । ନଇଁପଡ଼ି ଥରଟିଏ ତାଙ୍କର ମୁହଁକୁ ଚାହିଁଲି—ଆଖି କୋଣରେ ଲୁହ ଲାଗି ରହିଛି ।

ଗୁଣନନା ଚୁପ ହେଲେ ବୋଧ ହୁଏ ମୋ'ର ଆଖିରେ ଲୁହ ଦେଖି । ବ୍ୟସ୍ତ ହୋଇ କହିଲେ, ମୋର ଅପରାଧ ହୋଇଛି ଫୁଲ ? ଶୋଇଲି ବୀଣାର ମୁହଁ ଉପରକୁ ନଇଁପଡ଼ି ତାଙ୍କର ଆଖିର ଲୁହ ଦେଖି ଦୁର୍ବଳ ମନଟା ନଇଁଯିବା କେଡ଼େ ସ୍ୱାଭାବିକ; କିନ୍ତୁ ଫୁଲ ତୁଇ—ତୁଇ ମତେ ସେ ବିପଦରୁ ରକ୍ଷା କରିଛୁ, ତୋର ସୁନ୍ଦର ମୁହଁ ଢଳଢଳ ଆଖି ମୋର ଆଗରେ ଉଭା ହୋଇଗଲା । ବୀଣା ଉଠି ବସିଲେ । ଥରଟିଏ ତାଙ୍କ ଆଡ଼କୁ ନ ଚାହିଁ ଘରୁ ବାହାରିଆସିଲି ।

ଆଖିରୁ ଲୁହ ପୋଛିଲି । ସଞ୍ଜ ଅନ୍ଧାର ମାଡ଼ି ଆସୁଛି । ଦୁହେଁ ଚୁପ ହୋଇ ବସିରହିଲୁ ।

କେତେବେଳକେ ସେ ମୋର ହାତ ଧରିଲେ, କହିଲେ, ତୁ ବଡ଼ ନିଷ୍ଠୁର ଲୋ ! ଯିଏ ମୋତେ ତାର ସର୍ବସ୍ୱ ଦେଇ ଖାଲି ଟିକିଏ ଆଦର, ଟିକିଏ ସ୍ନେହ ଆଶା କରେ, ତାକୁ ମୁଁ ଗୋଡ଼ରେ ଠେଲିଦେଇ ଆସିଛି, ଆଉ ତୁ, ଯାହାର ପାଇଁ ମୋର ମନପ୍ରାଣ ସବୁ ଉତ୍ସର୍ଗ କରିଛି, ତୁ ମୋତେ ଠେଲି ଦେବାକୁ ସାହସ କରୁଛୁ ।

ତାଙ୍କର କଥା ମୋର କାନରେ ବାଜୁଥାଏ ସତ; କିନ୍ତୁ ମୁଁ ତ ସେତେବେଳେ ସେ କଥା ଭାବୁ ନ ଥିଲି; ଭାବୁଥିଲି ବୀଣାଦେବୀଙ୍କ କଥା । କେଡ଼େ ଆଗ୍ରହ କେଡ଼େ ଉତ୍କଣ୍ଠାରେ ସେ ତାଙ୍କ ଅଚିହ୍ନା ସ୍ୱାମୀର ଗୋଡ଼ତଳେ ଜୀବନ ଯୌବନ ଉତ୍ସର୍ଗ କରିବାକୁ ଆସିଥିଲେ, କେତେ ଆଶା କେତେ ଆକାଂକ୍ଷା ଘେନି, କିନ୍ତୁ କ'ଣ ହେଲା ?

କହି ପକାଇଲି, କେଡ଼େ ନିଷ୍ଠୁର ତେମେ ଗୁଣଭାଇ, କେଡ଼େ ପଥର ତମର ଛାତି ।

ମୋର କଥାର ଅର୍ଥ ସେ କ'ଣ ବୁଝିଲେ କେଜାଣି ପାଗଳ ପରି ମୋତେ ତାଙ୍କର ଛାତି ଉପରକୁ ଟାଣିନେଲେ । କାନ ପାଖରେ କହିଲେ ନିଷ୍ଠୁର ମୁଁ ନୁହେଁ ଫୁଲ, ନିଷ୍ଠୁର ତୁ । ତୋର ଛାତିଟା ପଥରରେ ଗଢ଼ା ।

ତାଙ୍କର ଛାତି ଉପରେ ମୋର ଦେହଟା ଥରିଉଠିଲା । ବାଧା ଦେଇ ଉଠିଯିବାକୁ ଇଚ୍ଛା ହେଉଥିଲେ ମଧ୍ୟ ଉଠିପାରିଲି ନାହିଁ । ଆଖି ଆଗରେ ଗୋଟିଏ ଲୁହମୁହାଁ ଝିଅର ଶୁଖିଲା ମୁହଁ ଭାସିଉଠିଲା । ସଞ୍ଜ ଅନ୍ଧାର ଘନେଇ ଆସିଲାଣି ।

ତାଙ୍କର କୋହଳ ବାହୁ ବନ୍ଧନରୁ ନିଜକୁ ମୁକ୍ତ କରି କହିଲି, ମା ଆସିବାର ବେଳ ହେଲାଣି । ଉଠିଆସିଲି ପଦାକୁ ।

ପିଣ୍ଡା ଖୁଣ୍ଟକୁ ଆଉଜି ଠିଆହେଲି । ସେହି ଖୁଣ୍ଟରେ ମୁହଁମାଡ଼ି କଇଁ କଇଁ ହୋଇ କାନ୍ଦିଉଠିଲି । ଗୁଣନନା ପାଖକୁ ଆସି ଭଙ୍ଗା ସ୍ୱରରେ କହିଲେ, ଫୁଲ, ଚୁପ ହ । ମୁଁ ନିର୍ବୋଧ, ତୋ ପ୍ରତି କଠୋର ହୋଇଥିଲି ।

ମୃଦୁ ହେସି କହିଲି, ତେବେ ଆଜି ଯାଅ ଗୁଣନାନା । ହେଉଛି ମା'ର ଡାକ ଶୁଭୁଛି ଦୂରରୁ ।

ସତରେ ଏକା, ତୋଷଠାଆଡ଼ୁ ମା ମୋ ନାଁ ଧରି ଡାକ ଛାଡ଼ୁଛି, ବୋଧହୁଏ ଆଲୁଅ ଦେଖାଇବାକୁ ।

କିଛି ନ କହି ସେ ଚାଲିଗଲେ ।

ଦୁଇଦିନ କଟିଲା । ସେ ଆମ ଘରଆଡ଼େ ଆସିଲେ ନାହିଁ । ଗତ କଥା ସବୁ ଭୁଲିଯିବାକୁ ଦିନସାରା କାମରେ ଲାଗିଥାଏଁ । ମନ ଭିତରେ ଦୁଇଟା ଭାବନା ନାଗିଉଠେ । ଗୁଣଭାଇ ଆସୁନାହାନ୍ତି, ନିଶ୍ଚୟ ସେ ବୀଣାଦେବୀଙ୍କୁ ଦେଖି ମତେ ଭୁଲିଗଲେ । ବୀଣାଦେବୀ କୁଳର ଝିଅ, ପୁଣି ସୁନ୍ଦରୀ । ମନରେ କୋହ ଉଠେ । ଭୁଲିଗଲେ ସତେ ? କାହିଁକି ତେବେ ସେଦିନ ସଞ୍ଜବୁଡ଼େ ଏଡ଼େ ଅଭିନୟ କଲେ ? ପରୀକ୍ଷା କରୁଥିଲେ ? କିନ୍ତୁ, କାହିଁକି ? ସେ କ'ଣ ଆଶା କରନ୍ତି, ତାଙ୍କର ତୃପ୍ତି ପାଇଁ ବର୍ତ୍ତମାନ ଭବିଷ୍ୟତ ସବୁ ଭୁଲି ନିଜକୁ ତାଙ୍କର ଉତ୍ତେଜନା ନିଆଁରେ ଆହୁତି ଦେବି ? ଅଜଣା ସେହି ଝିଅଟିର ଛଳଛଳ ଆଖି ଠିଆ ହୁଏ ମୋର ମନ ଆଗରେ । ଯେପରି କରୁଣ ସ୍ୱରରେ କହିଉଠେ, ଫୁଲ, ମୋର ଇହକାଳ ପରକାଳର ଗତି ମୁକ୍ତି ସିଏ, ତାଙ୍କର ମନଟାକୁ ଚୋରିକରି ନେଉଛୁ କାହିଁକି ? ମୋର ସ୍ୱାମୀଙ୍କ ଉପରେ ତୋର କି ଅଧିକାର—

ଜଳିଉଠେ ମନ ଭିତରେ ପ୍ରତିହିଂସା ନିଆଁ । ମୁଁ କ'ଣ ତାଙ୍କୁ ମନ ପ୍ରାଣ ଦେଇ ଭଲପାଏ ନାହିଁ ! ହାତଗଣ୍ଠିର ଅଧିକାରଟା ଦୁନିଆଁ ଆଖିରେ ଯେତେ ବଡ଼ ହେଲେ ବି ମୋ ଆଖିରେ ବଡ଼ ନୁହେଁ ।

ଅହା, ନିରୀହା ବାଳିକାଟି, ଜାଣେ ନାହିଁ ପ୍ରେମ କ'ଣ, ବୁଝେ ନାହିଁ ସ୍ୱାମୀର ମୂଲ୍ୟ, ଶିଖି ନାହିଁ ଛଳନା । କାହିଁକି ସେ କାନ୍ଦି କାନ୍ଦି ତଳେ ଶୋଇଲା ? ନିଜର ଅଧିକାର ଯଦି ସେ ବୁଝି ଥାଆନ୍ତା, ସ୍ୱାମୀ ଦେବତାର ଗୋଡ଼ ଧରି ଯଦି ସେ କହିଥାନ୍ତା, ମୋତେ ଗୋଡ଼ରେ ଠେଲିଦିଅ ନାହିଁ, ମୁଁ ତମର ଦାସୀ, ତମେ ମୋର ଦେବତା, କିଛି ମାଗୁ ନାହିଁ, ପୂଜାର ଅଧିକାର ଦିଅ । ପୂଜାର ଅଧିକାର—

ଚମକି ପଡ଼ିଲି ନିଜ ଚିନ୍ତାରେ । ପୂଜାର ଅଧିକାର ! ସତେ ତ ! ତେବେ କ'ଣ ସେହି ବାଳିକାର ପୂଜା ଏଡ଼ିଦେଇ ଗୁଣଭାଇ ଆସି ନାହାନ୍ତି । ନିର୍ବୋଧ ସେ ନୁହେଁ, ନିର୍ବୋଧ ମୁଁ । ଦେବତା ମୋର ଦୁଆରେ । ପୂଜା ଘେନିବାକୁ କେବେ ଆସି ନାହାନ୍ତି, କେବେ ଚାହିଁ ନାହାନ୍ତି, ଚାହିଁଛନ୍ତି ଟିକିଏ ମମତା, ଟିକିଏ ସହାନୁଭୂତି । ପାଇ ନାହାନ୍ତି, ଫେରିଛନ୍ତି ନିରାଶ ହୋଇ ।

ପ୍ରାଣ ଅସ୍ଥିର ହୁଏ । ଯନ୍ତ୍ରଣା ସହିପାରେ ନାହିଁ । ଭୁଲ କରିଛି । ଆଉ ଭୁଲ କରିବି ନାହିଁ । ଏଥର ପାଇଲେ ତାଙ୍କୁ ଆଉ ଛାଡ଼ିବି ନାହିଁ । ଯିଏ ଯାହା ଭାବୁ, ଯିଏ ଯାହା କରୁ । ଲାଜ କ'ଣ ? ଭୟ କାହାକୁ ? ମୁଁ ତାଙ୍କୁ ଭଲପାଏ, ସେ ମୋତେ ଭଲପାଆନ୍ତି । ସଂସାର ଜାଣୁ, ମୋତେ ସମସ୍ତେ ଘୃଣା କରନ୍ତୁ । ସେ ତ ଘୃଣା କରିବେ ନାହିଁ ?

ମା ଡାକେ, ତାଟିଆ ଖଣ୍ଡି କେତେବେଳ ଯାଏ ମାଜୁଥିବୁ ଲୋ ? ତୋରାଣି ମନ୍ଦାଏ ବାଢ଼ିଆଣ ।

ମୋର ଭାବନା ଭାଙ୍ଗେ, ଉଠିଆସେ ।

ମା ପଚାରେ, ତୋ ଆଖିରେ ଲୁହ କାହିଁକି ଲୋ ?

କହେ, ନାଇଁତ । ଶେଷ ଘରକୁ ଚାଲିଯାଏ ତୋରାଣି ବାଢ଼ିବାକୁ । ମନକୁ ମନ ସେ କହିହୁଏ, ଆଉ ତ ଡେରି କରି ହେବନି । ବୟସ ହେଲା । ଲୋକେ ଏଣିକି ନିନ୍ଦା କରିବେ । ମୋର ବି ବେଳକାଳ ସରିଆସିଲା । ବର୍ଷ ଥାଉଁ ଥାଉଁ ହାତକୁ ଦି ହାତ ନ କଲେ—ବାଧା ଦେଇ କହେ, ତୋର ତ ସଦାବେଳେ ସେଇ ଚିନ୍ତା, କେମିତି ମତେ ପାଖରୁ ତଡ଼ିବୁ । ଆଖିରୁ ଲୁହ ପୋଛେ ।

ମା କହେ, ଆ—ଏଥିକି କାନ୍ଦୁଛୁ କାହିଁକି ? ସେ କ'ଣ ମନ୍ଦିଷ ହାତର କଥା ? ତୁନି ହ । ଦି ପହରେ ମାର ଗୋଡ଼ ଘଷିଦେଉଛି । ସେ କହିଲା, ଫୁଲ, ଗୋଟାଏ କଥା ମୁଁ କେତେବେଳୁ ଗୁଣି ହେଉଛି ମନେ ମନେ । ଭିତରର କଥା କିଛି ବୁଝି ହେଉନି ଲୋ । ଲୋକେ ତ ଗୁଣର ନିନ୍ଦା କରୁଛନ୍ତି । କହି କହିଲି ମା, ତୋ ଗୁଣଭାଇ ପରି ପିଲା, ଚନ୍ଦ୍ରରେ କଳଙ୍କ ଅଛି, ତାଠିଁ ତ କଳଙ୍କ ନାହିଁ ।

ଛନକା ପଶିଲା ଗୁଣ୍ଡିରେ । ଘଟଣା କ'ଣ ପଚାରି ଦେବାକୁ ଯେତେ ଆଗ୍ରହ ଥିଲେ ମଧ୍ୟ ପଚାରିଲି ଡରି ଡରି, କ'ଣ ମା ?

ସେ କହିଲା, ହୋଇଥିବ ଲୋ ମା କ'ଣ, ନରମାୟା ନାରାୟଣ ଜାଣେ । କିଏ ଚିହ୍ନିବ ସଂସାରକୁ ?

ତୁନି ରହିଲି ।

ମା କହିଲା, ଗାଁସାରା ଭୁଟଭାଟ ହେଉଛନ୍ତି ।

ଉଦ୍‌ବିଗ୍ନ ହୋଇ ପଚାରିଲି, କ'ଣ ମା ?

କହିଲା, ରାତିଟି ଖଡି ତ ପାହିଲା ମା । ଗୋକୁଳ ନନାଙ୍କ ଭାରିଯା ଗୁଣର ଶୋଇଲା ଘରକୁ ଗଲେ । ଦେଖିଲେ, ଗୁଣମଣି ନାହାନ୍ତି; ପିଲା ବୋହୂଟି ତଳେ ବସି କାନ୍ଦୁଛି । କେତେ କଥା ତାକୁ ପଚାରିଲେ । ସେ କିଛି କହିଲା ନାହିଁ । ସେଦିନ ରାତିରେ ଗୁଣକୁ ସେ ପଚାରିଲେ ବୋହୂ କ'ଣ ମନକୁ ଆସୁ ନାହିଁକି, ଗୁଣ ?

ଗୁଣ କିଛି ଉତ୍ତର ଦେଲା ନାହିଁ ।

ସେ କହିଲେ, କାହିଁକି, ବୀଣାଠୁଁ କ'ଣ ଆଉ କିଏ ସୁନ୍ଦର ଅଛି ? ବୀଣା ପରି ବୋହୂ ମନକୁ ନ ଆସିବ କାହାର ?

ଗୁଣମଣି ପଚାରିଲେ, କାହିଁକି କ'ଣ ହେଲାକି ?

ଗୋକୁଳ ନନାଙ୍କ ଭାରିଯା କହିଲେ, ଓ, ବୁଝିଲି । ଏଡ଼ିକି ଓଲୁ ତୁମେ ? ଠିକ ବୋହୂକୁ କେମିତି ଆଦର କରିବାକୁ ହୁଏ, ଜଣା ନାହିଁ ପରା । ଗୁଣ ହାତ ଧରି କହିଲେ, ଆସ, ତାକୁ କ'ଣ କନ୍ଦାଇବାକୁ ଘରକୁ ଆଣିଥିଲ ।

ଗୁଣମଣି କହିଲେ, ମୁଁ ତାକୁ ଘରକୁ ଆଣି ନାହିଁ । ଯେଉଁମାନେ ତାକୁ ଆଣିଛନ୍ତି, ସେମାନେ ଏବେ ତାକୁ ହସାନ୍ତୁ । ହାତ ଟାଣି ନେଇ ଗୁଣମଣି ଚାଲିଗଲେ । ଗୋକୁଳ ନନାଙ୍କ ଭାରିଯା ଦୁଃଖରେ ରାଗରେ ଗର ଗର ତାଙ୍କ ଘରକୁ ଚାଲିଗଲେ । ଗୁଣମଣି ଦାଣ୍ଡରେ ଶୋଇଲେ । ପାହାନ୍ତାରୁ ଉଠି ବୁଢ଼ୀ ନାନୀକି କହିଗଲେ, ନାନୀ, ଗୋଟାଏ ଜରୁରି କାମରେ କଟକ ଯାଉଛି । ମାଲେ, ଗାଁସାରା କଥାଟା ରାଷ୍ଟ୍ର ହେଲାଣି ।

ଦେଖୁ ଦେଖୁ ଚାରି ଦିନ କଟିଗଲା—ସେ ଆସିଲେ ନାହିଁ । କେଉଁଠି ଅଛନ୍ତି, କେବେ ଆସିବେ କେହି କେବେ କହିଲେ ନାହିଁ । ତାଙ୍କ ପାଇଁ ବ୍ୟସ୍ତ ହୁଏ, କିନ୍ତୁ ମନରେ ଏ ଧାରଣା ଥାଏ, ଆଜି ହେଉ କାଲି ହେଉ ନିଶ୍ଚୟ ସେ ଫେରିଆସିବେ । ଗୁଣଭାଇ ଚାରି ଦିନ ହେବ ଗାଁରେ ନାହାନ୍ତି, ଏହା ଜାଣି ମଧ୍ୟ ଉତ୍କଣ୍ଠା ହୁଏ ନାହିଁ । ବୀଣାର ମନର ଅବସ୍ଥା, ବୀଣାର ଚିନ୍ତା, ଦୁଃଖ ଜାଣିବାକୁ ଭାରି ମନ ହୁଏ ।

ମା'କୁ ପଚାରିଲି, ବୀଣାଦେବୀ କାନ୍ଦୁଛନ୍ତି ।

ମା କହିଲା, କାନ୍ଦିବା ନ କାନ୍ଦିବା କିଏ କେମିତି ଜାଣିବ ? ଆଖିର ଲୁହ ତ ସମସ୍ତେ ଦେଖିବେ, ଛାତିର କୋହ ଦେଖିବ କିଏ ?

ପଚାରିଲି, କାହା ଆଗରେ ସେ ତାଙ୍କ ମନର ଦୁଃଖ କହନ୍ତି ନାହିଁ ?

ମା କହିଲା, ଯା ନଣନ୍ଦ ତ କେହି ନାହିଁ । ନାନୀ ବୁଢ଼ୀ ଲୋକ, ମାନ୍ୟ ମଣିଷ । ତାଙ୍କ ସଙ୍ଗେ କଣ ସେ କଥା ଭାଷା ହେବେ ? ହଁ ନା କହିବା ଛଡ଼ା ମୁହଁ ଖୋଲିବ ନାହିଁ । ତତେ କେତେଥର କହିଲି ଯିବାକୁ, ଗଲୁ ନାହିଁ । ଦେଖି ଆସନ୍ତୁ, ଚାରି ପଦ କଥାଭାଷା ହୋଇ ଆସନ୍ତୁ । ଭାରି ଖୋଲା ହାତ, ଦୁଃଖୀ ରଙ୍କୀଠାରେ ବଡ଼ ଦୟା ।

ପଚାରିଲି, ମୋତେ ସେ କଥା କହିବେ ?

ମା କହିଲା, କାହିଁକି ନ କହିବେ ?

ଦପଦପରେ ମା ସଙ୍ଗେ ତାଙ୍କ ଘରକୁ ଗଲି । ମତେ ଦେଖି ନାନୀ ଅଭିମାନ କରି କହିଲେ । ବୋହୂ ମୁହଁ ଦେଖାଇ ବୀଣାଦେବୀଙ୍କି କହିଲେ, ଫୁଲଟି ଭାରି ଭଲ ପିଲା ଗୋ, ଛନ୍ଦ ମନ୍ଦ, ହିଂସା କପଟ ଜାଣେ ନାହିଁ । ବାଉରି ଘରେ ସିନା

ଦାଇବ ଜନ୍ମ ହେଇଛୁ, ହେଲେ କେଡ଼େ ବୁଦ୍ଧି । ଗାଁରେ ଲୋକେ ଧନ୍ୟ ଧନ୍ୟ ପ୍ରଶଂସା କରନ୍ତି ।

ତାଙ୍କ କଅଁଳ ଓଠରେ ସରୁ ହସଟିଏ ଖେଳିଗଲା । ସୁନ୍ଦର କଇଁ ଫୁଲ ପରି ମୁହଁରେ ସେ ରଙ୍ଗିଣି ହସଟି କେଡ଼େ ଶୋଭିକାର ଦିଶିଲା । ନାନୀ କହିଲେ, ଫୁଲକୁ କଥା କହିବ ଗୋ ବୋହୂ, ସେତ କିଛି ସାହି ପଡ଼ିଶା ଭିଇ ଭଗାରିର ଝିଅ ନୁହେଁ—

ନିତି ଦିପହରେ ତାଙ୍କ ଘରକୁ ଯାଏଁ । ବୀଣା ଦେବୀଙ୍କ ସଙ୍ଗେ କଥାଭାଷା ହୋଇ ସଞ୍ଜ ଅଗରୁ ଘରକୁ ଫେରେ । ମିଶ୍ରଙ୍କ ଘରକୁ ଗାଁ ଲୋକେ କେହି ବେଶୀ ଯା ଆସ କରନ୍ତି ନାହିଁ । ତାଙ୍କର କୁଟୀଳ କୁଚକ୍ରୀ ଢଙ୍ଗ, ପରର ସୁଖ ଦେଖି ନ ପାରିବା ପ୍ରକୃତି ପାଇଁ ଲୋକେ ତାଙ୍କୁ ଡରନ୍ତି, ଘୃଣା କରନ୍ତି । ଗାଁର ଝିଅ ବୋହୂ ମଧ୍ୟ ତାଙ୍କ ଘରକୁ କେହି ଆସନ୍ତି ନାହିଁ । ଗୃହକରିବାକର ସବୁ ଦାଣ୍ଡରେ କାରବାର ହୁଅନ୍ତି, ଦରକାର ନ ପଡ଼ିଲେ ଖଞ୍ଜା ଭିତରକୁ ପଶନ୍ତି ନାହିଁ ।

ଏହି ସବୁ କାରଣରୁ ବୀଣା ଦେବୀଙ୍କ ସଙ୍ଗେ ମୋର କଥାଭାଷା ହେବାରେ କିଛି ଅସୁବିଧା ନଥାଏ । ସକାଳ ବେଳଟା ତାଙ୍କର ରୋଷଘରେ କଟେ । ଶ୍ୱଶୁର ପିଶାଶୁଙ୍କର ଖାଇବା ପିଇବା ଖବର ବୁଝି ନିଜ ମନକୁ ମୁଠାଏ ଖାଇ ଶୋଇଲା ଘରକୁ ଆସି ମୋରି ଅପେକ୍ଷାରେ ବସି ରହିଥାନ୍ତି । ମୁଁ ଆସେ, ପିଣ୍ଡାରେ ବସେ, ସେ ଘର ଭିତରେ ବସନ୍ତି । ଏଣୁ ତେଣୁ ବାରଗପ କରୁଁ । ମିଶ୍ରେ ଦାଣ୍ଡ ଖଞ୍ଜାରେ ବରବର ଥାନ୍ତି । ନାନୀ ଶୋଇପଡ଼ନ୍ତି । ଆମର ସ୍ୱାଧୀନ ମନଖୋଲା କଥା ଶୁଣିବାକୁ କେହି ନ ଥାଏ ଆମରି ଛଡ଼ା ।

ଯେତିକି ଆମର ଘନିଷ୍ଠତା ବଢ଼ିଲା, ସେତିକି ତାଙ୍କର ସରଳ ପ୍ରକୃତି କୋମଳ ମନର ପରିଚୟ ପାଇଲି ! ଆହା, ସଂସାରର ଭଲ ମନ୍ଦ ସୁଖ ଦୁଃଖ କଥା କିଛି ବୁଝନ୍ତି ନାହିଁ ! ସେ ଜାଣନ୍ତି ତାଙ୍କର କର୍ତ୍ତବ୍ୟ କଥା । ପିଲାଦିନୁ ଯାହା ଶିଖିଛନ୍ତି । ସ୍ୱାମୀ ପ୍ରତି ଭକ୍ତି, ଶଶୁର, ଶାଶୁ ଓ ଅନ୍ୟାନ୍ୟ ମାନ୍ୟଗଣ୍ୟ ଆତ୍ମୀୟଙ୍କ ଠାରେ ମମତା, ପ୍ରତ୍ୟେକ ଲୋକଙ୍କୁ ଶ୍ରଦ୍ଧା, ଏହାହିଁ ତାଙ୍କର ନୀତି । ଶାସ୍ତ୍ର ପୁରାଣରୁ କେଡ଼େ ସୁନ୍ଦର ସୁନ୍ଦର କଥା ମୋତେ ସେ କହନ୍ତି । ମୁଁ ସବୁ ଶୁଣେ ସିନା, ମନ ଅଟକି ରହେ ତାଙ୍କର ସୁନ୍ଦର ମୁହଁ ଉପରେ । ଗଳ୍ପ କହୁ କହୁ କେତେବେଳେ ତାଙ୍କ ମୁହଁରେ ହସ ଉଚ୍ଛୁଳିଉଠେ, କେତେବେଳେ ଦୁଃଖରେ ମୁହଁ ଉହ୍ଲାଇପାଏ, ଆଖିରେ ଲୁହ ଝଲସେ, କେତେବେଳେ ବା ଉତ୍ତେଜନାରେ ଓଠ ଥରିଉଠେ,

ଆଖି ତେଜହୋଇଯାଏ । ନର୍ଗୀବ ଗଳ୍ପର ପ୍ରଭାବରେ ସେ ତନ୍ମୟ ହୁଅନ୍ତ—ସବୁ ଯେପରି ଜୀବନ୍ତ, ସବୁ ଯେପରି ସତ, ଆଖି ଆଗରେ ଘଟିଯାଉଛି । କିନ୍ତୁ ମୋ ପାଖରେ ସେ ଗୁଡ଼ିକ ଯେପରି ନିରର୍ଥକ ।

ମୁଁ ଦେଖେ, ସେହି ଦେବୀ ପ୍ରତିମାର ଭିତର ଓ ବାହାର । କେତେବେଳେ ଆଖିରେ ଲୁହ ଭରିଯାଏ । ଏହି ଦେବୀ ପ୍ରତିମାର ସର୍ବସ୍ୱ ଗ୍ରହଣ କରିବାର ମୋର କି ଅଧିକାର ଅଛି ? କାହିଁକି ଜାଣି ଜାଣି ଗୁଣମଣିଙ୍କି ଭଲପାଇଲି—ଗୁଣମଣି, ମୋ ଆଖିରେ ଯିଏ ମଣିଷ, ହାତ ପାଆନ୍ତରେ, ଅଉ ବୀଣା ଦେବୀଙ୍କ ଆଖିରେ ସ୍ୱାମୀ ଦେବତା, ପୂଜାର ଅତି ଉପରେ । ଦେବୀର ଗ୍ଭତିରେ ଆଘାତ ଦେବାର ଅଧିକାର ମୋର ନାହିଁ ।

କହନ୍ତି, ଫୁଲ, କାନ୍ଦୁଛୁ ? କାନ୍ଦ ଲୋ କାନ୍ଦ । ସତୀ ସୀତାଙ୍କର ଦୁଃଖରେ ମୁଁ ତ କେତେ କାନ୍ଦିଛି, ତୁ ବି କାନ୍ଦ । ନିର୍ଦ୍ଦୋଷ ନିଷ୍କଳଙ୍କ ଦେବୀ ପ୍ରତିମାକୁ ରାମଚନ୍ଦ୍ର ଘରୁ ବାହାର କରିଦେଲେ । ଦେବୀ ଅମର କାନ୍ଦିଥିଲେ, ତାଙ୍କର ଦୁଃଖରେ ସାରା ସଂସାର କାନ୍ଦିଥିଲା । ଅମେ କ'ଣ କାନ୍ଦିବା ନାହିଁ ?

ସେ ଆଖିରୁ ଲୁହ ପୋଛନ୍ତି । ମୋତେ ବେଶୀ ବେଶୀ କାନ୍ଦମାଡ଼େ । ବୋଧ ଦେବାକୁ କେତେ କଅଁଳେଇ କହନ୍ତି, ଫୁଲ ଲୋ ଏତେ କାନ୍ଦୁଛୁ କାହିଁକି, ସବୁ ପରା ମାୟା । ସୀତା ଠାକୁରାଣୀ କ'ଣ ଜାଣନ୍ତି ନାହିଁ ଏ କଥା ? ଅମକୁ ଦେଖାଇବାକୁ ସେ କାନ୍ଦିଲେ, ସ୍ୱାମୀକି ଗ୍ଭଡ଼ି ଗଲେ ସ୍ତ୍ରୀ ଏମିତି କାନ୍ଦେ । ଆଖିରୁ ମୁଁ ଲୁହ ପୋଛେ । ସନ୍ଧ୍ୟା ହୁଏ, ଘରକୁ ଫେରେ ।

ଦିନେ, କେଡ଼େ ଆନନ୍ଦରେ ସେ ତାଙ୍କ ପିଲା ଦିନର କଥା, ବାପ ଘରର କଥା ମୋ ଆଗରେ ଗପିବସିଲେ । ମନ ଦେଇ ସବୁ ଶୁଣୁଥାଏଁ । ବିଶେଷତ୍ୱ କିଛି ନାହିଁ । ଗାଁରେ ଭଲ ଘରର ଆଉ ପାଞ୍ଚଟା ପିଲା ଯେମିତି ବଢ଼ନ୍ତି, ସେ ବି ସେମିତି ବଢ଼ିଥିଲେ । ତଫାତ୍ ଏତିକି, ସେ ଯାହା ଶିଖୁଥିଲେ ସେହି ଅନୁସାରେ କାମ କରୁଥିଲେ । ବାପ ମାଙ୍କର ଗୋଟିଏ ଗେହ୍ଲା ଝିଅ ହେଲେ ବି ସେମାନଙ୍କର କଥା ମାନୁଥିଲେ ।

କ'ଣ ମନେ ହେଲା, ପଚାରିଦେଲି, ଦେଈ, ତମର ବାହାଘର ଅତି ପିଲା ଦିନୁଁ ହୋଇଥିଲା, ସ୍ୱାମୀ ପଦାର୍ଥଟା କ'ଣ ଆଗରୁ କେବେ ବୁଝିବାକୁ ଚେଷ୍ଟା କରି ନ ଥିଲ ?

ହସିଲେ । କହିଲେ, ବାହାଘର କେବେ ହୋଇଥିଲା ମନେ ନ ଥିଲା । ଅନେକ ଦିନଯାଏ କିଛି ବୁଝି ନ ଥିଲି । ବୁଝିବାର ବୟସ ହେଲା । ଗାଁରେ କେତେ ଝିଅଙ୍କର ବାହାଘର ହୁଏ, ମୁଁ ଦେଖେ । ଭାବେ ଏମିତି କେବେ ଦିନେ ମୋର ବାହାଘର ହୋଇଥିବ । ବେଶ୍ ସେତିକି ।

ଭରସି କରି ପଚାରି ଦେଲି, ଗୁଣ ଭାଇନା କେବେ ତୁମର ମନେ ପଡ଼ନ୍ତି ନାହିଁ ? ସ୍ୱାମୀ କେମିତି, ଦେଖିବାକୁ ବା ଜାଣିବାକୁ କେବେ ଆଗ୍ରହ କି ଇଚ୍ଛା ହୁଏ ନାହିଁ ?

ଉତ୍ତର ଦେଲେ, ତୋର ଗୁଣ ଭାଇନାକୁ ମୁଁ କେବେ ସିନା ଦେଖିଥିଲି, ତାଙ୍କର ରୂପ କି ଢଙ୍ଗ ମୋର ମନେ ନ ଥିଲା । ସ୍ୱାମୀ ନା ସ୍ୱାମୀ; ସେ କିଏ ବା କପଟର, ଏ ପ୍ରଶ୍ନ ଅନେକ ଦିନଯାଏ ମନରେ ଉଠି ନ ଥିଲା । ହେଉ ପାଇଲା ଦିନୁ ଶୁଣି ଆସିଲି ସ୍ୱାମୀ ଦେବତା, ତାଙ୍କର ସେବା ଆମର ଧର୍ମ, ଆମର କର୍ତ୍ତବ୍ୟ । କାହାର ବାହାଘର ପରେ ଗାଁ ମାଇପେ ଯେତେବେଳେ କହନ୍ତି, ଅମୁକର ବରଟି ଭାରି ସୁନ୍ଦର, ଅମୁକର ବରଟା ଭାରି କୁତ୍ସିତ, ସେତିକି ବେଳେ ମନରେ ଆସେ, ମୋ ବରଟି କେମିତି ହୋଇଥିବ ? କିନ୍ତୁ ଫୁଲ ଲୋ, ମନକଥା ମନରେ ମରେ, କାହାକୁ ତ ପଚାରିହେବ ନାହିଁ ?

ହସିଲି । ପଚାରିଲି, ସତେ ନା, ମନ ଏମିତି କଲବଲ ହୁଏ ?

କହିଲେ, କଲବଲ ନୁହେଁ ଲୋ, ଖାଲି ଆଗ୍ରହ ଆସେ, ଚାଲିଯାଏ । କେତେ ନୂଆ ବୋହୂ କେତେ ଗାଁରୁ ଆସନ୍ତି । ଦେଖିବାକୁ ଯାଉଁ । କିଏ କେତେ ନିନ୍ଦା ଶୁଣେ, କିଏ ବା ପ୍ରଶଂସା । ସୁଖରେ କାହାର ବେଳ କଟେ, କାହାର ବା ବେଳ ଦୁଃଖରେ ହାତ ପିଠିରେ ଲୁହ ପୋଛି କଟେ । ମନରେ ଦୁଃଖ ହୁଏ । ଭବିଷ୍ୟତ୍ ଆଡ଼କୁ ମନ ଧାଇଁଯାଏ । କାହା ଭାଗ୍ୟରେ କ'ଣ ଅଛି । ଗୁଡିରେ ଦମ୍ଭ ଆସେ—ନାହିଁକି, କାଠ ପଥରକୁ ଦେବତା ମଣି ପୂଜାକଲେ ସେମାନେ ଦୁଃଖ ଶୁଣୁଛନ୍ତି, ସ୍ୱାମୀ ମଣିଷ, ସେବା କରି ଜାଣିଲେ ତାଙ୍କୁ ସନ୍ତୋଷ କରି ହେବ ନାହିଁ !

ରହ ରହ ପଚାରିଲି, ମନ ଅନ୍ୟ ଆଡ଼କୁ ଚଳେ ନାହିଁ ?

କହିଲେ, ନାହିଁ କହିଲେ ହୃଦୟର କଥା ଟବାଲି ତ କହିପାରିବ ନାହିଁ । ସଂସାରରେ ଆମର ଜନ୍ମ । ପ୍ରଲୋଭନ କହ, ଉତ୍ତେଜନା କହ, ଆସିବା କେତେକ ସ୍ୱାଭାବିକ । ବେଳେ ବେଳେ ଆସେ । ମନ ଚାଲିଯାଏ ଅନ୍ୟ ଆଡ଼କୁ; କିନ୍ତୁ ମନେ ହୁଏ, ସେହି ଅଜଣା ସ୍ୱାମୀର ଦୁଇଟା ଉଜ୍ଜ୍ୱଳ ଆଖି ଯେପରି ପଛରେ ଠିଆ ହୋଇ ମୋ ଦୁର୍ବଳତା ଦେଖୁଛି । ଚାଲିଗଲା ମନ ଫେରିଆସେ, ଅନୁତାପ କରେ । ମନରୁ ମୋ ଅବଳତା ପୋଛି ହୋଇଯାଏ ଅପେ ଅପେ ।

ସଞ୍ଜରେ ଶୋଇ ମୁଁ ବୀଣା ଦେବୀଙ୍କର ଶେଷକଥାଟି ଭାବେ—ସ୍ୱାମୀ ସୁଖର ଭାବନାରେ ମନରୁ ସବୁ ଅବଳତା ସିନା ପୋଛି ହୋଇଯାଏ କିନ୍ତୁ ଯେତେ-

ବେଳେ ସେହି ସ୍ୱାମୀ ପୂଜା ନ ପାଇ ଗୋଡ଼ରେ ଠେଲିଦିଅନ୍ତି, ଆଶାର କେଡ଼େ ବଡ଼ ସୁନା ଘର ଚୂନା ହୋଇ ଧୂଳିରେ ମିଶେ ? ମନର ହତାଶାର ଚିତା ଧୂଧୂ ହୋଇ ଜଳଉଠୁଥିବ, ଜୀବନଟା ବ୍ୟର୍ଥ ଲାଗୁଥିବ । ବୀଣା ଦେଈଙ୍କ ଢଙ୍ଗରୁ ସେପରି କିଛି ଜଣାଯାଏ ନାହିଁ ତ । ସବୁବେଳେ ଆନନ୍ଦ, ସବୁବେଳେ ଉତ୍ସାହ ।

ଦିନେ ପଚାରି ଦେଲି, ଆଚ୍ଛା ଦେଇ, ଯାହାଙ୍କୁ ଦେବତା ମନେ କରି ହୃଦୟର ସବୁ ପ୍ରେମ ଅଜାଡ଼ି ଦେବାକୁ ବସିଛ, ସେ ଯଦି ଅନ୍ୟ କାହାର ପ୍ରେମରେ ପଡ଼ିଥାନ୍ତି ? ସେ ଯଦି ତମର ପ୍ରେମକୁ ଉପେକ୍ଷା କରନ୍ତି ? ସେ ଯଦି ଦେବତା ନ ହୋଇ ରାକ୍ଷସ ହୋଇଥାନ୍ତି ?

ମୋତେ ବୁଝାଇ କହିଲେ, ସ୍ୱାମୀ କେବେ ରାକ୍ଷସ ହୋଇପାରେ ନାହିଁ ଲୋ ଫୁଲ, ସ୍ୱାମୀ ସବୁବେଳେ ଦେବତା । କହିଲି ପରା, ପଥରକୁ ଦେବତା ମଣିଲେ ସେ ଦେବତା ହୁଏ । ସ୍ୱାମୀ ମଣିଷ—ସ୍ତ୍ରୀ ପାଖରେ ତା'ର ଦେବତାର ସ୍ଥାନ । ସ୍ୱାମୀ ଯଦି ସ୍ତ୍ରୀର ପ୍ରେମକୁ ଉପେକ୍ଷା କରି ଅନ୍ୟର ପ୍ରେମକୁ ଆଶ୍ରୟ କରନ୍ତି, ତେବେ ବୁଝିବାକୁ ହେବ, ମନପ୍ରାଣ ସମର୍ପଣ କରିବାରେ ଆମର ତ୍ରୁଟି ରହିଛି । ଯେଉଁ ପରକୀୟାର ପ୍ରେମରେ ସ୍ୱାମୀ ମୁଗ୍ଧ, ହୁଏତ ତାଠାରୁ ସ୍ତ୍ରୀର ଶିଖିବାର ଯଥେଷ୍ଟ ଅଛି । ଯଦି ଶିଖିବା ସମ୍ଭବ ହୋଇପାରେ ତାକୁ ଶିଖିବାକୁ ହେବ, ଯଦି ଅସମ୍ଭବ ହୁଏ, ନିଜର ଦୁର୍ବଳତା ନିଜକୁ ମାନି ନେବାକୁ ହେବ । ମୁଣ୍ଡପାତି ସ୍ୱାମୀର ଅବହେଳାକୁ ଗ୍ରହଣ କରିନେବାକୁ ହେବ । ଫୁଲ, ଭାଗ୍ୟକୁ ଆଦରି ଆଖି ଲୁହରେ ବେଳ କାଟିବ—ସ୍ୱାମୀର ଅବହେଳା ପାଇଁ ନୁହେଁ, ନିଜର ଅଭାବ ଅଶିକ୍ଷା ପାଇଁ ।

ମୁଁ ଅବାକ୍ ହୋଇ ଚାହିଁ ରହିଲି ତାଙ୍କର ଉଜ୍ଜ୍ୱଳ ମୁହଁକୁ । ଏପରି ଶିକ୍ଷା ତ ଆମର ନାହିଁ । ଆମେ ଜାଣୁ ସ୍ୱାମୀ ସ୍ତ୍ରୀ—ଦିଆନିଆର ସମ୍ପର୍କ । ଯାହାକୁ ଆମେ ଯେତିକି ପ୍ରେମ ଦେଉଁ, ତାଠାରୁ ସେତିକି ଫେରିପାଇବାକୁ ଆଶାକରୁଁ । ଯଦି ନ ପାଉଁ, ମନ ଝଗଡ଼ି ଉଠେ । କେଉଁଟା ଖରାପ କିଏ କହିବ ?

ଦାଣ୍ଡ ଖଞ୍ଜାଅଡ଼ୁ ନାନୀ ଆସି କହିଲେ, ଗୁଣମଣି ମୋର ଆସିଲାଣି । ଉଦୁଉଦିଆ ଖରାଟାରେ ଚାଲି ଚାଲି ଆସିଛି । ମୁହଁ କଳାକାଠ ପଡ଼ିଛି । ଦିନ ପନ୍ଦରଟାରେ ପୁଅଟା କି ରୂପ ହେଲାଣି । ଗୁଣନନା ଆସିଲେଣି ଶୁଣି ମନରେ ଆନନ୍ଦ ହେଲା । କହିଲି, ଯାଉଛି ଦେଇ, ନନା ଆସିଲେଣି । ବୁଝି ହୁସିଆର, ଏଣିକି ଯେମିତି ତାଙ୍କୁ କାନରେ ବାନ୍ଧି ରଖ । ଛାଡ଼ିବ ନାହିଁଟି କୁଆଡ଼େ, ବୀଣା ଦେବୀ କହିଲେ, ତୁ ବସ ଫୁଲ ।

ଗୁଣନନା ଆସିଲେ । ମୋତେ ଦେଖି ହଠାତ୍ ମଝି ଦୁଆରେ ଅଟକି ଗଲେ । ମୋ ମୁହଁକୁ ଚାହିଁ କ'ଣ ଭାବିଲେ । ମୁଁ ତାଙ୍କ ମୁହଁକୁ ଚାହିଁ ପାରିଲି ନାହିଁ । ଲାଜ ଓ ଭୟରେ ମୁହଁ ନୋଇଁଲି ।

ବୀଣାଦେବୀ କବାଟ କରିକୁ ଘୁଞ୍ଚିଗଲେ ।

ଗୁଣନନା ପଚାରିଲେ, ତୁ ଏଠିକି କମିତି ଅସିଲୁ ଫୁଲ ?

ଓଲଟି ପଚାରିଲି, କାହିଁକି, ମୋତେ କ'ଣ ଘର ମନା ? ଏତେ ଦିନଯାଏ କୁଆଡ଼େ ଥିଲି ଶୁଣେ ?

ଗମ୍ଭୀର ହେଲେ । ଅପା ବୋଧହୁଏ ଜଳଖିଆର ଆୟୋଜନ ସକାଶେ ଭଣ୍ଡାର ଘରଆଡ଼େ ଚାଲିଗଲେ । କହିଲି, ଘରକୁ ଆସ, ଖରାଟାରେ ଠିଆ ହେଲ କାହିଁକି ?

ସେ ଉତ୍ତର ନ ଦେଇ ଆର ଘରକୁ ଚାଲିଗଲେ ।

ସଞ୍ଜ ବୁଡ଼ିଲା । ମା ଗଲା ଗାଁ ଭିତରକୁ । କହିଗଲା, ଆସୁ ଆସୁ ଡେରି ହେବ । ରାତି ଦି ଘଡ଼ି । ଜହ୍ନ ଆଲୁଅରେ ସାରା ଦୁନିଆଁ ସଫା ଦିଶୁଥାଏ । ଦୁଆରେ ବସି ଭାବୁଥାଏ ଗୁଣନନାଙ୍କ କଥା, ସେ ଘରକୁ ଫେରି ଆସିଛନ୍ତି । ତାଙ୍କର ମନ ହୁଏତ ବଦଳିଛି । ଗତ କଥା ସ୍ୱପ୍ନ ପରି ଭୁଲିଯିବା ଭଲ । ଜୀବନରେ ଯାହା ଘଟିଗଲା, ସେଥିକି ଭାବନା ନାହିଁ । ବଞ୍ଚି ରହିବାକୁ ଇଚ୍ଛା ଥିଲେ ଏମିତି କେତେ କେତେ ଘଟଣାକୁ ପଛରେ ପକାଇ ବାଟ ଭାଙ୍ଗି ଆଗକୁ ଚାଲିବାକୁ ହେବ ।

ଗତ କଥା ପାଇଁ ଅନୁତାପ ବା କରିବା କାହିଁକି ? ଗତଟା ବି ବର୍ତ୍ତମାନ ପରି ଦିନେ ଜୀଇଁ ଉଠିଥିଲା । ଯାହା ଘଟିଥିଲା, ସେତକ ବି ମନର ଅଗ୍ରହ ଆନନ୍ଦର ଫଳ ।

ମଣିଷ ଜଣକୁ ଥରେ ଭଲପାଇଲେ ଆଉ କାହାକୁ ଭଲପାଇପାରେ ନାହିଁ ? ଭଲ ପାଇବାଟା ସୀମାବଦ୍ଧ ଜିନିଷ ନୁହେଁ ଯେ ଥରେ ଜଣକୁ ଦେଇଦେଲେ ସରିଯିବ । ଭଲପାଇବାଟା ଅନନ୍ତ—ଅସୀମ ! ମନର ଆକର୍ଷଣ ନେଇ ସମଗ୍ର ସଂସାରକୁ ଭଲପାଇ ହୁଏ । କ୍ଷୟ ହେବନାହିଁ—କ୍ଷତି ହେବନାହିଁ । ସେହି ଭଲପାଇବା ଭିତରେ ଯଦି ଦିଆନିଆର ଭାବ ମିଶେ, ମନରେ ଯଦି ଲାଳସା ପ୍ରବେଶ କରେ, ତେବେ ସିନା ଦୁଃଖ ହେବ, ନୋହିଲେ ଦୁଃଖ ହେବ କାହିଁକି ?

ଗୁଣନନାଙ୍କୁ ମୁଁ ଭଲ ପାଇଥିଲି । ଭିତରେ ଗୋଟାଏ ଲାଳସା ଲୁଚକାଳି ଖେଳୁଥିଲା । ଉତ୍ତେଜନା ଆକର୍ଷଣ ସେହି ଲାଳସାକୁ ବଞ୍ଚାଇ ରଖିଥିଲା । ଉତ୍ତେଜନା ଓ ଆକର୍ଷଣ ଦେହର ହେଉ କି ମନର ହେଉ, ଯଦି ତାକୁ ଦଳି ଦିଆଯାଇପାରେ, ତେବେ ତ ଲାଳସାଟା ଆପେ ଆପେ ମରିଯିବ । ତେଣିକି ଗୁଣନନାଙ୍କୁ ଭଲ ପାଇବାରେ କ୍ଷତି ନାହିଁ । ମନର ଦୃଢ଼ତା କେତେ ବଢ଼ିଗଲା । ଗୁଣନନାଙ୍କୁ ମୁଁ

ଭଲପାଏଁ । ବୀଣା ଦେବୀଙ୍କୁ ମୁଁ ଭଲପାଏଁ । ସେମାନଙ୍କର ସୁଖ, ସେମାନଙ୍କର ଆନନ୍ଦ ପାଇଁ ନିଜକୁ ମୁଁ ଦୂରରେ ରଖେଁ— । ମତେ ବି ଦିନେ ଅନ୍ୟର ସଂସାର କରିବାକୁ ହେବ, ସୁଖ ଦୁଃଖର ବୋଝ ନେଇ ପରକୁ ଆପଣାର କରି ଚଳିବାକୁ ହେବ । ସେହି ପରହିଁ ମୋର ହେବ ସର୍ବସ୍ୱ ।

ମୋର ନୂଆ ଭାବନା ଉପରେ ଯେ ବୀଣା ଦେବୀଙ୍କ ଆଦର୍ଶର ଛାଇ ପଡ଼ିଥିଲା, ଏଥିରେ ସନ୍ଦେହ ନାହିଁ; କିନ୍ତୁ ଯାହା ମନେହେଲା, ତାଙ୍କର ଆଦର୍ଶ ହିଁ ଠିକ୍ । ପ୍ରେମ ବା ଭଲପାଇବା ଭିତରେ ଦିଆ ନିଆର ଭାବ ଆସିଲେ ଜୀବନରେ ଶାନ୍ତି ଆସିବ କାହୁଁ ? ସ୍ତ୍ରୀ ହେଉ ବା ପୁରୁଷ ହେଉ, ସଂସାରରେ ଦିଓଟି ପ୍ରାଣୀଙ୍କର ମନର ଭାବ ବା ଆଦର୍ଶ ଏକା ହୋଇପାରେ ନାହିଁ । ଠାଏ ଠାଏ ଅମେଳ ହେବା ଅତି ସ୍ୱାଭାବିକ । ସେଇଠି ଜଣକୁ ନଇଁବାକୁ ହେବ । ନିଜର ଭାବନା, ନିଜର ଆଦର୍ଶକୁ ଭୁଲି ଅନ୍ୟର ଭାବନା, ଅନ୍ୟର ଆଦର୍ଶକୁ ବନାଅପଣ, ବନାଅଭି-ଯୋଗରେ ନିଜର କରିନେବାକୁ ହେବ । ତାହା ହେଲେ ଆଉ ଅମଙ୍ଗଳ, ଅଶାନ୍ତିର କାରଣ ରହିବ ନାହିଁ । ଜୀବନରୁ ଜଞ୍ଜାଳ କମିଯିବ ।

ସେତେବେଳେ ଭାବନାରେ ବିଭୋର ଥିଲି, ଗୁଣନନା ଆସି ପାଖରେ ଠିଆହେଲେ । ମୋ'ର ଭାବନା ଭାଙ୍ଗିଲା । ନିଦରୁ ଉଠିଲାପରି ପଚାରିଦେଲି, ତେମେ କୁଆଡ଼େ ଗୁଣଭାଇ ? ତେମେ ଆଉ କାହିଁକି ଆସିଲ ? ସେ ରହିରହି କହିଲେ, ତୋ'ରି ମୁହଁରୁ ଶେଷ କଥାଟା ଶୁଣିବାକୁ ଆସିଛି । ପନ୍ଦର ଦିନ କାଳ ଘର ଛାଡ଼ି ଚାଲିଯାଇଥିଲି । ଅନେକ ବୁଲିଛି, ଅନେକ ଭାବିଛି । ଶେଷକୁ ଠିକ୍ କଲି ତୋତେ ନେଇ ଦେଶ ଛାଡ଼ି ବିଦେଶକୁ ଚାଲିଯିବି । ଦୁଇଟା ଜୀବନ ପୋଷିବାକୁ ମୋ'ର ସାହସ ଅଛି ।

ସେ ତୁନି ହେଲେ । ମୁଁ କହିଲି, ଗୁଣ ଭାଇ; କିନ୍ତୁ ଯେଉଁ ନିରୀହ ବାଳିକାଟିକୁ ଘରେ ଥାନ ଦେଇଛ, ତା'ର କଥା ଥରେ ତ ଭାବୁ ନାହଁ ? କହିଲେ, ଭାବିବା ଦରକାର ନାହିଁ, ତାକୁ ନେଇ ସଂସାର କରିବା ମୋ ପକ୍ଷରେ ଅସମ୍ଭବ ।

କହିଲି, ଭଲ ପାଅ ନାହିଁ ବୋଲି ଯେ ଭଲ ପାଇପାରିବ ନାହିଁ, ଏପରି ଭାବୁଛ କାହିଁକି ? ବୀଣା ଦେବୀ ଦେବୀ ପ୍ରତିମା—ତାଙ୍କର ରୂପ ଅଛି···

କହିଲେ, ରୂପଟା ଭଲପାଇବାର ମାପକାଠି ନୁହେଁ ।

କହିଲି, ତାଙ୍କର ମନର ପରିଚୟ ଯଦି ପାଆନ୍ତ ଗୁଣଭାଇ, ବୁଝନ୍ତ ସେ କେତେ ବଡ଼, କେଡ଼େ ଉଚ୍ଚରେ । ଏ କେଇଦିନ ତାଙ୍କ ସଙ୍ଗେ ଘନିଷ୍ଠତା କରି ତାଙ୍କୁ ଚିହ୍ନିଛି । ଯେତିକି ତାଙ୍କ ମହତ୍ତ୍ୱର ପରିଚୟ ପାଇଛି, ତାଙ୍କର ଆଡ଼କୁ ମନଟା ସେତିକି ଟାଣି ହୋଇଯାଇଛି, ତାଙ୍କଠି ଶ୍ରଦ୍ଧା ଭକ୍ତି ସେତିକି ବଢ଼ିଛି । ତାଙ୍କୁ ଥରେ ଚିହ୍ନିବାକୁ ଚେଷ୍ଟା କରି ବୁଝିବ, ସତ କହୁଛି କି ମିଛ କହୁଛି ।

କ'ଣ ଯେପରି ଭାବିଲେ । କହିଲେ, ବୁଝିଲି, ନିଜକୁ ମୋ ପାଖରୁ ଦୂରରେ ରଖିବାକୁ ଏତେ ଛଳ କରୁଛୁ । ତୁ ଚାହୁଁ, ସବୁ ଦୁଃଖ ସବୁ କଷ୍ଟକୁ ଆଡ଼େଇ ଦୁନିଆର ବନ୍ଧାଗତ ଧର ଚାଲିବାକୁ; କିନ୍ତୁ ମୁଁ ତାହା ଚାହେଁ ନାହିଁ । ମୁଁ ଚାହେଁ ବନ୍ଧାଗତକୁ ଭାଙ୍ଗି ନୂଆ ବାଟ ଖୋଲିବି । ସମାଜର ନିର୍ଯ୍ୟାତନାଅଁ ମୀଛର ପ୍ରତିବାଦ କରିବି । ଟିକିଏ ରହି ପୁଣି କହିଲେ, ତୋର ମନର ଭାବଟା କ'ଣ ମତେ ଖୋଲି କହିଲୁ ?

କହିଲି, କୌଣସି କଥା ନାହିଁ । ତେମେ ବୀଣାଦେବୀଙ୍କୁ ଅବହେଳା କର ନାହିଁ । ତାଙ୍କର ମନରେ କଷ୍ଟ ଦେଲେ କାହାରି ଭଲ ହେବ ନାହିଁ ।

ମୋ କଥାରେ ସେ କାନ ନ ଦେଇ ପଚାରିଲେ, ତୁ ମତେ ଭଲପାଉ ନାହିଁ ?

କହିଲି, ଭଲପାଏ, କିନ୍ତୁ ତେମେ ଯଦି ବୀଣାଦେବୀଙ୍କ ପ୍ରତି କଠୋର ହୁଅ, ତେବେ ତମକୁ ଆଉ ଭଲ ପାଇପାରିବି ନାହିଁ ।

କାରଣ ?

ମୁଁ ତାଙ୍କୁ ଭଲପାଏଁ ।

ବାଧା ଦେଇ ସେ କହିଲେ, ତୋ ମୁହଁରୁ ତାଙ୍କର ଏତେ ପ୍ରଶଂସା ଶୁଣିବାକୁ ମୁଁ ଆସିନାହିଁ । ମୁଁ ଜାଣେ, ମୁଁ ତାକୁ ଭଲପାଏ ନାହିଁ । ସେ ହଠାତ୍ ଉତ୍ତେଜିତ ହୋଇ ମୋର ହାତକୁ ମୁଠାଇ ଧରିଲେ । କଠୋର କଣ୍ଠରେ କହିଲେ, ଫୁଲି, ତୁ ମୋ ସଙ୍ଗରେ ଅନେକ ଖେଳିଛୁ । ମୋର ଉତ୍ତେଜନା, ଉତ୍କଣ୍ଠାକୁ ବଢ଼ାଇ ପ୍ରାଣରେ ନିଆଁ ଲଗାଇଛୁ; କିନ୍ତୁ କାହିଁକି ? କାହିଁକି ଏପରି କରୁଛୁ କହିଲୁ ? ତୁ ଭାବିଛୁ ମୁଁ ନିର୍ବୋଧ । ବନ୍‌ସୀର ଚାରା ଦେଖି ମାଛ ପରି ପଛରେ ଗୋଡ଼ାଇଥିବି ? ଅନେକ ସହିଛି, ଅନେକ ଦିନ ଅପେକ୍ଷା କରିଛି । ଆଉ ସହିପାରିବି ନାହିଁ, ମୋର ଆଉ ଧୈର୍ଯ୍ୟ ନାହିଁ । ତୁ ମତେ ଭଲପାଉ କି ନ ପାଉ, ସେ କଥା ଆଉ ବୁଝିବାକୁ ଚାହେଁ ନାହିଁ । ମୁଁ ଜାଣେ, ମୁଁ ତତେ ଭଲପାଏ, ଆଉ ସେହି ଅଧିକାରରେ ମୁଁ ତତେ ଚାହେଁ, ତତେ—

ତାଙ୍କ କଥାର ଅର୍ଥଟା ମୋତେ କେମିତି ଜଣାପଡ଼ିଲା । ଭୟରେ ଦେହଟା ଥରିବାକୁ ଲାଗିଲା । ହାତଟା ତାଙ୍କରି ହାତମୁଠା ଭିତରୁ ଟାଣିଆଣିବାକୁ ଚେଷ୍ଟା କଲି । ସେ ଅଧିକ ଜୋର୍‌ରେ ଚାପିଧରି କହିଲେ, ତୋର ଛଳନା ମୋର ମନରେ ଚିତା ଜଳାଇଛି, ଆଉ ସେହି ଚିତାରେ ମୋର ଆତ୍ମାଟା ଜଳି ପୋଡ଼ି ଛଟପଟ ହେଉଛି । ତୋତେ ସେହି ନିଆଁରେ ଆହୁତି ଦେଲେ ଜୀବନରେ ଶାନ୍ତି ପାଇବି, ବୁଝିଲୁ ?

ମୁଁ କୌଣସି ଉତ୍ତର ଦେବା ପୂର୍ବରୁ ସେ ମୋତେ ତାଙ୍କର ଛାତିଆଡ଼କୁ ଟାଣିନେଲେ । ବାଧା ଦେବାକୁ ଚେଷ୍ଟା କଲି, ମାନିଲେ ନାହିଁ । କହିଲେ,

ଯେଉଁ ଦେହଟାର ମୋହରେ ପାଗଳ ହୋଇ ମୁଁ ଧାଇଁଛି, ତାକୁ ମୁଁ ଏମିତି ନିକଟରେ ପାଇବାକୁ ଚାହେଁ, ଏମିତି ନିକଟରେ । ଭାବିଥିଲି ଭଲପାଇବାଟା କେବଳ ମନ ମନର ମିଳନ ଉପରେ ନିର୍ଭର କରେ; କିନ୍ତୁ ଭୁଲ୍, ଦେହକୁ ଛାଡ଼ି ମନ ରହିପାରେ ନାହିଁ ।

ଦୁଃଖରେ ମୋର ଦୁଇ ଆଖିରୁ ଲୁହ ଧାର ତାଙ୍କର ଛାତି ଉପରେ ଝରି ପଡ଼ିଲା ।

ସେ କହିବାକୁ ଲାଗିଲେ, ଦେହକୁ ଛାଡ଼ି ମନ ରହିପାରେ ନାହିଁ । ମନ ସିନା କଥାରେ ଶାନ୍ତି ପାଇପାରେ, ଦେହ ଚାହେଁ ଦେହର ମିଳନ । ତୋଠାରୁ ମୁଁ ସେତିକି ଆଶା କରେ, ସେତିକି ଚାହେଁ । ଏଥିରେ ତୁ ବାଧା ଦେଇପାରିବୁ ନାହିଁ ।

ମୁଁ କରୁଣ ସ୍ୱରରେ କହିଲି, କିନ୍ତୁ, ସେତିକି ତମର ବୁଝିବାର ଭୁଲ୍ ଗୁଣଭାଇ । ମୁଁ ଗରିବ, ମୁଁ ଅଭିଆଡ଼ି । ତମର ଉତ୍ତେଜନାରେ ନିଜକୁ ଆହୁତି ଦେଲେ ମୋର ଇହକାଳ ପରକାଳ ନଷ୍ଟ ହେବ । କ୍ଷମାକର । ମୋତେ ଛାଡ଼—

ତାଙ୍କର ବାହୁବନ୍ଧନରୁ ମୁକ୍ତ ହୋଇ ମୁଁ ଚାଲିଯିବାକୁ ବସିଲି । ସେ ମୋ ହାତ ଧରି ହସି ହସି ଥଟ୍ଟା କଲାପରି କହିଲେ, ତୋର ଯଦି ଏତେ ଜ୍ଞାନ ଥିଲା, ତେବେ ଆଜିଯାଏ ମୋତେ ଏପରି ଜଳାଇ ପୋଡ଼ାଇ ମାରୁଥିଲୁ କାହିଁକି ଶୁଣେ ? ଆଜିଯାଏ ତୋର ପଛରେ ପାଗଳପରି ଗୋଡ଼ାଇବାକୁ ମୋତେ ପ୍ରଶ୍ରୟ ଦେଲୁ କାହିଁକି ? ତୋତେ ଖୁସି ଲାଗୁଥିଲା ? ଗରିବ ଅଛୁଆଁ ବାଉରୀଘର ଝିଅ ହୋଇ ମୋର ଆଦର, ମୋର ପ୍ରେମରେ ତୁ ମନେ ମନେ ଗୌରବ ଅନୁଭବ କରୁଥିଲୁ । କିନ୍ତୁ ତୋର ପ୍ରେମପ୍ରାର୍ଥୀ ହୋଇ ମୁଁ ତ ଗୌରବ ସମ୍ମାନ ଅନୁଭବ କରୁନାହିଁ ! ଯେଉଁ ଉତ୍ତେଜନାର ନିଆଁ ତୁ ମୋର ଛାତି ଭିତରେ ଜାଳିଛୁ, ତୋତେ ହିଁ ସେଥିରେ ଝାସ ଦେବାକୁ ହେବ, ଏକା ମୁହିଁ କାହିଁକି ଜଳିପୋଡ଼ି ମରିବି ?

ଝିଙ୍କିଏ ଭୁନି ହୋଇ କହିଲେ, ତୁ ତୋର ଭବିଷ୍ୟତ କଥା, କାଲି ପରକାଲ କଥା ଭାବି ମୋ ସଙ୍ଗରେ ବକ୍ତୃତା କରୁଥିଲୁ; କିନ୍ତୁ ମୁଁ ସେ ସବୁ କଥା କେବେ ଭାବି ନାହିଁ । ମୁଁ ବ୍ରାହ୍ମଣ ଘରର ପିଲା, ବିବାହିତ । ତଥାପି ନିର୍ଭୟରେ ନିସଙ୍କୋଚରେ ଦୁନିଆ ଆଗରେ ତୋତେ ଗ୍ରହଣ କରିବାକୁ ବସିଛି । ଫଳ କ'ଣ ହେବ ବୁଝୁଛୁ ତ ? ସମାଜ ଆଖିରେ ହେବି ପତିତ ଅଛୁଆଁ । ବାପାଙ୍କର ସ୍ନେହ ସମ୍ପତ୍ତିରୁ ବଞ୍ଚିତ ହେବି । ସ୍ତ୍ରୀ ବାଧ ହୋଇ ମୋତେ ପରିତ୍ୟାଗ କରିବେ । ବନ୍ଧୁ-ବାନ୍ଧବ ସ୍ୱଜନ ସମସ୍ତେ ଉଠିବେ ବିରୁଦ୍ଧରେ । ଯୁଆଡ଼େ ଯିବି ଲୋକେ ମୋ ଆଡ଼କୁ ଅଙ୍ଗୁଠି ଦେଖାଇ ହସିବେ; କିନ୍ତୁ ତୋର ତ ଏ ସବୁ କିଛି ଭୟ ନାହିଁ ?

ତାଙ୍କର କଥା ମୁଁ କ୍ଷଣକାଳ ଭାବିଲି । କହିଲି, ଗୁଣଭାଇ, ତମକୁ ମୁଁ ଭଲପାଏ, ଏ କଥା ବିଶ୍ୱାସ କର ବା ନ କର ମୋର ମନ ଜାଣେ, ଭଗବାନ ଜାଣନ୍ତି । ମୋର କ'ଣ ମନ ହୁଏ ନାହିଁ ତୁମକୁ ନିକଟରେ ପାଇବାକୁ ? ମୋର

ଦେହଟା ବି ତ ରକ୍ତମାଂସରେ ଗଢ଼ା । ଉତ୍ତେଜନାରେ ଅବଶ ହୁଏ । ତମକୁ ମୁଁ ଭଲପାଏ ଗୁଣଭାଇ । କହିଲି, ଜାଣି ଜାଣି ତମ ଉପରକୁ ଏତେ ବିପଦ ଟାଣି ଆଣିବି କିପରି ? ପୁଣି କହିଲି, ତମର ସ୍ତ୍ରୀ ବୀଣା ଦେବୀଙ୍କୁ ଦେଖିଲି ଦିନୁ ମୋର ମନ ବଦଳିଛି । ପ୍ରତିଜ୍ଞା କରିଛି, ଜାଣି ଜାଣି ତାଙ୍କର ମନରେ କଷ୍ଟ ଦେବି ନାହିଁ । ସେଇଥିପାଇଁ ସିନା ଅନୁରୋଧ କରୁଥିଲି, ଥରେ ସେ ଦେବୀଙ୍କୁ ଆଖି ପୂରାଇ ଦେଖ, ତାଙ୍କ ହୃଦୟର ପରିଚୟ ପାଅ, ତଥାପି ଯଦି ତୁମେ ମୋତେ ଭୁଲି ନପାର, ତେବେ—ମୋର ଏ ସାମାନ୍ୟ ଦେହଟା ତମର—

କହିଲେ, କିନ୍ତୁ ମୁଁ ଯେ ତତେହିଁ ଚାହେଁ—ତତେ—

କିପରି କେଜାଣି ଗୁଣଭାଇଙ୍କ ଛାତି ଉପରକୁ ନଜେ ଆଉଜି ପଡ଼ିଲି । କହିଲି, ଦେହଟା ଚାହଁ, ଏଇ ଦେହଟା, ପାଇଲେ ସନ୍ତୁଷ୍ଟ ହେବ ? ବେଶ୍, ତାହାହିଁ ହେଉ ।

ସେ ଅବାକ୍ ହେଲେ । କହିଲେ, ମୋର ଅସ୍ଥିର ମନର ସୁବିଧା ପାଇ ଏତେ ଖେଳୁଥିଲୁ କାହିଁକି ଫୁଲି ? ଆଜି ଏହି ହସିଲା ଘଡ଼ିରେ ଆମ ମନର ସବୁ ଦୁଃଖ କଷ୍ଟ ପୋଛି ହୋଇଯାଉ । ରହି ରହି କହିଲେ, ଏ ଗାଁରେ ରହି ସ୍ୱାଧୀନ ଭାବରେ ମିଳାମିଶା କରିପାରିବା ? ତା ଅପେକ୍ଷା ଦେଶ ଛାଡ଼ି ଚାଲିଯିବା, ଦୂରକୁ । ଭଲ ହେବ ।

କହିଲି, ଭାବିଲି, ବୀଣା ଦେବୀଙ୍କର ଅବସ୍ଥାଟା କ'ଣ ହେବ ? ତାଙ୍କୁ ଛାଡ଼ି, ଅପେକ୍ଷା କରି ବିଦେଶକୁ ଯିବା ଭଲ ହେବ ନାହିଁ । ତେମେ ମୋର ଦେହଟା ଚାହଁ ? ତହିଁରେ ମୁଁ ବାଧା ଦେବି ନାହିଁ । କିନ୍ତୁ ବୀଣା ଦେବୀଙ୍କ ପ୍ରତି ତମକୁ ଏତେ କଠୋର ହେବାକୁ ଦେବି ନାହିଁ । ତେମେ ତାଙ୍କୁ ଭଲ ନ ପାଇ ପାର; ତଥାପି ତାଙ୍କ ପାଖରେ ଭଲପାଇବାର ଛଳନା କରିବାକୁ ହେବ । ତା ହେଲେ ତାଙ୍କ ଆଖିରେ ଓ ଦୁନିଆର ସଭିଙ୍କ ଆଖିରେ ତେମେ ଅନ୍ଧପଟୋଳି ବାନ୍ଧି ପାରିବ ।

ସେ କ'ଣ ଭାବି କହିଲେ, ଭଲ କଥା, ତୋତେ ପାଇବା ପାଇଁ ତାଙ୍କ ପାଖରେ ଛଳନା କରିବାକୁ ମୁଁ ପଛାଇବି ନାହିଁ ।

ମୁଁ କହିଲି, ତେବେ ଯାଅ ଆଜି ଗୁଣଭାଇ, ପନ୍ଦର ଦିନ ପରେ ଫେରି ଆସିଛ । କେତେ ଆଶା, କେତେ ଆଗ୍ରହରେ ସେ ଚାହିଁ ରହିଥିବେ । ତେମେ ପଛେ ଛଳନା କର, ସେ ମତ ମାନିବେ । ଜାଣ ଗୁଣଭାଇ, ତମକୁ ସେ କେତେ ଭଲ ପାଆନ୍ତି ?

ମୋର ପାଟିରେ ହାତ ଦେଇ କହିଲେ, ଥାଉ, ଥାଉ, ତୋ ମୁହଁରୁ ଅନ୍ୟ କାହାର ଏତେ ପ୍ରଶଂସା ଶୁଣିବାକୁ ମୁଁ ଚାହେଁ ନାହିଁ । ମୁହଁ ନୁଆଇଁ ଆଣିଲେ ମୋର ମୁହଁ ଉପରକୁ । ବାଧା ଦେଲି ନାହିଁ । ନରୋଲା ବେଳରେ ଏତିକି ସୁଯୋଗ ସେ ବାରମ୍ବାର ନେଇଛନ୍ତି । ନେଉନ୍ତୁ, ପୁଣି—

ମୋ'ର ମନରେ ସାହସ ହେଲା, ଯଦି ସେ ବୀଣା ଦେବୀଙ୍କ ପାଖରେ ଭଲ ପାଇବା ଛଳନା କରନ୍ତି, ସେହି ଛଳନାଟାହିଁ ସତ ହୋଇଯିବ । ମନରେ ଶାନ୍ତି ଆସିଲା । ସବୁଦିନପରି ପରଦିନ ଦି'ପହରରେ ବୀଣା ଦେବୀଙ୍କ ସଙ୍ଗେ ଦେଖା କରିବାକୁ ଗଲି । ତାଙ୍କ ମୁହଁକୁ ଚାହିଁ ଦେଖିଲି ତହିଁରେ ଯେପରି ସରାଗ ନାହିଁ, ଆଖିପତା ମଳିନ ଦିଶୁଛି—ସତେ କି ରାତିଟା ଅନିଦ୍ରାରେ କଟିଛି ।

ବୀଣା ଦେବୀ ଆରମ୍ଭ କଲେ, ଫୁଲ, ତୋ ମୁହଁଟା ଶୁଖିଲା ଦିଶୁଛି କାହିଁକି ଲୋ ?

କହିଲି, ସେଇଆ ତମକୁ ଆଗ ପଚାରିବି ଭାବୁଥିଲି । କାଲି ରାତିରେ ନିଦ ହୋଇନାହିଁ ପରା ! ହସିବାକୁ ଚେଷ୍ଟା କଲି । ତାଙ୍କର ଶୁଖିଲା ମୁହଁ ଦେଖି ଓଠରେ ହସ ମିଳାଇଗଲା । ଲୁହ ପୋଛି କହିଲେ, ହଁ ଲୋ, ରାତିରେ ନିଦ ନାହିଁ । ଟିକିଏ ରହି ପୁଣି କହିଲେ, ଫୁଲ, ଦୁଃଖ-ଗ୍ରହରେ ଯାହାର ଜନ୍ମ—ଯେତେ ଯାହା କଲେ, ଜୀବନରେ ସେ ସୁଖ ପାଇବ ନାହିଁ । ମୋର ଭାଗ୍ୟଟା ସେମିତି ।

ପଚାରିଲି, କ'ଣ ହୋଇଛି ଦେଇ, ଏତେ ଦୁଃଖ କାହିଁକି ? ସବୁଦିନ କ'ଣ ସମାନ ରହେ ?

କହିଲେ, ସେଇ ଆଶାରେ ସିନା ବଞ୍ଚିରହିଛି ।

ତାଙ୍କ ମୁହଁକୁ ଅନାଇ ରହିଲି ଆଗ୍ରହରେ ।

ସେ କହିଲେ, ରାତିଅଧରେ ସେ ଯେତେବେଳେ ଘରକୁ ଆସିଲେ, ଆନନ୍ଦ ଗର୍ବରେ ମୋର ଛାତି ଫୁଲିଉଠିଲା । ସେ କବାଟ କିଳିଲେ । ଲାଜରେ ସଢ଼ିଗଲି ଭଉଣୀ । କାନ୍ଥ କରକୁ ଆଉଜି ଠିଆହେଲି । ସେ ଯାଇ ପଲଙ୍କ ଉପରେ ବସିଲେ । ଭାବିଥିଲି ସେ ମୋ ହାତ ଧରି ପାଖକୁ ନେବେ । କେତେ ମନଗଢ଼ା ଆନନ୍ଦରେ ଲାଜ ଭୟ ସଙ୍କୋଚ ମନରେ ଭରିଗଲା; କିନ୍ତୁ ସେ ଆସିଲେ ନାହିଁ । ଓଢ଼ଣା-କଣରେ କରେଇ ଚାହିଁଲି । ତାଙ୍କର ମୁହଁଟି କେଉଁ ଦୁଃଖରେ ଭରି ରହିଛି । ମନର ସରାଗ ମରିଗଲା । ଆଗ୍ରହ ଆନନ୍ଦ କେଉଁ ଭୟର ଛାଇରେ ଛପିଗଲା ।

ଦୁହେଁ ନୀରବ ରହିଲୁ—କେତେ ଯୁଗ ପରି ଲାଗିଲା କେଜାଣି । କେତେବେଳରେ ସେ ମୁହଁ ଖୋଲିଲେ, ଡାକିଲେ, ଶୁଣ—, ତାଙ୍କ ପାଖକୁ ଗଲି । ଗୋଡ଼ ଚଳୁ ନ ଥାଏ । ମୁହଁ ଉପରୁ ଓଢ଼ଣା ସାମାନ୍ୟ କାଢ଼ି ମଥା ପୋଛି ପଲଙ୍କକୁ ଆଉଜି ଠିଆହେଲି । ଆହୁରି କେତେ ସମୟ ବିତିଲା । ସେ ଗଳା ଥରାଇ କହିଲେ, ଶୁଣ, ତେମେ ଏ ଘରର ବୋହୂ; କିନ୍ତୁ ମୋର କେହି ନୁହଁ ।

ବଜ୍ର ପଡ଼ିଲା ପରି କଥାଟା ଲାଗିଲା । ତାର ଅର୍ଥ କିଛି ବୁଝି ପାରିଲି ନାହିଁ । ଗ୍ଲୁଚିଲୁ ପଥର କରି ଆଉ କ'ଣ କହିବେ, ଶୁଣିବାକୁ ଅପେକ୍ଷା କରି ରହିଲି । କେତେବେଳେକେ ସେ ପୁଣି କହିଲେ, ମନରଖା କଥା ମୋତେ ଭଲ ଲାଗେ ନାହିଁ । ମୋଟ କଥା, ତମକୁ ମୁଁ ଭଲପାଏ ନାହିଁ—ଭଲ ପାଇ ପାରିବ ନାହିଁ । ମୋର ଧୈର୍ଯ୍ୟ ଭାଙ୍ଗିଲା । ଆଖିରେ ଭରିଗଲା ଲୁହ । ପାଟିରୁ ବାହାରିଗଲା, କାହିଁକି, ମୁଁ କ'ଣ ଅପରାଧ କରିଛି ?

ସେ କହିଲେ, ଅପରାଧ ! ନା, ତେମେ କାହିଁକି ମୋର ଅପରାଧ କରିବ; କିନ୍ତୁ ଅପରାଧ କଥା କହୁନାହିଁ । ଜଣେ ଲୋକ ଜୀବନରେ ଜଣକୁ ଭଲପାଏ । ଦୁଇ ଜଣକୁ ଭଲପାଇବା ଅସମ୍ଭବ । ସେ ଉଠି ଠିଆ ହେଲେ । କ'ଣ କରିବ ବୋଲି ମୋର ବୁଦ୍ଧି ଦିଶିଲା ନାହିଁ । କେଜାଣି କିପରି ତାଙ୍କର ଦୁଇଗୋଡ଼ ଧରି କହି ପକାଇଲି, ମୋର ଯଦି କେଉଁଥିରେ ଦୋଷ ହୋଇଥାଏ, କ୍ଷମା କର । ମୁଁ ତ ତମଠାରୁ ଆଉ କିଛି ଚାହୁଁନାହିଁ । ତମର ସେବାର ଅଧିକାର ମୋତେ ଦିଅ ।

କହୁ କହୁ ବୀଣା ଦେବୀ ଅସ୍ଥିର ହୋଇ କାନ୍ଦିଉଠିଲେ, କୋହଟାକୁ ଦାବିବାକୁ ଯେତେ ଚେଷ୍ଟା କଲେ ପାରିଲେ ନାହିଁ ।

ପଚାରିଲି, କହ, ସେ କ'ଣ କହିଲେ ?

କହିଲେ, ଗୋଡ଼ରେ ଆଡ଼େଇ ଦେଲେ । ଘର ଖୋଲି ପଦାକୁ ଚାଲିଯିବା ଆଗରୁ କହିଗଲେ, ତେମେ ମୋର ଆନନ୍ଦ, ମୋର ସୁଖ ପଥର କଣ୍ଟା, ତମକୁ ମୁଁ ଚାହେଁ ନାହିଁ—

ବୀଣା ଦେବୀ ଆହୁରି ଅଧୀର ହୋଇ କାନ୍ଦିଉଠିଲେ । କହିଲେ, ସେ ଚାଲିଗଲେ । ମୁଁ ଭାବିଲି, ଯଦି ମୁଁ ତାଙ୍କ ସୁଖ ଆନନ୍ଦର ପ୍ରତିବନ୍ଧକ, ତେବେ ତାଙ୍କର ସୁଖ ଆନନ୍ଦ ପାଇଁ ଆତ୍ମହତ୍ୟା କରି ମରିବା ଭଲ । କେଡ଼େ ସହଜ, କେଡ଼େ ସୁବିଧା । ପୁଣି ଭାବିଲି, ଏଡ଼େ ବଡ଼ ପାପ ? ତା ଛଡ଼ା, ଘରର ବୋହୂର କର୍ତ୍ତବ୍ୟ ଭିତରେ ସ୍ୱାମୀ ବଡ଼ ହେଲେ ବି ସ୍ୱାମୀ ତ ସବୁ ନୁହେଁ । ଅନ୍ୟମାନଙ୍କ ପ୍ରତି ମୋ'ର କର୍ତ୍ତବ୍ୟ ଅଛି । ସେମାନେ ମୋତେ ଭଲପାଆନ୍ତି ।

ପଚାରିଲି, ସେମାନଙ୍କୁ କ'ଣ ତମର ଦୁଃଖ କହିଛ ?

କହିଲେ, ନା, କହି ନାହିଁ, କହିବି ନାହିଁ । ତୋତେ ବି ମନା କରୁଛି । ଅଯଥା ସେମାନଙ୍କ ମନରେ କଷ୍ଟ ଦେବାକୁ ଚାହେଁ ନାହିଁ । ତାଙ୍କ ମନର ଦୃଢ଼ତା ଦେଖି ମୁଁ ବିସ୍ମିତ ହେଲି । ଭାବିଲି, ଆଶ୍ୱାସନା କାହାକୁ ମୁଁ ଦେଉଛି । ସେ ତ ଆଶ୍ୱାସନାର ଢେର ଉପରେ । ମୁଁ ଉଠିଆସିଲି ବାହାରକୁ । ସେ କହିଲେ, ଗୋଟିଏ କଥା ଯଦି ଜାଣନ୍ତି ଫୁଲ ?

ପଚାରିଲି, କ'ଣ ?

କହିଲେ, ଯାହାକୁ ସେ ମନପ୍ରାଣ ଦେଇ ଭଲ ପା'ନ୍ତି, ସେ କିଏ ଲୋ ? ତାକୁ ଥରେ ଦେଖିବାକୁ ମନଟା ଛଟପଟ ହେଉଛି । ଦେଖନ୍ତି ସେ କେମିତି ?

କହି ହୋଇଗଲି, ସେ'ତ ତମଠୁ ବେଶୀ ସୁନ୍ଦର ହୋଇ ନ ଥିବ ।

ଏତେ ଦୁଃଖରେ ମଧ୍ୟ ତାଙ୍କ ନାଲି ଓଠ ଦି'ଫାଳରେ ହସ ଉଙ୍କିଆସିଲା । କହିଲେ, ରୂପ ଅପେକ୍ଷା ଗୁଣ କ'ଣ ବଡ଼ ନୁହେଁ । ଯାହାକୁ ସେ ଏତେ ଭଲ ପାନ୍ତି, ତାକୁ ଦେଖିବି, ତାଠାରୁ ମୋର କେତେ କ'ଣ ଶିଖିବାର ଅଛି ।

ହସି ହସି କହିଲି, ବେଶ୍ ତ, ତାଠାରୁ ସବୁ ଶିଖି ଶେଷକୁ ଯଦି ଗୁଣ ନନାକୁ କାନରେ ବାନ୍ଧି ରଖି, ତାର ଗତି କ'ଣ ହେବ ?

କ'ଣ ଯେପରି ଭାବିଲେ । ଦୀର୍ଘଶ୍ୱାସ ଛାଡ଼ି କହିଲେ, ମୋ କଥା ଭୁଲି ବୁଝ ନା ଫୁଲ, ଯେ ମୋର ସ୍ୱାମୀକୁ ଏତେ ଭଲପାଏ, ଯାହାଙ୍କୁ ମୋର ସ୍ୱାମୀ ଏତେ ଭଲ ପାନ୍ତି, ସେ ମୋର ଅତି ଅପଣାର । ତାକୁ ମୁଁ ଭଲପାଇ ପାରିବି ।

ଘରକୁ ଫେରିଲି । ବାଟରେ ଭାବିଲି, ବୀଣା ଦେବୀଙ୍କର ଦୁଃଖ ଘୁଞ୍ଚାଇବାକୁ ମୋତେ ହୁଏତ ମରିବାକୁ ହେବ, ନୋହିଲେ ଗାଁ ଛାଡ଼ି ଚାଲିଯିବାକୁ ହେବ । ଯାହା ପାଇଁ ମରିବି ତା ମନରେ ଦୁଃଖ ହେବ, ଦିନେ ଦୁଇ ଦିନ । ତାପରେ ସେ ମତେ ଭୁଲିଯିବେ । ମୋର ଦୁଃଖ ମୋର ମରଣ ପାଇଁ କାହାରି କ୍ଷତି ହେବ ନାହିଁ । ଗାଁ ଛାଡ଼ି ଘର ଛାଡ଼ି ଦୂରକୁ ଚାଲିଯିବା ବରଂ ଭଲ । ଏଥର ମାଆ ପ୍ରସ୍ତାବରେ ଆଉ ବାଧା ଦେବି ନାହିଁ ।

ଘର ପାଖରେ ପହଞ୍ଚି ଦେଖିଲି, ଆମରି ଦୁଆର ଆଡ଼ୁ ଲୋକଟିଏ ମୁଣ୍ଡରେ ବସ୍ତା ମୁଣ୍ଡାଇ ପଦାକୁ ବାହାରି ଆସୁଛି । ମୋତେ ଦେଖି ସେ ମୁଣ୍ଡ ସଳଖି ମୁହଁ ଟେକି ଠିଆହେଲେ । ମୋର ଆଡ଼କୁ କଣେଇଁ ଚାହିଁଲେ । ସରମରେ ବାଡ଼ କରକୁ ଅଉଜି ଗଲି । ମା ପଛରୁ ଆସି କହିଲା, ବାପ ତୋରି ନିର୍ଭର୍‌ରେ ରହିଲା । ହବା ନ ହବା କଥା ଜଲଦି କହି ପଠାଇବୁ ।

ସେ କହିଲେ, ନ ହେବା କଥା କହୁଛ କାହିଁକି, ଯୋଗାଡ଼ କରିବାକୁ ଯାହା ଡେରି ।

ମୋର ସନ୍ଦେହ ହେଲା । ଭିତରକୁ ଚାଲିଆସିଲି । କେତେବେଳେ ମା ଆସି କହିଲା, ବାପ ମା କେହି ନାହାନ୍ତି । ଭାଇ ଦିଓଟି, ଜମି ଦି ମାଣ ଚାଷ । ଯାହା ରୋଜଗାର କରନ୍ତି, ସୁଖରେ ଚଳେ । ମନକୁ ମୋର ପାଇଛି । ଖାଲି ତୋରି ଇଚ୍ଛା ଅନିଚ୍ଛା ବୁଝିଥିଲେ ଜବାବ ଦେଇଥାନ୍ତି ।

ଅନ୍ୟ ଦିନ ହୋଇଥିଲେ ବିରକ୍ତ ହୋଇଥାନ୍ତି, ମା ସଙ୍ଗେ କଜିଆ କରିଥାନ୍ତି । ସେଦିନ ତୁନି ରହିଲି । ଭାବିଲି ବୃଥାଟାରେ ଛାଇ ପଛରେ ଧାଇଁ ଲାଭ

ନାହିଁ । ମା' ମନକୁ ଯାହା ଭଲ ଲାଗୁଛି ସେ କରୁ । ତା ମନରେ କଷ୍ଟ ଦେବ ନାହିଁ ।

ମା କହିଲା, କିଏ କାହାର କୋ, ବଞ୍ଚି ଥାଉଁଣୁ ତୋର ହାତକ ଦି'ହାତ କଲେ, ମୁଁ ନିଶ୍ଚିନ୍ତ ହେବି ।

ମୁଁ ଉତ୍ତର ନ ଦେଇ ଚାଲିଗଲି ବାଉଁଅଡ଼କୁ । ମା' ମତେ ଶୁଣାଇ କହିଲା, ପଇସା କଉଡ଼ି ତ ହାତରେ ନାହିଁ । କାଲୁ ଗଉଡ ବିକ୍ରି କହୁଥିଲା ଘର ଉଦ୍ଧାରି ବନ୍ଧା ରଖି ଟଙ୍କା ଦଶଟି ଦେବ ବୁଢ଼ୀ ଯାଇଁ ।

ନଡ଼ିଆ ଚାଟିଖଣ୍ଡିଏ ପିଣ୍ଡାରେ ପକାଇ ଶୋଇଲି । ସଞ୍ଜପହର ଗଡ଼ିଗଲା । ହଠାତ୍ ଗୁଣନିଧି ଆସି ପହଞ୍ଚିଲେ । ମୁଁ ଉଠି ବସିଲି । ସେ ସଙ୍ଗେ ସଙ୍ଗେ ପଚାରିଲେ, ଆଜି ଦି'ପହରେ ତୁ ଆମ ଘରକୁ ଯାଇଥିଲୁ, ନାନୀ କହୁଥିଲେ ।

କହିଲି, ହଁ ।

ପଚାରିଲେ, ସବୁ କଥା ତୁ ତାଙ୍କ ମୁହଁରୁ ଶୁଣିଛୁ ?

କହିଲି, ଶୁଣିଛି ।

ପଚାରିଲେ, ତୋ'ର ସବୁ କଥା ତୁ ତାଙ୍କୁ କହିଛୁ ?

ଟିକିଏ ଭାବି କହିଲି, ଯଦି କହିଥାଏଁ ?

ମୁଁ ଏହା ବିଶ୍ୱାସ କରିବି ନାହିଁ । ଜାଣେ, ତୁ ଏଡ଼େ ଓଲୁ ନୁହଁ । ତହିଁରେ ଲାଭ ଛଡ଼ା କ୍ଷତି ହୁଅନ୍ତା । ଗାଁରେ ଚହଲ ପଡ଼ନ୍ତା, ଅତ୍ୟାଚାର ହୁଅନ୍ତା ଦୁହିଁଙ୍କ ଉପରେ ।

କହିଲି, ଏ ସବୁକୁ ଡରି ମୁଁ କହିବାକୁ ପଚାଇ ନ ଥାନ୍ତି । ମୋର ଭୟ ହେଲା କାଳେ ବୀଣା ଦେବୀ ଦୁଃଖ କରିବେ । କାହିଁକି ବା କହନ୍ତି, ମୁଁ ଜାଣେ, ତୁମେ ତାଙ୍କ ପ୍ରତି ଯେଉଁ ବ୍ୟବହାର କରିଛ ସବୁ ବାହାରିଆ । ତେବେ ତାଙ୍କୁ ଭଲ ପାଅ ।

ସେ ମୋ ପାଖରେ ବସି କାବା ହୋଇ ଚାହିଁରହିଲେ । କେତେବେଳେକେ କହିଲେ, ତୋର କହିବା ମତେ ମୁଁ ଯାଇଥିଲି, ଛଳନା କରିପାରିଲି ନାହିଁ । ଯାହା ସତ, ଯାହା ମନର କଥା, ସେତକ ମୁହଁରୁ ବାହାରିଗଲା । ବୁଝିପାରୁନୁ ଫୁଲ, ତୋତେ ମୁଁ କିପରି ଭଲପାଏ ! ତୋର ପାଇଁ ସ୍ତ୍ରୀକୁ ଗୋଡ଼ରେ ଠେଲିଦେଇ ଆସିପାରେ ।

ହସିଲି, କହିଲି, ସତେ ? ତେବେ ତାଙ୍କୁ ଏତେ ଭଲପାଅ ?

ପଚାରିଲେ, ତୁ ପରିହାସ କରୁଛୁ ?

କହିଲି, ନା, ଯାହା ସତ ତାହାହିଁ କହୁଛି । ତେବେ ତମର ସ୍ତ୍ରୀଙ୍କୁ ଏତେ ଭଲପାଅ ଯେ ଛଳନା କରିବାକୁ ସାହସ ହେଲା ନାହିଁ । ତାଙ୍କର ରୂପ, ଯୌବନ, ଆଖିର ଲୁହ ସହିପାରିଲ ନାହିଁ । ଠେଲିଦେଇ ଚାଲିଆସିଲ । ଆଖିରେ ଦେଖି

ଧୈର୍ଯ୍ୟ ଧରି ଠିଆ ହୋଇ ପାରିଲି ନାହିଁ । ଯିଏ ତୁମର, ଚିର ଦିନ ତୁମର । ଯାହାକୁ ତେମେ ପ୍ରାଣ ଦେଇ ଭଲପାଅ, ତାକୁ ଛଳନା କରି ଭୁଲାଇବା ପ୍ରୟାସ ହେଲା ନାହିଁ । ପାରନ୍ତ ନାହିଁ । ତାଙ୍କ ଉପରେ ପୂର୍ଣ୍ଣ ଅଧିକାର ଅଛି, ଏକଥା ଯଦି ସ୍ୱୀକାର କରି ନ ଥାନ୍ତ, କେଉଁ ସାହସରେ ତାଙ୍କୁ ଅବହେଳା କରି ଚାଲିଆସନ୍ତ । କେଉଁ ଗୁଣରେ ମୁଁ ତାଙ୍କର ସରି । ତଥାପି, ତୁମେ ମୋର ଦେହଟାକୁ ପାଇବାକୁ ଏତେ ଅଧୀର । କହିଲି ପୁଣି, ସେମିତି ମୋତେ ଗୋଡ଼ରେ ଆଡ଼େଇ ଦେଇ ଚାଲିଯାଇ ପାରିବ ? ଜାଣେ, ପାରିବ ନାହିଁ । ମୋ ଉପରେ ଏତେ ଅଧିକାର ଅଛି ବୋଲି ଅନୁଭବ କର ନାହିଁ । କାଲେ ମୁଁ ବିରକ୍ତ ହେବି, କାଲେ ଏଇ ଦେହ-ଟାର ପରଶରୁ ଦୂରରେ ରହିବ ।

କହିଲେ, ନା ଫୁଲ, ତତେ ମୁଁ ଗୋଡ଼ରେ ଅଡ଼େଇପାରିବି ନାହିଁ । କାହିଁକି ଜାଣୁ ? ତୋର ଏଇ ଦେହଟାର ମୂଲ୍ୟ ମୋ ଆଖିରେ ଅତି ବଡ଼ । ତୁ ମନ ଇଚ୍ଛା ପରିହାସ କରିପାରୁ; କିନ୍ତୁ ତୋର ଠାରୁ ଅଶାଳ କଥା ପଦେ ଶୁଣିବା ପାଇଁ ତାର ଗୁଡିର ରକ୍ତରେ ମୁଁ ହାତ ଧୋଇପାରେ । ତୁ ଏହା ଚାହୁଁ ?

ବୁଝିଲି, ସେ ଉତ୍ତେଜିତ ହୋଇଉଠିଛନ୍ତି । କହିଲି, ବୀଣା ଦେବୀଙ୍କ ପ୍ରତି କଠୋର ହେଲେ, ଆମର ବନ୍ଧୁତା ଯେ ବେଶୀଦିନ ରହିପାରିବ ନାହିଁ, ଏ କଥା ବୁଝି ପାରୁନାହିଁ ? ଚିରଦିନ ସେ ଆଖି ବୁଜି ·ରହିପାରିବେ ନାହିଁ ! ଥରେ ଯଦି ସେ ଜାଣନ୍ତି, ଆମର ସମ୍ବନ୍ଧ ଆପେ ଆପେ ତୁଟିଯିବ ।

ମୁଁ ତୁନି ହେଲି ।

ପଚାରିଲେ, ତେବେ ?

ସୁବିଧା ବେଳ ବୁଝି କହିଲି, ଯଦି ଆତ୍ମୀୟତା ଚିରଦିନ ବଜାୟ ରଖିବାକୁ ଇଚ୍ଛା ଥାଏ, ବୀଣା ଦେବୀଙ୍କ ଆଖିର ଲୁହ କି ଗୁଡିର କୋହରେ ତାହା କେବେ ହୋଇପାରିବ ନାହିଁ । ସମ୍ଭବ ହେବ, ତାଙ୍କର ମୁହଁର ହସରେ । ତାଙ୍କର ଓଠରେ ହସ ଫୁଟାଇବାକୁ ଛଳନା କରି ତାଙ୍କୁ ସ୍ନେହ କର, ଆପଣାର କର । ତମ ଉପରୁ ତାଙ୍କର ସବୁ ସନ୍ଦେହ, ସବୁ ଅଭିମାନ ତୁଟିଯାଉ । ସେତିକି କରି ପାରିଲେ—

ଗୁଣନିଧି କହିଲେ, ଏଇ କଥା ଯଦି ତୁ ଆଗରୁ ବୁଝାଇ କହିଥାନ୍ତୁ ଫୁଲ, ଜାଣି ଜାଣି କାହିଁକି ଏତେ ବଡ଼ ଭୁଲ କରି ବସିଥାନ୍ତି ? ବର୍ତ୍ତମାନ ଉପାୟ ?

ମନରେ ସାହସ ହେଲା । କହିଲି, ଉପାୟ ଅଛି । ବଡ଼ ସହଜ । ତେମେ ଫେରିଯାଅ । ଗତ ରାତିର ଘଟଣା ପାଇଁ ଅନୁତାପ କରୁଛ ବୋଲି ତାଙ୍କୁ କହ । ଆବଶ୍ୟକ ହେଲେ ତାଙ୍କର ପାଦ ଧର । ତମ ଦୁହିଙ୍କ ଛଡ଼ା ଏକଥା ତ ଆଉ କେହି ଜାଣିବେ ନାହିଁ, ଏଥିକି ଲାଜ ସରମ କାହିଁକି ?

ଏତେଦୂରରେ ଯିବାକୁ ହେବ ନାହିଁ । ତମଠୁ ଟିକିଏ ଆଦର ପାଇଲେ, ସେ ସହଜରେ ସବୁ ଦୁଃଖ ଭୁଲିଯିବେ । ସରଗର ଚନ୍ଦ ପାଇଲି ପରି ମଣିବେ । ତେଣିକି ଉଭୟେ ନିଶ୍ଚିନ୍ତ ହେବା । ଦୁନିଆଁର ଆଖିରେ ଅନ୍ଧପୋଟଳି ବାନ୍ଧିବା ସହଜ ଓ ସୁବିଧା ହେବ । ମୋ ରାଣ, ଯାହା କହିଲି ସେଇଆ କର । ମିଛଟାରେ ଦୁନିଆଁରେ ଚହଳ ପକାଇ ସମସ୍ତଙ୍କର ଅନିଷ୍ଟ କର ନାହିଁ । ସମସ୍ତଙ୍କର ଜୀବନକୁ ଛଟପଟ ଉହିଲବିକଳ କର ନାହିଁ । ଆଉ ସହି ହେଉନାହିଁ । ଗୁଣଭାଇ, ତମର ନିର୍ମଳ ସ୍ନେହର ବୋଝ ମୋତେ ବଳେଇ ପଡ଼ିଲାଣି । ସେତକ କେମିତି ମୁଁ ସୁଝାଇ ପାରିବି, ତାର ସୁଯୋଗ ମତେ ଦିଅ ।

ଟିକିଏ ଉତ୍ତେଜିତ ହୋଇ କହିଲେ, ଫେରିଯିବି ଫୁଲ, ଫେରିଯିବି । ତୋର କଥା ମାନି ଖାଲି ତୋରି ପାଇଁ ନିଜକୁ ମୁଁ ତଳକୁ ନୁଆଇଁ ଆଣିବି, କିନ୍ତୁ ଫୁଲ—

କ'ଣ କହିବାକୁ ବସିଥିଲେ କଥାଟାକୁ ଚୋକି ନେଇ ମୋ ଆଡ଼କୁ ଚାହିଁଲେ । ମୋତେ ନୀରବ ଦେଖି ପୁଣି କହିଲେ, ମନେ ରଖିଥା, ଯଦି ମୁଁ ଏଥର ବି ଛଳନା କରି ନ ପାରେ, ଦୁନିଆଁକୁ ଡରି କି ତୋର ମନଭୁଲା କଥା ଶୁଣି ମୁଁ ଆଉ ଫେରିଯିବି ନାହିଁ ।—

ତାଙ୍କର କଥା ଶୁଣି ମୁଁ ଭୟରେ ତଟସ୍ଥ ହେଲି । ଗୁଣନିଧି ଯାହା କହୁଛନ୍ତି, ସତ । ଏଥର ଯଦି ସେ ବାହୁଡ଼ି ଆସନ୍ତି, ତାଙ୍କୁ ଆଉ ନିବର୍ତ୍ତାଇ ପାରିବି ନାହିଁ । ବର୍ଷ ବର୍ଷ କଟି ଯାଉଛି । ସତରେ ଏକା ତାଙ୍କ ସ୍ନେହ ଓ ଦାନର ବୋଝ ବଳେଇପଡ଼ୁଛି । ଅତି ଦରିଦ୍ର ମୁଁ, କେବଳ ଦେହଟା ଛଡ଼ା ତାଙ୍କର ଋଣ ଶୁଝାଇବାକୁ ଆଉ ତ କିଛି ସମ୍ବଳ ନାହିଁ । ପୋଡ଼ି ଜଳିଯାଉ ସେ ଦେହଟା । ତାଙ୍କର ଗୋଡ଼ତଳେ ଅଜାଡ଼ିଦେବି । ଦୁନିଆଁର ଲୋକେ ଯାହା କହନ୍ତୁ, ପରିଣାମ ଯାହା ପଛେ ହେଉ । ଲୁହ ଧାରି ଗଡ଼ିଆସିଲା । ଗୁଣନିଧି ଚାଲିଗଲେ । ସବୁଦିନ ପରି ସେ ଆଦର କଲେ ନାହିଁ, ଗେଲ କଲେ ନାହିଁ । ଛାତି ମୋର କରତି ହେଲା, ମନଇଚ୍ଛା କାନ୍ଦିଲି ।

ଦିନ ପରେ ଦିନ କଟିଗଲା, ସାତ ଦିନ । ଗୁଣନିଧି ଆଉ ଫେରିଲେ ନାହିଁ । ମୁଁ ବି ବୀଣାଦେବୀଙ୍କ ସଙ୍ଗେ ଦେଖା ସାକ୍ଷାତ କରିବାକୁ ଯାଇ ପାରିଲି ନାହିଁ । ମନରେ ଗୋପନ ଭୟ ହେଲା, କାଳେ ସେ ସବୁ କଥା ତାଙ୍କ ଆଗରେ କହିଥିବେ, ମୁହଁ ଦେଖାଇବି କିପରି । ଛି, ସେ କ'ଣ ଭାବିବେ ? ବୀଣାଦେବୀ ଯେପରି ମୋ ଆଗରେ ତାଙ୍କର ମନ ଖୋଲି ସବୁ କଥା ନିଃସଙ୍କୋଚରେ କହିଛନ୍ତି,

ମୁଁ ତ ସେପରି କହିପାରି ନାହିଁ । ସବୁ ଲୁଚାଇଛି—ଛଳ କରି ତାʼଙ୍କ ପେଟ ଭିତରୁ ସବୁ କଥା କାଢ଼ି ନେଇଛି ।

ଭାବିଥିଲି, ଶାନ୍ତି ପାଇବି ମନରେ, କିନ୍ତୁ ଶାନ୍ତି କାହିଁ ? ଦିନ ରାତି କେବଳ ଗୁଣନନାଙ୍କର କଥା ମନଟାକୁ ଜଳାଇ ପୋଡ଼ାଇ ଛଟପଟ କଲା । କେବେ କେଉଁଦିନ କʼଣ ଘଟିଥିଲା, ଛୋଟ ବଡ଼ ପ୍ରତ୍ୟେକ କଥା ଆଖି ଆଗରେ ନାଚିଗଲା । ସାତଟି ଦିନ ଅଦେଖାରେ ବୁଝିପାରିଲି ତାଙ୍କୁ ମୁଁ କେଡ଼େ ଭଲପାଏ । ତାଙ୍କ ବିନା ମୋର ଜୀବନଟା ଶୂନ୍ୟ ଲାଗିଲା । କାହିଁକି ସେ ଆସୁ ନାହାନ୍ତି । ବିରକ୍ତ ହୋଇ, କି ଆଉ କାହିଁକି ?

ଅଭିମାନ ଆସିଲା ତାଙ୍କ ଉପରେ । କହୁ କହୁ କʼଣ କହିଦେଲି ବୋଲି ସେ ଛଳ କରି ବସିଛନ୍ତି ? ଚାହିଁଥିଲେ ଦେହଟା । ଦେହଟା ତ ସାମାନ୍ୟ କଥା, ଜୀବନଟା ଚାହିଁଥିଲେ ତ ବିନା ଆପତ୍ତିରେ ଦେଇ ପାରିଥାନ୍ତି । ଯେଉଁ ଝିଅଟିର ଛଳ ଛଳ ଆଖି ମୋର ମନ ତରଳାଇଥିଲା, ସେ ତ ମୋର ଛାତିର କୋହ ଦୂର କରିପାରିବ ନାହିଁ । କାହିଁକି ମୁଁ ଏତେ ଅବୋଧତା କଲି । ଯିଏ ନିଜେ ନିଜେ ଆସି ଧରା ଦେଇଥିଲେ, ତାଙ୍କୁ ଛଳ କରି ତଡ଼ିଦେଲି । ମନ ଆକୁଳ ହେଲା । ସବୁ ମାନ ଅଭିମାନ ପଛରେ ପକାଇ ବୀଣା ଦେବୀଙ୍କ ପାଖକୁ ଯାଇ କଥାଟି ବୁଝିବାକୁ ମନକଲି, ଯାଇ ପାରିଲି ନାହିଁ । ମୋର ଢଙ୍ଗ ମୋର ଚାଲିଚଲଣ ଦେଖି ମା ସବୁବେଳେ ଭାବିବାକୁ ଲାଗିଲା ।

ଦିନେ ଭରସି କରି ପଚାରିଦେଲା, ଫୁଲ ଲୋ, ତୁ ଏଣୁ ତେଣୁ ଏତେ କʼଣ ଭାବୁଛୁ ? ସଂସାରରେ କʼଣ ଝିଅ ପରଘରକୁ ଯାଉ ନାହାନ୍ତି ? କିଏ ଏମିତି ମନକଷ୍ଟ କରୁଛି ! ରାମ ଲକ୍ଷ୍ମଣ ପରି ଦି ଭାଇ । ଘର ଅଛି, ଜମିବାଡ଼ି ଅଛି । ଭାଇ ଦିଓଟି କେଡ଼େ ସୁନ୍ଦର । ସବୁ କାମକୁ ଧୁରନ୍ଧର । ବାଟ ଦିʼ କୋଶରେ ଘର । ମନକଲେ ସବୁବେଳେ ଆସିବୁ । ଦିନେ ଦିʼ ଦିନ ଛାଡ଼ି ତତେ ବରାବର ଦେଖି ଆସୁଥିବି ଲୋ ମା । ମନକଷ୍ଟ କରୁଛୁ କାହିଁକି ?

ମୁଁ କିଛି ଜବାବ ଦେଲି ନାହିଁ । ଆଖିରୁ ଲୁହ ଝରିଆସିଲା । ସତରେ କʼଣ ପର ଘରକୁ ଯିବାକୁ ହେବ । ମା କହୁଥିଲା ଅଜିରବାର ବାହାଘର ! ଚମକି ଉଠିଲି । ନା, ଏ ବାହାଘର ହୋଇପାରିବ ନାହିଁ । ଯାହାକୁ ମୁଁ ମନ ପ୍ରାଣ ଦେଇଛି ତାହାରି ପାଇଁ ମୋର ଦେହଟା, ମୋର ଜୀବନଟା ଉତ୍ସର୍ଗ କରିବି । ମୁହଁରୁ କଥା ବାହାରିଲା ନାହିଁ ।

ମା ଆଖି ଛଲଛଲ କରି ଅନ୍ୟ ଆଡ଼େ ଚାଲିଗଲା ।

ଡରି ଡରି ସେ ଦିନ ଦିʼ ପହରେ ତାଙ୍କ ଘରକୁ ଗଲି । ବାହାର ଖଞ୍ଜାରେ ନାନୀ ବସିଥିଲେ । ମୋତେ ଦେଖି କହିଲେ, କିଲୋ ଫୁଲ ! ତୋର କାହିଁକି

ଆଜକାଲି ଦେଖା ନାହିଁ । ବୋଧହୁଏ ତୋ କଥା କେତେ ପଚାରନ୍ତି । ଯା, ଭିତରକୁ ଯା ।

ମୁଁ ଉତ୍ତର ନ ଦେଇ ଭିତରକୁ ଆସିଲି । ଯେଉଁ ଘରେ ବୀଣାଦେବୀ ଥାନ୍ତି, ସେ ଘର କବାଟ ବନ୍ଦ ହୋଇଛି । ଭାବିଲି ବୋଧହୁଏ ସେ ଶୋଇ ପଡ଼ିଛନ୍ତି । ଫେରିଯାଏଁ, ଫେରି ପାରିଲି ନାହିଁ । ପିଣ୍ଡା ଉପରକୁ ଉଠି କରେଇ ଠିଆ ହେଲି । ଡାକିବି ମନେ କରୁଛି, ଭିତରୁ ଗୁଣନନାଙ୍କର ହସ ଶୁଣିଲି । ଛାତି ଚମକି ଉଠିଲା । କହୁଛନ୍ତି, ତାର ନାଁ ମତେ ପଚାରିଲେ ମୁଁ କହିବି ନାହିଁ ।

ବୀଣା ଦେବୀ କହିଲେ ବେଶ୍ ନ କହ । ତେମେ ଭାବୁଛ ମୁଁ ଜାଣିବି ନାହିଁ, ଫୁଲକୁ ପଚାରିଲେ ସେ କହିବ । ସେ ସବୁ ଜାଣେ ।

କହିଲେ, ସତେ ? ଆଚ୍ଛା ତାକୁ ପଚାରିବ ।

ମୋ'ର ଗୋଡ଼ ଥରିଉଠିଲା । ଚାଲି ଆସିବି ଭାବୁଛି, କବାଟ ଖୋଲି ଗୁଣନନା ପଦାକୁ ବାହାରି ଆସିଲେ । ମୋତେ ଦେଖି ଚମକିଉଠିଲେ । ତାଙ୍କ ମୁହଁକୁ ଚାହିଁଲି, ହସ ହସ ମୁହଁ ଗମ୍ଭୀର ହୋଇଉଠିଲା । ଆଖିର ଆଲୁଅ ମଳିନ ହେଲା । ଥରିଲା କଣ୍ଠରେ କହି ଉଠିଲେ, ତୁ ଫୁଲ !

ଉତ୍ତର ଦେବା ଆଗରୁ ବୀଣା ଦେବୀ ଘର ଭିତରୁ ପଦାକୁ ଆସିଲେ । ମୋ ଆଖିକି ତାଙ୍କର ରଙ୍ଗିଲା ମୁହଁ, ଅଳଗା ବାଳ, ଅସଂଯତ ବେଶ, କେଡ଼େ ସୁନ୍ଦର ଦିଶିଲା ।

ଗୁଣନନା ଉତ୍ତେଜନାକୁ ଚାପି ରଖି କହିଲେ, ଫୁଲକୁ ପରା ଖୋଜୁଥିଲ, ସେ ଆସିଛି ।

ବୀଣା ଦେବୀ ହସି ହସି ମୋ ପାଖକୁ ଆସିଲେ । ହାତ ଧରି କହିଲେ, ହଁ, ହଁ, ଖୋଜୁଥିଲି । ତେମେ ଏଥର ଯାଅ ।

ଗୁଣନନା ବିସ୍ମିତ ହୋଇ କହିଲେ ଛୁଇଁଲ ? ସେ ଯେ ବାଉରୀ ! ହସି ହସି ବୀଣାଦେବୀ କହିଲେ, ବାଉରି ! ଓ, ତେମେ ତାର ବାହାରଟା ଦେଖିଛ, ମନ ଭିତରଟା ଦେଖି ନା । ଯିବନି ଏଠୁ ।

ସେ ଚାଲିଗଲେ ।

ସେଇଦିନ ସଞ୍ଜବୁଡ଼େ ଗୁଣନନା ଆମ ଘରକୁ ଆସିଲେ । କାନ୍ଦି କାନ୍ଦି ମୋର ଆଖି ଫୁଲି ଯାଇଥିଲା । କେତେବେଳଯାଏ ଦହେଁ ନୀରବ ରହିଲୁ । ଶେଷକୁ ସେ କହିଲେ, ତୁ ଜିତିଲୁ ଫୁଲ, ମନକଥା ତୋର ପୂର୍ଣ୍ଣ ହେଲା ।

ମନ ହେଉଥିଲା କହିବାକୁ, ତେମେ ମୋତେ ଭୁଲ ବୁଝିଛ । ଜବୋଧ ମୁଁ, ଜିତି ନାହିଁ, ହାରିଛି । କିଛି କହିପାରିଲି ନାହିଁ ।

ପୁଣି ହଠାତ୍ ନୀରବ ରହିଲେ । ପେଟ ଭିତରୁ କାନ୍ଦଣାର କୋହ ଉଠୁଥାଏ । ସବୁ ଉତ୍ତେଜନା ଗୁପ୍ତ ରଖିଥାଏ ସିନା, ମନ ହେଉଥାଏ ଦୁଇ ଗୋଡ଼ ଧରି କ୍ଷମା ମାଗିବି । କହିବି, ତୁମକୁ ପ୍ରତାରଣା କରିଛି । ମନେ ପଡ଼ୁଥାଏ ବୀଣା ଦେବୀଙ୍କର ଅସଂଯତ ରୂପ । ଗୋଡ଼ ହାତ ଚଳେ ନାହିଁ, ମୁହଁ ଖୋଲେ ନାହିଁ । କେତେ କ'ଣ ଭାବି ଶୁଣିନମା କହିଲେ, ଫୁଲ, ମୁଁ ଛଳନା କରିପାରିଲି ନାହିଁ । କରନ୍ତି କାହା ଆଗରେ ? ବୀଣା ପରି ସରଳ ନାରୀଟିଏ ଅଛି, ଛଳନାକୁ ଯେ ସତ ମଣେ, ତା' ଆଗରେ ଛଳନା କରିବା ସମ୍ଭବ ନୁହେଁ ।

ଟିକିଏ ଅପେକ୍ଷା କରି ପୁଣି କହିଲେ, ମୋ ଆଖିରେ ତୋ ଅସଲ କେଉଁ ଉଚ୍ଚରେ ଫୁଲ ? ଆଜିଯାଏ ତୋତେ ମୁଁ ଚିହ୍ନି ନ ଥିଲି । ସତରେ ଲୋ, ତୋର ବାହାରଟା ଦେଖିଥିଲି, ଭିତରଟା ଦେଖି ନ ଥିଲି, ଚିହ୍ନି ନ ଥିଲି । ମୋର ବାଟ-ହୁଡ଼ା ଅରଣା ମନକୁ କେଉଁ କୌଶଳରେ କେଉଁ ସହଜରେ ତୁ ଶାସନ ନ କରି, ଅନୁରାଗ କରି ଅଟକାଇ ରଖି ପାରିଥିଲୁ ।

ଭିତରର କୋହ ଗୁପ୍ତ ରଖିପାରିଲି ନାହିଁ । ତାଙ୍କର କଥାରେ ବାଧା ଦେଇ କହିଉଠିଲି, ତେମେ ମୋତେ ଚିହ୍ନ ଶୁଣିନମା, ସତେ ତେମେ ମତେ ଭଲ ପାଅ ?

କହିଲେ, ଚିହ୍ନି ନ ଥିଲି, ଚିହ୍ନିଲି । ଆଜି ଯାଏ ତୋର ଝଟକିଲା ସୁନ୍ଦର ରୂପ, ଦାଉ ଦାଉ ଜଳିଲା ଆଖିକି ମୁଁ ଭଲ ପାଇଥିଲି ସିନା । ତୋର ମନର ମହତକୁ ଅନୁଭବ କରିପାରି ନ ଥିଲି । ତୋର ସେଇ ମନର ପରିଚୟ ତୁ ମତେ ଦେଇସାରିଛୁ, ସେଇଥିକୁ ମୁଁ ଦେଖିଛି, ବୁଝିଛି, ଅନୁଭବ କରିଛି । ସେଇଥିକୁ ମୁଁ କେତେ ଭଲପାଏ । କିପରି ତତେ କହି ପାରିବି ? ତୋର ସତକତା, ତୋର ମହତପଣିଆଁ ଛଟୋଟି ଜୀବନର ସୁଖ ଆନନ୍ଦର ବାଟ ଦେଖାଇଛି ।

ଉତ୍ତେଜିତ ହୋଇ ଲତାଟି ପରି ଲୋଟିଗଲି ତାଙ୍କର କୋଳରେ, କାନ୍ଦି ଉଠିଲି । କହିଲି, ତମେ ମୋତେ ଚିହ୍ନି ନାହଁ । ମୋର ଭିତର ଭିତର କଥା ଜାଣ ନାହିଁ । ତେମେ ମୋତେ ଭଲ ପାଅ ? କହ, ଭଲପାଅ ଠିକ୍ ଯେମିତି ଆଗେ ଭଲପାଉଥିଲ ? ବେଶୀ ବେଶୀ କାନ୍ଦି ଉଠିଲି ।

କେତେ ସମୟ ନୀରବ ରହିଲେ । ସେ ମୋର ମୁଣ୍ଡ ଆଉଁଷିଲେ । ଡାକିଲେ ଫୁଲ । ଜବାବ ଦେଲି ନାହିଁ । କହିଁ ଉଠୁଥାଏ । ମୁଁ ବୁଝି ସାରିଥିଲି, ଯେତେ ଯାହା ଭିତରେ କହିଲେ କି ଭବିଷ୍ୟତ ଓ ଲୋକାପବାଦ ଡରରେ କୌଶଳରେ ତାଙ୍କ ପାଖରୁ କରଛଡ଼ା ଦେଇ ରହୁଥିଲେ ମଧ୍ୟ ମୁଁ ତାଙ୍କୁ ପ୍ରାଣରୁ ବଳି ଭଲ ପାଉଥିଲି । ତାଙ୍କର ଉତ୍ତେଜିତ କଥାରୁ ବୁଝିପାରିଥିଲି ମୋର ଭଲ ପାଇବାର ଶେଷକଥା ହୋଇସାରିଛି ।

କହିଲେ, ପରୀକ୍ଷା କରୁଛୁ ? ଭାବିଛୁ ଦୁର୍ବଳ ହୋଇ କହିପକାଇବି— ଅଟକି ଗଲେ । କହିଲେ, ତୁଇ ମତେ ଶିଖାଇଛୁ ଧୈର୍ଯ୍ୟ, ତୁଇ ମତେ ବତାଇଛୁ ନିର୍ମଳ ସ୍ନେହର ସ୍ୱରୂପ, ଭଲ ପାଇବାର ଆଦର୍ଶ !

କୋହ ଗୃପି ଉଠି ବସିଲି । ସାମାନ୍ୟ ଘୂରି ଅସିଲି । ପ୍ରକୃତିସ୍ଥ ହୋଇ କହିଲି ତେମେ ମୋର ଦେହଟା ଗୃହିଁ ଥିଲ ପରା ?

ଆଉ ଅଧିକ କହିପାରିଲି ନାହିଁ । ମନେ ହେଲା, ବୀଣାଦେବୀ ଅନ୍ଧାରରେ ବାଡ଼ କଡ଼ରେ ଠିଆହୋଇ ହସି ଉଠୁଛନ୍ତି । କହୁଛନ୍ତି, ଅଲୋ ଫୁଲ, ମଶା କି ପିମ୍ପୁଡ଼ିଟିଏ ଆଖି ପତାରେ କାମୁଡ଼ିଲେ, ଗ୍ରୋଟ ବ୍ରଣଟିଏ ଓଠରେ ଉଠିଲେ କି ଅସାବଧାନତାରେ ମୁହଁ ଗୃଲରେ ବାଜିଲେ ବି ଶୋଭାକାର ରୂପ ବିକଟାଳ ହୁଏ । ସେ ରୂପକୁ ମଣିଷ ଅନାଏଁ ନାହିଁ ।

ବୀଣାଦେବୀ କହୁ ନାହାନ୍ତି । ତାଙ୍କର କହିଲା କଥା ମୋ କାନରେ ବାଜି ଯାଉଛି ।

ଗୁଣନନା ଦୀର୍ଘଶ୍ୱାସ ଗ୍ରାଡ଼ି କହିଲେ, ଦେହ ? ହଁ, କାଠ ପଥର ପଶୁ ପକ୍ଷୀ ସଭିଙ୍କର ଦେହ ଅଛି । ମନର ପରିଚୟ ଥରେ ଯେ ପାଏ, ଦେହର ଅଳିକତା ସେ ବୁଝିପାରେ । ପରୀକ୍ଷା କରୁଛୁ କି ଫୁଲ ?

ଆଖି ଆଗରେ ସବୁ କଥା ଉଜ୍ଜ୍ୱଳ ଦିଶିଲା । ଉଠି ଠିଆହେଲି । ଦୁର୍ବଳତା ଦମନ କରି କହିଲି, ହଁ ପରୀକ୍ଷା ! ତେମେ ଜିତିଛ ଗୁଣନନା, ହାରିଛି ମୁଁ ନିର୍ବୋଧ । ଗୋଟିଏ ଅନୁରୋଧ ମୋର ରଖିପାରିବ ?

କ'ଣ କହ ।

ମୋ ଦେହ ଛୁଇଁ ଆଗ ହଁ କର ।

ସେ ମୋ ଦେହ ଛୁଇଁଲେ । କହିଲେ, ତୋ ଅନୁରୋଧ ମୁଁ ନିଶ୍ଚେ ରଖିବି ।

ହସି ହସି କହିଲି, ଆଜି ଯାଏ, ଆମ ଜୀବନରେ ଯାହା ଯାହା ଘଟିଯାଇଛି, ଠିକଣଣି କରି ସବୁ ମୋ ବୀଣା ଭାଉଜ ଆଗରେ କହିବ । ପୁଣି କହିବ, ମୁଁ କହିବାକୁ କହିଛି—

ସେ ତୁନି ରହିଲେ ।

ସେଦିନ ମୋର ବାହାଘର । ଲେଖାଟରେ ଦିଅର ହେବେ ମଦନ, ଗତ ସଞ୍ଜରୁ ଆମଘରେ ଆସି ପହଞ୍ଚିଛନ୍ତି । କୁଳର ପ୍ରଥା ଅନୁସାରେ ମୋତେ ହିଁ ତାଙ୍କ ଘରକୁ ଯିବାକୁ ହେବ ଜନ୍ମ ମାଟିର ମମତା ଗ୍ରାଡ଼ି । ମନ ଭିତରେ ଦୁଃଖର ଜୁଆର ଉଠୁଥାଏ ।

ଉଚ୍ଛୁର ହେଉଛି ବୋଲି, ମା ବେଳେ ବେଳେ ବ୍ୟସ୍ତ ହୋଇଉଠେ । ମୋତେ କଅଁଳେଇ କହେ ଫୁଲ, ଡେରି କରି ଲାଭନାହିଁ । ଖରା ମାଡ଼ିଆସୁଛି ପରା । ଚାଲ । ଏଥର ଘର ଟିଅଛି ବନ୍ଧା ଦେଇ ମିଶ୍ରଘରୁ କୋଡ଼ିଏ ଟଙ୍କା ଆଣିଛି । ବଞ୍ଚିଥିବା ଯାକେ ଏ ଘରେ ରହିବ । ମରିଗଲେ ସେ ନେବେ । ଏ କଥା କହିଲାକୁ ସଙ୍ଗେ ସଙ୍ଗେ ସେ ଟଙ୍କା ଗଣି ଦେଲେ ଲୋ, କହିଲେ, ମୋର ସୁଧ ଲୋଡ଼ା ନାହିଁ ଲୋ, ଫୁଲଝିକୁ ଆଗ ଉଠେଇ ଦେ । ତୋର ଟୋଁଠାଏ ପେଟ ଅପୋଷା ରହିବ ନାହିଁ କି ମୁଣ୍ଡ ଗୁଞ୍ଜିବାକୁ ଥାନର ଅଭାବ ହେବ ନାହିଁ । କେଡ଼େ ଦୟାବନ୍ତ ପୁରୁଷ ତୋ ଗୁଣ ନନାର ବାପ— ।

ତା କଥାରେ ମୋର କାନ ନ ଥାଏ । ଯାହାଙ୍କ ପାଇଁ ପ୍ରାଣ ଛଟପଟ ହେଉଥାଏ, ଥରୁଟିଏ ତାଙ୍କୁ ଦେଖିବ ବୋଲି ଗୋଡ଼ ଅଟକି ରହୁଥାଏ । ସେ ତ ଆସିଲେ ନାହିଁ, ମୋ ଅନୁରୋଧ ସେ ରଖିଲେ କି ନାହିଁ । ବିଣାଦେବୀ କଅଣ କହିଥିବେ ଜାଣିବାକୁ ଆଗ୍ରହ ହେଲା । ହେଉ ନ ଆସନ୍ତୁ ସେ । ପହିଲି ଯୌବନର ଲୁଚକାଳି ଖେଳ ଭାଙ୍ଗିଛି । ଗୁଣେଭାଇ ସଂସାର କଲେଣି । ମୁଁ ବି ମୋର ଶ୍ରେଷ୍ଠ ସଂସାର ଟବଢର ଦୁନିଆଁ ଗଢ଼ିବାକୁ ଯାଉଛି । ଗାଁର କୌତୁକିଆ ସପନ ପରି ପିଲାଦିନର ଏଇ ଖେଳ କୌତୁକ ଦିନାକେତେ ମନରେ ଥିବ । ସାଙ୍ଗ-ସାଥିଙ୍କ ଆଗେ କହିବାକୁ ହସି ହସାଇବାକୁ ମଜା ଲାଗିବ । ସଂସାରର ବୋଝ ବଳେଇଲେ ଆପେ ଆପେ ସବୁ ପାଶୋରି ଯିବ । ଏମିତି କେବେ ହୋଇଥିଲା ବୋଲି କିଏ ମନେ ପକାଇଲେ ନିଜର ବି ବିଶ୍ୱାସ ହେବନି । ଅସମ୍ଭବ ପରି ଲାଗିବ ।

ଗାଁ ମୁଣ୍ଡରେ ମିଶ୍ରଘର ତୋଟା । ଗୋଡ଼ ଅଟକିଗଲା । ଏଇ ସେ ଆମ୍ବଗଛ । ଏହାରି ମୂଳରେ କେତେ ସଞ୍ଜ କଟିଛି । ଦୁଇଟା ଅତୃପ୍ତ ପ୍ରାଣର କେତେ ଅଫୁରନ୍ତ ଚିନ୍ତା, କେତେ ଉତ୍ତେଜନା ମିଳି ଏକାକାର ହୋଇଛି । ମୋର ହସ, ମୋର କାନ୍ଦ, ମୋ ମାନ, ଅଭିମାନ ସବୁ ଦେଖିଛି ଏଇ ଗଛଟି । ଆକୁଳ ପ୍ରାଣ ଦିଓଟିର କେତେ ପ୍ରେମାଳାପ ଶୁଣିଛି, ହୁଏତ ମନେ ମନେ ହସିଛି । ତାରି ମୂଳରେ ଠିଆ ହୋଇ ଆଖିର ତତଲା ଲୁହ ଢାଳି ଦେଲି, ମନର ସବୁ ସ୍ମୃତି ଧୋଇ ଦେବାକୁ ।

ଆଖି ପଡ଼ିଲା ଦୂରରେ । ଗୁଣନନା ଗଛ ଗହଳି ଭିତରୁ ବାହାରି ଆସୁଛନ୍ତି ।

ଆଗରେ ମଦନ ଚାଲିଛନ୍ତି । ମଝିରେ ବୋଉ । ସବାପଛରେ ମୁଁ । ଅପେକ୍ଷା କଲି ନାହିଁ । ମୁହଁ ବୁଲାଇ ଆଗକୁ ଚାଲିଲି ।

କଟକ
୧୯୪୩

---

୧

ଚଇତ ଅକାଶର ଗ୍ଳାଡ଼ ଉପରେ ଖଣ୍ଡ ଖଣ୍ଡ ଭଙ୍ଗା-ବଉଦ ଧୂଷ ପବନରେ ଭାସି ଯାଉଥାଏ । କେତେବେଳୁ ଗ୍ଳଇ ଲେଉଟିଲାଣି । ବରୁଣେଇ ହାଟରୁ ଅମେ ଦହେଁ ଘରମୁହାଁ ହୋଇ ଫେରୁଥାଉଁ । ଗଦାଏ ବାଟ ବାକି ଅଛି, ଗମ୍ଭାର ମଝିରେ ଶଗଡ଼ଗୁଳା, ସେଇ ଅମର ବାଟ । ଅଗଟର ପଛରେ ଦୂରେଇ ଦୂରେଇ କେତେ ଲୋକ ଫେରୁଛନ୍ତି । ସେମାନଙ୍କ ଅଡ଼କୁ ଅମର ନଘା ନାହିଁ । ତାଙ୍କ କଥାରେ କାନ ଦେବାକୁ ଅମର ତର ନାହିଁ । ଅମେ ଦହେଁ ନିଜ ନିଜର ଭାବନାରେ ମଜ୍ଜିଯାଇଥାଉ ।

ଗଜବୋଉ ଖୁଡ଼ୀ କଅଣ ଭାବୁଥାଏ କେଜାଣି, ମୁଁ ମୋର ସେଦିନର ସୌଭାଗ୍ୟ କଥା ଭାବୁଥାଏଁ । ବରୁଣେଇ ହାଟ, ଆଖପାଖ ଛଅଶ ଖଣ୍ଡି ଗାଁର ଲୋକ ଯା ଅସ କରନ୍ତି । ଖରଦ ବକ୍ରୀ ହୁଏ । କେତେ ଗାଁରୁ ବେପାରୀମାନେ ଗାଡ଼ ଗାଡ଼ ପରବାପତ୍ର ଅଣି ଗଦା କରନ୍ତି । ଅମର ବୋଙ୍ଗ ପରବାକୁ କିଏ ପଚାରବ ? ବାର ଘର ବୁଲି, ପରବା ବୋଝ ଧର ଛଅ କୋଶ ବାଟ ଗ୍ଳଲଗ୍ଳଲ ଅସି ହାଟରେ ବସିବା କଥା । କେତେ ହାଟପାଳି ତ ଯାଇଛି, ସଞ୍ଜ ପହରଯାଏ ବସି ବସି ପଇସା ପାଅଣା କି ଛଅଣା ଲାଭ ବାହାରବା କଷ୍ଟ ।

ଅଜ ବଡ଼ ଭାଗ୍ୟ । ବାବୁଟି କିଏ କେଜାଣି, କେତେ ପସରା ପାଖରେ ପଚାର ଅସି ମୋର ପରବା ତାଙ୍କର ପସନ୍ଦ ହେଲା । ସବୁ ଓଜନ କରାଇ ନେଲେ । ମୂଲଗ୍ଳଲ ନାହିଁ, ଯାହା ମୋ ମୁହଁରୁ ବାହାରଲା ସେଇଆ । ଗ୍ଳକର ଠୋକା ଦରଦାମ କରବାକୁ ବସିଲାରୁ ଓଲଟି ସେ ଅକଟି କହିଲେ । ଭଲ ବାବୁଟିଏ ! ଘଣ୍ଟାକ ଭିତରେ ମୋ କାମ ସରଗଲା । ଠିକ୍ଣାକରୁ ବେଶି ଲାଭ ହେଲା । କେତେବେଳୁ ଫେର ଅସନ୍ତିଣି । ଏଇ ଗଜବୋଉ ଖୁଡ଼ୀ ପାଇଁ ସଞ୍ଜ ହେଲା । ସେରେ ଅଧସେରେ କର କେତେ ଗରାଖଙ୍କୁ ବକୁବକୁ ତାର ବେଳ ବୁଡ଼ିଲା ।

ପିଲାଟା କାନ୍ଦୁଥିବ । ବୋଉ ବୁଢ଼ୀଲୋକ, ସମ୍ଭାଳ ରଖିବାକୁ ବରକ୍ତ ହେଉଥିବ । ସଞ୍ଜ ହୋଇ ଅସୁଛି । ଗମ୍ଭାର ବଳ ବାଟ । ଗଜବୋଉ ମଠେଇ ମଠେଇ ଗ୍ଳଲଛି । ବୁଢ଼ୀ ମଣିଷ, କଅଣ କରବ ? ସାଥୀ ହୋଇ ଅସିଥାଇଁ, ତାକୁ ପଛରେ ଗ୍ଳାଡ଼ି ଅଗେ ଅଗେ ଗ୍ଳଲଯାଇ ପାରୁନାହିଁ । ମନ ଉଡ଼ଯାଉଛି, ହେଲେ

ପିଣ୍ଡ ଚଳୁ ନାହିଁ । ଡର ଡର କହିଲି, ଖୁଡ଼ି, ଟିକିଏ ସହଳ ଗୋଡ଼ ପକା ମୁଁ, ସଞ୍ଜ ବୁଡ଼ିଆସିଲା ଯେ ।

ସେ ମୁହଁ ଭୁରୁକୁଣ୍ଡା କରି ଜବାବ ଦେଲା, ସହଳ ସହଳ ପାହୁଣ୍ଡ ଚାଲିବାକୁ ବଳ ବଅସ ଅଛି କି ମୋର, ତୁ ସିନା ଟୋକା ହୋଇଛୁ, ହାତକେ ଯାଇଁ ଗୋଡ଼ ପଡ଼ୁଛି, ମନ ପବନରେ ଉଡ଼ୁଛି । ମୋର ଆଉ ସେ ଦିନ ନାହିଁ ଲୋ ମା ।

ମନ ଉଡ଼ୁଛି ସତରେ । ପିଲାଟାର କାନ୍ଦ କାନରେ ବାଜଯାଉଛି । କେତେ ଖୋଜୁଥିବ । ସେ ପୁଣି ଯେମିତି ହୋଇଛି, କାନ୍ଦର ଛିଦ ଯଦି ଧରିଥିବ, ଭୁନ କରିବ ପୁଣି କିଏ ? ବୋଉ ବା କଅଣ କରିବ ? ଏହି ସବୁ କାରଣରୁ ପିଲାକୁ ଛାଡ଼ି ହାଟକୁ ଆସିବାକୁ ମନ ହୁଏ ନାହିଁ । ତୋର ବାଧିରୁ ଆସିବା କଥା ।

ମୋର ବାଧିରୁ କାହିଁକି ଲୋ ? ମନ ହେଲେ ଆସିବୁ, ମନ ନ ହେଲେ ନ ଆସିବୁ । ଷତି ହେଲେ କିଏ କାହାର ଭରଣା କରିବ, ନା ଲାଭ ହେଲେ କିଏ କାହାକୁ ଗୃହିପଇସା ଗଣିଦେବ ।

କେଉଁ କଥାରୁ ଆଣି ବୁଲାଇ ବୁଲାଇ ସେ କେଉଁଠି ଥୋଇଲା ମୁଁ ବୁଝିଲି । ଠାକୁରଙ୍କ ଦୟାରୁ ଆଜ ମୋର ଭଲ ଦି ପଇସା ଲାଭ ହୋଇଛି ବୋଲି ଈର୍ଷାରେ ସେ ଜଳିଯାଉଛି । ଛଅ ପ୍ରାଣୀ ଜୀବ ଆମେ, ଖାଇବା ବିନା ଗାଁରେ ବାର ହଇରାଣ ହରକତ ହେଉଥିଲୁଁ । ଛଅ ଓଳିରେ ପେଜପାଣି ଟିକିଏ ମିଳିବା କଷ୍ଟ ହେଉଥିଲା । ବୋଉ ବୁଢ଼ୀଲୋକ । ତଥାପି, ପରଘରେ ପାଇଟି କରି ନିଜର ପେଟପାଟଣା ପୋଷନ୍ତା । ମୋର ବି କଛି ଅଭାବ ପଡ଼ନ୍ତା ନାହିଁ । କାହା ଦୁଆରେ ମୂଲ ଲାଗିଲେ ଅବଶ୍ୟ ଗୃହି ପଇସା ମିଳନ୍ତା; କିନ୍ତୁ ପିଲାଟାକୁ ଛାଡ଼ି କୁଆଡ଼େ ଯିବି ? ଜଣେ କେହି ଘରେ ନ ରହିଲେ ନ ହୁଏ । ଆଉ, ଜଣେ ଯଦି ଘରେ ରହେ, ନିତି ମୂଲରେ ଆର ଜଣଙ୍କ ପକ୍ଷରେ କୁଟୁମ୍ବ ପୋଷିବା କଷ୍ଟ ।

ରାଜବୋଉ ସାହସ ଦେଲା । କହିଲା, ସବୁଦିନେ ଯେମିତି ମୂଲ ପାଛ ଲାଗୁଛ ସେମିତି ଚାଲିଥାଉ, ସାତଦିନେ ଦି ପାଳି ହାଟ, ଟଙ୍କା ଦିଟା ପାଣ୍ଠି କରି ହାଟକୁ ପନିବାପନି ନେଇଗଲେ ନିଶ୍ଚୟ ନିତି ମୂଲରୁ ଅଧିକ ମିଳିବ ।

ଗହଣା ଗାଣ୍ଠି ଯେଉଁ ଦି ଖଣ୍ଡି ଥିଲା, ସେତକ ବିକ୍ରୀ କରି କଛି ଦିନ ଚଳି ଯାଇଥିଲା । ବାକି ଥିଲା ଫୁଲଗୁଣାଟି । ରାଜବୋଉ ସାହାଯ୍ୟରେ ସେ ଖଣ୍ଡିକ ବନ୍ଧା ଦେଇ ଦିଓଟି ଟଙ୍କା ଆଣିଲି । ସେତିକ ମୋର ପାଣ୍ଠି, ସେତିକ ମୋର ସମ୍ବଳ । ସେଇ ଟଙ୍କା ଦିଓଟିକୁ ଖଟାଇ ହେହ ମିହନ୍ତ କରି ହାଟପାଳିକୁ ହାଟପାଳି ଯାହା ରୋଜଗାର ହୁଏ, ସେତିକରେ ନିତି ମୂଲ ମିଶାଇ ଦୁଃଖେ କଷ୍ଟେ ବେଳ କଟେ । ପଚାରିଲି, ତୋର କଅଣ ଷତି ହେଲା ଖୁଡ଼ି, ଏମିତି ମନ ଦୁଃଖ କରୁଛୁ ଯେ ?

ଷଣ୍ଢ ହେବାକୁ ମଣିଷ ବେଉସା କରେ ନାହିଁ ଲୋ । ସକାଳୁ ମଞ୍ଜପାଏ ବସି ଖରାରେ ସିଝିସିଝି କେତେ ଧକ୍‌କାଧକ୍‌ କେତେ ହାତ ଛୁଆଁଡ଼ାରେ ପଇସା ଦିଅଣା କି ଦଶଟା ମିଳିବା କଥା । ଆଜି ଫେର ଗରାଖଙ୍କର ଭିଡ଼ କଟାଳ । ହକ୍ ଦାମ୍ ଛଡ଼ାଇ ଦଣ୍ଡି ଦେଖି ଓଜନ କରି ନେବେ, ତହିଁରେ ପୁଣି ଲୁଭ ଲୁଭ କରି ପସରାରେ ହାତ ପୂରାଇବେ । ଦକ୍‌ଦାରିଆ କାମ । ମଣିଷର ପ୍ରକୃତି ବିଗିଡ଼ି ଯିବ । ଶେଷରେ ପୁଣି ଦେଖିଲା ବେଳକୁ ଅଧସେର ନଥିବ । ଷଣ୍ଢଟା ପୁଣି ଲୁଭରୁ କଟିବ ତ, କୁଆଡ଼ୁ ଆସିବ ?

କେତେବେଳେ କଅଣ ହୋଇଯାଏ ତାର କି ଠିକଣା ଅଛି, କିଏ ଜାଣିଥିଲା ଆଜି ମୋର କାମ ଏଡ଼େ ଜଲଦି ସରିଯିବ, ପୁଣି ବିନା ଧକ୍‌କାଧକ୍‌ରେ ଭଲ ଦି ପଇସା ବାହାରିବ । ବାବୁଟି ଭଲ ଲୋ, କେଡ଼େ ଦୟା ତାଙ୍କର ।

ବଡ଼ ପାଟି କରି ହସିଉଠିଲା । କହିଲା, ଏଣିକି ସବୁ ପାଳି ତୋର ଲାଭ ହେବ ଲୋ । ବାବୁଟି ଭାରି ଭଲ । ସେ ମଣିଷ ଦେଖି ପରିବା କିଣନ୍ତି, ଏଥର ପଇସା ଦେଇ ମଣିଷ କିଣିବେ । ତୋର ମୋର ଦିନେ ଥାନରେ ବସିବା ।

ତା କଥାର ଜବାବ ଦେଲି ନାହିଁ । ଭାବିଲି, ଲୋକେ ପରର ଭଲ ଗୁଣ ଦେଖିବାକୁ ସବୁବେଳେ କୁଣ୍ଠିତ ହୁଅନ୍ତି । ମନରୁ ଫାନ୍ଦି ଭଲ କଥାରୁ ଖରାପ ଅର୍ଥ ଟାଣି ଓଟାରି ବାହାର କରନ୍ତି ।

ଖଣ୍ଡେ ଦୂର ଚାଲିଆସିଲୁଁ । କାହାରି ତୁଣ୍ଡରୁ କଥା ବାହାରୁ ନ ଥାଏ । ପିଲାଟି କଥା ମନେ ପଡ଼ି ପେଟଭିତର ଓଲଟି ପଡ଼ୁଥାଏ । ମତେ ନ ଦେଖି ସେ କେତେ କାନ୍ଦୁଥିବ । ଆହା, ବାପଛେଉଣ୍ଡ । ଗୋଡ଼ ଆଗକୁ ପଡ଼ୁ ଥାଏ । କିଛି ଦୂର ଆସି ପଛକୁ ଫେରି ଚାହିଁଲି । ରାଜବୋଉ ଝୁଡ଼ୀ କେତେ ଦୂରରେ ରହିଲାଣି । ଡାକିବାକୁ ମନ ହୁଏ, ପାଟି ପଇଟେ ନାହିଁ । ରାଗିଛି । କଣ ଅଖାଡ଼ୁଆ ଅବଗୁଣିଆ କଥା କହିବସିବ । ମତେ ଛୁଗୁଲେଇ କହି ମନରେ କଷ୍ଟ ଦେବାକୁ ସେ ଯେପରି ଆଜି ପଣ କରିଛି । ଅଟକି ରହେଁ ଅପେକ୍ଷାରେ ।

ସଞ୍ଜ ଅନ୍ଧାର ମାଡ଼ିଆସିଲା । ଗହିରର ମଝି ଦଣ୍ଡା । ଦଣ୍ଡାପାଖ ମଶାଣି କଡ଼ର ଝଙ୍କାଳିଆ ବରଗଛ । ତା'ରି ମୂଳରେ ଠିଆ ହେଲା ରାଜବୋଉ ଝୁଡ଼ୀ । ମୁଣ୍ଡରୁ ଟୋକେଇ କାଢ଼ି ତଳେ ଭରା ଦେଇ ଅଣ୍ଟା ସଳଖି କହିଲା, ଟିକିଏ ରହ ଲୋ, ଚାଲିଚାଲି ଅଣ୍ଟା କଣ ହେଉଛି ।

ବାଧ ହୋଇ ଅଟକି ରହିଲି । ଭଲରେ କହିଲି, ଆହୁରି ତ ଗଦାଏ ବାଟ ଅଛି, ଏତିକି ବେଳକୁ ହଟି ରହିଲେ ହେବ ନା ? ଦେଖିଲ, ସଞ୍ଜ ପାଖେଇ ଆଇଲା, ଅନ୍ଧାର ରାତି ।

କଅଣ କରିବ ଲୋ, ଝୋଲା ମାରିଲାପରି ଲାଗୁଛି । ତଣ୍ଟି ଅଠାଅଠା ହେଲାଣି । ବୁଢ଼ୀ ମଣିଷ । ଦି କୋଡ଼ି ବାର ହେଲା ମୋର ବୟସ, ଚାଲିବାକୁ ବଳ ପାଉ ନାହିଁ ।

ଠୋକେଇଟା ତା ହାତରୁ ଆଣି କହିଲି, ଦିଅ ମୁଁ ଧରୁଛି । ତମେ ଧୀରେ ଧୀରେ ଚାଲିଆସ ।

ତାର ଠୋକେଇଟି ମୋ ଠୋକେଇ ଉପରେ ଥୋଇ ମୁଣ୍ଡ ସଳଖି ଚାଲିଲି । ସେ ପଛେ ପଛେ ଚାଲିଲା । ସଞ୍ଜ ଆଗରୁ ପୁରୁଣ ଗାଁ ମୁଣ୍ଡରେ ପହଞ୍ଚିଲୁ । ଗାଁ ଭିତରେ ପଶିଗଲେ ବୁଲାଣି ପଡ଼ିବ । ସେଇଥି ପାଇଁ ଆମେ ଗାଁ ମୁଣ୍ଡରୁ ଭାଙ୍ଗି ଗହ୍ଲାର ମଝିରେ ଚଲାବାଟ ଦେଇ ଯାଉଁ । ବରୁଣେଇଁରୁ ପୁରୁଣ ଠିକ୍ ଅଧେ ବାଟ । ଆହୁରି ଦେଡ଼କୋଶ ଗଲେ ଯାଇଁ ଉଦିଲି, ଆମରି ଗାଁ । ଏମିତି ଚିପେଇ ଚିପେଇ ଚାଲିଲେ ରାତି ଘଡ଼ିକରୁ ବଳିଯିବ ।

ଖୁଡ଼ି ତେମେ ଆଗେ ଆଗେ ଚାଲ ।

ପାଦ ଆଉ ଚଳୁ ନାହିଁ । ତଣ୍ଟି ଅଠାଅଠା ହେଉଛି । ପାଣି ମନ୍ଦାଏ ନ ପିଇଲେ ପ୍ରାଣ ଛାଡ଼ିଯିବ ।

ପାଣି କୋଉଠି ମିଳିବ ?

ପୁରୁଣ ଗାଁରେ ପାଣି ମନ୍ଦାଏ କଅଣ ପିଇବାକୁ ପାଇବା ନାହିଁ ? ଡେରି ତ ହେଲାଣି, ପହଞ୍ଚୁ ପହଞ୍ଚୁ ରାତି ହେବ । ଆଉ ଟିକିଏ ଡେରି ହେଲେ କ୍ଷତି ନାହିଁ । ପିଲାଟା କଥା ଭାବୁଛୁ ତୁଳସି, କିଛି ଚନ୍ତା ନାହିଁ । ତୋ ମା ପାଖରେ ସେ କାନ୍ଦିବ ନାହିଁ । ପରପିଲାଙ୍କୁ ଯେ ମଣିଷ କରିଛି, ପରପିଲାଏ ଯାହାକୁ ଆଦର ରହି ପାରନ୍ତି, ତୋର ପିଲା ବଳଟକ ତା ପାଖରେ ଖୁସିରେ ଥିବ ।

ଭରସି କରି ତା କଥାରେ ପ୍ରତିବାଦ କଲିନାହିଁ । ଅନ୍ତ ଫାଡ଼ ଜନ୍ମ ଦେଇଛି, ସେଇଥି ପାଇଁ ସିନା ମନ ଅଧୀର ହୁଏ, ନୋହିଲେ ରାଜବୋଉ ଖୁଡ଼ୀ ଯାହା କହିଲା, ସେଥିରେ ଭୁଲ ନାହିଁ । ପିଲାଏ ମୋ ବୋଉକୁ ବେଶ୍ ଆଦର ରହି ପାରନ୍ତି ।

ପୁରୁଣ ଗାଁ ଭିତରେ ପଶିଲୁଁ । ଗାଁଟି କେତେ କାଳର ପୁରୁଣା । ସବୁ ଜାତିର ଲୋକ ରହନ୍ତି । ବଡ଼ ଗାଁ, କେତେ ଗଳି, କେତେ ପଡ଼ା । ନତି ମୂଲିଆ, ଧନୀ, ମହାଜନ, ଚାଷୀ, ବଡ଼ଲୋକ ସମସ୍ତେ ଘର କରି ରହନ୍ତି ।

ରାଜବୋଉ ଖୁଡ଼ୀ ଆଉ କାହା ଘରକୁ ଯିବାର ମୁଁ ଦେଖି ନାହିଁ । ହାଟ ଫେରନ୍ତି ଦିନେ ଦିନେ ସେ ପାଣି ପିଇବାକୁ ସାହି ମୁଣ୍ଡରେ ଯେଉଁ ଗୋଟିକିଆ ନୂଆଁ ଣିଆଁ ଘର, ତାଅରି ପିଣ୍ଡାରେ ବସେ । ପାଣି ମନ୍ଦାଏ ମାଗି ପିଏ । ଘରଟି କଗୁଡିଆ ନ ହେଲେ ବି ଏକୁଟିଆ । ବରୁଣେଇଁ ଗାଁରୁ ଯେଉଁ ଶଗଡ଼ଗୁଳା ପଡ଼ିଛି

ତାର ବାଁ ପାଖରେ । ଡାହାଣ ଅଡ଼କୁ କିଛି ଦୂର ଗ୍ରୁଡ଼ ବଡ଼ ବସ୍ତି । ଗଛ ଗହଳି ଭିତରୁ ଘର ମଥାନ, ଡେଙ୍ଗା ନଡ଼ିଆ ଗଛ ଦୂରକୁ ଦେଖାଯାଏ ।

ସେ ପାଣି ପିଇବାକୁ ଯାଏ, ମୁଁ ବାଟ କଡ଼ ଗଛ ମୂଳରେ ଅପେକ୍ଷା କରି ରହେଁ । କାହାରି ଘରକୁ ଯିବାକୁ ମୋର ଇଚ୍ଛା ହୁଏ ନାହିଁ । କିଏ କଅଣ କହିବ, କିଏ କଅଣ ପଚାରିବ । ନିଜର ଦୁଃଖ, ନିଜର ମାନ୍‌କୁ ଜଗି ଦୂରେଇ ରହିବା ଭଲ ।

ସେ ଦିନ ରାଜବୋଉ ଖୁଡ଼ୀ ମତେ ସଙ୍ଗରେ ଯିବାକୁ ଡାକିଲା । ଆଲୋ, ସଞ୍ଜବେଳଟା, ଏକୁଟିଆ ଏଠିଠାରେ ଗଛମୂଳରେ ବସିବୁ କାହିଁକି, ଆସୁନୁ ପାଣି ମନ୍ଦାଏ ପିଇ ଗୋଡ଼େ ଗୋଡ଼େ ଫେରିଆସିବା ।

କହିଲି, ନାଇଁ, ତେମେ ଯା, ମୁଁ ଏଇଠି ବସିଛି । ଜଲଦି ଫେରି ଆସିବ ।

ସେ କଟାଳ କରି କହିଲା, କାହିଁକି, ଆସୁନୁ, ତାଙ୍କ ଘରେ ଆଉ କେହି ନାହାନ୍ତି ବା ।

କହିଲି, ହାଟକୁ ଯିଏ ପରିବା ବିକିବାକୁ ଯାଏ, ତାକୁ ଲାଜ ମାଡ଼େ ନାହିଁ ଖୁଡ଼ି, ଗଲେ ଡେରିହେବ ବୋଲି ମନା କରୁଥିଲି ।

ଚାଲିନୁ— ।

ତା ସଙ୍ଗରେ ଗଲି । ଯେଉଁ ଘର ପିଣ୍ଡାରେ ବସିଲି, ସେ ଘରେ କେହି ମଣିଷ ଥିଲା ପରି ଲାଗୁ ନ ଥାଏ । ଦିଓଟି ବଖରା ନୂଆଣିଆଁ ଚାଳ । ଆଗରେ ଗୋଟିଏ ନଅରକୋଳି ଗଛ । ସେ ପାଖକୁ ବାଲାଭି ସିଜୁ ବାଡ଼ । ବାଡ଼ କଡ଼ରେ ଖତକୁଢ଼ । ରାଜବୋଉ କବାଟରେ ହାତ ମାରି ଡାକିଲା, ଛବି, ଛବି ?

କେତେବେଳେକେ ଜବାବ ଆସିଲା ଭିତରୁ, ଯାଉଛି । ପିଲାଳିଆ କଅଁଳ ସ୍ୱରଟି !

କାହାର ସ୍ୱର, ମୁଁ ବା ଜାଣନ୍ତି କେମିତି ? ପଚାରିଲି, ଛବି କିଏ ଖୁଡ଼ି !

ଉତ୍ତର ଦେଲା, ଭଲ ଝିଅଟିଏ ମଁ, ଦେଖିବୁ ରହ ।

କବାଟ ଖୋଲି ବାର ତେର ବର୍ଷର ଝିଅଟିଏ ପଦାକୁ ଆସିଲା । ସଞ୍ଜ ଆଗର ଫିକା ଆଲୁଅରେ ଫୁଟିଲା କଇଁଫୁଲ ପରି ତା ମୁହଁଟି କେଡ଼େ ତୋରା କେଡ଼େ ହସହସ ଦିଶୁଥାଏ । ଗୋଲ ମୁହଁରେ ଖଣ୍ଡାଧାର ପରି ନାକ । ପୂରିଲା ପୂରିଲା ଗାଲ ଉପରକୁ କେରା କେରା ହୋଇ ଅଲରା ବାଳ ଲୋଟିପଡ଼ୁଥାଏ । ସରୁ ସରୁ ଭ୍ରୂଲତା ତଳେ କଳା ମିଚିମିଚି ଆଖି ଡୋଳା ଦିଓଟି କେଡ଼େ ଧୀରେ ଧୀରେ ବୁଲି ଆସୁଥାଏ । ସତରେ ତ ଛବିଟିଏ ! ଗୋବର ବଲବଲ ଡାହାଣ ହାତଟି କଡ଼େଇ ଧରି ବେକ ବଙ୍କା କରି ଛବି କହିଲା, ଏ ପାଳି କାହିଁକି ଏତେ ଡେରିରେ ହାଟରୁ ଫେରିଲ ମାଉସି ?

ରାଜବୋଉ କହିଲା, ଟିକିଏ ଡେରି ହୋଇଗଲା । ତେଣେ ଗାଡ଼ି ଯାଇଥାନ୍ତା, ଶୋଷରେ ହଂସା ଉଡ଼ିଗଲା । କହିଲି, ଯାଏଁ ମନାଏ ପାଣି ପିଇ ଆସେଁ । ଘରେ କଅଣ ଆଉ କେହି ନାହାନ୍ତି କି ?

ଛବିର ମୁହଁ ଶୁଖିଗଲା । କହିଲା, ଆଉ କିଏ ରହନ୍ତା ? ଲେଖାରେ ମାଇଁ ହେବେ ସେ, ଯିଏ ଆମ ଘରେ ଥିଲେ, ମନେ ନାହିଁ ? ଆରି ପାଳି ହାଟଦିନ ଯିଏ ତମକୁ ଗାଳି ଦେଉଥିଲେ, ଦି ଦିନ ହେଲା ସେ ତାଙ୍କ ବାପ ଘରକୁ ଚାଲିଗଲେ । ଭାଇଙ୍କ ସଙ୍ଗେ ଅଳପ କଥାରେ ଝଗଡ଼ାଝଗଡ଼ି କଳିଆ କରି ଚାଲିଯାଇଛନ୍ତି ।

ପଚାରି ଦେଲି, କଳିଆ କାହିଁକି କଲେ ?

ଛବି ଉତ୍ତର ଦେବା ଆଗରୁ ମୋ ମୁହଁକୁ ଚାହିଁ କହିଲା, କେଜାଣି, ମୁଁ ଜାଣେ ନାହିଁ । ଭାଇ କହୁଥିଲେ ସେ ଆଉ ଆମ ଘରକୁ ଆସିବେ ନାହିଁ ।

ରାଜବୋଉ ପଚାରିଲା, ଆଉ ତୋ ଭାଇ କାହିଁ ?

ଛବି କହିଲା, ସେ ତାଙ୍କ ପୁରୁଣା କାମ ଛାଡ଼ି ବରୁଣେଇଁ ଗାଁର କାହା ଘରେ ନୂଆ ଚାକିରି କରୁଛନ୍ତି । ଫେରୁ ଫେରୁ ସବୁ ଦିନେ ଦି ଘଡ଼ି ରାତି ହେଉଛି ।

ପଚାରିଲି, ତେମେ କ'ଣ ଏକୁଟିଆ ଘରେ ରହୁଛ, ଡର ମାଡ଼ୁ ନାହିଁ ?

କହିଲା, ଡର ମାଡ଼ିଲେ ଆଉ କଅଣ କରିବ ? ଘରର କାମ କରୁକରୁ ବେଳ କଟି ଯାଏ । କାମରେ ମନ ଲଗାଇ ଦେଲେ ଆଉ ଡର ଲାଗେ ନାହିଁ ।

ରାଜବୋଉ ଆଡ଼କୁ ଚାହିଁ କହିଲା, ପାଣି ପିଇବ ପରା, ମୋ ହାତ ଅସନା ହୋଇଛି, ତେମେ ଆସ କୂଅରୁ କାଢ଼ି ପିଇଯିବ ।

ରାଜବୋଉ ଖଞ୍ଜା ଭିତରକୁ ଗଲା । ମୁଁ ପିଣ୍ଡାରେ ବସିରହିଲି । ଛବି ମୋ ଆଡ଼କୁ ବାରମ୍ବାର ଚାହିଁ ପଚାରିଲା, ତେମେ ପାଣି ପିଇବ ନାହିଁ, ତମକୁ ଶୋଷ କରୁ ନାହିଁ ?

ନା ।

ତେମେ ତାଙ୍କର କଅଣ ହୁଅ କି ?

ସେମିତି କିଛି ନୁହେଁ, ଗାଁ ଲେଖାରେ ଝିଅଟା ।

ତେମେ ବି ହାଟକୁ ପଢ଼ିବା ବିକି ଯାଅ ?

ହଁ ।

ତୁମକୁ ତ ତାଙ୍କ ସଙ୍ଗେ କେବେ ଦେଖି ନାହିଁ ?

ମୁଁ ଇଆଡ଼େ ଆସେ ନାହିଁ ।

ସେ ହସିଲା । ତାର ସୁନ୍ଦର ମୁହଁକୁ ହସଟି କେଡ଼େ ମାନେ । ତାକୁ ଦେଖି ମନଟା କପଟ ହାଲୁକା ହୋଇଗଲା । ଅଜଣା ଅଶୁଣା ଲୋକଙ୍କ ସଙ୍ଗେ କେତେ

କାଲର ଚନ୍ଥା ପରିଚୟ ପର ସେ ମନ ଖୋଲି କଥା ଆରମ୍ଭ କରୁଚ୍ଛି । କେତେ ମିଠା କଥା ! ମନଟା ତା'ର ଅଡ଼କୁ ଟାଣି ହୋଇଗଲା ।

କହିଲି, ଛବି ଦେଇ, ଶୋଷ ନ କରୁଥିଲେ ବି ତୁମକୁ ଥରେ ଦେଖିଗଲେ ଆଉ ଥରକୁ ବଳେ ଶୋଷକରିବ ।

କାହିଁକି ?

ତମକୁ ଦେଖିବାକୁ ।

ମୋ କଥାର ମର୍ମ ସେ ଠିକ୍ ବୁଝି ପାରିଲା ନାହିଁ । କ'ଣ ପଗୃରିଲା ପଗୃରିଲା ପରି ମୋ ମୁହଁକୁ ଗୃହିଁଲା ।

ତମର ବାପା ମା କେହି ନାହାନ୍ତି ?

ଆଖି ଛଳଛଳ କରି କହିଲା, ବାପା ଅଛି ପିଲାଦିନେ କେବେ ମରିଥିଲେ ହେତୁ ନାହିଁ । ଆଉ ବରଷ ଏଇଦିନେ ମାଆକୁ ବାତ ମାରିଲା । ଦୁଇଦିନ କାଳ ବେହୋସ ହୋଇ ପଡ଼ିଲା । ଭାଇ ଆଉ ମୁଁ ଦୁହେଁ ତାକୁ ଜଗି ବସିଥାଉ । ସନ୍ଧ ଅଧରେ ତାର ପ୍ରାଣ ଗଲା । ସେଇଦିନୁ ମୁଁ ଘରେ ଏକୁଟିଆ ରହେ । ଭାଇ କାମକୁ ଯାଏ । ଦି'ବେଳା ଦି'ମୁଠି ତାଙ୍କୁ ରାନ୍ଧି ନ ଦେଲେ ଦିହମିହନ୍ତ କରି କାମରୁ ଆସି ସେ କଅଣ ଖାଇବେ ।

କଥାର ସୁଅ ବଦଳାଇ କହିଲି, ସଞ୍ଜ ହେଲାଣି, କେତେ କାମ ପଡ଼ିଛି, ଭାଇ ତେଣୁ ଭୋକରେ ହାଲିଆ ହୋଇ ଆସୁଥିବେ । ଆସୁନା ଭିତରକୁ, କିଏ ଅଛି କି ? ଗାଁ ଲୋକଙ୍କ ସଙ୍ଗେ ଭାଇର ଝଗଡ଼ା ଯେ ଆମ ଘରକୁ କେହି କେବେ ଆସନ୍ତି ନାହିଁ । ମୋତେ ବି କାହାର ଘରକୁ ଯିବାକୁ ସେ ମନା କରିଛନ୍ତି ।

ଗଛ ବୋଉ ପାଣି ସରସର ମୁହଁ କରି ଆସିଲି, ଓହୋ, ତୁଣ୍ଡରେ ପାଣି ପଶିଲା ନାହିଁ ଯେ ପିଣ୍ଡରେ ପ୍ରାଣ ପଶିଲା । ଗୃଲ ଲୋ ତୁଳସି ଏଥର, ଅନ୍ଧାର ଘୋଟିଆସିବ ।

ମୁଁ ଉଠି ଠିଆହେଲି । ଟୋକେଇ ଦୋ'ଟି ମୁଣ୍ଡରେ ଥୋଇ କହିଲି, ଯାଉଛି ଲୋ ଉଉଣି, ଆଉ ହାଟ ପାଳିକି ଆସିଲେ ପୁଣି ଦେଖା ହେବ । ମୁଁ ଏକା ଖାଲି କଅଁା ପାଣି ପିଇବ ନାହିଁ ।

ସେ ହସିଲା । କହିଲା, ନୋହିଲେ ସିଝାପାଣି ଦେବ ।

ହଉ, ହଉ କହି ଆମେ ଦହେଁ ଗାଁମୁହାଁ ହୋଇ ଗୃଲିଲୁ ।

୨

ଗହ୍ୱାର ମଝିରେ ଚଲାବାଟ, ଦେଢ଼କୋଶ । ଗହ୍ୱାର ସେପାରି ଆମ ଗାଁ । ଅନ୍ଧାର ମାଡ଼ ମାଡ଼ ଆସୁଥିଲେ ବି ଶନ୍ତା ବାଟରେ ଆପେ ଆପେ ଗୋଡ଼ ପଡ଼ୁଥାଏ । ବେଳେ ବେଳେ ହୁଡ଼ି ଉପରୁ ଗୋଡ଼ ବାଲି ଉପରକୁ ଖସି ପଡ଼ୁଥାଏ । କେଉଁଠି ଭଙ୍ଗା ଗେଣ୍ଡା, କେଉଁଠି ବା କୋଇଲଖିଆ କଣ୍ଟା । ହେଲେ, ନଈ ମୂଳଅର ଠାଣ ଗୋଡ଼ରେ ବାଜି ସେ ଆପେ ଆପେ ଭାଙ୍ଗି ଯାଆନ୍ତି । ସେଆଡ଼କୁ ବା ମନ କାହିଁ ? ଘରେ କେମିତି ପହଞ୍ଚିବୁ ଆମର ସେହି ଚିନ୍ତା ।

କଣ୍ଟାଦୂର ତୁନି ହୋଇ ଚାଲିଆସିଲା ପରେ ନୀରବତା ଭାଙ୍ଗିବାକୁ କହିଲି, ଛବିଟି ଭଲ ପିଲାଟିଏ । ପଦେ କଥାରେ ପରକୁ ଆପଣାର କରିନଏ । ଠାକୁରେ ତାକୁ ଯେଉଁ ରୂପ ଦେଇଛନ୍ତି ଦେଖିଲେ ପେଟ ପୂରିଉଠେ । ମନରେ ଯେତେ ଦୁଃଖ ଥିଲେ ବି ତା ଆଖିକୁ ଥରେ ଚାହିଁଲେ ସବୁ ଭୁଲିଯାଏ ।

ଖୁଡ଼ୀ କହିଲା, ହଁ । ଅଲୋ, ଦୁନିଆଁରେ କଅଣ ସୁନ୍ଦର ଝିଅ ନାହାନ୍ତି, ତହୁଁ ବଳି ତହୁଁ ବଳି ଅଛନ୍ତି । ରୂପ ସାଙ୍ଗକୁ ଢଙ୍ଗଢାଙ୍ଗ ଯାହାର ସୁନ୍ଦର, ତାକୁ ସମସ୍ତେ ସୁଖ ପାଆନ୍ତି । ଅତି ସୁନ୍ଦର ହୋଇ ଯା ମୁହଁଟା ଖର, ଯାହା ପ୍ରକୃତିଟା ମନ୍ଦ, ତା' ଆଡ଼କୁ ଅନାଇବାକୁ ମନ ହୁଏ ନାହିଁ । ଛବିଟିର ଏମିତି ସ୍ୱଭାବ, ଥରେ ଦେଖିଲା ଲୋକ ତାକୁ କେବେହେଲେ ଭୁଲିପାରିବ ନାହିଁ ।

ମୁଣ୍ଡରେ କେତେ ଚିନ୍ତା ଖେଳିଗଲା । ତା'ରି ବୟସରେ ମତେ ବି ଲୋକେ ଏମିତି ପ୍ରଶଂସା କରୁଥିଲେ । ଥରେ ଦେଖିଲା ଲୋକ ଆଉଥରେ ଦେଖିବାକୁ ଧାଇଁ ଆସୁଥିଲେ । ଯେବେ ଯାହା ଘରକୁ ବୋଉ ସଙ୍ଗେ ଯାଏଁ, ମାଇପେ ମୋତେ କେଡ଼େ ଆଦର କରି ପାଖରେ ବସାନ୍ତି । ଯେତେବେଳେ ବୋଉ ପରଘରେ ଧାନ କୁଟୁଥାଏ, କି ବାସନ ମାଜୁଥାଏ, ମୁଁ ବସିଥାଏ କେଉଁ ଘରଣୀଙ୍କ ପାଖରେ । ଆଦର କରି ମୋତେ ସେ ଏଣୁ ତେଣୁ କେତେ କଥା ପଚାରନ୍ତି, ପାନ ଭାଙ୍ଗି ଦିଅନ୍ତି । ଦିନକଅ ପାନ ଖିଅରେ ଓଠ ଦି ଫାଳ ନାଲି କଇଁର ପାଖୁଡ଼ା ପରି ସେମାନଙ୍କ ଅଧିକ ସୁନ୍ଦର ଦିଶେ । ସେମାନେ ସେଇକଥା କହନ୍ତି । ପିଲାଦିନୁ, ହେତୁ ପାଇଲା ଦିନୁ, ମୁଁ ଏଇକଥା ଶୁଣିଛି, ପରଙ୍କ ପାଖରୁ ଆଦର ପାଇଛି । ସପନ ପରି ଆଜି ଲାଗୁଛି ସିନା, ଅଙ୍ଗେ ନିଭେଇବା କଥା, ସପନ ନୁହେଁ ।

ଗାଁ ଦାଣ୍ଡରେ ଅତି ପାଞ୍ଚଟା ପିଲାଙ୍କ ସାଙ୍ଗେ ଖେଳିବା ବେଳେ, ଦେଖିଛି ଚାଲିଯାଉଥିବା ଅଚିହ୍ନା ଲୋକେ ଆମର ଖେଳକୁ ଘଡ଼ିଏ ଅନାନ୍ତି । ନ ଜାଣିଲା ଲୋକେ ଆଦର କରି ପାଖକୁ ଡାକନ୍ତି । ମୁଁ ଯାଏଁ । ଦେହରୁ ଧୂଳି ଝାଡ଼ି ଦେଇ

ମୋତେ ଦେଖିବାରେ ଗୁପିଧରନ୍ତି, ଟେଲ କରନ୍ତି । କିଏ କହେ, କେଡ଼େ ସୁନ୍ଦର ପିଲାଟିଏ କାହାର, ନତୁଣୀ ପରି କଅଁଳିଆ ଦେହ ।

ମତେ ଖୁସି ଲାଗେ ।

ଗେଲେଇ ଗେଲେଇ କିଏ ପଚାରେ, ତୋ ନା କଅଣ ମା ?

ଛନଥର ପଚାରିଲା ପରେ ଧୀରେ ଧୀରେ କହେ, ତୁଳସୀ ।

କହନ୍ତି ବାଃ, ଭଲ ନାଁଟିଏ । ଅଚ୍ଛା, ତୋ ବାପା ନା କ'ଣ ?

ପାଟିରୁ କଥା ବାହାରେ ନାହିଁ । ବାପ ! ଏମିତି ଗୋଟାଏ ଡାକ ମୁଁ ଆଉ ପିଲାଙ୍କ ଭୁଣ୍ଡରୁ ସବୁଦିନେ କେତେଥର ଶୁଣେ । ସେଇ ପଦେ କଥା ଭୁଣ୍ଡରେ ଧରି ପିଲାଏ କେଡ଼େ ଖୁସି ହୁଅନ୍ତି । ତାଳି ମାରି ଗାଁ ଦାଣ୍ଡରେ ନାଚନାଚ କିଏ କହେ, ବାପା ଯାଇଛି କଟକ, ମୋ ପାଇଁ ମିଠାଇ ଆଣିବ । କିଏ କହେ, ବାପା ଆସିବ କଲିକତାରୁ ମୋ ପାଇଁ ଜାମା ଆଣିବ । କିଏ କହେ, ବାପା ଯାଇଥିଲା ହାଟକୁ, ମୋ ପାଇଁ କେଡ଼େ ସୁନ୍ଦର କଣ୍ଢେଇ ଆଣିଚି ।

ସେମିତି, ମୁଁ ବି ପିଲାଙ୍କ ସଙ୍ଗେ ନାଚ ନାଚ କହୁଥିଲି, ବାପା ମୋର କଟକ ଯାଇଚି, ମିଠେଇ ଆଣିବ । ହେଉ ହେଲା ଦିନୁ ଜାଣିଲି, ମୋର ବାପା ନାହିଁ । କଟକ ଯିବ ନାହିଁ କି ମିଠେଇ ଆଣିବ ନାହିଁ । ଦୁଃଖ ହୁଏ । ବାପା କଥା କିଏ ପଚାରିଲେ ମୁଁ ତୁନି ରହେ ।

ପରି ମଣିଷର କୋଳକୁ ଅଜାଣି ମନ ମାରି ସନ୍ଦେହ ଆଖିରେ ମୁହଁ ବଙ୍କାଇ ଭୟରେ ଚାହେଁ । ଅଣ୍ଟା ଚାରିପାଖେ ବୁଲିଯାଇ ଥାଏ ଯାହାର ହାତ, ଆଦର କରି ସେ ପୁଣି ପଚାରନ୍ତି, ତୋ ବାପା ନା କଅଣ ତୁଳସି ?

ଅଣ୍ଟା ପାଖରୁ ଝୁଙ୍କି ପଡ଼େ ମୋର ଦେହଟା ପଛ ଆଡ଼କୁ । ଆଖିରେ ଭରିଯାଏ ଲୁହ । ବଲବଲ କରି ଚାରିପାଖକୁ ଚାହେଁ ।

ସାଙ୍ଗ ପିଲାଏ ଚାରିପାଖେ ଘେରି ଡବଡବ କରି ଚାହୁଁଛନ୍ତି । ଟିମା ଆଖି ମିଟିକା ମାରୁଛି । ଭିମା ବଧା ଉଁଉଛି, ଆଉ ଜିଭ କାଢ଼ି ଖତେଇ ହେଉଛି । ପେଚୀ ସୋବୀ କାନରେ କଣ କହି ମୋର ଆଡ଼କୁ ଚାହିଁ ଚାହିଁ ହସୁଛି, ଆଉ ଟସୋବୀ ମୁଣ୍ଡ ଠୁଙ୍ଗାରୁଛି । କ'ଣ କହିବ ? ବାପା ନ ଥିବା ଗୋଟିଏ ଦୋଷ, ଗୋଟାଏ ପାପ !

କହେ ରହି ରହି, ମୋର ବାପା ନାହିଁ ।

ତାଙ୍କ ମୁହଁରେ ବିସ୍ମୟ ଫୁଟେ ।

ପିଲାଏ ତାଳିମାରି ଘେରି ଆସନ୍ତି । କିଏ କହେ, ସେପରା ତୁଳସୀ ମା ଝିଅ । ସେଇ ଯୋଉ ତୁଳସୀ ମା, ଆମ ଘରେ ବାସନ ମାଜେ, ମୁଣ୍ଡରେ ଭୁରୁ ଭୁରୁ ଉକୁଣି ।

ଆଉ କିଏ କହେ, ତୁଳସୀମା' ଟି, ଯେ ଆମର ଗୁହାଳ ପୋଛେ ! ତା ଗୋଡ଼ରେ ମାଛିଖିଆ । ଟିପେଇ ଟିପେଇ ଚାଲେ । ସିଏ ଆମ ଘର ଲିପେ ମଁ, ତା ଘର ହେ-ଇ-ଟି, ମେଣ୍ଢା କୁଡ଼ିଆ ।

ସିଏ ଆମ ଧାନ କୁଟେ ବା, ଦେଖିନା, ଛିଣ୍ଡାକନା ଫରଫର ଉଡ଼ୁଥାଏ !

ମତେ କୋଳକୁ ଆଉଜାଇ ଥିବା ଲୋକ ତରଙ୍ଗ ତରଙ୍ଗ ହୋଇ ଚାଳ ଆଡ଼କୁ ଚାହିଁ ଧୀରେ ଧୀରେ ହାତ ବୁଲାଇ ଉଠନ୍ତି । ଭୟରେ ଲାଜରେ ମୁଁ ଦୂରକୁ ଘୁଞ୍ଚିଆସେଁ । ମୁଁ ତୁଳସୀ ମା ଝିଅ—!

କାଲି ମୋ ପିଲାଟିକୁ ସେମିତି ଗାଁ ପିଲାଏ ଚଲାଇ କହିବେ, ମନୁଆଁ ଟା. ମନୁଆଁ ବୋଉ ପୁଅ, ମନୁଆଁ ବୋଉ, ସିଏ—ମନୁଆଁ, ଯାହାର ବାପ ନାହିଁ—।

ମୋର ପରି ସେ ଦିନେ ଅଡେ଼ଇ ଠିଆ ହେବ । ଗାଁ ପିଲାଙ୍କ ବାଧା ଗୋଇଠା ଚମୁଟା ଖାଇ କାନ୍ଦି କାନ୍ଦି ମୋ'ର ଆଗରେ ଗୁହାରି କରିବ ! କଣ କରିବି, କାହାକୁ କହିବି । ସମସ୍ତେ ତ ମୋର ଖାଉନ୍ଦ ପୁଅ । ଆଜି ଦେହ କାଠ ନ କରି ମୁହଁ ଛୁଡ଼ି ପଦେ କହିଦେଲେ କାଲିକି ସେଇ ପିଲାଟା ତୁଣ୍ଡରେ ଆହାର ଦେବ କେଉଁଠୁ ଆଣି ? ଓଲଟି, ମା ଯେମିତି ମତେ ମାରେ, କହେ, ବାବୁଘର ପିଲା, ଗେଲରେ ଟିକେ ହାତ ବୁଲାଇ ଦେଲେ ତ ସେଥିରେ କ'ଣ ତୋ ଜୀବ ଛାଡ଼ିଯାଉଛି ? ସେମିତି, ମୁଁ ମୋର ମନୁଆଁକୁ କହିବି । ଆହୁରି କହିବି, ଯା, ତାଙ୍କ ଗୋଡ଼ତଳେ ପଡ଼ ।

ହଁ, ତାଙ୍କର ଦୁଆରେ ମୂଲ ଲାଗି ସେ ପେଟ ପୋଷିବ ।

କଥା ବୁଲିଆସେ କୁମ୍ଭାର ଚକର ଚକ୍ର ପରି । ମନୁଆଁର ବାପ ନାହିଁ । ମୋର ବି ବାପ ନ ଥିଲା । ମନୁଆଁ ମୋର ପୁଅ; କିନ୍ତୁ ମୁଁ ତ ପୁଅ ନ ଥିଲି । ଏତିକି ଯାହା ପ୍ରଭେଦ । ମନୁଆଁ ଦିହମିହନ୍ତ କରି ପେଟ ପୋଷିବ, ଠାକୁରେ ଯଦି ବୁଦ୍ଧି ଦେଇଥିବେ, ଘର କରିବ । ପରିଆ କେମିତି ଘର କଲା । ଉଚ୍ଚ ପିଣ୍ଡା, ଦାଣ୍ଡ ଆଗରେ ଚାହାଳୀ । ଶମ୍ଭୁଆ ଜମି ପାଉଁମାଣ କଲାଣି । ବେକରେ ଏବେ ପାଟଲି ଗାମୁଛା । ମନୁଆଁ ମୋର ସେମିତି ହେବ, ମଣିଷ ହୋଇ ବାଟେ ଚାଲିବ । ଏଇ ଭାବନାରେ ହନ୍ତସନ୍ତ ମନ ମୋର ପୁଲକି ଉଠିଲା ।

ବିଲ ପରେ ବିଲ ଡେଇଁ କଣ୍ଟା ଝଣ୍ଟା ଆବୁଡ଼ା ଖାବୁଡ଼ା ନ ମାନି ଗୋଡ଼ ଚାଲିଛି । ଆଖି ଅଛି ଗହୀର ସେପାରି ପତଳା ଅନ୍ଧାର ଭିତରେ ନିଘଞ୍ଚ ଅନ୍ଧାରର ଗୋଟିଏ ଅତି ଅସ୍ପଷ୍ଟ ବାଡ଼ ଉପରେ । ସେଇ ଆମ ଗାଁର ଚିହ୍ନ, ଟୋଟାର ଛାଇ ।

ଗହୀର ମଝିରେ ଆପେ ଆପେ ଗୋଡ଼ ପଡ଼ୁଛି ଆମର ନିତିଦିନିଆ ଅଭ୍ୟାସରୁ । ଏଇଠି ମୋଡ଼, ଏଇଠି ଗଡ଼ାଣି, ଡାହାଣହାତ କିଆବୁଦା ମୂଳେ ହୁଙ୍କା । ସେଦିନ ଏହାରି ମୂଳେ ଏଡ଼େ ବଡ଼ ବଳଦକୁ କାଟି ଛୁଇଁ ଥିଲା । ନିଶ୍ୱାସ

ବନ୍ଦ ହୋଇଯାଏ । ହେଇ, ଯେମିତ ଗୋଡ଼ରେ ଗୁଡ଼େଇ ହୋଇଗଲା, ହେଇ ଟ୍ରେଷ୍ଟ ମାରିଲା ପରି, ଗୁଳି ଦାଉଁ ଦାଉଁ ହୁଏ । ଗୋଡ଼ ଅବାଟରେ ପଡ଼େ ।

ଆଗକୁ ଚାଲେ । ପଛରେ ଥାଏ ରାଜବୋଉ ।

ବଳ ମଝିରେ ସେ ଯେଉଁ ଅତଡ଼ାଖିଆ ଶୁଖିଲା ବାଲି ପୋଖରୀ, ତାର କଡ଼ରେ ଗୋଟି ଗୋଟିକା ତାଳଗଛ । ଅନ୍ଧାର ଭିତରେ ଅନ୍ଧାରିଆ ଡେଙ୍ଗା ମୁଣ୍ଡ ଟେକି ଅତି ଭୟଙ୍କାରିଆ ଦିଶୁଛି । ସେ ପାଖରେ ବେତବଣ, ଶିମିଳିଗଛ, ଗୋଠଛଡ଼ା ଗୋଟିକିଆ ଓସ୍ତଗଛ, ଡାଳପତ୍ର ଦିଶୁ ନାହିଁ । ଖାଲି ଦିଶୁଛି ଜୁଳୁଜୁଳିଆ ପୋକ । ଆଖି ମିଟିମିଟି ଅନ୍ଧାର ଭିତରେ ନିଆଁ କଣାର ପାହାଡ଼ । ଝିଙ୍କାରି ଝିଁ ଝିଁ ଝିଁ । କାନ ଅତରା ପଡ଼ୁଛି ।

ଓସ୍ତ ଚହ୍ଲାର । ସଇତାନ ଅଛି । କେତେ ଲୋକ ଭେଟଣା ହୋଇ ମରିଛନ୍ତି । କେହି କେବେ କିଛି ଦେଖି ନାହାଁ, ଶୁଣିଛନ୍ତି, ଖାଲି ଶୁଣିଛନ୍ତି, ଦାନ୍ତ କଡ଼ମଡ଼ । ଠାଣ ମନ ଦବିଆସିଲା । ଏ ପାଖ ସେ ପାଖକୁ ଚାହିଁଲି, ରାସ୍ତା ଅନ୍ଧାର । ନଇଁ ଚାହିଁଲି କଡ଼କୁ । କଳା ବାଛୁରୀ ପରି କ'ଣ ଦିଶୁଛି ତ ଦୂରରେ । ଓ ! ଖରବୁଦାଠାଏ ।

ରାଜବୋଉ ଖୁଡ଼ୀର ହାତକୁ ଧରି କହିଲି, ଖୁଡ଼ୀ ଚାଲିପାରୁ ନା କି, ମୋ ହାତ ଧରି ଆସ ।

କହିଲା, ଚାଲ ଚାଲ, ଅଧେ ବାଟ ତ ଗଲାଣି, ହାତ ଛନ୍ଦା ହେବ । ବାଟ ହ ଖୋଜ ଚାଲିଗଲେ ସହଳ ପହଞ୍ଚିବା ଯେ ।

ତାର ହାତ ନ ଛାଡ଼ି କହିଲି, ତେମେ ଟିକ୍ ପଛେ, ତମର ପାଇଁ ଏତେ ଡେରି ହେଲା । ତେମେ ଯଦି—

ମନକୁ ବାଁରେଇ ଦେଲେ ମନରେ ଡର ପଶିବ ନାହିଁ । ସେଇଥିପାଇଁ ମୁଁ କଥା ଆରମ୍ଭ କରିଥିଲି ।

ମୋ କଥା ମୋ ଭୁଣ୍ଡରେ ଅଛି, ସେ ହାତ ଟାଣି ନେଇ କହିଲା, କାଲେ, ଖୋଲେଇ ହେଉଛୁ କାହିଁକି ? ହାଟରେ ଘଡ଼ିକରେ ତୋର କାମ ସରିଗଲା ବୋଲି କହୁଛୁ କି ? ତୋ ଗୁଣ କାହାକୁ ନ ଜଣା ଲୋ ? ବଳ ବୟସ ଅଛି, ଷଠି ଧିଅରେ ଟିକେ ହଳଦୀ ପାଣି ଛିଞ୍ଚି ଦେଇଛି ବୋଲି—

ଗୋଟାଏ ଅପ୍ରିୟ କଥା କହିବାକୁ ବସିଥିଲା । ଆଉ ଯାହା କହିବାକୁ ବସିଥିଲା ମୁଁ ଜାଣେଁ । କଳିଆ କରିବାକୁ ମୋତେ ଭଲ ଲାଗେ ନାହିଁ । ବିନା ଲାଭ ସ୍ୱାର୍ଥରେ ବା କଳିଆ କରନ୍ତି କାହିଁକି ? ରାତି ଅଧରେ, ନିଘୁଟିଆ ଗହ୍ୱାର ମଝିରେ, ଯେଉଁଠି ପଦେ କହିଲେ ସେ ପାଖ ପାହାଡ଼ିଆ ବାଲିକୁଦ ଅଡ଼ୁ ସେଇ ପଦ ଓଲଟି ଶୁଭୁଛି, ଗମ୍ଭୀର ଭିତରୁ ପାଟି ପରି । କଳିଆ କାହିଁକି କରନ୍ତି ?

ବୁଲ୍‌ପଡ଼ି ତା ଭୁଣ୍ଡରେ ହାତ ଦେଇ ନୈରାଶ୍ୟ ହୋଇ କହିଲା, ତେମେ ଶଢ଼ନା ଖୁଡ଼ୀ, ତମ ଗୋଡ଼ ଧରୁଛି । ହାଟରେ ଡେରି ହେବା କଥା ମୁଁ କହୁ ନାହିଁ । ହାଟରେ ତ ଡେରି ହୁଅନ୍ତା । ମୁଁ କହୁଛି, ଛବି ଘରେ ଟିକେ ଡେରି ହୋଇଗଲା । ତମରି ପାଇଁ ମୁଁ କହୁଥିଲି । ବୁଢ଼ୀ ମଣିଷ, ଅନ୍ଧାରରାତି, ଅଖାଡ଼ୁଆ ବାଟ । ଦିନଯାକ ଖଟିଛ, ପେଟରେ ଦାନା ପଡ଼ି ନାହିଁ ।

ତା ଭୁଣ୍ଡରୁ ହାତ ଖସାଇ ଆଣିଲା ।

କହିଲା, ଆଲୋ, ଚଢ଼ିବ କାହିଁକି, ଛବି ଘରେ କ'ଣ ଡେରି ହେଲା ମୋ ଲାଗି ? ତୁ ତ ମୁହଁକୁ ମୁହଁ ଯୋଡ଼ି ଗପ ଲଗେଇଲୁ । ପାଣି ପିଇବାକୁ କୂଅ ମୂଳକୁ ଗଲି । ଖଞ୍ଜା ଭିତରେ ସେ ଯେଉଁ କଳା ଲଙ୍କା ମରିଚ ଗଛ ଲଗାଇଛି, ବେକେ ଉଚ୍ଚ ହେବ । ଶିଙ୍ଗପରି ଲଦି ହୋଇଛି, ସେଇଆକୁ ଦେଖୁଥିଲି । ତୁ ଯଦି ଡାକଥାନ୍ତୁ ମୁଁ ଆସିଥାନ୍ତି । ତୁ ବସି ଗପିଲୁ, ଓଲଟି ମୋ ଦୋଷ ଦେଉଛୁ ।

ହସିଲା । କହିଲା, ନାଇଁ ଖୁଡ଼ି, ମୋ ଦୋଷ । ମୁଁ କ'ଣ ଆଉ ଜାଣିଥିଲି ତମେ ଲଙ୍କା ମରିଚ ·· ।

କଥା ଅଧା ରଖି ବୁଲାଇ କହିଲା, ଯାହା କହ, ଛବିଟି ଭଲ ପିଲାଟିଏ । ଯେମିତି ରୂପ, ସେମିତି ଢଙ୍ଗ, ସେମିତି କଥା ! ତାକୁ ଦେଖିଲେ, ତା ସଙ୍ଗେ ଦି ପଦ କଥା ନ କହି ଆସିବାକୁ କାହାରି ମନ ହେବ ନାହିଁ ।

ଟିକିଏ ଭାବି ସେ କହିଲା, ଭାରି ଭଲଟିଏ । ତାକୁ ଦେଖିଲେ ତୋର ପିଲାବେଳ ଚେହେରା ମନେ ପଡ଼େ । ତୁ ବି ଦିନେ ସେମିତି ଥିଲୁ । ରୂପରୁ କି ମିଳିବ ଲୋ ମା, ଗୁଣ ସୁନ୍ଦର ହେଲେ, ଭାଗ୍ୟ ସୁନ୍ଦର ହେଲେ ସବୁ ସୁନ୍ଦର । ବାପ ମା ସନ୍ତାନୀ କୁଟୁମ୍ବରେ କେଡ଼େ ଭଲରେ ମୁଁ ଘର କରୁଥିଲି । କପାଳ ଫାଟିଲାରୁ ସିନା ଆଜି ଏ ଦିନେ ଏ ଅବସ୍ଥା ହେଉଛି । ହେଇ ତ, ମୋ ପୁରୁଷ, ପୁରୁଷ ବୋହୂ, ନାତି ନାତୁଣୀ ସମସ୍ତେ ଅଛନ୍ତି । ମୁଠାଏ ଖାଇବାକୁ ଦେବାକୁ କି ତୋଡ଼ ?

କ୍ଷଣକୋପୀ । ରାଜବୋଉ ସଙ୍ଗେ କଥା କହିବାକୁ ଡରମାଡ଼େ । ବେଳେବେଳେ ସେ କେଉଁ ଖିଆଲରେ ଥାଏ, ସେ ନିଜେ ବି ଜାଣେ ନାହିଁ । ଭଲକଥାରେ କେତେବେଳେ ସେ ହାକୁ କରି ଜଳିଉଠେ, ଆଉ କେତେବେଳେ ଯେତେ ଯାହା କହିଲେ ଦେହକୁ ନିଏ ନାହିଁ । ଘରେ ତାକୁ କେହି ଭଲ ପାଆନ୍ତି ନାହିଁ । ସେଥିପାଇଁ କେତେ କଜିଆ, କେତେ ହୁମ୍‌ଦୁମ୍ । ବୁଢ଼ୀଦିନେ ମଧ୍ୟ ତାକୁ ପରିଶ୍ରମ କରି ନିଜର ଖାଇବା ମୁଠାକ ଭେଇବାକୁ ପଡ଼େ । ଦେହ ପା ଖରାପ ହେଲେ ଦିନେ ଓଳିଏ କାମ ନ କଲେ କୁଟୁମ୍ବ ଲୋକଙ୍କ ଯେଉଁ ତୋଡ଼, ଯେଉଁ ନାକଛୁଅଁଡ଼ା କଥା, ଶୁଣିଲେ ପର ଲୋକ ବି ଗ୍ଲାନିଆଁ ହେବ । ସବୁ ସହି ବୁଢ଼ୀ ତାର ନାବ ଚଳେଇଛି ତ, ଦିନ କଟିଯାଉଛି ।

ଓସ୍ତ ଗମ୍ଭୀର ପାରି ହୋଇ ଆସିଲୁଁ । ଘର ରହିଲା ଡାକେ ବାଟ । ଡର ଭୟ କିଛି ନାହିଁ । ସଙ୍ଗବୋଉ ସଙ୍ଗେ ଅଜ ଗପ କରି ବେଳ କାଟିବା ଦରକାର ନାହିଁ । ଅନ୍ଧାର ସଞ୍ଜରେ ବାଟ ଚାଲିଲା ବେଳେ ଗୋଟିଏ ଚିନ୍ତାର ଖିଅ ଧରି ଚାଲିଲେ ବାଟ ଜଣାପଡ଼େ ନାହିଁ, ଡର ବି ମନରେ ପଶେ ନାହିଁ ।

ଛବିର ରୂପଟି ମୋ ମନକୁ ଆସିଲା । ତାଆରି ପଛରେ ଭାବନାର ଜାଲ ଖେଳାଇ ଦେଉଁଣୁ ସେଇ ଜାଲରେ ନିଜେ ଘେରି ହୋଇପଡ଼ିଲି । ତାଆରି ବୟସରେ ମୁଁ କୁଆଡ଼େ ଠିକ୍ ସେମିତି ଥିଲି । ଭୁଲ କଥା । ବାପ ମା ନ ଥିଲେ ସୁଦ୍ଧା ଛବିର ମୁରବି ଅଛି । ଭାଇ ! ଯିଏ ତା ପାଇଁ ଖଟନ୍ତି, ଯାହା ପାଇଁ ଦିନରାତି ସେ ଭାବେ । ଯାହାର ଅସୁବିଧା ହେବ ନାହିଁ ବୋଲି ଲୋଟଣୀପାରାଟି ପରି କାମରେ ସେ ଲୋଟି ଯାଉଥାଏ । ପେଟ ପାଇଁ ଅନ୍ୟ କାହାରି ହାତକୁ ସେ ଚାହିଁ ରହେ ନାହିଁ, ଚାହିଁ ରହେ ତାର ଭାଇର ମୁହଁକୁ । ଭାଇ ! ପଦଟି ମୁହଁରେ ଆସିଲେ ଆନନ୍ଦରେ ମୁହଁ ଉଜ୍ଜଳି ଉଠେ, ଗର୍ବରେ ଛାତି ଫୁଲି ଉଠେ । ଭାଇ ପଦଟି ଲାଗି ରହିଥାଏ ତା ଜିଭରେ ।

ମୋର ଥିଲା କିଏ ? ମା, ନିଜର ପେଟ ପୋଷିବାର ଶକ୍ତି ତାହାର ଦିନୁଦିନ କମି ଆସୁଥାଏ । ମୋ ସାଙ୍ଗ ପିଲାଙ୍କର ଯେତେବେଳେ ଗାଁ ଦାଣ୍ଡରେ ଧୂଳିଖେଳର ଆଗ୍ରହ ଭାଙ୍ଗି ନ ଥାଏ, ମୋତେ ସେତେବେଳେ ନିଜର ପେଟ-ପାଟଣାର ଚିନ୍ତା କରିବାକୁ ପଡ଼ିଲା । ମା ସଙ୍ଗେ ଛାଇ ପରି ଲାଗି ରହିଥାଏ । କାହା ଘରେ କିଏ ବୋଲିହାକ ବତାଇଲେ ବିନା ଆପତ୍ତିରେ କରିଦିଏଁ । ଖୁସି ପାଇ କିଏ ମତେ ଚୁଡ଼ାଭଜା ମୁଠିଏ ଦିଅନ୍ତି, କେହି ବା ଅଇଁଠା କଂସାରେ ପଖାଳ ମୁଠାଏ ବାଢ଼ି ଦିଅନ୍ତି । କେଡ଼େ ଆନନ୍ଦରେ ସେତକ ମୁଁ ପାଇଦିଏ । କୃତଜ୍ଞତାରେ ମନ ନଇଁଯାଏ ।

ଆଉ ଟିକେ ବଡ଼ ହୋଇଗଲି । ମା' ସଙ୍ଗେ ମିଶି ବଡ଼ ବଡ଼ ପାଇଟି କରିବାକୁ ସାହସ ହେଲା । ପର ଘରର ଝିଅ ବୋହୂଙ୍କ ତୁଣ୍ଡରୁ କଥା ବାହାରିଲେ ଯେତେ ବଡ଼ କାମ ହେଉ, କି ଯେପରି ଅସାଧ ଅସନା ପାଇଟି ହେଉ, କରିବାକୁ ମୁଁ ପଛାଏ ନାହିଁ । ସେମାନେ ମତେ ସ୍ନେହ କରନ୍ତି । ଭଲକରି ମୁଠିଏ ଖାଇବାକୁ ଦିଅନ୍ତି । ଦେହକୁ ଅନାଇ ପୁରୁଣା ଲୁଗାପଟା ଖଣ୍ଡେ ବି ପକାଇ ଦିଅନ୍ତି ।

ବୟସ ହେଲା । ଗାଁ ଦାଣ୍ଡରେ ଆସିଲେ ମୁଣ୍ଡ ଉପରକୁ ଓଢ଼ଣା ଟାଣି ମାଆର ପଛେ ପଛେ ଯାଏଁ । କେବେ କେବେ ଏକୁଟିଆ ଆସେ, ଏକୁଟିଆ ଫେରେ । ଦାଣ୍ଡରେ ବସିଛନ୍ତି ଗାଁ ଭେଣ୍ଡିଆ । ମଝିରେ ଚାଲିଯିବାକୁ ସାହସ ହୁଏ ନାହିଁ । ଗୋଡ଼ ଥରିଉଠେ ।

ଟିମା ଡାକେ, ହେ ତୁଲସି, ଶୁଣ ମ, ଶୁଣ—

ମୁହଁଦେଇ ଦେହକୁ ଲୁଗା ଟାଣି ସାମାନ୍ୟ ହସିଦିଏ, ଆଉ ଚାଲିଯାଏ ଆଗକୁ ।

ଭୀମା କହେ, ହେ ଠୋକା, ପଇସା ନବୁ ?

ଗମ୍ଭୀର ହୋଇ ଚାଲିଯାଏଁ । ପଛରେ ହୋ, ହୋ ହସିଉଠନ୍ତି ପଞ୍ଚାଏ ।

ନୀଳା କହେ, ଭାଉ ଜଣେ ରେ ।

ଚେମା କହେ, କେତେ ଛଇଛଟକ କାଢୁଛି ଦେଖ ତ—

ଶୁଣିବାକୁ ମୁଁ ନ ଥାଏଁ । ସିଧା ସିଧା ଚାଲିଆସେଁ ଘରକୁ । କାହାକୁ କଛି କହେ ନାହିଁ, କହିପାରେ ନାହିଁ । ଏଇମାନଙ୍କ ସଙ୍ଗେ ପିଲାଦିନେ ଚଳି ଆସିଛି, ଖେଳି ଆସିଛି । ଏଇମାନଙ୍କର ଗାଳି, ମାଡ଼, ଥଟ୍ଟା, ତାମସା ମୋର ଦେହସହା ହୋଇଛି ।

ତଥାପି, ଖରାପ ଲାଗେ । ପିଲାବେଳର ଥଟ୍ଟା ତାମସା ଓ ଏ ବେଳର ପରିହାସ ମଧ୍ୟରେ ଯଥେଷ୍ଟ ପ୍ରଭେଦ ଅଛି । ସେମାନଙ୍କର ଆଖିଠରା, ଭ୍ରୂଲତା ଟେକା, ପରିହାସ କଥାରେ ଅସନା ଇଙ୍ଗିତ ଲୁଚି ରହିଥାଏ । ଲୋକଙ୍କ ଆଖିରେ ପଡ଼ିଲେ ସେମାନେ ସନ୍ଦେହରେ ଅନାନ୍ତି । ନାକ ଟେକନ୍ତି ।

ଅଭାବ ଅନାଟନରେ ଘାଣ୍ଟି ଚକଟି ହୋଇ ସଂସାରର ଭଲମନ୍ଦ କଥା ଅଳ୍ପ ବୟସରେ ବୁଝି ପାରିଲି । ଲୋକଙ୍କର ଗୁଣ ଅବଗୁଣକୁ ହାଡ଼େ ହାଡ଼େ ଚିହ୍ନି ଥିଲି । ଚେମା ହସିଲା କି ଚେମା ଆଖି ଠାରିଲା, ଏହାର ଉଦ୍ଦେଶ୍ୟ, ଏହାର ଅର୍ଥ ମତେ ଅଜଣା ନ ଥିଲା; କିନ୍ତୁ ଘଟିକର ମୁହଁ ବୁଲାଇ ଟାଣ ଟାଣ ଦି' ପଦ ହାଙ୍କି ଦେବାର ସାହସ ମୋର ନ ଥିଲା । ସମସ୍ତେ ଆମର ଖାଉଁଦ । ପେଟ ଆଗରେ ମାନ ମହତ ବଡ଼ କଥା ନୁହେଁ । ପୁଣି, ତୁଳସୀ-ମା ଝିଅର ମାନ ମହତ କଅଣ ?

ଛବର ବୟସ ଡେଇଁ ଆସିଲି, ଘରୁ ବାହାରେ ନାହିଁ । ଏକୁଟିଆ ଘରକାମରେ ଲାଗିଥାଏ । ଯାହା ଯେତେବେଳେ ମା ଆଣେ, ସେଇଆ ଖାଇ ଦୁଃଖେ ସୁଖେ ବେଳ କଟିଯାଏ । କିନ୍ତୁ ମନରେ ସବୁବେଳେ ଦକ । ସଞ୍ଜପହରେ ଆମରି ସେଇ ଶ୍ରେଷ୍ଠ କୁଡ଼ିଆ ଆଗରେ ଗାଁ ଠୋକାଏ ଗପ କରନ୍ତି, ଏପାଖ ସେପାଖ ଟହଲ ମାରନ୍ତି, ରାତି ଅଧରେ କିଏ ବୋଲେ ଗୀତ, କିଏ ମାରେ ତାଳି, କିଏ ବା ଶିଶିରି ମାରି ଅସଭ୍ୟ ସଭ୍ୟ କଥା କହନ୍ତି । ମା ଶୋଇ ପଡ଼ିଥାଏ । ମୋ କାନରେ ସବୁ ପଡ଼େ, ତୁନ ରହେ ।

ଗାଧୁଆବେଳେ, ପୋଖରୀ ଘାଟରେ, ସେ ପାଖେ ନୀଳା ପହଁରୁଛି, ଏ ପାଖେ ଚେମା କଇଁଫୁଲ ତୋଳୁଛି । ଭୀମା ଆଉ ଟିମା ହୁଡ଼ା ଉପରେ ଧରାପରା ଲଗେଇଛନ୍ତି । ମୋ ଆଡ଼କୁ ଚାହିଁ ବେଳେବେଳେ ହସୁଛନ୍ତି । ଗାଁ ମାଇପେ ସବୁ

ଦେଖନ୍ତି । ଓଦା ଲୁଗାରେ ଥରି ଥରି ଘରକୁ ଫେରେ । ଭାବେଁ, ଏ ଟୋକାଗୁଡ଼ା କେଡ଼େ ଖରାପ । ପୁଣି ଭାବେଁ, ନା, ସେମାନେ ଖରାପ ନୁହନ୍ତି ଯେ, ମୋ କପାଳ ଖରାପ । ମୁଁ ଗରିବ—ଅନାଥା । ଗାଁରେ ଆଉ ଦଶ ପଚିଶ ଝିଅ ଅଛନ୍ତି । ହେଲେ, ସେମାନଙ୍କ ପାଇଁ ଠେଙ୍ଗା ଧରିବାକୁ ଲୋକ ଅଛନ୍ତି ।

ଏମିତି କେତେ କଥା । ପଦାକୁ ଗୃହିଁବାକୁ ଡରମାଡ଼େ । ନିଶ୍ଚୟ କାହାର ଦିଠି । ଅଖି ମିଚି ମିଚି ହେଉଥିବ । କାହାକୁ କିଛି କହି ହେବ ନାହିଁ । ନିଜ ମହତ ନିଜେ ରଖି ଚଲେ । ତଥାପି ଗାଁରେ ଦୁର୍ନାମ ରଟିଲା, କେତେ ଲୋକ ମୁରବିଗିରି ଦେଖାଇ ଆମ ଘରକୁ ଉପଦେଶ ଦେବାକୁ ଆସିଲେ । ଭଲେଇ ହୋଇ କହିଲେ, ଆଲୋ ତୁଳସୀ ମା, ଏଇ ସାଲେ ଯେଉଁଠି ହେଲେ ଝିଅକୁ ଉଠେଇ ଦେ । ଯିଏ ଆସନ୍ତି, ତାଙ୍କର ଅଖି ଦିଠି ଚକ୍ର ପରି ଭ୍ରମୁଥାଏ । ମୁ ଜାଣେ, ସେ ଅଖି ମତେହିଁ ଠାବ କରିବାକୁ ଉହାଲ ବିକଳ ହେଉଥାଏ । କହନ୍ତି, ଝିଅଟାକୁ ବେପରଦା କରି ଗାଁରେ ରଖିବା ଆଉ ଠିକ୍ ନୁହେ । ଦେଖୁନ୍ତୁ ଆଜିକାଲିକା ପିଲାଙ୍କ ଢଙ୍ଗ ।

ବୋଉ ଉତ୍ତର ଦିଏ ନାହିଁ । ତବ ତବ କରି ଗୃହେଁ । ଦୁଇ ଅଖିରୁ ଲୁହ ଧାର ଗଡ଼ିପଡ଼େ ।

୩

ବାହାଘର ହେଲା । ଯାହା ସଙ୍ଗେ ଅଖିର ଅଦଲ ବଦଲ ତାଙ୍କ ସଙ୍ଗେ ନୁହେଁ, ତାଙ୍କ ଭାଇଙ୍କ ସଙ୍ଗେ । ପରଘରକୁ ଯାଇ ସଂସାର କଲି । ପିଲାଟିକୁ କୋଳରେ ଧରି ଦିନ ପାଞ୍ଚଟା ପାଇଁ ଅସିଥିଲି ବୋଉ ପାଖକୁ । ଫେରି ନାହିଁ । ଫେରିବି ନାହିଁ । କାହା ପାଖକୁ ଫେରିବି ? ଯାହାକୁ ନେଇ ସଂସାର କରିଥିଲି ସେ ନାହାନ୍ତି ।

ମୁଁ ବିଧବା, ମୁଁ ଅନାଥା—

ଛୋଉଣ୍ଡ ପିଲାଟିକୁ ମଣିଷ କରିବା ମୋର ଦାୟିତ୍ୱ ।

ଅଖିରୁ ଝରିପଡ଼ିଲା ତତଲା ଲୁହ । କେତେ ସୁଖ ଦୁଃଖର ସ୍ମୃତି, ମନକୁ ଅସ୍ଥିର କରି ପକାଇଲା । ମନରେ ଜୋର ଅଣିଲି, ଅରେ, ସଂସାରର ଶହ ଶହ ଗରିବ ଅନାଥଙ୍କ ପରି ମୁଁ ବି ଜଣେ । ସମସ୍ତେ ଦୁଃଖେ କଷ୍ଟେ ଚଳୁଛନ୍ତି । ମୁଁ ବି ମୋର ନାବ ଚଲାଇବି—ଯେତେ ଦିନ ଚଳିବ । ପିଲାଟିକୁ ବଞ୍ଚାଇବାକୁ, ମଣିଷ କରି ଦାଣ୍ଡରେ ଚଲାଇବାକୁ ଚେଷ୍ଟା କରିବି । ଯାହା ଥିବ ତା'ର କପାଳେ ।

ଗଜବୋଉ କହିଲା, ଆଲୋ ତୁଳସି, ଗାଁ ମୁଣ୍ଡ ତ ହେଲା, ମୁଁ ଏଇବାଟେ ଯାଉଛି, ତୁ ଏଇ ଗୋହିରି ବାଟେ ସିଧା ଯା— ।

କହିଲି, ହଉ ଖୁଡ଼ି, ତମ ଠୋକେଇ ନିଅ ।

ମୁଣ୍ଡରୁ କାଢ଼ି ତା ହାତକୁ ଦେଲି । ସେ ଠୋକେଇ ନେଇ କହିଲା, ହଁଠା କଞ୍ଚା ଲଙ୍କା ମରିଚ ନେବୁ ତୁଳସୀ, ଲୋଭ ହେଲା, ଛବଘର ଗଛରୁ ଛିଣ୍ଡାଇ ଆଣିଛି ।

ରାଗ ହେଲା । କେଡ଼େ ଖରାପ ଲୋକ । ପାଣି ପିଇବାକୁ ଯାଇ ଧରର ଜିନିଷରେ ହାତଦେବା ଭଲ ନୁହେ । ପଚାରିଲି, ଛବ ଜାଣେ ଖୁଡ଼ି ?

ଶଢ଼ ଉଠି କହିଲା, ମଲାମର, ହଁଠା ଲଙ୍କାମରିଚ, ତାକୁ କହିଲି ନାହିଁ ତ କଅଣ ହେଲା ?

ବିରକ୍ତ ହୋଇ କହିଲି, କ'ଣ ଆଉ ହେବ, ଚୋରି ହେଲା । ଛିଃ—

ରାଗରେ ନିଆଁ ହୋଇଗଲା । କହିଲା, କି ଲୋ, ମତେ ଚୋରଣୀ କହୁଛୁ ? ହଇଲୋ, ନିଜ ଗୁଣ କଥା ଭୁଲିଗଲୁ କି ? ଧଅର ସଙ୍ଗେ ସଲା ହୋଇ ଘଇତାକୁ ମରାଇ ଆଜି ଦେଖାଇ ହେଉଛୁ, ମୁଁ ସତୀ, ମୁଁ ସତୀ...... । ପୁରାଣ ଖୋଲିଲେ— ।

ଛାତିରେ ଛୁରୀ ଚାଲିଗଲା । ମୁହୂର୍ତ୍ତେ ଅପେକ୍ଷା ନ କରି କଥା ଗୋହିରୀ ଭିତରକୁ ପଶିଆସିଲି । କାନରେ ହାତ ଦେଇ ଘର ଆଡ଼େ ଚାଲିଲି ।

ବାରି ଭିତରକୁ ପଶିଆସି ଦେଖିଲି, ପିଣ୍ଡା ଉପରେ କଇଁକଅ ହୋଇ ଉବରି ଜଳୁଛି । କାହାରି ସ୍ୱର ଶବ୍ଦ ନାହିଁ । ଭାବିଲି, ମନୁ ମୋର ଶୋଇ ପଡ଼ିଛି, କେତେ ଆଜି କାନ୍ଦିଥିବ କେଜାଣି । ହାଟ ଠୋକେଇଟି ଚାଳି ଉପରେ ରଖିଦେଇ ଡାକିଲି, ବୋଉ, ବୋଉ— ।

ବୋଉ ଜବାବ ଦେଇ ଘର ଭିତରୁ ପଦାକୁ ଆସିଲା । ପଚାରିଲା, ଏତେ ଡେରି ହେଲା କାହିଁକି ମା ?

ଆସୁ ଆସୁ ଡେରି ହୋଇଗଲା । ମନୁ କ'ଣ ଶୋଇଛି ?

ହଁ । ଗୋଡ଼ ହାତ ଧୋଇ ଆଗ ମନାଏ ତୋରାଣି ପିଇଦେ, ତାପରେ ଯେଉଁ କଥା । ଚାଲି ଚାଲି ହାଲିଆ ହୋଇଥିବୁ, ଦିନଯାକ ପୁଣି ପେଟରେ କିଛି ପଡ଼ି ନାହିଁ— ।

ମୋ କଥାକୁ ଅପେକ୍ଷା ନ କରି ଘର ଭିତରୁ ପୁରୁଣା ରଙ୍ଗୀନ୍ ଲୁଗା ଖଣ୍ଡି ଓ ଡାଳଟି ଆଣି ମତେ ଦେଲା । ହାଟରୁ ଆଣିଥିବା ପଇସା ଓ ଅନ୍ୟାନ୍ୟ ପଦାର୍ଥ ବୋଉ ହାତକୁ ଦେଇ ମୁଁ ଲୋଟା ଓ ଲୁଗା ନେଇ ଦାଣ୍ଡ କଡ଼ କୂଅ ମୂଳକୁ ଗଲି ।

ବୋଉ ସେହି ପିଣ୍ଡାରେ ମୋ ପାଇଁ ପଖାଳ ବାଢ଼ିଦେଲା ।

କହିଲା, ଝିମବାବୁଙ୍କ ଘରୁ ଲୋକ ଆସିଥିଲା । କାଲି ସକାଳେ ଧାନ କୁଟି ଯିବାକୁ କହିଯାଇଛି ।

କହିଲି, କାଲି ମନୁଅଁ ର ଜନ୍ମଦିନ, ସକାଳେ କାହା ଘରକୁ ଯାଇ ପାରିବି ନାହିଁ ।

ସାଆନ୍ତାଣୀ ରାଗିବେ ନାହିଁ ?

ରାଗିଲେ ମୁଁ କଅଣ କରିବି ? କାମ କଲେ ମାଣେ କି ଟସରେ ଦେବେ । କାମ ନ କଲେ ନ ଦେବେ । କାହାର କିଏ ଧାରେ କି ବୋଉ ?

ଅଲୋ ମା, ଆଉ ଦିନକୁ ଆଉଦିନ ଅଛି ।

ଚୁପ ରହିଲି । ପରଙ୍କ ଦୟା ଉପରେ ଯେ ନିର୍ଭର କରେ, ପରଙ୍କ ମର୍ଜି ଜଗି ତାକୁ ଚାଲିବାକୁ ହେବ ।

ଘର ଭିତରେ ମନୁ କାନ୍ଦିଲା । ବୋଉ ଉଠିଗଲା । ମୋ'ର ନଜର ପଡ଼ିଲା ଚୂଲି ପାଖ ପିଣ୍ଡାରେ । କାନ୍ଥକୁ ଡେରା ହୋଇ କାନ୍ଦିଏ କାଠିଆ କଦଳୀ ରଖା ହୋଇଛି । କିଛି ବୁଝି ପାରିଲି ନାହିଁ । ଆମ ବାଡ଼ିରେ ଯେଉଁ ଦିକାନ୍ଦି କଦଳୀ ପଡ଼ିଛି ସେ ତ ବନ୍ତଳ କଦଳୀ, ଇଏ ଆସିଲା କେଉଁଠୁ ?

ଡାକିଲି, ବୋଉ—

ବୋଉ ମନୁକୁ କାଖ କରି ପଦାକୁ ଆସିଲା । ଆଗ୍ରହରେ ମୁଁ ତା ଆଡ଼କୁ ଚାହିଁଲି । ଅଦ୍ଭୁତ ଆଶ୍ଚର୍ଯ୍ୟ ହେଲି । ପିଲାଟା ଆଖି ବୁଜି ଘୁମାଉଛି । ହାତରେ ଧରିଛି ଗୋଟାଏ ଜାପାନୀ କଣ୍ଢେଇ । ପିନ୍ଧିଛି ଖଣ୍ଡେ ଫୁଲପକା ଜାମା ।

ପଖାଳ କଂସା ପାଖରୁ ଉଠି ହାତ ଧୋଇଲି । ମନୁକୁ ବୋଉ କାଖରୁ ଆଣି ପଚାରିଲି, ବୋଉ, ଏ ସବୁ ମୁଁ ବୁଝି ପାରୁ ନାହିଁ । ଏ କଦଳୀ, ଜାମା, ଖେଳନା କିଏ ଆଣିଛି ?

ବୋଉ ହସିଲା । ଉତ୍ତର ନ ଦେଇ ଘର ଭିତରକୁ ଗଲା । ମୁଁ ସେଇ ବାରଣ୍ଡାରେ ପିଲାକୁ କୋଳରେ ଧରି ବସିଲି ।

ବୋଉ ଘର ଭିତରୁ ବାହାରିଲା । ହାତରେ ଧରିଛି ଖଣ୍ଡିଏ ଫୁଲଧଡ଼ିଆ ମିଲ୍ ଶାଢ଼ୀ ଓ ଖଣ୍ଡେ ଗାମୁଛା । କହିଲା, ଏ ସବୁ ପୁର ଆଣିଛନ୍ତି । କାଲି ପୁଅର ଜନ୍ମଦିନ ବୋଲି ତା ପାଇଁ ଜାମା, ତୋ ପାଇଁ ମୋ ପାଇଁ ଲୁଗା, କାନ୍ଦିଏ ପାଚିଲା କଦଳୀ— ।

ତାକୁ ଆଉ କୁହାଇ ଦେଲିନାହିଁ । ଚମକି ଉଠିଲି, କିଏ ଆଣିଛି ?

ମୋ ରାଗର କାରଣ ସେ ଜାଣେ, ତା ମୁହଁ ଶୁଖିଗଲା । କହିଲା, କି ଅନ୍ୟାୟ ହେଲା ମା, କେଡ଼େ ଶ୍ରଦ୍ଧାରେ ସେ ନିଜ ମୁଣ୍ଡରେ ବୋହି ଉଦୁଉଦିଆ ଦି'ପହରଟାରେ ଏ ସବୁ ନେଇ ଆସିଥିଲା ।

ପଚାରିଲି, ତୁ ରଖିଲୁ କାହିଁକି; ଫେରାଇ ଦେଲୁ ନାହିଁ । ତତେ ମୁଁ କେତେ ଥର ମନାକରିଛି ?

ବୋଉ କହିଲା, ଘଗନା ମା, ଶୁଣ, ମୁଁ ଯା କହୁଛି । ଲୋକଙ୍କ ମୁହଁରୁ ଏଣୁ ତେଣୁ ଶୁଣି ବିନା କାରଣରେ ତା ଉପରେ ରାଗିବା, ଗୋରକୁ ମାନ କରି ଖପରାରେ ଖାଇବା ଭଲ ନୁହେଁ । ସୁରି ତୋର ଦିଅର, ମନୁର ଦାଦି । ବାର ଲୋକଙ୍କ ଅଲଣା କଥାରୁ ଆମକୁ କଅଣ ମିଳିବ ? ଲୋକେ ଭୁଣ୍ଡ ହୋଇ ଘର ଭଙ୍ଗାକଥା କହିବେ ସିନା, କେହି କେବେ ସାହା ହେବେ ନାହିଁ । ପାଞ୍ଚ ପଇଶ ଗଣିଦେବେ ନାହିଁ ।

ଆଉ ସୁରି ଆସି ପାଞ୍ଚ ପଇଶ ଗଣିଦେବେ, ମନୁଆଁକୁ ଅକାଳେ ସକାଳେ ଖଣ୍ଡେ ଜାମା କି ମୋ ପାଇଁ ଖଣ୍ଡେ ଲୁଗା ଆଣିଦେବେ । ସେଇଥିରେ ଆମର ଦିନକାଳ ସରିବ ନାହିଁ । ଯାହାକୁ ନେଇ ସଂସାର କରିଥାନ୍ତି, ଯାହାକୁ ନେଇ ଦିନକାଳ ସାରିଥାନ୍ତି, ତାଙ୍କୁ ମୋତେ କିଏ ଆଣିଦେବ ?

ଆଉ କହିପାରିଲି ନାହିଁ । ମନୁଆଁକୁ ଛାତିରେ ଚାପିଧରି କାନ୍ଦିବାକୁ ଲାଗିଲି । ମନେ ପଡ଼ିଗଲା କେତେ କାଳର କେତେ କଥା । କାନ୍ଦଣା ସ୍ୱରରେ କହିବାକୁ ଲାଗିଲି, ସୁରି ଆସି ତୋ ପାଖରେ ସାକୁଲେଇ ହେଲା, ସେତିକରେ ତୁ ଭୁଲିଗଲୁ । ତାକୁ ଘରେ ପୂରାଇବାକୁ ମୁଁ ତତେ ମନା କରିଥିଲି ।

ହାତ ଦେଖାଇ ସେ କହିଲା, ଚୁପ୍ ଚୁପ୍, ଆର ଘରେ ସେ ଶୋଇଛନ୍ତି, ବେଶି କିଛି କହ ନା ।

ସେ ଅଛନ୍ତି ଶୁଣି ମୋ ଦେହରେ ନିଆଁ ଲାଗିଗଲା । ମନୁଆଁକୁ ତଳେ ବସାଇ ବଡ଼ ପାଟି କରି କହିଲି, ସେ ରହିଲେ କାହିଁକି ? ଆଉରି ଦୁର୍ନାମ ଶୁଣିବାକୁ ବାକି ଅଛି ବୋଉ ?

ଏମିତି କାହିଁକି କହୁଛୁ, ତୁଳସି, ତୁ ରାଗିବୁ ବୋଲି ମୁଁ ଜାଣି ନ ଥିଲି । ଉଦୁଉଦିଆ ଖରାରେ ଧାଇଁ ଧାଇଁ ଆସିଥିଲା । କି ରୂପ ଆସି କଅଣ ହେଲାଣି । ଦେହରୁ କଲାପାଣି ବୋହିପଡ଼ୁଛି । ମନ ଭାରି କଷ୍ଟ ହେଲା । ମନୁର କାଲି ଜନ୍ମଦିନ । ତାଆରି ଦାଦି ତ । ତାଆରି ରକତ । ବାପ କିଏ ଆଉ ଦାଦି ବଡ଼ବାପ ? ଏଇଆ ଭାବି ମୁଁ ତାକୁ ଅଟକାଇ ରଖିଲି । ତୁ କାଳେ ରାଗିବୁ ବୋଲି ସେ ଏକା ନାହିଁ କରୁଥିଲା । ତାର କାଣିଚାଏ ଦୋଷ ନାହିଁ ।

ଆଖିରୁ ଧାର ଧାର ଲୁହ ଝରିପଡ଼ୁଥାଏ । ଥକ୍‌କା ହୋଇ ସେହି ପିଣ୍ଡାରେ ବସି ଗହ୍ୱାର ଆଡ଼ର ଅନ୍ଧାର ଭିତରକୁ ଏକ ଆଖିରେ ଚାହିଁ ରହିଥାଏ । ଭାବୁଥାଏ, ମଣିଷର ବୟସ ବଢ଼ିଲେ ବୁଦ୍ଧି ସୁଦ୍ଧି ବଗିଡ଼ିଯାଏ । ଏ ଗାଁର ଲୋକେ ମୋତେ ଯେଉଁ ଆଖିରେ ଦେଖନ୍ତି, ମୋ ସମ୍ବନ୍ଧରେ ସେମାନଙ୍କର ଧାରଣା ଯେପରି ଖରାପ, ସେମାନେ ଯଦି ଜାଣନ୍ତି ଯେ ମୋ'ର ଦିଅର ସୁରି ରାତିରେ ଆସି ଆମରି ଘରେ ଥିଲା, ତେବେ ଢୋଲକୁ ତାଳ କରି କହିବାକୁ ସେମାନଙ୍କୁ ସୁବିଧା ମିଳିବ । ମୋ'ର ଉପର ମୁହଁ ତଳକୁ ହେବ ।

ବେଳୁ ବେଳ କୋହ ବଢ଼ିଲା । ବୋଉ କାଠପିଢ଼ୁଲା ପର ଖଣ୍ଡେ ହୁରରେ ବସିଥାଏ, ମନୁକୁ କୋଳରେ ଧରିଥାଏ । ସେ ବୋଧହୁଏ, ତାର ଭୁଲ ବୁଝିବଣି । ସେ ଭୁଲ କରି ନାହିଁ, ଜାଣି ଜାଣି ଏପରି କରିଛି । କେତେଥର ମୋ ଆଗରେ ସାକୁଲେଇ ହୋଇ କହିଛି, ଆଲୋ ତୁଳସି, ସବୁଦିନେ ମଣିଷ ଠାଣ ରଖି ଚଳିପାରେ ନାହିଁ ଲୋ । ହଁ, ଯାହାର ହାତ ଧରିଥାଏ, ତାର ଭଲ ମନ୍ଦ ହେଲେ ମନ ଭାଙ୍ଗିଯାଏ । ତଥାପି, ଛାତି ପଥର କରି ପୁଣି ନୂଆ ସଂସାର କରିବାକୁ ପଡ଼େ । ଆଜି ସିନା ତୋର ବୋଉ ଅଛି, କାଲି ଯେତେବେଳେ ସେ ଆଖିବୁଜିବ, କି ସାହସରେ ତୁ ପିଲାଟାକୁ ନେଇ ଚଳିବୁ ?

ଏମିତି କେତେ କଥା ସେ କହେ । ତା କହିବାର ଉଦ୍ଦେଶ୍ୟ ମୁଁ ଭଲ କରି ଜାଣେ । ତାର ଇଚ୍ଛା ମୁଁ ଆଉ ଥରେ ସ୍ୱାମୀ ନେଇ ସଂସାର ଆରମ୍ଭ କରିବି । ମୋର ମଲା ସ୍ୱାମୀଙ୍କୁ ପାଶୋରି ସୁଖରେ ରହିବାକୁ ଚେଷ୍ଟା କରିବି । ତାର ମନ ସିନା ମୋର ଦୁଃଖ କଷ୍ଟ ଦେଖି ସହିପାରେ ନାହିଁ, ସେ ତ ବୁଝିପାରେ ନାହିଁ, ତାର ସହାନୁଭୂତି କଥା କେଇପଦ ମୋର ଛାତି ଭିତର, କଟା ଘାଆରେ କପରି ଲୁଣର ଛିଟା ମାରେ ! ତା ସଙ୍ଗେ ମୁଁ ବାଦାନୁବାଦ କରେ ନାହିଁ । ତା କଥାରେ କାନ ନ ଦେଇ ନିଜ କାମରେ ବ୍ୟସ୍ତ ରହେ ।

ତାର ଇଚ୍ଛା ମୁଁ ପୁଣି ସୁରକୁ ନେଇ ସଂସାର କରିବି । କୁଳର ବୋହୂ କୁଳରେ ରହିବ । ମନୁଆ ବାପ ହରାଇ, ଦାଦିକୁ ବାପ କରି ପାଇ ସବୁ ଦୁଃଖ ଭୁଲିଯିବ । କଥା ଏ କାନରୁ ସେ କାନକୁ ଯିବ ନାହିଁ । ବୋଉର ଦୁଶ୍ଚିନ୍ତା ଘୁଞ୍ଚିଯିବ । କିନ୍ତୁ ବୁଝେ ନାହିଁ ବୋଉ, ଯାହାର ପାଇଁ ଆଜି ମୋର ଏ ଦୁରବସ୍ଥା, ଯାହାକୁ ମୁଁ ବିଷପରି ଘୃଣା କରେ, ଭୟ କରେ, ଯାହା ପାଇଁ ଦୁନିଆଁରେ ମୋର ଦୁର୍ନାମ ରଟିଛି, ତାକୁ ନେଇ ମୁଁ ନୂଆ ଜୀବନ ଆରମ୍ଭ କରିପାରିବି ନାହିଁ ।

ମୋର ମନ ଯାହା ବୁଝେ, ବୋଉ ତାର କାଣିଗୃକର ଆଭାସ ପାଏ ନାହିଁ । ଆଭାସ ମୁଁ ଦିଏ ନାହିଁ । ସେ ତାର ମନ ଇଚ୍ଛା ଗପିଯାଏ, ମନ ଇଚ୍ଛା ଉପଦେଶ ଉଦ୍‌ଗାରି ଯାଏ । କାହିଁରେ ମୁଁ କାନ ଦିଏ ନାହିଁ । ଖାଲି ଶେଷକୁ ତାକୁ ମନା କରି କହେ, ସୁର ଆମ ଘରକୁ ଆଉ ନ ଆସୁ । ଯଦି ଆସେ, ତାକୁ ଘରେ ପୂରାଇବୁ ନାହିଁ ।

ଶୁଣି ମଧ୍ୟ ସେ ଶୁଣେ ନାହିଁ । ମନୁଆକୁ ଦେଖିବା ବାହାନାରେ ସୁର ବାରମ୍ବାର ଆସନ୍ତି । ବୋଉ ତାଙ୍କୁ ଘରେ ପୂରାଏ । କେତେ ଗପ କରେ । ମୋର ବାରଣ, ମୋ ବିରକ୍ତିକୁ ପାସଙ୍ଗରେ ନ ପକାଇ ମନୁଆକୁ ଦେଖିବା ପେଖନାରେ ଆସନ୍ତି । ଆଜି ଜାମା ଖଣ୍ଡେ, କାଲି ମିଠେଇଟିଏ, ପୁଣି କେବେ ଖେଳନା ଖଣ୍ଡେ, ପିଲାଟାକୁ ଦେଇ ବୋଉର ମନ କିଣି ନେବାକୁ ଚାହାନ୍ତି । ମୂର୍ଖ, ବୁଝନ୍ତି

ନାହିଁ, ବୋଉକୁ ପଠାଇ ରଖିଲେ ମୋର ମନର ଭାବ ବଦଳାଇ ପାରିବେ ନାହିଁ ।

ମୋତେ ଭୁନ ଦେଖି ବୋଉ କ'ଣ ମନେ କରି କେଜାଣି ପୁଣି କହିଲା, ମା, ସୁର ସେତେବେଳୁ ଆସିଲାଣି, କିଛି ଖାଇ ନାହିଁ । ଖାଇବାକୁ ଡାକିଲି ଯେ କହିଲା, ନୂଆଉ ଖରାତରାରେ ଧାଇଁ ଧାଇଁ ଆସୁଥିବେ, ସେ ଆସନ୍ତୁ, ମତେ ଭୋକ କରୁ ନାହିଁ । ଅଳ୍ପ ନୁହେଁ ମା, ସବୁଦିନେ ମୁଁ ଦେଖିଛି ତୋଠେଇଁ ତାର ଭାରି ଶ୍ରଦ୍ଧା । ଯେଉଁମାନେ ଦେଖି ନ ପାରନ୍ତି, ସେମାନେ ବାରକଥା କହନ୍ତି ।

ମୋର ଧୈର୍ଯ୍ୟ ଭାଙ୍ଗିଲା । ଚହଟ୍ଟି ଉଠି କହିଲି, ଥାଉ ଥାଉ, ତୋର ଭଲେଇ କଥା, ସେତିକି ଥାଉ । ସୁରକୁ ମୁଁ ଭଲକରି ଚିହ୍ନେ । ସେ ମଉନ ମୁହାଁ, ଚୂପ୍ ସଇତାନ, ବୁଡ଼ି ବୁଡ଼ି ପାଣି ପିଏ । ତା ମାୟାରେ ଭଗବାନ୍ ପଶି ପାରିବେ ନାହିଁ । ସେ ଖୁଣୀ, ସେ ଦୋଷୀ, କେହି ନ ଦେଖନ୍ତୁ, ଉପରେ ଥାଇ ଠାକୁରେ ସବୁ ଦେଖିଛନ୍ତି । ଲୋକଙ୍କର କଥା ମିଛ ହୋଇପାରେ ନାହିଁ ।

ଆଉ କ'ଣ କହିଥାନ୍ତି, ମୁଁ ଜାଣେ ନାହିଁ । ଆରଘରୁ ଆଖି ମଳି ମଳି ସୁର ବାହାରି ଆସିଲେ । ତାଙ୍କୁ ଦେଖି ମୋର ପାଟି ବନ୍ଦ ହୋଇଗଲା । ସତେ ତ, ସେ ବଦଳି ଯାଇଛନ୍ତି । ଦୁଇମାସ ତଳେ ସଞ୍ଜ ବୁଡ଼ିଆ ଆମରି ଘରେ ତାଙ୍କ ସଙ୍ଗେ ଦେଖା ହୋଇଥିଲା । ମନକୁ ଯାହା ଆସିଲା କହି ମୁଁ ଗାଁ ଭିତରକୁ ଚାଲି ଯାଇଥିଲି । ଫେରିଲା ବେଳକୁ ସେ ନ ଥିଲେ । ସେ ଦିନ ସେହି ମୁହୂର୍ତ୍ତିକର ଦେଖାରେ ଯାହା ଦେଖିଥିଲି, ଭାବିଥିଲି, ତାର ଶିଖା ଲିଭିଯାଇଛି । ମନର ପାପ ସିନା କେହି ଦେଖିଲେ ନାହିଁ, ନିଜ କଲା ପାପ କାମରେ ନିଜେ ସେ ଜଳି ଯାଉଛି ।

ଘରର ଝାପ୍‌ସା ଆଲୁଅରେ ଯାହା ଦେଖିଲି ମୋର ଛାତିରେ ଚମକ ଲାଗିଲା । ତମ୍ବା ତାର ପରି ବଳିଲା ଦେହରେ ଶିରା ଦଉଡ଼ି ବଳହୋଇଛି । ଛାତିରେ ଗଣି ହେଉଛି ହାଡ଼ ବଦାକାଠି ପରି । କୋରଡ଼ିଆ ଆଖି ମଉଳା ଫୁଲ ପରି ଜ୍ୟୋତିହୀନ, ମୁହଁର ରୂଢ଼କୁ ଘୋଡ଼ାଇ ପକାଇଛି ମୁଣ୍ଡର ଲମ୍ବ ଲମ୍ବ କହରା ବାଳ । ଭ୍ରାତୃହନ୍ତାର ଶିଖା ଲିଭିଛି ।

୪

ରାମ ଲକ୍ଷ୍ମଣ ପରି ଦି ଭାଇ, ଚାଲି ଯାଉଥିଲେ ଶତ୍ରୁ ଶଙ୍କିଯାଏ । ଭଲ କରି ନ ଚିହ୍ନିଲା ଲୋକ ଭ୍ରମରେ ପଡ଼ନ୍ତି, ବଡ଼ କିଏ ସାନ କିଏ । ସୁର, ମନୁଆର ଦାଦି, ତାଙ୍କର ଭାଇ, ଏକା ରକ୍ତ, ଦି ଧାର । ଏକାମାଟିରେ, ଏକା ଛାଞ୍ଚରେ, ଦିଓଟି ରୂପ ଷଠୀ ଗଢ଼ିଛି । ଜଣକୁ ନ ଦେଖିଲେ ଆରକ ବଣା ହେଉଥିଲେ । ମନୁଆଁର ବାପଙ୍କ ଆଖିରେ ଆଗ ସୁର ତ ପଛ ମନୁଆଁ । ସୁର ବି ସେମିତି ପ୍ରାଣରୁ ବଳି

ଭାଇଙ୍କୁ ତାର ଭଲ ପାଉଥିଲା । କିନ୍ତୁ, କଣ ହେଲା, ଅଲୌକିକ କଥା, ଲୋକେ ଚହଲ ପକାଇଲେ, ସୁର ପାଇଁ ମନୁଆଁ ର ବାପା ସେପୁରକୁ ଗଲେ, ଆଉ—

ତଳେ ମୁଣ୍ଡ ଲଗାଇ ମୋତେ ପ୍ରଣାମ କରି ସୁର ଆଡ଼େଇ ଠିଆ ହେଲେ । ମୋ ଆଡ଼କୁ ଚାହିଁବାକୁ ସତେକି ତାଙ୍କର ସାହସ ହେଉ ନାହିଁ, ସତେକି ସେ କଣ ଅନ୍ୟାୟ ଅନୀତି ବିଶ୍ୱାସଘାତକ କାମ କରି ପକାଇଛନ୍ତି ।

ମୋର ଅଧେ ରାଗ କମି ଆସିଲା । ପାଟିରୁ କଥା ବାହାରିଲା ନାହିଁ । ଭଲ ମନ୍ଦ ଜାଣିବାର ଶକ୍ତି ମଣିଷର ନାହିଁ । ଅନ୍ୟର ମନରେ କି ଚିନ୍ତା ଖେଳୁଛି, ବୁଝିବାର ଉପାୟ ନାହିଁ । ଘଟଣାଟା ଯେପରି ଘଟିଗଲା, ଲୋକେ ଯେପରି ଦୁର୍ନାମ ରଟାଇଲେ, ମଣିଷର ସନ୍ଦେହୀ ମନ ସିନା ପାପ ଛୁଇଁଲା, ନୋହିଲେ ସତ ମିଛ ଜାଣିବାର ଉପାୟ କଣ ଅଛି ? ଅହା ସେ ଯଦି କ୍ଷଣକ ପାଇଁ ଫେରିଆସି ସତ କଥାଟି କହିଯାଆନ୍ତେ, ସବୁ ଦୁଶ୍ଚିନ୍ତା ସବୁ ସନ୍ଦେହ ଦୂର ହୋଇ ଯାଆନ୍ତା । ମୋର ଅନୁପସ୍ଥିତିରେ ଏତେ ବଡ଼ ଘଟଣା ଘଟିଗଲା ବୋଲି ସିନା ମନ ପାପ ଛୁଉଁଛି, ସୁରଙ୍କ ଉପରେ ଅବିଶ୍ୱାସ ହେଉଛି । ମୁଁ ଥିଲେ ମୋର ମନ ଏପରି ଛକପକ ହୋଇ ନ ଥାନ୍ତା । ଲୋକେ ପଛେ ଯାହା କହନ୍ତୁ, କି ସଜ ମାଛରେ ପୋକ ପକାନ୍ତୁ ।

ମୋର ଆଖିରୁ ତତଲା ଲୁହର ଧାର ଝରିପଡ଼ିଲା ।

ମନୁଆ, ବୋଉକୋଳରୁ ଦାଦା ବୋଲି ଡାକ ଛାଡ଼ିଲା । ବୋଉ ମୋରି ଉପରେ କିଛି କହି ନ ପାରି ପିଲାଟିକୁ ତଳେ ଛାଡ଼ିଦେଲା । ସେ କଣ୍ଢେଇଟି ଧରି ଦା, ଦା ହୋଇ ଠୁକୁ ଠୁକୁ ଚାଲି ସୁରଙ୍କ ଆଡ଼କୁ ଠେଲି ଠେଲି ଯାଉଥିଲା ମୋରି କଡ଼ ଦେଇ । ମୁଁ ତାର ହାତ ଧରି କୋଳକୁ ଟାଣିଆଣିଲି । ସେ ଭିଡ଼ମୋଡ଼ ହୋଇ ଉଠିଗଲା । ବାଧା ଦେଲିନାହିଁ ।

ସୁର ତାକୁ ଛାତି ଉପରକୁ ନେଲେ । ଟେକି କରି କାନ୍ଧରେ ପକାଇଲେ । ମନୁଆ ତାଙ୍କ କାନ୍ଧ ଉପରେ ମୁଣ୍ଡ ନୁଆଇଁ ଗୁଲୁଗୁଲୁ କରି କ'ଣ କହିବାକୁ ଲାଗିଲା । ସୁର ଧୀରେ ଧୀରେ ତାର ପିଠି ଆପୁଡ଼ିଲେ ।

ମୁଁ ଚାହିଁ ରହିଲି ।

ମନର ରାଗ କମି ଆସିଥିଲା । ତଥାପି, ମୁହଁ ପୋତି ସୁରଙ୍କୁ କହିଲି, ଏଠିକି ଆସିବାକୁ ତମୁକୁ ମୁଁ କେତେ ଥର ମନା କରିଛି, ତଥାପି ଖତେଇ ହେଲାପରି ତେମେ ବାରମ୍ବାର ଆସୁଛ । ମତେ ଲୋକନିନ୍ଦା କରାଉଛ । କାହିଁକି ତେମେ ଏପରି ମୋ ପଛରେ ଲାଗିଛ ?

ସୁର ଥକ୍କା ହୋଇ କହିଲେ, କାଲି ମନୁଆଁ ର ଜନ୍ମଦିନ । ପିଲାଟାକୁ ଥରେ ଦେଖି ଯିବାକୁ ମନ ଉଚ୍ଛନ୍ନ ହେଲା । ନ ଆସିବାକୁ ଯେତେ ଚେଷ୍ଟା କଲି ମୁଁ ରହିପାରିଲି ନାହିଁ । ମନୁଆଁ ର ସ୍ନେହଡୋରି ମତେ ଟାଣିଆଣିଲା ।

କହିଲି, ଯେତେ ଥର ତେମେ ଆସ, ତମର ସେହି ମନୁଆଁ ହେଉଛି ପଡ଼ିଆସ । ମନୁଆଁ ମୋ ପୁଅ । ମୁଁ ବଞ୍ଚିଥିବା ଯାଏ ତାର ଜନ୍ମଦିନକୁ ଷଠୀ ଅଦୃକା ରହିବେ ନାହିଁ । ତେମେ ଯଦି ସବୁବେଳେ ଛାଇ ପରି ପଛେ ପଛେ ଲାଗି ରହିବ, ମୋର ଅବସ୍ଥା କଅଣ ହେବ ମନେ କଲ ? ମୁଁ ନେହୁରା ହୋଇ କହୁଛି, ତେମେ ମୋ ପାଖରୁ ଦୂରେଇ ରହ, ତେମେ ଆଉ ଏଠାକୁ ଆସନାହିଁ ।

ଆଖିରୁ ଲୁହ ପୋଛିଲି ।

କହିଲେ; ତେମେ ରାଗିକରି କହିଲା ଦିନରୁ ମୁଁ ଏଣେ ଆଉ ବେଶି ଆସେ ନାହିଁ । ତଥାପି, ଯେବେ ମନୁଆଁ ମନେପଡ଼େ, ତମର କଥା ମୁଁ ଭୁଲିଯାଏ, ଅବେଳାରେ ଛୁଟିଆସେ । ମନୁଆଁକୁ ଛାତିରେ ଧରି ଟିକିଏ ଶାନ୍ତି ପାଏଁ । ତେମେ ଘରକୁ ଫେରିବା ଆଗରୁ ମୁଁ ପୁଣି ଫେରିଯାଏ । ଆଜିବ ଫେରି ଯାଇଥାନ୍ତି । ମାଉସୀ ମତେ ଅଟକାଇଲେ ।

ପଚାରିଲି, ମନୁଆଁକୁ ଦେଖିବାକୁ ଧାଇଁ ଆସିଥିଲ ତ ଏ ସବୁ ଜିନିଷ କାହିଁକି ଆଣିଛ ? ଏତିକରେ କ'ଣ ଆମର ଦୁଃଖ ଯିବ, ଦିନ ସରିବ ?

ହସି ମାରିଲି । କେଡ଼େ ନିର୍ବୋଧ ଏ ପୁରୁଷ । ଖଣ୍ଡେ ଶାଢ଼ୀ, କାନ୍ଦିଏ କଦଳୀ, ଖଣ୍ଡିଏ ଜାମା ଦେଇ ମୋର ପଥର ମନକୁ ତରଳାଇବାକୁ ଇଚ୍ଛା କରୁଛି । ମୋ ମନରେ ତାଙ୍କ ପ୍ରତି ସନ୍ଦେହର ଯେଉଁ ଗହୀରା ଗାର ଖୋଳିହୋଇଛି, ମଲାଯାଏ ସେ ଗାର ଲିଭିବ ନାହିଁ ।

ସେ କହିଲେ, ନୂଆଉ, ତମର ମନେ ନାହିଁ କି, ମନୁଆଁ ପେଟରେ ଥାଏ, ଦୃ ତୁ-ବର୍ଷାରେ ଭିଜି ବାରିଆଡ଼ ଟୁବ ଉପରେ ନିଜ ହାତରେ ତେମେ କାଠିଆ କଦଳୀ ପୁଅଟିଏ ପୋତିଥିଲ । ଭିଜ ନାହିଁ ବୋଲି ଯେତେ ମନା କଲି ତେମେ ଶୁଣିଲ ନାହିଁ । ସେହି ଗଛର ଏ ଫଳ । କେତେ ଲୋକ ଲୋଭେଇଥିଲେ, ଟଙ୍କାର ଲୋଭ ଦେଖାଇଥିଲେ, କାହାକୁ ଦେଇ ନାହିଁ ।

ଉତ୍ତର ଦେବାକୁ ଭାଷା ପାଇଲି ନାହିଁ । ବିଜୁଳି ପରି ଗତ କଥା ମୋର ମନରେ ଖେଳିଗଲା । ଗଳା ବନ୍ଦ ହୋଇଆସିଲା ।

କହିଲି ରହି ରହି, ପୁରୁ, ଲୋକଙ୍କର କଥା କଅଣ ତମ କାନରେ ବାଜେ ନାହିଁ ?

ସେ ସାମାନ୍ୟ ହସିଲେ । କହିଲେ, କାନରେ ହାତ ଦେଇ ରହିବା ଛଡ଼ା ଅନ୍ୟ ଗତି ନାହିଁ । ଘଟଣା ଯେପରି ଘଟିଲା, ଶୁଣିବା ଲୋକଙ୍କ କଥା ପଚୁରେ କିଏ, ଆଖିରେ ଦେଖିବା ଲୋକେ ମଧ୍ୟ ବିଶ୍ୱାସ କରିବେ । କିନ୍ତୁ, ଦୁନିଆ ଲୋକଙ୍କ ସଙ୍ଗେ ସମାନ ହୋଇ ତେମେ ଯେ ବିଶ୍ୱାସ କଲ, ଏହାଠାରୁ ବଳି ଅଧିକ ଆଶ୍ଚର୍ଯ୍ୟର କଥା ଆଉ କଅଣ ହୋଇପାରେ ?

ଦିନ ଦିନକର ଘଟଣା ମନକୁ ଆସିଲା । ଭିତରେ ଭିତରେ ଜଳିଗଲି । ତମ୍ପସାପ ପରି ଗର୍ଜିଉଠି କହିଲି, ତେବେ ସୁର ଆଜି ଭଲେଇ ହୋଇ ଏପରି କହୁଛ ମୋ ଆଗରେ ? ତମର ଜିଭ ଓଲଟୁଚ୍ଛି କପରି ? କ'ଣ ବିଶ୍ୱାସ କଲି ମୁଁ ଜାଣେ ନାହିଁ; କିନ୍ତୁ ମୋର ଦୃଢ଼ ଧାରଣା, ଏହା ଭିତରେ ନିଶ୍ଚୟ ଗୋଟାଏ ରହସ୍ୟ ଅଛି । ସେ ରହସ୍ୟ ଜାଣିବାର ଉପାୟ ଆଉ କାହାର ନାହିଁ । ଜାଣ ତୁମେ ଓ ଜାଣିଥିବେ ଭଗବାନ, ଯିଏ ଦିନରାତି କରୁଛନ୍ତି । ଯାହାଙ୍କ ଉପରେ ତେମେ ଦାଉ ସାଧୁଛ, ତାଙ୍କର ଅସ୍ମାଟା ଆଜି ଆକାଶ ପବନରେ କହି ବୁଲୁଥିବ ସତ କଥାଟା କଅଣ ! ସୁର, ଛାତିରେ ହାତ ଦେଇ ମୋର ଆଖିକି ଚାହିଁ ତେମେ କହି ପାରିବ, ମୋ ପକ୍ଷରେ ଅବିଶ୍ୱାସ କରିବାର କୌଣସି କାରଣ ନାହିଁ ?

ତାଙ୍କ ଆଡ଼କୁ କଟମଟ କରି ଚାହିଁଲି ।

ସେ ମୋରି ଆଡ଼କୁ ଅନାଇଁ ନଇଁଲା ସ୍ୱରରେ କହିଲେ, କାହିଁକି କହିବି ନାହିଁ ? ତେମେ ବୋଧହୁଏ ଛୋଟ ଛୋଟ କେଇଟା ଘଟଣାକୁ ଗଣ୍ଠି କରି ଧରିଛ । ସେଥିପାଇଁ ତେମେ ଦାୟୀ ।

ବିବ୍ରତ ହୋଇ ପଚାରିଲି, ମୁଁ ଦାୟୀ ? କି ସାହସରେ ଏପରି କଥା ଭୁଣ୍ଡିକୁ ଆଣୁଛ ସୁର ? ତମର ବ୍ୟବହାର ଓ ଢଙ୍ଗଢାଙ୍ଗରେ ଯେଉଁ ତ୍ରୁଟି ମୁଁ ଯେବେ ଦେଖିଛି, ସବୁ ହସିକରି ଉଡ଼ାଇ ଦେଇ ନାହିଁକି ? କାଳେ ତମ ମନରେ କଷ୍ଟ ହେବ, କାଳେ ତେମେ ଦୁଃଖିତ ହେବ, ସେଇଥିପାଇଁ ତମର ଭୁଲଭ୍ରାନ୍ତିକୁ ହସରେ ଉଡ଼ାଇଦେଇଛି । ଛୋଟ ଭାଇଟି ପରି ତମକୁ କେତେ ଆଦର କରିଛି, କେତେ ସ୍ନେହ କରିଛି ।

ସୁର କହିଲେ, ଭଲ କରି ଭାବି ଦେଖ, ଯାହାକୁ ଛୋଟ ଛୋଟ ଭୁଲ ବୋଲି ଆଜି କହୁଛ, ଯାହାକୁ ତେମେ ହସରେ ଉଡ଼ାଇ ଦେଇଛ ବୋଲି କହୁଛ, ସେ ସବୁ ତମ ବୁଝିବାର ଭୁଲ । ତମରି ଗୋଡ଼ତଳେ ତମର ଛୋଟ ଭାଇଟି ପରି ମୁଁ ବରାବର ମୁଣ୍ଡ ନୋଇଁଛି, ଏ କଥା ତ ତୁମେ ଅସ୍ୱୀକାର କରିପାରିବ ନାହିଁ ? ବୋଧହୁଏ ଭୁଲି ଯାଇ ନାହିଁ, କେଡ଼େ ଆଦରରେ ତେମେ ମୋତେ ତଳୁ ଉଠାଇ ଗେଲରେ ଚାପୁଡ଼ା ମାରିଛ, ଆଉ କହିଛ,—ନା, ତେମେ ନିଜେ ମନେ କର ! ତଥାପି ତେମେ ମୋତେ ଅବିଶ୍ୱାସ କରିବାକୁ ସାହସ କଲ ?

ଦୀର୍ଘ ନିଶ୍ୱାସ ଛାଡ଼ିଲି । ତଳୁ ଉଠାଇ ସ୍ନେହରେ ନୁହେଁ, ସହାନୁଭୂତିରେ, ତାଙ୍କ ମନରୁ କୁଭାବନା ତଡ଼ି ଦେବାକୁ ଗାଲରେ ଚାପୁଡ଼ା ମାରି ଗେହ୍ଲେଇ ଗେହ୍ଲେଇ କହିଛି, ଏଇ ଯେଉଁ ସରଗର ଚାନ୍ଦ ଦେଖୁଛ ସୁର, କେଡ଼େ ସୁନ୍ଦର କେଡ଼େ ନିର୍ମଳ, ତମରି ପାଇଁ ଠିକ୍ ସେମିତି ବୋହୂଟିଏ ଘରକୁ ଆଣିବି, ଯାହା ମୁହଁକୁ ସବୁବେଳେ ତେମେ ଚାହିଁ ବସିଥିବ ।

ସେ କହନ୍ତ, ସେପରି ବୋହୂ ତ ମୋ'ର ଲୋଡ଼ା ନାହିଁ ।

ପଚାରେଁ, ତେବେ ?

କହନ୍ତ, ଆହୁରି ଭଲ, ଆହୁରି ସୁନ୍ଦର ।

ପଚାରେଁ, କପରି ତେବେ ?

ମୋ ମୁହଁକୁ ଚାହିଁ ରହନ୍ତ । ତାଙ୍କ ମୁହଁ ରଙ୍ଗା ପଡ଼ିଯାଏ । ବାଆଁରେଇ ହୋଇ ମୁଁ ହସିଦେଇ କାମ ବାହାନାରେ ଅନ୍ୟ ଆଡ଼େ ଚାଲିଯାଏ । ମନେ ହୁଏ ସତେ କ ସୁର କହିଲେ, ଠିକ୍ ତମରି ପରି ନୂଆଉ ।

ଉତ୍ତେଜିତ ହୋଇ ମୁଁ କହିଲି, ଯେଉଁସବୁ ଛୋଟ ଛୋଟ ଘଟଣାର ଭିତର ଦେଇ ତମରି ମନର ଉତ୍ତେଜନା ଓ ଭାବ ଫୁଟିଉଠିଥିଲା ସୁର, ସେ ସବୁର ଅର୍ଥ ମୋତେ ଅଜଣା ନ ଥିଲା । ମୋ ପ୍ରତି ତମର ଲୋଭ ହୁଏ ତ ତମକୁ ଏପରି ଗୋଟାଏ କାମ କରିବାରେ ସାହସ ଦେଇଥିଲା । ଆମ ସମାଜର ଯେଉଁ ପୁରୁଣା ପ୍ରଥା, ଭାଇର ମରଣ ପରେ ତାର ବିଧବା ସ୍ତ୍ରୀକୁ ଛୋଟ ଭାଇ ପୁଣି ବିବାହ କରିପାରିବ, ସେଇ ପ୍ରଥାଟା ତମ ମନରେ ଲୋଭର ନିଆଁ ଜାଳୁଥିଲା । ହୁଏ ତ ତୁମେ ତୁମର ଭାଇର ଜୀବନ ନେବ ବୋଲି କେବଠୁଁ ବିଚାର କରିଥିଲ । ଏ କଥା କେତେ ଲୋକଙ୍କ ମୁହଁରୁ ମୁଁ ଶୁଣିଥିଲି; କିନ୍ତୁ, ହସରେ ଉଡ଼ାଇଦେଇଛି । ତମର ପ୍ରକୃତିପାଇଁ ନୁହେ ସୁର, ତମ ଭାଇଙ୍କର ତମ ପ୍ରତି ସ୍ନେହପାଇଁ । ମୁଁ ବୁଝି ପାରୁଥିଲି, ତମକୁ ସେ ପ୍ରାଣରୁ ବଳି ଭଲ ପାଉଥିଲେ । ତମ ନାମରେ କେହି କେବେ କିଛି କହିଲେ, ସେ ହସି ଉଡ଼ାଇ ଦେଉଥିଲେ । ଏମିତି ଯେଉଁ ସ୍ନେହୀ ଭାଇ, ତାଙ୍କର ଅମଙ୍ଗଳ ଚିନ୍ତା କରିବାକୁ କେବେ ତୁମର ମନ ହୁଅନ୍ତା ନାହିଁ । କିନ୍ତୁ ସୁର, ମୁଁ ହୁଏତ ଭୁଲ ବୁଝିଥିଲି । ବାପ ଘରକୁ ଆସିବାର ଦିନ କେଇଟା ଭିତରେ ତେମେ ସୁବିଧା କରିନେଲ । ଯେଉଁ ସୁବିଧା କ ମୋ ଥିବା ଅବସ୍ଥାରେ ତେମେ ପାଇପାରି ନ ଥିଲ । କାରଣ, ତେମେ ଜାଣ, ତମର କୌଣସି କୁତ୍ସିତ ପ୍ରସ୍ତାବରେ ମୁଁ କେବେ ରାଜି ହୋଇପାରନ୍ତି ନାହିଁ । ସେଇଥିପାଇଁ—

କେତେ କଣ କହି ଥାଅନ୍ତ, ମୁଁ ଜାଣେ ନାହିଁ । ମୋର ସ୍ୱାମୀଙ୍କର ମରଣ ଖବର ଓ ସୁରଙ୍କ ନାମରେ ଦୁର୍ନାମ ଶୁଣିଲା ପରଠାରୁ ଏମିତି କେତେ କ'ଣ ମୁଁ ନିତି ନିତି ଭାବୁଛି । ମନର କ୍ରୋଧରେ ନିଜେ ପୋଡ଼ିଜଳି ଛଟପଟ ହୋଇଛି । ଦୁନିଆଁରେ ଆଉ କେହି ମୋର ଆପଣାର ନାହିଁ । କାହାରି ପାଖରେ ମୁଁ ମନ ଖୋଲି କିଛି କହିପାରିବି ନାହିଁ । ମନର ଭାବନା ମନରେ ମରେ । ସନ୍ଦେହରେ କେତେ ଭୟଙ୍କର ଚିତ୍ର ମୋର ଆଖିରେ ଦେଖାଯାଏ । ଚମକିଉଠେ । ମନକୁ ସାନ୍ତ୍ୱନା ଦେଇପାରେ ନାହିଁ । କାନ୍ଦେ, ଆଖିର ଲୁହରେ ଦୁଶ୍ଚିନ୍ତା ଭସାଇ

ଦେବାକୁ । ସୁରଙ୍କ ପ୍ରତି ମନରେ ପ୍ରତିହିଂସା ନିଆଁ ଜଳିଉଠେ । ଯିଏ ମୋର ସ୍ୱାମୀର ଜୀବନ ନେଇଛି, କେବଳ ମୋତେ ପାଇବା ଲୋଭରେ, ତାର ଜୀବନ ମୁଁ ନିଶ୍ଚୟ ନେବି, ମୋତେ ଏଇ ନିଜଁଛଣା ଦେହର ଲୋଭ ଦେଖାଇ । ପୁଣି ଭାବେ, ଛିଃ, ସତ କଥା ତ ଜାଣିଲି ନାହିଁ, ଯାହା ଉପରେ ମୋର ସନ୍ଦେହ ହେଉଛି, ହୁଏ ତ ସେ ନିର୍ଦ୍ଦୋଷ ।

୪

ଅପସରି ରହେ ସୁରଙ୍କ ପାଖରୁ ।

ଦୁର୍ନାମ ରଟିଲା ସଂସାରସାରା, ଦିଅର ସଙ୍ଗେ ସଲା ହୋଇ, ଦିଅର ହାତରେ ସ୍ୱାମୀର ଜୀବନ ନେଇଛି । ଘଟଣାଟା କାଳେ ଜଣାପଡ଼ିଯିବ, ସେଇଥି-ପାଇଁ କୁଆଡ଼େ ଆଗରୁ ମୁଁ ବାପଘରକୁ ଚାଲି ଆସିଥିଲି ।

ଏପରି ଦୁର୍ନାମ ଶୁଣି, ନିର୍ଦ୍ଦୋଷ ହେଲେ ମଧ୍ୟ, ନିଜକୁ ଦୋଷୀ ମଣେ, କପରି ଲାଜମାଡ଼େ । ସୁରଙ୍କ ମୁହଁକୁ ଚାହିଁବାକୁ ମନ ହୁଏ ନାହିଁ । ତାଙ୍କୁ ଦେଖିଲେ ବିରକ୍ତ ହୋଇ ମୁଁ ଦୂରରୁ ତଡ଼ିଦିଏ । କିଏ କୁଆଡ଼ୁ ଚାହିଁଛି କି ? ଲୋକେ ଦେଖିଲେ ସର୍ବନାଶ ହେବ । ଦୁର୍ନାମର ନିଆଁ ଅଧିକ ତେଜରେ ଜଳିଉଠିବ ।

ବେଳେ ବେଳେ ଭାବେ, ସୁରଙ୍କୁ ଅନେକ କଥା ପଚାରିବି, କିନ୍ତୁ ପଚାରିବାର ସୁବିଧା ପାଏ ନାହିଁ । ଆଜି, ଏହି ଅନ୍ଧାର ରାତିରେ, ରାତି ଅଧରେ, ଯେତେବେଳେ ଗାଁ ସାରା ନିଦରେ ଅଚେତନ, ସୁରଙ୍କ ପାଖରେ ମନର ଲୁଚିଲା କଥା ଖୋଲି ହୋଇଗଲା । କ'ଣ କହୁଥିଲି ମୋର ଜ୍ଞାନ ନ ଥିଲା ।

ସୁର ବାଧା ଦେଇ ଟିକିଏ ଜୋର୍‌ରେ କହି ଉଠିଲେ, ସେତିକି ଥାଉ ନୂଆଉ, ବେଶି ଗୁଡ଼ାଏ ଗପ ନାହିଁ । ତମ ମୁଣ୍ଡକୁ ପିତ୍ତ ଉଠିଛି, ସେଇଥି ପାଇଁ ମନର ଖରାପ ଧାରଣାଗୁଡ଼ା ପଦାକୁ ଫୁଟି ବାହାରୁଛି । ଦୁଃଖ ବେଳରେ ଅପ୍ରିୟ କଥା କହି ମନରେ ଅଧିକ ଦୁଃଖ ଆଣିବାକୁ ମୁଁ ଉଚିତ ମନେ କରୁନାହିଁ । ତଥାପି, ନୂଆଉ, ଗୋଟିଏ କଥା ନ କହି ମୁଁ ରହି ପାରୁନାହିଁ ।

ସୁରଙ୍କର ଆଖିରୁ ଲୁହଧାର ଗଡ଼ିଆସିଲା । ତାଙ୍କର ମୁହଁ ରୁକ୍ଷ ଦିଶିଲା । ସେ କଟମଟ କରି ମୋ ମୁହଁକୁ ଅନାଇ ରହିଲେ । ମନରେ ତାଙ୍କର ଝଡ଼ ତୋଫାନ ଉଠୁଥିଲା । ମୁଁ ଭୟଭୀତ ହେଲି । ନିଜକୁ ସମ୍ଭାଳି ଥରଥର ସ୍ୱରରେ ସେ କହିଲେ, ମୋତେ ସନ୍ଦେହ କରିବାକୁ ସାହସ କରୁଛ ? ଭୁଲି ଯାଇଛ କି, ତମର ସ୍ୱାମୀ ହେବା ଆଗରୁ ସେ ମୋର ଭାଇ । ତେମେ ଆଜି ବିଧବା, ମନରେ ତଟକା ଦୁଃଖର ନିଆଁ ଦାଉ ଦାଉ ଜଳୁଛି । ସମୟ ଗଡ଼ିଚାଲିବ । ତମର ଦୁଃଖର

ଉଦ୍ଧ ବା କମିବ । ତେମେ କାଲି ପୁଣି ନୂଆ ସଂସାର କର, ନୂଆ ସ୍ୱାମୀ ପାଇ
ପାରିବ । ଏତିକ ବୁଝି ପାରୁନାହିଁ, ମୋର ଭାଇକୁ କିଏ ମୋତେ ଫେରାଇ ଦେବେ
ନାହିଁ । ଚିରଦିନ ଏକୁଟିଆ ହୋଇ ମୁଁ ସଂସାରରେ ବୁଲିବି ।

ମୋତେ କାଳୁସ୍ଥ କରି ସୁରି ଅତି ନିର୍ଦ୍ଦୟ ଭାବରେ ବଜ୍ର ପରି ଟାଣ କଥା
କହିଗଲେ । ଶୋଇଲା ପିଲାକୁ ବେତ ମାରିଲା ପରି ମୁଁ ଚମକିଉଠିଲି । ଛିଡ଼ାଇ
କରି ଠିଆ ହେଲି ।

ସେ ଭୁନ ହେଲେ । ମନୁଆଁଙ୍କୁ ଛାତିରେ ଯାକି ଧରି ପିଲାଟି ପରି କଇଁ
କଇଁ ହୋଇ କାନ୍ଦିବାକୁ ଲାଗିଲେ ।

ମୋର ଗୋଡ଼ରୁ ମୁଣ୍ଡଯାଏ ଥରିଉଠିଲା । ଭାବିଲି, ଏତେ ବଡ଼ ଆଘାତ
ମଣିଷ ମନରେ ମଣିଷ ଦେଇପାରେ ? ସୁରି ଯାହା କହିଲେ ମୋର ଯଦି ସେପରି
ଉଦ୍ଦେଶ୍ୟ ଥାଆନ୍ତା, ଆଜିକି ଦଶମାସ ହେବ ଏତେ ଦୁଃଖ କଷ୍ଟ ସହି ମୁଁ ମୋର
ସ୍ୱାମୀର ସ୍ମୃତିଚିହ୍ନକୁ ସମ୍ବଳ କରି ରହିଥାନ୍ତି କାହିଁକି ? ନୂଆ ସଂସାର କରିବାର ଇଚ୍ଛା
ଥିଲେ କ'ଣ କରିପାରି ନ ଥାନ୍ତି ? ପଙ୍କକୁ ଗୋଡ଼ ଖସାଇଥିଲେ ମୁଠାଏ ଖାଇବା
କି ଖଣ୍ଡେ ପିନ୍ଧିବାର ଅଭାବ ରହିନଥାନ୍ତା ନାହିଁ । ପାପର ଡାକରାକୁ ଗୋଡ଼ରେ
ଆଡ଼େଇ କାହା ପାଇଁ ମୁଁ କଣ୍ଟା ପୂର୍ତ୍ତି ବାଟରେ ଚାଲିଛି ? କାହା ପାଇଁ ?

ଦୁଃଖରେ ଢଳି ପଡ଼ିଲି କାନ୍ଥ ଉପରକୁ । କହିଲି, ତେମେ ଏଡ଼େ ନିଷ୍ଠୁର
ସୁରି, ତମର ଛାତି ଏଡ଼େ କଠିଣ ? ଏମିତି ଜଳିଲା କଥା-ବାଣ ମୋ ଉପରକୁ
ପକାଇବ ବୋଲି ତେମେ ଆଜି ଅପେକ୍ଷା କରି ରହିଥିଲ ? ମୋ ମନରେ ଏତେ
ବଡ଼ ଆଘାତ ଦେଇ ତେମେ କି ଆନନ୍ଦ ପାଇଛ ? ଭାବିଛ କି, ତମର ଟାଣ କଥା
ଶୁଣି ମୁଁ ତମରି ପାଖରେ ମନ ନୁଆଇଁବି ? ତମରି ହାତ ଧରି ତମରି ଘରଣୀ
ହୋଇ ତମରି ଘରକୁ ଯିବି ସଂସାର କରିବାକୁ ? ଯାହାର ସ୍ମୃତିକୁ ମୁଁ ପବିତ୍ର
ବୋଲି ମଣିଛି, ଯଦି କେବେ ଅବସ୍ଥାର ଚାପରେ ତାକୁ ଭୁଲି ସଂସାର କରିବା
ଆବଶ୍ୟକ ମଣେ, ଦୁନିଆରେ କ'ଣ ଆଉ କେହି ଲୋକ ନାହିଁ ?

କାନ୍ଦର ଉଦ୍‌ବେଗକୁ ଚାପି ଲୁହଭରା ଆଖିରେ ସୁରି କହିଲେ, ସେହି
କଥା ତ ମୁଁ କହୁଛି, ନୂଆଉ, ତମର ଇଚ୍ଛା ଯାହା ତୁମେ ସେଇଆ କରିବ ।
କେହି ବାଧା ଦେବେ ନାହିଁ । ସୁଖର ସାଥୀ ହୋଇ ଆନନ୍ଦ ଭିତରେ ମୋ ଭାଇର
ହାତ ଧରି ତେମେ ଆମ ଘରେ ଗୋଡ଼ ଦେଇଥିଲ । ଆନନ୍ଦ ମଝିରେ ମୋତେ
ଛଅନୋଟି ବର୍ଷ ସଂସାର କରିଛ । ଛଅନୋଟି ବର୍ଷ ତାଆର ସ୍ନେହ ସରାଗ ପାଇଛ, ତା
ହୃଦୟ ଚିହ୍ନିବାକୁ ଚେଷ୍ଟା କରିଛ । କିନ୍ତୁ ମନେ କଲ, ଯାହା ପାଖରେ ଏକୋଇଶି
ବର୍ଷ କଟାଇ ଆସିଲି, ହେଉ ପାଇଲା ଦିନୁ ସଂସାରରେ ଯେଉଁ ଜଣକୁ ମୁଁ ମୋର
ବୋଲି ଜାଣେ, ସ୍ନେହ ସୁହାଗ ଓ ଗେଲ୍ହାରେ ଯାହାର କୋଳରେ ପୂର୍ଣ୍ଣ

ଏକୋଇଶି ବର୍ଷ ସୁଖରେ ମୁଁ ବଢ଼ିଆସିଲି, ମୋଠାରୁ ତେମେ ତାକୁ ବେଶି ଭଲ ଚଞ୍ଚ ? ମୋଠାରୁ ତେମେ ତାକୁ ବେଶି ଭଲପାଅ ?

ତାଙ୍କର କଣ୍ଠ ରୁଦ୍ଧ ହୋଇ ଆସିଲା । କାନ୍ଦଣା ସ୍ୱରରେ ସେ କହିବାକୁ ଲାଗିଲେ, ଅଜ ମୋର ଭାଇ ନାହିଁ । କିଏ ଅଭାବ ମୋଠାରୁ ତେମେ ଅଧିକ ବୁଝିବ ? ଏକୁଟିଆ ଘର ଭିତରେ ଯୁଅଡ଼େ ଗୃହିଁଲେ ମୋ ଭାଇର ରୂପ ଦଶିଯାଏ । ସବୁଥିରେ ତା ହାତର ପରଶ ଲାଗିଛି । ରାତି ଅଧରେ ଡାକ ଛାଡ଼େ ମୋ ଭାଇର ନାଁ ଧରି । ମନେ ହୁଏ, ଯେମିତି ଆଗ ପରି ମୁଁ ବେମାର ପଡ଼ିଛି । ରାତି ରାତି ଅନିଦ୍ରା ହୋଇ ମୋତେ କୋଲରେ ପୂରାଇ ସେ ବସିଛି । ଆଖି ଖୋଲେ, ଭାଇକୁ ଦେଖେ ନାହିଁ, କାନ୍ଦେ, ମନଇଚ୍ଛା କାନ୍ଦେ ।

ଟିକିଏ ରହି ପୁଣି କହିଲେ, ଏକୋଇଶି ବର୍ଷର ସ୍ନେହ ସବାଗର କଥା, ମନ ଭିତରେ ଯିଏ କାୟା ମେଲାଇ ବସିଛି, କଣ କହି ତମକୁ ବୁଝାଇ ପାରିବି, ଦେଖାଇ ପାରିବି ନୁଅଉ ? ଭାଇ ମରିଛି । ବାହାରେ ତାର ଜବାବ୍ ପାଏ ନାହିଁ । ମୋର ଭିତରେ ସେ କହୁଉଠେ, କାନ୍ଦୁଛୁ କାହିଁକି ରେ, ତତେ ଛାଡ଼ି ମୁଁ କଣ ରହିପାରିବି ? ତୋର ପାଖରେ ମୁଁ ସବୁବେଳେ ଅଛି, ସବୁବେଳେ ରହିବି । ପିଲାଟି ହନୁ ଯେମିତି ତତେ ସ୍ନେହ କରିଥିଲି, କୋଲରେ କାଖରେ ପାଳି ଆଣିଥିଲି, ସେମିତି ତୁ ଏଇ ମନୁଆଁକୁ ମଣିଷ କରିବୁ । ସେଇ ତୋର ପୁଅ, ସେଇ ତୋର ଭାଇ । ଟିକିଏ ରହି ପୁଣି କହିଲେ, ଅସ୍ଥିର ହୋଇ ମିନୁଆଁକୁ ଦେଖିବାକୁ ଧାଇଁଆସେଁ, ମନୁଆଁ, ଯେ ମୋର ଭାଇ, ଯେ ମୋର ପୁଅ । ତେମେ ନିଷ୍ଠୁର । ମୋର ଆନନ୍ଦରେ ବାଧା ଦିଅ । ସନ୍ଦେହକୁ ରୂପ ଦେଇ ନିଜର ଭାବନାରେ ନିଜେ ଡରି ଉଠ— ।

ସୁର ଆଖିରୁ ଲୁହ ପୋଛି ଚୁପ ରହିଲେ ।

ମୁଁ ବସିପଡ଼ି କାନ୍ଦିବାକୁ ଲାଗିଲି । ହେଲି କହି ଦେବାକୁ, ମୋର ସବୁ ଦୋଷ କ୍ଷମା କର ସୁର, ତମକୁ ମୁଁ ମିଛଟାରେ ସନ୍ଦେହ କରିଛି । ଲୋକଙ୍କ କଥାରେ ଭାସିଯାଇଛି । ଚାହିଁ ମଧ୍ୟ ଚାହିଁପାରି ନାହିଁ । ଜାଣେ, ତମର ଭାଇ ତମକୁ କେପରି ଭଲପାଅନ୍ତି । ଜାଣେ, ତାଙ୍କର ପାଇଁ କେପରି ତୁମର ପ୍ରାଣ କାନ୍ଦେ ।

ଚମକି ଗୃହିଁଲି ସୁରଙ୍କ ମୁହଁକୁ । କାଲି ପରି ମତେ ସବୁ ଲାଗୁଥାଏ । ଛି, ଛି, କାହା କଥାରେ ପଡ଼ି କାହାକୁ ମୁଁ ଅବିଶ୍ୱାସ କରୁଛି ?

ଖେଳିଗଲା ମୁଣ୍ଡ ଭିତରେ ଆଉ ଗୋଟିଏ ଭାବନା । ଘଟଣାଟା ଘଟି ସାରିଲା ପରେ ସମସ୍ତେ ଅନୁତାପ କରନ୍ତି, ବିଶେଷତଃ ଯେତେବେଳେ ଉଦ୍ଦେଶ୍ୟଟା ସଫଳ ହେବାର ଆଶା ଦେଖା ନ ଯାଏ । ଆଜି ହୁଏତ ସେଇଥିପାଇଁ ସୁର

ଏକୋଇଶି ବର୍ଷ ଘନିଷ୍ଠତାର ଦ୍ୱାହି ଦେଇ କଥା କହୁଛନ୍ତି । ଏକୋଇଶି ବର୍ଷ ତ ସ୍ମୃତିର କଥା । ସତୁରି ବର୍ଷର ଘନିଷ୍ଠତା ପରେ ଭାଇ ପୁଣି ସ୍ୱାର୍ଥ ପାଇଁ କ୍ଷଣିକ ଉତ୍ତେଜନାରେ ଭାଇର ବେକରେ ଛୁରୀ ଦିଏ । ଦୃଷ୍ଟାନ୍ତର ଅଭାବ ନାହିଁ ।

ସୁରଙ୍କର କଥା, ତାଙ୍କର କାନ୍ଦ, ତାଙ୍କର ବ୍ୟବହାର ମୋତେ ଛଳନା ପରି ଲାଗିଲା । ଗୋଟିଏ ମାୟାର ଫାନ୍ଦ ପାତି ଆମୁକୁ ସବୁ ବାନ୍ଧି ଦେବାକୁ ସେ ଚାହାନ୍ତି । ଥରେ ଯଦି ଆମର ମୁହଁ ସେ ବନ୍ଦ କରିପାରିବେ, ଆଉ ବେଳରେ ସେ ତାଙ୍କ ମନର କଥାଟି ଖୋଲି କହିବେ । ସେତେବେଳକୁ ଅନ୍ୟ ଉପାୟ ନ ଦେଖି ନିଜକୁ ତାଙ୍କର ଇଚ୍ଛା ପାଖରେ ବଳି ଦେବାକୁ ପଡ଼ିବ ।

କାନ୍ଦଣା ସ୍ୱରରେ ମୁଁ ପଚାରିଲି, କାହିଁକି ଆଉ ତୁମେ ଏତେ ବକୁଛ ସୁର, ତେମେ କଅଣ ଚାହଁ, ମୋତେ ଖୋଲିକରି କହ । ମୁଁ ଯାହା ଚାହେଁ ତୁମେ ଭଲ କରି ଜାଣ ।

ସୁର କହିଲେ, ମୁଁ ତମଠାରୁ କିଛି ଚାହେଁ ନାହିଁ । ଯେତେ ଦିନ ଯାଏ ନିଜକୁ ତେମେ ମନୁଆଁର ମା ବୋଲି ପରିଚୟ ଦେଉଥିବ, ସେତେଦିନ ଯାଏ ତମର ସମ୍ପର୍କ ମୁଁ ଛିଣ୍ଡାଇ ପାରିବ ନାହିଁ ।

ତାଙ୍କର କଣ୍ଠର ଦୃଢ଼ତାରେ ମୁଁ ଦବିଗଲି । ବିନୀତ ହୋଇ କହିଲି, ତୁମେ ଅନ୍ତତଃ ଏତିକି ତ କରିପାରିବ, ମନୁଆଁର ବୁଦ୍ଧିସୁଦ୍ଧି ହେବା ଯାଏ, ମନୁଆଁ ନିଜେ ଭଲ ମନ୍ଦ ବୁଝିବାର ଶକ୍ତି ପାଇବା ଯାଏ ତେମେ ଦୂରେଇ ରହିବ । ତାଆର ବୟସ ହେଲେ ସେ ଯଦି ନିଜେ ଦାଦି ବୋଲି ଖୋଜି ତମରି ପାଖକୁ ଯାଏ, ସେତିକି ବେଳେ ତମ ଦାଦି ସ୍ନେହ ସବୁ ତାରି ଉପରେ ଅଜାଡ଼ିଦେବ ।

ଅକୁଳ ଆଖିରେ ତାଙ୍କୁ ଚାହିଁ ରହିଲି ।

କଅଣ ଭାବି ଗମ୍ଭୀର ହୋଇ କହିଲେ, ତମର ଏପରି ନିଷ୍ଠୁର ଅନୁରୋଧ ମୁଁ ରଖିପାରିବ ନାହିଁ । ମୋ ଭାଇର ଘର ଅଛି, ଗୁଣ୍ଡେ ମାଣେ ଯାହା ହେଉ, ମୁଣ୍ଡଝାଳ ତୁଣ୍ଡରେ ମାରି ସେ ଯେଉଁ ସମ୍ପତ୍ତି କରି ଯାଇଛି, ସେତକ ବି ସେମିତି ରହିଛି । ତାରି କୋଳର ପିଲା ପରର ଚାଳ ତଳେ ଆଶ୍ରା ନେଇ ଉପାସ ଭୋକରେ ଦିନ କାଟିବ, ଏ କଥା ମୁଁ ଦେଖିପାରିବ ନାହିଁ, ସହି ପାରିବ ନାହିଁ ।

ତାଙ୍କର ଉଦ୍ଦେଶ୍ୟ ବୁଝିଲି । କହିଲି, ତେମେ କଥାଟା ଯୁଆଡ଼କୁ ଟାଣି ନେଉଛ ମୁଁ ବେଶ୍ ବୁଝିପାରିଛି । ମନୁଆଁର କଷ୍ଟ ହେବ ଏଇ ଅଗ ଧରି ତେମେ ଚାହଁ ମନୁଆଁ ତମ ଘରକୁ ଯିବ ।

ବାଧା ଦେଇ କହିଲେ, ମୋ ଘରକୁ କାହିଁକି, ତାର ନିଜ ଘରକୁ ସେ ଯିବ ।

କଥାରେ କାନ ନ ଦେଇ ମୁଁ କହିବାକୁ ଲାଗିଲି, ଆଉ, ମନୁଆଁ ତ ଉଡାଣି ପିଲା, ସେ ଗଲେ ମୁଁ ମଧ୍ୟ ତା ସଙ୍ଗରେ ଯିବ ।

ପୁଣି କହିଲେ, କେତେ ଭଲ ହେବ । ତେମେ ଯିବ, ତମ ସଂସାର କରିବ । ତମରି ଜମା ତମରି ଘର ଦେଇ, ନିଶ୍ଚିନ୍ତ ହୋଇ ମୁଁ ମୋର ଚାଲିଯିବି ସିଧାସିଧା, ଯେମିତିକି ମୋତେ ମୋର ଦୁଇ ଆଖି ଟାଣିନେବ ।

ପଚାରିଲି, ଫେରିବି ନାହିଁ ?

କହିଲେ, ତମକୁ ଅପମାନ ହେବ ବୋଲି ତେମେ ଯଦି ନ ଚାହଁ, ଫେରିବି ନାହିଁ । ଭଗବାନ୍ ହାତଗୋଡ଼ ଦେଇଛନ୍ତି । ନିଜର ପେଟ ପୋଷି ଯଦି ଚାରି ପଇସା ଦୂରରେ ଥାଇ ମନୁଆଁ ପାଇଁ ପଠାଇପାରେ, ତେବେ କେଜାଣି ବା ଭାଇର ସ୍ନେହ ଶୁଝାଇ ପାରିବି ।

କହିଲି, ଭାଇର ସ୍ନେହ ଶୁଝାଇ ପାରିବ ? ନା, ନା, ଯେଉଁ କାମ ତେମେ କରିଛ, ଯେଉଁଥିପାଇଁ ଦିନରାତି ତେମେ ଅନୁତାପ କରୁଛ, ତାରି ପ୍ରାୟଶ୍ଚିତ୍ତ କରିବ ଦୂରରେ ଥାଇ ! ସୁର, ଏତେ ଗୁଡ଼ାଏ ଚାଲାଖିରେ କଥା କହି ପରକୁ ଠକିବାକୁ ଚେଷ୍ଟା କର ନାହିଁ । ତମକୁ ମୁଁ ଭଲକରି ଚିହ୍ନେ । ତେମେ ଯାଅ, ମୋ ଆଗରୁ ଚାଲିଯାଅ ସୁର, ଆଉ, ଯଦି କେବେ ପୁରୁଷ ସୁଆଗ ଦେଖାଇବା ବାହାନାରେ ତେମେ ପୁଣି ମୋ ଆଗକୁ ଆସ, ସେଇଦିନ ତମରି ନାମରେ ମୁଁ ବିଷ ଖାଇବି । ସେଦିନ ବୁଝିବ, ଗୋଟାଏ ପାପକୁ ଘୋଡାଇବାକୁ ଯାଇ ଆହୁରି କେତେ ପାପ ତମକୁ କରିବାକୁ ପଡ଼ିବ ।

କାନ୍ଥ ପାଖରୁ ଉଠିଯାଇ ସୁରଙ୍କ ଖଟିଆ ଉପରୁ ପିଲାଟାକୁ ଟାଣିଆଣିଲି । ଖଟିଆ ନିଦ ଭାଙ୍ଗିଗଲା କି କ'ଣ, ସେ ପାଟିକରି କାନ୍ଦି ଉଠିଲା । ତା ମୁହଁରେ ହାତ ଦେଇ ଘର ଭିତରକୁ ପଶିଆସିଲି ।

ସୁର କାଠପିତୁଳା ପରି ଠିଆହୋଇ ରହିଲେ । କେତେବେଳକେ କହିଲେ, ହଉ ନୂଆଉ, ଯାଉଛି, ସତ ମିଛ ବୁଝିବାକୁ ଉପରେ ଭଗବାନ୍ ଅଛନ୍ତି ।

ମୁହଁ ଫେରାଇଲି ଦୁଆର ଆଡ଼କୁ । ବୋଉ ଥକ୍କା ହୋଇ ଦ୍ୱାରବନ୍ଧରେ ବସିଛି । ସୁର ଧୀରେ ଧୀରେ ତାଟି ସେପାଖକୁ ଚାଲି ଯାଉଛନ୍ତି ।

ରାତିଅଧ । ଆକାଶରେ ବହଳ କଳାଧୁମର ମେଘର ଚାନ୍ଦୁଆ, ତାରାଟିଏ ବି ଦିଶୁନାହିଁ । କଳା ଜଟିମିଟି ଅନ୍ଧାର । ଥଣ୍ଡାଳିଆ ପବନର ବେଗ ବଢ଼ିଛି ।

ସୁର ଅନ୍ଧାର ଭିତରେ ଛପି ଗଲେ ।

ସୁର ଚାଲିଗଲେ । ଜାଣିଲେ ନାହିଁ ତ ମୋର ଛାତିରେ କି ଦାରୁଣ ଆଘାତ ଦେଇ ସେ ଚାଲିଗଲେ ! ମଣିଷ ଉତ୍ତେଜିତ ହେଲେ ହିତାହିତ ଜ୍ଞାନ ହରାଇ ବସେ । ସେ ଅନ୍ଧ ପରି ଯାହା କରିଯାଏ, ଯାହା କହିଯାଏ, ସେଥିପାଇଁ ତାକୁ ଅନୁତାପ ନିଆଁରେ ସନ୍ତୁଳି ହେବାକୁ ପଡ଼େ । କିନ୍ତୁ ଯେତେ କଷ୍ଟ, ଯେତେ ଯନ୍ତ୍ରଣା ଭୋଗିଲେ ତ ଆଉ ଗତକଥା ଫେରିଆସେ ନାହିଁ ? ଭବିଷ୍ୟତ୍ ପାଇଁ

ଗୋଡ଼ ଖସି ଗୁଳିବାକୁ ସେ ଶିଖେ । ହେଲେ, ଅତୀତରେ ଯେ ଦିନେ ଗୋଡ଼ ଖସି ସେ ପଡ଼ିଥିଲା, ତାହାର ଦେହର ପରାଗ ଲିଭିଥିଲେ ମଧ୍ୟ ମନର ପରାଗ ଲିଭେ ନାହିଁ ।

ସୁର ଗୁଲିଗଲେ ଅଖିଆ ଅପିଆ ।

ଅନ୍ଧାର ରାତି । ରାତି ଅଧ । ଖିଲ ବାଟ । କଣ୍ଟା ଝଣ୍ଟା । ନନୁଆଁଣି । ଭୟ ଭ୍ରାନ୍ତ । ନ ଖାଇ ନ ପିଇ ମୋ ପାଇଁ ଅପେକ୍ଷା କରି ବସିଥିଲେ । ସୁର, ମୋର ଦିଅର, ମୋରି ସ୍ୱାମୀର ଏକା ନାହିଁ ଦଖଣ୍ଡର ଭାଇ । କାହିଁକି ତାକୁ ତଡ଼ି ଦେଇଛି । ଲୋକଙ୍କର କଥା, ନିଜ ମନର ଝାପସା ସନ୍ଦେହ, ଦୁର୍ନାମ ! ସତ ମିଛ ଜଣା ନାହିଁ । ତଥାପି ଏତେ ନିଷ୍ଠୁର ବ୍ୟବହାର କଲି କାହିଁକି ?

ସେମିତି କଳା ମିଚିମିଚି ଅନ୍ଧାର ଭିତରେ ଗ୍ରାମ ଉପରେ ପିଲାଟିକୁ ଯାକିଧରି ଆଖିରୁ ପୋଛିଲି ଲୁହ । ମନେ ହେଲା, ଅନ୍ଧାର ଭିତରୁ ଛପି ଛପି ବାହାରି ଆସୁଛନ୍ତି ମୋର ସ୍ୱାମୀ । ମୁହଁରେ ସରାଗ ନାହିଁ । କହୁଛନ୍ତି, ଏତେ ରାତି ହେଲା, ପିଲାଟା କାହିଁକି ଫେରିଲା ନାହିଁ, ଭୁଲସି ? କେଉଁଠି କାଳେ ଉଝୁ ଚମକି ପଡ଼ିବ, ଯାଏ, ଦେଖେଁ—

ଡରୁ ଡରୁ କହେଁ, ମୋତେ ଏକା ରହିବାକୁ ଡର ମାଡ଼ିବ ।

କହନ୍ତି, ହଁ ସତରେ ତ । ତେମେ ଡବାରୁ ଜାଳି ବସି ଥା । ନୋହିଲେ, ଆସ, ଦିହେଁ ଯିବା । ନଲଟଣଟା ଲଗାଅ ତ !

ଯାଉଁ । ଅନ୍ଧାରକୁ ଛିନ୍‌ଛତର୍ କରି ଗମ୍ଭୀର ବଳରେ ଖେଳିଯାଏ ତାଙ୍କର ଡାକ । ରାତି ଅକାଶର ଗ୍ରାମ ଥରଉଠେ । ଅନ୍ଧାର ଭିତରେ ମିଚିମିଚି ଗୁହଁ ରହିଥାନ୍ତି କେତେ ତାରା ! ଫଡ଼ ଫଡ଼୍ ହୋଇ ପାଖ ବରଗଛ ଉପରକୁ ଉଡ଼ିଯାନ୍ତି ବାଦୁଡ଼ି । ଭୟରେ ଗୁପିଧରେ ତାଙ୍କର ବଳିଷ୍ଠ ବାହୁ । କହନ୍ତି, ସାବଧାନ ହୋଇ ଆସ । ପୁଣି କହନ୍ତି, ପିଲାଟା ଅନ୍ଧାରରେ କେଉଁଠି ଚମକିପଡ଼ିବ କାଳେ— !

ସଣ ସଣ ହୋଇ ସାପଟାଏ ହୁଡ଼ କରଚୁ ଖସି ପଳାଏ । ଖରାଦିନ ! ଚମକି ପଡ଼ନ୍ତି । କହନ୍ତି, ଦେଖିଲ, ଦେଖିଲ, ନଁନୁଆଁଣି । ପିଲାଟାର ବୁଦ୍ଧି ନାହିଁ । ଏତେ ରାତି ଯାଏ ରହିଛି । ଆହୁରି ଜୋର୍‌ରେ ଡକା ଗ୍ରଡ଼ନ୍ତି । !

ଜବାବ୍ ଆସେ ଦୂରରୁ । କାନେଇ ରହନ୍ତି । ଜବାବ୍ ପାଖେଇ ଆସେ । କେଡ଼େ ଖୁସିରେ, କେଡ଼େ ଅଗ୍ରହରେ ମୋ ଅଡ଼କୁ ମୁହଁ ବୁଲାନ୍ତି । କହନ୍ତି, ହେଇ, ହେଇ, ସୁରର ପାଟି ଶୁଭୁଛି । ହଁ, ହଁ, ସୁରର ।

ମନ ଅନନ୍ଦରେ ମୋ ଗାଲରେ ଅଙ୍କି ଦିଅନ୍ତି ଚୁମ୍ବନର ଦାଗ । ରାତି ଅକାଶର ବହଳ ତାରା ଗୁହଁ ରହିଥାନ୍ତି । ଶିଉ ଶିଉ ପବନରେ ଶୀତେଇ ଉଠେ ମୋର ଦେହ । ଟାଙ୍କୁରି ଉଠେ ଲୋମ ।

ସୁରଙ୍କର ଡାକ ପାଖେଇଆସେ । ନଲଟଣଟି ତଳେ ରଖି, ସେ ଅଗେଇ ଯାନ୍ତି । ସୁରଙ୍କୁ ପାଗ୍ରେଶ୍ଟି ଅଣନ୍ତି । କହନ୍ତି, କାଲିଠୁଁ ଆଉ ତତେ ପରଘରେ ମୂଲ ଲାଗିବାକୁ ପଡ଼ିବ ନାହିଁ । କଣ କହୁଛ ତୁଳସି ? ଦେଖିଲ, ପିଲାଟାକୁ ଏତେବେଲ-ଯାଏ ଅଟକାଇ ରଖିଛନ୍ତି ।

କହେ, ହଁ ।

ଅଭିମାନରେ ମୋ'ର ମନ ପୂର୍ଣ୍ଣ ହୁଏ ।

ସୁର କହନ୍ତି, ଟିକିଏ ଉଚ୍ଚୁର ହେଲା ବୋଲି ରାତିଅଧରେ ଘର ଗ୍ରୁଣ୍ଡି ଗାଁର ମଝିକି ଖୋଜିବାକୁ ଆସିଲ ନୂଆ'ଉ, ମୁଁ କଣ ପିଲାଛୁଆ ହୋଇଛି ?

ହସି ଉଠନ୍ତି ସେ । କହନ୍ତି, ସତେ ଗୋଟାଏ ମଣିଷ ହେଲୁ ପରି କଥା କହୁଛୁ ରେ ସୁରୁଆ, ଆଉ ଦିନେ ଯଦି ଡେରିକରୁ ବ୍ରହ୍ମଚୂପଡ଼ା ମାରି ତୋ ଗାଲ ଭାଙ୍ଗିଦେବି ।

ମୁଁ କହେଁ, ତମେ କାଲିଠୁଁ ଆଉ କାମକୁ ଯିବ ନାହିଁ ସୁର ।

ସେ ତୁନି ରହନ୍ତି ।

ନିର୍ଦ୍ଦୟ ନିଷ୍ଠୁର ସୁର ଚାଲିଗଲେ ସତେ ?

ପଛରୁ ଧାଇଁଯାଇ କିଏ ତାଙ୍କର ହାତ ଧରି ଟାଣିଆଣିବ ? ଅବାଧ ହେଲେ କିଏ ତାଙ୍କର କାନଧରି ଗର୍ଜିଉଠିବ, ସୁରୁଆ, ଅବାଧ ହେଉଛୁ ?

ତାଙ୍କର ବାପ ସମ ଭାଇ, ମୋର ପତି, ମନୁଆଁ'ର ବାପ !

ବିଜୁଳି ଝଟକିଲା । ମେଘ ଗର୍ଜିଉଠିଲା । ମୋର କୋଳରେ ମନୁଆଁ ଚମକି ଉଠି ଚିତ୍କାର କଲା, ବାବା— । ମୋ ବେକକୁ ଯାବୁଡ଼ି ଧରିଲା ।

ଅନ୍ଧାର ରାତି, ନଗ୍ରୁଟିଆ ଗାଁର ବିଲ, ନଁନୁଆଁଣି, ଖୋଲା ଆକାଶ ତଳେ ଚାଲିଯାଉଥିବେ ସୁର । ଭାଇର ସ୍ନେହ ଭାଇର ଆଦର କଥା ମନେ ପଡ଼ି ମନରେ ଉଠୁଥିବ କୋହ । ଗାଁର ସେପାରି ଆର ଗାଁମୁଣ୍ଡ ମଶାଣି । ଭୂତ ପ୍ରେତ, ଡାଆଣୀ ଚିରଗୁଣୀର ମେଳା ହୁଏ । ଦମ୍ଭିଲା ଲୋକର ଛାତି ବି ଛନକି ଉଠେ । କେତେ ଲୋକ ଭେଟଣା ହୋଇ ପଡ଼ିଛନ୍ତି, ଉଠି ନାହାନ୍ତି, ସେଇଠି କାଳେ ସୁର ଚମକି ପଡ଼ିବେ !

ମନେ ପଡ଼େ କେତେକାଳର କେତେ କଥା……

ସେ ବର୍ଷ ତାଙ୍କ ଗାଁରେ ହଇଜା ପଶିଥିଲା । ମୋ ବାହାଘର ବର୍ଷେ ପୂରି ନ ଥାଏ । ଗାଁରୁ ଦି ତିନି ଜଣ ଚାଲିଗଲେଣି । ସଞ୍ଜ ପହରୁ ଘରଦ୍ୱାର ତାଟି କବାଟ ବନ୍ଦକରି ଲୋକେ ରହନ୍ତି । ପହିଲି ଆଷାଢ଼ର ମେଘ । ଦିନେ ରହି ଦି ଦିନ କୁଟି ଦେଇଯାଏ । ରାତିରେ ମେଘ ଅନ୍ଧାର, ବିଜୁଳି, ଘଡ଼ଘଡ଼ି । ବାରିତଳ ପୋଖରୀ ଭିତରୁ ବେଙ୍ଗଙ୍କର ଭୟଙ୍କାରିଆ କଟିକଟି ରଡ଼ି । କାନ ଅତଡ଼ା ପଡ଼ୁଥାଏ । ବିଜୁଳି ଚମକିଉଠେ । ଭୟରେ ଘୁଞ୍ଚି ଘୁଞ୍ଚି ଯାଏଁ ତାଙ୍କ କୋଳକୁ । ଆକାଶରୁ

ଗୋଡ଼ ଖସି ଗୃଲିବାକୁ ସେ ଶିଖେ । ହେଲେ, ଅତୀତରେ ଯେ ଦିନେ ଗୋଡ଼ ଖସି ସେ ପଡ଼ିଥିଲା, ତାହାର ଦେହର ପରାସ ଲିଭିଥିଲେ ମଧ୍ୟ ମନର ପରାସ ଲିଭେ ନାହିଁ ।

ସୁର ଗୃଲିଗଲେ ଅଖିଆ ଅପିଆ ।

ଅନ୍ଧାର ରାତି । ରାତି ଅଧ । ବିଲ ବାଟ । କଣ୍ଠା ଝଣ୍ଟା । ନନୁଆଁଣି । ଭୟ ଭ୍ରାନ୍ତ । ନ ଖାଇ ନ ପିଇ ମୋ ପାଇଁ ଅପେକ୍ଷା କରି ବସିଥିଲେ । ସୁର, ମୋର ଦିଅର, ମୋରି ସ୍ୱାମୀର ଏକା ନାହି ଦିଖଣ୍ଡର ଭାଇ । କାହିଁକି ତାକୁ ତଡ଼ି ଦେଲିଚି । ଲୋକଙ୍କର କଥା, ନିଜ ମନର ଝାପସା ସନ୍ଦେହ, ଦୁର୍ନାମ ! ସତ ମିଛ ଜଣା ନାହି । ତଥାପି ଏତେ ନିଷ୍ଠୁର ବ୍ୟବହାର କଲି କାହିଁକି ?

ସେହି କଳା ମିଟିମିଟି ଅନ୍ଧାର ଭିତରେ ଗ୍ରୁଡି ଉପରେ ପିଲାଟିକୁ ଯାକିଧରି ଆଖିରୁ ପୋଛୁଥିଲି ଲୁହ । ମନେ ହେଲା, ଅନ୍ଧାର ଭିତରୁ ଛପି ଛପି ବାହାରି ଆସୁଛନ୍ତି ମୋର ସ୍ୱାମୀ । ମୁହଁରେ ସରାଗ ନାହିଁ । କହୁଛନ୍ତି, ଏତେ ରାତି ହେଲା, ପିଲାଟା କାହିଁକି ଫେରିଲା ନାହିଁ, ଭୁଲସି ? କେଉଁଠି କାଲେ ଉବ୍ରି ଚମକି ପଡ଼ିବ, ଯାଏ, ଦେଖେଁ—

ଉବ୍ରି ଉବ୍ରି କହେଁ, ମୋତେ ଏକା ରହିବାକୁ ଡର ମାଡ଼ିବ ।

କହନ୍ତି, ହଁ ସତରେ ତ । ତେମେ ଉବ୍ରି ଜାକି ବସି ଥା । ନୋହିଲେ, ଆସ, ଦିହେଁ ଯିବା । ନିଲଟଣଟା ଲଗାଅ ତ !

ଯାଉଁ । ଅନ୍ଧାରକୁ ଛିନ୍‌ଛତର୍‌ କରି ଗମ୍ଭୀର ବଳରେ ଖେଳିଯାଏ ତାଙ୍କର ଡାକ । ରାତି ଆକାଶର ଗ୍ରୁଡି ଥରିଉଠେ । ଅନ୍ଧାର ଭିତରେ ମିଟିମିଟି ଗୃହିଁ ରହିଥାନ୍ତି କେତେ ତାରା ! ଫଡ଼୍‌ ଫଡ଼୍‌ ହୋଇ ପାଖ ବରଗଛ ଉପରକୁ ଉଡ଼ିଯାନ୍ତି ବାଦୁଡ଼ି । ଭୟରେ ଗୃପିଧରେ ତାଙ୍କର ବଳିଷ୍ଠ ବାହୁ । କହନ୍ତି, ସାବଧାନ ହୋଇ ଆସ । ପୁଣି କହନ୍ତି, ପିଲାଟା ଅନ୍ଧାରରେ କେଉଁଠି ଚମକିପଡ଼ିବ କାଲେ— !

ସଣ ସଣ ହୋଇ ସାପଟାଏ ହିଡ଼ କରଡ଼ୁ ଖସି ପଳାଏ । ଖରାଦିନ । ଚମକି ପଡ଼ନ୍ତି । କହନ୍ତି, ଦେଖିଲ, ଦେଖିଲ, ନନ୍ଦୁଆଁଣି । ପିଲାଟାର ବୁଦ୍ଧି ନାହିଁ । ଏତେ ରାତି ଯାଏ ରହୁଛି । ଆହୁରି ଜୋର୍‌ରେ ଡକା ଗ୍ରୁଡନ୍ତି । !

ଜବାବ୍‌ ଆସେ ଦୂରରୁ । କାନେଇ ରହନ୍ତି । ଜବାବ୍‌ ପାଖେଇ ଆସେ । କେଡ଼େ ଖୁସିରେ, କେଡ଼େ ଅଗ୍ରହରେ ମୋ ଅଡ଼କୁ ମୁହଁ ବୁଲାନ୍ତି । କହନ୍ତି, ହେଇ, ହେଇ, ସୁରର ପାଟି ଶୁଭୁଛି । ହଁ, ହଁ, ସୁରର ।

ମନ ଆନନ୍ଦରେ ମୋ ଗାଲରେ ଆଙ୍କି ଦିଅନ୍ତି ଚୁମ୍ବନର ଦାଗ । ରାତି ଆକାଶର ବହଳ ତାରା ଗୃହିଁ ରହିଥାନ୍ତି । ଶିଉ ଶିଉ ପବନରେ ଶୀତେଇ ଉଠେ ମୋର ଦେହ । ଟାଙ୍କୁରି ଉଠେ ଲୋମ ।

ସୁରଙ୍କର ଡାକ ପାଖେଇଅସେ । ନଲଠଣଟି ତଳେ ରଖି, ସେ ଅଗେଇ ଯାନ୍ତ । ସୁରଙ୍କୁ ପାଗ୍ରେଛି ଅଣନ୍ତ । କହନ୍ତ, କାଲିଠୁଁ ଆଉ ତତେ ପରଘରେ ମୂଲ ଲାଗିବାକୁ ପଡ଼ିବ ନାହିଁ । କଣ କହୁଛ ତୁଳସି ? ଦେଖିଲ, ପିଲାଟାକୁ ଏତେବେଳ-ଯାଏ ଅଟକାଇ ରଖିଛନ୍ତ ।

କହେ, ହଁ ।

ଅଭିମାନରେ ମୋ'ର ମନ ପୂର୍ଣ୍ଣ ହୁଏ ।

ସୁର କହନ୍ତ, ଟିକିଏ ଡେରି ହେଲା ବୋଲି ରାତିଅଧରେ ଘର ଗ୍ରାଡ଼ି ଗଣ୍ଡାର ମଝିକି ଖୋଜିବାକୁ ଅସିଲ ନୂଆଁ'ଉ, ମୁଁ କଣ ପିଲାଛୁଆ ହୋଇଛୁ ?

ହସି ଉଠନ୍ତେ ସେ । କହନ୍ତ, ସତେ ଗୋଟାଏ ମଣିଷ ହେଲା ପରି କଥା କହୁଛୁ ରେ ସୁରୁଅ, ଆଉ ଦିନେ ଯଦି ଡେରିକରୁ ବ୍ରହ୍ମଗୃପଡ଼ା ମାରି ତୋ ଗାଲ ଭାଙ୍ଗିଦେବ ।

ମୁଁ କହେଁ, ତମେ କାଲିଠୁଁ ଆଉ କାମକୁ ଯିବ ନାହିଁ ସୁର ।

ସେ ତୁନି ରହନ୍ତ ।

ନନ୍ଦ ଘ୍ନ୍ ନସ୍ତୁର ସୁର ଗୃଲିଗଲେ ସତେ ?

ପଛରୁ ଧାଇଁଯାଇ କିଏ ତାଙ୍କର ହାତ ଧରି ଟାଣିଆଣିବ ? ଅବାଧ ହେଲେ କିଏ ତାଙ୍କର କାନଧରି ଗର୍ଜିଉଠିବ, ସୁରୁଅ, ଅବାଧ ହେଉଛୁ ?

ତାଙ୍କରି ବାପ ସମ ଭାଇ, ମୋରି ପତି, ମନୁଆଁର ବାପ !

ବିଜୁଳି ଝଟକିଲା । ମେଘ ଗର୍ଜିଉଠିଲା । ମୋରି କୋଳରେ ମନୁଆଁ ଚମକି ଉଠି ଚିତ୍‌କାର କଲା, ଦାଦା— । ମୋ ବେକକୁ ଯାବୁଡ଼ି ଧରିଲା ।

ଅନ୍ଧାର ରାତି, ନଗ୍ରାଟିଆ ଗଣ୍ଡାର ବିଲ, ନଁନୁଆଁଣି, ଖୋଲା ଆକାଶ ତଳେ ଗୃଲିଯାଉଥିବେ ସୁର । ଭାଇର ସ୍ନେହ ଭାଇର ଆଦର କଥା ମନେ ପଡ଼ି ମନରେ ଉଠୁଥିବ କୋହ । ଗଣ୍ଡାର ସେପାରି ଆର ଗାଁମୁଣ୍ଡ ମଶାଣି । ଭୂତ ପ୍ରେତ, ଡାଆଣୀ ଶରଗୁଣୀର ମେଳା ହୁଏ । ଦମ୍ଫିଲା ଲୋକର ଗ୍ରାଡି ବ ଛନକି ଉଠେ । କେତେ ଲୋକ ଭେଟଣା ହୋଇ ପଡ଼ିଛନ୍ତ, ଉଠି ନାହାନ୍ତ, ସେଇଠି କାଳେ ସୁର ଚମକି ପଡ଼ିବେ !

ମନେ ପଡ଼େ କେତେକାଳର କେତେ କଥା······

ସେ ବର୍ଷ ତାଙ୍କ ଗାଁରେ ହଇଜା ପଶିଥିଲା । ମୋ ବାହାଘର ବର୍ଷ ପୂରି ନ ଥାଏ । ଗାଁରୁ ଦି ତିନି ଜଣ ଗୃଲିଗଲେଣି । ସଞ୍ଜ ପହରୁ ଘରଦ୍ୱାର ତାଟି କବାଟ ବନ୍ଦକରି ଲୋକେ ରହନ୍ତ । ପହିଲି ଆଷାଢ଼ର ମେଘ । ଦିନେ ରହି ଦି ଦିନ କୁଟି ଦେଇଯାଏ । ରାତିରେ ମେଘ ଅନ୍ଧାର, ବିଜୁଳି, ଘଡ଼ଘଡ଼ି । ବାଉତଳ ପୋଖରୀ ଭିତରୁ ବେଙ୍ଗଙ୍କର ଭୟଙ୍କାରିଆ କଟିକଟି ରଡ଼ି । କାନ ଅତରା ପଡ଼ୁଥାଏ । ବିଜୁଳି ଚମକିଉଠେ । ଭୟରେ ଘୁଞ୍ଚି ଘୁଞ୍ଚି ଯାଏଁ ତାଙ୍କ କୋଳକୁ । ଆକାଶରୁ

ଗୁଛ ଫଟାଇ ଗର୍ଜିଉଠେ ଘଡ଼ଘଡ଼ି । ଏସ୍ତ ଗୁଛକୁ ତାଙ୍କର ବୁକୁରେ ଲଗାଏ । ପିଠି ଉପରେ ହାତ ପକାଇ ଅହ୍ଲର ପାଖକୁ ଘୁଞ୍ଚାଇ ନଅନ୍ତି । ତାଙ୍କର ବାହା ଉପରେ ମୁଣ୍ଡ ଲଦ ଭୁନ ହୋଇ ପଡ଼ିରହେ ।

ବାଉପଠୁ, କେଜାଣି କେତେ ଦୂରରୁ ଡାକଗୁଡ଼େ ଭେରେଣ୍ଡା । ଇଃ, କେଡ଼େ କଲକଲା ରଡ଼ ! ଗୁଛ ଦାଉଁ ଦାଉଁ ପଡ଼େ । ମନେ ହୁଏ ସତେ ଭ ଗୋଡ଼ାଇ ଅସୁଛ । ତାଙ୍କର ଗୁଛରେ ମୁହଁ ଲୁଚାଇ ରଖେ ।

ପିଠି ଅଉଁଷି କହନ୍ତି, ଡର ମାଡ଼ୁଛି ତୁଲସି ?

ତାଙ୍କର ପାଟି ଶୁଣି ସାହସ ହୁଏ । ମୁହଁ ଟାଣ କରି କହେଁ, ନାଇଁ ତ ।

ମୋ ମୁହଁରେ ମୁହଁ ଲଗାଇ କେଡ଼େ ଆଦରରେ ସେ କହନ୍ତି, ନାହିଁ ତ ?

ଟିକଏ ରହି ପୁଣି କହନ୍ତି, ଅରେ, ସୁରଠା ଦାଣ୍ଡଘରେ ଏକୁଟିଆ ଶୋଇଛି । ପିଲାଲୋକ, ଦେହ ଭଲ ନ ଥିଲା । ଡରଲାଣି କି ?

ଧୀରେ ଧୀରେ ମୋତେ କୋଲରୁ ଖସାଇ ଦଅନ୍ତି । ହାତ ଅଣ୍ଡାଳ ଦଅସିଲି ଖୋଜି ନଲଠଣ ଲଗାନ୍ତି । କହନ୍ତି, ଆସିଲ ଦେଖି ଆସିବା !

ବରକ୍ତି ଲାଗେ । ଦେହ ଅବଶ ଲାଗୁଥିଲେ ମଧ୍ୟ ଉଠି ଠିଆହୁଏ । ଲୁଗାପଠା ସଜାଡ଼ି ତାଙ୍କ ପଛେ ପଛେ ଯାଏ ।

ଡାକନ୍ତି, ସୁର କରେ—

ସୁର ଜବାବ ଦେଇ ଉଠି ବସନ୍ତି । ପଚାରନ୍ତି, କଣ ଭାଇ ?

ହସି ହସି ସେ କହନ୍ତି, ଦେଖିଲ ତୁଲସି, କହୁଛି ଏବେ, ଡରକର ଭୁନ ହୋଇ ପଡ଼ୁଛି । ପିଲାଟିଦିନୁ ମୋର ପାଖରେ ଶୋଇ ଅସିଛି, ଏକୁଟିଆ ଡର ମାଡେ ତାକୁ ।

କହନ୍ତି, ଚାଲ୍ ସେ ଘରେ ଶୋଇବୁ ।

ସୁର ପ୍ରତିବାଦ କରନ୍ତି । ସେ ବରକ୍ତ ହୁଅନ୍ତି । ଶେଷକୁ କହନ୍ତି, ତେବେ ତେମେ ଯାଅ ତୁଲସି, ତମକୁ ତ ଡରମାଡେ ନାହିଁ, ରାତି ଅସି ପାହାନ୍ତି ହେଲାଣି, ମୁଁ ଏଇଠି ପଡ଼ିଯାଉଛି ।

ରାଗ ତମତମ ହୋଇ ଅନ୍ଧାରରେ ଏ ଘରକୁ ଚାଲିଆସେ । ଭାବେଁ, ଏମିତି ଲୋକ ପରିଟିଅର ହାତ ଧରି ଘରକୁ ଅଣନ୍ତି କାହିଁକି ?

ସୁର ବୁଝି ପାରନ୍ତି । କହନ୍ତି, ଭାଇ, ନୂଆଉ ଏକୁଟିଆ ଡରିବ । ଚାଲ ସେ ଘରକୁ ।

ଟିକଏ ପରେ ଅଟଉର କରି ମୁଁ ଘୋରପୁର ହୋଇ ଶୁଏ । ଭାଇ ଦହେଁ ବାରଣାରେ ଶୁଅନ୍ତି । ନଲଠଣ ନଟେ । ଅନ୍ଧାରରେ ତାଙ୍କର ହାତ ଲମ୍ବିଆସେ ମୋର ଉପରକୁ । ରାଗରେ ଅଭିମାନରେ ହାତକୁ ଛାଡ଼ିଦେଇ ଅହ୍ଲର ଟିକଏ

ଦୂରକୁ ଘୁଞ୍ଚିଯାଏଁ । ଆଖିରୁ ଧାର ଧାର ଲୁହ ବୋହିଯାଏ । ସେ ଜାଣନ୍ତି ନାହିଁ, କେବେ ତାଙ୍କୁ ଜାଣିବାକୁ ଦେଇ ନାହିଁ ।

ଯେତେ ଆଗରୁ ଉଠେଁ, ଦେଖେ, ସୁର ଅନ୍ଧାରୁ କେତେ ଆଗରୁ ଉଠି ଚାଲିଗଲେଣି । ତାଙ୍କ ପ୍ରତି ସବୁ ରାଗ ମନରୁ ଘୁଞ୍ଚିଯାଏ । ସ୍ୱାମୀଙ୍କର ଶୋଇଲା ମୁହଁକୁ ମୁଗ୍ଧ ହୋଇ ଚାହିଁ ଚାହିଁ ଅସ୍ଥିର ହୋଇ ଢଳିପଡେ ତାଙ୍କର କୋଳରେ । କଅଁଳ ପାହାନ୍ତାର ଫିକା ପରିହାସ ସହିପାରେ ନାହିଁ । କବାଟ ଆଉଜାଇ ଦିଏ ।

ସୁର ଚାଲିଗଲେ, ରାଗରେ, ଅଭିମାନରେ । କିଛି ଖାଇ ନାହାନ୍ତି । କେଡ଼େ ଅନ୍ୟାୟ ମୁଁ କରିଛି । ସୁର, ଗରିବ ନିଛମୂଲିଆ ଘରର ପିଲା ହେଲେ ବି ଭୋକ ସହିପାରନ୍ତି ନାହିଁ । ଇଏ ଗେରସ୍ତ, ସିଏ ଦିଅର, ଏ ଭାବ ମୋ ମନରେ ନ ଥିଲା । କେବେ ସେ ରଖାଇ ଦିଅନ୍ତି ନାହିଁ । ପର ଘରେ ମୂଲ ଲାଗି ସିଏ ଯେତେବେଳେ ଯାହା ଆଣନ୍ତି, ମୋ ଆଗରେ ପକାଇ ଦେଇ ନିଶ୍ଚିନ୍ତ ହୁଅନ୍ତି । ଦିନେ କେହି କେବେ ପଚାରି ନାହାନ୍ତି, ପଇସା କେତେ ହେଲା, ପଇସା କଅଣ ହେଲା ।

ପେଜ ପାଣି ଯାହା ଥାଏ, ଯାହା ରାନ୍ଧିଥାଏଁ, ଦିହିଙ୍କ ଆଗରେ ଥୋଇଦିଏଁ । ଜଣକୁ ନ ଦେଖିଲେ ଆର ଜଣକ ଖାଆନ୍ତି ନାହିଁ । ଏକାଠି ନ ବସିଲେ ତାଙ୍କୁ ଖାଇବାକୁ ସୁଖ ଲାଗେ ନାହିଁ । ହଳଦୀପାଣିରେ ଯାହା ସିଝାଇ ଦିଏଁ, ଅମୃତ ପରି ଦିହେଁ ଶାନ୍ତିରେ ପାଇ ଦିଅନ୍ତି । ଦିନେ କେବେ କେହି ବାଛନ୍ତି ନାହିଁ ।

ପାଏ ମାଛ ରଖି କେତେ ଯତ୍ନକରି ରାନ୍ଧେ । କହେ, ସୁର, ଖାଇବସ, ତାଙ୍କର ଆସୁ ଆସୁ ଡେରି ହେବ । ତେମେ ତ ସକାଳୁ କିଛି ଖାଇ ନାହଁ ।

ଭାଇ ବି କିଛି ଖାଇ ନାହିଁ । ସେ ଆସୁ ।

ଭୋକରେ କେତେବେଳ ଯାଏ ବସିଥିବ ?

ହସି ହସି କହନ୍ତି, ମୋତେ ତ ଭୋକ କରୁ ନାହିଁ, ତମକୁ ଭୋକ କଲାଣି ପରା !

ଯେତେ ନାହିଁ କଲେ ସେ ଶୁଣନ୍ତି ନାହିଁ । କେତେ ରାଣ ନିୟମ ପକାନ୍ତି । ନିଜେ ଉପାସ ରହିବେ, ଉପାସରେ କାମକୁ ଯିବେ ବୋଲି ଡରାନ୍ତି । ଯେତେ ବୁଝାଏଁ, ଆରେ, ଗେରସ୍ତ ଦିଅର ନ ଖାଇଲେ ମାଇପଙ୍କର ଖାଇବାର କଥା ନୁହେଁ । ପାପ ହୁଏ । ସେ କେତେ ନେହୁରା ହୋଇ କହନ୍ତି । ନିଜ ହାତରେ ଭାତ ବାଢ଼ି ଦିଅନ୍ତି । ତାଙ୍କର ମୁଲାଇଜାରେ ମୁଁ ଖାଏଁ ।

ସେ କହନ୍ତି, ନୂଆଉ, ତେମେ ସିନା ମାନ୍ୟରେ ବଡ଼, ନୋହିଲେ ମୋ ବୟସ ତୁଳନାରେ ତେମେ ପିଲା, ତେମେ ଭୋକ ସହିପାରନ୍ତ ନାହିଁ ।

କହେ ଦରହସିଲା ହୋଇ, ତମ ଭାଇ ତମକୁ ସବୁବେଳେ ଜତାଣି ପିଲା ବୋଲି ମନେ କରନ୍ତି । ଯେମିତି ନର୍ଲକ୍ଷ ସେମିତି ଗ୍ଲେପରା ।

ଭାଇଙ୍କର ନନ୍ଦା ସେ ସହିପାରନ୍ତି ନାହିଁ । ମୋ ତୁଣ୍ଡରୁ ଏପରି କଥା ଶୁଣିଲେ ତାଙ୍କର ମୁହଁ ଶୁଖିଯାଏ । କାଁରେଇ କହେଁ, ସୁର, ଅମେ ମାଇପି ଜାତି, କେଡ଼େ ଜଲଦି ବୁଢ଼ୀ ହୋଇଯାଉ ଜାଣ ? ତେମେ ମୋ ଆଖିରେ ଏଡ଼େ ଟିକେ ପିଲା ପରି ଦଶ । ସତେ କି ମୋର ସାନ ଭାଇଟି । ମୋ ସୁନା ଭାଇଟି, ଗଣ୍ଡିଏ ଖାଇଦେଇ ଆସିବ । ତମକୁ ରାଣ ଅଛି—

ରାଣ ନୟମ ସେ ମାନନ୍ତି ନାହିଁ । ଭାଇଙ୍କି ଅପେକ୍ଷା କରି ରହନ୍ତି । ହାଣ୍ଡିରେ ଭାତ ଶୁଖି ଚଣା ଗୁଡ଼ଲ ହୁଏ ।

କେତେବେଳେ ପୁଣି ଭାଇ ଦହେଁ ଖାଇ ବସନ୍ତି ।

ଉପାସ ଭୋକରେ ଧାଇଁ ଆସିଥିଲେ, ଉପାସ ଭୋକରେ ମୋତେ ଅପେକ୍ଷା କରି ରହିଥିଲେ । କି ଅପରାଧରେ ତାଙ୍କୁ ମୁଁ ତଡ଼ିଦେଲି ? ଯେଉଁ ଭାଇଙ୍କି ସେ ପ୍ରାଣରୁ ବଳି ଭଲପାଆନ୍ତି, ଯିଏ ତାଙ୍କୁ ଆଖିର ପିତୁଳା ପରି ଦେଖୁଥିଲେ, ତାଙ୍କୁ ସେ ନିଜ ହାତରେ ବିଷ ଦେଲେ । ବିଷ ! ଲୋକଙ୍କର ହାଂସୁଲିଆ କଥା, ତୁଣ୍ଡ ବାଇଦ ସହସ୍ର କୋଶ, ବିଶ୍ୱାସ କଲି କାହିଁକି ?

ମୋର ଅପରାଧର କ୍ଷମା ନାହିଁ । ଯେତେଥର ସୁରଙ୍କ ପ୍ରତି ମୁଁ କଠୋର ହୋଇଛି, ଯେତେଥର କଟୁ କଥା କହି ତାଙ୍କୁ ମୁଁ କୁକୁର ମାଙ୍କଡ଼ ପରି ଦୂର୍ ଦୂର୍ କରିଛି, ମୁହଁ ନ ଖୋଲି ସେ ନୀରବରେ ସବୁ ସହିଛନ୍ତି । ଏତେଦିନ ପରେ ଆଜି ସେ ତାଙ୍କର ମୁହଁ ଖୋଲି ମୋତେ ବୁଝାଇବାକୁ ବସିଥିଲେ । ତାଙ୍କର କଥା ଶୁଣିଲି ନାହିଁ, ବୁଝିବାକୁ ଚେଷ୍ଟା କଲି ନାହିଁ ! ଦୁଃଖରେ, କ୍ଷୋଭରେ ସେ ଚାଲିଗଲେ ।

ଛାତିରେ ଯନ୍ତ୍ରଣା ଅନୁଭବ କଲି । ସୁର ଆଉ ଆସିବେ ନାହିଁ । ସୁର, ଯାହାଙ୍କୁ ଦେଖିଲେ ସ୍ୱାମୀହନ୍ତା ବୋଲି ରାଗ ହୁଏ, ବାରକଥା ମୁହଁରେ କହେ । ପୁଣି, ଯାହାକୁ ଦେଖିଲେ ଛପି ଛପି ମନ ଭିତରେ ଉଙ୍କି ହୁଏ ମୋର ସ୍ୱାମୀଙ୍କର ସ୍ମୃତି । ସେହି ରୂପ, ସେହି ମୁହଁ, ସେହି ଢଙ୍ଗ । ଦୁଃଖ ଅଭିମାନ ମଝିରେ ଉଇଁଆସେ ଗୋପନ ଆନନ୍ଦ, ତେଉଁ ଠେ ଅଶାର କ୍ଷୀଣ ଅଲୁଅ ନୈରାଶ୍ୟର ଘୋଟିଲା ଘଞ୍ଚ ଅନ୍ଧାର ଭିତରେ । ସ୍ୱାମୀ ନାହାନ୍ତି, କିନ୍ତୁ ସେହି ରକ୍ତ, ସେହି ମାଂସରେ ଗଢ଼ା ତାଙ୍କର ଭାଇ, ମୋ ଦିଅର ! ତାଙ୍କର ଭାଇ, ଯାହାଙ୍କୁ ସେ ପୁଅଠୁଁ ବଳି ଭଲ ପାଉଥିଲେ ।

ଇଚ୍ଛା ହେଲା ଡାକ ଛାଡ଼ିବି, ସୁର, ସୁର, ଫେରି ଆସ, ଶୁଣି ଯାଅ ।

ହୁଏ ତ ସେ ବିଶ୍ୱାସ କରିବେ ନାହିଁ । ମତିଁ ଗମ୍ଭୀରରେ ଠିଆହୋଇ ଫେରି ଗୃହିଁବେ, ପରିହାସ ମନେ କରିବେ ।

ବାଟ ଓଗାଳି କହିବି, ସୁରି, ମୋ କଥା ମନରେ ଧର ନାହିଁ । ସୁନା ଭାଇଟି, କ୍ଷମା କର, ଲୋକଙ୍କ କଥାରେ ମିଛଟାରେ ତମ ଉପରେ ସନ୍ଦେହ କରିଥିଲି, ଆସ ।

ସବୁଦିନ ପରି ମୋର ଗୋଡ଼ତଳେ ମୁଣ୍ଡ ଲଗାଇବେ । ଆଖିରୁ ଲୁହଧାର ବହି ଯାଉଥିବ । କହିବେ, ନୂଆଉ, ସବୁଦିନେ କଅଣ ତୁମକୁ ମୁଁ ଭକ୍ତି କରି ଆସି ନାହିଁ, ଶ୍ରେଷ୍ଠ ପିଲାଟି ପରି ତୁମର ପାଖରେ ଅଳି କରି ନାହିଁ ? ତଥାପି, ତେମେ ଦାଣ୍ଡଲୋକଙ୍କ କଥା ଶୁଣି ମୋତେ ଅବିଶ୍ୱାସ କଲ ?

ହାତଧରି ତଳୁ ଉଠାଇବି । ପଣତରେ ମୁହଁ ପୋଛିଦେବି । କହିବି, ଆସ । ଦୁନିଆର ଲୋକେ ଯାହା କହିବାର କହୁ ଥାଉନ୍ତୁ ।

ହାତ ଧରି ବାଟ କଢ଼ାଇବି ।

ଅଜଣା ଆଗ୍ରହରେ ଦେହ ଥରିଉଠିବ । ପାଦ ବାଟରୁ ଖସି ଅବାଟରେ ପଡ଼ିବ । ଥରଥର ଅବଶ ଦେହ ତଳେ ଲୋଟି ଲୋଟି ଅଟକିଯିବ । ଥରିଲା ସ୍ୱର କାନରେ ବାଜିବ । ସେମାନେ ମିଛ କହୁଛନ୍ତି । ମନେ ଅଛି କି ପ୍ରଥମ ଦେଖାର ସରାଗ କଥା । ଗୃହେଁଟି ଆଖିର ଦେହଉଲସା ମନସରସା ମିଳନ କଥା ? ସେ ନ ଥିଲେ ତେମେ ହୋଇଥାନ୍ତ କାହାର ? ସେ ଗୃଲିଗଲେ—

ବିଜୁଳି ଚମକିବ । ସୁରିଙ୍କର ଛାତି ଉପରେ ମୋର ଲୁହଧୁଆ ମୁହଁ । ତାଙ୍କର ବାହା ଦୁଇଟି ମୋର ଦେହଟିକୁ ଗୁଡ଼ାଇ ଧରିଛି । ଆଖିରେ ଅସରନ୍ତି ଅନୁରୋଧ ।

ଆଖିପିଅଁଡ଼ାରେ ବିଜୁଳି ଲିଭିଲା । ଘୋଟିଗଲା ଅନ୍ଧକାର ।

ଭାବନା ଦୁଃସହ ହେଲା । ଛାତି ଥରିଉଠିଲା । କଇଁ କଇଁ ହୋଇ କାନ୍ଦି ଉଠିଲି । ବୋଉ ଡାକିଲା, ତୁଳସି—

ଉତ୍ତର ଦେଇପାରିଲି ନାହିଁ । ତା ପାଖରେ ମୁଁ ମୋ ମନର ଦୁର୍ବଳତା କେବେ ଖୋଲି ପାରି ନାହିଁ । ଯେତେ ଦୁଃଖ ହେଲେ ବି ତା ଆଗରେ ମୁହଁ ଟାଣକରି କଥା କହେଁ ।

କଅଣ ଭାବିଲା କେଜାଣି, ମୋତେ ସାନ୍ତ୍ୱନା ଦେବାକୁ କଅଁଳେଇ କହିଲା, ଗତ କଥା ମନେ ପକାଇ ମନ କଷ୍ଟ କରି କାନ୍ଦବୋବା କଲେ କିଛି ଲାଭ ହୁଏ ନାହିଁ । ଆଲୋ ତୁଳସି, ଭଲ କଥା କହିଲେ ତୁ ସଲ ଗୁଞ୍ଜୁ, ସେଇଥିପାଇଁ ତତେ କହିବାକୁ ଡର ଲାଗେ ।

ଆଉ କଅଣ କହିବ ଶୁଣିବାକୁ ଅପେକ୍ଷା କରି ରହିଲି ।

ରହି ରହି କହିଲା, କେତେ କୁଳରେ, କାହିଁକି, ଆମର ଏଇ କୁଳରେ, ତୋ ବୟସର ଝିଅ ପରଘର କରି ନାହାନ୍ତି । ତୋଓର ଏମିତି କଅଣ ହୋଇ

ଯାଇଛୁ କ ? ମାଇକିନିଅଁ ଜନମ । କେହି ଲୁହା, ପଥରରେ ମୁଣ୍ଡ ବାଜି ନାହିଁ । ନିଅଣ୍ଡି ହୋଇ ପେଟ ପାଟଣା ପାଇଁ ଦାଣ୍ଡ ହାଟକୁ ଯାଇ ପଇସା ପାଇଁ ପର ଆଗରେ ଗୋଡ଼ ଭାଙ୍ଗି ମୁଣ୍ଡ ନୋଇଁ ଠିଆ ହୋଇ ଟାଣକରି କିଏ କହିବ ଲୋ, ତା ମୁଣ୍ଡ ହଲି ନାହିଁ, ମନ ଟହଲି ନାହିଁ, ଅବାଟରେ ଗୋଡ଼ ପଡ଼ି ନାହିଁ । ପେଟ ପାଟଣାର ଚିନ୍ତା ତ ସବୁବେଳେ ଅଛି । ବଳ, ବୟସ, ରୂପ ଥାଉଁଣୁ ଯଦି ଅନ୍ୟ ସଂସାର ନ କରିବୁ, ଜୀବନଟା କେମିତି କଟିବ ? ଦୁଃଖ ତ ହେବାର କଥା । ଯିଏ ଯାହାକୁ ଥରେ ଦେଖିଥାଏ, ଭୁଲି ପାରେ ନାହିଁ । ଗେରସ୍ତ ଭାରିଯା ହୋଇ ଛନ-ଗୃହ ବର୍ଷ ଘର ସଂସାର କଲି, ଭଲ ମନ୍ଦ ହେଲେ ମନରେ ଦୁଃଖକଷ୍ଟ ହେବାର କଥା । ତଥାପି, କେହି ତ କାହା ପଛରେ ଗୋଡ଼ାଇଯାଏ ନାହିଁ । ଯେତେବେଳେ ଲୋକେ ଅଗ୍ରହରେ ଚୃହିଁଛନ୍ତି, ତୁ ଚୃହିଁନୁ । ନେଡ଼ିଗୁଡ଼ କହୁଣିକୁ ବୋହି ପଡ଼ିବ । ସେତେବେଳେ ତୋ ନିଦ ଭାଙ୍ଗିବ । ଆଖି ମଳି ଚୃହିଁବୁ, ନିଅଣ୍ଡା ହୋଇ ହାତ ବଢ଼ାଇବୁ, ଦେଖିବୁ, କେହି ଆଉ କୁଆଡ଼େ ନ ଥିବେ । ପିଲାଟିକୁ ନେଇ ଅପନ୍ତରରେ ପଡ଼ିବୁ ମା, ମୋ ସାନକୁହା ମାନ ।

ଧୈର୍ଯ୍ୟ ଧରି ପଗୃରିଲି, କେଉଁ ଲୋକ କାହିଁକି ଅଗ୍ରହରେ ଚୃହିଁଛନ୍ତି ବୋଉ ? କଟା ଘାଅରେ ଚୂନ ବୋଳିଲା ପରି ଥରକୁ ଥର ଯେତେ ମନା କଲେ ତୁ ଏମିତି ବେଆଡ଼ା କଥା କହୁଛୁ । ମୁଁ ଦୁଃଖ କଲି କି, କାନ୍ଦିଲି ବୋଟବଇଲି, ସେଥିରେ ତୋ'ର କଣ ଥାଏ ? ମୋ ଦୁଃଖରେ ଆଉ କାହାକୁ ଭାଗୀ କରିବାକୁ ମୁଁ ଚୃହିଁ ନାହିଁ ।

ବୋଉ ତୁନି ହେଲା । କ'ଣ ଭାବି କେତେବେଳେକେ ପୁଣି କହିଲା, ମୋ କଥା ତୁ ଅବଗୁଣ ପାଉଛୁ, ଶୁଣ ନ ଶୁଣ, ମାନ ନ ମାନ, ମୋର କହିବାର କଥା, ମୁଁ କହୁଛି । ଅଗ୍ରି ମା, ଗୃରିବର୍ଷ ତଳର କଥା ଥରେ ମନେ ପକାଇଲୁ । ପିଲାଟାଏ ହୋଇ ଏଇ ଘରେ ତୁ କାରବାର ହେଉଥିଲୁ । ଗାଁ ଲୋକେ ଯାଉଁଣୁ ଅସୁଣୁ ମତେ କାଉ କାଉ କରି ଝାଡ଼ୁଥିଲେ, ତୁଳସୀ ଏଡ଼େଟାଏ ହେଲାଣି, ମୁରବୀ କେହି ନାହିଁ, ହାତକୁ ଦହାତ କରି ଦେ — । କେଡ଼େ ଭାବନାରେ ପଡ଼ିଥିଲି ।

ଦିନେ ଅଜଣା ଅଶୁଣା ପିଲାଟିଏ ଅସିଲା, ଉଦୁଉଦିଆ ଦ ପହରେ, ଝୋଲା ମାରି ଯାଉଥାଏ, ପାଣି ମନାଏ ମାଗିଲା । ନିଜ ହାତରେ ତାକୁ ପାଣି ପିଇବାକୁ ଦେଇଥିଲୁ ।

କେତେଥର ସେ ଅସିଛି । ଜାଣୁ ତୁଅ । କେଡ଼େ ଅଗ୍ରହ ତାକୁ ଆମେ ଦେଖାଇଥିଲୁଁ । ମନେ ମନେ କେତେ ଦିଅଁ ଦେବତା ଡାକୁଥିଲି ତାଆରି ହାତରେ ତତେ ଦେବି ।

ଦିନେ ପ୍ରସ୍ତାବ ପକାଇଲି । ତା ମୁହଁ ଝାଉଁଳି ପଡ଼ିଲା । କହିଲା, ଭାଇ ଅଛନ୍ତି, ତାଙ୍କର ବିଷୟରେ ସମ୍ବନ୍ଧ ପକାଅ ।

ଲାଜରେ କି ଦୁଃଖରେ କେଜାଣି, ତୁ ଉଠିଗଲୁ । ଆଖିରେ ତୋର ଲୁହ ଦେଖିଥିଲି ମା, ଆଜଯାଏ ମୁଁ ଭୁଲିପାରି ନାହିଁ । କାଲିପରି ଲାଗୁଛି ।

ତାହା କଥା ଶୁଣି ଉତ୍ତେଜିତ ହୋଇ ଅନ୍ଧାର ଘରେ ଉଠି ବସିଲି । ପାଟିକରି କହି ପକାଇଲି, ଚୁପ୍‌କର, ଚୁପ୍‌କର ବୋଉ, ଆଉ କିଛି କହ ନା । ତୋ ମନରେ ଏତେ ଦିନରୁ ଏତେ କଥା ଥିଲା ବୋଲି ମୁଁ ଜାଣି ନ ଥିଲି । ତୋରି ଦୁଡ଼୍ଗୁଡ଼୍ମନ ପାଇଁ ଆଜି ମୋର ଏ ଅବସ୍ଥା, ଆଜି ମୁଁ ବିଧବା !

ବୋଉ କହିବାକୁ ଲାଗିଲା, ନାଇଁ ମ, ତୁ ବିଧବା ନୋହୁ । ଯାହା ଘଟିଗଲା ସେଇଟା ଗୋଟାଏ ସପନ । ସତ ଏତିକି ଯେ, କୋଳରେ ପିଲା ବୋକଟେ ପାଇଛୁ । ସୁରି ରକତ ଆଉ ତା' ରକତ ଭିନେ ନୁହେଁ । ସେମାନେ ତ ଦୁଇ ଭାଇ ଥିଲେ । ଏକା ନାହି ଦିଖଣ୍ଡ, ଏକା ରକତ ଦି ଧାର । ମନୁଆଁ କଅଣ ସୁରିର ପୁଅ ନୁହେଁ କି ? ତୁ କାହିଁକି ଭେଦଭାବ ପାତର ଅନ୍ତର କଥା ମନକୁ ଆଣୁଛୁ ? ସୁରି ତତେ ଭଲପାଏ, ତୁ ତା'କୁ ଭଲପାଉ ।

କହିଲି, ଚୁପ କର, ଚୁପ କର । ମିଛକଥା ତୁଣ୍ଡରେ ଧର ନା ।

ମିଛ ହୋଇପାରେ, କିନ୍ତୁ, ଭୁଲ ସବୁଦିନେ ଭୁଲ ହୋଇ ରହେ ନାହିଁ । ଦିନେ ସୁଧୁରିଯାଏ, ମନକୁ ସୁଧୁରି ଯାଏ । ଆଜି ସେ ବେଳ ଆସିଛି । ସୁରି ଆଜି ବି ତତେ ସେମିତି ଭଲପାଏ ତୁଳସି, ବିଶ୍ୱାସ କର ।

ଦୁଇ ହାତରେ ମୁହଁ ଘୋଡ଼ାଇ କାନ୍ଦିଉଠିଲି । ତକିଆ ଉପରେ ମୁଣ୍ଡ ମାଡ଼ି କାନ୍ଦି କାନ୍ଦି କହିଲି, ମତେ ସେ ଭଲପାଏ, ସେଇଥିପାଇଁ ଦେବତା ପରି ଭାଇକୁ ସେ ଜହର ଦେଇ ମାରିଛି । ଲୋକଙ୍କର କଥା ମିଛ ନୁହେଁ । ସେଇଥିପାଇଁ ମୋ କଥା ନ ମାନି ଥରକୁ ଥର ଗୋଟାଏ ଆଶାରେ ସେ ଆସେ, ତୋ' ଆଗରେ ସାକୁଲେଇ ହୁଏ । ମୋର ମନ ହୁଏ, ନିଜ ହାତରେ ମୁଁ ତାକୁ ଜହର ଦେବି । ତା ମଲା କାନରେ କହିବି, ମୁଁ ତାକୁ ଭଲପାଏ, ତା ପାଇଁ ଦିନେ ମୋ ଆଖିରୁ ଲୁହ ଗଡ଼ିଥିଲା, ତୁ ଦେଖିଥିଲୁ । କହିବି, ଭୁଲ ସବୁଦିନେ ଭୁଲ ହୋଇ ରହେ ନାହିଁ, ଭୁଲ ସୁଧୁରି ଯାଏ ।

ଆଉ କହି ପାରିଲି ନାହିଁ । ମନର କୋହରେ ପିଲାଟିକୁ କୋଳରେ ପୂରାଇ ତାରି କପାଳ ଉପରେ ତତଲା ଲୁହ ଢାଳିଦେଲି ।

ବୋଉ ଚୁପ ରହିଲା ।

ଆଖିର ଲୁହ ବନ୍ଦ ହେଲା, ମନର କୋହ କମିଲା । ବୋଉର କଥା ମନେ ପଡ଼ିଲା । ସୁରିଙ୍କ ଉପରେ ମୋର ରାଗ ବଢ଼ିଲା । ଭାବିଲି, ଆଜି ବି ସେ ମୋତେ ସେମିତି ଭଲପାନ୍ତି । କିନ୍ତୁ, କାହିଁକି ସେ ମୋତେ ଭଲପାଇବେ ?

ଗୃହବର୍ଷ ତଳେ, ସଞ୍ଜ ମାଡ଼ି ଆସୁଥାଏ, ସେ କହିଲେ, ଭାଇଙ୍କ ବିଷୟରେ ସମ୍ବନ୍ଧ ପକାଅ । ତାଙ୍କର ମୁହଁ ମଉଳି ଯାଇଥିଲା । ମୁଁ ବୁଝିଥିଲି, ସୁର ମତେ ଭଲ ପାନ୍ତି । ତାଙ୍କ ମନରେ ମୋର ସ୍ଥାନ ଥିଲା । ଅନୁଭବ କରିଥିଲି, ଅଜାଣତରେ ମୋ ମନ ତାଙ୍କର ଆଡ଼କୁ ନଇଁ ଯାଇଥିଲା । ସେଇଥିପାଇଁ ବିନାସଙ୍କୋଚରେ ତାଙ୍କ ସଙ୍ଗେ କଥାଭାଷା ହେଉଥିଲି, ତାଙ୍କୁ ପୁଣି ପୁଣି ଦେଖିବାକୁ ମନ ଡାକୁଥିଲା, ଆସିବାକୁ ଅନୁରୋଧ କରିଥିଲି ।

ବୋଉ ବୁଝିଥିଲା । ସେଇଥି ପାଇଁ ମିଳାମିଶା କରିବାକୁ, ହସଖୁସିରେ ଅଜଣା ଲୋକ ସଙ୍ଗରେ କଥାଭାଷା ହେବାକୁ ସେ ବାଧା ଦେଉ ନ ଥିଲା ।

ଆଖିର ଲୁହ ଦ ଧାର ! ସେଥିରେ ମନର ସବୁ ଲୁଚିଲା ବଥା ଧୋଇ ଦେଇଥିଲି । ଗୁଡ଼ିର ସବୁ କୋହ, ସବୁ ମୋହ, ଉତ୍ତେଜନା, ଚଲପଣିଆଁର ପରଦା ଉହାଡ଼ରେ ଲୁଚୁଇ ଦେଇଥିଲି ।

ତାଙ୍କ ଘରକୁ ସଂସାର କରିବାକୁ ଗଲି । ଗାଡ଼ିର ଖସ୍ୱପ ସପନ ପରି ଗତକଥା ଭୁଲିଗଲି । ଯାହାଙ୍କର ହାତ ଧରିଥିଲି, ତାଙ୍କର ଦେବଦୁର୍ଲଭ ସ୍ୱଭାବ, ଚରିତ୍ର ଓ ରୂପ ପାଖରେ ମନର ମଇଳା ରହିପାରେ ନାହିଁ । ସମୁଦ୍ର ପରି ନିର୍ମଳ, ଗମ୍ଭୀର ଓ ବଡ଼ ଯାହାର ମନ, ଗଙ୍ଗା ପାଣି ପରି ପବିତ୍ର ଯାହାର ମୋ ପ୍ରତି ପ୍ରେମ, ଭାଇ ପ୍ରତି ସ୍ନେହ, ତା ପାଖରେ ମନର ଅନ୍ଧାର ରହିପାରେ ନାହିଁ । ତଥାପି ନଈ ପାଣିରେ ବେଳେ ବେଳେ ମଳମଳି ଉଠେ, ପୁଣି ସେହି ନଈ ପାଣିରେ ମିଳାଇଯାଏ । ଠିଆ ହେବାର ଦମ୍ଭ ତାର ନ ଥାଏ ।

ଦିନ ଦିନର ଘଟଣା, ପଥରରେ ଗାର ପଡ଼ିଲା ପରି ମନରେ ଟୋପାଡ଼ା ଗାର, ଅଲିଭା ଗାର ଟାଣିଦେଇଛି ।

ଅଭାବ ଅସୁବିଧା ସତ୍ତ୍ୱେ ସୁଖରେ ବେଳ କଟି ଯାଉଥାଏ । ଘରର କାମ ମତେ ଏକୁଟିଆ କରିବାକୁ ପଡ଼େ । ଘରଦ୍ୱାର ପରିଷ୍କାର ରଖିବା, ରୋଷାଇବାସ, ଯୋରରୁ ପାଣି ଆଣିବା, ଲିପାପୋଛା, ବାସନମଜା ଇତ୍ୟାଦି । ପିଲାଦିନ ଏ ସବୁ କାମ କରି ଅଭ୍ୟାସ ହୋଇଥିଲା । କଷ୍ଟ ହୁଏ ନାହିଁ । ସକାଳୁ ସଞ୍ଜଯାଏ କାମରେ ଲାଗିଥିଲେ ବି ଆନନ୍ଦରେ ଲୋଟିଯାଏଁ । ମୋ ଘର, ମୋ ଗେରସ୍ତ, ମୋ ଦିଅର । ଗେରସ୍ତ ଦିଅରଙ୍କୁ ଶାନ୍ତିରେ ମୁଠାଏ ଖାଇବାକୁ ଦେବି, ଯେତିକି ପାରିବି ସେମାନଙ୍କର ସେବା କରିବି, ତାଙ୍କୁ ସୁଖୀ କରିବି, ସଦାବେଳେ ଏଇଆ ମୋ'ର ଚିନ୍ତା ଥିଲା ।

ଘରକାମ ହେଉ କି ପରକାମ ହେଉ, ଭାଇ ଦିହେଁ ଏକାମନ, ଏକାପ୍ରାଣ ହୋଇ ପରିଶ୍ରମ କରନ୍ତି । ଦୁହେ ଦୁହିଙ୍କୁ ପ୍ରାଣରୁ ବଳି ଭଲପାଆନ୍ତି । ମନରେ ମୋର ଗର୍ବ ଆସେ, ମୋର ସ୍ୱାମୀ, ମୋର ଦିଅର ! ସୁରଙ୍କୁ ସେ ପୁଅଠୁଁ ବଳି ସ୍ନେହ କରନ୍ତି । ବେଶି କାମ ନ ଥିଲେ ତାଙ୍କୁ ଘରେ ରହିବାକୁ କହି ନିଜେ ପର ଘରକୁ ଯାଆନ୍ତି । କେଉଁଦିନ ସୁର ଘରେ ରହନ୍ତି, ଆମ ଘର ପଛଆଡ଼

ଯୋଡ଼ ଉପର ବାହାରେ କାମ କରନ୍ତୁ, ନୋହିଲେ, ମୋ ହାତରୁ ଛଡ଼ାଇ କାମ କରନ୍ତୁ । ଯେତେ ମୁଁ ମନା କରେଁ, ଯେତେ ଅଭିମାନ କରି ବିରକ୍ତ ହୁଏ, ସେ ଶୁଣନ୍ତି ନାହିଁ । ସେ କାମ କରୁଥିବେ, ଆଉ ମୁଁ ତାଙ୍କ ପାଖେ ପାଖେ ଥାଇ ଭଲ ମନ୍ଦ କହୁଥିବି । ତାଙ୍କୁ ଭାରି ଖୁସି ଲାଗେ । ଉପରେ ପଡ଼ି କୌଣସିଥିରେ ହାତ ଦେଲେ, ସେ ମୋ ହାତ ଧରି କହନ୍ତି, ଥାଉ ଥାଉ, ଆଜି ତମୁକୁ କରାଇ ଦେବି ନାହିଁ ନୂଆଉ, ଆମେ ଯେଉଁଦିନ ଘରେ ନ ରହିବୁ, ସେଦିନ ପଛେ ତେତେମ ଯାହା ମନ ତାହା କରିବ ।

ମୋ ମୁହଁକୁ ଅନାଇଁ ରହିଲେ । ତାଙ୍କର ଦି ଆଖିରେ ମୁଁ ଯେପରି କଣ ଗୋଟାଏ ଦେଖିଲି । ଧୀରେ ଧୀରେ ହାତ ଖସାଇ ନେଲି । ଛାତିରେ ଛନକା ପଶେ । ନିଜର ଭ୍ରମ ବୋଲି ଭାବି ହସି ହସି କହିଲି, କ’ଣ କରୁଛ କର, ତମ ଭାଇ ଆସିଲେ ସବୁ କହିଦେବି ।

ସୁର କହିଲେ, ଯେଉଁଦିନ ଏ ଘରେ ଗୋଡ଼ଦେଲ, ସେ ଦିନ ସଜ ଫୁଟିଲା କଇଁ ଫୁଲଟିପରି କେଡ଼େ ତୋରା ଦିଶୁଥିଲ ନୂଆଉ, ଏ ଗାଁରେ ତ ସମସ୍ତେ ସେଇ କଥା କହୁଥିଲେ, ଦିନ କେଇଟାରେ ମଉଳିଗଲଣି । ନା, ତମୁକୁ ଆଉ କାମ କରାଇ ଦେବି ନାହିଁ ।

ମତେ ଖୁସି ଲାଗିଲା । ପରିହାସ କରି କହିଲି, ଆମ ଘରେ ମୁଁ ସକାଳୁ ସଞ୍ଜଯାଏ କାମ କରୁଥାଏଁ । ତମ ଆଖିକି ସିମିତି ଦିଶୁଥିବ ନା !

ତେତେମ କାହିଁକି ଏପରି ଝାଉଁଳି ପଡ଼ୁଛ ?

ମିଛକଥା ।

ମିଛକଥା ନୁହେଁ । ସେଠି ତମର ବୋଉର ସ୍ନେହ, ବୋଉର ଆଦର ପାଉଥିଲ, ଆନନ୍ଦରେ, ମନ ଖୁସିରେ ଚଳୁଥିଲ, ଏଠିକି ଆସି ଘର ଯାକର ବୋଝ, ଜଞ୍ଜାଳ ମୁଣ୍ଡେଇଛ ।

କାହିଁକି ? ଏଠିକି ଆସି ତମମାନଙ୍କ ସ୍ନେହ ଆଦର ପାଇଛି ।

ସେ ମୋ ମୁହଁକୁ ଚାହିଁ ହସିଲେ ।

ମୁଁ ହସି ହସି ଚାଲିଗଲି ।

ସେ ଫେରିଲେ । ହସି ହସି ତାଙ୍କୁ କହିଲି, ସୁର ଆଜି ମତେ କାମ କରାଇ ଦେଉ ନାହାନ୍ତି । ସୁର କହୁଥିଲେ ମୁଁ କୁଆଡ଼େ ଝାଉଁଳି ପଡ଼ୁଛି ।

ନୁହେଁ କି ଭାଇ, ସତ ନୁହେଁ ? ନୂଆ’ଉ କଅଣ ଆଗପରି ଅଛି ? କେଡ଼େ ଦୁର୍ବଳ, କେଡ଼େ ଶୁଖିଲା ଦିଶୁଛି ।

ତାଙ୍କ ଦୁଇ ଆଖି ଭରିଯାଏ ସ୍ନେହରେ । ସୁରଙ୍କର ମୁଣ୍ଡରେ ହାତ ମାରି ସେ କହିଲେ, ଦେଖିଲ, ପିଲାଟାର କି ରୂପ ହେଲାଣି ? ସବୁବେଳେ ଖଟୁଛି, ଭଲକରି ମୁଠିଏ ଖାଉ ନାହିଁ । ତେତେମ ତା’ର ଯତ୍ନ ନେଉ ନ କି ଭୁଲସି ?

ଅଭିମାନରେ ନାକ ଫୁଲାଇ କହିଲି, ତମରି ଦୋଷ । ଯଦି ସକାଳ ସଂଜ କାମରୁ ଫେରନ୍ତି, ତମୁକୁ ଅନାଇଁ ଅନାଇଁ ସେ ଚୌକିରେ ବସି ଅନ୍ତି ଶୁଖାନ୍ତେ କାହିଁକି ? ସେ ତ କଚ୍ଛ କୋଳର କାଖର ହୋଇ ନାହାନ୍ତି ଯେ, କାନଧରି କୋଳରେ ବସାଇ ଜହ୍ନମାମୁଁ ଦେଖାଇ ହାତରେ ଖୁଆଇ ଦେବି ।

ଟିକିଏ ଗମ୍ଭୀର ହୋଇ ସେ କହିଲେ, ଏଥର ସେଇଆ କରିବାକୁ ହେବ । ପିଲାଦିନୁ ସେ ମା ସ୍ନେହ ଜାଣେ ନାହିଁ ।

ଏତେ ବଡ଼ ଭାଇଟା ଆଗରେ ମୋ କପାଳ ଉପର କେଶ ସଜାଡ଼ି ଦେଲେ । ମୋ ଗାଲରେ ଟିପ ଚିପିଦେଇଁ ହସି ହସି କହିଲେ, ଦେଖ୍‌ରେ ସୁରି, ଏଥର ତୋ ନୂଆଜିର ମୁହଁ ନାଲି କଇଁ ପରି ଦିଶିଲାଣି ।

ସୁରି ବାଁରେଇ ହୋଇ ଦାଣ୍ଡଆଡ଼କୁ ଚାଲିଗଲେ । ମୁଁ ଅଭିମାନରେ ଭାବିଲି, ତାଙ୍କ ଆଖିରେ ମୋ ଭଲ ମନ୍ଦ ଦିଶେ ନାହିଁ । ତାଙ୍କ ଆଖିରେ ସବୁବେଳେ ସୁରି ଦିଶନ୍ତି ଯେପରି, ସୁରିଙ୍କ ପାଇଁ ଏ ଘର, ଏ ସଂସାର ଆଉ ଆମର ଘରକରଣା । ହେଲେ, ସୁରିଙ୍କ ପ୍ରତି ମନରେ କେବେ ଈର୍ଷା ଆସେ ନାହିଁ ।

ଟିକିଏ ପରେ ସୁରିଙ୍କ ସଙ୍ଗେ ଦେଖା ହେଲା । କହିଲି ଏଥର ତମର କାନଧରି ତମକୁ ଉଠବସ କରିବି । ତେମେ କମିତି କଥା ମାନ ନା, ଦେଖିବି ରହ ।

ଭୁନ କରି ସେ କାନ ଦେଖାଇଲେ । କହିଲେ ହଉ, କାନ ମୋଡ଼, ଥାପଡ଼ ମାର, କୌଣସି କଥାରେ ତମର ଅବାଧ ହେବି ନାହିଁ । ଖାଲି କାମ ବେଳେ ତମ କଥା ଶୁଣିବି ନାହିଁ ।

ଧୀରେ ଧୀରେ ତାଙ୍କର କାନ ମୋଡ଼ିଲି, ଗାଲରେ ଚିଟ୍ଟେ ଚିଟ୍ଟେ ଚାପୁଡ଼ା ମାରିଲି । ଶିଶୁଟି ପରି ମୋ କାନ୍ଧ ଉପରକୁ ମୁଣ୍ଡ ନୁଆଁଇ ଆଣିଲେ । ଦୁଇ ଆଖି ବୁଜିଦେଲେ ।

କେଜାଣି କାହିଁକି ମୋ ଛାତି କମ୍ପି ଉଠିଲା । ସୁରି ! ପିଲା ନୁହନ୍ତି । ସୁରି ଦିଅର । ଦିନେ ପୁଣି ତାଙ୍କର କଥା ଭାବିବାକୁ ଖୁସି ଲାଗୁଥିଲା । ଦିନେ ପୁଣି ଏଇ ସୁରିଙ୍କର ଦେହର ଟିକିଏ ପରଶରେ ଶୀହରଣର ଉତ୍ତେଜନା ପାଇବି ବୋଲି, ତାଙ୍କ ହାତକୁ ପାଣି କି ପାନ ବଢ଼ାଇ ଦେଉଥିଲି । ଅଜାଣତ ଅବସ୍ଥାରେ ଆଖି ସଙ୍ଗେ ଆଖି ମିଳୁଥିଲେ, ଲାଜରେ, ସଙ୍କୋଚରେ ମଥା ନୁଆଁଉଥିଲି । ସୁରି ପିଲା ନୁହନ୍ତି । ପୁଣି ସୁରି ଦିଅର, ଆମ କୁଳର ଦିଅର, ଯେଉଁ କୁଳରେ,......ଛି !

ହାତ ଥରିଉଠିଲା । ଆଖିରେ ନିଆଁ ଜଳି ଉଠିଲା । ପଛକୁ ଘୁଞ୍ଚି ଆସିଲି ।

ଚମକିଲା ପରି ସୁରି ଉଠିଲେ । ଠଳୁ ଠଳୁ ଠିଆ ହୋଇଗଲେ, ମୋ ମୁହଁକୁ ଚାହିଁ କ'ଣ ବୁଝିଲେ କେଜାଣି କହିଲେ, ଡରି ଯାଇଥାନ୍ତି ଯଦି ? ରହ, ଭାଇ ଆସନ୍ତୁ କହିବି ।

ମନର ସବୁ ଅନ୍ଧାର ଭାବନା ଦୂରକୁ ତଡ଼ି କହିଦେଲି ନାଇଁ ନାଇଁ ଫଡ଼ନ୍ତ କାହିଁକି, ମୁଁ ତମ ପଛରେ ଠିଆ ହୋଇଛି ଯେ ।

ସେ ହସିଲେ ।

ମୁଁ ହସିଲି । ଅନ୍ୟଆଡ଼େ ଚାଲିଯାଏ ।

ମୋ ଦେହ ଖରାପ ହୋଇଛି, ଜର ।

ସେ କହିଲେ, ଆରେ ସୁର, ତୋ ନୂଆଉର ଦେହ ଭଲ ନାହିଁ, ମୁଁ କାମକୁ ଯାଉଛି, ତୁ ଘରେ ରହ ।

ସୁର ମନା କଲେ । ଉତ୍ତର ଦେଲେ, ତେମେ ରହ ଭାଇ, ମୁଁ ଯାଏଁ ।

ସେ ବିରକ୍ତ ହୋଇ କହିଲେ, ନାଇଁ, ତୁ ରହ । ମୋର ତେଣେ ବାକିଆ କାମ ପଡ଼ିଛି । ଦାସଘର ମାଙ୍କଡ଼ା ପଥର ବୁହା ଅଧା ହୋଇଛି ।

ମତେ ବିରକ୍ତ ଲାଗିଲା । ଜର, ଦହ ହାତ ଧୋଳିହେଉଛି, ତାଛ ଯେ, ଖଇ ଫୁଟିବ, ବିଛଣାରୁ ଉଠିବାର ଶକ୍ତି ନାହିଁ । ତାଙ୍କର ବାକିଆ କାମ ଏପରି ବଳେଇ ପଡ଼ିଲା ଯେ, ମୋତେ ଛାଡ଼ି ସେ ଚାଲିଯିବେ ।

କହିଲି, ତେମେ ରହ, ସୁର ପଛେ ଯାଉନ୍ତୁ ତୁମ କାମ ତୁଟାଇବେ ।

ଅଛ ଆଦରରେ ତାଛିଲା କପାଳରେ ହାତ ମାରି, ମୁହଁରେ ମୁହଁ ଲଗାଇ କହିଲେ, ସୁରଟା ପିଲାଲୋକ, ସେ ପଥରବୁହା କାମକୁ ପାରିବ ନାହିଁ ତୁଲସି ! ମୂଲିଆ ମୁଣ୍ଡ; ନ ଗଲେ ବି ନ ଚଳେ । ଆଉ ଦିନକୁ ଆଉ ଦିନ ଅଛି । ଖାଉନ୍ଦ ବିରକ୍ତ ହେଲେ ପେଟ ପୋଷିବା କେମିଛି ? ସୁର ଥାଉ, ମୁଁ ସହଳ ଆସିବି ଯେ ।

ତାଙ୍କର ଆଦର ସ୍ନେହରେ ଆଖିରେ ମୋର ଲୁହ ଭରିଗଲା । ଦୁଇ ହାତ ବେଢ଼ାଇ ଦେଲି ବେକ ଚାରିପାଖେ । ସେ ଧୀରେ ଧୀରେ ମୁଣ୍ଡ ଉଠାଇ ମୋର ହାତ ଖସାଇ କହିଲେ, ଡେରି ହେଲାଣି, ଯାଉଛି । ଆଉ ମୂଲିଆମାନେ ଆସି ଯିବେଣି ।

ସେ ଚାଲିଗଲେ । ମୁଁ କଡ଼େଇ ଚାହିଁଲି ।

ମୋ ସେବା କରିବାରେ ସୁର ମନପ୍ରାଣ ଢାଳି ଦେଲେ । କାମରୁ ଫେରିଲେ ଭାଇ କ'ଣ ଖାଇବେ, ସେଥିପାଇଁ ସେ ରୋଷାଇ କଲେ । ମୋ ପାଇଁ ମଧ୍ୟ ରାନ୍ଧିଲେ । ତାଙ୍କୁ ସାହାଯ୍ୟ କରିବାକୁ ମୁଁ କଷ୍ଟେମଷ୍ଟେ ଉଠି ରୋଷାଇ ଘରକୁ ଗଲି । ସେ ବିରକ୍ତ ହୋଇ କହିଲେ, ନୂଆଉ, ତେମେ କାହିଁକି ଆସିଲ ? ଯାଅ ଏ ଘରୁ । ମୁଁ ବଳେଇ ପଶିଲାରୁ ସେ ମୋ ହାତ ଧରି ପୁଣି ବିଛଣାରେ

ଛାଡ଼ ଦେଲେ । ଅଙ୍ଗୁଠି ଦେଖାଇ, ଆଖି ଠେକି କହିଲେ, ଆଜି ମୁଁ ତମ ମାଷ୍ଟର । ମୋ କଥା ନ ମାନିଲେ ତମ କାନ ମୋଡ଼ିବି । ଭାଇ ଆସିଲେ କହିଦେବି ।

ମୁଁ ହସି ହସି କହିଲି, କାନ ମୋଡ଼ିବ ତ ମୋଡ଼ । ମୋ ଦେହ ଟିକିଏ ଭଲ ଲାଗୁଛି । ଆଖି ଆଗରେ ତମକୁ କାମ କରିବାର ଦେଖିବି କେମିତି ସୁର, ଦେହ ସହିବ ?

ସତକୁ ସତ ସେ ମୋ କାନ ପାଖକୁ ହାତ ଆଣି କହିଲେ, ଆଖି ବୁଜି ତୁନି ହୋଇ ଶୋଇପଡ଼ । ପିଲା ଲୋକ, ପୁଣି ଅବାଧ୍ୟତା କାଢ଼ୁଛନ୍ତି । ଶୁଅ ।

ତାଙ୍କର ସ୍ନେହ, ତାଙ୍କର ଆଦରମିଶା ରାଗ ମୋତେ ଭାରି ଭଲଲାଗେ । ମୁଁ ଆଖି ବୁଜେ । ସେ ଆଙ୍ଗୁଠିଲିପରି ଗୁଡ଼ପଡ଼ା ମାରି କହିଲେ, କଥା ନ ମାନି ପୁଣି ଉଠିବ ତ ପୁଣି ଦେଖିବ ।

ମତେ ହସମାଡ଼ିଲା । କହିଲି, ହଉ ଯା, ଭାରି **ମଣିଷଟାଏ ତ !**

ସେ ଗଲେ । କେବେ କାଳର କେଉଁ କଥା ମୋର ମନେ ପଡ଼ିଗଲା । ଚମକି ଉଠିଲି । ସୁରଙ୍କର ଏ କି ଢଙ୍ଗ ? ମୁଁ କ'ଣ ପିଲାଛୁଆ ହୋଇଛି ? ସେ ବି ପିଲାଛୁଆ ନୁହନ୍ତି ! ମନେ ହୁଏ, ତାଙ୍କର ପିଲାମି, ମୁରବିଗିରିରେ ଉଦ୍ଦେଶ୍ୟ ଲୁଚି ରହିଛି, ତାଙ୍କର ପ୍ରତି କାମରେ ଗୋଟିଏ ମୋହ ଛପି ଛପି ବୁଲୁଛି । କିନ୍ତୁ, ତାଙ୍କର ଅଗ୍ରହ ଓ ସରାଗରେ ବାଧା ଦେଇପାରିବି ନାହିଁ । ଆଗ ବଳପଡ଼ି ମୁଁ କାହିଁକି ମୋର ଦୁର୍ବଳତା ପଦାକୁ ଦେଖାଇବି ? ସେ ହସିବେ । ତାଙ୍କର ଭାଇ ଶୁଣିଲେ ମତେହିଁ ଥଟ୍ଟା କରି ପାଞ୍ଚକଥା କହିବେ । କିଛି ବୁଝିପାରେ ନାହିଁ । ମନର କୋହରେ ମୁଦିଲା ଆଖିରୁ ଗଡ଼ିପଡ଼େ ଲୁହ !

କାହାର ଶୀତଳ ହାତର ପରଶ କପାଳରେ ପାଇ ମୁଁ ଆଖି ଖୋଲି ଦେଖିଲି, ସୁର ପାଖରେ ଠିଆହୋଇ ନଇଁ ପଡ଼ିଛନ୍ତି । ମୁହଁରେ ସରାଗ ନାହିଁ । ଆଖି ଛଳଛଳ କରି କହିଲେ, ନୂଆଭାଉଜ, ତାତି ଭରି ରହିଛି । ତେମେ କାନ୍ଦୁଛ କାହିଁକି, ମୁଣ୍ଡ ବିନ୍ଧୁଛି, ଗୋଡ଼ ବଥଉଛି ?

ତାଙ୍କର ଶୁଖିଲା ମୁହଁକୁ ଚାହିଁ ରହିଲି ଘଡ଼ିଏ । ବୁଝିବାକୁ ଚେଷ୍ଟା କଲି, ସେହି ଛଳଛଳ ଆଖିରୁ କି ଭାଷା ବାହାରୁଛି, ଉଜ୍ଜ୍ୱଳ କପାଳ ତଳେ କି ଭାବନା କି ଚିନ୍ତା ଖେଳିଯାଉଛି । ବୁଝିପାରିଲି ନାହିଁ । ଓଠ ଉପରକୁ ଶୁଖିଲା ହସ ଟାଣି କହିଲି, ତେମେ ଖାଇବ ନାହିଁ ସୁର, କେତେ କାମ କରିବ ? ଯାଅ, ଖାଇବ, ସୁନା ଭାଇଟି—

ଓଲଟି ପଚାରିଲେ, ତେମେ କାନ୍ଦୁଛ କାହିଁକି ?

ରହ ରହ କହିଦେଲି, ଭାବୁଛି କାଲେ ମରିଯିବି ।

ତାଙ୍କ ମୁହଁ ଶୁଖିଗଲା । କେଡ଼େ କରୁଣ ହୋଇ କହିଲେ, ତମେ ମରିବ ନାହିଁ ନୂଅଉ, ତୁମକୁ ମରିବାକୁ ମୁଁ ଛାଡ଼ିଦେବ ନାହିଁ । କେତେ ଲୋକଙ୍କୁ ଜର ହୁଏ, ପୁଣି ଭଲ ହୋଇଯାଏ ।

କହିଲି, ସ୍ୱାମୀ ଦୀଅରଙ୍କ ଆଗରେ ମରିଯିବା କେଡ଼େ ଗର୍ବର, କେଡ଼େ ଆନନ୍ଦର କଥା । କେତେ ଜଣଙ୍କ ଭାଗ୍ୟରେ ଘଟେ ?

ତାଙ୍କର ଆଖିରେ ଲୁହ । କହିଲେ ଏଇଥି ପାଇଁ ଏ ଘରକୁ ଆସିଥିଲ ? ଏଇଥି ପାଇଁ ଆମର ଏ ଅନ୍ଧାର ଘରେ ଦୀପ ଜାଳିଥିଲ ନୂଅଉ ! ଛି, ସେ କଥା ଆଉ ତୁଣ୍ଡରେ ଧରିବ ନି । ପିଲାଟିଏ ହୋଇଥିଲି, ମା ମଲା । ମାକୁ ଭଲକରି ଦେଖି ନାହିଁ । ଜାଣ, ତା ପାଇଁ ମୁଁ କେତେ ଭାବେ, ତା ପାଇଁ ମୁଁ କେତେ କାନ୍ଦେ ? ତେମେ ଏ ଘରକୁ ଆସିଲ । ତୁମକୁ ଦେଖି ସବୁ ମୁଁ ପାଶୋରି ଯାଇଛି । ତେମେ ମରିବ ନାହିଁ, ମୁଁ କହୁଛି ।

ବିହ୍ୱଳ ହୋଇ ଲୁହଧୂଆ ମୁହଁଟି ମୋର ଉପରେ ଟଳାଇ ଦେଇ କହିଲେ, କହ, ଆଉ ଦିନେ ଏପରି ଭାବିବ ନାହିଁ ? କହ, ନୂଅଉ ।

ଭୁଲିଗଲି ଯେ ସେ ମୋ ଦିଅର । ଭୁଲିଗଲେ ଯେ ସେ ଶଶୁ ନୁହନ୍ତି । ଧୀରେ ଧୀରେ ମୋର ଦୁର୍ବଳ ହାତଟି ତାଙ୍କର ମୁଣ୍ଡ ଉପରେ ରଖି କହିଲି, ତମର ପାଇଁ ମୁଁ ବଞ୍ଚି ରହିବି ସୁର, ତେମେ ମତେ ଭଲପାଅ ।

ବାହାରୁ ସେ ଡାକିଲେ, ସୁର, ସୁର—,

ଚମକି ପଡ଼ିଲି । କେଜାଣି କାହିଁକି ଖେଳିଗଲା ମନରେ ଅଲଗା ଭାବ । ଛିଃ, ସୁର ମୋର ପୁଅ ନୁହନ୍ତି, ଭାଇ ନୁହନ୍ତି । ସୁର ମୋର ଦିଅର । ଏଡ଼େ ବଡ଼ ଦିଅର । କଅଣ ସେ ଭାବିବେ ?

ଦିନେ ଦି ପହରେ ସଅଠାବୋଉ ତେଲୁଣୀଲୋକମାନେ ତଣ ତେଲ ବିକି କେଡ଼େ ଗୁପ୍ତରେ କହିଲେ, ଆଲୋ ଶୁଣିଲୁଣି, ଜଟିଆ, ନଟିଆ, ହଟିଆଙ୍କ କଥା, ଜଟିଆ ବାହାକୁ ନଟିଆ ବାର ବରଷର ପିଲା, ହଟିଆଟା ତ ନଙ୍ଗଳା, ପାଞ୍ଚ କି ଛ ବର୍ଷର ହେବ । ବାହା ସାତ ବର୍ଷରେ ଜଟିଆ ମଲା । ଦି ପୁଅ । କେତେ ଲୋକ କେତେ କଥା କହନ୍ତି ମ, ନଟିଆ ହେଲା ଦୁତୀୟ । ଅନ୍ଧର ପାଞ୍ଚ ବର୍ଷ କଟିଲା । ତାଙ୍କର ବି ଗୋଟିଏ ଝିଅ । ନଟିଆ ଭେଟଣାରେ ଗଲା, ଦେଢ଼ ବର୍ଷ ହେଲାଣି । ଆଲୋ ତା' ଉରଲର କଣ ପିଲା ଛୁଆ ହେବ । ହଟିଆ ପରା ତାକୁ ପୁଣି ଦୁତୀୟ ହେଉଛି ।

ନଟିଆ ଦିଅର, ହଟିଆ ବି ଦିଅର !

ମୁଁ ତାକୁ ଉତ୍ତର ଦେଇ ନଥିଲି । ସଂସାରରେ ସବୁକଥା ସମ୍ଭବ ହୁଏ । କାହାଁକି କପରି କ'ଣ ଘଟେ ପର ଲୋକଙ୍କର ଜାଣିବାର ଉପାୟ ନାହିଁ । ତେଣୁ ଲୋକେ ନିଜ ରୁଚି ପ୍ରକାରେ ଅନୁମାନ କରିନିଅନ୍ତି ଓ ଦୁର୍ନାମ ରଟାନ୍ତି । ସୁର ବି ସେହି ଦିଅର । ତାଙ୍କର ମନ ଦିନେ ମୋରି ଆଡ଼କୁ ଟଳିଥିଲା । ତାଙ୍କରି ପାଇଁ ଆଖିରୁ ମୋର ଦିନେ ଲୁହ ଝରିଥିଲା ।

ଅସ୍ଥିରତା ଅନୁଭବ କଲି । ସେ ବାହାରେ ଡାକୁଛନ୍ତି । ବିଚଳିତ ହୋଇ କଡ଼ ବୁଲାଇ ଶୋଇଲି । ଥରିଲା ସ୍ୱରରେ କହିଲି, ତମ ଭାଇ ଆସିଲେଣି ସୁର ।

ଅସନ୍ତୁ । ଡାକିଲେ ଭାଇ, ଭାଇ—

ମୁଁ ଉଠି ବସିବାକୁ ଚେଷ୍ଟାକଲି । ସୁର ମୋ ପାଖକୁ ଲାଗି ବସି ମୋ ବାହା ଉପରେ ହାତର ଚାପ ଦେଇ କହିଲେ, ଉଠନା ନୂଆଉ, ତେମେ ଭାରି ଦୁର୍ବଳ ହୋଇଛ । କେଇଟା ଦିନ ଜର ପାଇଁକି ଏପରି ହୋଇ ନାହିଁ । ତମର ଅମାନିଆଁ ପଣ ପାଇଁ ଏପରି ହେଲା । ଖାଇବାକୁ ଯାହା ଦେଲେ ମନା କରି ଦେଉଛ । ଭାଇଙ୍କି ସବୁ ଆଜି ନିଶ୍ଚେ କହିବି ।

ସେ ଆସି ପହଞ୍ଚିଲେ । କାମରୁ ଫେରି ମୁହଁଟି ଶୁଖି ଯାଇଥାଏ । ଆମୁକୁ ଦେଖି ତାଙ୍କର ଆଖି ଉଜଳି ଉଠିଲା । ପଚାରିଲେ, ତୋ ନୂଆଉ କେମିତି ଅଛି ରେ ସୁର !

ସୁର ମୁହଁ ଶୁଖାଇ ସବୁ କହିଲେ । ସେ ଆଗ୍ରହରେ ଶୁଣିଲେ । ସାନ୍ତ୍ୱନା ଦେଇ କହିଲେ, ନାଇଁରେ ସେ ମରିବ ନାହିଁ । ତୁ ପିଲା ହୋଇଥିଲୁ, ବୋଉ ଛାଡ଼ି ଚାଲିଗଲା । ତୁ ଏବେ ବଡ଼ ହେଲୁଣି । ତୋ ନୂଆ'ଉ ତତେ ଛାଡ଼ି ଯାଇ ପାରିବ ନାହିଁ ।

ଲାଜବି ହୋଇ କହିଲି, ମୁଁ ସୁରକୁ ମିଛରେ କହୁଥିଲି ନା—।

ସେ ଗମ୍ଭୀର ହୋଇ କହିଲେ, ସେପରି କହିବ ନାହିଁ । ଦେଖିଲ ତା ଆଖିକି ।

ମୁଁ ତୁନି ହେଲି । ସେ ପୁଣି କହିଲେ, ଆରେ ସୁରଆ ଟିକିଏ ହ୍ୱରେଇ ବସ ରେ, ଏ ଜରଟା ଉଆଁ ରୋଗ, ଘର ଘର ହୋଇ ପଡ଼ୁଛନ୍ତି । କିଅଣ ଖାଇଲୁଣି ?

ମୁଁ ଜବାବ ଦେଲି, ନାହିଁ, ନିଜ ହାତରେ ରୋଷାଇ କରି ରଖି, ମୋରି ପାଖରେ ଜଗିବସିଛନ୍ତି । ସତେ କି କୁଆଡ଼େ ମୁଁ ପଳାଉଛି ।

ସତେ ?

ସୁର କହିଲେ, ନୂଆ'ଉ କିଛି ଖାଇ ନାହିଁ ।

ସେଇଥିପାଇଁ ତୁ ବି ଉପାସ ବସିଛୁ ? ଆ, କହି ତାଙ୍କର ହାତ ଧରି ରୋଷ ଘରକୁ ନେଲେ ।

ନବେଳାରେ ଅଖି ଲୁହରେ ସପ ଭସାଇଲି । ସ୍ୱାମୀ ମୋର ମଣିଷ ନୁହନ୍ତି, ସେ ଦେବତା । ତାଙ୍କ ମନରେ ସ୍ୱର୍ଗ, ଅଖିରେ ପବିତ୍ରତା, ତୁଣ୍ଡରେ ଅମୃତ । ସୁରଙ୍କୁ ଛନ୍ଦେ ନ ଛନ୍ଦେ, ମୁଁ ମୋର ଦେବତାଙ୍କୁ ଛନ୍ଦେ । ତାଙ୍କର ଗୋଡ଼ତଳେ ମୁଣ୍ଡ ରଖି ମୋର ଜୀବନ ଯାଉ, ଏତିକି ମୋ'ର ଠାକୁରଙ୍କ ପାଖରେ ଗୁହାରି ।

ଠାକୁର ମୋ ଗୁହାରି ଶୁଣିଲେ ନାହିଁ । ଆଜ ସେ ନାହାନ୍ତି । ମୁଁ ଅଲକ୍ଷଣୀ ବଞ୍ଚିରହିଛି ।

ଥରେ ସୁରଙ୍କ ଦେହ ଭଲ ନଥାଏ । କାମକୁ ନ ଯାଇ ଘରେ ଥାଆନ୍ତି । ତାଙ୍କର ଭାଇ ଅନିଦ୍ରା ହୋଇ ଜଗିବସନ୍ତି । ମୋତେ ଶୁଆଇ ଦିଅନ୍ତି ନାହିଁ । ଦିନବେଳା ସେ ଯାଆନ୍ତି କାମକୁ । ମୂଲିଆମୁଣ୍ଡ, ପର ଘରେ ମୂଲ ନ ଲଗିଲେ ଚଳିବ ନାହିଁ ତ ।

ଘରେ ସାଇତା ଦରବ ଖାଇ ଦେଲେ ଦିନ କେଇଠାରେ ସରିଯିବ । କାମକୁ ଯିବା ଆଗରୁ ମତେ ଛିଆରି କହିଯାଆନ୍ତି, ସୁର ତମ ଜିମା ରହିଲା, ତାଆର ଯେମିତି ଅସୁବିଧା ନ ହୁଏ ଦେଖିବ ।

ସଂସାର କରିବା ମୋର ଦୁଇବର୍ଷ ପୂରି ଯାଇଥାଏ । ଦେହ ଖରାପ ହେଲେ ସୁର ଅସ୍ଥିର ହୋଇପଡ଼ନ୍ତି, ପିଲାଙ୍କ ପରି କାନ୍ଦନ୍ତି, ମୁଁ ସେ କଥା ଜାଣେଁ । ସେଇଥିପାଇଁ ତାଙ୍କ ପାଖେ ପାଖେ ଥାଏଁ । ପ୍ରାଣପଣେ ଲାଗି ସେବା ଯତ୍ନ କରେ । ଦେଖେଁ, ସେ ବି ଯେପରି ମୋ'ର ସେବା ଯତ୍ନକୁ ଆକୁଳ ହୋଇ ଚାହିଁ ରହିଥାନ୍ତି ।

ଜର ଛାଡ଼ି ଯାଇଥାଏ । ଦୁର୍ବଳତା ଭାଙ୍ଗି ନ ଥାଏ । ସକାଳ ପହରୁ, ସ୍ୱାମୀ କାମକୁ ଗଲାବେଳୁଁ, ମୁଁ ତାଙ୍କର ପାଖରେ ବସିଥାଏଁ । କେତେବେଳେ ମୁଣ୍ଡ ଆଉଁସେ, କେତେବେଳେ ଦେହ ଆଉଁସେ, ବିଞ୍ଚି ଦିଏ । ମୋ ପିଲାଦିନର କେତେ କେତେ କଥା କହିଲି । ମନ ଦେଇ ସେ ଶୁଣିଲେ । ମୋର ମୁହଁକୁ ତନ୍ମୟ ହୋଇ ଚାହିଁ ରହିଲେ । ଧୀରେ ଧୀରେ ତାଙ୍କ ଅଖିପତା ବନ୍ଦ ହୋଇ ଆସିଲା । ମୁଁ ତାଙ୍କ ପାଖରୁ ଉଠିଯାଇ ଘର କାମ କଲି । ତାଙ୍କର ନିଦ ଭାଙ୍ଗିଲା । ଡାକ ଛାଡ଼ିଲେ । କାମ ଅଧା ପକାଇ ପାଖକୁ ଆସିଲି ।

ପଚାରିଲେ, ଚାଲିଗଲ କାହିଁକି, କଥା କହୁଥିଲ ପରା !

ତମେ ଶୋଇପଡ଼ିଲ । କଥାରେ ପେଟ ପୂରିବ ? ରୋଷାଇ ନ ହେଲେ ଖାଇବ କଅଣ ? ତମ ଭାଇ କାମରୁ ଫେରୁଥିବେ ହାଲିଆ ହୋଇ । ଶୋଇପଡ଼ । ମୁଁ କାମ ସାରି ଅସୁଛି ।

ଭାଇଙ୍କ ନାଁ ଶୁଣି ସେ ଆଉ କଥା କହିଲେ ନାହିଁ ।

କାମ ସାରି ଅସିଲି । ତାଙ୍କର ମୁଣ୍ଡ ପାଖରେ ବସି ମୁଣ୍ଡ ଆଉଁସିଲି । ସେ ଶାନ୍ତିରେ ଅଖି ବୁଜି ମୋ'ର କୋଳରେ ମୁଣ୍ଡ ରଖି ଶୋଇପଡ଼ିଲେ । ତାଙ୍କର

ଶୋଇଲା ମୁହଁକୁ ଏକା ଅଖିରେ ଚାହିଁ ରହିଲି । ଭାବିଲି, ଯେଉଁ ମୁଣ୍ଡଟି କୋଳରେ ଧରି ବସିଛି ତା ଭିତରେ କ'ଣ ଅଛି ? ମଣିଷ ଆମେ, ବୁଝିବାର ଶକ୍ତି ଯଦି ଥାଆନ୍ତା ! ଭାଇ ପରି ଯାହାକୁ ମୁଁ ସ୍ନେହ କରେ, ସେ ମୋତେ ସେହିପରି ଭଲ ପାଏ ତ ?

ଦାଣ୍ଡରୁ ପାଟି ଶୁଭିଲା । ମନେ ପଡ଼ିଗଲା ଯେ ଦାଣ୍ଡ କବାଟ ମୁକୁଳା । କିଏ କାଳେ ଆସିଯିବ, କ'ଣ ମନେ କରିବ ! ଏଡ଼େ ବଡ଼ ଘରର ପୁଣି ଏଗାଁରେ ଯାହା ସବୁ ଘଟିଯାଇଛି, ଲୋକେ ଭଲ ମନ୍ଦ ଜାଣିବେ ନାହିଁ, ମନକଥା ବୁଝିବେ ନାହିଁ, ମନ୍ଦକଥା ଆଗ ଆଖିକୁ ଦିଶିବ । ସେହି କଥା ବଡ଼ କରି ଚର୍ଚ୍ଚା କରିବାକୁ ଖଳ ଲୋକଙ୍କ ମନ ଛଟପଟ ହୁଏ । କାହାରି ତୁଣ୍ଡରେ କେହି ତ ବାଡ଼ବତା ଦେଇ ପାରିବେ ନାହିଁ । ତୁଣ୍ଡ ବାଇଦ ସହସ୍ର କୋଶ ।

ସୁରଙ୍କୁ ନ ଉଠାଇ ଧୀରେ ଧୀରେ ଗୋଡ଼ ଟାଣି ନେଉଥିଲି । ତାଙ୍କର ନିଦ ଭାଙ୍ଗିଗଲା । ସେ ଆଖି ଖୋଲି ମୋ ଦୁଇ ହାତକୁ ଧରିଲେ । ନେହୁରା ହୋଇ କହିଲେ, ଯାଅନା ନୂଆଭାଉଜ ।

ବାହାରୁ ପାଟି ଶୁଭିଲା । ଧୀରେ ଧୀରେ ଗୋଡ଼ ଖସାଇ କାନ୍ଦିଲେଇ କହିଲି, ଦାଣ୍ଡ କବାଟ ମୁକୁଳା ଅଛି, ହେଇ, କିଏ ଡାକୁଛି । କାଳେ ଆସିଯିବ ସୁର, ଏ ଗାଁର ଲୋକଙ୍କୁ କ'ଣ ଲଜ୍ଜା ନାହିଁ ?

ଆସିଲା ଲୋକଙ୍କୁ ବିଦାକରି ମୁଁ ଫେରି ଆସିଲି ସୁରଙ୍କ ପାଖକୁ । ସେ କଡ଼ ବୁଲାଇ ଶୋଇଥାନ୍ତି । ଯେତେ ଡାକିଲି ଶୁଣିଲେ ନାହିଁ । ଦୋଷ କଲା ପରି ମୋର ମନେ ହେଲା । ମୁଣ୍ଡ ପାଖରେ ବସି ପୁଣି ତାଙ୍କ ମୁଣ୍ଡକୁ ମୋ କୋଳ ଉପରକୁ ଆଣିଲି । ଦେଖିଲି, ତାଙ୍କ ଆଖିରେ ଲୁହ ! ପଚାରିଲି, କାନ୍ଦୁଛ ?

ମୁଣ୍ଡକୁ ତଳକୁ ଖସାଇ ନେଲେ । ଅଭିମାନିଆ ସ୍ୱରରେ କହିଲେ, ଥାଉ, କିଏ ଆସିଯିବ ।

ଲାଜକୁ ହୋଇ ତାଙ୍କ ଆଖିରୁ ଲୁହ ପୋଛିଲି । କହିଲି, ଅସ୍ତୁ, ଦାଣ୍ଡ କବାଟ କିଳିଦେଇ ଆସିଛି ଯେ ।

କାବା ହୋଇ ମୋ ମୁହଁକୁ ଚାହିଁ କହିଲେ, ସତେ, ଲୋକେ ଏମିତି କ'ଣ ଭାବିବେ ବୋଲି ଡରୁଛ ?

ଉତ୍ତର ଦେଇପାରିଲି ନାହିଁ । ଲାଜରେ ତାଙ୍କ ମୁହଁକୁ ଚାହିଁ ପାରିଲି ନାହିଁ ।

ତାଙ୍କ ଭାଇ କାମରୁ ଫେରିଲେ । ଭାବିଥିଲି ସୁର ମୋ ନାମରେ ତାଙ୍କ ଆଗରେ ନାଲିସ୍ କରିବେ । କିନ୍ତୁ ସେ କିଛି କହିଲେ ନାହିଁ । ମୋର ବି ତୁଣ୍ଡ ଖୋଲିବାକୁ ସାହସ ହେଲା ନାହିଁ । କେତେଦିନ ଯାଏ ଘଟଣାଟି ମନେ ମନେ ଗୁଣିହେଲି । ସୁରଙ୍କର ମନରେ ଯଦି ଏତେ ସରଳତା, ପବିତ୍ରତା, ସେ ଏଇ ସାମାନ୍ୟ କଥାଟି ଲୁଚାଇ ରଖିଲେ କାହିଁକି ?

ମନରେ ଦୁଗୁଣେଇଁ ହୋଇ ଜଳୁଥିବା ଚନ୍ଦ୍ରାର ତାତି ସହି ନ ପାରି ଦିନେ ତାଙ୍କ ଆଗରେ ସବୁ କହିଲି । ସବୁ କଥା ଶୁଣି ସେ କହିଲେ, ସତେ, ପିଲାଟାର ମନରେ ଏତେ କଷ୍ଟ ହୋଇଥିଲା ? ତମ ସ୍ନେହର କବାଟ କିଲିଦେଲ ତା ପାଇଁ ? କେଡ଼େ ଦୁଃଖରେ ସେ ତାର ପାଟି ବନ୍ଦ କରି ରଖିଛି ବୁଝିପାରିବ ନାହିଁ । ସେ ଜାଣେ, ମୁଁ ଯଦି ଏ କଥା ତା ମୁହଁରୁ ଶୁଣିବି, ମୋର ମନରେ ଦୁଃଖ ହେବ ।

ସାହସ କରି କହିଲି, ସେ ତ ଆଉ ପିଲା ହୋଇ ନାହାନ୍ତି, ଲୋକେ କ'ଣ ଭାବିବେ ?

ଦୁଃଖରେ ତାଙ୍କର କଣ୍ଠ ରୁଦ୍ଧ ହୋଇ ଆସିଲା । କହିଲେ, ସେ ମୋର ଭାଇ, ପିଲା ଭାଇ । ତାର ମୁଣ୍ଡ ବାଳ ପାଚିଲେ ବି ସେ ମୋର ପିଲା ଭାଇ, ଏଇ କୋଳରେ ମଣିଷ, ଏଇ ପିଠିରେ ନାଉ ।

ଡରି ଡରି କହିଲି, କିନ୍ତୁ ମୋ'ଠିର ତ ଭାଇ ନୁହନ୍ତି, ଦିଅର !

ହସି ଉଠିଲେ । କହିଲେ, ଖାଲି ଦିଅର, ଭାଇ ନୁହେଁ ? ତମେ କ'ଣ ମୋଠାରୁ ନିଜକୁ ଭିନେ ବୋଲି ମଣିଛ ?

ନିଜର ଭୁଲ୍ ମୁଁ ବୁଝିଲି । ତଥାପି କହିଲି, ଦୁନିଆର ଲୋକେ ଖଳ । ସଜ ମାଛରେ ପୋକ ପକାନ୍ତି ।

କେଡ଼େ ଜୋର୍‌ରେ କହିଲେ, ସତେ, ସତେ, ଦୁନିଆର ଲୋକଙ୍କୁ ତମେ ଅନାଅଁ, ମୋତେ ଅନାଅଁ ନାହିଁ ? ତୁମ ନାଁ ପରା ତୁଳସୀ ! ଖତକୁଢ଼ରେ ଥିଲେ ବି ଆବର୍ଜନାର ଗନ୍ଧ ରହେ ନାହିଁ ?

ଆଉ ମୋର ଧୈର୍ଯ୍ୟ ରହିଲା ନାହିଁ । ଦୁଃଖର କୋହରେ କାନ୍ଦ କାନ୍ଦ ହୋଇ ତାଙ୍କର ଗୋଡ଼ ଉପରକୁ ଢଳି ପଡ଼ିଲି । ଦୁଇ ହାତରେ ତାଙ୍କୁ ଗୁଡ଼ାଇ ଧରି କହିଲି, ମୋର ଦୋଷ ହୋଇଛି—ମତେ କ୍ଷମା କର ।

ଆସ୍ତେ ଆସ୍ତେ ମତେ ସେ ଆଡ଼େଇ ଦେଲେ । କହିଲେ, ମୋ ଭିତରେ ତମ ଭିତରେ ଯେଉଁ ତଫାତ୍ ଦେଖୁଛ, ସେତକ ଘୁଞ୍ଚାଇ ନ ପାରିଲେ ଦୁଇଟା ମନ, ଦୁଇଟା ଦେହ ମିଳିବ କିପରି ? ଯେଉଁ ଦିନ ସୁରକୁ ତମେ ଶ୍ରେଷ୍ଠ ଭାଇଟି ପରି ଦେଖିପାରିବ, ଅନୁଭବ କରି ପାରିବ, କେବଳ ସେହିଦିନ ଏହା ହେବ. ବୁଝିଲ ?

ସେ ଅନ୍ୟଆଡ଼େ ଗୁଲିଗଲେ । ମୁଁ ସେଇଠି ଠିଆ ହୋଇ ଭାବିଲି, ମୋର ସ୍ୱାମୀ ମତେ ଯେଉଁ ଉପଦେଶ, ଯେଉଁ ଶିକ୍ଷା ଦେଇଗଲେ, ସେହି ଅନୁସାରେ ମୁଁ ଚଳିପାରିବ ତ ? ଦୁନିଆଁ ଲୋକଙ୍କର ଆଖି, ଦୁନିଆଁ ଲୋକଙ୍କର କଥା ଏଡ଼ି ଦେଇ ସଂସାରରେ ମୁଣ୍ଡ ଟେକି ଚଳି ହେବ ତ ?

୧୦

ମନୁଆଁ ପେଟରେ ରହିଲା । ମତେ ମାଟି ମାଟି ଲାଗିଲା । ବାନ୍ତି ଉଗ୍ଳାଳ, ମୁଣ୍ଡବୁଲା, ଅଳସ । କାମ କରିବାକୁ ମନ ଡାକେ ନାହିଁ । ନ କଲେ ନ ଚଳେ । କାମ କରିବାକୁ ବସିଲେ ହାତ ଗୋଡ଼ ଚଳେ ନାହିଁ ।

ସୁର ବ୍ୟସ୍ତ ହୋଇ ପଡ଼ିଲେ । ପ୍ରାଣପଣେ ଲାଗି ମୋତେ ଘର କାମରେ ସାହାଯ୍ୟ କଲେ । ଜାଣନ୍ତି ନାହିଁ ସେ ମୋର କି ରୋଗ ହୋଇଛି । କହିବାକୁ ଲାଜ ମାଡ଼େ ।

ଦିନେ ସକାଳେ ସେ ଜଗର ଧରି ପଚାରିଲେ, ତମ ଦେହ ଏମିତି କଅଣ ଖରାପ ହୋଇଛି ?

ତାଙ୍କୁ ଏଣୁ ତେଣୁ କହି ଭୁଲାଇ ଦେଲି । କଥାର ସୁଅ ବଦଳାଇବାକୁ କହିଲି, ଶୁଣିଲଣି ସୁର, ମୁଁ ରୋଗିଣା ହୋଇ ଗଲଣି । ତମମାନଙ୍କର ଯତ୍ନ ନେଇ ପାରୁ ନାହିଁ । ସେଇଥି ପାଇଁ ତମ ଭାଇଙ୍କ ସଙ୍ଗେ ଲଗାଇ ତମ ପାଇଁକି ସୁନ୍ଦର ଝିଅଟିଏ ଠିକ୍ କରିଛି । ଏଇ ସାଲେ ତମ ବାହାଘର ହେବ । ତେମେ ଯେମିତି ଦି ଭାଇ ବାହାର କାମ କରୁଛ ଆମେ ଦି ଜଣ ସେମିତି ଘର କାମ କରିବୁଁ । କେଡ଼େ ଭଲ ହେବ କହିଲ ?

ସେ ମୁହିଁ ଲଦି କହିଲେ, କାହାକୁ ତେମେ ବାଛିଛ ? ସେ କ'ଣ ସୁନ୍ଦର ଟିଏ କି ?

ହସି ହସି ତାଙ୍କ ମୁହଁରେ ହାତମାରି କହିଲି, ତା ନା ଗାଁ ଏବେ ତମୁକୁ କହିବି ନାହିଁ । ଅଗ ପକା ଜବାବ୍ ଦିଅହେଉ । ଅତି ସୁନ୍ଦରୀଟିଏ ମ, ତମ ଭାଇ କହୁଥିଲେ ଚଉଦ ପନ୍ଦର ବର୍ଷର ଝିଅ, ଚମ୍ପାଫୁଲ ପରି ରଙ୍ଗ, ପୁନେଇଁ ଜହ୍ନ ପରି ସୁନ୍ଦର ମୁହିଁ—

ନବୋଧ ପରି ପଚାରିଲେ, ତମଠୁଁ ସେ ଅଧିକ ସୁନ୍ଦର ?

କହିଲି ହଁ, ତମ ଭାଇ କହୁଥିଲେ, ତା ତୁଳନାରେ ମୁଁ କୁଆଡ଼େ ଅତି ଅପରିଚ୍ଛନ୍ନ । ସେ ଏମିତି ଗୋଟିଏ ଝିଅ ଯାହାକୁ ସକାଳୁ ସଞ୍ଜଯାଏ ଚାହିଁ ର ହିଥିବ । ସେହିପରି ସାନ ଭଉଣୀଟିଏ ମୋର ଲୋଡ଼ା । ଭାଇ ଭଉଣୀ ମୁହଁ ମୁଁ ଦେଖି ନାହିଁ । ମୁଁ ତ ଏକୁଟିଆ ବାଆଁ ସ ।

ସେ କଅଣ ଭାବିଲେ । କହିଲେ, ମୁଁ ବାହା ହେବ ନାହିଁ ଯା ।

ତାଙ୍କ କଥା ସତ ମଣିଲା ପରି ମୁହଁ ଶୁଖାଇ କହିଲି, ତେମେ ବାହା ନ ହେଲେ ତମ ଭାଇଙ୍କ ମନରେ ଦୁଃଖ ହେବ । ମୋତେ କେଡ଼େ ଏକୁଟିଆ ଲାଗୁଛି, ଦେହ ଖରାପ ହେଲାଣି । କାମକୁ ପାରୁନାହିଁ ।

ସେ ସରଳ ଶିଶୁଟି ପରି ଏଣିକି ତେଣିକି ଚାହିଁଲେ । କହିଲେ, ଭାଇଙ୍କୁ ତେମେ ମନା କରି ଦିଅ ।

ଆଶ୍ଚର୍ଯ୍ୟ ହୋଇ ପଚାରିଲି, କାହିଁକି ସୁର ? ତମର ବାହା ହବା ବୟସ ହେଲାଣି, ଆଉ ଡେରି କଲେ ଯିଏ ହେଲେ କହିବ ବୁଢ଼ାବର । ତେଣିକି ଆଉ ଏମିତି ସୁନ୍ଦର ଝିଅ ତମ ହାତରେ ଦେବାକୁ କେହି ମଙ୍ଗିବେ ନାହିଁ ।

ସେ କହିଲେ, ନ ଦେଲେ ନ ଦେବେ । ମୁଁ ବାହା ହେବାକୁ ଝୁରି ମରୁ ନାହିଁ ।

ଥଟ୍ଟାରେ କହିଲି, ତେଣିକି ତମ କପାଳକୁ ଅସୁନ୍ଦରୀ, କାଳକୋଚଟୀ, ବସନ୍ତମୁହିଁ, ଟଲା ଆଖିଆ, ଚେପେଟା ନାକୀ, ଉଚ୍ଚ କପାଳୀ ବୋହୂ ମିଳିବ । କେମିତି ହେବ କହିଲ ?

ତାଙ୍କ ମୁହଁ ଉଜଳି ଉଠିଲା । ମୋର ହାତ ପାପୁଲିକି ମୁଠାଇ ଧରି ଅତି ଆଗ୍ରହରେ କହିଲେ, ଭଲ ହେବ ନୂଆଉ, ଭଲ ହେବ । ସେମିତିକା ଝିଅଟିଏ ବାହା ହେବାକୁ ମୁଁ ରାଜି ହେବି । ତମ ଗୋଡ଼ ପାଖେ ବସିଲେ ସେଇ ଶୋଭିକାରି ଦିଶିବ ।

ତାକୁ ତେମେ ଭଲ ପାଇ ପାରିବ ?

ସେ ଯଦି ତମର କଥା ମାନି ଚଳିବ, ତମର ସେବା କରିବ, ଦିନରାତି ପରିଶ୍ରମ କରିବ, ତାକୁ ଯଦି ତେମେ ସ୍ନେହ କରି ପାରିବ, ତେବେ— ।

ତା'ଙ୍କ ଆଖିରେ ଲୁହ ଛଳ ଛଳ ହେଲା ।

କେତେ ଲୋକଙ୍କର କେତେ କଥା ମୋ'ର ମନେ ପଡ଼ିଗଲା । ଗାଁ ମାଇପେ, ଯେଉଁ ମାନଙ୍କର ଉପରେ ପଡ଼ି କଜିଆ କରିବାର ସ୍ୱଭାବ, ବେଳେ ବେଳେ ଛିଦ୍ର ଖୋଜିବାକୁ ଆମ ଘରକୁ ଆସନ୍ତି । ଆମର ଢଙ୍ଗଢାଙ୍ଗ ଚାଲି ପ୍ରଚଳନ ତାଙ୍କ ମନକୁ ଆସେ ନାହିଁ । ତାଙ୍କର ଦେହ ସହେ ନାହିଁ । ମୁହଁକୁ ଚାହିଁ, ମୁଲାଇଜା ନ ରଖି, ଝାଣଝାଣ ଦୋଷ ଦିଆ କଥା କହନ୍ତି । ଦାଣ୍ଡରେ ହାଟରେ ଛୋଟ କଥାକୁ ବଡ଼ କରି ପ୍ରଚାର କରନ୍ତି ।

ଦିନେ, ଜଣେ ଜେଠେଇ ଲେଖା ହେବେ, କାମ ବାହାନାରେ ଦ ପିଢ଼ାରେ ଆସି କହିଲେ, ଅଗୋ ବୋହୂ, ଏ ସୁରିଆଟା ତମର ଭାଇ ନୁହେଁତ, ଏଡ଼େ ବଡ଼ ଦିଅର । ତା ଠୁଁ ସାନ ଉଚ୍ଛିବା । ପାଞ୍ଚ ବରଷର ବାହାକୁ ଛଅଟା ପିଲା । ଏଇ ସୁରିଆଟା, ଭଲ ପିଲା ହଁ, ହେଲେ ବଅସ ହେଲାଣି । ତମ ପାଖରେ ଠିକ୍ ନଣନ୍ଦ ପରି କାରବାର ହେଉଛି କ'ଣ ? ଲୋକେ କଣ ଭଲ କହୁଛନ୍ତି ? ଚେତେଇ ଦେଲି ଟୋ, ହାତେ ମାପି ଗୃହଖଣ୍ଡରେ ଗଲି ।

ଆଜ୍‌ଦିନେ, ଭାଉଜ ଲେଖା ହେବେ, ବୟସ ଥିଲା ମାଇପି ଜଣେ, ସକାଳ ପହରେ ଆମ ଭଲ ମନ୍ଦ ବୁଝିବାକୁ ଆସି ଥଟ୍ଟାରେ ହାଣିଲେ, ଅଲୋ ତୁଳସୀ; ଠୋକି ଭାଉଜକୁ ଦେଖିଲେ ଠୋକା ଦିଅର କମିତି ହୁଅନ୍ତି ଜାଣୁ ? ଯେମିତି ଶୁଖୁଆ ଦେଖିଲେ ଓଲେଇ ବଲେଇ । ଯେତେ ଘଉଡ଼ିଲେ ଘର ଗୁଡ଼ି ଯାଏ ନାହିଁ । ତୋର ଏଇ ଦିଅରଟା ବା, ସେମିତି ହେଉଛି । ଲୋକେ ଅବଶ୍ୟ ପାଞ୍ଚକଥା କହିବେ । ବାଅକୁ ବତା ଅଛି ସିନା, ତୁଣ୍ଡ ବାଇଦକୁ କଥା ନାହିଁ । ଗୋଡ଼ ଚପି ଚପି ଚାଲିବୁଲେ; ନୋହିଲେ ଗୋଡ଼ ଖସିବ ।

ଲେଖାରେ ଅଈ ହେବେ, ବୁଢ଼ୀ ଲୋକ, ଗାଈ ନେଉଟେବେଳେ, ଡିପେଇ ଡିପେଇ ବାଡ଼ ଅଡ଼କୁ ଅସିଲେ । ମୁଣ୍ଡ ବାନ୍ଧୁଥାଏଁ । ସୁର ଗଛରେ ପାଣି ଦେଉଥାନ୍ତି । ପାଳୁଅ ପାଚିରେ ହସ କୁଳି କରି ଅନାଇଁ କହିଲେ, କି ଲୋ ନାତୁଣୀ ବୋହୂ, ବାଡ଼ିଅଡ଼ଟାରେ ଦିଅର ପାଖରେ କଅଣ କରୁଛୁ କି ?

ବିରକ୍ତ ଲାଗିଲା । ରାଗିଯାଇ କହିଲି, ତମର ଆଖି ନାହିଁ କି ?

କହିଲା, ନାଇଁଲୋ ମା, ଆଖି ନାହିଁ କି ଦାନ୍ତ ନାହିଁ । କାନ ଅଛି । ତେବେ, ଗାଁ ଲୋକଙ୍କର ଆଖି ଅଛି, ଦାନ୍ତ ଅଛି ।

ବୁଢ଼ୀ ଭାରି କୁହାଳିଆ । ମୁଁ ହସି ହସି କଥା ବାଁରେଇ ଦେଲି ।

ଚିତକଥା ମନେ ପଡ଼ିଗଲା । ସୁରଙ୍କ ପ୍ରତି ସନ୍ଦେହରେ ମନ ପୂରି ଉଠିଲା । ସବୁ ଅଳୁକୁଚ ଭାବନାକୁ ଲୁଚାଇ ତାଙ୍କ ହାତମୁଠା ଭିତରୁ ହାତ ପାପୁଲି ଟାଣିଆଣି ସରାଗହୀନ ନକଲି ହସ ଓଠ ଉପରକୁ ଅଣିଲି । ଟେଳେଇ ହୋଇ ତାଙ୍କୁ ଗୋଟିଏ ସରୁ ଗୁମ୍ପୁଡ଼ା ମାରି କହିଲି, ଚଗଲା, ଏମିତି ଗ୍ରେପରା ହେଉଛ କାହିଁକି ? ଉଠ ଉଠ । ତମ ଅଳ୍ପଳୁକୁ କଥା ଶୁଣିବାକୁ ମୋର ବେଳ ନାହିଁ, କେତେ କାମ ବାକି ପଡ଼ିଛି ।

ଛଳନା କରି ତାଙ୍କ ଆଗରୁ ଅସିଲି । ଗୋଡ଼ ଥରି ଉଠୁଥାଏ । ମନେ ପଡ଼ିଲେ, ଜଟିଆ, ହଟିଆ, ନଟିଆ । ନର ମାୟା ନାରାୟଣଙ୍କୁ ଅଗୋଚର । କାହା ମନରେ କଅଣ ଅଛି କିଏ କହି ପାରିବ ? ତେବେ, କଥାରେ ଅଛି, ଅଲୋ ସଖୀ, ଆପଣା ମହତ ଅପେ ରଖି ।

## ୧୧

ମନୁଆର ଜନ୍ମ କଥା, କାଲପରି ଲାଗୁଛି । ମୁଁ ବଞ୍ଚିବି ବୋଲି କେହି ଅଶା କରି ନ ଥିଲେ ।

ମନୁଆଁ ଜନ୍ମ ହେଲା । ବରଷକର ହେଲା । ବାପ କୋଳକୁ ଯାଏ ନାହିଁ । ଦାଦି ଡାକଲେ ଡେଇଁପଡ଼େ । ସବୁବେଳେ ସୁରଙ୍କ ପାଖରେ, ସୁରଙ୍କ କୋଳରେ ଥାଏ । ତା ନାକରୁ ଟିକିଏ ପାଣି ଗଡ଼ିଲେ ସୁରଙ୍କର ହଲକ ଶୁଖିଯାଏ । ପିଲାକୁ

ସର୍ଦ୍ଦି ହେଲାଣି । ବଇଦଠୁଁ ଔଷଦ ଆଣିବା, ମନୁଆକୁ ଜଗି ବସିବା, ସବୁ କରନ୍ତି ସୁର ।

ସୁରଙ୍କର କୋଳରେ ମନୁଆଁ ଅଛି । ମୁଁ ବସି ନାଉ ଶରୁଡ଼ାଏ ବନାଉଛି । ସେଇ ଆଈବୁଢ଼ୀ ଆସି ପହଞ୍ଚିଲେ । ଆମକୁ ଚୁହାଁ ହସ କୁଳୁ କୁଳୁ କରି ଖଟନେଇଁ କହିଲେ, କେବେ ତୋ ଉପରେ ବାଡ଼ୁଅ ପାଣି ପଡ଼ିବରେ ସୁର, କେବେ ତୋ କୋଳରେ ଷଠୀ ଏମିଛ ପିଲା ବକଟେ ଦେବେ ।

ମନୁଆକୁ ଗେଲ କରି ସୁର କହିଲେ, ତୁ ଅଲକ୍ଷୁଣୀ କି ଆଇ, ମୋ କୋଳରେ ପିଲା ଦେଖୁ ଛୁ ପରା ।

ବୁଢ଼ୀ କହିଲେ, ଅଲକ୍ଷୁଣୀ ଥିଲିରେ ନାଛ, ତୋ କଥା ଶୁଣି ମୋ ଅଖି ପିଟିଲା । ସତରେ ଏକା, ମନୁଆଁ ଅବିକଲ ତୋରି ବରଗ ହେଉଛି ।

ଖୁସିରେ ମନୁଆର ମୁହଁରେ ମୁହଁ ଲଗାଇ ସୁର କହିଲେ, ସତେ ଲୋ ଆଇ ।

ବୁଢ଼ୀ କହିଲେ, ହାଁ ହାଁ, ଖାଲି ତା ଓଠ ଦଫାଲି ମୋର ଏଇ ନାତୁଣୀ ବୋହୂ ଓଠ ପରି, କେତେ ରଙ୍ଗ, କେତେ କଅଁଳ, ଉଷ୍ମୁମ । ନାଇଁ ରେ ସୁର ?

ତାଙ୍କ କଥାର ମର୍ମ୍ମ ବୁଝିଲି । ବାଁରେଇ କହିଲି, ଆଇ ମ, ସୁର ତ କେଉଁଠି ବାହା ହେବାକୁ ମଙ୍ଗୁ ନାହାନ୍ତି । ତେମେ ଯଦି ରାଜି ହୁଅନ୍ତ ଏଇ ସାଲେ ନମିତ୍ୟ କରନ୍ତେ ।

ମୋ ପାଖକୁ ନଇଁ ଆସି ମୋ ଭୂଣ୍ଡରୁ କଥା ଛଡ଼ାଇ କହିଲେ, କାହିଁକି ମଙ୍ଗିବ ଲୋ, ତୁ ଥାଉଁଣୁ ତାର କି ଅଭାବ କି ଅସୁବିଧା ହେଉଛି ଯେ ।

ଥଟ୍ଟାରେ ତାଙ୍କ କଥାକୁ ଉଡ଼ାଇ ଦେବାକୁ କହିଲି, ତମକୁ ମଙ୍ଗିବେ ଯେ ।

ଆଇ କହିଲେ, ଇଲୋ ବୋଉଲୋ, ନାଁ, ମୋ'ର ରାଜି ନାହିଁ । ଜାଣି ଜାଣି କିଏ ତୋ ପାଖକୁ ଆସିବ, ଗ୍ରୁଅଣୀ ମାଡ଼ରେ ତାର ପିଠି ଭାଙ୍ଗିବ ଲୋ ମା ।

ସୁର କହିଲେ, ଆଇ, ତୁଇ ରାଜି ହ । ତୋ ପିଠି ପଛେ ସଲଖି ହବ, ଭାଙ୍ଗିବ ନାହିଁ । ଜାଣୁ, ନୂଆଉ ହଲଲା ପାଣିକି ହାତ ବଢ଼ାଏ ନାହିଁ ।

ବୁଢ଼ୀ ହାତ ହଲାଇ କହିଲେ, ଜାଣେରେ ବାପ, ସେ ତ ଥିରି ପାଣିରେ ବୁଡ଼ ବୁଡ଼ ପାଣି ପିଇବ, ହଲଲା ପାଣିକି ଯିବ କାହିଁକି ?

ଲାଉ ବନା ଅଧା ରଖି, ମାଠିଆ ଧରି ବାଉଅଡ଼ ପୋଖରୀକୁ ପାଣି ପାଇଁ ଚାଲିଗଲି । ଜାଣେଁ, କେଉଁ ମର୍ମ୍ମରେ ବୁଢ଼ୀ କଥା କହୁଛି । ବୁଝି ପାରିଲି ନାହିଁ,

ସୁର ତାର ମନ କଥା ବୁଝିଲେ କି ନାହିଁ । ସନ୍ଦେହରେ ପଡ଼ିଲି । ହୁଏତ ସେ ବୁଝି ମଧ୍ୟ ନ ବୁଝିବାର ଛଳନା କରି ବୁଢ଼ୀ କଥାରେ ଆମୋଦ ଅନୁଭବ କରୁଥିଲେ ।

କେତେ ଦିନ ପରେ ଖବର ପାଇଲି, ମା ବେମାର ପଡ଼ିଛି । ବିଛଣାରୁ ଉଠି ପାରୁନାହିଁ । ମୋତେ ଦେଖିବାକୁ ଚାହୁଁଛି । ବାହାଘର ଛଅ ବରଷ ପୂରିଗଲା । ଆଜଯାଏ ବାପଘର ଦେଖିନାହିଁ । ଆଗେ ବୋଉ ମାସେ ପନ୍ଦର ଦିନରେ ଥରେ କରି ଆସୁଥିଲା । ପରେ ଚାରିମାସ ଛ ମାସରେ ଥରେ ଆସିବା କଷ୍ଟ ହେଲା । ନପାରିଲା ଏକୁଟିଆ ଲୋକ । ପେଟ ପୋଷିବାକୁ ପରିଶ୍ରମ କରିବାକୁ ପଡ଼େ । ମୋତେ ଦେଖିବା ପାଇଁ ଆସିବାକୁ ତର ମିଳେ ନାହିଁ ।

ମାର ବେମାର କଥା ଶୁଣି ତାକୁ ଦେଖିବାକୁ ମନୁଆଁର ବାପାଙ୍କ ସଙ୍ଗେ ଜଗର କଲି । ମୋଟେ ଆଠ ଦଶଟା ଦିନ ରହିବି । ଏଥିରି ବା କଣ ଅସୁବିଧା ହେବ ?

ସେ କହିଲେ ଯେ, ତାଙ୍କର କିଛି ଅସୁବିଧା ହେବ ନାହିଁ, ସୁରଙ୍କର ଯଦି ଆପତ୍ତି ନ ଥାଏ, ଦଶଦିନ କାହିଁକି, ମା ପାଖରେ ଦଶମାସ ରହିଲେ ବି ତାଙ୍କର ଆପତ୍ତି ନାହିଁ ।

ସୁରଙ୍କର ବାହାଘରର ଆୟୋଜନ ମତେ କରିବାକୁ ହେବ । ତାଙ୍କ ପାଇଁ ଭଲ ପାତ୍ରୀଟିଏ ତାଙ୍କ ଭାଇ ସ୍ଥିର କରିଥିଲେ ।

ସୁରଙ୍କ ସମ୍ବନ୍ଧରେ ମୋ ମନରେ ଚୋଟିଏ ପାତଳା ସନ୍ଦେହ ବେଳେବେଳେ ଆସେ, ଯାଏ । ମନରେ ଦାଗ ପକାଇ ପାରେ ନାହିଁ, କିନ୍ତୁ ଅନ୍ଧାର ଗ୍ରୀରର ଖେଳରେ ମୋ ଧୈର୍ଯ୍ୟ ଦୋହଲି ଉଠେ ।

ମୁହିଁ ଶୁଣାଇ ସୁରଙ୍କୁ ପଚାରିଲି ।

ସେ ଆଗ୍ରହରେ କହିଲେ, ଯାଅ ନୂଆଉ, ବେଶି ଦିନ ରହିବ ନାହିଁ ।

ପଚାରିଲି, କାହିଁକି, ମୁଁ କଣ ଲେଖି ଦେଇଛି ଯେ ସବୁଦିନେ ଏଠି ରହି କାମ କରି ସନ୍ତୁଳି ହେଉଥିବି ?

ସେ କହିଲେ, ନା, ତେମେ ଫେରି ଆସିଲେ ତମକୁ ଆଉ କାମ କରାଇ ଦେବି ନାହିଁ । କହିଲି ନୂଆଉ, ତେମେ ନ ଆସିବା ଯାଏ ଏ ଘର କପରି ଅନ୍ଧାର ମଶାଣି ହୋଇ ପଡ଼ିଥିବ ?

ଅନ୍ଧାର ହେଲେ ଆଲୁଅ ଜାଳିଦେବ । ସତ କହୁଛି ସୁର, ଥରେ ତମମାନଙ୍କ ଦାଉରୁ ଖସିଲେ ଆଉ ମୁଁ ସହଜରେ ଫେରିବି ନାହିଁ । ଯେଉଁଦିନ ତମ ହାତକ ଦ ହାତ ହେବ, ସେଇଦିନ ଯାଇଁ ଫେରିବି ।

ତେମେ ଫେରିଲେ ମୋ ହାତକ ଦ'ହାତ ହେବ ସିନା—ସେ ହସିଲେ ।

ମୁଁ ଭୁକ ହୋଇ ପିଲା ପାଖକୁ ଗଲି । ଭାବିଥିଲି ଯାହା ହେଉ, ସୁର ବାଟକୁ ଆସିଲେଣି, ବାହା ହେବାକୁ ମଙ୍ଗିଲେଣି । ବୋଉକୁ ଦେଖି ଫେରି ଆସିଲେ ସୁରଙ୍କ ବାହାଘରର ଆୟୋଜନ କରିବି । ଦିନ କେଇଟା ଆଖି ପିଛୁଡ଼ା ପଡ଼ିଲା ପରି କଟିଯିବ । ବୋଉର ଦେହ ଭଲ ହୋଇ ଯିବ । ଠାକୁରଙ୍କୁ ଡାକିଲି ।

ଦୁଇଦିନ ପରେ ସୁରଙ୍କୁ ସଙ୍ଗରେ ନେଇ ଆମ ଗାଁକୁ ଆସିଲି । ଯେତେବେଳେ ମୋ ସ୍ୱାମୀଙ୍କ ପାଖରୁ ବିଦାବିଦା ହୋଇ ଆସୁଥାଏଁ, ଗୋଟାଏ ଅଜଣା କୋହରେ ଛାତି ଭିତର ଥରି ଉଠୁଥାଏ । ଗୋଡ଼ ଆଗକୁ ଚଳୁ ନ ଥାଏ । ଦୁଇ ଆଖି ଲୁହରେ ଛଳ ଛଳ ହେଉଥାଏ । କେଡ଼େ ଆହ୍ଲାଦରେ ସେ ହସ ହସ ହୋଇ କହିଲେ, ସୁବିଧା ଅସୁବିଧା ଦେଖି ଯେତେ ଶୀଘ୍ର ପାରି ଫେରି ଆସିବ । ମନୁଆଁକୁ ଛାଡ଼ି ରହିଲେ ସୁରଅ ବାଇଅ ହୋଇଯିବଟି ।

ସୁର ମୋତେ ଛାଡ଼ିବାକୁ ଆସିଥିଲେ । ଘଣ୍ଟାଟି ରହି ପରଦିନ ବଡ଼ସକାଳୁ ସେ ଫେରିଗଲେ । କେତେ ନେହୁରା ହୋଇ ତାଙ୍କୁ କହିଥିଲି, ସୁର, ଦି ଭାଇ ହୁସିଆରରେ ଚଳାଚଳ ହେଉଥିବ । ଘର ମୁକୁଳା ପକାଇ କୁଆଡ଼େ ଯିବ ନାହିଁ । ବୋଷଘର ଅଧାକାନ୍ଥ ଉପର ଠଣା ତଳେ ଯେଉଁ ଘଡ଼ିଟି କାନ୍ଥ ଭିତରେ ପୋତିଛି, ସେଇଥିରେ ଟଙ୍କା ପଇସା ଅଛି । ଦରକାର ହେଲେ ନବ । ବେଶି ଖରଚ କରିବ ନାହିଁ । ଅଛି କଷ୍ଟରେ ତମ ବାହାଘର ପାଇଁ ସଞ୍ଚି ରଖିଛି ।

ଯୁଗେ ରହିଲା ପରି କଥା କହୁଛ ନୂଆଉ ।

ଯୁଗେ ରହିବ ତ ।

ହଉ, ହଉ, ଅଇରବାର ସକାଳକୁ ସଜ ହୋଇଥିବ, ନଜେ ଆସି ମୁଁ ତମକୁ ସଙ୍ଗରେ ନେଇଯିବି । ମାଉସୀଙ୍କର ଦେହ ତ ଭଲ ଅଛି ।

ଉତ୍ତର ଦେଲି ନାହିଁ । ସୁର ମନୁଆଁକୁ ଗେଲକରି ମତେ ଓ ବୋଉକୁ ଓଲଗି ହୋଇ ବିଦାୟ ନେଲେ । ମନୁଆଁ ରାହାଧରି କାନ୍ଦିଲା ।

ସାତଦିନ ହେଲା ସେମାନଙ୍କର କିଛି ଖବର ପାଇ ନାହିଁ । ମନ ଭିତରେ କପରି ଗୋଟାଏ କାନ୍ଦର କୋହ ଉଠୁଥାଏ । ବୋଉର ଦେହ ଭଲ ଅଛି । ସେ ଉଠି ଚଳପ୍ରଚଳ ହେଲାଣି । କାହିଁକି ତେବେ ଆଉ ରହିବି ? ସାତଦିନ ଆନନ୍ଦରେ କଟିଯାଇଛି । ଯେଉଁଦିନ ଯାହା ଘରକୁ ଯାଇଛି ଲୋକେ କେତେ ଆଦର ଦେଖାଇଛନ୍ତି, କେତେ ପ୍ରଶଂସା କରିଛନ୍ତି । ଖୁସି ଲାଗେ ।

ଟିମ ବାବୁଙ୍କ ବୋଉ ସେ ଦିନ କହିଲେ, ଠାକୁରେ ତୋ'ର ମଙ୍ଗଳ କରନ୍ତୁ ଲୋ ତୁଳସି ! ତୋ ମନ ଜାଣି ସେ ତୋତେ ଘର ବର ଦେଇଛନ୍ତି । ହଉ, କାଚ ବଜର ହେଉ ।

ଦ' ବର୍ଷ ହେଲା ବାହା, ଝିମ ବାବୁଙ୍କ ସ୍ତ୍ରୀ, କଇଁଚ ପରି ବେକ କାଢ଼ି ଘର ଭିତରୁ ଅନାଇଁଲେ । କି ରୂପ ! ଚିମା ଆଖି । ବଡ଼ ବଡ଼ ଗ୍ରମ୍ପ ଦାନ୍ତ ଓଠକୁ ଠେଲି ପଦାକୁ ନିଦ୍ବସି ପଡ଼ୁଛି । ନାକ ନାହିଁ । ଉଚ୍ଚ କପାଳ ।

ପାଖକୁ ଗଲି । କଥା କହିଲେ ନାହିଁ ।

ଝିମ ବାବୁ, ବଡ଼ ଲୋକ । ବାପ ମଲା ଦିନୁଁ ସବୁବେଳେ ଘର କାମରେ ବ୍ୟସ୍ତ । ଦାଣ୍ଡଘର ବାଟେ ଗ୍ଲଲି ଯାଉଁ ଯାଉଁ ମୋ ହାତ ଧରି କହିଲେ, ଶୁଣ ମଁ ତୁଳସୀ ।

ଠିଆ ହେଲି । ପିଲାଟିକୁ ମୋ ଗ୍ଣ୍ଡି ଉପରୁ ଝାଣିନେଲେ । ହସି ହସି କହିଲେ, କେତେ ଦିନ ଗାଁରେ ଅଛୁ ଲୋ ?

କହିଲି, କେଜାଣି । ଯେବେ ଲୋକ ଆସିବ ଯିବି ।

ରହି ରହି କହିଲେ, ତୁ ସୁଖୀ ଲୋ ତୁଳସୀ, ଆଉ ତତେ ଯେ ପାଇଛି ସେ ବି ସୁଖୀ ।

ଉତ୍ତର ଦେଲି ନାହିଁ ।

ପିଲାଟିକୁ ମୋ ଆଡ଼କୁ ବଢ଼ାଇ ଦେଇ କହିଲେ, ଆମ ଘରେ ତ ଦେଖି ଆସିବୁଣି । ଚେହେରା ଯେମିତି ଦେଖିଲୁ, ବୁଦ୍ଧି ବି ସେମିତି । ପଇସା ଥିଲେ କଣ ମଣିଷ ସୁଖୀ ହୋଇପାରେ ଲୋ ତୁଳସି ? ମୋ' ବାହାଘର ଯଦି ମୋ ହାତରେ ଥାନ୍ତା······ । ଗ୍ଣ୍ଡ଼ ସେ କଥା । ଜୀବନଟା ପୋଡ଼ି ଜଳି ଯାଉଛି ।

ତାଙ୍କ ଦୁଃଖରେ ମନରେ ସହାନୁଭୂତି ଆସିଲା ନାହିଁ । ଖରାପ ଲାଗିଲା । ତୁନି ହୋଇ ଗ୍ଲଲି ଆସୁଛି, କାନରେ ପଡ଼ିଲା, ସେ କହୁଛନ୍ତି, ଏଣେ ଆସୁଥିବୁ ତୁଳସୀ, ତତେ ଦେଖିଲେ କେତେ କଥା ମନେ ପଡ଼େ, କେଡ଼େ ଖୁସି ଲାଗେ ।

ଭୀମ ବାବୁଙ୍କ ଘର, ବଡ଼ କୁଟୁମ୍ବ । ଛଅ ମାସ ହେଲା ବାହା । ମୋତେ ଆଦର କଲେ । ଭୀମ ବାବୁଙ୍କର ସ୍ତ୍ରୀ, କାଲିକାର ବୋହୂ । ଶାବନା ରଙ୍ଗ, ମୋଟା ସୋଟା । ଚଙ୍ଗର ମୁହଁଟି । ନଥିଲା ଘରର ଝିଅ ବୋଲି, କେହି ତାଙ୍କୁ ଭଲ ପାଆନ୍ତି ନାହିଁ । ପଛରେ ଘୁମୁରୁ ଥାନ୍ତି । ମିଳାପୀ, ସ୍ନେହୀ ! ମନୁଆକୁ କୋଳକୁ ନେଲେ । ମୋତେ ପାନ ଭାଙ୍ଗି ଦେଲେ । ଗେହ୍ଲେଇ କହିଲେ, ଆସିବ ମ ଦି ପହରେ, କଉଡ଼ି ଖେଳିବା ।

ଭୀମ ବାବୁ, କାମ ଥାଉ ନ ଥାଉ, କେତେ ବାହାନାରେ ଭିଁଅର ପରି ଘଡ଼ିକି ଘଡ଼ି ବୁଲି ଆସୁଥାଆନ୍ତି, ନୂଆ ବୋହୂକୁ ଅନାଇ ଦେଇ ମୁରୁକି ହସି ଗ୍ଲଲିଯାନ୍ତି ।

ଥଟ୍ଟାରେ କହିଲି, ତେମେ ଆଉ ଗାଡ଼ିରେ ଚାପ ନଦେଇବ ନାହିଁ ନୂଆ'ଉ, ଦେଖିଲ, ଦିନ ଅଳ୍ପଅରେ ତମକୁ ଟିକେ ଭଲ କରି ଦେଖିବେ ବୋଲି ଭୀମାଇ କେମିତି ଢୁଆଖାଇ ବଳେଇ ପରି ହଉଛନ୍ତି । କେଡ଼େ ଉହାଳ ବକଳ ।

ସେ ହସି ହସି ମୋତେ ଚୁମ୍ବ ଦେଲେ । କହିଲେ, ତମକୁ ଦେଖିବାକୁ ସେମିତି ହେଉଛନ୍ତି ମ ।

କହିଲି, ତେବେ ସିନା ନୂଆ ମଣିଷ, ମତେତ ପିଲାଦିନୁ ଦେଖୁଛନ୍ତି, ପୁରୁଣା ଲୋକ ।

ଡାକିଲି, ଭୀମା'ଇ... ।

ସେ ନ ଶୁଣିଲା ପରି ଲାଜେଇ ଲାଜେଇ ଦାଣ୍ଡକୁ ପଳାଇଲେ ।

ନୀଳ ବାବୁ, ଖୁସିବାସିଆ ଘର । ବଡ଼ ପୁଅ । ବାପ ମା ଗ୍ଲଲଗଲା ପରେ ଛଅଟି ବାଳୁଙ୍ଗା ଛୁଆ ଭାଇ ଭଉଣୀ ଗୁଡ଼ିକୁ ନେଇ ସଂସାର ଚଳାଇଛନ୍ତି । ଅଧବୟସ୍କ ବୁଢ଼ା, କାନପାଖରୁ ଧଳେଇ ବାଳ ପାଚି ପାଚି ଆସୁଛି । ଘରକୁ ମୁରବୀ । ବର୍ଷ ପୂରିଲାଣି ବାହା । ଛଅ ମାସର କୋଳ ପିଲାଟିଏ, ପୁଅ ।

ନୀଳବାବୁ ଚହିଁଲେ । ଗୋରୁ ଚୋମ୍ଫୁ ମୋଞ୍ଚୁ ପଗୁରିଲେ, କିଲୋ ତୁଳସି, ଆସିଛୁ କି ? ଆଉ ସବୁ ଭଲ ତ ?

ତାଙ୍କ ସ୍ତ୍ରୀ ପିଣ୍ଡାରେ ବସିଥିଲେ । ଖଣ୍ଡାଧାର ପରି ମୁହଁ । ଫୁଙ୍କିଦେଲେ ଟଳି ପଡ଼ିବେ, ଅତି ଦୁର୍ବଳ । ତାଙ୍କର ପାଖରେ ବସି କହିଲି, ହଁ ନୀଳା'ଇ ।

ତାଙ୍କ ସ୍ତ୍ରୀଙ୍କୁ କହିଲେ, ହଇହୋ, ଆରେ ତୁଳସିକୁ ପାନ ଦିଅ ମଁ, ଗାଁ ଝିଅ, ଶାଶୁ ଘରୁ ଫେରିଛି ।

ମୋ ଆଡ଼କୁ ନ ଅନାଇଁ ତାଙ୍କ ସ୍ତ୍ରୀ ମୁହଁ ଲଦି ମତେ ଶୁଣେଇଁ କହିଲେ, ହଁ ଗାଁ ଯାକର ଲୋକ ଆସିବେ, ସମସ୍ତଙ୍କୁ ବସି ପାନ ଭାଙ୍ଗି ଦଉଥିବି । ଗୃହକରଟାଏ ରଖିଦିଅ ।

ନୀଳାଇ ପୁଣି କହିଲେ, ତୁଳସୀ ଆମ ଗାଁ ଝିଅ, ଅତି ଭଲ ପିଲା ।

କହିଲେ, ସମସ୍ତେ ତମ ଆଖିକି ଭଲ ଦିଶନ୍ତି, ଖାଲି ମୋ ଛଡ଼ା !

ମୁଁ ହସିଲି । ସେ ପୂର୍ବପରି ଗମ୍ଭୀର ରହିଲେ ।

ହାତ ବଢ଼ାଇ ଉତାଣି ପିଲାକୁ କୋଳକୁ ମାଗିଲି । ଘୃଣାଭରା ଆଖିରେ ମୋତେ କଣେଇଁ ଗ୍ଲହିଁ ସେ କହିଲେ, ନାଇଁ ନାଇଁ, ପରଙ୍କ ପାଖକୁ ଗଲେ ସେ ରାତିରେ ଚମକେ ।

ଲାଜ ମାଡ଼ିଲା । କାହାକୁ କିଛି ନ କହି ଫେରିଲି ।

ଯାଇଥିଲି ଦିନେ ଚେମବାବୁଙ୍କ ଘରକୁ । ମାଲି ମକଦ୍ଦମା କରି ଦବି ଗଲେଣି । କଷ୍ଟରେ ସଂସାର ଚଳୁଛି । ଚେମାଇ, ଆଜିଯାଏ ତାଙ୍କ ହାତକୁ ଦି ହାତ ହୋଇ ନାହିଁ । ସେମିତି ହେଙ୍ଗେଡ଼ିଆ ସ୍ୱଭାବ ।

ମୋତେ ଦେଖି ଥଟ୍ଟା କରି କହିଲେ, କିଲୋ ତୁଳସୀ, ପିଲାଟିଏ କେଉଁଠୁ ପାଇଲୁ ମ, ଗଲାବେଳକୁ ତ ନେଇ ନ ଥିଲୁ ।

ମୁଁ ମୁରୁକେଇ ହସିଲି । କିଛି ନ କହି ଗ୍ଲଲି ଯାଉଥିଲି ।

ଅଟଳି ପଳାଉଛୁ କାହିଁକି ମ, ଶୁଣ, ପିଲାଦିନ କଥା ମନେ ପଡ଼େ କି ଏବେ ? ସାଙ୍ଗସୁଖ ହୋଇ କେତେ ଖେଳ, ଦାଣ୍ଡଧୂଳିରେ ବାଲିଘର, ତୋଟା ପାଖ କଅଁବୁଦା କଡ଼ରେ ବୋହୂବୋହୂକା, ପୁଣି ସଞ୍ଜ ବେଳର ଲୁଚକାଳି, ଗଛ ଚଢ଼ା, ପାଣି ପହଁରା ମନେ ପଡ଼େ ତୁଳସୀ ?

ବେଳେବେଳେ ମନେ ପଡ଼େ—

ବେଳେବେଳେ, ନାଁ ? ମୋ'ର ସବୁବେଳେ ମନେ ପଡ଼େ । ସମସ୍ତେ ତେମେ ସଂସାର କଲଣି । ଖୁସି ଆନନ୍ଦରେ ବେଳ କାଟୁଛ । ମୋ ସଂସାର ମୋ ଭାବନାରେ, ମୋ ଆନନ୍ଦ ମୋ ସ୍ୱପ୍ନ ଅଧ ସପନରେ । ପିଲାଦିନର ଖେଳ, ବର କନିଆଁ, ତେମା ତୁଳସୀ, ସତ ଫଳି ଗଲାପରି ଲାଗେ ।

ତୁନି ତୁନି କହିଲି, ବାହା ହୋଇ ପଡ଼ୁନ ।

ତେମାଇ କହିଲେ, ନା, ମୋର ଏଇ ସପନ ସଂସାର ଭଲ । ଦାୟିତ୍ୱ ନାହିଁ କି ଦୁଃଖ ଜଞ୍ଜାଳ ନାହିଁ । ଆନନ୍ଦ ଅଛି, ଷଣକ ପାଇଁ ହେଉ ପଛେ ।

ସେମିତି ସଂସାର ନଡ଼ିଆ ଗଛର ଛାଇ ପରି । ପଇଡ଼ର ଛାଇଟିକୁ ଭାଙ୍ଗି ଶୋଷ ମାରିବାକୁ ବସିଲେ ମନ ଖାଲି ହାଇଁପାଇଁ ହେବ ! ବାହା ହୋଇପଡ଼ ।

ଆଉ କଣ କହିଥାନ୍ତେ ଶୁଣିବାକୁ ରହିଲି ନାହିଁ । ତେମାଇଙ୍କ ଆଗରୁ ଚାଲିଆସିଲି ।

ପିଲାଦିନର ଖେଳ ! ତେମା'ଇ ସବୁଠୁଁ ବଳୁଆ, ଆଉ ମୁଁ କୁଆଡ଼େ ସବୁଠୁଁ ସୁନ୍ଦର । ତେମାଇ ସବୁଦିନେ ବର, ଆଉ, ମୁଁ ସବୁଦିନେ କନିଆଁ ।

କଅଁବାଡ଼ ସେପାଖେ ଆମ୍ବଗଛ ଛାଇରେ ଆମର ଘରକରଣା ଖେଳ । ସାନ ସାନ ପୁଅ ଝିଅଙ୍କର ମେଳ । କିଏ ହୁଏ ବାପ, କିଏ ହୁଏ ମା । ଭାଇ ଭଉଣୀ, ଚାକର ହଳିଆ । ମିଛେ ମିଛେ ଭାତ ଡାଲି ରନ୍ଧା, ବାହା ନିମନ୍ତ୍ରଣ, ରାଗ ରୋଷ, ପୁଣି ମିଳା ମିଶା । ତେମାଇତ ବର, ତୁଳସୀ କନିଆଁ— ।

ତେମା'ଇଙ୍କ ଏ ବୟସରେ ଭାବିବାକୁ ଯାହା ଭଲ ଲାଗେ, ଖୁସି ଲାଗେ, ମତେ ଲାଗେ ସଂକୋଚ । ମନରେ ଆସେ ଲାଜ । ସପନରେ ତେମାଇ ମନରେ ଯାହା ସତ ଫଳିଯାଏ, ମୋ ସଂସାରର ବାସ୍ତବତା ମଝିରେ ସେପରି ସପନର ସ୍ଥାନ ନ ଥାଏ ।

ଯାହା ଘରକୁ ଯାଉଛି, ଗାଁରେ ମତେ ସମସ୍ତେ ସ୍ନେହ ଆଦର ଦେଖାଉଛନ୍ତି । ମୋ ସାଙ୍ଗର ଝିଏ, ଯାହାଙ୍କ ସଙ୍ଗରେ ଖେଳ କୌତୁକ, କଜିଆ, ମାଡ଼, କିଏ ଯାଇଁ କେଉଁଠି ସୁଖ ଦୁଃଖରେ ଘର କରୁଛନ୍ତି । ଯେଉଁମାନେ କାଲି ପିଲା ଥିଲେ ସେମାନେ ଆଜି ବୟସର, ବରଘର ଖୋଜା ଲାଗିଛି । କାଲିକା ମେଁଅଡ଼ ଟୋକା ଗୁଡ଼ା, କାନ ଧଇଲେ ଯାହାଙ୍କ ତୁଣ୍ଡରୁ ବଚନ ବାହାରୁ ନ ଥିଲା, ସେମାନେ ମଣିଷ ହେଲେଣି, କଣେଇଁ ଚାହିଁଲେଣି ।

କେଡ଼େ ଭଲରେ, କେଡ଼େ ଆନନ୍ଦରେ ସାତଟି ଦିନ କଟିଗଲା । ମନ ଉଡ଼ିଲା ଘରକୁ ଯିବାକୁ, ତାଙ୍କୁ ଦେଖିବାକୁ, ତାଙ୍କର ଭଲ ମନ୍ଦର ତତ୍ତ୍ୱ ନେବାକୁ ।

ପୁର ଆଜି ଆସିବେ । ମନ ଛକପକ ହେଉଛି । ତାଙ୍କ ଗ୍ରହଙ୍କ ଗେଲ୍ଲାକଥା ତାକ କାନରେ ବାଜି ଯାଉଛି । ସତେ କି ତାଙ୍କର ହସିଲା ମୁହଁ ଆଗରେ ଉଭା ହେଉଛି । ମନରେ ଅଭିମାନ ଭରି ଯାଉଛି । ସାତ ଦିନ କଟିଲା, କାହା ହାତରେ ଖବର ପଠାଇଲେ ନାହିଁ । ନିଜ ଦେହପା କଥା ଜଣାଇଲେ ନାହିଁ କି ଆମର ଭଲ ଅସାର କଥା ବୁଝିଲେ ନାହିଁ ।

ତାଙ୍କୁ କେବେ କଥା କହିବି ନାହିଁ । ରହ, ଯାଏଁ ଆଗ ।

ପୁର ଆସିଲେ ନାହିଁ । ବୁଝି ପାରିଲି ନାହିଁ, କାହିଁକି । ଦିନେ, ଦୁଇଦିନ, ତିନିଦିନ ବିତିଗଲା । ମନ ଛଟପଟ ହେଲା । ଦେହ ଭଲ ଅଛିତ ?

ସେଦିନ ସକାଳେ କାକର-ଭିଜା ଗୁଳ ଉପରେ ବସି ଲାଞ୍ଜ ହଲାଇ ଡାମରା କାଉଟା କେଡ଼େ ବିକଟାଳ ରଡ଼ି ଛାଡ଼ୁଥାଏ । ହାତ ଉଠାଇଲେ କି ଠେକା ମାରିଲେ ଉଡ଼ିଯାଏ, ପୁଣି ଫେରିଦେଇ ଆସେ । ମନୁଆଁ ସକାଳୁ ଅଝଟ ହୋଇ କାନ୍ଦି କାନ୍ଦି ତା'ର ବାପ ଦାଦିଙ୍କୁ ଖୋଜୁଥାଏ । ମୋ ମନ କେଉଁଠି ଲାଗୁ ନ ଥାଏ । ଡାହାଣ ଆଖିଟା ଉହାଇ ଉହାଇ ଡେଉଁଥାଏ ।

ମନୁଆଁକୁ କାଖ କରି ଆମ ଘର ଆଗରେ ଠିଆହେଉଥିଲି । କିଏ ଜଣେ ତରବରି ହୋଇ ଆମ ଘର ଭିତରକୁ ଗଲେ । ବୋଉର ଶଙ୍କା ଲୋକ ହୋଇଥିବେ । ମୁଁ ଅଡ଼େଇ ଚଲି । ମୋତେ ଦୋ ଦୋ ଶଙ୍କା ପଶି ସେ ଲାଗିଲେ । ପଛଆଡ଼କୁ ଗୃହିଁଲି । ଆସିଲା ଲୋକ ଆମ ଘର ଭିତରକୁ ବୋଉ ପଛେ ପଛେ ପଶିଲେ ।

କିଛି ସମୟ ପରେ ବଡ଼ ପାଟି କରି ବୋଉ ବାହୁନି ଉଠିଲା । ମୁହୂର୍ତ୍ତେ କାଳ ମୁଁ ଥକ୍କା ହୋଇ ଠିଆ ହେଲି । ଅଜଣା ଭୟରେ ମୋ'ର ସାରା ଶରୀର ଥରି ଉଠିଲା । ଘଟଣା କ'ଣ ଜାଣିବାକୁ ଆକୁଳ ହୋଇ ଥରଥରକା ବୋଉ ପାଖକୁ ଛୁଟିଗଲି । ମନୁଆଁକୁ ପିଣ୍ଡାରେ ବସାଇ ଘର ଭିତରକୁ ଗଲି । ଘଟଣା କ'ଣ ପଗ୍ଚରିବାକୁ ଭୁଣ୍ଡ ଖୋଲିଲା ନାହିଁ ।

ମୋତେ ଦେଖି ବୋଉ ମୋ' ହାତ ଧରି ଅଧିକ ବିକଳ ହୋଇ କାନ୍ଦି ଉଠିଲା । ମୁଁ ବୁଝିଲି, ତିନିଦିନ ହେଲା ମନୁଆଁର ବାପା ଆମ୍ଭକୁ ଅନାଥ କରି ସେ ପୁରକୁ ଗୃଲି ଯାଇଛନ୍ତି ।

୧୨

କପରି ମୋ'ର ମାସଟିଏ କଟିଗଲା ଜାଣି ପାରିଲି ନାହିଁ । ସପନ ପରି ଲାଗୁଥାଏ । ଗାଁ ମାଇପେ, ଗାଁ ଲୋକେ ଆସି ସହାନୁଭୂତି ଦେଖାଇ ଗୁରୁପଦ କହି ଯାଆନ୍ତି, ଆଉ, ତାଙ୍କର ସେହି କଅଁଳ କଥା ଭିତରେ ଯେଉଁ ଦାନ୍ତୁଆ ଛୁରୀ ଛପି ରହିଥାଏ, ମୋର ଛାତିରେ ଭେଦେ ।

ସୁରଙ୍କ ନାଁମରେ ଦୁର୍ନାମ ରଟି ଯାଇଥାଏ, ଆଖ ପାଖ ଦଶ ପଚଶ ଖଣ୍ଡ ଗାଁରେ । ତା ସଙ୍ଗେ ସଙ୍ଗେ ମୋ ଦୁର୍ନାମ ମଧ୍ୟ ଯୋଡ଼ି ହୋଇ ରହିଥାଏ । ଯିଏ ଯୁଆଡ୍ଡୁ ଅସେ କାହାକୁ ବାଡ଼କୁ ଦେଖାଇ ବୁଲାଇ ବୁଲାଇ ସେହି କଥା କହନ୍ତି । ମୋ କାନରେ ବାଜେ । ଭାବେଁ, କିଛି ବୁଝିପାରେ ନାହିଁ, କିଛି ଠିକ୍ କରିପାରେ ନାହିଁ ।

ସୁର ମୋର ଲୋଭରେ ତାଙ୍କୁ ମାରିଛନ୍ତି ?

ଲୋକେ କହୁଛନ୍ତି, ସଞ୍ଜ ଦ ଘଡ଼ିରେ ଦ ଭାଇ କାମରୁ ଫେରିଲେ । ଗାଁ ଲୋକେ ଦେଖିଛନ୍ତି ଜାଣନ୍ତି । ସକାଳୁ ଉଠି ଆଗ ଦେଖିଲେ ସୁର, ଆର ଘରେ ତାଙ୍କ ଭାଇ ଶୋଇଛନ୍ତି, ଖରା ପଡ଼ିଲା, ନିଦ ଭାଙ୍ଗୁ ନାହିଁ । ଡାକଲେ ଶୁଣୁନାହାନ୍ତି । ଦେହରେ ହାତ ମାରିଲେ, କାକର ଲାଗୁଛି । ଅଲୌକିକ କଥା ! ଦେହରେ ପ୍ରାଣ ନାହିଁ ।

ନନୂଆସି ମାରିବାର ଚିହ୍ନ ନାହିଁ । ଗାଡିରେ ପାଟି ଭୁଣ୍ ବ ସେ କରି ନାହାନ୍ତି । ଦେହ ମୁଣ୍ଡ ଖରାପ ନ ଥିଲା ତ । ତେବେ କପରି ଏ ଦୁର୍ଘଟଣା ଘଟିଲା ?

ଲୋକେ ଆସିଲେ, ଦେଖିଲେ, ତାଙ୍କର ଦୁଇ ଆଖି ନାଲି ନାଲି ଦିଶୁଛି । ତକିଆ ଉପରେ ରକ୍ତ ! କେହି କିଛି କହି ପାରିଲେ ନାହିଁ । ସନ୍ଦେହ କଲେ, ଭୁଟ୍‌ଭାଟ୍ ହେଲେ, ବିଷ, ବିଷ ! ଖାଦ୍ୟ ସଙ୍ଗରେ ବିଷ ଦେଇଛି ସୁର, ମୋର ଲୋଭରେ । ସନ୍ଦେହ କଲେ, ମୋ'ର ଶିକ୍ଷାରେ, ମୋର ପରାମର୍ଶରେ ସୁର ଏହା କରିଛନ୍ତି । ସେଇଥିପାଇଁ ଲୋକଙ୍କର ସନ୍ଦେହ ଏଡ଼ିବାକୁ ଆଗରୁ ବାଟ କାଟି ମୁଁ ମା ପାଖକୁ ଚାଲି ଆସିଛି ।

ଗ୍ରାମର ମାନ ମହତ ରଖିବାକୁ, ସୁର ଏବଂ ମୋତେ ଦାହଗଞ୍ଜ ଟଣା ଓଟରା ଓ ଫାଶୀ ଖୁଣ୍ଟରୁ ରକ୍ଷା କରିବାକୁ ଗ୍ରାମ ଲୋକେ କୁଆଡ଼େ ସତ କଥାଟା ଲୁଚାଇ ଦେଲେ । ବାତୁଆଟା, ବାତମାରି ବେହୋସ ହୋଇ ମରିଗଲା ବୋଲି ପ୍ରଚାର କଲେ । ଲାସ୍ ପୋଡ଼ି ଦେଲେ । ଥାନାରେ ଖବର ଦେଲେ ନାହିଁ ।

ସନ୍ଦେହ ଘନେଇ ଆସିଲା ମୋ ମନରେ । ଏଡ଼େ ବଡ଼ ଘଟଣା ଘଟିଗଲା, ଆମର ସଂସାର ଉଚ୍ଛନ୍ନ ହୋଇଗଲା, ମାସ ପୂରିଗଲା, ତଥାପି ସୁରଙ୍କର ଦେଖା ଦର୍ଶନ ମିଳିଲା ନାହିଁ । କାହାର ହାତରେ ଖବର ପଠାଇଲେ ନାହିଁ । ଲୋକ ଦେଖାଣକୁ ହେଲେ ବିଧବା ଭାଉଜ ଓ ବାପ ଛେଉଣ୍ଡ ପୁତୁରାକୁ ଥରେ ସନ୍ଧୋଳି ଗଲେ ନାହିଁ । ନିଜେ ଶୁଦ୍ଧ ହେଲା । ସେ ଭ୍ରାତୃହନ୍ତା, ଦୋଷୀ, ପାପୀ !

ମାସକ ପରେ, ଦିନେ ସକାଳେ ସୁର ଆସିଲେ । ତାଙ୍କୁ ଦେଖି ମୁଁ ଚମକି ପଡ଼ିଲି । ଠିଳ ଠିଳ ପବନରେ ଦୋହଲି ଦୋହଲି ସେ ଆସୁଛନ୍ତି ଦୁର୍ଭିକ୍ଷର ମଣିଷ ପରି । ଦେହରେ ହାଡ଼ ଗଣି ହେଉଛି । ପଶିଲା ପଶିଲା ଆଖି । ଅଣ୍ଡିଏ ରୁଢ଼ ମୁହଁରେ ।

ଏଇ ସୁର, ମୋର ସ୍ୱାମୀଙ୍କୁ ବିଷ ଦେଇ ମାରିଛନ୍ତି । ମାସକ ପରେ ସେ ଆସୁଛନ୍ତି । ମୋ ଆଗକୁ ଆସିବାକୁ ଆଜଯାଏ ସେ ସାହସ କରୁ ନ ଥିଲେ । ଆଜି ଆସିଛନ୍ତି, ଗୋଟାଏ କଣ ଫାନ୍ଦ କରି କହିବେ ।

ତାଙ୍କ ମୁହଁକୁ ଚାହିଁ ଆଖି ଫେରାଇଲି । ଦୁଃଖରେ, ରାଗରେ କଅଣ ତାଙ୍କୁ ମୁଁ କହିଲି ମୁଁ ଜାଣେ ନାହିଁ । କଣ୍ଟା ଗଛ ପରି ମୋଓର ଗୋଡ଼ ତଳେ ସେ ପଡ଼ିଗଲେ । କହିଲେ ଥରିଲା ସ୍ୱରରେ, ନୂଆଭଉଜ, ସେଇ ଘରେ, ଯେଉଁଠି ମୋ ଭାଇ ଶୋଇଥିଲା, ଡାକି ଡାକି ଶୁଣିଲା ନାହିଁ, ସେଇଠି ନୂଆଭଉଜ, ସେମିତି ପଡ଼ି ପଡ଼ି ମୋ ଭାଇ ପରି ମୁଁ ବି ଆଖି ବୁଜିଥାନ୍ତି । କି ଖବର ଦେବି ତମ ପାଖକୁ ଆସିଥାନ୍ତି କହିଲ ?

ପୁଣି କହିଲେ, କାଲି ରାତିରେ, ମନେ ହେଲା ସେ ଯେମିତି ମୋ ପାଖକୁ ଆସିଲେ, କହିଲେ, ଅରେ ସୁର, ମୁଁ ସିନା ଚାଲି ଆସିଲି, ତୁ ଯଦି ଏମିତି ହେଉ, ମନୁଆଁ କଅଣ କରିବ, ତୋ ନୂଆଭଉଜ କଣ କରିବ ? ଯା ସେମାନଙ୍କ ପାଖକୁ । ମନୁଆଁକୁ କୋଳକୁ ନେ—

ରାଗରେ ମୋ ଛାତି ଭିତରେ ନିଆଁ ଜଳୁଥିଲା । ବଡ଼ପାଟି କରି କହିଲି, ମନୁଆଁର ବାପକୁ ବିଷ ଦେଇ ମାରିଲ, ଆଜି ଚାଲାକି କରି ସାକୁଲେଇ ହେବାକୁ ଆସିଛ ? ନିର୍ଲଜ ! ଥାଉ ତମର ଦଅର ସ୍ନେହ, ଦାଦି ସୁଆଗ । ମୋ ଆଗରୁ ଚାଲିଯାଅ କହୁଛି, ଚାଲିଯାଅ । କେଉଁ ସାହସରେ ତମର ପୋଡ଼ା ମୁହଁ ଦେଖାଇବାକୁ ଆଇଲ ?

ନୂଆଭଉଜ, ଭାଇକି ଛାଡ଼ି ବଞ୍ଚି ରହିବା ମୋର ପାପ, ମୋର ଦୋଷ, କିନ୍ତୁ ମନୁଆଁକୁ ଛାଡ଼ି ମରି ପାରୁନାହିଁ ।

ରାଗରେ ପୂର୍ବପରି ଗର୍ଜି ଉଠିଲି, ତମର ବଞ୍ଚିବା ମରିବାରେ ମୋର କଅଣ ଥାଏ ? କାହିଁକି ତାଙ୍କୁ ମାରିଲ ଚଣ୍ଡାଳ, ତମର ସେ କି ଦୋଷ କରିଥିଲେ ?

କହିଲେ, ମୁଁ କିଛି ଜାଣେ ନାହିଁ । ଲୋକେ କହୁଛନ୍ତି—

ତାଙ୍କ କଥାରେ ବାଧାଦେଇ କହିଲି, ଲୋକେ କ'ଣ କହୁଛନ୍ତି, ମୁଁ ଜାଣେ । ତେମେ କଅଣ କହିବ ମୁଁ ଶୁଣିବାକୁ ଚାହେଁ ।

ପାଗଳ ପରି ଏଣିକି ତେଣିକି ଚାହିଁଲେ । ଥଙ୍ଗେଇ ଥଙ୍ଗେଇ କହିଲେ, ମୁଁ କଅଣ କହିବି, ନୂଆଉ, କିଛି ଜାଣେ ନାହିଁ । କିଛି ବୁଝି ପାରି ନାହିଁ । ଗପ କରୁ କରୁ ରାତି ଅଧ ହେଲା, କିଛି ତ ହୋଇ ନ ଥିଲା । ସେ ତଳ ଘରକୁ ଶୋଇବାକୁ ଗଲେ । ପାଖରେ ଶୋଇବାକୁ ମତେ ଡାକୁଥିଲେ । ମୁଁ ମନାକରି କହିଲି, ଦାଣ୍ଡଘରେ ଅଳ୍ପ ତକ ମୂଷା ଖାଉଛନ୍ତି, ମୁଁ ସେଇଠି ଶୋଇବି । ସେ ବାଧା ଦେଲେ ନାହିଁ । କହିଲେ, ହଉ ଯା । ରାତି ଅଧିକ ହେଲାଣି, ମୁଣ୍ଡ ଝାଙ୍କୁଛି । ଶୋଇପଡ଼ । ତାଙ୍କ କଥା ମାନିଲି । କେତେବେଳେ ରାତି ପାହିଲା ଜାଣେ ନାହିଁ । ମତେ କାଳ ନିଦ ଘୋଷିଗଲା । ନିଦଭାଙ୍ଗିଲା । ବାହାରେ ଖରା ପଡ଼ିଛି । ଉଠିଲି । ଦେଖିଲି, ତଳଘର ଖୋଲା ହୋଇଛି । ଭାଇ ଶୋଇଛି । ନିଦ ଭାଙ୍ଗିନାହିଁ ।—

କହୁ କହୁ ସୁର ଦୁଇ ହାତରେ ମୁହଁ ଲୁଚାଇ କାନ୍ଦିବାକୁ ଲାଗିଲେ । ସେହି କାନ୍ଦଣା ସ୍ୱରରେ କହିଲେ, ଲୋକେ କହିଲେ,—ନୂଆଉ, ଲୋକେ କଅଣ କହିଲେ ମୋର ଶୁଣିବାକୁ ଧୈର୍ଯ୍ୟ ନ ଥିଲା । ଭାଇ ମୋର ମରିଛି, ଆମର ସଂସାର ସରି ଯାଇଛି । କାହା ଉପରେ ରାଗିବି, ଅଭିମାନ କରିବି ? କବାଟ ଖୋଲି ଶୋଇଥିଲେ । ସାପ କି ବାତ, କି ଆଉ କଅଣ, ଜାଣେ ନାହିଁ ।

ସୁରଙ୍କ ଗଳା ଥରି ଉଠୁଥିଲା । ସେ ଅଧୀର ଅସ୍ଥିର ହୋଇ ଉଠୁଥିଲେ । କଅଣ ସେ କହୁଥିଲେ ? ଆଜଯାଏ କାହିଁକି ସେ ଆସି ପାରି ନ ଥିଲେ ? ଭୟରେ ଓ ଲାଜରେ ? ଅନୁତାପ ? ଲୋକଙ୍କର ସନ୍ଦେହ ଏଡ଼ିବାକୁ ? ମୋର ତାଙ୍କଠାରେ ଯେଉଁ ସନ୍ଦେହ ହୁଅନ୍ତା, ସମୟ ବିତାଇ ସେ ସନ୍ଦେହକୁ କୋହଳାଇ ଦେବାକୁ ? ଗୋଟାଏ ଛଳନା ?

ଗତ ଜୀବନର କେତେ ଘଟଣା ମୋର ମନରେ ବିଜୁଳି ବେଗରେ ଖେଳିଗଲା । ସେତେବେଳେ ସେସବୁ ଘଟଣାର ଅର୍ଥ ମୁଁ ବୁଝିପାରି ନ ଥିଲି । ଅଳ୍ପଅ ଅନ୍ଧାର ମଝିରେ ମୋର ଭାବନା ଜଳକା ହୋଇଥିଲା । ସେ ଦିନ ମୋର ଆଖି ଆଗରେ ସବୁ ସଫା, ସବୁ ଉଜ୍ଜ୍ୱଳ ଦେଖାଗଲା । ମୋର ସନ୍ଦେହ ସନ୍ଦେହ ନୁହେଁ, ସତ ! ସୁରଙ୍କର ପିଲାମି ଭିତରେ ମୋ ପ୍ରତି ଗୋଟାଏ ମୋହ ଲୁଚକାଳି ଖେଳୁଥିଲା, ବୁଝି ମଧ୍ୟ ବୁଝି ପାରି ନ ଥିଲି ।

ଗୃହବର୍ଷ ତଳେ, ଏଇ ପିଣ୍ଡାରେ, ସୁର ମୁହଁ ଶୁଖାଇ ବୋଉକୁ କହିଲେ, ଭାଇଙ୍କ ବିଷୟରେ ସମ୍ବନ୍ଧ ପକାଅ । ତାଙ୍କର ଗଳା ଥରି ଉଠିଥିଲା । ତଣ୍ଟି ବନ୍ଦ ହୋଇ ଆସିଥିଲା । ଆଖିରୁ ଗଡ଼ି ଆସୁଥିବା ଲୁହ ପୋଛି ମୁଁ ଉହାଡ଼କୁ ଯାଇଥିଲି ।

ସେହି ଦିନରୁ ତାଙ୍କ ମନରେ ମୋ ପ୍ରତି ଗୋଟିଏ ଜୈବିକ ଭାବନା ବଞ୍ଚି ରହିଥିଲା । ତାଙ୍କ ଛାତି ତଳେ ମୋ ରୂପ, ମୋ ପ୍ରତି ଆକର୍ଷଣର ଯେଉଁ ନିଆଁ ଦାଉ ଦାଉ ହୋଇ ଜଳୁଥିଲା, ତାର ଆଭାସ ମୁଁ ଅନେକ ଥର ପାଇଥିଲି । ସେ ନିଆଁକୁ ଜଳିବାକୁ ପ୍ରଶ୍ରୟ ଦେଇ ନ ଥିଲି । ସେହି ଦାଉ ଦାଉ ନିଆଁରେ ଯଦି ନିଜକୁ ମୁଁ ଆହୁତି ଦେଇଥାନ୍ତି, ତେବେ ହୁଏତ ସୁର ଏପରି ନିଷ୍ଠୁର କାମ କରିବାକୁ ମନ ବଳାଇ ନ ଥାନ୍ତେ । ଗୋଟାଏ କୃତ୍ରିମ ସଂସାର ଭିତରେ, ନରକ ସୃଷ୍ଟିକରି ଆମେ ବଞ୍ଚି ରହିଥାନ୍ତୁ । ସ୍ୱାମୀ ମୋର ଦେବତା । ତାଙ୍କର ପବିତ୍ର ଆଖିରେ ନରକ ବି ସ୍ୱର୍ଗର ପବିତ୍ରତା ଧରି ଠିଆ ହୋଇଥାନ୍ତା ।

ସୁର କଅଣ କହି ଯାଉଥିଲେ ମୋର ସେଥିରେ କାନ ନ ଥିଲା । ନିଜ ଭାବନାରେ ମୁଁ ବୁଡ଼ି ରହିଥିଲି । ମୋର ଦୃଢ଼ ଧାରଣା ହେଲା ଯେ ସୁର ମୋର ସ୍ୱାମୀଙ୍କୁ ମାରିଛନ୍ତି । ତାଙ୍କୁ ଦୂରକରି ନ ଥିଲେ ମୋତେ ସେ ପାଇ ପାରିବେ ନାହିଁ ।

ଆଖି ଖୋଲି କଟମଟ କରି ତାଙ୍କ ମୁହଁକୁ ଚାହିଁଲି । ତାଙ୍କର ରୂପ, ତାଙ୍କର କଥା ମୋ ଧାରଣାକୁ ବଦଳାଇ ପାରିଲା ନାହିଁ । ତାଙ୍କୁ ମୁଁ ଟାଣ କଥା କହିଛି, ସେଥିପାଇଁ ମନରେ ଅନୁତାପ ଆସିଲା ନାହିଁ । ସୁରଙ୍କର ଶ୍ରୀହୀନ ରୂପ, ମେଘଘୋଡ଼ା ମୁହଁ ଓ କୋରଡ଼ ଆଖିରେ ପାପର ଭୟଙ୍କର ମୂର୍ତ୍ତି ଠିଆ ହୋଇଥିବାର ଦେଖିଲି । ରାଗରେ ନୁହେଁ, ଭୟରେ ଗଳା ଥରି ଉଠୁଥାଏ । କାକୁସ୍ଥ ହୋଇ ଆଖିଲୁହରେ ଓଠ ଭିଜାଇ କହିଲି, ଯାହା କରିବାର କରି ସାରିଛ ସୁର, ମୋ ସୁଖ ସଂସାର ତ ପୋଡ଼ି ଜାଳି ଦେଇଛ, ଯେଉଁ ଆଶାରେ ଏହା କଲ, ସେ ଆଶା କେବେ ଫଳିବ ନାହିଁ । ମୋତେ ସାହାହୀନ କଲ, ମନୁଆଁକୁ ଅନାଥ କଲ, ସେତିକରେ ଖୁସି ହୁଅ । ଆଉ ମତେ ଦହଗଞ୍ଜ କର ନାହିଁ । ଲୋକହସା କରାଅ ନାହିଁ । ତମ ସଙ୍ଗେ ମୋ'ର ଆଉ କିଛି ସମ୍ବନ୍ଧ ନାହିଁ । ତମେ ମୋ ଆଗରୁ ଚାଲି ଯାଅ ।

କାବା ହୋଇ ମୋ ମୁହଁକୁ ଚାହିଁଲେ । କହିଲେ, ନୂଆଉ—

ତାଙ୍କୁ ଆଉ କୁହାଇ ଦେଲି ନାହିଁ । କହିଲି ନେହୁରା ହେଉଛି ସୁର, ହାତ୍‌ରେ ଚରଣ ଧରି ତମ ଗୋଡ଼ତଳେ ପଡ଼ୁଛି, ତମେ ମୋ ପାଖରୁ ଚାଲି ଯାଅ । ମୁଣ୍ଡ ତଳେ ଲଗାଇଲି । କହିବାକୁ ଲାଗିଲି, ତମ ଶରଣ ପଶୁଛି ସୁର, ତମେ ଆଉ ମୋ ପଛରେ ଗୋଡ଼ାଅ ନାହିଁ । ମୋ ଭାଗ୍ୟ ମୋତେ ଭୋଗିବାକୁ ଛାଡ଼ିଦିଅ । ଥରି ଥରି ମୁଣ୍ଡ ଉଠାଇ ଠିଆହେଲି । ଆଖିରୁ ଲୁହଧାର ଝରି ପଡ଼ୁଥାଏ । ମୋ ଆଖିରେ ସଂସାର ଯାକର ସବୁ ପଦାର୍ଥ ଯେପରି ଚକା ଭଉଁରି ଖେଳୁଥାଏ । କାନ୍ଥରେ ମୁଣ୍ଡଭରା ଦେଲି ।

ସୁର ଆଉ ତୁଣ୍ଡ ଖୋଲି ନ ଥିଲେ । ତଳେ ମୁଣ୍ଡ ଲଗାଇ ଓଳଗି ହେଲେ । ମୁଣ୍ଡ ଟେକି ମୋ ଆଗକୁ ଚାହିଁଲେ । ତାଙ୍କର କୋରଡ଼ିଆ ଆଖି କୁମ୍ଭାଟୁଆ ଆଖି ପରି ନାଲି ଦିଶୁଥାଏ । ମହୁଆ ପରି ଝଲଝଲିକା ସେ ମୋ' ଆଗରୁ ଚାଲିଗଲେ ।

ସେମିତି ଆଜି ସେ ଚାଲି ଯାଇଛନ୍ତି । ଅଜାଣିଆ, ନଗ୍ରହିଆ ଅଧଗଛ । ଉପାସ । ଆପଦ ବିପଦ । ମୋର କି ଥାଏ ? ତାଙ୍କ ପାଇଁ ମୋ ମନରେ କାଣିଚାଏ ଦୁଃଖ ହେବ ନାହିଁ । ଯାହାଙ୍କୁ ଦେଖିଲେ ଅତୀତର ଅନ୍ଧାରୀ କବାଟ ଖୋଲିଯାଏ, ମନ ଗହନରେ ସନ୍ଦେହର ନିଆଁ ଜଳି ଉଠେ, ଜୀବନରେ ତାଙ୍କ ସଙ୍ଗେ ଆଉ ଦେଖା ନ ହେବା ଭଲ ।

କାଉ କା କା ଡାକ ଛାଡ଼ିଲା । ମନୁଆଁ ଉଠି ବସିଲା ମୋ ପାଖରେ । ଆଖି ଖୋଲିଲି, ସକାଳ ଆଲୁଅ ଦରଆଉଜା କବାଟ ଫାଙ୍କରେ ଘର ଭିତରେ ପଡ଼ୁଛି । ବୋଉ ବିଛଣାରେ ନାହିଁ । କେତେବେଳୁ ଉଠି ଗଲାଣି । ରାତି ଘଟଣାର ଓଲଟ ପାଲଟ ଚିନ୍ତାରେ ମୋ ଆଖି କଷା ପଡ଼ୁନାହିଁ । ଆଖି ବୁଜି ବିଛଣାରେ ପଡ଼ି ଛଟପଟ ହେଉଥିଲି । ଭାବୁଥିଲି, କାନ୍ଦୁଥିଲି ।

କାଉ ଡାକିଗଲା ।

ମନୁଆଁ ଡାକିଲା, ବୋଉ, ବୋଉ, ସକାଳ । ଆଜି ମନୁଆଁର ଜନ୍ମଦିନ ! ଉଠି ପଦାକୁ ଆସିଲି ।

( ୩ )

ସକାଳ, ସକାଳ, କେତେ ସକାଳ ଗତହେଲା । ପଛକୁ ଗଲା । ମାସେ, ଦୁଇ ମାସ, ଛ ମାସ ବିତିଗଲା ।

ସୁରଙ୍କୁ ମନରୁ ପୋଛିଦେବ ବୋଲି ଏଡ଼େ ଅଣ୍ଟକରି ବସିଥିଲି, ପାରିଲି ନାହିଁ । ବେଳ ଅବେଳରେ ସେ ମୋ'ର ଭାବନା ଆଗରେ ଆସି ଠିଆ ହୁଅନ୍ତି । ତାଙ୍କର ସେଦିନର ହତଶ୍ରୀ ରୂପ ମୋର ମନେ ପଡ଼ିଯାଏ । ଛାତି ଭିତରେ କେମିତି କଅଣ ଅନୁଭବ କରେ । ମନକୁ ଅନ୍ୟ ଆଡ଼େ ବାଁରେଇ ଦିଏ ।

ସେଦିନରୁ ବୋଉ ଆଉ ମୋ ସଙ୍ଗେ ଭଲ କରି କଥାଭାଷା ହୁଏ ନାହିଁ । ସବୁବେଳେ କଅଣ ଭାବେ । ବେଳେବେଳେ ନୁଚେଇ ନୁଚେଇ କାନ୍ଦେ । ତା'ର ମନରେ କପରି ଧାରଣା ହୋଇଥିଲା, ମିଛରେ ମୁଁ ଅପେକ୍ଷା କରି ରହୁଛି, ମିଛରେ ଗୋଟାଏ ପାଗଳ ଖିଆଲରେ ନିଜ ଜୀବନ ଓ ଭବିଷ୍ୟତ ନଷ୍ଟ କରୁଛି । ତା କଥା ଶୁଣୁନାହିଁ, ତା କହିଲା କାମ କରୁନାହିଁ । ଶେଷକୁ ଖାଲରେ ପଡ଼ି, ପଙ୍କରେ ପଡ଼ି ଛଟପଟ ହେବ । ହଟହଟା ହେବ । ମୋ ସଙ୍ଗେ କେବେ ଦୁଃଖ ସୁଖ ହେଲେ,

ଦେଖାଇ ଦେଖାଇ ପାଞ୍ଚ କଥା କହେ । ତାର ଉଦ୍ଦେଶ୍ୟ ବେଶ୍ ଜଣାପଡ଼େ । ମୁଁ ଶୁଣି ଶୁଣେ ନାହିଁ । ବେଳେବେଳେ ଝାଣ କଥା କହି ମୁଁ ତାକୁ ଦାବିଦିଏ । ସେ ତୁନ ହୋଇ ଅନ୍ୟଆଡ଼େ ଗୁଳିପାଏ ।

ଦିନୁଦିନ ବୋଉର କାମ କରିବାର ଶକ୍ତି କମି ଆସିଲା । ଗାଁଗଣ୍ଡାରେ ଯାହା ଘରକୁ ପାଇଟି କରିବାକୁ ଯାଏ, ତାଙ୍କୁ ସେ ଖୁସି କରି ପାରେ ନାହିଁ । ଲୋକେ ତା ମଠମଠ କାମରେ ବିରକ୍ତ ହୁଅନ୍ତି । ଅଳିସବାଲିସ କାମକୁ ଘୃଣା କରନ୍ତି । ମତେ ପଠାଇ ଦେବାକୁ କହନ୍ତି । ବୋଉ ଆସି ମତେ କହେ । ତୁନ ହୋଇ ମୁଁ ଶୁଣେ । କଅଣ କରିବି, ବୁଢ଼ୀଦିନେ ତାକୁ କାମକୁ ପଠାଇବାକୁ ମୋ ମନ ହୁଏ ନାହିଁ; କିନ୍ତୁ ତାକୁ ମନା ବି କରିପାରେ ନାହିଁ । ଜଣେ ଲୋକ ମୁଁ, କେତେ ଆଡ଼କୁ ହେବି, କଅଣ ରୋଜଗାର କରିବି ଯେ ପିଲାଟିକୁ ଧରି ଛଅ ପ୍ରାଣୀ କୁଟୁମ୍ବଙ୍କ ମୁହଁରେ ଆହାର ଦେବି । ମୋର ପୁଣି କାର୍ଯ୍ୟକ୍ଷେତ୍ରର ସୀମା ଦିନୁଦିନ କମି ଆସୁଥାଏ । ଗାଁ ଭିତରେ କାହା ଘରକୁ ନ ଯାଇ ବାହାରେ ବାହାରେ ରୋଜଗାର କରିବାକୁ ଚେଷ୍ଟା କରେଁ ।

ଦିନେ ସଞ୍ଜବେଳେ ବୋଉ ଜ୍ୱମେଇଁଟିକୁ କୋଡ଼ କରି ବସିଥାଏ ଘରକଣରେ । ଘସିଧୂଆଁରେ ଘର ପୂର୍ଣ୍ଣ ହୋଇଥାଏ । ମଗୁଶିରର ହାଡ଼ଭଙ୍ଗା ଶୀତ । କୁକୁରକାଙ୍କିଶି ହୋଇ ମନୁଆଁ ବୋଉ କଡ଼କୁ ଆଉଜି ବସିଥାଏ । ଦେହରେ ଖଣ୍ଡେ ପୁରୁଣା କନା ପକାଇ ଥାଏ । ଥୁରୁ ଥୁରୁ ଥରୁଥାଏ ଶୀତରେ ।

ମତେ ଦେଖି ମନୁଆଁ ଥରି ଥରି ଆସିଲା । ଫୁଙ୍ଗୁଳା ଦେହ । କେତେ କଅଣ କହିଲା ବୁଝି ପାରିଲି ନାହିଁ । ଓଠକୁ ଓଠ ବାଜୁଥାଏ । ହେମାଳିଆ ପାଗ । ମନୁଆଁକୁ କୋଡ଼କୁ ଆଣିଲି । ବୋଉ ଆଗରେ ବସି କହିଲି, ବୋଉ ମ, ତୁ ଯଦି ଅବଗୁଣ ନ ପାଉ ତେବେ କଥାଟିଏ କହନ୍ତି ।

ସେ ଜବାବ ନ ଦେଇ ମୋ ମୁହଁକୁ ପଗୁରିଲା ଆଖିରେ ଗୃହିଁଲା । ତା'ର କୋରଡ଼, ନିସ୍ତେଜ ଆଖି ଦେଖି ଯାହା କହିବାକୁ ବସିଥିଲି ହଠାତ୍ କହି ପାରିଲି ନାହିଁ । ଟିକିଏ ରହି ସାହସ କରି କହିଲି, ବୋଉ ମ, ଏବେ କାହିଁକି ଲୋକେ ତୋ କାମକୁ ପସନ୍ଦ କରୁ ନାହାନ୍ତି । ଯାହା ଘରକୁ ଗଲୁ ସିଏ ତୋ କାମର ଦୁର୍ଗୁଣ ବାହୁନୁଛି । ସେଇଆ ତ କରୁଛୁ, ଟିକିଏ ମନଦେଇ ଯତ୍ନ କରି କରୁନୁ ?

ହସିଲା । ଓଠ ଥରାଇ କହିଲା—ପାରିଲେ ସିନା ।

ନ ପାରୁଛୁ ତ ଯାଉଛୁ କାହିଁକି ? ପର କାମରେ ହାତ ଦେଉଛୁ କାହିଁକି ? ଘରେ ବସି ମନୁଆଁ ସଙ୍ଗରେ ଖେଳୁଥା ।

ତା ହେଲେ ଶୂନ୍ୟରୁ ଆସି ଆଧାର ପାଟିରେ ଗଳିବ ନାହିଁ । କୋଉ ମୋର ରୋଜଗାରିଆ ପଅ ଅଛି ଯେ, ମା ପାରୁ ନାହିଁ ବୋଲି ·· ।

କଥା ଅଧା ରହିଲା । ଟିକିଏ ଚୁପ ରହି ପୁଣି କହିଲା, ପାରେ ନ ପାରେ, ଲୋକେ ଭଲ କୁହନ୍ତୁ ମନ୍ଦ କୁହନ୍ତୁ, ଆଖି ବୁଜିବା ଯାଏ, ହାତଗୋଡ଼ ଚଳିବା ଯାଏ, କାମ କରୁଥିବ । ତେଣିକି ଯାହା ହେବ ।

ବୋଉ, ଗୋଟାଏ କଥା ମନରେ ପାଞ୍ଚୁଛି । ତୁ ଯଦି ରାଜି ହେବୁତ କରିବା । ଟିମବାବୁଙ୍କ ଘରେ ପାଇଟି ସାରି ଆସିଲା ବେଳକୁ ଦେଖିଲି, ଗାଁ ଦାଣ୍ଡରେ ଦି ଜଣ ଲୋକ ପଲେ ଛେଳି ଅଡ଼େଇ ନେଇ ଯାଉଛନ୍ତି । ପଚାରିଲାରୁ କହିଲେ, ମଫସଲରୁ ଛେଳି କିଣି ସେମାନେ କଟକ ନେଉଛନ୍ତି । ଛେଳି ଗୋଟାକୁ ପାଞ୍ଚଟଙ୍କା, ସାତଟଙ୍କା ଦେଇ କିଣୁଛନ୍ତି । ଆମର ଦିଟା ମାଈ ଛେଳିଛୁଆ ରହିଲେ ଭଲହେବ ନାହିଁ ? ସ୍ରେଷ୍ଠା କୁମ୍ଭାରର ଗୃହ ଛଟା ଛୁଆ ଅଛନ୍ତି, କହୁଛି ବିକିବ ।

ମୋଓର ଅଗ୍ରହ ଭାଙ୍ଗି ସେ କହିଲା, ଯାହା ତତେ ଭଲ ଦିଶୁଛି କରୁନୁ ଲୋ ମା, ମତେ କାହିଁକି ପଚାରୁଛୁ ?

ଛେଳି ଛୁଆ ଆଣିଲେ ତତେ ଆଉ ଘର ଗୁଡ଼ି ଲୁଆଡ଼େ ଯିବାକୁ ହେବ ନାହିଁ । ଏଇ ଆମ ଘର ଆଗରେ ସେମାନେ ବୁଲୁଥିବେ, ଚରୁଥିବେ । ତୁ ଏଇଠି ବସି ଦେଖୁଥିବୁ । ମନୁଆଁ ଖେଳୁଥିବ ତୋ ପାଖରେ । ମୁଁ ଯୁଆଡ଼ୁ ଯେମିତି ପାଇଟି କରି ଫେରିଲେ ତାଙ୍କ ପାଇଁ ବର, ଓସ୍ତ, ଶିଙ୍ଘୁ ପତର ଭାଙ୍ଗି ଆଣିବ । ଭଲ ହେବ ନାହିଁ ?

ନେଇ ଆଣି ଥୋଇ ପାରିଲେ ଯାହା କରିବୁ ଭଲ ହେବ । ହେଲେ, ଦେହରେ ମୋ'ର ବଳ ବୟସ ନାହିଁ ଯେ ଛେଳିଙ୍କ ପଛେ ପଛେ ଦାଣ୍ଡରେ ଗୋଡ଼ାଇବ । ପିଲାଟା ନାଙ୍ଗୁଡ଼ ପରି ପଛରେ ଧାଇଁଥିବ ।

ମୋ କଥାରେ ବୋଉ ରାଜି ହେବ ନାହିଁ । ତାକୁ ଯାହା ଭଲ ଦିଶିବ ସେ କରିବ । ଠାଣ କରି ପଦେ କହିଦେଲେ ସେ କାନ୍ଦିବ । ତେବେ, ତା ଉପରେ ନିର୍ଭର କରିବ ନାହିଁ । ନିଜ ଶିଙ୍ଗରେ ଯେତିକି ମାଟି ଖୋଳି ପାରିବ ସେତିକି । ସକାଳୁ ସଞ୍ଜପହର ଯାଏ ଖଟି ଖଟି ପେଟ ପୂରାଇ ମୁଠିଏ କାହାରିକୁ ଖାଇବାକୁ ମିଳୁ ନାହିଁ । କାକର ଧରିଲେ ଘଡ଼ା ପୂର୍ଣ୍ଣ କରି ହୁଏ ନାହିଁ । ପରଘରେ ବାସି ପାଇଟି କଲେ କି, କାନ୍ଥବାଡ଼ ଲିପାପୋଛା, ବିରିଗୁଣ୍ଡଲି ବଟା, ଚିଙ୍କିଲୁଟା, ଗୁହାଳ ପୋଛାରେ କିଏ କଅଣ ଦେବ ଯେ ତିନିପ୍ରାଣୀ କୁଟୁମ୍ବଙ୍କର ପେଟପାଟଣା ଚଳିବ ? ତହିଁରେ ପୁଣି, ବେଗବଇରାଗ ତ ଅଛି । ଦେହ ଘୋଡ଼ାଇବାକୁ କନାପଟା ଲୋଡ଼ା । ଯାହାକୁ ଖଣ୍ଡେ ମାଗିଲେ, ମୁହଁ ଛୁଁଆଡ଼ା । ପରଘରେ କାମ କଲାବେଳେ ସମସ୍ତେ ପୁଣି ଆଖିଏ ଆଖିଏ ରଖିଥାନ୍ତି । ମଣିଷ ପ୍ରକୃତି, ଭଲ କାହାକୁ କହିବ, କେତେବେଳେ କୋଉ ଚିଜରେ ହାତ ମାରିଦେବ, ଲୋକଙ୍କର ଏପରି ଧାରଣା । ତଥାପି କାମ କରିବାକୁ ପଡ଼େ । ଦରିଦ୍ର ଓ ନିଅଶ୍ରା ଲୋକର

ମାନ ମର୍ଯ୍ୟାଦାରେ ଅଧିକାର ନାହିଁ । ପରଙ୍କର ହାତ ଠେକାକୁ ନ ଚାହିଁଲେ ଦିନଟିଏ ବି କଟିବ ନାହିଁ ।

ଏହିପରି ଦୁଃଖ କଷ୍ଟରେ ବେଳ କଟିଗଲା ।

ଅନେକ ଦିନ ହେଲା ହାଟକୁ ଯାଇ ନାହିଁ । ରାଜବୋଉ ଖୁଡ଼ି ଶଯ୍ୟା ହେଲା ଦିନରୁ ଯେତେଥର ଯାଇଛି, କାହାର କ'ଣ ଚାହିଁବାକୁ ପରି ଅନୁଭବ କରିଛି । ଲୁଚି ଲୁଚି କେବେ ହାଟର ଏ ପାଖେ, କେବେ ସେ ପାଖେ ବସିଛି । ଡର ମରୁଥାଏ, କାଳେ ସେ ବାବୁଟି ଆସିବେ, କାଳେ ମୋ ପସରା ପାଖକୁ ଆସି ପଇସାକ ଜାଗାରେ ଦି ପଇସା ଦେଇ ସବୁ ପରିବା କିଣି ନେବେ । ମୋ ବୋହୂ ନ ସରିବା ଯାଏ ପିଣ୍ଡରେ ଯେପରି ପ୍ରାଣ ନ ଥାଏ । ମନ ଛକପକ ହେଉଥାଏ । ବିନା କାରଣରେ ଆଖିଡ଼ୋଳା ଏ ପାଖ ସେ ପାଖ ହୁଏ, ରାଜବୋଉ ଖୁଡ଼ି କେଉଁଠି ବସିଛି ? ଆଖିରେ ପଡ଼ିଲେ ହସା ଉଡ଼େ । ନ ଦେଖିଲେ ଦୀର୍ଘ ଶ୍ୱାସ ବାହାରି ଯାଏ, ପଞ୍ଜରା ଦୋହଲାଇ । ଛାତି ଭିତର ହାଲୁକା ଲାଗେ ।

ଦିନେ ଦିନେ ସେଇ ବାବୁଙ୍କ ହାବୁଡ଼େ ପଡ଼େ । ସେ ହସି ହସି ଦର ପଚାରନ୍ତି । ଯାହା କହେଁ, ସେଇଆ ଦେଇ ସବୁ ପରିବା ତଉଲି ନିଅନ୍ତି । ପଛକୁ ଫେରି ଚାହିଁ ଚାହିଁ ହସି ହସି ଚାଲି ଯାଆନ୍ତି ।

କେବେ କେବେ ଛବି ଘର ବାଟେ ଆସେ । ଅତି ଆଗ୍ରହରେ ମୋତେ ସେ ଘର ଭିତରକୁ ଡାକି ନେଇ ବସାଏ । ହସକୁଡ଼ୀ ପିଲା, ହସି ହସି କେତେ କଥା କହେ । ମୁଁ ବି ମନ ଖୋଲି ତା ଆଗରେ ସୁଖ ଦୁଃଖର କଥା କହେଁ । ମନ ଦେଇ ସେ ଶୁଣେ । କେବେ ମୁହଁଟି ଝାଉଁଳାଇ ଦିଏ, କେବେ ପୁଣି ହସି ହସି ଲୋଟିଯାଏ ମୋର କୋଳରେ । ମୁଁ ଘରକୁ ଫେରେ ।

ସୁଖ ଦୁଃଖର ଦୁନିଆ । ସମସ୍ତଙ୍କର ଦିନ ତ କଟିଯାଏ, ସମସ୍ତେ ଆଗେଇ ଚାଲନ୍ତି ମଶାଣି ଆଡ଼କୁ । ରକ୍ତ ମାଂସର ଦେହ ଦୁଃଖ କଷ୍ଟରେ ଛଟପଟ ହୁଏ । ତାଆରି ଦୁଃଖରେ, ତାଆରି ଭିତରେ ବନ୍ଦୀ ହୋଇ ରହିଛି ଯେଉଁ ମନଟା, ସେ ଚିତ୍କାର କରିଉଠେ । ସ୍ନେହ, ମମତା, ମୋହ, ଆକର୍ଷଣ ତେଜି ଉଠନ୍ତି । ରକ୍ତମାଂସର ପିଣ୍ଡୁଳା କାମ କରିବାକୁ ବାହାରେ, ଆଗଭର ହୁଏ । ଭିତରର ମନ ତାକୁ ଲୋଭ ଦେଖାଏ—ସୁଖ, ଆନନ୍ଦ, ଜୀବନର ଲୋଭ । ସେଇଥିପାଇଁ ମଣିଷ କାମ କରେ ।

ହାଟକୁ ଯିବି । ରାଜବୋଉର ମୁହଁମୋଡ଼ା ଆଡ଼କୁ ଚାହିଁବି ନାହିଁ । ବୋଉର ଅପମାନଥିଁ କଥାରେ କାନ ଦେବି ନାହିଁ । ସେହି ଅଜଣା ଅଚିହ୍ନା ବାବୁଟିର ମନରେ କଅଣ ଅଛି କି ନ ଅଛି ସେ କଥା ମୁଁ ଭାବିବି ନାହିଁ । ତା

ମନରେ ଯଦି କେଉଁ ଅସନା କାମନା ଛଟପଟ ହେଉଥିବ ସେଥିରେ ମୋର କିଛି ଯାଏ ନାହିଁ କି ଆସେ ନାହିଁ । ମୋ ମନର ସାହସ ଯେ ମୋର ବନ୍ଧୁ । ସିଏ ଯାହା କହିବାର କହୁଥାଉ ।

ସଞ୍ଜବେଳ । ମନଟରେ ଏପରି କେତେ ଭାବନା ଖେଳିଗଲା । ବୋଉକୁ କିଛି କହିଲି ନାହିଁ, ଘର କାମରେ ମନ ଦେଲି ।

ଦେହରେ ବିଚୁଅଣ୍ଟ ଲାଗିଲେ ଯେପରି କୁଣ୍ଡାଇ ହେଉଥାଏ, କେଉଁ କାମରେ ମନ ଲାଗେ ନାହିଁ, ବାରମ୍ବାର କୁଣ୍ଡାଇବାକୁ ହାତ ଅଜାଣତରେ ଚାଲିଯାଏ, ସେମିତି ବୋଉର ଉଦାସ ପଣ ଦେଖି ମନ ତାରି ପାଖରେ ଆସି ଗୋଟାଳିଆ ହେବାକୁ ଚାହିଁଲା । କଣ ସେ କହିବ ଶୁଣିବାକୁ କାନ ଡେରିହୋଇ ରହିଥାଏ ।

ରୋଷଘରେ କାମ ଅଧା ପକାଇ ବାହାରକୁ ଆସି କହିଲି, ଅନ୍ଧାରେ ବସିଛୁ କାହିଁକି, ଏତେ ରାତି ହେଲାଣି, ଭିତରକୁ ଆ— ।

ଦି ଚାରିଥର ଡାକିଲା ପରେ ସେ ଭିତରକୁ ଆସିଲା । ଅଧା କାନ୍ଥିକୁ ଆଉଜି ବସିଲା । ପାଟି ଫିଟାଇଲା ନାହିଁ ।

ମନ୍ୟାଁକୁ ତା କୋଳରେ ଗୁଡ଼ି ଭାତ ଗାଳି ବସିଲି । ପେଜ ପଲମ ପଦାରେ ଢାଳିଦେଇ ଆସିଲି । କହିଲି, ବାଛୁରୀଟିଏ ଯଦି ଥାଆନ୍ତା ପେଜ ମନ୍ଦାକ ଫୋପଡ଼ା ହୁଅନ୍ତା ନାହିଁ !

ରହ ରହ ପୁଣି କହିଲି, ମୁଁ ଠିକ୍ କରିଛି, ଯେତେ କଷ୍ଟ ହେଉ ପଛେ ଏଥର ହପ୍ତାକୁ ଦି ଥର ହାଟକୁ ଯିବି । ଧାନ କଟାକଟି ବେଳ ଆସୁଛି । ବିଲକୁ ଗଲେ, ମନ ଦେଇ କାମ କଲେ ଅବଶ୍ୟ ଦି ପଇସା ଅଧିକ ରୋଜଗାର ହେବ । ଯାହାକୁ କହିଲେ ବାଛୁରୀଟିଏ ଦିଗୋଡ଼ିଆ ବାନ୍ଧିବାକୁ ଦେବ ଯେ, ତାକୁ ଦେଖା ଶୁଣା କରିବ କିଏ ?

ବୋଉ ପାଟିକରି ହସି ଉଠିଲା । ଫେରି ଚାହିଁଲି ତା ଆଡ଼କୁ । ମୁହଁ ଗମ୍ଭୀର ହେଲା । ପଚାରିଲି, ହସିଲୁ କାହିଁକି, ମୋ କଥା ତୋ ମନକୁ ପାଇଲା ନାହିଁ ?

କହିଲା, ମନକୁ ନ ଆସିବ କାହିଁକି ? ହେଲେ ମା, ମଣିଷ ଯାହା ଭାବେ କରି ପାରେ ନାହିଁ, କେତେ ବାଧା କେତେ ବିପଦ ଆସି ଆଗରେ ଠିଆ ହୋଇ ବାଟ ଓଗାଳେ । ମନ କଥା ମନରେ ମରେ । ହାଇଁପାଇଁ ହୋଇ ଜୀବନ ସରେ ।

ଚୁଲି ଭିତରକୁ ଶୁଖିଲା ଡାଙ୍ଗ ପତର ଠେଲିଦେଲି । ନିଆଁ ହୁକରି ଜଳି ଉଠିଲା । କହିଲି, ଆପଦ ବିପଦ ଯେତେବେଳେ ଆସିବ, ତା ମୁଣ୍ଡରେ ଗୋଡ଼ଦେଇ ଡେଇଁ ଯିବାକୁ ଚେଷ୍ଟା କରିବା । ନ ପାରିଲେ ନ ହେବ । ଯାହାର

ଯେଉଁଭଳି ବଳ ସେଥିକି ଚାହିଁ ଫଳ ଫଳିବ । ବିଫଳ ହେଲେ ହେବ । ମୁଣ୍ଡ ନୁଆଇଁ ସବୁ ସହିବାକୁ ହେବ । ନ ହେବା ଯାଏ ତ ଆଶା ରଖି କାମ କରୁଥିବା, ନାବ ଚଳାଉଥିବା । ଯେଉଁଠି ବୁଡ଼ିବ ବୁଡ଼ୁ ।

ଆଉ ନାବ ଚଳିବ ନାହିଁ ଲୋ ତୁଳସି ! ନଈ ସେପାରିରେ ଗଛଗହଳିକୁ ଚାହିଁଲେ କୂଳ କିନାରା ଅଛି ଭାବି ନାଉରି ନାବ ମେଲିଦିଏ । ଝଡ଼ ତୋଫାନ ଆସୁ ପଛେ ଆଶା ଥାଏ, ସେ ପାଖରେ ନାବ ଲାଗିବ । ସେ ପାରିର ଗଛଗହଳି ଯଦି ଆଖିରେ ନ ପଡ଼େ, ଝଡ଼ ତୋଫାନର ଭୟ ଯଦି ସବୁବେଳେ ଥାଏ, କେଉଁ ସାହସରେ ନଈମଝିକି ନାବ ମେଲିଦେବା କହିଲୁ ?

ମନ ଭିତରେ ଉଆଁସୀ ଅନ୍ଧାର ଘୋଟି ଆସିଲା । ସତେ ତ, କୂଳ କିନାରା କିଛି ଦିଶୁନାହିଁ ? କେଉଁ ଭରସାରେ, କେଉଁ ସାହସରେ ଅନ୍ଧାର ଭିତରେ ନାବ ଚଳେଇବ ? ଅନ୍ଧାର ଭିତରେ ଯେବେ ଭାବନା ହଜି ଯାଉଥିଲା, ଦୂରକୁ ଚାହିଁଲେ ପାହାନ୍ତି ଘଡ଼ିର ଦରଜଭଳି ତାରା ପରି ଗୋଟିଏ ପାଖରେ ସୁର, ଆର ପାଖେ ସେହି ଅପରିଚିତ ବାବୁଙ୍କର ଦରହସିଲା ମୁହଁ ଦିଶୁଥିଲା । ଚମକି ଚାହିଁଲି ନିଜକୁ । ହାତଗୋଡ଼ ଭଗବାନ୍ ଦେଇଛନ୍ତି । ପଛ ଆଡ଼କୁ ଆଖି ଫେରାଇ କାହିଁକି କାହା ଉପରେ ଦୃଷ୍ଟି ନହିବ ?

ବୋଉ କହିବାକୁ ଲାଗିଲା, ଅଲୋ ତୁଳସି, କୁମ୍ଭୀର ନେଇ ଅଧା ନଈରେ କଲାଣି, ସେ କଥା ତୁ ଜାଣି ନାହୁଁ । ଟିମ ବାବୁଙ୍କ ବାପା ଯେତେବେଳେ ବଞ୍ଚିଥିଲେ, ତୋ ବାହାବେଳକୁ ଘରଡିହ ବନ୍ଧାଦେଇ କୋଡ଼ିଏ ପାଞ୍ଚଟଙ୍କା ତାଙ୍କଠାରୁ ଆଣିଥିଲି । ସୁଧ ବଢ଼ି ବଢ଼ି ମୂଳକୁ ଟପିଗଲାଣି । ରୋଜଗାରିଆ ପୁଅ ନାହିଁ ଯେ ଶୁଝିବ । ବାପ ମଲା ପରେ ଟିମବାବୁ କହିଲେ, ବୁଢ଼ୀଟା ପଡ଼ିଛି ପଡ଼ିଥାଉ, ଆଖି ବୁଜିଲେ ଡିହ ଅକବାର କରି ନେବା । ଅଲୋ ତୁଳସି, ମୁଁ ଯେଉଁଦିନ ଆଖି ବୁଜିବି, କାହା ଓଳତଳେ ଯାଇ ଆଶ୍ରା ଖୋଜିବୁ କହିଲୁ ? ମୋ ଭଲ କଥା ତତେ ସିନା ରୁଚୁ ନାହିଁ— ।

ବଜ୍ର ପଡ଼ିଲା ପରି ତା'ର କଥା ମତେ ଆଘାତ କଲା । ଏତେ ବଡ଼ ଘଟଣା ଆଜଯାଏ ମୋଠାରୁ ସେ ଲୁଚାଇ ରଖିଥିଲା ।

ପଚାରିଲି, ଆଜଯାଏ ମୋତେ କହି ନ ଥିଲୁ କାହିଁକି ?

ଦରକାର ପଡ଼ି ନ ଥିଲା ମା । ତୋର ସଂସାର ତୁ କରିଥିଲୁ । ମୋର ସୁଖ ଦୁଃଖ ଜାଣିବା ତୋର ଆବଶ୍ୟକ ନ ଥିଲା । ମୋର ସଂସାରକୁ ତୁ ଆପଣାର କଲୁ । ଯାଉ ଜୀବନ ଏଇଠି ରହି ଚଳିବାକୁ ମନ କରୁଛୁ । ଭଲମନ୍ଦ ସବୁକଥା ତୋର ଜାଣିବା ଉଚିତ । ଏଥର ଜାଣିଲୁତ ? ଏଣିକି ଭାବି ବିଚାରି ଯାହା ତୋର ମନ କର ।

କୌଣସି କଥା ଭାବି ସ୍ଥିର କରିବା ପରି ମନର ଅବସ୍ଥା ମୋର ନ ଥିଲା । ତୁନ ରହିଲି ।

ବୋଉ ସାହସ ପାଇ ପୁଣି କହିଲା, ଭଲ ମନ୍ଦ ଯାହା ବୁଝ, ଭଲ ମନ୍ଦ ଯାହା କର । ତତେ ଜନ୍ମ ଦେଇଛି, ତୁଣ୍ଡ ଚଳୁଥିବା ଯାଏ ପଦେ ପଦେ କହୁଥିବି । ମଶାଣି ଆଡ଼କୁ ଗୋଡ଼ ବଢ଼ାଇଲଣି । ସଂସାରର ଧୂଳି କାଦୁଅରେ ଘାଣ୍ଟି ଚକଟି ହୋଇଛି । ଖରା ବରଷା ଶୀତର ଦାଉରେ ମୁଣ୍ଡର ବାଳକେଶକ ଝୋଟ ପାଲଟିଛି । ଆଉ କଅଣ ଲୋ, ଆଉ କାହାଁକି କଷ୍ଟ ଲାଗୁଥିବ ? ତୋ'ରି ପରି କେତେ ଆଶାରେ ଗୁହାରି ଫୁଲାଇ ଚାଲିବାକୁ ପଣ କରିଥିଲି । ଆଶା କି ରହିଲା ? ସାହସ ଭରସା କି ରହିଲା ? ରହେ ନାହିଁ ଲୋ ରହେ ନାହିଁ । କାଳ ଓଲଟି ଯାଏ, ଆଶା ଭାଙ୍ଗେ । ଅକାଳରେ ପଡ଼ିଲେ ମଣିଷ ନଇଁ ପଡ଼େ । ପୋଖରୀ ତୁଠର ପଥରପରି ମଣିଷ ପିଠି ଦେଖାଇ ପଡ଼େ । ସବୁ ସହେ ।

ବୋଉ ଆଉ କେତେ କଅଣ କହୁଥାଆନ୍ତି । ମୋର ଟାଣ ମନ ନରମି ଆସୁଥିଲା । ଅଙ୍ଗେ ନଭୋଗିଲା କଥା, ସତକଥା ଶୁଣିବାକୁ ସାହସ ହେଲା ନାହିଁ । କାଳେ ମୋର ଦମ୍ଭ ଭାଙ୍ଗିବ, କେଉଁ ଆଶାରେ ଆଉ ବଞ୍ଚି ରହିବ, କେଉଁ ସାହସରେ ମୁଣ୍ଡ ଟେକି ବାଟ ଚାଲିବ ?

ଚୁଲି ପାଖରୁ ଉଠି ଆସିଲି । ତାରି ଗୋଡ଼ ଧରି ନେହୁରା ହୋଇ କହିଲି, ତୁନ ହ, ତୁନ ହ, ଆଉ କିଛି କହନା, ତୋର ଗୋଡ଼ ଧରୁଛି । ବତାସ ଆସିଲେ କେତେ କେତେ ଦାରୁ ଢଳିପଡ଼େ ହେଲେ, ବତାସ ଆସିବାଯାଏ ତ ପୁଣି ସେ ମୁଣ୍ଡ ଟେକି ଠିଆ ହୋଇଥାଏ । ବତାସ ସଙ୍ଗେ ଯୁଦ୍ଧ କରେ, ନିଜକୁ ବଞ୍ଚାଇ ନ ପାରିଲେ ଶେଷକୁ ସେ ଭାଙ୍ଗେ, ଢଳେ । ଏମିତି ହାର ଜିତ୍ ନିତି ଲାଗିଛି । ସେଥିକି ମୋର ଡର ନାହିଁ । ଯାହା ହେବାର ଥିବ ହେବ ।

ମୋ ମୁଣ୍ଡରେ ହାତ ରଖି କହିଲା, ଜାଣେ ମା, ସତ କଥା ଶୁଣିଲେ ତୋ ମନ ଦବିଯିବ । ସେଥିପାଇଁ ତୁ ଶୁଣିବାକୁ ଚାହୁଁ ନାହୁଁ । ମୋ ମନ ସମ୍ଭାଳି ହେଉନାହିଁ । ଏତିକି କହୁଛି, ବେଳ ବୟସ ଥାଉଣୁ କୂଳ କିନାରା ଖୋଜିନେ, ନୋହିଲେ—ନେଡ଼ିଗୁଡ଼ କହୁଣିକୁ ବୋଇଯିବ । ତେଣିକି ଅନୁତାପ କରୁଥିବୁ, ହାତ ପିଠିରେ ଲୁହ ପୋଛୁଥିବୁ ।

ସେ ତୁନ ହେଲା । ମୁଁ ଥକା ହୋଇ ତାର ଲୁହ ଟଳ ଟଳ ଜ୍ୟୋତି ନ ଥିଲା କୋରଡ଼ିଆ ଆଖିକୁ ଚାହିଁ ରହିଲି । ମନେ ହେଲା, ସେହି ଆଖି ଦିଓଟିରେ ତା ମନର ପିଲା ଠିଆହୋଇ ଲୋଭିଲା ଆଖିରେ ମତେ ଅନାଇଁଛି । ଡାକୁଛି, ଆସ, ମୁଁ ଏଇଠି ଅଛି ।

ସେ ମୋର ସ୍ୱାମୀହିଲା ଦଅର ସ୍ୱର ।

ଦୁଇ ଆଖିରେ ହାତ ଘୋଡ଼ାଇ କଇଁ କଇଁ ହୋଇ କାନ୍ଦି ଉଠିଲି ।

୧୪

ବୋଉର କଥା ଦୁଇ ଛଅ ଦିନ ଯାଏ ମୋ ମନରେ ଲୁହୁଲୁଥିଲା, ପରେ ଆପେ ଆପେ ବିଭୁଗଲା ।

'ଛଅଦିନ ପରେ, ବରଜୁ ବାବୁଙ୍କ ଘରେ ବିଭ ବାଟୁଛି । ବଡ଼ ପରବହେବ । ବୋଉ ସଙ୍ଗେ ଜଞ୍ଜାଳ କରିବ ବୋଲି ମନୁଆକୁ ସଙ୍ଗରେ ନେଇ ଆସିଥିଲି । ସେ ମୋର ପାଖରେ ବସି ଗୋଟାଏ ସଡ଼େଇରେ ଗୋଡ଼ ପୂରାଇ ଖେଳୁଥିଲା । ଦି ପହରୁ ବାଟି ବାଟି ଅଣ୍ଟା ପିଠି ଲାଗି ଗଲାଣି । ଅଧରୁ ପାଉଆଏ ଭଜା ବାକି ରହିଛି । ବରଜୁ ବାବୁଙ୍କ ସ୍ତ୍ରୀ ସେତକ ଶେଷ କରିବାକୁ ମୋତେ କହୁଛନ୍ତି । ମନୁଆଁ ଉପରେ ଆଉ ନଜର ଦେବ କଅଣ ? କାମରେ ମନ ଦେଲି ।

ହାତ ରହିଗଲା । ଗିଲୁଷୁଅ ଗୁଡ଼ ଅଣ୍ଟା ସଳଖୁଛି, ମନୁଆଁ ପଛଅଡ଼ୁ ଢେଁ କରି କାନ୍ଦିଉଠିଲା । ପଛକୁ ଚାହିଁଲି, ବରଜୁ ବାବୁଙ୍କ ଦଶ ବରଷର ଝିଅ ଅଳକା ମନୁଆଁର କାନ ଟାଣି ଧରିଛନ୍ତି । ଆଖି ତରାଟି କଟମଟ କରି ଚାହିଁଛନ୍ତି । ମନୁଆଁ ଆଁ କରି କାନ୍ଦୁଛି । ପାଟି ଭିତରୁ ଗଳି ପଡ଼ୁଛି ମୁଢ଼ି ଗଣ୍ଡାଏ ।

କହିଲି, ଥାଉ ଦେଈ, ପିଲାଟାକୁ ମାର ନା । ଉଠିଗଲି ପାଖକୁ । କହିଲି, ଛାଡ଼ିଦିଅ, ପିଲାଟା ପରା ।

ଅଳକା ଦେଇ ଗର୍ଜି ଉଠିଲେ । ଖଟେଇ ହେଲା ପରି କହିଲେ, ଚୁଲିଗାତ ପିଲା ହୋଇଛି ! ମଲାମର, କେଡ଼େ ଲାହାଣା ଟୋକାଟା ବା ! ଘର ଭିତରେ ପାଉଆରେ ମୁଢ଼ି ରଖିଦେଇ ଆରଘରକୁ ଗଲି, ତେଣୁ ଆସି ଦେଖିଲା ବେଳକୁ ପାଟିରେ ପୁରେଇଛି, ଦି ହାତରେ ପୁଣି ଧରିଛି ଦି ମୁଠା ।

ତାଙ୍କ ହାତରୁ ମନୁଆଁକୁ ଟାଣି ଆଣିଲି । କହିଲି, ପିଲାଲୋକ, ସେ କଅଣ ପର ଆପଣା ଜାଣେ ।

ବରଜୁ ବାବୁଙ୍କ ସ୍ତ୍ରୀ ବଡ଼ ପାରୁଥିଲେ । କହି ଉଠିଲେ, କାଲେ ପରଘରେ ତ କାମ କରିବାକୁ ଆସିବ, ସାଙ୍ଗରେ ପୁଣି ନେଞ୍ଜରାଟିଏ ଆଣିବ କାହିଁକି ? ବୁଢ଼ୀ ଜିମା ଦେଇ ଆସିଲୁ ନାହିଁ ? ଏମିତି ନଉଚ୍ଛୁଣା ପିଲା, ପରଘରେ ପଶି ପରଖଜରେ ହାତ ମାରିବ ।

କହିଲି, ଅଜ୍ଞାନ ବାଳୁତ, ସେ ପର ଆପଣା କଅଣ ଜାଣେ ମା ?

କହିଲେ, ନାଇଁ, ସେମିତି ପେଟକାବୁରା ପିଲା ଜାତିଏ ଅଛନ୍ତି । ଆମ ପିଲାଏ ପରଘର ଅମୃତକୁ ଚାହିଁବେ ନାହିଁ । ଯେଉଁ କଳାରେ ଯାହାର ଜନ୍ମ ।

ରାଗିକରି ମନୁଆଁକୁ ସେ ଦିନ ଦି ଚାପୁଡ଼ା ମାରିଥିଲି, କେତେ ଗାଳି ଦେଇଥିଲି । ମନଆଁ ଗ୍ଲାନଆଁ ହୋଇ ଭୁନ ହୋଇ ମୋ ମୁହଁକୁ ବଲ ବଲ କରି

ରହିଁ ରହିଥିଲା । ବରଜୁ ବାବୁଙ୍କ ସ୍ତ୍ରୀ ନିର୍ଦ୍ଦୟ ଭାବରେ କହିଲେ, ଦେ ଦେ, ସେ ଡାଆଣା ପିଲାକୁ ଆଉ ଦିଟା ଥୋଇଦେ । ନହେଲେ ନ ଛାଡ଼ିଲେ, ଦିନୁଦିନ ଖୋଇ ବଢ଼ିବ ଲୋ ତୁଳସୀ, ବଡ଼ ହେଲେ ବଳ ବିହିପ ପାଇବ ନାହିଁ । କଥାରେ ଅଛି ପରା—ନାଇ ଚୋର, କଖାରୁ ଚୋର, ଚୋର, ଚୋର, ବଡ଼ ଚୋର ।

କିଛି ନ କହି ମନୁଆଁକୁ କାନ୍ଧରେ ଧକାଇ ଦୁମ୍ ଦୁମ୍ ହୋଇ ପଦାକୁ ଚାଲି ଆସିଲି । ପଛରୁ ସେ ଡାକ ପାଡ଼ୁଛନ୍ତି, ଅଲୋ ତୁଳସି, ଏତକ ମଡ଼େଇ ଦେଇ ଯା, ଖରା ଚାଲିଯିବ । ରାଗ ତମତମ ହୋଇ ମୁହଁ ଫେରାଇ କହିଲି, ନାହିଁ ଗୋ, ଡାହାଣା ପିଲାଟା ତମ ବଡ଼ ଭିତରେ ପଶିଯିବ, ଚୋର ପିଲାଟା ତମ ଧନ ଦରବ ଚୋରି କରି ନେବ ।

ଆଉ କହି ପାରିଲି ନାହିଁ । ମନୁଆଁ ତାଟଙ୍ଗା ହୋଇ ମୋର କାନ୍ଧ ଉପରେ ମୁଣ୍ଡ ନୁଆଇଁ ଦେଇଥାଏ । ବାର ବଲବଲ ହାତରେ ତା ପିଠି ଧୀରେ ଧୀରେ ଆଉଁସି ଗାଁ ଦାଣ୍ଡବାଟେ ସିଧା ସିଧା ଚାଲିଥାଏ ଘରମୁହାଁ ହୋଇ । ଆଖି ଲୁହ ଭିତରେ ସଂସାରର ଆଉ କିଛି ଦିଶୁ ନ ଥାଏଁ ମତେ । ହାୟରେ ହତଭାଗା ବାପଛେଉଣ୍ଡ ପିଲା, ବିଧାତା ତୋ ଭାଗ୍ୟରେ ଏଇଆ ଲେଖିଥିଲା । ଏଡ଼େ ଅଳଥଳ ହୋଇ ଜନ୍ମ ପାଇଥିଲୁ, ବାପ ଦାଦାଙ୍କ କୋଳ କାଖରୁ ଓହ୍ଲାଉ ନ ଥିଲୁ, ତୁ ପୁଣି ଆଜି ହେଲୁ ଡାଆଣା, ଚୋର । ମୁଢ଼ି ମୁଠାକ ପାଇଁ ମୋ ହାତରୁ ମାଡ଼ ଖାଇଲୁ ?

ସୁରଙ୍କର ବରସ ଲୁହ ଢଳଢଳ ମୁହଁ ଆସି ଆଖି ଆଗରେ ଉଭାହେଲା । ତାଙ୍କ କଥା ସତେକି ମୋ କାନରେ ବାଜିଲା, ମନୁଆଁକୁ ମାଇଲ ନୂଆଉ, ତା'ର ନାହିଁ କଅଣ ? ବାପ ନାହିଁ ସିନା ଦାଦ ଅଛି ତ । ଘରଦ୍ୱାର ଜମିବାଡ଼ ସବୁ ତାର ଅଛି । ମୁଢ଼ି ମୁଠାକ ପାଇଁ ପର ଘର ଡାଲାରେ ସେ ହାତ ଭରନ୍ତା ? ତମେ ବଞ୍ଚିଛ, ତମର ଆଖି ଫୁଟି ନାହିଁ !

ଗୁଛ ତଳର ଛପିଲା କ୍ରୋଧ ମୁଣ୍ଡ ଟେକିଲା । ଦୁଇ ଆଖିର ନିଆଁ ଜଳିଲା । ମନ ଉତ୍ତର ଦେଲା, କାହାପାଇଁ ଏହା ଘଟିଲାରେ ସୁରଅ ? ମନୁଆଁର ବାପକୁ ମାଇଲ । ମନୁଆଁ ପାଖକୁ ଗଲେ ତାକୁ ବ ମାରିବ । ସେଇଠୁ ମୋ ଅଡ଼କୁ ହାତ ବଢ଼ାଇବ । ସେତକ ମୁଁ କରାଇ ଦେବ ନାହିଁ ।

ଆଗକୁ ଚାଲିଲି ।

ଗାଁ ସେପାଖ, ଅମ୍ବଗିରି କଡ଼କଅ ଗୋହିରୀ । ବଲ ଭିତରୁ ବଙ୍କେଇ ବଙ୍କେଇ ବାଟ ପଡ଼ିଛି । କିଆଗୋହିରୀ ଭିତରେ ବାଟ, ଗାଁ ଦାଣ୍ଡରେ ମିଶିଛି ନଣ୍ଡା ସାହାଡ଼ା ମୂଳରେ । ମୋର ଆଗରେ ବାଟ ଉପରିକୁ ବାହାରି ପଡ଼ିଲେ ଚେମବାବୁ । ଗୋଟିଏ ହାତରେ ଧରିଛନ୍ତି କଟୁରି, ଆର ହାତରେ ଗୋଛାଏ କିଆପଟ ।

ତାଙ୍କୁ ଦେଖି ଡର ଡର ହୋଇ ଲୁହ ପୋଛିଲା । ମନୂଅଁ ମୁଣ୍ଡ ଟେକିଲା ।

ଟେମାଇ ବାଠ ଛକିଲା ପରି ଠିଆହୋଇ କହିଲେ, ଆରେ ତୁଳସି ଯେ, ଟୋଠା ମଝିରୁ ମଟେ ବାସିଲାଣି, ବର ବଲ ବଲ ହାତ କର କୁଆଡ଼ୁ ଆଉଛୁ ଲୋ ।

କହିଲା, ବରଜୁବାବୁଙ୍କ ଘରୁ ଆସୁଛି । ପିଲାଟା ଅଙ୍ଗଠ ଲଗାଇଲା ଯେ ଘରେ ଗ୍ଭଡ଼ିବାକୁ ଯାଉଛି ।

ହସି ହସି କହିଲେ, ଆଉ କାହିଁକି ଦୁଃଖ ଧନ୍ଦା କରୁଛୁ ? ଚହଟ ଚକ୍‌କଣ ଦେହେର ଖଣ୍ଡ ତ ଭାଙ୍ଗି ଗଲାଣି ଲୋ ।

ଟେମାଇର କଥା ଶୁଣିଲେ ବିରକ୍ତ ଲାଗେ । ସଗିକର କହିଲା, ବାଠରୁ ଉଠବା, ପୋଡ଼ ଜଳ ଯାଉ ସେ ରୂପ । ପର ଘରେ ପାଇଟି ନ କଲେ ପେଟ ଚଳୁ ନାହିଁ, ରୂପ କଥା ମନେ ପଡ଼ିବ କେତେବେଳେ ।

ମୁଣ୍ଡ ହଲାଇ କହିଲେ, କାହିଁକି ଲୋ, ନଡ଼ା ବଡ଼ାଏ କଅଣ ତତେ ମିଳୁ ନାହିଁ ଯେ ଏତେ କଷ୍ଟ ସହୁଛୁ । ତେଣେ ସେ ଥରୁଆ ଖାଇ ଅନେଇ ବସିଛି । କେଡ଼େ ଛଟପଟ ହେଉଥିବ ।

କିଏ ବା ସେ, ତା ମୁହଁରେ ନିଆଁ ଦେବାକୁ ନଡ଼ା ବଡ଼ାଏ ମିଳିବ ଯେ ।

ଆହା ହା, ଏଇଥି ପାଇଁ ଏତେ କଥା କହୁଥିଲା ସେ ସୁର ? ସବୁ ତ କଲ, ଆଉ ଟିକିଏ ବାକି ରଖିଲ କାହିଁକି ?

ଟେମାଇ, ସୁଖ ସଂସାର ମୋର ଜଳି ପୋଡ଼ି ପାଉଁଶ ହୋଇଛି । କଟା ଘାଆରେ ଲୁଣ ଛିଟା ମାରି ମୋ ମନକୁ ଆଉ କଦର୍ଥ କରୁଛ କାହିଁକି ? ଲୋକେ ଯାହା କହୁଛନ୍ତି, ସତ ହେଉ ମିଛ ହେଉ, ମତେ ମାନି ନେବାକୁ ପଡ଼ୁଛି । ସେଥିପାଇଁ ଅପବାଦକୁ ଡରି ମୁଁ ହୁରେଇ ରହୁଛି, ହୁରେଇ ରହିବ । ହାତ ଗୋଡ଼ ଚଳୁଥିବା ଯାଏ ନିଜ ଶିଙ୍ଗରେ ମାଟି ଖୋଳୁଥିବି— ।

ମଣିଷଙ୍କର ଭୁଣ୍ଡ ଯେଡ଼େ ଟାଣ, ଶିଙ୍ଗ ସେଡ଼େ ଟାଣ ନୁହେଁ ଲୋ, କେତେ ଶିଙ୍ଗ ତ ଭାଙ୍ଗି ଯାଉଛି । ଅଗରୁ ବାଟ କାଟ କହୁଛି ତୁଳସି, ଯଦି ଭଲ ଦଶା ଅଛି । ନୋହିଲେ ଏଇ ଟେମା ପରି ସାରା ଜୀବନ ଉହାଳ ବିକଳ ହୋଇ ମରିବୁ । ଗଛ ଡାଳରେ ପାକଳା ଆମ୍ବ ଦେଖୁଥିବୁ, ତଳେ ଠିଆହୋଇ ଓଠ ଚାଟୁଥିବୁ, ଚାଟୁଥିବୁ—

ଟେମାଇ ବାଟରୁ ଆଡ଼େଇ ଗଲା । ତା ମୁହଁରେ ଅତୃପ୍ତିର ଯେଉଁ ଗ୍ଲାନି ଦେଖିଲା ବାଟ ଭାଙ୍ଗି ଯାଇ ପାରିଲା ନାହିଁ । ତଳକୁ ମୁହଁ ପୋତି ଧୀରେ ଧୀରେ କହିଲା, ଟେମାଇ,—

ଅଟକି ଯାଇ ସେ କହିଲା, ଅଜି ତେମାଇ କଅଣ ? ତେମା କଅଣ ନଡ଼ା ବାଡ଼ାରେ ତୋ ପାଖେ ବସିବ କି ଲୋ ? ମୋର ଗୋରୁ ଖାଇବାକୁ ନଡ଼ା ନାହିଁ । କହିବୁ ଯେବେ, ସେଇ ଅମ୍ବମୂଳ କିଆବାଡ଼ ସେ ପାଖେ ଏଇ କିଆପଟି ଗୋଛାକ ଉପରେ ପିଲାଦିନ ପରି ତୋ ହାତ ଧରି ବସି ପଡ଼ିବି । ମୁଁ ହେବି ବର, ତୁ ହେବୁ କନିଅାଁ । ସେଇଠୁଁ ନିଜ ନିଜର ସ୍ୱାହା ଧରି ବାଟ ଭୁଲିଙ୍କି ଦହେଁ ଯିବା ଦଆଡ଼େ, ମନ ଅନନ୍ଦରେ । ସପନ ଦେଖିବା, ଖାଲି ସପନ । ତୁ ହେବୁ କନିଅାଁ, ମୁଁ ହେବି ବର । ସପନରେ ଘର, ସପନରେ ସଂସାର । କେଡ଼େ ମଜା ହେବ ! ତୁଳସି, ମୋର ସଂସାର ସପନର କାଞ୍ଚନ ଦେଶରେ । ସେଠି ସୁନା କାଠି ରୂପା କାଠିର ଖେଳ । ଏତିକି କହି ହସି ହସିକା ତେମାରି ଗୁଲିଗଲା । ଥରେ ହୋଇ ଫେରି ଗୁହିଁଲା ନାହିଁ ।

ସବୁ କଥା ଭୁଲି ତାରି କଥା ଭାବି ଭାବି ଘରକୁ ଫେରିଲି । ସତରେ, ସପନ ତାର ସର୍ବସ୍ୱ । ଉଦ୍ବେଳବିକଳ ଜୀବନ ଭିତରେ ତାର ମନଗଢ଼ା ଅନନ୍ଦ ସବୁଠୁଁ ବଡ଼ ।

ସେଇଦିନୁଁ ଯେବେ ଯୁଆଡ଼େ ଯାଏ ମନୁଆଁକୁ ସାଙ୍ଗରେ ନିଏ ନାହିଁ । ପରଘରେ କାମ କରିବାକୁ ହେଲେ ଭଲରେ ମନ୍ଦରେ ପରଙ୍କଠାରୁ ପାଞ୍ଚକଥା ଶୁଣିବାକୁ ହୁଏ । ଦେହ କାଠ କରି ସବୁ ସହିବାକୁ ପଡ଼େ । ଇଚ୍ଛା ନ ଥିଲେ ମଧ୍ୟ ଅନ୍ୟ ମୁହଁରେ ହସ ଦେଖି ଓଠରେ ନକଲି ହସ ଅଣିବାକୁ ହୁଏ, ପର ଦୁଃଖରେ ମୁହଁ ଶୁଖାଇ ସହାନ ଭୂତି ଦେଖାଇବାକୁ ପଡ଼େ ।

ବେଳେବେଳେ ମନେ ପଡ଼େ, ଆମର ଏହି ଶ୍ରେଷ୍ଠ କୁଡ଼ିଆ ଖଣ୍ଡି ଟିମବାବୁଙ୍କ ପାଖରେ ବନ୍ଧା ପଡ଼ିଛି । ସୁଧ ଓ ମୂଳଧନ ପରିଶୋଧ କରି ଘରଟିକୁ ମୁକୁଲାଇବା ସମ୍ଭବ ନୁହେଁ । ପରଘରେ ପାଇଟି କରି ଯାହା ରୋଜଗାର କରେଁ, ତିନି ପ୍ରାଣୀ କୁନ୍ନିମ୍ବର ପେଟକୁ ଅଣ୍ଟେ ନାହିଁ । ଦେହ ଘୋଡ଼ାଇ ଅତଯାତ ହେବାକୁ ଲୁଗା ଖଣ୍ଡେ କିଣିବା ତ କାଠିକର ପାଠ, ଧନ ସଞ୍ଚୟ କରି କରଜ ସୁଝି ହେବ ନାହିଁ । କାଲି ଯଦି ଟିମବାବୁ ଧନ ମାଗିବେ, ନଦେଲେ ଘର ଛାଡ଼ି ଗୁଲି ଯିବାକୁ ଅଦେଶ ଦେବେ । ମୁଁ କି ବୁଦ୍ଧି କରିବି ?

ଛାତିରେ ଛନକା ପଶେ । ଦଶଦିଗ ଅନ୍ଧାର ଦିଶେ । ବୁଢ଼ୀ ମା ଓ ପିଲାଟିକୁ ଧରି ମୋତେ ଘର ଛାଡ଼ି ରାସ୍ତା ଉପରକୁ ଯିବାକୁ ପଡ଼ିବ । କାହାରି ପାଟିରୁ ଅହା ବୋଲି ପଦେ ବାହାରିବ ନାହିଁ । ଏ ଦୁନିଆଁ କାହାରିକୁ ଅନାଇ ବସିବ ନାହିଁ ।

କି ଉପାୟ କରିବି ?

ଆଖି ଆଗରେ ଠିଆ ହୁଏ ସ୍ୱାମୀଙ୍କର ଘର । ସେଇଠ କେଡ଼େ ଆନନ୍ଦରେ ଗୃଷ୍ଟୋଟି ବର୍ଷ କଟିଥିଲି ! ପ୍ରତି ଘାସ ପତ୍ରର ଦେହରେ ସୁଦ୍ଧା ମୋ ହାତର ପରଶ ଲାଗିଥିଲା ! ଗର୍ବ ଆସୁଥିଲା ମନରେ, ମୋ ଘର, ମୋ ଗଛ ବୃକ୍ଷ । ମୋ ଗେରସ୍ତ, ମୋ ଦଅର । ସେ ଗର୍ବ ମୋର ଭାଙ୍ଗିଛି । ସେ ଆନନ୍ଦ ସରିଛି । ଏ ଜନ୍ମରେ, ଏ ଜୀବନରେ ଆଉ ପାଇବ ନାହିଁ ।

ମୋ ସ୍ୱାମୀଙ୍କର ଘର ଆଜି ବି ମୋ ପାଇଁ ମୁକୁଳା; କିନ୍ତୁ ତେଣିକି ଗୃହିଁବାକୁ ମନ ହୁଏ ନାହିଁ । ଲୁହରେ ଆଖି ଭରି ଯାଉଛି, ସବୁ ଝାପସା ଦିଶୁଛି । ସେଇ ଝାପ୍‌ସା କୁହୁଡ଼ିଆ ଅନ୍ଧାର ଭିତରେ ଯାହାଙ୍କର ହସ ହସ ମୁହଁର ଗ୍ଭଲ ଅସ୍ପଷ୍ଟ ହୋଇ ଦେଖା ଯାଉଛି, ତାଙ୍କୁ ତ ପାଇବ ନାହିଁ । ଆଉ ଜଣଙ୍କର କଲବଲ ଲାଲସା ମୋତେ ଗ୍ରାସିବାକୁ ସେଠାରେ ଛଟପଟ ହେଉଛି । ତାର ଆଖିରେ ଅଗ୍ରହର ନିଆଁ ଜଳୁଛି । ମୋର ସବୁ ଝାଣପଣ ଜାଳି ପୋଡ଼ି ପାଉଁଶ କରିବ । ସେଇ ସେ ଭ୍ରାତୃହନ୍ତା ସୁର, ଥରିଲା ହାତ ଦିଓଟି ମୁକୁଳା କରି ମୋର ଏଇ ଦେହଟାକୁ ନିଜର କରିବାକୁ ବାନ୍ଧି ରଖିବାକୁ ସେ ଚକ୍ରାନ୍ତ କରିଛି । ଏଥିପାଇଁ କେଉଁ କୌଶଳରେ ମୋ ଜୀବନ ସମ୍ଭାଳି ମନୁଆଁର ଅନିଷ୍ଟ କରିବାକୁ ସେ ପଶ୍ଚାଇବ ନାହିଁ । ସ୍ୱାମୀଙ୍କ ଘରକୁ ଯିବାକୁ ମନ ହେଉ ନାହିଁ ।

ଏଇଠି ରହିବ । ଦୁଃଖ କଷ୍ଟ ଆସୁ, ରହିବାକୁ ହେଲେ ସହିବାକୁ ହେବ । ଦୁନିଆଁର ଝଞ୍ଜା ମୁଣ୍ଡ ଉପରେ ବହିଯିବ । ଡେଙ୍ଗା ଗଛର ମୁଣ୍ଡ ସିନା ଭାଙ୍ଗି ପଡ଼ିବ, ଯେ ଘାସ, ଯେ ନଇଁ ଶିଖିଛି, ଯାହାର ମୁଣ୍ଡ ନଇଁ ନଇଁ ମାଟିରେ ମିଶିଯିବ ସେ ଭାଙ୍ଗିବ ନାହିଁ ? ଭାଙ୍ଗିବାର କଷ୍ଟ ସହିବ ନାହିଁ ।

ଗ୍ଭବେଁ, ଭାବନାର ଗୋଲକଧନ୍ଦାରେ ଆଉ ଭ୍ରମିବ ନାହିଁ । ସବୁ ଭୁଲି, କାମରେ ଲାଗିବ । ମୋ ପରି କେତେ ଦୁଃଖୀ, ଦରିଦ୍ର, ମୂଲିଆ, ସଂସାରର ଦୁଃଖ କଷ୍ଟ ଭୁଲି କାମର ଆନନ୍ଦରେ ମଜ୍ଜି ରହିଛନ୍ତି, କାମର ଆନନ୍ଦରେ ଶେଷ ନିଶ୍ୱାସ ହଜାଇ ଦେଇଛନ୍ତି ।

ଆଗରେ ହଗହଜା ଗଷ୍ଠାର । ପାଚିଲା ଧାନକ୍ଷେତର ଧୂସର ଶୋଭା । ସକାଳର ସୁନେଲି ଆଲୁଅରେ ଝକ୍ ଝକ୍ ଦିଶୁଛି । ଥିର ପବନରେ ମୁଣ୍ଡ ହଲାଇ ଦୋହଲି ଦୋହଲି ନିମନ୍ତ୍ରଣ କରୁଛି । ଲକ୍ଷେ ମୂଲିଆର ହାତଯଶ — ଲକ୍ଷେ ମୂଲିଆର ଦେହଝାଳରେ ବଢ଼ି ଉଠିଛି । ତାରି ମଝିରେ କାମ କରି ଗତ ଅଗତ ଭୁଲିଯିବ ।

ଧୀରେ ଧୀରେ ଟିମ ବାବୁଙ୍କର ଟଙ୍କା ଶୁଝି ଦେବ । ତେଣିକି ନିଶ୍ଚିନ୍ତ ହେବ, ସ୍ୱାଧୀନ ହେବ । ମନରେ ଦାଗ ନ ଥିବ । ପିଲାଟିକୁ ମଣିଷ କରିବାକୁ ମନ ପ୍ରାଣ ଢାଳିଦେବ ।

ମନୁଆଁ ମୋର ମଣିଷ ହେବ, ପାଞ୍ଚଟାରେ ଜଣେ ହୋଇ ଦାଣ୍ଡରେ ମୁଣ୍ଡ ଟେକି ଗ୍ଭଲିବ । ମନୁଆଁ ମୋର ବଡ ହେବ ।

## ୧୫

ରାଜୁବାବୁଙ୍କ ଘରେ ସକାଳ ପହରୁ ମାଣ୍ଡିଆ ପେଷୁଥିଲି । ଅଣ୍ଟା ପିଠି ଲାଗି ଯାଇଥିଲା । ଗାଧୁଆ ବେଳେ ଫେରିଲି । ପୋଖରୀରେ ଗାଧୋଇ ଆସିଲି । ଗତ ରାତିର ବାସି ମାଣ୍ଡିଆଜାଉ ଅଧକଂସାଏ, ଅନାବନା ଶାଗଖରଡ଼ା ଲଗାଇ ଖାଇଲି । ମନୁଆଁକୁ କୋଡ଼ରେ ପୂରାଇ ଶୋଇଲି । ଖରାନିଦ ମାଡ଼ି ଆସୁଥିଲା, ବୋଉର ଡାକ ଶୁଣି ନିଦ ଭାଙ୍ଗିଲା । ଧୀରେ ଧୀରେ ଉଠି, ମନୁଆଁ ଉପରେ କନ୍ଥା ଖଣ୍ଡେ ଘୋଡ଼ାଇ ଦେଇ ପିଣ୍ଡାକୁ ଆସିଲି ।

ବୋଉ ଦୁଆରେ ଗୋବର ଚକଟି ଘସି ପାରୁଥିଲା । ଖରା ଲେଉଟି ବେଳ । ସେ ମୋ ଆଡ଼କୁ ନ ଅନାଇ କହିଲା, କାଲି ପରା ହାଟକୁ ଯିବୁ କହିଥିଲୁ, ପରିବା ପତ୍ର କିଣି ରଖିବୁ ନାହିଁକି ?

କହିଲି, ବୋଉ ମ, ତୁ ଥା କି, ମୁଁ ରାଜବୋଉ ଖୁଡ଼ୀ ଘରୁ ଆସେଁ । ମିଛଟାରେ ମନ ଦୁଃଖ କରି ସେ ରହିଛି । ହାଟକୁ ଯାଉଛି, ଦେଖା ହେଲେ ପାଟି ଫିଟାଉ ନାହିଁ । ମୁହଁ ବୁଲାଇ ଅନ୍ୟ ରାସ୍ତା ଧରି ଯାଉଛି ।

ବୋଉ କହିଲା, ଏତେ ମନରଖା କାହିଁକି ବା ? କଣ୍ଟା ବାଡ଼ରେ ଲୁଗା ପକାଇ କଳିଆ କରିବା ତା ଖୋଇ । ତୋ ଗୋଡ଼ରେ ତୁ ଯିବୁ, ତା ଗୋଡ଼ରେ ସିଏ ଯିବ । ଏଥିକି ତା ଗୋଡ ତଳକୁ ତୁ ଦଉଡ଼ି ଯିବୁ କାହିଁକି ?

ବୋଉ କଥା ମୁଁ ଭାବିଲି । ସତରେ ତ, ଭଲ କଥା କହିଲେ ଯଦି ସେ ଭଲ ବୁଝିଲା, ସେ ତାର ଅନ୍ ନେଇ ଥାଉ । ନୂଆ ନୂଆ ସିନା ଡର ମାଡୁଥିଲା ବୋଲି ସାଙ୍ଗ ଖୋଜୁଥିଲି, ଏଣିକି ଯିବା ଆସିବାରେ ଅଭ୍ୟାସ ହୋଇ ଗଲାଣି । କହିଲି, ସତ ଲୋ ବୋଉ, ତା ଘରକୁ ମୋର ଯିବା ଦରକାର ନାହିଁ ।

ମାଧିଆ, ଝିମା ବାବୁଙ୍କ ଚାକର, ପଚିଶ ସେପାଖ ବୟସ, ସେତିକି ବେଳେ ବିଲ ଆଡ଼ୁ ଆସି ପହଞ୍ଚିଥିଲା । କହିଲା, ଆଲୋ ତୁଳସୀମା, ବାବୁ ତତେ ଡକାଇଛନ୍ତି । ତୁ ନଇଲେ ତୋ ଝିଅ ସଞ୍ଜ ଆଗରୁ ଯାଇ ଦେଖା କରିବ । ଜରୁର୍ କାମ ଅଛି ।

ବୋଉ ପଚାରିଲା, କି କାମ ଅଛିରେ ମାଧିଆ, କିଛି କହି ନାହାନ୍ତି ? ବାବୁ ତ ଏମିତି କେବେ ଡକାନ୍ତି ନାହିଁ ।

ବୋଉ ହାତ ଧୋଇ ପିଣ୍ଡାକୁ ଆସିଲା । ମାଧିଆ କହିଲା, କାମ ନା କାମ, ମୁଁ କି ଜାଣେଁ, ଯାହା କହିଲେ, ମୁଁ ସେଇଆ କହିଲି, ଯାଉଛି ।

ମାଧିଆ ଫେରୁଥିଲା । ପଛରୁ ଡାକିଲି, ଶୁଣ ମ ।

ମୁହିଁ ନ ଫେରାଇ ହାତ ହଲାଇ କହିଲା, ଶୁଣିବାକୁ ମୋର ତର ନାହିଁ ଲୋ । ରାଜଆର ଦାଦା ଚାଇ ଖାଉଁଦଙ୍କ ଶାଗ ପଡ଼ାଳ ଚକଟି ମନ୍ଦି ନଷ୍ଟ କରଛନ୍ତି । ତାଙ୍କୁ ବାନ୍ଧି ଅଣଛନ୍ତି ଲୋ, ଟଳେ କାଇଞ୍ଜାଉଦାକୁ ନେବ ।

ମା ଅ ଗୃଲଗଲା । କେଜାଣି କାହିଁକି ବଲ ବଲ କରି ବୋଉ ମୋ ମୁହିଁକୁ ଅନାଇ ରହିଲା ।

ଥଙ୍ଗେଇ ଥଙ୍ଗେଇ ପଗୃରଲି, କଅଣ ଭାବୁଚ୍ଛୁ ବୋଉ ?

ମୁଣ୍ଡର ଫର୍ଫର୍ ବାଲ କେରାକନେ ହାତ ମାରି ସେ କହିଲା, କଅଣ ଆଉ ଭାବବି ଲୋ ମା, ଡିମ ବାବୁଙ୍କ କଥା ପଡ଼ିଲେ ମୋର ହାଲ୍ଲକ୍ ଶୁଖେ । ସେଇଥି ପାଇଁ ଡରରେ ତାଙ୍କ ଘର ଆଡ଼େ ବେଶି ଯା ଅସ କରେ ନାହିଁ । ଦୂରରେ ଦେଖିଲେ ବାଡ଼ ଭାଙ୍ଗି ଲୁଚ ଲୁଚ ପଳାଏ—କାଳେ ଠଙ୍କା କଥା କହିବେ ।

ମନରେ ସାହସ ଅଣି କହିଲି, ଏଥିକି ଡର କାହିଁକି ? ପାରଲେ ଠଙ୍କା ଶୁଝିବା, ନ ପାରଲେ ଘରଡିହ ଖଣ୍ଡେ ନେବେ । ତା ବୋଲି ତ ସେ ଅମ ମୁଣ୍ଡ କାଟି ନାହାନ୍ତି ।

ଯଦି ସେ ସେଇଆ କରନ୍ତି ?

କଲେ ତେଣିକି ଯେମିତି ଭଲ ଦିଶିବ କରିବା । ଦେହରେ ବଳ ଥିବାଯାଏ, ମନରେ ସାହସ ଥିବାଯାଏ ଅବସ୍ଥା ସଙ୍ଗେ ଲଢ଼ିବା, ନ ପାରଲେ ତେଣିକି ବିଗୃରବା ।

ତେଣିକି ଆଉ କଅଣ ? ମତେ ତ ଗୃରଆଡ଼ ଅନ୍ଧାର ଦିଶୁଛି । ତେବେ, ଗୋଟାଏ କଥା ଭାବଛି ଯଦି ତୋ ମନକୁ ଆସେ—

କି କଥା ଭାବଚ୍ଛୁ ?

କଅଣ କି, ମୁଁ କହୁଛି, ତୁ ଯଦି ସୁର ସଙ୍ଗେ ରହି ନ ପାରବୁ, ଗୋଟିଏ କଥା କର । ଯେଉଁ ସମ୍ପତ୍ତି ସୁର ଭୋଗ କରୁଛି ତାକୁ ସେ ଏକା କମେଇ ନ ଥିଲା । ତୋ ଦେରେସ୍ତର ସେଥିରେ ଅଧେ ଭାଗ ଅଛି । ମନୁଆଁ କାହିଁକି ଦାଣ୍ଡରେ ଠିଆ ହେବ ? ଗୃଲ ଯିବା ପାଞ୍ଚ ଲୋକଙ୍କୁ ବସାଇ ଘରଡିହ ଜମିବାଡ଼ ଦି ଭାଗ କରାଇ ନେବା । ତୁ ଯେବେ ଅନ୍ୟ ସଂସାର ନ କରବୁ ତ ନାହିଁ, ତୋର ଶଶୁର ଦେରେସ୍ତଙ୍କ ଉହାରେ ରହି ଦୁଃଖ ଧନ୍ଦା କରି ଚଳବୁ । ଡିମବାବୁ ଏବେ ଏ ଉହାନା ନଅନ୍ତୁ ।

ବୋଉର କଥା ଭାବିଲି ସତେ ତ ! ମୁଁ ଆଖି କରି ବସିବି ବୋଲି ମନୁଆଁ କାହିଁକି ଦୁଃଖ ଭୋଗିବ ? ପରଘରେ ପର ପିଲାର ଭୋଗେଇରେ ମୁଡ଼ି ଗଣ୍ଡାକ ପାଇଁ ହାତ ପୂରାଇ ଗୃେର ହେବ, ଡାଆଁଣା ହେବ ?

ଏଇକଥା ତ ସୁର ଦିନେ କହିଥିଲେ । କେତେ ଜୋର୍‌ରେ ତାଙ୍କ ମୁହିଁ ଉପରେ କହିଥିଲି—ରଖ ତମର ସମ୍ପତ୍ତି, ତମ ଘରେ ତମ ଗାଁରେ

ଗୋଡ଼ ଦେଲେ ମୋର ପାପ ହେବ, ମନ ଜଳିଯିବ । ଆଜ କେଉଁ ମୁହଁରେ ପୁଣି ସେ ଗାଁରେ ଗୋଡ଼ ଦେବ ? କେଉଁ ମୁହଁରେ ତାଙ୍କ ଘରକୁ ଲାଗି ଆର ଘରେ ରହିବ ? ଯେଉଁ ଭଣ୍ଡ ବାଇଦକୁ ଡର ରହିଥିଲା, ପୁଣି ସେ ବାଇଦ ମୁହଁରୁ ମୁହଁ ଡେଇଁ ବୁଲିବ । ରକ୍ତ ମାଂସର ଦେହ ଧରି ସହିବ କିପରି ? ବାଟରେ ମୁଣ୍ଡ ଟେକି ଚାଲିବ କେଉଁ ସାହସରେ ? ଲୋକଙ୍କ ଭିଣ୍ଡରେ ହାତ ଦେଇ ପାରିବ ନାହିଁ । ଜଣ ଜଣ କରି ସମସ୍ତଙ୍କ ଆଗରେ ଗୋଡ଼ ଭାଙ୍ଗି ଠିଆ ହୋଇ, ନିଜ ସ୍ୱଭାବ ଚରିତ୍ର ଭଲେଇ କରି ପାରିବ ନାହିଁ ।

କହିଲି, ବୋଉ; ଯେଉଁଠି ପୁରୁଅ ମୋର ଶେରସ୍ତକୁ ମାରିଛି, ମୁଁ କିପରି ଯାଇ ସେଠି ରହିବ ? କିପରି ଗ୍ରାମର କୋହ ଅଖିର ଲୁହ ସମ୍ଭାଳି କାମରେ ହାତ ଦେବ ? ଗଛପତ୍ର, କାନ୍ଥବାଡ଼, ଅକାଶ ପବନ ସବୁଥିରେ ତାଙ୍କର କାନ୍ଦିଲା ମୁହଁ ମତେ ଦିଶିବ ।

ଆଖିରେ ଲୁହ ଭରିଚଲା । ଆଖି ପୋଛି ପୁଣି କହିଲି, କେମିତି ଧଇର୍ଯ୍ୟ ଧରିବ କହିଲୁ ? ହଁ, ଆଜ ଯଦି ଅନ୍ୟ ସଂସାର କରନ୍ତି, ଅନ୍ୟର ଘରକୁ ଯାଇ ତାର ଭଲ ମନ୍ଦ, ସୁଖ ଦୁଃଖରେ ନିଜକୁ ହଜାଇ ଦେଇ ପାରନ୍ତି, ତେବେ କେଜାଣି ତାଙ୍କର ଲୁହଧୁଆ ମୁହଁ ନୂଆ ସଂସାରର ଜଞ୍ଜାଳ ଭିତରେ ହଜି ଯାଆନ୍ତା ।

ବୋଉର ଶୁଖିଲା ଓଠରେ ଦରହାସ । ଲୁହ ଢଳ ଢଳ ଆଖିରେ ମୋ ଓଠ ଧରି କହିଲା, ସେଇଆ କର ଲୋ ମା, ମରିବା ଆଗରୁ ତୋର ସୁଖ, ତୋର ଆନନ୍ଦ ଦେଖିଯାଏ । ଭଙ୍ଗା ସଂସାର ତୋର ଆଉ ଥରେ ଯୋଡ଼ି ହୋଇଯାଉ । ତୋ ଶୁଖିଲା ମଉଳା ମୁହଁରେ ହସ ଦେଖି ମୋ ହିନକାଳ ସରି ଯାଉ । ମା ମୋର, ସୁନା ମୋର, ଏଇ କୋଳର ଟିକି ଛୁଆଟିଏ ତୁ, ତୋର ମୁହଁ ଦେଖି, ତୋର ସୁଖ ଦେଖିବି ବୋଲି କେତେ ଦୁଃଖ କଷ୍ଟ ସହି ବଞ୍ଚି ରହିଛି । ଲୋକନିନ୍ଦା, ଭଣ୍ଡ ବାଇଦକୁ କାନ ଦେଇ ନାହିଁ ।

ମୋର ମୁଣ୍ଡକୁ ତା ଛାତି ଉପରକୁ ଆଉଜାଇ ନେଲା । ମୁଣ୍ଡ ବାଳରେ ଆଙ୍ଗୁଠି ଖେଳାଇ କହିଲା, ପୁରୁଠି କଅଣ ନିଖ ମରିଛି ? ତାଠିଁ ଯଦି ମନ ଯାଉନାହିଁ, ତେବେ ହେଉ, ପୁରୁଅ ଚୁଲିରେ ପଶୁ, ଆମର କଣ ଥାଏ ? ତୁ ହଁ କହିଲେ ନୂଆ ପାତ୍ରଟିଏ ଖୋଜି ଜୋଇଁ କରିବାକୁ ଦିନ ଗୁରିଟା ଲାଗିବ ନାହିଁ ।

ଅନ୍ଧ୍ୟଫାଡ଼ ଜନ୍ମ ଦେଇଛି ମୋତେ, ମୋର ସୁଖ ଦୁଃଖ, ମୋ'ର ଭବିଷ୍ୟତ୍ ସବୁବେଳେ ଭାବି ଭାବି, ମନରେ କେତେ ଦୃଶ୍ୟ ସେ ଆଙ୍କିଯାଉଛି । ସବୁ ମାଆଙ୍କ ପରି ସେବି ଅପଣାସାର୍ଥିକା, ଆଗ ନିଜ ପିଲାର ମଙ୍ଗଳ ମନାସିବେ, ପରେ ଅନ୍ୟ ପିଲାଙ୍କର ।

୧୬

ରାମ ଲକ୍ଷ୍ମଣ ପରି ଦି ଭାଇ । କିଏ ବଡ଼ କିଏ ସାନ ଜାଣି ହୁଏ ନାହିଁ । ଭାଇ ଦୁହେଁ ଯେତେବେଳେ ପାଖକୁ ପାଖ ବସିଥାନ୍ତି, ମୁହଁରେ ହସ, ଆଖିରେ ଆଗ୍ରହ, ଦୁଇ ହାତରେ ଦୁଇଟି ବେଲା ଧରି ତର ତର ହୋଇ ଆସେ ଜଳଖିଆ ଦେବି । ଆଖି ପଡ଼ିଯାଏ ତାଙ୍କ ଉପରେ । ପେଟ ପୂରି ଉଠେ ଆନନ୍ଦରେ, ଗର୍ବରେ । ଏଇ ମୋର ଗେରସ୍ତ, ଏଇ ମୋର ଦିଅର । ମୁଗ୍‌ଧ-ଆଖିରେ ଚାହିଁ ରହେ ।

କଅଣ ଦେଖୁଛ ତୁଳସି ? ଏ, ଦି ଜାଗାରେ କାହିଁକି ଆଣିଲ, ଏକାଠି କରି ଦିଅ । ସୁରିଆ ମୋ ସଙ୍ଗେ ନ ବସିଲେ ମତେ ଶାନ୍ତି ଲାଗିବ ନାହିଁ, ଏକଥା ତ ତମେ ଜାଣ ।

ଦୁଇ ବେଲା ମିଶାଇ ଏକାଠି କଲେ । କହିଲେ, ଏମିତିରେ ସୁରିଆ, ଏ ମାଇପି ଜାତିଟା ଏମିତି ଗୋଟାଏ ବେଲାକୁ ଦି ବେଲା କରନ୍ତି; ଗୋଟାଏ ଘରକୁ ଦି ଘ ର କରନ୍ତି; ଗୋଟାଏ ମନକୁ ଫଟାଇ ଦି ଭାଗ କରନ୍ତି । ରକ୍ତ ରକ୍ତର ମଝିରେ ହିଡ଼ବାଡ଼ ପକାନ୍ତି ।

ଲାଜରେ ମୋ ମୁହଁ ଜଳିଗଲା । ଅଭିମାନରେ ଆଖିରେ ଲୁହ ଭରିଲା । ମନରେ ରାଗ ଆସିଲା । ଧୈର୍ଯ୍ୟ ଧରି କହିଲି, ଗୋଟିଏ ବେଲାରେ ହାତ ଚୁଳିବ ନାହିଁ । ଅସୁବିଧା ହେବ ବୋଲି ଦୁଇ ଜାଗାରେ ଆଣିଥିଲି ।

ଅସୁବିଧାର ଧାରଣା ଆଗ ତମରିମାନଙ୍କ ମନରେ ପଶେ । ଆରେ ସୁରିଆ, ଗୋଟାଏ ଜାଗାରେ ଖାଇଲେ ଅସୁବିଧା ଯଦି ହୁଏ, ସେଥିରୁ ଆମେ ଶିଖୁ କଅଣ ଜାଣୁ ? ଧୈର୍ଯ୍ୟ, ପରସ୍ପରକୁ ସହିବାର ଗୁଣ ଆଉ ସହାନୁଭୂତି । ସେହି ଅସୁବିଧା ସତ୍ତ୍ୱେ ଆନନ୍ଦରେ ଉପାସ ରହିବା, ଶେଷକୁ ଆଖିବୁଜି ଦେବା ପଛେ ଦି ଭାଗ କରିବା ନାହିଁ ।

ମୋର ଭୁଲ ହୋଇଗଲା । ସ୍ୱାମୀଙ୍କ ମନରେ ଦୁଃଖ ହେଲା । ସେଥିପାଇଁ ଏତେ ବଡ଼ ଦିଅର ଆଗରେ ମୋତେ ସେ ଝିଙ୍ଗାସିଲେ । ତାଙ୍କ ଆଗରୁ ଗୁଲି ଆସୁଥିଲି, ସେ ଡକା ଛାଡ଼ିଲେ—ଶୁଣ ତୁଳସି !

ଡରି ଡରି ପାଖକୁ ଗଲି, ଦୂରେଇ ଠିଆହେଲି । କହିଲେ, ପାଖକୁ ଆସ ।

ଗଲି ।

ମୋ ହାତଧରି କହିଲେ, ବସ ।

ତାଙ୍କର ଉଦ୍ଦେଶ୍ୟ ବୁଝିଲି । କହିଲି, ନାଇଁ, ତମକୁ ପଛରେ କିଏ ଦେବ ?

ମୋର ମୁଣ୍ଡ ଉପରେ ହାତ ବୁଲାଇ କହିଲେ, ମନ ଦୁଃଖ କଲୁ ? ନାଇଁ, ମୁଁ ଯାହା କହିଲି ଠିକ୍ କଥା । ବସ, ପଛରେ ଦେବା ଦରକାର ନାହିଁ । ବସ, ଆମ ସଙ୍ଗରେ । ତମକୁ ସୁରଅ ଘଣ । —ସୁରଅ ଯେପରି ମୋ ଭାଇ ନୋହି ଲ ପୁଅ । ସୁରଅ ଘଣଠା ତାଙ୍କୁ ଯେପରି ବଡ଼, ସେ ଭାବନ୍ତି ମତେ ବ ସେପରି ବଡ଼ ।

ତାଙ୍କ ସାଙ୍ଗରେ ଖାଇ ବସିଲି । ସୁରଅର ପାଟିରେ ଯେପରି ଅଧାର ଦେଲେ, ଏଡ଼େ ଅଲାଜୁକ, ମୋ ପାଟିରେ ବ ସେପରି ଦେଲେ ।

ସେଇ ସୁର । ବୋଉ ଆଜି ତାଙ୍କର ମନ୍ଦ ମନାସି କହୁଛି । ଲୋକନନ୍ଦା, ଭୁଣ୍ଡବାଇଦ ଯେତେ ବଡ଼ ହେଉ ପଛେ, ମୋ ସନ୍ଦେହ ଯେତେ ଗହୀର ହେଉ, ସୁର ମୋ'ର ଦାଅର ।

ତାଙ୍କର ଗେହ୍ଲା ଭାଇ, ମନୁଆଁର ଦାଦ ।

ଆଖି ଉଚ୍ଛୁଳା ଲୁହଧାର ଗଡ଼ି ପଡ଼ିଲା । ବୋଉ ଗ୍ରୀଭ ଉପରୁ ମୁଣ୍ଡ ଟେକିଲି ।

ସେ ପଗ୍ଭରିଲା, କାନ୍ଦୁଛୁ କାହିଁକି ମା, ସୁର କଥା ଯେତେବେଳେ ପଡ଼େ ତୁ କାନ୍ଦୁ କାହିଁକି ? କଅଣ ତୋର ବଳେଇ ପଡ଼ୁଛି । ତୁ ମୋର ପିଲା ଝିଅ । ଷଠୀ କୋଡ଼ରେ ବକଟେ ମଳି ଥୋଇଛନ୍ତି ବୋଲି କେହି ଆସି କହି ପ ରିବେ ନାହିଁ ଯେ ମୋ ଝିଅର ବୟସ ନାହିଁ, ରୂପ ନାହିଁ । ମନ କଲେ, କାଲି ପୁଣି ନଅ ଘର, ନୂଆ ସଂସାର ହେବ । ପୁଣି ଷଠୀ ଦୟା କରିବେ । ଏଥିକି କାନ୍ଦୁଛୁ ? ଶୁନ ହ ମା, ସୁର ତା'ର ସିଆଡ଼େ ଥାଉ କି ସେ ପୁରକୁ ଯାଉ ।

ଆଖି ତଗ୍ଭଚ୍ଚ ତା ତୁଣ୍ଡରେ ହାତ ଦେଇ କାନ୍ଦଣା ସ୍ୱରରେ କହିଲି, ଆଉ କଚ୍ଛୁ କହ ନା, କହୁଛି ପଗ୍ଭ, ସୁରଅର ନାଁ ମୋ ଆଗରେ ଧରିବୁ ନାହିଁ ! ସେ ଭଲରେ ରହୁ, ଖୁସିରେ ରହୁ, ବଡ଼ ଲୋକ ହେଉ, ମୋର କି ଥାଏ ? ନଜ ପାପ ପାଇଁ ସେ ଯନ୍ତ୍ରଣା ଭୋଗୁ । ବଞ୍ଚିଥାଉ ।

ବୋଉ କହିଲା, ଥାଉ ସେ କଥା, କାହାର ଭଲ ମନ୍ଦରୁ ଆମୁକୁ କି ମିଳବ ? ନୂଆଘର କରିବାକୁ ଯଦ ତୋର ମନ ବଳୁଛି ସେଇ କଥା ମତେ କହିଲେ ମୁଁ ଭଲ ପିଲାଟାଏ ଖୋଜିବ ।

ଲୁହଭରା ଆଖି ଆଗରେ ଚେମାଇର ସୁନ୍ଦର ବଳୁଆ ରୂପ ଠିଆ ହେଲା । ଆଗ୍ରହରେ ପୂରି ଉଠିଲା ମନ । ପରକ୍ଷଣରେ ତା'ର ହସ ହସ ଅଠେଲି କଥା ଯେପରି ଅସି କାନରେ ବାଜିଲା, ଅଲୋ ତୁଳସି, ମୁଁ ହେବି ବର, ତୁ ହେବୁ କନଅଁ, ହେବେଁ ଯିବା ଦ'ଆଡ଼େ, ସପନରେ ମୋର ଘର, ସପନରେ ମୋର ସଂସାର ।

ବାଧା ପାଇ ଲେଉଟି ଆସିଲା ଭାବନା । ଅନ୍ଧାର ଘୋଟିଗଲା ଆଖି ଆଗରେ । ସେଇ ଅନ୍ଧାର ଭିତରେ ଦପ୍‌ କିନା ଓଁଠାଉଲା ଆଖି ତେଜହୋଇ ଉଠିଲା । କେତେ଼ ଆଗ୍ରହରେ ଗୃହିଁ ରହୁଥିଲା ମୋ ଆଡେ଼, ମୋ ଦେହର ପ୍ରତି ଲୋମମୂଳ ଆବୋରି ରହିବାକୁ ଯେଉଁ ଅଖି ଦିଶାର ଆନନ୍ଦ ।

ସେଇ ଅଜଣା ବାବୁଟି, ହାଟରେ ଶହ ଶହ ଲୋକଙ୍କ ମଝିରେ ଯାହାର ଭିତର ସଙ୍ଗେ ମୋର ଚିହ୍ନା ପରିଚୟ । ଦୁଇଟି ବ୍ୟକ୍ତି ଛଡ଼ା ତୃତୀୟକୁ ଅଗୋଚର ।

ପୁଣି ଫେରିଆସିଲା ଭାବନା । ଅଖି ନିଅଁର ଲହଲହ ତେଜିଲା ଜିଭ ଯେପରି ଦୁନିଅଁ ଆବୋରି, ହାଡ଼ଭଙ୍ଗା, ଚମଥରି ମାଘ ଶୀତକୁ ଗୃଟିଦେଇ ଠେଲିପକେ଼, ସେମିତି ସେଇ ଅଜଣା ବାବୁଟିର ପଛରେ, ଦପ୍‌ ତେଜିଲା ତେଜିଲା ରଙ୍ଗିଲା ଆଖି ମୋର ଦେହ ଶିହରି ଉତ୍ତେଜନାକୁ ଠେଲିଦିଏ । ସେ, ବାବୁଙ୍କର ଗୃକର ଟୋକା । କଳା ମିଚମିଚ ବଳିଲା ଚିକ୍‌କଣ ବଳୁଆ ଦେହ । ଆଖିରେ ନିଅଁ, କଥାରେ ଝଡ଼, ଆଉ ପ୍ରତି ନିଶ୍ୱାସରେ ପଦାକୁ ଛୁଟି ଆସେ ଦାଉଦାଉ ନିଆଁ ଗାର । ମନେ ହେଲା, ସେଇ ନିର୍ଦ୍ଦୟ କଠିନ ପାଷାଣର ସ୍ତୁପ ତଳେ ଛପିଛପି ଝିର ଝିର ହୋଇ ବୋହି ଯାଉଛି ସ୍ୱଚ୍ଛ ଶୀତଳ, କୁଳୁ କୁଳୁ ଝରଣାଟିଏ । ସେଇ ଝରଣାର ସନ୍ଧାନ କରିବାକୁ ମନ ଚଞ୍ଚଳ ହୋଇ ଉଠେ ।

ବୋଉ କହିଲା, କ'ଣ ଭାବୁଛୁ ?

ମୁହିଁ ଟେକି କହିଲି, ମତେ ଆଉ ତୁ ବଳାନା । ପୁଣି ବାନ୍ଧି ହୋଇ ପରର ସୁଖ ଦୁଃଖର ଭାଗୀ ହେବି ନାହିଁ । ପେଟରେ ଦାଉ ସହିହେବ, ସେ ଦାଉ ସହିହେବ ନାହିଁ ।

ବୋଉର ମୁହଁ ମଉଳିଗଲା । ଗଳା ଥରାଇ ସେ କହିଲା, ମୋ'ର କେତେ଼ ବଡ଼ ଆଶା ଭାଙ୍ଗି ଚୂନା କଲୁ ତୁଳସୀ । ହଉ, ତେବେ ମୋର ଶେଷ କଥାଟି ଶୁଣ୍ । ଅନ୍ୟ ସଂସାର କରିବୁ ନାହିଁ, ଶଶୁରଘର ଗାଁକୁ ଯାଇ ସମ୍ପତ୍ତିରୁ ଭାଗ ନେଇ ତୁ ସେଠି ରହିବୁ ନାହିଁ, ବେଶ୍, ଏଥର ସୁର ଆସୁ, ତାକୁ କହିବି, ମନୁଆଁର ଭାଗ ସମ୍ପତ୍ତି ସେ ବିକିକରି ଯାହା ଟଙ୍କା ହେବ ସେ ଦେଇ ଦେଉ । ସେଇ ଟଙ୍କାରେ ଟିମ ବାବୁଙ୍କ ଦେଣା ଶୁଝିବୁ । ବାକି ଯଦି ଗୃରିପଇସା ବଳେ ସେଥିରେ ମନୁଆଁ ପାଇଁ ଏଇଠି ଗୁଣ୍ଠେ କି ବିଶ୍ୱାଏ କିଣିବୁ । ତେଣିକି ତୋ ଭାଗ୍ୟ । କ'ଣ କହୁଛୁ ?

ବୋଉର କଥା ମୋ ମନକୁ ପାଇଲା । ପରିବଲି ସୁରକୁଁ ସେଦିନ ମୁଁ ଅପମାନ ଦେଇ ଘରୁ ଅଧରେ ତଡ଼ି ଦେଇଥିଲି । ସେ ଆଉ ଆସିବେ ଯେ ତୁ ତାଙ୍କୁ କହିବୁ ?

କଅଣ କହିବାକୁ ବୋଉର ପାଟି ଖଲଖଲ ହେଉଥିଲା, ତଥାପି ସେ ପାଟି ବନ୍ଦକରି ରଖିଲା ।

ମୁଁ କହିଲି, ଝିମବାବୁ କାହିଁକି ଡକାଇଥିଲେ, ମୁଁ ଶୁଣି ଆସେଁ । ମନୁଆଁ ଉଠିଲେ ତାକୁ ତୁ ସମ୍ଭାଳିବୁ ।

ଗୁହାଳ ନେଉଛିଲି । ଲୁଗା ବଦଳାଇଲି । ଅଲଗା ବାଳରେ ତେଲ ହାତ ମାରି ଖଣ୍ଡିଏ ପାନଆଁରେ ସଜାଡ଼ି ଦେଲି । ତରତର ହୋଇ ଝିମ ବାବୁଙ୍କ ଘର ଅଡ଼େ ଗଲିଲି ।

ଭାବିଲି, ସେ ଯଦି ଘରବନ୍ଧା କଥା ଉଠାନ୍ତି, ଆଉ ହନା କେତେ ସମୟ ଦେବାକୁ ଗୁହାରି କରିବି । ସେ ମନାକଲେ, ତା'ଙ୍କ ବୋଉଙ୍କ ଆଗରେ କହିବି, ତାଙ୍କ ସ୍ତ୍ରୀଙ୍କର ଗୋଡ଼ ଧରିବି । ସମସ୍ତେ ଯଦି ହଗଣ କରି କହିବେ, ଘରଛାଡ଼ି ଗଲି ଯା, ତେବେ ଉପାୟ କଅଣ ?

ପୁଣି ଝିମ ବାବୁଙ୍କ ପାଖକୁ ଯିବି । ନେହୁରା ହୋଇ କହିବି । ଗୋଡ଼ ଧରିବି । ସେ ମୋ ହାତ ଧରି ଉଠାଇବେ । ହସି ହସି କହିବେ, ହଉ— ।

ଯେଉଁ ଅନାଗତ ଦୃଶ୍ୟ ମୋ ମନକୁ ଆସିଲା ସେଥିରେ ମୋ ଗୁଡ଼ ଥରଥର ହୋଇ କମ୍ପିଲା । ପାଦ ଅବାଟରେ ପଡ଼ିଲା ।

ଝିମବାବୁ ନ ଥିଲେ । ତାଙ୍କ ବୋଉ ପିଣ୍ଡାରେ ବସି ଆଖିରେ ଚଷମା ଦେଇ ବହି ପଢୁଥିଲେ । ମତେ ଦେଖି ବହି ବନ୍ଦକରି ମୁହଁ ଟେକିଲେ । ହସ ହସ ହୋଇ ପଚାରିଲେ, ତୋର ତ କାହିଁକି ଦେଖା ଦର୍ଶନ ନାହିଁ ଲୋ ତୁଳସି, ଗାଁରେ ଅଛୁଟି ?

ଲାଜ ଲାଜ ହୋଇ କହିଲି, ହଁ ମା, ଗାଁରେ ଅଛି । ଦୁଃଖଧନ୍ଦା କରି ବେଳ ଯାଉଛି । ଏଣେ ଆସିବାକୁ ତର ମିଳୁ ନାହିଁ ।

ଆଖିରୁ ଚଷମା କାଢ଼ି ତଳେ ଥୋଇଲେ । କଅଣ ଭାବି ଭ୍ରୂଲତା ଟେକିଲେ । କହିଲେ, କପାଳ ଲୋ ମା, କପାଳଠୁ ବଳି କେହି ବଡ଼ ନାହିଁ । ଦେଖୁନୁ, ବୁଢ଼ୀଦିନେ ପାଚିଲା ବାଳରେ ମୋର ଏ ପୋଡ଼ା କପାଳରୁ ସିନ୍ଦୂର ଲିଭିଲା ।

ତାଙ୍କ ଶୁଖିଲା ଆଖିରେ ଲୁହ ଛଳ ଛଳ ହେଲା । କହିଲେ, କିଏ ଜାଣିଥିଲା, ରୋଗ ନାହିଁ ବୈରାଗ ନାହିଁ, ଶୂନ୍ୟରୁ କିଏ ସତେକି ଡାକିଲା, ଆଖି ପିଛୁଡ଼ାକେ ଢଳି ପଡ଼ିଲେ । ଘରେ ଝିମ ଥାଏ, ମୁଁ ବସି ଗୋଡ଼ ଅଉଁସୁଥାଏଁ —। ରାତି ଅଧ, କହିଲେ, ଗୁଡ଼ କଅଣ ହେଉଛି, ଝିମକୁ ଡାକତ । ହଦ ମଳ ମଳ ହୋଇ ଝିମ ଆସିଲା । ବାପ ପାଟିରୁ କଅଣ ସେ କଥା ପଦେ ଶୁଣି ପାରିଲା ? ସେ ମୂର୍ଚ୍ଛା ହୋଇଗଲେ । ବଇଦର ଔଷଦ ପାଣି ପାଟିରେ ବାଜ ନାହିଁ । ଆଲୋ ତୁଳସି,

ମଣିଷ ଜୀବନ ପାଣିଫୋଟକା, କେତେବେଳେ କାଳ ଫୁଙ୍କିଦବ, କେହି ଜାଣି ପାରନ୍ତି ନାହିଁ ।

ତାଙ୍କର କଥା ଶୁଣି ମୋର ମୁଣ୍ଡ ବୁଲିଗଲା । ମେଘଘୋଡ଼ା ଆଖି ଆଗରେ ଗ୍ଡଲ ପର ଛବିଟିଏ ଉଭାହେଲା । ସୁର ! ସେ ନିର୍ଦ୍ଦୋଷ ? ମଣିଷ ଜୀବନ ତ ପାଣି ଫୋଟକା, କେତେବେଳେ କାଳ ଫୁଙ୍କିଦବ କେହି ଜାଣି ପାରନ୍ତି ନାହିଁ !

ବୁଢ଼ୀ କହିଲେ, କେତେ ଜ୍ୟୋତିଷ, କେତେ ପଣ୍ଡିତ କୋଡ଼ୀ ସାଧି କହିଥିଲେ, ମୁଣ୍ଡର ସିନ୍ଦୂର ଲିଭିବ ନାହିଁ, ଅହିଅ ରାଣୀ ହେବୁ । କାହାର କଥା ରହିଲା ନାହିଁ । ଜନମ ମରଣ ବରଷା, କହି ନ ପାରେ ପୁରୁଷା ।

ଧୀରେ ଧୀରେ ଯାଇ ତାଙ୍କର ପାଖରେ ପିଣ୍ଡା ଉପରେ ବସିଲି । ଆଖିରୁ ଲୁହ ପୋଛି ମୋ ଆଡ଼କୁ ଚାହିଁ କହିଲେ, ତୋର ଏମିତି କଅଣ ହୋଇଛି କି ବାଇ ଦାହିଗଞ୍ଜ ହେଉଛୁ ? କାଲି ପରି ଲାଗୁଛି । ମୋ ଆଗରେ ଲଙ୍ଗଳା ହୋଇ ଏ ଦୁଆରେ ଖେଳୁଥିଲୁ । ଦିନ କେଇଟା ପାଇଁ ବସା ବାନ୍ଧିଥିଲୁ । ବସା ଝଡ଼ ପଡ଼ୁଛି । ମନରେ ଦୁଃଖ କଷ୍ଟ ହେବ । କେତେ ଦିନ ? ଦୁଃଖ କଷ୍ଟକୁ ଆଖି ଲୁହରେ ଧୋଇ ଦେଇ ପୁଣି ନୂଆ ଘର କର ଲୋ ତୁଳସି ! ଲୋକେ ବାର କଥା କହିବେ । କେହି ଆସି ତୋର ପିଲାଟିର ଦୋକଲା ପାଟିରେ ଆଧାର ଦେବେ ନାହିଁ, ତୋ ଆଖିର ଲୁହ ପୋଛିବେ ନାହିଁ ।

ବୁଢ଼ୀ କହିବାକୁ ଲାଗିଲେ, ତୋ ମନରେ ଦୁଃଖ ଦେବା କି ତୋତେ କନ୍ଦାଇବାକୁ ମୁଁ ଏ କଥା କହୁ ନାହିଁ । ତୁଳସି, ତୁ ଆସି ମୋ ଆଗରେ ଠିଆହେଲୁ । ତୋର ଅବେକା ରୂପ, ଶୁଖିଲା ମୁହଁ ଦେଖି ଗ୍ଡଛ ଭିତରଟା ଜଳିଲା, ନିଆଁ ତେଜି ଉଠିଲା । ଆଉ ଦିନେ ତୋତେ ଦେଖିଥିଲି, ମୁଣ୍ଡରେ ତୋର ସିନ୍ଦୂର ଟୋପା ଦାଉ ଦାଉ ଦିଶୁଥିଲା । ଲକ୍ଷ୍ମୀ କି ପାର୍ବତୀ ଆସି ମୋ ଆଗରେ ଠିଆହେଲା ପରି ଲାଗିଲା । ପେଟ ପୂରି ଉଠିଲା ।

କାହା ସଙ୍ଗେ ଏତେ ଗପୁଛ ବୋଉ ? ଏମିତି ଲକ୍ଷ୍ମୀ ସରସ୍ୱତୀ କିଏ ଆସି ତମ ଆଗରେ ଠିଆ ହେଉଛି ବା !

ମୁହଁରୁ ହାତ କାଢ଼ିଲି । ବୁଢ଼ୀଙ୍କ ପଛରେ ହିମ ବାବୁଙ୍କର ସ୍ତ୍ରୀ ଠିଆ ହୋଇଛନ୍ତି । ତାଙ୍କ ମୁହଁରୁ ଯେପରି ରାଗ, ଘୃଣା ଫୁଟି ଉଠୁଛି ।

ବୁଢ଼ୀ ପଛକୁ ଚାହିଁ ଧୀରେ ଧୀରେ କହିଲେ, ଏଇ ତୁଳସୀ କଥା କହୁଥିଲି ।

ଟିକିଏ ଭାବିଲା ପରି ହୋଇ କଇଁଛ ବେକକୁ ଲମ୍ବାଇ ଦେଇ କହିଲେ, ହଁ, ମୁଁ ଶୁଣିଛି । ଏଇ ସେ ତୁଳସୀ, ଯା ନାମରେ—

ବୁଢ଼ୀ ମୁହଁ ବୁଲାଇ, ଆଖି ତରାଟି କହିଲେ, ତୁନି ହ ବୋହୂ, ଲୋକେ ପଳ ମାଛରେ ପୋକ ପକାଇ କଥା କହନ୍ତି । ତୁଳସୀକୁ ତେମେ ଚିହ୍ନ ନାହିଁ । ଦେଖିଲ,

କ ରୂପ ତାର କଅଣ ହେଲାଣି । ଗରିବ ଘରେ ଜନ୍ମ ହୋଇଛି, ହେଲେ ବଡ଼ଘର ଝିଅ ବୋହୂଙ୍କ ପରି ସେ ଅଲାଜୁକୀ ଫରଫରୀ ନୁହେ । ଗାଁ ଯାକରେ ଝିଅଟାଏ ସେ ଥିଲା, ଠାକୁରେ ତା କପାଳ ଫଟାଇଲେ ବୋଲି ଆଜି ତମ ଦୁଆରେ ସେ ବସିଛି । ବୋହୂ ଗୋ, ଦଇବ ଯାହାକୁ ସାହା ନୁହେଁ, ଆଉ କିଏ ତାକୁ ସାହା ହେବ ? ଲୋକେ ବାରକଥା କହିବେ ତ ।

ତମ ତମ ହୋଇ ବୋହୂ ସଞ୍ଜବତୀ ହାତରେ ଧରି ଆଉ ଘରକୁ ଚାଲିଗଲେ ।

ନାକ ଟେକି ଘୃଣାରେ ବୁଢ଼ୀ କହିବାକୁ ଲାଗିଲେ, ଦେଖିଲୁ ତୁଳସୀ, ବୋହୂଙ୍କର ଢଙ୍ଗ, ତାଙ୍କର କଥା । କେଡ଼େ ଅଲଅଲ କରି ପୁଅକୁ ବଢ଼ାଇଥିଲି । ବୋହୂ ଆଣିବ ବୋଲି ଅଗ୍ରହରେ ଡୋଲିର କବାଟ ଖୋଲି ଯେମିତି ଚାହିଁ-ଦେଇଛି, ମୂର୍ଚ୍ଛା ହୋଇ ପଡ଼ିଗଲି । ମୋର ଟିମ କପାଳକୁ ଏମିତି ବୋହୂ । ଧନ ଦରବ ଗହଣା ଗଣ୍ଠିରେ କ'ଣ ଘର ପୂରେ କଲେ ? ସେଇ ଯୋଗୁଁ ସତ୍ୟାନାଶୀ ଧାଇ ଗୋକୁଳମା, ସିଆଡ଼ୁ ପାଞ୍ଚଟଙ୍କା ନେଇ ମତେ ପରା ଭୁଲାଇ ଦେଲା । ମିଛ ସତ କରି ଯାଙ୍କର ରୂପ ଗୁଣ କେତେ ଗପିଥିଲା । ଛତରଖାଇ, ଯଦି ହାତ୍ରୁଡ଼େ ପଡ଼ନ୍ତା !

ଅପ୍ରିୟ କଥା ଶୁଣିବାକୁ ଭଲ ଲାଗିଲା ନାହିଁ । କହିଲି, କାହିଁକି, ନୂଆବୋଉ କଅଣ ନାକରା କି ? ମୋ ଆଖିକୁ ତ ସେ ଭାରି ଭଲ ଦିଶନ୍ତି ।

କହିଲେ, ଯାହା ଆଖିକି ଭଲ ଦିଶିଲେ ସବୁ ଭଲ ସେ ତ ଦିନେ ଶାନ୍ତିରେ ବେଳ କାଟିଲା ନାହିଁ । କଥା କଥାକେ ଝଗଡ଼ା, ତର୍କ, ବିତର୍କ, ଫୋପଡ଼ା କଚଡ଼ା, ରୁଷାରୁଷି । ଏମିତି କୁକୁର ମାଙ୍କଡ଼ ପରି କପରି ସଂସାର କରିବେ ? କାଲି ମୁଁ ଆଖି ବୁଜିଲେ କଅଣ ହେବ ମୁଁ ଭାବି ପାରୁ ନାହିଁ । ଯାହା ତାଙ୍କ କପାଳେ ଥିବ ।

ସଞ୍ଜର ଅନ୍ଧାର ଧୀରେ ଧୀରେ କମି ଆସିଲା । ଟିମ ଭାଇ କାହିଁକି ଡକାଇଥିଲେ ଜାଣି ପାରିଲି ନାହିଁ । ପିଲାଟା ତେଣେ ଉଠି ମତେ ନ ଦେଖି କାନ୍ଦୁଥିବ । ତଥାପି ଟିମ ଭାଇଙ୍କଠାରୁ ଶେଷ କଥାଟି ନ ଶୁଣି ଯିବାକୁ ଇଚ୍ଛା ହେଲା ନାହିଁ ।

ପଚାରିଲି, ଟିମଭାଇ କାହାନ୍ତି କେଉଁଠି ?

କହିଲେ, ଏଇକ୍ଷଣି ତ ବୋହୂଙ୍କ ସଙ୍ଗରେ କ'ଣ ଲଗେଇଥିଲା । ଯେତେ ମନାକଲେ ମାନିଲେ ନାହିଁ । ଜଣେ କିଏ ତୁନି ହେଲେ ସିନା କଜିଆ ଭାଙ୍ଗନ୍ତା । ଲୁହା କୋଚଟିକୁ କମାର କୋଚଟ । ରାଗ ତମ୍‌ତମ୍ ହୋଇ କୁଆଡ଼କୁ ଗଲା କେଜାଣି । ତା ପାଖରେ ତୋର କଣ କାମ ଥିଲା କି ତୁଳସୀ ?

ସେ କାହିଁକି ମୋତେ ଡକାଇ ଥିଲେ ।

ଉଠିଲି । କହିଲି, ଯାଉଛି କେଉଁଠିକି, ପିଲାଟା ଉଠି କାନ୍ଦୁଥିବ, ଝିମଭାଇ ଆସିଲେ କହିଦେବ ।

ହଉ, ତୁ ଯା ।

ଆସୁଥିଲି, ଦେଖିଲି ଝିମଭାଇଙ୍କ ସ୍ତ୍ରୀ ତଳ ଖଞ୍ଜା ଚିକ୍କି ଗୁଳରେ ବସି କଅଣ କରୁଅଛନ୍ତି । ସେ ପଚାରନ୍ତୁ କି ନ ପଚାରନ୍ତୁ ଦେଖାକରି ନ ଗଲେ ଭଲ ହେବ ନାହିଁ । ଦେଉଠିକି ଯେ ତାଙ୍କ ନାମରେ ମୋ ଆଗରେ ପାଞ୍ଚପଦ ଗପିଥିବେ, ଏ କଥା ନିଶ୍ଚୟ ତାଙ୍କୁ ଜଣା । ଗଲି ।

ନୂଆ'ଉ ଭୁନ ହୋଇ ବସି ଗୁଆ ଭାଙ୍ଗୁଥିଲେ । ଟିକିଏ ଦୂରେଇ ହୋଇ ବସିଲି । ମୋତେ ଦେଖି ମୁହଁ ଭୃରୁଙ୍ଗା କରି ଫୋପାଡ଼ିଲା ପରି ପଚାରିଲେ, କୁଆଡ଼େ ଆସିଛୁ କଟଲି ?

ତେମେ ପଦ୍ମ କାହିଁକି ମତେ ଡକାଇଥିଲ, ଭାବିଲି କଅଣ କାମ ପାଇଟି ଥିବ, ଯାଏଁ ।

ହସିଲେ । କହିଲେ, ପୁଞ୍ଜା ପୁଞ୍ଜା ଘରକର ଥାଉଣୁଁ ତୋଠିଁ ମୋର କି କାମ ଲୋ ? ତୁ ଯା, ତତେ ମୁଁ ଜାଣେ ନାହିଁ କି ଚିହ୍ନେ ନାହିଁ କି ଡକାଇ ନାହିଁ । ଯିଏ ଡକାଇଛି ତା'ରି କତିକି ଯା ।

ସେ ଗୁଆ କଟା ଗୁଡ଼ି ଉଠିଲେ । ଦୁମ୍‌ଦୁମ୍ ହୋଇ ଆର ଘର ଆଡ଼େ ଚାଲିଗଲେ । ମୋ'ର ମନେ ହେଲା ସତେକି ସେ ମୋତେ ଚୋଇଟା ମାଡ଼ ଦେଇ ଚାଲିଗଲେ । ଲାଜବି ହୋଇ ମୁଁ ଧୀରେ ଧୀରେ ଉଠି ପଦାକୁ ଆସିଲି ।

ସଞ୍ଜ ଅନ୍ଧାର ଘୋଟି ଆସୁଥାଏ । ଦେଉଠିଙ୍କ ତୁଣ୍ଡରୁ ଯେଉଁ କଥା ଶୁଣିଲି ମନରେ କିପରି ଗୋଟାଏ ଅଶାନ୍ତି ଅନୁଭବ କଲି । ମନରେ ଯେଉଁ କଥା ଘାଣ୍ଟି ଚକଟି ହେଉଥିଲା, ସେଇଆ ସେ କହିଲେ । ଅନୁଭବ କଥା, ମଣିଷ ଜୀବନ ପାଣିଫୋଟକା, କାଳ କେତେବେଳେ ଛପି ଛପି ଆସି ଫୁଙ୍କିଦେଇ ଯାଏ କେହି ଜାଣିପାରେ ନାହିଁ । ହସିଲା ଖେଳିଲା ମଣିଷ ନିହମାକେ ଠେଲପଡ଼େ ।

ସୁରଙ୍କର ହତଶିରୀ ରୂପ ଆଖି ଆଗରେ ଉଭା ହେଲା । ଚଳ ଜୀବନର କେତେ ଘଟଣା ଗୋଟି ଗୋଟି ହୋଇ ମନେ ପଡ଼ିଲା । ସୁରଙ୍କ ପ୍ରତି ଯେଉଁ ବ୍ୟବହାର କରିଛି ସେଥିପାଇଁ ମନରେ ଦୁଃଖ ହେଲା । ହୁଏ ତ ସେ ନିର୍ଦ୍ଦୋଷ, ହୁଏ ତ ସେ ଭାଇ ମରଣର ଦୁଃଖରେ ଆଜି ଏପରି ହତଶ୍ରୀ ଦିଶୁଛନ୍ତି । ଲୋକଙ୍କର କଥା, ଭୁଣ୍ଡ ବାଇଦ ଶୁଣି ନିର୍ଦ୍ଦୋଷ ହୋଇ ମଧ୍ୟ ନିଜକୁ ଦୋଷୀ କରୁଛନ୍ତି । ମୋ ସନ୍ଦେହ, ମୋ ରାଗ ଆଗରେ ଭରସି କରି କିଛି କହିପାରୁ ନାହାନ୍ତି ।

ଦେଉଠିକି ଉପଦେଶ ଦେଲେ, ନୂଆ ବସା ବାନ୍ଧିବାକୁ, ନୂଆ ସଂସାର କରିବାକୁ । ସୁର ଥିବାଯାଏ ସଂସାର ମୋର ଭାଙ୍ଗି ନାହିଁ । ଘର ଅଛି, ଯେଉଁ ଘରେ ସୁଖ ଆନନ୍ଦରେ ବେଳ କାଟୁଥିଲି । ସେଇଠି, ମୋର ଆଗରେ ସୁର

ଅତଯାତ ହେଲେ ହୁଏ ତ ସବୁ ଦୁଃଖ ଭୁଲିଯିବ । ସୁରଙ୍କ ଭିତରେ ମୋର ସ୍ୱାମୀଙ୍କର ରୂପ ଦେଖି ପାରିବ । ତାଙ୍କର ତୁଣ୍ଡରେ ସ୍ୱାମୀଙ୍କର କଥା ଶୁଣି ପାରିବ । ଏକା ଧାତୁରେ ଏକା ମାଟିରେ ଦୁଇଟି ରୂପ ଗଢ଼ା । ଗୋଟିଏ ରୂପ ଭାଙ୍ଗି ଯାଇଛି, ଆରଟି ତ ତାର ଗୁଣ୍ଡ ! ସୁରଙ୍କ ପାଖରେ ମନୁଆଁଙ୍କୁ ଦେଖିଲେ କେଡ଼େ ଗର୍ବ କେଡ଼େ ଆନନ୍ଦ ଆସିବ ମନରେ ।

ସୁରଙ୍କ ହାତରେ ସରଗର ଚୁନ୍ଦ ଦେବ କହିଥିଲି । ଛବିର ହାତଟି ଧରି ଯଦି ସେ ମୋ ଆଗରେ ଚାଲନ୍ତି ! ଛବି, ଗରବର ଝିଅ ! ତା ଭାଇ ଅଚଙ୍ଗ ହେବେ ନାହିଁ । ସୁର ସୁନ୍ଦର, ସ୍ୱାସ୍ଥ୍ୟବାନ୍ । ଆଜି ସେ ଧଡ଼ିଆ ଧେଡ଼ଙ୍କା ପାଗଳ ପରି ହୋଇଛନ୍ତି, ହୁଏତ ମୋରିପାଇଁ, ମୋ ଦୁଃଖରେ । ମୋ ଆନନ୍ଦ ଦେଖିଲେ ମୋଠାରୁ ସାହସ ଉତ୍ସାହ ପାଇଲେ ପୁଣି ସେ ବଳିଷ୍ଠ ସୁନ୍ଦର ହେବେ । ସେ ମୋ'ର ଅବାଧ ହେବେ ? ନା ନା, ସେ ଅବାଧ ହେବେ ନାହିଁ, କେବେ ହୋଇ ନାହାନ୍ତି ।

ବାରଗୃହଜଳିଆ ଚନ୍ଦ୍ରା ଫଳିଲା ପରି ଲାଗିଲା । ଆମର ସେଇ ଘର, ସେଇ ବାରି, ତାରି ଭିତରେ ସୁର ଓ ଛବି ଆତଯାତ ହେଉଛନ୍ତି । ହାତ ଧରାଧରି ହୋଇ ଖେଳୁଛନ୍ତି, ହସୁଛନ୍ତି, କିଏ କେତେବେଳେ ଆସି ମନୁଆଁଙ୍କୁ କାଖ କରି ନେଉଛି । ମୁହଁରେ ବୋକ ଦେଇ ଗୁଡିରେ ଯାକି ଧରୁଛି ।

କାନରେ ବାଜୁଛି, ମନୁଆଁ ମୋ ପୁଅ ।
ହଇରେ ବାବୁ, ତୁ କାହା ପୁଅ ?
ତୋ ପୁଅ ଖୁଲ୍ଲା ।
ଚୁପ୍ ସତ କହ, କଦଳୀ ଦେବି, ଖଜା ଦେବି ।
ଦାଦି, ମୁଁ ତୋ ପୁଅ ।

ଛବି କୋଳରୁ ଡେଇଁ ପଡ଼ୁଛି ସୁର କୋଳକୁ । ଅଭିମାନରେ ମୁହଁ ଶୁଖାଇଛି ଛବି । ଅଲଗା ମୁକୁଳା ବାଳ ଦୋହଲାଇ ମନ ମାରି କଦଳୀ ଗଛକୁ ଆଉଜି ଠିଆ ହୋଇଛି ।

ମୁଁ ଅଛି କି ମୁଁ ନାହିଁ ଭୁଲିଯିବ, ସୁର ଛବିଙ୍କର ଖେଳରେ ନିଜକୁ ହଜାଇ ଦେବ । ସୁରଙ୍କଠାରେ ଅନୁଭବ କରିବ ତାଙ୍କର ଉପସ୍ଥିତି, ଛବିର ମନ ଭିତରେ ପଶିବ ମୁଁ । ମାଟିର ପିଣ୍ଡଟା ଆତଯାତ ହେଉଥିବ । ଏଇ ତୁଳସୀର ଦେହଟା, ଅସ୍ମାଟି ଖେଳି ବୁଲୁଥିବ ଛବି ଭିତରେ । ତା ଆଖିରୁ ଲୁହ ପୋଛି ଦେବ । କହିବ, ଦୁଃଖ କାହିଁକି ଛବି, ଏଇ ଦେଖ୍, ଉପରେ ସୁନାଥାଳି ପରି ଚନ୍ଦ୍ରନେଇଁ ଜହ୍ନ ହସୁଛି । ଦେଖୁଛୁ ? ସେମିତି, ଅବିକଳ ସେମିତି ଗୋଟିଏ ମନୁଆଁ ତୋରି ଏଇ କୋଳରେ ଜନ୍ମ ହେବ । ସୁରଆଙ୍କୁ ଛୁଆଁଇ ଦେବୁ ନାହିଁ ।

ଓଠ ଭରି ହସ ଖେଳିଯିବ । ସେଇଠି, ସେଇ ଜହ୍ନ ରାତିରେ, ମନ ହଜା ସ୍ନିଗ୍ଧତା ଭିତରେ, କଦଳୀ ଗଛର ଛାଇତଳେ, ଆଗ୍ରହରେ, ଉତ୍ତେଜନାରେ, ଛବିକୁ କୋଳ କରିବି । ତାରି ଦେହରେ ମୋ ଉତ୍ତଳା ଦେହ ମିଶାଇ ରଙ୍ଗିଲା ଓଠରେ ଚୋକ ଦେବି । ଅନୁଭବ କରିବି ତାଙ୍କର ପରଶ । ଏକା ମାଟି ଏକା ଛାଞ୍ଚରେ ଗଢ଼ା ସୁରି, ଯାହାର ଆନନ୍ଦ ଉତ୍ତେଜନାର ଛାପ ଛବିର ପ୍ରତି ଅଙ୍ଗରେ ମିଶିଛି ।

୧୭

ବାରଗୃହଳିଆ ଚିନ୍ତା ମୋତେ ଆନନ୍ଦ ଦେଉଥିଲା । ଅଜଣା ଅଶୁଣା ଭବିଷ୍ୟତ୍ । ତାରି ଉହାଡ଼ରେ ଅସମ୍ଭବର କଳାଭୂତ ଆଖିମିଟିକା ମାରି ଅବାଟକୁ ଆଙ୍ଗୁଠି ଦେଖାଉଛି । ତା'ରି ଆଡ଼କୁ ମନ ଧାଇଁ ଯାଉଥାଏ । ପୁଲକରେ ଦେହ ଶିହରି ଉଠୁଥାଏ । ଦରମଲା ଯୌବନ, ମଳୟ ଛୁଆଁ ଟେଛଲତା ପରି ପଲ୍ଲବ ଉଠିବାକୁ, ଡେଇଁ ଉଠିବାକୁ ମୁଣ୍ଡ ଟେକୁଥାଏ, ପହିଲି ସଞ୍ଜର ଝାପ୍‌ସା ଅନ୍ଧାର । ଉଲ୍ଲୁସା ଗୋଡ଼ ବାଟ ଛାଡ଼ି ଅବାଟରେ ପଡ଼ୁଥାଏ । ବୁଝି ପାରିଲି ନାହିଁ, ସୁରି ଛବିଙ୍କର ମିଳନ, ଆନନ୍ଦର ଭାବନାରେ ମନରେ ମୋର ଉତ୍ତେଜନା ଆସିଲା କାହିଁକି ?

ମନରୁ ସେ ସବୁ ଭାବନାକୁ ତଡ଼ିଦେଲି । ଅନ୍ୟ ଚିନ୍ତା ଆଣିଲି । ଟିମ ଭାଇ ଓ ତାଙ୍କର ସ୍ତ୍ରୀ । କାହାରି ସଙ୍ଗେ କାହାର ମନ ମିଳେ ନାହିଁ । ଅଶାନ୍ତିରେ ବେଳ କଟୁଛି । ବଡ଼ଲୋକ ଘରର ପୁଅ ବୋହୂ ଅସୁବିଧା ଅଭାବ ଜାଣନ୍ତି ନାହିଁ । ତଥାପି, ତାଙ୍କ ଜୀବନରେ ଆନନ୍ଦ ନାହିଁ । ଧନ ଦଉଲତ, ଲୋକ ପରିଚର ମଣିଷକୁ ଆନନ୍ଦ ଦେଇ ପାରେ ନାହିଁ । ତେବେ, ଆନନ୍ଦ ଦିଏ କଅଣ ?

ଗୃହେଷ୍ଟି ବର୍ଷର ଘରକରଣା । ଦିନେ କେବେ ଦୁଃଖ ଅଶାନ୍ତି ଜାଣେ ନାହିଁ । ଅଭାବ ଅସୁବିଧା, ଉପାସ ଭୋକରେ ଦିନ କଟିଛି । ଦୁଆର ମୁହଁରେ ବାଟ ଚାହିଁ ବସିଥାଏଁ । କେତେବେଳେ ସେମାନେ କାମରୁ ଫେରିବେ । ଡେରି କଲେ ମନ ଦକ ଦକ ହୁଏ । ଦୁଇ ଭାଇ ସାଙ୍ଗ ହୋଇ ନୋହିଲେ ଆଗପଛ ହୋଇ ଆସି ଆଗରେ ଠିଆ ହୋଇଯାନ୍ତି । ଭୋକିଲା ପେଟ ପୂରି ଉଠେ । ତାଙ୍କର ଝାଳଣିଝାଉଁଳା ଶୁଖିଲା ମୁହଁକୁ ଦେଖି ଛାତି ଧାଣ୍ଡି ଚକଟି ହୁଏ । ମନ ହୁଏ, ଲୁଗା କାନିରେ ତାଙ୍କ ଝାଳବୁହା ମୁହଁକୁ ପୋଛି ଦେବି । ଛି, ସୁରିଠା ଅଛନ୍ତି, ଏତେ ବଡ଼ ଦିଅର, କଣ ଭାବିବେ ?

ନଆଉ, ଦେଖିଲ, କେତେ କେତେ ପିଜୁଳି । ତମ ଗାଁରେ ଏମିତି ପିଜୁଳି ମିଳେ ? ଆର ଗାଁର ଭଗି ବିଶ୍ୱାଳ ନୁହନ୍ତି, ତାଙ୍କର ତଳ ବାଡ଼ିର ଗଛ ।

ତାଙ୍କ ଗୃହର ଟୋକାକୁ ଦ ପଇସା ଲାଞ୍ଚ ଦେଇଛନ୍ତି । ନଅ, ତମ ପଇସା, ଆଉ ପିଜୁଳି ।

ଦିନ ସାରା ପରିଶ୍ରମର ମଜୁରି, ପଇସା ଗୃହଣା, ପିଜୁଳି ପୁଞ୍ଜାଏ, ମୋହ ଅଣ୍ଟିରେ ଅଜାଡ଼ି ଦିଅନ୍ତି । ତାଙ୍କ ଭାଇ ମଧ୍ୟ ପଇସା କାଢ଼ି ମୋ ହାତରେ ଦିଅନ୍ତି । ମନରେ ଗର୍ବ ଆସେ । ଗେରସ୍ତ ଘରଙ୍କ ଧନସାରା ଖଟଣିର ମୂଲ, ରକ୍ତ ପାଣି କରି ପଇସା ଦେଇ ଅଣୁଛନ୍ତି । ସେ ପଇସା ମୋର ।

ନୂଆଉ, ତେମେ ଗୋଟିଏ ପିଜୁଳି ଆଗ ଖାଇଲ, ଖା ମୋ ରାଣ । ଆମର ସେଇ ଝିକି ପୋଖରୀ କୂଳରେ ଯାହା ମଞ୍ଜି ନିଜ ହାତରେ ତେମେ ରୋପିବ । ଆମର ପିଜୁଳି ଫଳିବ ।

ଅରେ, ସୁରିଆଟା ଭୋକରେ ଛଟପଟ ହେଉଛି । ତା ତଣ୍ଟି ଅଠା ଅଠା ହେଉଛି । ପିଲା ଲୋକ, କହିଲି, ଗୋଟାଏ ପିଜୁଳି ଖାଉରେ ସୁରିଆ । ମାନିଲା ନାହିଁ । ଏଡ଼େ ଅବାଧ । କହୁଛି, ନୂଆଉ ନ ଦେଲେ କେମିତି ଖାଇବ ? ତେମେ କଣ ହାତରେ ଗୁଡ଼ ବୋଳିଥାଅ ତୁଳସୀ ?

ମଣିଷ ଜୀବନ ପାଣି ଫୋଟକା । କାଲ କେତେବେଳେ ଫୁଙ୍କିଦେଇ ଯାଏ, କେହି ଜାଣି ପାରନ୍ତି ନାହିଁ । ସୁର ବା ଜାଣିବେ କପରି ? ମୁଁ ହାତରେ ବାଢ଼ି ନ ଦେଲେ ସୁର ତୋରାଣି ଢୋକେ ସୁଦ୍ଧା ପିଇବେ ନାହିଁ । ଆଉ କେହି ଦେଲେ କି ନିଜେ ହାତରେ ବାଢ଼ି ଖାଇଲେ ଖିନ୍ ଖିନ୍ ଅଶାନ୍ତି, କି ରୂପ ହେଲାଣି !

ଆହା !

ଅଜାଣତରେ ଆଖିରେ ଲୁହ ଭରିଗଲା ।

ଚେମା ଭାଇର ପାଟି ଶୁଣି ଭାବନା ଭାଙ୍ଗିଗଲା । ତାଙ୍କର ଘର ପାଖରେ ଗୋଡ଼ ଅଟକି ରହିଲା । ଆଗ୍ରହ ହେଲା, କାନ ପାରିବାକୁ । ବଡ଼ ପାଟି କରି ସେ କହୁଛନ୍ତି, ଅରେ ଏ ବୁଢ଼ୀଟା ଜାଲାରେ ମୁଁ ଘରେ ପଶି ପାରିବ ନାହିଁ । ଆଉ କିଛି କଥାବାର୍ତ୍ତା ନାହିଁ, ଖାଲି ବାହା, ବତାସ, କନଅାଁ ! ଅଲୋ ଆଈ ହେ, ତୋ ଗୋଡ଼ତଳେ ପଡ଼ୁଛି, ମତେ ଆଉ ହକ୍‌ଦାର କରି ମାର ନା, ଦେଖ୍ ମୋର ଏଇ କସରା ବଳଦର ଗୋଜା ଗୋଜା ଶିଙ୍ଗକୁ । ବେଶି ବକବୁ ତ ତୋ ପେଟ ଭୁଷେଇ ଦେବ ।

କବାଟ ମେଲା ଥିଲା । ଭିତରକୁ ଗୃହିଁଲି । ପିଣ୍ଡା ଉପରେ ନାଲଟେଣ ଜଳୁଛି । ଦୁଆର ବନ୍ଧ ପାଖରେ ବସିଛନ୍ତି ଚେମାଭାଇଙ୍କର ଆଈ । ଦୁଆର ମଝିରେ ସେ ବଳଦ ମୋହୁଛନ୍ତି ।

ଅରେ ଚେମା, ବୁଢ଼ୀ ହନେ କଅଣ ମୋର ବଳ ବୟସ ଅସୁଛି, ତୋହ ସେବା, ତୋର ପାଇଁ ଅନଭୋଗ କରିବ ? ବାପ ଖାଇଲୁ, ମା ଖାଇଲୁ, ମତେ ହେଲେ ଖାଇ ଦିଅନ୍ତୁ ରେ ! ସତୁରୀ ବର୍ଷ ବୟସରେ ମୁଁ ଆଉ ଘାଣ୍ଟି ଚକଟି

ହୁଅନ୍ତ ନାହିଁ । ବୋହୂଟିଏ ଘରକୁ ଆସନ୍ତା, ତା କାମ ତା'ସଂସାର ସେ ବୁଝନ୍ତା, କେତେ଼ ଭଲ ହୁଅନ୍ତା ।

ସେ ବୋହୂଠାକୁ ଯଦି ଠାକୁ କରି ଗିଳି ଦିଏ ? ମଣିଷ ଖାଇବା ମୋର ପ୍ରକୃତି ।

ସବୁବେଳେ ତୋର ଥଟ୍ଟା କଥା ମତେ ଭଲ ଲାଗେ ନାହିଁ । ମୋ ସାନକୁହା ମାନ ।

ଚେମା ଭାଇ କଅଣ ଭାବି କହିଲା, ନାହିଁ ଲୋ, ଥଟ୍ଟା କରୁନାହିଁ । ଲୋକେ ଝିଅ ଦେବାକୁ ରାଜି ହେଉ ନାହାନ୍ତି । ମୁଁ ସିନା ତୋ ଆଖିରେ ପିଲା, ସଂସାର ଆଖିରେ ମୁଁ ବୁଢ଼ାଠା । ତେବେ ତୁ ଦୁଃଖ କର ନା ମା, ଖୋଜୁଛି, ଖୋଜୁଛି, ପାଇଲେ ଏକାଥରେ ଗାଈ ବାଛୁରୀ ଆଣି ତୋ ଆଗରେ ବାନ୍ଧି ଦେବି । ଯଦି ନ ପାଏଁ ଭଲ ଶାଢ଼ୀ ଖଣ୍ଡେ ତୋ ପାଇଁ କିଣି ଆଣିବି, ମୁଁ ବୁଢ଼ାକୁ ତୁ ବୁଢ଼ୀ ।

ଗାଈ ଅଣ କି ମଇଁଷି ଅଣ, ଆଜିଠୁଁ ମୁଁ ଆଉ ତୋ ଚୁଲି ମୁହଁକୁ ଯିବି ନାହିଁ । ଉପାସ ରହିଲେ ବଳେ ବୁଝିବୁ । ଯାଉଛି ମଶିଣା ପାରି ଲମ୍ବହୋଇ ଶୋଇ ପଡ଼ିବି ।

ହଁ, ଶୁଅ ଯା, ଗମ୍ଭୀର ଘରକୁ ଯା, ସେଇଠୁ ମୃଷାମାଟି ଅଣବଣ, ବଟଲଇ ମଇଲା ସଣବଣ, ତୋ ବାପ ସେଇଥିପାଇଁ ତୋ ନାମ ଦେଇଥିଲେ କେମାଦେଈ ।

ସତକୁ ସତ ବୁଢ଼ୀ କାନ୍ଥକୁ ଡେରି ହୋଇଥିବା ମଶିଣାଟି ଧରି ଉଠିଲେ । ଅଈ ନାତିଙ୍କର ରହସ୍ୟ ଦେଖି ମନରେ ମୋର ହସର ଜୁଆର ଉଠୁଥାଏ । ନିଜ କଥା ଭୁଲି, ଅଗ୍ରହରେ ଚେମା ଭାଇଙ୍କର ଖଞ୍ଜା ଭିତରକୁ ପଶିଗଲି । ଡାକିଲି, କେମି ଅଈ ।

କେମି ଅଈଙ୍କୁ ବେଶୀ ଦୂରରୁ ଭଲ ଦିଶେ ନାହିଁ । ପାଟି ବାରି ପାରିଲେ ନାହିଁ । ପଚାରିଲେ କିଏ ଲୋ ତୁ ?

ମୁଁ ଉତ୍ତର ଦେବା ଆଗରୁ ଚେମାଇ ବଲଦମୁହାଁ ଗୁଡ଼ ଉଠି ଠିଆହେଲେ । ବଡ଼ ପାଟି କରି କହିଲେ, ଇଲୋ ଅଈ, ଚହ୍ନି ପାରୁନୁ ? ସେଇ, ସେଇ ଲୋ, କନଅଁ ମଁ, ଯାହା କଥା କହୁଥିଲି । କଟଲା ତୁଳସି, ତୋ ବାଛୁରୀ କାହିଁ ?

ଜବାବ ଦେଲି ନାହିଁ । ଅଈ କହିଲେ, ସଞ୍ଜବୁଡ଼ଠାରେ ତୁ କୁଆଡ଼େ ଲୋ ପୋଡ଼ାମୁହିଁ ? ହଉ, ବସ୍ ବସ୍ ।

ଧରିଥିବା ସପ ଖଣ୍ଡି ତଳେ ବିଛାଇ ଦେଲେ ।

କହିଲି, ଏଇବାଟେ ଯାଉଥିଲି, ତମ ଅଈ ନାତିଙ୍କ ରହସ୍ୟ ଦେଖିବାକୁ ଆସିଲି ।

ଚେମାଇ କହିଲେ, ବେଶ୍, ଆସିଲୁ ତ ଭଲ କଲୁ । ଏବେ କଳଅ ଭାଙ୍ଗିବାକୁ ବୋଷ୍ଟମର ଘରେ ପଶିଲୁ ତୁଳସୀ, ମା ମଟର ଉପାସ ରଖିବାକୁ ଚାହୁଁଛି । ଯା ଯା, ସେଠି ପୁଣି ଠିଆ ହେଲୁ କାହିଁକି ?

ଜେମି ଅଈ କହିଲେ, ଯାଉନ୍ନ୍ଲୋ ପୋଡ଼ାମୁହିଁ, ମଟର ରଖିଥା ଏକା, ଅରେ ମୋ ବଡ଼ବଡ଼ୁଅ ଘରେ ପଶିଲୁ ତ ଆଜ ତତେ ଏ ଘରୁ ଯିବାକୁ ହେବ ନାହିଁ ।

ହାତ ଧୋଇ ଚେମାଇ କହିଲେ, ତା ହେଲେ ତୁ ମଟର ଉପାସ ରଖିବୁ ?

ଅଈ କହିଲେ, ନଇଲେ କଅଣ ପର ଘରର ଗଲା ଅଇଲା ଝିଅ ବୋହୂଙ୍କୁ ବାଟରୁ ଧରିଆଣି କାମ କରେଇବୁ ରେ ଖଣ୍ଟିଅ ? ସେମିତି ଯଦି ସାହସ ଅଛି, ହାତ ଧରି ବସି ପଡ଼ୁନୁ । ମୋର ତ ରାଜ । ତୋର କଅଣ ଅରାଜ ହେବ ଲୋ ତୁଳସି, ତୋ ଚୁଲିପଶା ଦଅର ଚୋକାଟା ମୋ ଚେମାଠୁ କେଉଁ ଗୁଣରେ ବଳି ପଡ଼ିବ ।

କଥାଟା ଦେହରେ ଲାଗିଲା । ଧୈର୍ଯ୍ୟ ଧରି କହିଲି, ଭାତ ମୁଠାଏ ଫୁଟାଇବା ପାଇଁ ଏତେ କଥା କାହିଁକି ପଡ଼ୁଛ ଅଈ । ତେମେ ଏଇଠି ବସିଥା, ଦେଖ ନିହମାକେ ସବୁ କରି ଦେଉଛି ।

ଚେମା ଭାଇ ମଟର ବଲାଇ ଦେବାକୁ ଆସିଲା । ଅଧବାଟରୁ ଫେରିଗଲା ବେଳେ କହିଲା, ଏଥର ତୁ ଯା । ଦେଖିଲୁ ତ, ପିଲାଦିନର ଖେଳଘର ଆଜି ସତ ହୋଇଗଲା, ହେଉପଛେ ଘଡ଼ିକ ପାଇଁ ।

ପାଟିରୁ ବାହାରି ଗଲା, ସଂସାରଟା ଗୋଟାଏ ବଡ଼ ଖେଳଘର ନୁହେଁ କି ଚେମାଇ ?

ଚେମାଇ କହିଲା, ଖେଳ ଘର କି ଖଳ ଘର ? ମନ ନେଇ ଫଳ ।

ମନୁଆଁର କାନ୍ଦଣା ଯେପରି ମୋର କାନରେ ବାଜିଲା । ପର ଘରେ ମୁଠାଏ ଭାତ ଫୁଟାଇ ଦେଲି । କୋଳଥ ଡାଲି ଟିକେ, ଜହ୍ନି ରାଇ, ବାଇଗଣ ଭରତା । ଅଈ ନାତିଙ୍କର କଳଅ ଭୁଟିଲା । ହେଲେ, ରାତି ପହରେ ହେଲା । ତର ତର ହୋଇ ଘରକୁ ବାହୁଡ଼ିଲି ।

ମନୁଆଁ ରହାଧରି କାନ୍ଦୁଥିଲା । ତାକୁ କୋଳକୁ ନେଇ ପିଣ୍ଡାରେ ବସିଲି । ବୋଉ ଡିବିରି ଧରି ବୋଷ୍ଟଘରକୁ ଗଲା । କିଛି ସମୟ ପରେ ଫେରି ଆସି ମୋ ପାଖରେ ବସିଲା । ମୋତେ ଛଅରି କହିଲା, ପିଲାର ମା ହୋଇ ଏତେ ନିଷ୍ଠୁର ହେଲେ ଚଳିବକି ଝିଅ, ବେଳ ଘଡ଼ିଏ ଥିଲା ଗଲୁ ଯେ ରାତି ଆସି ପହରେ ହେଲାଣି ଫେରୁଛୁ ? ଟିମବାବୁଙ୍କ ଘରେ ଏତେ କଅଣ କାମ ଥିଲା କି ?

କହୁଲ, ଟିମବାବୁ କୁଆଡ଼େ ଯାଇଛନ୍ତି । ଅପେକ୍ଷା କଲି । ଦେଖା ହେଲି ନାହିଁ, ଫେରି ଆସୁଥିଲି, କେମିତି ଅଜି ସଙ୍ଗେ ଦେଖା ହେଲା । ତାଙ୍କର ଘରେ ଡେରି ହୋଇଗଲା ।

ଏକୁଟିଆ ଲୋକ । ପିଲାଟାକୁ ସମ୍ଭାଳିବି କି ସେବାଇ କରିବି, କି କ'ଣ-କାହୁଁ କହୁ କଥା ଚୋକନେଲା ।

ମନୁଆଁ ମୋ ଗୁଣ୍ଡିରୁ ମୁହଁ କାଢ଼ି ଓଠରେ ହାତ ଦେଇ ଗୁଲ୍ଲୁ ଗୁଲ୍ଲୁ କହୁଲା, ଦା-ଦା ମା ବ— ।

ତା ମୁହଁରେ ବୋକ ଦେଲି । ମୁଣ୍ଡ ଆଉଁସି କହୁଲି, ହଁରେ ବାବୁ, କାଲି ତୋ ପାଇଁ ହାଟରୁ ମାଁବ ଅଣିଦେବି ।

ମନୁଆଁ ସବୁ ଜାତିର ଫଳକୁ ମାଁବ ବୋଲି କହେ । ଆଉ କଅଣ ସେ କହୁଲା ମୁଁ ବୁଝିବାକୁ ଚେଷ୍ଟା କଲି ନାହିଁ । ଗେଲ କରି କହୁଲି, ଯା —ମା ପାଖକୁ । ସୁନାପୁଅ, ତୋ ପାଇଁ ମୁଁ ସେବାଇ କରେଁ ।

ବୋଉ କହୁଲା, ତୋର ଡେରି ଦେଖି ମୁଁ ଟଣ୍ଡାଏ ଫୁଟାଇ ଦେଇଛି । ପିଲାଟା ସଞ୍ଜ ପହରୁ କାନ୍ଦୁଛି । ତାକୁ କୋଲରେ ଧରିଥା ।

ତା'ର ତ ସେହି ଖଗପ ଖୋଇ, ନିଦରୁ ଉଠି ମତେ ନ ଦେଖିବା ଯାଏ କାନ୍ଦୁଥିବ । ସେଥିକି କାହାର ବଳ ଅଛି । ମୂଲିଆ ଘର ପିଲା, କଷ୍ଟ କଲେ ତା କଷ୍ଟକୁ ଗୁହଁ ବସିବାକୁ ବେଳ ନାହିଁ ।

ବୋଉ କେତେବେଳକେ କହୁଲା, କଥା କଅଣ କି, ତୋ: ପଛେ ପଛେ ସୁରିଆ ଆସି ପହଞ୍ଚିଥିଲା ।

କଏ ?

ସେଇ ଚୁଲିପଣା ସୁରିଆ ଲୋ । ଟକାଉଠି ଛପିକରି ଅନେଇଥିଲା । ଯେମିତି ତୁ ଗଲୁ, ଚାଲ ପରି ଆସି ପହୁଞ୍ଚିଗଲା ତ । ବାଡ଼ ପାଖରେ ଠିଆ ହୋଇ ଡାକିଲା, ମାଉସି, ମାଉସି ।

ତାର ପାଟି ପରି ଶୁଭିଲା । ଅନାଇ ଦେଲି ତ, ସେ । ତୁ ନ ଥିଲାବେଳେ ମାସେ ପନ୍ଦର ଦିନରେ ଏମିତି ସେ ଅସେ । ସେଇଠି ଠିଆହୋଇ ଡାକେ । ମନୁଆଁକୁ ଖୋଜେ । ଦେଖେ, ଗେଲ କରେ, ଫେରିଯାଏ । ଡାକିଲେ ଭିତରକୁ ଅସେ ନାହିଁ । ଆଜି ସେମିତି ସେଇଠି ସେ ଠିଆହୋଇ ଡାକିଲା । ମୋର ଗରଜ ପଡ଼ିଛି ଶୁଣିବାକୁ ।

ଉଦ୍‌ବିଗ୍ନ ହୋଇ ପଗ୍ଭରିଲି, ଫେରିଗଲା ?

ନିଲଠା ନିର୍ଲଜଠାଏ, ଫେରି ଯାଆନ୍ତା ? କଷ୍ଟାଳିଆ ଭିକାରି ପରି ଡାକ ଗୁଡ଼ୁଥାଏ । ହସୁଥାଏ ସତେକି ମଶାଣୀରୁ ଉଠି ଆଇଚ, କି ଟଗାରୁ ମାରିଚ । ଖାଲି ବେକରେ ପଘା ପକାଇ ନାହିଁ କି ଭୁଣ୍ଡରେ ତରଣ ଧରିନାହିଁ । ନଇଶୁଆ-

ମୋର ଏଡ଼େ ସୁନ୍ଦର ଜୋଇଁଙ୍କ ମାରଛୁ ! ତୋ କଥାରେ ସନା ପରତେ ଯାଉଥିଲି, ତା ରୂପ, ତା ଢଙ୍ଗ ଦେଖିଲେ କିଏ ବିଶ୍ୱାସ ନ କରିବ ଲୋ ତୁଳସି ?

ଟିକିଏ ରହି ପୁଣି କହିଲା, ତୋ କଥା ମୋ ମନେ ପଡ଼ିଗଲା, ସମ୍ପତ୍ତି କଥା । ଭାବିଲି, ଆଜି ତାକୁ କହିବି । କଅଣ ସେ କହିବ ଶୁଣିବି । ତାକୁ ଘର ଭିତରକୁ ଡାକିଲି । ଆସିଲା ନାହିଁ । ଖାଲି ମନୁଆଁଙ୍କୁ ଖୋଜୁଥାଏ, ତା ପାଖକୁ ଯାଇଁ କହିଲି, ମନୁଆଁ ଶୋଇଛୁ ।

କହିଲା, ମୁଁ ଏଇଠି ବସୁଛୁ ।

ସେଇଠି ତାଟି ପାଖରେ ବାଇଗବା ବାଡ଼ କଡ଼ରେ ବସି ରହିଲା ।

କେତେବେଳ ଯାଏ ବସିଲା ବୋଉ ?

ଟିକିଏ ବସିଛୁ, ମୁଁ ଯାଇଁ ତା ପାଖରେ ଠିଆ ହେଲି । ସମ୍ପତ୍ତି ବାଡ଼ କଥା ତାକୁ ସବୁ କହିଲି । ମନଦେଇ ଶୁଣିଲା । ଭାରି ଗୃହିଁ ଲୋ, ଏମିତି କଥା କହିଲା, ସାପ ମରିବ ନାହିଁ କି ବାଡ଼ି ଭାଙ୍ଗିବ ନାହିଁ ।

କଅଣ ସେ କହିଲା ?

ଓଲଟି ମତେ ସେ ପଚାରୁଛୁ, ନୂଆଉ ସମ୍ପତ୍ତିକୁ ଏମିତି ଦି ଖଣ୍ଡ କରି କାଟିବାକୁ ଗୃହାଁନ୍ତି ? ମୁଁ ହଁ କହିଲାରୁ ସେ ହସି ଉଠିଲା । କହିଲା, ନାଇଁ, ସମ୍ପତ୍ତି ବାଣ୍ଟ କରିବା ଦରକାର ପଡ଼ିବ ନାହିଁ । ସବୁ ତ ମନୁଆଁର, ସେଥିରେ ହାତ ଦେବ କିଏ ? ସବୁ ସମ୍ପତ୍ତି ସେ ଭୋଗ କରିବ ଯେ, ଶୀଘ୍ର ଭୋଗ କରିବ ।

ବୁଝିଲୁ ଝିଅ, ସେମିତି ଢଙ୍ଗରେ ସେ କଥା କହୁଛୁ ? ଏତେ ତର୍କତାର୍କରେ ପଶି ପାରୁ ନ ଥିଲି । ତୁ ମୋ ଆଖି ଫିଟାଇ ଦେଲୁ । ଚୁଲିପଶା, ଭାଇର ରକ୍ତ ଖାଇ ଅହ୍ଲାଦର ଆଶା କରି ବସିଛୁ ତୋ ହାତ ଧରି ଘରକୁ ନେବ । କାହିଁକି ? ତୋ ମନ ବଦଳିଲେ କଅଣ ପାତ୍ର ଅପୂର୍ବ ହେବେ କି ?

ପଚାରିଲି, ସେଇଠୁ କଅଣ କହିଲା ?

ଲୋଭ ଦେଖାଇ କହିଲା, ନୂଆଉକୁ କହିବ, କାନ୍ଥ ଭିତରେ ଯେଉଁ ଘଡ଼ ପୋତିଥିଲେ ସେଇଟା ପୂରିଗଲାଣି ।

ମୁଁ କହିଲି, ତାକୁ କାହିକି କହିବି ରେ, ତୋ ପଇସା ତୁ ପାଣିକି ପକାଉନୁ, ନଇଲେ ଯଦି ପୁଅ ସମ୍ପତ୍ତି ରଖିବାକୁ ଗୃହୁଁଛୁ ଦାଣ୍ଡ ମୂଳରେ, ଭଲ ଲୋକ ଯାହା କହିବେ ସେଇଆ ତୁଳସିକୁ ଦେଇ ଯା ।

କହିଲା, ମୋର ପୁଣି ଗୋଟାଏ ପଇସା କଅଣ ? ସବୁ ତ ନୂଆଉର । ନୂଆଉ ଯଦି କହନ୍ତି, ସବୁ ଆଣି ଦେଇଯିବି । ମୋ ଜିମା ଦେଇ ଆସିଥିଲେ । ମୁଁ ଜଗିଛୁ । ସେତିକି ସେ ନେଲେ ମୋ ଦାୟ ଯିବ ।

ମୁଁ କହିଲି, ତୁଳସୀ ତୋ ମୁହଁ ଗୃହିଁବ ନାହିଁରେ ଖଣ୍ଡିଆ । ଯଦି ସେ ପଇସା ମନୁଆଁ ବାପର ହୋଇଥାଏ, ସବୁ ଆଣି ଦେଇ ଯା । ସେ ମାଗିଲା ।

ଦିନେ ଦି ଦିନ ପରେ ଆସିବ । ସେ ଯାହା ଆଣିବ ସେଥିରେ ଟିମ ବାବୁଙ୍କ କରଜ ଶୁଝିଦେବା ।

ବୋଉ କଥାରେ ବାଧାଦେଇ କହିଲି, ପେଟ ଜଳିବ ବୋଲି ମଣିଷ ତ ମଇଲା ଖାଇବ ନାହିଁ ? ପଇସା ସୁବିଆ ଭେଇଛି, ପଇସା ତାଅରି । ହୁସିଆର, ଯଦି ସତରେ ସେ ଆଣେ କେବେ ରଖିବୁ ନାହିଁ । କହିବୁ, ମୁଁ ମନା କରିଛି ।

କାହିଁକି ଲୋ, ଏମିତି ଅଭିମାନ କଲେ ସଂସାରରେ ଚଳି ହେବ ନାହିଁ । ଭଲ ମନ୍ଦ ଏକାଠି କରି ନିଜର ବାଟ କାଟିବା । ଗୈରକୁ ମାନ କରି ଖପଗିରେ ଖାଇଲେ ନିଜେ ସିନା ଦୁଃଖ ଭୋଗିବୁ, ଅନ୍ୟକୁ ଦୋଷ ଦେବୁ ନାହିଁ ।

ସୁବିଆ କେମିତି ଚଳୁଛି, କେଉଁଠି ଖାଉଛି, କିଛି କହୁଥିଲା କି ବୋଉ ?

ତା ମନକୁ ସେ କହୁଥିଲା, ଦିନେ ଗୁଡ଼ି ଦିନେ ତାକୁ ଜର ହେଉଛି । ପାଖରେ ତ କେହି ନ ଥାଏ, ଗାଁ ଲୋକେ ତା ପାଖକୁ ଆସିଲେ ସେ ଶଢ଼ୋ । ସେଇଥିପାଇଁ କେହି ଯା ଅସ କରନ୍ତି ନାହିଁ । ଉପାସ ଭୋକରେ ବେଳ କଟେ । ଘୁସୁରି ହୋଇ କେବେ କେମିତି ଗୃଉଳ ଗଣ୍ଡାଏ ଫୁଟାଏ ।

ସୁବିଆ ଆଜି କେତେ ଗପିଥାନ୍ତା ଲୋ ଝିଅ, ମନୁଆଁର ନିଦ ଭାଙ୍ଗିଲା । ମୁଁ ତା ପାଖକୁ ଆସିଲି । କେଡ଼େ ବଢ଼ିପ ଦେଖୁଛୁ ? ମୋ ପଛେ ପଛେ ସେ ଅଗଣାକୁ ଆସିଲା । ମୁଁ ଦେଖିନାହିଁ । ମନୁଆଁକୁ ଯେମିତି କାଖକରି ପଦାକୁ ଆଣିଲି, ସେ ହାତ ବଢ଼ାଇଲା । କହନ୍ତି ପରା, ବାର ବରଷ ମଉଳା ପୋଷେ, ଖୁଡ଼ୁ ତା ଦେଖିଲେ ଜଙ୍ଗଲରେ ବସେ । ସେମିତି ଲୋ, ସୁବିଆର ଯେଉଁ ରୂପ ହେଇଛି ଦେଖିଲେ ଆଜି ପିଲାଏ ଡଙ୍କରେ ମୁହଁ ଲୁଚାନ୍ତେ । ଏ ପିଲାଟା ତା କୋଳକୁ ଫକ୍ କରି ଡେଇଁ ପଡ଼ୁଥିଲା, ମୁଁ ଗୁଡ଼ିଲି ନାହିଁ । ତା ମନରେ କଅଣ ଅଛି କିଏ ଜାଣେ । ମନୁଆଁ କାନ୍ଦିଲା । ସେ ଅଣ୍ଟିରୁ କାଢ଼ି ପୁଞ୍ଜିକ ପିଜୁଳି ତା ହାତରେ ଦେଲା । କାଲେ କଣ ହୋଇଥିବ ଲୋ ମା, ପିଜୁଳି ଧିଅରେ ମନ୍ତ୍ରଯନ୍ତ୍ର କରିଥିବ, ମନୁଆଁ ହାତରୁ ଛଡ଼ାଇ ପିଜୁଳି ପୁଞ୍ଜାକ ବାଡ଼ କଡ଼କୁ ପକାଇ ଦେଲି ।

ସୁବିଆ କହିଲା, ପିଜୁଳିର କି ଦୋଷ ହେଲା ?

ମୁଁ କହିଲି, ତୋ ହାତରୁ କିଛି ନେବାକୁ ତୁଳସୀ ମନା କରିଛି । ସିବୁଟି ଏଠୁଁ, ତୁଳସୀ ଆସିଲେ ତୋ ଲାଗି ପୁଣି ମୁଁ ଗାଳି ଖାଇବି ।

ମନୁଆ କାନ୍ଦୁଥାଏ ମାମ୍ଭ ମାମ୍ଭ ହୋଇ । ତାକୁ କାନ୍ଧରେ ପକାଇ ମୁଁ ସିଅଡ଼କୁ ବାହାରିଗଲି । କେତେବେଳ ଯାଏ ଏଇ ଅଗଣାରେ ଠିଆ ହୋଇ ରହିଲା । ମତେ ପାଟି ନ ଫିଟାଇ ତା ମନକୁ ଗୃଲିଗଲା । ମୁଁ ଆସି ପିଣ୍ଡାରେ ବସି ମନୁଆଁକୁ ବୁଝାଉଛି, ପୁଣି ସେ ଫେରି ଆସିଲା । କହିଲା, ମାଉସୀ, ପାଣି ମନ୍ଦାଏ ପିଇବାକୁ ଦେବ ?

କେତେ ଚାଲାଖ, ମନୁଆଁକୁ ତଳେ ଗୁଡ଼ ପାଣି ଦେବାକୁ ଗଲେ ସେ ତାଙ୍କୁ ଧରନ୍ତି । ମୁଁ ନାହିଁ କଲି । କହିଲି, ଯା ଆଉ କୋଉଠୁ ପିଇବୁ । ମନୁଆଁ ଝିଅ ପୁଣି କାନ୍ଦି କାନ୍ଦି ତା ପାଖକୁ ଯିବାକୁ ବାହାରୁ ଥିଲା । ତା ମନକୁ ସେ ବୁଝେଇ ଯାଇ କହିଲା, ଆ ନା ରେ ବାବୁ, ମତେ ଜର ।

ଏତିକି କହି ସେ ଠେଲି ଠେଲି ଚାଲିଗଲା ।

ମନୁଆଁ ସେତିକି ବେଳୁଁ ଜିଦ୍ଦା ଧରିଛି ।

ବୋଉ ଭିନ ହେଲା । ସେ ବୋଧହୁଏ ଭାବିଥିଲା ଯେ ସୁରଙ୍କ ପ୍ରତି ସେ ଯେଉଁ ନିର୍ଦ୍ଦୟ କଠୋର ବ୍ୟବହାର କରିଛି ତାହା ମୁଁ ପସନ୍ଦ କରିବି । ମୁଁ ତାକୁ ଆଉ କିଛି ପଚାରିଲି ନାହିଁ । ଅନ୍ୟମନସ୍କ ହୋଇ ମନୁଆଁର ପିଠି ଥାପୁଡ଼ିଲି । ମୋ' ପାଖରୁ ଉତ୍ତର ନ ପାଇ ସେ ରୋଷ ଘରକୁ ଚାଲିଗଲା ।

ସୁରଙ୍କ କଥା ଯେତିକି ଭାବିଲି ମନରେ ମୋର ସେତିକି କୋହ ଉଠିଲା । ମୋ ଭିତରେ କିଏ ଭୁହାଇ ଭୁହାଇ କହି ଉଠିଲା, ସୁରଆ ନିର୍ଦ୍ଦୋଷ । ମଣିଷ ଜୀବନ ପାଣିଫୋଟକା । ମନର ଅବାନ୍ତର ଭାବନା, ସୁରଙ୍କର ପିଲାଳିଆ ସ୍ନେହବୋଲା ଢଙ୍ଗକୁ ଅନ୍ୟ ରୂପ ଦେଇଛି ବୋଲି ଦୁନିଆଁ ଲୋକଙ୍କ ଭଣ୍ଡବାଇଦ ମନକୁ ଦୁର୍ବଳ କରିଛି । ସେଥିପାଇଁ ମୋ ଆଖିରେ ସୁର ପ୍ରତାରକ ଓ ଖୁଣୀ ପରି ଦେଖା ଯାଉଛନ୍ତି ।

ଏଇ ମନୁଆଁ, ଗୁଡ଼ରେ ଯାହାର ମୁହଁର ପରଶ ଲାଗିଲେ ସ୍ୱାମୀ ନ ଥିବାର ଦୁଃଖ ମୁଁ ଭୁଲିଯାଏ, ସୁର ଆଉ ତା ଭିତରେ ତଫାତ୍ କଅଣ ? ସେଇ ରକ୍ତ ମାଂସ, ସେଇ ରୂପ । ଲୋକଙ୍କର ଭଣ୍ଡ କଥା, ଆଖି ଠାରକାକୁ ଆଡ଼େଇ ତାଙ୍କ ଆଖି ଆଗରେ ସୁରଙ୍କୁ ପଛରେ ରଖି ମୁଁ ଚାଲିବି । ଦୁର୍ନାମ ଯାହା ହୋଇଛି, ଯେତେ ଭଲେଇ ହେଲେ ଫେରିବ ନାହିଁ । ଆଜି ଯଦି ସୁରର ହାତକି ଦି ହାତ କରେଁ, ତାଙ୍କର ସୁଖ ଆନନ୍ଦର ସଂସାରରେ ନିଜକୁ ମିଶାଇଦେଇ ପାରିବି ।

ସ୍ୱାମୀ ମଲା ପରେ ଯେଉଁମାନେ ଦିଅରର ହାତ ଧରି ନୂଆ ସଂସାର କରନ୍ତି, ସେମାନେ ମଣିଷ ଜନମର ଉତେଜନାକୁ ଅସ୍ୱୀକାର କରି ପାରନ୍ତି ନାହିଁ । ଦିଅରର ସଂସାରରେ ନିଜକୁ ଜଣେ କରି ଚଳିବାର ସାହସ ସେମାନଙ୍କର ନ ଥାଏ । ମନରେ ଭୟ ଥାଏ, କାଲେ କେତେବେଳେ ସେମାନେ ଅତ୍ୟାଚାର କରିବେ, ଅନାଥ କରି ବାଟରେ ଛାଡ଼ିବେ । ପିଲା ଛୁଆ ନେଇ ବିଧବା କରିବ କଅଣ ? କାହା ଓଳତଳେ ଆଶ୍ରା ନେବ ? ସେଇଥିପାଇଁ ପରଘରୁ ଅଜଣା ଅଶୁଣା ପ୍ରକୃତିର ନୂଆ ଝିଅଟିଏ ଆସି ଶ୍ରେଷ୍ଠ ସଂସାରକୁ ଗୋଟାଏ ପରିବର୍ତ୍ତନ ଆଗରେ ଠିଆ ନ କରି କୁଳର ପ୍ରଥା ଅନୁସାରେ ଦିଅରର ହାତ ଧରନ୍ତି ।

ମୁଁ ତେବେ ମୋର ଗେରସ୍ତ ଦିଅରଙ୍କର ଘରକୁ ଫେରି ନ ଯିବି କାହିଁକି ? ସୁରଙ୍କର ହାତକୁ ଦି ହାତ କରି ମନୁଆଁକୁ ଦୁଇଜଣଙ୍କ ମଝିରେ ଛାଡ଼ି ସେଇ-

ମାନଙ୍କ ସେବାରେ ଦିନ କଟାଇବ । ପର ଘରେ ପରର ସେବା କରି ପେଟ ପୋଷିବା ଅପେକ୍ଷା ନିଜ ଲୋକଙ୍କର ସେବା କରିବାରେ ଲାଜ ସଂକୋଚ ନ ଥାଏ, ଅଗ୍ରହ ଆନନ୍ଦ ଥାଏ ।

ଦରମଲା ଯୌବନର ଉତ୍ତେଜନା, ସଂସାରର ବୋଝ ତଳେ ଚୃପି ହୋଇ ରହିବ, ଚିରଦିନ ।

ମନୁଆଁ ଗ୍ରୀଡ ଉପରୁ ମୁଣ୍ଡ ଟେକି ପୁଣି କହିଲା ମାମ୍ଲ ଦେ । ପିଣ୍ଡାରୁ ଉଠି ବୋଉ ପାଖରେ ମନୁଆଁକୁ ଗ୍ରୁଡ଼ିଲି । ଉବରି ନେଇ ବାଡ଼ କଡ଼ରେ ପଡ଼ିଥିବା ପିଜୁଳି ପୁଞ୍ଜିକ ଆଣି ମନୁଆଁର ହାତରେ ଗୋଟିଏ ଦେଲି । ବୋଉ କାବାହୋଇ ମୋ ମୁହଁକୁ ଚୃହିଁଲା ।

କହିଲି, ବୋଉ ମୁଁ, ଏ ଯେଉଁ ଗଛର ପିଜୁଳି, ସେ ଗଛକୁ ନିଜ ହାତରେ ମୁଁ ରୋପିଥିଲି । ଦେଖିଲୁ, କେତେ ବଡ଼ ବଡ଼ ହୋଇଛି, କି ସୁନ୍ଦର ପାଚିଛି ।

କହିଲି, ସୁରିଅ ତାକୁ ଆଣିଥିଲା ।

ସାମାନ୍ୟ ହସି କହିଲି, ହଁ ସୁର ଆଣିଥିଲେ । ବୋଉ, ସେ ସିନା ମୋର ଶତ୍ରୁ ଲୋ, ମନୁଆଁର ଶତ୍ରୁ ନୁହନ୍ତି । ଯେତେ ହେଲେ ସେ ମନୁଆଁର ବାପ । ଏକା ଲକ୍ତ, ଝାଣୁଛି । ଦେଖୁନୁ, ନା ଖାଇ ନ ପିଇ କେମିତି ରୂପ ସେ ହେଇଛି । କେଉଁଠୁ ଖାଇବେ, କିଏ ତାଙ୍କୁ ମୁଠିଏ ପଠାଇ ଦେବ ?

ବୋଉ ମୋ ମୁହଁକୁ ଅନାଇ ରହିଲା । କ'ଣ କହିବ କହିବ ହୋଇ କହିଲା ନାହିଁ ।

କହିଲି, ଏତେ ଗାଳି ଅପମାନ ଦେଲେ ବି ସେ ଦେହକୁ ନେଉ ନାହାନ୍ତି । କହୁଥିଲୁ ପରା, ମୋ ନ ଥିବା ବେଳେ କେଉଁ ଛିଟକରେ କେତେବେଳେ ଆସି ମନୁଆଁକୁ ଗେଲ କରି ଯାଆନ୍ତି । ଜର, ତର୍ଣ୍ଣି ଅଠା ଅଠା ହେଉଛି ତଥାପି ସେ ମନୁଆଁକୁ ଦେଖିବାକୁ ଆସିଲେ । ଝଲଝଲ ଅନ୍ଧାର ସଞ୍ଜରେ ଗମ୍ଭୀର ବାଟରେ ଫେରିଗଲେ । ପାଣି ମନ୍ଦାଏ ପିଇବାକୁ ପାଇଲେ ନାହିଁ ।

ଟତ ଜୀବନର କେତେ ଦୃଶ୍ୟ ଆଗରେ ଠିଆହେଲା । ଆଖିର ଲୁହ ଅଟକାଇ ପାରିଲି ନାହିଁ ।

ବୋଉ ଡରି ଡରି କହିଲା, ତୁ ମନା କରିଥିଲୁ ବୋଲି ତାକୁ ଘରେ ପୁରାଇଲି ନାହିଁ । ଏଥିକି ମୋର କି ଦୋଷ ।

ଆଖିରୁ ଲୁହ ପୋଛି କହିଲି, କାହାରି ଦୋଷ ମୁଁ ଦେଉ ନାହିଁ । ଦୋଷ ତାଙ୍କ ଭାଗ୍ୟର । ପିଲା ଦିନୁ ବାପ ମାଙ୍କୁ ଖାଇ ଭାଇର କୋଳରେ ବଢ଼ିଥିଲେ । ସୁଖର ସଂସାରରେ ନିଆଁ ଜଳାଇ, ସୁରିଅ ମୁହଁରେ ମୋ ମୁହଁରେ ଅପବାଦର କାଳି ବୋଳି ସେ ଚୃଲିଗଲେ । ସୁର ଆଶା କରିଥିଲେ, ମୋ ଠାରୁ ସାହସ ପାଇ ଭାଇ ମରଣର ଦୁଃଖ ସହିଯିବେ । ଲୋକଙ୍କର ଅପବାଦ ସେତିକ କରାଇ ଦେଲା ନାହିଁ । ପୁଣି କଅଣ ହେବ ଜାଣୁ ବୋଉ ?

ପେଟ ଭିତରୁ କଇଁ ଉଠିଲା । ଓଠ ଥରଗଲା । କହି ହେଲା ନାହିଁ । ମନୁଆଁ କୁ କୋଳକୁ ଆଣି ମୁହଁରେ ଚୋକ ଦେଲି । ତା'ର ଠିକ ମୁହଁ ଉପରେ ଆଖିରୁ ଲୁହ ଝରି ପଡ଼ିଲା ।

କାନ୍ଦୁଛୁ କାହିଁକି ମା, ତୋ ଢଙ୍ଗ ତୋ କଥା ମୁଁ ବୁଝିପାରେ ନାହିଁ । ତୁ ଯାହା କହୁ ମୁଁ ସେଇଆ କରେଁ । ପୁଣି କ'ଣ ହେବ ତୁ ନ କହିଲେ ମୁଁ କପର ଜାଣିବି ?

ମଣିଷ ସବୁ ସହିପାରେ ବୋଉ, ମନୁଆଁ ବାପର ମରଣ ଖବର ପାଇଲି, ଦୁର୍ନାମ ଶୁଣିଲି, ଛାତି ପଥର କରି ସହିଲି । କାଲି ସେମିତି ଖବର ପାଇବି ନ ଖାଇ ନ ପିଇ ଭାଇଙ୍କୁ ଝୁରି ଝୁରି ଅଣହେଲାରେ ପଡ଼ି ମନୁଆଁର ଦାଦ ସେଇ ଘର, ସେମିତି—

ଅମଙ୍ଗଳ ଭୟଙ୍କର ଭାବନାଟା ଭିତରେ ଅଟକିଲା । ଆଖିରୁ ଲୁହ ପୋଛିଲି । ଠିକଏ ରହି କହିଲି ସେ ଦୁଃଖ ବି ସହିବି । ବାହାର ଲୋକେ ଦୁର୍ନାମ କରି ପାରିବେ ନାହିଁ । ମୋ ଭିତରେ ମୋ ମନ ମୋତେ ଦୋଷୀ କରୁଥିବ । ତାକୁ ବି ସହି ମୁଣ୍ଡରେ ବୋଝ ଧରି ପେଟ ପାଇଁ ମୋତେ ହାଟକୁ ଯିବାକୁ ପଡ଼ିବ ।

କଅଣ ବୁଝିଲା କେଜାଣି ବୋଉ କାନ୍ଦି ଉଠିଲା ।

ମନୁଆଁକୁ ଛାତିରେ ଜାକି କୋହକୁ ଚାପିରଖି ମୁଁ ପଦାକୁ ଆସିଲି । ଅନ୍ଧାର ଘୋଟି ରହିଛି । ଆକାଶ ଛାତିରେ ଅଗଣନ ତାରା ମିଟି ମିଟି ହେଉଛନ୍ତି । ଦୂର ଗହ୍ୱାର ଓ ତୋଟା ଆଡ଼ୁ ଝିଙ୍କାରି ଶବଦ ଭାସି ଆସୁଛି । ଯୁଆଡ଼େ ଚାହିଁଲେ ଭୟଙ୍କର ଦିଶୁଛି । ଡର ମାଡ଼ୁଛି ।

ଘର ଭିତରକୁ ଫେରି ଆସିଲି ।

ରାତି ଅଧ । ଶୀତ ବେଶି ନ ଥାଏ । ମନୁଆଁକୁ କୋଳକୁ ଘୁଞ୍ଚାଇ କନ୍ଥା ଘୋଡ଼ାଇ ଦେଲି । କବାଟ ଖୋଲି ପଦାକୁ ଆସିଲି । ଗହ୍ୱାର ସେପାରି ଅନ୍ଧାରିଆ ଗଛଗହଳ ଉପରୁ ବଙ୍କା ଜହ୍ନଟି ଉଠି ଆସୁଥାଏ । ଆକାଶ ଛାତିରେ ଖଣ୍ଡ ଖଣ୍ଡ ମେଘ ଧୀରେ ଧୀରେ ଭାସି ଯାଉଥାଏ । ରାତିର ଗହ୍ୱାର ଅନ୍ଧାର ପାତଳ ହୋଇ ଆସୁଥାଏ ।

ଦୁଆରକୁ ଆସି ଗୋରିଆଡ଼କୁ ଚାହିଁ ଭାବିଲି, ଯିବି, ବାଟ କେଇ କୋଶ, ସକାଳ ହେବା ଆଗରୁ ଫେରି ଆସିବି, କେହି ଜାଣି ପାରିବେ ନାହିଁ । ଥରଟିଏ ଦେଖି ଚାଲି ଆସିବି । ସୁରକୁ ଜରି । ଘର ଭିତରେ ପଡ଼ି ସେ ଛଟପଟ ହେଉଥିବେ । ଭାଇକି ମନେ ପକାଇ କାନ୍ଦୁଥିବେ । ବାଉଳା ଚାଉଳା ହୋଇ ଗୋରିଆଡ଼େ ଚାହିଁ ଖୋଜୁଥିବେ । ଯିବି ? ହାତ ଗଲେଇ ଶିକୁଳି ଖୋଲିବି । ସେମାନେ ଯେମିତି ଖୋଲନ୍ତି ।

ମନେ ପଡ଼ିଗଲା ଅତୀତ ଜୀବନର ଘଟଣା ।

ଅନାଇଁ ଅନାଇଁ ନିଦ ହୋଇଯାଏ । ଅଲ୍ପ ଅଟି କମା ହୋଇ ଜଳୁଥାଏ ଗୋଡ଼ତଳେ । ସପନ ଦେଖୁଥାଏଁ ଯେଉଁମାନଙ୍କୁ କେତେବେଳୁ ଅସି ଘର ଭିତରେ କାରବାର ହେଉଥାନ୍ତି । କପାଳ ଉପରେ କାହା ହାତର ପରଶ ପାଏ, ଥିଣ୍ଟ ଅଳ ଥଣ୍ଡା । ଆଖି ଖୋଲେ । ଗୋଡ଼ତଳେ ସେ ଠିଆ ହୋଇ ହସୁଛନ୍ତି । ପେଟ ପୂରଉଠେ ଆନନ୍ଦରେ । ତାଙ୍କର ସେଇ ହସ ଭିତରେ ମୋ ଆତ୍ମା ହଜିଯାଏ । ଅସ୍ତବ୍ୟସ୍ତ ହୋଇ ଉଠି ଠିଆ ହୁଏଁ ।

ଆରେ ତେମେ, କେମିଛି ଅଇଲ, ଡାକିଲ ନାହିଁତ ? କବାଟ ବନ୍ଦ ହୋଇଥିଲା । ହାତ ବଢ଼ାଇ ତାଙ୍କ ଦେହରେ ଲଟେଇବାକୁ ମନହୁଏ । ହାତ ଟେକେ ।

ସେ କହନ୍ତି, ଏଇ ସୁରଆ, ଗୈର ! ହାତ ଗଳାଇ କବାଟ ଖୋଲିଲି ।

ହାତ ମୋର ଖସି ପଡ଼ିଲା ତଳକୁ । ପଛକୁ ଚାହିଁଲି, ସୁର ଘର ଭିତରୁ ବାହାର ଯାଉଛନ୍ତି କହି କହି, ହାତଟା ଧୋଇ ଅସେଁ ନୂଆଉ, କଳା ଲାଗିଛି ।

ପଣତ କାନରେ ମୁହଁ ପୋଛିଲି । କଳା—ଛିଃ ।

ଦୁଇ ହାତରେ ମୋତେ ଗ୍ରଛ ଉପରକୁ ଟାଣି ନେଲେ । ଗେଲ କରି କହିଲେ, ସୁରଆଟା ବଡ଼ ଚଗଲା, ତମ ଚାନ୍ଦ-ମୁହଁରେ କଳା ବୋଳିଲା !

ଦୁଆର ମଝିରୁ ସୁର କହି ଉଠିଲେ, ଭାଇ ମତେ କହିଲେ ନୂଆଉ, ମୋର କିଛି ଦୋଷ ନାହିଁ । ମୁଁ ମନା କରୁଥିଲି ।

ତାଙ୍କ ଗ୍ରଛରୁ ଅଲଗା ହୋଇ ଆସିଲି । ଅଭିମାନ କରି କହିଲି, ତମ ଭାଇ କହିବେ ନିଆଁ ଗିଳିବାକୁ—ତେମେ ଗିଳିବ ? ଦୁଷ୍ଟ—ରହ, ତେମେ ଯେଉଁଦିନ ଶୋଇ ପଡ଼ିଥିବ, ଫେର୍ ଦେଖିବ ! ଜଣକ ମୁହଁରେ ଚୂନ ଜଣକ ମୁହଁରେ କଳା ! ବୋଲିବି ।

ଯିବ ? ମୁଣ୍ଡ ଅଉଁସି କହିବ, ବାବୁ, ଲୋକେ ଯାହା କହନ୍ତୁ ପଛେ, ତେମେ ନିର୍ଦ୍ଦୋଷ ! ମତେ କ୍ଷମା କର ।

କାହାର ହସିଲା କଥା ପୁଣି କାନରେ ପଡ଼େ, ଅଗୋ, ଦେଖ ଗୋ, ବଲେଇ ଆଖି ବୁଜି ଦୁଧ ପିଉଛି । ଲୁଚିଛି ନା ଗୋଡ଼ ଦଉଟି ଦିଶୁଛି । ସବୁଦିନେ ଘଛ ଅଧିଆ କାରବାର ଲାଗିଛି । ବାଟ ଦିଖୋଳ । ସିଏ ଅସୁଛି, ସିଏ ଯାଉଛି । ଲୋକ ଦେଖାଣକୁ ବେମାର ।

କବାଟ କଡ଼ରେ ଅଇ ବୁଢ଼ୀ, ତାଙ୍କ ପାଖରେ ଦେଠେଇ, ତା ପାଖକୁ ଆଉ କଏ, ଆଉ କଏ, କହୁଛି, ତାର ପିଲା ହେବ ମ ! ଅଲୋ, ଏତେ ଗୈସ ଲାଗୁ କାହିଁକି ? ଯହା ତ କରିବାର କଲ, ଏଡ଼େ ସୁନ୍ଦର ଭେଣ୍ଡା ପୁଅକୁ ସଜା ହୋଇ ମାଇଲ, ଦୁଟାସୁ ହୋଇ ପଡ଼ିନ । ଦେଖ ମ, ଅଗୋ ଦେଖ ମ—

ଗାଁ ଯାକର ଲୋକ ରୁଣ୍ଡ ହେବେ ।

କଅଣ କରିବ ? ରାତି ଅଧ, କେହି ଆସିବେ ନାହିଁ, କେହି ଦେଖିବେ ନାହିଁ । ଯିବ ? ଥରଟିଏ, ଥରଟିଏ ସୁରକୁ ଦେଖି ଆସିବ ।

କାଲେ ଆସି ପାରୁ ନ ଥିବ ? କାଲେ ବାଟରେ କାହା ହାବୁଡ଼େ ପଡ଼ିବ ? ଚଉକିଆ ଧଡ଼ିଆ ଦାଦି, ରାତି ତମାମ୍ ସେ ପଡ଼ିଆକୁ ଧାଆନ୍ତି—କି ଶୀତ କି ବର୍ଷା, ବାରମାସୀ ।

ଗାଁ କୁକୁର ଭୁକି ଉଠିବେ— ।

ଏଣେ ମନୁଆଁ ଉଠିବ, କାନ୍ଦିବ । ଫେରିଲା ବେଳକୁ ଗହୀର କଡ଼ ଟୋଠା କି ପୋଖରୀ ପାଖେ ଚେମାଇ ଦେଇଥିବ । ପଚାରିବ, କାଲେ ସିଅଡ଼ୁ ଭୁଅଡ଼ୁ ? ଜାଣେ ସେ !

ଦୁନିଆଁ ର ଲୋକେ, ଏମିତି ତାଙ୍କର କଥା । ସନ୍ଦେହରେ ତିଳକୁ ତାଳ କରି ବଢ଼ାନ୍ତି । ଦୁର୍ନାମ ଅଗ୍ନିର ପ୍ରବଳ ହୋଇ ମାଡ଼ିବ । ଭୁଣ୍ଡିବାଇଦ ସବୁଠି ଶୁଭିବ —ହାଟରେ, ବାଟରେ, ବିଲରେ, ଘରେ, ବାହାରେ । ମୁଣ୍ଡ ଟେକି ବାଟ ଚାଲି ପାରିବ ନାହିଁ । ସମସ୍ତେ ଠାହି ଠାପରା କରିବେ, ଆଖି ମିଟିକା ମାରିବେ । ଲୋକ ଭୁଣ୍ଡିରେ ତୁଳସୀ ହେବ ଦୋଷୀରୁଣୀ ?

ଜଳିଲା ପୋଡ଼ିଲା ଯୌବନ ଓ ଦରମଲା ଦେହକୁ, ପେଟ ପାଇଁ, ପିଲାଟିର ଜୀବନ ପାଇଁ, ସେ ବିକି ପାରିବ ନାହିଁ । ଯେପରି ଚାଲିଛି ଚାଲିଥାଉ, ଯେତେ ଦିନ ଚାଲିବ । ଲୋକଙ୍କର ଭୁଣ୍ଡିକୁ ଡରି ମୁଣ୍ଡ ନୁଆଁଇ ରହିବ । ସୁରିଆକୁ ଦେଖିବାକୁ ଯିବ ନାହିଁ । ସେ ନିର୍ଦ୍ଦୋଷ ହେଲେ ମଧ୍ୟ ଲୋକ ଆଖିରେ ଦୋଷୀ । ସେ ଖୁଣୀ, ମୋର ସ୍ୱାମୀହନ୍ତା ।

ଭାଗ୍ୟରେ ଏଇୟା ଅଛି !

ପାହାନ୍ତି ପହରର ଅଲୁଅ ଅକାଶ କଡ଼ରୁ ଉଠି ଆସୁଥାଏ । ଆଖି କୋଣରୁ ଲୁହ ପୋଛିଲା । ଆଜିଠାରୁ ସୁରିଆର ନାମ ମୋ ମନରୁ ପୋଛି ହୋଇଯାଉ । ସୁରିଆ ଲେଖାରେ ମୁଁ ନାହିଁ କି ମୋ ଲେଖାରେ ସିଏ ନାହିଁ ।

କବାଟ ଖୋଲି ଭିତରକୁ ଗଲା । ମନୁଆଁ ପାଖରେ ଶୋଇ କନ୍ଥାର ଗୋଟାଏ ପାଖ ଦେହ ଉପରକୁ ଟାଣି ଆଣିଲା ।

ବୋଉର ନିଦ ଭାଙ୍ଗିଥିଲା !

ପଚାରିଲା, କେତେବେଳୁଁ ଉଠି ଦୁଆରେ ଠିଆ ହୋଇ କଅଣ ଏତେ ଭାବୁଥିଲୁ ତୁଳସି, ଭରସି କରି ତତେ ଡାକିଲି ନାହିଁ । ଦୁଆର ମଝିରେ, ଅନ୍ଧାର ରାତିରେ ଠିଆହୋଇ କାହିଁ କାହିଁ ହୋଇ ପିଲାଙ୍କ ପରି କାନ୍ଦୁଛୁ । କହି ମା, କଅଣ ହୋଇଛି ?

ଜବାବ ଦେଲି ନାହିଁ ।

ବୁଢ଼ୀଟା, କହିବାକୁ ଲାଗିଲା—ତୋ ମନକଥା ମୁଁ ଜାଣେ ଲୋ ମା, ଆଜି ନୁହେଁ ଯେ ତୋ ପିଲାଟି ଦିନୁ । ସୁରି ସେତେବେଳେ ଏଠିକି ନୂଆ ନୂଆ ଆସୁଥିଲା ।

ମା, ତୋ ଭୁଣ୍ଡ ନ କହିଲେ କ'ଣ ହେବ, ତତେ ମୁଁ ଜନମ କରିଛି, ତୋ ମନ କଥା ଜାଣି ପାରିବି ନାହିଁ ? ସୁରିକୁ ମୁଁ ତଡ଼ିଦେଲି, ଏକଥା ଶୁଣିଲା ବେଳରୁ ତୁ କାନ୍ଦୁଛୁ । ଲୋକଙ୍କ କଥାରୁ ଆମକୁ ମିଳିବ କଅଣ ? ଯାହା ହେବାର ହୋଇଛି । ମନକୁ ଠାଣ କର । ଶୁଣିଲୁ ତ, ସୁରି କି ସୁନ୍ଦର ପିଲା, ଭାବି ଭାବି ଝୁରି ଝୁରି ଅଣହେଲାରେ କି ରୂପ ହେଲାଣି । ଆଉ, ତୋ ରୂପଟି ଥରେ ଆଇନାରେ ଦେଖିଲୁ ଭୁଲସି ! କହିବୁ ଯେବେ, ଏଇ ପାହାନ୍ତାରୁ ଉଠି ମୁଁ ଯିବି ସୁରିକୁ ଡାକି ଆଣିବି ।

ଗ୍ରଭିର କୋହ ସମ୍ଭାଳି ପାରିଲି ନାହିଁ । ବିରକ୍ତ ହୋଇ ପାଟିକରି ଉଠିଲି, ଯିବୁ, ଯିବୁ, ସୁରିକୁ ମଶାଣି ଭୂଇଁରୁ ଡାକି ଆଣିବୁ । ସେଇଠି ସେ ତା ଭାଇର ହାଡ଼ ପାଉଁଶ ଖୋଜୁଥିବ । ମୋ ଲେଖାରେ ସେ ନାହିଁ ବୋଉ, ତା କଥା ମୋ ଆଗରେ ଆଉ ଦିନେ ତୁ କହିବୁ ନାହିଁ କି ତାକୁ କେବେ ଘରେ ପୂରାଇବୁ ନାହିଁ । ଯେଉଁଦିନ ମୋ କଥାର ଓଲଟା କାମ କରିବୁ, ସେଇଦିନ ମଶାଣି ଭୂଇଁକୁ ମତେ ଖୋଜିବାକୁ ଯିବୁ । ବୁଝିଲୁ ?

କନ୍ଥା ଭିତରେ ମୁହଁ ଲୁଚାଇ କାନ୍ଦିଲି ।
ବୋଉ ପାଟିରୁ ଆଉ କଥା ବାହାରିଲା ନାହିଁ ।

୧୮

ଠଙ୍କା ପଇସା କି ଘର ବନ୍ଧା କଥା ଟିମବାବୁ ମୋ ଆଗରେ କେବେ ଉଠାନ୍ତି ନାହିଁ । ହାଟପାଳି ଆଗ ଦିନ ତାଙ୍କ ବଗିଚାରେ ତାଙ୍କ ସଙ୍ଗେ ଦେଖା ହୁଏ । ନାନାପ୍ରକାର ପନିପରିବା ସେ କରିଥାନ୍ତି । ଘର ଖରଚ ବାକିତକ ସେ ବିକ୍ରି କରନ୍ତି । ଶସ୍ତାରେ ମିଳେ ବୋଲି ମୁଁ ସେଇଠୁଁ ପରିବାପନ୍ଦ କିଣି ହାଟକୁ ନିଏ । ହାତରେ ପଇସା ନ ଥିଲେ ସେ ଉଧାର ଦିଅନ୍ତି । ହାଟରୁ ଫେରି ମୋର ଲାଭତକ ରଖି ମୂଳଧନ ତାଙ୍କୁ ମୁଁ ଫେରାଇ ଦିଏଁ ।

ଦୁଇ ତିନି ପାଳି ପରେ, ଥରେ ମୋ ଆଗରେ ଟିମବାବୁ ଚାକର ଟୋକାକୁ କହିଲେ, ତରାଜୁ ସଳଖ ଧରୁନ, ତୁ ଯେପରି ଓଜନ କରୁଛୁ, ସେରକ ଆଳୁ ପାଅପା ହେବ । ହସି ହସି ଥଟ୍ଟାଳିଆ ସ୍ୱରରେ କହିଲେ, ଭୁଲସୀ ତତେ ଶିଖାଇଛି କରେ ? ଅଣ, ମୋତେ ଦେ, ତୁ ଯା ବାଇଚଣ ତୋଳି ଆଣିବୁ । ଚାକର ଚାଲିଗଲା । ବାବୁ ହାତରେ ତରାଜୁ ଧରିଲେ । ପଚାରିଲେ, କେତେ ସେର ନେବୁ ଟିଲା ?

କହିଲି, ପାଅସେର ।

ସେ ପାଳି ପାଅସେର ଆଳୁ ହାଟରେ ସାତସେରରୁ ଅଧିକ ହେଲା । ଦାଣ୍ଡରେ ଆଳୁ ଦର ବେପାରୀ ଭିତରେ ତିନିଅଣା । ଟିମବାବୁଙ୍କୁ ଦାମ୍ ଦେଲାବେଳେ ସେ ଦୁଇଅଣା ନେବାକୁ କହିଲେ । ଦାଣ୍ଡ ଦରକୁ ଦେଖାଇ କହିଲେ, ସେଇଠା ଦାଣ୍ଡ

ଲୋକଙ୍କ ପାଇଁ ସିନା, ଗାଁ ଲୋକ, ନିଜ ଲୋକକୁ କଅଣ ସେଇ ଦରରେ ଦିଆଯିବ ? ମୋ ମୁହଁକୁ ଅନାଇଁ ରହିଲେ । ଆଖି ଓ ଓଠରେ ହସର ଆଭା ଉଛୁଳି ଉଠିଲା । ମୁଁ ଦୃଷ୍ଟି ନୋଇଁଲି । ସେ ମୁହଁ ବୁଲାଇ ଚାଲିଗଲେ ।

ସେଦିନଠାରୁ ବୁଝିଲି, କାହିଁକି ମୋ ପ୍ରତି ସେ ଦୟା ଦେଖାଇବାକୁ ଆଗଭର ହୋଇପଡ଼ନ୍ତି, କାହିଁକି ହାତରେ ପରିବା ଓଜନ କରୁ କରୁ ପାଞ୍ଚ ପରେ ଅନ୍ୟମନସ୍କ ହୋଇ ଗଣାଟା ପୁଣି ଛଅ ପାଖକୁ ଓହ୍ଲାଇ ଆଣନ୍ତି । ଭୁଲ ହେଲା ବୋଲି ଚେତାଇ ଦେଲେ ବିରକ୍ତ ହୋଇ କହନ୍ତି, ଏଁ, ଆମର ପୁଣି ଭୁଲ ହେବ ?

ତୁନି ରହେ ।

ଦିନେ ପଚାରିଲେ, ଆଲୋ ତୁଳସୀ, ତୋ ପିଲାଟିକୁ ଏଣେ କେବେ ଆଣୁନାଉଁ ?

ପରିବା ବୋଝ ଉପରେ ପିଲାବୋଝ ବୋହି ପାରିବ ନାହିଁ । ସେ ପୁଣି ଅତି ଚଗଲା ହୋଇଛି । ଗଛବୃକ୍ଷ ଛୁଣ୍ଡାଇବ ।

ନେ, ଏ କଦଳୀ ପୁଞ୍ଜିକ ତାକୁ ଖାଇବାକୁ ଦେବୁ । ଏ କଣ୍ଠାମଉଚ ତକ୍କ ତୋ ବୋଉକୁ ଦେବୁ ।

ତାଙ୍କ ଢଙ୍ଗ ଓ ବ୍ୟବହାରରେ ଆପତ୍ତି କରିବା ଭଳି କିଛି କେବେ ମୁଁ ଦେଖି ନାହିଁ । ସେ ଯାହା କହନ୍ତି ସବୁଥିରେ ତାଙ୍କ ବେପାରର ଲାଭ କ୍ଷତି କଥା ବିଚାର କରନ୍ତି । କିନ୍ତୁ ମୋ ପାଖରେ ବେପାର କଲାବେଳେ ମୋର କିପରି ଦୁଇପଇସା ଲାଭ ହେବ, ଆଗ ସେ କଥା ବିଚାରନ୍ତି । ଗରିବ ଦିଆଣ୍ତି ବିଧବା, ପିଲାଟିଏର ମା, ଗାଁ ଝିଅ, ପିଲାଦିନୁଁ ଛନ୍ଦା ପରିଚୟ, କେତେ ବୋଲାଣାକ କରିଛି, ସେଥିପାଇଁ ଟିକିଏ ଦୟା ଦେଖାଇବା ଅତି ସ୍ୱାଭାବିକ । ସାହାଯ୍ୟ ଦେବାକୁ ସେ କେବେ ଟଙ୍କାପଇସା ମୋତେ ଦେଇ ନାହାନ୍ତି । ସେ ଜାଣନ୍ତି ମୁଁ ଗ୍ରହଣ କରିବି ନାହିଁ । ଆତ୍ମମର୍ଯ୍ୟାଦା ରଖିବାକୁ ତାଙ୍କ ପାଖରୁ ମୁଁ ଅପସରି ଯିବି । ଲୋକ ଚକ୍ଷୁରେ ତାଙ୍କର ଦାନ ଭଲ ଦିଶିବ ନାହିଁ ।

ପରିବା ବିକ୍ରି ଛଳରେ, ଓଜନ, ଦର, ପଇସା ନେଲାବେଳେ ଅନ୍ୟ ପଇସା ସାଙ୍ଗରେ ମିଶାଇ ପାଞ୍ଚଅଣାକୁ ସାତଣା ଗଣିବା ଏପରି ନାନା ଉପାୟରେ ସେ ମୋର ଲାଭ କରାଇବାକୁ ଚେଷ୍ଟା କରନ୍ତି । ମୋତେ ସେ ଜଣାଇଁ ଦିଅନ୍ତି ଯେ ତାଙ୍କ ହିସାବଟା ଠିକ୍ ।

ଟିମବାବୁଙ୍କର ଛପିଲା ଦୟା ପାଇଲା ଦିନରୁ ମୋ ସଂସାର ସୁରୁଖୁରୁରେ ଚଳିଲା । ଯାହା ରୋଜଗାର ହେଲା ସେଥିରେ ନିତିଦିନିଆ ଖରଚ ଯାଇ ଦୁଇପଇସା ସଞ୍ଚ ରଖିବାକୁ ସୁବିଧା ମିଳିଲା ।

ଦିନେ ମା ପଗ୍ଭରିଲା, ହଇଲୋ, ଟିମବାବୁ କରଜ ଟଙ୍କା କଥା କିଛି କହିନ୍ତି ନାହିଁ ? କିଏ ଜଣେ କହୁଥିଲା, ସେ କୁଆଡ଼େ ଏ ଜମିଟା ନିଲାମ କରି ନେଇ ଯାଉଛନ୍ତି ।

କହିଲି, ନାଇଁ ତ, କେବେ ସେ ଟଙ୍କା କଥା ମୋତେ କହି ନାହାନ୍ତି । ମୁଁ ପଗ୍ଭରିବି ପଗ୍ଭରିବି ହୁଏ । ସାହସ କରେ ନାହିଁ । ଦିନେ ପଗ୍ଭରି ଦେବି ।

କାହିଁକି ପଗ୍ଭରିବୁ ? ତାଙ୍କର ଯଦି ଦୟାଥିବ ସେ ବଳେ ଯାହା କରିବାର କରିବେ । ଯଦି ଭିହ ଦଖଲ ନେବାର କଥା ହୁଏ ବଳେ କହିବେ ।

ବୋଉର ଉପଦେଶ ମାନିଲି ନାହିଁ । ଦିନେ ତାଙ୍କୁ ପଗ୍ଭରି ଦେଲି ।

ସେ କହିଲେ, ସେଥିପାଇଁ ତମେ ବ୍ୟସ୍ତ ହୁଅନା । ଭିହଟା ନିଲାମ ହୋଇ ଯାଇଛି, ମୋ ନାମରେ ତ ଅଛି । ତମେ ସବୁ ସେ ଘରେ ଥିବାଯାଏ କେହି ବାଧା ଦେବେ ନାହିଁ କି କେହି କିଛି କହିପାରିବେ ନାହିଁ । ସମ୍ପତ୍ତି ମୋ ନାମରେ ହେବା ଦ୍ୱାରା ଖଜଣା ଦେବା ଦାୟିତ୍ୱରୁ ତମେ ରକ୍ଷା ପାଇଛ । ହେଲେ, ଏସବୁ କଥା ମୋ ବୋଉ କି ସ୍ତ୍ରୀ ଯେପରି ନ ଜାଣନ୍ତି । ମାଇପି ମଣିଷ, ପରର କୁଶିକ୍ଷାରେ ସେମାନଙ୍କର ପଡ଼ିବାର ଡର ଅଛି ।

ବୋଉ ଶୁଣି ହସିଲା । କହିଲା, ହଉ, ନିଶ୍ଚିନ୍ତ ରହିଥା ।

ମୁଁ ବଲବଲ କରି ତା ମୁହଁକୁ ଅନାଇଁ ରହିଲି । ସେ ହସିଲା କାହିଁକି ? ଟିମବାବୁଙ୍କର ମୋ ପ୍ରତି ଦୟା ଦେଖି ସେ କଅଣ ଭାବିଲା କି ? ତାଙ୍କର କଥାରେ ତା'ର ପରତେ ହେଲା ନାହିଁ ?

ପଗ୍ଭରିଲି, ତୁ ହସିଲୁ କାହିଁକି ? ସେ ମିଛ କହିଲେ ?

ନାଇଁ ଲୋ, ମିଛ କହିବେ କାହିଁକି ? ମତେ ହସ ମାଡ଼ିଲା । ଏମିତି କେତେ ଗତ କଥା, ମୋ ବୟସବେଳର କଥା ମନେ ପଡ଼ିଗଲା । ଜଣେ ଆଉ ଜଣକୁ ମିଛରେ ଦୟା ଦେଖାଏ ନାହିଁ । କେହି ତ କାହାର ଭାଇ ବନ୍ଧୁ କୁଟୁମ୍ବ ନୁହନ୍ତି । ମନରେ କେଉଁ ଆଶା ଥାଏ ବୋଲି ସିନା ! ଦେଣନେଣର ଦୁନିଆଁ !

ଦରହସିଲା ଓଠରେ ସେ ମୋ ମୁହଁକୁ ଗ୍ଭହିଁଲା । ତାର ସେ ଗ୍ଭହାଣୀ ଭିତରେ କଅଣ ମୁଁ ଅନୁଭବ କଲି କହି ପାରିବି ନାହିଁ । ଗୋଟାଏ କୋହରେ ମୋ ଗ୍ରୁଡି ଥରି ଉଠିଲା । ମୁଁ ବୋଉକୁ କିଛି ନ କହି ପିଲାଟିକୁ ନେଇ ଅନ୍ୟ କାମରେ ମନ ଦେଲି । ବୋଉର ସେଇ କଥା କେଇପଦ ମନରେ ଛଟପଟ ହେଲା ।

ଦେଣ ନେଣର ଦୁନିଆଁ ! ଟିମବାବୁ ମତେ ଦେଇଛନ୍ତି କଅଣ, କିଏ ବା ମୋତେ କଅଣ ଦେଇଛି ? ମୁଣ୍ଡ ଝାଳ ତୁଣ୍ଡରେ ମାରି ମୁଁ ମୋର ସଂସାର ଚଳାଇଛି ।

ତା ପରେ ଯେତେଥର ପଢ଼ିବା ପାଇଁ ତାଙ୍କ ବଙ୍ଗଳାକୁ ଯାଇଛି, ମୋତେ ଲାଗିଛି ଯେପରି କିଏ ପଛରୁ ଗୋଡ଼ ଧରି ଅଟକାଇ ରଖିଛି । ଟିମବାବୁ ଏଣିକି

ଗୃକର ଝୋଟାକୁ କୌଣସି ଅବସରେ ଅନ୍ୟଆଡ଼େ ବରଗି ନଟକ ପରବା ଓଜନ କରନ୍ତ । ମୁଁ ଡରଲା ଅଖିରେ ତାଙ୍କୁ ଗୃହେଁ । ସେ କଛୁ ନ ଜାଣିଲା ପର ନଜ କାମରେ ବ୍ୟସ୍ତ ରହନ୍ତ ।

ତାଙ୍କର ସହାନୁଭୂତ ତାଙ୍କ ମନତଳେ ଛପିଲା ଅଗ୍ରହର ଗ୍ଛାୟା । ସେ ଅଗ୍ରହଟି କଅଣ, ମତେ ଅଜଣା ନ ଥିଲା । ବୋଉ କଥା, ପିଲା କଥା, ମୋର ଭଲମନ୍ଦ ହାଲଗୃଲ ପଗ୍ଚର ବୁଝିବାକୁ ସେ ବ୍ୟାକୁଲତା ଦେଖାନ୍ତ । ମୁଁ ପରବା ବୋଝ ନେଇ ଗୃଲ ଅସିଲେ ମୁହଁ ଫେରାଇ ମୋ ଅଡ଼େ ଗୃହାନ୍ତ ।

ମୋ ମନ ଉପରେ ସେଇ ଗୃହାଁଣୀର ପ୍ରଭାବ ଯେ ନ ପଡ଼େ ଏପର ନୁହେ । ନରେଲା ବେଳରେ, ଯେତେବେଳେ ହାଟକୁ ମୁଁ ଏକୁଟିଅ ଯାଉଥାଏ କ ସେଠାରୁ ଫେରୁଥାଏ, ନୋହଟଲ ନଗ୍ଲଟିଅ ଗଛ ଅଧରେ, ସବୁ କଥା ମୋର ମନରେ ଘାଣ୍ଟି ଚକଟି ହୁଏ । ଗ୍ଛାତ ନରମି ଅସେ । ମନ ଦୁର୍ବଳ ହୁଏ । କେତେ ଲୋକଙ୍କର ରୂପ ଢଙ୍ଗ ମନେ ପଡ଼େ । ଦରମଲା ଦେହଟା ଫୁଲକ ଉଠେ— ଦଉଡ଼କଟା ଓଲେଇ ଗାଈ ପର ଏଣେ ତେଣେ ଦଉଡ଼ଯାଏ । କଲଙ୍କିଲଗା ସରଗ ଫେର ଅଟେସ ସେଇ ଖୁଣ୍ଟ ମୂଳକୁ, ଯେଉଁଠି ବନ୍ଧା ହୋଇଥାଏ ବାଛୁରୀ, ମନୁଅଁ । ତା'ର ମୁହଁରେ କଲେ ଷୀର ଦେଇ ଅଖିରୁ ଲୁହ ଗଡ଼ାଇ ମୁଁ ମନ ଓ ଉତ୍ତେଜନାକୁ ଶାନ୍ତ କରେ ।

୧୯

ହାଟ କାମ ସାର ମନ ଆନନ୍ଦରେ ଫେରୁଥିଲ ।

ଗ୍ଳବୋଉ ଖୁଡ଼ୀର ସାଙ୍ଗ ଗ୍ଛଡ଼ିଲା ଦନୁଁ ମୋର ଅଉ କେବେ ଡେର ହୁଏ ନାହିଁ । ସେଇ ସରୁ ଧୋବ ଫରଫର ଲୁଗା ପଞ୍ଜାବୀ ପିନ୍ଧା ବାବୁ, ଯାହାଙ୍କର ନାକ ତଳେ ପ୍ରଜାପଚ୍ଛଅ ନଶ ବେଢଙ୍ଗର ଦଶେ, ସେଇ ଅସି ସବୁଥର ପର ବୋଝକ ପରବା ହୁଣ୍ଡା-ମୂଲ କର ଗୃରଟଙ୍କା ଦେଇ କଣିନେଲେ । ମୂଲ ଦ' ଟଙ୍କାରୁ କଛୁ ବଳକା ହେବ । ଲାଭ ଯାହା ହେଲା ସେତକ ଅଣ୍ଟାରେ ଖୋସି ମୁଁ ଫେରଲ । ଭାବଲ, ବାବୁ ଏବେ ମୋର ଅଡ଼କୁ ଅନାଇଁ ଅନାଇଁ ହସନ୍ତୁ, ତାଙ୍କ ରୁମାଲ କାଢ଼ି ମୁହଁ ପୋଛୁ ବାସନା ଉଡ଼ାନ୍ତୁ, ସେଥିରେ ମୋର କଅଣ ଅଛି ? ତାଙ୍କର ସେଇ ଗୃକର ଝୋଟା ଏବେ ଅଖି ତରାଟି ଦାନ୍ତ ଚପି ସାପ ପର ଫଁ ଫଁ ହେଉଥାଉ ।

ଯାହା କଥା ଭାବୁଥିଲ, ସେଇ ବରୁଣେଇ ଗାଁ କଡ଼ ଗ୍ଳୋଟ ତୋଟା ଭତରୁ ଅସି ଅଗରେ ଠିଅ ହେଲା । ଅଖି ଚକ୍‌ ପକ ବୁଲୁଥାଏ । ମୋର ଛାତ ଦବକ୍କ ଗଲା । ମୁଁ ଠିଅ ହୋଇ କହଲ, ବାଟ ଗ୍ଛାଡ଼ ଠିଅ ହେଉନୁରେ ।

ସେ ରୂଢ଼ ସ୍ୱରରେ ପଚ୍ଚାରିଲା, ତୋ ନା କଅଣ ଲୋ ?

ମୁଁ କଥା ଉପରେ ଜୋର୍ ଦେଇ କହିଲି, ମୋ ନାମରୁ ତତେ କଅଣ ମିଳିବରେ, ବାଟରୁ ଘୁଞ୍ଚ ।

ତୁ ସେ କାନ୍ତ୍ରାକ୍ଟି ବାବୁଙ୍କୁ ଚହ୍ନୁ ?

କେଉଁ କାନତ୍ରାକ୍ଟି ବାବୁ ?

ହସିଲା । କହିଲା, ଓ, ତୁ ଜାଣୁ ନାହିଁ, ସେଇ ଯେଉଁ ବାବୁ ସବୁ ହାଟ ପାଳି ତୋଠୁଁ ପରିବା କିଣନ୍ତି, ପଇସାକ ଚଳ ଦ ପଇସା ଦେଇ ନିଅନ୍ତି । ସେଇ ବାବୁଙ୍କ କଥା କହୁଛି । ତାଙ୍କ ନାଁ ବଣିବାବୁ, ସେ ମାଟି କାନ୍ତ୍ରାକ୍ଟି, ସେ ମୋ ଖାଉଁନ୍ଦ ।

ତାର କଳାମିଚମିଚ ବଳିଲା ଦେହ ଓ ବଡ଼ ବଡ଼ ରଙ୍ଗିଲା ଆଖିକୁ ଚାହିଁଲି । ଗୁଡ଼ିଚ ଚମକି ଉଠିଲା । ଥଙ୍ଗେଇ ଥଙ୍ଗେଇ କହିଲି, ହାଟକୁ ଶହ ଶହ ଲୋକ ଆସୁଛନ୍ତି, ଯାହାଠୁଁ ଦି ପଇସା ଲାଭ ପାଇଲି ତାକୁ ବିକିଲି ପରିବା । କିଏ ତୋ କାନ୍ତ୍ରାକ୍ଟି ବାବୁ, କିଏ ତୋ ଖାଉନ୍ଦ, ମୋର ଜାଣିବା କି ଚହ୍ନିବା ଦରକାର ନାହିଁ ।

ମୁଣ୍ଡ ଝେଙ୍ଗାରି କହିଲା, ତୋର ସିନା ଦରକାର ନାହିଁ, ତାଙ୍କର ଦରକାର ଅଛି ଲୋ । ତୋ ସଙ୍ଗେ ଦେଖା କରିବାକୁ ମତେ ସେ କହିଛନ୍ତି । କେତେ ଥର କହିଲେଣି । ଆଜି ଜଗର୍ ଲଗେଇଲେ । ଅଧା ବାଟରେ ତତେ ଭେଟିବାକୁ ଆଇଲି ।

ଡରି ଡରି ପଚ୍ଚାରିଲି, ମୋଠାରେ ତାଙ୍କର କି କାମ ?

ଆହା ହା, ବୁଝିଲୁ ନାହିଁ କି, କାନ୍ତ୍ରାକ୍ଟିବାବୁ ସେ, ମାଟି କାମ କରିବାକୁ ତାଙ୍କର ବହୁତ ଲୋକ ଲୋଡ଼ା । ଚଇଲିପଡ଼ାରେ ନଈବନ୍ଧ ଦୋହରା ପଡ଼ୁଛି । ଦୁଇଶ ଲୋକ ମାଟି କାଟି ବୋହୁଛନ୍ତି, ମାଇପେ, ମରଦ, ପିଲାଏ ।

ମତେ ମାଟି କାମ କରି ଆସେ ନାହିଁ ।

ସେ କଥା ସେ ଜାଣନ୍ତି । ଆମ ବାବୁଙ୍କର ଅଛି ଦୟା । ଦେଖୁନୁ, କେତେ ଲୋକଙ୍କୁ ଦାନା ପାଣି ଦେଇଛନ୍ତି । ଖାଲି ବାଛି ବାଛି ଟଳା ଟୋକା ଟୋକୀ ରଖନ୍ତି । ସେମାନେ ଭଲ କାମ କରି ପାରିବେ, ବେଶି କାମ କରିବେ । ଖରା ବରଷା ବାଧିବ ନାହିଁ ।

ବିରକ୍ତ ହୋଇ କହିଲି, ତୋ ବାବୁ ତତେ ସିନା ବଡ଼, ମୋତେ ବଡ଼ ନୁହନ୍ତି । ଉଠ୍, ମୋର ଡେରି ହେଉଛି ।

ମୋ ବାବୁ, ବଣିବାବୁ, ସମସ୍ତଙ୍କଠୁ ବଡ଼ । ତୋ ଉପରେ ତାଙ୍କର ନଜର ପଡ଼ିଛି । ମାନେ, ତୋ ଦୁଃଖ ଦେଖି ତାଙ୍କ ମନରେ କଷ୍ଟ ହୋଇଛି ।

ମୋର ଦୁଃଖ କଅଣ ସେ କେମିତି ଜାଣିଲେ ?

ବୁଝି ପାରୁନୁ ? ଯିଏ ମଣିଷ ଚରାଏ ସେ ଦେଖୁ ଦେଖୁ ମଣିଷ ଚେହ୍ନେ । ତତେ ଦେଖି ସେ ମତେ କହନ୍ତି, ଆହା ହା, ଦେଖିଲୁ ରେ ବଳିଆ, କାହା ଘରର ଝିଅ, କାହା ଘରର ବୋହୂ, କପାଳ ଫାଟିଛି । ପିଲା ବୟସରେ ମୁଣ୍ଡରେ ବୋଝ ଧରି ହାଟକୁ ଆସୁଛି । ଅଣଅଡ଼ଆ ହୋଇ ବସେ ମୁହଁ ଶୁଖାଇ । ହାଟକୁ ଆସିବାକୁ ଯେପରି ତାର ମନ ନାହିଁ, ଖାଲି ବାଧ୍ୟରୁ ଆସେ । ପେଟ ପାଟଣା କଥା । କେହି ବୋଧହୁଏ ତାର ନାହିଁ । ସେଇଥି ପାଇଁ ଦୁଃଖ କରୁଛି । ଆହା ହା, ହାଟରେ ସହସ୍ର ଲୋକଙ୍କ ଭିତରେ ବାରି ହୋଇ ପଡ଼େ ସେ ଝିଅଟି ।

ହସ ମାଡ଼ିଲା । ହସ ଚୁପିରଖି କହିଲି, ତୋ ବାବୁଟି ତ ଅଛି ଭଲ ଲୋକରେ ବଳିଆ, ମଣିଷର ଦୁଃଖ, ମଣିଷର ମନକଥା ଚାହିଁ ଚାହିଁ ବୁଝନ୍ତି ।

ଚାହିଁ ଚାହିଁ ନୁହେଁ ଲୋ, ତୋ ନାଁ । କଅଣ କି ?

କାହିଁକି, ତୋ ବାବୁ ଜାଣିବାକୁ ଚାହିଁଛନ୍ତି ?

ଜାଣିବାକୁ ଚାହିଁ ନାହାନ୍ତି ଯେ ଜାଣିବାକୁ ତାଙ୍କର ଆଗ୍ରହ ।

ମୁଁ ତ ହାଟକୁ ଆସେ, ମୋ ନାମ ହାଟୋଇ ।

ସେଇଆ ହେଉ । ଆଉ, ତତେ ମୁଁ ବାଟରେ ଭେଟିଲି, ମୋ ନାମ ବାଟୋଇ, ବଳିଆ ନହେଁ । କଅଣ କହୁଥିଲିଟି ? ତତେ ଥରେ ଚାହିଁ ସେ ତୋ କଥା ବୁଝି ନାହାନ୍ତି ଲୋ ହାଟୋଇ, ତତେ ଦେଖିବାକୁ ନିଛ ହାଟ ପାଳକ ସେ ଆସନ୍ତି । କେମିଛି ତତେ ଅଡ଼େଇ ଅଡ଼େଇ ଚାହାନ୍ତି ମନେ କଲୁ ? କେମିଛି ଦଣରେ ହାତ ମାରି ହସନ୍ତି ?

ତାଙ୍କ ହସ କି ତାଙ୍କ ଚାହାଣୀ ମୁଁ ଦେଖି ନାହିଁ । ମୋ ପରିବା ମୋ ଦଣ୍ଡିରେ ମୋର ନଘା ଥାଏ ।

ବାବୁଙ୍କ ପଇସା ମୁଣିରେ ନୁହେଁ ?

ପଇସା ମୁଣିରେ ନଜର ଦେବାକୁ ମନ କଲେ ମୁଣ୍ଡରେ ବୋଝ ଧରି ହାଟକୁ ଆସିବାକୁ ପଡ଼ନ୍ତା ନାହିଁ । କେତେ କାଳବଟି ବାବୁ ତାଙ୍କର ପଇସା ମୁଣି ଧରି ମୋ ଦୁଆରକୁ ଦଉଡ଼ନ୍ତେ । ଉଠ୍, ଉଠ୍ ବାଟରୁ ।

ବାଟ କଡ଼ ଗୁଗୁଚିଆ ବଣ ଭିତରକୁ ଗୋଡ଼ ବଢ଼ାଇଲି । ବଳିଆର କଥାରେ ମୋର ରାଗ ହେଲା ନାହିଁ । ମୁଁ ବୁଝି ପାରୁଥିଲି, ବଳିଆର ପ୍ରତି କଥାରେ ଛପି ଛପି ଦେଖା ଦେଉଛି ତାର ଖାଉଁଦ ପ୍ରତି ରାଗ, ରୋଷ ଓ ମୋ ପ୍ରତି ଅଭିମାନ ।

ବଳିଆ ବାଟରୁ ଅଡ଼େଇ ଗଲା । ମୋ କଥାରେ ତାର ମୁହଁର ଆଖି ବଦଳି ଗଲା । ସେ ଖୁସି ହୋଇ ମୁଣ୍ଡ ଠଙ୍ଗାରି କହିଲା, ଅସଲ କଥାଟା କହି ନାହିଁ ଯେ, ଟିକିଏ ରହ । ବାବୁ କହୁଲେ, ଆରେ ବଳିଆ, ତାକୁ ଦିନେ କସେଲାରେ କହୁରୁଟି— ।

କଥା ଅଧା ରଖି ଦେଲି ।

ଅଗ୍ରହର ଛଳନା କରି ଶୁଣିବାକୁ ମୁହଁ ବୁଲାଇ ପଚାରିଲି, କ'ଣ କହୁଚ ?

ହସିଲା ମୁହଁରେ ଉତ୍ତର ଦେଲା, କହିଲେ, କହୁଛନ୍ତି, ସେ କାହିଁକି ହାଟକୁ ଯାଇ ଖରାରେ ବସି ପରିବା ବିକୁଛୁ ? ଯାହା ତାର ପରିବା ଥିବ ସବୁ ଆଣି ଆମର ଘରେ ଓଜନ କରି ଦେଇଯିବ ।

ହାଟରେ ଦର ଯାହା ହୋଇଥିବ ସେଇ ଅନୁସାରେ ପଇସା ଗଣି ନେଇଯିବ । ତାହେଲେ ଆମକୁ ଆଉ ହାଟକୁ ଦଉଡ଼ିବାକୁ ପଡ଼ିବ ନାହିଁ, ତାକୁ ବି ଅଧିକବେଳ ରହିବାକୁ ହେବ ନାହିଁ । କେମିତି, ମନକୁ ଆସୁଛି ଟିକେ ?

ଆହା ହା, ବାବୁଙ୍କର ବଡ଼ ଦୟା ରେ ବଳିଅ, ଗରିବଙ୍କ ଉପରେ ତାଙ୍କର ଭାରି ନଜର । ଭଲ କଥା ତ କହୁଛନ୍ତି । ଏଥର ସେଇଆ କଲେ ଭଲ ହେବ । ମିଛଠାରେ ବସି ବସି ବେଳ କାଟିବ କାହିଁକି ?

କଟମଟ କରି ମୋ ମୁହଁକୁ ଚାହିଁଲା । ନାକ ଫୁଲାଇ କହିଲା, ବାବୁଙ୍କୁ ସେଇଆ ମୁଁ ଖବର ଦେବ ?

ଜବାବ ନ ଦେଇ ମୁଁ ବାଟେ ବାଟେ ଚାଲି ଆସିଲି ।

୨୦

ହସି ହସି ପେଟ ପଚାସ ହେଲା । ଛବିର ମୁଣ୍ଡ ବାନ୍ଧି ଦେଉଁଶୁ ତାର ପିଠି ଉପରେ ମୁଣ୍ଡ ରଖି କହିଲି, ଭଲ କରି ନାହିଁ ଛବି ? ବାବୁଙ୍କର ଯେଉଁ ଚାକର ଟୋକା, ଯେମିତି କଟମଟ କରି ମତେ ଚାହିଁଲା, ମୁଁ ଯଦି ତାର କିଏ ହୋଇଥାନ୍ତି, ମତେ ସେ ସେଇଠି ଗିଳିଦେଇ ଦେଇଥାନ୍ତା । ପରକୁ ପର । ମୋର ଯାହା ଖୁସି ମୁଁ କରିବି, ତାର ଥାଏ କଅଣ ?

ଛବିର ମୁଣ୍ଡ ବନ୍ଧା ସରିଥିଲା । ସେ ମୋ ଆଡ଼କୁ ମୁହଁ କରି ବସିଲା । ଭାବି ଭାବି ପଚାରିଲା, ଆଗ୍ଗା ଭୁଲସୀ ଅପା, ତେମେ କଅଣ ସତରେ ପରିବା ନେଇ ଏଥର କାନ୍ତବତି ବାବୁଙ୍କ ଘରକୁ ଯିବ ?

ଗଲେ କ୍ଷତି କଣ ?

କ୍ଷତି ନାହିଁ ଯେ—

ଜଣକୁ ସବୁ ପରିବା ବିକି ଦେଲେ ଜଲ୍‌ଦି କାମ ଛିଣ୍ଡିଯିବ । କେତେ-ବେଳୁ ଆସିଲଣି, କେତେ ଗପିଲଣି, ତଥାପି ସୂର୍ଯ୍ୟ ବୁଡ଼ି ନାହାନ୍ତି । ଆଉରି ଆଗରୁ ଆସିଲେ ହଟେଁ ବସି କାଞ୍ଜିଗାତ ଖେଳିବା । ଏକା ତେନ୍ତୁଳିମଞ୍ଜି ଯୋଗାଡ଼ କରି ରଖିଥିବୁ ।

ତମ ମନୁଆଁ ତେଣେ କାନ୍ଦିବ ନାହିଁ ?

ମନୁଆକୁ ବୋଉ ବୁଝାଇଶୁଝାଇ ରଖିଥିବ ଯେ । ସତେ ଲୋ ଛବି, ତତେ ଦେଖିଲେ ଘଡ଼ିକ ପାଇଁ ମୁଁ ସବୁ ଭୁଲିଯାଏଁ, ମନୁଆଁ ବି ମନେ ପଡ଼େ ନାହିଁ ।

ତାର ମୁଣ୍ଡଟିକୁ ମୋର ବେକ ଉପରକୁ ଅଉଜାଇ ଆଣି ଗାଲ ଉପରେ ଚୁମା ଦେଲି । ପିଠି ଆଉଁସି କହିଲି, ଆର ଜନ୍ମରେ ତୁ ମୋ ଝିଅ କି ଭଉଣୀ ହୋଇଥିଲୁ ।

ମନୁଆଁକୁ ଦିନେ ସାଙ୍ଗରେ ଆଣିବ ନାହିଁ ?

ବୋଉ ଉପରେ ଜଳିତା ବଡ଼ା ? ସେ ପୁଣି ବଡ଼ ଅଝଟିଆ । ଦିନେ ସହଳ ସହଳ ହାଟରୁ ଫେରିଲେ ତତେ ସାଙ୍ଗରେ ନେଇଯିବି ଯେ, ବେଳ ଥାଉଁ ଥାଉଁ ତୋ ଭାଇ ଫେରିବା ଆଗରୁ ତତେ ଛାଡ଼ ଦେଇ ଯିବି । ବାଟତ ବେଶି ନୁହେଁ ।

ଭାଇ ଯଦି ଜାଣିବ, ମତେ ଗାଳି ଦେବ ।

ସେ ଜାଣିବେ ନାହିଁ । ମୁଁ ଏଇଠିକି ଯା ଆସ କରେ ବୋଲି ତୁ ତାଙ୍କୁ କହୁଛୁ ?

ନାଇଁ, ତାଙ୍କୁ ମୁଁ କହି ନାହିଁ । ଦିନେ ସେ ତାଙ୍କ ମନକୁ ପଚାରିଲେ, ତୋ ମୁଣ୍ଡ ତ ଆଗେ ଅଲଗା ହୋଇ ଫୁର୍ ଫୁର୍ ଉଡ଼ୁଥିଲା, ଆଜିକାଲି କିଏ ବାନ୍ଧି ଦେଉଛି ? ମୁଁ ମିଛରେ କହିଲି, ମୋ ହାତରେ ବାନ୍ଧୁଛି । ସେ ଖୁସି ହେଲେ । ତହିଁ ଆରଦିନ ମୋପାଇଁ ଅଇଣି ପାନିଆଁ କିଣି ଆଣି ଦେଲେ । ଆଉ କେବେ କିଛି ପଚାରନ୍ତି ନାହିଁ । ତାଙ୍କର ମନା, ଆମ ଘରକୁ କେହି ଆସିବେ ନାହିଁ କି ମୁଁ କାହା ଘରକୁ ଯିବି ନାହିଁ ।

ଆଚ୍ଛା, ମନୁଆଁକୁ ଦିନେ ସଙ୍ଗରେ ଆଣିବି, ନଇଲେ ଯେଉଁ ଦିନ ହାଟ ପାଳି ନ ଥିବ, ସେ ଦିନ ସିଧା ସିଧା ଏଠାକୁ ଆସି ତତେ ସାଙ୍ଗରେ ନେଇଯିବି ଯେ ଆମ ଘର, ଆମ ଗାଁ ବୁଲିଚାଲି କରି ଦେଖି ଆସିବୁ । ମୋ ବୋଉ ତତେ ଦେଖିବାକୁ କହେ । ମୋ ତୁଣ୍ଡରୁ ତୋ କଥା ଶୁଣିଲେ ସେ ଖୁସି ହୁଏ ।

ଛବି କହିଲା, ଭାଇକୁ ନ ପଚାରି ମୁଁ କୁଆଡ଼େ ଯିବି ନାହିଁ । ସେ ଯେଡ଼ିକି ସ୍ନେହୀ ସେଡ଼ିକି ରାଗୀ ।

ସଞ୍ଜ ହୋଇଯିବ ବୋଲି ମୁଁ ବିଦାୟ ନେଇ ବାହାରିଲି । ତା ସାଙ୍ଗରେ ପଖାଳ ଗଣ୍ଡିଏ ଖାଇ ବସିବାକୁ ସେ ଜିଗର୍ ଧରିଲା । କହିଲା, ତେମେ ଆସିବ ବୋଲି କେଡ଼େ କଷ୍ଟରେ କଣ୍ଟାମଟିଚ ଶାଗ ପତର କରି ତୋଳି ଖରଡ଼ି ରଖିଛି । ତେମେ ଯଦି ନ ଖାଇ ଯାଅ, ତମ ନାଁରେ ମୁଁ ନିଶ୍ଚୟ ଉପାସ ରହିବି ।

ତା ଅନୁରୋଧ ମୁଁ ଲଘିଂ ପାରିଲି ନାହିଁ, କେବେ ଲଘିଂ ନାହିଁ । ଗରିବ ଘରେ ଜନ୍ମ ହୋଇଛି ସିନା, ମନଟି ତାର ବଡ଼ । ହାଟ ଫେରନ୍ତି ଅତ, ପିଜୁଳି, ପାଚିଲା କଦଳୀ, ଘିପିଠା ମୁଁ କିଣି ଆଣି ତାକୁ ଦିଏ । ସେ ଆଗ୍ରହରେ ଟିକିଏ ଖାଏ, ବାକିତକ ରାଣ ନିୟମ ଦେଇ ମନୁଆଁ ପାଇଁ ମୋର ହାତରେ ଫେରାଇ ଦିଏ । ବୋଉ ପାଇଁ କଞ୍ଚା ଲଙ୍କାମରିଚ, ମନୁଆଁ ପାଇଁ କାକୁଡ଼ି ଗଛରୁ ତୋଳି ଦିଏ । ମୁଁ ମନା କଲେ ସେ ଶୁଣେ ନାହିଁ ।

ବାଟରେ ସୁରଙ୍କ କଥା ମନେ ପଡ଼ିଲା । ଅହା, ଦଇବ ଯଦି କପାଳ ଫଟାଇ ନ ଥାନ୍ତା, ଛବି ଯଦି ସୁରଙ୍କର ହାତ ଧରି ମୋ ପାଖକୁ ଯାଇଥାନ୍ତା, କେଡ଼େ ଆନନ୍ଦରେ ଅମର ବେଳ କଟିଥାନ୍ତା । ରାମ ଲକ୍ଷ୍ମଣ ପରି ଦିଶିଇ ।

ଆଖିରୁ ଲୁହ ପୋଛିଲି ।

ସୁରଙ୍କ ସଙ୍ଗେ ଅନେକ ଦିନୁ ଦେଖା ହୋଇ ନାହିଁ । ସେ ବି ଆଉ ଆସନ୍ତି ନାହିଁ । କିଏ ଜଣେ ବୋଉ ଆଗରେ କହୁଥିବାର ଶୁଣିଥିଲି, ସୁର ଉଦାସିଆ ହୋଇ ବୁଲୁଛନ୍ତି । କାହାରି ସଙ୍ଗେ କଥାଭାଷା ହୁଅନ୍ତି ନାହିଁ । ମୂଲ ଲାଗିବାକୁ ଯାଇ ତିନ ଚାରି ଦିନରେ ଥରେ ଘରକୁ ଫେରନ୍ତି । ଘଡ଼ିଏ ଦିଘଡ଼ି ଦାଣ୍ଡ ପିଣ୍ଡାରେ ବସି ପୁଣି ଚାଲି ଯାଆନ୍ତି ।

ସୁର ଆଉ ଛବି, ଭାଇ ଭଉଣୀ ପରି ସୁନ୍ଦର ଦିଶିବେ । ଦିହିଙ୍କି ଦି ଆଖିରେ ଦେଖିଲେ ସବୁ ଦୁଃଖ ଭୁଲି ଯିବ ।

କିନ୍ତୁ, ଛବିର ଭାଇ ! ମୋର ଦୁର୍ନାମ, ଭୁଣ୍ଡବାଇଦ ତାଙ୍କର କାନରେ ପଡ଼ି ନ ଥିବ ? କାଳେ ସେ ମନା କରିବେ ? ପ୍ରସ୍ତାବ ପକାଇବ କିଏ ?

୨୧

ଅରି ପାଲି ହାଟକୁ ବଣିବାକୁ ଏପାଖ ସେପାଖ ବୁଲି ମୋତି ପସରା ପାଖରେ ପହଞ୍ଚିଲେ । ତାଙ୍କ ପଛେ ପଛେ ଥାଏ ତାଙ୍କର ଚାକର ଟୋକା ବଳିଆ । ମୋ ଅଡ଼କୁ ଚାହିଁ ସେ ଗମ୍ଭୀର ହୋଇ ଉଠିଲା । ବାବୁ ମୋ ପସରାରେ ହାତ ମାରି ଏଇଟା ସେଇଟା ଦେଖି କହିଲେ, ଅରେ ବଳିଆ, ସ୍ବାରି ପରିବା ବେଶ୍ ଛନଛନିଆ ଦିଶୁଛି । ସବୁ ଓଜନ କରି ନେ । ଦର କଣ ଲୋ ?

ଅଗ୍ରହଭରା ଆଖିରେ ମୋ ଅଡ଼କୁ ଚାହିଁଲେ । ଆଉ ପାଞ୍ଚଟା ଗ୍ରାହକଙ୍କୁ ଯେଉଁ ଦର କହେଁ ତାଙ୍କୁ ମଧ୍ୟ ସେଇଆ କହିଲି । ସେ ଆପତ୍ତି ନ କରି ସବୁ ଓଜନ କରାଇ ନେଲେ । କହିଲେ, ବଳିଆ ତୁ ପରିବା ନେଇ ଆଗେ ଆଗେ ଯା, ମୁଁ ହିସାବ କରି ଦାମ୍ ଦେଇ ପଛରେ ଯିବି । ବଳିଆ ମୋ ଅଡ଼କୁ କଣେଇଁ ଚାହିଁ

ପଇବା ବୋଝ ନେଇ ଚାଲିଗଲା । ବାବୁ ହିସାବ କରି କହିଲେ, ତୋର ହେଲା ଦୁଇଟଙ୍କା ଚାରିଅଣା । ପକେଟରୁ ଚମଡ଼ା ଥଳି କାଢ଼ି ବଡ଼ାଏ ନୋଟ ବାହାର କଲେ । ତହିଁରୁ ଖଣ୍ଡିଏ ମୋତେ ଦେଇ କହିଲେ, ନଅ । ତମର ଦାମ୍ କାଟି ରଖି ବାକି ମୋତେ ଫେରସ୍ତ ଦିଅ ।

ମୁଁ କହିଲି, ବାବୁ ଗରିବ ପସରା, ଦଶଟଙ୍କା ଅଢ଼େଇ ଟଙ୍କାର ଚିଜ । ମୋ ପାଖରେ ଦଶଟଙ୍କାର ରେଜା ନାହିଁ । ଆପଣ ଭଙ୍ଗାଇ ଆଣି ମୋତେ ଦିଅନ୍ତୁ ।

ସେ ନୋଟ ବଡ଼ାକ ଚମଡ଼ା ଥଳିରେ ରଖିଲେ । ହସ ହସ ହୋଇ କହିଲେ, ଆଚ୍ଛା, ଚାକର ତ ପଇବା ନେଇଗଲାଣି, ମୁଁ ନୋଟ ଭଙ୍ଗାଇବାକୁ ଚେଷ୍ଟା କରେ । ତମେ ସେ ଖଣ୍ଡ ରଖିଥାଅ । ତମ ପଇସା ଦେଲେ ମୁଁ ମୋ ନୋଟ୍ ଫେରସ୍ତ ନେବି ।

ପ୍ରତିବାଦ କରିବା ଆଗରୁ ସେ ହାଟର ଗହଳି ଭିତରେ ମିଶିଗଲେ । ମୁଁ କୌଣସି କଥା ଭାବିବାକୁ ବେଳ ପାଇ ନ ଥିଲି । ଅପେକ୍ଷା କଲି । ସେ ଆସିଲେ ନାହିଁ । ହାଟ ଭାଙ୍ଗି ଭାଙ୍ଗି ଆସିଲା । ମୁଁ ମୋ ଜାଗା ଛାଡ଼ି ଉଠିଲି । ଚାରିପଇସା ବଟା ଦେଇ ନୋଟ ଖଣ୍ଡି ଗୋଟିଏ ଲୁଗା ଦୋକାନରେ ଭଙ୍ଗାଇଲି । ମୋ ପଇବାର ଦାମ୍ ମୁଁ ଅଲଗା ବାନ୍ଧି ରଖିଲି । ବାବୁଙ୍କ ଟଙ୍କା ହାତରେ ଧରି ପୁଣି ଅପେକ୍ଷା କଲି । ତାଙ୍କର ଦେଖା ଦର୍ଶନ ମିଳିଲା ନାହିଁ ।

ହାଟ ଭାଙ୍ଗିଲା । ବେଳ ବୁଡ଼ି ଆସିଲା । ତଥାପି ବାବୁଙ୍କର ଦେଖା ନାହିଁ । ଭାବିଲି, ବାବୁଙ୍କ ଘର ଅଡ଼େ ଯାଇ ପଇସା ଦେଇ ଆସିବି । ମନ କାହିଁକି ଡାକିଲା ନାହିଁ । କି ଉଦ୍ଦେଶ୍ୟରେ କେଜାଣି ସିଧା ସିଧା ତାଙ୍କ ଘରକୁ ଯାଇ ପଇବା ଦେଇ ଆସିବାକୁ ସେ ଖବର ପଠାଇଥିଲେ । ମୁଁ ଜାଣି ଜାଣି ଯାଇ ନ ଥିଲି । ହୁଏ ତ ତାଙ୍କ ଘରକୁ ଯିବାକୁ ପ୍ରକାରାନ୍ତରେ ମୋତେ ବାଧ କରିବେ ବୋଲି ସେ ଏପରି ଗୋଟାଏ ଛଳନା ଖେଳିଛନ୍ତି ।

ପୁଣି ଭାବିଲି, ବାବୁଙ୍କର ମନରେ ଯାହା ଥାଉ, ଗୋଟାଏ ହାତରେ ତାଳି ବାଜେ ନାହିଁ । ତାଙ୍କର ଉଦ୍ଦେଶ୍ୟ ଯେମିତି ସେ ରହନ୍ତୁ । ମୁଁ କାହିଁକି ତାଙ୍କର ଧାରୁଆ ରହିବି ? ମନରେ ବାରି କଥାର ଘଣ୍ଟାଚକଟା ହେବ ? ତାଙ୍କ ଧନ ତାଙ୍କୁ ଫେରାଇ ଦେଇ ଯିବି । ଆଉଦିନେ ଆଗ ପଇସା ନ ନେଇ ପଇବା ଛାଡ଼ି ଦେବି ନାହିଁ ।

ଏତେ କଥା ସିନା ଭାବିଲି, ଗାଁ ଭିତରକୁ ଯିବାକୁ ଗୋଡ଼ ଚଳିଲା ନାହିଁ । ସିଧା ସିଧା ଘରକୁ ଫେରିଲି । ଛୁଆକୁ ଦେଖି ଯିବାକୁ ମନ ହେଉଥିଲା । ମୋ ପାଇଁ ସେ ଦାଂ ପହରେ ଅପେକ୍ଷା କରି ରହିଥିବ । କିନ୍ତୁ, ବେଳ ଡେରି ହେଲାଣି । ତା ଭାଇ କାମରୁ ଫେରିବେଣି । ଯିବା ଭଲ ହେବ ନାହିଁ ।

ଘରକୁ ସିନା ଫେରିଲି, ପରର ଟଙ୍କା ପାଖରେ ରଖି ମନରେ ମୋର ଶାନ୍ତି ନ ଥାଏ । ବାବୁଟି କଅଣ ଭାବୁଥିବେ ? ବଳିଆକୁ କହୁଥିବେ, ଆରେ ସେଇଟା ଠକ, ଚୋରଣୀ—

ମନ ମୋର ଛଟପଟ ହେଲା ।

ବୋଉର ଦେହ ଭଲ ନ ଥାଏ । ଦେହ ତାତେ, ଗୋଡ଼ ହାତ ବଥାଏ । ତଥାପି ସେ ଘୁସୁରି ଘୁସୁରି ବାର କାମ କରେ । ମନୁଆର ଯତ୍ନ ନଏ । ଦୁଃଖଧନ୍ଦାରେ ଲାଗି ତାର ସେବା ଯତ୍ନ ମୁଁ କରିପାରେ ନାହିଁ । ମନରେ ଦୁଃଖ ହୁଏ କିନ୍ତୁ ପରଘରକୁ କାମ କରିବାକୁ ନ ଗଲେ ତ ଚଳିବ ନାହିଁ ।

ଚାରିନେଉଟ ବେଳ । ବେତାଟି ଧରି ଟିମବାବୁଙ୍କ ବଗିଚାକୁ ପଶିବା ପାଇଁ ଗଲି । କାଲି ହାଟପାଳି । ଯାହା ଅର୍ଜନ କରିଥିଲି ସେତକ ସବୁ ଗଲାଣି । ବୋଉର ଦେହ ଖରାପ । ତା' ପାଇଁ ପଥିଲୋଡ଼ା, ମୋର ଭଲ ଲୁଗାଟିଏ ନାହିଁ । ଚିରାଲୁଗା ଖଣ୍ଡେ ପିନ୍ଧି ଅଭେକାଙ୍କ ପରି ଦାଣ୍ଡ ହାଟକୁ ବାହାରିବାକୁ ଲାଜ ମାଡ଼ୁଛି । ଖଣ୍ଡେ ତନ୍ତବୁଣା ଶାଢ଼ୀ କିଣିବାକୁ ପଡ଼ିଲା । ଯେତକ ସଞ୍ଚି ରଖିଥିଲି, ଏଇଥିରେ ସବୁ ସରିଗଲା । ପିଲାଟାର ଜାମା ନାହିଁ । ଫୁଙ୍ଗୁଲା ଦେହରେ ରହୁଛି । ସର୍ଦ୍ଦିରେ ସାଁ ସାଁ ହେଉଛି । ତା ପାଇଁ ଫୁଲ ପକା ଜାମାଟିଏ କିଣିବି ।

କେଡ଼େ ଆଶାରେ ଟିମ ବାବୁଙ୍କ ବଗିଚାରୁ ପଶିବା ଆଣିବାକୁ ଯାଇଥିଲି । ହାଟପାଳିଆ ଗରାକ, ଏ ପାଳିଟା କଅଣ ଉଧାର ଚଳାଇବେ ନାହିଁ ? କେବେ ତ ସେ ଆଗତୁରା ପଇସା ମାଗନ୍ତି ନାହିଁ । ଯାଉଲେ କହନ୍ତି, ହାଟରୁ ଫେରିଲେ ଦେବୁ । ମୁଁ ସିନା ବଳେଇ କରି ଦେଇଯାଏ ।

କାନ୍ତିବାଟି ବାବୁଙ୍କର ଟଙ୍କା କେଇଟି ମୋ ପାଖରେ ଥିଲା । ପର ମଣିଷ, କେଉଁ ଗାଁର କିଏ, ଅଜଣା ଅଶୁଣା । ତାଙ୍କ ପଇସାରେ ହାତ ଦେବାକୁ ମନ ହେଲା ନାହିଁ । ଖାଲି ହାତରେ ବଗିଚାକୁ ଆସିଲି । ମନଟା ଦୋଦୋପାଞ୍ଚ ହେଉଥାଏ ।

ବଗିଚାର ଫାଟକ ଅଉଜା ହୋଇଥିଲା । ଜିଙ୍କ ମାରିଲି । କେହି କୁଆଡ଼େ ଦେଖା ଯାଉ ନାହିଁ । ଚାକରର ନାଁ ଧରି ଡାକିଲି । ଜବାବ ପାଇଲି ନାହିଁ । ଝଙ୍କାଳିଆ ଡଗଟ ଗଛ ଧାଡ଼ି ସେ ପାଖରୁ ମଧୁମାଳତୀ ଗଛ ପଛରୁ ଟିମ ବାବୁ ବାହାରି ପଡ଼ିଲେ । ମୋ ଆଡ଼କୁ ଚାହିଁ କହିଲେ, ଆରେ, ତୁଳସୀ, ଆ ଆ, ଚାକର ବାକର କେହି ନାହିଁ ।

ଫାଟକ ଖୋଲି ଭିତରକୁ ଗଲି । ଟିମବାବୁ ଡକା ଛାଡ଼ିଲେ, ଆଲୋ, ଫାଟକଟା ଲଗାଇ ଦେଇ ଆ, ଗାଈ ଗୋରୁ ପଶି ଆସିବେ ।

ତାଙ୍କ କଥା ଶୁଣି ଭିତର ପାଖରୁ ଫାଟକର ଜଞ୍ଜିର ବନ୍ଦ କଲି । ତାଙ୍କ ପାଖକୁ ଗଲି । ଭାବୁଥାଏଁ, ପାଖରେ ପଇସା ନାହିଁ ବୋଲି ଆଗରୁ କହିଦେବି କି ପରିବାପତ୍ର ଆଗ ଓଜନ କରି ପରେ ତାଙ୍କୁ କହିବି ।

ମୁଁ କିଛି କହିବା ଆଗରୁ ସେ ଆଗ ବଳପଡ଼ି କହିଲେ, ଆଜି ନିଜ ହାତରେ ତୋତେ ପରିବା ତୋଳିବାକୁ ପଡ଼ିବ । ଚାକର ଆସିନାହିଁ । ଚାଲ୍, ଆଗ ବାଇଗଣ କିଆରୀକୁ ।

ଗଲୁଁ । ଦିହେଁ ତୋଳୁଥାଉଁ । କିଛି ସମୟ ତୁନିହୋଇ ତୋଳିବା ପରେ ସେ ଆରମ୍ଭ କଲେ, ତୁଳସୀ, ମୋର ସ୍ତ୍ରୀଙ୍କ ଜାଲାରେ ମୁଁ ଘରେ ଘଡ଼ିଏ ହୋଇ ଶାନ୍ତିରେ ରହି ପାରୁ ନାହିଁ । ସବୁବେଳେ କଜିଆ ଲଗାଉଛନ୍ତି । ଭାବୁଛି ଏଥର ଘରକୁ ନ ଯାଇ ଏଇ ବଗିଚା ଘରେ ରହିବି ।

ଲୋକେ କଅଣ କହିବେ ଟିମ ଭାଇ, ତାଙ୍କୁ ବୁଝାସୁଝା କରିଦେଲେ ସେ ବୁଝିଯିବେ ଯେ ।

ଟିମ ଭାଇ ହସିଲେ । କହିଲେ, ସେ ଅଣ୍ଡ୍ରୁଆ ଲୋକ । ଯାହାର ସମସ୍ତଙ୍କ ଉପରେ ସନ୍ଦେହ ତାକୁ ବୁଝାଇଲେ ସେ ବୁଝିବ ନାହିଁ । ଠାଣି ହାତରେ କିଛି ନ କଲେ ସେ ବାଟକୁ ଆସିବେ ନାହିଁ ।

ସନ୍ଦେହ କାହିଁକି ?

ଯାହାର ମନ ନିର୍ମଳ ନୁହେଁ, ତାର ସମସ୍ତଙ୍କ ଉପରେ ସନ୍ଦେହ ଓ ଅଭିମାନ ଆସେ । ଦର୍ପଣରେ କ'ଣ ସେ ନିଜର ରୂପ ଦେଖୁ ନାହାନ୍ତି ? ଦେଖିଲେ ବୁଝି ପାରୁଥିବେ, ଗାଁର ଆଉ ଦଶଟା ଝିଅ ବୋହୂଙ୍କ ତୁଳନାରେ, ହାଟ ବାଟର ମୂଲିଆ ମଜୁରିଆ ପିଲାଙ୍କ ଆଗରେ ତାଙ୍କ ଚେହେରା କେଡ଼େ ଅସୁନ୍ଦର । ଭଗବାନ ରୂପ ଢଙ୍ଗ ଟିକିନା ଦେଇ ନାହାନ୍ତି, ଆଖି ତ ଦେଇଛନ୍ତି । ଭଗବାନଙ୍କ ଅଭିଶାପ ହେବନି ସେ ଜନ୍ମ । କେଉଁଠି କାହାକୁ ସୁନ୍ଦର ଦେଖିଲେ ସେ ସହି ପାରନ୍ତି ନାହିଁ ।

ସେପରି କାହିଁକି ଭାବୁଛ ଟିମ ଭାଇ, ଭଗବାନଙ୍କର କଲ୍ୟାଣ ନେଇ ତାଙ୍କର ଜନ୍ମ । ତମ ପରି ସ୍ୱାମୀ, ଦେଢେଇଙ୍କ ପରି ଶାଶୂ ଯାହାର, ତାର ଆଉ ଦୁଃଖ କଅଣ ? ସଂସାରର ଦୁଃଖରେ ଘାଣ୍ଟି ଚକଟି ହୋଇ ହାଡ଼େ ହାଡ଼େ ମୁଁ ଅନୁଭବ କରୁଛି ଯେ, ରୂପ ଗୋଟାଏ ଅଭିଶାପ, ନିଆଁ । ଯୁଆଡ଼େ ଯାଏ ମଣିଷ ମନରେ ନିଆଁ ଲଗାଏ । ଶେଷକୁ ନିଜେ ପୋଡ଼ି ଜଳି ପାଉଁଶ ହୁଏ । ରୂପ ବାହାର ଉଜ୍ଜ୍ୱଳ କରେ, ଭିତରଟା ପୋଡ଼ା ଅଙ୍ଗାର । ମଣିଷର ଗୁଣ କୁଳ ଉଜ୍ଜ୍ୱଳ କରେ, ସଂସାର ସୁନ୍ଦର କରେ ! କହିବି ଟିମଭାଇ, କହିବି ?

କହନ୍ତୁ ।

ତମେ ତମର ସ୍ତ୍ରୀକୁ ଭଲ ପାଅ ନାହିଁ । ସେଇଥିପାଇଁ ତମ ମନରେ ଏପରି ଧାରଣା ହୁଏ । ସ୍ୱାମୀ ଯଦି ସ୍ତ୍ରୀକୁ ଭଲ ପାଏ ସ୍ତ୍ରୀର ସବୁ ଗୁଣ, ସ୍ତ୍ରୀର ରୂପ ତା ଆଖିକୁ ଭଲ ଦିଶେ । ଭଲ ପାଇବା ଆଗରେ ବାହାରର ଚମ ଠିଆ ହୋଇ ପାରେ ନାହିଁ । ଦେଖିଛ ନଟଭାଇ ସ୍ତ୍ରୀକୁ, ତାଠୁଁ ବଳି ଅସୁନ୍ଦରୀ ସାରା ଦୁନିଆରେ

ଆଉ କେହି ଅଛି ? ବାହା ହୋଇ ପନ୍ଦର ଦିନ କାଳ ନଟଭାଇ ଘରେ ପଶି ନ ଥିଲା । କେତେ ବୁଝାସୁଝା କଲାପରେ ଯେଉଁ ରାତିରେ ସେ ଲୁଚି ଲୁଚି ଘରେ ପଶିଲା, ତହିଁ ଆରଦିନ ସେ କହି ବୁଲିଲା, ମୃଗନୟନୀଟିଏ । ତା ପରେ ତ ଆଉ କିଛି ଗୋଳମାଳ ହୋଇ ନାହିଁ ।

ଟିମଭାଇ ଓ ମୁଁ ହସି ଉଠିଲୁ ।

ବାଇଗଣ ତୋଳା ସରିଲା । ଟୋକେଇରେ ପୂରାଇ ମୁଁ ତରାଟ ଗଛ ପାଖକୁ ଆସିଲି । ଟିମଭାଇ ମୋ ପଛେ ପଛେ ଆସିଲେ । କହିଲେ, ଝିଅ ଭୁଙ୍ଗଛୁଇଁ କିଛି ନେଇ ଯା, ଚାଲ ସେପାଖକୁ ।

ଦିହେଁ ବଗିଚା ଘରର ପଛ ପାଖକୁ ଯାଇଁ ତୋଳିଲୁ । ସେ ମୋ ପାଖକୁ ଘୁଞ୍ଚିଆସି କହିଲେ, କାହା ଆଡ଼କୁ ଟିକେ ଚାହିଁଲେ କି କାହାସଙ୍ଗେ ହସିକରି ପଦେ କଥା କହିଲେ, ସେ ସହି ପାରନ୍ତି ନାହିଁ । ସନ୍ଦେହ କରି ପଚାରନ୍ତି, କିହୋ—? ମୁଁ ବିରକ୍ତ ହୁଏ । ବାହା ହୋଇଛି ବୋଲି କଅଣ ଚାହିଁବାର, କହିବାର ଅଧିକାର ମୋର ନାହିଁ ?

କହିଲି, ତମର ମନ ଚିହ୍ନିବାର ସୁବିଧା ଯଦି ସେ ପାଇଥାନ୍ତେ, ତାଙ୍କ ମନରେ ଯଦି ଧାରଣା ହୋଇ ଥାଆନ୍ତା ଯେ, ତେମେ ତାଙ୍କ ବିନା ଆଉ କାହାରିକୁ ଭଲ ପାଅ ନାହିଁ, ତେବେ କାହା ସଙ୍ଗେ କଥା କହିଲେ କି କାହା ଆଡ଼କୁ ଚାହିଁଲେ ତାଙ୍କର ସନ୍ଦେହ ହୁଅନ୍ତା ନାହିଁ । ସେ ବିରକ୍ତ ହୁଅନ୍ତେ ନାହିଁ ।

ଟିମବାବୁ ଗମ୍ଭୀର ହୋଇ ରହିଲେ । ସେତିକି ବେଳଠୁଁ ସେ ଆଉ ମତେ କିଛି କହିଲେ ନାହିଁ । ମୁଁ ବି ଭରସି କରି କିଛି ପଚାରିଲି ନାହିଁ । ପରିବା ତୋଳା ଶେଷ ହେଲା । ଟୋକେଇରେ ପରିବା ନେଇ ତାଙ୍କ ପଛେ ପଛେ ମୁଁ ବଗିଚା ଘର ଭିତରକୁ ଗଲି । ସେଇଠି ସବୁଦିନେ ଓଜନ ହୁଏ । ଟୋକେଇ ଓହ୍ଲାଇ ମୁଁ ଠିଆହେଲି । ସେ ତରାଜୁ ଅଣିଲେ । ପରିବା ଓଜନ କରିବା ପରିବର୍ତ୍ତେ ତୁନି ହୋଇ ଠିଆ ହୋଇ ରହିଲେ ।

ବେଳ ବୁଡ଼ ବୁଡ଼ ଆସୁଛି । ଦିନର ଆଲୁଅ ମଳିନ ପଡ଼ିଲାଣି । ତାଙ୍କ ମୁହଁକୁ ଚାହିଁଲି । କେଡ଼େ ଗମ୍ଭୀର, କେଡ଼େ ମଳିନ ଦିଶୁଛି । ମନ ତଳେ କି ଭାବନା ଲୁଚକାଳି ଖେଳୁଛି ମୁଁ ଜାଣନ୍ତି କିପରି ? ପିଲାଦିନୁଁ ତାଙ୍କ ମନରେ ଯାହା ଥାଉ, ବାହାରକୁ ସେ ଅତି ଭଦ୍ର, ଅତି ନିରୀହ ।

ରହି ରହି କହିଲି, ପରିବା ଓଜନ କରିଦେଲେ ମୁଁ ଯିବି । ସଞ୍ଜ ହେଉଛି । ବୋଉର ଦେହ ଭଲ ନାହିଁ । ପିଲାଟା ବିରକ୍ତ କରୁଥିବ ।

ତାଙ୍କର ମଉଳା ଓଠରେ ହସର ଆଭା ଖେଳିଗଲା । କହିଲେ, ହଁ, ଡେରି ହେଉଛି, ତୁ ଯା । ଓଜନ କରିବା ଦରକାର ନାହିଁ । ତୁ ବିକିଲା ବେଳେ ବଳେ ଓଜନ କରି ଦେବୁ ତ, ହାଟରୁ ଫେରି ମୋତେ କହିବୁ ।

ସେର ତସଜ୍ଜୁ ଘରର ଗୋଟାଏ କଣକୁ ପକାଇ ଦେଲେ । କହିଲେ, ତୁ ଯା ତୁଳସୀ, ଡେରି ହେଉଛି ।

ଗୋଡ଼ ଚଳିଲା ନାହିଁ । ପଇସା ଓଜନ ନ କରି ନେବି କିପରି ? ମୁଁ ଫେରି ଆସି ଯେତେ ସତ କହିଲେ ବି, କାଳେ ତାଙ୍କ ମନରେ ଅବିଶ୍ୱାସ ହେବ । ଥଙ୍ଗେଇ ଥଙ୍ଗେଇ ହେଲି ।

ତୁ ଭାବୁଛୁ ମୋର ତୋ କଥାରେ ଅବିଶ୍ୱାସ ହେବ ? ନା, ସେପରି ଭାବନୁ ନାହିଁ । ସାମାନ୍ୟ ପଇସା ପାଇଁ ତତେ ମୁଁ ଅବିଶ୍ୱାସ କରିବି ନାହିଁ ।

କୃତଜ୍ଞତାରେ ମୋର ମନ ଭରିଗଲା । ଥରେ ପଇସା ଟୋକେଇକି ଚାହିଁ, ପୁଣି ତାଙ୍କ ମୁହଁକୁ ଆକୁଳ ଆଖିରେ ଚାହିଁଲି । ଓଠ ଥରି ଉଠୁଥାଏ କହିଲା ବେଳକୁ, ତମର ମୋ ଉପରେ ଏତେ ବିଶ୍ୱାସ ହେବା ଉଚିତ ନୁହେଁ, ଝିମଉଇ । ଅଭାବ ଯେତେବେଳେ ଆଁ କରି ଗ୍ରାସିବାକୁ ଧାଇଁ ଆସେ, ଇଚ୍ଛା ନଥିଲେ ବି ମଣିଷ ଅବିଶ୍ୱାସ କାମ କରେ । ମୁଁ ଗରିବ, ମୁଁ ମଣିଷ ଜାତିରୁ ବାହାର ନୁହେଁ । କହିବାକୁ ଲାଜମାଡ଼ୁଛି, ଅଭାବ ପାଇଁ ମୁଁ ଚୋରି କରିଛି, ଅନୁତାପକୁ ଚାପି ରଖି ପର ଚିଜକୁ ହାତ ବଢ଼ାଇଛି ।

ଠିକ୍ କହୁଛୁ ତୁଳସୀ, ଅଭାବ ହେଲେ ତାରି ଜ୍ୱାଳାରେ ମଣିଷ ପର ଚିଜକୁ ଅନାଏଁ, ଆପଣାର କରିବାକୁ ପର ଚିଜକୁ ହାତ ବଢ଼ାଏ । ମଣିଷ ଜୀବନରେ ଯେତେ ପ୍ରକାର ଅଭାବ ଅଛି, ସବୁରି ପାଇଁକି ଏଇ ଗୋଟିଏ କଥା ଠିକ୍ । ତୋ ପକ୍ଷରେ ଧନ ଅଭାବ ଅଛି ବଡ଼ କିନ୍ତୁ ମୋର ଧନର ଅଭାବ ନାହିଁ । ମୋର ଅଭାବ ମଣିଷର, ପୁଣି ମନର । ସେଇଥି ପାଇଁ ପର ମଣିଷ ମୁଁ ଚାହେଁ, ପରର ମନ ପାଇବାକୁ ମୁଁ ଆକୁଳ ହୋଇ ଉଠେ । ହାତ ବଢ଼ାଇବାକୁ ସାହସ ହୁଏ ନାହିଁ, ମନ ବଢ଼ାଏଁ ।

ତାଙ୍କର କଥା ମୁଁ ବୁଝିଲି । ତାଙ୍କର ଅଭାବ କଅଣ ମୁଁ ଜାଣେ । ଅଭାବ ପୂରଣ କରିବାର ଶକ୍ତି ଯାହାର ନାହିଁ, ସାନ୍ତ୍ୱନା ଦେବାର ଅଧିକାର ମଧ୍ୟ ତାର ନାହିଁ ।

ଟିକଏ ତୁନି ହୋଇ ସେ ଦୁଃଖମିଶା ସ୍ୱରରେ କହିଲେ, ତୁଳସୀ, ଅନେକ ଦିନରୁ ମନ ଖୋଲି ଗୋଟିଏ କଥା କହିବି ବୋଲି ଭାବୁଛି, କହିବାର ସୁଯୋଗ ପାଇ ନାହିଁ । ଆଜି, ପ୍ରଥମ କରି ତୋତେ ମୁଁ ନିରୋଳାରେ ପାଇଛି । କିଛି ଯଦି ମନେ ନ କରୁ ମୁଁ କହିବି ।

ତାଙ୍କର କଥା ଶୁଣି କିପରି ଗୋଟେଲିଆ ଅନୁଭବ କଲି । ଡରି ଡରି ଏଣିକି ତେଣିକି ନିଘା ପକାଇ କହିଲି, କଅଣ କହ ।

କହିଲେ, ପିଲାଦିନର ଖେଳ ମନେ ଅଛି ତୁଳସି ! ଗାଁ ମୁଣ୍ଡ ତୋଟା କଡ଼ର ମାଟି କୁଦ, ଯେଉଁଠି ଛପିଛପିକା ଅଲିଅ ଗଛ ଉପରେ ପଡ଼ର ପାରି

ତେମା ବସେ ରଜା ହୋଇ, ଆଉ, ଝିଙ୍କ ବୋହୁଟି ସାଜି ତୁ ହେଉ ରାଣୀ । କେତେ କଳଅ ଗୋଳ, ଠେଙ୍କା ପକାପକ । କଳୁଅ ତେମା ସବୁଦନେ ଜତେ, ସେ ହୁଏ ରଜା । ମାଟି କୁଦର ତଳେ ଠିଅ ହୋଇ ମନ ଦୁଃଖରେ ମୁଁ ଫେରେ, ରଜା ହୋଇ ପାରଲ ନାହିଁ । ରଜା ହେବା ଉପଯୁକ୍ତ ମୁଁ ନୁହେଁ ।

ବେଲ ଗଡ଼ ଗୃଲଲ । ସୁଖ ଦୁଃଖର ଲହଡ଼ି ଭାଙ୍ଗି ଯିଏ ଯାହାର ବାହା ଧର ଗୃଲଲେ । ଏତେ ଦନ ପରେ ଅଜ ଏଇଠି ସଞ୍ଜର ଗ୍ରାଇତଳେ, ତୁ ଓ ମୁଁ ଏକୁଟିଆ, ତୁ ରାଣୀ ଅଉ ମୁଁ ରାଜା । ତେମା ଦୂରରେ ରହୁଛି ।

ବ୍ୟସ୍ତ ହୋଇ ମୁଁ ପଗୃରଲ, ତମେ କଅଣ କହୁଛ ମୁଁ ବୁଝି ପାରୁନାହିଁ । ତମର ଉଦ୍ଦେଶ୍ୟ କଅଣ ? ଅଜ ତ ଅଉ ଆମେ ପିଲା ନୁହୁଁ ଯେ ରାଜା-ରାଣୀ ଖେଳ ଖେଳବା ।

କହଲେ, ନା, ପିଲା ନୁହଁ, ପିଲା ଦନର ରାଜା ରାଣୀ ଖେଳ ମୁଁ ଗୃହେଁ ନା । ଗୃହେଁ,—ଗୃହେଁ, ପରସ୍ପରର ଅଭାବ ମେଣ୍ଟାଇବା । ତୋର ଧନ ଲୋଡ଼ା, ମୋର ପ୍ରଚୁର ଧନ ଅଛି । ମୋର ଯାହା ଲୋଡ଼ା ତୁ ଜାଣୁ । ତୋର ରୂପ ଅଛି ।

ଭୟରେ ମୋର ଗୋଡ଼ରୁ ମୁଣ୍ଡଯାଏ ଥର ଉଠିଲା । ମୁଁ ବିଚଳିତ ହୋଇ ଥରଲା ସ୍ୱରରେ ଟିକିଏ ଯୋର୍ ଦେଇ କହଲ, ଛିମ ଭାଇ— ।

କଣ୍ଠ ରୁଦ୍ଧ ହୋଇ ଆସିଲା ।

ସେ ଅବଚଳିତ ସ୍ୱରରେ କହଲେ, ଯାହାର ଅଭାବ ଥାଏ, ଜାଣି ମଧ୍ୟ ନ ଜାଣିଲା ପର ପର ଚଜକୁ ସେ ହାତ ବଢ଼ାଏ । ପ୍ରଭୁ ହାଟ ପାଲି ଆଗଦନ ତୁ ପଇସା ନେବାକୁ ଅସୁ । ନେଉ । ବକି କର ଜାଣି ପାରୁଥିବୁ ତୋତେ ପଇସା ଦେବା ମୋର ଗୋଟାଏ ଛଳନା । ନୋହଲେ ତୁ ପୁଣି ଅରପାଲି ଧାଇଁ ଆସନ୍ତୁ କାହିଁକି ?

ମୋର ଆଖି ଖୋଲିଗଲା । ମୁଁ ରାଗରେ ଗର୍ଜି ଉଠି କହଲ, ତେମେ ଏଡ଼େ ଦୁର୍ବଳ, ଏଡ଼େ ଶ୍ରେଷ୍ଠ ?

ଏକା ମୁଁ ନୁହେଁ, ଯାହାର ଅଭାବ ସେ । ଅଭାବର ତାଡ଼ନାରେ ପଡ଼ି ତୁଇ ନଜେ ତ ପୁଣି ଦଅର ହାତରେ ଗେରସ୍ତକୁ ମାରଛୁ ।

ମିଛ କଥା ।

ମିଛ ସତ ମୁଁ ଜାଣେ ନାହିଁ । ଦୁନଆଁ ଲୋକେ ସମସ୍ତେ ସେଇ କଥା କହୁଛନ୍ତି । ଅଉ ଦେଖ, ତୋ ପର ରୂପର ଅଧିକାରଣୀ, ଯୌବନର ଜୁଆରେ ଖେଳାଇ ଦୁନଆଁରେ ଅତଯାତ ହୋଇ, ଦୁନଆଁର ଭୋକଲା ଶୋଷିଲାଙ୍କ ମନର ଶୋଷ ମାଇବାକୁ ଜୁଆର ଅଡ଼କୁ ଆକୁଳ ହୋଇ ଛୁଟିବାରେ ବାଧା ଦେଇ ପାରବ ନାହିଁ, ତୁଲସି ।

ଏତିକି କହି ସେ ଛଳ ଛଳ ଆଖିରେ ମୋର ହାତ ଧରଲେ ।

ଧୀରେ ଧୀରେ ହାତ ଖସାଇ ଆଣିଲି । ଢୋକ ଢୋକ କଥା କେଇପଦ କହିଲି, ମୁଁ ଗରିବ, ମୁଁ ହଅଣ୍ଡୀ, ମୋ'ର ସର୍ବନାଶ କରନା ।

କହିଲେ, ତୁ ଗରିବ ହଅଣ୍ଡୀ ବୋଲି ତୋ ଉପରେ ଅତ୍ୟାଚାର କରିବି ଭାବୁଛୁ ? ନାଁ, ମୋ ମନର କଥା ତତେ କହିଲି । ସେତିକି । ତୁ ଯା ତୁଳସୀ ।

ତାଙ୍କର ଶେଷ କେଇ ପଦ କଥା, ଆଖିର ଛଳ ଛଳ ଲୁହ ସତେ କି ମତେ ମନ୍ତ୍ରମୁଗ୍‌ଧ କରିଦେଲା । ତୁଣ୍ଡରୁ କଥା ବାହାରିଲା ନାହିଁ । ଟିମ ଭାଇ, ଟିମବାବୁ, ଗାଁର ଜମିଦାର, ଗାଁର ମହାଜନ । ମୋ ପରି ଜଣେ ମୂଲିଆଣୀ ଆଗରେ, ମୋ ପରି ହଅଣ୍ଡୀ ଭିକାରୁଣୀଟା ଆଗରେ ନିଜେ ଭିକାରି ହୋଇ ଠିଆ ହୋଇଛନ୍ତି । ତାଙ୍କର ଅଭାବ ମୁଁ ପୂରଣ କରିବି ? ଆଉ, ସେ ଅଭାବ କଅଣ ମୋର ନାହିଁ । ଯୌବନର ଡାକ କଅଣ ମୁଁ ଶୁଣେ ନାହିଁ ?

ଦେହର ଉନ୍ମାଦନା ଅତୀତ ଭବିଷ୍ୟତର ସବୁ ଚିନ୍ତା ପଛରେ ପକାଇ ଦେହର ପରଶ ପାଇଁ ଅନାଇଁ ରହିଲା । ତାଙ୍କର ମୁହଁକୁ ଚାହିଁ ପାରିଲି ନାହିଁ । ତଳକୁ ମୁହଁ ପୋତି ଠିଆ ହେଲି । ଶିବ ପ୍ରତିଷ୍ଠାରେ ନିଆଁ ଲାଗିଥିଲେ ମଧ ଭୟରେ ବରଡ଼ା ପତ୍ର ପରି ଥରୁଥାଏ । କହିଲି, ଲୋକେ କଅଣ କହିବେ—?

କେତେବେଳେ ସେ ଆସି ପୁଣି ମୋର ହାତ ଧରିଲେ । ଖନେଇ ଖନେଇ ମୋ କାନ ପାଖରେ କହିଲେ, ତୁଳସି, ଲୋକଙ୍କ କଥାରେ ଦାଣ୍ଡର ଭୋକିଲା ଭିକାରି କାନ ଦିଏ ନାହିଁ ।

ମୋର ଗାଲ ଉପରେ ଥରିଲା ଓଠର ପରଶ—ପିଠି ଚାରିପାଖେ ବାହୁ ଦୁଇଟିର ବେଷ୍ଟନ !

କେତେ ଦିନର ହଜିଲା ସ୍ମୃତି ପୁଣି ଫେରି ଆସିଲା—

ଏମିତି ମୁହଁସଞ୍ଜ ବେଳ । କାମରୁ ଫେରି ଯେପରି ସେ ଅନ୍ଧାର ଘରେ ଗୋଡ଼ ଦିଅନ୍ତି, ମୋତେ ଆଗରେ ଦେଖି ଠିକ୍ ଏମିତି ପାଗଳ ପରି ଛାତି ଉପରକୁ ଆଉଜାଇ ନିଅନ୍ତି । ଠିକ୍ ଏମିତି, ତାଙ୍କର କାନ୍ଧ ଉପରେ ଲାଜକୁଳୀ ଲତାଟି ପରି ଝାଉଁଳି ପଡ଼େ । ଛାତି ପଡ଼େ ଉଠେ ଭୟରେ, ସୁର ଆସୁଥିବେ, ଛାଡ଼ ଇ ।

ଭାଇ ।

ସୁର ଆସିଲେଣି, ଡାକ ଶୁଭୁଛି ।

ଭାଇ ।

ତାଙ୍କର ବାହୁବନ୍ଧନ ଭିତରୁ ଖସି ଆସେ । ଛାଡ଼, ଛାଡ଼, ସୁର ।

ଟିମ ବାବୁଙ୍କର ଛାତି ଉପରୁ ଅଲଗା ହୋଇ ଆସିଲି । କିଏ ଡାକୁଛି, ବାବୁ,—ବାବୁ—।

ଟିମବାବୁ ତରତର ହୋଇ ଫାଟକ ଖୋଲିବାକୁ ଚାଲିଗଲେ । ମୁଁ ମୁହଁ ପୋଛି-ପରିବା ଟୋକେଇ ପଦାକୁ ଆଣିଲି । ଦେହ ଥରୁଥାଏ ।

ପାଟି ଶୁଭିଲା ଟିମ ବାବୁଙ୍କ ଚାକରର—

୨୧

ଗୋଡ଼ ଅବାଟରେ ପଡ଼ୁଥାଏ ।

ଲୋକଙ୍କ କଥାରେ ଦାଣ୍ଡର ଭିକାରୀ କାନ ଦିଏ ନାହିଁ । ତେବେ, ଘର ସଂସାର ଗୃହ କାହିଁକି ମୁଁ ଦାଣ୍ଡର ଭିକାରୀ ହେଲି, ଲୋକଙ୍କ କଥାରେ କାନ ଦେଲି, ତୁଣ୍ଡବାଇଦକୁ ଡରିଲି । ଦେହ ମନର ଉତ୍ତେଜନାକୁ ଅସ୍ୱୀକୃତ କରିବାର ମୋର ସାହସ ନାହିଁ । ନିଷେଲାରେ ଜଣକର ଦୁଃଖ କଥା ଶୁଣି, ହାତର ପରଶରେ ଅନ୍ଧ ହୋଇ, ତାର ପ୍ରବୃତ୍ତି ନିଆଁରେ ଝାସ ଦେବାକୁ ନଇଁ ପଡ଼ୁଥିଲି ।

ବୋଉର କଥାର ସତ୍ୟତା ମୁଁ ଅନୁଭବ କଲି ଏତେ ଦିନକେ । ଦିନେ ସେ କହୁଥିଲା ତାର ନିଜ କଥା—କେଉଁଠି ଅଗ୍ନିରେ ଗୃହ ଫୁଲାଇ ବାଟ ଚାଲିବାକୁ ପଣ କରିଥିଲା, ଅଗ୍ନି ରହିଲା ନାହିଁ, କାହାରି ରହେ ନାହିଁ । କାଳ ଓଲଟି ଯାଏ, ଅଗ୍ନି ଭାଙ୍ଗେ ।

ମୋର ଅଗ୍ନି ଭାଙ୍ଗିଛି । ଏଇ ପେଟ ପାଇଁ, ଟିକିଏ ଦୟା ଟିକିଏ ସହାନୁଭୂତି ପାଇଁ । କେହି ନ ଦେଖୁ ମୋ ଆଖି ଦେଖିଛି । ଆଉ କେହି ନ ଜାଣୁ ଟିମ ବାବୁ ଜାଣନ୍ତି ।

ମୁଁ ବାଧା ଦେଇ ନାହିଁ । ତାଙ୍କର ନିମନ୍ତ୍ରଣରେ ତାଙ୍କର ଗୃହ ଉପରକୁ ଆଉଜି ପଡ଼ିଛି । ନିଜକୁ ଭୁଲି ମୂର୍ଚ୍ଛାଳିଆ ହୋଇ ତାଙ୍କର କାନ୍ଧ ଉପରେ ମୁଣ୍ଡ ନୋଇଁଛି । ଟିମ ବାବୁ ଜାଣନ୍ତି, ତାଙ୍କର ବୋଲରେ ଉତାଳିଆ ହୋଇ ଆଖି ବୁଜି ମୋର ଥରିଲା ଓଠ ତାଙ୍କର ମୁହଁ କଣକ ଘୁଞ୍ଚାଇ ନେଇଛି ।

ବାଧା ଦେଇଥାନ୍ତି, ବିରକ୍ତ ହୋଇ ତାଙ୍କର ବାହୁବନ୍ଧନରୁ ନିଜକୁ ମୁକ୍ତ କରିବାକୁ ଚେଷ୍ଟା କରିଥାନ୍ତି, ସେ ମୋତେ ଅଟକାଇ ରଖିଥାନ୍ତେ ଗୃହ ଉପରେ, ବାହୁ ଭିତରେ । ଅନ୍ତ ନିଜ ପାଖରେ ନିଜେ ମୁଁ ଦୋଷୀ ହୋଇ ନ ଥାନ୍ତି । ନିଜକୁ କହିବାକୁ ମୋର ଦମ୍ଭ ଥାଆନ୍ତା—ଉତ୍ତେଜନାର ପ୍ରଭାବରେ ମୁଁ ମୁଣ୍ଡ ନୋଇଁ ନାହିଁ, ପରିଳ ଅଟ୍ରହ ନିଆଁରେ ଝାସ ଦେଲେ ମଧ୍ୟ ମନରେ ଗର୍ବ ଆମ୍ଭ କହିବାକୁ ନିଜ ଆଗରେ, ମୁଁ ଟେରିବ, ମୋର ସାହା ଭରସା ନାହିଁ, ସେଥି ପାଇଁ । ଦେହର ମୋହ, ମିଳନର ଆନନ୍ଦ ମୋତେ ପାଗଳ କରିନାହିଁ । ମୋର ଦମ୍ଭ ଅଛି । ବାଧା ଦେବାର ଶକ୍ତି ନ ଥିଲେ ମଧ୍ୟ ଧୈର୍ଯ୍ୟ ଅଛି

କାହିଁ ?

ଯାହା ଘଟିଗଲା, ସେଥିରୁ ପ୍ରମାଣ ପାଇଲି ମଣିଷର ତୁଣ୍ଡ ଯେତେ ଟାଣ, ଧୈର୍ଯ୍ୟ ସେତେ ଟାଣ ନୁହେଁ । ଦୁର୍ବଳ ବେଳ ଆସେ, ଧୈର୍ଯ୍ୟ ଭାଙ୍ଗେ । ଅଗ୍ନି ରହେ

ନାହିଁ । ଲୋକଙ୍କ କଥାରେ ଦାଣ୍ଡର ଭଙ୍କାରି କାନ ଦଏ ନାହିଁ । ସ୍ୱର୍ଗ ହେଉ କି ନରକ ହେଉ, ମିଳନ ଆନନ୍ଦରେ ବୁଡ଼ିବାକୁ ମଣିଷର ଦେହ ମନ ଧାଇଁଯାଏ । ଅବସ୍ଥାର ରୂପ ବାଧା ଦେଇ ପାରେ ନାହିଁ ବରଂ ସାହାଯ୍ୟ କରେ । ଗଳ୍ପ କଥା ଯେତିକ ପୁରୁଣା ହୁଏ ସେତିକ ଲକ୍ଷ ଲକ୍ଷ ଲଭ ଅସେ । ସେଇ ସ୍ମୃତିର ଆଲୁଅ କ୍ଷୀଣ ହେଉ କି ଉଜ୍ଜ୍ୱଳ ହେଉ, ତାରି ଆଡ଼କୁ ମଣିଷ ପଛକର ଠିଆ ହୁଏ ।

ଆଗକୁ ଚାଲେ, ଝୁଣ୍ଟେ, ପଡ଼େ, ପୁଣି ଉଠେ, ପୁଣି ପଡ଼େ, ଉଠେ, ଚାଲେ । ପଛକୁ ଆଉ ଅନାଏ ନାହିଁ । ସମୟର ବତାସରେ ଉଡ଼ି ବୁଲେ । ଭୁଣ୍ଡବାଇଦ ବାଜେ । ମଣିଷ କାନରେ ହାତ ଦଏ । ଚାଲେ— ।

ତେବେ, ବୋଉର ଅବାଧ ହେବ କାହିଁକି, ଭୁଣ୍ଡ କଥା ଶୁଣି ଡର ଡର ବୁଲିବ କାହିଁକି ? କାନରେ ହାତ ଦେବ । ନୂଆ ସଂସାର କରିବ । ଯାହାକୁ ପାଇବ ତାରି ପାଖରେ ନିଜକୁ ସମର୍ପି ଦେବ । ଚେମାଇ, ସୁରି, ବଳଆ — ।

ବୋଉ ଖୁସି ହେବ ।

ମନୁଆର ଦୁଃଖ ଯିବ ।

ଦାଣ୍ଡ ଲୋକଙ୍କ ଭୁଣ୍ଡରେ ଭୁଣ୍ଡି ବନ୍ଧା ହେବ ।

ଦୀର୍ଘ ନିଃଶ୍ୱାସ ଛାଡ଼ିଲି ।

ଗୋଡ଼ ଆଉ ଅବାଟରେ ପଡ଼ିଲା ନାହିଁ ।

ଅନ୍ଧାର ହୋଇ ଆସୁଥାଏ । କିଏ ଗୋହିରି ବାଙ୍କ କଡ଼ରୁ ଚେମାଇ ବାହାରି ପଡ଼ିଲା । ତା ପଛରେ ଆଉ ଦିଜଣ କିଏ ଅଛନ୍ତି । କରେଇ ଚଲେ । ଚେମାଇ ନଇଁ ପଡ଼ି ମୋ ମୁହଁକୁ ଚାହିଁ ଠିଆ ହେଲା । ପଛରେ ଥିବା ଦି'ଜଣ ଲୋକ କଡ଼ ଭାଙ୍ଗି ଚାଲିଗଲେ ।

ଚେମାଇ କହିଲା, ହଜିଲା ବଳଦ ଖୋଜିଲା ଠେଇଁ । କେତେ ଦିନ ହେଲା ତତେ ମୁଁ ମନେ ମନେ ଖୋଜୁଛି ଲୋ ତୁଳସି, ତୋର ତ ଦେଖା ଦର୍ଶନ ନାହିଁ ।

ମନ ସ୍ଥିର କରି, ଘଟିଲା ଘଟଣାର ଭାବନାକୁ ଆଡ଼େଇ ଦେଇ ସବୁଦିନ ପରି ଥଟ୍ଟାଳିଆ ଭାଷାରେ ଉତ୍ତର ଦେଲି—ମନରେ ଖୋଜିବା ଯେତେ ସହଜ, ପାଇବା ତାଠାରୁ ଅଧିକ ସହଜ । ସପନ ଯିଏ ଦେଖି ଜାଣେ, ତା ପାଖରେ କେଉଁ କଥା ଅଭାବ ରହେ ନାହିଁ ।

ଟିକିଏ ରହି ପୁଣି କହିଲି, ଯାଏଁ, ମୁଣ୍ଡର ବୋଝ ବଳାଉଛି, ପିଲାଟା ତେଣେ ସଦା ଧରି କାନ୍ଦୁଥିବ । ମୋ ସଂସାର ତ ଆଉ ସପନ ନୁହେଁ ?

ଚେମାଇ କହିଲା, ବୋଝ ବଳାଉଛି ? ମୁଣ୍ଡ ଯେତିକ ବୋଝ ସହିବ ତାଠାରୁ ଅଧିକ ଭାରି ବୋହିଲେ ଅଚଳ ଅବସ୍ଥା ଆସିବ । ମୁଁ ତେବେ ବୋଝଟା ଟିକେ ଉତାରି ଦଏଁ । ପୁଣି ପଚାରେ,—

ଥାଉ । ବାଟରେ ଗଲା ଅଜଣା ବାଟୋଇ ବି ବୋଝ ଉତାରି ଚାଲିଯିବ ଚେମାଇ, ପର ପାଇଁ ବୋଝ ବୋହିବ କିଏ ?

ଚେମାଇ କଥାଟା ଭାବିଲା । କହିଲା, ଠିକ୍ । ପର ପାଇଁ ବୋଝ ବୋହି-ବାକୁ ସହଜରେ କେହି ମୁଣ୍ଡ ପତାଏ ନାହିଁ । ଦିଅ ନିଅର ସଂସାରରେ ଏପରି ଆଶା ଯେ କରେ ସେ ମୋଠୁଁ ବଡ଼ ନିର୍ବୋଧ ।

ଦୁଃଖ କରନ୍ତି ଅନେକ ଲୋକ ଚେମାଇ । ବୁଝାକୁ କହନ୍ତି—ବୋଝ ବଳେଇଲା ।

ଚେମାଇ ପୁଣି ଭାବିଲା, କହିଲା ହଁ । ବାରି ବାଇଗଣ ବୋଝ ଭାରି ହୁଏ, ମୁଣ୍ଡକୁ କାଟେ । ପୋଥି ବାଇଗଣ ବୋଝ ଶୂନ୍ୟରେ ଚାଲେ, ଦେହରେ ଆଁଚ ଲାଗେ ନାହିଁ । ସେଥିପାଇଁ ସପନରେ ପୋଥି ବାଇଗଣ ତୋଳିବାକୁ ମୁଁ ଭଲ ପାଏଁ ।

ସେଇ ପୋଥି ବାଇଗଣ ତୋଳି ତମ ଆଈ ବୁଢ଼ୀଙ୍କି ଦେବ ଯେ ସେ ରାନ୍ଧିବେ, ତେମେ ଖାଇବ ।

ଚେମାଇ ମୋ ପଛେ ପଛେ ଆସିଲା କହି କହିକା, ଆଈ ବୁଢ଼ୀ ଯଦି ମୋପରି ହୋଇଥାନ୍ତା, ତେବେ ଆଜି ମୋର ଦୁଃଖ ରହନ୍ତା ନାହିଁ । ସେ ଚାହେଁ ଗାଈ ଓ ବାଛୁରୀ । ତୋ ସଙ୍ଗେ କଥା ପକାଇବାକୁ ଦିନ ସାରା ସେ ମୋ ସଙ୍ଗେ ଲାଗିଛି । ଟିକିଏ ସପନ ଦେଖିବାକୁ ମତେ ସେ ଛାଡ଼ୁଦେଉ ନାହିଁ ।

ଗମ୍ଭାରି କଢ଼କୁ ଆସିଲି । ମୋ ପଛେ ପଛେ ଚେମାଇ ଚାଲିଥାଏ । କହିଲା, ଆଈ ଯାହା କହୁଛି, ସେଇ କଥା ପକାଇବାକୁ ମନ ଛକ ପକ ହେଉଛି ଯେ, ଘଣ୍ଟିକା ପାଖକୁ ଆସି ପୁଣି ପେଟ ଭିତରକୁ ଫେରି ଯାଉଛି ।

ଭାବିଲି, କି କଥା ପକାଇବାକୁ ଚେମାଇ ଆଜି ଏତେ ଛଟପଟ । କେବେ କେମିତି ଦେଖା ହେଲେ ପଦେ ଅଧେ ଥଟ୍ଟାରେ ଏଣୁ ତେଣୁ କହିଦେଇ ଯେ ବାଟ ଭାଙ୍ଗି ଚାଲିଯାଏ, ସେ କାହିଁକି ଆଜି ପଛରେ ଧାଇଁ ଆସିଛି ?

ପଚାରିଲି, କି କଥା ଚେମାଇ ?

ଅନେକ କଥା । ସେଇ ଆମ୍ବଗଛ ମୂଳେ ଯଦି ଟିକିଏ ବସନ୍ତୁ, କହନ୍ତି ।

ଶୁଣିବାକୁ ଆଗ୍ରହ ହେଲା । ଚେମାଇ ପଛେ ପଛେ ଗଲି ।

ବାଟକଡ଼ର ଆମ୍ବଗଛ ତଳେ, ପହିଲି ସଞ୍ଜର ପତଳା ଅନ୍ଧାର ଘୋଟି ଆସୁଥାଏ । ମୁହାଁମୁହିଁ ହୋଇ ଦିହେଁ ବସିଲୁଁ । ଅନ୍ୟ ଦିନ ହୋଇଥିଲେ ନବେଲାରେ ସଞ୍ଜ ବେଳଟାରେ ଜଣେ ଅଭିଆଡ଼ା ଲୋକ ଆଗରେ ଏପରି ବସିବାକୁ ମନରେ ସଙ୍କୋଚ ଆସିଥାନ୍ତା, କିନ୍ତୁ ସେ ଦିନ ଟିମ ବାବୁଙ୍କର ମୋ ପ୍ରତି ବ୍ୟବହାର ଓ ମୋର ଦୋହଲା ମନ ଉପରେ ତାର ପ୍ରଭାବ, ମୋ ଭାବନାର ଗତିକୁ ବଦଳାଇ ଦେଇଥିଲା । ଯେତେଦିନ ଯାଏ ଭୁଣ୍ଡବାଇଦକୁ ଡରି, ଆତ୍ମମର୍ଯ୍ୟାଦାକୁ ବଡ଼ ମଣି କଢ଼େଇ ଚାଲୁଥିଲି, ମନରେ ସଙ୍କୋଚ ଥିଲା ।

ଆଶା କରିଥିଲି ଜୀବନଟା ଏହିପରି କଟିଯିବ । ନିଜ ଦୁର୍ବଳତା ମୁଁ ବୁଝି ପାରିଲି । ଆଉ ମୋର ଭୟ ନାହିଁ । ପରର କଥାରେ କାନ ଦେବି ନାହିଁ ।

ଆମ ଦୁହିଁଙ୍କୁ ନିବେଳା ସ୍ଥାନରେ ଦେଖିଲେ କିଏ କେତେ ପ୍ରକାର କହି ବୁଲିବେ । ବାହାର ଲୋକଙ୍କ ଆଗରେ ମୋ' ଦୁର୍ନାମର କେତେ ପ୍ରକାର ଛବି ଜୀଅନ୍ତା ରୂପ ଧରି ଠିଆହେବ । ସେଥିରେ ମୋର ଲାଭ କ୍ଷତି ନାହିଁ । ନିଜ ଆଖିରେ ମୁଁ ଯାହା, ମୁଁ ତାହା ।

ଚେମାଇ ଧୀରେ ଧୀରେ ତା ଜୀବନର ସୁଖ ଦୁଃଖର ସବୁ କଥା ମୋ ଆଗରେ କହିଗଲା । ଭାଗ୍ୟ ଉପରେ ତାର ଅଭିମାନ । ସେ ଟଳିବ । ସେଥିପାଇଁ ସଂସାରର ବୋଝ ମୁଣ୍ଡାଇବାକୁ ସେ ନିଜକୁ ଅକ୍ଷମ ମନେ କରୁଥିଲା । ଆଉ, ସେଇଥି ପାଇଁ ସେ ମନେ କରିଥିଲା, ଏମିତି ଫୁଲାଫାଙ୍କିଆ ହୋଇ ହସି ଖେଳି ସୁଖରେ ଜୀବନ କଟାଇ ଦେବ । ସଂସାରରେ ପଶି ସ୍ୱାଧୀନତା ହରାଇ ଅଭାବ ଅସୁବିଧାର ଗୃପରେ ପର ଆଗରେ ଗୋଡ଼ ଭାଙ୍ଗି ଠିଆ ହେବ ନାହିଁ । ସଂସାର କରି ସଂସାରକୁ ଯେଉଁ ମାନଙ୍କୁ ଆଣିବ, ସେମାନେ ତ ପୁଣି ଅଭାବର ପେଷଣରେ ପଡ଼ି ଦୁନିଆଁର ଦୁଃଖୀ ରଙ୍କୀଙ୍କର ସଂଖ୍ୟା ବଢ଼ାଇବେ ? ଏହା ଅପେକ୍ଷା ସ୍ୱପ୍ନର ସଂସାର, ସ୍ୱପ୍ନର ଆନନ୍ଦ ଭଲ, ନିରାପଦ ।

ବୁଢ଼ୀ ଆଈ ସେ ସବୁ ବିଶ୍ୱାସ କରନ୍ତି ନାହିଁ । ତାଙ୍କର ଆନନ୍ଦ ତାଙ୍କର ବିଶ୍ୱାସ ଚିରନ୍ତନ ଜୀବନ ଉପରେ, ବଂଶର ଜୀବନ ।

ବଂଶ କଅଣ ତୋରିଠାରୁ ବୁଡ଼ିବରେ ଚେମା ? ଏତେ ବଡ଼ ପାପ କାମ କରିବୁ ? ମାଛିଟାଏ ମାରିଲେ ପାପ ହେଉଛି, ଅଧର୍ମ ହେଉଛି, ଆଉ ତୁ ଏଡ଼େ ବଡ଼ ବଂଶଟାକୁ ମୂଳପୋଛ କରି ଦେବୁ ? ଠାକୁରଙ୍କର ଯଦି ସେ ଇଚ୍ଛା ଥାନ୍ତା, ତୁ ବଞ୍ଚି ଅଳ ଅତଯାତ ହେଉଥାନ୍ତୁ କେମିତିରେ ?

ଚେମାର ବଂଶ କେଉଁଠୁ ଆରମ୍ଭ ହେଲା କେଉଁଠି ସରିବ, ସେ କଥା ବୁଢ଼ୀ ବୁଝନ୍ତି ନାହିଁ ।

ଅଲୋ ଆଈ, ଏଡ଼ୁ ଦୁନିଆରେ ଜଣେ ମଣିଷ ବଞ୍ଚିଥିବା ଯାଏ ପୂର୍ବ ପୁରୁଷର ବଂଶ ବୁଡ଼ିବ ନାହିଁ ଲୋ ।

ବୁଝେ ନାହିଁ ଆଈ ବଡ଼ କଥା । ସେ ବୁଝେ, ଚେମାର ଜୀବନ ଲମ୍ବିଯାଉ କାଳ କାଳକୁ—ତାର ପୁଅ, ତାର ପୁଅ, ତାର ପୁଅ— । ତେଣୁ, ଚେମା ଘରକୁ ଯେମିତି ହେଉ କନିଆଁ ଆଣିବ, କେହି ନ ମିଳିଲେ ଦାଣ୍ଡରୁ ହାଟରୁ ଧରି ଆଣିବ ।

ସେଇଥି ପାଇଁ ଚେମାଇ ବୃହେଁ ବାହା ହେବ, ଆଉ ବାହା ହେବ ତୁଳସୀକୁ । ସଂସାରର ସୁଖ ଦୁଃଖ ସେ ଜାଣେ, ସଂସାରକୁ ହାଡ଼େ ହାଡ଼େ ସେ

ଛନ୍ତି । ତାର ଉପରେ ଶ୍ରେଷ୍ଠ ସଂସାରର ବୋଝ ଲଦି ଦେଇ ତେମା ନିଶ୍ଚିନ୍ତ ହେବ । ଅଈଙ୍କର ଏହା ହିଁ ଇଚ୍ଛା ।

ଉଠି ଆସୁଥିବା ଜହ୍ନ ଆଡ଼କୁ ଚାହିଁ ପଚାରିଲି, ତମର ଇଚ୍ଛା କଅଣ ତେମାଇ ?

ମୋର ଇଚ୍ଛା ତୁ ଜାଣୁ । ଏ ଘଡ଼ ଅନ୍ଧାର ପାର ହୋଇ ଏଇ ଯେଉଁ ଶୀତୁଳିଆ ଜହ୍ନଟା ଉଠି ଆସୁଛି, ତାକୁ ଯାଇଁ ଧରିବି, ତାଆରି ସଙ୍ଗରେ ମିଶିଯିବି ।

ତମର ଇଚ୍ଛାକୁ କେବଠୁଁ ବଦଳାଇଲ ଶୁଣେଁ ? ଜହ୍ନର ଶ୍ରୀ ଦେଖିବାକୁ ତେତେ ସୁଖ ପାଅ, ସେତିକି ତମର ଇଚ୍ଛା ଥିଲା । ଜହ୍ନ ଦେହରେ ମିଶିବାକୁ କେବେ ତମର ଆଗ୍ରହ ଦେଖି ନ ଥିଲି ।

ସତ କଥା, ତେବେ ଆଈ ମୋର ଟାଣପଣ ଭାଙ୍ଗିଛି । ଜହ୍ନ ଆଡ଼କୁ ଅଙ୍ଗୁଠି ଦେଖାଇ ହୁକୁମ ଦେଇଛି—ଧର ।

ତମର ଟାଣପଣ ଭାଙ୍ଗିଛି ନା ଦୁର୍ବଳତା ଭାଙ୍ଗିଛି ତେମାଇ ?

ତେତେ ସବୁ ହୁଏତ ସେଇଆ କହିବ ଲୋ ।

ରହସ୍ୟ କରି କହିଲି, ଅଙ୍ଗୁଠି ବଢ଼ାଇଲେ ଜହ୍ନ ଧରାଦିଏ ନାହିଁ । ଆଉ, ଶୁଣ ତେମାଇ, ଜହ୍ନ ପଛରେ ଏ ଘଡ଼ ଅନ୍ଧାର ଲୁଚି ଛପି ରହିଛି । ଖଣ୍ଡିଆ ଜହ୍ନ ଏ ଘଡ଼ ଅନ୍ଧାର । କେହି ଜାଣେ ନାହିଁ, ତା ଭିତରେ କଅଣ ଛପି ରହିଛି । ଲୋକେ ଯାହା ଦେଖି ପାରନ୍ତି ନାହିଁ ତା ସମ୍ବନ୍ଧରେ ନୂଆ କଥା ଗଢ଼ନ୍ତି । ମୋର ଜୀବନର ଯେଉଁ ଏ ଘଡ଼ ବିତି ଯାଇଛି, ଆଜ ସିନା ତମ ଆଖିରେ ସେ ଦିଶୁଛି ଅନ୍ଧାର, ସବୁ ଦିନେ ଅନ୍ଧାର ନ ଥିଲା । ପୂନେଇ ଜହ୍ନ ପୂର୍ଣ୍ଣ ପ୍ରଭା ନେଇ ଦିନେ ମୋର ଶ୍ରେଷ୍ଠ ଅଗଣାଟି ହସର ଜୁଆରରେ ଭସାଇ ଥିଲା ।

ଭାବିଲି ଏ ଘଡ଼ ଅନ୍ଧାର ଭିତରେ କଅଣ ଛପି ରହିଛି, ତେମା ଆଗରେ ସବୁ ଖୋଲି କହିବ । କିନ୍ତୁ ଅଜ କାହିଁକି ମୋ ସୁଖ ଦୁଃଖର କଥା ସେ ଶୁଣିବ ? ଅଜକାର ସଞ୍ଜ ନ ହୋଇ ଯଦି ଗତକାଲିର ସଞ୍ଜ ହୋଇଥାନ୍ତା, ଯେତିକି ସୂଚନା ସେ ମୋତେ ଦେଇଛି, ସେତିକିରେ ତାର ଗୋଡ଼ ତଳେ ଲୋଟି ଯାଇଥାନ୍ତି । ତାର କାମନା ଆଗରେ ନିଜକୁ ସମର୍ପି ଦେଇଥାନ୍ତି । ଅଜ, ଏଇ ନଦଗେଲା ସଞ୍ଜର ନିସ୍ତବ୍ଧିଆ ବାଟକଡ଼ ଆମ୍ବଗଛ ମୂଳେ ଯେତେ-ବେଳେ ସେ ତାର ସୁଖ ଦୁଃଖର କାହାଣୀ କହି ଯାଉଥାଏ, ମନର ଉଦ୍‌ବେଗରେ ମୋର ହାତପାପୁଲିଟି ନେଇ ତାର ବଳିଷ୍ଠ ହାତ ଭିତରେ ଚାପି ଧରେ । କଥାର ଲହରରେ ହାତ ହୁଗୁଳି ଆସିଲେ ଧୀରେ ଧୀରେ ପାପୁଲି ଟାଣିଆଣେ । ମୋତେ ଧରି ରଖିବାର ଥରକୁ ଥର ଚେଷ୍ଟା ତାର ବିଫଳ ହୋଇଛି ।

ପିଲା ଦିନର ଚେମାଇ, ଗହ୍ମାର ପାଖ ତୋଠା ତଳ ଚୁଙ୍କା ଉପରେ, ଏଇ ଦିଠା ହାତ ଶକ୍ତ ଶକ୍ତ ଥର ଏକାଠି ବନ୍ଧା ହୋଇଛି । ଖସାଇ ନେବାର ଇଚ୍ଛା କେବେ ହୋଇ ନାହିଁ । ଯୌବନର ଚେମା, ଦୂରରୁ ପାଟି ଶୁଣିଲେ କାନ ଡେରେ, କବାଟ ଖୋଲି ପଦାକୁ ଆସେ । ଚେମାଇ ଅଡ଼େଇ ଗୁହି ଗୁଲିଯାଏ । ମୁଁ ଜଣକର ହାତ ଧରି ପର ଘରକୁ ଯାଇ ପୁଣି ଫେରି ଆସିଛି ।

ଚେମାଇ ହସି ଖେଳି, ନିର୍ଜଞ୍ଜାଳୀ ହୋଇ ଜୀବନ କଟାଇ ଦେବାକୁ ବସିଥିଲା । ବୁଢ଼ିଲା ଲୋକ କୁଠାଖିଅକୁ ହାତ ବଢ଼ାଇଲା ପରି ସେଇ ପରିଣତ ହାତ ଅଡ଼କୁ ମନକୁ ବଢ଼ାଇଥିଲି । କେବେ ହେଲେ ସେ ହାତ ଲମ୍ୱାଇ ନାହିଁ । ମୋ ଉପରକୁ ପକାଇଛି ବାରମ୍ବାର ତାର ସଂସାର ପ୍ରତି ଉପହାସର କଥା । ଶୁଣି ଗୁଲି ଯାଇଛି । ହତାସ ହୋଇଛି । ଭାବନାର ଜାଲରେ ସେଇ ଚେମାକୁ ମନରେ ଘେରିଇ ରଖିଲି । ଭାବିଥିଲି, ସେଇ ଚେମା ମୋତେ ଭୁଣ୍ଡବାଇଦର ଦାଉରୁ ରକ୍ଷା କରିବ ।

ଚେମାଇ ସଂସାରର ଜାଲରେ ମୁଣ୍ଡ ଗଳାଇ ବାନ୍ଧି ହେବାକୁ ମନ ବଳାଇଛି । ତାର ଜୀବନର ସାଥି କରି ନେବାକୁ ମତେ ଅନୁରୋଧ କରିବାକୁ ଆସିଛି, କିନ୍ତୁ ମୁଁ ଆଜି ଆଉ ତା'ର ଅନୁରୋଧ ରଖି ପାରିବି ନାହିଁ । କାହିଁକି ତାର ଅନୁରୋଧ ରଖି ପାରିବି ନାହିଁ, ସେ କଥା ତାକୁ ଅଳ୍ପ କଥାରେ ବୁଝାଇ କହିଲି । ସେ ଧୀର ସ୍ଥିର ହୋଇ ସବୁ ଶୁଣିଲା ।

ଦୀର୍ଘଶ୍ୱାସ ଛାଡ଼ି କହିଲା, ସେଇ କଥା ମୁଁ ଆଗରୁ ତତେ କହିଥିଲି ଭୁଲସି, ମଣିଷର ଭୁଣ୍ଡ ଯେଉଁଠି ଠାଣ, ତାର ଦମ୍ଭ ସେଉଁଠି ଠାଣ ନୁହେଁ । ନଈ ସୁଅରେ କୁଟାକାଠି ଭାସିଗଲା ପରି ଆମେ ଏ ସଂସାରରେ ଭାସି ଗୁଲିଛୁଁ । କେଉଁଠି କେତେ ଶିଙ୍ଗବୁଡ଼ା ଖାଇବା, ପୁଣି କେଉଁଠି ଯାଇ ଶେଷକୁ ଲାଗିବା, ଜାଣି ହେବ ନାହିଁ । ତେବେ, ଆଗରେ ଯାହା ହାବୁଡ଼େ ପଡ଼େ ମଣିଷ ହାତ ବଢ଼େଇ ଧରେ । ଭଲ ମନ୍ଦ ଜାଣେ ନାହିଁ ।

ପୁଣି ସେ କହିଲା, ଯାହା ତୁ ଭାବୁଛୁ ଭୁଲସି, ସେଇଆ କର । ମଣିଷ ଠକିଲେ ଠିକେ । ଟିମା ଉପରେ ରାଗ କରି, କି ନିଜ ଉପରେ ରାଗକରି କିଛି ଲାଭ ନାହିଁ । ମଣିଷ ମାନେ ପଶୁ । ଯେଉଁ ପଶୁର ଖୁବ ଠାଣ ସେ ନାଚ କୁଦ ହୁଏ । ଯାହାର ଶିଙ୍ଗ ଅଛି, ଠାଣ ଶିଙ୍ଗ, ସେ ଭୁଷେ । ଦୁର୍ବଳଆ ମେଣ୍ଢା ଛେଳି ଗୁହାଳରେ ପଶି ମେଏଁ ମେଏଁ ହୁଏ । ସବୁଥିକି ତାର ଡର । ଅଖିବୁଜି ମୋର ପରି ଅଖୁକ୍କଅସ୍ତ୍ର ମନେ ପକାଇ, ସେ ପାକୁଳି କରେ ।

ଚେମାଇ କହୁ କହୁ ହସିଲା, ମୁଁ ମଧ୍ୟ ହସିଲି । କିନ୍ତୁ, ଯେତେବେଳେ ମୋର ଧାରଣା ହେଲା ଯେ ନିଜର ଦୁଃଖ କଥା ଭାବି ସେ ଅଭିମାନରେ ହସୁଛି, ମୋର ଛାତିରେ କିଏ ଯେପରି ଅଘାତ କଲା । ଭାବିଲି, ଚେମାଇ ମୋର କିଏ ଯେ

କାହାକୁ ନ ଭାବ ନ ଚିନ୍ତ ତା ଆଗରେ ଜୀବନର ସବୁ ଗୋପନ କଥା ଅନାୟାସରେ ଖୋଲିଦେଲି ! ଗ୍ଲାନି ତଳେ ଛପିଥିବା ବ୍ୟଥାର ଆଭାସ କେହି ଆଜିଯାଏ ପାଇ ନ ଥିଲେ ।

ଚେମାଇ କହିବାକୁ ଲାଗିଲା, ଦାଣ୍ଡ ଲୋକଙ୍କର ଭୁଣ୍ଡ ବାଇଦ ଯେ କାନରେ ଶୁଣେ ସେ ନିର୍ବୋଧ । ସୁରର ହାତ ଧରି ପୁଣି ତୋର କର୍ମ ଭୂଇଁକି ଫେରି ଯା । ଓଳେଇ ଗାଈ ପରି ବାରି କଅଁଳରେ ମୁହଁ ମାରି କୋଉ ଜୀବନଟା କେତେଡ଼େ ସୁଆଦ ବେଶ୍ ବୁଝି ପାରିବୁଣି । ରଷା, କୋଉଠି ଧକ୍କା ଦେଇନୁ । ଫେରି ଯା ନିଜ ଗୁହାଳକୁ, ସେଇଠି ମୁହଁ ମାଡ଼ ପଡ଼ୁଥା । ଦାଣ୍ଡଲୋକଙ୍କର ପଛରୁ ମାଙ୍କଡ଼ ହୁରୁଡ଼ା ପାଠି କାନ୍ଥରେ ବାଜି ଫେରି ଆସିବ । ଯା ଏଥର ।

ଜହ୍ନ କେତେ ଉପରକୁ ଉଠିଲାଣି । ଦେହ ଶୀତେଇଲାଣି । ଘରେ ମା ବେମାର । ତଥାପି ଚେମାଇ ପାଖରୁ ଉଠି ଆସି ପାରିଲି ନାହିଁ । କି ଜାତିର ଲୋକ ସେ ! କେତେ ଆଶା କରି ମୋ ଭୁଣ୍ଡରୁ ପଦେ ହିଁ ଶୁଣିବ ବୋଲି ସେ ଆସିଥିଲା । ମନରେ କେବେ ଭାବି ନ ଥିଲା ଯେ ମୁଁ ତାକୁ ହତାଶ କରିବି । କିନ୍ତୁ, ହତାଶ ହେଲେ ସେ ଆଉ ଲୋକଙ୍କ ପରି ଭାଙ୍ଗି ପଡ଼ିଲା ନାହିଁ । ହସ ଖୁସିରେ ସବୁ ଦୁଃଖ ଉଡ଼ାଇ ଦେଲା ।

ମୋ ମନ ତା ଆଡ଼କୁ ନଇଁ ଆସିଲା । ତାର ହାତ ପାପୁଲିକୁ ମୁଠାଇ ଧରି ପଚାରିଲି, ଚେମାଇ, କେମିତି ଆଉକୁ କଅଣ ଯାଇ କହିବ ?

ଗାଈ ବାଛୁରି ତାଙ୍କ ଗୁହାଳକୁ ଫେରିଗଲେ ।

ଆଉ ତେମେ ?

ମୁଁ ମୋ ଗୁହାଳରେ ପଶି ଗାଈ ବାଛୁରି ମୋହିବି । ମଶାପଲ, ଘସିଧୂଆଁ ଭିତରେ ବଳଦ ପିଠିକି ଆଉଜି ଘୁମେଇବି । ନିଶ୍ଚିନ୍ତରେ ସପନ ଦେଖିବି, ମଶା ଖାଇଲେ ଗୁପଡ଼ା ମାରି ହେବ । ଆଉ କଅଣ ?

ସେ ଉଠି ଠିଆ ହେଲା । କହିଲା, ଡେରି ହେଲାଣି । ବୋଝଟା ମୁଣ୍ଡକୁ ଟେକି ଦିଅଁ ।

ଚେମାଇ ମୋ ମୁଣ୍ଡ ଉପରକୁ ପଛବା ଟୋକେଇ ଟେକି ଦେଲା । ଚେମାଇ, ମୋ ମୁହଁକୁ ଗୁହିଁବାକୁ ସତେକି ତାକୁ ଲାଜ ମାଡ଼ୁଥିଲା । ମୁଁ ଭାବୁଥିଲି, ଚେମାଇ ମୋ ଆଗରେ ପ୍ରସ୍ତାବ ବାଡ଼ି ନାସ୍ତି ବାଣୀ ଶୁଣି ଅନୁତାପ କରୁଛି । ଆଉ ସେ ଭୁଣ୍ଡ ଖୋଲିଲା ନାହିଁ । ଧୀରେ ଧୀରେ ବୁଲି ପଡ଼ି ଏକ ମୁହାଁ ହୋଇ ସେ ଗୁଲିଗଲା ।

ମୁଁ ଥକାହୋଇ ଠିଆ ହୋଇ ରହିଲି । ମନରେ ମୋର ଅହା ଅହାର କୋହ ଭୁହାଇ ଉଠିଲା । ଅନ୍ଧ ବୁଢ଼ୀଙ୍କର ଅଗରେ ଯେଉଁ ଆଶା ଧରି ସେ

ଅସିଥିଲା ଓ ବିନା ସଙ୍କୋଚରେ ମୋ ଆଗରେ ଖୋଲି କହିଥିଲି, ସେ ଅଣା ମୁଁ ଭାଙ୍ଗିଛି ।

ଚିମବାବୁଙ୍କର ପରଶ ମୋ ଦେହ ଦୋହଲାଇ ଥିଲା, ଆଣିଥିଲା ମୂର୍ଚ୍ଛାଭିଆ ମୋହ । କିନ୍ତୁ ଚେମାଇର ପରଶ ମୋର ମନକୁ ଦୋହଲାଇ ଆଣିଲା କାନ୍ଦଣାର କୋହ ।

ମୋର ଦୁଇ ଆଖିରେ ଲୁହ ଭରିଗଲା । ମୁଁ ଫେରିଲି ।

ଚେମାଇର ଉପଦେଶ ବାଣୀ କାନରେ ବାଜି ଯାଉଥାଏ—ସୁରିର ହାତଧରି ଫେରିଯା କର୍ମ ଭୂଇଁକି ।

୨୨

ଯୌବନର ରଙ୍ଗିଲା ଆଖି ଆଗ ପଡ଼ିଥିଲା ସୁରଙ୍କ ଉପରେ । ଉତଳା ମନ ଧାଇଁ ଯାଉଥିଲା ଥରକୁ ଥର ତାଙ୍କର କଛକୁ । ଅଜଣା ପ୍ରେମର ଉଠପଡ଼ ଢେଉ ମାଡ଼ ଆସିଥିଲା ଦୁହିଁଙ୍କ ଆଡ଼କୁ । ବାଲି ବନ୍ଧପରି ଦଣ୍ଡକଟି ସ୍ରୋତର ମଝିରେ ଭାସି ହୋଇଥିଲେ ସୁରଙ୍କର ବଡ଼ଭାଇ ।

ସୁର ଦିନେ ମଥା ନୁଆଇଁ କହିଥିଲେ, ଭାଇ ଅଛନ୍ତି ।

ଦୁଇଟି ମନରେ ବେଦନା ଗୁମରି ଉଠିଥିଲା । ଗୃହବିଟି ଆଖି ତଳକୁ ନଇଁ ଥିଲା । ଲୁହଧାର ଗଡ଼ି ଆସିଥିଲା ।

ଗୃହେରିଟି ବର୍ଷ ଘରକରଣା ।

ଯାହାଙ୍କର ହାତ ଧରି ଯାଇଥିଲି, ତାଙ୍କରି ପ୍ରେମରେ ନିଜକୁ ହଜାଇ ଦେଇଥିଲି । ସବୁ ଅଭାବ, ସବୁ ଦୁଃଖ ଅମରି ପ୍ରେମର ସୁଅରେ ଭାସି ଯାଉଥିଲା ।

ଆଉ ଜଣକର ମନ ଯେ ଅମର ମନ ହଜା ଆନନ୍ଦ ଦେଖି ଛଟପଟ ହେଉଥିଲା, ସେ କଥା ଆଉ କେହି ବୁଝନ୍ତୁ ନ ବୁଝନ୍ତୁ ମୋ ପାଖରେ ଅଛପା ରହି ପାରୁ ନ ଥିଲା । ଆମରି ଆନନ୍ଦରେ ନିଜକୁ ମିଶାଇ ରଖିବାକୁ ସେ ପ୍ରାଣପଣ ଚେଷ୍ଟା କରିଥିଲେ । ଦିନ ଗଡ଼ି ହୁଏ ତ ସେହି ଚେଷ୍ଟା ସେ କରୁଥିଲେ । ଅସାବଧାନ ବେଳରେ ଉତ୍ତେଜନା ପଦାକୁ ଫୁଟି ବାହାରୁ ଥିଲା । ନୋହିଲେ, ସୁର କାହିଁକି ପିଲା ପରି ମୋ ସଙ୍ଗେ ଲାଗନ୍ତେ ? ମୋର ସେବା କରିବାକୁ, ଆନନ୍ଦ ଦେଖିବାକୁ, ଦେହର ଟିକିଏ ପରଶ ପାଇଁ ଆକୁଳ ହୋଇ ରହିଥାନ୍ତେ ?

ତାଙ୍କ ଭାଇଙ୍କର ମରଣ ସ୍ୱାଭାବିକ ହେଉ କି ତହିଁରେ ସୁରଙ୍କର ହାତ ଥାଉ, ସେ କଥା ଭାବିବାକୁ ମୋର ଆଉ ବେଳ ନାହିଁ କି ଧୈର୍ଯ୍ୟ ନାହିଁ । ଲୋକେ ଯାହା କହନ୍ତୁ, ଯେତେ ଦୁର୍ନାମ କରନ୍ତୁ, ଭୁଣ୍ଡ ବାଇଦ ରଟାନ୍ତୁ, ସେଥିରେ ମୋର କି ଥାଏ ? ମୁଁ ଆଜି ବୁଝିଛି, ବୟସ ଥାଉଣୁ, ଦେହରେ ଯୌବନ ଥାଉଣୁ,

ମନରେ ମିଳନ କାମନା ଆସିବ, ଦମ୍ଭକୁ ଦୋହଲାଇବ । ରୂପ ଥିବାଯାଏ କେତେ ଆଖି ଉପରକୁ ଟାଣି ହୋଇ ଆସିବ । ରକତରେ ନିଆଁ ଜଳାଇବ । ସବୁବେଳେ ସତର୍କ ହୋଇ ଅତୀତକୁ ଆଦରି, ମନ ମାରି, ଛାତିକୁ ଚାପି ରହିବା ସମ୍ଭବ ହେବ ନାହିଁ । ପରର ଛାତି ଉପରକୁ ମୁଣ୍ଡ ନଇଁଯିବ ।

ତେବେ, ନୂଆ ସଂସାର କରିବା ଅନୁଚିତ ହେବ ନାହିଁତ ?

ମଣିଷ ମରେ, ପୋଡ଼ି ଜଳି ପାଉଁଶ ହୁଏ, ପାଉଁଶ ଗଦାରୁ ମଣିଷ ପୁଣି ଉଠି ପାରେ ନାହିଁ । ମରଣ ଆଗରୁ ଦେହର ମନର ସୁଖ ଶାନ୍ତି ଓ ସନ୍ତୋଷ ପାଇଁ ଦି ଦିନିଆଁ ମଣିଷ ହଟି ରହିବ କାହିଁକି ? ଯୋଗୀ, ସନ୍ନ୍ୟାସୀ କି ମାତା ହୋଇ କେହି ସଂସାର କରେ ନାହିଁ କି ଭଲ ମନ୍ଦରେ ଘାଣ୍ଟି ଚକଟି ହୁଏ ନାହିଁ । ଖସଡ଼ା ବାଟ । ଯେତେ ଗୋଡ଼ ଚପି ଚପି ଚାଲିଲେ ବି କେବେ କେଉଁଠି କପଟି, କାହାର ଗୋଡ଼ ଖସିବ କେହି ଜାଣେ ନାହିଁ, କେହି କହି ପାରିବ ନାହିଁ ।

ଗୋଡ଼ ଖସି ପଡ଼ିଲେ ସମସ୍ତେ ଆଗ ହସନ୍ତି । ସେଇଠୁ ମୁହଁ ଶୁଖାନ୍ତି । କିଏ ଅବା ହାତଧରି ଉଠାଏ । ଆହା ପଦେ କହେ । ବଗୁର ପଡ଼େ କାହିଁକି ପଡ଼ିଲା, କପଟି ପଡ଼ିଲା । ଉପଦେଶର ଝଡ଼ ବହିଯାଏ । ଅସାବଧାନ ବୋଲି ନିନ୍ଦା ରଟେ । ପଛେ ପଛେ ହସ, ଥଟ୍ଟା, ତାମସା, ତାଳି ମାଡ଼ ଗୋଡ଼ାଏ । ଯାହାର ଗୋଡ଼ ଭାଙ୍ଗେ, ଅଣ୍ଟା ଜଖମ, ମୁଣ୍ଡ ଫାଟେ ତା ଦୁଃଖ କଷ୍ଟ ତାଆରି । କେହି ଭାଗ ନିଏ ନାହିଁ । ନିଜର କେହି ଥିଲେ, ସେ ଟାଣ ହୋଇଥିଲେ, ହାତଧରି ବାଟ କଢ଼ାଏ ନୋହିଲେ ନାହିଁ । ଇଏତ ସଂସାର କଥା ।

ଝିମଭାଇ ମୋ ଦେହଟା ଚାହାଁନ୍ତି । ସେଥିପାଇଁ ଟିକିଏ ଦୟା ଦେଖାଇ-ବାକୁ ହମହମ । ତେମାଙ୍କ ଦେହ ସଙ୍ଗେ ସଙ୍ଗେ ମନଟା ବି ଚାହେଁ, ସଂସାର ବୋଝ ମୋ ମୁଣ୍ଡକୁ ଟେକି ଦେଇ ନିଶ୍ଚିନ୍ତ ହେବାକୁ । ସେଇଠିକରେ ତାର ସ୍ନେହ ଓ ପ୍ରେମର ଶେଷ ।

ସୁରି, ଯିଏ ମୋରି ପାଇଁ ଭାଇର ଜୀବନ ନେଇଛି ?

ମୁଁ ଆସି ଘର ଅଗଣାରେ ପହଞ୍ଚିଲି । ଜହ୍ନ ରାତି । ମଝି ଘର କବାଟ ଦର ଆଉଜା ହୋଇଛି । ଫାଙ୍କବାଟେ ଭିତରୁ ଆଲୁଅ ଦେଖା ଯାଉଛି । ପାଖେଇ ଆସି ଶୁଣିଲି ବୋଉକୁ କିଏ କଅଣ କହୁଛି । ପରିଚିତ ସ୍ୱର ! ସୁରି !

ଛାତି ଦମକି ଉଠିଲା । ସୁରି ତ ! ସେ କାହିଁକି ଏତେଦିନ ପରେ ଅସମୟରେ ପହଞ୍ଚିଛନ୍ତି ? ଆଗ୍ରହ ହେଲା ଜାଣିବାକୁ । ଧୀରେ ଧୀରେ ପରିବା ଟୋକେଇଟି ପିଣ୍ଡାରେ ଥୋଇଲି । ଗୋଡ଼ ଚପି ଚପି ପାଖକୁ ଯାଇ କବାଟ ଫାଙ୍କରେ ଚାହିଁଲି ।

ବୋଉ ମଶିଣା ଉପରେ କରମାଡ଼ କନ୍ଥା ଘୋଡ଼ ହୋଇ ଶୋଇଛି । ତା'ର ଅଗରେ ତଳେ ଚେକା ପକାଇ ବସିଛନ୍ତି ସୁର । କୋଳରେ ମନୁଆଁକୁ ଧରିଛନ୍ତି । ଉବରଟି କାନ୍ଥ ପାଖରେ କରକଅ ହୋଇ ଜଳୁଛି ।

ସୁର, ସେ ବଦଳିଛନ୍ତି । ମୁହଁରେ ଆଉ ରୂଢ଼ ନାହିଁ, କି ମୁଣ୍ଡବାଳ ଅଲଗା ହୋଇ ଫୁର୍ ଫୁର୍ ଉଡ଼ୁନାହିଁ । ଅଗ ଦେହ ଫେରି ପାଇ ନାହାନ୍ତି, କିନ୍ତୁ ଅଗପରି ଗୋରୁମରା ହତଲକ୍ଷ୍ମୀ ପରି ଦିଶୁ ନାହାଁନ୍ତି । ସେ ପୁରରୁ ସତେକି ସେ ଫେରି ଅସିଛନ୍ତି ।

ଗୃହେଟି ବର୍ଷର ଘରକରଣା ଭିତରେ ବାହାରକୁ ଶାନ୍ତି, ଅନନ୍ଦ, ପ୍ରଫୁଲ୍ଲତା ଦେଖାଇଲେ ମଧ୍ୟ ଭିତରେ ଭିତରେ ସେ ଝୁରି ଝୁରି ଦିନ କାଟିଛନ୍ତି । ପରର ସ୍ତ୍ରୀ, ଭାଇର ସ୍ତ୍ରୀ, ସେଥିପାଇଁ କେବେ ମୁହଁ ଖୋଲି ଗ୍ରନ୍ଥି ତଳର ଛପିଲା କଥା କହି ପାରି ନାହାନ୍ତି । ପାଖରେ ଭାଇ, ବାହାରେ ଦୁନଆ, ଆଉ ଯାହା ପାଇଁ ତାଙ୍କର ଦୁଃଖ, ସେଇ ଭାଉଜ, ଭାଇର ପ୍ରେମ ସୁହାଗରେ ବୁଡ଼ି ରହିଛି । ନିଜକୁ ସେ ହଜାଇ ଦେଇଛି । ଥରଟିଏ ସେନା ଧେନର ଅଞ୍ଜନ ଅଖିରେ ବୋଳି କଡ଼େଇ ଗୃହୁଁ ନାହିଁ ।

ମନପବନକୁ ଯେତେ ଅଟକାଇ ରଖିବାକୁ ଚେଷ୍ଟା କଲେ ମଧ୍ୟ ସେ ପାରି ନଥିଲେ । ଟିକିଏ ଫାଙ୍କ ପାଇଲେ ନିଜ ରୂପଧରି କଥାରେ ଓ କାର୍ଯ୍ୟରେ ସବୁ ପଦାକୁ ଫୁଟି ବାହାରୁଥିଲା । ସବୁ ଅବୁଝା ପରି ମତେ ଜଣା ଯାଉଥିଲା । ସନ୍ଦେହର ଧୂଆଁ ଅଖି ଅଗରେ ଅନ୍ଧାରର ପରଦା ଟାଣି ଦେଇଥିଲା । କିନ୍ତୁ ତାଙ୍କର ଲଗାମ ହୁଗୁଲା ଉତ୍ତେଜନାକୁ ଲଗାମ ଟାଣି ଅଟକାଇ ପାରୁଥିଲେ ।

ଆଉ, ମୋର ସ୍ୱାମୀ, କେଡ଼େ ସହଜରେ ନିଜର ଉଜ୍ଜ୍ୱଳ ସ୍ୱଭାବ ଦ୍ୱାରା, ମନର ଅନ୍ଧାରକୁ ଘୁଞ୍ଚାଇ ଦେଉଥିଲେ । କାବା ହୋଇ ଗୃହିଁ ରହୁଥିଲି । ପଗ୍ଚରୁଥିଲି ନିଜକୁ ନିଜେ, କଥା କଅଣ ? ମନ ମୋର ଉତ୍ତର ଦେଉଥିଲା, ନିଜ ଭାବନାର ଅନ୍ଧାରରେ ତୁ ସନ୍ଦେହର ଭୂତ ଦେଖୁଛୁ । ଲାଜରେ ଶଙ୍କି ଯାଉଥିଲି ।

ରୁଖା ତଳେ ସବୁ ଥିଲା ଅନ୍ଧାର । ଦୂରରୁ ଦୁନଆଁର ଉଜ୍ଜ୍ୱଳ ଆଲୁଅରେ ରୁଖା ତଳର ଗ୍ରୋଟ ଅନ୍ଧାର ପତଳା ଦିଶେ । ସବୁ ଜଳ ଜଳ ହୋଇ ଅଖିକୁ ଦେଖାଯାଏ ।

ଅକାଶର ଗୃନ୍ଦ ଧରିଲା ପରି କେଡ଼େ ଖୁସି ହେବେ ସୁର, ଯଦି ସେ ଜାଣିବେ, ବୃନ୍ଦାବନରେ କାନ ନ ଦେଇ, ଗତ କଥା ଖରାପ ସପନ ପରି ଭୁଲି, ମୁଁ ମନ କରିଛି, ପୁଣି ତାଙ୍କର ଘରକୁ ଫେରିଯିବି ତାଙ୍କର ସ୍ତ୍ରୀ ହୋଇ ।

ମନୁଆଁର ବାପାଙ୍କ ଉଦ୍ଦେଶ୍ୟରେ ନିର୍ମଳ ଜହ୍ନ ଆଲୁଅରେ ସୁର ଓ ମୁଁ ଲଗାଲଗି ହୋଇ ତଳେ ମୁଣ୍ଡ ନୁଆଇଁ ପ୍ରଣାମ କରିବୁ । ଉପରେ ଥାଇ ସେ ଆମକୁ ଆଶୀର୍ବାଦ କରିବେ । ମୋ ମନରେ କହିବେ, ବୃନ୍ଦାବନ ମିଛ ।

ସତ କଅଣ ଜାଣ ତୁଳସି ? ସୁର ମୋର ପିଲା ଭାଇଟା, ତମୁକୁ ଭଲ ପାଇଥିଲା, ତାର ମନଗହନରେ ହୁ ହୁ ନଆଁ ଜଳୁଥିଲା । କର୍ତ୍ତବ୍ୟବୋଧରେ ସେ ସାମାଜିକ କର୍ତ୍ତବ୍ୟ କରୁଛି, ହସ ଖେଳ—ସ୍ନେହ ଭକ୍ତି । କିନ୍ତୁ ଭିତରର ନଆଁ ଅଲିଭା ରହିଲା, ରହିଥାନ୍ତା ଚିରଦିନ ।

ଶୁଣ ତୁଳସି, ସୁର ମୋର ପିଲା ଭାଇ । କାଖରେ କୋଳରେ ଧରି ତାକୁ ମୁଁ ମଣିଷ କରିଛି । ତା ଦୁଃଖ ମୁଁ ସହି ପାରିଲି ନାହିଁ । ମୋର ଆଉ ଲୋଡ଼ା କଅଣ—ଭାଇ, ସ୍ତ୍ରୀ, ପୁଅ, ଘର, ଜମି । ସୁରକୁ ମଣିଷ କରିଛି । ବେଶ୍, ସେତିକି ମୋର ଆନନ୍ଦ ଓ ସୁଖ । ମୁଁ ଥିବାଯାଏ ସେ ସୁଖୀ ହୋଇ ପାରିବ ନାହିଁ ।

ତୁଳସି, ମୁଁ ତ ତୁମକୁ ଚାହିଁ ନ ଥିଲି, ମୁଁ ତୁମକୁ ଏ ଘରକୁ ଆଣି ନ ଥିଲି, ଆଣିଥିଲା ସୁର । ତୁମେ ନ ହୋଇ ଆଉ ଯାହାକୁ ସେ ତାର ନୂଆବୋହୂ କରି ଆଣିବାକୁ ଚାହିଁଥାନ୍ତା ସେ ହୋଇଥାନ୍ତା ମୋର ସ୍ତ୍ରୀ, ମୋ ସନ୍ତାନର ମା । ତୁମେ ଆସିଲ, ତୁମେ, ଯାହାକୁ ସେ ଭଲ ପାଇଥିଲା, ଯାହାକୁ ସେ ଚାହେଁ । ସେତିକି ହେଲା ତାର ଭୁଲ । ସୁର ବେଳେ ବେଳେ ଏପରି ଭୁଲକରେ । ମୁଁ ସୁଧାରି ନିଏ ।

ତାର ଏଇ ଭୁଲଟା ମୁଁ ସୁଧାରି ନେଇଛି ତୁଳସି, ତମ ମଝିରୁ ମୁଁ ଖସି ଆସିଛି । ସୁଖରେ ସଂସାର କର । ଉପରୁ ମୁଁ ଦେଖିବି, ଆଶୀର୍ବାଦ କରିବି, ଖୁସି ହେବି । ତୁମେ ବା ଖୁସି ନ ହେବ କାହିଁକି ? ସୁର ଓ ମୋ ମଧ୍ୟରେ ପ୍ରଭେଦ ନାହିଁ । ଏକା ନାଡ଼ି ଦଉଡ଼ି, ଏକା ରକ୍ତ ଦ ଧାରି ।

ସେହି ଚନ୍ଦ୍ରଉଦଅ ଶୀତଳ ରାତିରେ ଏକ ସଙ୍ଗେ ଦହେଁ ତଳୁ ମୁଣ୍ଡ ଉଠାଇବୁଁ । ତାଙ୍କର ଆଶୀର୍ବାଦ ମୁଣ୍ଡରେ ଘେନ ଦହେଁ ଦହିଁଙ୍କୁ ଚାହିଁ ରହିବୁ । ମୁହଁରୁ କଥା ବାହାରିବ ନାହିଁ । ସୁରଙ୍କ ଭିତରେ ମୁଁ ଦେଖୁଥିବି ମନୁଆଁର ବାପାଙ୍କୁ, ମୋ ଭିତରେ ସେ ତାଙ୍କର ଭାଇଙ୍କର ଉପସ୍ଥିତି ଅନୁଭବ କରୁଥିବେ ।

ରୁପେଲି ଆଲୁଅରେ ମନୁଆଁ ଚେକା ଭଉଁରି ଖେଳ ଆମରି ଚାରି ପାଖେ ଘେରା ପକାଇବ । ବୁଲି ବୁଲି ଆସି ଢଳି ପଡ଼ିବ ଦହିଁଙ୍କ ମଝିରେ ।

ଦୁଇ ଆଖି ଭରି ଲୁହର ସୁଅ ଛୁଟିଥିଲା ।

କବାଟ ଫାଙ୍କରେ ଦେଖିଲି, ହସ ହସ ମୁହଁରେ ସୁର ମନୁଆଁର ଶୋଇଲା କପାଳରେ ଚୋକ ଦେଉଛନ୍ତି । ମୋର ଦେହ ଶୀତେଇ ଉଠିଲା । ଆନନ୍ଦରେ ଅଧୀର ହୋଇ ପଡ଼ିଲି । ଇଚ୍ଛା ହେଲା, କବାଟକୁ ଠିଆ ମେଲା କରି ଭିତରକୁ ପଶିବି । କୃତ୍ରିମ ରାଗ ଦେଖାଇ ଗମ୍ଭୀର ହୋଇ ପଚାରିବି, ତୁମେ କାହିଁକି ମତେ ଜଳାଇ ମାରିବାକୁ ଏ ଘରେ ଗୋଡ଼ ଦେଲ ?

ଡର ଡର ସେ ଉଠିବେ । ଅଖି ଛଳ ଛଳ କରି ପ୍ରଣାମ କରି କହିବେ, କ୍ଷମାକର ନୂଆଉ, ମନୁଆଁ କୁ ନ ଦେଖିଲେ ମୁଁ ବାଇଆ ହୋଇଯିବି ।

ଫେରି ପରି ଏଇ ବାଟେ ସେ ଧୀରେ ଧୀରେ ଚାଲି ଯାଉଥିବେ । ପଗୃରିବି ହସିହସିକା, କାହାକୁ ନ ଦେଖିଲେ ବାଇଆ ହେବ ?

ସେ ଅଟକି ଠିଆ ହେବେ । ମୁହଁ ଫେରାଇବେ । ତାଙ୍କର ଶୁଖିଲା ମୁହଁରେ ହସ ଚହଟିବ । ଚୁନ ଚୁନ ସେ ଉତ୍ତର ଦେବେ, ମନୁଆଁ ର ମା'କୁ ।

ମୁହଁ ଫଣଫଣ କରି ପଗୃରିବି, କାହାକୁ ?

ପାଖକୁ ଘୁଞ୍ଚି ଆସିବେ । ହାତଧରି କହି ପକାଇବେ ମନର କଥା, ବୁଝି ପାରୁନ ? ତୁମକୁ ।

ଲାଜରେ ମୁଁ ଦୃଷ୍ଟି ନୋଇଁବି ।

ନିଜ ଚିନ୍ତାରେ ମୁଁ ମଜ୍ଜି ଯାଇଥିଲି । ସୁର ଓ ବୋଉ କଥାଭାଷା ହେଉଥିଲେ । ମୋର କାନରେ ବାଜିଲେ ମଧ୍ୟ ମନରେ ପଶୁ ନ ଥିଲା । ବୋଉର କେଇପଦ କଥାରେ ମୋର ଭାବନା ଭାଙ୍ଗିଲା ।

ସେ କହି ଉଠିଲା, ବାପା ରେ, ତତେ ଆଉ କଅଣ କହିବି ? ତୁଳସୀର ପିଲା ବୁଦ୍ଧି ଗୁଡ଼ ନାହିଁ । ମୋର ସମୟ ହୋଇ ଆସିଲା । ଆଉ ବେଶି ଦିନ ନୁହେଁ । ତୁଳସୀ ତତେ ଲାଗିଲା ।

ସୁର କହିଲେ, ତେତେ ସେ କଥା ଭାବନାହିଁ ମାଉସୀ ! ମୁଁ ବଞ୍ଚିଥିବା ଯାଏ, ନୂଆଉର ଆପଦ ବିପଦ ବେଳେ ନିଜେ ଆସି ପାଖରେ ଠିଆହେବି । ତାଙ୍କର ମନରେ ଦୁଃଖ ହେବାର କଥା, ଦୁଃଖ ହୋଇଛି । ଲୋକଙ୍କ କଥା ଶୁଣି ମୋତେ ସେ ଅବିଶ୍ୱାସ କରିଛନ୍ତି । ନିଜର ଘରସମ୍ପତ୍ତି ଗୁଡ଼ ପର ଦ୍ୱାରରେ ପାଇଟି କରୁଛନ୍ତି ଖାଲି ଅଭିମାନରେ । ଦୂରରେ ଥାଇ ମଧ୍ୟ ମୁଁ ତାଙ୍କର ଭଲ ମନ୍ଦ ପ୍ରତି ନିଘା ରଖିଛି ।

ବୋଉ କହିଲା, କାହାରି ଝାଣ ବେଶି ଦିନ ରହେ ନାହିଁ, ତୁଳସୀର ମଧ୍ୟ ରହିବ ନାହିଁ । କାଲି ମୁଁ ଅଖି ବୁଜିଲେ, ସେ ଦାଣ୍ଡରେ ଠିଆ ହେବ । ଅରେ ବାପ, ଦାଣ୍ଡରେ ଯେ ବାଟ ଚାଲେ, ଟିକିଏ ଅଣନିଅସିଅର ହେଲେ ସେ ଝୁଣ୍ଟେ । ତୁଳସୀର ବୟସ ଅଛି, ରୂପ ଅଛି, ପୁଣି ଦାଣ୍ଡରେ ଚାଲୁଛି ଏକୁଟିଆ ନିଆଶ୍ରୀ । ହୁଏ ତ ସେ ଥରେ ଅଧେ ଝୁଣ୍ଟିବ । ମଣିଷ ଜନ୍ମ ପାଇ କେହି ଗର୍ବ କରି ପାରିବ ନାହିଁ ଯେ ଗୋଡ଼ ଖସି ନାହିଁ କି ଖସିବ ନାହିଁ । ହୁଏତ କେବେ ତା'ର ସେଇଆ ହେବ । ସେତିକବେଳେ, ଲୋକେ ଯେତେବେଳେ ଦୁର୍ନାମ ରଟାଇ ବୁଲିବେ, ତୁ ତାକୁ ଆଶ୍ରା ଦେବାକୁ ପଛେଇବୁ ନାହିଁ ।

ସୁର କଅଣ ଜବାବ୍ ଦେବେ ଶୁଣିବାକୁ ଆଗ୍ରହରେ କାନ ଡେରି ରହିଲି । ତାଙ୍କର ପଦେ ଉତ୍ତରରୁ ତାଙ୍କ ମନର ପରିଚୟ ମିଳିବ ।

ବୋଉ ପଚାରିଲା, ଭୁଲ କରିଛି ଯେ ? ଘୃଣା ହେବ ? କାହିଁକି ? ମଣିଷର ଜୀବନ ଆଉ ମନ ତୁଳନାରେ ସାମାନ୍ୟ ଟିକେ ଭୁଲ ତ ବଡ଼ କଥା ନୁହେଁ । ସବୁ ଭୁଲ ସୁଧୁରି ଯାଏ, ମଣିଷ ପୁଣି ନିର୍ମଳ ହୁଏ ।

ସୁର ହସିଲେ । କହିଲେ, ମୁଁ ସେ କଥା ଭାବୁନାହିଁ । ଗୋଡ଼ ଯେ ଖସାଏ, ତା କଥା ସେ ଜାଣେ । ମୋ ନୂଆଉକୁ ମୁଁ ଭଲ କରି ଜାଣେ । ତାଙ୍କର ମନଟି କୋମଳ । ସେ ଅଭିମାନିନୀ । ସେଇଥି ପାଇଁ ସେ ନିଜର ଅନ୍ଧାର ରହିଛନ୍ତି । ନିଜେ ଦୁଃଖ ସହି ସମସ୍ତ କଟାଉଛନ୍ତି । ନୂଆଉ ମୋର ଜଳନ୍ତା ନିଆଁ । ତେମେ ମା ବୋଲି ତମର ଦୁଡ଼ୁଗୁଡ଼ୁ ମନ ସବୁବେଳେ ସନ୍ଦେହରେ ଝୁରୁଲେ । ସେଥିପାଇଁ ଆଲୁଅ ଭିତରେ ତେମେ ଅନ୍ଧାର ଦେଖୁଛ ।

ସୁରଙ୍କର ମୋ ଉପରେ ପ୍ରଗାଢ଼ ବିଶ୍ବାସ । ଅହା, ସେ ଜାଣନ୍ତି ନାହିଁ ଯେ ବାହାର ଦୁନିଆଁର ଝଡ଼ ବରଷା ସେହି ଜଳନ୍ତା ନିଆଁକୁ ପାଣିରୁ ବଳି ଶୀତଳ କରିଛି । ସବୁ କଥା ଭୁଲି, ପରର ଗ୍ଭଳି ଉପରେ ମେ ମୁଣ୍ଡ ନୋଇଁଛି ।

ବୋଉ ଉଠି ବସିବାକୁ ଚେଷ୍ଟା କରୁଥିଲା, ସୁର ତାକୁ ବାରଣ କଲେ । ସେ ପୁଣି ଶୋଇଲା । କହିଲା, ତୁଳସୀ ପଇବା ଆଣିବାକୁ ଗାଁକୁ ଯାଇଛି । ଦିନ ଥିଲା । ରାତି ଏତେ ହେଲାଣି, ସେ ଫେରିଲା ନାହିଁ । ସେ ଜାଣେ, ମତେ ଜର । କେବେ ଏପରି ଡେରି କରେ ନାହିଁ ।

ସୁର କହିଲେ, ଆସୁଥିବେ ।

ଏତେ ଡେରି ହେଲାଣି, ରାତିରେ ତତେ ମୁଁ ଛାଡ଼ି ଦଅନ୍ତି ନାହିଁ । ତୁଳସୀର ତୋଡ଼ ମୁଁ ସହିପାରେ ନାହିଁ । ଡେରି ହେଉଛି, ରାତି ବକାଳି, ଗଦାଏ ବାଟ, ତୁ ଏଥର ଯା ।

ତମୁକୁ ଏପରି ଅବସ୍ଥାରେ ଛାଡ଼ି ମୁଁ ଯିବା ନାହିଁ । ନୂଆଉ ଆସନ୍ତୁ, ତାଙ୍କୁ ଥରେ ଦେଖି ମୁଁ ଚାଲିଯିବି । ଭାଇ ମଲାଦିନୁ ମୋର ଡର ଭୟ ଭାଙ୍ଗିଛି ।

ତୁଳସୀ ବିରକ୍ତ ହେବ ବାପ, ରାତି ଅଧରେ ପୁଣି କାହିଁକି ଅଶାନ୍ତି ହେବ, ପାଟି ଭଣ୍ଡ ଶୁଭିବ । ଗାଁକୁ ଛାଡ଼ି ଏକୁଟିଆ ଘର ହେଲେ ବି ଖଳ ଲୋକେ କାନ ପାରନ୍ତି । ବାର କଥା ପ୍ରଚାର କରିବେ । ତୁ ଏଥର ଯା ।

ନୂଆଉ ବିରକ୍ତ ହେବେ । ତାଙ୍କର ସ୍ନେହ, ଆଦର ପାଇଥିଲି । ତାଙ୍କ ବିରକ୍ତିକୁ ମୁଁ ମନରେ ଧରେ ନାହିଁ । ତାଙ୍କର ରାଗ ରୋଷ, ଗାଳିକୁ ମୁଁ କଲ୍ୟାଣ ବୋଲି ମଣେ । ସେତିକି ମନେ ପକାଇ ମୋର ଏକୁଟିଆ ଜୀବନ ମୁଁ କାଟେ । ନୂଆଉକୁ ଘରେ ଆତଯାତ ହେଲାକ ସପନ ଦେଖେ । ବେଳ କଟିଯାଏ ।

ମୁଁ ସେ କଥା ଜାଣେ ରେ ପୁଅ । ତୁଳସୀକୁ କାନ କାନ କରି ଶିଖାଇଲି । ସେ ଶୁଣୁ ନାହିଁ । କହିଲି, ଆଲୋ ଝିଅ, ନିଜ ଘରକୁ ଫେରି ଯା, ସୁଖରେ ଘର କର । ସଂସାରରେ ଭଲମନ୍ଦ ଲାଗିଛି । ସୁରର ହାତଧରି ଚାଲିଲେ କେହି

ଫଟେ କହି ପାରିବେ ନାହିଁ । ତୁ ସୁରର କେହିବି ସେ କେବ ତୋର । ଠାକୁରଙ୍କର ଯଦି ଏପରି ଇଚ୍ଛା ନ ଥାନ୍ତା, ଅନାହୂତ ବୀରକୁ ସେ ନେଇ ଯାଇ ନ ଥାନ୍ତେ ।

ସୁର କଅଣ ଉତ୍ତର ଦେବେ ଶୁଣିବାକୁ ବ୍ୟାକୁଳ ହୋଇ କବାଟ ଫାଙ୍କରେ ଚାହିଁ ରହିଲି । ସାରା ଶରୀର ମୋର ଥରି ଉଠିଲା । ଛାତି କମ୍ପି ଉଠିଲା । ଦେହରୁ ଗମ୍‌ଗମ୍ ଝାଳ ନିଗିଡ଼ି ପଡ଼ିଲା । ବୋଉ ତ ତାର ମରମ କଥା କହିଛି ।

ସୁର ବିଚଳିତ ହେଲାପରି ଦିଶିଲେ । ମୁହଁର ଜ୍ୟୋତି ମଳିନ ହେଲା । କପାଳରେ ହାତ ଦେଇ ମୁହଁ ପୋତି ଟିକିଏ ରହିଲେ । ପୁଣି ମୁହଁ ଟେକିଲେ । ଆଲୁଅରେ ଦୁଇ ଆଖିରେ ଲୁହ ଛଳ ଛଳ ହେଉଛି । ଲୁଗା କାନିରେ ମୁହଁ ପୋଛିଲେ । ଦୀର୍ଘଶ୍ୱାସ ଛାଡ଼ିଲେ । ମନୁଆକୁ କୋଳରୁ ଉଠାଇ ବିଛଣାରେ ଶୁଆଇ ଦେଲେ । ନିଜେ ଉଠି ଥରିଲା ସ୍ୱରରେ କହିଲେ, ଅନ୍ୟ ଲୋକଙ୍କ ପରି ତେତେମ ବି ଭୁଲ ବୁଝିଲ ମାଉସି । କିଏ ଆଉ ମନର କଥା ବୁଝିବ, କାହା ଆଗରେ ଗୁହାରି କରିବ ? ଠାକୁରେ କାହିଁକି ମୋ ଭାଇକୁ ଆମ ପାଖରୁ ନେଇଗଲେ, ସେ କଥା ସେ ଜାଣନ୍ତି । ମଣିଷ ଜାଣିବ ନାହିଁ । ମୁଁ ଜାଣେ, ସେ ଆମୁକୁ ଦୁଃଖ ଦେଇ ପରୀକ୍ଷା କରୁଛନ୍ତି ।

ଟିକିଏ ରହି ସୁର ପୁଣି କହିଲେ, ମୁଁ ଯାଉଛି । ମୋ ନୂଆଉ ଫେରିଲେ ତାଙ୍କୁ କହିବ, ନା, କିଛି କହିବ ନାହିଁ ।

ଥକ୍‌କା ହୋଇ ଷଣେ ଠିଆ ହେଲି । ଭାବିଲି, ସୁର କଅଣ ସତ କହିଲେ ଯେ ବୋଉ ଭୁଲ୍ ବୁଝିଛି ? ତେବେ, ମୋର ସବୁ ଧାରଣା, ସବୁ ଭାବନା ଭୁଲ ? କେଜାଣି ବା ସୁର ଛଳନା କରିଛନ୍ତି ।

## ୨୩

କବାଟ ଠେଲି ଘର ଭିତରକୁ ପଶିଲି । ଗୋଡ଼ ଥରି ଉଠୁଥାଏ । ଅଜଣା କୋହ ମୋର ଛାତି ଦୋହଲାଉ ଥାଏ ।

ମୋତେ ଦେଖି ବୋଉ ଉଠି ବସିଲା । ତଳେ ମୁଣ୍ଡ ଲଗାଇ ସୁର ଓଲଗି ହେଲେ ।

ମାଡ଼ ମାରିଲା ପରି ଲାଗୁଥାଏ । ଆଖିର ଲୁହ ଅଟକାଇ ପାରିଲି ନାହିଁ । ସୁରଙ୍କ ମୁହଁକୁ ଚାହିଁ ପାରିଲି ନାହିଁ ।

ବୋଉ କହିଲା, ତାର କିଛି ଦୋଷ ନାହିଁ ମା, ମୁଁ ତାକୁ ଅଟକାଇ ରଖିଲି । ଏତେବେଳ ଯାଏ କେଉଁଠି ରହିଲୁ ? ପିଲାଟା ଉପାସରେ ଶୋଇଲା । ତୁ ଗଲାବେଳୁଁ ମୁଁ ଜରରେ କମ୍ପୁଛି । ଉଠି କରି ପାଣି ମନାଏ ହାତରେ ଆଣି ପିଇବାକୁ ଶକ୍ତି ନାହିଁ । ସୁର ଯଦି ଆସି ନ ଥାନ୍ତା ମରି ଯାଇଥାନ୍ତି ମା ।

ବୋଉ ଆଡ଼କୁ ଥରଟିଏ ଆଖି ଫେରାଇ ସୁରଙ୍କ ଆଡ଼କୁ ଚାହିଁଲି । ଗଳା ବନ୍ଦ ହୋଇ ଆସୁଥାଏ । କେତେ କଥା କହିବ ମନେ କରିଥିଲି, ଥରିଲା ଓଠରୁ ପଦଟିଏ ଭଙ୍ଗା କଥା ବାହାରିଲା—ସୁର !

ସୁର ତଳକୁ ମୁହଁ ପୋତି କହିଲେ, ମାଉସୀ ମିଛ କହୁଛନ୍ତି । ତମର ଉପରେ କେତେବେଳୁଁ ଚାଲିଯିବାକୁ ମତେ ସେ କହିଲେଣି, ମୁଁ ଯାଉ ନାହିଁ । ମୁଁ ଜାଣେ, ମତେ ଦେଖିଲେ ତମେ ବିରକ୍ତ ହେବ । ହେଲେ, ତମକୁ ଥରେ ନ ଦେଖି, ତମକୁ ଓଳଗି ନ ହୋଇ ମୁଁ ଯାଇ ପାରିଲି ନାହିଁ । ଏଥର ମୁଁ ଯାଉଛି ନୂଆଉ ।

ସୁରଙ୍କ ଆଗରେ ତୁନି ହୋଇ ବସି ଆଖିରୁ ଲୁହ ପୋଛିଲି । କି ଉତ୍ତର ଦେବ ଖୋଜି କଥା ପାଇଲି ନାହିଁ । ମନ ହେଉଥିଲା, ଓଲଟି ତାଙ୍କରି ଗୋଡ଼ତଳେ ମୁଣ୍ଡ ଲଗାଇ କ୍ଷମା ମାଗିବି । କହିବି, ଛଳନା କରି ଆଉ ଲାଭ ନାହିଁ । ତୁମେ ଯାହା ଚାହିଁ ମୁଁ ଜାଣେ । ଦୁନିଆଁର ଘଣ୍ଟାଚକଟାରେ ପଡ଼ି ମୋର ଦମ୍ଭ ଭାଙ୍ଗିଛି । ଉପର ମୁହଁ ତଳକୁ ହୋଇଛି । ନିଜ ଉପରେ ମୋର ଆଉ ବିଶ୍ୱାସ ନାହିଁ । ଏତେ ଦିନକେ ତମର ଇଚ୍ଛା ଆଗରେ ନିଜକୁ ମୁଁ ଅରପି ଦେଉଛି । ମୋର ଭୁଣ୍ଡ ଖୋଲିଲା ନାହିଁ ।

ସେମାନେ ବି ତୁନି ହୋଇ ରହିଲେ । ନିସ୍ତବ୍‌ଧତା ଭିତରେ କିଏ କଅଣ ଭାବୁଥାଏ କେଜାଣି, ମୋ ମନରେ ଗୋଟିଏ କଥା ଓଲଟପାଲଟ ହେଉଥାଏ— ସୁର ଛଳନା କରୁଛନ୍ତି । ଭଲେଇ ହୋଇ ଧୂଆଁ ବାଣ ମାରୁଛନ୍ତି ।

ଦୂର ଗହିର ଆଡ଼ୁ ବିଲୁଆ ପଲର ଡାକ ରାତିର ନୀରବତା ଭାଙ୍ଗିଲା । ବୋଉ ବ୍ୟସ୍ତ ହୋଇ କହିଲା, ରାତି ବେଶୀ ହେଲାଣି, ଯିବାର କଥାତ, ତୁ ଯା ସୁର ।

ସୁର ମୋ ଆଡ଼କୁ ଅନାଇଲେ । ତାଙ୍କର ଆଖି ଲୁହରେ ପୂର୍ଣ୍ଣ ହୋଇଗଲା । ମୋତେ ଆଉଥରେ ପ୍ରଣାମ କରି ସେ ଧୀରେ ଧୀରେ ପଦାକୁ ଆସିଲେ । ମୁଁ ମଧ୍ୟ ତାଙ୍କ ପଛେ ପଛେ ପଦାକୁ ଆସିଲି । ସେ ଏକମୁହାଁ ହୋଇ ଫାଟକ ଆଡ଼କୁ ଚାଲି ଚାଲି ଗଲେ । ପଛରେ ଗଲି । ଦୂରତା ଆଉ ପାଖରୁ ସେ ଫେରି ଚାହିଁଲେ ।

ଆଶ୍ଚର୍ଯ୍ୟ ହୋଇ ଥରିଲା ସ୍ୱରରେ କହିଲେ, ନୂଆଉ !

କଣ୍ଠ ଥରି ଉଠିଲା, କହିଲି, ହଁ, ସୁର !

ଅଉଜା ଫାଟକର ଆରପାଖେ ସୁର, ଏ ପାଖେ ମୁଁ । ମୁଣ୍ଡ ଉପରୁ ଆକାଶ ତଳକୁ ଓହଳି ପଡ଼ିଥିବା ଜହ୍ନର ତେରଚ୍ଛା ଆଲୁଅ ତାଙ୍କର ଫାଳେ ମୁହଁ ଉଜ୍ଜ୍ୱଳ କରୁଥାଏ । ପୂବେଇ ପବନରେ ବାଳଗୁଡ଼ିକ ଫୁର୍ ଫୁର୍ ଉଡ଼ୁଥାଏ ।

ବୋଉ ଡାକି କହିଲା, ଅଲୋ ତୁଳସୀ, କୁଆଡ଼େ ଗଲୁ ପୁଣି ।

ତା ଡାକରେ ନିଜ ଭିତରେ ଅନୁଭବ କଲି ଚେତନା । ମୋର ଦେହଟା ଛାଡ଼ି ଅତ୍ମା ଯେପରି କୁଆଡ଼େ ଉଡ଼ି ବୁଲୁଥିଲା ।

ଲୁଗା କାନରେ ଲୁହଭିଜା ମୁହଁ ପୋଛି କହିଲି, ଏକୁଟିଆ ଯିବ ?

ବୁଝିଲି, ସେ ମଧ୍ୟ କାନ୍ଦୁଥିଲେ । ଗାମୁଛାରେ ଲୁହ ପୋଛି କହିଲେ, କହିସାରି ।

ଗ୍ରାଣ ଭିତରେ ଯେଉଁ କୋହ ଅନୁଭବ କରୁଥିଲି, କଥାରେ ପ୍ରକାଶ କରିବା ମୋ ପକ୍ଷେ ଅସମ୍ଭବ ହୋଇ ପଡ଼ିଲା । ଖଣେଇଁ ଖଣେଇଁ କହି ପାରିଲି—କି ରୂପ ହେଲଣି !

ଏତିକରେ ସେ ଫାଟକ ଉପରେ ମୁଣ୍ଡ ଲଦି କଇଁ କଇଁ ହୋଇ କାନ୍ଦି ଉଠିଲେ । ନିଜକୁ ଆଉ ସମ୍ଭାଳି ପାରିଲି ନାହିଁ । ଅଖିରୁ ଧାର ଧାର ଲୁହ ଝରି ପଡ଼ୁଥାଏ । ତାଙ୍କର ମୁଣ୍ଡ ଉପରେ ହାତ ରଖି କହିଲି, ଛି, କାନ୍ଦୁଛ ?

କେତେବେଳକେ ମୁଣ୍ଡ ଟେକିଲେ । କହିଲେ, ଯାଉଛି ନୂଆଉ ।

ତାଙ୍କୁ ବିଦାୟ ଦେବାକୁ ମୋର ମନ ଡାକୁ ନ ଥିଲା । ଅଖିର ଲୁହ ସତେକି କେତେ ଦିନର ସନ୍ଦେହ ଦୁହିଁଙ୍କ ମନରୁ ଧୋଇ ଦେଇଥିଲା ।

ରହିବ ନାହିଁ ?

ଲୋକେ କଅଣ କହିବେ ?

ଭୁନି ରହିଲି । ମନେ ହେଲା, ସୁର ଯେପରି ମୋ ଉପରେ ଅଭିମାନ କରି, ମୋର କଥା ମୋତେ ଫେରାଇ କହୁଛନ୍ତି । କଣ୍ଟା ଘାରେ ଲୁଣ ଛିଟା ମାରିଲା ପରି ଛାତି ଭିତର ଯନ୍ତ୍ରଣା ପୋଡ଼ି ଉଠିଲା । ଧୈର୍ଯ୍ୟ ଧରି କହିଲି, କେବେ କଅଣ ପଦେ ମନଦୁଃଖରେ କହି ଦେଇଥିଲି ବୋଲି ଆଜଯାଏ ସେଇ ରାଗ ରଖିଛ, ତମର ମନ ତ ଏଡ଼େ ଖ୍ରୋଟ ନ ଥିଲା ?

ବୋଉର ଡାକ କାନରେ ବାଜିଲା, ଅଲୋ ତୁଳସୀ !

ସୁର କହିଲେ, କ୍ଷମା କର ନୂଆଉ, ତମ ମନରେ କଷ୍ଟ ଦେଇଛି । କିନ୍ତୁ ଆଜି ବି ତୁମ ନାମରେ ମୋ ନାମରେ ଦୁର୍ନାମର ଢେଉ ମାଡ଼ି ଚାଲିଛି ଭୁଣ୍ଡରୁ ଭୁଣ୍ଡ । ମୁଁ ଜାଣେ, ଦୁର୍ନାମ ଅପବାଦକୁ ତୁମେ ଡର । ତା ପାଖରୁ ତୁମେ ସବୁବେଳେ ଦୂରରେ ରହିବାକୁ ଚାହଁ ।

ପାଟି ଖିଲି ଖିଲି ହେଉଥିଲା କହି ଦେବାକୁ, ଦୁର୍ନାମ, ଅପବାଦ, ଭୁଣ୍ଡବାଇଦ, ଅନ୍ଧାର ଘରେ ଭୂତର ଡର । ଯେତେ ଡରିଲେ ସେତେ ଡରାଏ । ପ୍ରାଣ ବିକଳରେ ଦଉଡ଼ିଲେ ପଛରେ ଧାଏଁ । ମନ ଦୃଢ଼ କରି ପଛକୁ ଚାହିଁଲେ, କାଏ କୁଆଡ଼େ ଯାଇ ରହନ୍ତି । ଭୁଣ୍ଡବାଇଦକୁ ଆଉ ମୋର ଡର ନାହିଁ । ମୁଁ ଦୁନିଆଁ ଲୋକଙ୍କର ଢଙ୍ଗ ଦେଖି ପଣ କରିଛି ତମରି ହାତଧରି ତମରି ହୋଇ ମୁଁ ତମରି ସଙ୍ଗରେ ଅମରି ଘରକୁ ଫେରି ଯିବ । ମନଅଁକୁ ତମେ କାଖରେ ଧରିବ ।

ନୂଆ ସଂସାର କରିବା । ଦୁନିଆଁର ଲୋକେ ପଛରେ ଥାଇ ଯେତେ ଭୁକିବାର ଭୁକନ୍ତୁ, ପାଟି ଘୋଳି ହେଲେ ବଳେ ଉନ ହେବେ ।

ଲାଜରେ ଭୁଣ୍ଡ ଖୋଲିଲି ନାହିଁ ।

କଥା ବୁଲାଇ ପଚାରିଲି, ଏ ଦୁର୍ନାମର ନଆଁ କେବେ ଲିଭିବ ?

ସୁର କହିଥିଲେ, ମନ ଦମ୍ଭ କରି ଯେବେ ତମେ ଲୋକଙ୍କ କଥାରେ କାନ ନ ଦେଇ ଫେରିଯିବ ନୂଆକୁ । ଦାଣ୍ଡରେ ଚାଲିଥିବା ଲୋକଙ୍କୁ ଦେଖି କୁକୁର ଭୁକେ । ଯେ ସେଥିରେ କାନ ନ ଦେଇ ସିଧା ସିଧା ଚାଲିଯାଏ, କୁକୁର ପଲ ତା ପାଖ ପଶନ୍ତି ନାହିଁ । ଯିଏ ଡରି ପଳାଏ, ସେମାନେ ତା ପଛରେ ଗୋଡ଼ାନ୍ତି । ସୁବିଧା ପାଇଲେ କାମୁଡ଼ନ୍ତି ।

ଅବିକଳ ମୋ ମନର କଥା ତାଙ୍କ ଭୁଣ୍ଡରୁ ଶୁଣିଲି ।

ବ୍ୟସ୍ତ ହୋଇ ଥରି ଥରି ବୋଉ ପଛରୁ ଆସି ବର ବର ହେଲା—ଅଲୋ, ରାତି ଦି ପହର ଯାଏ କଅଣ କରୁଛୁ । ଭୁଲସି, ହାଣ୍ଡିରେ ତୋରାଣି ମନ୍ଦେ ବି ନାହିଁ, କଅଣ ଖାଇବୁ ? ଏଁ, ସୁର, କରେ, ଯାଇ ନୁ ? ହଉ, ହଉ, ଦୁଃଖ ସୁଖ ହ । ରାତି ବେଶି ହୋଇ ନାଇଁ ଯେ ! ମନ କଥା ଖୋଲାଖୋଲି ହେଲେ ସିନା ରାଗ ରୋଷ ଯାଏ ରେ ବାପ । ପାଞ୍ଚ ଲୋକ ତ ଏଣୁ ତେଣୁ ପାଞ୍ଚ ପଦ କହିବେ ।

ବୋଉ ଫେରିଗଲା ।

ମତେ ଲାଜ ମାଡ଼ିଲା ! ସୁର ବି ସେପରି ଅନୁଭବ କଲେ କି କଅଣ, କିଛି ନ କହି ସେ ଗଡ଼ାର ବାଟେ ଚାଲିଗଲେ ।

ମୁଁ ବୋଉ ପଛେ ପଛେ ଫେରିଲି ସିନା, ମନ ପସ୍ତେଇ ହେଲା । ରାତି ଅଧରେ ଏକୁଟିଆ ତାଙ୍କୁ ଛାଡ଼ିଦେବାଟା ଭଲ ହେଲା ନାହିଁ । ହାତଧରି ଅଟକାଇ ରଖିଥାନ୍ତି । କହିଥାଆନ୍ତି, ତମେ ଏଇଠି ରହ ସୁର ।

ବୋଉ ଆସିଲା । ସେ ଚାଲିଗଲେ । ଭୁଣ୍ଡ ମୋର ଫିଟିଲା ନାହିଁ । ହଉ, ଯାଆନ୍ତୁ—ଜହ୍ନ ରାତି ତ ।

୨୪

ସପନ ଭାଙ୍ଗିଲା, ରାତି ବି ପାହିଲା ! ଆଖି ଖୋଲିଲି । ଆଲୁଅ ହେଲାଣି । ସତେ କି କେଉଁ ସରଗ ଭୂଇଁରୁ ଖସି ପଡ଼ିଲି । ରାତିର ସପନ, ମନ ଭୁଲା ସୁନେଲା ସପନ ଅପସରିଛି ।

ଗୋଟିଏ ରାତି, ଯାହାର କୋଳରେ ସାମାନ୍ୟ କେଇଟି ମୁହୂର୍ତ୍ତ ପରି ଛପି ଯାଇଥିଲା ସୁରଙ୍କ ଭାଇଙ୍କ ସଙ୍ଗେ ଚାରି ବର୍ଷର ମୋର ଘର କରଣା । ସୁରଙ୍କ ସଙ୍ଗେ ମୋର ଯେଉଁ ସଂସାର, ତାର ଆରମ୍ଭ ନାହିଁ କି ଶେଷ ନାହିଁ । ସୁରଙ୍କ ସଙ୍ଗେ ଯେଉଁ ମିଳନର ବନ୍ଧନ ସେ ବନ୍ଧନ ଅଛିଣ୍ଡା !

ଚେଳ ଉଠିଥିଲା ଯୌବନ । କେଉଁ ଅଜଣା ଶକ୍ତିର ପ୍ରଭାବରେ ଦେହର ପ୍ରତି ଲୋମ ମୂଳରେ ମିଳନର ଆଗ୍ରହ ଭରି ଯାଇଥିଲା । ଏପରି ଆଗ୍ରହ ଆଉ କେବେ ଅନୁଭବ କରି ନ ଥିଲି । ସଞ୍ଜବେଳେ ସୁରଙ୍କ ଦେହର ପରଶ ଓ ତାଙ୍କର କଥା କେଇପଦ ଗୋଟିକ ରାତିକୁ କେତେ ଯୁଗକୁ ଲମ୍ବାଇ ଦେଇଥିଲା ।

ଯେଉଁଦିନ ମୋର ଯୌବନର ପ୍ରଥମ କଢ଼ଟି ପ୍ରସ୍ଫୁଟିତ ହେଲା, ସେହି ସଜ ଫୁଲର ଆଖିରେ ପ୍ରଥମେ ପଡ଼ିଥିଲା ଯାହାର ରୂପ, ସେଇ ସେ ସୁର ! ସେ ମୋର । ଯାହା ଘଟି ଯାଇଥିଲା, ସବୁ ଭୁଲ । ଭୁଲ ତ ସୁଧୁରିଯାଏ ?

ଦୁନିଆଁ ଲୋକ ବାରକଥା କହିବେ । ସେମାନେ ଯଦି ମୋ ଆଖିରେ ମୋର ଜୀବନ ଓ ଭବିଷ୍ୟତକୁ ଦେଖୁ ଥାଆନ୍ତେ, ତେବେ କହିବାର ଅଧିକାର ତାଙ୍କର ରହନ୍ତା ?

ମନ ଦମ୍ଭ କରି ଫେରି ଯିବାକୁ ସୁର କହିଗଲେ । ସୁରଙ୍କୁ ନେଇ ସଂସାର କରିବାକୁ ଫେରିଯିବି । ତାଙ୍କୁ କଅଣ ସୁଖୀ କରି ପାରିବି ନାହିଁ ?

ରାତି ପାହିଥିଲା ଆନନ୍ଦରେ । ଯୁଗ ଯୁଗ ଧରି ଲମ୍ବି ଯାଇଥିଲା ଯେଉଁ ସପନର ରାତିଟି ଦିନ ଆଲୁଅର ପରଶରେ ଲାଗିଥିଲା ମୁହୂର୍ତ୍ତେ ପରି । ସୁଖର ରାତିଟି ପାହିଲା କାହିଁକି ? ସ୍ୱପ୍ନ ମଣିଷକୁ ଏତେ ଆନନ୍ଦ ଦିଏ ? ଚେମାଇର ସ୍ୱପ୍ନ, କିନ୍ତୁ ସଂସାରକୁ ସେ ଡରିଥିଲା, ସ୍ୱପ୍ନ ହିଁ ଚାହିଁଥିଲା, ବାସ୍ତବତା ପାଖରୁ ଦୂରେଇ ରହିବାକୁ ବସିଥିଲା ।

ସକାଳର ଆଲୁଅ ଆଖି ଆଗରେ ଉଭାକଲା ନୂଆ ଜୀବନର ଛବି । ସୁର ଆସିବେ, ହୁଏ ତ ଆଜି ଆସିବେ, ଆଜି ତାଙ୍କର ଅଭିମାନ ଭାଙ୍ଗିବି । ପଚାରିବି, ଡେରି କାହିଁକି ?

ଶିରା ପ୍ରଶିରାରେ ଉତ୍ତେଜନାର ନିଆଁ ଜଳୁଛି, ମିଳନ ଆନନ୍ଦ ପାଇଁ ଏତେ ଦିନକେ ଯୌବନ ଅଧିର ହୋଇଛି । ମନ ହୋଇଛି ଉତଲା, ଦେହ ଫୁଲି ଫୁଲି ଉଠୁଛି ।

ମୋ ଆନନ୍ଦ, ମୋ ଫୂର୍ତ୍ତି, ବୋଉ ଆଉ କେବେ ଦେଖି ନ ଥିଲା । ମୋ ମୁହଁକୁ ଅନାଇଁ ସେ ଖୁସି ହୋଇ କହିଲା, ଅଲୋ ତୁଳସୀ, ମୁଣ୍ଡ ଏମିତି ଫର୍ ଫୁର୍ ଉଡ଼ୁଛି, ବାନ୍ଧିପକା ଲୋ, ଆ, ନଇଲେ ମୋ ପାଖକୁ ।

ତତେ ପରା ଜର ?

ସତେ ? ମୋ ଧିଅରେ ହାତ ମାରି ଦେଖିଲା । ଅଲୋ, ତୋ ପାଇଁ ମୋତେ ଜର ହୁଏ । କାଲି ରାତିରୁ ଜର ଫର ଆଉ ନାହିଁ । ତୁଳସୀ ଲୋ, ବେଳ ପୁଣି ଫେରେ ? କହନ୍ତି ପରା, ବେଳ ଖାଲି ଆଗକୁ ମାଡ଼ି ଚାଲିଥାଏ ?

ତା ପାଖରେ ବସିଲି । ମନ୍ଦୁଆଁ ମୋ ପିଠିରେ ନାଉ ହେଲା । ତାକୁ ଝୁଲାଉ ଝୁଲାଉ ପଚାରିଲି, କଅଣ କି ?

ବୋଉ ମୋ କପାଳ ଆଉଁସି କହିଲା, ଗୁଡ଼ି ଦେବା ସେଇଟାକୁ, ସେ ମୋର, ମୁଁ ତାକୁ ବାହା ହେବି । କେମିତି ସେଇଟା ଭୁଲରେ ତୋ ପେଟରୁ ଖସି ପଡ଼ିଥିଲା ବା, ନୋହିଲେ ତୁ ମୋର ପିଲା ହୋଇଥାଆନ୍ତା, ଶାଶୁ ଘରକୁ ଯାଇନ୍ତୁ । ଶାଶୁ ଘର ଜାଣୁନା । ସେଇ ଯେଉଁ ପିଲାଟି ଏଠିକି ବେଳେ ବେଳେ ଆସେ, କେଡ଼େ ସୁନ୍ଦର ନାମଟି ମ, ହଁ, ମନେ ପଡ଼ିଲା, ସୁର ! ଭଲ ପିଲାଟିଏ । ତା'ଅରି ହାତରେ ତତେ ଦେବି ଲୋ ମା, ସେ ତତେ ସୁଖ ପାଏ ! ତୁ ତାକୁ ଭଲ ପାଉ ! ଏଁ, ଲୁଚାଉଛୁ ? ମୁଁ ସବୁ ଜାଣେ ଲୋ, ତୋ ଆଖି ଦେଖି ବୁଝିଛି । ତତେ ଜନମ କରିଛି, ତୋ ମନ ଜାଣିବି ନାହିଁ ? ଆଜି ସେ ଅସୁ ରହ ।

ତୋ ଜର ବଢ଼ିଛି ।

ତା ଦେହରେ ହାତ ମାରି ଦେଖିଲି । ଜର ନାହିଁ । ମନୁଆଁକୁ କୋଳକୁ ଆଣିଲି । ଗେଲ କଲି ।

ମୋ ଗାଲ ଉପରେ ତାତିଲା ଓଠରେ ବୋଉ ବୋକ ଦେଇ କହୁଥିଲା, ଏଥର ନିଶ୍ଚିନ୍ତରେ ମନ ଖୁସିରେ ମୁଁ ଆଖି ବୁଜିବି । ସୁର ସଙ୍ଗେ ତୋର ମିଳାମିଶା ହୋଇଛି, ମୁଁ ଦେଖିଛି ମୁଁ ଆଗରୁ ଜାଣେ ଦିନେ ଏହା ହେବ । ଖାଲି ମିଛଟାରେ ଘାଣ୍ଟି ହେଉଥିଲୁ । ମା ଲୋ, ଠାକୁରେ ଯାହା କରନ୍ତି ଭଲ ପାଇଁ କରନ୍ତି । ଭଲ ହେଲା, ଦୁନିଆରେ ଅତଯାତ ହେଲୁ, ଲୋକଙ୍କୁ ଚିହ୍ନିଲୁ, ନିଜର ଶକ୍ତି ସାମର୍ଥ୍ୟ ବୁଝିଲୁ । ଏଥର ସୁରକୁ ଭଲ ପାଇବୁ, ପ୍ରାଣରୁ ବଳି ଭଲ ପାଇବୁ । ସ୍ୱାମୀ ଚିଜଟି କଅଣ ତାର ମୂଲ୍ୟ କେତେ, ହାଡ଼େ ହାଡ଼େ ଚିହ୍ନିଲୁ ମା ।

ମୁଁ ତୁନି ରହିଥାଏଁ । ସେ କହିବାକୁ ଲାଗିଲା, ଯା ଏଥର, ଗୁଡ଼ି ଦମ୍ଭ କରି ବାଟ ଚାଲ । ଆଉ କାହାକୁ ଡର ? ଟିମ ବାବୁ ଘର ଉଠି ନେବେ, ନେଉନ୍ତୁ ।

ତାର ତୋରା ଆଖିକୁ ଚାହିଁ ପଚାରିଲି, ଲାଜ ଲାଜ ହୋଇ, ତୁ ଏଗୁଡ଼ା କଅଣ ଗପୁଛୁ ବୋଉ ?

ଆଖି ଛଳଛଳ କରି କହିଲା, ଗପିବ ନାଇଁ, ଆଜି ନାହାକକୁ ଡାକି ଦିନ ଥିର କରିବି, ଭଲ ଦିନ, ଭଲ ବାର । କାଲି ପରି ଲାଗୁଛି, ଅଭିବ ମୋର ଆଣ୍ଠୁ ଭାଙ୍ଗିଲା । ତୋର ମୁହଁରେ ଅଧାର ଦେଇ ତତେ ବଞ୍ଚାଇ ରଖିବାକୁ ପର ମଣିଷର ଆଖି ଠାରକୁ ଅଡ଼େଇ ଦେଇ ପାରି ନ ଥିଲି । ଏଇ ବୁଢ଼ୀ ଚମରେ ନିଆଁ ଲାଗି ଫୁରୁ ଫୁରୁ ଜଳିଯିବ, ପାଉଁଶ ହେବ, ଲୁଚାଇବି କାହିଁକି ? କହିଲି ତତେ ଚେତାଇବାକୁ । ତୋ ପାଟିରେ ଅଧାର ଦେବାକୁ ମୋର ନିଜର ଲୋକ କେହି ନ ଥିଲେ । ଯେଉଁମାନେ ଦେବେ, ସେମାନେ ଆଗ ନେବାକୁ ଚାହିଁବେ । ସ୍ୱାର୍ଥର ଦୁନିଆଁ । ଦେହଟା ଛଡ଼ା ମୋର ଆଉ କିଛି ସମ୍ବଲ ନ ଥିଲା । ନିଜର ଲୋକ ଥିଲେ ତାର ଦୟା ହୁଏ, ତା ପାଖରେ ସ୍ନେହ ଅସୁଝା ରହେ ନାହିଁ ।

ମୋର କେହି ନ ଥିଲେ । ତୋର ଅଛନ୍ତି ସୁର, ଦାଦା ଅଉ ଅପଣାର ଲୋକ, ତୋର ଶ୍ୱଶୁର, ତୋର ଯହିର ସେ ଭାଗ ନେଇଛି । ତୋର ପେଟ-ପିଲାର ସେ ଦାଦା । ଏକା ରକ୍ତ ଦ ଧାର । ତୋର ସୁଖ ଆନନ୍ଦ ମୁଁ ଦେଖିଛି । ଦୁଃଖ କଷ୍ଟ ଦେଖି ସହି ପାରିବ ନାହିଁ ।

ମନ ଦେଇ ଶୁଣିଲି । ଭଲ ମନ୍ଦ ବିଚାର କରିବାକୁ ତର ନ ଥିଲା । ମନରେ ଗୋଟିଏ କଥା ଘାଣ୍ଟି ଚକଟି ହେଉଥାଏ । ସେଇ କଥା ପଚାରିଲି, ସୁର କଥଣ ମନୁଆଁ ବାପାକୁ ମୋର ଲୋଭରେ ମାରିଛି ?

ବୋଉ କହିଲା, ମିଛ କଥା । ତେବେ କେଜାଣି ମା, ନରମାୟା ନାରାୟଣ ଜାଣନ୍ତି ନାହିଁ । ମିଛ ହେଉ କି ସତ ହେଉ, ଯିଏ ଯାହା କରେ ତା ପାପ ପୁଣ୍ୟ ତାଆର । ନିଜର ସ୍ୱାର୍ଥ ଆଉ ଭବିଷ୍ୟତ୍ ପାଇଁ ଅଜାଣତ କଥାକୁ ମନରେ ଥାନ ଦେବା ଭଲ ନୁହେଁ । ମନ କଦର୍ଯ୍ୟ ହେବା ଛଡ଼ା ଆଉ ଲାଭ କିଛି ନାହିଁ ।

ପ୍ରତିବାଦ କଲି ନାହିଁ ।

ସୁରଙ୍କୁ ନେଇ ସଂସାର କରିବି । ତାଙ୍କ ବିରୁଦ୍ଧରେ ମନରେ ସନ୍ଦେହର ନିଆଁ କୁହୁଳାଇବି ନାହିଁ ।

ବୋଉର ଗୋଟିଏ କଥା ମୁଁ ବୁଝି ପାରିଲି ନାହିଁ । ତାଆର ଅର୍ଥ କଥଣ ଭାଙ୍ଗ ଥିଲା, କେବଳ ମୋର ମୁହଁରେ ଆଧାର ଦେଇ ମତେ ବଞ୍ଚାଇ ରଖିବାକୁ ? ମୋତେ ବଞ୍ଚାଇବାର ଅନ୍ୟ ଉପାୟ ନ ଥିଲା ?

ଲାଜରେ ମୁହଁ ପୋତିଲି ।

ମଣିଷର ଦେହ, ମଣିଷର ମନ ଧରି କେହି କେବେ ଗର୍ବ କରି କହି ପାରିବ ନାହିଁ ଯେ, ତାର ମନ ଚହଲି ନାହିଁ । ସଂସାରରୁ ମୁଁ ବାହାର ନୁହେଁ । ସେଇଥି ପାଇଁ ତତେ ମୂଳରୁ କହି ଆସୁଛି, ଡେରି କର ନା, ଲୋକଙ୍କ କଥାରେ କାନ ଦେନା, ସୁରକୁ ନେଇ ସଂସାର କର, ଗତ କଥା ଭୁଲି ଯା, ମୋର ଅବାଧ ହ'ନା ।

ସଞ୍ଜ ବେଳର ଘଟଣା, କପଟ ଟିମ ବାବୁଙ୍କର ଗ୍ରୀବ ଉପରକୁ ଢଳି ପଡ଼ିଥିଲି, ବୋଉ ଆଗରେ ଖୋଲି କହିବାକୁ ପାଟି ଖଲ ଖଲ ହେଉଥିଲା, କହି ପାରିଲି ନାହିଁ । କହିଲି, ମଣିଷ ଝୁଣ୍ଟିଲେ ବାଟ ଚାଲି ଶିଖେ, ତୋର ଅବାଧ ହେବି ନାହିଁ ବୋଉ ।

ଖୁସିରେ ମୋ ମୁଣ୍ଡକୁ ତା କାନ୍ଧ ଉପରକୁ ଆଉଜାଇ ନେଲା । ମନଆ ଅଙ୍ଗଟ ହୋଇ ବଗରେ ମୋ ପିଠିରେ ଗୁପଡ଼ା ମାରି ଦୂରକୁ ଘୁଞ୍ଚି ଗଲା । ଆଖିରେ ତାଆର ଭରିଯାଇଥିଲା ଲୁହ । ଯେତେ ଡାକିଲେ କୋଳକୁ ଆସିଲା ନାହିଁ ।

୨୫

ହାଟକୁ ବାହାରିଥିଲି ସହଳ ସହଳ । ଭାବୁଥିଲି, ଏଇ ମୋର ହାଟକୁ ଯିବା ଶେଷଥର । ନିଜ ଘରକୁ ଫେରିଗଲେ ଘର କାମ କରିବାକୁ ବେଳ ନିଅଣ୍ଟ ହେବ ।

ସୁରି, ଯାହାଙ୍କର ହାତ ଧରି ମୁଁ ଯିବି, ଦାଣ୍ଡକୁ ହାଟକୁ ମତେ ସେ ଛାଡ଼ିବେ ନାହିଁ । କାନ୍ତିବଟି ବାବୁଙ୍କର ଟଙ୍କା କେଇଟି ଧାରୁଆ ହୋଇ ରହିଛି । ସବୁ ଖରଚ ହୋଇଗଲା । ପରର ଧାରୁଆ ହୋଇ ରହିବ ନାହିଁ । ସୁରିଙ୍କୁ କହି ଟଙ୍କା ଆଣି ପରିଶୋଧ କରିଦେବି । ସେ କହୁଥିଲେ, କାନ୍ଥରେ ପୋତା ହୋଇଥିବା ମାଠିଆ ପଇସାରେ ଭରି ଗଲାଣି । ଅଭାବ ହେବ ନାହିଁ ।

ବାଟରେ ରାଜବୋଉ ଖୁଡ଼ୀ ସଙ୍ଗେ ଦେଖା ହେଲା । ମତେ ଦେଖି ସେ ମୁହଁ ମୋଡ଼ି ଦେଲା । ଛଳନା କରି ମୁଁ କହିଲି, ଖୁଡ଼ୀ ମ, କିବା କଥାକୁ ସେଇ ଦିନରୁ ତେମେ ଏମିତି ରାଗିଛ, ମୁଁ ତ ତମର କିଛି ନୁକସାନ କରି ନାହିଁ ।

ଫୋପାଡ଼ିଲା ପରି ସେ କହିଲା, କାହିଁକି ବା, କିଏ କାହାର ନୁକସାନ କରିବ, ତୋ ଢଙ୍ଗ ଦେଖି ତ ମୁଁ ଆଡ଼େଇ ରହେଁ । କୋଉ ଗାଁ'ର କିଏ, ତା ସଙ୍ଗେ କି କଥା, ତା ସଙ୍ଗେ କି ହସ, ଅଖିଠାର । ଲୋକେ କଅଣ ଭଲ କହୁଛନ୍ତି ନା କହିବେ ? ଅପଣା ମହତ ଅପେ ରଖିଲେ ସିନା ହେବ ।

ଭାବିଲି, ରାଜବୋଉ ସଦାବେଳେ ମୋର ଶୁଭ ମନାସୁ ଥାଏ, ଅହା ! କହିଲି, ଲୋକେ କାହିଁକି କହିବେ, କହୁଛ ତେମେ । ଲୋକେ କହନ୍ତୁ କି ତେମେ କହ, କାହା ଭୁଣ୍ଡରେ ମୁଁ ଭୁଣ୍ଡି ବାନ୍ଧି ପାରିବି ନାହିଁ । ଅଭାବରେ ପଡ଼ି କାହା ଘରକୁ କେବେ ଲୁଣ ଗିନାଏ ମାଗିବାକୁ ଯାଇଛି କି ? ସ୍ୱାଅ ମିହନ୍ତ କରି ପରର ପାଅ ପାଇଟି କଲେ ସିନା କିଏ ଦେବ । ଲୋକଙ୍କ କଥାରୁ ମତେ କି ମିଳିବ ?

ଖଣ୍ଡିଆ ମହାଦେବଙ୍କୁ ଡରନ୍ତି ନାହିଁ ଲୋ ତୁଳସି, ଦେହରେ ଝଟକ ଅଛି, ଅଖିରେ ଛଟକ ଅଛି, ପରପୁରୁଷକୁ କଣେଇ ଚାହିଁ ଦି ପଇସା ଠକକୁ ଚାରି ପଇସା ପାଇ ପାରୁ । ହଉଲୋ ମା ।

ହସି ହସି କହିଲି, ଭଲ କଥା, ପେଟ ପୋଷ, ନାହିଁ ଦୋଷ ।

କେତେ ଦିନ ଲୋ ତୁଳସି, କାଲି ଯେତେବେଳେ ଚମ ଏମିତି ଧୋଡ଼କା ହେବ, ଦାନ୍ତ ପଡ଼ିବ, ମୁଣ୍ଡବାଳ ଝୋଟ ହେବ ?

କାଲିକା କଥା ଅଜି କାହିଁକି ଚିନ୍ତା କରିବି ? ତେବେ, ଚମ ଧୋଡ଼କା ହେଲେ, ଅଖିର ଛଟକ ମଲେ, ତମରି ପରି ପରଗଛରୁ ଲଙ୍କାମରିଚ ଚୋରି କରିବି । କହୁଛି ପରା, ପେଟ ପୋଷ, ନାହିଁ ଦୋଷ ।

ସାପ ପରି ଗର୍ଜି ଉଠିଲା । କହିଲା, କି ଲୋ, ଦେଖେଇ ଦେଖେଇ ଭାରି ବଡ଼ କଥା ତ କହୁଛୁ ? ମୁଁ ଚୋରଣୀ ହୋଇଛି ? ତୋଠାରୁ ପର ଦାଅରକୁ ପାଲରେ ପକାଇ, ସଲ୍ଲ ହୋଇ ଗେରସ୍ତକୁ ମରାଇଛୁ କି ?

ଥଙ୍କାକର କହିଲି, ବେଶ୍ ହେଲା । କାଲି ଶୁଣିବ, ସେଇ ଦାଅରର ହାତ ଧରି ତା ଘରକୁ ଘରଣୀ ହୋଇ ଯାଇଛି । ପଛରେ ଭୁକିବ, ଆଉ କଅଣ କରିବ ?

ରାଜ ବୋଉ ରାଗ ତମତମ ହୋଇ ଆଉ କଅଣ କହିବାକୁ ଯାଉଥିଲା । ତାକୁ ଛଡ଼ାଇ ଦେଇ ମୁଁ ସହଲ ସହଲ ଆଗେ ଆଗେ ହାଟକୁ ଚାଲି ଆସିଲି । ପଛରେ ସେ କେତେ ଦୁର୍ନାମ କରୁଛି କରୁ । ସବୁ ମୋର ଦେହସହା ହେଲାଣି ।

ହାଟରେ କାନ୍ତିରାଣି ବାବୁ କି ବଳିଆ କାହା ସଙ୍ଗେ ଦେଖା ହେଲା ନାହିଁ । ମନେ ମନେ ସେମାନଙ୍କୁ ଖୋଜୁଥାଏ । ମୋର ପରିବା ବିକା ସରିଲା, ହାଟ ଅଧା ହୋଇ ନ ଥାଏ । ଝିମବାବୁ ପରିବା ଓଜନ କରି ଦେଇ ନ ଥିଲେ । ତେଣୁ ଗରାକଙ୍କ ସଙ୍ଗେ ଧିକ୍‌ଛକ୍ ନ କରି ସେରକ ପାଅପା ଓଜନ କଲେ କ୍ଷତି ନାହିଁ । ଆଉ ପାଲକତ ଆଉ ଆସିବ ନାହିଁ, ଶୀଘ୍ର କାମ ସରିଗଲା ।

ଭାବିଲି କାନ୍ତିରାଣି ବାବୁଙ୍କ ଟଙ୍କା ଶୁଝିବି କେବେ ? ସୁରଙ୍କ ହାତରେ ପଠାଇଦେଲେ ହେବ । କିନ୍ତୁ, ତାଙ୍କୁ କହିବି କିପରି ? ସେ କଅଣ ମନେ କରିବେ ? ପୁଣି ଭାବିଲି, କହିବା ଦରକାର ହେବ ନାହିଁ । ଘରର ଘରଣୀ ହୋଇ ଯିବି, ମୋର ଅଧିକାର ଉପରେ ସୁରି ବାଧା ଦେବେ ନାହିଁ ।

ଫେରିବା ବେଳେ ଥାଣା ପାଖ କାନ୍ଦକୋଲି କଣ୍ଟାବଣ ମଝିରେ ବଳିଆ ସଙ୍ଗେ ଦେଖା ହେଲା । ଲୁଗା ଖଣ୍ଡେ ପିନ୍ଧିଛି ଯେ ଅଣ୍ଟୁ ଲୁଚୁ ନାହିଁ, ମୁଣ୍ଡରେ ଗାମୁଛା ବାନ୍ଧିଛି, ହାତରେ ଗୁରିହାଉଆ ଠେଙ୍ଗା ।

ମୋତେ ଦେଖି ସେ ଅଟକି ଠିଆ ହେଲା । ନାକ ଫୁଲାଇ କଟମଟ କରି ମୋ ଆଡ଼କୁ ଚାହିଁ ପଚାରିଲା, କିଲୋ, ତୋର ତ ଦେଖା ମିଳୁନାହିଁ, ତୋ ପାଇଁ ଆମ କାନ୍ତିରାଣି ବାବୁ ବ୍ୟସ୍ତ । ସବୁଦିନେ ପଚାରନ୍ତି, ଆଜି ବି ପଚାରୁଥିଲେ ।

ସତେ, ଓହୋ !

ଥରେ ସେ ଯାହାକୁ ଦେଖନ୍ତି ଭୁଲି ପାରନ୍ତି ନାହିଁ ।

କଅଁ ଲେଇ ପଚାରିଲି, ଆଚ୍ଛା ବଳିଆ, କାନ୍ତିରାଣି ବାବୁ କଅଣ ଅତି ଖରାପ ଲୋକ, ତାଙ୍କ ଉପରେ ତୋର ତ ଭାରି ରାଗ ।

ଆଶ୍ଚର୍ଯ୍ୟ ହୋଇ ଚାହିଁଲା ମୋ ମୁହଁକୁ । କିଛି କହି ପାରିଲା ନାହିଁ । ଟିକିଏ ତୁନି ହୋଇ ମୁରୁକି ହସି କହିଲା, ସେ ମୋ ଖାଉଁଦ, ତାଙ୍କ ଉପରେ ମୋର ରାଗ ରୋଷ ନାହିଁ । ସେ ଅତି ଭଲ ଲୋକ, କ୍ଷଣକରେ ପର ଲୋକଙ୍କୁ ଆପଣାର କରି ପାରନ୍ତି ।

ସେଇଥିପାଇଁ ତୁ ତାଙ୍କର ଏମିତି ଅପଣାର ହୋଇଛୁ ! ଅରେ, ପର ଲୋକ ଅପଣାର ହେବାକୁ ବସିଲେ ଅପଣାର ହୁଏ । ଯିଏ ଅପଣାର ହେବାକୁ ନ ଗୁହାଁବ ତାକୁ ଅପଣାର କରିବ କଏ ?

ଠଙ୍କା ଲୋଭରେ ମଣିଷ ନ କରେ କଅଣ ଲୋ ହାଟୋଇ, ଠଙ୍କା ଲୋଭକୁ କେଇଜଣ ଅଡ଼େଇ ଦେଇ ଯାଇ ପାରନ୍ତି ? ହେଇ ଦେଖ ଏଇ ଠେଙ୍ଗା । ଏଥିରେ କେତେ କୁକୁରଙ୍କର ଅଣ୍ଟା ଭାଙ୍ଗିଛି, କେତେ ବିଷାକ୍ତ ସାପଙ୍କର ମୁଣ୍ଡ ଛେଚିଚି । ହେଲେ, କାନ୍ତସାଁଟି ବାବୁ ବର୍ତ୍ତି ଯାଇଛନ୍ତି । କୁକୁର ପର ପର ଚଳ, ଅଇଁଠା ପତରରେ ମୁହଁ ମାରିବା, ସାପ ପରି ବିନା କାରଣରେ ଦଂଶିବା ତାଙ୍କର ସ୍ୱଭାବ । ବେଳେ ବେଳେ ଭାବେ, ତାଙ୍କ ଉପରେ ଅର୍ଘାଡ଼ିଆ ପାହାରେ ଦେବି । କିନ୍ତୁ କାନ୍ତସାଁଟି ବାବୁ ଆଖି ଦେଖି ମନକଥା ବୁଝନ୍ତି । କହନ୍ତି, ନେଏରେ ବଳିଆ ଏଇ ଠଙ୍କାଟା ନେ, ମଦାଏ ପିଇ ଦେଇ ଆ, ଆଖିଟା ଫିକା ଦିଶୁଛି । ସେ ନିଂକର ଠଙ୍କାଟା ପକାଇ ଦିଅନ୍ତି ! ଦଣ୍ଡବତ କରି, ଠେଙ୍ଗା କାନ୍ଧରେ ପକାଇ ଗୁଲେ ସିଧା ସିଧା ଶିଅଳ ଘରକୁ ।

ବଳିଆ ନିଜର ଅଉ କାନ୍ତସାଁଟି ବାବୁଙ୍କ ସମ୍ବନ୍ଧରେ ଯାହା କହିଲା ଶୁଣି ମୋର ଗୁଣ୍ଡି ଥରି ଉଠିଲା । ମଣିକାଞ୍ଚନ ଯୋଗ । ଜଣେ ଠଙ୍କାର ମାଲିକ, କାଁଳ କହି ଧନ ଦେଇ ପାଲରେ ପକାନ୍ତି, ଆଉ ଜଣେ ମଦୁଆ ।

ଆଗକୁ ଗୋଡ଼ ଚଳିଲା ନାହିଁ । ନା, କାନ୍ତସାଁଟି ବାବୁଙ୍କ ପାଖକୁ ଯିବା ଦରକାର ନାହିଁ । ସୁବିଧା ହେଲେ ଅଉ କାହା ହାତରେ ଠଙ୍କା ପଠାଇ ଦେବି ପଛେ ।

ପଗୁରିଲି, କୁଆଡ଼େ ଯାଉଛୁ ବଳିଆ ?

ଶିଅଳ ଘରକୁ । ଏଇ ଦେଖ, ଆଜି ଏତିକ ମିଳିଛି ।

ଅଣ୍ଟାରୁ କାଢ଼ି ଠଙ୍କାଟିଏ ମୋତେ ଦେଖାଇଲା ।

ମୁଁ ହସିଲି ।

ପଗୁରିଲା, ଅଉ ତୁ କୁଆଡ଼େ ଯାଉଛୁ ?

ଯାଉଥିଲି ଇଆଡ଼େ । ହାଟକାମ ସହଳ ସରିଗଲା ।

ଇଆଡ଼େ ? ଓ କାନ୍ତସାଁଟି ବାବୁଙ୍କ ଘରକୁ ଠଙ୍କା ଦେବାକୁ ଯାଉଛୁ ପରା ! ହଉ, ଯା ।

ଏତିକ କହି ସେ ଆଗକୁ ଗୁଲିଲା ।

ତାକୁ ପଛରୁ ଡାକିଲି । ସେ ବୁଲିପଡ଼ି ବିରକ୍ତ ହେଲା ପରି ପଗୁରିଲା, କଅଣ କେ ।

ଠଙ୍କା କଥା ତୁ କିପରି ଜାଣିଲୁ ?

ବାବୁ କହୁଥିଲେ ।

ଚାଲି ଯିବାକୁ ବସିଲା । ମୁଁ ଫେର ଯାଇ ପଛରୁ ଡାକି କହିଲି, ତୋ ସଙ୍ଗେ ଟିକେ କାମ ଅଛି ବଳିଆ ।

ମୁହଁ ବୁଲାଇ କହିଲା, ଆରେ, ମୋ ସଙ୍ଗେ ପୁଣି ତୋର କି କାମ ? ମୋ ସଙ୍ଗେ କାହାର କାମ ନ ଥାଏ ।

ଗୋଟାଏ କଥା ପଚାରିବି ବଳିଆ ।

ପଚାର ।

ସେହି ବୁଦା କଡ଼କୁ ଚାଲ, ଲୋକ ସବୁ ଯା ଆସ କରୁଛନ୍ତି ।

ଗୁପ୍ତ କଥା ? ବାଃ, ମୋ ସଙ୍ଗେ ଆଜଯାଏ କେହି ଗୁପ୍ତରେ କଥା କହି ନାହିଁ । ଗୁପ୍ତ ଥାନକୁ ଯିବାକୁ ମତେ ଡର ମାଡ଼େ । ଏଇଠି କହ ।

ଉହୁଁ ।

କେତେ ଅନୁରୋଧ ପରେ ବୁଦା ଉହାଡ଼କୁ ଯିବାକୁ ସେ ମଙ୍ଗିଲା ।

କହିଲି, କାନ୍ତିବାବୁ ଯେଉଁ ଟଙ୍କା ଦେଇଥିଲେ ତାକୁ ମୁଁ ଖରଚ କରି ଦେଇଛି । ମା ବେମାର ପଡ଼ିଲା, ଆଜି ମୋର କେହି ନାହିଁ । ଭାବୁଛି, ପ୍ରତି ହାଟପାଳି ଯାହାକିଛି ମିଳିବ, ବାବୁଙ୍କୁ ଦେଇ ଧୀରେ ଧୀରେ ତାଙ୍କ ପାଉଣା ଶୁଝିବି । ମଙ୍ଗିବେ ନାହିଁ ?

ହଁ ଲୋ, ଯାହା ଉପରେ ତାଙ୍କର ନଜର ପଡ଼େ, ସେ ଯାହା କହେ ସେଥିରେ ସେ ମଙ୍ଗନ୍ତି । ତୁ କହିଲେ ସେ ଟଙ୍କା ଛାଡ଼ି ଦେଇ ପାରନ୍ତି । ତାଙ୍କର କୋଉ ଟଙ୍କାର ଅଭାବ ଅଛି ?

ଟଙ୍କା ଛାଡ଼ିଦେବାକୁ ମୁଁ ଗୁହାରି କରିବି ନାହିଁ ।

କଟମଟ କରି ମୋ ମୁହଁକୁ ଚାହିଁଲା । ପଚାରିଲା, ସେ କଥା ତୋର ମନ ତଳେ କହିବ । ଅଭାବରେ ପଡ଼ିଲେ ମଣିଷର ସ୍ୱଭାବ ନଷ୍ଟ ହୋଇଯାଏ ।

ଏତିକି କହି ବଳିଆ ମୋ ପାଖରୁ ଚାଲିଗଲା । ମୁଁ ସେଇଠି ସେମିତି ଠିଆ ହୋଇ ତା କଥାକୁ ମନରେ ଘୋଷି ହେଲି—ଅଭାବରେ ମଣିଷର ସ୍ୱଭାବ ନଷ୍ଟ ହୁଏ । ଅତି ପୁରୁଣା କଥା, ମୁହଁରୁ ମୁହଁ ଗଡ଼ି ଆସୁଛି । କେତେ ମୁହଁରୁ ପିଲାଦିନୁ ଆଜଯାଏ ଶୁଣି ଆସିଛି । କାନରେ ପଶେ, ମନରେ ପଶି ନ ଥିଲା । ବଳିଆର ତୁଣ୍ଡରେ ଅତି ପୁରୁଣା ଭେସେରା କଥାଟା ନୂଆ କରି ଶୁଣିଲା ପରି ଲାଗିଲା । ପ୍ରାଣ ଦୋହଲି ଉଠିଲା । ଅଭିଜ୍ଞତା, ପଛକୁ ଆଖି ଫେରାଇଲା । ଜୀବନରେ ଯେବେ ଯାହା ପ୍ରକୃତିଛଡ଼ା କାମ କରିଛି ସବୁ ତ ଅଭାବ ପାଇଁ !

ନିଜକୁ ଏଡ଼େ ଦୁର୍ବଳ ମଣିବି ନାହିଁ । କାନ୍ତିବାବୁ ହାତ ବଢ଼ାଇଲେ ଘୃଣ୍ଟି ଆସିବାର ସାହସ ମୋର ଅଛି । ବଳିଆ ମୁହଁରୁ ପ୍ରଶଂସା ଛଳରେ ତାଙ୍କର ଯେଉଁ ଦୁର୍ନାମ ଶୁଣିଲି, ତାଙ୍କୁ ଥରେ ସାକ୍ଷାତରେ ଦେଖିବାକୁ ମୋର ଆଗ୍ରହ ବଳିଲା ।

ମଣିଷ ତ ସେ, ବାଘ ଭାଲୁ ନୁହନ୍ତି । ଥରଟିଏ ଦେଖାରେ ସେ କଅଣ କହିବେ ?

ତାଙ୍କୁ ଭେଟିବାକୁ ଗଲି ।

ହତାର ଫାଟକ ଖୋଲା ଥିଲା । ବଡ଼ ହତା । ଭିତରେ ନାନା ଜାତିର ଗଛ ବୃକ୍ଷ । ପାଞ୍ଚ ସାତ ଜଣ ଲୋକ ଅତଯାତ ହେଉଛନ୍ତି । ହତାର ଗୋଟିଏ ପାଖରେ ମଉଡ଼ମରା ବଡ଼ଘର । ହତା ଭିତରକୁ ପଶିବାକୁ ଗୋଡ଼ ଚଳୁ ନ ଥାଏ । ଛାତିରେ ହତାଶିଆ ଘଣ୍ଟାଚକଟା ଅନୁଭବ କରୁଥାଏଁ ।

କିଏ ଜଣେ ଗଛ ଗହଳ ଭିତରୁ ବାହାରି ଫାଟକ ଆଡ଼କୁ ଆସିଲା । କାନ୍ଧରେ କାଙ୍କ ଓ ହାତରେ ସାବଳ । ମୋ ଆଡ଼କୁ କଡ଼େଇ ଚାହିଁଲା ।

ପଚାରିଲି, ବାବୁ ଅଛନ୍ତି ?

କହିଲା, ହଁ, ସେ ଘରେ ଅଛନ୍ତି ।

ମଉଡ଼ମରା ଘର ଆଡ଼କୁ ମୁହଁ ବୁଲାଇ ମୋତେ ଦେଖାଇ ଦେଇ ସେ ଚାଲିଗଲା । ମୁଁ ଘର ପାଖକୁ ଗଲି । ଉଚ୍ଚ ପିଣ୍ଡା । ପିଣ୍ଡା ତଳେ ଠିଆ ହେଲି । କାହାକୁ ଡାକିବାକୁ ସାହସ ହେଲା ନାହିଁ ।

ପାଖ ଘର ଭିତରୁ କାନ୍ତିପତି ବାବୁ ବାରଣ୍ଡା ଉପରକୁ ଆସିଲେ । ମତେ ଦେଖି ସେ ଆଶ୍ଚର୍ଯ୍ୟ ହୋଇଗଲେ । ତାଙ୍କର ବିସ୍ମୟ ଭାବ ତାଙ୍କର ଦୁଇ ଆଖିରେ ଫୁଟି ଉଠିଥିଲା । ମୁହୂର୍ତ୍ତିକ ପରେ ଓଠରେ ହସ ଖେଳାଇ ପଚାରିଲେ, ଅରେ ତୁ ଯେ ! ତୋର ତ ଅନେକ ଦିନରୁ ଦେଖା ନାହିଁ ଲୋ । କଣ ତୋ ନାଁ ଟି ?

ଜବାବ ଦେଇ ପାରିଲି ନାହିଁ । ଥରଟିଏ ତାଙ୍କ ଆଡ଼କୁ ଅନାଇ ଦୃଷ୍ଟି ତଳକୁ କଲି ।

ଟିକିଏ ରହି ବାବୁ ପଚାରିଲେ, ତୋ' ନାଁ କଣ ?

କହିଲି, ତୁଳସୀ । ଆପଣ ସେ ଦିନ ମତେ ଯେଉଁ ଅଧିକା ଟଙ୍କା ଦେଇ ଆସିଥିଲେ ଅଜଯାଏ ଦେଇ ପାରି ନାହିଁ । ସେଇଥି ପାଇଁ ଆସିଛି ।

କି ଟଙ୍କା ? ଟିକିଏ ଭାବି କହିଲେ, ଓ, ମନେ ପଡ଼ିଲା, ଭୁଲି ଯାଇଥିଲି । ସେଇ ଟଙ୍କା ଦେବାକୁ ଆସିଛୁ ? ଆଚ୍ଛା, ଦେଇ ଯା ।

ଏତିକି କହି ସେ ପାଖ ଘର ଭିତରକୁ ପଶିଲେ । ଚଉକି ଟାଣିବାର ଶବ୍ଦ ହେଲା । କଣ କହିବି, କଣ କରିବି ମତେ ବୁଦ୍ଧି ଦିଶିଲା ନାହିଁ । ସେମିତି ଠିଆ ହୋଇ ରହିଲି ।

ଘର ଭିତରୁ କାନ୍ତିପତି ବାବୁ ଡାକିଲେ, ଅଲୋ ତୁଳସି, ଏଇଠି ଟଙ୍କା ଦେଇଯା ।

ବାଧ ହୋଇ ଝୋଟକେଇଟି ପିଣ୍ଡା ଉପରେ ରଖି ଦ୍ୱାର ମୁହଁକୁ ଗଲି । କାନ୍ତିପତି ବାବୁ ଦ୍ୱାରମୁହଁ ଆଡ଼କୁ କଡ଼ କରି ଗୋଟାଏ ଲମ୍ବା ଟେବୁଲ ପାଖରେ

ବସିଥାଅନ୍ତି । ଟେବୁଲ ଉପରେ କାଗଜପତ୍ର ଖେଲାହୋଇଥାଏ । ତାଙ୍କ ଆଗରେ କାଠ ବାକ୍‌ସଟିଏ ଖୋଲା ହୋଇ ରହିଥାଏ । ବାକ୍‌ସ କରକୁ ଠା ଠା ହୋଇ ନୋଟ, ଟଙ୍କା, ରେଜକା ଓ ପଇସା ରଖା ହୋଇଥାଏ । ବେଳେ ବେଳେ ଖଣ୍ଡେ କାଗଜରେ ସେ କଣ ଲେଖୁଥାନ୍ତି, ଟଙ୍କା ନୋଟ୍ ଗଣି ଠା ଠା କରି ରଖୁଥାନ୍ତି ।

ଏତେ ଟଙ୍କା ଏକାଠି ମୋ ଜୀବନରେ କେବେ ମୁଁ ଦେଖି ନ ଥିଲି । ମୋ ଆଡ଼କୁ ଆଖି ଫେରାଇ କହିଲେ, ସେଠି ଠିଆ ହେଲୁ କାହିଁକି ଲୋ, ଏଇଠି ଟଙ୍କା ଦେଇ ଯା ।

ସବୁ ଟଙ୍କା ଆଣି ନାହିଁ ।

ଏଁ ଟଙ୍କା ଆଣିନୁ ? ତେବେ କଅଣ ଦେବାକୁ ଆସିଥିଲୁ ?

କହିବାକୁ ଆସିଥିଲି ।

ହସିଲେ । କଲମକୁ ଦାନ୍ତରେ କାମୁଡ଼ି ହସ ହସ ହୋଇ କହିଲେ, ଏମିତି କହିବାକୁ ତ କେହି ଆସେ ନାହିଁ ।

ଲାଜସା ହୋଇ କହିଲି, ବ ପାଲିଯାଏ ଟଙ୍କା ହାଟକୁ ଆଣି ଫେରାଇ ନେଲି । ଆପଣଙ୍କର ଦେଖା ପାଇଲି ନାହିଁ । ଗରିବ ଲୋକ । ପରର ଧନ ହେଲେ ବି ଅଭାବ ଅସୁବିଧାରେ ପଡ଼ିଲେ ପରେ ସୁଝିବା ଆଶାରେ ଖରଚ ହୋଇଗଲା । ମା ବେମାର ପଡ଼ିଲା । ତାକୁ ବଞ୍ଚାଇବାକୁ ଔଷଧ ପଥିରେ ସବୁ ଖରଚ ହୋଇଗଲା । ହାଟ ପାଳିକି ହାଟ ପାଳି ଯାହା ଲାଭ ହେଉଥିବ ଦେଇ ଯାଉଥିବି । ଏକାଥରକେ ଦେଇ ପାରିବି ନାହିଁ । ଆଜି ଦୁଇଟଙ୍କା ଦେବାକୁ ଆଣିଛି ।

କାନିରୁ ଫିଟାଇ ଦୁଇଟଙ୍କା କାଢ଼ିଲି । ତାଙ୍କ ପାଖକୁ ଯାଇ ଟେବୁଲ ଉପରେ ରଖି ଆଡ଼େଇ ଠିଆ ହେଲି ।

ସେ ଟଙ୍କା ଦିଓଟିକୁ ଥରେ ଚାହିଁ ମୋ ଆଡ଼କୁ ଅନାଇଁଲେ । ପଚାରିଲେ, ତୋର ମା ଭଲ ହୋଇ ଗଲେଣି ତ ?

ନାହିଁ, ତେବେ ଆଗ ଅପେକ୍ଷା ଟିକିଏ ଭଲ ଅଛି ।

ଆଉ ତୋର କିଏ ଅଛି ?

ଅଢ଼େଇ ବର୍ଷର ପୁଅଟିଏ ।

ଆଉ କେହି ରୋଜଗାରିଆ ନାହିଁ ?

ନାଇଁ ।

ମୋ ମୁହଁକୁ କରୁଣ ଦୃଷ୍ଟିରେ ଚାହିଁଲେ । କହିଲେ, ଥାଉ, ଆଉ ଯେବେ ସୁବିଧା ହେବ ଟଙ୍କା ଫେରାଇ ଦେବୁ । ତୋର ମା' ଦେହ ଭଲ ହୋଇ ଯାଉ ।

କହିଲି, ଆମେ ଗରିବ, ସବୁଦିନେ ଦିଅଣ୍ଟ । ଯାହା ଯେଉଁଠୁ ଭେଟିଲେ ପେଟକୁ ଅଣ୍ଟେ ନାହିଁ । ପରର କାଢ଼ିଆ ପୂରିବାକୁ ହେଲେ ପେଟ ଖେଣ୍ଟି ସଞ୍ଚିବାକୁ ପଡ଼େ । ଆଜି, ସା'ନ୍ତେ, ପେଟରୁ କାଟି ପୂରିବା ଆମ ପକ୍ଷରେ କଷ୍ଟ । ଏ ପାଳି ଏତିକି ଦେଲି, ଆର ପାଳି ଯାହା ପାଇବି ଦେବି । ଯାଉଛି ।

ଯିବାକୁ ବାହାରିଲି ।

କହିଲେ, ଶୁଣ, ତୁଳସୀ ।

ଅଟକି ରହିଲି ।

ମୋର ଟଙ୍କାର ଏମିତି କିଛି ଅଭାବ ନାହିଁ । ଅନ୍ୟର ଆପଦ ବିପଦ ବେଳେ ସାହାଯ୍ୟ କଲେ ଧନ ଊଣା ହେବ ନାହିଁ । ତୋ ବୋଉର ଦେହ ଭଲନାହିଁ । ଏପରି ଅବସ୍ଥାରେ ତୋ'ଠାରୁ ଏବେ ଟଙ୍କା ଆଦାୟକରିବାକୁ ମୁଁ ଚାହୁଁ ନାହିଁ । ମୋର ଘର ଏ ଦେଶରେ ନୁହେଁ । ଅନ୍ୟ ଦେଶରୁ ଆସିଛି, ବେପାର କରୁଛି । ଅନେକ ଟଙ୍କା ଲାଭ ପାଏଁ, ଅନେକ ଟଙ୍କା ଅଛି, ଅଥଚ ମୋର କେହି ନାହିଁ । ପାଞ୍ଚ ଦଶଟା ଟଙ୍କା କାହାକୁ କେବେ ଦେଲି, କିଏ କେବେ ଦେଲା ନ ଦେଲା ତେଣିକି ମୋର ଦିଆ ନଜର ନ ଥାଏ ।

ଆପଣ ବଡ଼ଲୋକ, ମନେ ରହୁ ନ ଥିବ । ଆମେ ଗରିବ, ପାଞ୍ଚ ଦଶଟା ଟଙ୍କା ଆମ ମୁଣ୍ଡରେ ପାହାଡ଼ର ବୋଝ । ଖଲାସ କରିବାକୁ ସଦାବେଳେ ଆମ ମନ ଛଟପଟ ହୁଏ ।

ଅଚ୍ଛା, ସେ ଟଙ୍କା ଦିଓଟି ତୁ ନେଇ ଯା, ତୋର ଏତେ ଅଭାବ, ତୋ ଠାରୁ ମୁଁ ଟଙ୍କା ନେବାକୁ ଚାହେଁ ନାହିଁ ।

ଆପଣଙ୍କର ଧାରୁଆ ହୋଇ ମୁଁ ରହିବି ନାହିଁ ସାଆନ୍ତେ ।

ଆଖିପତା ଟେକି ମୋ ମୁହଁକୁ ଚାହିଁଲେ । ଓଠରେ ହସର ଆଭା ଖେଳିଗଲା । କହିଲେ, ଧାରୁଆ କିଏ କାହାର ? ଯେଉଁ ଟଙ୍କାକୁ ମୋର ବୋଲି ମୁଁ କହୁଛି ସେ ବି ତମରିମାନଙ୍କ ଟଙ୍କା । କାମ ମୁଁ ନିଏ, ତମେମାନେ କାମ କର । ତମରିମାନଙ୍କ ଦ୍ୱାରା କାମ କରାଏଁ । ମଝିରେ ମୁଁ ନିଏ ଲାଭ । ସେହି ଲାଭ ଟଙ୍କାରୁ କାହାର ଦରକାର ବେଳେ କିଛି ଦେଲେ, ନେଲା ଲୋକକୁ ଧାରୁଆ କୁହାଯିବ ନାହିଁ ।

ମୁଁ ଆପଣଙ୍କର କେବେ କାମ କରି ନାହିଁ ।

କରିବାକୁ ମନା ନାହିଁ । କାମ ପାଇଁ ମୋର ଲୋକ ଲୋଡ଼ା ।

ସେ ଚଉକିରୁ ଉଠି ଆସିଲେ । ମୁଁ ଥୋଇ ଦେଇଥିବା ଟଙ୍କା ଦିଓଟି ଓ ଆଉ ଖଣ୍ଡିଏ ଦଶଟଙ୍କିଆ ନୋଟ୍ ଟେବୁଲ ଉପରୁ ଉଠାଇ ମୋ ପାଖକୁ ଆସି କହିଲେ, ନେ, ବର୍ତ୍ତମାନ ତୋର ଟଙ୍କାର ଦରକାର ଅଛି । ମା ବେମାର ।

ପଛକୁ ଘୁଞ୍ଚି ଆସିଲି । ବଳିଆର ସତର୍କ କଥା ମୋ ମନେ ପଡ଼ିଲା ।

ମୋ ମନକଥା ବୁଝିଲା ପରି ହସି ହସି କହିଲେ, ଲୋକେ ମୋର ଦୁର୍ନାମ କରନ୍ତି ତୁଳସି, ହୁଏ ତ ତୁ ବି ଶୁଣିଥିବୁ । କାହିଁକି ଜାଣୁ ? ଯାହାର ଧନ ଥାଏ ଲୋକେ ପାଇବା ଆଶାରେ ତା ପଛରେ ଗୋଡ଼ାନ୍ତି । ନ ପାଇଲେ ଦୁର୍ନାମ ରଟାଇ ମନର ଓରମାନ୍ ମେଣ୍ଟାନ୍ତି । କାହାର ଅଭାବ ଦେଖିଲେ, ବିଶେଷତଃ ସ୍ତ୍ରୀଲୋକ, ଯାହାଙ୍କର ସାହା ସମ୍ବଳ ନ ଥାଏ, ତାଙ୍କୁ ମୁଁ ସାହାଯ୍ୟ କରେ । ଲୋକେ ନ ବୁଝି ଦୁର୍ନାମ ରଟାନ୍ତି । ମୁଁ କାନ ଦିଏ ନାହିଁ ।

କାନ୍ତିପତି ବାବୁ ନିଜ ଚରିତ୍ର ଓ ସ୍ୱଭାବର ଗୁଣ ବାଖ୍ୟାନିଲେ । କେତେ କଥା ପଚାରିବାକୁ ପାଟି ଖଲଖଲ ହେଉଥିଲା, ପଚାରିବାକୁ ସାହସ ହେଲା ନାହିଁ । ସେ ମୋ ହାତରେ ଟଙ୍କାଧରାଇ ଦେଇ କହିଲେ, ତୁ ଏଥର ଯା—ମୁଁ ତତେ ଏ ଟଙ୍କା ଧାର ଦେଉ ନାହିଁ । ତେବେ ତୋ ସୁବିଧା ହେଲେ ଫେରାଇ ଦେବୁ । ନ ହେଲେ ନାହିଁ ।

ମୋର ହାତ ଛାଡ଼ି ସେ ଯାଇ ଚଉକିରେ ବସିଲେ । କଅଣ କହିବି ମୋର ବୁଦ୍ଧି ଦିଶିଲା ନାହିଁ । ଟଙ୍କା ଗ୍ରହଣ କରିବି କି ନାହିଁ ସ୍ଥିର କରି ପାରିଲି ନାହିଁ । କ୍ଷଣକାଳ ତାଙ୍କ ଆଡ଼କୁ ଚାହିଁ ରହିଲି । ଚାଲି ଆସିବାକୁ ଗୋଡ଼ ଚଳିଲା ନାହିଁ । ଭାବିଲି ଏପରି ଜଣେ ମହତ୍ ଲୋକଙ୍କର ନିନ୍ଦା ବଳିଆ ରଟାଉଛି କାହିଁକି ? ହଁ ମଦୁଆ ମଣିଷ, ପେଟରେ ଖଜୁରି ରସ ପଡ଼ିଲେ ତାରି ବୁଦ୍ଧି ହଜି ଯାଉଥିବ । ପଚାରିବି ?

କାନ୍ତିପତି ବାବୁ କାମରେ ମନ ଦେଲେ । କଡ଼ରେ ଠିଆ ହୋଇ ମୁଁ ତାଙ୍କୁ ଅନାଇଁ ରହିଥାଏ । ସୁନ୍ଦର ଗୋରା ତକ୍‌ତକ୍ ବଳିଷ୍ଠ ଦେହ । ହସିଲା ପରି ମୁହଁଟି । ବୟସ ଚାଳିଶି ସେ ପାଖ ହେବ । ମୋର ବାପ ଦାଦାଙ୍କ ସମାନ । ଲମ୍ବ ନାକ ଉପରେ ସୁନା ନାଡ଼ ଲଗା ଚଷମା । ନାକ ତଳେ ସରୁ ନିଶ । ମୁଣ୍ଡବାଳ ଯତ୍ନକରି ପଛକୁ ଭାଙ୍ଗି କୁଣ୍ଡାଇଛନ୍ତି । ଦେହରେ ପାତଳ ଧୋବ ଫରଫର ଜାମା ଦେଖିଲେ ମନରେ ଭକ୍ତି ଆସେ । ଡର କାହିଁକି ?

ପଚାରିଲି, ବଳିଆ ଆପଣଙ୍କର ନାମରେ ନିନ୍ଦା ରଟାଏ କାହିଁକି ?-

ସେ ମୁହଁ ବୁଲାଇ ମୋ ଆଡ଼କୁ ଚାହିଁଲେ । ହସି ହସି ଓଲଟି ପଚାରିଲେ, ତୋ ଆଗରେ ମୋ ନିନ୍ଦା କରେ ?

ତାଙ୍କ ଆଖିରେ ଓ ହସିଲା ଓଠରେ କି ମୋହିନୀ ଶକ୍ତି ଅଛି କେଜାଣି, ତାଙ୍କ ମୁହଁକୁ ଚାହିଁଶୁ ମୋ ତୁଣ୍ଡରୁ ଖସିଗଲା, ହଁ ।

ପଚାରିଲେ, ବଳିଆ ସଙ୍ଗରେ କେବେଠୁଁ ଏପରି ଘନିଷ୍ଠ ସମ୍ପର୍କ ହେଲା ମ ! ମିଛ ହେଉ କି ସତ ହେଉ ତମ ଭିତରେ ବେଶ୍ ତ ମନଖୋଲା କଥାଭାଷା ହେଉଛି । ସେ ଯାହା ହେଉ, ବଳିଆ ମଦୁଆ, ମଦ ନିଶା ଥିବାଯାଏ ସେ ଭଲ । ନିଶା ଛାଡ଼ିଲା, ଆଖି ଫିକ୍କା ଦିଶିଲେ ସେ ବାଇଆ ହୁଏ । ସେଥିପାଇଁ ତାର ଆଖି ସବୁବେଳେ

ମୁଁ ରଙ୍ଗ ରଖାଉ ଥାଏ । ବଳିଆ ଭଲ ଲୋକ, କାମିକା, ସରଳ, କିନ୍ତୁ ଅଛି ଅଖାଡ଼ୁ । ତାକୁ ଭଲ ପାଏ ।

ତାଙ୍କ କଥାରେ ଦୋଷ ଦିଆ ନିଆଯାଇପାରୁ ନଥିଲା । ବାଆଁରେଇ କହିଲି, ଅପଣଙ୍କୁ ସେ ଭଲ ପାଏ ନାହିଁ, ନିନ୍ଦା କରେ । ଉପରେ ପଡ଼ି ତା ମନକୁ ସେ ବାଟରେ ମତେ କହୁଥିଲା । ଆଗରୁ ତାକୁ ମୁଁ ଜାଣି ନ ଥିଲି । ଅପଣଙ୍କ ଗୁରୁକର ବୋଲି ତାକୁ ଜାଣିଲି ।

କାନ୍ତିପତି ବାବୁ କହିଲେ, ବଳିଆ ମୋର ବାହାରଟା ଦେଖିଛି । ମୋ ମନ ସଙ୍ଗେ ତାର ଶଙ୍କା ପରିଚୟ ନାହିଁ । ତେଣୁ, ମତେ ସେ ସନ୍ଦେହ କରେ । ସତେ କି ମୁଁ—

ତୁନି ହୋଇଗଲେ । ସେ ଯାହା କହୁଥାନ୍ତି ମୁଁ ବୁଝିଲି । ଲାଜରୁ ହେଲି ।

ପୁଣି କହିଲେ, ଆଉ, ବଳିଆକୁ ପଚାରିବୁ, ଅନେକ ଦିନ ହେଲା ତ ଘରର ପରି ମୋ ପାଖେ ପାଖେ ଅଛି, ମୋର କେଉଁ ଖରାପ ଢଙ୍ଗ ସେ କେବେ ଦେଖିଛି ? ତା ନିଜ ସ୍ୱଭାବର ରୂପ ସେ ପରଠାରେ ଦେଖେ । ତାର ଏଇ ବଦ୍‌ଖୋଇକୁ ମୁଁ ତାକୁ ମଦ ଖୁଆଇ ବୁଡ଼ାଇ ରଖେ । ନଇଲେ କେବେଠୁଁ ସେ ଜେଲ ଯାଆନ୍ତାଣି । ବୁଝିଲୁ ?

ମନକୁ ମନ କହିଲି, ବଳିଆ ଏଡ଼େ ଖରାପ ?

ବଳିଆ ଖରାପ ନୁହେଁ, ମଣିଷର ପ୍ରକୃତି ଖରାପ । ଭଲ ବାଟ ପାଇଲେ ମଣିଷ ସେଥିରେ ଚାଲେ । ଖରାପ ବାଟ ଦେଖିଲେ ମଧ୍ୟ ସେ ସେଥିକି ତେଇଁ ପଡ଼େ । ତୋତେ ଦେଖିଲେ କାହିଁକି ମୁଁ ତୋ ଆଡ଼କୁ ଅନାଏଁ, ହସେ, ପୁଣି ମନଦୁଃଖରେ ମୁହଁ ଫେରାଇ ଚାଲିଯାଏଁ ? ତାର କଅଣ କାରଣ ନାହିଁ ଭାଳୁଛି ?

ଆଖି ଛଳ ଛଳ କରି ମୋ ଆଡ଼କୁ ଅନାଇଁଲେ । ମୁଁ କାବା ହୋଇ ଥିରି ଆଖିରେ ତାଙ୍କ ଆଡ଼କୁ ଚାହିଁ ରହିଲି ।

କହିଲେ, ଜୀବନରେ ଯାହାକୁ ମୁଁ ଭଲ ପାଇଥିଲି, ଯାହା ପାଇଁ ମୁଁ ମୋର ସର୍ବସ୍ୱ ଦେଇ ପାରିଥାନ୍ତି, ସେ ଆଜି ଜୀବନରେ ନାହିଁ । ଦୁଇ ବର୍ଷ ତଳେ, ଯେତେବେଳେ ମୁଁ ଧନ ଅର୍ଜନ କରିବାକୁ ବ୍ୟସ୍ତ, ସେ ମୋତେ ଛାଡ଼ି, ସଂସାର ଛାଡ଼ି ଚାଲିଗଲେ । ତାଙ୍କର ଖଣ୍ଡିଏ ଫଟୋ ମୋର ସମ୍ବଳ । ଯେଉଁ ଦିନ ମୁଁ ତତେ ପ୍ରଥମେ ଦେଖିଲି, ଆଶ୍ଚର୍ଯ୍ୟ ହୋଇ ଚାହିଁ ରହିଲି । ଦୁଇଟା ରୂପ ଭଗବାନ୍ ଏକା ପରି ଗଢ଼ି ନ ଥାନ୍ତି ବୋଲି ମୋର ଧାରଣା ଥିଲା; କିନ୍ତୁ ତୋତେ ଦେଖି ମୋର ସେ ଧାରଣା ବଦଳିଗଲା । ତୁ ଅବିକଳ ତାଙ୍କରି ପରି !

ଏତିକ କହି ସେ ମୋ ପାଖରୁ ଉଠିଗଲେ ଆର ଘରକୁ । ମୁଁ ସେମିତି ସେଠି ଠିଆ ହୋଇ ରହିଥାଏଁ । କେତେବେଳକେ ଆର ଘରୁ ଡାକିଲେ, ଦେଖି ଯା ।

ମୋର ଗୋଡ଼ ଚଳୁ ନ ଥାଏ, ଡର ଡର ମାଡ଼ୁଥାଏ । ଡାକୁଛନ୍ତି ତ ନ ଯିବି କପରି, ଗଲେ ବା ଯିବ କଅଣ ? କାନ୍ତପତି ବାବୁଙ୍କର ସ୍ୱଭାବ ଯେତେ ଖରାପ ବୋଲି ଶୁଣିଥିଲି, ତାର କାଣିଚାଏ ମୁଁ ଦେଖିଲି ନାହିଁ । ଧୀରେ ଧୀରେ ଆର ଘର ଦ୍ୱାରବନ୍ଧ ପାଖକୁ ଗଲି । ଚାହିଁଲି, ବଡ଼ କୋଠରୀ ତଳେ ଗାଲିଚା ପରା ହୋଇଛି । ଝରକା ଗୁଡ଼ିକରେ ରଙ୍ଗୀନ ପରଦା ଝୁଲୁଛି । ଘରର ଚାରିକଣରେ ଛୋଟ ଛୋଟ ଟେବୁଲ ଉପରେ ଫୁଲଦାନୀ । ଉପରେ ଝୁଲୁଛି ପଙ୍ଖା । ଘର ମଝିରେ କାରୁକାର୍ଯ୍ୟକରା ପଲଙ୍କ । ତା ଉପରେ ହାତେ ବହଳର ଗଦି । କାନ୍ଥ ଉପରେ କେତେ ଛବି ଟଙ୍ଗା ହୋଇଛି । କାନ୍ଥ କଡ଼କୁ ରଖା ହୋଇଛି ବଡ଼ ଅଲମାରୀ । ଗୋଟିଏ ପାଖରେ ଟେବୁଲ ଉପରେ ଅଇନାଟିଏ ଝୁଲୁଛି ।

କାନ୍ତପତି ବାବୁ ଅଇନା ପାଖ ଅଲମାରୀ ଖୋଲି ଠିଆ ହୋଇଛନ୍ତି । ହାତରେ ଛବି ପରି ଖଣ୍ଡେ କଅଣ ଧରିଛନ୍ତି । ମୋତେ ଦେଖି କହିଲେ, ଯାହାଙ୍କ କଥା କହୁଥିଲି, ଏଇ ତାଙ୍କର ଛବି, ଦେଖିବୁ ଆ । ଏଇ ଅଇନା ଆଗରେ ଠିଆ ହୋଇ ନିଜର ରୂପ ସଙ୍ଗେ ତାଙ୍କର ରୂପଟି ମିଳାଇ ଦେଖ୍ ।

କହୁ କହୁ ରୁମାଲରେ ଆଖି ପୋଛିଲେ ।

ତାଙ୍କର କଥା ଶୁଣି, ଢଙ୍ଗ ଦେଖି ତାଙ୍କ ଉପରୁ ମୋର ସନ୍ଦେହ ଦୂର ହୋଇଗଲା । ଅସନା ଗୋଡ଼ ଓ ମଇଲା ଭେକ ନେଇ ଘର ଭିତରକୁ ଯିବାକୁ ମନ ହେଲା ନାହିଁ । ତାଙ୍କର ଦୁଃଖରେ ମନ ନରମି ଆସିଲା । ଭାବୁଥିଲି, ଯାହାକୁ ଜୀବନରେ ସେ ଥରେ ଭଲ ପାଇଥିଲେ, ତାକୁ ହରାଇ ତା ପାଇଁ ଝୁରି ହେଉଛନ୍ତି । ଯାହାଠାରେ ତା ରୂପର ଛାଇଁ ଦେଖିଲେ ତା ଆଡ଼କୁ ଚାହିଁବା କି ଚାହିଁ ହସିବାରେ ଦୋଷ ନାହିଁ । ପ୍ରାଣ ଯାହାକୁ ଚାହେଁ, ମନ ଯାହାକୁ ଖୋଜେ, ଝୁରି ହୁଏ । ତା ପରି ଆଉ କାହାକୁ ଦେଖିଲେ ଆଖି ଆପେ ଆପେ ଟାଣି ହୋଇଯାଏ ।

କାହିଁକି ଆଜି ସୁରଙ୍କ ଆଡ଼କୁ ମନ ଟାଣି ଓଟାରି ହେଉଛି ?

ରାମ ଲକ୍ଷ୍ମଣ ପରି ଦୁଇଭାଇ । କିଏ ବଡ଼, କିଏ ସାନ ଜାଣି ହୁଏ ନାହିଁ । ଏକା ରୂପ, ଏକା ଢଙ୍ଗ । ଯେଉଁ ଦେହଟିକୁ ଯେଉଁ ରୂପକୁ ମୋର ଜୀବନସର୍ବସ୍ୱ କରି ଭଲ ପାଇଥିଲି, ସୁର ତାରି ଛାଞ୍ଚରେ ଗଢ଼ା । ଯେତେ ସନ୍ଦେହ କଲେ ସୁଦ୍ଧା ଯେତେ ହତାଦର କଲେ, ଆଶା ତ ରହିଲା ନାହିଁ । ଯେତେ ଝଗଡ଼ ଆସିଲା, ମନ ଗହନର କେଉଁ ଅଜଣା ଅନ୍ଧାରୀ କୋଣରେ ସେହି ଦେହ, ସେହି ରୂପ ଆଡ଼କୁ, ଛଟପଟ ଆଶା ଧାଇଁ ଯାଉଥିଲା ।

ସମଦୁଃଖୀ ଏଇ କାନ୍ତବଗିଚି ବାବୁଟି ! ଯାହାକୁ ସେ ଭଲ ପାଇଥିଲେ, ସେ ଅଛି ନାହିଁ । ତାଙ୍କ ଅଖିରେ ଯାହାର ରୂପଟି ପୁରୁଣା ଓ ପଇଡତ, ପର ମଣିଷଠାରେ ତାର କାଣିଚାଏ ଦେଖିଲେ, ନୂଆ ଘଇ ଲାଗେ, ଅଖି ଝାଣି ହୋଇଯାଏ ।

କାନ୍ତବଗିଚି ବାବୁ କହଲେ ଛବିଟି ଦେଖିବୁ ନାହିଁ ? ହଉ, ନ ଦେଖ ।

ଫଟୋ ଖଣ୍ଡି ଅଳମାରି ଭିତରେ ରଖିଦେଲେ । ଛଳ ଛଳ ଅଖି କଇ ଏ ଘରକୁ ଅସୁ ଅସୁ କହଲେ, ବରଂ ନ ଦେଖିବା ଭଲ । ପର ଦୁଃଖରେ ଭାଗୀ ହେବାକୁ କାହାର ଲୋକଙ୍କର ମନ ଉଠିବ ନାହିଁ । ନ ଉଠୁ, କହବା ଲୋକର ଦୁଃଖ ତ ଲଘବ ହେବ !

ମୁଁ ଦ୍ୱାରମୁହଁରୁ ଅଡ଼େଇ ଚଲି । ସେ ଟେବୁଲ ପାଖକୁ ଅସିଲେ । ମୋ ଅଡ଼କୁ ଫେଇ ଚ୍ହିଁ କହଲେ, ଅନୁରୋଧଟିଏ ଅଛି, ରଖିବୁ ?

ଉତ୍ତର ଦେଲି ନାହିଁ । ସେ ପୁଣି କହଲେ, ମୋର ଏଇ ଅନୁରୋଧ ଯେ ତୁ ଅଉ ଏଠିକି ଅସିବୁ ନାହିଁ । ତୋତେ ଦେଖିଲେ ତାଙ୍କର ରୂପ ଗୁଣ ମନେ ପଡ଼େ, ଦୁଃଖ ହୁଏ ।

ସହଜ କଥା, ଭଲ କଥା । ଅସିବାକୁ କାହାର ଗରଜ ପଡ଼ିଛି । କିଛି ଜବାବ୍ ନ ଦେଇ ତାଙ୍କ ପାଖକୁ ଚଲି । ଟେବୁଲ ଉପରେ ଟଙ୍କା ରଖିଲି । ଦୀର୍ଘଶ୍ୱାସ ଛାଡ଼ି କହଲି, ହେଉ, ବାକି ଟଙ୍କା କାହା ହାତରେ ପଠାଇ ଦେବି ।

ଟଙ୍କା ତୁ ନେଇ ଯା, ତୋ ମାଇ ଦେହ ଭଲ ହୋଇଗଲେ ସୁବିଧା ଦେଖି ଯେବେ ହେଲେ ଟଙ୍କା ପଠାଇ ଦେବୁ । ପଠାଇ ନ ପାଇଲେ ବି ମୋ ମନରେ ଦୁଃଖ ହେବ ନାହିଁ ।

ପ୍ରତିବାଦ କଲି । ସେ ଶୁଣିଲେ ନାହିଁ । ଯିଦ୍ଦ କଇ, ଟେବୁଲ ଉପରୁ ମୋ ରଖିଥିବା ଟଙ୍କା ଉଠାଇଲେ । ମୋର ହାତ ଧଇ, ଟଙ୍କାତକ ହାତରେ ଗୁଞ୍ଜି ଦେଲେ । କହଲେ, ତୋ ବୁଢ଼ୀମାଇ ଜୀବନ ରଖିବାକୁ, ଚିକିତ୍ସା ଓ ପଥ୍ୟ ଲୋଡ଼ା । ସେଥିପାଇଁ ଧନ ଦରକାର । ତାଇ ପାଇଁ ମନ ଖୁସିରେ ମୁଁ ଦେଉଛି । ନେବୁ ନାହିଁ ?

ତାଙ୍କର ଦୁଇ ଅଖିରେ ସହାନୁଭୂତି ଭଇ ରହିଥିଲା । ଅନୁରୋଧରେ ସତେ କି ଅଦେଶ ପୂରି ରହିଥିଲା । ମୁହଁକୁ ଅନାଇଁ ମୁଁ ନାହିଁ କଇ ପାଇଲି ନାହିଁ । କହଲି, ହଉ ।

ସେ ମୋ ହାତ ଛାଡ଼ିଲେ ନାହିଁ । ପୂର୍ବ ପରି ଧଇ କହଲେ, ତୋତେ ଅସିବାକୁ ମନା କଲି ବୋଲି ମନରେ ଦୁଃଖ କଲୁକି ତୁଳସୀ ?

ହାତ ଟେକି ନେଇ କହିଲି, ଆପଣଙ୍କର ଦୁଃଖୀ ଦରିଦ୍ରଙ୍କ ଉପରେ ଭାରି ଦୟା ସାଆନ୍ତେ, ନିଜ ଦୁଃଖ ପାଇଁ ଆପଣଙ୍କୁ ବିରକ୍ତ କରିବାକୁ ଆଉ କେବେ ଆସିବି ନାହିଁ ।

କହିଲେ, ସତେ ?

ମୁଁ ଟିକେ ଦୂରେଇ ଠିଆ ହୋଇଥିଲି । ସେ ପୁଣି ମୋ ପାଖକୁ ଘୁଞ୍ଚିଆସି କହିଲେ, ଶୁଣ, ପର ଉପରେ ଅଭିମାନ କରି ନିର୍ବୋଧ ଲୋକ ବିପଦକୁ ନିଜ ଉପରକୁ ଟାଣି ଆଣେ । ତୁ ନିର୍ବୋଧ ନୋହୁଁ । ଯଦି କେବେ ବିପଦ ଆସେ, ଅଭାବ ପଡ଼େ, କିଏ କଅଣ କହିବ ସେଥିକି କାନ ନ ଦେଇ ବିରକ୍ତ କରିବାକୁ ତୁ ଆସିବୁ । ତୋର ପରି ଦୁଃଖୀ ରଙ୍କୀଙ୍କ ପାଇଁ, ମୋର ଦୁର୍ବଳ ମନ ନଇଁ ଆସେ । ଜାଣୁତ, ମୋର କେହି ନାହାଁନ୍ତି । ଆଉ ଶୁଣ, ନିଜେ ଭଲ ତ ଦୁନିଆଁ ଭଲ ।

ଟିକିଏ ରହି ମୋର ଦୁଇହାତ ଧରି କହିଲେ, କହ, ଆସିବୁ ?

କହି ପକାଇଲି, ଦରକାର ହେଲେ ଆସିବି ।

ହାତ ଟାଣି ଆଣି ତରତର ହୋଇ ପଦାକୁ ଆସିଲି ।

ବାରଣ୍ଡାରେ ପଡ଼ିଥିବା ଟୁଲ୍ ଉପରେ ବଳିଆ ବସିଛି । ଆଖି ରଙ୍ଗ ଦିଶୁଛି । ହାତରେ ଧରିଛି ଠେଙ୍ଗା । ମୋ ଆଡ଼କୁ କଟମଟ କରି ଚାହିଁଲା । ତାର ଫୁଙ୍ଗୁଳା ଆଖି, ଫୁଲିଲା ନାକକୁ ଦେଖି ଛାତିରେ ଛନକା ପଶିଲା । କପଟର ଯନ୍ତ୍ରଣା ଅନୁଭବ କଲି । ନିଜକୁ ଅପରାଧୀ ମଣିଲି । ମନେ ହେଲା, କଣ ଭୁଲଟାଏ କରି ପକାଇଛି ।

ପଛକୁ ନ ଚାହିଁ ଟୋକେଇ ଧରି ଏକମୁହାଁ ହୋଇ ଚାଲି ଆସିଲି । ଗୋଡ଼ ଥରୁଥାଏ, ଛାତି କମ୍ପୁଥାଏ, ସାରା ସଂସାର ଆଖି ଆଗରେ ଭ୍ରମୁଥାଏ ।

୨୬

ଏକମୁହାଁ ହୋଇ ଖଣ୍ଡେ ଦୂର ଚାଲି ଆସିଲି । ବାଟକଡ଼ କଦମ୍ବ ଗଛ ତଳେ ଥକ୍କା ହୋଇ ଠିଆ ହେଲି । ସୂର୍ଯ୍ୟ ଅସ୍ତ ହୋଇ ନ ଥାନ୍ତି । ଖରା ତେଜ ମଉଳିଲାଣି । ଏଣେ ତେଣେ ଚାହିଁଲି । ନିକଟରେ କେହି ନ ଥାନ୍ତି । ହାତମୁଠା ଖୋଲି କାନ୍ଦୁରଣି ବାବୁ ଦେଇଥିବା ନୋଟ୍ ଓ ଟଙ୍କାକୁ ଦେଖିଲି । ଛାତିରେ ଅଜଣା ଡରର ଧକ୍କା ଲାଗିଲା । ଅଭାବଗ୍ରସ୍ତ ନିମ୍ନଶ୍ରେଣୀ ଲୋକ ଧନ ଆଡ଼କୁ ଟାଣି ହୋଇଯାଏ । ମନ ଝଗଡ଼ା ଉଠିଲେ ମଧ୍ୟ ଧନବନ୍ତର ପ୍ରଭାବ ଜାଲରେ ନ ଥିଲା ଲୋକ ଜାଣି ଜାଣି ଛନ୍ଦି ହୁଏ । ତେଣିକି ଆଉ ଚାରା ରହେ ନାହିଁ । ଯେଣିକି ଟାଣିଲେ ତେଣିକି ଓଟାରି ହୋଇ ଯାଏ ।

ବଲଲଅ ଠିକ୍ କହୁଥିଲା । ତା ଧନର ମୋହ କାଟି ଅସିବା ସହଜ ନୁହେଁ । କିନ୍ତୁ, କାନ୍ତିପତି ବାବୁ ତ ଖପ୍ପର ଲୋକ ନୁହନ୍ତି ! ସେ ଅଜ ମୋ ଆଗରେ ମନ ଖୋଲି ଯାହା କହିଲେ, ହୁଏତ ବଲଲଅ ସେ ସବୁ କିଛି ଜାଣେ ନାହିଁ । କାନ୍ତିପତି ବାବୁ ମନ ଖୋଲି ତାଙ୍କ ଜୀବନର ଭଲ ମନ୍ଦ କଥା ମୋ ଆଗରେ କି ଉଦ୍ଦେଶ୍ୟରେ କହିଲେ ? ଯାହାର ସ୍ମୃତିକୁ ମନରେ ଘେନି ସେ ସମୟ କଟାଇବାକୁ ଚାହାଁନ୍ତି, ତାର ନିର୍ଜୀବ ଫଟୋ ଖଣ୍ଡି ଜୀବନ ସର୍ବସ୍ୱ କରି ରଖିଛନ୍ତି । ହୁଏତ ମୋ ସଙ୍ଗେ ତାର ଚେହେରା ମିଳେ । ତା ଠାରୁ ସେ ଯାହା ପାଇଥିଲେ, କି ପାଇବାର ଆଶା କରିଥିଲେ, ମୋଠାରୁ କଅଣ ସେ ସେଇଆ ପାଇବାକୁ ଆଶା କରନ୍ତି ?

ମୁଣ୍ଡ ବୁଲାଇଲା । ଦୂରକୁ ଅସି ଘଟିଥିବା ଘଟଣାର ଛବି ମନେ ପକାଇ ମନର ଆଖିରେ ଦେଖିଲେ କିପରି ଅଲଗା ଭାବ ମନକୁ ଅସେ । ଏକାଥରେ ଅପରିଚିତ ନ ହେଲେ ବି ମୋ ସଙ୍ଗେ ତାଙ୍କର ଜଣାଶୁଣା ବେଶି ଦିନର ନୁହେଁ । ହାଟର ଶହ ଶହ ହାଟୋଇଙ୍କ ଭିତରୁ ମୁଁ ଜଣେ । ହଜାର ହଜାର ଗରାଖଙ୍କ ଭିତରୁ କାନ୍ତିପତି ବାବୁ ଜଣେ । ଏତିକି ଆମର ସମ୍ପର୍କ । କେଉଁ ସାହସରେ, କେଉଁ ଅଶାରେ, ମୋର ହାତ ସେ ଧରିଲେ ? କି ମୋହରେ ମୁଁ ବାଧା ଦେଇ ପାରିଲି ନାହିଁ, ପଛକୁ ଘୁଞ୍ଚି ଅସି ପାରିଲି ନାହିଁ ?

ଲାଜ ମାଡ଼ିଲା । ପର ଲୋକ, ତଥାପି ମୋ ପ୍ରତି ତାଙ୍କର, ତାଙ୍କ ପ୍ରତି ମୋର ସହାନୁଭୂତି ଦୁହିଙ୍କର ସଙ୍କୋଚକୁ ଅଡ଼େଇ ଏକାଠି ମିଶି ଏକାକାର ହୋଇ ଯାଇଥିଲା ପରା ! ସମଦୁଃଖ ତ ଅଗ ଦୁଇଟି ମନକୁ ମିଳାଇ ଦିଏ, ତା ପରେ କଅଣ ଘଟେ ?

ଭାବି ପାରିଲି ନାହିଁ, ଭାବିବାକୁ ଡର ମାଡ଼ିଲା, ତା ପରର କଥା । ପିଲାଦିନୁଁ ଦେଖା ଶୁଣା ଚଲା ପରିଚୟ, ଏକାଠି ଖେଳ କୌତୁକ ଥିଲା ତ ଟିମ-ବାବୁଙ୍କ ସଙ୍ଗରେ । ସେ ବିବାହିତ । ଅବେଳାରେ ଅଭାବରେ ଟିକିଏ ଦୟା, ଟିକିଏ ସହାନୁଭୂତି ସେ ଦେଖାଇଥିଲେ । ସଞ୍ଜ ଅଗର ମୁହଁ ଅନ୍ଧାରରେ ନସେଲା ବଗିଚ୍ଚ ଘରେ ଟିମ ଭାଇର ଛାତି ଉପରକୁ ପିଲାର ଜନନୀ ଓ ବିଧବା ଯୁବତୀର ମୁଣ୍ଡ ଅଉଜି ଥିଲା । ଦେହରେ ମନରେ ମିଶି, ଏକାକାର ହେବାର ଉତ୍ତେଜନା, ନାଗସାପ ଦଂଶିଲା ବିଷପରି ଅଖି ପିଞ୍ଚୁଡ଼ାକେ ଚଢ଼ିଟି ଯାଇଥିଲା । ପୁରୁଷ ଦେହର ପରଶ ଅଜାଣତରେ ମନଟାରେ କାଉଁରି ପରଶର ମୋହ ଅଣିଥିଲା । ଅତ୍ମା ଚାହୁଁଲା ସର୍ଜନା । ସେଥି ପାଇଁ ପରା ଉଲ୍ଲସା ଦେହ ମିଳନ ପାଇଁ ଘାରି ହୋଇଥିଲା, ଉଛଳା ଯୌବନ ସାଥୀ ଖୋଜିଥିଲା ।

ନିଜର ଦୁର୍ବଳତା ଦେଖି ନିଜ ଉପରେ ଘୃଣା ଅସିଲା । ଇଚ୍ଛା ହେଲା କାନ୍ତିପତି ବାବୁ ଦେଇଥିବା ଦଶଟଙ୍କାର ନୋଟ ଖଣ୍ଡ ଟିକି ଟିକି କରି ଚିରି ପକାଇବି । ମନ ହେଲା ନାହିଁ ପୁଣି । ତାଙ୍କର ଦୋଷ ଥାଉ କି ନ ଥାଉ ମୋର

ଦୋଷ ଅଳପ ନୁହେଁ । ନୋଟଖଣ୍ଡି କାନରେ ବାନ୍ଧିଲି । ମନରେ ଗୋଟିଏ ଭାବ ଆସିଲା, ଅଭିମାନ କରିବି କାହା ଉପରେ ? ମୋର ଅଭିମାନ, ରାଗ ରୋଷରେ ଆଉ କାହାର ଲାଭ କ୍ଷତି ନାହିଁ । ରାତି ପାହିଲେ ମୁଁ ମୋର ପୁରୁଣା ସଂସାରକୁ ନୂଆ କରି ଗଢ଼ିବାକୁ ଯିବି ।

ସୁର ମୋ ବାଟକୁ ଚାହିଁ ରହିଛନ୍ତି । ତା ପରେ କାନ୍ତିଚାଟିବାବୁ କି ବଳିଆଙ୍କ ସଙ୍ଗେ ମୋର ଆଉ ଦେଖା ହେବ ନାହିଁ । ତାଙ୍କର ଭାବନା ଓ ଭଲ ପଣିଆଁ ନେଇ ସେମାନେ ବଞ୍ଚନ୍ତୁ ।

ଆଗକୁ ଚାଲିଲି ।

ଛବିର ଘର ପାଖେଇ ଆସିଲା । ଅନେକ ଦିନରୁ ଦେଖା ହୋଇ ନାହିଁ । ମନର କେଉଁ ଅଜଣା ଅନ୍ଧାର କୋଣରେ ଈର୍ଷା ନିଆଁ ଜଳି ଉଠିଲା । ଛବି ଯୁବତୀ, ସୁନ୍ଦରୀ ! ଆଉ କେହି ନ ଜାଣୁ, ଭାବନାରେ କେତେ ଥର ସୁରଙ୍କ ହାତରେ ତା ହାତ ଛନ୍ଦିଛି । ଅଣା ଆଖିରେ ଦୁହିଁଙ୍କର ପ୍ରେମ, ଖେଳ, କୌତୁକ ଦେଖିଛି । ନିଜକୁ ଭୁଲିଛି । ହଜାଇ ଦେଇଛି ଦୁହିଁଙ୍କର ଆନନ୍ଦ ଭିତରେ ।

ସୁର, ଯାହାଙ୍କୁ ମୁଁ ଭଲ ପାଏଁ, ହୁଏ ତ ମୋ ଅଜାଣତରେ ଭଲ ପାଇ ଆସିଥିଲି ପ୍ରଥମ ସାକ୍ଷାତ୍ ଦିନରୁ । ଚାରୋଟି ଆଖି ମିଶି ଏକାକାର ହୋଇଥିଲା । ଆତ୍ମା ଆଉକୁ ଆତ୍ମା ଠାଣି ହୋଇଥିଲା । ସମାଜ ନିୟମ ସୁରଙ୍କୁ ମୋ ମନ ପାଖରୁ ଦୂରେଇ ଦେଇଥିଲା । ତାଙ୍କର ଭାଇ ସଂସାର ଗୁଡ଼ି ଚାଲିଗଲେ । ମିଛ ଦୁର୍ନାମ ରଟିଲା । ତାଙ୍କ ପାଖରେ ମୁହାଁମୁହିଁ ଠିଆ ହେବାର ସାହସ ମୋର ରହିଲା ନାହିଁ । ସହସ୍ର ଆଖି ପଡ଼ିଲା ଉଭୟଙ୍କ ଉପରେ । ଭଣ୍ଡିବାଇଦର ଦାଉରେ ଭୟ ଓ ସଂକୋଚରେ ବାଧ୍ୟ ହୋଇ ତାଙ୍କ ପାଖରୁ ଦୂରେଇ ଆସିଲି ।

ଭାବନାରେ ତାଙ୍କର ହାତରେ ଛବିକୁ ସମର୍ପଣ କଲି । ତାଙ୍କର ଆନନ୍ଦରେ ନିଜକୁ ହଜାଇ ଦେଇ ଅଜଣା ଆନନ୍ଦ ଅନୁଭବ କରିଥିଲି । ମୋର ସେହି ଆନନ୍ଦ, ସୁରଙ୍କ ପ୍ରତି ମୋର ଆକର୍ଷଣ ।

ସୁରଙ୍କୁ ସ୍ୱାମୀରୂପେ ପାଇବାକୁ ଆଜି ପ୍ରବଳ ଇଚ୍ଛା ଜେଗି ଉଠିଛି । ଆଜି ମୋତେ ଯେପରି ମୋର ମନରେ କିଏ କହି ଦେଉଛି—ଆକର୍ଷଣ ଚିରଦିନ ଥିଲା । ନିଜ ପାଖରେ ନିଜକୁ ମୁଁ ଲୁଚାଉ ନାହିଁ । ଆମ ଦୁହିଙ୍କର ସମ୍ପର୍କ ପାଖରୁ ଛବି ଆଜି ବହୁତ ଦୂରରେ ।

ଛବି ଭଲ ପିଲା । ତାକୁ ମୁଁ ଭଲ ପାଏଁ, ତାକୁ ଥରେ ଦେଖିବାକୁ ନ ଯିବି କାହିଁକି ?

ଚଲି ।

ମୋ ପ୍ରତି ଛବିର ବ୍ୟବହାର ଦେଖି ମୁଁ ଆଶ୍ଚର୍ଯ୍ୟ ହେଲି । ସବୁ ଦିନ ପରି ସେ ଦିନ ଆଦରର ଅଭାବ ନ ଥିଲା, କିନ୍ତୁ ତାର ଚାଲିଚଳଣରେ ଯେପରି ନୂଆ

ଅଗ୍ରହ ଥିଲି । ଅସଂଯତ ଅସାବଧାନ କେଶ ବାସ, ଓଠପୂରା ହସ । କଥା କଥାକରେ ଅଭିମାନ, ଛଳ, ପୁଣି ସଙ୍ଗେ ସଙ୍ଗେ ହସ ଖୁସି । ମୋ ହାତରେ ଶାଗ ଖରଡ଼ାଇଲି । ପାଖରେ ବସି ଚୂଳି ଜାଳି ଦେଲି । ଏଣୁ ତେଣୁ ପଚାରୁଥାଏ, କହୁଥାଏ, ମନକୁ ମନ ହସୁଥାଏ । ଓଢଣା ଘୋଷରା କରି ମୋ ମୁଣ୍ଡ ବାନ୍ଧିଦେଲି । ମୁଁ ମଧ୍ୟ ତା ମୁଣ୍ଡ ବାନ୍ଧିଦେଲି । ଖଣ୍ଡେ କଂସାରେ ପଖାଳ ବାଢ଼ି ଦେଲି । ଯେତେ ମନାକଲେ ମାନିଲି ନାହିଁ । ଦୁହେଁ ଖାଇ ବସିଲୁ । ମତେ ଲାଜ ମାଡ଼ୁଥାଏ ।

କହିଲି, ତୁଳସୀ ଅପା, ତମେ ବଡ଼ କପଟୀ । ଏଇ ବାଟେ ଯା ଆସ କରୁଛ, ମତେ ଟିକେ ଦେଖି ଯିବାକୁ ମନ ହୁଏ ନାହିଁ ?

ଅନେକ ଦିନୁ ଆସି ନ ଥିଲି, ମୋ ବୋଉର ଦେହ ଭଲ ନ ଥିଲା ।

ଏବେ ଭଲ ହେଲାଣି ତ ?

ହଁ, ଅଛି ଦୁର୍ବଳ ହୋଇଛି । କାମକୁ ପାରୁ ନାହିଁ ।

ଗୋଟିଏ କଥା ପଚାରିବି, ରାଗିବ ନାହିଁ ?

ଅପା ବୋଲି ଡାକୁଛୁ, ମୋ ଉପରେ ତୋର ଅଧିକାର, ତୋ କଥାରେ ରାଗିବି କାହିଁକି ?

ତମକୁ ଅପା ଡାକିବାକୁ ମନ ହେଉ ନାହିଁ, ଆଉ କଅଣ ଡାକିବାକୁ ମନ ହେଉଛି ।

କଅଣ ଡାକିବାକୁ ମନ ହେଉଛି ଡାକୁନୁ ।

କଥାକୁ ବାରେଇଁ ଦେଇ କହିଲି, ନାଇଁମ, ଆଉ ଗୋଟାଏ କଥା ମୁଁ ଭାବୁଥିଲି । ଅଚ୍ଛା ତୁଳସୀ ଅପା, ତମ ବୋଉ ଯେଉଁଦିନ ଆଖି ବୁଜିବେ ତେବେ କଅଣ କରିବ ? ପିଲାଟାକୁ ନେଇ କେଉଁଠି ଆଶ୍ରା ଖୋଜିବ ? ତେବେ ସେ ଦିନ କହୁଥିଲ, ବୋଉ ଗଲା ପରେ ଘରଟା ଅଉ କିଏ ଅଧିକାର କରିନେବେ । ଆଉ, ତମେତ ତମର ସେ ଦିଅର ଘରକୁ ଯିବ ନାହିଁ କହୁଥିଲ । ସେ କୁଆଡ଼େ ମନୁଆ ବାପାକୁ କପଟରେ ମାରିଛି ।

ମୁଁ କାବା ହୋଇ ରହିଲି । ତୁଣ୍ଡରୁ କଥା ବାହାରିଲା ନାହିଁ ।

ମତେ ତୁନି ଦେଖି ସେ ପୁଣି କହିଲା, ଭାଇ ହୋଇ ଭାଇକୁ ମାରିବାକୁ କେମିତି ତାର ହାତ ଗଲା, ମନ ବଳିଲା ? ମୁଣ୍ଡରେ ଚଡ଼କ ପଡ଼ିଲା ନାହିଁ ? ମୋ ଭାଇର ମୁହଁ ଟିକିଏ ମଉଳା ଦେଖିଲେ ମୋ ପ୍ରାଣ ଗୁଡ଼ଲା ପରି ଲାଗେ । ମୋ ଦେହରେ ମାଟି ଟିକେ ଲାଗିଥିଲେ, ଭାଇ ତାକୁ ନ ପୋଛିବା ଯାଏ ପଚାରି ହେଉଥାଏ, ସେଠି କଅଣ ଲାଗିଛି ଲୋ ଛବି ? ନିଜ ହାତରେ ପୋଛି ନ ଦେବା ଯାଏ ବାର ସହେ ନାହିଁ ।

ଦିନେ ରମିବୋଉ ଖୁଡ଼ୀ କାହାକୁ କହୁଥିଲା, ଛବିଟା ଏତେ ଢିଅ ହେଲାଣି, ତାକୁ ଭେଣ୍ଡା ଭାଇଟା ଗେଲ କରୁଛି । ମୁଁ କହିଲି ଭାଇକି ।

ତା ଆଖିରୁ ଲୁହ ଗଡ଼ିଲା । ସେ କହିଲା, ତୁ କେଡ଼େ ବଡ଼ଟାଏ ହେଲୁଣି, ଅଇଲୁ, ଅଇଲୁ ।

କାନ୍ଦିକି ଗଲି ।

ମତେ ଗେଲ କରି କହିଲା, କହିବୁ ସାମି ବୋଉକୁ, ଭାଇ କହିଲା, ମୁଁ ଯେତେ ବଡ଼ ହେଲେ, ମୋ ଭାଇ ମୋଠୁ ଅଧିକ ବଡ଼ । କହିବୁ, ଗଛ ଯେତେ ବଢ଼ିଲେ, ଆକାଶ ତଳେ ରହେ ।

ସତେ ଲୋ ତୁଳସୀ ଅପା—ମୋ ଭାଇ ମତେ କେଡ଼େ ଭଲ ପାଏ । ତମ ଦାଦାଙ୍କ ପୁଅର କେମିତି ମନ ହେଲା— ।

ଭାବିଥିଲି, ଛବି ଟା କିଛି ଜାଣେ ନାହିଁ ଦୁନିଆଁ କଥା । ଭୁଲ୍ ବୁଝିଥିଲି । ମଣିଷ ପିଲା ବଡ଼ ହୁଏ, ସବୁ ଶିଖେ, ସବୁ ଜାଣେ । ବାପ ପୁଣି ଦିନେ ପୁଅର ଚେଲା ହୁଏ, କଥାମାନ ଚଳେ, ନାଲିଆଖି ଦେଖେ—ଯେଉଁ ପୁଅକୁ କୋଳ କରି ସେ ବାପ ଡାକ ଶିଖାଇ ଥିଲା ।

କହିଲି, ଆଲୋ ଛବି, ଭାଇ ଭାଇ ଆଉ ଭାଇ ଭଉଣୀ ଭିତରେ ସେତିକି ତଫାତ୍ । ଭାଇ ଭାଇକି ଭଲ ପାଏ ଯେତେବେଳ ଯାଏ କାହାରି ମନରେ ଆପଣା ସାର୍ଥକା ଭାବ ନ ଆସେ । ଭାଇ ଭଉଣୀର ସ୍ୱାର୍ଥ ଅଲଗା ଯେ !

ସୁରିର ସ୍ୱାର୍ଥ କଅଣ ଥିଲା ?

ଦିନେ ତାକୁ ସେ କଥା କହିଥିଲି । ପୁଣି କାହିଁକି ପଚାରୁଛୁ ? କହିଲି, ତୁ ଭୁଲିଗଲୁଣି ?

ଭୁଲି ନାହିଁ । ତୁମକୁ ବାହାହେବାକୁ ସେ ଭାଇକି ମାଇଲା । ତମେ ତ ତାକୁ ବାହା ହେବ ନାହିଁ ବୋଲି ଘରଛାଡ଼ି ଚାଲି ଆସିଛ ।

ସବୁ କଥା ଖୋଲି କହିବ ମନେ କଲି । ପୁଣି ଭାବିଲି, କାହିଁକି ଏତେ କଥା ବାରଲୋକଙ୍କ ଆଗରେ କହି ବୁଲିବ ? ଦୁନିଆଁରେ ଯିଏ ଯାହାର ବାଟ ଧରି ଚାଲିବ । କେହି କାହାରି ପଛରେ ଗୋଡ଼ାଇ ଯିବେ ନାହିଁ ।

କହିଲି, ହଁ ।

ଖାଇ ସାରି ହାତ ଧୋଇଲୁ । ଭିତର ଘର ପିଣ୍ଡାରେ ବସି ଛବି ସଞ୍ଜ ବାଳୁଥାଏ । ସଞ୍ଜବଳା ଶେଷ କରି ମୋ ହାତ ଧରି ଆର ଘରକୁ ନେଲା । ଖଣ୍ଡେ ସୁରୁଣା ସପ ପକାଇଲା । ଦିହେଁ ବସିଲୁ । ଡେରି ହେଉଛି ବୋଲି ଶୀଘ୍ର ଫେରି ଯିବାକୁ ମନ ଛକପକ ହେଉଥାଏ । ମନେ ହେଉଥାଏ, ଛବି ଯେମିତି କଅଣ କହିବ କହିବ ହେଉଛି, କହିପାରୁ ନାହିଁ ।

ବାଁରେଇ ହୋଇ ଏଣୁ ତେଣୁ କଥା ପକାଇ ଛବି କହିଲା, ତୁଳସୀ ଅପା, ଗୋଟିଏ କଥା ପଚାରିବି, ତୁ କିଛି ମନେ କରିବୁ ନାହିଁ ? କେତେ ଦିନୁ ପଚାରିବି ପଚାରିବି ହେଉଛି ।

ପଗ୍ଭରୁନ୍ତୁ !

ଏ ଗାଁରେ ଆମ ଭାଇ ଭଉଣୀଙ୍କୁ କେହି ଦେଖିପାରନ୍ତି ନାହିଁ । ଆମେ ଗରିବ ମୂଲିଆ । ଭାଇ ଟିକେ ରାଗୀ ଲୋକ । କାହାରି କଥା ସହି ପାରନ୍ତି ନାହିଁ । କିଏ ଅନ୍ୟାୟ ଅନାଚାରର କଥା କହିଲେ, ନବାବ ପୁଅ ହେଲେ ବି ମୁହଁରେ ସେ ଜବାବ ଦିଅନ୍ତି । ସେଥିପାଇଁ ଯିଏ ଯେବେ ସମ୍ବନ୍ଧ ନେଇ ଆସେ, ଲୋକେ ଭାଙ୍ଗନ୍ତି ।

ଦିନେ କହିଲି, ଭାଇ ମ, ମତେ ଘରେ ଏକୁଟିଆ ରହିବାକୁ ଡର ମାଡ଼ୁଛି । ମୋର ଯଦି ନୂଆଉ ଆସନ୍ତା, କେଡ଼େ ଖୁସିରେ ଆମେ ଚଳନ୍ତୁ ।

ଭାଇ କହିଲା, ଆଲୋ, ତୁ ତ ଜାଣିବାର ପିଲା ହେଲୁଣି । ଆମେତ ଗରିବ, ଆମ ଘରକୁ କିଏ କାହିଁକି ଆସିବ ? ଲୋକେ ନାନା କଥା କହି ଭଙ୍ଗାଉଛନ୍ତି । ତତେ ପରଘରକୁ ନ ପଠାଇଲେ ଗାଁ ଲୋକଙ୍କ ମୁହଁ ଭାଙ୍ଗି ପାରିବ ନାହିଁ ।

କାଲି ପୁଣି କହୁଥିଲେ, ଛବି ଲୋ, କେତେ ଦୂରରେ ଯାଇ ରହିବୁ, ତୋତେ ସେ ଦେଖିବାକୁ ଆସିବେ ।

କହୁ କହୁ ତା ମୁହଁ ନାଲି ହୋଇଗଲା । ଆଖି ଛଳ ଛଳ ହେଲା । କହିବାକୁ ଲାଗିଲା, ଭାଇକୁ କହିଲି, ସେ କଥା ଭୁଲି ଯାଅ । ତମକୁ ଏକୁଟିଆ ଛାଡ଼ି ମୁଁ କୁଆଡ଼େ ଯିବିନାହିଁ ।

ସେ ଝୁଙ୍କି ମଣିଷ, ଯାହା ବୁଝିଥିବେ ସେଇଆ । ମତେ ପର ଘରେ ଥୋଇ ସେ ପାଗଳ ହୋଇଯିବେ । କହିଲୁ ଅପା, ମୁଁ କେମିତି ଭଲା ମଙ୍ଗିବି ।

ତା କଥାର ଜବାବ ଦେଇ ପାରିଲି ନାହିଁ । ଟିକିଏ ଭାବି ପଗ୍ଭରିଲି, କେଉଁଠି ଠିକ୍ କରିଛନ୍ତି ?

ଲାଜ ଲାଜ ହୋଇ କହିଲା, ମୁଁ ଜାଣେ ନାହିଁ । ଭାଇ କିଛି କହନ୍ତି ନାହିଁ । ତୁମକୁ ଆଉ ଅପା ଡାକିବାକୁ ମନ ହେଉନାହିଁ । ତେମେ ଯଦି ଏ ଘରକୁ ଆସନ୍ତ, ମୁଁ କଅଣ ତମର ସେବା କରି ପାରନ୍ତି ନାହିଁ, ମନୁଆଁ ଓ ବୁଢ଼ୀ ମାଙ୍କର ଯତ୍ନ ନେଇ ପାରନ୍ତି ନାହିଁ ?

ବିହ୍ୱଳ ହୋଇ ମୋ ମୁହଁକୁ ଗ୍ଭହିଁ ରହିଲା । ମୋତେ ଛବି ଏତେ ଭଲ ପାଏ !

ମୋତେ ଗମ୍ଭୀର ଦେଖି ଆଖିରେ ତା'ର ଲୁହ ଭରିଗଲା । ହଠାତ୍ ମୋ ଗୋଡ଼ରେ ହାତ ଦେଇ ସେ କହି ଉଠିଲା, ରାଗିଲ କି, କ୍ଷମାକର, ମନର କଥା କହି ପକାଇଲି ।

ସ୍ନେହରେ ତାକୁ କୋଳ କରି ପଗ୍ଭରିଲି, ଛବି, କେଉଁ କଥାକୁ ତୋ ଉପରେ ରାଗିବି ? ତୁ ତୋ ମନର କଥା କହିଲୁ, କିନ୍ତୁ—

ଭାଇ କଥା ପଗ୍ଭରୁଛ ତେମେ ? ସେ ମୋ କଥାରୁ ବାହାରିବ, ତାର ଏଡ଼େ ସାହସ ? ମୁଁ କଅଣ ପିଲା ହୋଇଛି ! ମୁଁ ଜାଣେ, ମୋ ଭାଇ ମୋ କଥାରେ ସମୁଦ୍ର ପହଁରିବ । କହ, ତମର ମନ କଅଣ ?

ତାର ଅଗ୍ରହ ଭାଙ୍ଗି ତା ମନରେ କଷ୍ଟ ଦେବାକୁ ମୋର ଇଚ୍ଛା ହେଲା ନାହିଁ । ଦୀର୍ଘଶ୍ୱାସ ଛାଡ଼ି କହିଲି, ଛବି, ଏତେ ବଡ଼ କଥାର ଜବାବ୍ କଣ ଏମିତି ଦେଇ ହୁଏ ? ମତେ ଭାବିବାକୁ ସମୟ ଦେ । ମୁଁ ଭାବି ଚିନ୍ତି ତୋ କଥାର ଜବାବ୍ ଦେବି ।

ଅଗ୍ରହରେ ପଗ୍ଭରିଲା, କେବେ ?

ଜବାବ ଦେଲି, ଯେବେ ହେଲେ । ଏଡ଼େ ତର ତର କାହିଁକି ?

ସେ ମୁହଁ ଶୁଖାଇଲା ।

ମୁଁ ଭାବିଲି, ଛବି ସରଳ ପିଲାଟିଏ । ତଥାପି, ବୁଝିବାର ଜ୍ଞାନ ହେଲାଣି । ତାର ସବୁଗ ଭାଙ୍ଗି ହେବ ନାହିଁ କି ତା ଆଗରେ ମନ ଖୋଲି ସତ କଥାଟି କହି ହେବ ନାହିଁ । ତା ଛଡ଼ା, ଛବିକି ସିନା ଦେଖିଛି, ତା ଭାଇ କି ପ୍ରକାର, କି ଢଙ୍ଗର ଲୋକ ମୁଁ ଜାଣେ ନାହିଁ ।

ନିଜ ନିଜର ଭାବନାରେ ଆମେ ଦହେଁ ବୁଡ଼ି ରହିଲୁ ।

## ୨୭

କିଏ ବାହାର କବାଟ ଖଡ଼ ଖଡ଼ କରି ଡାକ ଛାଡ଼ିଲା, ଛବି, ଛବି,—

ଛବିର ମୁହଁ ଉଜ୍ଜ୍ୱଳ ଦିଶିଲା । ସେ ଉଠି ଠିଆହେଲା । ଖୁସି ହୋଇ କହିଲା, ଭାଇ ଆଇଲେଣି, ତେମେ ଏଇଠି ବସିଥା । ମୁଁ ଅଉଛି ।

କବାଟ ଖୋଲିବାକୁ ସେ ବାଟ ଘରକୁ ଗଲା ।

ବେଳ ରତରତ ହେଉଥାଏ । ଭାଇ ଭଉଣୀଙ୍କର କଥା ମୋ କାନରେ ପଡ଼ିଲା—

କହିଲି ଭାଇ, ସେ ଘରେ କିଏ ଅଛି ।

ଭୂତ ।

ଡରିବ ନାହିଁ ତ ?

ଭୂତ ପ୍ରେତ ସମସ୍ତେ ମତେ ଡରନ୍ତି ଲୋ ଛବି, ଦେଖ ଏ ଠେଙ୍ଗା ।

ହଅ ସେ ଠେଙ୍ଗାକୁ । ତେମେ ଭାରି ଦୁଷ୍ଟ !

ଯିଏ ବୋଲି ମନେ କରିଥିଲି, ସେଇ ସେ ବଳିଆ, ଛବିର ଭାଇ ! ତାର ହାତ ଧରି ଆସି ମୋ ଆଗରେ ଠିଆ ହୋଇଗଲା ।

ବଳିଆକୁ ଆଗରେ ଦେଖି ମୁଁ ଅବାକ୍ ହୋଇ ଠିଆ ହେଲି । କେଡ଼େ ବିଚିତ୍ର ଭଗବାନଙ୍କର ସୃଷ୍ଟି ! ଗୋଟିଏ ପେଟରୁ ଛବି ଓ ବଳିଆର ଜନ୍ମ !

ବଳିଆର ଗମ୍ଭୀର ମୁହଁରେ ଘୃଣା ଓ ବିରକ୍ତିର ଭାବ । କଅଣ କହିବ କହିନ ହୋଇ, କେଡ଼େ କଷ୍ଟରେ ପାଟି ବନ୍ଦକରି ରଖିଲା । ମୁଁ ବସ୍ତୁସ୍ଥିର ଭାବ ଲୁଚାଇ କହିଲି, ଡେରି ହେବ ଲୋ ଛବି, ମୁଁ ଯାଉଛି ।

ବଳିଆ ମୁହଁ ଖୋଲିଲା, କି ଲୋ ହାଣ୍ଟୋଇ, ତୁ କେମିତି ଏଠି ?

ଛବି ହସ ହସ ହୋଇ କହିଲା, ଭାଇ ମ, ସେଇ ପରା ମୋର ତୁଳସୀ ଅପା, ଯାହା କଥା ମୁଁ ତମକୁ ଏତେ କହେଁ ।

ସତେ !

ଛବି ମୋ ପାଖକୁ ଆସି ମୋର ହାତ ଧରି କହିଲା, ହଁ ଭାଇ, ତୁଳସୀ ଅପା ମତେ ଭଲ ପାଏ । ଯେଉଁଦିନ ଆସେ ମୋ ମୁଣ୍ଡ ବାନ୍ଧି ଦିଏ । ଶାଗଖରଡ଼ା ଶିଖାଏ, କେତେ ଗପ କହେ ।

ବଳିଆ ଧମକାଇଲା ପରି ଛବିକୁ କହିଲା, ବାହାର ଲୋକ, ବାଜେ ଲୋକଙ୍କ ସଙ୍ଗେ ମିଳାମିଶା କରିବାକୁ ମୁଁ ତତେ ଏତେ ମନା କରିଥିଲି, ତୁ ଶୁଣିଲୁ ନାହିଁ ?

ଛବିର ମୁହଁ ମଉଳିଗଲା । ସେ ଡରି ଡରି କହିଲା, ତୁଳସୀ ଅପା ତ ବାଜେ ଲୋକ ନୁହେଁ ।

ତା କଥାର ଜବାବ ନ ଦେଇ ବଳିଆ ତୀକ୍ଷ୍ଣ ଆଖିରେ ମୋ ଆଡ଼କୁ ଚାହିଁ ମୁରୁକିହସା ଦେଇ କହିଲା, କାନ୍ତିସାହି ବାବୁ କେତେ ଟଙ୍କା ଦେଲେ ଲୋ ?

ରାଗରେ ମୋ ଗୁହ୍ମ ଜଳି ଉଠୁଥାଏ । କାନ୍ତିସାହି ବାବୁ ମତେ ଯେତେ ଟଙ୍କା ଦେଲେ ଏହାର କଅଣ ଥାଏ ! ରାଗକୁ ଚାପି ରଖି ଧୀରେ ଧୀରେ କହିଲି, ମୁଁ ଟଙ୍କା ଦେବାକୁ ଯାଇଥିଲି, ଟଙ୍କା ଆଣିବାକୁ ଯାଇ ନ ଥିଲି ।

ବଳିଆ ହସିଲା । କହିଲା, ତୋର ହାତ ଧରି ହାତରେ କଅଣ ଗୁଞ୍ଜି ଦେଉଥିଲେ । କେତେ ଟଙ୍କା ?

ଲାଜରା ହୋଇ କହିଲି, ମୁଁ ମାଗି ନ ଥିଲି । ତାଙ୍କ ମନକୁ ସେ ଦଶ ଟଙ୍କାର ନୋଟ ଖଣ୍ଡିଏ ଧାର ଦେଇଛନ୍ତି ।

ତାଙ୍କ ମନକୁ ସେ ଦିଅନ୍ତି, କେହି ତାଙ୍କୁ ମାଗନ୍ତି ନାହିଁ । ଆଉ କେବେ ଯିବାକୁ କହିଛନ୍ତି ?

କହି ନାହାନ୍ତି ।

ଦରକାର ନାହିଁ, ଯେ ଧାରୁଆ ହୁଏ ସେ ଆପେ ଆପେ ଗଳାରେ ଫାଶ ଲଗାଏ । ତେଣିକି ଯେତେବେଳେ ଟାଣିଲେ ଯିବାକୁ ବାଧ ହୁଏ । ମୋ ଭଉଣୀ ଛବି ତତେ ଭଲ ପାଏ । ତା ତୁଣ୍ଡରୁ ତୋର ପ୍ରଶଂସା ଶୁଣିଛି । ପିଲାଲୋକ, ତତେ ସେ ଚହ୍ନେ ନାହିଁ । ସଂସାରର ଭଲ ମନ୍ଦ କିଛି ଜାଣେ ନାହିଁ । ଆଜି ତୁ ପରିତ୍ରାଣ

ପାଇଗଲୁ । ନୋହିଲେ ମୋ ଠେଙ୍ଗା ଦେଖିଛୁ ତ ! ଯା, ଭୂନ ହୋଇ ମୋ ଘରୁ ବାହାରି ଯା । ଭଲ ଦଶା ଥିଲେ ଆଉ କେବେ ଏଠି ଗୋଡ଼ ଦେବୁ ନାହିଁ ।

ଛବି ମୋ ହାତ ଛାଡ଼ି ଥକା ହୋଇ ଠିଆ ହେଲା ।

ରାଗରେ ମୋ ବ୍ରହ୍ମ ଜଳିଲା । ଟିକିଏ ଜୋର୍‌ରେ କହିଲି, ତୋର ମଦନଶା ଛାଡ଼ିନାହିଁ କିରେ ବଳିଆ ! ମତେ କଅଣ କରି ପାଇଲୁ କି ? ତୋ ଭଉଣୀ କହିଲା ବୋଲି ଏ ଘରେ ମୁଁ ଗୋଡ଼ ଦେଲି । ନୋହିଲେ ବାଟର ଲୋକ ମୁଁ ବାଟରେ ଯାଆନ୍ତି, ତୋ ଘରକୁ ଆସନ୍ତି କାହିଁକି ?

ଏଣିକି ତେଣିକି ଚାହିଁ ଦାନ୍ତ ଚପି ବଳିଆ ଛବିକୁ କହିଲା, କିଲୋ, ମୋ ଠେଙ୍ଗାଟା କାହିଁ ଦବୁଟି । ଭାରି ବଡ଼ି ବଡ଼ି କଥା କହୁଛି, ଯାଉଛି ନା, ପୁଣି ଦେଖିବୁ ?

ଏତେବେଳକେ ଛବି ପାଟି ଖୋଲିଲା—ଏ କଅଣ ଭାଇ, ଭୁଳସୀ ଅପାର ଦୋଷ ନାହିଁ । ସେ ତ ତା ମନକୁ ଆସି ନାହିଁ । ମୁଁ ଡାକିଲି । ତମର ଯଦି ରାଗ ହେଉଛି ତମେ ମତେ ମାର ।

ଏତିକି କହି ଛବି କଇଁ କଇଁ ହୋଇ କାନ୍ଦି ଉଠିଲା । ମୋର ହାତ ଧରି କାନ୍ଦଣା ସ୍ୱରରେ କଇଁ କଇଁ ହୋଇ କହିଲା, ମୋ ଦୋଷ କ୍ଷମା କର । ମୁଁ ଆଉ କେବେ ତମକୁ ଡାକିବି ନାହିଁ ।

ବଳିଆ ଧୀରେ ଧୀରେ ଘରୁ ବାହାରି ଗଲା । ରାଗ, ଅଭିମାନରେ ମୋର ସର୍ବାଙ୍ଗ ଥରୁଥାଏ । ଲୁହଭରା ଆଖିରେ କହିଲି, ଦୋଷ କାହାର ନୁହେଁ ଲୋ ଛବି, ମୋ ଭାଗ୍ୟର ଦୋଷ । ମୁଁ ଗରିବ, ନିରାଶ୍ରୟ । ମୋ ପାଇଁ ଠେଙ୍ଗା ଧରିବାକୁ ସଂସାରରେ କେହି ଆଜି ନାହିଁ ବୋଲି, ବଳିଆ ତା ଘର ଭିତରେ ମତେ ଅପମାନ ଦେବାକୁ ସାହସ କଲା । ସେ ଜାଣେ, ବାଟ ମଝିରେ ଧରି ମତେ କେହି ଦି ପୁଞ୍ଜା କୁଟି ଦେଲେ ଆହା କହି ସାହା ହେବାକୁ ମୋର କେହି ନାହିଁ । ସେଇଥି ପାଇଁ ତାର ଏ ସାହସ । ହେଉ, ଦୁନିଆରେ କାହାରି ବଡ଼ପଣ ସବୁଦିନେ ରହି ନାହିଁ । ସବୁ ବେଳ ଏକା ପରି ନୁହେଁ । ବେଳ ବଦଳେ । ସୂର୍ଯ୍ୟ ପୂର୍ବରେ ଉଇଁ ପୁଣି ପଶ୍ଚିମରେ ଅସ୍ତ ହୋଇଯାଏ । ଯାଉଛି ଲୋ, ମୋ ଦୁଃଖ ଅପମାନକୁ ସଙ୍ଗରେ ନେଇ ମୁଁ ଯାଉଛି । ଆଉ କେବେ ଆସିବି ନାହିଁ ।

ବଳିଆ କାନ୍ଥକୁ ଆଉଜି ଠିଆ ହୋଇ ସବୁ ଶୁଣୁଥିଲା । ଘରୁ ବାହାରି ଆସିବାର ଦେଖି କଡ଼ା ସ୍ୱରରେ କହିଲା, ଶୁଣୁ ଲୋ ।—

ତା ଆଡ଼କୁ ମୁହଁ ନ ଫେରାଇ ଦାଣ୍ଡ ଆଡ଼େ ମୋହିଁଲି ।

ଲମ୍ବା ପାଦ ପକାଇ ସେ ମୋ ଆଗକୁ ଆସି ଠିଆ ହେଲା । ତାର କଡ଼ ବାଟେ ଚାଲି ଯାଉଁ ଯାଉଁ ସେ ମୋର ହାତକୁ ତା'ର ଲୁହା ପରି ଟାଣୁଆ ହାତରେ ଧରି କହିଲା, ଶୁଣ ।

ମୁଁ ହାତ ଛୁଆଁଡ଼ିଲି । ତା ହାତରୁ ମୁକ୍ତ ହୋଇ ପାରିଲି ନାହିଁ ।

ଚିତ୍କାର କରି କହିଲି, ଛାଡ଼ ମୋ ହାତ କହୁଛି, ନୋହିଲେ—

ସେ ମଧ୍ୟ ଜୋର୍‌ରେ କହିଲା, ନୋହିଲେ କାନ୍ତିପତି ବାବୁ ଆଗରେ କହି ମୋ ଦାନାପାଣି ଉଠାଇ ଦେବୁ । କହିବୁ ଲୋ, ତାକୁ ମୁଁ ଡରେ ନାହିଁ କି କାହାକୁ ଡରେ ନାହିଁ । ଏଇଥର ତମର ରାଧାକୃଷ୍ଣ ଖେଳ ଏକା ଠେଙ୍ଗା ପାହାରରେ ଶେଷ କରିଦେବି । ବଳିଆର ହାତ ଥିଲେ, ତାକୁ ଭାତ ଗଣ୍ଡାକ ମିଳିବ ଯେଉଁଠି ହେଲେ । ଯା !

ହାତ ଛାଡ଼ିଦେଲା ।

ସଞ୍ଜହୋଇ ନ ଥାଏ । ଏକା ନିଶ୍ୱାସରେ ସେଠାରୁ ଚାଲି ଆସିଲି । ରାଗରେ ଗୋଡ଼ରୁ ମୁଣ୍ଡ ଯାକେ ଥରି ଉଠୁଥାଏ ।

ନିର୍ଜନ ବିଲ ବାଟ । ସଞ୍ଜର ଅନ୍ଧାର ଘୋଟି ଆସୁଥାଏ । ଗୋଟିଏ ଥାନରେ କିଛି ସମୟ ଠିଆ ହୋଇ ନିଶ୍ୱାସ ମାରିଲି । ପ୍ରକୃତିସ୍ଥ ହୋଇ ପୁଣି ଆଗକୁ ଚାଲିଲି । ବଳିଆ ବିରୁଦ୍ଧରେ ମନରେ ତୋଫାନ ଉଠୁଥାଏ । ଦାଉ ସାଧିବାର ଉପାୟ ଯଦି ମୋର ଥାଆନ୍ତା, ତାର ମଦୁଆଗିରି ଛଡ଼ାଇ ଦିଅନ୍ତି । ନିଜ ଘରେ ପର ଘରର ସ୍ତ୍ରୀଲୋକକୁ ଅପମାନ ଦେବାର ପ୍ରତିଫଳ ସେ ପାଆନ୍ତା ।

ଦାଉ ସାଧିବାର ଉପାୟ ମୋର କଅଣ ଅଛି ?

କାନ୍ତିପତି ବାବୁ ! ମନରେ ମୋର ଖେଳିଗଲା ଯେଉଁ ଭାବନା, ମୋର ଆତ୍ମା ଥରି ଉଠିଲା । ଏଇ ଦେହରେ ଯେତିକି ରୂପଅଛି, ଶୁଖିଲା ଯୌବନର ଯେତିକି ଚେକ ଅଛି, ତାଆରି ଭେଳକିରେ କାନ୍ତିପତି ବାବୁ ବନ୍ଦୀ ହୋଇଛନ୍ତି, ତାକୁ ପ୍ରୟୋଗ କଲେ ଗୋଟାଏ ଫୁଙ୍କାରେ ବଳିଆ ଉଡ଼ିଯିବ । ଗୁଣ୍ଡାଗିରିର ପ୍ରତିଫଳ ସଙ୍ଗେ ସଙ୍ଗେ ପାଇବ ।

କିନ୍ତୁ, ସେଥିରେ ମୋର କି ଲାଭ ହେବ ? ବଳିଆ ରାଗ ରୋଷରେ ଘରୁ ତଡ଼ି ଦେଇ ଅପମାନ ଦେଇଛି । ଅପମାନକୁ ମୁଁ ନିଜେ ଟାଣି ଆଣି ନାହିଁ । ସଂସାର ଆଗରେ, ବଳିଆର ଭଉଣୀ ସେଇ ଛବି ଆଗରେ ସହିବାର ବଡ଼ପଣ, ଧୈର୍ଯ୍ୟର ଚେକ ମୋର ରହିଛି ।

କାନ୍ତିପତି ବାବୁଙ୍କ ପାଖରେ ମୋର ସର୍ବସ୍ୱ ଅକାତରେ ବାଢ଼ି ଦେଲେ ଓ ମୋର ନିଜତ୍ୱକୁ ଦୁନିଆଁ ଲୋକଙ୍କ ଆଗରେ ତାଙ୍କରି ଗୋଡ଼ତଳେ ସମର୍ପି ଦେଲେ, ବଳିଆ ଉପରେ ପ୍ରତିଶୋଧ ନେବି ସିନା, ମୋର ମାନ ମହତ ରହିବ କେଉଁଠି ? ମୋର ଆତ୍ମମର୍ଯ୍ୟାଦା ଯିବ କୁଆଡ଼େ ? ତା ପରେ କେଉଁ ମୁହଁରେ କେଉଁ ଦମ୍ଭରେ ବାଟ ଚାଲିବି ?

ଯେଉଁ ଆତ୍ମମର୍ଯ୍ୟାଦା ପାଇଁ ଘର ଛାଡ଼ି ଆଜି ମୁଁ ଦାଣ୍ଡରେ, ସୁଖ ଛାଡ଼ି ଏତେ ଦୁଃଖ କଷ୍ଟ ଜାଣି ଜାଣି ବରି ନେଇଛି, ଛାର ବଳିଆ ଉପରେ ରାଗ କରି

ସବୁ ପୋଡ଼ି ଜାଳି ଛାରଖାର କରିବ ନାହିଁ । ବଳିଆର ବଡ଼ପଣ ରହୁ । ମୋତେ ଅପମାନ ଦେବାର ଆନନ୍ଦରେ ତାର ମନ ଗର୍ବରେ ଫୁଲି ଉଠୁ । ମୁଁ ନଇଁ ପଡ଼ିବି ।

ମନକୁ ଆଶ୍ୱାସନା ଦେଇ ଦୀର୍ଘଶ୍ୱାସ ଛାଡ଼ିଲି । ସଙ୍ଗେ ସଙ୍ଗେ ଆଉ ଗୋଟିଏ ଭାବନା ଆସିଲା । ପର ମଣିଷ ରାଗ ରୋଷରେ, ବିରକ୍ତିରେ ମୋର ହାତ ଧରିବା ଏହା ପ୍ରଥମ । ବିବାହିତ ଜୀବନରେ ସ୍ୱାମୀଙ୍କର ଆଦର ଓ ଦିଅରର ସ୍ନେହ ପାଇଥିଲି । ଏପାଖକୁ ଆସି କାମ କାର୍ଯ୍ୟରେ ଅଣନିଶ୍ୱାସୀ ହେବା ଜୀବନରେ ହିମବାବୁଙ୍କର ଦେହର ପରଶ ଓ ନେମାଇ ହାତର ଅନୁଭୂତି । ସେଥିରେ ସହାନୁଭୂତି ଓ ମୋହ ଜଳି ଉଠିଥିଲା । ଆଜି, କାନ୍ତବଠି ବାବୁଙ୍କର ହାତ ସଙ୍ଗେ ହାତର ମୁହୂର୍ତ୍ତିକର ପରଶ । ତହିଁରେ ଗୋଟିଏ ଆଡ଼ୁ ମିଳନର ନିମନ୍ତ୍ରଣ ଓ ଆଉ ଗୋଟିଏ ଆଡ଼ୁ ଉଗ୍ରତର 'ନାହିଁ'ର କରଛଡ଼ା ଭାବ । କାହିଁରେ ମୁଁ ବାଧା ଦେଇ ପାରି ନ ଥିଲି ।

ବଳିଆ ହାତ ଧରି କ୍ଷଣକ ପାଇଁ ଅଟକାଇ ରଖିଲା । ଘୃଣାରେ ଓ ବିରକ୍ତିରେ ମୁଁ ହାତ ଛୁଆଁଡ଼ିଲି । ତା ହାତର କଠିଣ ଚାପରେ ଦେହରେ ସତେକି ବିଷ ଚହଟି ଯାଇଥିଲା ।

ଯେତେଥର ଅନ୍ୟ ପୁରୁଷ ଦେହର ପରଶ ପାଇଛି, ଅଜାଣତରେ ପ୍ରାଣରେ ପାଗଳିଆ ଶିହରଣ ଅନୁଭବ କରିଛି ।

ବଳିଆ ଜାଣେ ଯେ କାନ୍ତବଠି ବାବୁ ଧନର ମୋହ ଦେଖାଇ ମୋରି ପରି ଅଭାବଗ୍ରସ୍ତଙ୍କୁ ଆପଣାର କରି ପାରିଛନ୍ତି । ସେ ପୁଣି ଇଚ୍ଛା ଅନୁସାରେ ଗୋଡ଼ରେ ଠେଲି ଦେଇଛନ୍ତି ଦୂରକୁ । ଆଖି ଆଗରେ ଏ ସବୁ ଦେଖି ଦେଖି ଯଦି ଏହା ବଳିଆର ଦେହଘଷା ହୋଇଛି, ମୋ ପ୍ରତି ତାଙ୍କର ଟିକିଏ ସ୍ନେହ, ଟିକିଏ ସହାନୁଭୂତି, ବଳିଆର ଅସହ୍ୟ ହେଲା କାହିଁକି ?

କେତେ ଦିନର କେତେ କଥା ମନେ ପଡ଼ିଲା । କାନ୍ତବଠି ବାବୁଙ୍କର ଆଡ଼ଚାହାଣୀ ଓ ମୁରୁକି ହସା ପଛରେ ବଳିଆର ନାଲି ନାଲି ଆଖି, ଭୃକୁଣ୍ଡା ମୁହଁ, ଆଜି ପୁଣି ତାର ଆକଟ କଥା । ମୋର ଢଙ୍ଗରେ ଯେପରି କୌଣସି ପ୍ରକାର ବେଆଡ଼ାଗିରି ଦେଖିବାକୁ ସେ ଚାହେଁ ନାହିଁ ।

ବଳିଆର ମୁଁ କେହି ନୁହେଁ । ତେବେ ? ମୋ ପ୍ରଶ୍ନର ଉତ୍ତର ମୋ ମନ ହିଁ ଦେଲା । ବଳିଆ ମତେ ଭଲ ପାଏ, ବଳିଆ ମୋତେ ନିଜର କରିବାକୁ ଚାହେଁ । ମୋର କୌଣସି ତ୍ରୁଟି ସେ କ୍ଷମା କରି ପାରିବ ନାହିଁ ।

ନିଜର ଭାବନାରେ ମୁଁ ଅବାକ୍ ହେଲି, ଉତ୍ତେଜିତ ହେଲି । ମୁଁ ଭୁଲ କରିଛି । ବଳିଆର ଦୁଇଥର ସତର୍କ କଥା ନ ମାନି କାନ୍ତବଠି ବାବୁଙ୍କ ଘରକୁ

ଗଲି । ଅଳ୍ପ ଥରେ ତାଙ୍କଠାରୁ ଟଙ୍କା ଆଣି ନିଜକୁ ତାଙ୍କ ପାଖରେ ବନ୍ଧା ଦେଇ ଆସିଛି ।

ଆଉ କାହାଁକି ଏତେ କଥା ଭାବିବି ? କାନ୍ତିଗଣି ବାବୁ କି ବଳିଆ ଏମାନଙ୍କ ସଙ୍ଗେ ମୋର କୌଣସି ସମ୍ପର୍କ ନାହିଁ । ଆଜିଠାରୁ ରହିବ ନାହିଁ । ମା, କି ସୁର କି ଆଉ କେହି, ଅତୀତ ବା ଅନ୍ଧକାର ଘଟଣା ସମ୍ବନ୍ଧରେ କିଛି ଜାଣି ପାରିବେ ନାହିଁ ।

ଆଉ, ଏଇ ନୋଟ ଖଣ୍ଡି । ଇଏ ବା ହେବ କଅଣ ? ନିଜ ଘରକୁ କାଲି ଫେରିଗଲେ ଟଙ୍କାର ଅଭାବ ରହିବ ନାହିଁ । ନୋଟ ଖଣ୍ଡି ଫେରାଇବାକୁ କାନ୍ତିଗଣି ବାବୁଙ୍କ ଆଗକୁ ଯିବି ନାହିଁ । ସେ ମୋହିନୀ-ମନ୍ତ୍ର ଜାଣନ୍ତି । ତାଙ୍କ ଆଗରେ ମଣିଷର ନିଜତ୍ୱ ଲୋପ ହୁଏ । ତେବେ ଏ ନୋଟ୍ ?

ସବୁବେଳେ ସବୁକଥା ରହେ ନାହିଁ । ସର୍ବଶ୍ରେଷ୍ଠ ହୋଇ ସବୁବେଳେ ମଣିଷର ବେଳ କାଳ ସୁରୁଖୁରୁରେ କଟେ ନାହିଁ ।

ନୋଟ ଖଣ୍ଡି ଚିକି ଚିକି କରି ଚିରି ମନ୍ଦିର ଗମ୍ଭୀର କଅଁଶରେ ପକାଇଲି । ଶାନ୍ତିରେ ନିଶ୍ୱାସ ମାରିଲି । ମନ ଆନନ୍ଦରେ ଆଗକୁ ଚାଲିଲି ।

୬୮

ସୁରଙ୍କ ସଙ୍ଗେ ଦେଖା ହେଲାପରେ ଛଅ ଦିନ କଟିଗଲାଣି, ଆଉ ସେ ଆସି ନାହାନ୍ତି । ମନ ଦକ୍ ଦକ୍ ହେଉଥାଏ । ତାଙ୍କ ସଙ୍ଗେ ମିଳା ମିଶା ହେଲାପରେ ତାଙ୍କ ପ୍ରତି ମନରେ ଯେଉଁ ସନ୍ଦେହ ଥିଲା ଦୂର ହୋଇ ଯାଇଛି । ବେଶି କଥା ଭାଷା ହୋଇ ନ ଥିଲେ ମଧ୍ୟ, ଦୁହେଁ ଦୁହିଁଙ୍କର ମନ କଥା ବୁଝି ପାରିଥିଲୁ । ଅଖିଲିହ ମନରୁ ସବୁ ମଇଳା ଧୋଇ ଦେଇଥିଲା । ଆଶା କରିଥିଲି, ନିଶ୍ଚୟ ସେ ପରଦିନ ଆସିବେ, କିନ୍ତୁ ଦେଖୁ ଦେଖୁ ଛଅଦିନ କଟିଗଲା, ତଥାପି ତାଙ୍କର ଦେଖା ନାହିଁ । ଏଇ ଛଅ ଦିନର ସବୁ ଘଟଣା ପଦ ପଦ କରି କହି ବସିଲେ ପୁରାଣ ହେବ ।

ବିଧବା ହେବା ଖବର ପାଇଲା ଦିନରୁ ଜୀବନକୁ ତୁଚ୍ଛ ମଣିଥିଲି । ଭାବିଥିଲି, ମୋର ଏଇ ଦେହଟା କାଠପାଷାଣ ପରି ସବୁ ସହିବ, ଜୀବନଟା ତାରି ଭିତରେ ଥାଇ ଛଟପଟ ହେଉଥିବ । ପିଲାଟିର ଯତ୍ନ ନେଇ ତାକୁ ବଢ଼ାଇ କରି ସଂସାରରେ ଠିଆ କରିବାକୁ ମୋତେ ବଞ୍ଚି ରହିବାକୁ ପଡ଼ିବ । ସେଇଥି ପାଇଁ ଦୁନିଆର ମାଟି ଗୋଡ଼ ସଙ୍ଗରେ ନିଜକୁ ମିଶାଇ ଦେବାକୁ ପଡ଼ିବ ।

ଲୋକ କେତେ କହନ୍ତି, ଆଲୋ ସୁନା ଦେହ ତୋର କଜଳ କଳା ହେଲାଣି, କଣ୍ଠା ହୋଇଲାଣି । ଯିଏ ମଲା, ସେ ଗଲା । କାହା ପଛରେ କେହି ଗୋଡ଼ାଇ ଯାଏ ନାହିଁ । ଦେହଟା ପ୍ରତି ଟିକିଏ ନଜର ଦେ ।

ଶୁଣେ, ଅଭିମାନର ହସ ଖେଳିଯାଏ ଓଠରେ । ଦେହ, ସୁନା-ଦେହ ! ମୋ ଜୀବନରେ ଏଇ ଦେହଟାର ଅର୍ଥ କାର୍ଯ୍ୟ, ଅର୍ଜନ ! ଦେହର ମୂଲ୍ୟ ଯାହା ପାଖରେ ଥିଲି, ସେ ନାହାନ୍ତି । ଯେଉଁମାନେ ଏଇ ମଇଳା ମସିଆ ଅସଜଡ଼ା ଦେହଟାରେ ଆଖି ବୁଲେଇକରି, ମନ ସରସା କିଛି ଦେଖିବାକୁ ଚାହାନ୍ତି ଆମୋଦପାଇଁ, ଦୃଷ୍ଟି ଲକ୍ଷ୍ୟ କଲେ ପଦେ କହନ୍ତି, ସେମାନଙ୍କ ପାଖରୁ ମୁଁ ଦୂରେଇ ରହିବାକୁ ଚାହେଁ ।

ଚାହେଁ, କିନ୍ତୁ ରହିପାରେ ନାହିଁ । ବଞ୍ଚି ରହିବାକୁ ହେଲେ, ଶହ ଶହ ଲୋକଙ୍କ ପାଖରେ ଆତଯାତ, କାରବାର ହେବାକୁ ପଡ଼େ । ପର ମଣିଷଙ୍କ ପାଖରେ ଚଳ ପ୍ରଚଳ ହେଲେ ସମାଜ ଆଖିରେ କଣ୍ଢା ମାରି ଚଳିବା ସମ୍ଭବ ନୁହେଁ । କେହି ଆଡ଼ ଆଖିରେ ଚାହିଁବେ ନାହିଁ । ବାଟ ଘାଟରେ ବୁଲେ ଯେଉଁ ପାଗଳଟା, ଦେହ ମୁଣ୍ଡ, ଲୁଗାପଟା ପ୍ରତି ଯାହାର ନଜର ନାହିଁ, ସେ ସହସ୍ର ଲୋକଙ୍କର ଟାହିଟାପରା, ଗାଁ ପିଲାଙ୍କର ଟେକା ମାଡ଼ ସହେ । ସେଇ ଟାହିଟାପରା, ଟେକା ମାଡ଼ରୁ ନିଜକୁ ବଞ୍ଚାଇବାକୁ ଯେତିକି ଲୋଡ଼ା, ସେତିକି ଯତ୍ନ ମୁଁ ମୋର ନେଉଥିଲି ।

ସୂରଙ୍କ ସଙ୍ଗେ ଦେଖା, ଆଶା ତେଜି ଉଠିଲା, ନୂଆ ସଂସାର କରିବି, ସୂରଙ୍କୁ ନେଇ ପୁଣି ମୋର ଜୀବନକୁ ନୂଆ କରି ଗଢ଼ିବି । ମୋର ମଇଳା ଦେହଟାକୁ ଅବହେଳା କରି ପାରିଲି ନାହିଁ । ତହିଁରେ ଯେତିକି ରୂପ ଲୁଚି ରହିଥିଲା, ତାକୁ ଫୁଟାଇବାକୁ ମନର ଆଗ୍ରହ ହେଲା । ଶୋଇଲା ଯୌବନର ଓଢ଼ଣା ଖୋଲିବାକୁ, ମିଳନପାଗଳ ଆତ୍ମା ଇଙ୍ଗିତ ଦେଲା ।

ଲୋକେ ଯାହା ଭାବନ୍ତୁ, ନିଜର ସଜଡ଼ା ରୂପ ଦେଖିଲେ ନିଜକୁ ସଙ୍କୋଚ ଲାଗେ । ମନକୁ ମନ ଲାଜବି ହୁଏ । ପିଲା ବୟସରେ ଯେତେବେଳେ ଛପି ଛପି ଯୌବନ ଉଙ୍କିମାରି ଆସୁଥିଲା, ଆଉ ପାଞ୍ଚଟା ଝିଅଙ୍କ ପରି, ମୋର ଯେତିକି ଅଛି ସେତିକିରେ ଦେହଟିକୁ ସଜାଇବାକୁ ଚେଷ୍ଟା କରୁଥିଲାବେଳେ, ସଙ୍କୋଚ ବା ଲାଜ ଆସୁ ନ ଥିଲା ତ ! ଦୁନିଆଁ ଆଖିରେ ନିଜକୁ ସୁନ୍ଦର କରି ଦେଖାଇବା ମଣିଷ ଜାତିର ପ୍ରକୃତି । ଆକର୍ଷଣ କରିବା, ନିଜକୁ ସୁନ୍ଦର କରିବା ଚେଷ୍ଟାର ମୂଳକଥା । ନାରୀ ଓ ପୁରୁଷକୁ ଏକାଠି ମିଳନ କରିବାକୁ ଅଜାଣତରେ ଓଟାରି ଆଣେ ଦୁହିଁଙ୍କୁ ଦୁଇଆଡ଼ୁ । ସେ ବୟସରେ ଏତେ କଥା ବୁଝିବାର ଶକ୍ତି ନ ଥିଲେ ମଧ୍ୟ, ନିଜକୁ ପର ଆଖିରେ ସୁନ୍ଦର କରିବାକୁ ସବୁବେଳେ ଚେଷ୍ଟା କରିଥିଲି ।

ବିଧବା ହେଲା ପରେ ପ୍ରତିଜ୍ଞା କରିଥିଲି, ପର ମଣିଷ ଆଡ଼କୁ ମନ ନୁଆଁଇବି ନାହିଁ । ଆଶାର ଇଙ୍ଗିତକୁ ଚାପି ରଖି ଦେହ ପ୍ରତି ଅବହେଳା କରିଥିଲି । ପାରିଲି ନାହିଁ । ଯେଉଁ ଦିନ ପୁଣି ସ୍ଥିର କଲି ସୂରଙ୍କୁ ଘେନି ନୂଆ ସଂସାର କରିବି, ସୃଜନ

ନଯ୍ଯୁମ ଅଗରେ ମୁଣ୍ଡ ନୋଇଁଲ । ଅମ୍ମା ଗୁହିଁଲା ସୃଷ୍ଟି, ଦେହ ଗୁହିଁଲା ମିଳନ, ମିଳନ ଗୁହିଁଲା ଆକର୍ଷଣ । ଆଉ, ଆକର୍ଷଣ ଗୁହିଁଲା, ଦେହର ଯତ୍ନ, ଯୌବନର ପୂଜା । ସେଇଥି ପାଇଁ ପରର ଆଖିରେ, ସୁରଙ୍କର ଆଖିରେ ନିଜକୁ ସୁନ୍ଦର ଦେଖାଇବାକୁ ମନ ଡାକଲା ।

ବୋଉ ବୁଝିଥିଲା । ଟିକଏ ତ୍ରୁଟି ଦେଖିଲେ କହୁଥିଲା, ଅଲୋ, କେଡ଼େ ମଇଳା ଲୁଗା ପିନ୍ଧିଛୁ, ସାବୁନ୍ ଟିକେ ଦେଇ ଧୋଇପକା । ମଲା, ଆଖି ଦିଟା ଫିକ୍ କା ଦିଶୁଛି, କଳା ଦିଗାର ନାଇ ଦେ ମ । କ ଲୋ, କେତେ କହିବି, ମୁଣ୍ଡଟା ସେମିତି ବୋଝ କରୁଛୁ କାହିଁକି ? ଘଡ଼ରେ କଅଣ ମାଲପା ନାହିଁ ?

କାଲି ଯେଉଁ କଥାକୁ ଅବହେଳା କରି ମୁହଁ ମୋଡ଼ି ଦେଉଥିଲି, ଆଜି ତାର ସେ କଥା ମାନେ । ଦର୍ପଣରେ ନିଜ ମୁହଁକୁ ନିଜେ ଅନାଇଁବାକୁ ଇଚ୍ଛା ହୁଏ । ସୁର ଅସିବେ, ଏମିତି ଅସନା ରୂପ ଦେଖି କ'ଣ ଭାବିବେ ?

ସୁର ଅସିଲେ ନାହିଁ । ମନ କାହିଁ ଲାଗୁ ନ ଥାଏ । ମନୁଅଁକୁ କାଖ କରି ଏ ପାଖ ସେ ପାଖ ହେଲି । ଘର ଛାଡ଼ି ଗଲି ନାହିଁ । ଘର ଅଗକୁ ଅସି ଗମ୍ଭୀର ସେପାରିକି ଅନାଇଲି । ପାଚିଲା ଧାନର ନଇଁଲା କ୍ଷେତ ମଝିରେ ବଙ୍କେଇ ବଙ୍କେଇ ବାଟ ପଡ଼ିଛି । ତହିଁରେ କେତେ ଲୋକ ଯା ଅସ କରୁଛନ୍ତି । ସୁରଙ୍କ ଗୃଲି ପରି ଦିଶୁଚ ତ ! ଅଟପ ଅପେ ହାତ ଗଲା ମୁଣ୍ଡ ଉପରକୁ, କପାଳ ଉପରେ ଦୋହଲୁଥିବା ଅଳଗ ବାଳ କେଗ୍ଟକ ସଜାଡ଼ି ଦେବାକୁ । ଦୂର ବାଟୋଇ ‘ପାଖେଇ ଅସିଲେ । ନା, ସୁର ନୁହନ୍ତି । ସବୁଗ ମଉଳିଲା । ମୁହଁ ଫେରାଇଲି । ପୁଣି, ଏଇ,—ଦୂର ଗମ୍ଭୀର ମଝିରେ ଝଙ୍କାଳିଆ ଏକୁଟିଆ ଆମ୍ବଗଛ କଡ ହୁଙ୍କା ଉହାଡ଼ରେ । ସେମିତି ଦିଶୁଛି—। ମନୁଅଁରେ ଏଇ ତୋ ଦାଦା ଅସୁଛି ।

ମନୁଅଁ ଅଗ୍ରହରେ ଗୁହିଁଲା । କାଇଁ, ଦାଦା କାଇଁ ?

ତଳୁ ଉଠାଇ ତାକୁ କାଖ କଲି । ହାତ ବଢ଼ାଇ ଦୂର ମଣିଷକୁ ଦେଖାଇଲି । ଜହ୍ନ ମାମୁକୁ ଡାକଲା ପରି ମନୁଅଁ ହାତ ଠାରି ଡାକଲା—ଦାଦା, ଅ—ଅ ।

ଅପେକ୍ଷା କଲି । ସୁର ନୁହନ୍ତି । ଦୁଃଖରେ ଫେରିଲି ।

ସୁର କଅଣ କେବଳ ମନଭୁଲା ଭେଳକି ! ପଛରେ ଧାଇଁଲେ ପଗ୍ରିଇ ଯିବେ ? ନାଇଁ, ସୁର ଭେଳକି ନୁହନ୍ତି । ବେମାର ପଡ଼ିଛନ୍ତି ? ଛାତି ଥରି ଉଠିଲା । ପଗ୍ରିଲି, ବୋଉ, ସୁରଙ୍କ ଦେହ କଅଣ ଭଲ ନାହିଁ ?

ମନର କଥା ବୋଉ ଜାଣେ । ତା ପାଖରେ ଲୁଗ୍ରଇବ କଅଣ ?

ଆଖି ଛଳ ଛଳ କରି ସେ କହିଲା, ନାଇଁ ଲୋ ମା, କାମଦାମରେ ବ୍ୟସ୍ତ ଥିବ । ଟିକଏ ଭାବି ପୁଣି କହିଲା, ଯିବି କି ଦେଖି ଅସିବି ?

ନୂଆ ଧିଅ ତୋର ଅଛି ଦୁର୍ବଳ, ଗଦାଏ ବାଟ ।

ତୁ ହେଲେ ଯା, କାଳେ ଧୂଅ ଖରାପ ହୋଇଥିବ, ଏକୁଟିଆ ଲୋକ, ପାଖରେ ସାହା ଭରସା କେହି ନାହିଁ ।

ମନ ଯିବାକୁ ଡାକେ । ଦେହ ଅବାଧ୍ୟ ହୁଏ । ମନ ପରାଜିତ ହୁଏ ।

କହିଲି, ନାଇଁ ମ ବୋଉ, ସୁର କାମ କାର୍ଯ୍ୟରେ ବ୍ୟସ୍ତ ଥିବେ, ବେଳ ପାଇଲେ ବଳେ ଆସିବେ ଯେ ।

ବୋଉ ତୁନ ରହିଲା ।

୨୯

ଦି ପହରେ ଗାଁ ଭିତରକୁ କାମ କରିବାକୁ ଯାଇଥିଲି । ବେଳବୁଡ଼େ ଘରକୁ ଫେରି ଦେଖିଲି, ବୋଉ ଘୁସୁରି ଘୁସୁରି ଘର ସଫା କରୁଛି । ମନୁଆ ଗୋଟିଏ ପାଣଅରେ ମୁଆଁ ରଖି ଖାଉଛି । କାନ୍ଥକୁ ଡେରା ହୋଇ ରଖା ହୋଇଛି କାନ୍ଧଏ କଦଳୀ । ଖୁସି ଲାଗିଲା, ଭାବିଲି, ସୁର ଆସିଛନ୍ତି ।

ବୋଉକୁ କିଛି ନ ପଚାରି ଚାରିଆଡ଼କୁ ଆଖି ବୁଲାଇଲି । ସୁର ନାହାନ୍ତି । ଆସିଥିଲେ ଯଦି ମତେ ଦେଖା ନ ଦେଇ ଚାଲିଗଲେ କାହିଁକି ?

ବୋଉ ମୋ ମନ କଥା ଜାଣି କହିଲା, ଆଲୋ ଝିଅ, ସୁର ଆସି ନ ଥିଲେ, ଜଣେ ଚାକୁଅକୁ ପଠାଇଥିଲେ । ସେ ତତେ ଅନାଇ ଅନାଇ ଏଇ ଘଣ୍ଟାଏ ହେବ ଫେରିଲା ।

ଅଟକାଇଲୁ ନାହିଁ ?

ସେ କୁଆଡ଼େ ଅନ୍ଧାରକଣା ଯେ, ବେଳ ବୁଡ଼ିଲେ ତାକୁ ବାଟ ଘାଟ ଦିଶେ ନାହିଁ । ସେଥିପାଇଁ ସହଳ ସହଳ ଚାଲିଗଲା ।

ଟିକିଏ ତୁନ ରହି ବୋଉ କହିଲା, ଆଲୋ ତୁଳସି, ମୋ ପାଖରେ ବସ୍ । ସେ ଯେଉଁ ଲୋକଟା ଆସିଥିଲା ମ, ତା ନାମ ରଘୁଆ । ତା ସଙ୍ଗେ କେତେ କଥାଭାଷା ହେଲି । ସୁର ଖବର ଦେଇଛି ।

ମନୁଆଁ ଆଡ଼କୁ ନଘା ପକାଇଲି, ସେ ସେମିତି ମୁଆଁ ଖାଉଛି । ବୋଉ ପାଖେ ବସିଲି । ଘର ପହଁରା ଗୁଡ଼ ମୋ ମୁହଁକୁ ଅନାଇ ସେ ଦରହସିଲା ହୋଇ ଭୂଲତା ଠେକି କହିଲା, ଆଲୋ, ସଂସାରକୁ ଚହଳି ଚହଳି ବାଳ ପାଚିଲା । ପିଲା ଦିନଟା ତେମେ, ତମୁକୁ ମୁଁ ଠଉରେଇ ପାରିବ ନାହିଁ ? ଠାକୁରେ ଯାହା ପାଇଁ ଯାହା ଲେଖି ରଖିଛନ୍ତି ସେଥିରେ ଅନ୍ୟଥା ହବ ନାହିଁ । ସୁର ତତେ ଭଲପାଏ, ତୁ ତାକୁ ଭଲ ପାଉ, ମୁଁ ଜାଣେ ଏକଥା । ବାଜେ ଲୋକଙ୍କର ଅଲଣା କଥାରେ କାନ ଦେଇ ଏତେ ଦିନ କାଳ କଷ୍ଟ ପାଇଲୁ, ତାକୁ ବି କଷ୍ଟଦେଲୁ । ଗତ କଥା ଯାଉ । ସୁର ପଚାରି ପଠେଇଥିଲା, ତୁ କେବେ ଯିବୁ ।

ଲାଜରେ ମୁଣ୍ଡ ନୋଇଁଲି ।

ମୁଁ କହିଲି, କହିବୁ, ମତେ କାହିଁକି ପଚାରୁଛ ? ସେ ନିଜେ ଆସି ତୋ ସଙ୍ଗେ କଥାଭାଷା ହୋଇ ଦିନ ବାର ଠିକଣା କରିଯାଉ । ପିଲା ଛୁଆତ ନୁହେଁ— ଜୀବନ ସଉଦା କଥା । ଲାଜ ସରମ କଅଣ ? ସୁବିଧା ଅସୁବିଧା ଦେଖି, ଭଲ ଦିନ ବାର ଦେଖି ଗଲେ ସବୁ ଭଲ । କାଲି ଆସିବାକୁ ଖବର ଦେଇଛି । ଭଲ କରି ନାଇଁ ମା ? ଡେରି କଲେ କାମ ଭଣ୍ଡୁର ହୁଏ ।

ହସ ହସି ମନକଥା ଜଣାଇଲି । ରହି ରହି ପଚାରିଲି, ଅଜ୍ଞାପାଏ ସୁର ଆସି ନାହାନ୍ତି କାହିଁକି ?

ପାଗଲ ପିଲାଟାଏ । ଏଠୁ ଯାଇ ବାଇଅଙ୍କ ପର ଘରକାମରେ ଲାଗିଛି । ଏଇଟା ସଜାଡ଼, ସେଇଟା ସଜାଡ଼, ମୁଷା ଗାତ ବନ୍ଦ କର, କାନ୍ଥ ନିପା, ଦୁଆର ସଫା, ଏମିତି ସବୁ କାମ । ପଚାରିଲି, କାହିଁକିରେ ରଘୁଆ ? କହିଲା, କୁଆଡ଼େ ଯିଏ ପଚାରୁଛି ସୁର କହୁଛି ତୁ ଯିବୁ ଘରକୁ, ଏମିତ ଅରମା ଜଙ୍ଗଲ ଅସନା ଦେଖି ନାକ ଟେକିବୁ ।

ସୁର କହୁଛି, ତୁ ଆଇଲାବେଳେ ଘର ଯେମିତ ଗୁଡ଼ି ଆସିଥିଲୁ, ଗଲାବେଳକୁ ସେମିତି ଘର ତୋ ହାତରେ ସେ ସମର୍ପି ଦେବ । ସେଇଥିପାଇଁ ଦିନ ରାତି ଘର କାମରେ ଲାଗିଛି । ତୁ ଅଇଲା ଦିନୁ ବାଇଆ ଫକୀର ହୋଇ ବୁଲୁଥିଲା, ଖିଆପିଆ ନା କୋଉ କଥାରେ ତାର ଠିକଣାଥିଲା ? ରଘୁଆ ଏଇଆ ସବୁ ଗପୁଥିଲା ।

ମୋର ଆଖି ଛଳଛଳ ହେଲା । ସୁର ସବୁ ମୋ ହାତରେ ସମର୍ପି ଦେବେ, କିନ୍ତୁ ମନୁଆଁର ବାପ, ଯାହା ସଙ୍ଗରେ ମୁଁ ଛଅନୋଟି ବର୍ଷ ସଂସାର କରି ନିଜକୁ ଭୁଲିଥିଲି, ତାକୁ ମୋ ହାତରେ ଦେବ କିଏ ? ସ୍ୱାମୀ ହରାଇ ପୁଣି ସ୍ୱାମୀ ପାଇବି; କିନ୍ତୁ ତାଙ୍କୁ ତ ପାଇବି ନାହିଁ ?

ଆଖିରୁ ଲୁହ ଝରିଲା ।

ବୋଉ କହିଲା, ସୁରର ଦୁଃଖ ଶୁଣିଲେ କାଠ ପାଷାଣ ଆଖିରୁ ଲୁହ ଝରିବ । ଭାଗ୍ୟର କଥା । ଯେତେଦିନ ଯାହାକୁ ଯାହା ଭୋଗ ଥାଏ । ଦୁଃଖର ଦିନ ତ ଆସିଲା, ସୁର ନେଇ ଆଉ ଦୁଃଖ କରନା ଝିଅ । ଏଇକଥା ମନେ ରଖି ଥା, ଯେତିକି ତା ମନରେ ଦୁଃଖ ଦେଇଛୁ, ନିଜ ଗୁଣରେ ଯେମିତି ତୋ ପାଖରୁ ସେତିକି ସୁଖ ସେ ପାଏ । କହ, ପାରିବୁ ? ଏତିକି ତୋ ତୁଣ୍ଡରୁ ଶୁଣିଲେ ମୁଁ ଖୁସି ହେବି ।

ମତେ ତୁନି ଦେଖି ତାର ଶୁଖିଲା ଆଖି ପତା ଓଦା ହେଲା । ମୋର ଓଠରେ ହାତ ଦେଇ ପଚାରିଲା, କହ ମା, ପାରିବୁ ?

ମୁଣ୍ଡ ହଲାଇ ହଁ କଣାଇଲି ।

ବୋଉ ଖୁସି ହୋଇ କହିଲା, ରଘୁଆ ହାତରେ ସୁର କେତେ ଟଙ୍କା ପଠାଇଛନ୍ତି, ଦେଖିବୁ ଆ—

ସବୁ ଦେଖିଲି । ମନରେ ଆନନ୍ଦ ଆସିଲା, ଗର୍ବ ଆସିଲା । ଯାହା ସେ ପଠାଇଛନ୍ତି, ସବୁ ମୋର । ମୁଁ ନିରାଶ୍ରୟା, ବାଟର ଅନାଥା ନୁହେଁ । ମୋର ଭଲ ମନ୍ଦ ବୁଝିବାକୁ, ମତେ ମୋର କହିବାକୁ ସଂସାରରେ ଜଣେ ଅଛନ୍ତି । ଆଉ ମୋର ଦୁଃଖ ନାହିଁ ।

ମୋର ଆଗ୍ରହ ଓ ଆନନ୍ଦ ଦେଖି ବୋଉର ମନ ପୂରି ଉଠୁଥାଏ । ସୁନ୍ଦର ରଙ୍ଗିନ୍ ମିଲ୍ ଶାଢ଼ୀଟି ମୋ ହାତକୁ ଦେଇ କହିଲା, କାଲି ଭଲ ଦିନ, ମନେ ରଖ, ଆଜ୍ଞୁ ପିନ୍ଧିବୁ । ମୋ କଥା ନ ମାନି ଅବାଧ ହେଲୁ ବୋଲି ଏତେ କଷ୍ଟ ସିନା ପାଇଲୁ ମା !

ବୋଉ ଆଗରେ ମୋର ନିର୍ବୋଧତା ମୁଁ ସ୍ୱୀକାର କଲି । ସେ ଦିନ ସଞ୍ଜରେ, ହାଟ ଫେରନ୍ତି, ସୁରଙ୍କ ପ୍ରତି ଯେଉଁ ବ୍ୟବହାର କରିଥିଲି, ତାର ଫଳରୁ ଏତେ କାଣ୍ଡ ଘଟିଗଲା ।

ବୋଉ କହିଲା, ମୁଁ ଏଥର ନିଶ୍ଚିନ୍ତରେ ମରିବି ତୁଳସି— ।

ହସି ହସି କହିଲି, ମରିବୁ ଯଦି ଆମର ସୁଖ ଆନନ୍ଦ ଦେଖି ଆଉ ଖୁସି ହେବାକୁ ରହିବ କିଏ ? ଦୁନିଆ ଲୋକେ ଠାରି ଠାପରି କରିବେ । ଯେଉଁମାନେ ପାପ ଆଖିରେ ମୋ ଆଡ଼କୁ ଚାହିଁଥିଲେ, ମତେ ପାଇବେ ବୋଲି ଲୋଭିଲା ହାତ ବଢ଼ାଇଥିଲେ. ମତେ ଦୟା ଦେଖାଇବାକୁ ପ୍ରସ୍ତୁତ ଥିଲେ, ମୋ ସୁଖ ଦେଖିଲେ ସେମାନେ ଖୁସି ହେବେ ନାହିଁ । ତୁ ମରିବୁ ନାହିଁ ବୋଉ, ବଞ୍ଚିବୁ, ସୁରଙ୍କୁ ଓ ମତେ ତୋର ସେବା କରିବାର ସୁଯୋଗ ଦେବୁ, ଭଲ ମନ୍ଦ ବୁଝାଇ କହିବୁ ।

ମନୁଆ ପାଖକୁ ଆସିଲି । ତାକୁ କାଖ କରି ତା ମୁହଁରେ ବୋକ ଦେଲି । ସେ କହିଲା, ଦାଦା ମୋ ପାଇଁ ଜାମା ଦେଇଛି, ଦାଦା କେବେ ଆସିବ ?

ଆଉ ଥରେ ଗେଲ କରି କହିଲି, କାଲି ଆସିବ ।

ବୋଉ ଟିକେ ଗମ୍ଭୀର ହୋଇ ପଡ଼ିଥିଲା । ହଠାତ୍ କହି ଉଠିଲା, ତୋ ପରି ଏତେଡ଼ ଝୋଲା ହେଲେ, ଦିନ ଭଲରେ କଟିବ ନାହିଁ । ଜାଣିଛୁ, ଲୋକେ କେତେ କଥା ମନରେ ଧରି ଆଖି ବୁଜନ୍ତି । ପୋଡ଼ି ଜଳି ମଣିଷ ପାଉଁଶ ହୁଏ, ମାଟିରେ ମିଶେ, ତଥାପି କେତେ ଆଶା ତାର ଅପୂରଣ ରହେ । ତା ସଙ୍ଗେ ସଙ୍ଗେ ଲୋପ ପାଏ, ଆଉ କେଇ ଜାଣନ୍ତି ନାହିଁ, ଜାଣିବା ବି ଉଚିତ ନୁହେଁ ।

କେଉଁ କଥାକୁ ଉପଲକ୍ଷ୍ୟ ଦେଇ ସେ କହିଲା, ମୁଁ ବୁଝି ପାରିଲି ନାହିଁ । ପଚାରିଲି ଆଖିରେ ତା ଆଡ଼କୁ ଅନାଇ ରହିଲି ।

ମନ କଥା ବୁଝିଲା । ଦରହସିଲା ହୋଇ କହିଲା, ଓଲମିଠା, ଆଲୋ, ସଂସାରରେ ଅତଯାତ ହୋଇ, ରକ୍ତ ମାଂସର ଖ୍ୱଅ, ଆଉ ଯୁବା ବୟସରେ ନଆଁ ଗୁଛରେ ଧର ପାଆଁଠାଙ୍କ ସଙ୍ଗେ ମିଶିଲେ ମନରେ କେତେବେଳେ କେଉଁ ଭାବ ଆସେ । ଅସାବଧାନ ବେଳରେ ଗୋଡ଼ ବ ଖସିଯାଏ । ପାଅଁମନ ପରଶ ପ୍ରକୃତ ତମ ଆଡ଼କୁ ଠାଣି ହୋଇ ଆସନ୍ତ । କୋଉଠି ମଣିଷ ହାରେ, କେଉଁଠି ମାନ ରଷା କର ମଣିଷ ପଛେଇ ଆସେ । ଏ ସବୁ ନଜର ଭୁଲ କେବେ ଅନ୍ୟ ଆଗରେ ଖୋଲିବାର କଥା ନୁହେଁ ।

ପ୍ରତିବାଦ କର କହିଲ, ଯାହାକୁ ଜୀବନ ସର୍ବସ୍ୱ କର ଗ୍ରହଣ କରବ, ଯାହାକୁ ନେଇ ଘର କରବ, ତା ପାଖରେ ଭୁଲ ଭ୍ରାନ୍ତ ଖୋଲି ନ କହିବା ଅପରାଧ ହେବ । ନଜର ଭୁଲ ପାଇଁ ଅନୁତାପ କର ଷମା ଗୁହିଁଲେ, ସେ ନଶ୍ଚୟ ଷମା କରବେ । ଏହା ଯଦ ନ କରାଯାଏ, ଦୁଇଟା ମନ ଏକ ହେବ ନାହିଁ ।

ଆଲୋ ପାଗଳି, ଦୁଇଟା ମନ ସବୁବେଳେ ଦୁଇଟା ରହେ, ଏକା ହୋଇପାରେ ନାହିଁ । ତା ହେଉଥିଲେ ଭଗବାନ ଦୁଇଟା ଦେହ ଗଢ଼ି ନ ଥାନ୍ତେ । ସୃଷ୍ଟି ପାଇଁ ଯେପର ଦୁଇଟା ଦେହ ମିଶେ, ପୁଣି ଅଲଗା ହୁଏ, ସୁଖରେ ସଂସାର କରବାକୁ ହେଲେ, ସେମିତି ଦୁଇଟା ମନ ଯେଉଁଠି ଯେତେବେଳେ ମିଶିବାର କଥା, ମିଶାଇ ଏକ କରବାକୁ ହୁଏ, ପୁଣି ଅଲଗା ହୁଏ ।

ଲୁଗୁଇଲେ ଅପରାଧ ହେବ, ମୁହଁକୁ ଗୁହିଁଲେ ଅକୃତଜ୍ଞ ବୋଲି ପେଟ ଭିତର ଘାଣ୍ଟି ହେଉଥିବ ।

ଯାହା କହିଲେ ନଜ ଲୋକର ମନରେ ଦୁଃଖ ଆସିବ, ଷମା କଲେ ମଧ୍ୟ ସହାନୁଭୂତିରେ ଗତ କଲଙ୍କର ପୋଡ଼ା ପାଉଁଶକୁ ଫୁଙ୍କି ଉଡ଼ାଇଦେଲେ ମଧ୍ୟ, ଦାଗ ରହିଯାଏ । ବେଳେ ବେଳେ ମନ ସେହି ଦାଗ କି ସେହିପର ଆଉ ଦାଗ ଖୋଜିବାକୁ ଧାଇଁଯାଏ । ମନ ଫେରୁ, ନ ପାଉ, ତଥାପି ସନ୍ଦେହର ଜହ୍ନ ରାତିରେ ବ ଭୂତ ଦେଖେ ।

ପଗୃରିଲା, ତେବେ ?

କିଛି ନ କହି ନଜେ ଅନୁତାପ କଲେ ଭଲ । ସୁରକୁ ନେଇ ସଂସାର କରବାକୁ ଯାଉଛୁ । ଯେଉଁଦନ ତୁ ତାର ସ୍ତ୍ରୀ ହେବୁ, ସେହି ଦନଠୁ ତୁ ତୋର ଗତ କଥା ଭୁଲିଯିବୁ । ଘର କରଣା ଭିତରେ ଯେପର ଭୁଲଭ୍ରାନ୍ତ ନ ହୁଏ, ସେଥିକି ସାବଧାନ ! ଯଦ କେବେ ଭୁଲ୍ ହୁଏତ ନଜେ ଅନୁତାପ କର, ଭବିଷ୍ୟତ ପାଇଁ ସାବଧାନ ହୋଇ ଗୋଡ଼ ଚପି ଗୃଲ । ନଜ ଦୁର୍ବଳତା ଖୋଲି ଦୁହିଁଙ୍କ ମନରେ ଖଟକା ଆଣିବା ପ୍ରୟୋଜନ ନାହିଁ ।

ସେ କହିବାକୁ ଲାଗିଲା, କାଲି ସୁରର ହାତ ଧର ଯିବୁ, କାହିଁକି ତା ମନରେ ଧାରଣା ଦେବୁ ଯେ ଦାଣ୍ଡର ପାଅଁ ଲୋକ ତୋ ଆଡ଼କୁ ଗୁହିଁଥିଲେ, ହାତ

ବଢ଼ାଇଥିଲେ ? ତୋ ଉପରେ ଯେତେ ବିଶ୍ବାସ ଥିଲେ ମଧ୍ୟ ତା ମନରେ ପ୍ରଶ୍ନ ଉଠୁଥିବ, ଏତେ ଲୋକଙ୍କର ଅଖିଠାରୁ ସତେ ଇଏ ଏଡ଼ି ଦେଇ ପାରିଛନ୍ତି ? ଯେତେ ସଫେଇ ଦେଲେ କି ଶହେ ନିୟମ ପକାଇଲେ ବି ମନରେ ସନ୍ଦେହ ବସାବାନ୍ଧି ରହେ । ସବୁଠୁଁ ଭଲ ତୁନି ରହିବା, ନିଜ ସ୍ନେହରେ ବାନ୍ଧି ରଖିବା । ବୁଝିଲୁ ମା ?

ମୁଣ୍ଡ ହଲାଇ ହଁ ଭରିଲି । ଲାଜରେ ସଢ଼ି ଯାଉଥାଏଁ । ଭାବିଲି, ବୋଉ ସବୁକଥା ଜାଣେ ।

## ୩୦

ଆଜି ସୁରି ଆସିବେ । ଆନନ୍ଦରେ ମନ ଭରି ଉଠୁଥାଏ । ସୁରି ଆସିବେ, ମୁଠିଏ ସନ୍ତୋଷ କରି ତାଙ୍କୁ ଖାଇବାକୁ ଦେବାକୁ କାମ କାର୍ଯ୍ୟରେ ମନ ପ୍ରାଣ ଢାଳି ଦେଉଥାଏ । ଆହା, ଯେଉଁଦିନୁ ତାଙ୍କ ଘରୁ ଗୋଡ଼ କାଢ଼ି ଆସିଲି, ସେଇଦିନରୁ ଆଜିଯାଏ ଭଲକରି ମୁଠାଏ ସେ ଖାଇ ନାହାନ୍ତି ।

ବୋଉ ଆସି କହିଲା, ଆଲୋ ଝିଅ, ବେଳ ଦିପହର ହେଲାଣି, କେତେବେଳେ ଆଉ ଗାଧୋଇବୁ ? ମୁଣ୍ଡଟା ବେତା ପରି କରିଛୁ, ଆଇଲୁ, ଆ— ।

ମୋର କାମ ସରିଥିଲା । ବୋଉର କୁହା ମାନି ଗଲି । ଥରିଲା ଥରିଲା ହାତରେ ନିଜେ ସେ ମୋ ମୁଣ୍ଡ ବାନ୍ଧିଦେଲା । କହିଲା, ଯା, ସହଳ ସହଳ ଗାଧୋଇ ଆ, ଲୁଗାରେ ମୁଁ ହଳଦୀ ଦେଇ ରଖିଛି ।

ମନୁଆଁକୁ ବୋଉ ପାଖରେ ରଖି ପୋଖରୀକୁ ଗାଧୋଇ ଗଲି । ଲାଜ ଲାଜ, ଡର ଡର ମାଡ଼ୁଥାଏ । କିଏ କାଳେ କଅଣ କହିବ ?

ପୋଖରୀ ଘାଟ ପ୍ରାୟ ଶୁନ୍‌ଶାନ୍, ଏକା ମାଇପିଟିଏ ଗାଧୋଉଛି । ପାଖକୁ ଯାଇ ଚିହ୍ନିଲି, ରାଜି ବୋଉ ଖୁଡ଼ୀ ।

ମୋତେ ଚାହିଁ ମୁରୁକି ହସି ପଚାରିଲା, କିଲୋ, ଆଜି ହାଟକୁ ଯିବୁ କି ? ମଲା, ଆଜି ତ ହାଟପାଳି ନୁହେଁ ।

ମୋ ଦେହରେ ସତେକି ଛୁରୀ ଚାଲିଗଲା । ପାଣି ଭିତରକୁ ପଶି ତା ଆଡ଼କୁ ଫେରି ଚାହିଁ, ମୁହଁ ମୋଡ଼ି କହିଲି, ମୋ ଶିରୀ ତୁ କାହିଁକି ଦେଖି ପାରୁ ନାହିଁ ଲୋ, ତୋର ମୁଁ ଖାଏଁ ନା ଧାରେଁ ?

ସଂସାରରେ କିଏ କାହାର ଖାଏ ନା ଧାରେ ଲୋ ? ନୂଆ କଥା, ନୂଆ ଢଙ୍ଗ ଦେଖିଲେ ବାଟର ବାଟୋଇ ହେଲେ ପଦେ ପଚାରି ଦିଏ । ହାତରେ ଶଙ୍ଖା,

ଆଖିରେ କଜଳ, କ ମୁଣ୍ଡରେ ସିନ୍ଦୂର ଯାହାର ନାହିଁ କେଉଁ ଗରବରେ ସେ ମୁଣ୍ଡ ବାନ୍ଧିବ, ସାବୁନରେ ଧୂଅ ମାଜିବ ? ମଲା ମର, ଭଲ କଥାକୁ ମୁହଁ ଘୁଞ୍ଚୁଛୁ ?

ତାକୁ ଚଢ଼ାଇବାକୁ କହିଲି, ହାତରେ ଶଙ୍ଖା କ ଆଖିରେ କଜଳ ନାଇବାକୁ କିଏ ମନା କରିବ ? ଯାହା କଥା ଯିଏ ଜାଣେ ।

ସେଇ କଥାତ ମୁଁ ପଚାରୁଛି ଲୋ ଝିଅ, ତୁ ଚଢ଼ୁଛୁ କାହିଁକି ? ନୂଆଘର କରିବାକୁ ଗଲେ, ନୂଆ ମଣିଷ ହେବାକୁ ହେବ । କୋଉଠି ଲୋ ତୁଳସି ?

ବଲେ ଜାଣିବ ଯେ ।

କାହିଁକି ?

ବୋଉ ମନା କରୁଛି ।

ହଉ, ଠାକୁରେ ଭଲ କରନ୍ତୁ । କେତେ କଷ୍ଟ ପାଇଲାଣି । ବୟସ ଅଛି, କାଲିକାର ପିଲାଟା । ତୋ ବୟସର କେତେ ତ ପର ଘରକୁ ଯାଇ ନ ଥିବେ । ଅଟଲା ଝିଅ, ଶଙ୍ଖା ସୁନ୍ଦର ଯେଉଁଦିନ ନାଇବୁ ତ ନାଇବୁ, ହାତରେ ଦି ଦି'ପଟ କାଚ, ଆଖିରେ ହଟାର କଜଳ ପିନ୍ଧିଲେ କିଛି ଦୋଷ ନାହିଁ । ବାପଘରେ ଝିଅ, କାଲି ଯେମିତି ଥିଲୁ, ଆଜି ସେମିତି । ପିଲା ବୟସ, ପିଲା ମନ ଯାଇନାହିଁ । ତୋ ଛତରଖାଇ ମାଆଟାର ଅକଲ ନାହିଁ । ପର ମଣିଷ ଆସିବେ, ଏମିତି ଅଭେକା ରୂପ ଦେଖିବେ କାହିଁକି ଲୋ ? ଏଇକଥା ମୁଁ ତାକୁ କେତେଥର କହିଲିଣି ।

ତା ମୁହଁକୁ ଚାହିଁଲି । ମନେ ହେଲା, ଯେପରି ସେ ତା' ପ୍ରାଣର ଖୋଲା କଥା କହୁଛି, ମନରେ ଛନ୍ଦ କପଟ ନାହିଁ ।

ନିଜ ହାତରେ ଘଷି ମାଜି ମତେ ସେ ଗାଧୋଇ ଦେଲା । କହିଲା, ତୁଳସି ଲୋ, ତୁ କଅଣ ମୋ ଝିଅ ନୋହୁଁ ? ଏଇଆତ ମୁଁ ଖୋଜୁଥିଲି । ଯା, ପରଘରେ ଖୁସିବାସିରେ ସଂସାର କର । ଯୁବା ବୟସ ଧରି ହାଟବାଟରେ ପାଞ୍ଚ ଲୋକଙ୍କ ଆଗରେ ବୁଲିବା ଭଲ ନୁହେଁ ।

ବଡ଼ ବୋଉ ଖୁଡ଼ୀ ପାଖରୁ ମୋର ସବୁ ଦୋଷ ମାଗିନେଲି । ସୁରଙ୍କ କଥା କହିଲି । ସେ ମନ ଦେଇ ସବୁ ଶୁଣିଲା । ମୋ ସଙ୍ଗେ ସଙ୍ଗେ ଆମ ଘରକୁ ଆସିଲା । ବୋଉକୁ ଢିଆରି କହିଲା, କଲୋ, ଯେତକ ବୟସ ହେଉଛି ବୁଦ୍ଧି ସେତିକ ପୋଡ଼ ଯାଉଛି ପରା । ପିଲାଟାର ହାତରେ କାଚ ଦପଟ ଦେଉନୁ ?

ବଡ଼ ବୋଉ ଖୁଡ଼ୀ ଫେରିଗଲା । ଆଖି ଓଦା କରି କେତେ କଲ୍ୟାଣ କରି ସେ ଗଲା । କେତେ ଦିନର କେତେ ଅଭିମାନ ରାଗ ରୁଷା ଆଜି ତାର କଟିଲା ।

ନୂଆ ଲୁଗା, କାଚ, କଜଳ ପିନ୍ଧି ନିଜକୁ ନୂଆ ମଣିଷ ପରି ଅନୁଭବ କଲି । ଅଇନାରେ ମୁହଁ ଦେଖି ଖୁସି ହେଲି । ଗତ କଥା ସପନ ପରି ଲାଗିଲା । ଭାବିଲି, ସମୟ ପୁଣି ପଛକୁ ଫେରି ଆସିଲା । ବାପ ଘରେ ଝିଅ, ପର ମଣିଷ ପରି

ସଂସାର କାଟଣ ନାହିଁ । ସୁର ଅସିବେ, ଅଙ୍କ ଅଉ ସେ କହି ପାରିବେ ନାହିଁ  ଯେ ଭାଇ  ଅଛନ୍ତି । ଯେ ଯାହାର ସେ ତାହାର । ଭୁଲ ହେବ ନାହିଁ । ଜଣକ ଅଡ଼କୁ ଥରେ ମନ ଧାଇଁ ଯାଇ ପଛେଇ ଅସିବ ନାହିଁ ।

ବୋଉ କହିଲା, କେତେବେଳ ଯାଏ ଗୃହିଁ ବସିଥିବୁ ? ସୁର  ପାଗଲା ପିଲାଟା, କାମରେ ଲାଗିଥିଲେ ସବୁ କଥା ଭୁଲିଯିବ । ସଞ୍ଜକୁ ଅସିବ କି କଅଣ । ଯା, ଖାଇ ବସ ।

ମୋର ମନ ମରିଗଲା । ଯାହାଙ୍କ ପାଇଁ ଏତେ ଯତ୍ନରେ  ରାନ୍ଧି  ରଖିଛୁ, ତାଙ୍କ ତୁଣ୍ଡରେ ନ ବାଜିଲେ ପାଟିକି ଯିବ କିପରି ? ବୋଉକୁ ଉତ୍ତର ନ  ଦେଇ ଦାଣ୍ଡକୁ ଅସିଲି । ଯେତେ ଦୂର ଯାଏ ଅଖି ଯିବ, ଗୃହିଁଲି, ଗମ୍ଭୀର ଶୂନ୍‌ଶାନ୍ ।

ଗାଁ ସାହିଅଡ଼ୁ ପିଲାଟିଏ ଅମର ଘର ଅଡ଼କୁ ଦଉଡ଼ ଦଉଡ଼  ଅସୁଛି  । ଗୃହିଁ ରହିଲି । ପାଖକୁ ଅସି ସେ ମୋ ଅଗରେ ଠିଅହେଲା ।

ବୋଉ  ପଛରୁ  ଅସି କହିଲା, ଅଉ ଡେରି କରନା, ମନୁଅଁ ଶୋଇଛି, ଏତିକବେଳେ କାମ ସାରନେ । ସୁର ଏ ବେଳା ଅସିବ ନାହିଁ ।

କହିଲି, ଯାଉଛି ବୋଉ, ଧଡ଼ିଆ କଅଣ କହୁଛି ଶୁଣ ।

କଅଣ କିରେ ଧଡ଼ିଆ ?

ଧଇଁସଇଁ ହୋଇ କହିଲା, ଜେମି ଅଈ ଘଡ଼ ଘଡ଼ ମୋହ ଯାଉଛି । ଟେମାଇ, ବଇଦ, ଅଉ ସବୁ କେତେ ଲୋକ ତା ପାଖରେ ଅଛନ୍ତି । ଚେତା ହେଲେ ଏଣିକି ତେଣିକି ଗୃହିଁ ଖାଲି ତୋର ନାମ ଧରି  ଡାକୁଛି । ଟେମାଇ କହିଲା, ଯା, ତୁଳସୀ ଅପାକୁ ଡାକି ଅଣିବୁ । ଜଲ୍‌ଦି ଅ ।

ତାର କଅଣ ହୋଇଛି ?

କେତେ ଦିନ ହେଲା ଜର ହୋଇଥିଲା । କାଲି ସଞ୍ଜରୁ  ଦେହ  ବେଶି ଖରାପ । ବଇଦ କହୁଛି, ବୁଢ଼ୀ ଅଉ ଠାକିବ ନାହିଁ ।

ସତେ ?

ହଁ, ତୁ ଅ ପଛରେ, ମୁଁ ଯାଉଛି ।

ଧଡ଼ିଆ ଦଉଡ଼ ଦଉଡ଼ ଗୃଲିଗଲା ।

ବୋଉ କହିଲା, ଯିବୁ ଯଦି ମୁଠାଏ ଖାଇ ଦେଇ ଯା ।

ତର ତର କରି ଭାତ ଖାଇଲି । ଧଡ଼ିଆର କଥା ମନେ ମନେ ଗୁଣ୍ଡି ହେଉଥାଏ, ଜେମି ଅଈ ମତେ ଦେଖିବାକୁ ଏପରି ଉଚ୍ଛନ୍ନ ହେଉଛି କାହିଁକି ?

ଡେରି ନ କରି ବାହାରିଲି ।

ଅଧବାଟରେ ଟେମାଇ ସଙ୍ଗେ ଦେଖା ହେଲା । ତାର ମୁହଁ ଶୁଖି ଯାଇଛି । ମୋତେ ଦେଖି ତାର ଶୁଖିଲା ମୁହଁ ଅଉରି ମଉଳି ଗଲା ।

ପଗୃରିଲି, ଜେମି ଅଈର କଅଣ ହୋଇଛି କି ?

ଶୁଖିଲା ଓଠରେ ହସ ଖେଳାଇ କହିଲା, ସେ ପୁରରୁ ଡାକବା ଅସିଛି । ବୁଢ଼ୀ ଯିବାକୁ ନାରାଜ । ତତେ ନଇଲେ ମତେ ସାଙ୍ଗରେ ନ ନେଲେ ସେ ଯିବ ନାହିଁ । ବେଶି ଜିଗର କଲାରୁ ମୁଁ ନିଜେ ତତେ ଡାକିବାକୁ ଯାଉଥିଲି । ଗୃଲ୍ ଜଲ୍ଦି ।

ଜର ହୋଇଥିଲା ?

ଅଲେ ନାଇଁ, ସେ ଦିନ ସଞ୍ଜବେଳେ ତୋ ପାଖରୁ ଫେରି ସବୁ କଥା ତାକୁ କହିଲି । ଶୁଣି ଶୁଣି ତତେ ଅଜି ମତେ ତା ମନ ଇଚ୍ଛା ଶୋଧିଲା, କହିଲା, ଅଜି ସେ ଉଠିବ ନାହିଁ କି କାହାକୁ କିଛି କହିବ ନାହିଁ । ଦୁଇଦିନ କାଳ କାନ୍ଦିଲା । ସେଇଠୁ ହେଲା ଜର, ସେଇଠୁ ଏ ଦଶା । ତାର ଆଶା ଥିଲା, ତୁ ନିଶ୍ଚେ ତା ପାଖକୁ ଆସିବୁ, ନାହିଁ କରିବୁ ନାହିଁ ।

ଟେମାଇ ତୁନି ହେଲା । ଭରସି କରି ମୁଁ କିଛି କହି ପାରିଲି ନାହିଁ ।

କିଛି ଦୂର ଗଲା ପରେ ଥଙ୍ଗେଇ ଥଙ୍ଗେଇ କହିଲା, ତେମେ ଭୂଲ କରିଛ ଟେମାଇ, ତମର ବାହା ହେବା ଉଚିତ ଥିଲା ।

ଉଚିତ ଥିଲା, କିନ୍ତୁ ବେଳ ଗଡ଼ି ଯାଇଛି । ଆଈ ଆଜି ମରିବାକୁ ଯାଉଛି । ଏଇ ଦୁଃଖ ମନରେ ଧରି ସେ ଯିବ ଯେ, ଏତେ କାଳର ବଂଶଟା ମୋର ଠାଇଁ ବୁଡ଼ି ଯିବ । ଯେତେ ବୁଝାଇଲେ ସେ ବୁଝିଲା ନାହିଁ । କହିଲା, ମୁଁ ତାକୁ ଭୁଲଉଛି । ତୋ ଆଗରେ ମୁଁ ଯେ ପ୍ରସ୍ତାବ କରିଥିଲି ଆଜି ତୁ ମନା କରିଥିଲୁ, ଏ କଥା ସେ ବିଶ୍ବାସ କଲା ନାହିଁ । ମୁହଁ ଖୋଲି ଯଦି କେବେ ତା ମନର ସନ୍ଦେହ କଥା ମୋ ଆଗରେ କହିଥାନ୍ତା ମୁଁ ନିଶ୍ଚୟ ତତେ ଡାକିଆଣି ତା ଆଗରେ ଠିଆ କରିଥାନ୍ତି । ମରିବା ଆଗରୁ ତୋ ମୁହଁରୁ ସେଇ କଥା ସେ ଶୁଣିବାକୁ ଗୃହେଁ ।

ମୋ ମୁହଁରୁ 'ନାହିଁ' ଶୁଣିଲେ—

'ନାହିଁ' ଶୁଣୁ କି 'ହଁ' ଶୁଣୁ, ବଇଦ ମତରେ ଏ ଯାତ୍ରାରୁ ଉଦ୍ଧାର ପାଇବା ସମ୍ଭବ ନୁହେଁ । ତେବେ ଅଖିରେ ଲୁହ ଭରି ଯିବ କି ଓଠରେ ହସ ରଖି ଯିବ ସେଇକ ହେଉଛି ଏବକାର ଭାବନା ।

ତୁମେ ସଂସାର କରିବ ଏ କଥା ଜାଣିଲେ ସେ ଶାନ୍ତିରେ ଆଖି ବୁଜିବେ । ତୁମେ ବିବାହ କରିବ ବୋଲି ଆଈଙ୍କୁ କହି ଦେଉନ ।

ସେ ବିଶ୍ବାସ କରିବ ନାହିଁ । ନିଜ ଅଖିରେ ମତେ ସଂସାରୀ ଦେଖିବାକୁ ସେ ଗୃହେଁ ।

କଥାର ସୁଅ ବଦଳାଇ ଟେମାଇ ପଗ୍ଚରିଲା, ପୁର ଆସିଛି କି ?

ମତେ ଲାଜ ମାଡ଼ିଲା । ଜବାବ ଦେଇ ପାରିଲି ନାହିଁ ।

କହିଲା, ତୁଳସି, ମୋ ପାଖରେ ତୁ ଲାଜ କରୁଛୁ ? ଆଈ ଯାହା ଜାଣେ, ତୁ କଅଣ ତାହା ଜାଣୁ ନାହିଁ ? ସେ ଜାଣେ, ମୁଁ ତୋ ଛଡ଼ା ଅନ୍ୟ କାହାକୁ

ବାଧା ହୋଇ ପାରିବ ନାହିଁ । ପିଲାଦିନର ରଜା ରାଣୀ ଖେଳ, ଘରକରଣା, ମିଛିମିଛିକା ସଂସାର କଥା ମନେ ପଡ଼ୁଛି । ତୁ ଥିଲୁ ପିଲା, ତୋ ମନରେ ତାର ପ୍ରଭାବ ପଡ଼ି ନ ଥିଲା । ଭାବିଥିଲି ମୋ ମନରେ ମଧ୍ୟ ଗାର ଟାଣି ନ ଥିଲା । ପିଲାଦିନ୍ର ସବୁ ଖେଳ କୌତୁକ କଥା ତା ଆଗରେ ଖୋଲି କହି ଆସିଥିଲି । ଯେଉଁଦିନ ତୁ ପରଘରକୁ ଗଲୁ, ସେଇ ଦିନ ମୁଁ ବୁଝିଲି, ମୋ ଗୁଣ୍ଡ ଭିତରେ ପିଲାଦିନର ଖେଳ ଗହୀରା ଗାର ଟାଣି ଦେଇଥିଲା । ତୁଳସି, ସ୍ୱପ୍ନରେ ତୋତେ ମୁଁ ମୋର କରି ନେଇଥିଲି । ଆଖି ଖୋଲିଲେ ତୋର ଭଲ ଛଡ଼ା କେବେ ମନ୍ଦ ମନାସି ନାହିଁ । କାଲି ତୁ ବିଧବା ହେଲୁ, ତୋ ଦୁଃଖରେ ମୁଁ ଦୁଃଖୀ ହେଲି । ଆଉଥରେ ସଂସାର କରିବୁ ନାହିଁ ବୋଲି ମୁଁ ଖୁସି ହେଲି । ପୁଣି ସୁରକୁ ଯେବେ ନୂଆ ସଂସାର କରିବାକୁ ମନ କଲୁ ଜାଣି ମୁଁ ଅଧିକ ଖୁସି ହେଲି । ତୋର ସୁଖ ଆନନ୍ଦ ମୁଁ ଦେଖିବାକୁ ଚାହେଁ, କାରଣ ଗୁଣ୍ଡ ଭିତରେ, କେଜାଣି ବା ଏ ଦେହର ବାହାରେ ତତେ ମୁଁ ନିଜର ଗୋଟିଏ ଅଂଶ ବୋଲି ମନେ କରେ । ତୋ ଭିତରେ ଓ ମୋ ଭିତରେ ଆଉ କାହାରି ଛବି ଆସି ପାରେ ନାହିଁ । ତୁ ଅନ୍ୟ ସଂସାର କଲେ ମୁଁ ଭାବିବି ସତେକି ମୋର ଗାଈଟା ଆଉ କାହା ଗୁହାଳରେ ବନ୍ଧା ହୋଇଛି, ଥାଉ, ଭଲରେ ଥାଉ, ମୋର ଗାଈ । ଆଈ ଏ କଥା ଶୁଣିଥିଲା, ମନେମନେ ଗୁଣି ହେଉଥିଲା । ସେଦିନ ସଞ୍ଜବେଳେ ତୋ ପାଖକୁ ମତେ ସେଥିପାଇଁ ସେ ପଠାଇ ଥିଲା ।

ମୋର ଦୁଇ ଆଖି ଲୁହରେ ଭରି ଯାଇଥିଲା । ମୁଁ ଅଧ ବାଟରେ ଅଟକି ଯାଇ କହିଲି, ଚେମାଇ ତମ କଥା ମୁଁ ବିଶ୍ୱାସ କରୁଛି । ତମ ମନରେ ଯଦି ଏହା ଥିଲା ତ ଆଗରୁ କହିଲ ନାହିଁ କାହିଁକି ? ତମରି ଗୋଡ଼ତଳେ ନିଜକୁ ସମର୍ପି ଦେବାର ଆଶା ଓ ଆଗ୍ରହ ମୋ ମନରେ ଥରକୁ ଥର ଆସିଥିଲା, ମୁହଁ ଫିଟି ନ ଥିଲା । ତଥାପି, କେତେ ଥର ମୁଁ ପ୍ରକାରାନ୍ତରରେ ସେ କଥା ତମକୁ ଜଣାଇ ଦେଇଥିଲି । ତମେ ସବୁଦିନ ପରି ଥଟା ନକଲ କରି ମୋ ଆଗ୍ରହକୁ ଦୂରେଇ ଦେଇଛ । ମନରେ ମୋର ଦୁଃଖ ଓ ଅଭିମାନ ଆସିଲା । ଭାବିଲି, ଚେମାଇର ମନରେ ଦୁଃଖ ଦେଇ ଅନ୍ୟ ସଂସାର କରିବାକୁ ମୁଁ ଗଲି, ଫେରି ଆସି ହତାଶ ହେଲି । ସେ ସଂସାର ମୋର ପୋଡ଼ି ଜଳି ଗଲା । ମୁଁ ପିଲାର ମା, ମୁଁ ବିଧବା, ଚେମାଇ ମତେ ଘୃଣା କରେ, ଆମର ରଜାରାଣୀ ଖେଳ ତ ସପନ ହୋଇଥିଲା, ଏବେ ହେଲା ସାତ ସପନ । ସେଥିପାଇଁ,—ସେଥିପାଇଁ—

ଆଉ କହି ପାରିଲି ନାହିଁ ।

ଆଖି ଛଳ ଛଳ କରି କହିଲା, ମୁଁ ନିର୍ବୋଧ, ତୋ ମନ କଥା ମୁଁ ବୁଝିପାରି ନ ଥିଲି । ତୋ ମନରେ ଆଘାତ ଦେବି ନାହିଁ ବୋଲି ମୋ ମନର କଥାକୁ ତୋ

ଆଡରେର ଓଲଟାଇ କହୁଛୁ । ହୁଏ ତ ତୁ ବୁଝିବୁ ପରହାସ । ଖୋଲି କହିବାକୁ ସାହସ କରୁ ନାହିଁ । ଦୂରେଇ ଆସି ମଧ୍ୟ ତୋ ପଛରେ ମୋ ମନଟାକୁ ଟୋଡ଼ାଇ-ବାକୁ ଛାଡ଼ି ଦେଇଛୁ ।

ଲୁହ ପୋଛି କହିଲି, ସେଦିନ ସଞ୍ଜବେଳେ ତମେ ସବୁ କଥା ଖୋଲି କହିଲ ନାହିଁ କାହିଁକି ?

ତୋ ସଙ୍କଳ୍ପରେ ବାଧା ଦେବାକୁ ମୋର ଇଚ୍ଛା ହେଲା ନାହିଁ । ସୁରକୁ ତୁ ବିବାହ କରି ସୁଖରେ ରହିବୁ, ସେଥିରେ ମୋର ଆନନ୍ଦ ।

ତୁନି ହୋଇ ଦୁହେଁ ଖଣ୍ଡେ ଦୂର ଚାଲିଗଲୁ । ଛାତିରେ ଦୁଇଟା ଭାବର ଟଣା ଓଟରା ଲାଗିଥାଏ । ଗୋଟାଏ ଆଡ଼େ ସୁର, ଅନ୍ୟ ଆଡ଼େ ଟେମାଇ । ଦିହେଁ ମତେ ଭଲ ପାଆନ୍ତି, ଦୁହିଁକୁ ମୁଁ ଭଲ ପାଏଁ, ବିଶ୍ୱାସ କରେ । ଜଣକର ହାତ ଧରି ସଂସାର କରିବାକୁ ଗଲେ ଆର ଜଣର ମନ ଭାଙ୍ଗିଯିବ । ଜଣକୁ ତ ବାଛି ନେବାକୁ ହେବ । ମୋର ପିଲାଟିର ସ୍ୱାର୍ଥ ଦେଖିବାକୁ ଗଲେ, ସୁରଙ୍କ ହାତ ଧରି ଯିବା ଭଲ ।

ଏ ଦୁନିଆଁରେ ଜଣକ ଉପରେ ଶହେ ଲୋକଙ୍କର ଆଖି ପଡ଼େ, ମନ ଟାଣି ହୋଇ ଆସେ, କଲବଲ ହୁଏ, ତା' ବୋଲି ତ ସ୍ତ୍ରୀ ହେଉ, କି ପୁରୁଷ ହେଉ, ଶହେ ଜଣଙ୍କୁ ନେଇ ଘର କରିବ ନାହିଁ । ଶହେ ଜଣଙ୍କର ମନର ତାପ ଲିଭାଇବ ନାହିଁ ! ଜଣକୁ ଜଣେ, ଏହା ତ ସଂସାର କଥା । ଅନ୍ୟମାନଙ୍କୁ ତାଙ୍କର ମନର ମଣିଷ ଅନ୍ୟଠାରେ ଖୋଜିବାକୁ ହେବ । ଝୁରି ମରିବା ଦୁର୍ବଳତା ଓ ଓଲଟମି ।

ଏଇ ସବୁ କଥା ଟେମାଇକୁ କହିଲି । ସେ ତୁନି ହୋଇ ସବୁ ଶୁଣିଥିଲା । କିଛି ଉତ୍ତର ଦେଲା ନାହିଁ । ମୋର ମନେ ହେଲା, ଯେପରି ସେ ମୋର ସବୁ କଥା ଠିକ୍ ବୋଲି ଗ୍ରହଣ କଲା ।

କହିଲି, ଲୋକେ ଭାବନ୍ତି ଦଇବର ଘଟସୂତ୍ର, ଯାହା ହାଣ୍ଡିରେ ଯିଏ ଚାଉଳ ପକାଇଛି ବାନ୍ଧି ଭୋଗତମାନ ହେବ । ମୁଁ ଦିନେ ଏହା ବିଶ୍ୱାସ କରୁଥିଲି । ପରେ ମୋ ଧାରଣା ବଦଳିଲା । କେତେବେଳେ କଅଣ ଘଟିଯାଏ-ଟେମାଇ, ମଣିଷର ଆଗରୁଁ ଜାଣିବା ସମ୍ଭବ ନୁହେଁ । ଘଟଣା ଉପରେ ମଣିଷର ଦୃଷ୍ଟି ନ ଥାଏ । ଘଟିଲା ଘଟଣାକୁ ଝୁରି ହେବା ସାର ହୁଏ, ମଣିଷ ଦୁଃଖ ପାଏ ।

ଟେମାଇ ହସିଲା । କହିଲା, ଝୁରିବାରେ ଆନନ୍ଦ ଅଛି ତୁଳସୀ, ସଂସାର କରିବାର ଆନନ୍ଦରୁ ସେ ଆନନ୍ଦ ଊଣା ନୁହେଁ । ଦୁର୍ବଳତା କହ, କି ଓଲଟମି କହ, ଝୁରିବାର ଆନନ୍ଦ ଯେ ବୁଝେ ସେ କାହିଁକି ଅନ୍ୟ ସଂସାର କରିବ ? ଯାଉ ସେ କଥା । ମୁଁ ତତେ ଗୋଟିଏ ଅନୁରୋଧ କରିବି, ତୋ ପ୍ରତି ମୋର ସବୁ ସ୍ନେହର ବଦଳରେ, ମୋର ଅନୁରୋଧ ତତେ ଥରଟିଏ ରଖିବାକୁ ହେବ ।

ମୁଁ ତୁନି ରହିଲି ।

ସେ କହିବାକୁ ଲାଗିଲା, ଶେଷ ବେଳରେ ଜେମି ଅଈର ଓଠରେ ହସ ଦେଖିବାକୁ ମୁଁ ଚାହେଁ । ତୋତେ ହୁଏ ତ ସେ ପଚାରିବ । ତୁ ହଁ ନ କହି ପଛେ, ନାହିଁ କରିବୁ ନାହିଁ । ତୋ ମୁହଁର ହସ, ତୋ ନୂଆ ବେଶ, ଆଉ ମୋର ପାଖରେ ଠିଆ ହୋଇ ତୋର ନୀରବ ଭାବ ଦେଖି ସେ ନିଶ୍ଚିନ୍ତ ଶାନ୍ତିରେ ଆଖି ବୁଜିବ । ପିଲା ଦିନର ଖେଳ କୌତୁକ ପରି, ଏ ବି ଅଙ୍କ ହେବ ଆମର ଆଉ ଥରେ ଖେଳ । ତା ପରେ, ସୁରକୁ ନେଇ ତୁ ସଂସାର କର ତୁଳସୀ, ଆଉ, ତୋତେ ଝୁରି ସପନରେ ମୁଁ ମୋର ଘର ସଂସାର ଗଢ଼ିବି, ମୋର ଗାଈଗୋରୁ ପଲ ମଝିରେ ଘୁମେଇଁ ଘୁମେଇଁ ଶୋଇ ପଡ଼ିବି ।

ତା କଥା ଶୁଣି ମୋ ମନରେ ଦୁଃଖ ହେଲା । ତାର ଅଭିମାନରେ ମୋର କଅଣ ଅଛି ? ମିଛିଟାପେ ଏମିତି ଚୁଟି କଥା କହି ଜାଲରେ ପକାନ୍ତି । ସେଇଠୁ ନେଇ ଖୋଳେଇରେ ରଖନ୍ତି । ଯାହାହେଉ, ସୁର ମୋର ଆଗ । ସେ ମନୁଆର ଦାଦା ।

ତଥାପି, ଚେମାଇ ସଙ୍ଗେ ତା ଘରକୁ ଗଲି ।

ଚେମାଇର ଆଶା ରହିଲା ନାହିଁ । ଆମେ ଦିହେଁ ପାଖାପାଖି ହୋଇ ଜେମି ଅଈର ପାଖରେ ଠିଆ ହେଲୁଁ, ମୁଣ୍ଡରେ ଗୋଡ଼ରେ ହାତ ମାରିଲୁ, ଗାଁ ଲୋକେ ଜମା ହୋଇଥାଆନ୍ତି । ବଇଦ ନାଡ଼ି ଦେଖି କହିଲେ, ଆଉ କାହିଁକି ଯତ୍ନ, ବୁଢ଼ୀର ମୁଦିଲା ଆଖି ଆଉ ଖୋଲିବ ନାହିଁ ।

ଚେମାଇ ମତେ ଚାହିଁଲା, ମୁଁ ଚାହିଁଲି ତାକୁ । ଦୁହିଙ୍କ ଆଖିରେ ଲୁହ ଛଳ ଛଳ ହେଲା । ଏକ ସଙ୍ଗେ ଦିହେଁ ଲୁହ ପୋଛିଲୁ ।

କେତେ ସମୟ ତୁନି ହୋଇ ବସିଲୁ କେଜାଣି, ଘରୁ ସମସ୍ତେ ଚାଲି ଯାଇଥିଲେ । ସଞ୍ଜ ମାଡ଼ି ଆସୁଥାଏ ।

ଚେମାଇ ମୁଣ୍ଡ ଟେକି କହିଲା, ଏଥର ତୁ ଯା ତୁଳସୀ, ମୁଁ ନିଶ୍ଚିନ୍ତ ହେଲି । ତୋତେ ଆଉ କେବେ ବିରକ୍ତ କରିବ ନାହିଁ । ଗାଈ ଗୋରୁ ମେଳରେ ମୋର ଏକୁଟିଆ ଜୀବନ ବେଶ୍ ନିଶ୍ଚିନ୍ତରେ କଟିଯିବ ।

ଘରେ ଆସି ପହଞ୍ଚିଲା ବେଳକୁ ସଞ୍ଜ ହୋଇଥିଲା । ଆଖିରୁ ଲୁହ ବନ୍ଦ ହେଉ ନ ଥାଏ, ଜେମିଅଈ ପାଇଁ ନୁହେଁ, ଚେମାଇ ପାଇଁ ।

## ୩୧

ସୁର ଆସିଥିଲେ । ଘରେ ବୋଉ ପାଖରେ ବସି ଗପ କରୁଥିଲେ । ମନୁଆଁ ଏପାଖ ସେପାଖ ହେଉଥାଏ । ସୁରଙ୍କୁ ଦେଖି ଆନନ୍ଦରେ ମୋର ପେଟ ପୂରି ଉଠିଲା । ଜେମି ଅଈର ମରଣ ଆଉ ଚେମାଇର ଆଖିର ଲୁହ ମୋ ନୂଆ ଆନନ୍ଦର ପଛପଟେ ଲୁଚି ରହିଲା । ଯେଉଁ ସୁରଙ୍କୁ କାଲି ଶ୍ରେଷ୍ଠ ଭାଇଟି ପରି

ଦେଖୁଥିଲି, ତାଙ୍କର ଢଙ୍ଗ ଦେଖି ତାଙ୍କୁ ଅତି ପିଲାଟି ପରି ବ୍ୟବହାର କରୁଥିଲି, ତାଙ୍କରି ଆଗକୁ ଯିବାକୁ ଲାଜଲାଜ ମାଡ଼ିଲା, ଗୋଡ଼ ଚଳିଲା ନାହିଁ । ମୋ ଆଖିରେ ସେ କେଡ଼େ ବଡ଼ ଦେଖାଯାଉଛନ୍ତି, ତାଙ୍କ ଆଗରେ ନିଜକୁ ମୁଁ ପିଲାଟିଏ ପରି ଅନୁଭବ କଲି ।

ସୁରି, ମୋର ସପନ ପ୍ରତିମା, ମୋ ତପସ୍ୟାର ଫଳ । ମନରେ ତାଙ୍କ ବିରୁଦ୍ଧରେ ଯେବେ କେବେ ତୋଫାନ ଉଠିଥିଲା ସେତକ କେବଳ ତାଙ୍କୁ ପାଇବା ପାଇଁ । ପାଇବାର ଆଗ୍ରହ, ପାଇବାର ମୋହ ଆପେ ଆପେ ତାଙ୍କରି ଆଡ଼କୁ ଧାଇଁ ଯାଇଥିଲା । ଭୁଣ୍ଡ ବାଇଦର କୁହାଟ କେବେ କପଟ ଭାବନାରେ ତୋଫାନ ଆଣିଲା, ତାଙ୍କରି ପାଖରୁ ମନଟାକୁ ଘଉଡ଼ି ଦେବାକୁ । ଭୁଣ୍ଡବାଇଦ ପଛରେ ରହିଛି, ଦୂରରେ ।

ସୁରି ଆଜି ଆସିଛନ୍ତି । ବେଳ ବାହୁଡ଼ିଛି ।

ଧୀରେ ଧୀରେ ଘର ଭିତରକୁ ଗଲି । ମତେ ଦେଖି ସୁରି ବିଛଣାରୁ ଉଠି ତଳେ ମୁଣ୍ଡ ଲଗାଇ ପ୍ରଣାମ କଲେ ।

ଲାଜ ଲାଗିଲା, କେମିତି ଖରାପ ବି ଲାଗିଲା ।

ମନୁଆ ଧାଇଁ ଆସି କୁଣ୍ଢାଇ ଧରି କହିଲା, ମା, ଦାଦା ଆସିଛି ।

ତାକୁ କୋଳକୁ ନେଇ ବୋଉ ପାଖରେ ବସିଲି । ମନେ ମନେ ଗୁଣି ହେଉଥାଏଁ, ସୁରି ପ୍ରଣାମ କଲେ କାହିଁକି ?

ବୁଝିଲି, ଲୋକ ଦେଖଣା, ପୁରୁଣା ଅଭ୍ୟାସ । ଯେତେଦିନ ଯାଏ ସେ ମୋ ହାତ ଧରି ନାହାନ୍ତି, ସେତେଦିନ ଯାଏ ମୋ ଦିଅର ।

ବୋଉ ପଚାରିଲା, ଏତେବେଳ ଯାଏ କ'ଣ କରୁଥିଲୁ ମା ?

ଚେମି ଅଇର ମରଣ କଥା ତାକୁ କହିଲି । କାହିଁକି ମତେ ଚେମାଇ ଡକାଇ ଥିଲା ସେ କଥା ସୁରିଙ୍କ ଆଗରେ ଖୋଲି କହିବାକୁ ସାହସ ହେଲା ନାହିଁ ।

ବୋଉ ଭାରି ବ୍ୟସ୍ତ ହେଲା, ଦୁଃଖ କଲା, କହିଲା ମଲାନାହିଁ ଯେ ବୁଢ଼ୀ ତରିଗଲା । ଚେମାଟା ମଣିଷ ନୁହେଁ । ବୁଢ଼ୀର ଆଗ୍ରହ ଥିଲା । ଚେମାର ହାତକ ଦି ହାତ ହୋଇଥାନ୍ତା, ତା କୋଳରେ ପିଲା ବକଟେ ଦେଖି ଖୁସିରେ ଆଖି ବୁଜିଥାନ୍ତା । ଚେମା ତ ଏକ୍ ଜିଦ୍ ଧରି ବସିଲା, ବାହା ହେବ ନାହିଁ । ବୁଢ଼ୀ ଦୁଃଖ କରି କହେ । ଆଲୋ ତୁଳସୀ, ମଣିଷର ଆଶା ରହେ ନାହିଁ ଲୋ, ଆଇସ ବି ଗୃହିଁ ବସେ ନାହିଁ । ବେଳ ଗଡ଼ି ଗଲେ, ମଣିଷ ଦିନେ ଚିରଦିନ ପାଇଁ ଆଖି ବୁଜେ । କେତେ ଛଟପଟ ଆଶା ଅପୂରଣ ରହିଯାଏ । ଦୁନିଆ ତ ଏମିତି ଚାଲିଛି, ସେଥିକି ଦୁଃଖ ନାହିଁ । ସବୁ ରହିଯାଏ ଅଧା ।

ସବୁ ରହିଯାଏ ଅଧା । ସତ କଥା ! ଭାବିଲା ବେଳକୁ ଗୁଡ଼ିଏ ଥର ଉଠେ । କେତେ ବାଟ ଯାଇ କାହାର ସଞ୍ଜ ହେବ କିଏ ଜାଣେ ? ତଥାପି, ମଣିଷ ହିନର ଆଲୁଅ ଲୋଡ଼େ, ଝଣ୍ଟେଇହୁଡ଼ି ଆଗେଇ ଯିବାକୁ ଚେଷ୍ଟା କରେ । ଅସରନ୍ତି ବାଟ, ଶେଷ ନାହିଁ । ବାଟ ମଝିରେ ବେଳ ବୁଡ଼େ, ଅନ୍ଧାର ହୁଏ, ସବୁ ହୁଏ ଅଦୃଶ୍ୟ ।

କେତେବେଳଯାଏ ସମସ୍ତେ ତୁନି ହୋଇ ବସିଲୁ । ବୋଉ ତା ଜୀବନର ସଞ୍ଜବେଳ କଥା ଭାବୁଥିଲା । କିନ୍ତୁ ମୁଁ ଭାବୁଥିଲି, ଅନ୍ଧାର ପରେ ମୋ ଜୀବନରେ କେବେ ଆସିବ ଆଲୁଅ !

ବୋଉ କହିଲା, ସୁର କେତେବେଳୁ ଆସିଲାଣି, କିଛି ଖାଇନାହିଁ, ମନା କଲା । ମୁଁ ଯାଉଛି ଗଣ୍ଡାଏ ଫୁଟାଇ ଦିଏ । ତୁ ବସି କଥା ଭାଷା ହେଉଥା । ଆଉ ଉବରଟା କାହିଁ ?

ବୋଉ ଉଠିଗଲା । ବୁଝିଲି, ସୁରଙ୍କ ସଙ୍ଗେ ମନ ଖୋଲି କଥାଭାଷା ହେବାକୁ ମୋତେ ସୁଯୋଗ ଦେବାକୁ ସେ ଜାଣି ଜାଣି ଉଠିଗଲା । ସୁରଙ୍କୁ ମୁଁ କଅଣ ପଚାରିବି, କିପରି ବା କଥା ଆରମ୍ଭ କରିବି, ବୁଝି ପାରିଲି ନାହିଁ । ମନୁଆଟା ଆନନ୍ଦରେ ଏ କୋଳରୁ ସେ କୋଳ ହେଉଥାଏ ।

ଏଣୁ ତେଣୁ ପାଞ୍ଚ କଥା ପଡ଼ିଲା । ଗାଁରେ କିଏ କିପରି ଅଛି, ଘର ବାହାର ଅବସ୍ଥା, ମୂଲପାଛର ଦର । କିଛି ସମୟ ପରେ ସଙ୍କୋଚ ଘୁଞ୍ଚିଗଲା । ହସ କୌତୁକରେ ମନଖୋଲା ଗପ ! ଗୋଟିଏ କଥା ପଚାରିବାକୁ କାହାର ଭରସା ହେଉ ନ ଥାଏ । ଦୁହେଁ ଦୁହିଁଙ୍କର ମନ କଥା ଜାଣୁ, ତଥାପି, ସଙ୍କୋଚର ପରଦା ଖୋଲି ସାହସ କରି କେହି କାହାର ଆଗକୁ ଆସିବାକୁ ଆଗଭର ହେଉ ନାହିଁ ।

ମନୁଆଁ ଖେଳୁ ଖେଳୁ ଶୋଇ ପଡ଼ିଲା । ତାକୁ ବିଛଣାରେ ଶୋଇ ଦେଇ ସୁରଙ୍କ ଆଡ଼କୁ ଘୁଞ୍ଚି ବସିଲି । ଲୁଗାପଟା ସଜାଡ଼ି ନେଇ ଆରମ୍ଭ କଲି, ଦୁନିଆଁରେ ମଣିଷର ଯେତେ ଦୁଃଖ ହୁଏ, ସୁର, ତା ମୂଳରେ ଥାଏ କଅଣ ଜାଣ ? ପରସ୍ପରକୁ ଭୁଲ ବୁଝିବା । କେହି କାହାର ମନ କଥା ଜାଣି ପାରନ୍ତି ନାହିଁ । ମନ ଖୋଲି କହି ହୁଏ ନାହିଁ । ମଣିଷ ଭୁଲ୍ ବୁଝେ । ଆଉ, ସେହି ଭୁଲ୍ ପଛରେ କଳିହୁଡ଼ୀ ମନ୍ଥରା ଛପି ଛପି ଚାଲେ ।

ସୁର ହସିଲେ । କହିଲେ, ସବୁ କଥା ଆମେ ଜାଣୁ । ତଥାପି, ମଣିଷ ଜାଣି ଜାଣି ମନ୍ଥରାର କଥା ଶୁଣେ, ଘର ଗୁଡ଼ି ଡାଣ୍ଡକୁ ଆସେ, ଅଭିମାନରେ ନିଜେ ଦୁଃଖ ଭୋଗେ, ନିଜ ଲୋକଙ୍କୁ ଦୁଃଖ ଦିଏ । ଦିନ ଗଡ଼ିଯାଏ, ଶେଷରେ ମଣିଷ ତାର ଭୁଲ ବୁଝେ । ଭଙ୍ଗା ଘର ନୂଆ କରି ଗଢ଼ାଯାଏ, ଦିନ ଆସେ ।

ସୁରଙ୍କର କଥା ବୁଝିଲି । ଆବରଣ ରଖି କଥା କହିବା ଦରକାର କଅଣ ? ଆଗ୍ରହରେ କହିଲି, ସୁର, ଗତ କଥା ପୋଡ଼ିଯାଉ । ଆମେ ଆମର ନୂଆ ଘର

ଗଢ଼ିବା, ମନରୁ ସନ୍ଦେହ ଓ ଅବିଶ୍ୱାସ ତଡ଼ିବା । ବାର ଲୋକେ ବାରକଥା କହିବେ । ପାଟି ଢୋଲ ହେବ, ଦେହସହା ହେବ । ମନକୁ ସେମାନେ ଭୁନ ହେବେ । ଆମେ ମନୁଆଁଙ୍କୁ ମଣିଷ କରିବା ।

ସୁର ଖୁସି ହେଲେ । କହିଲେ ସତେ, ସତେ, ତମ କଥାର ଆଉ ଅନ୍ୟଥା ହେବ ନାହିଁ ? ମୋତେ କେବେ ଆଉ ଅବିଶ୍ୱାସ କରିବ ନାହିଁ, ଭୁଲ୍ ବୁଝିବ ନାହିଁ ? ଦାଣ୍ଡଲୋକଙ୍କ କଥାରେ କାନ ଦେବ ନାହିଁ ?

ଆଖିରୁ ଲୁହ ଝରିଲା । କହିଲା, ମତେ କ୍ଷମା କର, ତମକୁ କେତେ ଅବହେଳା କରିଛି । ତମ ମନରେ କେତେ କଷ୍ଟ ଦେଇଛି । ବିଶ୍ୱାସ କର ସୁର, ସେଥିପାଇଁ ଦିନରାତି ଅନୁତାପ ମଧ୍ୟ କରୁଛି । ଛଟପଟ କଲବଲ ହୋଇ ଆଖି ଲୁହରେ ବେଳ କଟାଇଛି । ସବୁଦୋଷ ମୋର ।

ବୋଉ ଆସି ପହଞ୍ଚିଲା । କହିଲା, କଟରେ ଭାତ ଖାଇବ ନାହିଁ କି, ଦୋଷ ଗୁଣ କଥା ଏତେ ପଡ଼ିଛି କାହିଁ କି ? ଦିହେଁତ ପିଲା, ନିର୍ବୋଧ, ସଂସାରରେ ଅନେକ କଥା ଶିଖିବାକୁ ବାକି ଅଛି । ମଣିଷ ମରିବାଯାଏ ଶିଖୁଥାଏ, ଭୁଲ କରୁଥାଏ, ତାହା ଯଦି ହେଉ ନ ଥାନ୍ତା, ମଣିଷ ମରନ୍ତା ନାହିଁ କି ଏ ସଂସାରରେ ଦୁଃଖ ବୋଲି କିଛି ନ ଥାନ୍ତା । ଆସ ଖାଇବ ।

ସୁର କହିଲେ, ମାଉସୀ, ତୁମେ ବି ଆମ ସଙ୍ଗେ ଯିବ, ମନୁଆଁର ଯତ୍ନ ନେବ, ଆମର କଳିଆ ଭାଙ୍ଗିବ । ନୂଆଉ ମୋ ସଙ୍ଗେ ନିତି କଳିଆ କରନ୍ତି ।

କହିଲା, ତେମେ ଏକା ଭାରି ସୁଧାର ମଣିଷ !

ବୋଉ କହିଲା, ହଁରେ ଯିବି । ବେଳକାଳ ସରି ଆସିଲା । ଶେଷ ବେଳକୁ ତମରି ହାତରେ ନିଆଁ ଟିକେ ପାଇଲେ ମୋର ଆତ୍ମା ମୋକ୍ଷ ହୋଇଯିବ । ତେମେମାନେ ତ ମୋର ସବୁ !

ରାତି ଅଧ । ସୁର ଯିବାକୁ ବାହାରିଲେ । ଛାଡ଼ିଦେଲି ନାହିଁ । ତାଙ୍କର ହାତ ଧରି କହିଲି, ଭୁଣ୍ଡବାଇଦ, ଦୁର୍ନାମକୁ ଆଉ ମୋର ଡର ନାହିଁ । ଶୁଣି ଶୁଣି କାନ ବଧିର ହେଲାଣି ।

କହିବାକୁ ମନ ହେଉଥିଲା, ତମକୁ ଛାଡ଼ି ମୁହୂର୍ତ୍ତେ ଆଉ ଏକା ରହି ପାରିବି ନାହିଁ । ଭୁଣ୍ଡ ଅଟକିଗଲା ।

ସୁର କହିଲେ, ଗୋଟିଏ ଘରେ ସାରା ଜୀବନ ଆମେ ଦିହେଁ ସମସ୍ତେ କାଟିବା, ଲୋକଙ୍କ କଥାରେ କାନ ଦେଲେ ଚଳିବ କିପରି ? ଅନେକ କାମ ବାକି ଅଛି । ଦୁଇ ତିନି ଦିନ ପରେ ତେମେ ସବୁ ଯିବ । ମୁଁ ନିଜେ ଆସିବି ନେବାକୁ । ବାକିଆ କାମ ଛିଣ୍ଡାଇ ଆସେଁ ।

ପାହାନ୍ତାରୁ ଉଠି ଚାଲିଯିବ ପଛେ ।

ରହିବାକୁ ମାଗିଲେ ।

ମିଳନଲୋଭୀ ଉପାସୀ ଦେହ ତାଙ୍କର ଦେହର ନିବିଡ଼ ପରଶ ପାଇଁ ଆକୁଳ ହୋଇ ରହିଁ ରହିଥିଲା । ଉତ୍ତେଜନା ରକ୍ତର ପ୍ରବାହ ବେଗ କରିଥିଲା । ଯୌବନ ପାଗଳ ହୋଇ ଉଠିଲା, ଧୈର୍ଯ୍ୟ ମଥା ନୋଇଁଲା । ଦୁନିଆଁ ଶୂନ୍ୟ ଦିଶିଲା ।

ବୋଉ ଡାକିଲା, ଶୋଇବ ନାହିଁ କି ?

ଶୋଇଲୁଁ, ଗୋଟିଏ ଘରେ । ବୋଉ କୋଳରେ ମନୁଆ, ତା ପାଖରେ ମୁଁ, ଟିକିଏ ଦୂରେଇ ଅଡ଼ ଖଣ୍ଡେ ସପରେ ସୁର । ସୁର ଶୋଇଲେ ନିଦରେ, ମୋ ଆଖିକୁ ନିଦ ନାହିଁ । ଅକାଶ ପାତାଳ କେତେ କଅଣ ଭାବୁଁ ଭାବୁଁ ପାହାନ୍ତା ହେଲା । କେତେ ଦୂରରୁ କେଜାଣି କୁକୁଡ଼ାର ଡାକ ଶୁଭିଲା । ଉଠିଲି । ତାଙ୍କର କପାଳରେ ହାତ ରଖି ଡାକିଲି, ଉଠ ସୁର ।

ସୁର ଉଠିଲେ ।

ଯାଉଛ ନୂଆଉ, ଡେରି ହୋଇଯିବ ।

ଆଖି ଛଳ ଛଳ କରି କହିଲି, ଯାଅ, କେବେ ପୁଣି ଆସିବ ?

ଦୁଇଦିନ ପରେ । ତେମେ ସବୁ ଏକା ପ୍ରସ୍ତୁତ ଥିବ ।

ଫିକା ପାହାନ୍ତିର ଅନ୍ଧାର ସାଥିରେ ଛପିଯିବା ଯାଏ ତାଙ୍କର ଅଡ଼କୁ ଗୁହିଁ ରହିଥିଲି ।

୩୨

ମନ କାହିଁ ଲାଗୁ ନ ଥାଏ । କାମ କରିବାକୁ ହାତ, ଗୋଡ଼ ଚଳୁ ନ ଥାଏ । କାନ୍ଦକାନ୍ଦର କୋହ ଉଠୁଥାଏ ପେଟ ଭିତରୁ । ଯେପରି କଅଣ ହଜାଇଛି । ଗୃହଅଡ଼କୁ ଗୃହେଁ, କିଛି ଦେଖେ ନାହିଁ । ଆଖି ଦୁଇଟା ମନ ଭିତରେ ଏ କନ୍ଦ ସେ କନ୍ଦ ବୁଲୁଥାଏ, ମନ ଧାଇଁଥାଏ ସୁରଙ୍କ ପଛରେ ।

ଦୁଇ ଦିନ ! କେମିତି କଟିବ ? ଦୁଇ ଘଡ଼ିର ଯନ୍ତ୍ରଣା ସହି ହେଉ ନାହିଁ ।

ଆଖିପତା ମାଡ଼ି ମାଡ଼ି ପଡ଼ୁଥାଏ । ଯାହାର ଦେହର ପରଶ ପାଇଁ ଉପାସୀ ଦେହ ଅସ୍ଥିର ହୋଇ ପଡ଼ିଥିଲା, ମନକୁ ଉତ୍ତେଜିତ କରିଥିଲା ପାଗଳ ହେବାକୁ, ଲାଜ, ଭୟ, ସଙ୍କୋଚ, ପୁରୁଣା ପ୍ରଥା, ପୁରୁଣା ସଂସ୍କାରର ବାଧାକୁ ନ ମାନି ଯାହାର ଦେହ ସଙ୍ଗେ ମିଶି ଯିବାକୁ ରକ୍ତରେ ଲାଗିଥିଲା ନିଆଁ, ସେ ନାହାନ୍ତି, ଦୁଇଦିନ ପରେ ଆସିବେ, ଦୁଇଦିନ ।

ଅଛି ପାଖରେ ଦୁଇଟା ଦେହ, ତହିଁରେ ଛଟପଟ ଅସ୍ଥିର ଦୁଇଟା ମନ, ମିଶି ଏକାକାର ହେବାକୁ ପ୍ରବଳ ଇଚ୍ଛା । ମଝିରେ ସହସ୍ର କୋଶର ଦୂରତ୍ୱ କିଏ

ଅଣିଦେଲା ? ନୀରବ ନିର୍ଜନ ସ୍ଥଳ । ଶବ୍ଦ ଶବ୍ଦ ଲୋକଙ୍କର ଉପସ୍ଥିତି ଅନୁଭବ କଲା କାହିଁକି ? ମିଳନ ରଙ୍କୁଣୀ ଦେହଟା ପାଗଳ ହୋଇ ଉଠିଲା, ଆକର୍ଷଣର ଡୋରରେ ଟାଣିହୋଇ ଯାଉଥିଲା । ଦୁଇଟା ଦେହର ମଝିରେ ଏତେ ବଡ଼ ବ୍ୟବଧାନ, ଏତେ ଲୋକଙ୍କର ଉପସ୍ଥିତି କିଏ ସୃଷ୍ଟି କଲା ?

ଧର୍ମ, ସମାଜ, ସଂସ୍କୃତି । ସବୁ ଏଇ ମଣିଷ ହାତରେ ଗଢ଼ା । ମନର ଅରଣା ଦଉଡ଼ ଆଗରେ ଠିଆକରି ବାଧା ଦେବାକୁ ମଣିଷ ଗଢ଼ିଛି । ଲାଜ, ଭୟ, ସଙ୍କୋଚ, ଇତ୍ୟାଦି ତ ଏକା କଥା । ମଣିଷ ଗଢ଼ା ନିୟମର ପ୍ରକାର । ନ ମାନି ଚଳି ହେବ ନାହିଁ । ସୃଷ୍ଟି କରିବାର ଇଚ୍ଛା ପ୍ରବଳ ହେଲେ ମିଳନର ଆଗ୍ରହକୁ ଦାବି ହେବନାହିଁ, ଆକର୍ଷଣର ଧାପ ସହି ହେବନାହିଁ, ସବୁ ପ୍ରଥା ଓ ନିୟମର ବାଡ଼ବତା ଭାଙ୍ଗି ପଡ଼ିବ । ଦେହ ଦେହର ମିଳନ ହେବା ହେଉଛି ଦୁନିଆର ନୀତି । ଭୁଣ୍ଡବାଇଦ ରହିଛି ତା ପରେ, ଛି, ଛି, ଅମୁକଟା, ଛିଃ, ଅଧର୍ମ କଥା, ଅନାଚାର କଥା, ଅଜାତି କଥା । ସବୁ ସତ, ସବୁ ଠିକ୍ ।

ଲାଜ, ଭୟ, ସଙ୍କୋଚ, ଦୁଇଟା ଦେହର ମିଳନରେ ବାଧା ଦେଇଥିଲା ।

କଅଣ ବସି ଏତେ ଭାବୁଛୁ ଲୋ ତୁଳସୀ, ଦେଖିଲୁ ତେଣେ ପିଲାଟାକୁ, କି ସର ହେଲାଣି ।

ବୋଉର ଡାକରେ ଭାବନା ଭାଙ୍ଗିଲା । ମନୁଆଟା ଗୋବରରେ ଦାଣ୍ଡି ହେଉଛି ।

ଉଠିଯାଇ ତାକୁ ଟେକି ଆଣିଲି ।

ବୋଉ କହିଲା, ଯା ଗାଧୋଇ, ଡେରି ହେଉଛି ।

ବୋଉର କଥା ମାନିଲି ।

ଉପର ଓଳି, ଗୁହାଳ ନେଉଟାବେଳେ, ବୋଉ ମୋର ମୁଣ୍ଡ ବାନ୍ଧି ଦେଉଛି । କେତେ ଦିନର କେତେ କଥା ମନ ଖୁସିରେ ଗପୁଛି । କହିଲା, କେଳୁ ଦୋକାନୀର ପଇସା ଅଠଅଣା ବାକି ଅଛି ଯେ ପାଞ୍ଚଥର ମାଗି ଗଲାଣି । ପାଖରେ ତ ପଇସା ନାହିଁ । କାଲି ହାଟକୁ ଯିବୁ କି ?

କହିଲି, ଭଲ ଲାଗୁନାହିଁ ।

ଥାଉ ତେବେ । କାଲି ଛୁଡ଼ି ପହର ଦିନ ପୁର ଆସିବ । ଆମେ ଯିବା ଆଗରୁ କେଳୁଆର ଧାର ସୁଝି ଦେଇ ଯିବା ।

ଜବାବ ଦେଲିନାହିଁ ।

ଟିକିଏ ରହି କହିବାକୁ ଲାଗିଲା, ସବୁ ଆୟୋଜନ ପୁର ସେଇଠି କରିବ । ଆମେ ନଅଣ୍ଟୀ ଗଢ଼ିବ । ଗହଣା ଭିତରେ ନମକାଠି ପରି ସମ୍ପତ୍ତି ଏଇ ଉହ ଖଣ୍ଡି ଯେ, ଟିମ୍‌ବାବୁ ତାକୁ ନିଲାମ ଉଠାଇ କେବେଠୁ ନେଲେଣି । ବାହାଘର କରିବାକୁ ହାତରେ ପଇସା ନାହିଁ । ହେଲେ, ସେଥିକି ମୋର ଚିନ୍ତା

ନାହିଁ । ଲୋକେ ନିନ୍ଦା କରିବେ ମୋତେ । ଯାହାର ନାହିଁ ସେ ସହେ । ତୁ ଖୁସିରେ ଘର ସଂସାର କର । ସବୁ ନିନ୍ଦାମିନ୍ଦାର ବୋଝ ମୁଣ୍ଡରେ ନେଇ ମୁଁ ମଶାଣିକୁ ଯାଏ ।

କହିଲି, ତୁ ଏମିତି ବ୍ୟସ୍ତ ହେଉଛୁ କାହିଁକି ? ଯଦି ସେମିତି ତତେ ଅପମାନ ହେବ, ସୁର ଆସନ୍ତୁ, ମନକଥା ଖୋଲି କହିବୁ । ତାଙ୍କ ପାଖରେ ଟଙ୍କା ଅଛି । ଆଉ କିଛି ଦିନ ଡେରି ହୋଇଯିବ ତ ! ଲୋକ ସୁଲଭ ଯାହା, କର । ସେ ଟଙ୍କା ଦେବେ ।

ଠିକ୍ କହୁଛୁ ମା । ତେବେ, ଆଉ ଡେରି କରିବାକୁ ମନ ଡାକୁ ନାହିଁ । କେତେବେଳେ ମୋର ଆଖି ବନ୍ଦ ହେବ ସେ କଥା କିଏ କହିବ ? ବଞ୍ଚି ଥାଉଁଣୁ ତୋର ସୁଖ ଦେଖିବାକୁ ମନ ଉଚ୍ଛନ୍ନ ହେଲାଣି । ହଉ, ସୁର ଆସୁ । ତା ସଙ୍ଗେ କଥା ଭାଷା କରେ ।

ମନୁଆଁକୁ ନେଇ ବୋଉ ପଦାକୁ ଗଲା । ମୁଁ ଘର ଭିତରକୁ ଗଲି । ଚୁଲିରେ କୁହୁଳା ପକାଇବି । ସହଳ ସହଳ କାମ ସାରିଦେଲେ ଶୋଇ ପଡ଼ିବି । ଅନିଦ୍ରା ଦୋଷରୁ ଆଖି ମାଡ଼ି ମାଡ଼ି ପଡ଼ୁଛି । ମୁଣ୍ଡ ବଥାଉଛି ।

ଘସି ଧୂଆଁରେ ଆଖି ମଳି ମଳି ପଦାକୁ ଆସିଲି । ବୋଉ ଡାକି ଡାକି ଆସିଲା, ଅଲୋ, ଧୂଆଁରେ ପଶି କଲବଲ ହେଉଛୁ ? ହେଇ ଲୋ, ଟିମ ବାବୁଙ୍କ ବୋଉ ଲୋକ ପଠାଇଛନ୍ତି । ତତେ ଡକେଇଛନ୍ତି । ଯା, ଶୁଣି ଆ । ମୋର ଇଚ୍ଛା ଥିଲା ତତେ ସଙ୍ଗରେ ନେଇ ସମସ୍ତଙ୍କ ଘରକୁ ଯିବି । ଏ ଗାଁରୁ, ଏ ଘରୁ ବିଦା ହୋଇଯିବା । ଆଉ କଅଣ ଫେରିବା ? କେତେ ପୁରୁଷର ଏଇ ଘରଡିହ, ବାରି । ମୋର ଗୋସେଇଁ-ଶଶୁରଙ୍କର କେତେ ଗୋସାପାଙ୍କର ହାତର ମାଟି ଏଠି ପଡ଼ିଛି । ପୁଅ କୁଳରେ ଏଇଠୁ ବଂଶ ବୁଡ଼ିଲା ଲୋ ଝିଅ, ପର ଗାଁ ମଶାଣିରେ ମାଟି ଘେନିବା ମୋ କପାଳେ ଅଛି ।

ବୁଢ଼ୀର ଆଖିରେ ଲୁହ ଭରିଲା । କହିଲା, ଯା, ଆଜି ଟିମ ବୋଉର ପାଦଧୂଳି ମୁଣ୍ଡରେ ମାରିଆ । କାହାକୁ ସିନା କହି ନାହିଁ, ଗାଁ ଲୋକେ ସବୁ ଜାଣିବେଣି ଯେ । କିଏ କହିବ ଭଲ, କିଏ କହିବ ମନ୍ଦ । ଠାକୁରେ ସମସ୍ତଙ୍କୁ ଭଲେ ମନ ଦେଇଛନ୍ତି । କାହା କଥାକୁ ଛଳ କରିବା ଉଚିତ ନୁହେଁ । ଦିନ ଦିଟା ଆଖି ପିଛୁଡ଼ା ପରି କଟିଯିବ । ତୁଳସୀ ଲୋ, ଆଜି ତୁ ଯା ଟିମ ଘରକୁ, କାଲି ତତେ ସଙ୍ଗରେ ନେଇ ଅଉମାନଙ୍କ ଘରକୁ ଯିବି । ବେଳାବେଳି ଯିବା । ଆଖି ଦିଟା ଫିକ୍କା ଦିଶୁଛି । ଦିଗାର କଜଳ ମାରି ଦେ । ଲୁଗାଟା ବଦଳି ପକା । ସୁର ଯେଉଁ ଲୁଗା ଆଣିଛି, ସେଇଆକୁ ପିନ୍ଧି ଯା ।

ଅପତ୍ତି ନ କରି ବୋଉ କଥା ମାନିଲି । ଟିମ ବାବୁଙ୍କ ଗୁକର ପିଲାଟି ସଙ୍ଗେ ତାଙ୍କ ଘରକୁ ବାହାରିଲି । ଲାଜ ଲାଜ ମାଡ଼ୁଥାଏ, ମୋ ନୂଆ ବେଶ

ଦେଖି କଏ ପଦେ ଅଶ୍ଳୀଳରେ କହି ଦେଲେ କଅଣ କରିବ, କି ଉତ୍ତର ଦେବ, ସେଇଆ ଭାବି ଡେରି ଡେରି କଲି ।

କେତେ ଲୋକଙ୍କର କେତେ ଠାଇ ଠାପରା ମନେ ପଡ଼ିଲା ।

ଛନଦନ ତଳେ—ଘାଟ କୂଳରେ ଅଭିବାବୁଙ୍କ ଝିଅ ରଙ୍ଗୀ ସଙ୍ଗେ ତର୍କ ହୋଇଗଲା । ସେ ପାଠପଢ଼ା ଝିଅ । କେତେ ପୁରାଣ ଶାସ୍ତ୍ର କଥା କହିଲା । ତଥାପି, ମନ ମାନିଲା ନାହିଁ ।

ମୋ କଥାରେ ବାଧା ଦେଇ ସେ କହିଲା, ଜଣକୁ ଥରେ ଭଲ ପାଇ, ତାଙ୍କୁ ନେଇ ସଂସାର କରି ତାର ମରଣ ପରେ ପୁଣି ନୂଆ ମଣିଷ ଦେଖି ସଂସାର କରିବାକୁ କେମିତି ମନ ଯିବ ? ତାର ପିଲା ଛୁଆ ଥିଲେ ଆହୁରି ବିଡ଼ମ୍ବନା କଥା । ନୂଆ ମଣିଷ ସଙ୍ଗେ ଖେଳ କୌତୁକ କଲାବେଳେ ଆଗ ସ୍ୱାମୀର ପିଲାଙ୍କୁ ଆଗରେ ଦେଖିଲେ କେମିତି ଭଲ ଲାଗିବ ?

କହିଲି, ଯେତେବେଳ ଯାଏ ଛାତିର ଘା ପୋଡ଼ୁଥାଏ, ମନରେ ଏଇ କଥା ଆସେ । ବେଳ ଗଡ଼ି ଗଲେ, ଘା ଶୁଖେ, ମନ ବଦଳେ ।

କହିଲା, ଘା ଶୁଖେ, ହେଲେ ଦାଗ ରହିଥାଏ ।

ଦାଗ ଚିରଦିନ ରହେ, ମନେ ପଡ଼େ, କିନ୍ତୁ ଛାତି ଭିତରର ଜ୍ୱାଳା ନ ଥାଏ ଲୋ ରଙ୍ଗି । ନୂଆ ସଂସାର କରିବାକୁ ମନ ଉଚ୍ଛନ୍ନ ହୁଏ, ଭିତରର ଯନ୍ତ୍ରଣା ସହି ହୁଏ ନାହିଁ ।

ସଂଯମ ଲୋଡ଼ା ଲୋ ତୁଳସୀ ସେଥିପାଇଁ, ବାଟ ମଧ୍ୟ ମଲା ପରି ଚଳିବା ଦରକାର । ରୂପ, ବେଶଭୂଷା, ଖିଆପିଆ ପିତା କରିବାକୁ ହୁଏ । ମନ ଭୁଲାଇବାକୁ ଶାସ୍ତ୍ର ପୁରାଣ, କାମ ଦାମ, ବାର ବ୍ରତ ପୂଜାରେ ନିଜକୁ ବୁଡ଼ାଇ ରଖିବା ଭଲ । ଦେହ ମନ ମିଳନ ପାଇଁ ଛଟପଟ ହେବ । ହେଉ, ଧୈର୍ଯ୍ୟ ଧରି ମନକୁ ଠାଣ କରି ସେ ସବୁକୁ ଚାପି ରଖିବା ଦରକାର । ଦିନ ଗଡ଼ି ଚାଲିବ, ବୟସ ନଇଁବ, ଯୌବନ ମଉଳିବ, ଭିତରର କାନ୍ଦ ବୋବାଳି ଆପେ ବନ୍ଦ ହେବ । ମନ ପବିତ୍ର ହେବ, ଆତ୍ମା ନିର୍ମଳ ହେବ ।

କାହିଁକି ଏତେ ଦୁଃଖ ଯନ୍ତ୍ରଣା ସହିବ ରଙ୍ଗି, ମନ ଯାହା ଚାହିଁବ ସେଥିରେ ବାଧା ଦେଇ କଲବଲ ବିକଳ ହୋଇ ମରିବାକୁ ଠାକୁରେ ଜନ୍ମ ଦେଇ ନାହାନ୍ତି । ଦୁଃଖ ଯନ୍ତ୍ରଣା ସହିବ କାହିଁକି ?

ରଙ୍ଗୀ ହସିଲା । କହିଲା, ଦୁଃଖ ଯନ୍ତ୍ରଣା କାହାକୁ କହୁଛୁ ? ନିଜ ମନ ସଙ୍ଗେ ଯୁଦ୍ଧ କରିବାରେ ଆନନ୍ଦ ଆସେ । ମନରେ ଗର୍ବ ଆସେ । ହୁଏତ ଥରେ ଅଧେ ମଣିଷ ହାରିଯାଏ । ଦୁର୍ବଳ ବେଳରେ ଯୌବନର ମୋହ ସଂଯମ ଉପରେ ଚଢ଼ି ବସେ । ଯେତେବେଳେ ସେଇ ମୋହକୁ ଜୟ କରାଯାଏ, ମନରେ ଆନନ୍ଦ ଓ ଗର୍ବ ଆସେ । ଆଉ ମନ ପରାସ୍ତ ହୁଏ ନାହିଁ । ଭଗବାନ କଅଣ ଚାହାଁନ୍ତି

କେହି ଜାଣେ ନାହିଁ । ବିଧବା କରିବା ତାଙ୍କର ଦିଆ ଦଣ୍ଡ, ପୂର୍ବଜନ୍ମ ପାପର ପ୍ରାୟଶ୍ଚିତ୍ତ । ତାଙ୍କ ଦେଲା ଦଣ୍ଡକୁ ମୁଣ୍ଡ ପାତି ସହିଯିବା ଉଚିତ । ପରଜନ୍ମ ପାଇଁ ସତର୍କ ହେବା ଭଲ କଥା ।

କାବା ହୋଇ ତା ମୁହଁକୁ ଚାହିଁଲି । ପୂର୍ବଜନ୍ମ, ପରଜନ୍ମ, ପାପ, ପୁଣ୍ୟ, ଦଣ୍ଡ, ଏ ସବୁ ଅତି ପୁରୁଣା, ଅତି ବଡ଼ କଥା । ବିଶ୍ୱାସ କରିବାକୁ ମନ ଡାକେ ନାହିଁ । ବିଶ୍ୱାସ ନ କରି ମଧ୍ୟ ରହି ହୁଏ ନାହିଁ । ମଣିଷକୁ ଡରାଇ, ସମାଜର ଓ କୁଳର ବନ୍ଦୀ ଭିତରକୁ ଟାଣି ଆଣିବାକୁ ଏ ସବୁ ଅସ୍ତ୍ରର ସୃଷ୍ଟି । ଏହା ବିରୁଦ୍ଧରେ ତର୍କ କରିବା ଅସମ୍ଭବ । ସମାଜରେ ରହି, କୁଳରେ ରହି, ସବୁ ମାନି ଚାଲିବା ଆବଶ୍ୟକ, ନୋହିଲେ ଭୁଣ୍ଡବାଇଦର ଚହଲ ପଡ଼ିବ । ସମାଜ ଓ କୁଳର ଅତ୍ୟାଚାର ସହିବାକୁ ହେବ ।

ରଙ୍ଗୀ ଯେଉଁ କୁଳରେ ଜନ୍ମ, ଆଉ ଥରେ ବାହା ହେବା ସେ କୁଳରେ ଅନୀତି ଓ ଅଧର୍ମ, କିନ୍ତୁ ଆମ କୁଳରେ ସେପରି ବିବାହ ଅନୀତି ନୁହେଁ, ଅନ୍ୟାୟ ନୁହେଁ । ରଙ୍ଗୀର କୁଳ ଭଗବାନ, ସ୍ୱର୍ଗ, ପରଜନ୍ମକୁ ଏକଚାଟିଆ କରି ନାହିଁ । ମୋ କୁଳର ଓ ମୋର ମଧ୍ୟ ସେଥିରେ ଅଧିକାର ଅଛି । କେବଳ ବିଧବା ରହି ଦେହ ମନକୁ କଷ୍ଟ ଦେଲେ, ପୁରୁଣା ସ୍ମୃତିକୁ ଧରି ରହିଲେ ସଂଯମ ହୁଏ ନାହିଁ, କି ସ୍ୱର୍ଗ ମିଳେ ନାହିଁ । ନୂଆ ସଂସାର କଲେ ମଧ୍ୟ ସଂଯମ ଅଭାବ ହୁଏ ନାହିଁ । ସ୍ୱର୍ଗକୁ ଯିବାକୁ ବାଟ ବନ୍ଦ ହୁଏ ନାହିଁ ।

ସବୁ ଶୁଣି ରଙ୍ଗୀ କହିଲା, ସତୀ ଅସତୀ ଦୁଇଟା କଥା ଅଛି, ତୁଳସି ! ଯେତେବେଳେ ଇଚ୍ଛା, ଦେହ ମନ ଯଦି ଅନ୍ୟ ପୁରୁଷକୁ ଦେବ, ସଂସାରରେ କେହି ଆଉ ସତୀ ହୋଇ ରହିବେ ନାହିଁ । ଭଗବାନ୍ ସବୁବେଳେ ସତୀର ବଶ । ସତୀ କାହାକୁ କହନ୍ତି ତ ଜାଣୁ ? ପୁରାଣ ପଢ଼ିଲେ ଜାଣିବୁ ।

କହିଲି, ମୁଁ ପୁରାଣ ପଢ଼ି ନାହିଁ । ତେବେ, ସତୀ କାହାକୁ କହନ୍ତି ମୁଁ ଜାଣେ । ଖାଲି ଗୋଟାଏ ସ୍ୱାମୀକୁ ଆଦରି ରହି ଦେହ ମନକୁ ଜଳାଇ ପୋଡ଼ାଇ ସଂଯମ ରଖି ବେଳ କାଟିଲେ କଣ ମାଇପେ ସତୀ ହୁଅନ୍ତି ? ଯେତେ ଯାହା କଲେ ମଧ୍ୟ ମନ ସବୁବେଳେ ପବିତ୍ର ରହିବ ନାହିଁ । ନୂଆ ସଂସାର କରି ନୂଆ ସ୍ୱାମୀର ସେବାରେ ପ୍ରାଣ ଦେଲେ ଦେହ ମନ ପବିତ୍ର ରହିବ । ସତୀତ୍ୱର କିଛି ହାନି ହେବ ନାହିଁ ।

ପୁରୁଣା ସ୍ୱାମୀର ସ୍ମୃତି ?

ହିଁ, ମନ ଭିତରେ ଜାଗି ରହିଥିବ । ମନେ ପଡ଼ିଲେ, ତାଙ୍କ ପାଇଁ ଆଖିରୁ ଲୁହ ଗଡ଼ାଇବ ।

ତାଙ୍କ ଜୀବନର ମୂଲ୍ୟ ଦି ଠୋପା ଲୁହ ତୁଳସି ?

ଜୀବନର ମୂଲ୍ୟ କେହି ଦେଇ ପାରିବେ ନାହିଁ । ନିଜର ଜୀବନ ତ ଗୁରୁ କଥା, ଦୁନିଆଁ ଯାକର ଲୋକ ଜୀବନ ଦେବାକୁ ଆଗେଇ ଆସିଲେ ବି ଗଲା ପ୍ରାଣ ଫେରି ଆସେ ନାହିଁ । ଏ କଥା ଜାଣୁ ଜାଣୁ, ନିଜ ଜୀବନକୁ ଦୁଃଖ କଷ୍ଟ ଦେଇ ରହିବ କାହିଁକି ? ସେମିତି ରହିବାଠାରୁ, ଠିକ ଠିକ କରି ଦହଗଞ୍ଜ ହୋଇ ଯନ୍ତ୍ରଣାରେ ସନ୍ତୁଳି ହୋଇ ମରିବାଠାରୁ, ସଜ ଦୁଃଖର ଉଦ୍ଦରେ ଜୀବନ ହାରି ଦେବା ବରଂ ଭଲ ଲୋ ରଙ୍ଗି ! ଯଦି ସେତକ କରିବାର ସାହସ ନ ହେଲା, ତେବେ ସାରା ଜୀବନ ବିଧବା ରହି ମଲା ସ୍ୱାମୀର ସ୍ମୃତିକୁ ଧରି ବେଳ କାଟିବା କେମିତି ? ଜୀବନ ହାରି ଦେବା ଯଦି ପାପ ହୁଏ, ଜୀବନ ଧରି ତାକୁ ବଞ୍ଚି ଥିବାଯାଏ କଲବଲ କରିବା କ'ଣ ପାପ ନୁହେଁ ?

ଟିକିଏ ଭାବି ରଙ୍ଗୀ କହିଥିଲା, ଯଦି ମଣିଷ ସଂଯମ ଶିଖି ପାରେ, ଜୀବନ କଲବଲ ହେବ ନାହିଁ, ବେଳ ସୁଖରେ କଟିବ । ତୁ ସେଇଆ କର । ବିଧବା ହୋଇ ଏ ବେଶ ଆଉ ଶୋଭା ପାଉ ନାହିଁ । ଲୋକେ ଭଲ କହିବେ ନାହିଁ ।

ସେଦିନ ରଙ୍ଗୀର କଥା ଶୁଣି ମୋ ମନ ଦୋହଲି ଉଠିଥିଲା । ଭବିଷ୍ୟତର ସୁଖ ଆନନ୍ଦ ମୋହରେ ତାର କଥାକୁ ମନେ ପକାଇ ଛଟପଟ ହେବାକୁ ମୁଁ ଚାହୁଁ ନ ଥିଲି । ସୁରିଙ୍କୁ ପାଇବି, ତାଙ୍କୁ ନେଇ ସଂସାର କରିବି, ମନୁଆଁର ଦୁଃଖଯିବ, ଏଇଥି ପାଇଁ ମୋ କଥା ଠିକ୍ ବୋଲି ମୁଁ ଗ୍ରହଣ କରିଥିଲି ।

ରଙ୍ଗୀର କଥା ଭାବି ଭାବି ଅସ୍ୱସ୍ତି, ଭଲ ଲାଗୁ ନ ଥାଏ । ଟିମ ବାବୁଙ୍କ ବୋଉ ମତେ ଏପରି ଦେଖିଲେ କଅଣ କହିବେ, କଅଣ ମନେ କରିବେ ?

ତାଙ୍କ ଘର ପାଖେଇ ଆସିଲି । ସଙ୍କୋଚରେ ଧୀରେ ଧୀରେ ଖଞ୍ଜା ଭିତରକୁ ପଶିଲି ।

ଯାହା ଦେଖିଲି, ମତେ ଆଶ୍ଚର୍ଯ୍ୟ ଲାଗିଲା । ଟିମବାବୁଙ୍କର ବୋଉ ସେଠାରେ ନାହାନ୍ତି । ପିଣ୍ଡା ଉପରେ ମଶିଣା ପାରି ତାଙ୍କ ସ୍ତ୍ରୀ ବସି ପାନ ଭାଙ୍ଗୁଛନ୍ତି । ତାଙ୍କ ପାଖରେ ଗାଁ ମାଇପେ ଆଉ ଦୁଇ ତିନି ଜଣ ବସି ଗପ କରୁଛନ୍ତି । ଅଗଣାରେ ଆହୁରି ଦଶ ବାର ଜଣ ସ୍ତ୍ରୀ ଲୋକ ବସି କଥାଭାଷା ହେଉଛନ୍ତି ।

ମତେ ଦେଖି ସମସ୍ତେ ତୁନି ରହିଲେ । ଏକା ଟିମ ଭାଇଙ୍କ ସ୍ତ୍ରୀ ଛଡ଼ା, ସମସ୍ତେ ମୋ ଆଡ଼କୁ ଚାହିଁଲେ । ସେମାନଙ୍କ ଚାହାଣୀରେ ମୁଁ ବିପଦ ଅନୁଭବ କଲି । ମୋ ଛାତି ଥରିବାକୁ ଲାଗିଲା । ଏତେ ଲୋକ ଜମା ହୋଇଛନ୍ତି ମୋ'ରି ପାଇଁ ? ତୁଣ୍ଡରୁ କଥା ବାହାରିଲା ନାହିଁ ।

ଆଡ଼େଇ ଆଡ଼େଇ ମୋତେ ଚାହିଁ ଟିମଭାଇଙ୍କ ସ୍ତ୍ରୀ କହିଲେ, ଗାଁ ମାଇପେ ତେମେ ତ ସବୁ ଏଠି ଅଛ, ମୁଁ ଯାହା କହୁଥିଲି ସେଥିରେ ସତ କେତେ, ମିଛ କେତେ, ତେମେ ସବୁ ପରଖି ନିଅ । କାଲି ତେମେମାନେ କହିବ ମୁଁ ଅନ୍ୟାୟ

କଲ, ଗରବ ଦେଖି ଘରୁ ନେଇ ଗଛମୂଳରେ ଗ୍ରୁଡ଼ିଲ । ମଶାଟାଏ କାମୁଡ଼ିଲେ ତାକୁ ଗୃପୁଡ଼ାଟାଏ ମାରୁଛ ତ !

ଗନ୍ଧଅ ବୋଉ ମନକୁ ମନ କହିହେଲା, ମଲାମର, ବିଧବା ହୋଇ କାହାକୁ ଏମିତି ଛଇ ଛଟକ ହେବାର ଦେଖି ନ ଥିଲି । ପୋଡ଼ିଲା ଭୂଣରେ କି ସୁଆଦ ଥାଏ । ତୁଳସୀର ଢଙ୍ଗ ଦେଖିଲେ ମନରେ ଖରାପ ଧାରଣା ଆସେ ।

ସ୍ମୃକୁଟୀ କହିଲା, ନ ଜାଣିଲା ପରି କହୁଛୁ କେମିତି ? ଅଲୋ, ତୁଳସୀ ଯେ ପରରୁ ବାସେ । ତୁଳସୀ, ଏଇ ଗାଁର ଝିଅ । ଯେତେଦିନ ଯାକେ ଏ ଗାଁରେ ଝିଅ ହୋଇ ଥିଲା, ଗାଁର ସେପାରି ଛ ଗଛଆ ଅମ୍ବ ତୋଟାରେ ପତର ଗୋଟାଉ ଥିଲା । ତୋଟା ଗୃରି କଡ଼ ଗାଁ ଟୋକାଙ୍କ ଭିଡ଼, କୁହାଟ, ଟାହି ଟାପରା । ଏଇ ଆଖି କେତେଥର ଦେଖିଛି । ବା ହୋଇଗଲା, ଭାବିଥିଲି ଗାଁରୁ ବିପଦ ଗଲା । ଶଶୁରଘରର କାଣ୍ଡ ଶୁଣିଲେ ତ କାନରେ ହାତ ଦେବ । ସବୁ ଶୁଣିବା କଥା । ଭଲ ମନ୍ଦ କିଏ ଜାଣେ ?

ଶ୍ରେଷ୍ଠୀ ବୁଢ଼ୀ କହିଲା, କିଏ କାହାର କିଛି ଦେଖୁଥାଏ କି ? ପାଉଁଶ ଦେଖିଲେ ଯିଏ ହେଲେ କହିବ, ଦିନେ ନିଆଁ ଜଳିଥିଲା । ସାପକାତି ଲାଗିଛି ଦେଖିଲେ କିଏ ନ କହିବ, ଏ ବାଟେ ସାପ ଯାଇଥିଲା । ତା ମା ଦିନେ କହୁଥିଲା ବା ହବା ଆଗରୁ, ତା ଦିଅର କୁଆଡ଼େ ଯା ଆସ କରୁଥିଲା । ବଡ଼ ଭାଇ ଥାଉଣୁ ସାନ ଭାଇ ଆଉ ବା ହନ୍ତା କିପରି ? ମୁଁ କହୁଛି ବା ହେଲା ନାହିଁ ଯେ ଗୋରୁମୁଣ୍ଡ କପାଳ ଅପା ହେଲା ।

ଏତେ ଲୋକଙ୍କର ଏକାଠି ହୋଇ, ଗୋଟାଏ ଆସର ଧରି ମତେ ଡାକିବାର କାରଣ ମୁଁ ବୁଝି ପାରିଲି । ମୁହୂର୍ତ୍ତେ ଆଉ ରହିବାକୁ ଇଚ୍ଛା ହେଲା ନାହିଁ । କହିଲି, ନୂଆଉ, ମୋ ଠେଇଁ ତମର କି କାମ ଅଛି, କାହିଁକି ଡକାଇଥିଲ ?

ଝିମ ଭାଇଙ୍କ ସ୍ତ୍ରୀ କହିଲେ, ବିନା କାମରେ କିଏ କାହାକୁ ଡକାଏ ? ବସୁନୁ !

କହିଲି, ବସିବାକୁ ମୋତେ ଡର ମାଡ଼ୁ ନାହିଁ ଯେ ତେବେ ଏତେ ମାଇପେ ଏଠି ମୋର ଗୁଣ ଅବଗୁଣ ଗାଉଛନ୍ତି । ତାଙ୍କୁ କହିବାକୁ ସୁଖ ଲାଗୁଛି, ମତେ ସହିବାକୁ ତ ସୁଖ ଲାଗୁନାହିଁ ?

ଶ୍ରେଷ୍ଠୀ କହିଲା, କେମିତି ସୁଖ ଲାଗିବ ? ମରମ କହିଲେ, ମହାଦେବ ନେଙ୍ଗୁଟି ନେଇ ମୁଣ୍ଡରେ ବାନ୍ଧିବେ, ତୁ ବା କି ଗ୍ରର । ଅଲୋ, ଯେତେ ଲୁଚାଇଲେ କଥା ଲୁଚେକି ? ଯେମିତି ଯେମିତି ହେଲେ ଫୁଟି ବାହାରିବ । ଜଣକର ହାତ ଧରି ଗଲା, ଜଣଙ୍କ ସଙ୍ଗେ ରହିଲା । ସବୁଦିନେ ଅନ୍ଧାର ରାତି ନ ଥାଏ । ଧରା ପଡ଼ିଲାରୁ ସେ ତଡେ ତଡ଼ି ଦେଲା । ଜହର ରଖି ଆସିଥିଲା ଦିଅର

ହାତରେ । ତୋ ପଛେ ପଛେ କାମ ଶେଷ । ଲୋକ ଦେଖଣାକୁ ଦଅରକୁ ପାଖେ ପୂରଉନୁ । ଜାଙ୍ଗୁଲ୍ଷ ଜାଙ୍ଗୁଲ୍ଷ ଘରୁ ଉଠି, କବାଟ ଖୋଲି ସେ ଯେଉଁ ଟୋକା ଏଣିକି ତେଣିକି ଗୈରଭଲଅ ଗୃହଁ ଯାଏ, ସେ କଏ ଲୋ ?

ପଚ୍ଛୃଇଲ, କେଇଥର ଭଲ ଦେଖିଛ ?

ଶହେ ଥର ଏଇ ଅଖି ଦେଖିଛି ।

ସମସ୍ତେ ହସି ଉଠିଲେ ।

ଗମ୍ଭୀର ହୋଇ ବସିପଡ଼ିଲି । ରାଗ ହେଲା । ଭାବିଲି, କଅଣ କହୁଛନ୍ତି ଶୁଣେ । କଳଅ କଲେଁ କ ନଜର ସଫେଇ ଦେଲେ କେହି ଶୁଣିବେ ନାହିଁ କ ବିଶ୍ଵାସ କରବେ ନାହିଁ ।

କହେଁ, ଚୁପ ରହିଲୁ ଯେ, ମିଛ, ମିଛ ?

ସୁକୁଟୀ କହିଲା, ରେମା ସାଙ୍ଗରେ ନଦୀଗଡ଼ରେ ଘଣ୍ଟ ଅଧରେ ଫୁସୁ ଫୁସୁ ଟପ ବି ମିଛ ?

ମିଛ ନୁହେଁ, ସତ ! କଅଣ ହେଲା ?

କଅଣ ଅଉ ହେବ କ ? ରେମାର ଘରଣୀ ନାହିଁ, ସେଥିପାଇଁ ଚଳି ଯାଉଛି । ନୋହିଲେ—

ସାହସର ସହିତ କହିଲି, ତେମେ ସବୁ ଭୁଲ୍ ବୁଝିଛ । ରେମାଇ ମୋତେ ବାହା ହେବାକୁ ପ୍ରସ୍ତାବ କରଥିଲା, ମୁଁ ତାକୁ ନାହିଁ କଲି ।

ଝିମ ଭାଇଙ୍କ ସ୍ତ୍ରୀ କହିଲେ, ରେମା ଅଭିଆଡ଼ି । ତାକୁ ବାହା ହେବାକୁ ନାହିଁ କରୁ, ମୋର ସର୍ବନାଶ କରବାକୁ ବସିଛୁ କାହିଁକ ? ପଢ଼ବା ନେବା ଅଗରେ ଅମ ବଗିଚାକୁ ଯାଇ, ସେଠି ତୁ କଅଣ କରୁ ସବୁ ଜଣା ପଡ଼ିଲାଣି । ନଜେ ମୋ ଗୃହକରି ଦେଖିଛି । ଗାଁ ମାଇପେ ସବୁ ତ ଏଠି ଅଛ । ମୁଁ କହୁଛି, ଅମ ଘରେ ଏଇ ତୁଳସୀ ନେଇ ହେନ ଗୀତ କଳଅ । କହୋ, ତମର ଯଦ ତୁଳସୀକୁ ନେଇ ନାଟ କରବାକୁ ଇଚ୍ଛା ଥିଲା, ପର ଝିଅର ହାତ ଧରି ଘରକୁ ଅଣିଲ କାହିଁକ ? ତୁଳସୀ, ତତେ ମୁଁ ଡକେଇଛି ଏଇଥି ପାଇଁ । ବଞ୍ଚି ଥିବାଯାଏ ତମର ରାଧା କୃଷ୍ଣ ଖେଳ କରେଇ ଦେବ ନାହିଁ । ସେଥିପାଇଁ ଯାହା ହେବାର ହେବ ।

ମନରେ କଷ୍ଟ ହେଲା । ଅଖିରୁ ଲୁହ ପୋଛି କହିଲି, ନୂଆଉ, ତେମେ ଭୁଲ୍ ବୁଝିଛ । ମୁଁ ଯଦ କଛି ଅପରାଧ କରଥାଏଁ, ମତେ ଏକୁଟିଆ ଡାକି ପାଞ୍ଚମାଡ଼ ମାରଥିଲେ ଭଲ ହୋଇଥାନ୍ତା । ଏତେ ଲୋକଙ୍କ ଆଗରେ ମିଛ କଥାରେ ମତେ ମରଣରୁ ବଳି ଅପମାନ ଦେଉଛ କାହିଁକ ? ଝିମ ଭାଇ ତମକୁ ଭଲ ପାଆନ୍ତି ନାହିଁ । ଝିମ ଭାଇ ମୋତେ ଭଲ ପାଆନ୍ତି ଏ କଥା ମୁଁ ଜାଣେ । ମତେ ପାଇବାକୁ ସେ ହାତ ବଢ଼ାଇଛନ୍ତି । ମୁଁ ମନା କରି ତାଙ୍କୁ ଅଡ଼େଇ ଯାଇଛି ।

ତମର ଅବଗୁଣ ସେ ଗାଆନ୍ତୁ, ମୁଁ ତମର ପ୍ରଶଂସା କରି କହେ । ତମର ସଂସାରରେ ଯେପରି ଅଶାନ୍ତି ନ ଆସେ ସେଥିପାଇଁ ତାଙ୍କୁ ବୁଝାଏ ।

ସତେ, ସତେ, ଏତେ ସୁଖ ଦୁଃଖ ତୁ ତାଙ୍କ ସଙ୍ଗେ ହେଉ ? ସେ ତୋର ଏଡ଼େ ଆପଣାର ଲୋକ ଆଉ ମୁଁ ହାତ ଧରି ଏ ଘରକୁ ବୋହୂ ହୋଇ ଆସି, ମୁଁ ହେଲି ପର ।

କହିଲି, ତେମେମାନେ ଯାହା ଭାବିବାର ଭାବ, କହିବାର କହ, ମୁଁ ସତ କହୁଛି । କେହି ଯଦି ବିଶ୍ୱାସ ନ କରେ, ମୁଁ ତାକୁ ବିଶ୍ୱାସ କରିବାକୁ ବାଧ୍ୟ କରି ପାରିବି ନାହିଁ ।

ନୂଆଉ କହିଲେ, ଥାଉ ଥାଉ ତୋର ଭଲେଇ ପଣିଆ । ତୁ ଭଲ ହ କି ମନ୍ଦ ହ, ସେଥିରୁ ମତେ କିଛି ମିଳିବ ନାହିଁ । ମୋର ଗୋଟିଏ କଥା, କାଲି ଦିନକ ଭିତରେ ତତେ ଏ ଗାଁ ଛାଡ଼ି ଚାଲି ଯିବାକୁ ହେବ ।

ଶ୍ରେଷ୍ଠୀ କହିଲା, ହଁ, ହଁ, ମୂଳୁ ମାଇଲେ ଯିବ ସରି । ଏତେ ଗୋଳମାଳରୁ କି ମିଳିବ ?

କହିଲି, ଗାଁରୁ ତଡ଼ିଦେବାର ଅଧିକାର ତମର ନାହିଁ । ଘରଖଣ୍ଡି ନିଲାମ କରି ନେଇଛ, ସେଇ ଘରୁ ଚାଲିଯିବାକୁ କହିପାର । ଭଲକଥା, ଯେତେ ଶୀଘ୍ର ପାରେ ମୁଁ ତମ ଘର ଛାଡ଼ି ଚାଲି ଯିବି । ମୋ ପଛରେ ତାଳି ମାରି ତମମାନଙ୍କର ମନ ଇଚ୍ଛା ନିନ୍ଦା କରୁଥାଅ । କେଉଁ ନିନ୍ଦାଟା ବାକି ଅଛି ଯେ ଧିଅକୁ ଲାଗିବ ? ଖାଲି ଏତିକି କହୁଛି, ଯେଉଁମାନେ ନିନ୍ଦା ମିନ୍ଦା କରି କହୁଛ, ସେମାନେ ଯଦି ସତ କଥା ଜାଣିବାକୁ ଚେଷ୍ଟା କର, ତେବେ ମୁହଁରେ ନ କହିଲେ, ମନ ଭିତରେ କହିବ, ଜାଣିବ, ତୁଳସୀ କଅଣ ।

ଲୋକନିନ୍ଦା ଶୁଣି ଶୁଣି ଦେହସହା ହୋଇଥିଲି । ଲୋକଙ୍କ କଥାକୁ ଖାତିରି କରି ଛଳକରି ସଂସାରରେ ଦିନଟିଏ ବି ଚଳିବା କଷ୍ଟ । ପରର ଦୁର୍ନାମ କରିବାକୁ ଲୋକଙ୍କୁ ଭଲ ଲାଗେ । ତୁଣ୍ଡରୁ ତୁଣ୍ଡ କଥା ଯେପରି ଡେଇଁ ଚାଲେ, ସେମିତି ସେ ବଢ଼ିବଢ଼ିକା ଯାଉଥାଏ । ସେ ଦିନ ହାଟ ଫେରନ୍ତା, କେଉଁ ଗାଁର ମାଇପିଟିଏ, କଥା ଭାଷା ହେଉଁ ହେଉଁ ମୋ ଗାଁ ନାଁ ଶୁଣି ପଚାରି ଦେଲା, ହଇଲୋ, ତମର ଗାଁର ତୁଳସୀ ବୋଲି ଗୋଟିଏ କିଏ ଝିଅ ମ, କୁଆଡ଼େ ପାପଗର୍ଭ ହୋଇ କୂଅକୁ ଡେଇଁ ମରିଛି ? ମୁନ୍‌ସି ଦାରୋଗା ଆସି ଲାସ ନେଇ ଯାଇଛନ୍ତି ।

ହସି ହସି କହିଲି, ହୋଇଥିବ, ମୁଁ ଜାଣେ ନାହିଁ । କେବେ ?

କହିଲା, କାଲି ପରା ।

ମୁହଁ ଶୁଖାଇ କହିଲି, ହଁ ମ ମାଉସି, ସେ ତୁଳସୀ ପରା ପୁଣି ବଞ୍ଚିଲା ଲୋ ।

ପଚାରିଲା, ସତେ ?

କହିଲି, ହଁ । ମୁଇଁ ପରା ସେଇ — ।

ଲାଜରା ହୋଇ ମୋ ମୁଣ୍ଡରୁ ଗୋଡ଼ଯାଏ ଚାହିଁ କହିଲା, ଓହୋ, ଲୋକେ ଏମିତି ସଜ ମାଛରେ ପୋକ ପକାନ୍ତି ।

କହିଲି, ମାଉସି ମ, ତୁ ଆଉ ମୁଁ ଆମେ ଦୁହେଁ ବି ସେଇ ଲୋକ ଯେ— ।

ଏଇ ତ ତୁଣ୍ଡବାଇଦ !

ଉଠି ଯିବାକୁ ବସିଲି ।

ନୂଆଉ କହିଲେ, ତୁ ଯା ଲୋ, ତୋ ମୁହଁ ଚାହିଁ ଯୋଗାଏ ନାହିଁ । କାଲି ଦିନକ ଭିତରେ ଯଦି ସେ ଘରୁ ତୁ ବାହାରି ନ ଯାଉ, ସେ ଘରେ ନିଆଁ ଲଗାଇ ପୋଡ଼ି ଦେବି ।

ଆଖିର ଲୁହ ଅଟକାଇ ପାରିଲି ନାହିଁ । ତୁଣ୍ଡର କଥା ଅଟକାଇ ରଖିଲି । ନିଆଣ୍ଟୀ, ଗରିବ, ବିଧବା ମୁଁ । ଭଗବାନ୍ ମତେ ସହିବାକୁ ଜନମ ଦେଇଛନ୍ତି, କହିବାକୁ ନୁହେଁ । ଆମ ମୁହଁର ସତକଥା ମିଛ ହେବ । ବଡ଼ ଘରର ଘରଣୀ ଆଗରୁ ଚାଲିଯିବା ଭଲ । ପଦାକୁ ଯିବାକୁ ବାହାରିଲି ।

ବାଟ ଘର ଭିତରୁ ଟିମ ଭାଇ ଅଗଣା ଭିତରକୁ ପଶି ଆସିଲେ । ତାଙ୍କର ଫଣ ଫଣ ମୁହଁ, ରଙ୍ଗିଲା ଆଖି ଓ ଆସିବାର ଢଙ୍ଗ ଦେଖି ମୁଁ ଚମକି ଉଠିଲି । ମାଇପେ ଉଠି ଠିଆ ହେଲେ । କେତେ ଜଣ ଘର ଭିତରକୁ ପଶିଗଲେ । ଦୁଆରେ ଥିବା ମାଇପେ ଧୀରେ ଧୀରେ ଆର ଖଞ୍ଜାକୁ ଚାଲିଗଲେ ।

ଅଗଣା ମଝିରେ ଠିଆ ହୋଇ ରାଗରେ ଗର୍ଜିଉଠି ସେ ପଚାରିଲେ, ତୁଳସି, ଏ ସବୁ କଅଣ ହେଉଛି ?

ମୁଁ ତାଙ୍କ କଥାର ଜବାବ ନ ଦେଇ ଅଗଣାରୁ ବାହାରି ଆସୁଥିଲି । ସେ ଡାକିଲେ, ଶୁଣ ।

ମୁଁ ଫେରି ଚାହିଁ କହିଲି, ତମର ବି ମୋ ଉପରେ ଅକ୍ରୋଶ ସାଧିବାର ଅଛି ? ତମମାନଙ୍କର ମୁଁ କିଛି ଅନିଷ୍ଟ କରିନାହିଁ ତ ?

ଟିମ ଭାଇ କହିଲେ, ମୁଁ ସବୁ ଶୁଣିଛି ।

ତାଙ୍କ ସ୍ତ୍ରୀଙ୍କୁ କହିଲେ, ତୁଳସୀକୁ ଡକାଇ ଏତେ ଲୋକଙ୍କ ଆଗରେ ଅପମାନ ଦବାର କାରଣ କଅଣ ?

ନୂଆଉ ଚିଡ଼ି ଉଠିଲେ । କହିଲେ, ଦେହରେ ଲାଗିଗଲା ପରା । ତମ ବାହାଦୁରି ବଗିଚା ଘରେ ଦେଖାଇବ, ମୋ ଆଗରେ ନୁହେଁ । ମୁଁ ଥୋଇଲା ପୋଇଲି ନୁହେଁ ଯେ ତମ ନାଲି ଆଖି ଦେଖି ଚପି ରହିବି । ମନ ହେଉଛି ତ ଆଜି ଗୋଟାଏ ବାହା ହୋଇ ପଡ଼ । ହାଟୋଇ ବାଟୋଇ ଛତରୀଙ୍କ ସଙ୍ଗେ ନାଟ କରିବାର ଇଚ୍ଛା ଥିଲା ତ ମୋ ହାତ ଧରି ଏ ଘରକୁ ଆଣିଲ କାହିଁକି ?

ହସିଲା ସ୍ୱରରେ ଝିମବାବୁ କହିଲେ, ବାପ ମା'ଙ୍କର ସୁପୁତ୍ର ହେଲେ, ତମର ପରି ଅପଦାର୍ଥର ହାବୁଡ଼େ ପଡ଼ିବାକୁ ହୁଏ । ତା ଯଦି ନ ହୋଇଥାନ୍ତି, ତୁଳସୀ ଆଜି ଏ ଘରର ଘରଣୀ ହୋଇ ବସିଥାନ୍ତା ।

ନୂଆଉ କହିଲେ, ମଁ ତ ଆଜି ଏତେ ଦାଦିଗଞ୍ଜ ହେବାକୁ ପଡ଼ନ୍ତା ନାହିଁ । ପିଲା ଦିନର ଅଭ୍ୟାସ ଆଜି ବାହାର କଲେ ତ ତୁଳସୀ ଆଉ ଏ ଘରର ଘରଣୀ ହୋଇ ପାରିବ ନାହିଁ ?

ଝିମବାବୁ କହିଲେ, ଏଡ଼େ ଠାଣ କରି କହ ନାହିଁ । ଆଜି ବି ଯଦି ସେ ଘରର ବୋହୂ ହେବାକୁ ଚାହିଁବ ତ ତମ ତୁଣ୍ଡରୁ ଏପରି କଥା ବାହାରିବ ନାହିଁ, ଗାଁ ମାଇପଙ୍କ ସଭା ବସିବ ନାହିଁ । ତୁଳସୀକୁ ତେମେମାନେ ଯାହା ଭାବିଛ ସେ ତାହା ନୁହେଁ । ଗରିବ ନଅଣ୍ଟୀ ହେଲେ ବି ତାର ଆତ୍ମସମ୍ମାନ ଅଛି । ଯାହା ସେ କହିଗଲା ସବୁ ସତ । ମୁଁ ତାକୁ ଚାହିଁଥିଲି, କିନ୍ତୁ ସେ ମୋ ପାଖରୁ ଦୂରେଇ ରହି ମତେ ସାବଧାନ କରିଛି । ତମ ସଙ୍ଗରେ ଯେପରି ମୋର ଅପଡ଼ ନ ହୁଏ ସେକଥା ସେ ମତେ ବୁଝାଇଛି ।

ଝିମ ଭାଇଙ୍କ ବୋଉ କଡ଼ ଘରୁ ବାହାରି ପଡ଼ି କହିଲେ, ତୋ ମୁହଁକୁ ଲାଜ ନାହିଁରେ ଝିମା, ମୁଁ ବଞ୍ଚି ଥାଉଣୁ ଏକଥା ଶୁଣିଲି । କାହାର ପୁଅ ତୁ, କାହାର ନାତି, ତୁ ଗୋଟାଏ ଅରକ୍ଷିତାଠାକୁ ଚାହିଁଲୁ, ସେ ପୁଣି ତତେ ଆକଟି କହିଲା । ସେଥି ନେଇ ମୋ ଘରେ ବସିଲା ସଭା । ନ ମରି ରହିଛି ଯାହା ।

ଝିମ ଭାଇଙ୍କ ସ୍ତ୍ରୀ ରାଗ ତମତମ ହୋଇ ଘର ଭିତରକୁ ଗଲେ ।

ବୁଢ଼ୀ କହିବାକୁ ଲାଗିଲେ, ତୁଳସୀ ଭଲ ହେଉ କି ମନ୍ଦ ହେଉ ସେଥିରୁ ଆମ୍ଭକୁ କଅଣ ମିଳିବ ? ତା ଦୁଃଖ ନେଇ ସେ ପଡ଼ିଛି, ତମ ଘରକୁ କେବେ ମାଗିବାକୁ ଆସି ନାହିଁ । ସାତ ପୁରୁଷର ଘରଟା ତାର ନିଲାମ କରି ନେଇଛ ବୋଲି, ସେ ଯାଇ କାଲି ବାଟରେ ଠିଆ ହେବ, ସେ କଥା ନୁହେଁ । ସେ ରହୁ କି ଯାଉ, ତା ଘର ପାଖକୁ କେହି ଯିବ ନାହିଁ । ଝିମା, ଶୁଣୁଛୁ ?

ଝିମ ବାବୁ ତୁନି ରହିଲେ ।

ମୁଁ ବୁଢ଼ୀଙ୍କ ପାଖକୁ ଯାଇ ଆଖି ଛଳ ଛଳ କରି କହିଲି, ତେମେ ଡାକିଛ ବୋଲି ମୁଁ ଆସିଲି, ନଇଲେ ଆସି ନ ଥାନ୍ତି । ଝିମ ଭାଇଙ୍କ ଘର ତାଙ୍କର ରହିବ । ଦୁଇ ଛଅଦିନ ଭିତରେ ଆମେ ସେ ଘର ଛାଡ଼ି ଚାଲିଯାଉଛୁ ।

ପଚାରିଲେ, କୁଆଡ଼େ ଯିବ ଲୋ ?

ବୋଉ ସବୁ କଥା ତମକୁ କହିବାକୁ ଆସିବ ।

ମୋ ଆଖିର ଲୁହ ମୋର ଲାଜ ଲାଜ ଢଙ୍ଗ ଦେଖି ସେ କଅଣ ଅନୁମାନ କଲେ କେଜାଣି, କହିଲେ, ସତେ ?

ତାଙ୍କ ଓଠରେ ହସ ଦଶିଲା । ପିଣ୍ଡା ତଳକୁ ଓଙ୍କାଇ ମୋ ହାତ ଧରି ପୁଣି କହିଲେ, ସତେ ? ଆ ତୁଳସୀ ମୋ ସାଙ୍ଗରେ, ବୋଧହୁଏ ଆମର ସନ୍ଦେହ କରୁଥାନ୍ତି । ପର ନିନ୍ଦା କରିବା ତାଙ୍କର ଖୋଇ । ଅନ୍ଲେ, ସୁବର୍ଣ୍ଣ ପ୍ରତିମାରେ ପଙ୍କ ବୋଳିଲେ ହାତ କାଦୁଅ ହେବ, ସୁବର୍ଣ୍ଣ ପ୍ରତିମା ପିତଳ ହେବ ନାହିଁ ।

ହାତ ଧରି ତାଙ୍କ ଘରକୁ ନେଲେ । ଖଟ ଉପରେ ପାଖରେ ବସାଇ ପିଠିରେ ହାତ ରଖି କହିଲେ, ମୋ କଥା ଶେଷରେ କଲୁ ? ଭଲ କରିଛୁ । ଦୁନିଆଁରେ କିଏ କାହାର ? ପରନିନ୍ଦା, ପରଚର୍ଚ୍ଚା କରିବାକୁ ଲୋକଙ୍କୁ ଖୁବ ଭଲ ଲାଗେ ।

ଚୁପ ରହିଲି ।

ପଚାରିଲେ, କାହା ଘରକୁ ଯିବାର ହେଲା ? କହ, ଲାଜ କର ନା ।

ମୁହଁ ତଳକୁ କରି କହିଲି, ସୁର, ମୋ ଦିଅର ।

ଆଶ୍ଚର୍ଯ୍ୟ ହୋଇ ପଚାରିଲେ, ଏଁ, ସେ ପରା—

କହିଲି, ମା, ସତ ମିଛ ଭଗବାନଙ୍କୁ ଗୋଚର । ତେମେ ଶୁଣିଲ, ଗାଁର ଆଉ ପାଅଁଟା ଶୁଣିଲେ, ମୁଁ ବି ଶୁଣିଲି । ସମସ୍ତେ ବିଶ୍ୱାସ କଲେ । ମୋ ମନ ଦୋ ଦୋ ପାଅଁରେ ପଡ଼ିଲା । ଭାବିଲି, ଥରେ ତ ସଂସାର କଲି ଆଉ କଅଣ ? ଭଗବାନ୍ ମୋ ସୁଖ ସଂସାର ପୋଡ଼ି ଦେଲେ । ଦୁଃଖ ଧନ୍ଦା କରି ତମରିମାନଙ୍କ ଆଶ୍ରାରେ ପଡ଼ି ବେଳ କଟିଯିବ । ପିଲାଟିକୁ ମଣିଷ କରିବି । ଭୁଲ ବୁଝିଥିଲି । ଦୁଃଖ ଧନ୍ଦାରେ ଯାହା ଘରକୁ ଗଲେ, ମୋ ପଛେ ପଛେ ଦୁର୍ନାମ ଗୋଡ଼ାଇଲା । ସହି ସହି ଦେହ ପଥର କଲି । ମନ ଟାଣ କଲେ ତୁଣ୍ଡର କଥା ସହିହୁଏ । ବଡ଼ ଲୋକ, ଯେଉଁମାନେ ମଣିଷ ଚରାନ୍ତି, ସେମାନେ ଯଦି ହାତ ବଢ଼ାଇବେ, ମୋର ଏଇ ମଇଳା ମସିଆ କୁତ୍ସିତ ଦେହଟା ଉପରେ ଲୋଭିଲା ଆଖି ପକାଇବେ, ସଂସାରରେ ଅତଯାତ ହେବ କେମିତି ? ପେଟ ପୋଷିବି କପରି ? ଶେଷକୁ ପେଟ ବିକଳରେ କାଦୁଅରେ ପଶିବାକୁ ପଡ଼ିବ । ରକ୍ତ ମାଂସର ଦେହ, କେତେ ଆଉ ସହିବ କହିଲ ?

ବୁଢ଼ୀଙ୍କ ଆଖିରେ ଲୁହ ଭରିଗଲା । ନିଜ ଅଁଚଳରେ ମୋ ଆଖିରୁ ଲୁହ ପୋଛି ସେ କହିଲେ, ତୋତେ ମୁଁ ବିଶ୍ୱାସ କରେ, ଗୋଟିଏ କଥା ପଚାରିବି, ସତ କହିବୁ ?

ତାଙ୍କ ଲୁହଭରା ଆଖିକୁ ଚାହିଁ କହିଲି, ବିଶ୍ୱାସ କରିବ ?

ହଁ ତୁଳସୀ, ତୋ ଖୋଲା ମନର ପରିଚୟ ମୁଁ ପାଇଛି । କହିଲୁ ଝିଅ, ତୋ ସ୍ୱାମୀ ମଲା ଦିନୁଁ ଆଜଯାଏ ତୁ ତୋର ଦେହ ମନକୁ ପବିତ୍ର ରଖି ପାରିଛୁ ?

କହିଲି, ପାରୁଛି ମା, ଅତି କଷ୍ଟରେ ପାରୁଛି । ଆଉ ପାରିହେବ ନାହିଁ । ଯେଉଁମାନଙ୍କୁ ଅଶ୍ରାକରି ଚଳିବି, ସେମାନେ ଯଦି ମୋ ଆଡ଼କୁ ଭଲେ ଆଖିରେ ଅନାଇବେ, କେମିତି ପେଟରେ ଓଦା କନା ଦେଇ ବୁଢ଼ୀମା ଓ ଉଡ଼ାଣୀ ପିଲାର ଉପାସିଆ ପାଟିରେ ଲୁଣ ପାଣି ଦେଇ ମନ ଥାଣ କରି ରହିପାରିବି ।

ଠିକ୍ କଥା । ଝିମ ତୋତେ ଗୃହିଁଥିଲା ?

ଚୁପ ରହିଲି ।

କହ, ତୁଳସୀ, ତା ବାପା ମରି ଅଜ୍ଞ ସେ ପୁରକୁ ଗଲେଣି । ମୋର ଏ ଦହଗଞ୍ଜିଆ ଜୀବନଟା ରହି ଛଟପଟ ହେଉଛି । ତା ମନର କଥା ମୁଁ ଜାଣିବାକୁ ଗୃହେଁ ।

ତଥାପି ମୁଁ ଜବାବ ଦେଲି ନାହିଁ ।

ମୋ ମୁହଁ ଟେକି, ମୁଣ୍ଡରେ ମୁଣ୍ଡ ଲଗାଇ ଗେଲ୍ହେଇ ପଗ୍ଚରିଲେ, ଲୁଗୃଉଛୁ କାହିଁକି, ମୁଁ ଜାଣିବାକୁ ଗୃହେଁ ।

ଲାଜ ଲାଜ ହୋଇ କହିଲି, ତାଙ୍କର ଦୋଷ ନାହିଁ । ଘରେ ସ୍ତ୍ରୀଙ୍କ ପାଖରେ ସବୁବେଳେ ଅଶାନ୍ତ । ଦିନେ ସଞ୍ଜବେଳେ ସେଇ ବଗିଚ୍ଚ ଘରେ ସେ ତାଙ୍କର ସବୁ ଦୁଃଖ ମୋ ଆଗରେ କହିଲେ । ତାଙ୍କୁ ବୁଝା ସୁଝା କଲି । ତାଙ୍କ ଆଖିରେ ଲୁହ ଦେଖି ମୋ ମନ ନଇଁ ଆସିଥିଲା । ସେଇ ଦିନ ସେ ମୋତେ ବିବାହ କରିବାକୁ ପ୍ରସ୍ତାବ କରିଥିଲେ । ମୁଁ ତାଙ୍କୁ ମନା କଲି, ନୂଆଉଙ୍କୁ ଭଲ ପାଇବାକୁ କାନ କାନ କରି ଶିଖାଇଲି । ସେ ଲୁହଭରା ଆଖିରେ ମୋ ହାତ ଧରିଥିଲେ । ତାଙ୍କର ହାତ ଆଡ଼େଇ ମୁଁ ଗୃଲି ଆସିଲି । ମନରେ ମୋର ଆଘାତ ଲାଗିଲା । ଭାବିଲି, ଏ ଗାଁରେ ଆଉ ରହିହେବ ନାହିଁ । ଝିମ ଭାଇଙ୍କ ଘରେ ରହିଛି, ତାଙ୍କ ମନରେ କଷ୍ଟ ଦେଇଛି, ତାଙ୍କ ମନର ଦୁଃଖ ମୁଁ ଜାଣେ । ମଣିଷର ମନ ସବୁବେଳେ ଥାଣ ରହିପାରେ ନାହିଁ । ସେଥିପାଇଁ— ।

ଏଁ, ସେଇଥିପାଇଁ ଯେ ତୋ ଗେରସ୍ତକୁ ବିଷ ଦେଇ ମାରିଛି ତାରି ସଂସାର କରିବାକୁ ଯାଉଛୁ ?

ହଁ, ଲୋକନିନ୍ଦାରୁ ଉଦ୍ଧାର ପାଇବି । ପିଲାଟି ପାଇଁ ନିଶ୍ଚିନ୍ତ ହେବି । ନୂଆଉଙ୍କ ବାଟର କଣ୍ଟା ହୋଇ ରହିବି ନାହିଁ ।

କହିଲେ, ତୁଳସି, ଝିମ ମୋର ଦୁଃଖୀ । ତତେ ମୁଁ ଏ ଘରର ବୋହୂ କରି ଆଣିବି । ଏଇ ଘରର ଲକ୍ଷ୍ମୀ ହେବାକୁ ତୁଇ ଏକା ଯୋଗ୍ୟା । ଦାଣ୍ଡଲୋକେ ବାରକଥା କହିବେ । କାହା କଥାରୁ ମତେ କଅଣ ମିଳିବ ? ତୋ ମନୁଆଁରେ କୌଣସି ଦୁଃଖ ରହିବ ନାହିଁ । ଗୋଟିଏ ବୋଲି ମୋର ପୁଅ, କେଡ଼େ ସରାଗରେ ବୋହୂ କରି ଆଣିଥିଲି । ଘରେ ଗୋଡ଼ ଦେଲା ଦିନରୁ, ମୋ ପୁଅର ମୁହଁରୁ ହସ ଲିଭିଲା, ମନରୁ ସରାଗ ଭାଙ୍ଗିଲା । ଦିନ ରାତି ମିଶି ଦୁଇଘଣ୍ଟା ଘରେ ପଶୁ ନାହିଁ ।

ଅଶାନ୍ତ, ଅଶାନ୍ତ, ଏଇଆ ଦେଖି ମୁଁ ମରବ, ଏଇଆ ଦେଖି ମରବା ମୋ ଭାଗ୍ୟରେ ଅଛୁ ? ତୁଳସି, କହ, ଏ ଘରର ବୋହୂ ହୋଇ ଆସିବୁ ? ଝିମାର ମୁହଁରେ ହସ ଫୁଟିବ ?

ବୁଝି ପାରଲ ନାହିଁ ତାଙ୍କ ମନର କଥା । ପୁଅକୁ ସୁଖୀ ଦେଖିବାର ଉତ୍ତେଜନାରେ ସେ ଏତେ ଗୁଡ଼ାଏ କଥା କହଗଲେ । ମୁଁ ତାର କ ଉତ୍ତର ଦଅନ୍ତ । ତାଙ୍କର ମୁହଁକୁ ଗୃହିଁ ରହଲ ।

କହଲେ, ବଶ୍ୱାସ କର ପାରୁନୁ ?

ଉତ୍ତର ଦେଲ, ତମର ବୋହୂ ହୋଇ ଆସିଲେ, ଏ ଘରର ଅଶାନ୍ତ କମିବ ନାହିଁ, ବଢ଼ିବ । ଆଜ ଝିମ ଭାଇ ଯଦ ନଇଁ ପଡ଼ନ୍ତ, କମ୍ବା ନୂଆଉ ଯଦ ମନକୁ ବୁଝାଇ ପାରନ୍ତ, ତେବେ ସଂସାର ସୁଖରେ ଚଳବ । ମୁଁ ଆସିଲେ, ତମର ସେବା, ଝିମ ଭାଇ ଙ୍କ ନୂଆଉର ସେବା କର ପାରବ; କନ୍ତୁ ଘରର ଅଶାନ୍ତ ଭାଙ୍ଗି ପାରବ ନାହିଁ । ଅଶାନ୍ତ ବଢ଼ିବ । ଦୁନଆଁରେ ନନ୍ଦା ହେବ, ଚହଳ ପଡ଼ବ । ଲୋକେ କହବେ, ଛି, ଛି, ତୁଳସୀଟା, ସେ ହେଲା ଅମୁକ କୁଳର ବୋହୂ । ମା, ତୁମେ ଅସମ୍ଭବ କଥା କହୁଛ ।

ବୁଢ଼ୀ କହଲେ, ଅସମ୍ଭବ କଥା କହୁନାହିଁ । ଜାଣେ, ଘରେ ଅଶାନ୍ତ ହେବ, ଦାଣ୍ଡରେ ଚହଳ ପଡ଼ବ । ଲୋକେ ନନ୍ଦା କରବେ । କନ୍ତୁ, ମୋ ପୁଅ ମନରେ ଆନନ୍ଦ ଆସିବ ତ ? ତାର ସୁଖ ଦେଖି ଖୁସିରେ ମୁଁ ଆଖି ବୁଜବ ।

ହସିଲ । କହଲ, ମା, ତେମେ ଭୁଲ ବୁଝିଛ । ସେ ଆନନ୍ଦ ସେ ସୁଖ ଅଧିକ ଦନ ରହବ ନାହିଁ । ଚରଦନ ଅଶାନ୍ତରେ ମୁଁ ଜଳ ପୋଡ଼ ମରବ । ଆଉ ଗୋଟିଏ ଆତ୍ମାକୁ ମଧ୍ୟ ଜଳାଇ ପୋଡ଼ାଇ ମାରବ । ଯାହାଙ୍କୁ ମୁଁ ସୁଖୀ କରବାକୁ ଆସିବ, ହୁଏ ତ ତାଙ୍କୁ ବ ସୁଖୀ କର ପାରବ ନାହିଁ । ମୋତେ କ୍ଷମା କର । ମୁଁ ଏ ଗାଁରୁ, ଝିମ ଭାଇଙ୍କ ପାଖରୁ ଦୂରେଇ ରହଲେ, ଏ ଘରର ମଙ୍ଗଳ ହେବ । ସ୍ୱାମୀ ସ୍ତ୍ରୀ ଭତରେ ଅବଶ୍ୱାସ ରହବ ନାହିଁ । ସେଇଥିପାଇଁ, ସେଇଥିପାଇଁ ମୁଁ ଗୃଲଯିବାକୁ ଗୃହେଁ, ବଞ୍ଚିଥିବାଯାଏ ଯେପର ତାଙ୍କ ସାଙ୍ଗରେ ଆଉ ଦେଖା ନ ହୁଏ । ଦୁନଆ ଯାହା କହୁ, ନୂଆଉ ଯାହା ଭାବନ୍ତୁ, ଝିମ ଭାଇ ମୋର ଭାଇ ।

ପୁଣି କହଲ, ମା, ନୂଆଉ ଭୁଲ କରୁଛ । ଜାଣି ଜାଣି ନଜ ଗୋଡ଼ରେ କୁରାଢ଼ି ହାଣୁଛ । ବୁଝିପାରୁନ । ମୋର ଅପମାନ କରବାକୁ, ମୋତେ ଲାଜ ଦେବାକୁ ମାଇପି ସଭା କର ଅନେକ କଥା କହଲେ । କେଉଁ କଥା ମୋର କାନ ନ ଶୁଣିଛ ଯେ ମୁଁ ଛଳ କରବ ? ମୁଁ ଯଦ ଦୁର୍ବଳ ହୋଇଥାନ୍ତ, ଲୋଭରେ ପଡ଼ ଝିମ ଭାଇଙ୍କର ହାତ ଛୁଆଁଡ଼ ଆସିବାକୁ ମନ କର ନ ଥାନ୍ତ, ଆଜ ନୂଆଉର ଭାଗ୍ୟ କଅଣ ହୋଇଥାନ୍ତା ? ସେ ମୋତେ ଘୃଣା କରନ୍ତେ, ଦୁର୍ନାମ ରଟାନ୍ତେ, ଆଉ ଅଧିକା କଅଣ କରନ୍ତେ ? ସବୁ ତ କର ସାରଛନ୍ତ । ତାଙ୍କୁ ମୁଁ ଭଲ ପାଏ ।

ତାଙ୍କ ପ୍ରତି ଟିମ ଭାଇଙ୍କର ବ୍ୟବହାର କଥା ଶୁଣିଲେ ମୋ ମନରେ ଦୁଃଖ ହୁଏ; ହିନେ ଦୁଇ ଦିନ ପରେ ମୁଁ ଏ ଗାଁ ଓ ତମ ଘର ଛାଡ଼ି ଚାଲିଯିବି । ମୋ ନେଇ ନୂଆଭଉ ନିଶ୍ଚିନ୍ତ ହେବେ । ହେଲେ, ଟିମ ଭାଇଙ୍କର ମନ ପାଇବେ ତ ? ମରଦ ପିଲା, ଟଙ୍କା ପଇସାର ଅଭାବ ନାହିଁ, ସେ ଯଦି ଅନ୍ୟକୁ ଚାହିଁବେ, ନୂଆଭଉ ବାଧା ଦେଇ ପାରିବେ ? ସେ ଭୁଲ୍ କରୁଛନ୍ତି ।

ତୁଳସି, ତୋର ଏତେ ବୁଦ୍ଧି ? ତୋ କଥାରେ ମୁଁ ବାଧା ଦେବି ନାହିଁ । ତୋର ପିଲାଦିନୁ ତତେ ଭଲ ପାଏ, ତୋ ମନକୁ ଚିହ୍ନେ । ବୋହୂକୁ ଏ ସବୁ କଥା ବୁଝାଇ କହିବୁ ?

ମୁଁ ପାରିବି ନାହିଁ । ସେ ମୋତେ ଦେଖି ପାରନ୍ତି ନାହିଁ, ଅବିଶ୍ୱାସ କରନ୍ତି । ମୁଁ ଏ ଗାଁ ଛାଡ଼ି ଚାଲିଗଲା ପରେ, ତେମେ ନିଜେ ତାଙ୍କୁ ବୁଝାଇ କହିବ । ସେ ଯଦି ନ ଶୁଣନ୍ତି, ତମର କଥା ନ ମାନନ୍ତି, ଚିରଦିନ ଦୁଃଖ ଭୋଗିବେ ।

ସେ ବଡ଼ ଅବାଧ । ମୋ କଥା ଶୁଣିବ ନାହିଁ । ଚିରଦିନ ଦୁଃଖ ପାଇବ । କାହିଁକି ମୁଁ କହିବି ? ତୁ ଯା ମା । ଠାକୁରେ ତୋର ମଙ୍ଗଳ କରିବେ । ବୋଉକୁ କହିବୁ ଆସିବ ।

ବୁଢ଼ୀଙ୍କୁ ପ୍ରଣାମ କରି ପଦାକୁ ଆସିଲି ।

କାନ୍ଥକୁ ଆଉଜି ନୂଆଭଉ ଠିଆ ହୋଇ ସବୁ ଶୁଣୁଥିଲେ, ଆଖିରୁ ଧାର ଧାର ଲୁହ ବହି ଯାଉଥାଏ ।

ତାଙ୍କୁ ଦେଖି ମୁଁ ଆଡ଼େଇ ହୋଇ ଚାଲି ଆସିଲି ।

୩୩

ସବୁ କଥା ବୁଝି ବିଚାରି ଆଗକୁ ପଛକୁ ଚାହିଁ କରୁଛି ବୋଲି ମଣିଷର ଯେଉଁ ବଡ଼େଇ, ତାକୁ ଦଇବ ସହିପାରେ ନାହିଁ । ସବୁ ଠିକ୍ କରୁଛି, ଭାବିଲେ ମଧ ତାର କାମ ଭିତରେ କେତେ ଫାଙ୍କ ରହିଯାଏ । ସେହି ଫାଙ୍କ ଭିତରେ ଭୁଲ ବସା ବାନ୍ଧି ରହେ । ଆଖିରେ ଅନ୍ଧପୋଟଳି ବାନ୍ଧେ । ମଣିଷ ହତାଶ ହେଲେ ବୁଝେ । କହେ ମନକୁ, କେଡ଼େ ଭୁଲ କରିଛି ? ଦୁଃଖ କରେ, ଅନୁତାପ କରେ । ଭୁଲ ଆଉ ସୁଧାରି ପାରେ ନାହିଁ । ନିଜକୁ ଧିକ୍କାର କରେ । କାନ୍ଦେ, କାନ୍ଦେ, ଭାବେ, ଦୋଷ କାହାର ? ଯିଏ ତା ମୁଣ୍ଡରେ ଦୋଷ ଲଦି ଦିଏ । ସେ ବୁଝେ ନାହିଁ ଯେ ଦୋଷ କାହାରି ନାହିଁ, ଦୋଷ ମଣିଷର ଅପୂର୍ଣ୍ଣତାର ।

ତଥାପି ମନ ବୁଝିଲା ନାହିଁ ।

ଠିକ୍ ଶେଷବେଳରେ, କେତେ଼ ଆନନ୍ଦରେ କେତେ଼ ଫୁର୍ତ୍ତିରେ ଜନିଷପତ୍ର ସବୁ ବନ୍ଧାବନ୍ଧି ହେଲା । ଦେହରେ ତାତ ଭରି ରହିଥିଲେ ମଧ୍ୟ ବୋଉ ଆମ ସାଙ୍ଗରେ ଯୋଗ ଦେଇଥିଲା । ଗାଁ ନ ପାହୁଣୁ ଏତେ କାଳର ଘରଟାକୁ ଛାଡ଼ି ଚାଲିଯିବାକୁ ହେବ । ଦୁଃଖ ହେଉଥାଏ; କିନ୍ତୁ ସୁରଙ୍କୁ ଆଗରେ ଦେଖି ପ୍ରାଣ ପୁଲକି ଉଠୁଥାଏ । ସୁର—ଯାହାକୁ ନେଇ ଆଜୀବନ ସୁଖରେ ଘର କରିବି ।

ସାତ ଘଡ଼ି ଅନ୍ଧାର ପରେ ଖଣ୍ଡିଆ ଜହ୍ନ ଆକାଶ କୋଣରୁ ଗଛ ଗହଳିର ସେ ପାଖରୁ ଉଙ୍କିମାରି ଆସୁଥାଏ । ମୋର ଭୟକୁ ଉପହାସ କରିବାକୁ ସୁଲୁ ସୁଲୁ ବହୁଥାଏ ଶୀତଳ ପବନ । ଲକ୍ଷ ଲକ୍ଷ ତାରା ଆକାଶ ଉପରୁ ମିଟି ମିଟି ଚାହିଁ ରହିଥାନ୍ତି ।

ସୁରଙ୍କର ଅତି ପାଖରେ ଥାଇ ମୋ ମନ ପୁଲକି ଉଠୁଥାଏ । କେତେ କଥା, କେତେ଼ ଆନନ୍ଦ ।

ସେହି ନୀରବ ନବେଳା ରାତିର ଫିକା ଆଲୁଅ ପରଶରେ, ଯେତେବେଳେ ଦେହ ଶିହରି ଉଠୁଥିଲା ତାଙ୍କର ନିବିଡ଼ ଆଲିଙ୍ଗନ ଲୋଭରେ, ମୋ ଅଟଳା କଣ୍ଠର ଗୋଟାଏ ପ୍ରଶ୍ନର ଉତ୍ତର ଦେଇ, ସେ ମୋର ଏତେ ଦିନର ଆଶା ଉପରେ ବଜ୍ରମାଡ଼ ଦେଲେ । କହିଲେ, ନୂଆଉ, ଏ କଥା ମୁଁ ମନକୁ କେବେ ଆଣିନାହିଁ । ତେମେ ତମର ଘରକୁ ଫେରିଯିବ । ମୁଁ ତମର ସେବା କରିବି । କାଲି ତୁମକୁ ମୁଁ ଯେଉଁ ଆଖିରେ ଦେଖୁଥିଲି, ଆଜି ମଧ୍ୟ ସେହି ଆଖିରେ ଦେଖୁଛି । ତମ ତୁଣ୍ଡରୁ ଏମିତି କଥା ଶୁଣିବି ବୋଲି ମୁଁ କେବେ ଆଶା କରି ନ ଥିଲି ।

ପଥର ପରି ଘଡ଼ିଏ କାଳ ବସି ରହିଲି । ମୋ ଆଖି ଆଗରେ ଦୁନିଆଁଟା ଘୂରିଲା ପରି ଲାଗିଲା । ଅଜାଣତରେ ଦୁଇ ଆଖିରୁ ଝରି ପଡ଼ିଲା ଲୁହ ।

ଭୁଲ, ସବୁ ଭୁଲ । ସେତେବେଳେ ମୁଁ କ'ଣ ଭାବିଲି କଣ ସ୍ଥିର କଲି, ଆଜି ମନେ ନାହିଁ । ଦୁଃଖ ହତାଶାର ଋହି କମି ଆସିଲା ପରେ ତାଙ୍କ ବିରୁଦ୍ଧରେ ଅଭିମାନ ଓ ରାଗରେ କେତେ କଥା ବକିଗଲି । ସେ ଉତ୍ତେଜିତ ନ ହୋଇ ଧୀରେ ଧୀରେ ମୋ କଥାର ଜବାବ ଦେଲେ ।

କଥାର କଟାକଟି ! ମୁଁ ତାଙ୍କୁ ବୁଝାଇବାକୁ ବସିଲି । ମନ ଖୋଲି ଜୀବନର ସବୁ ଉତ୍ତେଜନା, ଅଭିଜ୍ଞତା ଓ ପଣ ତାଙ୍କର ଆଗରେ କହିଲି । ସେ ମଧ୍ୟ କିଛି ଲୁଚାଇଲେ ନାହିଁ । ସବୁ କହିଲେ । ନିଜେ ଯେପରି ସଂଯମୀ ହୋଇ କେତେ କେତେ ପ୍ରଲୋଭନ ପାଖରୁ ଦୂରକୁ ଘୁଞ୍ଚି ଆସି ପାରିଛନ୍ତି, ସେମିତି ସଂଯମ ଶିକ୍ଷା କରିବାକୁ ମୋତେ ସେ ଉପଦେଶ ଦେଲେ । ମୋ ମନରେ କିଛି ପଶୁ ନ ଥାଏ ।

ପ୍ରଲୋଭନ ପାଖରୁ ଦୂରେଇ ଆସିଲେ ସତ, କିନ୍ତୁ ପ୍ରଲୋଭନ ତ ଆସିଥିଲା ! ସବୁବେଳେ ମଣିଷ ଠାଣ ରହି ପାରେ ନାହିଁ । କେତେବେଳେ ମେ

ତାର ଭିତର ଭାଙ୍ଗେ, ସେ ନିଜେ ଜାଣିପାରେ ନାହିଁ । ଗୋଟିଏ ଘରେ ଆମେ ଦିହେଁ ରହିବା । ଦୁହିଁଙ୍କର ବୟସ ଅଛି । ମନର ଉତ୍ତେଜନା ନଇଁ ନାହିଁ । ଘରେ ଆଉ କେହି ନାହିଁ ଯାହାର ଡରରେ ମନରେ ସଙ୍କୋଚ ଆସିବ । ଉତ୍ତେଜନା ଯଦି ଏକ ସଙ୍ଗେ ଦୁଇଟି ମନରେ ଆସେ, ଧୈର୍ଯ୍ୟ ରହିପାରିବ ନାହିଁ । ସୁର ଯଦି ଅନ୍ୟର ହାତ ଧରି ଘରକୁ ଆଣନ୍ତି, ତା ହେଲେ କେଜାଣି—କାଳି, ଗୋଟିଏ ଆଉ ପ୍ରଲୋଭନ ଆସିବ । ବଞ୍ଚିଥିବା ଯାଏ ମନ ଛଟପଟ ହେବ । ତା ଅପେକ୍ଷା ଦୂରେଇ ରହିବା କଅଣ ଭଲ ନୁହେ ? ଅନ୍ୟର ହାତ ଧରି ଘରକୁ ଆଣିବା ଅପେକ୍ଷା ଆମ ସମାଜରେ ଯାହା ଚଳେ, ସେପରି ନ କରିବା କଅଣ ଉଚିତ ?

ଏଇ ସବୁ କଥା ନେଇ ବାଦାନୁବାଦ ଚାଲିଲା । ଶେଷକୁ ସୁର ସ୍ୱୀକାର କଲେ, ତୁମେ ଯାହା କହିଲ ନୂଆଉ, ସବୁ ଠିକ୍ । ତଥାପି, ମତେ ଭାବିବାକୁ ଦିଅ । ଅନେକ କଥା, ଭୁଣ୍ଡିବାଇଦ ସତ ଫଳିଯିବ । ତମ ଭିତରେ ମୋ ଭାଇର ଉପସ୍ଥିତି ମୁଁ ସବୁବେଳେ ଅନୁଭବ କରେ । ତୁମେ ଯେତେ ଦୂରରେ ରହିଲେ ମଧ୍ୟ, ମନରେ ଆସେ, ଭାଇ ମୋର ବଞ୍ଚିଛି । ଯେଉଁଦିନ ତମକୁ ମୁଁ ନିଜର କରିନେବି, ଭାଇକି ଖୋଜିଲେ ଆଉ ପାଇବି ନାହିଁ ।

କହିଲି ଅଁଛା କରି, ନିଜର ମନ ଭିତରେ ଖୋଜିଲେ ପାଇବ । ଯେ ଯାଇଛି, ତାର ସ୍ମୃତି ଛଡ଼ା ଦୁନିଆଁରେ ଖୋଜିଲେ ଆଉ କିଛି ମିଳିବ ନାହିଁ । ଭାଇଙ୍କୁ ସ୍ନେହ କରିବାର କଥା, ଭକ୍ତି କରିବାର କଥା । ଭାଇର ଆଦର ଯତ୍ନ, ଭଲ ମନରେ ଭାଇଠାରୁ ଯାହା ପାଇବାକୁ ଆଶା କରନ୍ତି, ସବୁ ତୁମେ ପାଇ ପାରିବ—ତମରି ରକ୍ତ, ମନୁଆଁର ମା ପାଖରୁ । ଆଉ, ମୁଁ ଯାହା ହଜାଇଛି, ସେହି ଅମୂଲ୍ୟ ରତ୍ନ ପାଇବ ତମରିଠାରେ ।

ନୂଆଉ, ମତେ ସମୟ ଦିଅ ।

ବୋଉ ଜାଣେ ନାହିଁ । ରାତି ଅଧରେ ସେ ବିଦାୟ ନେଇ ଗଲେ । ସେ ଦିନ ତାଙ୍କୁ ଆଉ ଅଟକାଇ ପାରିଲି ନାହିଁ । ଝରିଲା ଆଖିରେ ଯେତେବେଳେ ତାଙ୍କର ଥରିଲା ହାତକୁ ମୋ ହାତରୁ ଖସାଇ ନେଲେ, କାନ୍ଦଣା କୋହରେ ପଚାରିଲି, କେବେ ପୁଣି ଆସିବ ସୁର ?

କହିଲେ, ଜାଣେନା ନୂଆଉ ।

ସୁର ଚାଲିଗଲେ । କେତେ ଦିନ ହେଲା ଦେହ ଓ ମନରେ ଯେଉଁ ଉତ୍ତେଜନାର ଲହଡ଼ି ଖେଳୁଥିଲା ଆଖିର ତତଲା ଲୁହ ଧାରରେ ସେତକ ଶାନ୍ତ ହେଲା । ମନରେ ଆଉ ଚିନ୍ତା ପଶିଲା ନାହିଁ । କେବଳ ଗୋଟିଏ କଥା ଭୁହାଇ ଭୁହାଇ ଉଠିଲା, ଦଇବ ଦଉଡ଼ି ମଣିଷ ଗୋଡ଼ି, ଯେଣିକି ଓଟାରେ ତେଣିକି ଯାଇ ।

ସେତିକ ମୋର ହତାଶିଆ ଜୀବନର ସାନ୍ତ୍ଵନା । ଯାହା ହେବାର ହୋଇଯାଉ, ମୋର ତ ଦୁଃଖ ନାହିଁ ।

ଦୁଇଦିନ ହେଲା ବୋଉ ବିଛଣାରୁ ଉଠି ନାହିଁ । ବେଳୁବେଳ ତାର ଦେହ ବଳେଇ ପଡ଼ୁଛି । ବେଶି ବେଳ ବିଛଣାରେ ତୁନି ହୋଇ ଆଖି ବୁଜି ପଡ଼ି ରହୁଛି, ସତେ କି ଦେହରେ ଜ୍ଞାନ ନାହିଁ । ଆଖି ଖୋଲିଲେ, ମତେ ପାଖରେ ଦେଖିଲେ ପଚାରୁଛି, ସୁର ଆଇଲା କି ମା ?

ସୁର ଆସିଲେ ନାହିଁ । ସେ ସମୟ ମାଗିଥିଲେ । ନିଜେ ସେ ଜାଣନ୍ତି ନାହିଁ କେବେ ଆସିବେ ।

ମୋ ମୁହଁ ଦେଖି, ମନ କଥା ବୁଝି ମୁଣ୍ଡ ହଲାଇ ବୋଉ କହିଲା, ସେ ଆସିବ ନାହିଁ, ସେ ଆସିବ ନାହିଁ ।

ଭାବିଲି, ବୋଉ ଆଗରେ ସବୁ ସତ କଥା ଖୋଲି କହି ନ ଥିଲେ ଭଲ ହୋଇଥାନ୍ତା !

କହିଲି, ତୁ ବ୍ୟସ୍ତ ହନା ବୋଉ, ସୁର ନ ଆସୁ । ମଣିଷ ମାସେ ପନ୍ଦରଦିନ ଅନାଏଁ, ସେଇଠୁ ନିଜ କଥା ନିଜେ କରେ । ଚିରଦିନ କାହାରିକୁ କେହି ଅନାଇଁ ବସେ ନାହିଁ ।

ବଲବଲ କରି ମୋ ମୁହଁକୁ ଚାହିଁଲା । ଆଖିରେ ଲୁହ । ପଚାରିଲା, ତେବେ ଅନାଇଁ ବସିଛୁ କାହିଁକି ?

ତାର ଗୋଡ଼ ଘଷି ଦେଉଥିଲି । ଗୋଡ଼ ଟାଣି ନେଇ କହିଲା, ଲୋକଙ୍କ କଥା ମିଛ ନୁହେଁ । ତୁ ଯାହା ଅନୁମାନ କରିଥିଲୁ ସବୁ ସତ । ସେ ମଉନମୁହାଁ ଟୋକାକୁ ମୁଁ ଚିହ୍ନି ପାରି ନ ଥିଲି । ଏବେ ବୁଝିଲି । ମନୁଆଁ ବାପକୁ ସେଇ ବିଷ ଦେଇ ମାରି, ଧରା ପଡ଼ିବ ବୋଲି ଭଲେଇ ହେଉଛି । ହଁ ଏକଥା ସତ ।

ମୋ ଛାତି ଥରି ଉଠିଲା । ଧୈର୍ଯ୍ୟ ଧରି କହିଲି, ତୁ ତୁନି ହୋଇ ଶୋଇ ପଡ଼େ । ମୁଁ ଜାଣେ, ସୁର ସେମିତି କାମ କରି ନାହିଁ । କେମିତି କଅଣ ହେଲା ସେ ନିଜେ ଜାଣେ ନାହିଁ ।

ଏତେ ସବୁ ହେଲାଣି, ଏତେ ଦୁଃଖ ଭୋଗିଲୁଣି, ତଥାପି ତୁ ଲୁହଡ଼ି ପଡ଼ୁଛୁ ମା ।

ନାଇଁଲୋ ବୋଉ, ତା ହୋଇଥିଲେ ସୁର ମୋର ପ୍ରସ୍ତାବରେ ରାଜି ନ ହେଲେ କାହିଁକି ? ନିଜ୍ଜୀ ପରି କେତେ କଥା ତାଙ୍କୁ କହିଲି । ମନରେ ଅନୁତାପ ଆସୁଛି । ସେ ଉଣ୍ଡରେ ନ କହି ମଧ୍ୟ ଢଙ୍ଗରେ ମନାକରି ଦେଇ ଗଲେ ।

କହଲୋ, କାହିଁକି ସେ ଚୁଲିପଣା ଥରକୁ ଥର ଲୁଚି ଲୁଚି ଆସି ସେହି ସ୍ନେହ ଲଗାଇଲା ? ଏଡ଼େ ସାହସ ତାର ! ସେ ଭାବିଛି ମୋ ପିଲା ଝିଅ ତୁଲସୀ ଯାଇ ତା

ଘରେ ପୋଇଲା ହୋଇ ରହିବ, ଅଉ, ସେ ସୁଖରେ ସଂସାର କରିବ ଅଉ କାହାର ହାତ ଧରି ? ଅଲୋ, ତତେ ପାଇବାକୁ ସେ ମନୁଆଁ ବାପାକୁ ମାରି ନାହଁ, ସବୁ ସମ୍ପତ୍ତି ନିଜର କରିବ ବୋଲି ଏହା କରିଛି । ତତେ ଓ ମନୁଆଁକୁ ପାଖକୁ ନେଲେ କଳେ ବଳେ କୌଶଳେ ମନୁଆକୁ— । ନାଇଁ, ତା ପାଖକୁ ତୁ ଯିବୁ ନାହିଁ । ଭିକମାଗି ପଛେ ମନୁଆଁକୁ ପୋଷି ମଣିଷ କର ।

ତା' କଥାରେ ମତେ ଛନପୁର ଅନ୍ଧାର ଦିଶିଲା । କହିଲି, ତୁ ଶୋଇ-ପଡ଼େ ।

ଏକୁଟିଆ ମଣିଷ । ପିଲାଟିକୁ ଲଦି ହୋଇ କେଉଁ କାମ କରିବ, ରୋଗୀର ଯତ୍ନ ନେବ, ପଥି ରାନ୍ଧିବ କି ବଇଦ ପାଖକୁ ଔଷଧ ପାଣି ପାଇଁ ଯିବ ? ଘର ବାଟେ ଯିଏ ଗଲି ଯାଉଥାଏ ତାକୁ ଡାକି ବୋଉ ପାଖରେ ବସାଏ । ନିଜେ ବଇଦ ଘରକୁ ଯାଏ ।

ହାତରେ ଧନ ନାହିଁ । ବଇଦର ଔଷଧ ପାଉଣା ବାକି । ଭାତ ଗଣ୍ଡିଏ ରାନ୍ଧି ପିଲାଟିକୁ ଦେଇ ପାରୁ ନାହିଁ । ପାଣି ତୋରାଣି ପିଇ ଦିନକୁଦିନ ଶୁଖି ଯାଉଛି । କାହା ଘରକୁ କାମ ଧନ୍ଦା କରି ଯିବାକୁ ତର ନାହିଁ । କଅଣ କରିବ ? ଚାରିଆଡ଼ ଅନ୍ଧାର ଦିଶୁଛି ।

କାହିଁକି ସୁରଙ୍କ ସଙ୍ଗେ ନ ଗଲି ! ଜୀବନ ଥିଲେ ସିନା ଭବିଷ୍ୟତ କଥା ଭାବିବା । ସୁରଙ୍କ ବିଷୟରେ ରାଗ ବାଉଳାରେ ବୋଉ ଯାହା କହିଲା ମୋ ମନ ଘେନିଲା ନାହିଁ । ମନୁଆଁକୁ ସେ ପ୍ରାଣରୁ ବଳି ଭଲ ପାଆନ୍ତି ।

ବ୍ୟସ୍ତରେ ପଡ଼ିଥାଏ । ବୋଉର ଗୋଡ଼ ପାଖରେ ବସି ଗୋଡ଼ ଅଉଁସି ଦେଉଥାଏ । ଛାତିରେ କଫ ଜମାଟ ବାନ୍ଧି ରହିଛି । ନିଶ୍ୱାସ ନେଲା ବେଳକୁ ଘଡ଼ ଘଡ଼ ହେଉଛି । ଆଖି ଖୋଲୁ ନାହିଁ । ଦେହରେ ଝାଇଫୁଟା ତାତି । ବଇଦ ଦେଇଥିବା ଔଷଧ ଶେଷ ହେଲାଣି । ସକାଳେ ଆସି ରୋଗୀକୁ ଦେଖି ଯିବେ ବୋଲି କହିଥିଲେ । ଦିନ ଦି ଘଡ଼ି ହେଲାଣି, ଦେଖା ଦର୍ଶନ ନାହିଁ । କେତେ ଲୋକଙ୍କ ହାତରେ ଖବର ପଠାଇଲିଣି । ଟଙ୍କା ପାଇବେ ନାହିଁ ବୋଲି ହୁଏତ ଆସୁ ନାହାନ୍ତି ।

ରେମାଇକୁ ସାହାଯ୍ୟ ମାଗିବ ? ନାହିଁ କରିବ ନାହିଁ । କିନ୍ତୁ ଯାହାର ମନ ଭାଙ୍ଗିଛି, ତା ପାଖରେ ହାତ ପାତିବ ?

ଟିମାଇ ପାଖରେ ଗୋଡ଼ ଭାଙ୍ଗି ଠିଆ ହେବ ? ବଡ଼ ଲୋକ । ଦେବେ । କିନ୍ତୁ, ତାଙ୍କୁ ମାଗିବାକୁ ମୋର ମୁହଁ ନାହିଁ ।

କାନ୍ତରାଷ୍ଟି ବାବୁ ? ଅଗ୍ରହରେ ସେ ଆଗ ବଳି ପଡ଼ ଦେବେ । ଦାଆ ନଥିର ଦୁନଆଁ । ଯାହା ସେ ଚାହିଁବେ ମୁଁ ଦେଇ ପାରିବ ନାହିଁ ।

ସୁରଙ୍କ ପାଖକୁ ଖବର ପଠାଇବ ? କିଏ ଯିବ ?

ମନକଥା ଜାଣିଲା ପରି ଟିମ ଭାଇ ଡାକ ଛାଡ଼ିଲେ ପଦାରୁ—ତୁଳସୀ, ଅଲୋ ତୁଳସୀ !

ଚମକ ଉଠିଲି । ମନୁଅଁକୁ କାନ୍ଧରେ ପକାଇ ପଦାକୁ ଆସିଲି । ତାଙ୍କୁ ଦେଖି କେଜାଣି କେମିତି ମୋ ଆଖି ଛଳ ଛଳ ହେଲା ।

କହିଲେ, କାନ୍ଦନା, ବୁଢ଼ୀ ଆସି ଏତେ ସବୁ ହେଲେଣି ଖବର ପଠାଉନୁ ? ତୋ ନୂଆଉ କାହାଠୁଁ ଶୁଣି, ମତେ ଜଗର ଧରି ପଠାଇଛନ୍ତି । ନିଜେ ଆସିଥାନ୍ତେ । ଦିନବେଳ ବୋଲି ମୁଁ ମନା କଲି । ସଞ୍ଜକୁ ଆସିବେ । କାହାନ୍ତି ବୁଢ଼ୀ, ଦେଖେଁ ।

ଅନେକ ସମୟ ରହିଲେ । ତାଙ୍କର ପାଟି ଶୁଣି ବୋଉ ଥରଟିଏ ପାଟି ଫିଟାଇଥିଲା, ସ୍ୱରକରେ, ଅ ବାବା, ମୁଁ ଆଉ ବଞ୍ଚିବି ନାହିଁ । ତୁଳସୀ ତତେ ଲାଗିଲା, ବାଇଆ ବୁଦ୍ଧି ତୁ ଛାଡ଼ ।

ମୁଁ କିଛି କହି ପାରିଲି ନାହିଁ । ଟିମାଇ ମଧ୍ୟ ତୁନ ରହିଲେ ।

ପଦାକୁ ଆସି ତୁନ ତୁନ କହିଗଲେ, ଚିନ୍ତା କରନା, ଚିକିତ୍ସା କରି ହେବ, ତେଣିକି ଯାହା ତମ କପାଳରେ ଥିବ ।

ଘଣ୍ଟାକ ଭିତରେ ବଇଦକୁ ସାଙ୍ଗରେ ଘେନି ପହଞ୍ଚିଲେ । ଔଷଧର ବ୍ୟବସ୍ଥା ହେଲା । ବୋଉର ପଥି ଓ ଆମର ଖାଇବାର ବନ୍ଦୋବସ୍ତ ମଧ୍ୟ ହୋଇଗଲା । ମୋର ହଁ ନାଁକୁ ସେ ଶୁଣନ୍ତି କାହିଁକି ? ନିଜକୁ ଯାହା ଭଲ ଦେଖାଗଲା କରିଗଲେ । ମୋ ପାଖରେ ରହି ମତେ ସାହାଯ୍ୟ କରିବାକୁ ତାଙ୍କର ଘରର ଟୋକା ବଣ୍ଟକୁ ଛାଡ଼ିଦେଇ ଗଲେ । ବଇଦ ନାଡ଼ି ଦେଖି କହିଗଲେ, ଅବସ୍ଥା ଭଲ ଅଛି, ତେବେ ଉପୁନା ଧାନ ଗଜା ହେବା କଥା ।

ଟିମବାବୁଙ୍କର ଦୟା ଓ ସାହାଯ୍ୟ ପାଇଁ ତାଙ୍କ ପାଖରେ କୃତଜ୍ଞ ହେବାକୁ ମୋର ବେଳ ନ ଥିଲା କି ମନ ବି ନ ଥିଲା । ଘର ଖଣ୍ଡି ତ ନିଲାମ କରି ନେଇଛନ୍ତି, ବୋଉ ଆଖି ବୁଜିଲେ ମୁଁ ସ୍ୱରଙ୍କ ଘରକୁ ଚାଲିଯିବି ଏ କଥା ସେ ଜାଣନ୍ତି । ସେ ଘର ଦଖଲ ନେବେ । ଏତିକି ସାହାଯ୍ୟ ନ କଲେ ମୁଁ ସିନା କିଛି କହି ପାରିବି ନାହିଁ, ଦାଣ୍ଡ ଲୋକେ ଅବଶ୍ୟ ଦି କଥା କହିବେ । ଲୋକ ଲଜ୍ଜାକୁ ଡରି ସେ ସାହାଯ୍ୟ କରୁଛନ୍ତି, ହୁଏତ ତାଙ୍କ ସ୍ତ୍ରୀଙ୍କ ଶିକ୍ଷା । କରନ୍ତୁ ।

୩୪

ସଞ୍ଜବେଳେ ଟିମ ଭାଇଙ୍କ ସ୍ତ୍ରୀ ଆଉ ତାଙ୍କର ବୋଉ, ବୁଢ଼ୀକୁ ଦେଖିବାକୁ ଆସିଲେ । ଘଡ଼ିଏ ଖଣ୍ଡେ ସେମାନେ ରହିଲେ । ଭଲ ମନ୍ଦ ସବୁ ପଚାରି ବୁଝିଲେ । ବ୍ୟସ୍ତ ଓ ହତାଶ ନ ହେବାକୁ ମତେ ବୁଝାଇଲେ ।

ଟିମ ଭାଇଙ୍କର ସାହାଯ୍ୟ ପାଇ ମାଉ ଚକ୍ରସ୍ତା ଚାଲିଲା । କେତେ କାଳର ବୁଢ଼ୀ, ବେମାର ପଡ଼ିଛି । ତାକୁ ଦେଖିବାକୁ ଗାଁର ସବୁ ଲୋକ ଥରେ ଆସନ୍ତି । କିଏ କେତେ କଥା କହି ଫେରିଯାନ୍ତି ।

ଆଜି ଦିନେ ସଞ୍ଜ ବୁଡ଼େ ଟିମ ଭାଇ ଆସି ବୋଉ ପାଖରେ ବସିଲେ । ବଇଦ ଔଷଧ ଦେଇ ଚାଲିଗଲେ । ମୁଁ ପାଣି ମନ୍ଦାଏ ଗରମ କରୁଥାଏ । ସକାଳୁ କେମିତି ବାଦଲିଆ ହୋଇଥିଲା । ହଠାତ୍ ବର୍ଷା ଆରମ୍ଭ ହେଲା । ସଙ୍ଗେ ସଙ୍ଗେ ପବନ । ବଶିଆ ପିଣ୍ଡାରେ ବସିଥିଲା । ତାକୁ ଡାକି ଟିମ ଭାଇ କହିଲେ, ଆରେ ଧାଇଁ ଯା, ଘରୁ ଖଣ୍ଡେ ଛତା ନେଇ ଆସିବୁ ।

ବଶିଆ ଚାଲିଗଲା ।

ଅଧବାଟରେ ସେ ହୋଇଥିବ କି ନାହିଁ, ବରଷା ଓ ପବନର ବେଗ ବଢ଼ିବାକୁ ଲାଗିଲା । ଆମର ସ୍ରେଷ୍ଠ ଚାଳ ଖଣ୍ଡ ଉଠୁଥାଏ ପଡ଼ୁଥାଏ । ଘର ଛୁଆଁଣି ହୋଇ ନ ଥାଏ । ମାଙ୍କଡ଼ମାନେ ଠାଏ ଠାଏ ଓଲାଇ ପକାଇଥାନ୍ତି । କଣା ବାଟେ ବର୍ଷା ପାଣି ଘର ଭିତରେ ପଡ଼ୁଥାଏ ।

ଗରମ ପାଣି ଆଣି ଟିମ ଭାଇଙ୍କ ପାଖରେ ରଖିଲି । ଡିବିରିର ଶିଖାଟି ପବନରେ ଥରୁଥାଏ । ଲିଭିଯିବ ବୋଲି କାନ୍ଥ କଡ଼ରେ ରଖିଲି । କାଳେ ମନୁଆଁ ଉପରେ ପାଣି ପଡ଼ୁଥିବ ବୋଲି ତା ପାଖକୁ ଗଲି । ସପଟିକୁ ଶୁଖିଲା ଥାନକୁ ଘୋସାରି ଆଣିଲି ।

ଟିମ ଭାଇ ଗରମ ପାଣିରୁ ଟିକେ କାଚ ଗିଲାସରେ ରଖି ତହିଁରେ ଗୁଣ୍ଡ ଔଷଧ ପକାଇଲେ । ମୋ ହାତକୁ ଗିଲାସଟି ଦେଇ କହିଲେ, ନେ, ପିଆଇ ଦେ ।

ଔଷଧ ପାଣି ଟିକକ ପାଟିରେ ଗଳିଲା ନାହିଁ । ଭିତରକୁ ବୁନ୍ଦାଏ ଦିବୁନ୍ଦା ଯାଇଛି କି ନାହିଁ କେଜାଣି ।

ଟିମ ଭାଇ ମୁହଁ ନେଫଡ଼ି ଦେଲେ । ଘରର ଆର କଡ଼କୁ ଆସିବାକୁ କହିଲେ । ଗଲି । ଧୀର ସ୍ୱରରେ ମତେ କହିଲେ, ଆଲୋ ବଇଦ କହିଗଲା ବୁଢ଼ୀ ଆଉ ଠାକିବ ନାହିଁ । ଏଇ ଦିନେ ଓଳିକରେ ଚାଲିଯିବ । ସେଥିକି ଦୁଃଖ କଅଣ ? ଆମ୍ଭ ପାଟଳ ଗଛରୁ ନିଶ୍ଚୟ ଝଡ଼ିବ । କେହି ରଖି ପାରିବେ ନାହିଁ । କିଏ ଆଗ, କିଏ ପଛ । ଯିଏ ରହନ୍ତି, ସେ କାନ୍ଦନ୍ତି, ସତେ କି ସେ ଚିରଦିନ ରହିବେ !

ତାଙ୍କ କଥାରେ ମୋ ଆଖିରେ ଲୁହ ଭରିଗଲା । କିଛି ଉତ୍ତର ଦେଲି ନାହିଁ ।

ପୁଣି କହିଲେ, ମା ତୋର ଚାଲିଯିବ, ତୁ କାନ୍ଦିବୁ, କିନ୍ତୁ ତା ପରେ କରିବୁ କଅଣ; ଯଦି ସ୍ୱାମୀ ପାଖକୁ ଯାଇ ସଂସାର କରିବାର କଥା, ଚାଲିଯା, ନୋହିଲେ—

କଥାଟା ଅଧା ରଖିଦେଲେ । ମୋତେ ନିରୁତ୍ତର ଦେଖି ପୁଣି କହିଲେ, ସୁର ଏ ଭିତରେ ଦିନେ ସଞ୍ଜବେଳେ ଆସିଥିଲା । ପୁଣି ଖାଲିଏ ଖାଲିଏ ଚାଲିଗଲା କାହିଁକି ?

ପଚାରିଲି, ଆପଣ ଜାଣିଲେ କିପରି ?

କଥା ଅଛପା ରହେ ନାହିଁ, ସବୁ ଫୁଟି ବାହାରେ । କେତେ ଲୋକ କେତେ କଥା କହୁଛନ୍ତି—ଭଲ, ମନ୍ଦ । ପ୍ରକୃତ କଥାଟା କଅଣ କହିଲୁ ଲୁଳସି, କିଛି ଲୁଚାନା ।

ମୁଁ ଦୋ ଦୋ ପାଞ୍ଚ ହେଲି । ପୁଣି ଭାବିଲି, ଶୁଣିବାକୁ ମନ କରୁଛନ୍ତି ତ ଶୁଣନ୍ତୁ । ବିଶ୍ୱାସ କଲେ କରିବେ, ନଇଲେ ନାହିଁ । ଯାହା ମୋ ଭାଗ୍ୟରେ ଥିବ ତ ହେବ । କେହି ଅନ୍ୟଥା କରି ପାରିବେ ନାହିଁ । ଠିକେ ଠିକେ ସବୁ କଥା ମୁଁ କହିଲି ।

ମନ ଦେଇ ସବୁ ଶୁଣିଲେ । ଭାବି ଭାବି କହିଲେ, ବୁଝାଗଲା । ସୁର ଅନ୍ୟ କେଉଁଠି ସ୍ଥିର କରିଛି । ତୋ ଭବିଷ୍ୟତ୍ ପାଇଁ ତିନୋଟି ବାଟ ଖୋଲା ଅଛି । ସୁରର ସଂସାରକୁ ଯାଇ ଆଉ ପାଞ୍ଚଟା ବିଧବାଙ୍କ ପରି ପରର ସେବା କରି ବେଳ କଟା, ଦୁଃଖ ସୁଖରେ ଭାଗ୍ୟରେ ଯାହା ଆସିବ ସହି ପିଲାଟିକୁ ମଣିଷ କର । ନୋହିଲେ ଅନ୍ୟ କାହାର ହାତ ଧରି ସଂସାର କରିବାକୁ ଯା । ନୋହିଲେ ଏଇଠି, ଏଇଘରେ, ତୋ ବୋଉ ଯେପରି ବେଳ କାଟିଲା ସେମିତି କର । ଘରଟା ନିଲାମ ହୋଇଥିଲେ ବି ତୋତେ ରହିବାକୁ କେହି ମନା କରିବେ ନାହିଁ ।

ଏଇ ତିନୋଟି କଥା ମୁଁ କେତେ ଭାବିଛି । କୂଳ କିନାରା ପାଉ ନାହିଁ ।

କହିଦେଲି, କିଛି ଭାବି ପାରୁ ନାହିଁ । ଭାବି ସ୍ଥିର କରିବା ଭଳି ଅବସ୍ଥା ମୋର ନାହିଁ । ତେବେ କହ କଅଣ କରିବା ଉଚିତ ।

ଏତେ ବଡ଼ ଦାୟିତ୍ୱର କଥା ମୋ ତୁଣ୍ଡରୁ ଶୁଣିବୁ କାହିଁକି ? ବରଂ ତୁ ନିଜେ ଭାବି ସ୍ଥିର କର ।

ଜବାବ ଦେଲି ନାହିଁ ।

ବୋଉ ଘଡ଼ ଘଡ଼ ହୋଇ କଡ଼ ଲେଉଟାଇବାକୁ ଚେଷ୍ଟା କଲା । ଏକ ସଙ୍ଗେ ଆମେ ଦୁହେଁ ଦୁଇଅଡ଼ୁ ଉଠି ତା ବେକ ତଳେ ହାତ ଦେଇ କଡ଼ ଲେଉଟାଇ ଦେଲୁ । ମୁହୂର୍ତ୍ତିକ ପାଇଁ ଟିମା ଭାଇଙ୍କ ନିଶ୍ୱାସ ଗରମ କରିଥିଲା ମୋର କପାଳ ।

ଦୀପ ଲିଭିବା ଆଗରୁ ଯେମିତି ଦପ୍‌କରି ଜଳି ଉଠେ, ସେମିତି ବୋଉର ଆଖିପତା ଖୋଲିଗଲା । ଦୁଇଟା ମୁହଁ ପାଖାପାଖି ପଡ଼ିଲା ତାର ଆଖି ଆଗରେ । ଦୃଷ୍ଟି ସ୍ଥିର ହୋଇ ରହିଲା । ମଉଳା ଓଠରେ କ୍ଷୀଣ ହସର ଆଭା ଖେଳିଗଲା । ଦୁଇହାତ ଦୁଇଅଡ଼କୁ ମେଲାଇ କଅଣ ଯେପରି ଖୋଜିବାକୁ ଲାଗିଲା । ଗୋଟିଏ

ହାତରେ ପଡ଼ିଲା ମୋର ହାତ, ଆଉ ଆରଟିରେ ଝିମ ଭାଇର । ଦୁଇ ହାତକୁ ଧୀରେ ଧୀରେ ତାର ଗ୍ରୁଡ଼ି ଉପରେ ରଖିଲି । ଦମକାଏ ପବନ ଘର ମଥାନ ଥରାଇ ଦେଲା । ଲୁହ ଠୋପା ପରି ପାଣି ବୁନ୍ଦା ଖଣ୍ଡିଆ ଚାଳବାଟେ ଗଳି ପଡ଼ିଲା ଆମ ଦୁହିଁଙ୍କର ହାତ ଉପରେ ।

ବୋଉର ହାତ ଶିଥିଳ ହୋଇ ଆସିଲା । ଗୋଟିଏ ହେକ୍‌କା, ଆଖି ବୁଜିଲା । ଦୁଇହାତ ଦୁଇ ପାଖକୁ ଖସି ପଡ଼ିଲା । ବୁଝିଲୁ, ସେ ଆଖି ଆଉ ଖୋଲିବ ନାହିଁ ।

ଝିମ ଭାଇଙ୍କର ମୁହଁକୁ ଚାହିଁଲି । ଲୁହଭରା ଆଖି, ମୋ ପାଟିରୁ କଥା ବାହାରିଲା ନାହିଁ ।

କେଜାଣି କି ଦୁଃଖରେ ଥରିଲା କଣ୍ଠରେ କହିଲେ, ତୁଲସି, ସବୁ ଶେଷ ହୋଇ ଯାଇଛି । ଚେଷ୍ଟା କରିବାକୁ ଆଉ କିଛି ନାହିଁ ।

ବୋଉର ପ୍ରାଣହୀନ ଗ୍ରୁଡ଼ି ଉପରେ ମୁହଁ ମାଡ଼ିଦେଇ କାନ୍ଦି ଉଠିଲି । ଦଶ ଦିଗ ମୋତେ ଅନ୍ଧାର ଦିଶିଲା ।

ତୁନି ହ, ତୁଲସି, ଏପରି ଅଧୀର ହନା ।

ଯାହାଙ୍କର କୋଡ଼କୁ ଆଜି, କାନ୍ଧ ଉପରେ ମୁଣ୍ଡ ରଖି ଆଖିର ତତଲା ଲୁହ ଢାଳୁଥିଲି, ସେଇ ଝିମ ଭାଇଙ୍କ ସାନ୍ତ୍ୱନାରେ ତୁନି ହେଲି ସିନା, ମନର ଦୁଃଖ ତ ଆଉ ଘୁଞ୍ଚିଲା ନାହିଁ । ଝିମ ଭାଇ ସେମିତି ମୋ ଫୁଙ୍ଗୁଳା ପିଠିରେ ହାତ ବୁଲାଉ-ଥାନ୍ତି, କହୁଥାନ୍ତି, ଅଧୀର ହନା ଲୋ— ।

ଗ୍ରୁଡ଼ି ଥରାଇ କୋହ ଆସୁଥାଏ ।

ଝିମାଇ, କଅଣ କରିବ ?

ବ୍ୟସ୍ତ ହେଉଛୁ କାହିଁକି ? ଯେଉଁ ଆତ୍ମା ସ୍ୱର୍ଗକୁ ଚାଲିଯାଇଛି, ତାର ଇଚ୍ଛା ପୂରଣ ହେବ ।

ମନୁଆଁ କାନ୍ଦି ଉଠିଲା । ତାକୁ କୋଳକୁ ନେବାକୁ ଗଲି ।

ଝିମଭାଇ ବୋଉର ମୁହଁ ଘୋଡ଼ାଇ ପିଣ୍ଡାକୁ ଗଲେ । ଝଡ଼ର ବେଗ କମିଥିଲେ ମଧ୍ୟ ବର୍ଷା ଅଗପର ଲୁଚୁଥାଏ । ଡବିରେ ଅଳ୍ପଅ କମି ଆସିଲାଣି, ତେଲ ସରିଲାକି କଅଣ !

ମନଆଁକୁ କାଖ କରି ମୁଁ ମଧ୍ୟ ବାହାର ପିଣ୍ଡାକୁ ଆସିଲି । ବର୍ଷା ଲୁଚୁଛି । ଅନ୍ଧାର ଘୋଟିଛି ଚଉଦିଗ ।

୩୪

ବୋଉ ମଲା ପରେ ଗାଁର କେହି କେହି ଆସି ଭଲ ମନ୍ଦ କଥା ପଚାରି ଗଲେ । ସେମାନଙ୍କ କଥା ଶୁଣି ନ ଶୁଣିଲା ପରି ରହିଲି । ଶୁଦ୍ଧି କାମ ନ ସରୁଣୁ ମନୁଆଁ କୁ ଜର ହେଲା । ତା ସେବା କରୁଥାଏ, ଦିନ ରାତି କୋଳରେ ଧରି ବସିଥାଏ । ବର୍ଷାଦିନ । ଘରୁ ପଦାକୁ ବାହାରିବାର ଉପାୟ ନାହିଁ । ଟିମଭାଇ ମୋତେ ସାହାଯ୍ୟ କରୁଥାନ୍ତି । ଦିନେ ନୂଆଉ ଆସିଥିଲେ । ମୋର ଦୁର୍ଦ୍ଦଶା ଦେଖି ରୋଗଣା ପିଲାକୁ କୋଳକୁ ନେଇ କହିଲେ, ଅଟଳା ତୁଳସି, ଯେତେବେଳେ ବିପଦ ଆସେ, ଯାନ ବାହନ ନେଇ ଆସେ । ମଣିଷ ଜନମ ପାଇ ସବୁ ସହିବାକୁ ହୁଏ । ଚନ୍ତାକର ନା ।

ଏଣୁ ତେଣୁ ଗପି ପୁଣି କହିଲେ, ତତେ ସେ ଭଲ ପାନ୍ତି । ମୁଁ ବଞ୍ଚି ଥାଉଣୁ ଘରଣୀ ତ ହୋଇ ପାରିବୁ ନାହିଁ, ଭାଇ ଭାଇ ଡାକୁଛୁ, ସେଇ ଲେଖାରେ ଭଉଣୀ ହ ।

ହସି ହସି ମତେ ସେହରେ ଥାପଡ଼ ମାରିଲେ । ସେମିତି ଥଟ୍ଟାଳିଆ ସ୍ୱରରେ କହିଲେ, ଭାଇ ଭାଇ ହୋଇ ଯଦି ପୁଣି ଆଉ କଅଣ ହେଉତ, ମୋପରି ଠାକୁରାଣୀ ଜାଲାରୁ ପରିତ୍ରାଣ ପାଇବୁ ନାହିଁ ଲୋ, ଦେଖୁ ଛୁତ ମୋ ରୂପ ।

ଆଖି ଛଳ ଛଳ କରି କହିଲି, ଟିମଭାଇଙ୍କୁ ବଗିଚା ଘରେ କହିଥିଲି ନୂଆଉ ମୋର ମଣିଷ ନୁହେଁ ସେ ଠାକୁରାଣୀ । ତାକୁ ଚନ୍ଦ୍ରିଲେ, ତେବେ ତାଙ୍କ ବିରୁଦ୍ଧରେ ଏମିତି କହନ୍ତି ନାହିଁ । ସତେ ନୂଆଉ, ତମ ଭିତରେ କଅଣ ଅଛି ମୁଁ ଆଗରୁ ଜାଣେ । ଟିମାଇ ତମର ବାହାର ଦେଖିଥିଲା, ଏବେ ଭିତର ଦେଖିଲାଣି । କହ ନୂଆଉ, ଟିମାଇ ତମର ଗୋଡ଼ ଧୋଇ ପାଣି ପାଉଛିଟି ?

ମୋ ପାଟିରେ ହାତ ଦେଇ କହିଲେ, କେଡେ ଅଧର୍ମ କଥା କହୁଛୁ ଲୋ, ମୋ ଗୋଡ଼ ଛିଣ୍ଡି ପଡ଼ିବ ନାହିଁ ? ତାଙ୍କ ଗୋଡ଼ ଧରି ମୁଁ ମୋର ଦୋଷ ମାଗି ନେଇଛି । ଭୁଇ ଚୁଲିପଶି, ମୋ ଝାଣ ଭାଙ୍ଗିଛି, ମୋ ପାଟିରେ ବାଡ଼ିବଟା ଦେଇଛି । ହେଲେ, ତତେ ମୁଁ ଡରେ ଲୋ ଛତରଖାଇ, ସେଇଥିପାଇଁ ପଦ୍ମ ଶରଣ ପଶିଛି ।

ହସି ହସି କହିଲି, ମୋ ଭଳିର ମଣିଷକୁ ଗାଁର ରାଜଲକ୍ଷ୍ମୀଙ୍କର ଡର ! ଶୁଣିବାକୁ କୌତୁକ ଲାଗୁଛି ।

ଆଲୋ, ହଁ । ଥରେ ଯଦି ଆଖି ଠାର ମାରିବୁ, ସବୁ ଭାଇ ପଣିଆଁ ଭୁସ୍ଫୁଡ଼ ଯିବ । ଯେଉଁ କୋଠା ମୁଁ ଗଢ଼ିଛି ତଳେ ଅଜାଡ଼ ହୋଇ ପଡ଼ିବ । ମନେ ରଖିଥା ଏକା, ସମସ୍ତେ ଗୃପି ହୋଇ ମରିବେ, କେହି ବର୍ତ୍ତିବେ ନାହିଁ । ଠାକୁରେ

ତୋ ଚମରେ ଯେଉଁ ଚହ୍ନଟ ନଅାଁ ଜାଳଛନ୍ତି, ସେଇ ନଅାଁକୁ ମୋର ଡର । ଭାଇ ଡାକ ଯେ ନଈବଢ଼ିକୁ ହଅଙ୍କ ଗଣ !

ଠାକୁରେ ମୋ ଅଖିରେ ଯେଉଁ ପାଣି, ମୋ ନିଶ୍ୱାସରେ ଯେଉଁ ଝଡ଼ ରଖିଛନ୍ତି ତାକୁ ତେମେ ଦେଖିନା ।

ତାଉ ଉପରେ ମୋର ବିଶ୍ୱାସ ଲୋ ! ଯେଉଁଦିନ ତୁ ଏ ଗାଁ ଛାଡ଼ି ଯିବୁ ସେଇ ଦିନ ମୁଁ ନିଶ୍ଚିନ୍ତ ହେବି ।

ସତେ ? ଯଦି କହିବ, ଆଜ ଏଇ ଘଡିରେ ମୁଁ ଚାଲିଯିବି ।

କୁଆଡ଼େ ଲୋ ?

ଗହୀର ମଝିରେ ସେ ଯେଉଁ ଗହୀଡ଼ା ପୋଖରୀ, ତାର କୋଳକୁ । ଏହି ବେଗଣା ପିଲାଟା ମନୁଆଁ, ସେଇ ମୋର ଗୋଡ଼ ବାନ୍ଧି ରଖିଛି । ମନୁଆଁ ତମର କୋଳରେ । ସେ ଦାୟିତ୍ୱ ତେମେ ନିଅ ନୂଆଉ, ତାକୁ ବଞ୍ଚାଇ ମଣିଷ କରିବ । ବଡ଼ ହେଲେ ତମର ଦୁଆରେ ମୂଲଲାଗି ସେ ପେଟ ପୋଷିବ । ଦୁନିଆରେ ମୋର ଆଉ କି ସୁଖ ଅଛି ଯେ ବଞ୍ଚି ରହିବାକୁ ମନ କରିବି ?

ପିଲା ବକଟକୁ ମଣିଷ କରି ପାରିବି ନାହିଁ କି ? ହେଲେ, ଘଡି ଅଧରେ ସେଇ ପୋଖରୀ ମଝିରୁ ତୋ ଅମୋକ୍ଷ ଭୂତ ବାହାରି ମୋର ପଛେ ପଛେ ଗୋଡ଼ାଇ ଥିବ, ମତେ ଡରାଉଥିବ ମରିବାଯାଏ । ମୁଁ ସେ କଥା ପସନ୍ଦ କରୁନାହିଁ । ତୁ ବଞ୍ଚିଥା, ହେଲେ ମୋ ପାଖରୁ ଦୂରେଇ ଯା । ମୋ ମନକଥା ତତେ କହିଲି । ଯାଉନୁ ଦିଅର ପାଖକୁ ? ଆଉ କାହା ଉପରେ ଯଦି ତା ଆଖି ପଡ଼େ ଉପରକୁ ଚାହିଁ ବସିଥିବୁ । ପରଲୋକଙ୍କ ଅଲଣା କଥାରୁ ତୁ କଅଣ ପାଇବୁ ? କେହି ଆସି ପାଖରେ ଠିଆ ହେବେ ନାହିଁ । ବାଁରେଇ ହୋଇ ଯେଉଁ ନଲଠା ଅସି ଅଧା ଉଠା ହେବ, ଭାଇ, ଦାଦି, ମାମୁଁ କି ମଉସା ପଣ ଦେଖାଇ ଦୟା ପାଇ ଚାରିପଇସା ହାତରେ ଗୁଞ୍ଜି ଦେବ, ସେ ଖାଲି ଓର ଉଣ୍ଡୁଥିବ ଲୋ ସୁବିଧା ଖୋଜୁଥିବ ।

ତାଙ୍କ କଥାର ମର୍ମ ବୁଝିଲି । କିଛି ନ ବୁଝିଲା ପରି ପଚାରିଲି, କାହିଁକି ନୂଆଉ ?

ସେ ହସିଲେ । ମୋ ମୁହଁ ଧରି ଉପରକୁ ଟେକି କହିଲେ, ଅହା, ମରୁନୁ ଲୋ ମଉନ ମୁହାଁ, କିଛି ଜାଣିନୁ ? ଆଲୋ ଛଇ ଛଟକି ଚମ ଝଟକାକୁ ମା କରିବାକୁ ସମସ୍ତେ ହମ ହମ ହେବେ, ପିଲାର ବାପ ବୋଲି କହିବାକୁ କେହି ପାଟଖ ପଶିବେ ନାହିଁ ।

ମୁଁ ଲାଜରେ ମୁହଁ ପୋଛିଲି ।

ସେ ପୁଣି କହିଲେ, ତୋ ଦିଅରର ହାତଧରି ଚାଲିଯା । ମୋ ସାନକୁହା ମାନ । ଯଦି ସେ ଅମଙ୍ଗ ହେବ ତ ତା ପାଖ ପଶିବୁ ନାହିଁ । ସେ ଅନ୍ଧାର ପ୍ରମାଦ । ସବୁ ସମ୍ପର୍କ ଛିଣ୍ଡାଇଦେ । ସେଇଠୁ ତୋ ଦାୟିତ୍ୱ ମୋ ଉପରେ । ମନୁଆଁ ଏଇ

କୋଳରେ ବଢ଼ବ । ତୋ ପାଇଁ ତୋ ମନଲାଖୀ ବର ମୁଁ ଖୋଜିବ । ହେଲା ତ ?

ଅଖିର ଲୁହରେ ସମ୍ମତି ଜଣାଇଲି ।

ପରଦିନ ସକାଳେ ଚେମାଇ ଆସିଲା । ମନୁଆର ଦେହ ଠିକଏ ଭଲ ଥାଏ । ଝିପିଝିପି ବରଷା ହେଉଥାଏ ।

ଚେମାଇ କହିଲା, ତୋ ବୋଉତ ଚାଲିଗଲା, ଏଥର ତୁ ନିଶ୍ଚିନ୍ତ ! ଠିକ୍ ମୋର ପରିକା ମେଲି ଦେ ତୋ ନାବ ଦରିଆ ଭିତରେ, ଯାଉଛି କୁଆଡ଼େ ଯାଉ । ଯେଉଁଠି ହେଲେ ତ ଲାଗିବ, ନଇଲେ ବୁଡ଼ିବ । କେତେ ତ ଏମିତି ବୁଡ଼ୁଛି । ତୋ ନାବ କେହି ଦେଖିବେ ନାହିଁ । ଭୁଲିଯିବେ । ସେମିତି ଚାଲିଛି ମୁଁ । ଏଇ ପାଞ୍ଚଣ ବାଡ଼ ମୋର କାତ ।

କହିଲି, ସମସ୍ତେ ତ ତାଙ୍କର ନାବ ମେଲି ଦେଇଛନ୍ତି, କିଏ କାହାକୁ ଅନାଇ ବସିନାହିଁ । ମଣିଷ ସାଥୀ ଖୋଜେ, କାଲେ ଝଡ଼ ତୋଫାନ ଆସିବ, ପରସ୍ପରକୁ ସାହା ଭରସା ହେବେ । କାହା ନାବ ଚାଲେ ଏକୁଟିଆ, ଯେମିତି ଚାଲିଛି ତମର, ଯେମିତି ଚାଲିଛି ମୋର । କାହା ନାବ ଚାଲେ ସାଥିରେ, ଯେମିତି ଚାଲିଛି ଟିମାଇର ।

ଚେମାଇ କହିଲା, ତେବେ ଆ ତୁଲସୀ, ତୋର ଓ ମୋର ଯୋଡ଼ି ଦେବା, ଏକାଠି ଚାଲିବା । ଧୀରେ ଧୀରେ ଦରିଆ ମଝିକି ଆସିଲିଣି । ମୁଁ ବି । ଝଡ଼ ତୋଫାନର ମାଡ଼ ଏଥର ସହିବାକୁ ପଡ଼ିବ । ଏ ମଧ୍ୟରେ ସହିଥିଲି । ଭାବିଥିଲି, ବୁଡ଼ିବ, ଅଟକିଗଲା ।

ପଚାରିଲା ଅଖିରେ ତା ମୁହଁକୁ ଚାହିଁ ରହିଲି ।

ସେ କହିଲା, ହଁ ଲୋ, ଛଅ ଚାରିଦିନ ଜରରେ ପଡ଼ିଲି । ମନେ ହେଲା ହତଜ୍ଞାନ ହୋଇଯିବ । ପାଣି ମନ୍ଦାଏ ପାଟିରେ ଦେବାକୁ କେହି ନାହିଁ । ଗାଈ ବଳଦ ଗୁହାଳରେ ରଡ଼ି ଛାଡ଼ୁଛନ୍ତି । କଅଣ କରିବ ? ଘୁ ସୁରି ଘ ସୁରି ତାଙ୍କ ମୁହଁରେ ନଡ଼ା ପକାଇଲି । ଠିଆ ହେଲା ବେଳକୁ ମୁଣ୍ଡ ବୁଲାଇ ଦେଉଥାଏ । ଯାହାକୁ ବୋଲ କରିବାକୁ ଡାକେ, ସେ ଏଣେ ତେଣେ ହାତ ମାରିଦେଇ ଖସିଯାଏ । ଯାହାହେଉ, ବଞ୍ଚିଗଲି ।

କହିଲି—ମତେ ଡକାଇ ପାରିଥାନ୍ତ । ପରର ସେବା କରିବାକୁ ମୁଁ ପଛଘୁଞ୍ଚା ଦିଅନ୍ତି ନାହିଁ ।

ଅଲୋ, ତୋ କଥା ମୋ ମନେ ପଡ଼ିଥିଲା, ଦିନ ରାତି, ସବୁବେଳେ । ପୁଣି ଭାବିଲି, କାହିଁକି ? ପର ମଣିଷ, ତା ଉପରେ ମୋର କି ଅଧିକାର ଅଛି, କାହିଁକି ତାକୁ କଷ୍ଟ ଦେବ ? ଭାବେ ସିନା, ମନରେ ତୋ ନାମଟା ଘୋରିଦେଇ

ହେଉଥାଏ । ଦିନେ କାହାକୁ ପଚାରି ଦେଲି । ସେ କହିଲା, ତୁଳସୀର ମା ମଲା ଉପରେ । ଖବର ଦେଲି ନାହିଁ ।

ବିପଦ ନ ଆସିଲେ ମଣିଷ ମଣିଷର ମୂଲ୍ୟ ବୁଝେ ନାହିଁ । ଚେମାଇ ଏଥର ବୁଝିଛି । ସାଥୀ ଖୋଜିବାକୁ ତା ମନ ଉଚ୍ଛନ୍ନ ହେଲାଣି । ସପନପୁରର ମାୟାରେ ଭୁଲି ରହିବାକୁ ତାର ଆଉ ସାହସ ହେଉନାହିଁ । ପର ମଣିଷ ଉପରେ ଅଧିକାର ସେ ଖୋଜିଲାଣି । ଯିଏ ଏହା ଖୋଜେ, ସେ ପର ମଣିଷର ହାତରେ ନିଜର ଅଧିକାର ଛାଡ଼ିଦିଏ ।

ପଚାରିଲି, ଦେହ ଭଲ ଅଛି ତ ଚେମାଇ ?

ହଁ ଲୋ, ଭଲ ଅଛି । ଭବିଷ୍ୟତକୁ ଡର ମାଡ଼ୁଛି ।

କହିଲି, ସମସ୍ତଙ୍କୁ ଡର ମାଡ଼େ, ପୁଣି ସୁଖ ପାଇବାର ଆଶା ବି ଥାଏ ।

ସତେ ଯେମିତି କଅଣ କହିବ କହିବ ହୋଇ କହି ପାରିଲା ନାହିଁ ।

ଚେମାଇ ଚାଲିଗଲା ।

ମୁଁ ଭାବିଲି, ଚେମାଇ ବଦଳିଛି, ତାର ଅଣ୍ଟା ଭାଙ୍ଗିଛି, ସେ ସଂସାର କରିବାକୁ ଚାହେଁ ।

ମନେ ପଡ଼ିଲେ ସୁର । ଅସନ୍ତେ କି, ମନକଥା କହି ଯାଆନ୍ତେ ।

ଦି ପହରେ ସୁର ଆସିଲେ । ସାଥିରେ ଦୁଇଜଣ ଭାରୁଆ । ମୋତେ ଓଲଗି ହୋଇ କହିଲେ, ନୂଆଉ, ମାଉସୀଙ୍କର ଚାଲିଯିବା ଖବର କାଲି ପାଇଲି । ମୁଁ ଘରେ ନ ଥିଲି । ଗୋଟାଏ କାମରେ ଅଠଗଡ଼ ଯାଇଥିଲି ।

ଅଭିମାନରେ ମୋ ଆଖିରୁ ଲୁହ ଝରିଲା । ଜରୁଆ ପିଲାଟିକୁ ତାଙ୍କ କୋଳରେ ଦେଲି । ଦାଦା, ଦାଦା ହୋଇ, ଉଚ୍ଛନ୍ନ ହୋଇ ମନୁଆଁ ତାଙ୍କର ବେକକୁ କୁଣ୍ଢାଇ ଧରିଲା । ସୁର ତାକୁ ଗେହ୍ଲରେ ଜାକି କହିଲେ, ପିଲାଟାକୁ ଏତେ ସରୁ କଲଣି ?

ମୋ ଦେହରେ ଛୁରୀ ଚାଲିଗଲା । ମୁହେଁ ମୁହେଁ ଜବାବ ଦେଲି, ଥାଉ ତମର ସୋଗ ! ଜନମ କରିଛି, ଖାଲି ବଞ୍ଚାଇ ରଖିବାକୁ ପ୍ରାଣପଣ ତା ପିଛା ଲାଗିଛି । କପାଳରେ ଯାହା ଥିବ ହେବ । ମୋ ଦୋଷ ଦେଉଛ କାହିଁକି ?

ସେ ତୁନି ରହିଲେ ।

ସେମାନଙ୍କର ଖିଆପିଆର ଯତ୍ନ ନେଲି । ଭାରୁଆ ଦିଜଣ ବିଦା ହୋଇଗଲେ । ସୁର ମନୁଆଁ ପାଖରେ ବସିଥାନ୍ତି । ମୁଁ ଆସି ତାଙ୍କରି ପାଖରେ ବସିଲି ।

କେତେ କଥା ପଡ଼ିଲା ।

କହିଲେ, ମୁଁ ଆଶା କରି ନ ଥିଲି ଯେ ମାଉସୀ ଏତେ ଶୀଘ୍ର ଏମିତି ଚାଲିଯିବେ । ଯାହା ହେବାର ତ ହୋଇଛି । ତୁମେ ମୋ ଦୋଷ ଦେବ, ମୁଁ ତୁମ

ଦୋଷ ଦେବ, ଲୋକେ ଆମ ଦୁହିଁଙ୍କ ଦୋଷ ଦେବେ । ହେଲେ ମାଉସୀ ଆଉ ଫେର ଆସିବେ ନାହିଁ । ଏବେ କଅଣ କରାଯିବ କହ ? ମୁଁ କହୁଛି, ଚାଲ ଘରକୁ । ନିଜର ସ୍ୱାଧୀନତା ଛାଡ଼ି ଏଠି ପର ଘରେ ପରର ଅଧୀନରେ ରହି କଷ୍ଟ ପାଇବ କାହିଁକି ?

ସଙ୍କୋଚ ନ ରଖି କହିଲି, ଯିବାକୁ ମୋର ଆପତ୍ତି ନାହିଁ, କିନ୍ତୁ ମୁଁ ଆଉ ଲୋକନିନ୍ଦା ସହିପାରିବି ନାହିଁ । ଗୋଟିଏ କଥା ନିଖାଲି କରି ପଚାରିବି ସୁର, ସତ କହିବ ?

କିଛି ଲୁଚାଇବି ନାହିଁ ।

ଚାହା ହେବାକୁ ତମ ପାଇଁ ତେମେ କେଉଁଠି ପାତ୍ରୀ ଠିକ୍ କରିଛ ?

ସେ ଉତ୍ତର ଦେଲେ, ନାହିଁ ତ । ସେ କଥା ମୁଁ କେବେ ମୋ ମନକୁ ଆଣିନାହିଁ ।

କେବେ କାହା କଥା ଭାବିଛ ଭଲା ?

ତୁନି ରହିଲେ । ମୁହଁ ତଳକୁ ପୋତିଲେ ।

କହ, ସୁର—

କ୍ଷମା କର, ମୁଁ ଜାଣେ ନାହିଁ, ତେଣୁ କହି ପାରିବି ନାହିଁ ।

ଜାଣ ନାହିଁ କିପରି ? ମତେ ଲୁଚାଉଛ ?

ଜବାବ୍ ଦେଇ ପାରିବି ନାହିଁ ।

ତେମେ ମତେ ଭଲ ପାଅ ସୁର ?

ଭାବିଲି, ଏତେ ଛକା ପଞ୍ଝାରୁ ମୋତେ କିଛି ମିଳିବ ନାହିଁ । ସୁର ମରଦ ପୁଅ । ତାଙ୍କୁ ଛନଖୁଣ ମାଫ୍ । ଲୋକଙ୍କ ଭିତରର ନିନ୍ଦା ଅପବାଦକୁ ଫୁଙ୍କି ମାରି ଉଡ଼ାଇ ଦେଇ ପାରିବେ । ସବୁ ପିଠେଇ ଦେଇ ବାଟ ଚାଲିବେ । ଗୋଟାଏ କଅଣ, ପାଞ୍ଚଟା ସ୍ତ୍ରୀଙ୍କୁ ପାଖକୁ ଆଣି ଗୋଇଠା ମାରି ଡଉଡ଼ ସୁନା ପିଲା ହୋଇ ମୁଣ୍ଡଟେକି ଆତଯାତ ହେବେ । ଓଲଟି ନିଳଠା ମୁହଁରେ ନିଜ ବଡ଼ ପଣ, ପୁରୁଷ ପଣ ଦେଖାଇ ହେବେ । ଆମେତ ନିରମାଖି । ଛୁଇଁଲେ ଛ ଘା । ସଂସାରରେ ହାଟ ବସିବ । ଯେଣେ ଗଲେ ଲୋକେ ଅଙ୍ଗୁଠି ଦେଖାଇ ଛି ଛି କରିବେ । ସେଇମାନେ ପୁଣି ବେଲ ଉଣ୍ଡି ଆଖି ଠାରିବେ । ସୁର ଯେ କି ଜାତିର ଲୋକ କିଏ ଜାଣେ ? ଯଦି ତାଙ୍କ ଘରକୁ ଯିବାର ହୁଏ ତେବେ ତାଙ୍କ ଘରଣୀ ହୋଇ ଯିବି ସିନା, ନୋହିଲେ ନାହିଁ । ପୁଣି, ସେ ଯଦି ମତେ ଭଲ ପାଉ ନ ଥିବେ ତ ଦୁଇଦିନ ପରେ କଳିଅି ଗୋଳି କରି ଘରୁ ତଡ଼ିବେ । କିଏ ଜାଣେ ତାଙ୍କ ମନ କଥା ?

ଏତେ ଭାବନାରୁ ମିଳିବ କଅଣ ? ସିଧା ସଳଖ ପଚାରି ଦେଲି ।

ସୁର କାବା ହୋଇ ମୋ ମୁହଁକୁ ଚାହିଁଲେ । ଧୀରେ ଧୀରେ ଉତ୍ତର ଦେଲେ, ମୋର ଆଉ ଆପଣାର କେହି ନାହିଁ । ତେମେ ମତେ ଘୃଣାରେ ଦୂରକୁ

ଠେଲ ଦିଅ ପଛେ ତମକୁ ମୁଁ ଭଲ ପାଏ । ତମେ ତଡ଼ ଦେଲେ ମୁଁ ଦୁରେଇ ଯାଏ କିନ୍ତୁ ମୋ ମନ ତମ ପାଖ ଛାଡ଼ି ଚାଲିଯାଏ ନାହିଁ । ତମେ ଓ ମନୁଆଁ ମୋ ମନକୁ ଟାଣି ରଖିଥାଅ ।

ଆଖିରେ ଲୁହ ଟଳ ଟଳ ହେଲା ।

ପଚାରିଲି, ସତ କହ, ତମ ମନରେ କେବେ ଆଉ କାହାକୁ ସ୍ଥାନ ଦେଇଥିଲ ? କାହାର ହାତ ଧରିଲେ ତେମେ ସୁଖୀ ହୋଇ ପାରିବ, ମନ ଖୋଲି କହ ସୁର ।

ସେ ଦୀର୍ଘ ନିଶ୍ୱାସ ଛାଡ଼ିଲେ । ଜବାବ ଦେଲେ ନାହିଁ ।

ମନେ ହେଲା, ସତେ ଯେପରି ଗତ ଜୀବନ ଫେରି ଆସିଛି । ସୁର ମୋର ପିଲା ଦିଅର । ତାଙ୍କର ସୁଖ ପାଇଁ, ଆନନ୍ଦ ପାଇଁ, ଦିଅଙ୍କ ପାଖରେ, ସମାଜ ଆଗରେ ମୁଁ ଦାୟୀ ! ତାଙ୍କ ମନକଥା ବୁଝିବାର ଦାୟିତ୍ୱ ମୋ ଉପରେ ।

ପଣତରେ ତାଙ୍କ ଆଖିର ଲୁହ ପୋଛିଲି । ପିଲାଟି ପରି ମୋ କାନ୍ଧ ଉପରକୁ ମୁଣ୍ଡ ନୁଆଇଁ ଦେଲେ । ତାଙ୍କର ମୁଣ୍ଡ ଉପରେ ହାତ ରଖି ଗେହ୍ଲେଇ ପଚାରିଲି, କହ ସୁର — ।

ସୁର ମୋର କାନ୍ଧ ଉପରୁ ମୁଣ୍ଡ ଟେକିଲେ । ମନୁଆଁକୁ କୋଳ କଲେ । ତାରି ଆଡ଼କୁ ଚାହିଁ କହିଲେ, ମୋ ମନରେ କାହାକୁ କେବେ ସ୍ଥାନ ଦେଇ ନାହିଁ । କାହାର ହାତ ଧରିଲେ ସୁଖୀ ହେବି କି ଦୁଃଖୀ ହେବି ଏ କଥା କେବେ ମନକୁ ଆଣିନାହିଁ । ଆଖି ଆଗରେ ନିତି କେତେ ଲୋଭ ଚାଲି ଯାଉଛି । କିଏ କେବେ ଆଖି ବଢ଼ାଉଛି, କ୍ଷଣକ ପାଇଁ ଲୋଭ ଆସିଛି, ମନ ଚଞ୍ଚଳ ହୋଇଛି, ଦେହ ପୁଲକି ଉଠିଛି । ନୂଆଉ, ଆପେ ଆପେ ଏ ସବୁ ମରିଛି । ଲୋଭ ମତେ ଅଯତ୍ନ କରି ପାରି ନାହିଁ ।

ଭାବିଥିଲି ସୁର କାହା ନାମ ମୋ ଆଗରେ କହିବେ । ମୁଁ ଆଗ୍ରହରେ ତାରି ହାତରେ ସୁରଙ୍କ ହାତ ଛନ୍ଦିବାର ବ୍ୟବସ୍ଥା କରିବି । ତା ପରେ ସୁରଙ୍କର ଚିନ୍ତା ଆଉ ମୋ ମୁଣ୍ଡରେ ପଶିବ ନାହିଁ । ସ୍ୱାଧୀନ ଭାବରେ ମୋର ଯାହା ଇଚ୍ଛା ମୁଁ କରିବି । ସୁର ତାଙ୍କର ନୂଆ ଜୀବନର ଆନନ୍ଦରେ ନିଜକୁ ବୁଡ଼ାଇ ରଖିବେ । ମୋ ଜୀବନ ବା ଆନନ୍ଦ ମଝିରେ ଠିଆ ହେବାକୁ ବେଳ ପାଇବେ ନାହିଁ ।

କେତେ ସମୟ ତୁନି ରହିଲା ପରେ କହିଲି, ତମକୁ ମୁଁ ଗୋଟିଏ କଥାରେ ଅନୁମତି ମାଗିବି ।

ପଚାରିଲେ, କଅଣ ?

କହିଲି, ବହୁତ ଦୁଃଖ କଷ୍ଟ ସହିଲଣି ଆଉ ସହି ପାରିବି ନାହିଁ । ମୁଁ ନୂଆ ସଂସାର କରିବାକୁ ଚାହେଁ । କୁଳର ପ୍ରଥା, ସମାଜର ନିୟମ ଅନୁସାରେ ମୋତେ ସ୍ତ୍ରୀ ରୂପେ ଗ୍ରହଣ କରିବାର ପ୍ରଥମ ଦାୟିତ୍ୱ ତୁମର । ମୋର ମଧ୍ୟ ପ୍ରଥମ

ଅଧିକାର ତୁମରି ଉପରେ । ସଂସାରର ଭଲମନ୍ଦ ସୁଖ ଦୁଃଖରେ ସନ୍ତୁଳ ହେଲି ଲୋକ ଉତ୍ତେଜନାରେ ଭାସିଯାଏ ନାହିଁ । ସେଥିପାଇଁ ତୁମର ଅନୁମତି ଲୋଡ଼ୁଛି ।

ସୁରି ତୁନି ହୋଇ ଶୁଣିଲେ ।

ମୁଁ କହିବାକୁ ଲାଗିଲି—ଭଲ ପାଇବା, ଘୃଣା କରିବା, ଏ ସବୁ ନିଜ ମନର କଥା । ତୁମେ ମୋତେ ଭଲ ପାଅ ନାହିଁ । ତମରି ଉପରେ ନିଜକୁ ମୁଁ ବୋଝ କରି ଲଦି ଦେବାକୁ ଇଚ୍ଛା କରୁନାହିଁ । ତୁମେ ମୋତେ ଭଲ ପାଇ ପାରିବ ନାହିଁ । ସୁରି, ତେବେ ମୋତେ ଦେଖିଥିଲ ଯେଉଁ ଦିନ ସଜ ସତେଜ ଫୁଲଟି ପରି ତମରି ଅଗଣାରେ ଗୋଡ଼ ଦେଇଥିଲି । ଯେଉଁ ଦିନ ତମ ଘରୁ ଗୋଡ଼ କାଢ଼ି ଆସିଲି ମନୁଆଁକୁ କୋଡ଼ରେ ଧରି ସେ ଦିନ ମଧ୍ୟ ଦେଖିଛ । ଛିଡ଼ା ଫୁଲ ବାସି ଫଳି, ମଉଳଣ ପଡ଼ିଛି । ଆଜି ଦେଖୁଛ ହତଲକ୍ଷ୍ମୀ ବେଶରେ ମୋର ଏଇ ମଉଳା ରୂପ । ମୋର ଏଇ ଦାହାରଠା ଦେଖି କାଲି ସଙ୍ଗେ ତଉଲି ତମ ମନରେ ଭଲ ପାଇବାର ଆଗ୍ରହ ଆସୁ ନାହିଁ । ଭିତରର କଥା ତମକୁ ମୁଁ କହିପାରିବି ନାହିଁ ।

ସୁରି କଅଣ ଉତ୍ତର ଦେବେ ଶୁଣିବାକୁ ଅପେକ୍ଷା କରି ରହିଲି । ତଥାପି ସେ କିଛି କହିଲେ ନାହିଁ । ତଳକୁ ମୁହଁ ପୋତି କଅଣ ଭାବିବାକୁ ଲାଗିଲେ । ମୁଁ ଟିକିଏ ଉତ୍ତେଜିତ ହୋଇ ପୁଣି କହିଲି, ତମ ମନରେ ଯେଉଁ ଲୋଭ ଆସିଛି, ତା ଭିତରେ ମୁଁ ନାହିଁ, ଏ କଥା ମୁଁ ଜାଣେ । ସେ ତ ରୁଚିର କଥା, ମନର ସରାଗର କଥା । କେହି କାହାକୁ ଦୋଷ ଦେଇ ପାରିବ ନାହିଁ । ଯେଉଁମାନେ ମୋର ଏଇ ମଉଳା ରୂପ, ଦରମଲା ଦେହରେ ମନ ସରସା କିଛି ଦେଖିବାକୁ ଚାହାନ୍ତି, ସେମାନଙ୍କର ନିମନ୍ତ୍ରଣକୁ ଦୂରେଇ ରଖିଛି । କର୍ତ୍ତବ୍ୟ ବୋଧରେ ତମର ଅନୁମତି ମୁଁ ଲୋଡ଼ୁଛି, କାରଣ, ମୋ ଉପରେ ତମର ଅଧିକାର ପ୍ରଥମ । ତମକୁ ମୁଁ ଭଲ ପାଏ ସୁରି, ତମକୁ ପାଇଲେ ମୁଁ ସୁଖୀ ହୋଇ ପାରିବି ।

ତଥାପି ସୁରି ଉତ୍ତର ଦେଲେ ନାହିଁ । ବୋଧହୁଏ ଭାବୁଥିଲେ, ମୁଁ କେଡ଼େ ନିର୍ଲଜୀ, ବିନା ସଂକୋଚରେ ମନକଥା ତାଙ୍କ ଆଗରେ କହି ଯାଉଛି । ଯାହା ସେ ଭାବନ୍ତୁ, ମନକଥା ତାଙ୍କ ଆଗରେ ଖୋଲି ଦେଇଛି । ଜୀବନରେ ଏଇ ସୁଯୋଗଟି ପ୍ରଥମଥର ପାଇଛି । ଯଦି ସେ ମୋତେ ତାଙ୍କର ଘରଣୀ କରି ନିଅନ୍ତି, ତେବେ ତ ଉତ୍ତମ, ନ ନେଲେ ତାଙ୍କ ସଙ୍ଗେ ମୋର ଆଉ କି ସମ୍ପର୍କ ? ମୋର ମନ ମୋତେ ଯେଣେ ଟାଣିବ ମୁଁ ଯିବି । ସୁରି ହେବେ ସାତ ପର । ଶୁଣନ୍ତୁ, ମନକଥା ସବୁ ସେ ଶୁଣନ୍ତୁ, ଯାହା ପଛେ ଭାବନ୍ତୁ ।

ଉତ୍ତେଜନାକୁ ଚାପି କହିଲି ପୁଣି, ଭାବୁଛି ବୋଧହୁଏ ମୋତେ ସଂଯମ କଥା ବତାଇବ, ମୋର ମୃତ ସ୍ୱାମୀ ତୁମର ଭାଇଙ୍କୁ ସୁମରଣା କରି ବେଳକାଳ କଟାଇ କଲାବାଲ ଧଲା କରିବାକୁ ଉପଦେଶ ଦେବ । ଏ ସବୁ ମୁଁ ଭାବିଛି ।

ଠିକ୍ ବୁଝେ କି ଭୁଲ ବୁଝେ, ମୁଁ ଯାହା ଠିକ୍ କରିଛି ନିଶ୍ଚୟ କରିବି । ତମର ଅନୁମତି ଚାହୁଁଛି ।

ସୁର ହସିଲେ । ଏତେବେଳକେ କହିଲେ, ତୁମେ ଯାହା କରିବ ତ ଠିକ୍ କରି ସାରିଛ, ମୋର ଅନୁମତି ଆଉ ଦରକାର କଅଣ ? ମୁଁ ଯଦି ଅନୁମତି ନ ଦିଏ ?

ଟିକିଏ ଭାବି କହିଲି, ତମକୁ ମୁଁ ସ୍ୱାର୍ଥପର ବୋଲି କହିବି ।

ତା ପରେ କଅଣ କରିବ ?

ଯେଉଁମାନେ ମତେ ପାଇଲେ ଖୁସି ହେବେ, ତାଙ୍କର ଭିତରୁ ମୁଁ ମୋର ସାଥୀ ବାଛି ନେବି । ଫଳରେ ତୁମର ମୋର ସମ୍ବନ୍ଧ ଚିରଦିନ ଲାଗି ତୁଟିଯିବ ।

ଯଦି ମୁଁ ଅନୁମତି ଦିଏ ନୁଆଉ ?

ତମର ଭଲପଣିଆଁ ଜଣା ପଡ଼ିବ । ତେବେ ଠିକ୍ କରିବି ତମ ତୁଳସୀର ହାତ ଧରିବାକୁ ଉପଯୁକ୍ତ ଲୋକ କିଏ ହେବ । ଯାହାକୁ ଆଜିଯାଏ ନୁଆଉ ଆଖିରେ ଦେଖି ଆସୁଥିଲି, ତାକୁ ଦେଖିବି ନିଜ ସାନଭଉଣୀ ପରି । ବଞ୍ଚି ଥିବାଯାଏ ଭାଇର ସ୍ନେହ, ଆଦର, ସମ୍ମାନ ତେମେ ଦାବୀ କରିବ । ଦୁନିଆଁର ଲୋକେ ବୁଝିବେ, ଜାଣିବେ, ଭୁଣ୍ଡିବାଇଦ ସତ ନୁହେଁ ।

ତାଙ୍କର ମୁହଁ ଉଜ୍ଜ୍ୱଳ ହୋଇ ଉଠିଲା । ପର କ୍ଷଣରେ ପୁଣି ମଳିନ ହେଲା । କହିଲେ, ତେମେ ଅନ୍ୟର ହାତ ଧରି ଯିବ, ପରର ସଂସାର କରିବ, ମୁଁ ଏହା ସହିବି କିପରି ? ମୋ ମନ କଥା ଖୋଲି କହୁଛି, ନୁଆଉ, ମୋ ପାଖରୁ ତମକୁ ଦୂରରେ ରହିବାକୁ ଅନୁମତି ଦେଇ ପାରିବି ନାହିଁ । ଯେଉଁ ଦିନ ଆମର ଘରେ ତୁମେ ଗୋଡ଼ ଦେଲ, ସେଇ ଦିନୁ ତେମେ ଆମ ଘରର, ଆମ ସଂସାରର ଗୋଟିଏ ଅଙ୍ଗ ହେଲ । ଭାଇ ଚାଲିଗଲା । ଆମ ସଂସାରର ଗୋଟିଏ ଅଙ୍ଗ ହଜି ଗଲା । ତେମେ ଚାଲିଯିବ, ଆଉ ଗୋଟିଏ ଅଙ୍ଗ ଖସି ପଡ଼ିବ । ଆଉ ରହିବ କଅଣ ?

ସୁର, ତୁମେ ପାଗଳ । ତମର ହାତକି ଦି ହାତ ହେବ । ନୂଆ ସଂସାର ଗଢ଼ି ଉଠିବ । ମନୁଆଁ ତମର ପାଖକୁ ଯିବ । ତମ ସଂସାର ଓ ମୋ ସଂସାରକୁ ମନୁଆ ଯୋଡ଼ି ରଖିବ ।

ସେ କହି ଉଠିଲେ, ଯଦି ମୁଁ ତମକୁ ବାହା ହୁଏଁ ?

ମୋ ଛାତି ଚମକି ଉଠିଲା । କହିଲି, ସେଥିରେ ନୂଆ କଥା କିଛି ନାହିଁ । ଆମ କୁଳରେ ଲୋକେ ଯାହା କରି ଆସିଛନ୍ତି, ତୁମେ ତାହାହିଁ କରିବ ! ଯେଉଁମାନେ ଆଜି ମୋତେ ପାଇବାକୁ ଆଗେଇ ଆସିଛନ୍ତି, ସେମାନଙ୍କ ଆଡ଼କୁ ପିଠି କରି ତମର ହାତ ଧରି ତମର ପଛେ ପଛେ ମୁଁ ଚାଲିବି । ପରସ୍ପରକୁ ସୁଖୀ କରିବାର ଆଗ୍ରହ ଦୁହିଁଙ୍କ ମନରେ ଅତୁଟ ସ୍ନେହ ଆଣିବ । ଆମ ସଂସାର

ସୁଖର ସଂସାର ହେବ । ମୋ ବୋଉର ଆତ୍ମା ସେ ପୁରରେ ଥାଇ କଲ୍ୟାଣ କରିବ । ସେ ଏଇଆ ଚାହୁଁଥିଲା ।

ମାଡ଼ ମାରିଲା ପରି ସୁର ପଚାରିଲେ, ଆଉ, ମୋ ଭାଇର ଆତ୍ମା ?

କହିଲି, ସବୁବେଳେ ଆମରି ପାଖେ ପାଖେ ଥିବେ । ସୁର, ତମରି ଭିତରେ ତାଙ୍କର ଆତ୍ମା ଅଛି ବୋଲି ମୁଁ ମଣେ । ତମକୁ ସେ ପ୍ରାଣରୁ ବଳି ଭଲ ପାଉଥିଲେ । ତମକୁ ଛାଡ଼ି ସେ ସରଗ ପୁରରେ ବି ରହି ପାରିବେ ନାହିଁ । ତମରି ରୂପରେ ମୁଁ ତାଙ୍କୁ ଦେଖୁଛି ସୁର ! ତମରି ସେବା କରି ତାଙ୍କୁ ଖୁସି କରି ପାରିବ । ତେମେ, ଏକା ମାଂସ, ଏକା ରକ୍ତ, ଏକା ଦେହ । ତମକୁ ଘଡ଼ିଏ ନ ଦେଖିଲେ ସେ ବଣା ହେଉଥିଲେ । ଆଖି ଆଗରୁ, ଛାତି ଭିତରୁ ମୁହୂର୍ତ୍ତେ ତମକୁ ମୁଁ ଅନ୍ତର କରି ପାରିବ ନାହିଁ । ଥରଟିଏ ଅନ୍ତର ହୋଇ ଯାହାଙ୍କୁ ମୁଁ ହରାଇଛି ତାଙ୍କରି ଅବତାର ତୁମେ, କପରି ତମକୁ ମୋ ଆତ୍ମା ପାଖରୁ ଦୂରରେ ଦେଖିବ ?

ସୁର କହିଲେ, ଆଉ ମୁଁ ଦେଖିବ ତମରି ଭିତରେ ମୋ ଭାଇକୁ । ତମକୁ ଦେଖିଲେ ମୁଁ ମୋ ଭାଇର ମରଣ ଦୁଃଖ ଭୁଲିବ । କିନ୍ତୁ ଆଉ, ବିବାହ ବିନା କଅଣ ଏହା ସମ୍ଭବ ହୋଇପାରିବ ନାହିଁ ? ବରଂ ତମକୁ ବାହା ହେଲେ ତମକୁ ନିଜର ଅଂଶ ବୋଲି ମୁଁ ଗ୍ରହଣ କଲେ, ଭାଇର ସ୍ମୃତି ଲୋପ ହେବ ! ତେମେ ଅନ୍ୟଠାରେ ବିବାହ କଲେ ମଧ୍ୟ ଠିକ୍ ସେହିକଥା ହେବ ।

କହିଲି, ତେମେ ଭୁଲ ବୁଝୁଛ । ତମକୁ ବିବାହ କଲେ, ଭାଇର ସ୍ମୃତି ଲୋପ ହେବ ନାହିଁ । ରକ୍ତ ମାଂସର ଉତ୍ତେଜନା ହୁଏ ତ ଦୁହିଁଙ୍କୁ ଦୁଇ ଆଡ଼କୁ ଠେଲି ଦେବ । ଉତ୍ତେଜନା ଆସିବ, ଏଥିରେ ତ ସନ୍ଦେହ ନାହିଁ । ତେମେ ତମର ସଂସାର କରିବ ସୁଖରେ । ପଦାକୁ ପ୍ରକାଶ ନ କଲେ ମଧ୍ୟ ମୁଁ ଜଳି ପୋଡ଼ି ମରିବ । ମନରେ ହୁଏ ତ ଅପବିତ୍ର ଭାବ ଆସିବ, ପ୍ରଲୋଭନ ଆସିବ, କିଏ କହିବ ଗୋଡ଼ ନ ଖସିବ ବୋଲି ? ତମ ରୁଚି ଉପରେ ମୁଁ ବାଧା ଦେଇ ପାରିବ ନାହିଁ । ତେଣୁ ତୁମର ଅନୁମତି ଚାହେଁ— ।

ସୁରଙ୍କ କୋଳରେ ମନ୍ତୁଆଁ ଶୋଇ ପଡ଼ିଥିଲା । ଆଜି ତା ଦେହରେ ଜର ନାହିଁ । ଟିମ ଭାଇଙ୍କ ଯତ୍ନରେ ସେ ଭଲ ହୋଇଛି । ନିଜ ପିଲାର କେହି ଏତେ ଯତ୍ନ ନେବେ ନାହିଁ । ସୁରଙ୍କ କୋଡ଼ରୁ ନେଇ ତାକୁ ବିଛଣାରେ ଶୋଇ ଦେଲି । ସୁର ଏକା ଠାରେ ବସି ମୁଣ୍ଡରେ ହାତ ଦେଇ ଭାବୁଥାନ୍ତି । ତାଙ୍କ ପାଖକୁ ଆସି କହିଲି, ମନର ସବୁ କଥା ତମକୁ ଖୋଲିଖୋଲି କହିଲି ସୁର, ତମର ଓ ମୋର ଭବିଷ୍ୟତ୍ ତମରି ଜବାବ୍ ଉପରେ ନିର୍ଭର କରେ ।

ଦୀର୍ଘଶ୍ୱାସ ଛାଡ଼ି କହିଲେ, ଏତେ କଥା ମୁଁ କେବେ ହେଲେ ଭାବି ନ ଥିଲି । ମତେ ଭାବିବାକୁ ସମୟ ଦିଅ !

ହସି ମାରିଲି । କହିଲି, ହଉ, ଯେତେଦିନ ଭାବିବ ଭାବି ଠିକ୍ କର । ମୋର ଶେଷ କଥା ମୁଁ ତମୁକୁ କହି ଦେଇଛି । ତମେ ତମର ଶେଷ କଥା ମତେ କହିବ । ମୁଁ ପିଲା ନୁହେଁ । ତମେ ମଧ୍ୟ ପିଲା ନୁହଁ । ଭଲ ମନ୍ଦ ବିଚାର କରିବାର ଶକ୍ତି ଦୁହିଁଙ୍କର ଅଛି ।

ସେତିକି ବେଳରୁ ସୁର ଗମ୍ଭୀର ହୋଇ ପଡ଼ିଲେ । ତୁଣ୍ଡରୁ କଥା ବାହାରିଲା ନାହିଁ । ମୁଣ୍ଡରେ ହାତ ଦେଇ ମନୁଆଁର ବିଛଣା ପାଖରେ ବସି ରହିଲେ ।

ମୁଁ ଘରକାମରେ ବ୍ୟସ୍ତ ରହିଲି ।

ସଞ୍ଜ ଆଗରୁ ସୁର କେତେବେଳେ ଚାଲିଗଲେ ମୁଁ ଜାଣେ ନାହିଁ । ସେଦିନ ମୋ ପାଖରୁ ସେ ବିଦାୟ ନେଇ ଗଲେ ନାହିଁ । ଭାବିଲି, ମୋ ମନକଥା ମୋ ମୁହଁରୁ ଶୁଣି ସେ ବିଚଳିତ ହୋଇ ପଡ଼ିଲେ । ମୋର ନୂଆରୂପ ନୂଆଚଙ୍ଗ ଦେଖି ସେ ବୁଝିଲେ ଯେ ମୋତେ ସେ ଭୁଲାଇ ନିଜ ଘରର ଦାସୀ କରି ନେଇ ପାରିବେ ନାହିଁ । କେଜାଣିବା ସେ ଭାବିଥିବେ, ଦାଣ୍ଡ ହାଟରେ ବୁଲି ମୁଁ ନିର୍ଲଜୀ ହୋଇଛି । ଯାହା ପଛେ ଭାବନ୍ତୁ, ଶେଷକଥା ମୁଁ କହିଦେଇଛି । ସେ ଆସନ୍ତୁ ନ ଆସନ୍ତୁ, ଜବାବ ଦେଉନ୍ତୁ କି ନ ଦେଉନ୍ତୁ, ମୁଁ ମୋ ନିଜ ବାଟ ଖୋଜି ନେବି, ଭଲ ହେଉ କି ମନ୍ଦ ହେଉ । ତେବେ, ଆଉ କେଇଟି ଦିନ ତାଙ୍କୁ ଅପେକ୍ଷା କରିବି ।

୩୬

ମନୁଆଁର ଦେହ ଭଲ ଥିଲେ ମଧ୍ୟ ସବୁଦିନ ପରି ସେ ଦିନ ମଧ୍ୟ ଟିମ ଭାଇ ଆସିଲେ । ତାଙ୍କୁ ଦେଖିବା ସଙ୍ଗେ ସଙ୍ଗେ ଗତ କଥା ସବୁ ଗୋଟି ଗୋଟି ହୋଇ ମୋର ମନେ ପଡ଼ିଲା । ପିଲାଦିନରୁ ଆଜଯାଏ ଟିମ ଭାଇ ମୋତେ ଭଲପାଇ ଆସିଛନ୍ତି, କିନ୍ତୁ ଚିରଦିନ ଦୂରେଇ ରହିଛନ୍ତି । ମୋ ଉପରେ ଦୟା ଦେଖାଇ ଆସିଛନ୍ତି, ତା ବଦଳରେ ମୋ ପାଖରୁ ସେ କିଛି ଉପକାର ପାଇ ନାହାନ୍ତି ।

ଦୁଃଖୀ ହୁଅନ୍ତୁ କି ସୁଖୀ ହୁଅନ୍ତୁ, ଠାକୁରଙ୍କର ଇଚ୍ଛା ପୂରଣ ହୋଇଛି । ଆଜି ମଧ୍ୟ ମୋତେ ସେ ଭଲ ପାଉଛନ୍ତି । ମୋ ପ୍ରତି ତାଙ୍କର ସ୍ନେହର ପୂର୍ଣ୍ଣ ଆଭାସ ମୁଁ ପାଇଛି । ତୁଣ୍ଡର ଭାଇ ଡାକ ମନର ଉତ୍ତେଜନାକୁ ଜୟ କରି ପାରି ନାହିଁ । ତାଙ୍କର ଦୟାଟିରେ ବାନ୍ଧି ହୋଇଛି, ତେଣୁ ତାଙ୍କର କୌଣସି କଥାରେ ବାଧା ଦେଇପାରୁ ନାହିଁ ।

ଡିବିରିଟି କାନ୍ଥ ପାଖରେ ଜଳାଇ ଦେଇ ଶୋଇଲା ପିଲାର ପାଖରେ ବସିଥିଲି । ଟିମ ଭାଇ ଆସି ପାଖରେ ଠିଆ ହେଲେ । ମଚିଆଟି ଦୂରେଇ କରି ପାରିଦେଇ କହିଲି, ବସନ୍ତୁ ।

ଟେ ବସିଲେ । କେତେ ସମୟ ତୁନ ହୋଇ ବସିଲା ପରେ କହିଲେ, ପିଲାଟିର ଦେହ ଭଲ ହୋଇଗଲା, ତେବେ ତାର ନୂଆ ଦେହ, ସାଙ୍ଗରେ ନେଇ ଯିବାକୁ ବାହାରିବା ଉଚିତ ନୁହେଁ । ବର୍ଷା ଦିନ । ଦିନାକେତେ ଘରେ ରହି ତାର ଯତ୍ନ ନେ ।

କୃତଜ୍ଞତାରେ ମୋ ମନ ନଇଁ ପଡ଼ୁଥାଏ । କହିଲି, ଟିମାଇ, ଗରିବ ଦନଅଣୀ ପ୍ରତି ତମର ଦୟା, ମୁଁ ଜୀବନରେ ସୁଝାଇ ପାରିବି ନାହିଁ । ତେମେ ଯଦି ଦୟା ନ କରିଥାନ୍ତ, ମନୁଆଁ କୁ ମୁଁ ପାଇନଥାନ୍ତି । ଠାକୁରଙ୍କୁ ଡାକୁଛି, ମୋ ନୂଆଜର ଗୋଟିଏ ପୁଅ ହେଉ ।

ହସିଲେ । କହିଲେ, ତୁ ମନ୍ତ୍ର ଜାଣୁ ଲୋ ତୁଳସି ! ତୋ ନୂଆଜିତ ସେଇ ଲୋକ, ଏମିତି ବଦଳି ଗଲେ ।

ମୁଁ ମନ୍ତ୍ର ଯନ୍ତ୍ର ଜାଣେ ନାହିଁ । ନୂଆଜିର ମନ କେତେ ବଡ଼ ସେ କଥା ମୁଁ ଜାଣିଥିଲି । ମୋ ଆଖିର ଲୁହ, ମୋ ଜୀବନର ଦୁଃଖ ତାଙ୍କୁ ବଦଳାଇ ଦେଇଛି । ଟିମାଇ, ତାଙ୍କ ମନରେ ତେମେ କେବେ ଦୁଃଖ ଦେବନାହିଁ ଏତିକି ତମ ପାଖରେ ମୋ ଗୁହାରି ।

ଟିମାଇ ଯେପରି ଅସ୍ଥିରତା ବୋଧ କଲେ । କହିଲେ, ତାଙ୍କ ମନରେ ଦୁଃଖ ଦେବା ମୋର ଇଚ୍ଛା ନୁହେଁ, କିନ୍ତୁ—

କିନ୍ତୁ ପୁଣି କଅଣ ?

ଟିକିଏ ରହି ସେ କହିଲେ, ତୋ ପ୍ରତି ତାଙ୍କର ଯେଉଁ ପ୍ରଗାଢ଼ ସ୍ନେହ ହଠାତ୍ ହୋଇ ଉଠିଛି, ତାର ଅର୍ଥ ମୁଁ ବୁଝି ପାରୁନାହିଁ । ସେ ଜାଣନ୍ତି, ମୁଁ ତତେ ପିଲାଦିନୁ ଭଲପାଏଁ । ସେ ଜାଣନ୍ତି, ମୁଁ ତତେ ନଜର କରିବାକୁ, ଦରକାର ହେଲେ ବିବାହ କରିବାକୁ ପ୍ରସ୍ତୁତ ହୋଇଥିଲି । ବଗିଚା ଘରେ ସଞ୍ଜବେଳ ତତେ ଓ ମତେ ନିରୋଳାରେ ଥିବାର ଖବର ପାଇ ଯେ ଆକାଶ ପାତାଳ ଓଲଟାଇବାକୁ ବସିଥିଲେ । ଆଜି ସେଇ ଲୋକ କଅଣ କରୁଛନ୍ତି ଜାଣୁ ?

ଝିପି ଝିପି ବର୍ଷା, ଘରେ ପଶିଥିଲେ ଅଗ ପଚାରନ୍ତି, ତୁଳସୀର ପିଲାଟିର ଦେହ କିପରି ଅଛି ?

କହେ, ଯାଇ ନାହିଁ, ଭଲ ଥିବ ।

ମୁହଁ ଶୁଖାଇ କହନ୍ତି, ନାଇଁ, ତେମେ ଥରେ ଯାଅ । ଅହା ବିଚାରି, ଆମରି ଆଶ୍ରାରେ ପଡ଼ିଛି । ବୁଢ଼ୀମାକୁ ହରାଇ ବସିଲା । ପିଲାଟି ବେମାର, ଯାଅ ଥରେ —

ଯେତେ ରାତିରେ ଏଠୁ ଫେରିଲେ ପଚାରନ୍ତି, କେମିତି ଅଛି ?

କହେଁ, ଭଲ ଅଛି । ତାଙ୍କର ମୁହଁ ପ୍ରଫୁଲ୍ଲ ଦେଖାଯାଏ ।

ତୁଳସୀ, ଝରୋଳା ବାଟରେ, ତୋ ପାଖକୁ ମତେ ସେ ଯେ ଏକୁଟିଆ ଛାଡ଼ି ଦିଅନ୍ତି ! ସେ ଜାଣନ୍ତି, ମୋର ମନ ତତେ ଚାହେଁ, ପିଲାଦିନୁ ଚାହିଁ ଆସିଛି, ମରିବା ଯାଏ ଚାହୁଁଥିବ । ତଥାପି ତାଙ୍କର ଏପରି ଢଙ୍ଗର ଅର୍ଥ ମୁଁ ବୁଝିପାରେ ନାହିଁ ।

ମୋ ଛାତିରେ ଚମକ ଲାଗିଲା । ମରିବା ଯାଏ ଚାହୁଁଥିବେ । ଠିକ୍ କହିଥିଲେ ନୂଆବୋଉ ସେ ଦିନ—ଥରଟିଏ ଆଖିଠାରରେ ସବୁ ଭାଇପଣିଆ ଭୁଷୁଡ଼ି ପଡ଼ିବ । ଯେଉଁ ଦିନ ତୁ ଏ ଗାଁ ଛାଡ଼ିବୁ ସେଇଦିନ ମୁଁ ହେବି ନିଶ୍ଚିନ୍ତ ! ଭାଇଡାକ ନଈବଢ଼ିକୁ ଦିଅଁଙ୍କ ବାଣ ।

ମରିବା ଯାଏ ମନ ଚାହୁଁଥିବ, ଝିମାଇର ମନ ! ପିଲାଦିନୁ ଯେଉଁ ମୋହ, ତାର ରହି । ସୁବିଧା ଥିଲେ, ସୁଯୋଗ ଥିଲେ, ମନ ଏମିତି ଓଟାର ହୁଏ—ଦେଶ, କାଳ, ପାତ୍ର ମାନେ ନାହିଁ । ଧର୍ମ, ସମାଜ, ସଂସ୍କୃତି, ମୁଣ୍ଡ ନୁଆଁଏ । ତାର ଛାତି ଉପରେ ଚାଲେ ମିଳନରଙ୍କ ମନ, ଯେଉଁଠି ଥାଏ ସୁବିଧା, ଯେଉଁଠି ଥାଏ ସୁଯୋଗ !

ମୁଁ ଗରିବ, ନିଆଶ୍ରୀ ଲୋକ । ଝିମାଇର ଦୟା ଓ ସ୍ନେହ ମୋ ଗୋଟି ସଂସାରକୁ ଘେରି ରହିଛି । ତାର ମନ ଜାଣେ ଯେ ମୋ ସଙ୍ଗେ କଥା କହିଲେ ପଛରେ କେହି ଚାହିଁବାକୁ ଅଟକିବାକୁ ନାହିଁ । ମୋ ମନନେଇ ଖାଇଲେ, ମୋତେ ସେ ପାଇ ପାରିବେ, କେହି ବାଧାଦେଇ ପାରିବେ ନାହିଁ । ସେଇଥିପାଇଁ ସେ ମନ ଖୋଲି ଯାହା ଇଚ୍ଛା କହି ପାରିବେ । ଆଜି ଯଦି ମୋ ସ୍ୱାମୀ ଥାନ୍ତେ, ଝିମାଇ କି ବଦିପରେ କି ସାହସରେ କହନ୍ତେ, ମରିବାଯାଏ ତାଙ୍କ ମନ ମତେ ଚାହୁଁଥିବ ! ତାଙ୍କର ଦୋଷ ନାହିଁ, ଦୋଷ ମୋର ଅବସ୍ଥାର, ମୋ ଭାଗ୍ୟର । ମୋ ଦୁରବସ୍ଥାର ସୁବିଧା ନେଇ ସେଦିନ ସେ ମୋତେ ନୂଆଇଁ ନେଇଥିଲେ କାନ୍ଧ ଉପରକୁ । କି ଦୁର୍ଯୋଗରେ ନିଜକୁ ଭୁଲି ମୁଁ ଢଳି ପଡ଼ିଥିଲି ତାଙ୍କରି ଉପରକୁ ।

ଭାବିଲି, ନୂଆଜର ମନକଥା ତେମେ କପଟ ବୁଝିବ ଝିମାଇ ! ସେ ମତେ ପରୀକ୍ଷା କରୁଛନ୍ତି, ତମୁକୁ ମଧ୍ୟ ଲମ୍ବ ଦଉଡ଼ି ଛାଡ଼ି ଦେଇଛନ୍ତି, ମୋର ଉପରେ ବିଶ୍ୱାସ ରଖି । ତାଙ୍କର ପ୍ରଫୁଲ୍ଲ ମୁହଁ ତେମେ ଦେଖିଛ । ମନ ତଳର ଜଳନ୍ତା ନିଆଁର ସନ୍ଧାନ ପାଇନାହଁ । ଯେଉଁ ଦିନ ତାଙ୍କର ବିଶ୍ୱାସ ତୁଟିବ, ମନର ନିଆଁରେ ନିଜକୁ ସେ ଗ୍ରାସ ଦେବେ । ତାଙ୍କର ଉଦାରତା, ତାଙ୍କର ଅମୃତକଳରେ ଦିଅଟି ପ୍ରାଣୀଙ୍କୁ ସେ ଜୀଅନ୍ତା ନରକ ଭିତରକୁ ଠେଲି ଦେବେ, ତମକୁ ଓ ମୋତେ !

ମୋତେ ନୀରବ ଦେଖି, ଝିମାଇ କହିଲେ, ତୁଳସି, ମୋ ସ୍ତ୍ରୀ ମୋ ମନ କଥା ଜାଣନ୍ତି । ନିଜେ ସେ ଅନୁଭବ କରନ୍ତି ଯେ ତାଙ୍କର କୁତ୍ସିତ ରୂପ ମୋ ମନକୁ ବାନ୍ଧି ରଖି ପାରିବ ନାହିଁ । ସେଇଥିପାଇଁ ସେ ମୋତେ ତୋ ପାଖକୁ ପଠାଇ ଦିଅନ୍ତି ।

ଅସ୍ତା ମୋର ଡାକ ଶୁଣିଲା, ତେମେ ଭୂଲ୍ ବୁଝିଛ, ତେମେ ନିବୋଧ । ସ୍ତ୍ରୀ କେବେ ସ୍ୱପ୍ନରେ ସୁଦ୍ଧା ଏପରି ଭାବିପାରେ ନାହିଁ ।

ମୋ ମୁହଁ ଖୋଲିଲା ନାହିଁ ।

ଟିମାଇ ମୋ ପାଖକୁ ଉଠି ଅସିଲେ । ତାଙ୍କର ଆଖିରୁ ମୁଁ ତାଙ୍କ ମନର ଭାବ ବୁଝିଲି । ମୁହଁ ତଳକୁ ପୋତିଲି । ସେ ମୋ ହାତ ଉଠାଇ ଥରିଲା ସ୍ୱରରେ କହିଲେ, ତୁଳସି, ବୁଢ଼ୀ ମରିବା ଅଗରୁ ତୋ ହାତ ସଙ୍ଗେ ମୋ ହାତ ମିଳାଇ ଦେଇ ଯାଇଥିଲେ । ସେ ବୁଝିଥିଲେ, ତୋ ବିନା ମୋର ଏ ଜୀବନର ମୂଲ୍ୟ ନାହିଁ, ମୋର ବଞ୍ଚି ରହିବା ଅକାରଣ । ମରଣ ଅଗରୁ ମଣିଷକୁ ଭିନ ପୁରର କଥା ଦେଖାଯାଏ । ସେ ଜାଣି ପାରିଥିଲେ, ମୋ ବିନା ତୋର ବି ଅନ୍ୟ ଗତି ନାହିଁ ।

ସେମିତି ତଳକୁ ଚାହିଁ ରହିଥିଲି । ମନର କଥା ତୁଣ୍ଡରେ ପ୍ରକାଶ କରିବାର ସାହସ ମୋର ନାହିଁ । ମରଣ ଅଗରୁ ବୋଉ ଯାହା କହିଗଲା, ତାର ଅର୍ଥ ଟିମାଇ ବୁଝି ପାରିବେ ନାହିଁ । ବୋଉର ମନ କଥା ମୁଁ ଜାଣେ । ସେ ଟିମାଇକୁ ପୁଅ ବୋଲି ମଣିଥିଲା । ଏ କଥା ମୁଁ କହିଲେ ଟିମାଇର ମନରେ ଦୁଃଖ ହେବ । ତାଙ୍କ ମନରେ ଦୁଃଖ ଦେଲେ ଫଳ କଅଣ ହେବ କିଏ ଜାଣେ ?

ମୁଁ ଉତ୍ତର ନ ଦେଇ ତଳକୁ ମୁହଁ ପୋତି ରହିଲି ।

ମୋ ନୀରବ ଭାବରୁ ସେ କଅଣ ଭାବିଲେ କେଜାଣି, ଟିକିଏ ଉତ୍ତେଜିତ ହୋଇ ଦୁଇ ହାତରେ ମୋ ମୁହଁକୁ ଟେକି ଧରିଲେ । ତାଙ୍କର ଆଖିରେ ମନର ଭାବ ଫୁଟି ଉଠିଥିଲା । ମୁଁ ବାଧା ଦେବା ଅଗରୁ ସେ କହିଲେ, ତୁଳସି, ଭଗବାନଙ୍କ ଇଚ୍ଛା ପୂରଣ ହେଉ । ମୁଁ ତତେ ବିବାହ କରିବି । ତୁ ଆପତ୍ତି କରିବୁ ନାହିଁ ମୁଁ ଜାଣେ ।

ନିଘୋଲା ନିର୍ଜନ ରାତି । ବାହାରେ ବର୍ଷା, ଅନ୍ଧାର, ପବନ । ଦୂର ବିଲରୁ ବେଙ୍ଗ ଓ ଝିଙ୍କାରିଙ୍କର ଶବ୍ଦ । ଗାଁ ଶେଷ ନିଘୁଞ୍ଚିଆ ଘର ଭିତରେ ଟିମାଇ ଓ ମୁଁ । ତାଙ୍କର କାର୍ଯ୍ୟ ଦେଖିବାକୁ କେହି ନାହିଁ ।

ଭଲ ମନ୍ଦ ଦୁନିଆଁର ଲୋକେ କେହି ଜାଣିବେ ନାହିଁ । ତଥାପି, ମୋ ଛାତି ଥରି ଉଠିଲା । ବଗିଚା ଘରେ ସଞ୍ଜବେଳେ ଏଇ ଟିମାଇର ଛାତି ଉପରକୁ ଢଳି ପଡ଼ିଥିଲି । ରକ୍ତରେ ଲାଗିଥିଲା ନିଆଁ । ମିଳନ ଅଗ୍ରହରେ ଦେହ ମନ ପୁଲକି ଉଠିଥିଲା । ଆଜି, ଏଇ ନିଘୋଲା ରାତିରେ, ସେଇ ଟିମାଇର ପରଶରେ ମନରେ ଉତ୍ତେଜନା ଆସିଲା ନାହିଁ ତ ! ମିଳନ ଡାଆଣାମନ ଜାଗି ଉଠିଲା ନାହିଁ । ଇଚ୍ଛା ହେଲା ନାହିଁ, ଲତାଟି ପରି ତାଙ୍କର ଦେହରେ ଗୁଡ଼ାଇ ହୋଇଯିବି ।

ଦୁଃଖର ବୋଝ, କର୍ତ୍ତବ୍ୟଜ୍ଞାନ, ମଣିଷର ଉତ୍ତେଜନାକୁ ଅସ୍ୱୀକାର କରେ । ସେ ହୁଏ ପଥର । ସବୁ ଦେଖେ, ସବୁ ହୁଏତ ବୁଝେ, ପାଟିରୁ କଥା ବାହାରେ

ନାହିଁ । ସବୁ ସହେ, କିଛି ଅନୁଭବ କରି ପାରେ ନାହିଁ । ମୋ ଦୁଃଖ, ମୋ ସଂସାର ମତେ ପଥର କରିଛି ।

ଟିମାଇ ଆଡ଼କୁ ମନ ନଇଁଲା ନାହିଁ । ତା ପ୍ରତି ଘୃଣା କି ରାଗ ଅଭିମାନ ହେଲା ନାହିଁ । ଜାଣେ, ମୋତେ ପାଇବା ତାଙ୍କ ଜୀବନର କାମନା କିନ୍ତୁ ମୋତେ ପାଇବା ତାଙ୍କ ପକ୍ଷରେ ସମ୍ଭବ ନୁହେଁ ।

ଦାଣ୍ଡର ବେଶ୍ୟା ପରି ମୋ ଦେହଟା ତାଙ୍କର ପାଖରେ ସମର୍ପି ଦେଇଥିଲେ ସେ ତାହା ଗ୍ରହଣ କରିଥାନ୍ତେ, କିନ୍ତୁ ତାଙ୍କ ଜୀବନର ଲକ୍ଷ୍ୟ ସେତିକି ନୁହେଁ । ସେ ମୋତେ ନଜର କରିବାକୁ ଚାହାନ୍ତି । ସେ ମୋ ପାଇଁ ଯାହା କରିଛନ୍ତି, ତା ତୁଳନାରେ ମୋତେ ଥରଟିଏ ପାଇବାକୁ ସେ ଅତି ବଡ଼ କଥା ବୋଲି ମନେ ନ କରି ପାରନ୍ତି, କିନ୍ତୁ ତାଙ୍କର ଋଣ ଶୁଝାଇବାକୁ ଏହି ଦେହଟା ଛଡ଼ା ମୋର ଅନ୍ୟ କିଛି ନାହିଁ ।

ମୋ ପାଖରେ ତାଙ୍କୁ ଯିଏ ଏକୁଟିଆ ଛାଡ଼ିଦେଇ ଦୂରରେ ରହି ମୋ କର୍ତ୍ତବ୍ୟ ଜ୍ଞାନ ପରୀକ୍ଷା କରୁଛନ୍ତି, ସେ କିଛି ଜାଣିବେ ନାହିଁ, କିନ୍ତୁ ମୁଁ ହେବି ତାଙ୍କ ପାଖରେ ଦୋଷୀ । ଆଜି, ଏଇ ରାତିରେ, ଟିମାଇର ହାତରେ ନିଜକୁ ଧରା ଦେଇ, କାଲି ଯାହାର ହାତ ଧରିବି, ତା ଆଗରେ କେଉଁ ସାହସରେ ମୁଁ ଠିଆ ହୋଇ ପାରିବି ? ମୋ ମନ ମୋତେ ଦୋଷ ଦେଉଥିବ, ମୁଁ ଦୋଷରୁଣୀ, ମୁଁ ଠକିଛି !

ଧୀର ସ୍ଥିର ଭାବରେ କହିଲି, ଟିମାଇ, ମୁଁ ଜାଣେ ତୁମେ ମୋର ଯେତେ ଉପକାର କରିଛ, ତା ତୁଳନାରେ ମୋର ଏଇ ଦରମଲା ଦେହଟାର ମୂଲ୍ୟ କିଛି ନୁହେଁ, କିନ୍ତୁ ଟିମାଇ, ଦେହ ଅପେକ୍ଷା ମନ କଅଣ ଉଚ୍ଚରେ ନୁହେଁ ?

ଟିମାଇ କଅଣ ଭାବି ପଛକୁ ଘୁଞ୍ଚି ବସିଲେ । ପଚାରିଲା ଆଖିରେ ମୋ ମୁହଁକୁ ଚାହିଁ ରହିଲେ ।

ହସିଲା ଓଠରେ କହିଲି, ନୂଆଜିର କଥା ମୁଁ ଭାବୁଛି । ତୁମେ ତାଙ୍କ ମନର ପରିଚୟ ପାଇଛ, କେଡ଼େ ବଡ଼, କେଡ଼େ ଉଦାର । ତାଙ୍କ ମନରେ ଦୁଃଖ ଦେବା କଅଣ ତମର ଉଚିତ, ମୋର ଉଚିତ ? ଯେ ଉଦାର, ଯେ ମହତ୍, ତାର ସର୍ବନାଶ କରିବା କଅଣ ଅନ୍ୟାୟ ନୁହେଁ ?

ଟିମାଇ ଦୀର୍ଘଶ୍ୱାସ ଛାଡ଼ିଲେ । କହିଲେ, ତୋର ଏପରି ଭାବିବାର କାରଣ କଅଣ ? ତୋତେ ପାଇଲେ କଅଣ ମୁଁ ତାଙ୍କୁ ସୁଖୀ କରି ପାରିବି ନାହିଁ ?

ସ୍ତ୍ରୀର ମନକଥା ତେମେ ବୁଝି ପାରିବ ନାହିଁ ଟିମାଇ, ସେ ତାର ସ୍ୱାମୀ ଉପରେ ପୂର୍ଣ୍ଣ ଅଧିକାର ଚାହେଁ । ସ୍ୱାମୀର ସ୍ନେହର କାଣିଚାଏ ଯଦି ଅନ୍ୟଠିକି ଯାଏ ସେ ତାହା ସହି ପାରେ ନାହିଁ । ସେ ଅସୁଖୀ ହୁଏ । ମୁଁ ଯାହା ଅନୁଭବ କରିଛି, ତାହାହିଁ କହୁଛି । ନିର୍ବିଘ୍ନରେ ନିରୋଳା ନିର୍ଜନ ନିଶାରେ ତମକୁ ସେ ମୋ ପାଖକୁ

ପଠାଇଛନ୍ତି । କାହିଁକି ଜାଣ ? ତାଙ୍କର ମନ ପବିତ୍ର । ତାଙ୍କର ହୃଦୟରେ ସନ୍ଦେହ ଓ ଅବିଶ୍ୱାସ ନାହିଁ । ତମକୁ ମୁଁ ଭାଇ ବୋଲି ଡାକେ । ସେ ଜାଣନ୍ତି ଭାଇ ଡାକର ମହତ ଅଛି । ସମାଜରେ ଘର କରି ରହିଲେ ଭାଇ ଡାକର ମହତ ରଖିବାକୁ ହେବ । ନୋହିଲେ ସମାଜ ଛିଡ଼ିବ ନାହିଁ ।

ତାଙ୍କର ମୁହଁ ମଉଳିଗଲା । ଅଗ୍ରହଭଙ୍ଗା ସ୍ୱରରେ କହିଲେ, ମଣିଷର ଦେହ ଥିବାଯାଏ, ଦେହର ଲୋଭ ସେ ଛାଡ଼ି ପାରେ ନାହିଁ । ତୁ ସୁନ୍ଦର । ହେଉ ହେଲା ଦିନୁ ତତେ ମୁଁ ଦେଖି ଆସିଛି, ତୋର ପଛେ ପଛେ ଶରଦିନ ମୋ ଉତଲା ମନ ଛୁଟିଛି । ଗୋଟାଏ ପଦର ଧାରଣାରେ ଦେହର ଭୋକ ଓ ମନର ଶୋଷକୁ ଅଟକାଇ ରଖିବା ସହଜ ନୁହେଁ । ଗୋଟାଏ ପଦ ଡାକକୁ ବଦଳାଇ ଦେବା ଆମ ହାତର କଥା । ଯେଉଁଠି ରକ୍ତ ସମ୍ବନ୍ଧ ନାହିଁ, ସେଠି ସମାଜରେ ଚହଲ ପଡ଼ିବ ନାହିଁ । କେହି କେହି ଏଠି ସେଠି ଦୁର୍ନାମ ରଟାଇବେ, ପୁଣି ଭୁଲି ହେବେ । ତୋର ଓ ମୋର ସମ୍ବନ୍ଧ ତୋର ସ୍ନେହ କି ଘୃଣା ଉପରେ ନିର୍ଭର କରେ । ତୋର ମୁହଁରୁ ମୁଁ ତାହା ଶୁଣିବାକୁ ଚାହେଁ ।

ଟିମାଇର କଥାକୁ ମନେ ମନେ ଆଲୋଚନା କଲି । ତା ସଙ୍ଗେ ତର୍କ କରିବାର ବେଳ ସେ ନୁହେଁ । ରୋଗୀ ପାଟିକି ଭଲ ଖାଦ୍ୟ ବି ଅରୁଚି ଲାଗେ । ତାଙ୍କର ଉଚାଟଣା ମନକୁ ମୋ କଥା ଭଲ ଲାଗିବ ନାହିଁ ।

କହିଲି ଟିମାଇ, ତେମେ ଯାହା କହିଲ ସେଥିରେ ଭୁଲ ନାହିଁ । ତମର ଆନନ୍ଦ ଓ ସୁଖ ପାଇଁ ନିଜକୁ ମୁଁ ତମର ଗୋଡ଼ ତଳେ ସମର୍ପି ଦେବି । ମୁଁ ତ ଅଖୋଜା, ଅଲୋଡ଼ା ଅଳିଆ ଗଦା ସଙ୍ଗେ ସମାନ । ମୋତେ ନେଇ ଘରେ ସାଇତିବ ଓ ଗାଁ ଦାଣ୍ଡରେ ଯେଉଁ ଦୁର୍ଗନ୍ଧ ଉଠିବ ତାକୁ ସମ୍ଭାଳିବ, ସେଥିପାଇଁ ତେମେ ପ୍ରସ୍ତୁତ ହେବ, ଏସବୁ କଥା ଆଗ ଭାବି ସ୍ଥିର କର । ମୋତେ ବି ଟିକେ ଭାବିବାକୁ ବେଳ ଦିଅ । ଟିମାଇ, ମୋତେ ତେମେ ତମର ସ୍ତ୍ରୀ କରି ନେଲେ ନୂଆଜାତ ଜୀବନ ହାରିଦେବେ । ତେମେ ନିଜେ ଭାବି ସ୍ଥିର କର କାହା ମୂଲ୍ୟ ଅଧିକ, କାହାକୁ ନେଇ ଘର ସଂସାର କଲେ ତେମେ ସୁଖୀ ହୋଇ ପାରିବ ।

ମୋ ଗୋଡ଼ରୁ ମୁଣ୍ଡଯାଏ ଥର ଥର ହୋଇ କମ୍ପି ଉଠିଲା । ଆଖିରୁ ଝର ଝର ହୋଇ ଲୁହ ଝରିଲା । ଟିମାଇ ଏକ ଆଖିରେ ମୋର ସାହାହୀନ ଦେହଟାକୁ ଅନାଇ ରହିଥାଏ, ସତେ କି ତା ଆଖିର ନିଆଁ ମତେ ଜାଳି ଦେବ । ଅନୁଭବ କଲି, ସେ ଯେପରି ମୋତେ ଗ୍ରାସ କରିବାକୁ ବସିଛି କରୁଛନ୍ତି । ଥରିଲା ହାତରେ ତାଙ୍କର ବଳିଲା ହାତକୁ କଟମଟ କରି ଧରି କହିଲି, ତମର ଦୁଃଖ ମୁଁ ବୁଝିଛି, ତଥାପି ମୁଁ ସମୟ ଚାହୁଁଛି, ମୋତେ ଭାବିବାକୁ ବେଳ ଦିଅ ।

ସେ ସାମାନ୍ୟ ହସିଲେ । ମୋ ହାତରୁ ତାଙ୍କ ହାତ ଖସାଇ ନେଇ କହିଲେ, ସମୟ, ଅଚ୍ଛା ।

ଆଉ କିଛି ସେ କହିଲେ ନାହିଁ । ନାକ ଫଣ ଫଣ କରି ସେ ଉଠି ଚାଲି ଗଲେ । ଅଟକାଇବାକୁ ସାହସ ହେଲା ନାହିଁ ।

ସେ ଚାଲିଗଲା ପରେ ମୁଁ ଅନୁଭବ କଲି ଏଣିକି ଆଉ ପରିତ୍ରାଣ ନାହିଁ । ଏ ଘର ଛାଡ଼ି ଚାଲି ନ ଗଲେ ଆଉ ଠାଣପଣ ରହିବ ନାହିଁ ।

୫୭

ଦୁଇଦିନ ଗଡ଼ିଗଲା । ବର୍ଷା ପରେ ପୁଣି ହେଲା ଖରା ପାଗ । ଦୁନିଆଁ ଦିଶିଲା ସୁନ୍ଦର । ମନୁଆଁ ର ଦେହ ଭଲ ହୋଇଗଲା । ଘରଟାରେ ବନ୍ଦୀ ହୋଇ ରହିବାକୁ ମନ ହେଲା ନାହିଁ । ଝିମ ଭାଇଙ୍କ ଦୟାରୁ କୌଣସି ଅଭାବ ନ ଥିଲେ ମଧ୍ୟ ବିନା କାରଣରେ ପର ମଣିଷର ଦୟା ଉପରେ ନିର୍ଭର କରି ଚଳିବା ଭଲ ନୁହେଁ । କେହି କିଛି ନ କହିନ୍ତୁ ପଛେ ନିଜ ପାଖରେ ନିଜକୁ ଲାଜ ମାଡ଼େ ।

ପର ଘରେ ପାଇଟି କରି ପେଟ ପୋଷିବାକୁ ଅଣ୍ଟାଭିଡ଼ି ବାହାରିଲି ।

କେତେ ଲୋକଙ୍କର କାନ୍ଥକୁ ବାଡ଼କୁ ଦେଖା କେତେ କଥା ସହିବାକୁ ହେଲା ।

କଟଲୋ, ଦିଅର ନେଲା ନାହିଁକି ? କାହାପାଇଁ ଏତେ ସଜବାଜ ବା ?

ଆଲୋ ତୁଲସି, ହାଟକୁ ଯିବା ଆଜି କାଲି ବନ୍ଦ ହୋଇଗଲା କି ? ତୋର ଦେଖା ଦର୍ଶନ ମିଳୁନାହିଁ ?

ଚାଲି ଯାଉଛୁ ନା ? ଠାକୁରେ ବଡ଼ ଲୋକ । ଦେବା ନେବାକୁ ହରି, କରତା ଅଚ୍ଛନ୍ତି ସବୁରି । ଠାକୁରେ ଦେବାକୁ ବସିଲେ, ଛପର ଫାଡ଼ି କରି ଦିଅନ୍ତି ।

ବୁଢ଼ୀ ମରି ନାହିଁ ଯେ ତରି ଯାଇଛି । ବଞ୍ଚିଥିଲେ ତା ଆଖିରେ ବେଆଡ଼ା କଥା ଯାଆନ୍ତା ନାହିଁ ।

ମୋର ପଥର ମନ ଉପରେ ଏ ସବୁ କଥା ଦାଗ ପକାଇ ପାରେ ନାହିଁ । ଲୋକେ ଯାହା କହିବାର କହୁଥାନ୍ତୁ ।

ଭାବେ, ସୁର ଆସିବେ ନାହିଁ । ଯାହା ସ୍ଥିର କରିବାର କଥା ସେ ସ୍ଥିର କରନ୍ତୁ । ଶେଷ କଥା ମୁଁ ଜାଣିବାକୁ ଚାହେଁ । ଭିନ୍ନ ଅପେକ୍ଷା କରିବି କାହିଁକି ? ତାଙ୍କର ନିରୁତ୍ତର ଭାବରୁ ଜାଣିପାରୁଛି ମୋତେ ସେ ସ୍ତ୍ରୀ ରୂପେ ଗ୍ରହଣ କରିବାକୁ ରାଜି ନୁହନ୍ତି । ତେବେ ଆଉ ଡେରି କାହିଁକି ? ଚେମାଇର ଗୋଡ଼ ତଳେ ନିଜକୁ ସମର୍ପି ଦିଏଁ ।

ତଥାପି ଅପେକ୍ଷା କରେଁ, ଦିନଟିଏ, ଦିନଟିଏ, ଦିନଟିଏ—

ସାତଦିନ କଟିଗଲା । ସୁର ଆସିଲେ ନାହିଁ ।

ଝିମାଇ ବେଳେ ବେଳେ ଆସନ୍ତି । ଭଲମନ୍ଦ ପଚାରି ବୁଝନ୍ତି । ବେଶି ବେଳ ରହନ୍ତି ନାହିଁ । ତାଙ୍କୁ ଦେଖିଲେ ମନକୁ ମନ ମୁଁ ଲାଜରେ ସଢ଼ି ଯାଏ । କାଲେ ସେ କଣ ପଚାରିବେ, ମୁଁ କି ଉତ୍ତର ଦେବି, ସେଇ କଥା ଖାଲି ଭାବୁଥାଏଁ । ସେ ବି କିଛି ପଚାରନ୍ତି ନାହିଁ । ମୋ ମୁହଁକୁ ଅନାଇ ପାରନ୍ତି ନାହିଁ । ଆଖି ଆଖିର ମିଳନ ହେଲେ ସେ ଦୃଷ୍ଟି ଫେରାନ୍ତି । ମୁଁ ପୁଣି ଭାବେ ବୋଧହୁଏ ସେ ଆଶା କରନ୍ତି ଯେ ମୋ ମନକୁ ମୁଁ ତାଙ୍କ ପ୍ରଶ୍ନର ଜବାବ ଆଗ ବଳିପଡ଼ି ଦେବି ? କଅଣ କହିବି ଭାବିଲେ ମୋର ହାଲ୍ୟା ଶୁଖେ । ସେ ଫେରିବା ଯାଏ ମୁଁ ଛଟପଟ ହେଉଥାଏ, ସତେକି ମୁଁ କଅଣ ଅନ୍ୟାୟ କାମ କରି ପକାଇଛି ! ସେ ବାହୁଡ଼ିଗଲେ ଦୀର୍ଘଶ୍ୱାସ ଛାଡ଼ି ମୁଁ ନିଶ୍ଚିନ୍ତ ହୁଏ ।

ଖଞ୍ଜବୋଉ ଖୁଡ଼ୀ ଗାଧୁଆ ବେଳେ ମନୁଆକୁ କାଖରେ ଧରି ଭୁନ ଭୁନ ମୋ କାନରେ କହିଲା, ରଙ୍ଗୀ ମ, କାଲି ଗ୍ରାଡ଼ି ପହିଲି ଦିନ ତାର ବାହାଘର—

କାବା ହୋଇ ତା ମୁହଁକୁ ଚାହିଁଲି ।

ହସି ହସି କହିଲା, ହଁ ଲୋ, ଦୋବେହ୍ନ ବର । ବୟସ ଅଛି, ବଡ଼ଲୋକ, ରଙ୍ଗୀର ରୂପ ଦେଖି ମଙ୍ଗିଲା । ରଙ୍ଗୀ ବାପ, ତାର ସବୁ ସମ୍ପତ୍ତି ଲେଖି ଦେଉଛି ।

ତାଙ୍କ କୁଳରେ ପଘା ଚଳେ ନାହିଁ ?

ପଇସା ଥିଲେ ସବୁ ଚଳେ । ଜାତିଭାଇ ଅଡ଼ି ବସିଛନ୍ତି । ରଙ୍ଗୀ ବାପ ଠଙ୍କା ବାନ୍ଧି ଦେଲାଣି ।

ମନ ସମ୍ଭାଳି ହେଲା ନାହିଁ । ଗଲି ଦେଖିବାକୁ । କେତେ ମାଇପେ ହାଉଯାଉ ହେଉଛନ୍ତି । ରଙ୍ଗଲତାର ବାହା ! ସୁନ୍ଦର ଦିଶୁଛି, କିଏ କହିବ ରଙ୍ଗୀ ବାହା ହୋଇ ସ୍ୱାମୀଘରେ ପାଞ୍ଚ ବରଷ ସଂସାର କରିଥିଲା ? ଦେବୀ ପରି ରୂପ, ଗହଣା ଗଣ୍ଠି, ମୁହଁରେ ହସ । ବର ଛତିଶ ବର୍ଷର ଟୋକା । ସୁନ୍ଦରଟିଏ !

କେତେ କଥା ପଚାରିବାକୁ ମନ ହେଉଥିଲା । ସୁଯୋଗ ମିଳିଲା ନାହିଁ ।

ରଙ୍ଗୀ ବାହା ହୋଇଗଲା । କଜିଆ ଦଙ୍ଗା, ଭାଇ ପଣିଆଁ ଅଟକ, ମାଇପି ସଭା, ଦୁର୍ନାମ ! ତଥାପି ରଙ୍ଗୀ ବାହା ହୋଇଗଲା । ପଛକୁ ଫେରି ଚାହିଁଲା ନାହିଁ । ନୂଆଘର, ନୂଆ ସଂସାର, ନୂଆ ବର ।

ରଙ୍ଗୀ ସୁଖରେ ରହିବ, ଘର ସଂସାର କରିବ, ପୁଅଝିଅର ମା ହେବ । ନାତି ନାତୁଣୀଙ୍କର ଆଈ ହେବ । ପାକଲା ବାଳରେ ସକାଳର ନାଲିଆ ତପନ ପରି ସିନ୍ଦୂର ଟୋପା ହାଉ ହାଉ ହୋଇ ଝଟକୁଥିବ ।

୩୮

ସୁର ଆସିଲେ ନାହିଁ । ଆଉ ଅପେକ୍ଷା କରିବ ନାହିଁ । ଝିମଭାଇଙ୍କ ପାଖରେ ମୋତେ ଜବାବ ଦେବାକୁ ହେବ ।

ଦିନେ ନୂଆଉ ପଚାରିଲେ, କାଲୋ, ଖବର କଅଣ ସୁରର ?

ସେ ତ ଆସି ନାହାନ୍ତି ।

ତାଙ୍କର ମୁହଁ ମଉଳ ଗଲା ।

ପଚାରିଲେ, ଯଦି ନ ଆସେ ?

ହସି ହସି କହିଲି, ବଳେ ପଶିବ ନାହିଁ ତ ନୂଆଉ ।

ତେବେ ?

ଅଉ ଦିନାକେତେ ଅପେକ୍ଷା କରିବ, ସେ ନ ଆସିଲେ ବଳେ ଯେଉଁଠି ହେଲେ ପଶିବ, କୂଅ, ପୋଖରୀ, ମଶାଣି । ଅଶ୍ରା ନେବାକୁ ଥାନର ଅଭାବ ହେବ ନାହିଁ । ମନୁଆଁକୁ ବାଟକଡ଼ ଚଟିମୂଳେ ବସାଇ ଦେଇ ଯିବ ।

ବଗିଚା ଘର ନାଇଁ ଲୋ ନିଆଁ ଲାଗି ? ହସିଲେ ।

ଝିମ ଭାଇଙ୍କି ତେମେ ଚିହ୍ନି ନାହଁ ତା ହେଲେ ?

କେମିତି ଚିହ୍ନିବି ? ହାତ ଧରି ଯିନା ବାହା ହୋଇଛି, ତାଙ୍କ ମନ ଯେ ପବନରେ ଉଡ଼ୁଛି । ହେଲେ ଲୋ ନିଆଁ ଲାଗି, ଭୁଲସିକୁ ମୁଁ ଚିହ୍ନେ । ସମସ୍ତେ ଚିହ୍ନନ୍ତି । ଖତ କୁଢ଼ରେ ଉଠିଲେ ବି ସେ ଦି ପତରରୁ ମହକେ । ଦୂରରୁ ଖତଗଦା ଦେଖି ଗନ୍ଧ ବୋଲି ନାକରେ ଯେଉଁମାନେ ହାତ ଦେଇ ଦନ୍ଦା ରଚନ୍ତି, ପାଖକୁ ଗଲେ ସେମାନେ ବଳେ ବୁଝନ୍ତି ।

ଅଖି ଛଳଛଳ କରି ତାଙ୍କର ଗୋଡ଼ ଧରି ତଳେ ମୁଣ୍ଡ ଲଗାଇଲି । କହିଲି, ତମ ତୁଣ୍ଡରେ ତୋଫାନ ସିନା ନୂଆଉ, ତମ ମନରେ ମହୁର । ତମଠୁ ଯେ ସ୍ନେହ ପାଇବ, ଖତ ଗଦାର କନସିର ପତର ହୋଇଥିଲେ ସେ ସତକୁ ସତ ତୁଳସୀ ହେବ । ତମ ପାଦ ଧରି କହୁଛି, ତମ ଧାରଣାର ଠେକ ରଖିବାକୁ ଏଇ ଭିକାରୁଣୀଟା କୂଅ ପୋଖରୀକୁ ଡେଇଁ ପଡ଼ିବାକୁ ପଣ କରୁଛି ।

ନୂଆଉ ମୋତେ ତଳୁ ଉଠାଇଲେ । ଅଖିରୁ ଲୁହ ପୋଛି ଦେଲେ । ଗାଲରେ ଟିପ ଗେଞ୍ଜି କହିଲେ, ଚୁଲିପଶା ସୁରିଆ ଯଦି ନ ଆସେ କି ଅସି ଯଦି ତଟେ ଛୁଟି କରି ଗୁଲିଯାଏ, ତଟେ କୂଅ ପୋଖରୀ କି ବଗିଚା ଘରକୁ ଯିବାକୁ ପଡ଼ିବ ନାଇଁ ମ, ମୁଁ ପରା ଅଛି ! ତେଣିକି ତୋ ଚିନ୍ତା ମୋର ।

ମନୁଆଁ ହାତରେ ପୋଡ଼ପିଠା ଖଣ୍ଡେ ଦେଲେ । ତା ପାଇଁ ନୂଆ ଜାମାଟିଏ ବି ଦେଲେ ।

ମନୁଆଁକୁ କାଖ କରି ମୁଁ ଫେରିଲି ।

ଗହ୍ୱାର ପାଖ କୁଡ଼ିଆ ଅମ୍ବଗଛ ପାଖରେ ମାଇସଞ୍ଜବେଳେ ଝିମାଇ ସଙ୍ଗେ ଦେଖାହେଲା । ପଚାରିଲେ, କେତେ ଦିନ ବସି ଭାବୁଥିବୁ ଲୋ ?

ଉତ୍ତର ଦେଇ ପାରିଲି ନାହିଁ ।

ହସି ହସି କହିଲେ, ତୁ କଅଣ ଭାବୁଛୁ ମୁଁ ଜାଣେ । ତେବେ ତତେ ମୋର ଏତିକି କହିବାର କଥା, ମଣିଷର ମନ ଥରେ ଯାହା ଆଡ଼କୁ ଟାଣି ହୋଇଯାଏ, ବାଧା ନ ପାଇବା ଯାଏ କିମ୍ବା ତାକୁ ନ ପାଇବା ଯାଏ, ତା ଜୀବନରେ ଶାନ୍ତି ଆସେ ନାହିଁ । ପ୍ରାଣ ଛଟପଟ ହେଉଥାଏ । ଧୈର୍ଯ୍ୟ ଧରି ରହିବାକୁ ସେ ଚେଷ୍ଟା କରେ । ଧୈର୍ଯ୍ୟ ଭାଙ୍ଗିଲେ ସେ ପଶୁ ହୁଏ । ସେଇଥିପାଇଁ ତୁଳସି, ତୋ ପାଖରୁ ମୁଁ ଦୂରେଇ ରହିଛି, କିନ୍ତୁ ମୋ ମନଟା ତୋ ଘର ଚାରିପାଖେ ବୁଲୁଛି ଦିନ ରାତି, ତୋ ଉତ୍ତର ଶୁଣିବାକୁ ।

କହିଲି, ଝିମାଇ, ମୁଁ ଅଜ୍ଞାନକପାଳୀ ।

ମୁହଁ ଶୁଖାଇ କହିଲେ, ମୁଁ ବି କମ୍ ନୁହେଁ ।

ଝିମାଇ ବାଟ ଭାଙ୍ଗି ଚାଲିଗଲେ । ମନୁଆଁ ମୋ ହାତଧରି ଠୁକୁଠୁକୁ ଚାଲିଥିଲା । ସଞ୍ଜ ହୋଇ ଆସୁଛି ଦେଖି ତାକୁ ତଳୁ ଉଠାଇ ନେଇ କାଖ କଲି । ମୁହଁରେ ଚୋକ ଦେଇ ଆଗକୁ ଚାଲିଲି ।

ରାତିରେ ଝିପିଝିପି ବର୍ଷା ହେଲା । ପିଲାଟିକୁ କୋଳରେ ପୂରାଇ ଶୋଇଲି ।

ନିଶା ଗର୍ଜୁଛି । କୁଡ଼ିଆ ଘର । ଏକା ରହିବାର ଅଭ୍ୟାସ ହୋଇଥିଲେ ବି ଶୁଭେଁ ଶୁଭେଁ ଲାଗେ । ବୋଉ ମୋର ଅତପାତ ହେଲା ପରି ମନେ ହୁଏ । ଡର ମାଡ଼େ । ସେଥିପାଇଁ ଡିବିରି ଜଳାଇ ରଖେ । ମନରେ ବାରଚାଉଳିଆ ଚିନ୍ତା ପଶିଲା—ରଙ୍ଗୀ ହେଲା ଫସାଣ୍ଟି ! କେତେ ଗୁଡ଼ାଏ ଲୋକଙ୍କୁ ମୁଁ ଜଳାଇ ପୋଡ଼ାଇ ମାରୁଛି । ନିଜେ ଧାଣ୍ଡି ହେଉଛି ଦୁଃଖରେ । କାହିଁକି ଆଉ ଡେରି ? ସୁରି ତାଙ୍କର ଭାବନା ନେଇ ରହନ୍ତୁ । ମୋର ଭବିଷ୍ୟତ୍ ମତେ ହିଁ ସ୍ଥିର କରିବାକୁ ହେବ । କିଏ ମୋର ଭବିଷ୍ୟତ୍ ?

ଚେମାରି !

ତାରି ଗୋଡ଼ତଳେ ନିଜକୁ ସମର୍ପି ଦେବି । ଆଜି, ଏଇ ଅନ୍ଧାର ରାତିରେ, ଝିପି ଝିପି ବର୍ଷା ମଝିରେ— ।

ସମର୍ପି ଦେଇଛି ।

ଦୁହିଁଙ୍କ ଆଖିରୁ ଝରି ପଡ଼ୁଛି ଲୁହ ।

ତୁଳସି, ଆମର ଆନନ୍ଦ ଦେଖିବାକୁ କେମିତି ଆଇ ବଞ୍ଚିଥାନ୍ତା କି !

ଲାଜ ଲାଜ ହୋଇ କହିଲି ହଁ, ବୋଉ ବଞ୍ଚିଥାନ୍ତା କି ଆଜି ।

ଅଲୋ, ପିଲାଦିନର ମିଛିମିଛିକା ଖେଳ, ଏତେ ଦିନକେ ସତ ଫଳିଲା । ମଣିଷ ବୁଢ଼ା ହୁଏ ନାହିଁ ଲୋ, ମନ ପିଲା ଥିଲେ ମଣିଷ ବଞ୍ଚି ଥିବାଯାଏ ପିଲା ହୋଇ ରହେ ।

କହିବାକୁ ବସିଥିଲି, ଖାଲି ଚିମାଇଟା, ସେମିତି ପିଲାଦିନ ପରି ଦୂରରୁ ଟେକା ପକାଇବ ।

ମୋ ପାଟି ଖୋଲିଲା ନାହିଁ ।

ମନୁଆଁ ଖିଙ୍କ ବୁଜି ହୋଇ କୋଳରେ । ଘର ଭିତରେ ଅଲିଅ ଜଳୁଛି । କାହିଁ ଚେମାଇ, କାହିଁ ମୁଁ, ସ୍ୱପ୍ନ ? ନା, ନିଦ ହୋଇ ନାହିଁ !

ମନର କାମନା ସତ ହେଲାପରି ଲାଗୁଛି । ଅଲିଅ ଲିଭିଗଲା । ଘୋଟିଗଲା ଅନ୍ଧାର । ଆଖି ବୁଜିଲି । ଅନ୍ଧାର ଆହୁରି ଗାଢ଼ ହେଲା । ଚେମାଇ ନୁହେଁ, ସୁରି ଆସି ଘରେ ପଶିଲା । ତାଙ୍କ ପଛେ ପଛେ ବୋଉ !

ଭୟରେ ଛାତି ଧଡ଼ଧଡ଼ ହେଲା । ମନୁଆଁକୁ ଛାତିରେ ଜାକିଲି ।

୩୯

ପରଦିନ ଗାଧୁଆ ବେଳେ, ମନୁଆଁକୁ ଖୋଇ ଦେଇ ଖେଳିବାକୁ ଛାଡ଼ିଦେଲି । ସେ ଖଣ୍ଡେ ବାଡ଼ି ଧରି ବଳେଇ ପଛରେ ଗୋଡ଼ାଇ ଥାଏ । ମୋ ମନ କାହିଁ ଲାଗୁ ନ ଥାଏ । କିଛି କୁଆଡ଼େ ସ୍ଥିର ହେଲା ନାହିଁ । ସୁରିଙ୍କର ଦେଖା ନାହିଁ । ତାଙ୍କ କଥା ଜଣା ପଡ଼ିଲା । ତଥାପି, ମନ ଗୁହାଁଥାଏ—ତାଙ୍କର ମୁହଁରୁ ଥରେ ନାହିଁ ପଦ ଶୁଣିବି । ତେଣିକି ମୋର ଯାହା ମନ କରିବ । ସବୁ ସିନା ସହି ହେବ, ପେଟ ଭୋକ ତ ସହି ହେବ ନାହିଁ । ବେଳାଏ ଖାଇ ଦୁଇ ବେଳା ଉପାସ ରହି କେତେ ଦିନ ଆଉ ଚଳିବ ।

ଘର ଛାଡ଼ି ଗାଁ ଭିତରକୁ ଯିବାକୁ ଗୋଡ଼ ଚଳୁ ନ ଥାଏ । କେତେ ଲୋକ କେତେ କଥା କହିବେ, ଠାହି ଠୋପରି ! ଦେହ ପଥର କରି ଆଉ କେତେ ସହିବ ? ଡର ମାଡ଼ୁଥାଏ, ଚିମାଇ ଆସିବେ କି, ପଚାରି ଦେବେ,—କଅଣ କହିବ ? ଏ ଘର, ଏଘରେ ଯାହା କିଛି ଅଛି, ମୋ ପିନ୍ଧା ଲୁଗା ଖଣ୍ଡି ମଧ୍ୟ ତାଙ୍କର ଦାନ । ତାଙ୍କର ଦୟା ସୁଝାଇବାକୁ ମୋ ସମ୍ବଳ ନାହିଁ ।

ଚେମାଇ ଅସନ୍ତେ କି, ଥରେ ପଚାରି ଦିଅନ୍ତେ, ମନା କରନ୍ତି ନାହିଁ । ସବୁ ଦୋଷ ମାଗି ନିଅନ୍ତି । ଗୁପ୍ତରେ କହନ୍ତି, ଡେରି କର ନା, ଏ ଘରେ କ୍ଷଣେ ରହିବାକୁ ମୋ ମନ ହେଉ ନାହିଁ ।

ମନୁଆଁ କାନ୍ଦି ଉଠିଲା । ଏଣୁ ତେଣୁ କଅଣ କାମ କରୁଥିଲି ଛାଡ଼ି ଘର ଭିତରୁ ପଦାକୁ ଆସିଲି । ବାଉ ଫାଟକ ଆଡ଼କୁ ଗୁହାଁଲି । ସେ ପାଖରେ କଳିଆ

ଠିଆ ହୋଇଛି । କଳା ମିଚମିଚ ମୁହଁରେ ନାଲି ଅଖି ଦିଟା ଜଳନ୍ତା ପରି ଦିଶୁଛି । ହାତରେ ଧରିଛି ପାଞ୍ଚହାତିଆ ଠେଙ୍ଗା । ଅସ୍ୱସ୍ତି ଲାଗିଲା । ଦିନେ କାଳେ ତ କେବେ ବଳିଆ ଅସେ ନାହିଁ ଆଜି କାହିଁକି ଆସିଛି ? କାଳିସ୍ୱାମି ବାବୁ କଅଣ ଟଙ୍କା ପାଇଁ ପଠାଇଛନ୍ତି ? ମୋ ପାଖରେ କାଣୀ କଉଡ଼ି ନାହିଁ, ମାଗିଲେ ତାକୁ କଅଣ କହିବି ? ସେ ଯେପରି ଅଖାଡ଼ୁଆ ଗୁଣ୍ଡା ପ୍ରକୃତିର ଲୋକ, ନାହିଁ କଲେ କଟାଳ କରିବ, ଅପମାନ ଦେବ ।

ମନ୍ଦୁଅଁକୁ କାଖ କରି ତାଟି ପାଖକୁ ଗଲି । ପଚାରିଲି, କଅଣ କରେ, ଦିନେ ନାହିଁ କାଟଲ ନାହିଁ, ଆଜି କୁଆଡ଼େ ଆସିଛୁ ?

କହିଲା, ବିନା କାମରେ କେହି କୁଆଡ଼େ ଅସେ ନାହିଁ । ତୋ ପାଖରେ ମୋର କାମ ଅଛି ।

ମୋ ପାଖରେ ତୋର କି କାମ ?

ହଁ-ହଁ ।

ଭିତରକୁ ଆସୁନି ।

ମୁଁ କାହା ଘର ଭିତରକୁ ଯାଏ ନାହିଁ । ଏଇଠି ଠିଆ ହୋଇ କହୁଛି ଶୁଣ ।

ଅରେ, ତୋର ପରି ସମସ୍ତେ ଅଭଦ୍ର ଗୁଣ୍ଡା ନୁହଁନ୍ତି ଯେ ଲୋକ ନ ଡାକି ହାତ ଧରି ଘରୁ ବାହାର କରିଦେବ । ମୋ ଘରେ ଠେଙ୍ଗା ନାହିଁକି ଠେଙ୍ଗାଧରିବାକୁ କେହି ଲୋକ ନାହିଁ । ଆ ।

ଫାଟକ ଖୋଲିଦେଲି ।

ସେ ଲାଜରି ହୋଇ କହିଲା, ତୁଳସି, ସେ ଦିନ ରାଗରେ ତୋ ହାତ ଧରି କିଏ ବାହାର କରିଦେଲି ତୁ ଜାଣୁନାହିଁ । ବଳିଆର ଗୁରି ନ ଥିଲା । ଶିଅଳଘର ପାଣିର କରାମତି ସେତକ ।

ହସ ମାଡ଼ିଲା । କହିଲି, ଜାଣେ ।

ଜାଣୁ, କଅଣ ଜାଣୁ ?

ସବୁ ଜାଣେରେ, ଆ, ଭିତରକୁ । ଆଜି ବି ଶିଅଳ ଘର ପାଣି ତୋ ଅଖିକି ଚଢ଼ିଛି । ତେବେ, ଆଜି ମୋର ଡର ନାହିଁ । ଏଇଟା ତୋ ଘର ନୁହେଁ, ମୋ ଘର ।

ଆପତ୍ତି ନ କରି ବଳିଆ ମୋ ପଛେ ପଛେ ଘର ଭିତରକୁ ଆସିଲା । ଖଣ୍ଡେ ନଡ଼ିଆ ଗୁଞ୍ଚିରି ପାରି ଦେଲି । ସେ ଭଲ ପିଲାଟି ପରି ବସିଲା । ଠେଙ୍ଗା ଖଣ୍ଡି ପିଣ୍ଡା କାନ୍ଥକୁ ଅଉଜାଇ ଦେଇଥାଏ ।

ମନୁଆଁକୁ ବଳେଇ ସାଙ୍ଗରେ ଖେଳିବାକୁ ଛାଡ଼ିଦେଇ ମୁଁ ଆସି ତା ଆଗରେ ଠିଆ ହେଲି । ଉଦ୍‌ବେଗରେ ପଚାରିଲି, କଅଣ କଟରେ, କାନ୍ତିରଞ୍ଜି ବାବୁ ଟଙ୍କା ପାଇଁ ପଠାଇଛନ୍ତି ପରା ।

ମୋ ମୁହଁକୁ ସନ୍ଦେହରେ ଚାହିଁଲା । କହିଲା, କାନ୍ତିରଞ୍ଜି ବାବୁ ତୋ କଥା ସତେ ଅନେକ ଥର ପଚାରିଲେଣି । ସତେ କି ତୋ ସଙ୍ଗେ ମୋର କେଉଁ କାଳର ଚିହ୍ନା ପରିଚୟ । ତୋ ପାଖରୁ ଟଙ୍କା ଅସୁଲ କରିବାକୁ, ତୋତେ ଡାକି ନେବାକୁ, ମତେ ସେ ଅନେକ ଥର କହିଥିଲେ । କେତେଥର ତାଙ୍କୁ ଭୁରୁଡ଼େଇ ଦେଲି । ଦିନେ ଜିଗର କଲେ, ତୋ ପାଖକୁ ପଠାଇଲେ । ତୋ ଘର କି ଗାଁ ମୁଁ ଜାଣି ନ ଥିଲି । ଛବିକି ପଚାରିଲି । ସେ ଜିଗର କଲାରୁ ତାକୁ କାନ୍ତିରଞ୍ଜି ବାବୁଙ୍କ କଥା କହିଲି । ପିଲାଟା କଅଣ ଭାବିଲା କେଜାଣି ଖୋଜା ଖୋଜି କେଉଁଠୁ ଆଣି ପନ୍ଦର ଟଙ୍କା ମୋ ଆଗରେ ଥୋଇ ଦେଇ କହିଲା, ନିଅ ଭାଇ, କାନ୍ତିରଞ୍ଜି ବାବୁଙ୍କୁ ଦେଇ ଦେବ । କହିବ, ତୁଳସୀ ଅପା ପଠେଇଛି । ପଚାରିଲି, ଟଙ୍କା କୋଉଠୁଁ ପାଇଲୁ ଲୋ ? କହିଲା, ବେଳେ ବେଳେ ତୁମେ ଯାହା ଦିଅ ରଖିଦେଇଥାଏଁ ।

ଆଗ୍ରହରେ ପଚାରିଲି, କାନ୍ତିରଞ୍ଜି ବାବୁଙ୍କୁ ତୁ ସେ ଟଙ୍କା ଦେଲୁ ?

ବଳିଆ କହିଲା, ହଁ, ସେ ନେଲେ ନାହିଁ । କହିଲେ, ତୁଳସୀ ନିଜେ ଆସି ଦେଇଯାଉ । ରାଗିକରି ତାଙ୍କ ଉପରକୁ ଟଙ୍କା କେଇଟା ପକାଇ ଦେଇ ଚାଲି ଆସିଲି । ସେଇ ଦିନରୁ ମୋ ଉପରେ ସେ ଖପା ।

କହିଲି, ତୁ ଆଜି ଟଙ୍କା ନେବାକୁ ଆସିଚୁ । ମୋ ପାଖରେ କାଣିକଉଡ଼ି ବି ନାହିଁ । ଛବିକୁ କହିବୁ, ମୋ ପାଖରେ ଟଙ୍କା ହେଲେ ମୁଁ ସଙ୍ଗେ ସଙ୍ଗେ ପଠାଇ ଦେବି । ବଞ୍ଚିଥିଲେ ତା ପାଉଣା ବୁଡ଼ିବ ନାହିଁ ।

ବଳିଆ କଅଣ ଭାବିଲା କହିଲା, ମୁଁ ଟଙ୍କା ପାଇଁ ଆସି ନାହିଁ । ଛବି ମତେ ତୋ ପାଖକୁ ପଠାଇଛି, ତତେ ଡାକି ନେବାକୁ । ତୁଳସି, ଯେଉଁଦିନ ତତେ ଅପମାନ ଦେଇ ଘରୁ ତଡ଼ିଦେଲି ସେଇ ଦିନୁ ଛବି ଆଖିରୁ ଲୁହ ବନ୍ଦ ହୋଇ ନାହିଁ । ପଚାରିଲେ କିଛି କହେ ନାହିଁ, ଖାଲି କାନ୍ଦେ । ମୋ ମନେ ହେଲା, ତତେ ଘରୁ ବାହାର କରି ଦେଇ ଛବିକି ମୋ ପାଖରୁ କେତେ ଦୂରକୁ ଠେଲି ଦେଇଛି । ଅତି ସରଳ ପିଲାଟା, ପେଟରେ କିଛି ରଖି ପାରେ ନାହିଁ । ଯାହା ସେ ଭାବେ, ଯାହା କରେ, ସବୁ ମୋ ଆଗରେ କହିଦିଏ । ସେଇଦିନୁ ମୋ ପାଖକୁ ଆସିବାକୁ ସେ ଡରେ । ପଚାରିଲେ ତୁନି ହୋଇ ରହେ, କଥା କହେ ନାହିଁ । ପାଖକୁ ଡାକିଲେ ଥରି ଥରି ଆସେ ।

ବଳିଆର ଆଖିରେ ଲୁହ ଭରିଗଲା । ମୋତେ ଆଶ୍ଚର୍ଯ୍ୟ ଲାଗିଲା । ବଳିଆ ପରି ଗୁଣ୍ଡା ଆଉ ମଦୁଆର ଠାଣ ଗ୍ରୁଡର କେଉଁ ଅଜଣା କୋଣରେ କୋମଳତା ଲୁଚି ରହିଛି ।

କହିଲା, କେତେ କଅଁଳେଇ ଦିନେ ପଗ୍ଚାରିଲି । ସେ କହିଲା, ତେମେ ମଦ ଖାଅ, ତମ ପାଖକୁ ଯିବାକୁ ଡର ମାଡ଼ୁଛି । ତା ଆଗରେ ହଲପ କରି ଆସିଲି, ସେଇ ଦିନରୁ ଆଜଯାଏ ମଦ ଖାଇନାହିଁ । ଛବି ଖୁସି ହେଲା, ତା ମୁହଁରେ ହସ ଦେଖିଲି । କିନ୍ତୁ ସେ ହସଟା ଯେପରି ନକଲି ।

ଛବି ପାଇଁ ମନ ନଇଁ ଆସୁଥିଲା । ତଥାପି ଠାଣପଣ କରି କହିଲି, ଛବିର ନକଲି ହସକୁ ମୁଁ ଅସଲି କରି ପାରିବି ନାହିଁ । ପରକୁ ପର । କାହା ସଙ୍ଗେ ମୋର କିଛି ସମ୍ପର୍କ ନାହିଁ ।

ବଳିଆ କହିଲା, ଜୀବନରେ କେବେ କାହା ପାଖେ ମୁଁ ମୁଣ୍ଡ ନୋଇଁ ନାହିଁ, ଗୋଡ଼ ଭାଙ୍ଗି ଠିଆ ହୋଇ ନାହିଁ । ସମସ୍ତେ ମତେ ଘୃଣା କରନ୍ତି, ମୁଁ ବି କାହାକୁ ଭଲ ପାଏ ନାହିଁ । ମୂଲ ଲାଗି ପେଟ ପୋଷିବା ମୋ କାମ । କେହି କାହାକୁ ସେମିତି ଦୟା ଦେଖାଇ ଦେଇ ଦିଏ ନାହିଁ । ବହୁତ ନିଏ, ଅଳପ ଦିଏ । ମୁଁ ଦିଏ ମୋ ମୁଣ୍ଡ ଝାଳ, ଆଣେ କେଇଟା ପଇସା । ଏଥିକି କାହା ପାଖରେ ମୁଣ୍ଡ ନୋଇଁବି କାହିଁକି ?

ତୁ ଛବିକୁ ଘୃଣା କରୁ ?

ସେଇ ବିକଟିକ ତ ମୋ ଜୀବନ । ତାକୁ ଘୃଣାକଲେ ବଞ୍ଚିବି କାହିଁକି ?

ମତେ ତ ଘୃଣା କରୁ ?

ନିଶ୍ଚୟ । ତୁ ମତେ ଯେତିକି ଘୃଣା କରୁ ମୁଁ ତତେ ସେତିକି ଘୃଣା କରେ । ତଥାପି, ଛବି ପାଇଁ ଆଜି ତୋ ପାଖରେ ମତେ ମୁଣ୍ଡ ନୋଇଁବାକୁ ପଡ଼ିଛି । ତୋତେ ଅନୁରୋଧ କରିବାକୁ ଆସିଛି ତୁଳସି, ଛବିକି ପାଞ୍ଚ ଦିନ ହେଲା ଜର, ଖାଉ ନାହିଁ, ପିଉ ନାହିଁ, ବିଛଣାରେ ପଡ଼ିଛି, କଣ୍ଠା ଦୋହଲିଲାଣି । କାନ୍ଦୁଛି, ଖାଲି କାନ୍ଦୁଛି । ପେଟ ପାଇଁ, ଛବିର ଔଷଧ ପଥ୍ୟ ପାଇଁ କାମକୁ ନ ଗଲେ ନ ଚଳେ । କାନ୍ତିବତି ବାବୁଙ୍କୁ ଅଗତୁରା ଠଙ୍କା କେଇଟି ମାଗିଲି ଛବିକୁ ବଞ୍ଚାଇବି ବୋଲି, ସେ ଦେବାକୁ ମନାକଲେ । ଧନିଆର ଦୁନିଆଁ । ସେ ଯାହା ମାଗିଲେ, ମୁଁ ଦେଇ ପାରନ୍ତି ନାହିଁ, ସେଇଥି ପାଇଁ ଛବିକୁ ଏକୁଟିଆ ଛାଡ଼ି, ନଛି କାନ୍ତବତି ବାବୁଙ୍କ କାମକୁ ଯାଏଁ, ନଛି ମୂଲ ଅଣେ ।

ଛବି ପାଖରେ କେହି ରହେ ନାହିଁ ?

ନା । କାଲି ସଞ୍ଜରେ ସେ ମତେ କହିଲା, ଭାଇ, ତୁଳସୀ ଅପାକୁ ଖବର ପଠାଅ । ସେ ଆସିବ, ମୁଁ ତାକୁ ଦେଖିବି ।

ତାକୁ ବୁଝାଇଲି, ତୁଳସୀ ଆସିବ ନାହିଁ । ସେ ରାଗିଛି । ପରକୁ ପର, ତାକୁ କାହିଁକି ଡାକିବା ?

କହିଲା, ତେମେ ଗଲେ, ମୁଁ ଜରରେ ପଡ଼ିଛି ଶୁଣିଲେ, ସେ ଆସିବ । ସେଇଥିପାଇଁ ମୁଁ ଆସିଛି ।

କହିଲି, ଆରେ ବଳିଆ, ମୁଁ ଏକୁଟିଆ ଲୋକ । ପିଲାଟାକୁ ନେଇ ଘର ଛାଡ଼ି କୁଆଡ଼କୁ ଯାଇ ପାରୁନାହିଁ । ବୋଉ ମଲାଦିନୁଁ ହଇରାଣ ହେଉଛି । ଛବିକି ଜର, ତାକୁ ଦେଖିବାକୁ ମନ ହେଉଛି, ହେଲେ ଯାଇ ପାରିବି ନାହିଁ ।

ବଳିଆ ଉଠିଲା । ଯିବାକୁ ଉଦ୍ୟତ ହୋଇ ମୁହଁ ଫେରାଇ କହିଲା, ପିଲାକୁ ମୁଁ କାନ୍ଧରେ ବସାଇ ନେଇଯିବି, ପୁଣି ଛାଡ଼ିଦେଇ ଯିବି । ତୁ ଯିବୁ, ଗୋଡ଼େ ଗୋଡ଼େ ଫେରି ଆସିବୁ । ଛବି ଅଟକାଇବ ନାହିଁ ।

ମୋ ଯିବାପାଇଁ ଛବିର ଏତେ ଜଗର କାହିଁକି ?

ଜାଣେ ନାହିଁ । ବୋଧହୁଏ ମୋ ପାଇଁ ସେ ତୋ ପାଖରୁ କ୍ଷମା ଚାହିଁବ । ଅବୋଧ ପିଲାଟା ।

ତୁ ଆସିଛୁ, ମୋତେ କ୍ଷମା ମାଗୁଛୁ ? —ହସିଲି ।

ମୁହଁ ଭୁକୁଞ୍ଚା କରି କହିଲା, କାହାରିକୁ ମୁଁ କେବେ କ୍ଷମା ମାଗେନାହିଁ । ମୁଁ ଯାହା କରେ ସେଥିପାଇଁ ମୋ ମନରେ କେବେ ଅନୁତାପ ଆସେ ନାହିଁ । ସେ ଦିନ ତୋ ପ୍ରତି ଯେଉଁ ବ୍ୟବହାର କଲି ସେଥିପାଇଁ ମୋ ମନରେ ଦୁଃଖ ନାହିଁ । ମୁଁ ଯାହା କରିଛି ଠିକ୍ କରିଛି ।

ଘୃଣାରେ ନାକ ଟେକି କହିଲି, କାହିଁକି ରେ, ମୁଁ ତୋର ଖାଏ ନା ଧାରେ ? ମୋ ପାଇଁ କାନ୍ତିବାବୁଙ୍କୁ ତୁ ପନ୍ଦର ଟଙ୍କା ଦେଇଛୁ, ମୁଁ ତତେ କହି ନ ଥିଲି ।

ସେ ଟଙ୍କା ମୋର ନୁହେଁ, ଛବିର ।

ତୋ ହାତ ଧରି ଯଦି ମୁଁ ମୋ ଘରୁ ପଦାକୁ ବାହାର କରି ଦିଏ, ଠେଙ୍ଗା କାଢ଼ି ମୋତେ ମାରିବୁ ପରା !

ନା, ତୁନି ହୋଇ ଚାଲିଯିବି । ତୋ ଘରେ ତୋର ଅଧିକାର । ଯିଏ ଯାହା ଦିଏ, ସେ ତାହା ପାଏ । ସେଥିକି ମୋର ଛଳ ନ ଥାଏ ।

ସେ ଦିନ ତୁ ମତେ ଅପମାନ ଦେଲୁ କାହିଁକି ?

ବଳିଆ ମୋ ମୁହଁକୁ କଟମଟ କରି ଚାହିଁଲା । ଟିକିଏ ରହି କହିଲା, କାନ୍ତିବାବୁଙ୍କ ସଙ୍ଗେ ତୋର ଲୁଚକାଳି ଖେଳ ମତେ ଭଲ ଲାଗିଲା ନାହିଁ । ଏମିତି ଅନେକ ଖେଳନ୍ତି । ସମସ୍ତଙ୍କୁ ଆଗରୁ ମୁଁ ସାବଧାନ କରିଦିଏ, ଅନେକ ଥର । ଜାଣୁ, ଟଙ୍କାର ପାହାଡ଼ ଆଗରେ ସମସ୍ତେ ମୁଣ୍ଡ ନୁଆଁନ୍ତି । ଥରେ ଯିଏ ଜାଣି ଜାଣି ଧନର ଲୋଭରେ ତାଙ୍କ ପାଖରେ ମାନ ଥୋଇଦେଇ

ଅଟସେ, ତାକୁ ମୁଁ କଷ୍ଟ କହେ ନାହିଁ । ବରଂ ନଜର ପେଟ ପାଇଁ କାନ୍ତଗତି ବାବୁଙ୍କୁ ସାହାଯ୍ୟ କରେ । ମୋ ଧାରଣା ତୁ ପଙ୍କରେ ପଶିଛୁ । ମୋ ଘରେ, ମୋ ନଗହା ଭଉଣୀ ପାଖରେ ତତେ ଦେଖି ମୋର ରାଗ ହେଲା ।

ଏମିଛ ଭଲା ଆଉ କାହା ଉପରେ ତୋର କେବେ ରାଗ ହୋଇଥିଲା ?

ନାଇଁ, କେହି ତ ମୋର ଭଉଣୀ ପାଖକୁ ଅସନ୍ତ ନାହିଁ ।

ଆଜି ପୁଣି ମତେ ଭଉଣୀ ପାଖକୁ ଡାକୁଛୁ ଯେ, ସେ ଯଦି ଖରାପ ଲୋକ ସଙ୍ଗେ ମିଶି ଖରାପ ହୋଇଯାଏ ?

ତୋ ପ୍ରତି ମୋ ଧାରଣା ବଦଳିଛି । ମୁଁ ଭାବୁଛି ଅଗରୁ ସାବଧାନ କରି ସେଦନ ଅପମାନ ଦ୍ୱାରା ତୁ କାଦୁଅ ପାଖରୁ ଦୂରରେ ରହିଛୁ ।

ବଲିଆ ଯାହା କହିଲା ମିଛ ନୁହେଁ । ସେ ମୋତେ ଅପମାନ ଦେଇ ନ ଥିଲେ ମୁଁ ହୁଏତ କାନ୍ତଗତି ବାବୁଙ୍କ ପାଖକୁ ପୁଣି ଯାଇଥାନ୍ତି ।

କହିଲି, ଛବିକି ଦେଖିବାକୁ ମୁଁ ଯିବି, ରହ ।

ବଲିଆର ଓଠରେ ହସ । ପଚାରିଲା, ସତେ ତୁଲସୀ ଯିବୁ ? ଛବି ଚାହିଁ ବସିଥିବ । କେଡ଼େ ଖୁସି ହେବ ।

ହସ ହସ ହୋଇ ପଚାରିଲି, ଆଉ ତୁ ?

ମୁଁ ? ଛବିର ମୁହଁରେ ହସ, ମନରେ ଆନନ୍ଦ ଦେଖିଲେ ସବୁ ଦୁଃଖ କଷ୍ଟ ମୁଁ ଭୁଲିଯାଏ ।

୪୦

ଉଦୁଉଦୁଆ ଦପହର । ଧାରା ଶ୍ରାବଣର ଚୁଇଁ ଚୁଇଁ ଆ ଖରା । ଆକାଶରେ ମେଘ । ମେଘ ଫାଙ୍କରେ ଖରା, ପୁଣି ଛାଇ, ପୁଣି ଖରା ! ଗୁଳୁଗୁଳିଆ ଗରମ ।

ଛବି ଚାହିଁ ବସିଥିଲା । ଗୋଟିଏ ଡାକରେ କବାଟ ଖୋଲିଲା । ଦନ କେଇଟାରେ ସେ ବଦଳି ଯାଇଛି । ଚମ୍ପା ଫୁଲ ପରି ରଙ୍ଗ ମଳିନ ହୋଇଛି, ମୁହଁ ଶେଥା ଦଶୁଛି, ଦୁର୍ବଳ !

ମୋ ମୁହଁକୁ ଚାହିଁ ତାର ବଡ଼ ବଡ଼ ଆଖିରେ ଲୁହ ଭରିଗଲା । ଦଉଡ଼ି ଆସି ମୋତେ କୁଣ୍ଢାଇ ଧରି ଛାତିରେ ମୁହଁ ଲୁଚାଇଲା । ଦୁଇ ହାତରେ ତାକୁ ଟେକି ଧରି କାନ୍ଧ ଉପରେ ତା ମୁଣ୍ଡ ରଖିଲି । ଅଜାଣତରେ ଆଖିରୁ ଝରି ପଡ଼ିଲା ଲୁହ । ତାକୁ ଘର ଭିତରକୁ ଟେକି ଆଣି ତଳେ ଠିଆ କରିଦେଲି । ଓଠରେ ହାତ ଦେଇ କଅଁଳେଇ କହିଲି, କ ସରି ହେଲୁଣି ଲୋ ଛବି ?

ମଉଳା ମୁହଁରେ ହସ ମୁକୁଳାଇ କହିଲା, ଆଉ, ତେମେ ଭାରି ଭଲ ଅଛ ?

ବଲିଆ ମନୁଆଁକୁ କାଖରୁ ଓହ୍ଲାଇ ଦେଲା । ଛବି ତାକୁ କୋଳକରି ଗାଲରେ ଚୋକ ଦେଇ କହିଲା, କରେ, ମତେ ଚହ୍ନି ପାରୁଛୁ ?

ଅଚକ୍ଷା ଲୋକର କୋଳରେ ଥାଇ ମନୁଆଁ ମୋ ଅଡ଼କୁ କଣ ପଗୃରଲାଭ ପର ଗୃହିଁଲା ।

ସମସ୍ତେ ଅର ଘରକୁ ଗଲୁଁ ।

ଖଣ୍ଡେ ସପ ପାରି ଦେଲା । ବସିଲି । ମନୁଆଁକୁ କୋଳରେ ଧରି ଛବି ପାଖରେ ବସିଲା ।

ବଲିଆ ପାଖକୁ ଆସି କହିଲା, ଅଲୋ ଛବି, ଡେରି ହେଲାଣି, କାନ୍ତରଚ଼ି ବାବୁ ମତେ ଖୋଜୁଥିବେ । ମୁଁ ଯାଉଛି ।

ଛବି ଉଠିଲା । କହିଲା, ଭାଇ, ତେମେ ଖାଇବ ନାହିଁ ? ରାନ୍ଧି ରଖିଛି ।

ବିରକ୍ତ ହୋଇ ବଲିଆ କହିଲା, କଥା ମାନୁନୁ, ଯେତେ ମନା କଲେ ନିଆଁ ପାଖରେ ବସି ରାନ୍ଧୁଛୁ । ଏଥର ଯଦି କଥା ନ ମାନୁ— ।

ଆଜି ତେମେ କଅଣ ଉପାସ ରହିବ ? ଆ ମନୁଆଁ,—

ମନୁଆଁକୁ କାଖ କରି ଛବି ରୋଷଘରକୁ ଗଲା । ବଲିଆ ଗଲା ତା ପଛରେ ।

ଧନ୍ୟ ଏ ଭାଇ ଭଉଣୀ ଦିଓଟି ! ପରସ୍ପର ସ୍ନେହ ପାଇଁ ଦିହେଁ ହୋଇଛନ୍ତି ପାଗଲ । ଦୁଃଖର ସଂସାରରେ ଶାନ୍ତି ରାଜତ୍ୱ କରୁଛି । ଭାଇ ପାଇଁ ଭଉଣୀ ନିଜକୁ ଭୁଲି ଯାଉଛି । ଆଉ ଭାଇ, ତାର ଭାବନା କେବଳ ଛବି, ଛବି ତାର ଆଖି, ତାର ଆନନ୍ଦ !

ବଲିଆ ବାହାରିଲା କାନ୍ତରଚ଼ି ବାବୁଙ୍କ ଘରକୁ ।

ଭାଇ, ଜଲ୍‌ଦି ଆସିବ ।

ମୁଁ କହିଲି, ହଁରେ ବଲିଆ, ତୁ ସହଳ ଆସିଲେ ମତେ ଛାଡ଼ିବାକୁ ମୋ ସାଙ୍ଗରେ ଯିବୁ । ପିଲାଟାକୁ ନେଇ ଏକୁଟିଆ ମୁଁ ଯାଇ ପାରିବ ନାହିଁ ।

ଛବି କହିଲା, ଡେରି କରି ଆସିବ ଭାଇ । ଏତେ ଦିନକେ ତୁଳସୀ ଅପା ଆସିଛନ୍ତି, ତେମେ ସହଳ ଆସିଲେ ସେ ଚାଲିଯିବାକୁ ଉଚ୍ଛନ୍ନ ହେବେ ।

ବଲିଆ କହିଲା, ମୁଁ ଏବେ କେଉଁ କଥାଟା କରିବ ? ମୋର ଏଇ ଠେଙ୍ଗାଟା ମତେ ଯାହା କହିବ ସେଇଆ ହେବ । ଛବିକୁ ତୋ ଜିମା ଛାଡ଼ି ଗଲି, ମୋ ଫେରିବା ଯାଏ ଅପେକ୍ଷା କରିବୁ ।

ସେ ଚାଲିଗଲା ।

ଛବିର ପାଟି ବନ୍ଦ ହେଲା ନାହିଁ । ଯେତେ ମନା କଲେ ସେ ତୁନି ହେଲା ନାହିଁ । ଦେହରେ ଜର, ତେଣିକି ନଜର ନ ଦେଇ ଖାଲି ଗପିବାରେ ଲାଗିଥାଏ, ତା ଭାଇର କଥା ।

ସଞ୍ଜ ହେଲା । ବଳିଆ ଫେରିଲା ନାହିଁ । ଫେରି ଯିବାକୁ ମନ ଛଟପଟ ହେଲାଣି । ଘରେ କେହି ନାହିଁ । କାଲେ ସ୍ବର ଆସିଯିବେ, ଅପେକ୍ଷା କରି ଫେରି ଯିବେ, ମୋ ଖବର ପାଇବେ ନାହିଁ ।

ପଗ୍ଗରିଲା, ସତେ ବଳିଆ ଡେରି କରିବ ଲୋ ଛବି ? ସଞ୍ଜ ହେଲା ।

ମନ୍ନୁଆଁ କୁ କୋଳରେ ପୂରାଇ, ଧୂଆବାଇଆ କରୁଥାଏ । କହିଲା, ତୋ ଘରେ ତ କେହି ନାହିଁ, ଦରକ କାହିଁକ ? ଆଜ ରାତିକ ମୋ ପାଖରେ ରହ ।

ପିଲା ଲୋକ । ଜାଣେ ନାହିଁ, ଘର ଗ୍ଭଡ଼ି ପର ଘରେ ରାତିଟିଏ କଟାଇଲେ, ଦୁନଆଁ ଲୋକେ କଅଣ କହିବେ । ଭଲମନ୍ଦ କେହି ଦେଖନ୍ତି ନାହିଁ କ ସତ ମିଛ କେହି ବୁଝିବାକୁ ଚେଷ୍ଟା କରିବେ ନାହିଁ । ପୁଣି ଦୁର୍ନାମ ଖେଳି ବୁଲିବ ଭୁଣ୍ଡରୁ ଭୁଣ୍ଡ ।

ନାଇଁଲୋ, ବଳିଆ ଯେତେ ରାତରେ ଆସିବ ମୁଁ ଗ୍ଭଲିଯିବି ।

ଗଲାବେଳେ ତ ଯିବୁ, ଅଗରୁ ବ୍ୟସ୍ତ କାହିଁକ ? ତୁ ମନ୍ନୁଆଁ ପାଖରେ ଥା । ମୁଁ ଭାତ ଗଣ୍ଡାଏ ବସାଇ ଦିଏ ।

ନାଇଁ, ତୋ ଦେହରୁ ତାତି ଖସିନାହିଁ । ତୁ ମନ୍ନୁଆଁ ପାଖରେ ଥା, ମୁଁ ସେତକ ତୋ ପାଇଁ କରିଦେବି ।

ଆପତ୍ତି କଲା, ଶୁଣିଲି ନାହିଁ । ଡିବିରି ଧରି ରୋଷଘରକୁ ଗଲି ।

ରୋଷେଇ ସରିଲା ।

ଝିପ୍ ଝିପ୍ ବର୍ଷା ଆରମ୍ଭ ହେଲା । ରୋଷଘରୁ ଆସି ଦେଖିଲି ମନ୍ନୁଆଁ କୁ ଶୋଇ ଶୋଇ ଛବି ମଧ୍ୟ ଶୋଇ ପଡ଼ିଛି । ନଲଟଣଟି ସାମାନ୍ୟ ତେଜି ଦେଲି । ଛବିକୁ ଉଠାଇବାକୁ ମନ ହେଲା ନାହିଁ । ବାରଣ୍ଡା ଧରି ବସିଲି । କେତେବେଳେ ବଳିଆ ଆସିବ ଭାବୁଥାଏ ।

ତା ଶୋଇଲା ମୁହଁକୁ ଗ୍ଭହିଁ ରହିଲି ! କେଡ଼େ ସୁନ୍ଦର ! ଆଉ, ସେଇ ସୁନ୍ଦର ମୁହଁ ତଳେ ଯେଉଁ ମନଟି ଲୁଚି ରହିଛି, ସେ ଆହୁରି ସରଳ, ଆହୁରି ସୁନ୍ଦର ! କପାଳରେ ହାତ ମାରିଲି । ତାତି ନାହିଁ ।

ବର୍ଷାର ବେଗ ବଢ଼ିଲା । ସଙ୍ଗେ ସଙ୍ଗେ ପବନ ବହିଲା । ମନ୍ନୁଆଁ ଘୁଞ୍ଚିଗଲା ଛବି କୋଳକୁ । କବାଟ ଆଉଜାଇଲି । ନଲଟଣ କମାଇ ମନ୍ନୁଆଁ ପାଖରେ ଶୋଇଲି । କେତେବେଳେ ନିଦ ହୋଇଗଲା ।

ନିଦ ଭାଙ୍ଗିଲା ଛବିର ଚିତ୍କାରରେ, ଭାଇ, ଭା—ଇ—

କେଡ଼େ ବିକଳ, କେଡ଼େ କରୁଣ ସେ ଚିତ୍କାର !

ଉଠିବସି ନଲଟଣ ତେଜିଲି । ଛବିକୁ ହଲାଇ ଦେଲି—ଛବି, ଛବି ।

ଉଁ— ।

ଉଠି ବସିଲା । ଦେହଟା ଥରଡ଼ାପଡ଼ି ପରି ଥରୁଥାଏ ।

ତୁଳସୀ ଅପା, ମୋ ଭାଇ କାହିଁ ?

ଅସ୍ଥିର ଆଖିରେ ଚାରିଆଡ଼କୁ ଚାହିଁଲା ।

ଆସି ନାହିଁ ଲୋ ।

ଧଡ଼ପଡ଼ ହୋଇ ଉଠି ଠିଆହେଲା । କବାଟ ଖୋଲି ଅଗଣା ପିଣ୍ଡାକୁ ଗଲା । କେତେ ରାତି କେଜାଣି । ଘୋର ଅନ୍ଧାର । କେଡ଼େ ବେଗରେ ପବନଟା ବୋହୁଛି । ବର୍ଷା ଚାଲିଛି ଅବିରାମ—ଝଡ଼ଝଞ୍ଜା, ଘଡ଼ଘଡ଼ି— ।

ଭାଇ ଆସିଲା ନାହିଁ ?

ଦେଖୁନୁ ବର୍ଷା ! ଆ ଭିତରକୁ ।

କବାଟ ବନ୍ଦ କଲି ।

କହିଲା, ଯେତେ ଯାହା ହେଲେ ମୋତେ ଏକୁଟିଆ ଛାଡ଼ି ଭାଇ କେବେ କେଉଁଠି ରହେ ନାହିଁ । ରାତି ଅଧ ହେଲେ ବି ଆସେ ।

ମୁଁ କହିଲି, ତୁତ ଏକୁଟିଆ ନାହିଁ ।

ମନୁଆଁକୁ ତାର ପିନ୍ଧିଲା ଲୁଗାର କାନ ଘୋଡ଼ାଇ କହିଲା, ଭାଇ ନାମରେ ଗୋଟାଏ ଖରାପ ସ୍ୱପ୍ନ ଦେଖିଲି, ତୁଳସୀ ଅପା ।

କଣ ?

କହିବାକୁ ଜିଭ ଓଲଟୁ ନାହିଁ ।

ଏଇଥିପାଇଁ ଏତେ କାନ୍ଦ ?

ତା ଆଖିରୁ ଲୁହ ପୋଛିଦେଲି । ବୁଝାଇ କହିଲି, ଆଲୋ ବାଇଆଣି, ସପନ କଥା କେବେ ସତ ହୁଏ ? ଯଦି କେବେ ସତ ହୁଏ, ଘରକୁ ଦେଖିଲେ ଆରକୁ ହୁଏ ।

ରାତି ପାହିଲା । ବର୍ଷା ଅଗ ପଛ ହେଉଥାଏ ।

ଛବିକୁ ଆଜି ଜର ନାହିଁ । କେଡ଼େ ଫୁର୍ତ୍ତି, କେଡ଼େ ଆନନ୍ଦ । କଣ୍ଢେଇଟି ପରି ମନୁଆଁକୁ ସଜାଉଛି । ତା ସଙ୍ଗେ ଖେଳୁଛି ।

ଦାଣ୍ଡ କବାଟ ଖୋଲି ବଳଆର ଅଗଣାରେ ଠିଆ ହୋଇଥାଏଁ । ଯେତେ ବର୍ଷା ହେଉ ପଛେ, ଆଜି ନିଶ୍ଚୟ ମୁଁ ଫେରିଯିବି । ଛବି ମନୁଆଁକୁ କାଖେଇ ମୋ ପାଖକୁ ଆସିଲା । କହିଲା, ଆ ତୁଳସୀ ଅପା ।

ନାଇଁଲୋ, ଯିବାକୁ ଡେରି ହେଉଛି ।

ମତେ ଏକୁଟିଆ ଛାଡ଼ି ଚାଲିଯିବୁ ?

ନାଇଁ, ସେଇଥିପାଇଁ ପରା ତୋ ଭାଇକୁ ଚାହିଁ ଠିଆ ହୋଇଛି । ତତେ ତା ଜିମା କରିଦେଇ ଯିବି ।

ଭାଇ ଆସୁଥିବ, ତୁ ଭିତରକୁ ଆ । ମୋ ହାତ ଧରି ଟାଣିଲା ! ତାର ପାଖରେ ବସିଲି ।

ଲାଜ ଲାଜ ହୋଇ ପଗ୍ଭରିଲା, ତତେ ଗୋଟାଏ କଥା କହିବାକୁ ମନ ହେଉଛି, କାଟଲ ତୁ ରାଗିବୁ ।

ରାଗିବି ନାହିଁ, କହ ।

ତୁ ମୋ ନୂଆଉ ହେବୁ ? କେଡ଼େ ଭଲ ହେବ । ମନୁଆଁ ସଙ୍ଗେ ମୁଁ ଦିନ ସାରା ବସି ଖେଳୁଥିବି । ତୁ ମୋ ପାଖରେ ଥିବୁ । ମୁଁ ତୋ ସେବା କରିବି ।

ହସ ମାଡ଼ିଲା । କହିଲି, ଯଦି ତା ହୁଏ ଛବି, ତୁ ବେଶି ଦିନ ମୋ ପାଖରେ ରହି ପାରିବୁ ନାହିଁ । ପର ଘରକୁ ଯିବୁ ତ ?

ମୁଁ ତୋ ପାଖରୁ କୁଆଡ଼େ ଯିବି ନାହିଁ । ତୁ ଯୋର୍ କରି ତଡ଼ିଦେବୁ ? ତୁଳସୀ ଅପା ଟିଲା, କହ, ତୁ ଆଉ ଘର ଛାଡ଼ି ମନୁଆଁକୁ ମୋ କୋଳରୁ କାଢ଼ି–ନେଇ ଗ୍ଭଲିଯିବୁ ନାହିଁ, ତୋ ଗୋଡ଼ ଧରୁଛି ।

କହି ପାରିଲି ନାହିଁ । ନିର୍ବୋଧ ଝିଅ, ଦୁନିଆଁର ଭଲମନ୍ଦ କଥା କିଛି ଜାଣେ ନାହିଁ ।

କହିଲା, ତୁ ଭାବୁଛୁ ମୋ ଭାଇ ତତେ ଭଲ ପାଏ ନାହିଁ ? ମୁଁ ମୋ ଭାଇର ମନ କଥା ଜାଣେ । ତତେ ସେ ଝୁରି ହୁଏ । ଯେଉଁ ଦିନ ତତେ ସେ ଘରୁ ବାହାର କରିଦେଲା, ସେଇଦିନୁ ମୁଁ ତା କଥା ବୁଝିଛି । ତୁଳସୀ ଅପା, ମନୁଆଁକୁ କାଖରେ ଧରି ଭାଇ ତତେ ଏ ଘରେ ଖୋଜୁଛି । ଯେତେ କହୁଥିଲେ କି ତାର ପାହାଡ଼ ମନ ତୋ ପାଖରେ ନଇଁ ଥାନ୍ତା !

ଆଶ୍ଚର୍ଯ୍ୟ ହୋଇ ଗ୍ଭହିଁଲି ତାକୁ ।

ତୁ ମୋ ଭାଇକୁ ଘୃଣା କରୁ ?

ଅପ୍ରିୟ ହେଲେ ମଧ୍ୟ ସତ କଥାଟା ଭୂଣ୍ଡରୁ ବାହାରିଗଲା, ତୋ ଭାଇ ତ ତୋ ପରି ନୁହେଁ !

ତା ଆଖିରେ ଲୁହ ଭରିଗଲା । ଗଦ୍ ଗଦ୍ କଣ୍ଠରେ କହିଲା, ତୁ ତାକୁ ଚିହ୍ନି ପାରିନୁ । ବାହାରଟା ତାର ଯେତିକି ଟାଣ, ଭିତରଟା ସେତିକି କୋମଳ । ତୁଳସି ଅପା, ତୁ ନାହିଁ କର ନା—

କିନ୍ତୁ—

ମୋ ହାତ ଧରି କହିଲା, ସୁର କଥା ଭାବୁଛୁ ? ଦୁନିଆରେ ଚହଳ ପଡ଼ିଛି ସେ ଖୁଣୀ, ଭାଇକୁ ମାରିଛି ! ମୋ ଭାଇ ତ ଖୁଣୀ ନୁହେଁ ?

ଛବିର ଆଖି ଉଜ୍ଜ୍ୱଳ ଦିଶିଲା ।

ମଣିଷର ବଡ଼େଇ ରହେ ନାହିଁ ।

ବର୍ଷା କମି ଯାଇଥିଲା ।

ଗୋଳମାଳ ଶୁଭିଲା ଘର ଆଗରେ । କିଏ ଜଣେ ଚିତ୍କାର କରି ଉଠିଲା, ଏଇ ତା ଘର ।

ଛବ ଅଧୀର ହୋଇ ଉଠଲା । ପଚ୍ଚାରଲା କଅଣ ଲୋ ତୁଳସି ଅପା ?

ବାହାରୁ ପାଟି ଶୁଭିଲା ।

ଦାଣ୍ଡଘର କବାଟରେ ବାଡ଼ର ଚିଅ, ପାଟି, ଗୋଳମାଳ ।

କବାଟ ଖୋଲ, କବାଟ ଖୋଲ— ।

ଛବ ବଚଳତ ହୋଇ ପଡ଼ଲା । ମୁଁ ବ ମନୁଆଁକୁ କୋଳକୁ ନେଲ ।

କଅଣ ତୁଳସି ଅପା ? ମୋତେ ସେ କୁଣ୍ଢାଇ ଧରଲା ।

ଧୈର୍ଯ୍ୟ ଧର କହଲ, ଭୟ ନାହିଁ । ବାରବାଟେ ପଦାକୁ ଆ ।

ଧୀରେ ଧୀରେ ବାର କବାଟ ଖୋଲ ଆମେ ପଦାକୁ ଚ୍ଚଲ ଆସିଲୁଁ । ଅନେକ ଲୋକ ରୁଣ୍ଡ ହୋଇଗଲେ । ଗ୍ରାମବାସୀଙ୍କୁ ଦେଖି ଆମ ମନରେ ସାହସ ହେଲା । ଯେଉଁମାନେ ଠେଙ୍ଗା ବାଡ଼ ଧର ଆସିଥିଲେ ସେମାନେ ଘରେ ପଶିଲେ ।

ମୁଁ ଭବ ନ ଥିଲ ଯେ ବଳଆ ଏପର ଗୋଟାଏ କାଣ୍ଡ କର ବସିବ । କାରଣ କଅଣ କେହ ଜାଣନ୍ତ ନାହିଁ । ଯିଏ ବା କହ ପାରନ୍ତେ, ସେହ କାନ୍ତବାଟି ବାବୁ ନହୁନହାଣ ହୋଇ ହତଜ୍ଞାନ ହୋଇ ପଡ଼ଥିଲେ । ଲୋକେ ତାଙ୍କୁ କଟକ ଡାକ୍ତରଖାନାକୁ ନେଇଗଲେ ।

ବଳଆର ଦେଖା ନାହିଁ । ସେ ଫେରାର୍ ହୋଇଛ । ଥାନାରେ ଖବର ଦେବାକୁ ଲୋକେ ଧାଇଁ ଯାଇଛନ୍ତ । ଚଉକଆ, ଦଫାଦାର ଓ କାନ୍ତବାଟି ବାବୁଙ୍କର କେତେଜଣ ଲୋକ ବଳଆକୁ ଖୋଜବାକୁ ତା ଘରକୁ ଆସିଥିଲେ । କାନ୍ତବାଟି ବାବୁଙ୍କ ଗୁମାସ୍ତାଙ୍କର ହୁକୁମ୍‌ରେ ଘରେ ତାଲା ପଡ଼ଲା । ଘରଟା କୁଆଡ଼େ ତାଙ୍କର, ବଳଆକୁ ରହବାକୁ ଛାଡ଼ ଦେଇଥିଲେ । ଛବର ସାମାନ୍ୟ କେଇଖଣ୍ଡି ଲୁଗା ପଟା ଛଡ଼ା ଘରୁ କୌଣସି ଜନଷ ନେବାକୁ ଅନୁମତ ଦେଲେ ନାହିଁ ।

ଚଉକଆ, ଦଫାଦାର ଓ କାନ୍ତବାଟି ବାବୁଙ୍କର ଲୋକମାନେ ଫେରଗଲେ । ଗାଁ ଲୋକେ ଜମା ହୋଇ ବାର କଥା କହୁଥାନ୍ତ—ବଳଆର ଗୁଣ ଅବଗୁଣ । ସେ ସବୁ କଥା ଶୁଣିବାକୁ କାହାର ବା ବେଲ ଅଛ । ଛବ ସତେ କ କାଠ ପାଲଟି ଯାଇଛ । ଆଖିରେ ଲୁହ ନାହିଁ, କ ତୁଣ୍ଡରେ କଥା ନାହିଁ ।

ବର୍ଷା ଛାଡ଼ ଯାଇଥାଏ ।

ଛବର ହାତ ଧର କହଲ, ଚ୍ଚଲ ଛବ ଯିବା ।

ଗାଁ ଲୋକେ ପଛରୁ ଚାହିଁ ରହଥାନ୍ତ । କାଠ ପିତୁଲା ପର ସେ ମୋ ପଛେ ପଛେ ଚ୍ଚଲଲା ।

ସାତଯୁଗ ପର ସାତୋଟି ଦନ କଟିଲା । ଭବଥିଲ, ଭାଇର ଦୁଃଖରେ ବୋଧହୁଏ ଛବକୁ ହରାଇବାକୁ ହେବ । ଜର, ସନପାତ, ବେଳେ ବେଳେ ମୋହ ହୋଇଯାଏ । ଟିକଏ ଚେତା ହେଲେ ଭାଇ ଭାଇ ବୋଲ ଡକା ଛାଡ଼େ । କାନ୍ଦ ଉଠେ ।

ଭାଗ୍ୟକୁ ସୁର ଆସି ପହଞ୍ଚିଥିଲେ । ମଲୁଅଁର ଦାୟିତ୍ୱ ତାଙ୍କ ଉପରେ ଲଦି ଛବିର ସେବାରେ ମନପ୍ରାଣ ଢାଳିଦେଲି । ଟିମାଇ କି ଅନ୍ୟ କାହାର ସାହାଯ୍ୟ ଖୋଜିବା ଦରକାର ପଡ଼ି ନାହିଁ ।

ଟିମାଇ ଆସିଥିଲେ । ସୁରଙ୍କୁ ଦେଖି, ତାଙ୍କରି ସାଙ୍ଗେ କଥା ଭାଷା ହୋଇ ଫେରିଲେ ।

ଚେମାଇ ଥରେ ଆସିଥିଲେ, ଦେଖା ହେଲା ନାହିଁ ଫେରିଗଲେ ।

ସୁର, ତାଙ୍କ ତୁଣ୍ଡରୁ କୌଣସି କଥା ନ ଶୁଣିଲେ ମଧ୍ୟ ମୋ ମନ ମୋତେ କହି ଦେଉଥାଏ ଯେ ସେ ମୋତେ ଘରଣୀ କରି ଘରକୁ ନେବାକୁ ପ୍ରସ୍ତୁତ ହୋଇ ଆସିଛନ୍ତି । ସେତିକି ମୋର ଗର୍ବ, ସେତିକି ମୋର ଆନନ୍ଦ । କାହିଁକି କାହା ପାଖରେ ମଥା ନୋଇଁବି ?

ଛବିର ଦେହ ଭଲ ହୋଇଗଲା, କିନ୍ତୁ ତା ମନରେ ସରାଗ ନାହିଁ । ବଳିଆର କଥା ପଡ଼ିଲେ ସେ କାନ୍ଦି ପକାଏ । ଚଉକିଆ କହୁଥିଲା, ବଳିଆ ନିଜେ ଥାନାରେ ଧରା ଦେଇ ସବୁ କଥା ଖୋଲି କହିଲା । ଦଣ୍ଡ ପାଇଲା ତିନିବର୍ଷ ଜେଲ । ହାକିମଙ୍କ ଆଗରେ ଦୋଷ ସ୍ୱୀକାର କରି ସେ କହିଲା, ଅନେକ ପାପ ତ କରିଗଲି କାନ୍ତିବାଟି, ଯେଉଁ ଭଉଣୀକୁ ବଞ୍ଚାଇବ ବୋଲି ବଳିଆ ଆଗତୁରା ଦରମା ମାଗିଲା, ସେଇ ରୋଗଣୀ ପିଲାଟାକୁ କାନ୍ତିବାଟି ଗୁହାଁଲା, କେଡ଼େ ସାହସରେ, ପୁଣି ଭାଇ ଆଗରେ । ଗୁହାଁଥିଲା ପୁଣି ମତେ, ଗୋଟାଏ ଅନାଥା ବିଧବା ।

ବଳିଆ ତାକୁ କଡ଼ା ଜବାବ ଦେଇଥିଲା । କାନ୍ତିବାଟି ବାବୁଙ୍କ ଲୋକେ ତାକୁ ଧରି ଗୋଟାଏ ଘରେ ବନ୍ଦ କରି ରଖିବାକୁ ଚେଷ୍ଟା କଲେ । କାନ୍ତିବାଟି ନିଜେ ସାହାଯ୍ୟ କଲେ । ସେମାନଙ୍କର ଉଦ୍ଦେଶ୍ୟ ଥିଲା ଛବିକୁ ବଳାତ୍କାର କରି ନେଇ ଯିବେ । ଭୀମ ବିକ୍ରମରେ ବଳିଆ ନିଜକୁ ମୁକ୍ତ କଲା । ପ୍ରତିଶୋଧ ନେଲା କାନ୍ତିବାଟି ଉପରେ । ଅନ୍ୟମାନେ ଗୁଡ଼ି ପଳାଇଲେ ।

ବଳିଆର ମାଡ଼ ଦେବା କାରଣ ହାକିମ ବିଶ୍ୱାସ କଲେ ନାହିଁ । ମାଡ଼-ମାରିବା ସଙ୍ଗେ ଟଙ୍କା ଚୋରି କରି ଧରା ପଡ଼ିବା କଥା ପ୍ରମାଣ ହେଲା ।

ଛବି କହିଲା, ଜେଲ୍‌ରୁ ଫେରି ଭାଇ ମୁଣ୍ଡ ଟେକି ବାଟ ଚାଲି ପାରିବ ନାହିଁ । ଲୋକେ ତାକୁ କହିବେ ଚୋର, ଖୁଣୀ । ଲୋକେ ତାକୁ ଘୃଣା କରିବେ ।

ତୁଳସୀ କହିଲା, ଛବି ଲୋ, ଯିଏ କାନ୍ତିବାଟି ବାବୁଙ୍କୁ ଚିହ୍ନେ, ତାଙ୍କ ପାଇଁ ଯାହାର ସର୍ବନାଶ ହୋଇଛି, ସିଏ ବଳିଆକୁ ପ୍ରଶଂସା କରିବ । ଆଦର କରି ତା ବେକରେ ଫୁଲମାଳ ଦେବ । ସଂସାରର ଲୋକଙ୍କୁ ଡରି ଯାହାର ତୁଣ୍ଡ ନ ଖୋଲିବ, ତା ମନ କହିବ, ବଳିଆ ଠିକ୍ କରିଛି । ତିନୋଟି ବର୍ଷ ତ ଛପିଯିବ ତିନୋଟି ମୁହୂର୍ତ୍ତି ପରି । ଲୋକଙ୍କର ନିନ୍ଦା କି ପ୍ରଶଂସାର ମୂଲ୍ୟ କିଛି ନାହିଁ । ଲୋକେ କହିବେ ଖୁଣୀ, ବଳିଆ କାନ୍ତିବାଟି ବାବୁର ଗୋଡ଼ ଭାଙ୍ଗିଛି, ଆଖି

ଫୁଟୁଛି । ଲୋକେ ତ ଜାଣନ୍ତି ନାହିଁ, କାନ୍ଦଣାଟି କେଡ଼େ ବଡ଼ ଖୁସି । ପାଖରେ ଟଙ୍କା ଗଦା କରୁଛି । ଟଙ୍କା ନୁହେଁ ଲୋ, ଗରିବ ମୂଲିଆର ଲୁହ, ଲହୁ । ସେଇ ଟଙ୍କାର ଛଟକ ଦେଖାଇ କେତେ ଅରକ୍ଷ ଭୋଳିଆ ଅନାଥଙ୍କର ମନ ଭାଙ୍ଗିଛି, କେତେ ନିଶ୍ଵାସ । ସରଳା ଝିଏ ଅଭାବର ଦୁର୍ଯୋଗରେ ପଡ଼ି ତାର ନିକଟରେ ନିଜକୁ ବଳି ଦେଇଛନ୍ତି । ଯେଉଁ ରକ୍ତ ସେ ପିଇଛି, ସେ ରକ୍ତ ଆଖିକି ଦିଶେ ନାହିଁ, ମନକୁ ଦିଶେ । ମଣିଷର ଦେହ ବୁଝେ ନାହିଁ, ମନ ବୁଝେ । ବଳିଆ ଠିକ୍ କରୁଛି ।

ଛବିର ଆଖି ଉଜ୍ଜ୍ୱଳ ଦିଶିଲା । ଏତେ ଦିନ ପରେ ଶୁଖିଲା ଓଠରେ ବିକଶିଲା ହସ । କହିଲା, ହଁ ଲୋ, ଭାଇ ଠିକ୍ କରୁଛି । କିନ୍ତୁ ତୋ ମୁଣ୍ଡରେ ମୋ ଦାୟିତ୍ୱ ଥୋଇ ଦେଇଗଲା, ଛଅଟି ବର୍ଷ । ତୋର ସେବା କରି ମନୁଆଁ ସଙ୍ଗେ ଖେଳି ଛଅଟି ବର୍ଷ ମୋର କଟିଯିବ ଛନ ଘଡ଼ି ଅନ୍ଧାର ରାତି ପରି । ମୋ ଭାଇ ଫେରିବ । ପୁଣି ଜହ୍ନ ଉଇଁବ ।

ତାର ମୁଣ୍ଡ ଆଉଁସି କହିଲା, ମୋଟେ ଛଅଟି ବର୍ଷ ! ତା ପରେ ?

ତା ପରେ ? କେଡ଼େ ଆଗ୍ରହରେ ଚାହିଁ ରହିଲା ମୋ ମୁହଁକୁ ।

ପଚାରିଲି, ଏତେଦିନ ତୁ ମୋ ସେବା କରି ପାରିବୁ ଛବି, ମନୁଆଁ ସଙ୍ଗେ ଖେଳିବୁ, ମୋର ଅବାଧ ହେବୁ ନାହିଁ ତ ?

କଅଣ ସେ ଭାବିଲା, କଅଣ ବୁଝିଲା କେଜାଣି, ମୋ ବେକକୁ କୁଣ୍ଢାଇ ଧରି କହିଲା, ପାରିବି, ତୋର ଅବାଧ ହେବି ନାହିଁ ।

ତା ପିଠିରେ ହାତ ବୁଲାଇଲି ।

ଗାଁ ମାଇପେ କିଏ କେମିତି ଆସିଲେ । ଛବିକୁ ଦେଖିଲେ । ନୂଆ କଥା । ତୁଳସୀ ଘରେ କୁଣିଆଁ, ଖୁସିର ଉଚ୍ଛୁଣି ! ଛବିକୁ ଦେଖି ଯେଉଁମାନଙ୍କର ଆଖି ଅସହ ହେଲା, ପଦେ ଅଧେ କହିଗଲେ, ଆଇଁଲାଣି ଲୋ ଆଉ ଜଣେ ସାଙ୍ଗକୁ, ଏଥର ତାର ଭଲ ଚଳିବ । ଚିକ୍କଣ ମୁଣ୍ଡାରେ ଗୋଡ଼ ଦେବ କାହିଁକି ? ଗାଁ ଟୋକାଙ୍କୁ ଆଉ ନିଦ ହେବ ନାହିଁ ଲୋ ଏଥର ।

ନୀଳବାବୁଙ୍କ ସ୍ତ୍ରୀ ପଚାରିଲେ ସାଙ୍ଗ ଲୋକଙ୍କୁ, ମତେ ଶୁଣେଇ ଶୁଣେଇ, ପରର ବୋଝ କିଏ ମୁଣ୍ଡକୁ ନିଏ ? କଅଣ ସମ୍ପର୍କ ଥିବମ । ଉତ୍ତର ପାଇଲେ, ସମ୍ପର୍କ ନ ଥିଲେ ଦିନ ଦିପହରେ ପର ଲୋକଟା ସଙ୍ଗରେ ଯାଇ ରାତିରେ ତା ଘରେ ରହିଲା ? ତୁଳସୀ ସେମିତି କେତେ ଘରେ ରାତିକୁଣିଆଁ ହୁଏ ।

ଭୀମ ବାବୁଙ୍କ ସ୍ତ୍ରୀ କହିଲେ, ଭଲ ପିଲାଟିଏ ମ ଛବିଟି ! ଯେଉଁ ପେଟରୁ ଖୁସି ବାହାରିଲା, ସେଇ ପେଟରୁ ଏ ଲକ୍ଷ୍ମୀ ! ତୁଳସି ଲୋ, ଆମ ରାମକୁ ବାହା କଲେ କେମିତି ହୁଅନ୍ତା ?

ରାମ ତାଙ୍କ ଦିଅର ।

କହିଲି, ଛବିର ନାଁ ବଦଳି ଯାଆନ୍ତା । ସେ ହୁଅନ୍ତା ସୀତା !

ସତେ ମ, ଭାଉ ଭଲ ହୁଅନ୍ତା ।

ଭୀମ ଭାଇଙ୍କ ଅଗ ପଗୁର ।

ଝିମାଇଙ୍କ ସ୍ତ୍ରୀ ଅସିଥିଲେ । ଘଡ଼ିଏ କାଳ ଛବିକ ଗୃହଁ ମତେ ପିଣ୍ତୀକୁ ଡାକ କହିଲେ, କଲୋ କ୍ରିଷ୍ଟମ୍ସ କଅଣ ବଢ଼ିଲେ ? ତୋ ଦାଦରୁ ଅସିଛି ପତ୍ର, କଅଣ ହେଲା ?

ସବୁ ଠିକ୍ ହୋଇଗଲା ନୂଆଉ ।

କେବେ ପୁଣି ଯାଉଛୁ ?

କାଲି ଅଡ଼ିକୁ ।

ଖୁସି ହୋଇ କହିଲେ, ପଥ ସୁମରୁ ଶାଶୁଘରୁ ଯିବୁ ।

ହଁ, ନୂଆଉ, ତେମେ ଏଥର ନିଶ୍ଚିନ୍ତ ରହ ।

ଆଉ ଏ ମୂର୍ତ୍ତିଟି ?

କହିବ ଯଦି ଚମରୁ ପାଖରେ ଗ୍ଡ଼ିଯିବ ।

ମୋତେ ଗୃପଡ଼ା ମାରି କହିଲେ, ଲୋଡ଼ା ନାହିଁ ଲୋ ମୋର, ତୁଇ ଦିଅଁ ଲାଗି ଅଣ୍ଟିରେ ଦିଅଁ ପୂରେଇ ଚଳ । ଯେତେବେଳେ ଦିଅଁ ଜଳିବ, ଗ୍ଡ଼ି ପୋଡ଼ିବ, ମୋ କଥା ମନେ କରୁଥିବୁ ।

ଛବି ଅଛି ଭଲ ପିଲା ନୂଆଉ ।

ଆଉ ତୁଳସୀ କଅଣ ଖରାପ କି ? ଦାଣ୍ତ ଲୋକେ ବାର କଥା କହିବେ । ତତେ ମୁଁ ଶବ୍ଦେ । ଆଖିରେ ଦେଖିଲେ ଅଖିକ ଦୋଷ ଦେବ । ତୁଳସୀ ଯେ ପିଠା ସୁନା ତଥାପି ମୋ ଗ୍ଡ଼ିରେ ଦିଅଁ ଜଳେ । ଠାକୁରେ ତୋ ଚମରେ ଯେଉଁ ଚହଟ ଜାଳିଛନ୍ତି, ପତଙ୍ଗ ପରି ମିଶିପଗୁଡ଼ା ଧାଆନ୍ତି ସେଠିକି । ଛବିର ରୂପ ଅଛି । ଦାଦରକୁ, ଭାଇଙ୍କୁ, ବର ପତ୍ର, ତାକୁ କାଳରେ ବାନ୍ଧି ରଖିଥିବୁ ଲୋ । ନୋହିଲେ କାଲି କାଲି ଦିନ ସରିବ ନାହିଁ ।

ଉତ୍ତର ଦେଲି ନାହିଁ । ହସିଲି ।

୪୧

କାଳର କୋହ ଉଠିଲା ଜଣକ ପାଇଁ । ତାର ଉଦାର ମନ ଅଗରେ କୌଣସି ଅଘାତ ରହି ପାରିବ ନାହିଁ । ମୁଁ ଏହା ଜାଣେ, ତଥାପି ମନ ଅସ୍ଥିର ହେଲା । ଭାବିଲି, ନିଜେ ଯାଇ ମନ କଥା କହି ଅସିବି ତେମାଇ ଅଗରେ । ମୋ ଦୁଃଖ ସେ ବୁଝିବ । ଏତିକି ମୋର ଭରସା ।

ସଞ୍ଜ ଗଡ଼ିଗଲାଣି । ମେଘ ଅନ୍ଧାର ଘୋଟିଛି । ମନୁଆଁକୁ ସୁରଙ୍କୁ ଦେଇ ଛବିକୁ ଡାକ କହିଲି, ଖେଷେଇ ସରିଗଲେ ସୁରଙ୍କୁ ଖାଇବାକୁ ଦେବୁ । ଅସୁ ଅସୁ ମୋର ଟିକିଏ ଡେରି ହୋଇପାରେ ।

ଗଲି ଛପି ଛପି । ଦୁନିଆଁ ଲୋକଙ୍କୁ କାହିଁକି ଅଳ୍ପ ମୋର ଏତେ ଡର, ମୁଁ ବୁଝି ପାରିଲି ନାହିଁ । ଚେମାଇର କବାଟ ପାଖରେ ଠିଆ ହୋଇ ରହିଲି । ଡାକିବାକୁ ତୁଣ୍ଡ ଖୋଲୁ ନ ଥାଏ । କବାଟରେ ହାତ ମାରିବାକୁ ହାତ ଚଳୁ ନ ଥାଏ । କଅଣ କହିବି ନା ଫେରି ଯିବି ? ତାର ସଂସାର, ତାର ଭାଗ୍ୟ ନେଇ ସେ ରହିଛି । କାହିଁକି ତା ଜୀବନର ଶାନ୍ତିକୁ ହଲଚଲ କରିବି ?

ଫେରିଯାଇ ପାରିଲି ନାହିଁ । ଜେମୀ ଅଈର ଅତ୍ମା ଇସାରା ଦେଉଛି, ଡେରି କାହିଁକି ?

କବାଟ ଫାଙ୍କରେ ଆଲୁଅ ଦିଶିଲା । ଥରିଲା ଗଳାରେ ଥରଟିଏ ଡାକିଲି, ଚେମାଇ !

କେଡ଼େ ଧୀର ସେ ଡାକ !

ଉତ୍ତର ଆସିଲା, କିଏ ?

କବାଟ ଖୋଲିଲା ।

ଅରେ, ତୁଳସୀ ଯେ । ମନେ ହେଲା ଯେପରି କିଏ ମୋ ଭିତରୁ ଡାକୁଛି । ଆ ଭିତରକୁ ।

ଗଲି । ନିଜ ହାତରେ କବାଟ ବନ୍ଦ କଲି ।

ଚେମାଇ କହିଲା, ଆ ଏଇ ସେପେଇ ଘରକୁ । ଡାଲିହାଣ୍ଡି ଚୁଲିରେ ବସାଇ ଦେଇଛି, ପୋଡ଼ିଯିବ ।

ନିଜ ହାତରେ ରାନ୍ଧୁଛୁ ?

ଆଲୋ, ଏଇ ହାତରେ ତୁଳସୀର ହାତ ଶହେ ଥର ବନ୍ଧା ହୋଇଛି । ଏଇ ହାତରେ ଜେମୀ ଅଈକୁ ମଶାଣିକୁ ନେଇ ଜଳାଇ ଦେଇଛି । କିଏ ରାନ୍ଧିଛି କହ ତ ?

ତା ହାତରୁ ଚଟୁ ଛଡ଼ାଇ ମୁଁ ସେପାଇ କଲି ।

ଚେମାଇ ଗାଈ ମୋହିଁବାକୁ ପଦାକୁ ଗଲା ।

ମୋର ସେପାଇ ସରିଲା । ତାକୁ ଖାଇବାକୁ ଦେଲି । ଏଣୁ ତେଣୁ କେତେ କଥା ପଡ଼ିଲା । ଯାହା କହିବାକୁ ଏତେ ରାତିରେ ଏକୁଟିଆ ମୁଁ ତା ଘରକୁ ଧାଇଁ ଆସିଥିଲି, କହିବାକୁ ସାହସ ହେଲା ନାହିଁ । ତା ମୁହଁକୁ ଗୁହିଁଲା ବେଳକୁ କେତେ କଥା ମନେ ପଡ଼ି ଯାଉଥାଏ । ତାର ଦୁଃଖ କଷ୍ଟ ଦେଖି ମନ ନରମି ଆସୁଥାଏ । କେମିତି ତୁଣ୍ଡ ଖୋଲି ଏତେ ବଡ଼ କଥା କହିବି ?

ଖାଇ ସାରିଲା ।

ପିଣ୍ଡାରେ ତା ପାଖରେ ବସିଲି ।

କଅଣ ଭାବି ସେ କହିଲା, ତୁଳସୀ, ଲାଜ ଭୟ ଛାଡ଼ି ରାତିରେ ତୁ ମୋ ପାଖକୁ ଧାଇଁ ଆସିଛୁ ଯେଉଁଥିପାଇଁ ସେ କଥା ମୁଁ ଜାଣେ । ସେଥିକି ମୁଁ ଆଗରୁ ପ୍ରସ୍ତୁତ ଅଛି ।

ତେବେ ଜାଣ ?

ତୋ ମୁହଁରୁ ସେ କଥା ଫୁଟି ଉଠୁଛି ।

ତାଙ୍କର କଥାରେ ବ୍ୟଥାର ସ୍ପର୍ଶ । ଗ୍ରନ୍ଥ ଭିତରୁ ଉଠିଲା କାନ୍ଦର କୋହ ।

ଥରିଲା ସ୍ୱରରେ କହିଲି, ମତେ କ୍ଷମା କର, ତମ ମନରେ ଆଘାତ ଦେବାକୁ ମୁଁ ଆସିଛି ।

କଣ୍ଠ ରୁଦ୍ଧ ହୋଇ ଆସିଲା । ଦୁଇ ହାତରେ ମୁହଁ ଘୋଡ଼ାଇ କାନ୍ଦିଲି ।

ମୋର ହାତ ଧରି ସେ କହିଲେ, ମୋ ମନରେ କେହି କେବେ ଆଘାତ ଦେଇପାରେ କଲେ ?

ନିଜ ହାତରେ ମୋ ଆଖିରୁ ଲୁହ ପୋଛି କଅଁଳେଇ କହିଲେ, ତୋର ଏଇ ଲୁହ ଦଧାର ମୋର ବାକି ଜୀବନର ସମ୍ବଳ, ଆନନ୍ଦ, ଗର୍ବ ଆଉ ସମ୍ମାନ । ଆଜି ମୁଁ ଅନୁଭବ କରୁଛି ଯେ, ମୋ କଥା ଭାବି ଆଖିରୁ ଲୁହ ଢାଳିବାକୁ ସଂସାରରେ ଜଣେ ହେଲେ ଲୋକ ଅଛି । ସେ ହେଉଛି ମୋର ତୁଳସୀ, ଯାହାକୁ ମୁଁ ମୋରି ଭିତରେ ଅନୁଭବ କରେ । ବାସ୍ ସେତିକି । ତୋର ଏଇ ଆଖି ଲୁହର ସ୍ମୃତି, ଆଉ ଆଜି ଏଇ ନିର୍ଗଳା ସନ୍ଧ୍ୟାର ଦୃଶ୍ୟ, ଚିରଦିନ ମୋ ମନରେ ଜାଗି ରହିଥିବ ।

ବୁଝିଲି, ଚେମାଇ ମନରେ ଆଘାତ ଲାଗିଛି ।

ତା ମୁହଁକୁ କ୍ଷଣକାଳ ଚାହିଁ ରହିଲି । ସେହି ଗମ୍ଭୀର ମୁହଁକୁ ହତାଶା ଘୋଡ଼ାଇ ରଖିଛି । ମଳିନ ଆଖି ଦୁଇଟା ମୋତେ ଯେପରି ତିରସ୍କାର କରୁଛି ।

ସେ ଧୀରେ ଧୀରେ କହିଲା, ଭାବୁଛୁ କଣ ତୁଳସି, ସୁରର ହାତ ଧରି ନୂଆ ସଂସାର କଲେ ଚେମାଇ ମନ ଭିତରୁ ତୁ ଖସି ପଳାଇବୁ ? ମୋର ସପନର ଖେଳରେ ବାଧା ଦେଇ ପାରିବୁ ? ପାରିବୁ ନାହିଁ ଲୋ । ଚେମାର ଏଇ ଗ୍ରନ୍ଥ ଭିତରେ ଚିରଦିନ ତୁଳସୀ ଛପି ରହିଛି, ରହିବ ଶେଷ ଯାଏ । ସୁର ତୋ ଦେହଟା ନେଇ ସଂସାର କରୁ, ଆଉ ଚେମା, ସେ ତାର ସପନର ସଂସାର ଗଢୁ ତୁଳସୀର ସ୍ମୃତିଟି ନେଇ ।

ଚେମାଇ ଉଠି ଠିଆ ହେଲେ । କହିଲେ, ରାତି ବେଶି ହେଉଛି, ଚାଲ, ବଳେଇଦେଇ ଆସେ ।

ତାଙ୍କର ପଛେ ପଛେ ଚାଲିଲି । କେତେ କଥା କହିବାକୁ ମନ ହେଉଥିଲା, ପାଟି ଖୋଲିଲା ନାହିଁ ।

ଅଧବାଟରୁ ସେ ଫେରିଗଲେ ।

ସୁର ପିଣ୍ଡା ଉପରେ ବସିଥିଲେ । ମୋତେ ଦେଖି ପଚାରିଲେ, ଏତେ ଡେରି କଲ ?

ତାଙ୍କ ପ୍ରଶ୍ନର ଉତ୍ତର ନ ଦେଇ ମୁଁ ଓଲଟି ପଚାରିଲି, ତେମେ ସବୁ ଖାଇଲଣିଟି ?

ତୁମକୁ ଅପେକ୍ଷା କରିଥିଲି ।

ଘର ଭିତରକୁ ପଶିଗଲି । କାନ୍ଥ କଡ଼ରେ ସପ ପାରି ଛବି ମଲୁଆଁକୁ କୋଳରେ ପୂରାଇ ଶୋଇଛି, ପଣତ ଘୋଡ଼ାଇ ଦେଇଛି । ଡାକିଲି, ଛବି, ଛବି—

ଜବାବ ଦେଲାନାହିଁ । ନିଦ ହୋଇ ଯାଇଛି । ପଦାକୁ ଆସିଲି । କହିଲି, ସ୍ବର, ତେମେ ଖାଇବସ, ଆମେ ଦହେଁ ପଛଟରେ ଖାଇବୁଁ ।

ସ୍ବରଙ୍କୁ ଖାଇବାକୁ ଦେଲି । ସେ ଖାଇସାରି ପଦାକୁ ଅସିଲେ । ମୁଁ ତାଙ୍କର ପଛରେ ଆସିଲି ।

ଦୂର ଗହ୍ବର ଆରପାଖେ ଗଛ ଗହଳି ଭିତରୁ ଖଣ୍ଡିଆ ଜହ୍ନ ଉଠି ଆସୁଥାଏ । ଖଣ୍ଡି ଖଣ୍ଡିଆ କଳା ବଉଦ ଫାଙ୍କରେ ଝରି ଆସୁଥାଏ ଜୋଛନା । ଅନ୍ଧାର ଲୁଚି ଗଲାଣି ।

କହିଲି, ଘଡି ନ ପାହୁଣୁ ଆମକୁ ଏ ଘର ଛାଡ଼ି ଚାଲିଯିବାକୁ ହେବ ସ୍ବର, ପରଘରେ ଆଉ ଷଣେ ରହିବାକୁ ମନ ହେଉନାହିଁ । ତେମେ ତ ଜାଣ, ଟିମବାବୁ କେବଠୁଁ ଏ ଘର ନିଲାମ କରି ନେଇଛନ୍ତି । ଦୟା ପାଇ ମୋତେ କିଛିଦିନ ରହିବାକୁ ଅନୁମତି ଦେଇଥିଲେ । ତେମେ ଆସିଲଣି । ଆମେ ଆମ ଘରକୁ ଚାଲିଯିବା ।

କହିଲେ, ବେଶି ବାଟ ତ ନୁହେଁ । ଜିନିଷପତ୍ର ?

ଏ ଘର ଓ ଏ ଘରେ ଯେଉଁ ଜିନିଷପତ୍ର ଅଛି, ସବୁ ଟିମ ଭାଇଙ୍କର । ସବୁ ସେମିତି ପଡ଼ିଥାଉ । ବାସନ କୁସନ ତ କିଛି ନାହିଁ । ପିନ୍ଧିଲା ଲୁଗା ନେଇ ଦେହେ ଦେହେ ଚାଲିଯିବା ।

ଅଗ୍ରହରେ କହିଲେ, ହଉ, ଟିକିଏ ସହଳ ଗଲେ ଘଡି ନ ପାହୁଣୁ ଆମ ଗାଁରେ ଆମ ଘରେ ପହଞ୍ଚିଯିବା ।

ତାଙ୍କ ପାଖରେ ବସିଲି ।

ପଚାରିଲି, ତୁମେ ମୋ କଥା ଭାବିଲ ?

ହଁ, ତେମେ ହିଁ ଜିତିଲ । ବୁଝିଲି ଶେଷକୁ, ଦୁନିଆଁରେ ବଞ୍ଚି ରହିବାକୁ ହେଲେ ଅନେକ କଥା ଭୁଲିଯିବାକୁ ହୁଏ, ଅନେକ କଥା ସହିବାକୁ ହୁଏ । ଆମ କୁଳରେ ଯାହା ଚଳେ, ସେହି ପ୍ରଥାର ସୁଯୋଗ ନେଇ ନୂଆ ଘର ଆମେ ଗଢ଼ିବା ।

ଲୋକେ ପୁଣି ରଟାଇବେ ଦୁର୍ନାମ ?

କହିଲେ, ଦୁର୍ନାମ ରଟେ । ସଜ ମାଛରେ ଲୋକେ ପୋକ ପକାନ୍ତି । ସୁନେଇଁ ଗଛରେ ଦେଖନ୍ତି ଭୂତ । ଲୋକଙ୍କର କଥା ଆମ ଜୀବନର ସୁଖ ଓ ଆନନ୍ଦ ଉପରେ ଛାଇ ପକାଇ ପାରିବ ନାହିଁ ।

ରାତି ନ ପାହୁଣୁ ଯିବାର କଥା । ସୁର ଓ ମୁଁ ସଜଡ଼ା ସଜଡ଼ି କରିବାରେ ବ୍ୟସ୍ତ । ଛବି ସାହାଯ୍ୟ କରୁଥାଏ ।

ସୁର କହିଲେ, ଏ ସବୁ ତ ସଙ୍ଗରେ ନେଇ ହେବ ନାହିଁ । ବରଂ ଦିନେ ଦୁଇଦିନ ଛାଡ଼ି ମୁଁ ଲୋକ ଆଣି ନେଇଯିବି ।

ସମ୍ମତି ଜଣାଇଲି ।

ସୁର ପଦାକୁ ଗଲେ ।

ଛବି ପଚାରିଲା, କୁଆଡ଼େ ଯିବା କି ତୁଳସୀ ଅପା ?

ଓଲମିଠା, ଏ ଘର ଯେ ଆମର ନୁହେଁ । ସୁର ସଙ୍ଗରେ ନିଜ ଘରକୁ ଯିବା ।

ମୁଁ ?

ତାର ନାଲି ଓଠରେ ଅଙ୍ଗୁଠି ମାରି କହିଲି, ତୁ ତୋ ତୁଳସୀ ଅପା ସଙ୍ଗେ ଯିବୁ, ମନୁଆଁ ସଙ୍ଗେ ଖେଳିବୁ, ଆମ ପୋଖରୀ ଉପର ଶ୍ରେଷ୍ଠ ବଗିଚାରେ ପ୍ରଜାପତି ଧରିବୁ ।

ତାର ସୁନ୍ଦର ମୁହଁ ମଉଳି ଆସିଲା । ଓଠ ଉପରକୁ ଆଣିଲା ଯେଉଁ ହସ, ମୋ ମନେ ହେଲା, ତହିଁରେ ଆଗ୍ରହ ନାହିଁ କି ସରସତା ନାହିଁ ।

୪୨

ରାତି ପାହି ଆସୁଥାଏ । ତେଜସ୍ୱାନ ଜହ୍ନ ମୁଣ୍ଡ ଉପରକୁ ଆସିଲାଣି । ମେଘ ନ ଥିଲା ଆକାଶରେ ଉଜ୍ଜ୍ୱଳ ତାରା ଗୁଡ଼ିକ ନିଷ୍ପ୍ରଭ ହୋଇ ନଇବାକୁ ବସିଲେଣି । ଥଣ୍ଡା ପବନ ଶିର ଶିର ବହୁଛି ।

ଗୁଲିଥାଉଁ ।

ଛବି ପଚାରିଲା, ଆଉ କେତେ ବାଟ ଅଛି ତୁଳସୀ ଅପା ?

ତୋ ଗୋଡ଼ ଥକିଗଲା କି ଛବି ?

ନାଇଁ, ମନୁଆଁକୁ ମତେ ଦେ ।

ମନୁଆଁର ନିଦ ଭାଙ୍ଗିଲାଣି । ଛବି ତାକୁ କାଖକୁ ନେଲା ।

ଗୁଲିଥାଉଁ—। ଶଗଡ଼ ଗୁଳା ଦୁଇ ପାଖେ ଧାନ କ୍ଷେତ ।

ସୁର ହାତ ଦେଖାଇ କହୁଲେ, ଏଇ ଯେଉଁ ଗାଁଟା ଅଗରେ ଦଣ୍ଡୁଛି, ସେଇ ।

ବେଶି ଦୂର ନାହିଁ । ପାଖେଇ ଅସିଲା । କେଜାଣି କାହିଁକି ମୋର ପେଟ ଭିତର ଘାଣ୍ଟି ହୋଇଗଲା । ଯେଉଁଦିନ ପ୍ରଥମେ ଏଇ ବାଟେ ଏଇ ଗାଁରେ ଗୋଡ଼ ଦେଇଥିଲି, ଆନନ୍ଦରେ ଗର୍ବରେ ମୋର ଛାତି ଫୁଲି ଉଠିଥିଲା ।

ରାମ ଲକ୍ଷ୍ମଣ ପରି ଦୁଇ ଭାଇ । ଆଗରେ ଠିଆ ହେଲେ ପେଟ ପୂରି-ଉଠେ । ସ୍ୱାମୀ, ଯାହାଙ୍କୁ ନେଇ ମୋର ସତେଇଶି ବର୍ଷ ସଂସାର, ମଣିଷ ଦେହରେ ତାଙ୍କର ଦେବତାର ମନ । ତାଙ୍କୁ ଦେଖିଲେ ନିଜକୁ ମୁଁ ଭୁଲିଯାଏ ।

ଆଜି ନୂଆ ଘର କରିବାକୁ ଯାଉଛି, ମୋର ଆନନ୍ଦ ପାଇଁ, ଏଇ ରକ୍ତ ମାଂସ ଗଢ଼ା ଦେହଟାର ସୁଖ ପାଇଁ !

ମନ ଉଦାସି ହେଲା ।

ଦୂର ଗାଁ ପାଖେଇ ଅସିଲା । ଅନ୍ଧାରିଆ ଆମ୍ବତୋଟା ପରିଷ୍କାର ଦେଖା ଗଲାଣି । ତୋଟା ସେପାଖେ ଗୋଚର, ଦାଣ୍ଡ । ବାଟ କଡ଼ରେ ମଶାଣି, ଭୁଦଭୁଦକା ବଣ । ସେଇଠୁ ଶ୍ରେଷ୍ଠ ଗମ୍ଭାର । ଆଉ ପାଖେ ଗାଁ, ଆମରି ଘର ।

ଗୋଡ଼ ଉଠୁ ନ ଥାଏ । କାଲି ଯେଉଁମାନେ ବୋହୂ ଦେଖିବାକୁ ଆସିଥିଲେ, କହୁଥିଲେ, ପାର୍ବତୀ ପରି ଝିଅଟି, ଲକ୍ଷ୍ମୀ ପରି ଗୁଣ, ପ୍ରଶଂସା ଶୁଣି ଖୁସି ଲାଗୁଥାଏ ।

ଆଜି ସେଇମାନେ ଦେଖିବାକୁ ଆସିବେ କୌତୂହଳ ମେଣ୍ଟାଇବାକୁ । ପୁରୁଣା ମଣିଷକୁ ନୂଆ କରି ଦେଖି କହୁଥିବେ, ପାର୍ବତୀ ନୁହେଁ ଲୋ ଚଣ୍ଡୀ, ଲକ୍ଷ୍ମୀ ନୁହେଁ ତାଙ୍କର ଭଉଣୀ । ଆଈ ବୁଢ଼ୀ ଭୁନ ଭୁନ କହୁଥିବ କାନରେ, ଜାଣିଲୁ ଲୋ ଟୋକି, ଦିଅରକୁ ଗେରସ୍ତ କଲା । ଛୁଆକୁ ଦେଖି କହୁବ, ଏଇଟି କିଏ, ପଢୁଆରୀ ?

କେମିତି ସହୁବ ଲୋକଙ୍କର କଥା ।

ଆଗରେ ତୋଟା । ଭିତରଟା ଅନ୍ଧାରିଆ । ମନେ ହେଲା, ସତେ ଯେପରି ସେଇ ଅନ୍ଧାର ଭିତରୁ ଛପି ଛପି ସେ ବାହାରି ପଡ଼ୁଛନ୍ତି । ମୁହଁରେ ହସ, ଲୁହରେ ଛଳଛଳ ଆଖି । କହୁଛନ୍ତି କେଡ଼େ ଆଗ୍ରହରେ, ଫେରି ଆସିଲ ? ବଡ଼ ଡେରି କଲ ତୁଳସୀ । ସୁରଟା ମା ହରାଇ ତମକୁ ପାଇଥିଲା, ତମକୁ ଝୁରିଲା ।

ଦୁଇ ହାତ ବଢ଼ାଇ ସତେକି ମୋରି ପାଖକୁ ଅସୁଛନ୍ତି । ମୁଁ କହୁଛି, ଛି, ସୁର ଅଛନ୍ତି ।

ଅଜାଣତରେ ଆଖିରୁ ଝରିଲା ଲୁହ ।

ତୋଟା ସେ ପାଖେ ।

ସୁର କହିଲେ, ଏଇ ଗାଁ ମଶାଣି ।

ତାଙ୍କର କଥା ଉପରୁ ମୋ ଠାକୁଆ ଶୁଭିଲା ।

ପଚାରିଲି, ମଶାଣି ?

ମୁହଁ ଫେରାଇଲେ । କହିଲେ, ହଁ ଏଇ ବର ମୂଳେ—

କଥା ଅଟକି ଗଲା ତାଙ୍କ ତଣ୍ଟିରେ ।

ସୁର କାନ୍ଦୁଛନ୍ତି ।

ସହି ପାରିଲି ନାହିଁ ମନର କୋହ । କହିଁ କହିଁ ହୋଇ ପଚାରିଲି, ଏଇ ବର ମୂଳେ ?

ଉତ୍ତର ପାଇଲି ନାହିଁ ।

ସେଇ ବର ମୂଳେ—

ଲୁହାର ଦେହ ପୋଡ଼ି ପାଉଁଶ ହୋଇଥିଲା । ଆଜି ତାର ଚିହ୍ନ ବର୍ଣ୍ଣ କିଛି ନାହିଁ । ଯେଉଁ ଦେହଟାର ପରଶରେ ଜୁଆର ଉଠୁଥିଲା ମନରେ, ସ୍ୱର୍ଗର ଆନନ୍ଦ ଓହ୍ଲାଇ ଆସୁଥିଲା ମାଟିର ଘରକୁ, ଦୁଇଟି ଆତ୍ମା ମିଶି ଏକାକାର ହୋଇଥିଲା, ସେଇ ଦେହଟା, ପାଣି ପବନ ମାଟିରେ ମିଶି ଯାଇଛି ଏଇଠି । ସୁରର ଦେହ ଦିନେ ଏଇଠି ମିଶିବ । ମୋର ବି ।

ମୋର ସ୍ୱାମୀ, କଣ ଖାଲି ମାଟିର ଦେହ ? ତେବେ, ମଲା କିଏ, ଗଲା କିଏ । ମାଟିର ଦେହଟା ତ ପଡ଼ି ରହିଥିଲା ସେମିତି ।

ସ୍ୱାମୀ ମୋର ଦେହ ନୁହେଁ, ଆତ୍ମା । ଏଇଠି ଏଇ ପାଣି ପବନରେ ସିଏ ଖେଳି ବୁଲୁଛନ୍ତି, ସିଏ ଅଛନ୍ତି ମୋ ଭିତରେ ଓ ବାହାରେ ।

ମୋ ଦେହଟା ବିଧବା ହୋଇଛି, ଯେଉଁ ଦେହଟା କାଲି ଏଇ ମାଟିରେ ମିଶିଯିବ । ମୋ ଆତ୍ମା, ମୋ ମନ ବିଧବା ନୁହେଁ ।

ଆଖିରୁ ପୋଛିଲି ଲୁହ ।

ସୂର୍ଯ୍ୟ ଉଠି ଆସୁଥାନ୍ତି—

ସୁର କହିଲେ, ଉଠ, ରାତି ପାହିଗଲା ।

ସୁରଙ୍କୁ ପାଖକୁ ଡାକିଲି । ଛବିକୁ ମଧ୍ୟ । ମନୁଆ କୁ କୋଳକୁ ନେଲି ।

କହିଲି, ରାତି ପାହିଲା, ଏଇ ସୂର୍ଯ୍ୟ ଉଠିଲେଣି । ରାତି ପାହିଲା ସୁର, ମୋର ନିଦ ଭାଙ୍ଗିଲା, ସ୍ୱପ୍ନ ବି ଭାଙ୍ଗିଲା । ନୂଆ ଦିନ, ଆଜି ଆମର ନୂଆ ସଂସାର ଆରମ୍ଭ । ବସ୍ ଲୋ ଛବି ।

ଦିହେଁ ମୋ ପାଖରେ ବସିଲେ ।

ମୋ ହାତରୁ କାଚ କାଢ଼ି ସେଇ ମଶାଣି ଭୂଇଁକୁ ପକାଇ ଦେଲି । ଗୋଟିଏ ହାତରେ ସୁରର ହାତ ଓ ଆରଟିରେ ଛବିର ହାତ ଧରି ଏକାଠି କଲି ।

କହୁଲ, ଆମର ନୂଆ ଘର, ନୂଆ ସଂସାରର ସାକ୍ଷୀ ତମର ଭାଇ । ସେ ଏଇ ମଶାଣି ଭୁଇଁର ପବନରେ ଅଛନ୍ତି, ଆଜି ଅଛନ୍ତି ମୋର ଭିତରେ, ମୋର କୋଳରେ । ସୁର, ଥରଟିଏ ଡାକ, ନୂଆଜି । ସେମିତି ତମର ଗେଲ୍ହା, ମନହଜା ଡାକ ଶୁଣିଲେ ମୋର ପେଟ ପୂରି ଉଠିବ । ଛବି ଲୋ, ଡାକ୍ ତୁଳସୀ ଅପା— ।

ଆଖିରେ ଲୁହ ଭରି ଗଲା ।

ଦୁହିଁଙ୍କୁ ଏକାଠି ମୋର ଦୁଇ କାନ୍ଧକୁ ଆଉଜାଇ ଆଣିଲି । ସେଇ ମୋର ତୃପ୍ତି ।

ମନୁଆଁ ଡାକିଲା, ଦାଦା, ଦେଇ—

ସମସ୍ତେ ଚାହିଁଲୁ ଉଠିଆସୁଥିବା ସୂର୍ଯ୍ୟର ହସିଲା ମୁହଁକୁ ।

---

ପାହାଡ଼ ତଳ ଜଙ୍ଗଲ ଭିତରେ ଗୋଟିଏ ଖୋଲା ଜାଗା । ସଞ୍ଜ ଅଗରୁ । ଚଇତ ମାସ । କନ୍ଧ ସାଇଜର ଚଇତ ପର୍ବ । ଗୋଟିଏ ପାଖରୁ କେତେଗୁଡ଼ଏ କନ୍ଧ ଝିଅ ଓ ଆରପାଖରୁ କେତେଗୁଡ଼ଏ କନ୍ଧ ପୁଅ ଗୀତ ବୋଲି ବୋଲି ଆସିଲେ । ଚଇତ ପରବ ଗୀତ । ଝିଅ ଗୁଡ଼ିକ ବେକରେ କାଚମାଳ ପକାଇଛନ୍ତି । ମୁଣ୍ଡରେ ନାନାଜାତି ଫୁଲ ଖୋସିଛନ୍ତି । ରଙ୍ଗିନ୍ ଦେଶୀ ଲୁଗା ପିନ୍ଧିଛନ୍ତି । ପୁଅମାନେ ଧରିଛନ୍ତି ଗୁଙ୍ଗୁ, ଡୁଙ୍ଗ୍‌ଡୁଙ୍ଗା, ବଂଶୀ । ମୁଣ୍ଡରେ ଓ ଦେହରେ ପକ୍ଷ । ନାନାରଙ୍ଗର ଲୁଗା । ଝିଅ ଓ ପୁଅ ସମସ୍ତେ ଗୋଡ଼ରେ ବାନ୍ଧିଛନ୍ତି ଘୁଙ୍ଗୁର ମାଳ । ନାଚିଲେ ।

ଝିଅମାନେ କେତେବେଳେ କାନ୍ଧ ଧରାଧରି ହୋଇ, କେତେବେଳେ ବା ହାତ ଧରାଧରି ହୋଇ ପୁଅମାନଙ୍କ ଆଗରେ, ଗୁରିପାଖେ, ନଇଁ ନଇଁ ଗୀତ ବୋଲି ବୋଲି ନାଚିଲେ । ପୁଅମାନେ ଗୀତର ପାଳି ଧରି, ବାଜା ବଜାଇ ଅଙ୍ଗଭଙ୍ଗୀ କରି ନାଚିଲେ ।

ଗୀତ ନାଚ ସରିଲା । ଟିକିଏ ଦମ୍ ନେଲେ । ତା ପରେ ଦୁଇ ଦୁଇ ଜଣ, ଜଣେ ପୁଅକୁ ଧରି ଆଉ ଜଣେ ଝିଅ ନାଚିବାକୁ, ଝିଅ ପୁଅ ସମସ୍ତେ ମିଶିଗଲେ । ସମସ୍ତେ ଦୁଇ ଦୁଇ ଜଣ ହୋଇଗଲେ, କିନ୍ତୁ, ପୁଗି ଗାଁର ଜାନି କାଡ୍ରାକା ଭେଡ଼କାର ଝିଅ ସୁନାର ଦୁଇ ହାତ ଦୁଇଆଡ଼ୁ ଧରି ଠିଆ ହୋଇ ରହିଲେ— କିନାମ ଗାଁର ନାଇକ ମିଲିକା ନୋକାର ପୁଅ ମାଗତା ଓ ସିପି ଗାଁର ମୃତ କନ୍ଧ ମୋସାକା ଡେଙ୍ଗୁର ପୁଅ ବାୟୁ । ମାଗତାର ଗୋଟିଏ ହାତ ଧରି ଠିଆ ହେଲା ପୁଗି ଗାଁର ମଲା କନ୍ଧ ଉର୍ଲିକା ବାସୁର ଝିଅ ଲତା । ଯୁଗଳ ନାଚ ବନ୍ଦ ରହିଲା । ସମସ୍ତେ ସୁନା, ମାଗତା, ବାୟୁ ଓ ଲତାଙ୍କ ଆଡ଼କୁ ଗୁହାଁଲେ—ହସିଲେ ।

ନାଇକ ପୁଅ ମାଗତା କହିଲା, ସୁନାର ହାତ ଛାଡ଼ିଦେ ରେ ବାୟୁ । ମୁଁ ତାର ସାଥିରେ ନାଚିବ ।

ବାପଛେଉଣ୍ଡ ଲତା ମାଗତାର ହାତ କଟମଟ କରି ଧରି କହିଲା, ଆରେ ମାଗତା, ବାୟୁ ସୁନା ସାଥିରେ ନାଚୁ । ଆ, ତୋର ମୋର ନାଚିବା ।

ମାଗତା ରାଗରେ ଫଁ ଫଁ ହୋଇ, ଆଖି ରଙ୍ଗ କରି, ମୁହଁ ବୁଲାଇ ଲତାକୁ ଗୁହାଁଲା । ତା ହାତରୁ ଯୋର୍‌ରେ ହାତ ଟାଣି ଆଣି କହିଲା, ତୁ ଯାଲେ ବାୟୁ ସାଥିରେ ନାଚିବୁ । ଜାଣୁ ନାଇଁକି, ସୁନା ଜାନିର ଝିଅ ଆଉ ମୁଁ ନାଇକର ପୁଅ । ବାୟୁର ଯେମିତି ବାପ ମା ନାହିଁ, ତୋର ବି ସେମିତି ବାପ ନାହିଁ । ବାୟୁ କୁଲି ଭୁତି କରି ଖାଉଛି, ଆଉ, ତୁ ବି କୁଲି ଭୁତି କରୁଛୁ । ତା ହାତ ଧରି ତୁ ନାଚିଲେ ସିନା ସାଜିବ—

ଜାନର ଝିଅ ସୁନା ମାଗତାର ହାତରୁ ହାତ ଖସାଇ ନେଇ, ବାୟାର ଗୋଟିଏ ହାତ ଧରି ହସି ହସିକା କହିଲା, କେମିତି ବେଢଙ୍ଗ କଥା କହୁଚୁ ତୁ ମାଗତା ! ଆମର ଚଇତ ପରବ ନାଚ । ଏଇ ଡୋଙ୍ଗର ତଳେ ଜଙ୍ଗଲ ଭିତରେ ସମସ୍ତେ ଆମେ ସମାନ । ଏଠି ଆଉ ନାଇକର ପୁଅ କି ଜାନର ଝିଅ କହିଲେ ଚଳିବ ନାହିଁ । ଆମେ ସମସ୍ତେ ଏକା, ସମସ୍ତେ ଆମେ ଏଇ ବଣ, ଜଙ୍ଗଲ, ଲହଡ଼ିଆ ପାହାଡ଼ ମାଳର ପୁଅ ଝିଅ । ଦେଖ୍ ତ, କେଡ଼େ ଖୁସିରେ ଲତା ତୋର ହାତ ଧରିଥିଲା, ତୁ ହାତ ଟାଣି ନେଲୁ । ଲତାର ମନରେ ଦୁଃଖ ଦେଲୁ ।

ମାଗତା କହିଲା, ମୁଁ କେଡ଼େ ଖୁସିରେ ଆଗ ତୋର ହାତ ଧରିଲି ଯେ ? ଅନାଥ ପିଲା ବାୟା କହିଲା, ନାଇଁ ନାଇଁ, ତୋ ଆଗରୁ ମୁଁ ସୁନାର ହାତ ଧରିଚି । ସୁନା ସାଥିରେ ମୁଁ ନାଚିବି । କିରେ ମାଗତା, ତୁ ନାଇକର ପୁଅ ହେଲୁ ତ କଣ ହେଲା, ଆଇଲୁ ଦେଖି ଲଢ଼ିବା । କାହା ଦେହରେ ବେଶୀ ତାକତ । ଆରେ ମାଗତା, ଘଡ଼ି ଅଧରେ ସେଇ ଡୋଙ୍ଗର କଡ଼ରେ ଯେଉଁଠି ଗେଡ଼ଡ଼ାର ପାଣି ଦ ଲାଠି ଉପରୁ ପଥର ଚଟାଣ ଉପରେ ପଡ଼ୁଚି, ସେଇଠି ଘାସ ବଣ ଭିତରେ ଛପି ଛପି ଯାଇ ମୁଁ ଏଇ ଟାଙ୍ଗିରେ କିଅଦ ପିଲା ମାଇଲି । ପାର୍‌ବୁ କି ତୁଇ ? ନାଇକର ପୁଅ ବୋଲି ଟାଣ କରୁଚୁ ଯେ ।

ମାଗତା ରଗରଗ ହୋଇ କହିଲା, ଭାରି କଥାଟେ କହିଲୁ ରେ । ତୋର ବାପ ମୋସାକା ଡେଙ୍ଗୁ କୁ ବାଘ ଖାଇଲା । ତୋର ମାକୁ ସାପ ଗୋଟେଇଲା । ତୋ ବାପ ଆଜି ବାଘ-ଡୁମା ( ଭୂତ ) ହେଇଚି, ମା ହେଇଚି ସାପ-ଡୁମା । ସେଥିଲାଗି ବାଘ କି ସାପକୁ ତୋର ଡର ଭୟ ନାହିଁ । ଚଢ଼ିବୁ କି ସେଇ ମହୁଲ ଗଛର ଅଗ ଡାଳରେ ? ଭାଙ୍ଗି ପାରିବୁ କାଇ-ବସା ?

ପୁଙ୍ଗି ଗୋଟାଏ କନ୍ଦ ଟୋକା । ଭଲ ଧାଙ୍ଗଡ଼ା ବୋଲି ତାର ଖ୍ୟାତି ଅଛି । ସେ କହିଲା, ହେ ମାଗତା, ଆରେ, କଜିଆ କାଇଁକି କରୁଚୁ ? ତୁଇ ଜନମ ହେଲାବେଳେ ଦଶାରି କହିଲା ତୋର ଡୁମା ( ଅତ୍ମା ) ମାଙ୍କଡ଼ ଡୁମା । ସେଥିଲାଗି ତୁ ଗଛର ସରୁ ଡାଳରେ ଚଢ଼ିବୁ ସିନା, ଆଉ କିଏ ଚଢ଼ିବ ? ନାଇଁ କି ପୁଲକ ?

ପୁଲକ କହିଲା, ପୁଙ୍ଗି ଯାହା କହିଲା ସତ । ମାଙ୍କଡ଼ ଡୁମା ବୋଲି ମାଗତା ମିଛଟାରେ କଜିଆ କରେ । ନାଚୁନୁ ଲତାକୁ ଧରି, ସୁନା ବାୟାକୁ ଧରି ନାଚୁ ।

ଲତା ପୁଣି ଧରିଲା ମାଗତାର ହାତ । ମାଗତା ହାତ ଟାଣି ଆଣି ଲତାକୁ ଠେଲି ଦେଲା । ଲତା ପଡ଼ ଯାଉଁ ଯାଉଁ ଅଟକି ଯାଇ କହିଲା, ମାଗତା, ସୁନା ସୁନା ହୋଇ ତୁ ପାଗଳ ହେଉଚୁ । ଜାଣୁ, ସୁନା ତତେ ଦେଖିପାରେ ନାହିଁ ? ସୁନା ବାୟାକୁ ଭଲପାଏ ।

ମାଗତା ପଗ୍ଧରଲ୍ଲା, ସତେ ସୁନା ?

ସୁନା ତମ୍‌ତମ୍ ହୋଇ ଛଲେଇ କହଲା, ତୁ ଯେମିତି ମିଛ କଥାରେ କଜିଆ କରୁ, ବାପ୍ପା କଣ ସେମିତି କଜିଆ କରେ ? ସେ ଭଲ ଧାଙ୍ଗଡ଼ା, ଗରବ ହେଲା ତ କ ହେଲା ? ତତେ କେହୁ ଭଲ ପାଇବେ ନାହିଁ । ତୁ ଲତା ସାଥିରେ ଆଜ ନାଚ । ବଜାଅରେ ବାଜା—

ଡମ୍ବପିଲାମାନେ ବାଜା ବଜାଇଲେ । ହଲ ହଲ ହୋଇ ଟୋକା ଟୋକୀ ଘୁରି ନାଚଲେ, ଗୀତ ବୋଲିଲେ । ଗୋଟିଏ କଡ଼ରେ ଠିଆ ହୋଇ ମାଗତା ସୁନା ଆଡ଼କୁ ଅନାଇଁ ରହଲା । ଆର କଡ଼ରେ ଠିଆ ହୋଇ ଲତା ଆକୁଳ ଆଖିରେ ଗୃହିଁ ରହଲା ମାଗତାକୁ । ନାଚ ଘନେଇ ଆସିଲା । ଲତା ଛାଡ଼ା ହୋଇଥିବା ପାଖରୁ ହୁଆଲେ ବୁଦ୍ଧିଡମ୍ବ, କନାମ ଗାଁ ବାରିକ ଟୋକା, ଧଇଁସଇଁ ହୋଇ ନାଚ ଜାଗାରେ ପହଞ୍ଚିଲା । ତା ସଙ୍ଗରେ ଆଉ ଦୁଇଜଣ ଡମ୍ବ ପିଲା ଅଛନ୍ତି ।

ବୁଦ୍ଧି ଡମ୍ବ ହାତଟେକି କହିଲା, ନାଚ ବନ୍ଦ କର । ବାଜା ଗୀତ ବନ୍ଦ କର । ଶୁଣ, ଭାଇମଜା । ବଡ଼ ଶିକାର—

ନାଚ ବନ୍ଦ ହେଲା । ଝିଅ ପୁଅ ହାତ ଛଡ଼ାଛଡ଼ି ହୋଇ ଡମ୍ବ ଟୋକାକୁ ଘେରିଗଲେ ।

ସୁନା ଧରିଲା ଲତାର ହାତ ।

ବୁଦ୍ଧି ଧଇଁସଇଁ ହୋଇ କହିବାକୁ ଲାଗିଲା, ଆରେ ବାପ୍ପା, ହେ ମାଗତା, ଡୁଡୁମା ( ଜଳପ୍ରପାତ ) ପାଖରେ, ସେ ଛନଟିକିଆ ମହୁଲ ଗଛ ତଳେ ପଲେ ଜିଆଦ ପାଣି ପିଇବାକୁ ଗଡ଼ିଲେ ।

ବାପ୍ପା ଖୁସି ହୋଇ ପଗ୍ଧରିଲା, ଏଁ , ସତେ ?

ହଁ, ରେ ହଁ । ନାଚ ବନ୍ଦ କର । ଆସ ସମସ୍ତେ ଧନୁଶର ଧରି ଯିବା ।

ହଁ, ଝୋଲା ଭିତରେ ଲୁଚି ଲୁଚି ଯିବା—

କନ୍ଧ ପିଲାମାନେ ଖୁସି ହୋଇ ଡମ୍ବ ପିଲାଙ୍କ ପଛେ ପଛେ ପାଖରେ ଗୃଲିଗଲେ । ସବା ପଛରେ ମାଗତା । ପଛକୁ ସୁନା ଆଡ଼କୁ ଗୃହିଁ ଗୃହିଁ ଗଲା । ଝିଅମାନେ ଆଉ ଗୋଟିଏ ବାଟରେ ଗଲେ । ଲତା ସଭିଙ୍କ ପଛରେ ମାଗତା ଆଡ଼କୁ ଗୃହିଁ, ହସିଲା ମୁହଁରେ ସୁନାର ହାତ ଧରି ଗୃଲିଗଲା ।

ପୁଗି ଗାଁ କନ୍ଧ ପଲ୍ଲି ।

ଛୋଟ ଛୋଟ ନୁଆଁଣିଆ ଚାଳଘର । ଘର ଗୁଡ଼ିକର ଆଗପିଣ୍ଡା ରଙ୍ଗ ମାଟିରେ ଲିପା । ଗାଁ ମଝିରେ ଜାନି କାଡ଼୍ରାକା ଭେଡ଼ିକାର ଘର ଟିକିଏ ବଡ଼ । ଘର ଆଗରେ ଗାଁ ଦାଣ୍ଡର ପଥୁରିଆ ରାସ୍ତା ଉପରେ ବାଉଁଶ ତଲେଇ ପଡ଼ା ହୋଇଛି । ଦିନ ଦଶଟା ହେବ । ତଲେଇ ଉପରେ କେତେଜଣ କନ୍ଧ ନାଉ ତୁମ୍ବା ଧରି ବସିଛନ୍ତି । ମଦହାଣ୍ଡି ପାଖରେ ଧାଙ୍ଗଡ଼ା ମାଝି ତୁମ୍ବା ଧରି ଠିଆ ହୋଇଛି । ପାଖରେ ଅଛି ଛଅଟି ଗାଁର ବାରିକ ହୁଅଲୋ ବୁଦ୍ଧି ଡମ୍ବ ।

ବୁଦ୍ଧି ଡମ୍ବ ନାଇକ ପାଖକୁ ଗଲା । ସେ ବାରିକ, କନ୍ଧ ଲୋକଙ୍କ ବିବେକ । ସେ କହିଲା, କେମିତି କଥା କହୁଛୁ ନୋକା, କନାମ ଗାଁର ନାଇକ ହେଲୁ ତ କଣ ହେଲା । ଚାରି ହଳ ପୁଢ଼, ପାଞ୍ଚହଳ ଗାଈ ବାନ୍ଧିଛୁ, ତିନି ଗଡ଼ଶା ଭୂମି ଚାଷ କରୁଛୁ ସତ, ତୋ ପୁଅ ମାଟେଡାଠା କଣ ମଣିଷ କରେ ? ଫୁଙ୍କି ଦେଲେ ଟଳି ପଡ଼ିବ । ଡୋଙ୍ଗର ଉପରକୁ ଥରେ ଚଢ଼ି ଓହ୍ଲାଇ ଆସିଲେ ଦରମରା ହେବ । ସେ କଣ ଭେଡ଼ିକା ଜାନିର ଝିଅ ସୁନାରି ନାକି ହେବ ?

ପାଖରେ କନ୍ଧଟୋକା ପୁଙ୍ଗି ଠିଆ ହୋଇଥିଲା । ସେ ବୁଦ୍ଧି ଡମ୍ବର କଥାକୁ ସମର୍ଥନ କରି କହିଲା, ବାରିକ ପିଲା ଠିକ୍ କଥା କହିଲା । ସେଦିନ କୁଅଦ୍ ଶିକାର କରିବାକୁ ଲୁକି ଲୁକି ଗଲୁଁ । ବାଯ୍ୟା ଝାଙ୍ଗିରେ ମାରିଲା କୁଅଦ । ମୁଁ ମାଇଲି କାଣ୍ଡରେ, ନାଇଁକି ବାରିକ ? ସଞ୍ଜ ହୋଇ ଆସୁଥିଲା । ଗୋଟାଏ କାଣ୍ଡରୁ ଦୁଇଟା ମାରି ନାଇଁତ । ଆଉ ମାଟେଡା, ଧାଇଁ ଧାଇଁ ଗଲା, ଝୋଲା ( ନାଳ ) ରେ ପଡ଼ିଲା । ଅଣ୍ଟୁ ଗଣ୍ଠି ଛିଣ୍ଡିଲା । କାନ୍ଦିଲା ବୋଲି ବଞ୍ଚି ଗଲା । ଫିର୍କି ଘାସ ଭିତରେ ଯେମିତି ଖସ୍ ଖସ୍ ହେଉଥିଲା, ଧନୁରେ କାଣ୍ଡ ଚଢ଼େଇ ଥିଲି ତ । ମୁଁ ସିନା ଭାବିଲି କୁଅଦ ପିଲା, ଭାଗ୍ୟକୁ ବାରିକ ପିଲା ମୋର ହାତ ଧରି ଟାଣି ଆଣିଲା । ନୋହିଲେ—

ବୁଦ୍ଧି ସମର୍ଥନ କରି କହିଲା, ସତ କଥା । ହେ ନୋକା ନାଇକ, ମୋର କଥାଟି କର । ଉଲ୍ଲାକା ବାସୁର ଝିଅ ଲତା । ଭଲ ପିଲାଟେ ରେ ! ତୋ ପୁଅ ମାଟେଡା ପରି ସରୁ । ମାଗଡାକୁ ସେ ଚାହେଁ । ତାକୁ ତୁ ବୋହୂ କରି ନେ । ଅଗ୍ର ଦିଶାରି, ଲତା କାହାର ଡୁମା ରେ ? ମାଟେଡାର ହିନା ମାଙ୍କଡ଼ ଡୁମା ।

ମଦ ନିଶାରେ ଆଖି ରଙ୍ଗ ଦିଶୁଛି ଦିଶାରିର । ବୁଢ଼ାଲୋକ, ମୁଣ୍ଡ ଚନ୍ଦା । ତଳକୁ ଚାହିଁ, ତଳେ ଗାର ପକାଇ ଭୁଟ୍ ଭୁଟ୍ ହେଲା । ପୁଣି ଉପରକୁ ଚାହିଁଲା, ତଳକୁ ଚାହିଁଲା । ଆଖି ମିଞ୍ଜି ମିଞ୍ଜି କରି କହିଲା, କାଲି ପରି ଲାଗୁଛିରେ, ଲତାର ବାପ ଯେତେବେଳେ ମତେ ଡାକି କହିଲା, ହେ ଦିଶାରି ଝିଅଟେ ଜନମ ହେଇଛି,

କାହାର ଡୁମାରେ, କହୁଥିଲି ବଟଲର ଡୁମା । ଉର୍ଦ୍ଧ୍ୱ କା ବାପୁର ଥିଲା ମୂଷା ଡୁମା । ବାପୁ ଚମକି ପଡ଼ିଲା । ମୁଁ ତାକୁ ଭୁଲେଇ କହିଲି, ଆରେ, ତୋର ଡୁମା ପାହାଡ଼ୀ ମୂଷା ବଡ଼ ମୂଷା । ତୋର ଝିଅଟା ବଲେଇ ଡୁମା ହେଲା ତ କଣ ହେଲା । ଖାଇ ପାରିବ ନାହିଁ । କହୁଥିଲି ସିନା କଥାଟେ, ବାପୁ ରହିଲା କି ? ବାର ବରଷ ପୂରିଲା ନାହିଁ । ଲତା ତାକୁ ଖାଇଦେଲା ।

ମିଲିକା ନୋକା ଆଶ୍ଚର୍ଯ୍ୟ ହୋଇ ଦଶାରିକୁ ଚାହିଁଲା । ବୁଦ୍ଧି ଡମ୍ବ, ଆଡ଼କୁ ମୁହଁ ଫେରାଇ କହିଲା, ଶୁଣିଲୁତ ବାରିକ ପୁଅ ! ତୁ କେମିତି କହୁଛୁ ଲତାକୁ ବୋହୂ କରିବାକୁ ? ସୁନାର ଡୁମା କସରେ ଦଶାରି ?

ଦଶାରି ପୂର୍ବାପର ଗଣନା କରି କହିଲା, ଖଟର ଡୁମା ।

କାଉଁରା ଭେଡ଼ିକା ଜାନି କହିଲା, ହ, ହ, ଖୁଣ୍ଟୁରା । ଜନମ ହେଲାବେଳେ ତୁ ସେଇଆ କହିଥିଲୁ ।

ଧାଙ୍ଗଡ଼ା ମାଝି କହିଲା, "ତେବେ, ତ— । କଥା ଶେଷ କରି ପାରିଲା ନାହିଁ । ମଦ ନିଶାରେ ମୁଣ୍ଡ ଝାଙ୍କି ହେଉଛି । ସେ ଆଖି ବୁଜି ପାଟି ପାକୁ ପାକୁ କଲା ।

ନୋକା ତାର ମନର କଥା ବୁଝିଲା । କହିଲା, ଲତା ଆଉ ମାଗତା ବାହା ହେଲେ କଜିଆ କଚ୍ଛ ତାଙ୍କର ବେଳ କଟିବ । ଜଣେ ବଟଲଇ, ଆଉ ଜଣେ ମାଙ୍କଡ଼, କି ଘର କରିବେ ସେମାନେ ? ନା, ନା, ଏହା ହେବ ନାହିଁ ।

ବୁଦ୍ଧି ପଚାରିଲା, ସୁନା ଆଉ ମାଗତା ବାହା ହେଲେ କେହି ଭଲରେ ରହିବେ କି, କହନ୍ତୁ କାହାଁକି ଦଶାରି ? ଜଣେ ଗଛରେ ଚଢ଼ିଲେ ଆଉ ଜଣେ ବଣରେ ପଶିବ ନାଇକି ?

ଦଶାରି ଉତ୍ତର ଦେଲା—କଜିଆ ତ ହେବ ନାହିଁ, ଭଲରେ ଘର ନ କରିବେ କାହିଁକି ?

ନୋକା ଖୁସି ହୋଇ କହିଲା, ଶୁଣିଲୁ ତ ବାରିକ ? ଶୁଣିଲୁ ତ ଜାନି ? ମାଗତା ସୁନା ସୁନା ହେଇ ପାଗଳ ହୋଇଛି । ସେଇ ଏକା ମତେ ତୋ ପାଖକୁ ଜଗର କରି ପଠେଇଛିରେ ଭେଡ଼ିକା ଜାନି । କହିଲା, ଯା ବାପା, ଦି ହାଣ୍ଡି ଲନ୍ଦା ମଦ ନେଇ ଯା । କଥା ଠିକ୍ କରି ଆ ।

ଭେଡ଼ିକା କହିଲା—ତେବେ ରେ ନୋକା, ମଦ ହାଣ୍ଡି ରଖି ଦେଇ ଯା । ସୁନା କନ୍ଦା ଖୋଳିବାକୁ ଯାଇଛି । ସେ ଆସୁ । ଧାଙ୍ଗଡ଼ୀ ହେଲାଣି ସେ । ତାର ଯେମିତି ମନ । ତାକୁ ପଚାରି ତୋ ହାଣ୍ଡିରୁ ଯଦି ମଦ ଖାଇବା, ଜାଣିବୁ ସୁନାର ମନ ଅଛି, ମାଗତାକୁ ବାହା ହେବ । ମଦ ନ ଖାଇଲେ, ତୋର ମଦ ତୁଇ ଫେରେଇ ନେବୁ ।

ନଣେ ବୁଢ଼ାକନ୍ଧ ମୁଣ୍ଡ ହଲାଇ କହିଲା, ଭେଡ଼ିକା ଭଲ କଥା କହୁଚପେ ନୋକା ।

ଧଡେ ସେଇଆ କର ତୁ ନୋକା—ବୁଦ୍ଧି ପରାମର୍ଶ ଦେଲା ।

ନୋକା ଟିକଏ ଭାବି କହିଲା, ଅରେ ଭେଣ୍ଡ଼ିକା, ଝିଅ ଧାଙ୍ଗଡ଼ୀ ହେଲା ବୋଲି ତାର ବୁଦ୍ଧି ହେଲା କି ? ସେ କି ଭଲ ମନ୍ଦ ଜାଣିବ ରେ ? ତୁ ଜାନ, ମୁଁ ନାଇକ । ତୋ ଝିଅ ମୋ ବୋହୂ ହେଲେ, ଲୋକେ ଭଲ କହିବେ । ଦିହିଙ୍କର ମାନ ବଢ଼ିବ ।

ଦଶାରି କହିଲା, ସତ କଥା । ତୁଇ ଯାହା ଠିକ୍ କରିବୁ ସେଇଆ ହବ । ସୁନା କଣ ତୋ କଥାରୁ ବାହାର ହେବ କି ନୋକା ନାଇକ ? ସୁନା ଅଛି ଭଲ ପିଲା । ଗାଁ ଛାଟରେ ଝିଅ ଖଣ୍ଡେତ ।

ଆଉ ଜଣେ କନ୍ଧ ସ୍ୱୀକୃତି ଜଣାଇଁ କହିଲା, ସୁନା ଭଲ ପିଲା । ଏ ଗାଁରେ ତାପରି କୁହାର ବୋଲରି ଝିଅ ନାହିଁ । କେତେ ବୁଦ୍ଧି ତାର । ହେ ଜାନ, ତୁ ଯାହା କହିବୁ ସେ ମାନିବ । ଧାଙ୍ଗଡ଼ା ମାଝି, ଦେ ରେ ମଦ ।

ମଦ ଦେବାକୁ ଧାଙ୍ଗଡ଼ା ମାଝି ଅଟଗଇ ଅସିଲା । ହାତ ଠେକି ଭେଣ୍ଡ଼ିକା ବନ୍ଦ କଲା ! ଏଣିକି ତେଣିକି ଚାହିଁ କାହାକୁ ଖୋଜିଲା ପରି ହୋଇ କହିଲା, ସୁନା ନାହିଁ କି ତା ମା ନାହିଁ । ତୋର ମଦ ଖାଇ ମୁଁ କେମିତି ପକ୍କା ଜବାବ ଦେବି ନୋକା ? ତୋ ମଦ ମୁଁ ଖାଇଲେ ଜବାବ ଦେଲା ପରି ହେବ ନାହିଁକି ? ମୋ ମଦ ମୁଁ ଖାଇଛି ସିନା ।

ବୁଦ୍ଧି ତମ୍ବ କହିଲା, ହେବ ଏକା । ତା ପର, କଥା ଛାଡ଼ିବା ଆଗରୁ ଗାଁ ଲୋକେ ପୁଣି ଜାଣିବେ—ଖାଇବାକୁ ତୁ କଣ ଦେବୁ । ତମ କୁଳର ପ୍ରଥା ଯେମିତି, ସୁନାର ବାପକୁ ସିନା ହୋଲି ଠଙ୍କା କୋଡ଼ିଏ ଏକ ଦେବୁ । ଆଗ କହ, ଗାଁ ଲୋକଙ୍କ ଖାଇବାକୁ କେଇ ମୁଣ୍ଡ ଗାଈ ଦେବୁ, କେତେ ହାଣ୍ଡି ମଦ ଦେବୁ, କେତେ ଠଙ୍କା ଦେବୁ ।

ବାରିକ ସତ କଥା କହୁଛି, ଦଶାରି କହିଲା ।

ନୋକା ଶନ୍ତାକରି, ହସି ହସି କହିଲା, ଏଇ କଥା ବାକି ରହିବ କି ? ଆରେ ମାଝି, ଦେରେ ମଦ ତଣ୍ଟି ଶୁଖି ଯାଉଛି । ପିଅରେ, ଏ ମଦଟା ବାହାଘର ମଦ ନୁହେଁ । ସେଇ ଡୋଙ୍ଗର ଉପରେ ମାଗତା ରକେଇ ଥିଲା । ଗାଁ ଲୋକେ ଆମେ ବସି କରି ଏକାଠି ଖାଇବା ନାହିଁକି ? ଚଇତ ପରବ ପରିଅସୁଛି । ଦେଏରେ ଧାଙ୍ଗଡ଼ା ମାଝି !

ଧାଙ୍ଗଡ଼ା ମାଝି ମଦ ଢାଳିଲା । ସମସ୍ତେ ନିଜ ନିଜର ନାଉ ତୁମ୍ବାରେ ପିଇଲେ ।

ବୁଦ୍ଧି କହିଲା, ସମସ୍ତେ ତ ତୋର ମଦ ଖାଇଲେ ନାଇକ, ତୁଇ ଏବେ କହ, ଗାଁ ଲୋକଙ୍କ ଖାଇବାକୁ ଦି ମୁଣ୍ଡ ଗାଈ ଦେବୁ, ତିନିହାଣ୍ଡି ମଦ ଦେବୁ, ଦି କୋଡ଼ି ଠଙ୍କା ଦେବୁ—

ନୋକା ସମ୍ମତି ଜଣାଇ କହିଲା, ହେବରେ, ନିଶ୍ଚେ ହେବ । ଟୋଟେଏ ପୁଅ ମୋର ମାଗତା । ସୁନାକୁ ବୋହୂକରି ଘରକୁ ନେବ, ଏତିକ କଣ ହେବ ନାହିଁ କି ? ଭେଡ଼ିକା, ତୁ ମତେ କଥା ଦେ; ଜବାବ୍ ପକ୍‌କା ହେଉ । ମାଗତାକୁ ମୁଁ କହିବ ।

ଦଶାର ପ୍ରବର୍ତ୍ତୀଇଲା ଦୃଷ୍ଟିରେ ଭେଡ଼ିକାକୁ ଚାହିଁ କହିଲା, ସବୁ କଥାତ ଛିଣ୍ଡିଲା, ଯବାବ୍ ଦେ ଜାନି ।

—ସୁନା ବୋଉକୁ ପଚାରି ମୁଁ କହିବି, ସୁନାକୁ ପଚାରିବ ନାହିଁ । ତା ବୋଉ ଯଦି ରାଜିହୁଏ, ମୋର ରାଜି । ଆମ କଥାରୁ ସୁନା ବାହାର ହେବନାହିଁ ।

ଲତା ପାଣିମାଠିଆ ଧରି ଗୋଟିଏ ପାଖରୁ ଆସୁ ଆସୁ ସମସ୍ତଙ୍କୁ ଥରେ ଚାହିଁଲା । ସେମାନଙ୍କୁ ମଦ ଖାଉଥିବାର ଦେଖି ସେ ସାବଧାନ କରିବାକୁ କହିଲା, ଲୁଚା ମଦ କରେ ଧାଙ୍ଗଡ଼ା ମାଝି ? ଗେଡ଼ା ( ନାଲ ) ଆଉ ସଲ୍‌ଟ୍ରିଜମାନ ( ଏକ୍‌ସାଇଜ ପିଅନ୍ ) ଆସୁଛି । ତା ସଙ୍ଗେ ଆଉ କେତେ ଲୋକ ଅଛନ୍ତି । ଦୂରରୁ ଦେଖି ମୁଁ ଧାଇଁ ଆଇଲି ।

ସଲ୍‌ଟ୍ରିଜମାନ ନାମ ଶୁଣି ସମସ୍ତେ ଭୟଭୀତ ହେଲେ । ଅସ୍ତବ୍ୟସ୍ତ ହୋଇ ଠିଆହେଲେ । ଆକୁଳ ବ୍ୟାକୁଳ ଆଖିରେ ଚାରିଆଡ଼କୁ ଚାହିଁଲେ ।

ବୁଦ୍ଧି ବାରିକ ପଚାରିଲା, ହେ ଲତା, ସଲ୍‌ଟ୍ରିଜମାନ ବୋଲି କପରି ଜାଣିଲୁ ? ଆଉ କିଏ ହୋଇଥିବ ।

ତାକୁ ମୁଁ ଭଲ କରି ଚହ୍ନେ ରେ । କେତେ ଦିନ ହେଲାଣି, ଆଉ ଥରେ ସେ ଆସି ନ ଥିଲା କି ? ଯେଉଁ ଥର ଆସି ଉର୍ଲାକା ବେଗ୍ ଓ ସାଗକା ଧାନକୁ ଧରି ନେଇ ଶିକ୍ଷା କରେଇଲା ( ଜେଲ ଭୋଗେଇଲା ) । ଜାଣେ ରେ ତାକୁ ମୁଁ, ମତେ ବି ସେ ଚହ୍ନିଛି ।

ତତେ କେମିତି ଚହ୍ନିଲାରେ ଟୋକି ? ଜାନି ପଚାରିଲା ।

ଡୋଙ୍ଗର ତଳେ ମୁଁ ବସି କନ୍ଦା ଖୋଳୁଥିଲି, ସେ ତେଣୁ ଆଇଲା ତ । ମତେ କେତେ କଥା ପଚାରିଲା । କହିଲା, ମାଳି ଦେବ, ପାନିଆଁ ଦର୍ପଣ ଦେବ, ଖଦି ଦେବ । ମୁଁ ଭାବିଲି ସିନା ସତରେ । ମୋର ହାତଧରି କେତେ ବାଟ ଚାଲିଲା । ସେଇ ଯୋଉ ବଣ ଭିତରେ ମୋ ହାତକୁ ଟାଣି ନେଇ ମୋ କାନ୍ଧରେ ହାତ ପକାଇଲା—

ଏଁ, ସତରେ ?

ହଁ ରେ । ଦ ଗାଲରେ ତାର ଦି ଗୁପୁଡ଼ା ଥୋଇଲି । ଖଣ୍ଡେ ଉଠେଇ କହିଲି, ଧଇଲୁ ଜମାନ୍ ମୋହାତ, ତୋ କାନ୍ଧରୁ ମୁଣ୍ଡଟା ଛିଡ଼େଇ ଦେବି । ମତେ ଚଢ଼ ଥିଲା । ମୁଁ କହିଲି, ମଦ କ'ଣ ମୁଁ ଗ୍ଳକେ କି ତତେ ଡରିବି ? ସେଇ ଜମାନ୍ ଆଡ଼ଚରେ ବୁଦ୍ଧିଆ । ତମ୍ଭକୁ ସବୁ ଧରି ଶିକ୍ଷା ଦେବ ।

ସମସ୍ତେ ଭୟରେ ବୁଦ୍ଧି ବାଉରିକୁ ଗ୍ଳହିଁଲେ । ବୁଦ୍ଧି କ୍ଷଣକାଳ ଚିନ୍ତା କରି କହିଲା, ହେ ନୋକା, ଭଡ଼କା, ତେମେ ସବୁ ମଦ ହାଣ୍ଡି ନେଇ ଗ୍ଳଲି ଯା । ଯା, ଯା,— । ଭଡ଼କା, ଦଟା କୁକୁଡ଼ା ତୋ ଘରୁ ଧରି ଅଣ ତ ।

ମଦ ହାଣ୍ଡି ନେଇ ସମସ୍ତେ ପ୍ରସ୍ଥାନ କଲେ । କେବଳ, ଲତା ଓ ଭଡ଼କା ବୁଦ୍ଧି ଡମ୍ବ ପାଖରେ ରହିଲେ । ଭଡ଼କା ପଗ୍ଳରିଲା, ଦଟା କୁକୁଡ଼ା ନା ବାଉରି ପୁଅ ?

ହଁ ରେ ହଁ ।

ଭଡ଼କା ଗ୍ଳଲିଗଲା । ଲତା ପଗ୍ଳରିଲା, କୁକୁଡ଼ା କଣ ହେବ ବାଉରି ?

ଜମାନ୍ ମତେ ମାଗିଥିଲା । ପୁଣି କହିଥିଲା, ତତେ ବ ନେବାକୁ ସାଙ୍ଗରେ ।

ମତେ ? ତାଆର ଏଡ଼େ ସାହସ ? ତୋର ଏଡ଼େ ବଡ଼ପ ?

ଲତାର କାଖରୁ ପାଣିମାଠିଆ ଖସି ପଡ଼ିଲା । ସ୍ୱରରେ କଟମଟ କରି ଗ୍ଳହିଁଲା ଡମ୍ବକୁ । ବୁଦ୍ଧିଆ କେବଳ ହସିବାକୁ ଲାଗିଲା ।

ସିପିଗାଁର କନ୍ଧ ପଲ୍ଲି ବାହାରେ ଶ୍ରେଷ୍ଠ ଡୋଙ୍ଗର, ଲଣ୍ଡା ମୁଣ୍ଡିଆ । ତାହାର ତଳେ ଜଙ୍ଗଲ ଭିତରେ ଖଣ୍ଡେ ପଥର ଚଟାଣ । ସାମ୍ନାରେ ଗେଡ଼୍ଡା, ଛଅରି ହାତ ଚୌଡ଼ା । ସରୁ ଝରଣାଟିଏ ପଥର ଗଦା ଉପରେ ଝିପିଝିପି ହୋଇ ବହି ଯାଉଛି । ଗେଡ଼୍ଡା ଆରପାଖେ ସମତଳ ଭୂଇଁ । ସେପାଖକୁ ଘଞ୍ଚ ଅରଣ୍ୟ ବେଢ଼ା ପାହାଡ଼ ମାଳ, ବିମାନ ପରି ଖଞ୍ଜା ହୋଇଛି ।

ପଥର ଚଟାଣ ଉପରେ ପାଖାପାଖି ହୋଇ କପୋତ କପୋତୀ ପରି ବସିଛନ୍ତି ସୁନା ଓ ବାୟା । ବାୟା ଗମ୍ଭୀର ଦେଖାଯାଉଛି । ସୁନା ଗେଡ଼୍ଡାର କଲକଲ ଝରଣା ପରି ମୁଖର, ହାସ୍ୟମୟୀ । ଗୁନ୍ଥୁଛି ଫୁଲର ମାଳ ।

ଅପରାହ୍ଣ । ଆକାଶର ମଥାଉପରୁ ସୂର୍ଯ୍ୟ ପଶ୍ଚିମ ପାହାଡ଼ ମାଳ ଉପରକୁ ଓହ୍ଲାଇ ଆସୁଛନ୍ତି ।

ବାୟାର ବଳିଷ୍ଠ ବାହୁ ହଲାଇ ଦେଇ ମୁହଁ ପାଖକୁ ମୁହଁ ନେଇ ସୁନା କହିଲା, ମୁହଁ ଶୁଖାଇ ବସିଲେ କଅଣ ହେବ ହେ ବାୟା ? ମୋ ମାଅ ସିନା

ମଙ୍ଗିଲା, ମୋ ବାପ ନୋକା ନାୟକକୁ କଥା ଦେଲା, ମତେ ତ କେହି ପଚାରିଲେ ନାହିଁ ? ବାପ, ମା, ଭାଇ ସମସ୍ତେ ମତେ ଭଲ ପାଆନ୍ତି । ମୁଁ କେବେ ସେମାନଙ୍କ କଥାରୁ ବାହାର ହୁଏ ନାହିଁ । ତା ବୋଲି କଣ ତାଙ୍କ କଥାରେ ପଡ଼ି ମାଗତାର ହାତ ଧରି ଯିବ କି ?

ସୁନା ଡବ ଡବ କରି ଦୂରର ପାହାଡ଼ମାଳ ଆଡ଼କୁ ଚାହିଁଲା । ଦୁଇପାଖର ସବୁଜ ବଣ ମଝିରେ କଳା ମିଚ ମିଚ ଗଡ଼ାଣିଆ ପଥର ଚଟାଣ । ସେଇ ଚଟାଣ ମଝିରେ ସିଧାସଳଖ ପାଣି ଧାରଟିଏ ଗଡ଼ି ଆସୁଛି, ସୂର୍ଯ୍ୟକିରଣରେ ରୂପାପରି ଝଟକି ଉଠୁଛି । ସୁନାର ଆଖି ସେଇଠି ଲାଖିଗଲା । ବାପା ସେଇ ରୂପପଟା ଚଟାଣକୁ ଚାହିଁ ଦୁଃଖ ମିଶା ସ୍ୱରରେ କହିଲା, ଆମ କୁଳରେ ବାପ ମା କଥାରୁ କେହି କେବେ ବାହାର ହୋଇ ନାହିଁ । ସମସ୍ତେ ଯେତେବେଳେ କଥା ଠିକ୍ କଲେ, ତୋର ଆଉ ଅନ୍ୟ ଗତି ନାହିଁ । କନାମ ଗାଁର ନୋକା ନାଇକ ପୁଅ ମାଗତା ଘରକୁ ତୁ ଯିବୁ । ସେ ହେବ ତୋର ଧାଙ୍ଗଡ଼ା । ତୁଇ ଜାନର ଝିଅ, ମର ଗାଁର ନାଇକର ବୋହୂ ହେବୁ । ଭଲ ହେବ ସୁନା ।

ସୁନା ପର୍ବତ ମାଳରୁ ଦୃଷ୍ଟି ଫେରାଇଲା, ପାଦତଳେ ଗଡ଼ି ଯାଉଥିବା ଝରଣାର ପାଣିକୁ । ପଛଆଡ଼ ଜଙ୍ଗଲ ଭିତରୁ ଝିଙ୍କାରି ପଲର ଝିଁ ଝିଁ ଶବଦ କାନରେ ବାଜୁଛି । ସେଠି ପାହାଡ଼ ଗଡ଼ାଣୀରେ ଅସୁମାରି ବଣମଲ୍ଲୀ ବୁଦାରେ ନକ୍ଷତ୍ର ମାନଙ୍କର ମହୋତ୍ସବ ପରି ଅସୁମାରି ଫୁଲ । ଧୀର ପବନରେ ବାସ ଚହଟି ନାକରେ ବାଜୁଛି । ମନ ଆଜି ଉଲସି ଉଠୁ ନାହିଁ । ବାପୁର କଠୋର କଥାରେ ତାର ଠିକ ମନରେ ଦୁଃଖ ବଇଦ ଆସୁଛି । ସେ ଆଖି ଛଳଛଳ ମୁହଁ ଫଣଫଣ କରି କହିଲା, ମାଗତା ଘରକୁ ମୁଁ ଯିବି ? ମାଗତା, ମାଙ୍କଡ଼ ପରି ସେ ଡରୁଆ, ଫୁଙ୍କିଦେଲେ ଠଳି ପଡ଼ିବ । ବେଶି ମଦ ଖାଏ । ପାଗଳା ହୋଇ ଜଙ୍ଗଲ ମଝିରେ ବୁଲେ । ଅଚେତ ହୋଇ ପଡ଼େ । ଡୋଙ୍ଗର ଉପରେ ଲୁଚି କରି ମଦ ରାନ୍ଧୁଛି । ସାଲ୍‌ଟୁ ଜମାନ୍ ତାକୁ ତିନଥର ଗୁଡ଼ଉଲାଣି । ଏଥର ଧରିଲେ ଶିକ୍ଷା କରେଇବ । ସେଇ ମାଗତାକୁ ମୁଁ ଭଲପାଏନା ।

ମାଗତା ତତେ ଭଲପାଏ । ତତେ ସେ ଚାହେଁ—

ସତେ ? ହସିହସିକା ସୁନା କହିଲା, ମାଗତା କାହାକୁ ଭଲପାଏ ନାହିଁ । ଆର ବରଷ ଏଇଦିନେ ସେ ତାଡ଼କା ଭାନୁମତିକୁ ସେମିତି କହିଥିଲା । ତା ସାଥିରେ ଡୁଙ୍ଗର ଉପରକୁ ଯାଇ ତିନଦିନ ରହିଲା । ଝୋଲ ଠଙ୍କା ଦେଲା ନାହିଁ । ବାହା ହେଲା ନାହିଁ । ଭାନୁମତି କାନ୍ଦି କାନ୍ଦି ଗୋଟାଏ ଖିରସ୍ତାନ ଡମ୍ବ ପିଲାକୁ ଧରି ଆସାମ ଗଲା ଚା ତୋଳିବାକୁ, ଜାଣୁ ନାଇଁକି ?

ଜାଣେ । ଭାନୁମତି ମୋର ପରି ବାପ ମା ନ ଥିଲା ପିଲା । କୁଲି ଭୂତି କରୁଥିଲା । ତାର କେହି ନ ଥିଲେ ବୋଲି ନାଇକ ପୁଅ ମାଗତା ସିନା ଏପରି

କାମ କଲା । ଜାନର ହିଁଅ ସୁନାକୁ ସେପରି ଦଗା ଦେବାକୁ ତାର ସାହସ ହେବ କି ? ତାର ମୁଣ୍ଡଟାକୁ ଜାନ କାଟି ଦେବ ନାହିଁ କି ?

ହେଲା, ତେବେ ଲତା ସାଙ୍ଗରେ ଏମିତି ଖେଳିଲା କାହିଁକି ମାଗତା ? ଲତା ଯେବେ ପିଲାଟେ ହେଇଥିଲା, ମାଗତାର ବାପ ତାକୁ ବୋହୂ କରିବ ବୋଲି ମଦ ପାଣି ଦେଇ କହିଥିଲା ତ । ଲତା ଧାଙ୍ଗଡ଼ୀ ହେଲା ଯାଏ ଆଶା କରିଥିଲା ମାଗତା ଦିନେ ଆସିବ, ତାର ହାତ ଧରି ଘିଚିନେବ । ମାଗତାକୁ ଆମେ ଲତାର ଅଣ୍ଡିରା ବୋଲି ଚଳାଉ ନାହିଁ କି ? ଲତା ତ ଧାଙ୍ଗଡ଼ୀ ହେଲା । ସେ ଜାଣେ ମାଗତା ତାର ଅଣ୍ଡିରା । ସେଥିଲାଗି ସେ ସବୁବେଳେ ମାଗତା ମାଗତା ହେଉଛି । ଲୁକି ଲୁକି ମାଗତା ପଛେ ଧାଇଁଛି । ମାଗତା ତାକୁ ପଚାରୁନାହିଁ ।

ବାପ୍ଲା ପଚାରିଲା, ସତେ କି ସୁନା ?

ବାପ୍ଲାର ବଳିଷ୍ଠ ତମ୍ବାଳିଆ ଗୋଲ ମୁହଁରେ ଅନ୍ତରର ଉଲ୍ଲାସ । ଉଜ୍ଜ୍ୱଳ ଆଖି ଝଲସି ଉଠିଲା । ବିହ୍ୱଳ ନୟନରେ ସୁନାର ହଳଦୀ ମିଶା ଗୋଷୀର ବରନ ଉଜଳ ଆନନ ଓ ପୂରିଲା ଯୌବନର ମନଓଟରି ଶୋଭା ସମ୍ପଦକୁ ଅନାଇଁ ରହିଲା ।

ସୁନାର ଢଳ ଢଳ ଆଖିରେ ଅଳପ ସରମର ଆଭା ଖେଳିଲା । ସେ ଦୃଷ୍ଟି ଫେରାଇ କହିଲା, ଲତା ମତେ ସବୁ କହେ । କେତେ ଧାଙ୍ଗଡ଼ା ଆଇଲେ, ଲତାକୁ କହିଲେ, ହେ ଲତା, ମାଗତା ମାଗତା ହୋଇ ଝୁରି ମରିବୁ କି ? ମୋ ସାଥିରେ ଆ । କହିବୁ ଯଦି ତତେ ଓଟାର ନେବା । ଲତା ମଙ୍ଗିଲା ନାହିଁ । ଲତା କହିଲା, ଯା ଯା ରେ, ସେମିତି ହେଲେ କେତେ ଟୋକା ମତେ ମିଳିବେ । ନାଇକ ମଦ ପାଣି ଦେଇ ପାଞ୍ଚ ଗାଁର ଲୋକଙ୍କ ଆଗରେ ସ୍ଥିର କଲା । ଦଶାରି ମଙ୍ଗିଲା ଓ କହିଲା, ଲତା ନାଇକର ବୋହୂ । ତୁ କହତ ବାପ୍ଲା, ଲତା ସୁନ୍ଦର ନୁହେଁକି ? ଲତା ମୋର ପିଲାଦିନର ସାଙ୍ଗ । ମୋ ଆଖିକି ସେ କେଡ଼େ ସୁନ୍ଦର ଦିଶେ ।

ସୁନାର ମୁଣ୍ଡକୁ ଦୁଇ ହାତରେ ବାପ୍ଲା ଟେକି ଧରିଲା । ବିହ୍ୱଳ ଆଖିରେ ମୁହଁକୁ ଚାହିଁଲା । କହିଲା, ଲତା କଣ ତୋଠୁ ସୁନ୍ଦର, ସୁନା ? ତୋ ମୁହଁଟା ତୁ ଦେଖିଛୁକି ? ଏଇ ଗେଡ଼ିଆ ପାଣିରେ ଥରେ ଚାହିଁଲୁ, ବଲେ ବୁଝିବୁ, ଲତା ସୁନ୍ଦର କି ତୁ ସୁନ୍ଦର ।

କୃତ୍ରିମ କ୍ରୋଧ ଓ ଅଭିମାନରେ ସୁନା ମୁହଁ ବୁଲାଇଲା । ବାପ୍ଲାର ହାତ ଖସି ପଡ଼ିଲା । ସୁନା ବାପ୍ଲା ପାଖରୁ ଘୁଞ୍ଚି ବସି ଓଠ ଥରାଇ କହିଲା, ତୁ ବଡ଼ ଦୁଷ୍ଟ । ମତେ କଣ ଧାଙ୍ଗଡ଼ୀ କଲୁକି ଯେ ମୋ ମୁହଁରେ ହାତ ଦେଉଛୁ ?

ନିଜର ଭୁଲ ବୁଝିପାରି ବାପ୍ଲା ଲାଜରା ହେଲା । ସେ କଅଣ କହିବାକୁ ବସିଥିଲା କହି ପାରିଲା ନାହିଁ । ଗୁଢ଼ ତଳର ଛପିଲା ବ୍ୟଥା ତାର ସୁନ୍ଦର ମୁହଁରେ ଘୁଡ଼ିଫଳିଲା । ସେ ସୁନାର ହାତ ଧରିଲା, ଥରିଲା ଓଠରେ କହିଲା, ମୁଁ ଗଲିବ, ମୁଁ

ମୂଲ୍ୟ । ଜାନର ଝିଅର ହାତ ଧରି ଘରକୁ ଆଣି ତାକୁ ଏଇ ଭଙ୍ଗା କୁଡ଼ିଆରେ ରଖିବ ? ଦେଖ, ଏଇ ମୋର ଘର । ଉପରେ ଛପର ନାହିଁ, କାନ୍ଥର ଝାଟି ଝାଲି ହେଲାଣି ।

ସୁନା ହାତ ଖସାଇ ନେଇ ପାରିଲା ନାହିଁ । ତାର ସାରା ଅଙ୍ଗରେ ତାରୁଣ୍ୟର ତଡ଼ିତ୍ ପ୍ରବାହ ଖେଳିଲା । ସେ ଅଦୂରରେ ଥିବା ବାଘୁଆର ଭଙ୍ଗା କୁଡ଼ିଆକୁ ଚାହିଁଲା ।

ବାଘୁଆ ପଚାରିଲା, ଶୁଣିବୁ ମୋ କଥା ?

ସୁନା ପଚାରିଲା ଆଖିରେ ଚାହିଁଲା ।

ତାର ଦୃଷ୍ଟିରୁ ବାଘୁଆ ସଂକେତ ପାଇଲା, ସେ ଶୁଣିବାକୁ ଚାହେଁ, ଜାଣିବାକୁ ଚାହେଁ । କହିଲା, ମୋ'ର ଏଇ ଏକୁଟିଆ ଦରଭଙ୍ଗା କୁଡ଼ିଆ ଭିତରେ ମୁଁ ରହେ । ବର୍ଷା ଆସେ, କୁଡ଼ିଆ ଭିତରେ ପାଣି ପଶେ । ଦି କୂଲି ଖାଇ ଗେଡ଼୍‌ଡାରେ ବହିଯାଏ ପାଣି । ତାଆରି ଉପରେ ସେ ଯେଉଁ ପଥର ଖୋଲି, ସେଇଠି ଦିନରାତି ଲୁଚି ବସେ । କେବେ କେମିତି ପଦାକୁ ବାହାରି ଜନ୍ତୁ ବୁଡ଼ି ଡୋଙ୍ଗର କଡ଼ରୁ କନ୍ଦା ଖୋଳି ଖାଏ । କେତେ ଦିନ କେତେ ରାତି କଟିଯାଏ । ପେଟରେ ପେଜ ପଡ଼େ ନାହିଁ । ଜଙ୍ଗଲର କନ୍ଦା, ଝୋଲାର ପାଣିରେ ଜୀବନ ରଖେ ।

ସେ ଚୁପ ହେଲା ।

ଚୁପ ହେଲୁ ଯେ ? କହ ବାଘୁଆ, ତୋ କଥା ମୁଁ ଶୁଣିବ ।

ଶୀତ ଆସେ । ଏଇ କୁଡ଼ିଆର ଚଟାଣ ଉପରେ ପତର ପାରି ଶୁଏ । କାନ ଥୋଡ଼ିହୁଏ । ମୁଣ୍ଡ ଉପରେ ନିଆଁ ଜାଳେ । ପାହାଡ଼ ଉପରୁ ବୋବାଳି ଛାଡ଼େ ବାଘ । ଭୟରେ ଥରି ଥରି ଉଠି ବସେ । ଧନୁଶର ଧରେ । ତାଟି କବାଟ ବନ୍ଦ କରି ବସିରହେ । ବାଘ ଓହ୍ଲାଏ । ଗେଡ଼୍‌ଡାରୁ ପିଏ ପାଣି । ପାଣି ଚଟାଣ ଉପରେ ବସେ । ବର୍ଷା ଦିନର ଘଡ଼ଘଡ଼ି ପରି ସେ ଗର୍ଜନ କରେ । ପାହାଡ଼ ଜଙ୍ଗଲ ଥରି ଉଠେ, ସତେକି ପର୍ବତ ଅଜାଡ଼ି ହୋଇ ପଡ଼ିବ । ଧନୁରେ ଶର ଲଗାଏ । କାନଯାଏ ଟାଣେ । ମନକରେ ଛାଡ଼ି ଦେବି । ସୁନା, କେବେକାର କଥା ମୋର ମନେ ପଡ଼େ । ପିଲାଟେ ହୋଇଥିଲି । ଜହ୍ନ-ରାତି । ଏମିତି ବାଘ ବୋବେଇ ଥିଲା । ବାପ ଧନୁଶର ଓ ଟାଙ୍ଗି ଧରି ପଦାକୁ ଆସିଲା । ପଥର ପଛରେ ଛପି ମାରିଦେଲା କାଣ୍ଡ । ବାଘ ମାଡ଼ ଖାଇ ଚମକି ଆସି ବାପକୁ ଧରିଲା । ବାପ ଟାଙ୍ଗି ଚୋଟେ ମାଇଲା ତା ମୁଣ୍ଡରେ । ବାପ ମଲା, ବାଘ ବି ମଲା । ସୁନା ଲୋ, ମୁଁ କାଣ୍ଡକୁ ଧନୁରୁ ଖସାଏ । ଭାବେଁ, କାଳେ ମୋର ବାପର ଡୁମା ବାଘ ହୋଇ ମତେ ଦେଖିବାକୁ ଆଇଥିବ । ବାଘ ଚାଲିଯାଏ । ମୁଁ ପଦାକୁ ବାହାରେ— ।

ବାଘୁଆ ଦୀର୍ଘଶ୍ୱାସ ଛାଡ଼ିଲା । ଚୁପ ହେଲା ।

ସୁନା ବାଯ୍ୟା କଡ଼କୁ ଧୀରେ ଧୀରେ ଘୁଞ୍ଚିଆସି ତାର କାନ୍ଧରେ ହାତ ପକାଇ କହିଲା, ତୁନି ରହିଲୁ କାହିଁକି ? କହ, ଆହୁରି କହ ।

କଅଣ କହିବି ଗୋ ଜାନିର ଝିଅ ? ମୋର ଦୁଃଖ ତୁ କାହିଁକି ଶୁଣିବୁ ? ଖରା ଦିନେ—ଏଇ କୁଡ଼ିଆ ତଳୁ ଯେଉଁଠି ମୂଷା ଗାତ ଫୁଟାଏ, ସେଇ ଗାତ ଭିତରୁ ସରୁ ସରୁ ମୁହଁ କାଢ଼ି, ଜଳଜଳ ଜଳଜଳ ଆଖିରେ ସାପମାନେ ଚାହାନ୍ତି । ଦିନେ ଏଇ ସାପରୁ ଗୋଟାଏ ମୋ ମାଆକୁ କାମୁଡ଼ିଲା । ମାଆ ମଲା । ଡରି କରି ମୁଁ ପଦାକୁ ଆସେ । କେତେ ଦୁଃଖ ମୋର । କଅଣ ତତେ କହିବି ସୁନା ? ବଣର ଜନ୍ତୁ, ଜଙ୍ଗଲର କନ୍ଦା, ଫଳ ମୂଳ, କାଇ, ଉଇ, ବେଙ୍ଗ, ଏଇଆ ମୁଁ ଖାଏଁ । କେବେ କପରୁ ପେଜ ଚାଖେ ।

ସୁଖରେ ଥାଉଚୁ ତ ବାଯ୍ୟା !

ସୁଖରେ ନୁହେଁ ଆଉ କଅଣ ? ସେଥିଲାଗି ତତେ କହୁଛି ସୁନା । ଜାନିର ଝିଅ ତୁ, ପିଲାଦିନୁ ସୁଖରେ ବଢ଼ିଚୁ । ଦୁଃଖ କଷ୍ଟ ଜାଣିନୁ । ମାଗତାକୁ ତୁ ବାହା ହ । ଖୁସିରେ ରହିବୁ । ଦେଖ, ନୋକା ନାଇକର ବଡ଼ଘର, ଜମିବାଡ଼ି । କେତେ ଗାଈ ଗୋରୁ, ପୁଡ଼ି, ଖମାର । ସବୁ ତୋର ହେବ ସୁନା, ସବୁ ତୋର ହେବ । ତୁ ଭଲରେ ରହିବୁ । ନାଇକ ମତେ ଖମାର ରଖିବାକୁ ଖବର ପଠେଇ ଥିଲା । ମାଗତା ବି କହିଲା । ମୁଁ ମଙ୍ଗିଲି ନାହିଁ । ଆରେ ସୁନା, ତୁ ଯା ମାଗତା ଘରକୁ । ମୁଁ ଯିବି, ତୋର ଖମାର ହେବି । ତୋର କାମ କରିବି । ତୋର ଭଲ ପାଇଁ ଜୀବନ ଦେବି ସୁନା, ଜୀବନ ଦେବି । ତୋ ହାତର ପେଜ ଖାଇବି ସୁନା ପେଜ ଖାଇବି । ଦେବୁ ନାହିଁକି ?

ବାଯ୍ୟାର ଆଖି ଛଳ ଛଳ ହୋଇ ଆସିଲା ।

ସୁନା ସହି ପାରିଲା ନାହିଁ । ଦୁଇହାତ ବାଯ୍ୟାର ବେକରେ ଛନ୍ଦି, ତା ଉପରକୁ ଆଉଜି ପଡ଼ିଲା । ଆଖି ଓଦା ହେଲା । କହିଲା, ପେଜ ଦେବି ବାଯ୍ୟା, ମାଗତାର ଘରେ ନୁହେଁ ତୋର ଏଇ ଖଣ୍ଡିଆ, ଭଙ୍ଗା ଘରେ । ନିଜେ ରାନ୍ଧିବି, ଆଉ ତତେ ଆଗ ଦେବି, ଯାହା ବଳିବ ମୁଁ ଖାଇବି ।

ବାଯ୍ୟା ଘୁଞ୍ଚି ଆସିଲା । ସୁନାର ଦୁଇ ହାତ ତଳେ ଖସି ପଡ଼ିଲା । ତା ମୁହଁକୁ ଚାହିଁ ସେ କହିଲା, ନାଇଁ, ନାଇଁ ସୁନା, ତୁ ଚାଲିଯା ମୋ ପାଖରୁ । ଗରିବ, କାଙ୍ଗାଳ, କୁଲଟା ମୁଁ । ମୋ ସାଥିରେ ତୁ କଷ୍ଟ ପାଇବୁ କାହିଁକି ? ମାଗତା ଘରେ ଘରଣୀ ହେବୁ । ଏଇ ପିଠିରେ ନାଉ କରି, ଏଇ କୋଳରେ ଝୁଲାଇ, ତୋ ପିଲାଙ୍କୁ ମୁଁ ମଣିଷ କରିବି । ବଞ୍ଚିଥିବା ଯାଏ ତୋ ପାଖେ ପାଖେ ଥିବି ସୁନା !

ରାଗ ତମତମ ହୋଇ ପଥର ଚଟାଣ ଉପରୁ ସୁନା ଉଠି ଆସିଲା । ତଳେ ଠିଆ ହୋଇ କଟମଟ କରି ବାଯ୍ୟାର ମୁହଁକୁ ଚାହିଁ କହିଲା, ମାଗତାର ମାଇପ ହେଇ ଖୁସିରେ ରହିଲେ ମତେ ଖମାର ରଖିବାକୁ ଲୋକ ମିଳିବେ । ବାଯ୍ୟାକୁ ଖମାର ନ ରଖିଲେ କାମ ଅଚଳ ହେବ ନାହିଁ ।

ଅଭିମାନ କରି ଚାଲି ଯାଉଥିଲା ସୁନା । ବାୟା ଉଠିଲା । ଅଧା ଗୁନ୍ଥା ଫୁଲ ମାଳ ଧରି ତାର ପଛେ ପଛେ ଯାଇ ସୁନାର ହାତ ଧରି ଅଟକାଇ ରଖିଲା ।

—ଛାଡ଼୍ ମୋର ହାତ ବାୟା, ସୁନା ହାତ ଛୁଆଁଡ଼ି କହିଲା । ତୁ ଅନାଥ, ଗରିବ, ମୂଲିଆ । ତୋର ଘର ନାହିଁ, ଭୂମିବାଡ଼ି ନାହିଁ । ତୋର ଗାଈ କି ଘୁଡ଼ି ନାହିଁ, ଏ ସବୁ ସତ କଥା । ହେଲେ, ତୋର ତୁ ନିଜେ ଅଛୁ । ତୋର ଶକ୍ତି ଅଛି, ଭଲପଣ ଅଛି, ସାହସ ଅଛି । ଯାହା ତୋର ନାଇଁ ସେତକ କରି ପାରିବୁ ତ ?

ବାୟା ବଜୀତ ହୋଇ କହିଲା, ରାଗିଲୁକି ସୁନା ?

ସୁନା ଗୁଲିପଡ଼ି କହିଲା, ରାଗିବି କାହିଁକି ? ତୁ ଯଦି ଗରିବ ପିଲା, ମତେ ଯଦି ବାହା ହୋଇ ଘରକୁ ଅଣିବାକୁ ତୋର ସାହସ ନାହିଁ, ମୋ ହାତ ଧରି ଅଟକାଇ ରଖନା । ଅଜଠୁଁ ତୋର ମୋର ଛାଡ଼ିଗଲା । ତୁ ଅଉ ମତେ କଥା କହିବୁ ନାହିଁ ।

ସୁନା—

ଯାହା କହିଲୁ ସତ କଥା ।

ତୋର ଭଲ ପାଇଁ ମୁଁ କହୁଥିଲି ।

ମୋର ଭଲ ? ହଇରେ, ପାଣି ପବନ, ବାଘ ସାପ, ଉପାସ-ଭୋକ, ଏଇ କଥା କହି ମୋତେ ଡରାଇବୁ ? ପାଖରୁ ତଡ଼ି ଦେବୁ ? ବାପ ମୋର ଜାନି ହେଲା, ଜାକରି ଠାକୁରାଣୀ ପୂଜିଲା ବୋଲି କଣ ମୁଁ କନ୍ଧଘର ଝିଅ ନୁହେଁକି ? ବଣ, ଜଙ୍ଗଲ, ଡୋଙ୍ଗର, ବାଘ ଓ ପେଟକୁ ଡରିବି ? ଚାହିଁ ଦେଖିଲୁ ଚାରିଆଡ଼କୁ, କେତେ ପାହାଡ଼, ଡୋଙ୍ଗର, ଝୋଲା । କେତେ ଗଛ । ଆମର ରହିବାକୁ ଥାନ ମିଳିବ ନାହିଁ ? ଦୁଇଟା ପେଟ ପୋଷିବାକୁ ଫଳମୂଳ, ଜୀବଜନ୍ତୁ ପାଇବା ନାହିଁ ? ଘରକରି ପଲା ବାନ୍ଧି ରହିବାକୁ ଡାଳ ପତର ଯୋଗାଡ଼ ହେବ ନାହିଁ ? ଲୁଗା ନ ମିଳିଲେ ପତର ମାଳ ଅଣ୍ଟାରେ ବାନ୍ଧିବା । ତେଲ ହଳଦୀ ନ ମିଳିଲେ ବଣର ରଙ୍ଗିଲା ମାଟି ଦେହରେ ବୋଳିବା । ଫଳମୂଳ, ଧାନ କାନ୍ଦୁଲ ନ ମିଳିଲେ ତେନ୍ତୁଳି ମଞ୍ଜି ଚୂରି ଖାଇବା । ଆଉ ଲୋଡ଼ା କଣରେ— ?

ପାରିବୁ ସୁନା ? କୃତଜ୍ଞତାରେ ଆଖି ଛଳଛଳ କରି ବାୟା ପଚାରିଲା ।

ପ୍ରେମପାଗଳିନୀ ସୁନା ତାର ମନର ମଣିଷ ବାୟାକୁ ଅଶାଭରା ଆଖିରେ ଚାହିଁଲା । କି ସୁନ୍ଦର ରୂପ, କେଡ଼େ ଚମତ୍କାର ସ୍ୱାସ୍ଥ୍ୟ । ସବୁ ପୁଅ ଓ ଝିଅଙ୍କ ପାଇଁ ହସିହସିକା ସବୁ କାମ କରେ କିନ୍ତୁ ନିଜର ଅବସ୍ଥା ବୁଝି ସେ ଦୂରେଇ

ରହେ । ସମସ୍ତଙ୍କ ପାଖରୁ କଢ଼େଇ ଯାଏ । ହାତଧରି ଅରଣ୍ୟର ନିର୍ଜନ ଥାନକୁ ନେବାକୁ ମନକଲା ଝିଏ ହତାଶ ହୁଅନ୍ତି । କେତେ ଆଖି ଦେଖାଇ ହସିହସିକା କରଛଡ଼ା ଦେଇ ଚାଲିଯାଏ ସିନା, ସୁନାର ମନ ତ ଗୋଡ଼ାଏ ତା ପଛରେ ।

ସୁନା କହିଲା, ପାରିବ । ସେଇ ଡ଼ୁଙ୍ଗର ସେପାରି, ନିମଗିରି ପର୍ବତ ଉପରେ ଯେଉଁ କନ୍ଧ ପିଲା ଘର କରି ରହିଛନ୍ତି, ସେମାନେ କେମିତି ଅଛନ୍ତି ? ଆମେ ପାହାଡ଼ରେ ନିଆଁ ଲଗାଇବା । ତୋର ମୋର ମିଶି ପୋଡ଼ୁଚାଷ କରିବା । ଭଲ ହେବ ବାୟା । ତୁ ଆଗରେ ଚାଲିଲେ ମୁଁ ତୋ ପଛରେ ଚାଲିବ । ତୁ ହଟିଗଲେ ମୁଁ ଆଗକୁ ଯାଇ ତୋ ହାତ ଧରିବ । ଚାଲିଥିବା । ଆମର ଘର କେତେ ବଡ଼, ଆମର ରାଜ୍ୟ କେତେ ବଡ଼ । ଦେଖ ଚାରିଆଡ଼କୁ । ଓଃ, ଆଖି ପାଉନାହିଁ ।

ପାରିବୁ ସୁନା ?

ପାରିବ । ଆମର ଶ୍ରେଷ୍ଠ ଗାଁର ଶ୍ରେଷ୍ଠ ଘର ଭିତରେ ବାନ୍ଧି ହୋଇ ରହିବାକୁ ଭଲ ଲାଗୁନାହିଁ ।

ଫୁଲ ମାଳକୁ ସୁନାର ଖୋସାରେ ଗୁଡ଼ାଇ ବାୟା କହିଲା, ଯିବା ଡଙ୍ଗର ସେପାରି ନିମଗିରି ପାହାଡ଼କୁ ? ଯିବା,—ଓଃ, ବହୁତ ଦୂର - ଯେଉଁଠି ଚାରିଆଡ଼େ ପାହାଡ଼ ଥିବ, ମଝିରେ ଅଗନାଗି ବନସ୍ତ, କୁଆ କୋଇଲିର ରାବ ନାହିଁ, ସୂର୍ଯ୍ୟର ମୁହଁ ଦିଶିବ ନାହିଁ, ମଣିଷର ପାଦ ପଡ଼ି ନ ଥିବ । ଝରଣାର କୂଳରେ ଆମେ ତୋଳିବା ଆମର ପତର କୁଡ଼ିଆ, ସେଇଠି ରହିବା, ଯିବା ସୁନା ?

ଯିବାରେ ବାୟା ।

ଫେରିବା ନାହିଁ ?

ଫେରିବା ନାହିଁ ।

କେବେ ?

ଆଜି ।

ଆଜି ?

ମହୁଲ ଗଛ ଉଡ଼ରେ ଅକର୍ମଶିଳା । ତା ପାଖରେ ବୁଦବୁଦକା ଜଙ୍ଗଲ । ତାରି ଭିତରୁ ହସିହସିକା ବାହାରି ଆସିଲା ହୁଅଲ ବୁଦ୍ଧି ଡମ୍ବ । କହିଲା, ନା ଆଜି ନୁହେଁ । ଆଉଦିନେ ଯିବ । ଅପେକ୍ଷା କର ।

ସୁନା ଓ ବାୟା ଚମକି ଉଠିଲେ । ପରସ୍ପର ପାଖରୁ ଘୁଞ୍ଚି ଠିଆହୋଇ ନିଃସହାୟ ଆଖିରେ ବୁଦ୍ଧିକୁ ଚାହିଁଲେ ।

ବୁଢ଼ା ହସିଲା ମୁହଁରେ କହିଲା, ତମ ଦୁହିଙ୍କୁ ଖୋଜି ଖୋଜି ଆସୁଥିଲି । ଏଇଠି ଦେଖିଲି । ତମ କଥା ମୁଁ ଲୁଚି ଲୁଚି ସବୁ ଶୁଣିଛି । ଆରେ ବାସୁ, ନାଇକ ଆଜି ଜାନ ସ୍ଥିର କଲେ ଯେ ସୁନାର ବାହାଘର ମାଗତା ସଙ୍ଗେ ହେବ । ଦଶାହ ଦିନ ଠିକ୍ କରିବ । ମୁଁ ସେଠି ଥିଲି । ଛି, ମାଗତାଟା କଅଣ ମଣିଷ ? ସୁନାର ହାତ ଧରିବାକୁ ସେ ଯୋଗ୍ୟ କି ? ସୁନା ନାଗି ଏକା ତୁଇରେ ବାସୁ, ତୁ ସୁନାକୁ ବାହା ହେବୁ ।

ଆଗ୍ରହରେ ଦୁହିଁଙ୍କ ମୁହଁ ପ୍ରଫୁଲ୍ଲ ଦିଶିଲା ।

ବୁଢ଼ି ବାରିକ ସେମାନଙ୍କୁ ବୁଝାଇ କହିଲା, ବାପ ଦାଦର ଗାଁ ଛାଡ଼ି ନମଗିର ପାହାଡ଼କୁ ଯିବ କାହିଁକି ? ଜାଣୁ ନାହଁକି, ବାହାଘର ନ ହେଲେ ଜାକର ଠାକୁରାଣୀ ମଦ ପାଣି ପାଇବ ନାହିଁ, କୁକୁଡ଼ା ଗୋରୁ ଖାଇବ ନାହିଁ । ତୁମ ପୂର୍ବ ପୁରୁଷର ଡୁମାମାନେ ଖୁସି ହେବେ ନାହିଁ । ଏଇ ଗାଁର ପାହାଡ଼ ଖୋଲରେ, ଗଛବୃକ୍ଷ ପଥର ସନ୍ଧିରେ କେତେ ରୂପରେ ସେମାନେ ବସି ବୁଲୁଛନ୍ତି । ତାଙ୍କୁ ଛାଡ଼ି ତୁମେ ଲୁଚି ଲୁଚି ଯାଇ ପାରିବ ନାହିଁ । ମଣିଷ ଯିନା ଦେଖିବ ନାହିଁ, ସେମାନେ ଦେଖିବେ । ତମ ପଛରେ ଗୋଡ଼ାଇ ଯିବେ । ବଣ ଜଙ୍ଗଲ ମଝିରେ ବାଘ ଭାଲୁ କି ସାପ ରୂପରେ ବାହାରି ପଡ଼ିବେ । ନୋହିଲେ, ରୋଗ ବଇରାଗ ତମ ଉପରେ ଛୁଇଁ ଦେବେ । ବେଶୀ ଦୂର ଯାଇ ପାରିବ ନାହିଁ । ଜାକର ଠାକୁରାଣୀ ତୁମକୁ ଖାଇଦେବ ।

ଭୟରେ ଆକୁଳ ଆଖିରେ ସୁନା ଓ ବାସୁ ଚାରିଆଡ଼କୁ ଚାହିଁଲେ । ସତେ କି ପୂର୍ବ ପୁରୁଷର ଆତ୍ମା ପ୍ରତି ପଥର, ଗଛ ଓ ଗେଡ଼୍ଡାର ପାଣି ଭିତରୁ ବାହାରି ପଡ଼ୁଚନ୍ତି । ସତେ କି ପାଖ ପାହାଡ଼ ଭିତରୁ ଜାକର ଠାକୁରାଣୀ କେତେ ରୂପରେ ଗୋଡ଼ାଇ ଆସୁଛି ।

ବାସୁ ଥରିଲା ଓଠରେ ପଚାରିଲା, ତେବେ କଅଣ କରିବା ବୁଢ଼ିଆ—?

ସୁନାକୁ ତୁ ବାହା ହେବୁ । ତୋର ଏଇ ଅରମା ଟିଅରେ ଭଲ ଘର ତୋଲା ହେବ । ସେଇଠି ତୁମେ ସୁଖରେ ରହିବ । ଡୋଙ୍ଗର ଉପରେ ଚାଷ କରିବୁ । ଧୀରେ ଧୀରେ ଜଙ୍ଗଲ କାଟି ଭୂମି କରିବୁ, ପୁଞ୍ଜ ରଖିବୁ । ଦେହରେ ତୋର ତାକତ ଅଛି । ସବୁ ହେବ, ସବୁ ସୁବିଧା ତତେ ଜାନ କରିଦେବା ଖାଲି ତୁ ସୁନାକୁ ବାହା ହୋଇ ପଡ଼ ।

ଜାନ ମାଗତା ବିଷୟରେ କଥା ହେଲାଣି ।

ବୁଢ଼ିଆ କହିଲା, ହେଉ । ବାହାଘର ଡେରିଅଛି । ଏ ବେଳେ ତୁ ସୁନାକୁ ଘିଚି ନେଇ ଡୋଙ୍ଗରକୁ ପଳା । ଡୋଙ୍ଗର ସେ ପାଖ ଜଙ୍ଗଲ ଭିତରେ ଝୋଲା କୂଳରେ ଯେଉଁ ଭଙ୍ଗା ଘର ପଡ଼ିଛି, ସେଇଠି ଦୁଇ ଚାରିଦିନ ରହିବ । ଆଲୋ ସୁନା, ତୋର ରାଜି ତ ?

ଲାଜରେ ସୁନାର ମୁହଁ ରଙ୍ଗ ହେଲା । ତଳକୁ ମୁଣ୍ଡ ପୋତି ସମ୍ମତି ସୂଚକ ମୁଣ୍ଡ ହଲାଇଲା ।

ବୁଦ୍ଧି କହିଲା, ବେଶ୍ । ଗାଁ ଝିଅଙ୍କ ସଙ୍ଗେ ଯେତେବେଳେ ସୁନା ପାଣି ପାଇଁ ଗେଡ଼୍ଡାକୁ ଆସିବ, ସେତିକବେଳେ—ଏଁ ?

ବାୟା ପଚାରିଲା, ଛଅଦିନ ପରେ, ଯେତେବେଳେ ଜାନି ଆସି ଝୋଲା (ଯୌତୁକ) ଟଙ୍କା ମାଗିବ, ଯେତେବେଳେ ଗାଁ ଲୋକେ ଖାଇବାକୁ ମଦପାଣି, ଗୋରୁ, କୁକୁଡ଼ା, ଟଙ୍କା ମାଗିବେ ମୁଁ କୋଉଠୁ ଆଣି ଦେବି ?

ଆରେ, ଏଇଥି ପାଇଁ ଭାବୁଛୁ ? ଟଙ୍କା ମିଳିବ ନାଇଁ ? ସବୁ ମିଳିବ । ଚାଲ୍, ସେଇ ଗଛମୂଳକୁ । ସେଇଠି ସବୁ କଥା କହିବି ।

ବୁଦ୍ଧିଆ ବାୟାର ହାତ ଧରିଲା । ବାୟା ସୁନାକୁ ଚାହିଁଲା ।

ବୁଦ୍ଧି ହସି ହସି କହିଲା, ତୁ ଯା ସୁନା, ସଞ୍ଜ ହୋଇ ଆସୁଛି । ବାୟାକୁ ମୁଁ ସବୁ ବତାଇବି । ହଁ, ଦେଖ, ଯେଉଁ ଦିନ ସେ ତୋର ହାତ ଧରିବ—କଥା ଅଧା ରଖି ଦେଲା ।

ସୁନା ଗୋଟିଏ ବାଟରେ, ବୁଦ୍ଧି ଓ ବାୟା ଆର ବାଟରେ ଗଲେ । ସୁନା ଭାବିଲା ବୁଦ୍ଧିଆ ବାରିକ ଭଲ ମଣିଷ । ଛନୋଟି ଗାଆଁର ବାରିକ । ସମସ୍ତଙ୍କ ମନକଥା ଜାଣି କାମ କରେ । ବୁଦ୍ଧି ବତାଏ । ବାୟା ନିଶ୍ଚୟ ତା କଥା ମାନିବ ଓ ତାକୁ ଟାଣି ନେବ । ବାୟା ହେବ ତାଅର ବର ।

ମନ ଖୁସିରେ ସୁନାର ପାଦ ବାଟ ଅବାଟ ମାନିଲା ନାହିଁ । ଗୁଣୁ ଗୁଣୁ ହୋଇ ଗୀତ ବୋଲିଲା ।

ଜନାମ ଗାଁର ଉପକଣ୍ଠ । ପାହାଡ଼ କଡ଼ ଜଙ୍ଗଲ ମଝିରେ ବଙ୍କେଇ ବଙ୍କେଇ ବାଟ ପଡ଼ିଛି । ଚଉଦ ପନ୍ଦର ବର୍ଷର କନ୍ଧ ଝିଅଟିଏ ମୁଣ୍ଡରେ ଶୁଖିଲା କାଠ ବୋଝ ଧରି ଯାଉଛି । ଗୋଟେ ମୁଣ୍ଡିଆ କଡ଼ରେ ରାସ୍ତା ବଙ୍କେଇ ଗାଁ ଆଡ଼କୁ ଯାଇଛି । ଠିକ୍ ସେଇ ଜାଗାରୁ ଆଉ ଗୋଟିଏ ବାଟ ଝୋଲାର କଡ଼େ କଡ଼େ ପଡ଼ିଛି ପୁଗି ଗାଁ ଆଡ଼େ । ବାଙ୍କୁଲ ବାଟର କଡ଼ରେ ଗଛ ମୂଳରେ ବସିଛି ମାଗତା । ମଦ ନିଶାରେ ଆଖି ରଙ୍ଗା । ଗୋଟିଏ ହାତରେ ନାଉ ତୁମ୍ବା । ଆର ହାତରେ ଟାଙ୍ଗି । ବେଳ ଦିପହର । ଖରାଦିନର ଝୋଲାମରା ତାତି ।

କନ୍ଧ ଝିଅକୁ ଦେଖି ମାଗତା ଠିଆହୋଇ ଡାକିଲା, ହେ ପୁଲକି- ପୁଲକି— ।

ପୁଲକ ଠିଆ ହେଲା । କଳା ମିଚମିଚ ବଳିଷ୍ଠ ଝିଅ ସେ । ଗୋଲ ମୁହଁରେ ଜଡ଼ା ତେଲର ମରଣ । ଚକ୍ ଚକ୍ ଦିଶୁଛି । ଆଖି ଚାରି ଆଡ଼କୁ ଭ୍ରମି ଯାଉଛି । ଦୃଢ଼ ସ୍ୱରରେ ସେ ପଚାରିଲା, କଣରେ ?

ଶୁଣ୍ ।

କହ ଯଲ୍‌ଦି । ବେଳା ହୋଇ ଯାଉଛି, ଯିବା ।

ଯିବୁ କେଉଁଠି ?

କୁଆଡ଼େ ରେ ମାଗତା— ?

ହେ ଯେଉଁ ଡୋଙ୍ଗର ଦିଶୁଛି, ହେ—

କାହିଁକି ?

ଏଇଁ, କାହିଁକି ? ତତେ ନେଇ ପଳେଇବି । ତୁଇ ମୋର ଧାଙ୍ଗଡ଼ୀ ହେବୁ । ସୁନାଟା ଭଲ ନୁହେଁ । ସେ ମୋର କନିଆ ହେବ ନାହିଁ । ତୁଇ ହବୁ । ଚାଲ—

ପୁଲକର ହାତ ଧରିବାକୁ ଆଗେଇ ଆସିଲା । ଭୟ ଓ ବିସ୍ମୟରେ ପୁଲକ ପଛେଇ ଗଲା । ଚିଡ଼ିଯାଇ କହିଲା, ଦୂରେଇ ଠିଆ ହ, ହେ ମାଗତା । ବେଶି ଗୁଡ଼ାଏ ମଦ ପିଇଛୁ ! ଉଠ୍, ବାଟ ଛାଡ଼ କହୁଛି—

ଅସ୍ଥିର ପାଦରେ ଆଗକୁ ଦୁଇପାଦ ଆସି ମାଗତା ନାଉ ଦୁମ୍ବା ଟେକି କହିଲା, ପିଇବୁ ପୁଲକ ପିଇବୁ ?

ମଦ ନିଶାରେ ମାଗତାର ହିତାହିତ ଜ୍ଞାନ ହଜିଛି । ସଳଖ ହୋଇ ସେ ଠିଆ ହୋଇ ପାରୁ ନାହିଁ । ଟଳ ଟଳ ହେଉଛି । ଆଖି ଦୁଇଟାରେ ରଙ୍ଗ ଚଢ଼ିଛି । ତା କଥା ଶୁଣି ପୁଲକ କହିଲା, ମୁଁ ପିଏ ନାହିଁ । ଉଠିଲୁ ତୁ ବାଟରୁ—

ଚାଲ, ହେଇ ଡୋଙ୍ଗର ଉପରକୁ ପଳେଇବା । ମୋର କନିଆଁ ହେବୁ । ମୁଁ ତତେ ବାହା ହେବି ପୁଲକ । ତୋ ବାପକୁ ଝୋଲେ ଟଙ୍କା ଦେବି । ଲୁଗା ଦେବି । ମଦ ଦେବି—ଯେତେ କହିବ । ଗାଁ ଲୋକଙ୍କୁ ଗାଈ ଦେବି, ଘୁଷୁରି ଦେବି, କୁକୁଡ଼ା ଦେବି । ଚାଲ୍, ପଳାଇବା । ଚାଲ—

ଅରେ ମାଗତା, ତୋ ବଂଶ ମଲିକା, ମୋ ବଂଶ ମଲିକା । ତୁ ମୋର ଭାଇ ହେବୁରେ, ମୁଁ ତୋର ଭଉଣୀ ହେବି । ମୁଁ କେମିତି ତୋର କନିଆଁ ହେବି ? ତୁ କେମିତି ମତେ ଧାଙ୍ଗଡ଼ୀ କରିବୁ ? ପାଗଳ ହେଲୁ କି ? ବାଟ ଛାଡ଼, ମୁଁ ଯାଏ ।

ତୋର ମାଆକୁ କୋଡ଼ିଏ ଟଙ୍କା ଜୋରିମାନା ଦେବି । ଗାଁ ଲୋକଙ୍କୁ ଦେବି । ନାଇକର ପୁଅ ମୁଁ । ଟଙ୍କା ନାଇଁକି ?

ତୋର ଟଙ୍କା ତୋ ଘରେ ରଖିଥା । ତୁ ମୋର ବଂଶ ଭାଇଟା । ତୋ ସାଥିରେ ମୁଁ ଯିବି ନାହିଁ । ସୁନାକୁ ଘିଚି ନେଇ ଯାଉନୁ ?

ସୁନା, ସୁନା ? ସେ ଭଲ ନୁହେଁ । ସେ ଯିବ ନାହିଁ । ତାକୁ ଠେଙ୍ଗିରେ ହାଣି ଦେବ । ବାଘୁଆକୁ ହାଣିବ । ସୁନା ଯିବ ନାହିଁ । ବାଘୁଆ ସାଥିରେ ଯିବ । ବୁଢ଼ିଆ ଡମ୍ବ କହୁଥିଲା । ବାଘୁଆ ତାକୁ ଘିଚ ନେବ ।

ତେବେ, ହେ ମାଗତା, ଲତା ସାଥିରେ ତୁଇ ପଳା ଯା । ଲତା କହୁଥିଲା ତୁଇ ତାକୁ ନ ନେଲେ, ସେ ତତେ ଓଁଠାଉ ନେଇ ଡୋଙ୍ଗରକୁ ଚାଲି ଯିବ । ହସି ହସି କହିଲା, ପୁଣି ତୁ ତାକୁ କନିଆଁ ନ କଲେ ସେ ତତେ ବର କରିବ । ତତେ ସେ ଧାଙ୍ଗଡ଼ା କରିବ । ସେ ଝୋଲା ଠଙ୍କା ତୋ ବାପ ନାଇକକୁ ଦେବ । ତୁ, ତାର ସାଥିରେ ଯା । ପୁଣି ହସିଲା ।

ମାଗତା ଚାରିଆଡ଼କୁ ଚାହିଁ ପଚାରିଲା, ଲତା ମତେ ଘିଚ ନେବ କି ? ଏଁ, ଲତା ? ସେ ବଟଲର ଡମ୍ବା, ମୁଁ ମାଙ୍କଡ଼ ଡମା । ଲତା ମତେ ନେବ ? ଏଇ ଠେଙ୍ଗିରେ ତା ମୁଣ୍ଡ ହାଣିଦେବ । ଏଇ ଠେଙ୍ଗି—

ତୁ ଯାହା କରୁଛୁ କରୁଥା, ମତେ ବାଟ ଛାଡ଼ । ହେ ମାଗତା, ମୋର ଡମ୍ବା ବାଘଡମ୍ବା, ଜାଣିଚୁକି ? ମୋ ହାତ ଧରି ଟାଣି ନେଲେ, ମୁଁ ତତେ ଖାଇଦେବ । ଉଠ—

ପୁଲକ ଅଡ଼େଇ ହୋଇ ଚାଲି ଯିବାକୁ ବସିଲା । ମାଗତା ଝଲଝଲ ତାର ହାତ ଧରି ଟାଣିନେଲା । ପୁଲକର ମୁଣ୍ଡରୁ କାଠ ବୋଝ ଖସି ପଡ଼ିଲା । ପଡ଼ୁ ପଡ଼ୁ ଅଟକି ଯାଇ ବରକ୍ତ ହୋଇ ସେ କହିଲା, ଛାଡ଼ ମୋର ହାତ ।

ମାଟେତା ତାକୁ ଟାଣି ନେଉ ନେଉ କହିଲା, ସେଇ ଡୋଙ୍ଗର ଉପରକୁ—

ଓଃ, ଛୁଟଡ଼—ପାଟି କରିବ—

ପାଟିକର । ମୁଁ ଛଁ ନାଇକର ପୁଅ, ତତେ ମୁଁ ବାହା ହେବ । କନିଆଁ କରିବ । ପାଟିକର ପୁଲକ । ତତେ ମୁଁ ଘିଚ ନେବ । ଡୋଙ୍ଗର ସେପାଖେ ଜଙ୍ଗଲ ଭିତରେ ଝୋଲା କୂଳରେ ଭଙ୍ଗା ଘରଟେ ଅଛି, ସେଇଠି ରହିବା । ଚାଲ ଚାଲ ।

ମାଗତା ଟାଣିବାକୁ ଲାଗିଲା । ପୁଲକ ଚିତ୍କାର କଲା ।

ପୁଗି ଗାଁ ଅଡ଼ୁ ଯେଉଁ ବାଟଟି ଅସିଛି ସେହି ବାଟେ ଲତା ଆସି ପହଞ୍ଚିଲା । ମାଗତା ପୁଲକର ହାତ ଧରି ଟାଣୁଥିବାର ଦେଖି ସେ କହିଲା, ହେ ମାଗତା, ପୁଲକ ତୋର ଏକା ବଂଶର ଭଉଣୀ । ତା ଦେହରେ ହାତ ଦେବାଟା ବଡ଼ ପାପ । ବେଶି ମଦ ଖାଇ ଜ୍ଞାନ ହରାଇଛୁ । ପାପ ପୁଣ୍ୟ ଜାଣି ପାରୁନୁ, ମୁଁ କହୁଛି, ହେ ମାଗତା ଛାଡ଼ ଦେ ପୁଲକର ହାତ ।

ମାଗତା କହିଲା, ତାକୁ ମୁଁ କନିଆଁ କରିବ, ତାକୁ ମୁଁ ଘିଚ୍ ନେବ । ତା ବାପକୁ ଝୋଲା ଟଙ୍କା ଦେବ । ତୁଇ ଯା, ତୁଇ ପଳା ହେ ଲତା, ପୁଲକ ମୋର ଧାଙ୍ଗଡ଼ୀ ହେଇସି—

ଲତା ଦୁହିଙ୍କର ମଝିକୁ ଆସିଲା । ମାଗତାର ହାତରୁ ପୁଲକକୁ ମୁକ୍ତ କରି କହିଲା, ଛି, ଛି, ଜାଣୁ ନାହିଁକି, ସାରକା ପେଙ୍ଗୁ ସାଙ୍ଗରେ ତାର ବାହାଘର ଠିକ୍ ହୋଇଛି । ପେଙ୍ଗୁ ତୋର ବାପ ନାଇକ ସଙ୍ଗରେ ବେଜୁଣୀ ପାଖକୁ ଯାଇଥିଲା । ବେଜୁଣୀ ( ଯାକରି ଠାକୁରାଣୀଙ୍କ କାଳସି—ନପୁଂସକ ) କହିଲା, ଭଲ ହେବ । ମୁଁ ଥିଲି । ଶୁଣିଛି । ପେଙ୍ଗ ପୁଲକର ମାକୁ ମଦ ଦେଇ ଆସିଲାଣି । ଦଶାରି ପାଖକୁ ଯାଇଚ । ଦଶାରି ଦାନବାର ଠିକ୍ କଲେ ବାହାଘର ହେବ ।

ମାଗତା ଆଶ୍ଚର୍ଯ୍ୟ ହେଲା । ପୁଲକର ହାତ ଛାଡ଼ିଲା । ଠିକ୍ ଠିକ୍ ପାଖରେ ଥିବା ମହୁଲ ଗଛରେ ହାତ ଭରି ଦେଇ ଅଠକିଲା । ଜିଭ କାମୁଡ଼ି ପଚାରିଲା, ସତ୍ କି ?

ଲତା ପୁଲକକୁ ଚାଲିଯିବାକୁ ଆଖିରେ ଇଙ୍ଗିତ ଦେଲା । ପୁଲକ ଭୟରେ ମାଗତା ଆଡ଼କୁ ଚାହିଁ କାଠ ବୋଝ ଉଠାଇ ମୁଣ୍ଡରେ ରଖିଲା । ଥର ଥର ପାଦରେ ସେଠାରୁ ପ୍ରସ୍ଥାନ କଲା । ଲତା ମାଗତାକୁ କହିଲା, ସତ ନୁହେଁତ କଣ ମିଛ ?

ମାଗତା ପାଠିକଲା, ହେ ପୁଲକ, ରହ—ରହ—

ପୁଲକ ରହିଲା ନାହିଁ, ମାଗତା ତା ପଛରେ ଯିବାକୁ ବସିଲାରୁ ଲତା ତାର ହାତ ଧରି ଅଠକାଇ ରଖିଲା । ଦୃଢ଼ କଣ୍ଠରେ କହିଲା, ରହ ମାଗତା, ମୋ କଥା ଶୁଣ ।

ମାଗତା ଅଠକି ରହିଲା । ଲତା ଦେହରେ ଗୋଟା ଧାଙ୍ଗଡ଼ାର ଶକ୍ତି । ବଳଆର ଝିଅ, ଶ୍ୟାମଳ, ବଳଲା ପରି ଦେହ । ମୁହଁଟି ସୁନ୍ଦର । ଚକ୍‌ଚକ୍ । ବାଙ୍ଗର ମଣିଷ । ମୁଣ୍ଡରେ ବେତାଏ କେଶ ।

ଲତା କହିଲା, ସୁନାକୁ ତୁ ରଖି ପାରିବୁ ନାହିଁ ।

ଏଁ ?

ମୁଁ ବେଜୁଣୀକି ପଚାରିଲି । ସେ ଯାକରି ଠାକୁରାଣୀକୁ ପଚାରିଲା । କାଲି ରାତିରେ ଠାକୁରାଣୀ ତାକୁ ସପନେଇଛି, ସୁନାକୁ ବାଛି ନେବ । ସୁନା ତାର ଧାଙ୍ଗଡ଼ୀ ହେବ ।

ମାଗତା ପଚାରିଲା, ସୁନାକୁ ବାଇଆ କିଏ ନେବ ?

କାହିଁକି ନ ନେବରେ ମାଗତା ? ଉପରେ ଧର୍ମ, ତଳେ ଧରିତ୍ରୀ ଅଛନ୍ତି ? ମୁଁ ପିଲାଟେ ହୋଇଥିଲି, ତୋର ବାପ ମତେ ବୋଦ୍ଧ କଲା । ଠାକୁରାଣୀ ସବୁ ଜାଣେ । ମତେ ଛାଡ଼ି ସୁନାକୁ ପୁଣି ବୋଦ୍ଧ କରିବାକୁ ବସିଛି । ଜାନର ( ପୁରୋହିତ ବା ପୂଜାରି ବା ଠାକୁରାଣୀର ସେବକ ) ଝିଅ ବୋଲି ଠାକୁରାଣୀ ଛାଡ଼ିବ ନାହିଁରେ,

ଖାଇ ଦେବ । ମୁଇଁ ତୋଓର ଧାଙ୍ଗଡ଼ୀ, ତୁ ମୋର ଧାଙ୍ଗଡ଼ା । ମାଗତା, ଚାଲ୍ ପଳେଇବା । ନେ, ତୁଇ ମୋର ହାତ ଧରି ଟାଣିନେ । ଯୁଆଡ଼େ ତୁ ଯିବୁ, ମୁଁ ତୋରି ପଛେ ପଛେ ଯିବ । ତୁ ମୋର ଅଣ୍ଡିରି । ମାଗତା—

ଲତା ଲ୍ୟବଭରି ଅକୁଳ ଅଖିରେ ଚାହିଁଲା । ମାଗତା ଅଖି ରଙ୍ଗ କରି କହିଲା, ଛାଡ଼ ମୋର ହାତ ।

ହାତ ଟାଣିଲା । ଲତା ତା ହାତକୁ ଅହୁରି କଟମଟ କରି ଧରିଲା।

ଛାଡ଼, ମୋର ହାତ କହୁଛି, ନୋହିଲେ—

ଆର ହାତରେ ମାଗତା ଟାଙ୍ଗି ଉଠାଇଲା ।

· ମାରିବୁ ମାଗତା ? ଦେଖ୍ ଏଇ ଯେଉଁ ବଡ଼ ପଥର ତାରି ଭିତରେ ଟପକାସାର ଠାକୁରାଣୀ ଅଛି । ସେଇ ପଦର ପାଖରେ ଗାଙ୍ଗି ଠାକୁରାଣୀ ଚାହିଁଛି । ତା ପାଖରେ ବରଗଛ ଭିତରେ ଥାଇ ଅନେଇଁଛ ବୁଢ଼ି ଠାକୁରାଣୀ । ସମସ୍ତଙ୍କ ଉପରେ ବଡ଼ ଯେ ଯାଙ୍କର ଠାକୁରାଣୀ ସେ ଦେଖୁଛି । ମୋର ବାପ ବଞ୍ଚିଥିଲା ବେଳେ ସମସ୍ତଙ୍କୁ ସେ ମଦ ଦେଇଥିଲା, ପୁଡ଼, ଘୁଷୁରି, କୁକୁଡ଼ା ଦେଇଥିଲା । କହିଥିଲା, ମାଗତା ଲତାର ଅଣ୍ଡିରି ହେବ । ତୋର ବାପ ଶୁଣିଛି । ଗାଁ ଲୋକେ ଶୁଣିଛନ୍ତି । ତୁଇ ସିନା ଭୁଲିବୁ ତୋର ବାପ ନାଇକ ବୋଲି ସିନା ମୋର ବାପ ମଲାକୁ ମତେ ବୋଧୁ କରିବାକୁ ଅପୁ ନାହିଁ ( ମଙ୍ଗ୍ନାହିଁ ) । ଠାକୁରାଣୀମାନେ କଣ ଭୁଲିବେ ? ସମସ୍ତେ ଅନେଇଁଛନ୍ତି । ତୁଇ ମତେ ଛାଡ଼ିଲେ, ସେମାନେ ତୋ ବାପକୁ ଖାଇଦେବେ । ମୁଁ ତାଙ୍କୁ କହୁଛି, ବେଜୁକୁ କହୁଛି ।

ଡରି ଡରି ମାଗତା ଚାରିଆଡ଼କୁ ଚାହିଁଲା । ସତେକି ପ୍ରତି ପଥର, ଗଛ, ଖୋଲା, ପାହାଡ଼ ଭିତରୁ ଠାକୁରାଣୀମାନେ ବାହାରି ପଡ଼ୁଛନ୍ତି ଅଉ, ତାକୁ ଗ୍ରାସ କରିବାକୁ ଅଖି ତରାଟି, ହାତ ବଢ଼ାଇ ଧାଇଁ ଅସୁଛନ୍ତି । ମାଗତା ଟାଙ୍ଗି ଟାକୁ କାନ୍ଧରେ ଝୁଲାଇ ଦେଲା । ହାତ ବଢ଼ାଇ ଲତାର ଆର ହାତ ଧରି ଥରିଲା ସ୍ୱରରେ ପଚାରିଲା, କଣ କରିବ ଲତା ?

ଲତା କହିଲା, ମୋର ହାତ ଧରିଛୁ, ଏଥର ମତେ ଟାଣିନେ । ସବୁ ଠାକୁରାଣୀ ଅମ ପଛରେ ଚାଲିବେ । ଯେଉଁ ଜନ୍ତୁକୁ ଟାଙ୍ଗି ଧରି ମାରିବାକୁ ମନ କରିବୁ ଯେ ମରିବ । ଯେଉଁଠି ଖୋଳିବା, ସେଠି ପାଇବା କନ୍ଦା । ଯେଉଁ ଗଛରେ ଚଢ଼ିବୁ, ସେଠି ପାଇବୁ ମହୁ । ମାଗତାରେ, ଠାକୁରାଣୀ ଅମ ପଛରେ ଥିବେ । ଅମେ କେତେ ଖୁସି ଅନନ୍ଦରେ ରହିବା ।

ମାଗତା ଲତାର ହାତ ଧରି ଟାଣି ଟାଣି ନେଲା । କହିଲା ଡରି ଡରି, କୁଆଡ଼େ ନେବ ତତେ ?

ଯେଣିକି ତୋର ମନ । ପାହାଡ଼ ସେପାଖ—କଥା ଅଧା ରହିଗଲା ।

ବାଟ ବାଙ୍କର ଗଛ ଉହାଡ଼ରୁ ବାହାରି ପଡ଼ଲେ ନାଇକ ମିଲକା ନୋକା ଓ ଦଣାରି ବୁଢ଼ା । ବେଲ ରତ ରତ । ପାହାଡ଼ ମାଳ ପଛଅଡ଼େ ସୂର୍ଯ୍ୟ ଛପିଲେଣି । ଲତାର ହାତରୁ ମାଗତାର ହାତ ଖସି ପଡ଼ଲା । ଅବାକ୍ ହୋଇ ଦହେଁ ଠିଆହୋଇ ରହିଲେ । ନାଇକ ଓ ଦଣାରି ପାଖକୁ ଅସିଲେ ।

ନାଇକ ଅକଚ କରି ପୁଅକୁ କହିଲା, ଏ କଅଣ ମାଗତା ?

ମାଗତା ବାପକୁ ଦେଖି ଶଙ୍କିଗଲା । ଠଲ ଠଲ ହୋଇ ଅ଼ାଡ଼ଇ ଗଲା । ଲାଜ ଫକୋଚ ଗୁଡ଼ ଲତା ଅଗେଇ ଆସି କହିଲା, ମାଗତା ମୋର ହାତ ଧରି ଟାଣି ନେଉଥିଲା, କହିଲା ସେ ମୋତେ ଘରଣୀ କରିବ ।

ଘୃଣାରେ ଲତାକୁ ଗୃହିଁ ନୋକା ନାଇକ ଅଖି ଫେରାଇଲା ମାଗତା ଉପରକୁ । ତାର ଅବସ୍ଥା ଦେଖି ଦୁଃଖ ଓ କ୍ରୋଧରେ ଚକ୍ରାର କଲା, ମାଗତା—

ମାଗତା ଡରି ଡରି କହିଲା, ଏଇ ଲତା ମତେ କହିଲା— ।

କଣ କହିଲା ? ତୁ ଜାଣୁ ନାଇଁକ ଜାନର ଝିଅ ସୁନା ସାଥିରେ ତୋର ବାହାଘର ଠିକ୍ ହୋଇଛି ? ଦଣାରି ଦନ ଧରିଛି, ଦଶଦନ ଅଛି ବାହାଘର । ଯାହାରିପାରି ତାର ହାତ ଧରିବା ତୋର ଉଚତ ନୁହେଁ ।

ଲତାର ଅଖିରୁ ଦୁଇଧାର ଲୁହ ଝରି ପଡ଼ଲା । ନାଇକ ଅସତ୍ୟ ହୋଇଛି । ଧୈର୍ଯ୍ୟଧରି ଧୀରେ ଧୀରେ ସେ କହିଲା, ମୁଁ ତୋର ବୋହୂ ନୁହେଁ କ ନାଇକ ? ଏଇ ଦଣାରି ବୁଢ଼ା ସେଦନ ଯାକରା ଠାକୁରାଣୀ ପାଖେ, ଜାନ ଅଗରେ କହିଥିଲା । ଗାଁ ଲୋକେ ସମସ୍ତେ ଥିଲେ । ମୋର ବାପ ମଲାରୁ ତୁମେ କଥା ଫେରାଇ ନେବ କ ? ମୋ ବାପର ଡୁମା କାନ୍ଦ କାନ୍ଦ ବୁଲିବ । ତାର ସତ୍ୟ ଭାଙ୍ଗିବ ? ତାର ଝିଅ ହୋଇ—

ନାକ ଟେକ ଘୃଣାରେ ଲତା ଅଡ଼କୁ ଗୃହିଁ ନାଇକ କହିଲା, ତୁ ତୋ ବାପକୁ ଖାଇଲୁ । ପୁଣି ମୋର ବୋହୂ ହୋଇ ମତେ ଖାଇବୁ କ ? ତୋ ବାପର ଡୁମା କାନ୍ଦ ବୁଲିବତ ଅମର କ ଦୋଷ ? ନାଇକ ମାଗତାକୁ ଗୃହିଁ କହିଲା, ଅଉ ଦନେ ଯଦ ପୁଣି ଲତା ସାଙ୍ଗେ ମିଶିଛୁ ତ ଦେଖିବୁ ଏଇ ଟାଙ୍ଗିରେ ତୋ ବେକରୁ ମୁଣ୍ଡ କାଟି ଅଲଗା କରିବ ।

ବାଧ ଶିଶୁଟି ପରି ମାଗତା ତା ବାପର ଅଗେ ଅଗେ ଗୃଲିଲା । ନୋକା ଓ ଦଣାରି ସେହି ବାଟରେ ଅଦୃଶ୍ୟ ହୋଇଗଲେ ।

ଲତା ମଲଗଛ ପରି ବଡ଼ ପଥର ଅଗରେ ଠିଆ ହୋଇ ରହିଲା । ଅଖିରୁ ଲୁହ ଝରିଲା । ହାତ ଯୋଡ଼ ମୁଣ୍ଡରେ ଲଗାଇ କହିଲା, ମା ଯାକରି, ତୁଇ ଏକା

ଜାଣୁ । ମୁଁ ତ କାହାକୁ ଖାଇ ନାହିଁ । ତୁଇ ମୋର ବାପକୁ ଖାଇଲୁ, ତୁଇ ଫେର୍ ବେକୁଣୀକୁ ସପନ ଦେଲୁ । ମାଗତା ପାଖକୁ ତୁଇ ଏକା ମତେ ପଠେଇଲୁ । ନୋକାର ପୁଅ ମାଗତାକୁ ମୋତେ ଦେବ ବୋଲି ବାପ ମୋର କଥା ଦେଲା । ସମସ୍ତଙ୍କୁ ମଦପାଣି ଦେଲା । ତୁଇ ତାକୁ ବେରାମ କଲୁ । କାସ୍ ଦୋଷ ସେ କଲାକ ତୋତେ ସିନା ଜଣା ଗୋ ମା ଯାକର ଠାକୁରାଣୀ, ତାକୁ ତୁ ନେଲୁ । ମୋର କ ଦୋଷ ?

ଲତାର ଆଖିରୁ ଲୁହ ଝରିଲା । ସେ ପୁଣି କହିଲା, ବାପର ଡ଼ମା ରାତି ଅଧରେ ଆସି ଘର ପଛର ମହୁଲ ଗଛ ତଳେ କାନ୍ଦୁଚ । ମୋତତ ସପନରେ କହୁଚ, ତୁ ନାଇକର ବୋହୂ, ମାଗତାର ଘରଣୀ ହେବୁ । ମୁଁ କଥା ଦେଇ ଆସିଚ । ମୋର କ ଦୋଷ, ମା ଯାକର ?

ସଞ୍ଜ ଅନ୍ଧାର ମାଡ଼ି ଆସୁଛି । ବଣ ପାହାଡ଼ର ଦେଶ । ଆଉ ଅଧିକ ବେଳ ରହିବା ନିରାପଦ ନୁହେଁ । ଲତା ଏହା ଭାବି ଗ୍ରାମକୁ ଫେରିଲା ।

ବଡ଼ଗୁଡ଼ା ଗ୍ରାମରେ ଲୁମ୍ବଟି ସାହୁକାର ଗୁରୁମୂର୍ତ୍ତିର ଘର । ବଡ଼ଘର, କୋଠା ଉପରେ ଖପର ଛୁଆଣି । ଗାଁ ରାସ୍ତା ଆଡ଼କୁ ଚଉଡ଼ା ପକ୍କା ବାରଣ୍ଡା । ଗୋଟିଏ ପାଖରେ ସତରଞ୍ଜି ପାରି କଳା ମିଚମିଚ ଅନ୍ତାଲପେଟା ଗୁରୁମୂର୍ତ୍ତି କାନ୍ଥରେ ଗୁଦର ପକାଇ ବସିଛନ୍ତି । ମୁଣ୍ଡରେ ଛତା । ଆଗରେ ମେଲା ହୋଇ ପଡ଼ିଛି ଗୋଟିଏ ଲମ୍ବା ଖାତା, ଆଉ ବଡ଼ାଏ ଖାତା ଗୋଟିଏ ପାଖରେ ସଜା ହୋଇ ରଖା ହୋଇଛି ।

ସତରଞ୍ଜିର ଆର ପାଖରେ ବସିଛନ୍ତି ପିଃ ( ପଟ୍ଟନାଏକ ) ଜଗ୍‌ଗା ରାଓ । ପାଖରେ ଷ୍ଟ୍ରେଟ ବାକ୍‌ସ, ଦୁଆତ କଲମ ଓ କାଗଜ, ଆଖିରେ ଚଷମା । ପିଣ୍ଡା ତଳେ କେତେ ଜଣ କନ୍ଧ, ଡମ୍ବ ଓ ଏନେଟି ଦୋରା ବସିଛନ୍ତି । ଉପରେ ଖରା । ବେଳ ଦ୍ୱିପ୍ରହର ।

ଗୁରୁମୂର୍ତ୍ତି କହିଲେ, ଶୁଣ ପଟ୍ଟନାଏକୁଲୁ, ଥୋୟୁକା ବରସୁ କନ୍ଧର ହିସାବ ଦେଖି ତାକୁ ବୁଝାଇ ଦିଅ, ତାର କେତେ ବାକି ଅଛି କହ ।

ଖାତାଟାକୁ ପଟ୍ଟନାଏକଙ୍କ ପାଖକୁ ସାହୁକାର ବଢ଼ାଇ ଦେଲେ । ପଟ୍ଟନାଏକ ପତ୍ର ଓଲଟାଇ କହିଲେ, ଆରେ ବରସୁ, ତୋର ବାପ ଖୋରକ ଯେତେବେଳେ ବାହା ହେଲା, ସାହୁକାରଠୁଁ ଛନକୋଡ଼ି ପନ୍ଦର ଟଙ୍କା ନେଇଥିଲା । ଦଶ ବରଷ ଖମାର ରହି ଦୁଇକୋଡ଼ି ଦଶଟଙ୍କା ସୁଝିଲା । ଜଙ୍ଗଲ ହଣା କେଶ୍‌ରେ ତାକୁ କୋର୍ଟ ଘର କୋଡ଼ିଏ ଦଶ ଟଙ୍କା ଜୋରିମାନା କଲେ । ତାକୁ ମଧ୍ୟ

ସାହୁକାର ଦେଲା, ବାକି ରହିଲା ଦୁଇକୋଡ଼ି ପନ୍ଦର । ଟକୋଡ଼ିଏ ଦଶଟଙ୍କା ବାବତକୁ ବରଗଛ ଭୂମି ବନ୍ଧା ଦେଲା । ପର୍ଦ୍ଦୁ ଲେଖିଲା, ଜମି ସାହୁକାରର ହେଲା । ଖୋରକ ଭୁଗ ଚଷିଲା । ବର୍ଷକୁ ଏକ ଗଡ଼ିଷା ଗଲା (ଧାନ) । ଛନ ବରଷ ପରେ ସେ ଦ ବରଷ ପାଚ (ଫସଲ) ଖାଇଲା । ସାହୁକାରର ଧାନ ଦେଲା ନାହିଁ । ଧାନର ଦାମ ଟଙ୍କା୩୦୯ କୁ ପୁଣି ସେଇ ଜମି ଓ ମହୁଲ ଗଛ ଗୁଡ଼ିଆ ବନ୍ଧା ଦେଲା । ତୋର ବାପ ମଲା, ସାହୁକାର କେଶ୍ କଲା । କୋର୍ଟ-ଘର ଜମି ନିଲାମ କଲେ । ସାହୁକାର କିଣିଲା, ବଛା-ଜମାନ୍ ସାହୁକାରକୁ ଜମି ଅପକବ୍ଜା କରେଇଲା (ଦଖଲ ଦେଲା) । ସାହୁକାର ଖମ୍ବାର ରଖି ଧାନ କରାଉଚ ! ତୋର ଆଜ ସେ ଭୂମିରେ ଅଧିକାର ନାହିଁ ।

ବରସୁ ହାତ ଯୋଡ଼ି, ଠିଆ ହୋଇ କହିଲା, ମଉଯିବ ନାଇଁକି ? ଛନଟା ପିଲା, ମାଇପ, କେମିତ ଜୀଇଁବୁ ? ସାହୁକାର, ତୁ ବଇଗଛ ଭୂମି ନେ । ଛନ ଗଡ଼ିଷା ପାଚୁଚ । ମହୁଲଗଛ ଗୁଡ଼ିଆ ମତେ ଛାଡ଼ଦେ । ମୁଁ ହଳକର ଖାଇବ ।

ଗୁରୁମୂର୍ତ୍ତି କହିଲା, ଅରେ, କୋଛଘର ମତେ ଅପକବ୍ଜା କଲା । ସବୁ ଭୂମି ମୋର । ତୋ ବାପ ଉପରେ ଅହୁର ଟଙ୍କା ବାକୀ ଅଛି । ତୁ ଯଦ ଆସି ଖମ୍ବାର ନ ହଉ, ମୁଁ ପୁଣି ତୋ ନାମରେ ଦାବା (କେସ୍) କରିବ ।

ବରସୁ ଲମ୍ବ ହୋଇ ଗୋଡ଼ ତଳେ ପଡ଼ିଲା । ଭୂମି ଉପରେ ପଡ଼ି ଅନୁନୟ କଲା, ମଉଯିବ ସାହୁକାର । ଦାବା କଲେ ଲଢ଼ି ପାରିବ ନାହିଁ । ମୋ ଗୁଡ଼ିଆ (ଉଚ୍ଚଜମି) ମତେ ଦେ । ମୁଁ ଚୃଷ କରିବ । ତୋ ଧର୍ମ—।

ଦଶପୁଟି ପାଚ ( ଫସଲ ) ଦେବୁ ? ସରକାରକୁ ମୁଁ ଶିସ୍ତ ( ଖଜଣା ) ବାନ୍ଧିବ ।

ଦେବ ସାହୁକାର । ବାପର ନାଆ ତୋ କାଗଜରୁ କାଟିଦେ ।

ଠିକଏ ଭାବି ସାହୁକାର କହିଲେ, ଅଚ୍ଛା ତୁ ଯା । ଗୃଉଦନ ଗ୍ରାଡ଼ି ଆସିବୁ, ପର୍ଦ୍ଦୁ ଲେଖା ହେବ । ସାକ୍ଷୀ ଆଣିଥିବୁ ।

ବରସୁ ହାତ ଯୋଡ଼ି ମୁଣ୍ଡରେ ଲଗାଇଲା । କହିଲା, ତୋର ଦୟା ଏକ୍କା ।

ବରସୁ କଢ଼େଇ ଠିଆ ହେଲା ।

ସାରକା ପେଙ୍ଗୁ କଦ୍ଧ ହାତଯୋଡ଼ି ଅଗକୁ ଆସି ଜଣାଣ କଲା, ହେ ସାହୁକାର, ମୋ କଥା ଟିକେ ବୁଝ—

ଗୁରୁ ମୂର୍ତ୍ତି କହିଲା, ଅରେ, ତୋର ପଦରରେ (ଉଚ୍ଚଜମିରେ) କୋଡ଼ିଏ ପୁଟି ଧାନ ପାଚୁଚ । ତାକୁ ଅସ୍ୱାଧୀନ ବନ୍ଧକ ରଖି ମୁଁ ଛନକୋଡ଼ି ଟଙ୍କା ଦେଇ ପାରିବ ନାହିଁ । ତୁ ଯା ।

ପେଙ୍ଗୁ କହିଲା, ଯା କହିଲେ ଯିବନି । ପୁଲକ ସଙ୍ଗେ ବାହାଘର ଠିକ୍ ହୋଇଛି । ହୋଲ୍ ଟଙ୍କା, ଗାଁ ଲୋକଙ୍କୁ ଖାଇବାକୁ ଦେବାକୁ ଟଙ୍କା, ତିନି କୋଡ଼ିରୁ କମ୍‌ରେ ହେବ ନାହିଁ । ଦେ ସାହୁକାର, ପଦର ଭୂମିଟା ପଛେ ସ୍ୱାଧୀନ ଲେଖି ନେ । ମୁଁ କୁଲିନାଲିକରି ଖାଇବି ।

ଗୁରୁ ମୂର୍ତ୍ତି ଭ୍ରୂଲତା ଟେକି ଇଙ୍ଗିତ କଲା । ପଟ୍ଟନାଏକକୁ କଣେଇଁ ଗୁହାଁ ନମ୍ରସ୍ୱରରେ ଠାରରେ କହିଲି । ବେଶ୍ ବଳୁଆ ଦିଶୁଛି । କୌଣସି ମତେ ଯଦି ମୁଠା ଭିତରକୁ ଆସିପାରନ୍ତା ତିନି ପୁରୁଷ ଯାଏ ହାତରେ ରହନ୍ତା ।

ପଟ୍ଟନାଏକ କହିଲେ, ଆରେ ପେଙ୍ଗୁ, ସାହୁକାରକୁ ପଦରଭୂମି ସ୍ୱାଧୀନ ବିକି ଦେଲେ, ତୋର କିଛି ରହିବ ନାହିଁ । ଘରକୁ ମାଇପ ଆଣିବୁ । ଧାଙ୍ଗଡ଼ୀ ପିଲା, ତାକୁ ଛାଡ଼ି କୁଲି କରି ଯିବୁ ? ଯାହା ଆଣିବୁ ପେଟକୁ ଅଣ୍ଟିବ ନାହିଁ । ଜମି ମୁକାଳି ପୁଣି ତୋର ସ୍ୱାଧୀନକୁ ନେବାକୁ ଟଙ୍କା କେଉଁଠୁ ପାଇବୁ ?

ସତ୍ ଏକ୍‌କା, ଜମିଟା ଭୁଇଁ ନେ, ପାଞ୍ଚଟଙ୍କା ଶିସ୍ତ ବାକିଛି ।

ପଟ୍ଟନାଏକ କହିଲେ, ଶୁଣ ପେଙ୍ଗୁ, ଯଦି ପରଘରେ ମୂଲ ଲାଗି ପେଟ ପୋଷିବୁ ତ ମୁଁ ଯାହା କହୁଛି କର । ତୋର ଜମି ତୋର ଥିବ । ତୁ ଚାଷ କରି ଖାଇବୁ । ଟଙ୍କା ନେବୁ, ଏଣେ ତେଣେ ବୁଲି କାମ କରିବୁ କାହିଁକି ? ଶୀତ, ବର୍ଷା ଅଛି, ଦେହମୁଣ୍ଡ ଅଛି । ଯେଉଁଦିନ ନ ଯିବୁ ସେ ଦିନ ଉପାସ ରହିବୁ । ଖାଇବାକୁ ନ ହେଲେ ତୋ ଧାଂଗଡ଼ୀ ତୋ ପାଖେ ରହିବ କି ? ଆଉ କିଏ ଘିଚିନେଇ ପଳେଇବ ।

ପେଂଗୁର ମନରେ ପଟ୍ଟନାଏକଙ୍କର ହିତୋପଦେଶ ଭେଦିଲା-କରଣମ୍ ସତ କଥା ତ କହୁଛି । ସେ ମୁହଁ ଖୋଲିଲା-ସତ କଥା କହିଲୁ ଏକା । କିସ କରିବି କହତ ?

ହସ ହସ ହୋଇ ପଟ୍ଟନାଏକ କହିଲେ, ଭଲ ପିଲା ତୁ ପେଂଗୁ । ତୋର ବୁଦ୍ଧି ଅଛି । ତୋ ପାଇଁ ମୁଁ ପର୍ଦ୍ଦା (ବଣ୍ଡ) ଲେଖି ରଖିଛି । ତୁ ଯଦି ମଙ୍ଗିବୁ ଏଥିରେ ବୋଟ (ଟିପଚିହ୍ନ) ଦେଇ ତିନିକୋଡ଼ି ଟଙ୍କା ଗଣିନେ, ସାହୁକାରର ତୁ ଖମାରି ରହିବୁ । ସେ ତତେ ଖାଇବାକୁ ଦେବ, ପିନ୍ଧିବାକୁ ଦେବ, ବରଷକୁ ଏ ଋଣରୁ ଦଶଟଙ୍କା କଟିବ, ଛଅ ବରଷରେ ଟଙ୍କା ସୁଝିବ । ତୋ ପର୍ଦ୍ଦା ତୁ ଫେରେଇ ନେବୁ, ସାହୁକାର ଘରେ ଖମାରି ( ହଳିଆ ) ଥିବୁ । ତୋ ଭୂମି ତୁ ଚଷିବୁ, ପାଛ କରିବୁ । ତୁ ଓ ତୋ ଧାଙ୍ଗଡ଼ୀ ସୁଖରେ ରହିବ ।

ତୋ ଧର୍ମ ସାହୁକାର—

ସାହୁକାର କହିଲେ, ତେବେ ପଟ୍ଟନାଏକେ, ପର୍ଦ୍ଦାଟା ପଢ଼ି ଶୁଣେଇଁ ଦିଅ । ତାର ଓ ସାକ୍ଷୀମାନଙ୍କର ବୋଟ (ଟିପ) ନିଅ, ମୁଁ ଟଙ୍କା କାଢ଼େ ।

ଗୁରୁ ମୂର୍ତ୍ତି ବାକ୍ସ ଖୋଲି ଅଞ୍ଜୁଳାଏ ଟଙ୍କା ଆଣି ସତରଞ୍ଜି ଉପରେ ଗଦାଇ ଗଣିବାକୁ ଲାଗିଲେ । ପଇଠନାଏକ ଚଷମା ନାକ ଉପରକୁ ଖସାଇ ପର୍ଦ୍ଦୁ ପଢ଼ିଲେ—

ଲିଖିତଂ ପର୍ଦ୍ଦୁ ସାରକା ପେଙ୍ଗୁ-ପୁତ୍ର—ଜଣାନାହିଁ-ସାଃ ପୁଗି, ବଡ଼ଗୁଡ଼ା ମୁଠା, ଅଦ୍ୟ ଅପ୍ରେଲ ମାସ ୨୭ ତାରିଖ ୧୯୩୧ ସାଲ, ଏହାକ ଯେ—

ଆଜ ସ୍ଥିର ମନ, ଧୀର ଚିତ୍ତ, ହୃଦକମଳ ଦୋରସ୍ତ ଥାଇ, କାହାର ଶିକ୍ଷାରେ ନ ପଡ଼ି, ନିଜ ସ୍ୱଇଚ୍ଛାରେ ଆମ୍ଭେ ସାରକା ପେଙ୍ଗୁ, କନ୍ଧ, ପୁତ୍ର ଅଜଣା, ଗ୍ରାମ ପୁଗି, ବଡ଼ଗୁଡ଼ା ମୁଠା, ବିଷମକଟକ ପୋଲିସି, ଏ ପର୍ଦ୍ଦୁ ସାହୁକାର କେ. ଗୁରୁ ମୂର୍ତ୍ତି—ଗ୍ରାମ ବଡ଼ଗୁଡ଼ା, ମୁଠା ବଡ଼ଗୁଡ଼ା, ପୋଲିସି ବିଷମକଟକଙ୍କୁ ଏ କାରଣ ଲେଖିଦେଲୁ ଯେ ଆମ୍ଭର ବିଭାଘର ନିମନ୍ତେ ଝୋଲା-ଟଙ୍କା ଓ ଅନ୍ୟାନ୍ୟ ଆବଶ୍ୟକୀୟ ଖରଚ ପାଇଁ ଟଙ୍କା ଲୋଡ଼ା ଥିବାରୁ, ନିମ୍ନ ସ୍ୱାକ୍ଷରକାରୀ ସାକ୍ଷୀମାନଙ୍କ ଆଗରେ ସାହୁକାର ଗୁରୁ ମୂର୍ତ୍ତିଙ୍କ ଠାରୁ ଷାଠିଏ ଟଙ୍କା ନଗଦ କରଜ ସୂତ୍ରେ ଗଣି ନେଇ ଏକରାର କରୁଅଛୁଁ କି, ଆମ୍ଭେ ଉକ୍ତ ସାହୁକାରଙ୍କ ଘରେ ଖମାରି ହୋଇ ରହିବୁ । ସେ ଯେଉଁ କାର୍ଯ୍ୟ କରିବାକୁ କହିବେ ଆମ୍ଭେ ଅବଶ୍ୟ ତାହା କରିବୁଁ । ତାଙ୍କର ଅବାଧ୍ୟ ନ ହେବୁ ଓ ତୁମ୍ଭେ ସାହୁକାର ଆମ୍ଭର ଭରଣପୋଷଣ ନିମନ୍ତେ ପ୍ରତି ମାସକୁ ପନ୍ଦର ମାଣ ଧାନ ଦେବାକୁ ବାଧ୍ୟ ରହିବ, ଲୁଣ ଓ ଲଙ୍କାମରିଚ ପାଇଁ ଆଠଅଣା ପଇସା ଦେବ, ଲୁଗାପଟା ପାଇଁ ବର୍ଷକୁ ତିନି ଟଙ୍କା ଦେବ, ପ୍ରତିବର୍ଷ ଶେଷରେ ଆମ୍ଭର କରଜ ଟଙ୍କା ବାବତକୁ ଦଶ ଟଙ୍କା ସୁଝାଣ ନେବ ଏବଂ ଆମ୍ଭେ ଏହି ସର୍ତ୍ତରେ, ତୁମ୍ଭେ ସାହୁକାରଙ୍କ ପାଖେ ଛଅ ବର୍ଷ ଯାଏ ଖମାରି କାର୍ଯ୍ୟ କରିବାକୁ ବାଧ୍ୟ ରହିଲୁ ଏବଂ ଏହି ସମୟ ମଧ୍ୟରେ ତୁମ୍ଭର କାର୍ଯ୍ୟ ଛାଡ଼ି, ଟଙ୍କା ସୁଝାଣ ନ ହେବା ଯାଏ ଅନ୍ୟ କାହାର କାର୍ଯ୍ୟ ନ କରିବୁଁ ଓ ତୁମ୍ଭର କାର୍ଯ୍ୟରେ କୌଣସି ଦିନ ତୁମ୍ଭର ବିନା ଆଦେଶରେ, ବିନା ଛୁଟିରେ ଅନୁପସ୍ଥିତ ନ ହେବୁ—ହେଲେ କ୍ଷତିପୂରଣ ଦେବୁ ।

ପେଂଗୁ ପର୍ଦ୍ଦୁ ଶୁଣିଲା । ଗୁରୁ ମୂର୍ତ୍ତି ଦଶ ଟଙ୍କା କରି ଛଅ ଥାକ ଟଙ୍କା ଗଣି ରଖିଲେ । କହିଲେ, ନେ ପେଙ୍ଗ, ଏ ପର୍ଦ୍ଦୁରେ ଟିପଚିହ୍ନ ଦେଇ ଟଙ୍କା ନେଇ ଚାଲିଯା ।

ପେଙ୍ଗୁ ଖୁସି ହୋଇ ଟିପଚିହ୍ନ ଦେଲା । ଦୁଇଜଣ ଉମ୍ବ ସ୍ୱାକ୍ଷର କଲେ । ଶେଷକୁ ସିପି ଗାଁର ମୋସାକା ବାୟୁା କନ୍ଧ ଟିପଚିହ୍ନ ଦେଇ ସାକ୍ଷୀ ପଡ଼ିଲା । ପେଙ୍ଗୁର ଅଣ୍ଟିରେ ଗୁରୁମୂର୍ତ୍ତି ଟଙ୍କା ଅଜାଡ଼ି ଦେଲେ ।

ଗୁରୁମୂର୍ତ୍ତି କହିଲେ, ପର୍ଦ୍ଦୁ ଲେଖା ପାଉଣା ଦୁଇ ଟଙ୍କା କରଣକୁ ଦେ ।

ଆପତ୍ତି ନ କରି ପେଙ୍ଗୁ କରଣକୁ ଦୁଇଟଙ୍କା ଦେଲା ।

ସାକ୍ଷୀପଡ଼ିଥିବା ଉମ୍ବମାନେ କହିଲେ, ଆମ ପାଉଣା ସାହୁକାର ?

ଗୁରୁମୂର୍ତ୍ତି ପୁଣି କହିଲେ, ଦେରେ ପେଙ୍ଗୁ ଠଙ୍କାଏ ଠଙ୍କାଏ, ସେମାନେ ତୋର ସାକ୍ଷୀ ।

ପେଙ୍ଗୁ ଥା ଥା ମା ମା ହୋଇ ଓମ୍ଭ ଦୁହିଁଙ୍କୁ ଦୁଇଠଙ୍କା ଦେଲା । ବାୟା କନ୍ଦକୁ ଠଙ୍କାଏ ଯାଚିଲା । ବାୟା ଠଙ୍କା ନ ନେଇ ସାହୁକାରକୁ କହିଲା, ଦେ ସାହୁକାର, ପର୍ଦ୍ଦୁ ଲେଖିଦେ । ମୁଁ ଟିପଚିହ୍ନ ଦେଇ ଛନକୋଡ଼ି ଠଙ୍କା ନେବି । ତୋର ଖମାରି ହେବି ସାହୁକାର ।

ଗୁରୁମୂର୍ତ୍ତି କହିଲେ, ଅରେ ବାୟା, ବନ୍ଧା ଦେବାକୁ ତୋର ଭୂମି ପଦର କିଛି ନାହିଁ । ତୋ ଘର ଭଙ୍ଗା । ମୁଁ ଖବର ପାଇଲି, ଭେଡ଼ିକା ତା ଝିଅକୁ ନୋକା ନାଇକର ପୁଅକୁ ଦେବାକୁ ଠିକ୍ କରିଛି । ତୁ ତା ଝିଅକୁ ଘିଚି ନେଲେ ସେମାନେ ତତେ ଗାଁରେ ରଖେଇ ଦେବେ ନାହିଁ ।

ଆମ କୁଲରେ ଅଛି, ଝିକ ନେଇ ବାହା ହେବା ।

ପଟ୍ଟନାଏକ କହିଲେ, ଛନଦନ ହେଲା ତୁ ଆସି ସେଇ କଥା କହୁଚୁ । ସାହୁକାରଠାରୁ ଠଙ୍କା ନେଇ, ଖମାରି ନ ହେଇ, ତୁ ଯଦି ତୋ କନିଆକୁ ନେଇ କୁଆଡ଼େ ପଳାଇ ଯାଉ, ସାହୁକାର ତତେ କେଉଁଠି ଯାଇ ଖୋଜିବ ?

କୁଆଡ଼େ ଯିବି ନାହିଁ ପଟ୍ଟନାଏକ, ସାହୁକାର ଯାହା କହିବ କରିବି । ଖମାରି ହେଇ ରହିବି । ତତେ ପାଞ୍ଚଠଙ୍କା ଲେଖେଇ ଦେବି । ତୁଇ ପର୍ଦ୍ଦୁ ଲେଖିଦେ, ମୁଁ ବୋଠ ଦେବି, ଠଙ୍କା ନେବି ।

ଗୁରୁମୂର୍ତ୍ତି ବାକ୍ସ ବନ୍ଦ କରି ଡାକିଲେ, ଲଚ୍ଛମା—

ଆଜ୍ଞା—

ଦଶ ବର୍ଷର ଝିଅଟିଏ ଘରଭିତରୁ ବାହାରି ଆସିଲା । ଅଣ୍ଟାର ଗୁଡ଼ିଠୁଁ ବଳି କଳା ମିଠ ମିଠ ଝିଅ । ନାଲି ରଙ୍ଗର ଦାମିକା ସାଢ଼ୀ ପିନ୍ଧିଛି । ସର୍ବାଙ୍ଗରେ ସୁନା ଗହଣା । ସେ ସାହୁକାରଙ୍କର ଗେଲବସର ଝିଅ ।

ବାକ୍ସ ନେ ମା—

ଝିଅଟି ବାକ୍ସ ଉଠାଇ ଗୃଲିଗଲା ଭିତରକୁ । ଗୁରୁମୂର୍ତ୍ତି କାଗଜପତ୍ର ସଜାଡ଼ିଲେ । ପଟ୍ଟନାଏକ ଚଷମା ଖୋଲିରେ ରଖିଲେ । କାନରେ କଲମ ଖୋସିଲେ ।

ବାୟା କହିଲା, ଦୟା କର ସାହୁକାର, ଧର୍ମ କର । ତୋର ଦଶବରଷ ଖମାରି ରହିବି । ଛନ କୋଡ଼ି ଦେ ।

ଗୁରୁ ମୂର୍ତ୍ତି କାଗଜ ପତ୍ର ଧରି ଉଠିଲେ । କହିଲେ, ଅରେ ବାୟା, ତୋ ପରି ଘରଦ୍ୱାର, ଜମିବାଡ଼ି ନ ଥିଲା ଲୋକଙ୍କୁ ଠଙ୍କା ଦେଇ ମୋର ଛନଶହ ଠଙ୍କା ବୁଡ଼ିଲା । ପର୍ଦ୍ଦୁଗୁଡ଼ା ପାଖରେ ରଖିଛି । ଖମାରି ଗୁଡ଼ା ଆସାମ ଚା ବଗିଚାରେ କାମ କରୁଛନ୍ତି । ଆଉ ମୁଁ ଦୁର୍ବୁଦ୍ଧି କରି ତୋ ପରିକା ଲୋକଙ୍କୁ ଠଙ୍କା ନଦିଏଁ । କେବଠୁ କାନ ମୋଡ଼ି ହେଇଛି ।

ଗୁରୁମୂର୍ତ୍ତି ମୁଣ୍ଡ ହଲାଇ, ନାହୁଁକର ଘରେ ପଶିଲେ ।

ପଞ୍ଚନାଏକ ଉପଦେଶ ଦେଲେ, ହେ ବାୟା, ତୁ ଯା, ଶୁଣ୍ଡି ସାହୁକାର ଦେଖ ।

ପଞ୍ଚନାଏକ ଓ ତାଙ୍କ ପଛେ ଅନ୍ୟମାନେ ଚାଲିଗଲେ । ବାୟା ହତାଶ ହୋଇ ଠିଆ ହୋଇ ଚାରିଆଡ଼କୁ ଚାହିଁ ମୁଣ୍ଡ ଅଉଁସିଲା । ସୁନାର ରୂପ ଉଭା ହେଲା ଆଖି ଆଗରେ । ସୁନାର କଥା କାନରେ ବାଜିଲା ସତେକ—ଯିବାରେ ବାୟା ନମଗିର ପାହାଡ଼ ମାଳକୁ । କେହୁ ଦେଖିବେ ନାହିଁ କେହୁ ଜାଣିବେ ନାହିଁ । ସେଇଠି ରହିବା ।—ବାୟା ଦୀର୍ଘଶ୍ୱାସ ଛାଡ଼ିଲା ।

କନାମ ଗାଁର ଡମ୍ବ ସାହି । ହୁଅଲ ବୁଦ୍ଧି ଡମ୍ବର ଘର ସାହି ମଝିରେ । ସଞ୍ଜ ହୋଇ ଆସୁଛି । ବୁଦ୍ଧି ଗମ୍ଭୀର ହୋଇ ବସିଛି । ତାର ଗୋଟିଏ ପାଖରେ ବସିଛି ନାଗବଂଶ ଚଇତୁ ଡମ୍ବ ଓ ଆର ପାଖରେ ବସିଛି ବାଘବଂଶ ସୁକ୍ରୁ ଡମ୍ବ । ଚଇତୁ ଆଗରେ ଦଶ ବାରଟି ଠଙ୍କା ଥୁଆ ହୋଇଥାଏ ।

ଚଇତୁ କହିଲା, ମିଛ କହୁ ନାହିଁ ବୁଦ୍ଧିଆ ଭାଇ, ସୁକ୍ରୁଠୁ ବୁଝ୍‌ନୁ ।

ସୁକ୍ରୁ କହିଲା, ସତକଥା, ବୁଦ୍ଧିଆ ଭାଇ ! ପୁର୍ଗି କନ୍ଧ ଘରେ ଏଇ ବାରଟି ଠଙ୍କା ଥିଲା ।

ବୁଦ୍ଧି କହିଲା, ତେମେ ଦହେଁ ଏକ ହୋଇ ମତେ ଗତା କାଟିବାକୁ ବସିଚ, ନାଇଁରେ ? ମତେ ଠକ୍‌ଚିଚଟି ? ତମ ଦଜଣଙ୍କ ଚୁଟି ମୋ ହାତରେ, ଏ କଥା ମନେ ରଖିଥା । କୋମଲାପେଠାର ତେଲି ମହାଜନର ଗାଈ ଗ୍ରେବାଇ ଡେଙ୍ଗର ଭିତରେ ମାର ଖାଇଲ । କେଶ୍ ହେଲା । କଏ ବଞ୍ଚାଇଲା ତମକୁ ?

ଚଇତୁ କହିଲା, ତୋ ଋଣ ସୁଝି ପାରବୁ ନାହିଁ । ତୁଇ ବୁଦ୍ଧି ଦେଲୁ ବୋଲି ସିନା ଉଲାକା ମଙ୍ଗୁଳୁର ସଙ୍ଗା ଉପରେ ଗାଈ ମୁଣ୍ଡ ଅଉ ଗୋଡ଼ ଥୋଇ ଦେଇ ଆସିଲୁ । ମଙ୍ଗୁଳୁ କ ତା ମା ନ ଥିଲେ । ପୋଲିସି ଧଇଲା ତାକୁ । ତୁଇ କହିଲାକୁ ସିନା କୋଟ୍ ଘରେ ଆମେ ଦହେଁ ହଲପ ନେଇ କହିଲୁଁ, ମଙ୍ଗୁଳୁ ଗାଈ ମାରବାଟା ଦେଖିଚୁଁ ।

ସୁକ୍ରୁ କହିଲା, ଆଉ ବୁଦ୍ଧି ଭାଇ ବ କହିଥିଲା ତ, ମଙ୍ଗୁଳୁ ତେଲିର ଗାଈ ମାଇ ମାଂସ ଟିକେ ଦେଇଥିଲା । ସେ ନ କହିଥିଲେ କଣ କୋଟ ଘର ବିଶ୍ୱାସ କରି ଥାଆନ୍ତେ ନା ମଙ୍ଗୁଳୁକୁ ଛଅ ମାସ ଶିକ୍ଷା କରେଇ ଥାନ୍ତେ ?

ବୁଦ୍ଧି କହିଲା, ମନେ ଅଛଟି ସବୁ ? ତଥାପି ମୋତେ ଲୁଗୁଉଚ ?

ଚଇତୁ କହିଲା, ମତେ ରଣ ଅଛି । ଅଚ୍ଛା, ତୁ ନିଜେ ହିସାବ କର । ସୁଙ୍ଗି କହି ଗୁରୁମୂର୍ତ୍ତି ସାହୁକାରଠୁ ତିନି କୋଡ଼ି ଅଣିଲା । ସଙ୍ଗେ ସଙ୍ଗେ କରଣଙ୍କୁ ଦି ଠଙ୍କା, ଆମ ଦାହିଙ୍କି ଦି ଠଙ୍କା ଦେଲା । ଘରକୁ ନ ଫେରି ସିଧା ସିଧା ନାଇକ୍ ଘରକୁ ଯାଇ ଗୋଟାଏ ଗାଈ କିଣିବାକୁ କୋଡ଼ିଏ ଠଙ୍କା ଦେଇ ଅସିଲା— ବାହାଘର ଦିନ ଗାଁ ଲୋକେ ଖାଇବେ । ଫୁଲକର ମାଅକୁ ଝୋଲା ଠଙ୍କା ଦେଲା କୋଡ଼ିଏ ଏକ । ଆଉ କଣ ଖରଚ କଲା ମୁଁ ଜାଣେ ନାହିଁ । ଏତକ ଠଙ୍କା ଗାତ ଖୋଳି ଘର ମଝିରେ ପୋତିଥିଲା । ଆଜି ଖରାବେଳେ ମଦ ଖାଇବାକୁ ସୁକ୍ରି ତାକୁ ଡାକି ନେଇ ଗଲା । ମୁଁ ବାରି ତାଟି ଖୋଲି ଘର ଖୋଳି ଏତିକି ଠଙ୍କା ପାଇଲି । ଗାତଟାକୁ ବୁଜି ଦେଇ ଅସିଛି । ନୋହିଲେ ସେ ଜାଣିବ ଯେ— ।

ବୁଦ୍ଧି ମନେ ମନେ ହିସାବ କରି କହିଲା, ହଁ ହେଲା ।

ସେ ଠଙ୍କାକୁ ସମାନ ତିନି ବାଣ୍ଟି କରି କହିଲା, ନେ ସୁକ୍ରି, ନେ ଚଇତୁ— ।

ତିନିହେଁ ଅଣ୍ଟାରେ ଠଙ୍କା ଖୋସିଲେ ।

ବୁଦ୍ଧି ଚିନ୍ତିତ ହୋଇ ମୁଣ୍ଡ ହଲାଇ କହିଲା, ନାହିଁ ନାହିଁ କରୁଥିଲା, କେତେ କଷ୍ଟରେ ବୁଝା ସୁଝା କରି ବାପ୍ପା କହିକୁ ଗୁମୁଟି ସାହୁକାର ପାଖକୁ ପଠେଇ ଥିଲି ।

ଚଇତୁ କହିଲା, ତାର ଘର ନାହିଁ, ବାପ ମା କେହି ନାହାନ୍ତି ବୋଲି ସାହୁକାର ଠଙ୍କା ଦେଲା ନାହିଁ ।

ସୁକ୍ରୁ କହିଲା, ଯଦି ସାହୁକାର ଠଙ୍କା ଦେଇ ଥାନ୍ତା, ବାପ୍ପା ଯେଉଁଠି ରଖିଥିଲେ ବି ମୁଁ ନିଶ୍ଚୟ ସେତକ ହାତ କରି ତୋ ଆଗରେ ଥୋଇ ଦେଇ ଥାନ୍ତି ।

ବୁଦ୍ଧି ଦୁଃଖିତ ହୋଇ କହିଲା, ହୁଁ, ସବୁ ବିଗିଡ଼ିଗଲା ।

ବୁଦ୍ଧି ଚିନ୍ତା କଲା । ତାର ମୁହଁ ଉଜଳ ଅସିଲା । ଭୁନ ଭୁନ କରି କହିଲା, ହଇରେ ଚଇତୁ, ନେମାଳପୁର ବନମାଳୀ ଶ୍ରେଣୀ ସାହୁକାର ଘରେ ତେମେ ଦିହେଁ ଖମାରି ଅଛ ପରା ?

ଚଇତୁ କହିଲା ହଁ, ବନମାଳୀ ସାହୁକାର ତା ଘରେ ବିଷମକଟକରେ ଥାଉଛି । ଦାକାଲଗୁଡ଼ା ଗାଁରେ ତାର ଗୃହ ଘର ଅଛି । ମୁଁ ଆଉ ସୁକ୍ରୁ ଦାକାଲ୍-ଗୁଡ଼ାରେ ରହୁଁ । ସେଇଠି ତାର କାମ କରୁଁ । ରାତିରେ ବି ତା ଘର ଜଗିବାକୁ ସେଇଠି ରହୁଁ । ସାହୁକାର ଏକୁଟିଆ ଲୋକ । ସେ ବିଷମକଟକରେ ରହିଲେ, ତା ଶଳା ଦାକାଲ୍‌ଗୁଡ଼ାରେ ରହେ । ସେ ଦାକାଲଗୁଡ଼ା ଅସିଲେ, ତା ଶଳା ଗୋବିନ୍ଦ ବିଷମକଟକରେ ରହେ ।

ଗୋବିନ୍ଦ ମଦ ଖାଏ ? ବୁଦ୍ଧି ପଚାରିଲା ।

ସୁକ୍ରୁ କହିଲା, ଅରେ ବୁଦ୍ଧି ଭାଇ, ତା କଥା କାହିଁକି କହୁଚୁ ? ଟାଳୁଥା କେତେ ଟାଳୁଚୁ । ଖାଏ ତ ଖାଏ, ମଦରେ ଗାଧୋଇପଡ଼େ । କେତେ ଭୂମି ବାଡ଼ି ତାର ଥିଲା ତୁ ଜାଣୁ ? ମଦପାଣିରେ ସବୁ ଶେଷ କରି ଦେଲା । ଏବେ ବନମାଳୀ ଦେଲା ଭାତ ଖାଉଛି । କଣ କରିବ ? ବନମାଳୀ ସାହୁକାରର ମାମୁଁର ପୁଅ ଭାଇଟା, ପୁଣି ଶଳା ହେଲା । ସାହୁକାର କିଛି କହେ ନାହିଁ ।

ଦାକାଲ୍‌ଗୁଡ଼ାରେ ଅଛି କିଏ ? ବୁଦ୍ଧି ଅଗ୍ରହରେ ପଚାରିଲା ।

ଚଇତୁ କହିଲା, ବନମାଳୀ ସାହୁକାର ପିଲାକୁଟୁମ୍ବ ନେଇ ଦଶଦିନ ହେବ ଥିଲା । ଧାନ ମୁଗ ବିକି କରୁଥିଲା । କାଲି ତା ପିଲାଙ୍କୁ ଗୋବିନ୍ଦ ବିଷମକଟକରେ ଛାଡ଼ି ଅସିଛି । ଗାଡି ପାଇଲେ ସକାଳୁ ବନମାଳୀ ରାୟଗଡ଼ା ଯିବ—ଗୋବିନ୍ଦ ରହିବ ।

ବୁଦ୍ଧି ଚିନ୍ତାକରି, ତୁନି ତୁନି କହିଲା, ସବୁ ଟଙ୍କା ନେଇଯାଇଚି ଚଇତୁ ? ଘରେ କିଛିପଇସା କିଛି ରଖିଯାଇ ନାହିଁ ?

ଚଇତୁ କହିଲା, କେମିତି ଜାଣିବି ? ତାର ମାଇପର ଲୁଗାପଟା ଗୋଟେ ପେଡ଼ିରେ ରଖିଛି । କୁଞ୍ଚି ଦେଇଛି, ଘରେ ମିଶା (ମଧ୍ୟ) ତାଲା ଦେଇଛି । ସେଇ ପେଡ଼ିରେ ଯଦି ଟଙ୍କା ଥିବ ତ—

ବୁଦ୍ଧି ପଚାରିଲା, କୁଞ୍ଚି ଗୋବିନ୍ଦକୁ ଦେଇଚି ?

ଚଇତୁ କହିଲା, ମୁଁ ଜାଣେ ନା । ସାହୁକାର ଛଅଦିନ ରାୟଗଡ଼ାରେ ରହି ଫେରିବ । ସେ ଗୁଡ଼ିନେଇ ଯାଇଥିବ । ଗୋବିନ୍ଦ ପଦାଘରେ ଗୁହାଳ ପାଖରେ ରହୁଛି ।

କେତେ ହଳ ରଖିଛିରେ ?

ଚାରିହଳ ଗାଈ ବଳଦ, ଛଅହଳ ପୁଡ଼ା ।

ବୁଦ୍ଧି ଏଣିକି ତେଣିକି ଚାହିଁ ତୁନି ତୁନି କରି କହିଲା, କାଲି ସଞ୍ଜ ଅଗରୁ ଗୋବିନ୍ଦକୁ ପେଟେ ମଦ ଖୋଇଦେଇ ତୁମେ ଦିହେଁ ବିଷମକଟକ ଚାଲିଯିବ । ସାହୁକାର ମାଇପକୁ କହିବ, ମା, ତେମେ ଏକା ଅଛ ବୋଲି ଗୋବିନ୍ଦ ବାବୁ ନଜେ ରହି ଅମୁକୁ ପଠେଇଲେ । ସାହୁକାର ଅସିଲେ ଅମେ ଯିବୁ ।

ସେ ଯଦି ରାଜି ନ ହୁଅନ୍ତି ?

ହେବେ ରେ ହେବେ । ଆଜି ରାତିରେ ବିଷମକଟକରେ, ରାତି ଅଧରେ ତାଙ୍କର କବାଟ ଖଡ଼ ଖଡ଼ ହେବ । 'ଚୋରଚୋର' ବୋଲି ଡାକ ପଡ଼ିବ । କାଲି ଗୋବିନ୍ଦ ବାବୁଙ୍କ ପାଖକୁ ଖବର ଅସିବ । ସେ କଣ ମଦପାଣି ଛାଡ଼ି ଯିବକି ? ତମ୍ଭୁକୁ ପଠେଇବ । ଯିବନା —?

ଚଇତୁ କହିଲା, ତତେ ଦଣ୍ଡବତ ଭାଇ ।

ସୁକ୍ରୁ କହିଲା, ତୋ ଗୋଡ଼ଟା ମୋ ମୁଣ୍ଡରେ ରଖିଲୁ ଅଗ --

ସେ ବୃଦ୍ଧିର ଗୋଡ଼ ଟାଣିଲା ।

ବୃଦ୍ଧି ଗୋଡ଼ ଟାଣି ନେଇ କହିଲା, ଅରେ ରହ, ମୁଁ ଅଗରୁ ସବୁ ବନ୍ଦୋବସ୍ତ କରିଛି । ହଁ, ଶୁଣ, ସଞ୍ଜରୁ ସକାଳ ଯାଏ ଘର ଗୃହପାଖେ ପହରା ଦେଇ ପାରିଟି କରୁଥିବ । ଏକୁଟିଆ ରହିବ ନାହିଁ । ଅଉ ଦି ଗୃହଜଣ ଖମ୍ବାରଙ୍କୁ ଧାଥିରେ ରଖିବ ।

ଚଇତୁ ପଚାରିଲା, ଅମର ଭାଗ କଣ ?

ସୁକ୍ରୁ କହିଲା, ସେ କଥାଟି କହ—

ବୃଦ୍ଧି କହିଲା, ଯାହା ମିଳିବ ଅଧେ ଅଧେ ବାଣ୍ଟିବା ।

ଘର ଅଗରୁ କିଏ ଜଣେ ଡାକ ଶୁଭିଲା, ହେ ବୃଦ୍ଧିଆ—

ବୃଦ୍ଧିଆ ବୁଝିଲା, ବାୟା କନ୍ଧ ତାକୁ ଡାକୁଛି । ସେ କହିଲା, ହେ ଚଇତୁ, ହେ ସୁକ୍ରୁ ବାୟା କନ୍ଧ କାହିଁକି ଅସିଲାଣି । ତମେ ଦିହେଁ ବାରିବାଟେ ଚାଲିଯାଅ । ଯାଅ, ଯାଅ,—ଜଲ୍‌ଦି । ମୁଁ ଯେମିତି କହିଲି, ତେମେ ଏକା ସେମିତି କରିବ । ଦେଖ, ଯଦି ମୋ ସଙ୍ଗେ ଖେଳିବାକୁ ବସିବ, ତାର ପ୍ରାଭବ ପାଇବଟି କହୁଛି ।

ଚଇତୁ ଓ ସୁକ୍ରୁ ତରବର ହୋଇ ବାରିବାଟେ ଚାଲିଗଲେ ।

ବୃଦ୍ଧି ଉମ୍ବ ନିଜେ ନିଜକୁ ସଜାଇଲା । କାମିଜ ପିନ୍ଧି ମୁଣ୍ଡରେ ପାନିଆ ମାରିଲା । ଲମ୍ବ କଳା ମିଚ ମିଚ ଦାଢ଼ିରେ ଅଙ୍ଗୁଠି ଯାଉଁଳି ଉଠିଲା । ହସି ହସିକା ଜବାବ ଦେଲା, ଅରେ ବାୟା ପାଟି ପରି ଶୁଭୁଛି ତ ! ଅସୁନ୍ତୁ ଭିତରକୁ ।

ବାୟା ଭିତରକୁ ଅସିଲା ।

ମୁଁ ତ ବାହାରିଥିଲି ତୋ ଘରକୁ ରେ ବାୟା । କାଲେ ତୁ ସାହୁକାର ଘରୁ ଫେରି ନ ଥିବୁ ବୋଲି ଡେରି ଡେରି କରୁଥିଲି । ସଞ୍ଜ ହୋଇ ଅସିଲାଣି, ବସି ଯା ଟିକେ ।

ସାହୁକାର ଟଙ୍କା ଦେବାକୁ ମନାକଲାରେ ବୃଦ୍ଧିଆ ।

ମନାକଲା ? କ'ଣ କହିଲା ? ଠିଆ ହୋଇ ରହିଲୁ ଯେ— ।

ବାହାରେ ଫିକାଳିଆ ଜହ୍ନଅଲୁଅ । ଘରଭିତର ଅନ୍ଧାରିଆ । ଅପଉ ନ କରି ବାୟା ବସିଲା । ବୃଦ୍ଧି ଅରଘରୁ ଅଲୁଅ ଅଣି ପାଖରେ ରଖିଲା । କହିଲା, ଏଥିକି ମନଦୁଃଖ କରୁଛୁ କାହିଁକି ?

ବାୟା କହିଲା, ଗୁରୁମୂର୍ତ୍ତି ସାହୁକାର କହିଲା, ମୋର ଭୂମିବାଡ଼ି ନାହିଁ, ପୁଣି ନାଇକର ପୁଅ ମାଗତା ସୁନାକୁ ବାହା ହେବ । ସେଥିପାଇଁ ସେ ମତେ ଟଙ୍କା ଦେଲା ନାହିଁ । କହିଲା, ମୁଁ ଧାଙ୍ଗଡ଼ୀ ଧରି କୁଅଡ଼େ ପଳେଇବ ।

ସୁନାକୁ କହିଲୁ କି ?

ନାହିଁ, ସାହୁକାର ଘରୁ ଫେରି ଦେଖିଲି, ସୁନା ମୋ ଘର ପାଖ ପଥର ଉପରେ ବସିଛି । ସେ ମତେ ଦେଖି ନାହିଁ । କଅଣ ତାକୁ କହିବି ? ମୁଁ ତାକୁ ଦେଖା ନ ଦେଇ ଲୁଚିକରି ଜଙ୍ଗଲ ଆଡ଼େ ପଳେଇ ଗଲି । ସଞ୍ଜ ହେଲାରୁ ତୋ ପାଖକୁ କହିବାକୁ ଆସିଲି ।

ବୁଦ୍ଧି ଶଙ୍କିତ ହେଲା ।

ଟିକିଏ ରହି ବାଘୁଆ ହତାଶ କଣ୍ଠରେ ପୁଣି କହିଲା—ନାହିଁରେ ବୁଦ୍ଧି ଭାଇ, ସୁନା ମାଗତାକୁ ବାହାହେଉ । ମୋର ଏ ଗାରେ କଣ ଅଛି, କିଏ ବା ଅଛି ? ସୁନା ସଙ୍ଗେ ଦେଖା ହେଲେ ସେ କହିବ, ଚାଲ ପଳାଇବା ହମଗିରି ପାହାଡ଼ ଉପରକୁ । ସେ କହିଲେ ମୁଇଁ ନାହିଁ କରି ପାରିବି କି ?

ଉଁ ହୁଁ—

ତାକୁ ନେବି କଣ ବାଘ ଭାଲୁ ଖୋଇବାକୁ ? ସବୁଦିନେ ବାଟରୁ ବାଘ ମଣିଷ ଝାଣି ନେଉଛି । ମୋର ଲାଗି ତାକୁ ବାଘ ଖାଇବ ?

ସତେ ବାଘୁଆ, ସବୁଆଡ଼େ ବାଘ ଖାଉଛି । ଲୁକଲୁକ ଆସି ପଛରୁ ଲାତ୍ ମାରିବେଟି ( ଗୋଟେଇ ) ନେଇ ପଳଉଛି । ଜାଣିଲେନା କାଣ୍ଡ ମାରିବୁ କି ଝାଙ୍ଗି ଧରି ଲଢ଼ିବୁ ! ଆଉ ସେ ବାଘ କି ଠାକୁରାଣୀ ସେ କଥା କିଏ କହିବ ?

ବୁଦ୍ଧି ଭାଇ—

କଣ ରେ ?

ପଳେଇବି ଏ ଗାଁରୁ ।

କୁଆଡ଼େ— ?

କୋରାପୁଟ । ସେଠୁ ସାହାବ ଲୋକ ନେଇ ଆସାମ ପଠାଉଛି । ମୁଇଁ ଯିବି । ଏ ଗାଁରେ ରହିବି ନାହିଁ । ସୁନା ହେବ ମାଗତାର ମାଇପ । ମୁଁ କହିଲି, ହେ ସୁନା, ମୁଁ ତୋର ଖମ୍ଭାରି ରହିବି । ସୁନା କହିଲା, ମତେ କଣ ଖମ୍ଭାରି ରଖିବାକୁ ଲୋକ ମିଳିବ ନାହିଁ ? ସତକଥା ବୁଦ୍ଧି ଭାଇ ।

ଅରେ ବାଘୁଆ, ଆସାମ ବହୁତ ଦୂରରେ । ଯେ ଯାଏ ସେ ଆଉ ଫେରେ କି ? କେତେ ଲୋକ ତ ଗଲେଣି—କିଏ ଫେରିଛି କହିଲୁ ?

ମୁଁ ବି ଫେରିବି ନାହିଁ ।

ହସି ହସି ବୁଦ୍ଧି ବାଘୁଆର ହାତ ଧରିଲା, କହିଲା—ସତେ ଭୁଇ ବାଘୁଆଟେରେ । ମୋ କଥା କରିବୁ ? ଦେଖ, ଯଦି ଜାନକୀ ଠାକୁରାଣୀ ମନ କରିବ, ତୋର ଅଭାବ ହେବ ନାହିଁ । ଭାରି ସହଜ । ମୁଁ ଜବାବ୍ ଦେଉଛି,

ସୁନା ତୋର ହେବ । ହୋଇ ଠଙ୍କା, ଲୋକଙ୍କୁ ଖାଇବାକୁ ଦେବାକୁ ଠଙ୍କା, ଗାଈ, ତୋର ଯାହା ଲୋଡ଼ା ସବୁ ମିଳିବ । ପାରିବୁ ?

ବାୟା ଅଶ୍ଚର୍ଯ୍ୟ ହୋଇ ବୁଦ୍ଧିର ମୁହଁକୁ ଚାହିଁ ରହିଲା ।

ଶୁଣ୍ — ।

ବାୟାର କାନ ପାଖକୁ ମୁହଁ ନେଇ ବୁଦ୍ଧି କେତେ କଣ କହିଲା । ବାୟାର ଧୈର୍ଯ୍ୟ ଭାଙ୍ଗିଲା । ସେ ଭୟରେ ଚାରିଆଡ଼କୁ ଅବା କାବା ହୋଇ ଚାହିଁ ହଠାତ୍ ଚମକି ଉଠିଲା ପରି କହିଲା ନାଇଁ, ନାଇଁ ବୁଦ୍ଧିଭାଇ, ମୁଁ ପାରିବ ନାଇଁ । ମୁଁ କରିପିଲା । ଖମ୍ବାର ହୋଇ ବଞ୍ଚିବ । ଲୁଲିନାଲି କରିବ । ବଣଜଙ୍ଗଲରେ ବୁଲି ଶିକାର କରିବ । ହୋଇ କୂଳରୁ କନ୍ଦା ଖୋଳି ଖାଇବ । ମୁ —ମୁଁ —ଚୋରି କରିବ ନାହିଁ । ସୁନାକୁ ମୁଁ ଚାହେଁ ନାହିଁ ବୁଦ୍ଧିଭାଇ, ସେ ମାଗତା ଘରକୁ ଯାଉ ।

ହାଃ, ହାଃ—ଅରେ, ସୁନାକୁ ସିନା ତୁ ଚାହୁଁ ନାହୁଁ, ସେ ତତେ ଚାହେଁ, ମାଗତାକୁ ଚାହେଁ ନାହିଁ । ମାଗତା ଘରକୁ ଗଲେ ସେ ବଞ୍ଚିବ କି ? ମରିଯିବ । ହଁ, ଦେଖ, ତତେ ମୁଁ ଚୋରି କରିବାକୁ କହୁନାହିଁ ତ । ତୁ ମୋ ସାଙ୍ଗରେ ଯିବୁ। ମୁଁ ସବୁ କରିବ । ଖାଲି ତୁ ମୋ ସାଙ୍ଗରେ ଥିବୁ, ବେଶ୍ । ଅରେ ବାୟା, ମୁଁ ଡମ୍ବଘର ପୁଅ ନା ? ଶିକ୍ଷା ଯିବାକୁ ମୋର ଡର ଅଛି କି ? ଯଦି ପୁଲିସ୍ ଧରେ, ମୁଁ ତ ମାନିଯିବି, ଶିକ୍ଷା ଯିବି, ତୋର କଣ କଏ କରିବ ?

ନାଇଁ, ନାଇଁ—

ତୋର ଇଷ୍ଟା ( ଇଚ୍ଛା ) । ମୋର ଠଙ୍କା କଣ ହେବ ? ଯେଉଁଠି ବାହା ହେବାକୁ ମନ ହେବ ଧାଙ୍ଗଡ଼ୀ ଘରେ ବରଷେ ଯାଏଁ ଗୋଛି ହୋଇ ଖଟିବି । ତା ପରେ ଧାଙ୍ଗଡ଼ୀ ଆଣିବି । ତୁଇ ମୋର ପିଲାଦିନର ସାଙ୍ଗଠା । ସୁନାଠା ବି ଭଲପିଲା । ତମ ଦୁହିଁଙ୍କର ଭଲ ପାଇଁ ବର୍ଷେ କି ଦିବର୍ଷ ଶିକ୍ଷା ଗଲେ କି ସିଠାମ୍ ( ସିଃ ଟିଃ ଏମ୍—ଅର୍ଥାତ୍ କ୍ରିମିନେଲ ଟ୍ରାଇବ ମେମ୍ବର ) ହୋଇ ପ୍ରତି ରାତିରେ ଥାନାରେ ଶୋଇଲେ ମୋର ଡରନାହିଁ । ଯାହା ମିଳିବ ତତେ ମୁଁ ଅଧେ ଦେବ । ଖାଲି ତୁ ମୋ ସାଙ୍ଗରେ ଯିବୁ, ତୋର କି ଡର ?

ଯଦି ଧରାପଡ଼ୁ ?

ମୁଁ ସିନା ଧରା ପଡ଼ିବ, ତୋର କଣ ହେବ ? ତୁ ଘର ପଛଟରେ ଗଛମୂଳେ ଲୁଚିଥିବୁ, ପଳେଇ ଆସିବୁ । ପାରିବୁ ନା ? ତୋର ଭଲକୁ କହୁଛି । ଯାହା ମିଳିବ, ତୋର ଅଧେ ମୋର ଅଧେ । ଯିବୁ ? କାଲି ରାତିରେ ?

ଯିବି ।

ବୁଦ୍ଧି ବାୟାର ହାତ ଧରିଲା, କହିଲା, ବେଶ୍, ଏଥର ତୁ ନିଶ୍ଚିନ୍ତ ରହ । ମୁଁ କହି ଦେଉଛି, ସୁନା ତୋର ହେବ । ଦେଖିବ, ମାଗତା କେମିତି ସୁନାକୁ

ନେବ । ହଁ,—ଦେଖ୍, ବାୟା, ମନକଥା ମନରେ ଥିବ । କେହି ଯେପରି ନ ଜାଣନ୍ତି । କାହାକୁ କହିବୁ ନାହିଁ ।

ସୁନାକୁ ?

ନାହିଁ । ମାଇପିଲୋକ । ତାଙ୍କ ପେଟରେ କଥା ରହେ ନାହିଁ । ଅଚ୍ଛା, ତୁ ଏଥର ଯା— । ଦେଖ୍—କାଲି ସଞ୍ଜବେଳେ ମୁଁ ତୋ ଘରକୁ ଯିବି । ତୁ ଥିବୁ ଏକା ।

ବାୟା ଧୀରେ ଧୀରେ ଚାଲି ଯାଉଁ ଯାଉଁ ପଛକୁ ଫେରି ଚାହିଁ କହିଲା, ଥିବ ।

ବାୟା ଚାଲିଗଲା । ବୁଦ୍ଧ ଠିଆହୋଇ ଏଣିକି ତେଣିକି ଚାହିଁଲା । ଉଚ୍ଚସ୍ୱରରେ ହସିଉଠି ମନକୁ ମନ କହି ହେଲା, ମୁଁ ଡମ୍ବପିଲା, ପରି ମୁଣ୍ଡରେ ନଡ଼ିଆ ଭାଙ୍ଗେ । ଅରେ ବାୟା, ତୁ କନ୍ଦ-ଅନ୍ଧ । ଚାହିଁଥିବୁ, କିଛି ଦେଖିବୁ ନାହିଁ ।

ଗେଡ଼୍ଡା ( ନାଳ ) କୂଳ । ଜଙ୍ଗଲ ଭିତର । ସମୟ ଅପରାହ୍ଣ । ବାୟା ସୁନାର ହାତ ଧରି ଯାଉଁ ଯାଉଁ ଅଟକି ଗଲା । ଚାରି ଆଡ଼କୁ ତରଙ୍ଗ ତରଙ୍ଗ ହୋଇ ଚାହିଁଲା । କହିଲା, ଏଇଠି ଟିକେ ବସି ଦମ୍ ନେବା ସୁନା । ଦଉଡ଼ି ଦଉଡ଼ି ଆସି ତୁ ଥକି ପଡ଼ିଥିବୁ—ବସ୍ ।

ଦୁହେଁ ଗଛଇତଳ ଦେଖି ବସିଲେ । ସୁନା ବହଳ ଆଖିରେ ବାୟାକୁ ଚାହିଁ ପଚାରିଲା, ତୋ ପିଠିରେ ଏତେ ମାଡ଼ ଦାଗ ବସିଛି ? ପୁଙ୍ଗିଟା ବଡ଼ ଦୁଷ୍ଟ । ପୁଲିଶ କି ବାହା ହେବ ବୋଲି ତାର ଗୋଡ଼ ତଳେ ପଡ଼ୁନାହିଁ । ତାର ଟଙ୍କା ଚୋରି ଗଲା । ଲୋକେ ପଚାରିବାରୁ କହୁଚି, ଯିଏ ନେଲା ତା ଧର୍ମ, ଠାକୁରାଣୀ ତାକୁ ଖାଇବ । ପୁଙ୍ଗି ପୁଣି ଯାଇ ସାହୁକାରଠୁ ଟଙ୍କା ଆଣିଚି । ସେଇ ଗୋଟାଏ ବାଡ଼ି ଧରି ତତେ ଆଉ ତୋ ସାଙ୍ଗ ଲୋକଙ୍କୁ ପିଟିଲାକି ? ତୁଇ ତାକୁ ପିଟିଲୁ ନାହିଁ ?

ସୁନାର ମୁଣ୍ଡଟିକୁ କାନ୍ଧକୁ ଆଉଜାଇ ଆଣି ତାର ପିଠିରେ ହାତ ବୁଲାଇ ବାୟା କହିଲା, ଅଲୋ ପାଗଲୀ, ମୁଇଁ କେମିତି ତାଙ୍କୁ ମାରନ୍ତି ? ଛପି ଛପି ଯାଇ ପଥର କଡ଼ରେ ଲୁଚିଲି । ଜଙ୍ଗଲ ଭିତରେ ମୋ ସାଙ୍ଗମାନେ ଲୁଚି କରି ବସି-ଥାନ୍ତି । ତୁଇ ଯେମିତି ପାଣି ନବାକୁ ପଥର କଡ଼କୁ ବୁଲି ଆଇଲୁ, ମୁଁ ତୋ ହାତ ଧରି—

ହଁ, ଘିଞ୍ଚି ନେଇ ଥାଲୁ ତ ! କାଲି ସଞ୍ଜବେଳେ ଲତା ମତେ କହିଥିଲା ବୋଲି ସିନା ମୁଁ ଘଣ୍ଟାଏ କାଳ ତତେ ଚାହିଁ ବସିଥିଲି । ପୁଲିଶ ଯିବାକୁ ତରତର

ହେଉଥାଏ । ଲତା କହୁଲା, କଲେ, ପୁଙ୍ଗିକୁ ଘଣ୍ଟେ ନ ଦେଖିଲେ ବଣା ହୋଇ ଯିବୁ କି ? ଗୀତ ବୋଲ—। ପୁଲକ ଗୀତ ବୋଲୁଲା—

ତୁଇ ଆଜ ଲତା ମିଶେ ( ମଧ୍ୟ ) ଗୀତ ବୋଲୁଥିଲ ତ ?

ହଁ । ତୁଇ ଯେତେବେଳେ ପଥର କଡ଼କୁ ଆସିଲୁ, ପତର ଖଡ଼ ଖଡ଼ ହେଲା । ଲତା ମତେ ଶମ୍ଭୁଟି ଦେଇ ଆଖି ଠାର କହୁଲା, ଯାଲେ ପାଣି ଅଣିବୁ ।

ଲତା ମତେ ଦେଖିଥିଲା ?

ହଁରେ, ସେ ତତେ ଅଗ ଦେଖିଛ । ପୁଲକ କିଛୁ ଜାଣି ନାହିଁ । ଗେଡ଼୍ଡା ସେ ପାଖରେ ପୁଙ୍ଗି ବାଁରେଇ ହୋଇ ଡାଲ ଭାଙ୍ଗୁଥାଏ । ପୁଲକ ତାଅର ଅଡ଼କୁ ଚାହିଁ ଗୀତ ବୋଲୁଥାଏ । ଦେଖିଲୁ କି ?

ତୋ ବନା ମୁଁ ଆଉ କାହାକୁ ଦେଖି ନାହିଁ । ତତେ ଯେତେବେଳେ ଦୁଇ ହାତରେ ଶୂନ୍ୟେ ଶୂନ୍ୟେ ଟେକ ନେଇ ଦଉଡ଼ିଲ, ସେ ପାଖୁ କିଏ ଗୋଟାଏ ପାଟି କର ଡାକଲା—

ପୁଲକ ଡାକଲା—

ହୋଇ ଥିବ । ପୁଙ୍ଗି ହ ଖେପାରେ ଗେଡ଼୍ଡାର ସେ ପାଖରୁ ଏ ପାଖକୁ ଡେଇଁ ଅସିଲା । ଯେଉଁ ଗୁଣ୍ଟ ଧଉଥିଲା ସେଇଥିରେ ମୋ ପିଠିରେ ପିଟିଲା । ତତେ ଛାଡ଼ଦେଇ ଯଦ ମୁଁ ତାକୁ ମାରନ୍ତି ତୋ ବାପ କି ଗାଁ ଲୋକେ ମୋ ହାତରେ ତତେ ଦଅନ୍ତେ କି ? କନ୍ଦ କୁଲରେ ମାଡ଼ ଫେରଇ ଦେଲେ ଧାଙ୍ଗଡ଼ୀ ଫେର-ଯିବ ।

ବାୟାର ପିଠି ଅଉଁସି ସୁନା କହୁଲା, କେତେ ନୋଲା ଫାଟିଛୁ । ତୋ ସାଙ୍ଗମାନେ ଯଦ ଗଛ ଉହାଡ଼ରୁ ବାହାର ପୁଙ୍ଗିକୁ ଧର ନ ଥାନ୍ତେ, ସେ ତତେ ଅଧ୍ମର ମାରଥାନ୍ତା । ମାଗତା ତାର ସାଙ୍ଗ ଯେ—

ମାରଥାନ୍ତା ତ ମାରଥାନ୍ତା । ତୋ ଲାଗି ମୁଁ ଜୀବନ ଦେଇଥାନ୍ତି ।

ସୁନାର ମୁଣ୍ଡକୁ ଦୁଇ ହାତରେ ବାୟା ଟେକ ଧରଲା । ପୁଣି କହୁଲା, ସୁନା, ବୋଲ ତ ସେଇ ଗୀତଟା । ବୋଲ ନା—

ଅମର ଗାଁ ଲୋକେ ତତେ ଧରବାକୁ ଗୋଡ଼େଇ ଥିବେ । ପୁଙ୍ଗି ଯାଇ ନାଇକକୁ କହୁବଣି । ମାଗତା ହେଉକା ସମସ୍ତେ ଅସି ମତେ ତୋ ପାଖରୁ ଛଡ଼ାଇ ନେଇଯିବେ । ଚାଲ୍ ପଳେଇବା ଡୋଙ୍ଗର ଉପରକୁ ।

ଅରେ, କନାମ ଗାଁ ଏଠିକ କୋଶେ ବାଟ ହେବ । ଅମର ଗୀତ କାହାରକୁ ଶୁଭବ ନାଇଁ । ତୁଇ ଗୋଟେ ଗୀତ ନ ବୋଲଲେ ମୁଁ ଏଠୁ କୁଆଡ଼େ ଯିବ ନାଇଁ ।

ସୁନା ଗୀତ ବୋଲଲା, ବାୟା ପାଳ ଧରଲା । ଉପତ୍ୟେ ଅସ୍ମହଗ ହୋଇ ପଡ଼ଲେ । ଚାରଅଡ଼େ ସବୁଜ ପ୍ରକୃତି, ଦୂରର ନେଳ ପାହାଡ଼ ଗୀତର ଲହରରେ ମୁଖରତ ହେଲା ।

ଗୀତ ଶେଷ ହେଲା । ବାସ୍ନା ସୁନାକୁ ଆଲିଙ୍ଗନ କରି ତାର ମୁହଁରେ ଚୋକ ଦେଲା । ସୁନା ବାସ୍ନାର ବାହୁବନ୍ଧନରୁ ମୁକ୍ତ ହୋଇ କହିଲା, ବାସ୍ନା ମତେ ତ ଘିନି ଆଣିଲୁ, ଏବେ ଯିବା କୁଆଡ଼େ କହ । ତୋର ଭଙ୍ଗା ଘରେ ରହିଲେ ମାଗତାହେରିକା ଆସି ପୁଣି ଗୋଳମାଳ କରିବେ । ଯିବା କିରେ ବାସ୍ନା, ପାହାଡ଼ ସେପାରି ନିମଗିରି ଉପରକୁ ? କେହି ଜାଣି ପାରିବେ ନାହିଁ । ଯିବା କି ?

ନାଇଁରେ, ଏତେ ଦୂରକୁ ଯିବା ନାଇଁ । ପାହାଡ଼ ସେପଟେ ଝୋଲା କୂଳରେ ଗୋଟେ ଭଙ୍ଗା ଘର ଅଛି । ଗୃହପାଖେ ଡୋଙ୍ଗର, ସେଇଠି ରହିବା ।

ଗାଁ ଲୋକେ ଜାଣିବେ । ଖୋଜି ଖୋଜି ଯିବେ ।

ଭଲ ହେବ । ତୋ ବାପକୁ ଝୋଲା ଟଙ୍କା ଦେବି, ଗାଁ ଲୋକଙ୍କୁ ମଦ ପାଇଁ, ଖାଇବା ପାଇଁ ଟଙ୍କା ଦେବି, ପୁଚ ରଖିଚି ହାଣି ଖାଇବାକୁ ଦେବି ।

ସୁନା ବିସ୍ମୟରେ ତା ମୁହଁକୁ ଚାହିଁ ପଚାରିଲା, କାହୁଁ ପାଇଲୁ ରେ ? ସାହୁକାରର ଖମାରି ହେଲୁ କି ? କେଉଁ ସାହୁକାର ସେ ?

ବାସ୍ନାର ମୁହଁ ଶୁଖିଗଲା । ନିଃସହାୟ ଆଖିରେ ସୁନାକୁ ଚାହିଁଲା । ଉତ୍ତର ଦେଇ ପାରିଲା ନାହିଁ ।

ସୁନା ବାସ୍ନାର ହାତ ମୁଠାଇ ଧରି ପଚାରିଲା, କହ, କହ, ତୁନି ପଡ଼ିଲୁ କାହିଁକି ? ସତେ ତୁ ଝୋଲା ଟଙ୍କା ରଖିଚୁ ?

ବାସ୍ନା ଥଙ୍ଗେଇ ଥଙ୍ଗେଇ କହିଲା, ରଖିଚି । ପୁଚ ରଖିଚି । ତୋ ଲାଗି ଶାଢ଼ୀ ରଖିଚି । ସୁନା ହାର ରଖିଚି । ତୋ ବାପର ଲାଗି ଲୁଗା ରଖିଛି ।

କିଏ ଦେଲା ରେ ? ଚୋରି କଲୁ କି ?

ମୁଁ ଚୋରି କରି ନାହିଁ । ସବୁ ମତେ ବୁଢ଼ିଆ ଡମ୍ବ ଦେଲା ।

ବୁଢ଼ି ବାରିକ ଦେଲା ? କାହିଁକି ? କେଉଁଠୁ ସେ ଆଣିଲା ? କହ, [କହ, ତୁନି ରହିଲୁ କାହିଁକି ? କହ ବାସ୍ନା—ମତେ ଡର ଲାଗୁଚିରେ ।

ସୁନା ଅସ୍ଥିର ହୋଇ ଉଠିଲା ।

ବାସ୍ନା କହିଲା, ତୁ ଡରୁଚୁ କାହିଁକି ? ମୁଁ ଚୋରି କରି ନାହିଁ । ବୁଢ଼ିଆ ମତେ ଡାକିଲା । ମୁଁ ତା ସାଥିରେ ଗଲି ଦାକାଲଗୁଡ଼ା । ବନମାଳୀ ସାହୁକାର ଘରକୁ ବୁଢ଼ିଆ ଗଲା । ମୁଁ ଯାଇ ନାହିଁ । ଗଛମୂଳରେ ମୁଁ ରହିଲି । ସେ ଚୋରି କଲା । ମୁଁ ତା ସାଙ୍ଗରେ ଆସିଲି । ସବୁ ସେ ମତେ ଦେଲା କି ? ସେ ସବୁ ନେଲା । ମତେ ଅଳପ ଦେଇଚି ।

ତୁ ଚୋରି କରିନୁ ତ ?

ନା— ।

ପୁଲିସ୍ ଯଦି—

ବାୟା କହିଲା, ପୁଲିସ ଯଦି ଧରିବ ମୁଁ ସତକଥା କହିବି । ବୁଢ଼ିଆ ଡମ୍ବ କହିବ ସେ ଚୋରି କରିଛି । ତାକୁ ସିନା ଶିକ୍ଷା ହେବ, ମୋର କସ୍ ହେବ କି ? ବୁଢ଼ିଆ କହିଛି ସେ ଶିକ୍ଷା ଯିବ । ହେଇ, ସେ ଧାଇଁ ଧାଇଁ ଆସୁଛି—

ବାୟା ଓ ସୁନା ବୁଢ଼ିଆ ଆସୁଥିବା ଦିଗକୁ ଚାହିଁ ରହିଲେ । ବୁଢ଼ିଆ ଧଇଁ ସଇଁ ହୋଇ ପହଞ୍ଚିଲା । ସୂର୍ଯ୍ୟ ପାହାଡ଼ କଡ଼ରେ ବୁଡ଼ି ଆସୁଥିଲେ ।

ବୁଢ଼ିଆ କହିଲା, କିରେ, ତେମେ ଦିହେଁ ଏଇଠି ଅଛ ? ଗାଁ ଲୋକେ ସବୁ କଥା ଜାଣିଲେଣି । ହେ ସୁନା, ତୋ ବାପ ଜାନୀ ଆଉ ମାଗତା ବାପ ନାଇକ, ଗାଆଁର ସବୁ ଲୋକକୁ ଧରି ଚୌରିଆଡ଼େ ଖେଦି ଗଲେଣି । ଏଣେ ବି ଆସୁଚନ୍ତି । ତେମେ ଦିହେଁ ଏଇ ଡୋଙ୍ଗର କଡ଼େ କଡ଼େ ପଳାଅ । ହେ ବାୟା, ସେଇ ଝୋଲକୂଳ ଭଙ୍ଗା ଘରକୁ ଯା—

ସୁନା କଣ ପଚାରିବାକୁ ବସିଲା । ତାର ମନକଥା ବୁଝିପାରି ବୁଢ଼ିଆ କହିଲା, ଡେରି କରନା । ସେମାନେ ଏଇ ବାଟରେ ଆସୁଚନ୍ତି । ମୁଁ ଆଗରେ ଆସିଲି । ପଳାଅ—

ବାୟା କହିଲା, ସୁନା କହୁଚି, ମତେ ଶିକ୍ଷା ହେବ ।

ବୁଢ଼ିଆ ବୁଝିଲା, ବାୟା ତା ଆଗରେ ସବୁ କଥା କହିଛି । ତାର ଭୟ ହେଲା, ସୁନା ଯଦି ବାୟା ସଙ୍ଗରେ ନ ଯାଇ ଫେରିଯାଏ କମ୍ବା ଗ୍ରାମ ଲୋକଙ୍କୁ ସବୁ ଫିଟାଇ କହେ, ତେବେ ତାର ଆଉ ରକ୍ଷାରକ୍ଷଣ ନାହିଁ । ନିଶ୍ଚୟ ତାକୁ ପୋଲିସ ଧରିନେଇ ଶିକ୍ଷା କରେଇବ । ସେ ହସି ହସି କହିଲା, ତୋର କାହିଁକି ଶିକ୍ଷା ହେବ ? ତୁ କଣ ଚୋରି କରିଚୁ ? ମୁଁ ଚୋରିକଲି । ମୋର ଯାହାକୁ ଇଚ୍ଛା ହେଲା, ତାକୁ ଜିନଷ ଦେଲି । ପୋଲିସି ଯଦି ପଚାରେ ସତ କହିବି । ମୁଁ ଜେଲ୍ ଯିବି । ତୋର କସ୍ ହେବ ? ଡମ୍ବପିଲା ହୋଇ ଶିକ୍ଷା ଯିବାକୁ ଡରିବି ?

ବାୟା ଖୁସି ହୋଇ ସୁନାକୁ କହିଲା, ଶୁଣିଲୁ ତ ସୁନା ? ବିଶ୍ୱାସ ହେଲା ?

ସୁନା କହିଲା, ହଁ । ଆରେ ବୁଢ଼ିଆ—

କଣ କହୁଚୁ ? ବାୟାକୁ ମୁଁ ଭଲପାଏ । ସେ ମୋର ପିଲା ଦିନର ସାଙ୍ଗଟା । ତତେ ମିଶା ମୁଁ ଭଲପାଏନାଇଁ କି ସୁନା ? ତୁଇ କହ—

ସୁନା କୃତଜ୍ଞତାପୂର୍ଣ୍ଣ ଆଖିରେ କହିଲା, ହଁ— ।

ବୁଢ଼ିଆ ପୁଣି କହିଲା, ଆଉ ମାଗତା, ତାର ବେକଟା କାଟିଦେବାକୁ ମୋ ମନ ହୁଏ । ନାଇକର ପୁଅ ବୋଲି ପିଲାଦିନୁ ସେ ମତେ କେତେ ମାରିଛି । ସେଥିଲାଗିରେ ସୁନା, ବାୟା ପାଇଁ, ତୋ ପାଇଁ ମୁଇଁ ଜେଲ ଘରେ ପଛେ ପଶିବି, ତତେ ମାଗତାର ମାଇପ କରେଇ ଦେବି ନାହିଁ ।

ସୁନା ଆଖି ଛଳ ଛଳ କରି କୃତଜ୍ଞତା ଜଣାଇଲା ।

ବୁଢ଼ିଆ ହସି ହସି କହିଲା, ଏଇ, ପାଟି ଶୁଭୁଛି । ସେମାନେ ଆସୁଛନ୍ତି । ମୁଁ ଏବାଟେ ଯାଉଛି । ତେମେ ସେବାଟେ ଯା—ଡଙ୍ଗର କଡ଼େ କଡ଼େ । ବୁଝିଲ ? ସେଇ ଭଙ୍ଗା ଘରକୁ— । ପଳାଅ—

ସୁନା ଓ ବାସ୍ନାଙ୍କୁ ଗ୍ରହ ବୁଢ଼ି ବାଉକ ଶଳ ପର ଛୁଟି ପଳାଇଲା । ପ୍ରଣୟୀ ଯୁଗଳ ତାର ଗନ୍ତପଥକୁ ଅନାଇଁ ରହିଲେ । ଜଙ୍ଗଲ ଭିତରେ ସେ ଅଦୃଶ୍ୟ ହେଲା । ବାସ୍ନା ଖୁସି ହୋଇ ସୁନାର ହାତ ଧରି କହିଲା, ସେ ମୋର ପିଲା ଦିନର ସାଙ୍ଗଟା । ମୋ ପାଇଁ ସେ ଶିକ୍ଷା ଯିବ । ଚାଲ ସୁନା, ଆମେ ସେଇ ଭଙ୍ଗା ଘରକୁ ପଳାଇବା ।

ସୁନାର ମନ ମାନିଲା ନାହିଁ । ବୁଢ଼ି ବାଉକର ଢଙ୍ଗରେ ସେ ଯେପରି କେଉଁ ଅଜଣା ବିପଦର ସୂଚନା ପାଇଲା । ତାର ମୁହଁ ଶୁଖିଗଲା । ବାସ୍ନାକୁ ଉତ୍ତର ନ ଦେଇ ସେ ତାର ପଛେ ପଛେ ଅରଣ୍ୟ ଭିତରେ ଚାଲିଲା ।

ପୋଲିସ୍ ଥାନା । ଟେବୁଲ ଆଗରେ ହାତ ଯୋଡ଼ି ଠିଆ ହୋଇଛନ୍ତି ବନମାଳୀ ସାହୁକାର । ପାଖରେ ଠିଆ ହୋଇଛି ଜଣେ କନେଷ୍ଟବଲ । ଘର ଭିତରେ ଦୁଇ ତିନିଜଣ ଭଦ୍ର ବସିଛନ୍ତି । ଟେବୁଲ ଆରପାଖେ ଚଉକିରେ ବସିଛନ୍ତି ସବ୍‌ଇନ୍‌ସପେକ୍ଟର ( ମୁନ୍‌ସି ) ବାବୁ । ସମୟ ହେବ ଏଗାର ।

ବନମାଳୀ କହିଲେ, ଆଜ୍ଞା, ମୋ ଇଜାହାରଟା ଲେଖନ୍ତୁ । ମୋ ଘରୁ କାଲି ରାତିରେ ସବୁ ଚୋରି ହୋଇ ଯାଇଛି । ଦୟା କରନ୍ତୁ—

ମୁନ୍‌ସି ବାବୁ ମୁହଁ ଟେକି କହିଲେ, ରହ ସାହୁକାର । ଚୋରି ତ ଯାଇଛି ମୁଁ କରିବି କଣ ? କିଏ ଚୋରି କଲା ଦେଖିଛୁ ? ତମ ଲୋକଙ୍କ ଅଭ୍ୟାସ ମିଛରେ ହେଲେ ଇଜାହାର ଦେଇ ମଣିଷକୁ ହଇରାଣ କରିବ । ଖରାଚରାରେ ବଣ ଜଙ୍ଗଲ, ପାହାଡ଼ ଡୋଙ୍ଗର ଖୋଜି ଖୋଜି ଶେଷକୁ କିଛି ଫଳ ହେବ ନାହିଁ ।

ମିଛ ନୁହେଁ ମହାପ୍ରଭୁ ! ମୁଁ ରାୟଗଡ଼ା ଯାଇଥିଲି । ଦାକାଲ୍‌ଗୁଡ଼ାରେ ଦୋଘର କରିଛି—

ବେଶି ଗୁଡ଼ାଏ ବକ ନାହିଁ, ଦୋଘର, କରି କି ଚୋରଘର କର । ଚୋରି କରିବାଟା କେହି ଦେଖିଛି କି ?

ଦେଖିଥିଲେ ଚୋରି କେମିତି ହେବ ମହାପ୍ରଭୁ !

ନ ଦେଖିଲେ କେଶ୍ କେମିତି ଚାଲିବ ସାହୁକାର ? କୋଠ୍ ଘର ବିଶ୍ୱାସ କରିବ କି ? ମୁଦାଲା ଖଲାସ ହେବ ସିନା । କାହା ଉପରେ ତମର ସନ୍ଦେହ ହେଉଛି ?

ଅଜ୍ଞା ମହାପ୍ରଭୁ—ବନମାଳୀ ଭାବିବାକୁ ଲାଗିଲେ ।

ମୁନସି କହିଲେ—ଅଚ୍ଛା, ଭାବିକରି ଲୁହ । ମୁଁ ଅନ୍ୟ କାମ କରେଁ ।

ଜମାନ୍ (କନ୍ଷ୍ଟେବଲ) ପୋଲିସ ଗାରରେ ସଲାମ୍ କରି କହିଲା—ହଜୁର—

ମୁନସି ପଚାରିଲେ, କଣ ?

ଜମାନ୍ କହିଲା, ସାହୁକାରର କଥାଟା ଲେଖିନେଇ ସିଭଲ ଡଷ୍ଟ୍ରିକ୍ଟ ଲେଖିଦେଲେ—

ମୁନସି ହସି ହସି କହିଲେ, ଅଚ୍ଛା, ସେ କଥା ପରେ ଦେଖିବା । ସୁନାମଣି ଡମ୍ବ ହାଜର ହେ ?

ଜମାନ୍ ପାଟି କରି ଡାକିଲା, ସୁନାମଣି ଡମ୍ବ ।

ହାତ ଯୋଡ଼ି ସୁନାମଣି ଡମ୍ବ ପାଖକୁ ଆସିଲା । ଦୁଇଥର ଶିକ୍ଷା (ଜେଲ) ଭୋଗିବାରୁ ତାକୁ କ୍ରିମିନାଲ ଟ୍ରାଇବର ମେମ୍ବର (ସି-ଟି-ଏମ୍ ବା ସିଡାମ୍) କରା ହୋଇଛି । ପ୍ରତିଦିନ ରାତି ୧୧ ଘଣ୍ଟା ଓ ୩ ଘଣ୍ଟାରେ ସବୁ ସିଟାମ୍‌ଙ୍କୁ ଥାନାରେ କମ୍ବା କୌଣସି ନିଯୁକ୍ତ ଭଦ୍ରଲୋକ ଘରେ ହାଜିରା ଦେବାକୁ ପଡ଼େ । ଅନୁପସ୍ଥିତ ହେଲେ କେଶ୍ କରି ସି-ଟି ଆକ୍ଟ ଅନୁସାରେ ଜେଲ ଦଣ୍ଡ ଭୋଗିବାକୁ ପଡ଼େ ।

ମୁନସି ପଚାରିଲେ, କରେ, କାଲି ରାତିରେ ହାଜିରା ଦେବାକୁ ଆସିଲୁ ନାହିଁ । ସାର୍କଲକୁ (ପୋଲିସ୍ ଇନସ୍‌ପେକ୍ଟରଙ୍କୁ) ରିପୋର୍ଟ କରୁଛି ।

ନାଇଁ, ମହାପ୍ରଭୁ ! ରକ୍ଷା କର ମହାପ୍ରଭୁ ! ମୋର ଗାଁ ଏଠିକି ଦଶ ମାଇଲ, ଦହଟା ଡୋଙ୍ଗର ପାରି । ଅସୁଥିଲି, ରାତି ହେଲା, ଜଙ୍ଗଲ ଭିତରେ କନାମଝୋଲ (ନାଲ) ଛେକି ଦେଲା (ଅଟକାଇ ଦେଲା) ।

କୋରାପୁଟ ଜିଲାର ନଈ ନାଲ । ପାହାଡ଼ ପର୍ବତରେ କାହିଁ କେଉଁ ଅଜଣା ଥାନରେ ବର୍ଷା ହେଲେ ପାଣି ଗଡ଼ିଆସି ନାଲରେ ପଡ଼େ । ଉଚ୍ଚ ପାହାଡ଼ରୁ ପାଣି ଚଢ଼ି ଆସି କାଲକ୍ରମେ ଦୁଇପାଖର ବଣ ମାଟି ତାଡ଼ି ନାଲ ବା ଝୋଲା କରେ । ଆଖି ପାଇବ ନାହିଁ ଖଣ୍ଡି । ପାହାଡ଼ ଉପରେ ଠିଆ ହୋଇ ନାଲ ତଳକୁ ଚାହିଁଲେ ମୁଣ୍ଡ ବୁଲାଇ ଦିଏ । ଏପରି ଝୋଲା ବା ନାଲ କୋରାପୁଟ ଜିଲାରେ ଅଗଣନ । ପ୍ରତି ଝୋଲା ବା ନାଲ ଉଚ୍ଚ ପାହାଡ଼ରୁ ତଳ ଭୂଇଁକୁ ଗଡ଼ିଲା ବେଳେ କେତେ ଜଳପ୍ରପାତ ସୃଷ୍ଟି କରେ । ଜିଲାଟାଯାକରେ ଶ୍ରେଷ୍ଠ ବଡ଼ ହୋଇ ଦୁଇଶ ଜଳପ୍ରପାତ ଅଛି ।

କାହିଁ କେଉଁ ଦୂର ପାହାଡ଼ରେ ବର୍ଷା ହେଲେ, ହଠାତ୍ ନଈ ନାଲରେ ପାଣି ପଡ଼େ । ସୁଅର ତୋଡ଼ରେ ନାଗ ମୁଣ୍ଡ ଦି ଖଣ୍ଡ ହେବ । ଆଣୁଏ ପାଣିରେ ପଶି ଛାଟିଏ ହାତର ନାଲ ପାର ହେବା ଦୁଃସାଧ୍ୟ । ପଥିକଆ ନାଲ, ଡଙ୍ଗା କାଠୁଆ ପଡ଼େ ନାହିଁ । ବାଧ୍ୟ ହୋଇ ଝୋଲର ଚୋଟିଏ ପାଖରେ ଅଟକି ରହିବାକୁ ପଡ଼େ ।

ପାଣିର ତୋଡ଼ ଖସିଲେ କମ୍ବା ପାଣି କମିଲେ ଲୋକେ ପଶି ନାଳ ପାର ହୁଅନ୍ତି । ବେଳେ ବେଳେ ଘୋର ଜଙ୍ଗଲ ଭିତରେ, ମାଛିଆ ମଶା ପଲ ମଝିରେ ବସି ବସି ରାତି କାଟିବାକୁ ପଡ଼େ ।

ମୁନ୍‌ସି କହିଲେ, ଖୋଲି ଛେଳିବା କଥା ଅଇନରେ ନାହିଁ । ଅଇନ୍ କହୁଛି ସିଂହାମ୍ ଗର୍‌ହାଜର ହେଲେ ତାକୁ ଶିକ୍ଷା କରେଇବ । ଭଙ୍ଗୁ ଡମ୍ବ କାହିଁ ?

ଭଙ୍ଗୁ ଡମ୍ବ ହାତ ଯୋଡ଼ ପଦାରୁ ଅସି ଆଗରେ ଠିଆ ହେଲା ?

କରେ, ତୋର କଣ ହେଲା ? ତୁ କାହିଁକି ଅସିଲୁ ନାହିଁ ?

କସ କରବ ମାହାପ୍ରୁ, ପହରଦନ ରାତିରୁ ମୋ ମାଇପ କଷ୍ଟ ପାଉଥିଲା । କାଲି ରାତିରେ ଅଣ୍ଡିରା ପିଲାଟେ ହେଇଚ । ଏକୁଟିଆ ମଣିଷ । କେମିତା ଛାଡ଼ି ଅଇଛି । ତୁଇ ରଖ—

ଗ୍ରେପ୍—ବେଶି ଗୁଡ଼ାଏ ବକ୍ ନାହିଁ । ସିଂହାମ୍ ହେଇ ସାତଥର ଜେଲ ଗଲୁ ତଥାପି ତୋ ବଦ୍‌ମାସି ଛାଡ଼ିଲା ନାହିଁ । ତିନ ଥର ଛାଡ଼ ଦେଲ । କେବେ କହୁଚ , କାଇଲା ପଡ଼ିଲୁ ( ବେମାର ହେଲୁ ) କେବେ ତୋର ମାଇପ ମରୁଚ, ପୁଣି କେବେ ମାଇପ ଜନମ କରୁଚ । କରେ—?

କସ୍ କରବ । ଥରେ କର ତୁଇ ମତେ ଶିକ୍ଷା କରାଉଚୁ ଅଉ ଗୋଟେ କର ମାଇପ ପଲଉଚ । କଣ ଖାଇ ରହିବ କ ? ମୁଁଇ ତ ଶିକ୍ଷା ଖଟିଲି । ଶିକ୍ଷା ଭୋଗି ଫେର ଅଉ ଗୋଟେ ଅଣିଲେ—

ଏମିତି କେଇଟା ଅଇଁଲୁ, କେଇଟା ଗଲେ ?

ତୁଇ ହିସାବ କର—ଯେତେ ଥର ଶିକ୍ଷା କଟେଇଲୁ ସେତେଟା । ଲେଖି ଦେ, ଜେଲରେ ଥିବ । ଅଉ ଅସିବ ନାଇଁ ।

ହଁ, ମେଇଅ ଲେଖି ଦେବା ।

କାଡ୍ରାକା ଟିପୁ କକ ଅଗକୁ ଅସି ହାତ ଯୋଡ଼ କହିଲା, ମୋର ପୋଢ଼ ଖାଇଦେଲେ ମାହାପ୍ର —

କଏ ଖାଇଲା ରେ ?

କେମିତି ଜାଣିବ ? ତିନରାତି ହେଲା—କଏ ମୋର ଶାଳ ଖୋଲି ପଟେ ଘୁଡ଼ ନେଲା । ଗୋଡା ( ଖୁବ ଚହ୍ଳ ) ଖୋଜି ଗଲୁଁ । ବସିନ୍‌ପଦର ଡୋଙ୍ଗର ଉପରେ, ଗୋଟେ ପଥର ସନ୍ଧରେ ପୁଢ଼ର ମୁଣ୍ଡଟା ପଡ଼ିଥିଲା । ରକ୍ତ ପଡ଼ିଛି । ବସନ୍‌ପଦର ଡମ୍ବମାନେ ମାରି ଖାଇଦେଲେ । ନାଇକକୁ ପଗ୍ଭର ।

ନାଇକ କହିଲା, ଖାଇଲେ ମାହାପ୍ରୁ । ସଞ୍ଜବେଳକେ ମୋର ଘରେ ଅଣି ମାଉଁସ ଦେଲେ । ମୁଇଁ ନ ଥିଲି । ମୋ ମାଇପ କହିଲା, କେଉଁଠୁ

ଆଣିଲ ଏର ? ଉମ୍ବ ମିଚେଲ କହୁଲେ, ଡୋଙ୍ଗର ଉପରେ ବାଘ ମାରି ପକେଇ ଥିଲା । ଟିପୁରତା ବୋଲି କେମିତି ଜାଣିବ ।

ମୁନ୍‌ସି ଲେଖି ସାର କହୁଲେ, ତୁ ବି ସେଥିରେ ଅଛୁ । ସବୁ ଥର ଖସି ଯାଉଚୁ । ଏଥର ଚତେ ଛାଡ଼ିବି ନାହିଁ ।

ନାଇକ କହିଲା, ତୋର ଇଷ୍ଟ ( ଇଚ୍ଛା ) ଏକା ।

ଯଦି ବର୍ଞ୍ଚିବୁ, ଚୋର ଧରେଇଦେ ।

ଧରେଇଦେବି ମାହାପ୍ରଭୁ ।

ବନମାଳୀ ସାହୁକାର ଆଗକୁ ଆସିଲେ ।

ମୁନ୍‌ସି କହୁଲେ କହେ, କାହା ଉପରେ ତମର ସନ୍ଦେହ ହେଉଚ ?

ବନମାଳୀ କହୁଲେ, କେମିତି ମିଛ କଥା କହିବ ? ଦାକାଲଗୁଡ଼ା ଘରେ ମୋର ଶଳା ଗୋବିନ୍ଦ ଏକା ଥିଲା । ଚଇତୁ ଉମ୍ବ ଓ ସୁକ୍ରୁ ଉମ୍ବ ଦିହେଁ ମୋର ଖମାର । ସେମାନେ ବି ସେଇଠି ଥିଲେ । ଗତ ରାତିରେ ମୋର ବିଷମକଟକ ଘରେ କିଏ କବାଟ ଖଡ଼ ଖଡ଼ କଲା । ପଡ଼ା ଲୋକ ସମସ୍ତେ ଉଠିଲେ । ଚୋର ପଳେଇଲା । ମୋର ସ୍ତ୍ରୀ ଗୋବିନ୍ଦ ପାଖକୁ ଖବର ପଠେଇଲେ । ପରଦିନ ରାତିରେ ସୁକ୍ରୁ ଓ ଚଇତୁ ବିଷମକଟକ ଆସି ରାତିରେ ଜଗିଲେ । ସେଇ ରାତିରେ ମୋର ଦାକାଲଗୁଡ଼ା ଘରୁ ଚୋରି ହେଲା ।

କଣ ଚୋରି ହୋଇଚ ?

ଘରର ତାଲା ଖୋଲି, ଘର ଭିତରେ ଥିବା ପେଡ଼ି ଭାଙ୍ଗି ନଗଦ ଦଶ ଟଙ୍କା, ଗୋଟାଏ ସୁନା ହାର ଅନ୍ଦାଜ ଚାରିତୋଳା ଓଜନର, ଦିଟା ନୂଆଖଦି, ଗୋଟାଏ ରଙ୍ଗୀନ୍ ନୂଆଶାଢ଼ୀ । ଗୁହାଳ ଘରୁ ଗୋଟାଏ ପୁଡ଼ା ବି ଚୋରି ଯାଇଚ ।

ମୁନ୍‌ସି ସବୁକଥା ମନ ଦେଇ ଶୁଣିଲେ ଓ ଲେଖିଲେ । ମୁଣ୍ଡର ବାଳ ଓଟାଉ ଭାବି ଭାବି କହୁଲେ, ତମର ନିସେଇ ମଦୁଆ ଶଳା ଗୋବିନ୍ଦର ଏ କାମ ।

ବନମାଳୀ କହୁଲେ, ମଦପାଣି ଖାଇ ଲକ୍ଷେ ଟଙ୍କାର ସମ୍ପତ୍ତି ଯେ ଉଡ଼େଇ ଦେଲା, ସେ ଭଉଣୀର ହାର ଆଉ ଶାଢ଼ୀ ଚୋରି କରିବ ? ଗାଈ ଚୋରି କରିବ ? ନାହିଁ ମୁନ୍‌ସି ବାବୁ, ଗୋବିନ୍ଦ ଚୋରି କରିବ ନାହିଁ ।

ତେବେ—ତେବେ, ସୁକ୍ରୁ ଆଉ ଚଇତୁ—

ବନମାଳୀ କହୁଲେ, ସେ ଦିହେଁ ରାତିସାରା ବିଷମକଟକରେ ମୋ ଘରେ ପହରା ଦେଉଥିଲେ ।

ମୁନ୍‌ସି କହୁଲେ, ଅଚ୍ଛା, ମୁଁ ସ୍ଥାନ ତଦନ୍ତ କରିବ । କାଲି ସକାଳୁ ଯିବ ।

ହଠାତ୍ ଗୋଳମାଳ ଶୁଭିଲା ପଦାରେ । ମୁନ୍‌ସିଙ୍କୁ ଛାଡ଼ି ସମସ୍ତେ ଥାନାଘର ପଦାକୁ ଗଲେ । ମୁନ୍‌ସି କାମରେ ମନ ଦେଲେ । ପାଞ୍ଚମିନଟ୍ ପରେ ଜଣେ ଜମାନ୍ ଅସ୍ଥିର ହୋଇ ଘରେ ପଶିଲା ।

ଜମାନ୍ କହିଲା, ମର୍ଡ଼ର୍ ହଜୁର୍ ।

ମର୍ଡର୍ ! ମୁନ୍‌ସିଙ୍କ ହାତରୁ କଲମ ଖସି ପଡ଼ିଲା । ସେ ଉଠି ଠିଆ ହେଲେ ।

ଜମାନ୍ କହିଲା, ଅସାମୀ ଖୁଣୀର ମୁଣ୍ଡଧରି ହାଜର । କହୁଛି, ଫରେଷ୍ଟ ଜମାନ ହୋଲା ପାଖରେ ତା ଧାଙ୍ଗଡ଼ୀକୁ ଧରିଲା । ଅସାମୀ ଖବର ପାଇ ଜମାନର ମୁଣ୍ଡ କାଟିଲା !

ମୁନ୍‌ସି ବିଚଳିତ ହୋଇ ଆଦେଶ ଦେଲେ—ଅସାମୀକୁ ସଙ୍ଗେ ସଙ୍ଗେ ଆରେଷ୍ଟ କର, ହାତକଡ଼ି ଲଗାଅ । ସେ ଖୁଣୀ ।

ଦୁଇଜଣ ସିପାହୀ ସଙ୍ଗୀନଲଗା ବନ୍ଧୁକ ଟେକି ଖୁଣୀ ଅସାମୀକୁ ଧରିବାକୁ ଅଗ୍ରସର ହେଲେ । ଆଗନ୍ତୁକ ଅସାମୀର ହାତରେ ଗାମୁଛାରେ ଗୁଡ଼ା ହୋଇଥିବା କଟା-ମୁଣ୍ଡ । ଶୁଖିଲା ରକ୍ତ ଜୁଡ଼ୁଜୁଡ଼ୁ । ତା ପଛରେ ଆଠ ଦଶଜଣ କନ୍ଧ ଲୋକ ଓ ତିନି ଚାରିଜଣ କନ୍ଧ-ଲଳନା । ଜଣକର ଖୋଲା ବକ୍ଷରେ ଉତାଣି ପିଲାଟିଏ ଲାଗିଛି । କ୍ଷୀର ଖାଉଛି ଓ କୁଳୁ କୁଳୁ କରି ଚାହୁଁଛି । ଦରବୁଢ଼ୀ ସେ, ହେବ ପରା ଯୁବକ ଅସାମୀର ଜନନୀ । ବାଇଆଣୀ ପରି ଏଣେ ତେଣେ ଚାହୁଁଛି । ଫୁରୁ ଫୁରୁ ମୁଣ୍ଡୀ । ଆଖିରୁ ଲୁହଧାର ଗଡ଼ପଡ଼ୁଛି ।

ସାରକା ପେଙ୍ଗୁ କନ୍ଧର ଘର—ପୁଣି ଗାଁ ମଝିରେ । ସମୟ ଅପରାହ୍ଣ । ପେଙ୍ଗୁର ସ୍ତ୍ରୀ ପୁଲକ ଗେଡ଼ା ( ନାଳ ) ରୁ ଦୁଇ ମାଠିଆ ପାଣି ଆଣି ଘରେ ରଖିଲା । ଟିକିଏ ଦମ୍ ନେଇ ଶୁଖିଲା କାଠ ସଜାଡ଼ି ରଖିଲା । ମନରେ ସରାଗ ନାହିଁ । ପେଙ୍ଗୁର ଧାଙ୍ଗଡ଼ୀ ହେବାକୁ ସିନା ଆଗରୁ ଏତେ ଖୁସି ହେଉଥିଲା । ଧାଙ୍ଗଡ଼ୀ ହୋଇ ଆସିଲା ପରେ ତା ମନର ସରାଗ ଭାଙ୍ଗିଲା ।

ପେଙ୍ଗୁ ଖମ୍ଭାରି ହୋଇଛି । ରାତି ପାହିଲେ ପେଜ ମନ୍ଦଏ ପିଇ ପେଙ୍ଗୁ କାମ କରିବାକୁ ବଡ଼ଗୁଡ଼ା ଗ୍ରାମକୁ ଚାଲିଯାଏ । ଗୁରୁମୂର୍ତ୍ତି ଘରେ ଜୀବନମୂର୍ଚ୍ଛା କାମ କରି ରାତିକୁ ଫେରେ । କଅଣ କରିବ, ଖମ୍ଭାରି ହୋଇଛି, ମୁଣ୍ଡ ବିକିଛି । ପୁଟି ଗାଁରୁ ବଡ଼ଗୁଡ଼ା ଗଲେ ଦୁଇଟା ନାଳ ପାରି । ଗୋଟାଏ ଡୋଙ୍ଗର ଉପରେ ଚଢ଼ି ଯିବାକୁ ପଡ଼େ । ରାତି ବିକାଳି ଯଦି ନାଳରେ ପାଣି ପଡ଼େ କି ଡୋଙ୍ଗର କଡ଼ ଜଙ୍ଗଲରେ ବାଘ ମାଡେ ପେଙ୍ଗୁ କରିବ କଅଣ ?

ପେଙ୍ଗୁ ଖମ୍ବାର, ଛଅ ବର୍ଷ ଖମ୍ବାର ହୋଇ ରହିବ । ଓଃ, ଛ ବର୍ଷ ! ପେଙ୍ଗୁ ସଙ୍ଗେ ମନ ଆନନ୍ଦରେ ଆଗ ପରି ବଣ ଜଙ୍ଗଲରେ ବୁଲି ପାରିବ ନାହିଁ ।

ପୁଲକ ମନରେ ଅସିଲା ବିଦ୍ରୋହ, ପରବଶ ହେବାର ବିଦ୍ରୋହ । ପେଙ୍ଗୁକୁ ଯଦି ସେ ବାହା ହୋଇ ନ ଥାନ୍ତା, ଯଦି ମାଗତାର ଧାଙ୍ଗଡ଼ୀ ହୋଇ-ଥାନ୍ତା, ମାଗତା ତ ପରର ଖମ୍ବାର ହୁଅନ୍ତା ନାହିଁ । ବଂଶ ଭାଇ ବୋଲି ଗାଁ ଲୋକେ ଯଦି ବାସନ୍ଦ କରନ୍ତେ, ମାଗତା ଜୋରିମାନା ଓ ଭୋଜଭାତ ଦେଇ ପାରନ୍ତା ।

ପୁଲକର ଯୌବନ ପୁଲକି ଉଠିଲା । ମାଗତା ଭଲ, ପୁଙ୍ଗି ଖରାପ । ସେ ଖମ୍ବାର । ଗୁରୁମୂର୍ତ୍ତି ସାହୁକାର ଘରେ ଖଟି ଖଟି ପୁଣି ବଣ ଜଙ୍ଗଲ ନାଳ ପାରି ହୋଇ ଅସି କ୍ଳାନ୍ତ ହୋଇ ରାତିରେ ଶୋଇପଡ଼େ । ପୁଲକ ଚାହିଁ ବସେ । ମନର ସବୁ ମନରେ ମରେ । ଅଣ୍ଡିରା ହୋଇଛି, ପଦେ କଥା କହିବାକୁ ବେଳ ପାଏ ନାହିଁ ।

ପୁଲକ ଅଣ୍ଟା ସଳଖି ଠିଆ ହେଲା । ପଦାକୁ ଚାହିଁଲା, ଧାଇଁ ଧାଇଁ ଲତା ଆସୁଛି । ଲତା ପାଖକୁ ଅସିଲା । ହସ ହସ ହୋଇ କହିଲା, ଏ ପୁଲକ, ଗାଁ ଲୋକେ ଫେରି ଅଇଲେ । ବାଘୁ ଓ ସୁନାକୁ ପାଇଲେ ନାହିଁ ।

ଲତାର ଆନନ୍ଦ କହିଲେ ନ ସରେ । ନାଇକ ନୋକାର ରଗ ମରିଛି । ଆଉ ସୁନା ତାର କେହି ହୋଇ ପାରିବ ନାହିଁ । ଲତାହିଁ ହେବ ତାର ବୋହୂ, ମାଗତାର ଘରଣୀ । ଲତାର ବାପ ଉର୍ଲାକା ବାସୁର ଅମ୍ମା ( ଉମ୍ମା ) ର ମନକାମନା ପୂର୍ଣ୍ଣ ହେବ । ସେ ମୁକ୍ତ ହେବ ।

ପୁଲକ ପଚାରିଲା, ସେମାନେ ଗଲେ କୁଆଡ଼େ ? କାଲଠୁଁ ଗଲେଣି—

ଯେଉଁଣେ ଯାଅନ୍ତୁ, ମାଗତା ଆଉ କସ୍ କରିବ ? ମଦ ଖାଇ ଠାଙ୍ଗ ଧରି ବୁଲୁଛି, ଆଉ ପାଟି କରୁଛି, ବାଘୁକୁ ଦେଖିଲେ ତାର ମୁଣ୍ଡ କାଟିବ । ମୁଁ କହିଲି, ହେ ମାଗତା, ସୁନା ସୁନା ହୋଇ ମରିବୁ କି ? ଚାଲ, ଚାଲ, ଅମେ ମିଶା ଯଲଇବା ।

କସ୍ କହିଲା ମାଗତା ?

କସ୍ ଆଉ କହିବ ? ଠାଙ୍ଗି ଧରି ମତେ ମାରିବାକୁ ଅଉଛି । ମୁଁ ପଳେଇ ଅଇଲି । ହେ ପୁଲକ, ତୁଇ ଥରେ ମାଗତାକୁ କହ ଯା, ଯାକରି ଠାକୁରାଣୀ ସବୁ ଦେଖୁଛି । ନାଇଁକଲେ ସେ ଖାଇଦେବ । ମାଗତା ମତେ ଘରକୁ ନେଉ ।

ପୁଲକ ହିଂସାରେ ଭିତରେ ଭିତରେ ଜଳିଗଲା । ମୁହଁ ଫଣଫଣ କରି କହିଲା—ମୋର କସ୍ ଥାଏ ରେ ଲତା, ମୁଁ କାହିଁକି ତାକୁ କହିବ ? ମତେ ସେ ମାରିଦେବ । ତୁ ଯା ।

ଲତା ଦୁଃଖିତ ହୋଇ, ମୁହଁ ଶୁଖାଇ ଅଭିମାନରେ କହିଲା, ପୁଲକ, ତୁଇ ମୋର ପିଲା ଦିନର ସାଙ୍ଗଟା ନୁହଁ କି ? ତତେ କହିବ ନାହିଁ ତ କାହାକୁ କହିବ ? ତୁ ମୋ ଲାଗି ମାଗତାକୁ କହ । ସେ ତୋର କଥା ମାନିବ ।

ମାନୁ କି ନ ମାନୁ ମାଗତାକୁ ଝୁରି ତୁ ମରୁଚୁ କାହିଁକି ? ଆଉ କଣ କେହି ଧାଙ୍ଗଡ଼ା ନାହିଁ ? କାହାର ହେଲେ ହାତ ଧରି ଚାଲି ଯାଉନୁ ? ନାଇକର ବୋହୂ ହେବାକୁ ତୋର ମନ, ନାଇକର ତ ମନ ନାହିଁ ତତେ ବୋହୂ କରିବ ।

ପୁଲକ କହିଲା, ଆଉ ଗୋଟେ ଧାଙ୍ଗଡ଼ାର ହାତଧରି ଗଲେ ମୋ ବାପର ଜୁମା କାନ୍ଦିବ ନାଇଁ କି ? ସେ ମତେ ଅତି ଭଲ ପାଉଥିଲା ରେ । ସେଇଥି ପାଇଁ ମାଗତାର ଧାଙ୍ଗଡ଼ୀ ହେବାକୁ ମୁଁ ଚାହୁଁଚି । ନାଇକର ବୋହୂ ହେବାକୁ ମୁଁ ସକ ସକ ନୁହେଁ—ମୋ ବାପର ଜୁମାକୁ ଶାନ୍ତି ଦେବାକୁ ।

ପୁଲକ ଲତାର ଆଖିରେ ଲୁହ ଦେଖିଲା । ତଥାପି ସେ କହିଲା, ଲତା ମୁଁ ସତ କହୁଚି । ତୁ ଭଲ ବୁଝ୍ କି ମନ୍ଦ ବୁଝ୍ ପରର କଥାରେ ମୁଁ ପଶିବ ନାଇଁ । ନାଇକ ରାଗିବ, ତୁ ଯା ଯା ।

ପୁଲକ ଘରେ ପଶି ତାଟି ଦେଲା । ଲତା ମୁହୂର୍ତ୍ତେ ତା ଘର ଅଗରେ ଠିଆ ହୋଇ ଭାବିଲା । ଚାରିଆଡ଼କୁ ଚାହିଁ ମନକୁମନ କହିଲା, ମୋର କଥା କେହି ଶୁଣିବେ ନାହିଁ । ମୋର କେହି ନାହିଁ । ମାଗତା ମତେ ହାଣିବ କହୁଚି । ହାଣି ଦେଉ । ପୁଲକ କହୁଚି, ନାଇକର ବୋହୂ ହେବାକୁ ମୁଁ କାନ୍ଦୁଚି । ହେ ଯାକରା, ତୁଇ ଏକା ଜାଣୁ । ନାଇକର ବୋହୂ ହେବାକୁ ମୁଁ ଚାହୁଁ ନାଇଁ । ବାପ ତତେ ସାକ୍ଷୀ ରଖି ମତେ ମାଗତାର ମାଇପ କରିବାକୁ କହିଥିଲା । ତୁଇ ଜାଣୁ ଯାକରା, ମୁଁ ମାଗତାର ମାଇପ, ଯିବି ପୁଣି ତା ପାଖକୁ । ମାରିବ କହୁଚି, ମାରୁ ।

ଆଖିର ଲୁହ ସେ ପୋଛିଲା ନାହିଁ । ପୁଲକର ଘର ଆଗରୁ ପ୍ରସ୍ଥାନ କଲା ।

ପୁଲକ ତାଟି କବାଟ ଖୋଲି ଘରୁ ବାହାରିଲା । ମନକୁ ହସି ମନକୁମନ କହିହେଲା, ମାଗତାର ଧନ ଲତାକୁ କରିଛି ପାଗଳ । ଲତା ହେବ ନାଇକର ବୋହୂ, ଆଉ ମୁଇଁ ଥିବି ଖମ୍ବାର ପୁଙ୍ଗିର ମାଇପ । ଦିନ ସାରା ପୁଙ୍ଗିକୁ ଚାହିଁ ବସିଥିବି ? ହାଃ, ଏଇ, ମାଗତା ଆସୁଚି ।

ପୁଲକ ଚାହିଁ ରହିଲା । ମାଗତା ମଦ ନିଶାରେ ଟଳି ଟଳି ହାତରେ ଝାଙ୍ଗି ଧରି ପଡ଼ିଥିଲା । ପୁଲକକୁ ଦେଖି ସେ ପଚାରିଲା, ଲତା କାହିଁ ଗଲା ପୁଲକ ?

ପୁଲକ ହସି ହସି ପଚାରିଲା, ସେ ଯାହିଁ ଯାଉଁ, ତା ଠାରେ ତୋର କ କାମ ଅଛି ମୋତେ ଆଗ କହତ ।

ତାକୁ ମୁଁ ହାଣିଦେବ । ସବୁବେଳେ ମୋ ପଛେ ପଛେ ଲାଗିଛ ।

ମୁଁ ଜାଣେରେ ମାଗତା, ତୁଇ ମୋର ବଂଶ ଭାଇଟା । ଆ, ପେଜ ଟିକେ ପିଇ ଦେ । ବସିଯା ଟିକେ । ସବୁ କଥା ତତେ କହିବ । ଲତାକୁ ତୁ ଜାଣିନୁ ରେ । ଆ, ମାଗତା ।

ମାଗତାର ହାତ ଧରି ପୁଲକ ଘର ଭିତରକୁ ନେଲା । ତାଟି ଖୋଲା ରହିଲା । ପୁଲକ ନାଭି ତୁମ୍ବାରେ ପେଜ ଦେଲା । ମାଗତା ପିଇଲା । ପୁଲକ ବାଖିଲା, ମାଗତାର କ୍ଳାନ୍ତି ଦୂର ହେଲା । ପୁଲକ ତାଟି ଅଳ୍ପ ଆଉଯାଇ ମାଗତା ପାଖରେ ବସିଲା । ହସ ହସ ହୋଇ କହିଲା, ସୁନାକୁ ବାଘୁଆ ଘିଷି ନେଇ ପଳେଇଲା । ଜାଣୁ କ ମାଗତା, କାହାର ଶିକ୍ଷାରେ ସୁନା ଗଲା ? ଏଇ ଲତାର ଶିକ୍ଷାରେ ।

ମାଗତା ପଚାରିଲା, ଲତାର ?

ପୁଲକ କହିଲା, ହଁ, ସବୁ ସେ ଜାଣେ । ଆଗରୁ ସବୁ ଠିକ୍ କରିଥିଲା । ଲତା ମନେ କରିଛ ସୁନା ପଳାଇଲେ ତୁଇ ତାକୁ ଧାଙ୍ଗଡ଼ୀ କରିବୁ । ଆଉ ତ କେହି ନାହିଁ ।

ମାଗତା ଦାନ୍ତ ରଗଡ଼ିଲା । ପାଖରେ ପଡ଼ିଥିବା ଟାଙ୍ଗୀ ଧରି ଆଖି ତରାଟି କହିଲା, ଧାଙ୍ଗଡ଼ୀ କରିବ, ଧାଙ୍ଗଡ଼ୀ ! ଲତାର ମୁଣ୍ଡ ହାଣିବ । ଝୋଲାରେ ପକାଇବ । ହଁ, ଲତାର ମୁଣ୍ଡ ହାଣିବ । ସେଇ ଏକା ସୁନାକୁ ଭଗେଇଦେଲା ।

ପୁଲକ ମାଗତାର ହାତରୁ ଧୀରେ ଧୀରେ ଟାଙ୍ଗି ଟାଣି ନେଲା । ମାଗତାର ଅଣ୍ଟ ପାଖକୁ ଲାଗି ଆସି ତାର ମୁହଁକୁ ପିପାସାକୁଳ ଆଖିରେ ଚାହିଁ କହିଲା, ଲତାର ମୁଣ୍ଡ ସିନା ହାଣିବୁ, ହେଲେ, ସୁନାକୁ ତୁ ପାଇବୁ ନାଇଁ । ବାଘୁଆର ସାଥିରେ ସୁନା ପଳେଇଛ, କେତେ ଦୂରକୁ, ଗାଙ୍ଗାମ ।

ଗାଙ୍ଗାମ ? ସୁନା ଆଉ ଫେରିବ ନାଇଁ ? ପୁଲକ, ସେ ଯାଉ, ତାକୁ ଯାକଗ ଖାଉ, ତାକୁ ବାଘ ଖାଉ, ତାକୁ ମୁଁ ଧାଙ୍ଗଡ଼ୀ କରିବ ନାଇଁ । ମୁଇଁ ମଦ ରାନ୍ଧିବ, ଆଉ ପିଇବ । ଭଲ ହେବ । ଲତାକୁ—

ମାରିବୁ ନାହିଁ ମାଗତା, ସେ ନିଜେ ମରିବ ।

ନିଜେ ମରିବ ? ଝୋଲା ଭିତରକୁ ଡେଇଁବ ? ବାଘ ଆଗକୁ ଯିବ ?

ପୁଲକ ତାର ଦୁଇ ହାତ ଧରିଲା । ବିହ୍ୱଳ ଆଖିରେ ଚାହିଁଲା । କହିଲା, ମାଗତା—

କଣ ପୁଲକ ?

ମୁଇଁ ତୋ ସାଥିରେ ଯିବ ।

ମୋ ସାଥିରେ ଯିବୁ ? ଏଁ —ତୁ ପୁର୍ଙ୍ଗିର ଧାଙ୍ଗଡ଼ୀ, ତୁଇ ମୋର ବଂଶ ରଜଣୀ—

ପୁଙ୍ଗି ଖମ୍ବାର ହୋଇଚ । ସେ ସାହୁକାର ଘରେ ରହୁଚ । ମୁଁ ତା ପାଖରେ ରହିବ ନାଇଁ । ତୁଇ ଯଦି ନ ନେଉ, କେଣେ ହେଲେ ପଳେଇବ । ତୁଇ ମୋର ବଂଶ ଭାଇ ସିନା, ମୋର ଭାଇ ତ ନୁହୁ । ତୋର ପଇସା ଅଛୁ, ଗାଁ ଲୋକଙ୍କୁ ଜୋରମାନା ଦେବୁ । ପୁଙ୍ଗି ହୋଲ୍ ଟଙ୍କା ଫେରାଇ ଦେବୁ । ଭୋଜି ଦେବୁ ସବୁଲୁ ।

ହଁ, ଟଙ୍କା ଅଛୁ । ହେଲେ, ପୁଂଗି ମତେ ମାରିବ ନାଇଁକି ?

ପୁଂଗି ମାରିବ ତତେ ? ତୁଇ ନାଇକର ପୁଅ, ତୋର କଏ କଣ କରିବ ?

ମାଗତା ଭାବିଲା । ପୁଲକକୁ ଚାହିଁଲା । ପୁଲକର ହାତ ଧରିଲା । ମନର ଆଦିମ ପ୍ରକୃତି ପୁଲକ ଅଡ଼ୁ ତାକୁ ଟଳାଇ ଦେଲା ସୁନା ପଟଳଇଚ, ଲତାକୁ ସେ ଚାହେଁ ନାହିଁ । ପୁଲକ ଭଲ, ପୁଂଗି ଖମ୍ବାର । ତା ପାଖରେ ପୁଲକ ରହିବ ନାହିଁ । ପୁଲକକୁ ସେ ଧାଙ୍ଗଡ଼ୀ କରିବ । ପୁଲକକୁ ସାଥିରେ ନେଇ ଡୋଙ୍ଗରକୁ ପଳାଇବ ।

ସତେ ପୁଲକ, ଯିବା ?

ପୁଲକ ଠିଆହେଲା । ଉତ୍ତର ଦେଲା ନାହିଁ ।

ମାଗତା ଉଠିଲା । ପୁଲକର ହାତ ଧରି କହିଲା ଚାଲ । ତୁଇ ଆଗେ ଆଗେ ଚାଲ । ମୁଁ ତୋର ପଛେ ପଛେ ଯିବ । ଡୋଙ୍ଗରକୁ ଯିବା ନାହିଁରେ ପୁଲକ— ରାତିରେ ବାଘ ଖାଇବ । ଜଙ୍ଗଲ ବାଟରେ ମୋର ମାଉସୀ ଘରକୁ ପଳାଇବା— ବଣିପଦର । ଗୋଟେ ଡୋଙ୍ଗର ଡେଇଁଲେ, ଆର ଡୋଙ୍ଗର ଉପରେ । ଚାଲ ପୁଲକ, ତୁଇ ମୋର ଧାଙ୍ଗଡ଼ୀ ହେବୁ । ମୁଇଁ ହେବ ତୋର ଅଣ୍ଡିରା ।

ପୁଲକ ପୁଲକିତ ହୋଇ ମାଗତାର ଛାତି ଉପରେ ମୁହଁ ରଖିଲା । ମାଗତା ତାର ମୁଣ୍ଡ ଆଉଁସିଲା । ଦୁହେଁ ଧୀରେ ଧୀରେ ପୁଙ୍ଗିର ଘର ଭିତରୁ ବାହାରି ଗଲେ ।

ପୁଲକର ନାମ ଧରି ଡାକି ଡାକି ପୁଙ୍ଗି ଆସିଲା । ଦେହଯାକ ନଦୁ ନୁହାଣ । ମୁଣ୍ଡରେ ବନ୍ଧା ହୋଇଚ ଖଣ୍ଡେ ପଟି । ହାତରେ ବାଡ଼ି ଧରି ଟ୍ରେଟେଇ ଟ୍ରେଟେଇ ଚାଲୁଚ ।

ଏ ପୁଲକ, ପୁଲକ, ପୁଲକ—

ଘର ଭିତରକୁ ଯାଇ ପୁଙ୍ଗି ତାକୁ ଖୋଜିଲା । ପୁଲକ ନାହିଁ । ନାଉ ତୁମ୍ବା ପଡ଼ିଚ । କାହାର ଠାଇଁ ଖଣ୍ଡେ ଥୁଆ ହୋଇଚ । କ୍ଳାନ୍ତ ହୋଇ କାନ୍ଥକୁ ଆଉଜି

ବସିଲା । ଦେହ ଝୋଲା ମାରଯାଉଥାଏ । ପୁଣି ଡାକିଲା ପୁଙ୍ଗି, ପୁଲକ—ଇ, ପୁଲକ—ଇ—

ପୁଲକର ଜବାବ ନାହିଁ । ଘର ଅଗରେ ଯାଉଥିଲା ପୁଲକର ମା । ସେ ଘର ଭିତରକୁ ଆସିଲା । ପଚାରିଲା, କଣ୍ ହେଲା ରେ ପୁଙ୍ଗି, ପୁଲକ ନାଇଁକି ?

ପୁଙ୍ଗି ମୁଣ୍ଡ ହଲାଇ ନାହିଁ କଲା । କହିଲା, ମା, ପାଣି·କି ପେଜ ଟିକେ ଦେ ।

ପୁଲକର ମା ହାଣ୍ଡିରୁ ପେଜ ( ପଇଡ ) ଆଣି ଦେଲା । ପୁଙ୍ଗି ଢକ ଢକ କରି ପିଇଦେଲା ।

ପୁଲକର ମା ପଚାରିଲା, କିଏ ତତେ ମାରିଲାକିରେ ପୁଙ୍ଗି ?

ମାରିନାହିଁ ମା । ସାହୁକାରର ଘର ତୋଳା ହୋଇଛି । କାନ୍ଥ ଉପରକୁ ପଥର ନେଉଥିଲି । ଗୋଡ଼ ଖସିଗଲା । ପଡ଼ିଗଲି ତଳେ । ମୁଣ୍ଡ ଫାଟିଗଲା । ସାହୁକାର ଭଲ ମଣିଷ, ମୁଣ୍ଡରେ କନା ବନ୍ଧେଇଲା । ଭିଡିଆ ଦେଲା । ଦି ଦିନ ସିଲ ( ଛୁଟି ) ଦେଇଛି । ଚୃରିଅଣା ପଇସା ଦେଇଛି ।

ସତେ, ସାହୁକାର ଭଲ ମଣିଷ । ହେ ପୁଙ୍ଗି, ତୁ ଶୋଇଥାରେ । ମୁଁ ପୁଲକକୁ ଡାକୁଛି । କାଠ, ପତର, କି ପାଣି ଲାଗି କେଉଁଠିକି ଯାଇଥିବ । ତୁ ଶୋଇପଡ—

ପୁଲକର ମା ଘାସବୁଣା ଚଟେଇ ଖଣ୍ଡେ ଦଉଡ଼ିଆଖଟରେ ପକାଇ ଦେଲା । ପୁଙ୍ଗିର ହାତ ଧରି ଉଠାଇ ତାକୁ ଖଟରେ ଶୁଆଇଲା । ଘରର ତାଟି ଆଉଜାଇ ଆଣିଲା । ଘରୁ ବାହାରକୁ ଆସି ଏଣେ ତେଣେ ଚୃହିଁ ମନକୁ କହିହେଲା, ପୁଲକ ଗଲା କୁଆଡ଼େ ? ଦେଖେଁ—

ପାହାଡ଼ତଳ ନିଘଞ୍ଚ ଜଙ୍ଗଲ ଭିତରେ ଗୋଟାଏ ଗଛକୁ ଆଉଜି ବୁଢିଆ ଡମ୍ବ ବସିଛି । ଡ଼ରେଇ କରି ଠିଆ ହୋଇଚନ୍ତି ସୁକ୍ରୁ ଓ ଚଇତୁ । ବେଳ ଦ୍ୱିପ୍ରହର । ପାଖରେ ଥୁଆ ହୋଇଛି ମଦ ହାଣ୍ଡି ।

ବୁଢିଆ ପଚାରିଲା, ସାହୁକାର ବି ସାଥିରେ ଅସୁଛି କି ସୁକ୍ରୁ ?

ସୁକ୍ରୁ କହିଲା, ଏକା ସାହୁକାର ? ମୁନ୍‌ସି ସଙ୍ଗରେ ଦାକାଲଗୁଡ଼ାର ଗାଁ ଲୋକେ, ସାହୁକାର ବନମାଳୀର ଶଳା ଗୋବିନ୍ଦ, ଦୁଇଜଣ ଜମାନ୍ ବି ଅସୁଚନ୍ତି । ସାହୁକାର ତତେ ସନ୍ଦେହ କରୁଛି ।

ବୁଢି ଡମ୍ବ ଭାବିଲା, ପଳାଇ ଗଲେ ନିସ୍ତାର ନାହିଁ । ମୁନ୍‌ସି ତା କଥା ଭଲକରି ଜାଣେ ।

ବୁଦ୍ଧି କହିଲା, ସାହୁକାରର ଯେଉଁ ସ୍ତ୍ରୀକୁ ବାଘୁଆ ଜଙ୍ଗଲ ଭିତରେ ବାନ୍ଧି ରଖିଥିଲା ତାକୁ ତେମେ ମାରି ଖାଇଲ । ପୋଲିସ୍ କଣ ତମକୁ ଛାଡ଼ିବ ଭାବିଚ ?

ଚଇତୁ କହିଲା, ତୁଇ କହିଲାକୁ ସିନା ଆମେ ତାହା କଲୁଁ ।

ବୁଦ୍ଧି ପଚାରିଲା, ମୁଣ୍ଡ ରଖିଲ କେଉଁଠି ?

ଚଇତୁ କହିଲା, ପଥର ଖୋଲରେ । ତୋର କହିଲାପରି ବାଘୁଆର ଠାଙ୍ଗିଆ ଚୋରିକରି ସେଇ ପାଖରେ ପକେଇ ଦେଇ ଆସିଚ ।

ଭଲ କାମ କରିଚୁ । ମୁନ୍‌ସି ଆଗରେ କହିବୁ ବାଘୁଆ ତୋ ଆଗରେ କହିଥିଲା, ଗୁରୁମୂର୍ତ୍ତି ସାହୁକାର ଟଙ୍କା ନ ଦେଲା ତ ନାହିଁ, ସୁନାର ଲାଗି ସେ ଚୋରି କରିବ । କହିବୁ ନା ଚଇତୁ ?

କହିବି ।

ଶୁଣ ସୁକ୍ରୁ, ତୁ କହିବୁ ବାଘୁଆ କହିଥିଲା ସୁନାକୁ ଘେନି ନେବ । ତୁ ପଚାରିଲୁ, ଝୋଲାଟଙ୍କା ତାର ବାପକୁ କେମିତି ଦେବୁ ? ସେ କହିଲା ତତେ, ଟଙ୍କା, ଲୁଗା, ସ୍ତ୍ରୀ, ସବୁ ସେ ରଖିଚ ।

ସୁକ୍ରୁ କହିଲା, ମୁନ୍‌ସି ଯଦି ପଚାରେ ବାଘୁଆ କେଉଁଠୁ ଆଣିଲା ?

ବୁଦ୍ଧି ଉପଦେଶ ଦେଲା, ତୁ କହିବୁ, ବାଘୁଆ ସେ କଥା କହିଲା ନାହିଁ ।

ସୁକ୍ରୁ ଓ ଚଇତୁ ବୁଦ୍ଧିଆର କଥା ଭାବିଲେ । ମୁନ୍‌ସି ଆଗରେ ଏତିକି କହିଲେ ତ କିଛି କ୍ଷତି ନାହିଁ । ବିନା ପରିଶ୍ରମରେ ସେମାନେ ଟଙ୍କାରୁ ଭାଗ ପାଇଚନ୍ତି । ଆଉ ଦେବନକୁ ଆଉ ଦେବନ ଅଛି । ବୁଦ୍ଧିଆର କଥା ଶୁଣିଲେ ତାଙ୍କର ବିପଦ ନାହିଁ ।

ବୁଦ୍ଧି ପଚାରିଲା, ମୋ କଥା ମନେ ରହିଲା ?

ସୁକ୍ରୁ କହିଲା,— ହଁ ।

ବୁଦ୍ଧି କହିଲା, ତେମେ ଦହେଁ ମୋ ପାଖରୁ ଚାଲିଯାଅ । ମୁନ୍‌ସି ପାଖକୁ ଏକାଠି ଯିବ ନାହିଁ । ସୁକ୍ରୁ, ତୁ ଆଗ ଯିବୁ । ଚଇତୁ ତୁ ପରେ ଯିବୁ ।

ସୁକ୍ରୁ ଓ ଚଇତୁ ଚାଲିଗଲେ । ବୁଦ୍ଧିଆ ଉଠି ଠିଆହେଲା । ଚାରିଆଡ଼କୁ ଚାହିଁଲା । ଗଛ ଗହଳ ଦେଇ ଗଳି କରି ଯେଉଁ ଚାଲିବାଟଟି ଉଠି ପଡ଼ି ବଙ୍କେଇ ବଙ୍କେଇ ଗାଁ ଆଡ଼କୁ ଗଡ଼ିଛି, ସେହି ବାଟରେ ଦୁଇଜଣ କିଏ ଆସୁଥିଲା ପରି ମନେ ହେଲା । ବୁଦ୍ଧିଆ ନଇଁପଡ଼ି ଏବିକି ଟେକିକି ଚାହିଁଲା, ଦେଖିଲା—ଖୁସିହେଲା, ମାଗତା ଫୁଲକର ହାତ ଧରି ଆସୁଚ :

ପୁଲକ ହସି ହସି ପଚାରିଲା, ସେ ଯହିଁ ଯାଉଁ, ତା ଠାରେ ତୋର କ କାମ ଅଛି ମୋତେ ଆଗ କହତ ।

ତାକୁ ମୁଁ ହାଣିଦେବ । ସବୁବେଳେ ମୋ ପଛେ ପଛେ ଲାଗିଚ ।

ମୁଁ ଜାଣେରେ ମାଗତା, ତୁଇ ମୋର ବଣ ଭାଇଟା । ଆ, ପେଜ ଟିକେ ପିଇ ଦେ । ବସିଯା ଟିକେ । ସବୁ କଥା ତତେ କହିବ । ଲତାକୁ ତୁ ଜାଣିନୁ ରେ । ଆ, ମାଗତା ।

ମାଗତାର ହାତ ଧରି ପୁଲକ ଘର ଭିତରକୁ ନେଲା । ତାଟି ଖୋଲା ରହିଲା । ପୁଲକ ନାଇ ତୁମ୍ବାରେ ପେଜ ଦେଲା । ମାଗତା ପିଇଲା । ପୁଲକ ବୁଝିଲା, ମାଗତାର କ୍ଲାନ୍ତ ଦୂର ହେଲା । ପୁଲକ ତାଟି ଅଳ୍ପ ଆଉଜାଇ ମାଗତା ପାଖରେ ବସିଲା । ହସ ହସ ହୋଇ କହିଲା, ସୁନାକୁ ବାଘୁଁା ଘିଞ୍ଚି ନେଇ ପଳେଇଲା । ଜାଣୁ କ ମାଗତା, କାହାର ଶିକ୍ଷାରେ ସୁନା ଗଲା ? ଏଇ ଲତାର ଶିକ୍ଷାରେ ।

ମାଗତା ପଚାରିଲା, ଲତାର ?

ପୁଲକ କହିଲା, ହଁ, ସବୁ ସେ ଜାଣେ । ଆଗରୁ ସବୁ ଠିକ୍ କରିଥିଲା । ଲତା ମନେ କରିଚ ସୁନା ପଳାଇଲେ ତୁଇ ତାକୁ ଧାଙ୍ଗଡ଼ୀ କରିବୁ । ଆଉ ତ କେହି ନାହିଁ ।

ମାଗତା ଦାନ୍ତ ରଗଡ଼ିଲା । ପାଖରେ ପଡ଼ିଥିବା ଠାଙ୍ଗୀ ଧରି ଆଖି ତରାଟି କହିଲା, ଧାଙ୍ଗଡ଼ୀ କରିବ, ଧାଙ୍ଗଡ଼ୀ ! ଲତାର ମୁଣ୍ଡ ହାଣିବ । ଝୋଲାରେ ପକାଇବ । ହଁ, ଲତାର ମୁଣ୍ଡ ହାଣିବ । ସେଇ ଏକା ସୁନାକୁ ଭଗେଇଦେଲା ।

ପୁଲକ ମାଗତାର ହାତରୁ ଧୀରେ ଧୀରେ ଠାଙ୍ଗି ଟାଣି ନେଲା । ମାଗତାର ଅଣ୍ଟ ପାଖକୁ ଲାଗି ଅସି ତାର ମୁହଁକୁ ପିପାସାକୁଳ ଆଖିରେ ଚାହିଁ କହିଲା, ଲତାର ମୁଣ୍ଡ ସିନା ହାଣିବୁ, ହେଲେ, ସୁନାକୁ ତୁ ପାଇବୁ ନାଇଁ । ବାଘୁଁାର ସାଥିରେ ସୁନା ପଳେଇଚ, କେତେ ଦୂରକୁ, ଗାଙ୍ଗାମ ।

ଗାଙ୍ଗାମ ? ସୁନା ଆଉ୍ ଫେର୍ବ ନାଇଁ ? ପୁଲକ, ସେ ଯାଉ, ତାକୁ ଯାକଗ ଖାଉ, ତାକୁ ବାଘ ଖାଉ, ତାକୁ ମୁଁ ଧାଙ୍ଗଡ଼ୀ କରିବ ନାଇଁ । ମୁଇଁ ମଦ ଗାହିବ, ଅର୍ ପିଇବ । ଭଲ ହେବ । ଲତାକୁ—

ମାରିବୁ ନାହିଁ ମାଗତା, ସେ ନିଜେ ମରିବ ।

ନିଜେ ମରିବ ? ଝୋଲା ଭିତରକୁ ଡେଇଁବ ? ବାଘ ଆଗକୁ ଯିବ ?

ପୁଲକ ତାର ଦୁଇ ହାତ ଧରିଲା । ବହ୍ଵଳ ଆଖିରେ ଚାହିଁଲା । କହିଲା, ମାଗତା—

କଣ ପୁଲକ ?

ମୁଇଁ ତୋ ସାଥିରେ ଯିବ ।

ମୋ ସାଥିରେ ଯିବୁ ? ଏଁ—ତୁ ପୁରଙ୍ଗିର ଧାଙ୍ଗଡ଼ୀ, ତୁଇ ମୋର ବଣ ଭଉଣୀ—

ପୁଙ୍ଗି ଖମ୍ବାର ହୋଇଛି । ସେ ସାହୁକାର ଘରେ ରହୁଛି । ମୁଁ ତା ପାଖରେ ରହିବ ନାହିଁ । ତୁଇ ଯଦି ନ ନେଉ, କେଣେ ହେଲେ ପଳେଇବି । ତୁଇ ମୋର ବଂଶ ଭାଇ ସିନା, ମୋର ଭାଇ ତ ନହୁ । ତୋର ପଇସା ଅଛି, ଗାଁ ଲୋକଙ୍କୁ ଜୋରମାନା ଦେବୁ । ପୁଙ୍ଗି ହୋଲି ଟଙ୍କା ଫେରାଇ ଦେବୁ । ଭୋଜି ଦେବୁ ସବୁକୁ ।'

ହଁ, ଟଙ୍କା ଅଛି । ହେଲେ, ପୁଂଗି ମତେ ମାରିବ ନାଇଁକି ?

ପୁଂଗି ମାରିବ ତତେ ? ତୁଇ ନାଇକର ପୁଅ, ତୋର କିଏ କଣ କରିବ ?

ମାଗତା ଭାବିଲା । ପୁଲକକୁ ଚାହିଁଲା । ପୁଲକର ହାତ ଧରିଲା । ମନର ଆଦିମ ପ୍ରକୃତି ପୁଲକ ଆଡ଼କୁ ତାକୁ ଟାଣି ନେଉଛି, କେଉଁଠି ଠେଲାଇ ଦେଲା ସୁନା ପଟଳଇଛ, ଲତାକୁ ସେ ଚାହେଁ ନାହିଁ । ପୁଲକ ଭଲ, ପୁଂଗି ଖମ୍ବାର । ତା ପାଖରେ ପୁଲକ ରହିବ ନାହିଁ । ପୁଲକକୁ ସେ ଧାଙ୍ଗଡ଼ୀ କରିବ । ପୁଲକକୁ ସାଥିରେ ନେଇ ଡୋଙ୍ଗରକୁ ପଳାଇବ ।

ସତେ ପୁଲକ, ଯିବା ?

ପୁଲକ ଠିଆହେଲା । ଉତ୍ତର ଦେଲା ନାହିଁ ।

ମାଗତା ଉଠିଲା । ପୁଲକର ହାତ ଧରି କହିଲା ଚାଲ । ତୁଇ ଆଗେ ଆଗେ ଚାଲ । ମୁଁ ତୋର ପଛେ ପଛେ ଯିବି । ଡୋଙ୍ଗରକୁ ଯିବା ନାହିଁରେ ପୁଲକ— ରାତିରେ ବାଘ ଖାଇବ । ଜଙ୍ଗଲ ବାଟରେ ମୋର ମାଉସୀ ଘରକୁ ପଳାଇବା— ବଣିପଦର । ଗୋଟିଏ ଡୋଙ୍ଗର ଡେଇଁଲେ, ଆର ଡୋଙ୍ଗର ଉପରେ । ଚାଲ ପୁଲକ, ତୁଇ ମୋର ଧାଙ୍ଗଡ଼ୀ ହେବୁ । ମୁଇଁ ହେବି ତୋର ଅଣ୍ଡିରା ।

ପୁଲକ ପୁଲକିତ ହୋଇ ମାଗତାର ଛାତି ଉପରେ ମୁହଁ ରଖିଲା । ମାଗତା ତାର ମୁଣ୍ଡ ଆଉଁସିଲା । ଦୁହେଁ ଧୀରେ ଧୀରେ ପୁଙ୍ଗିର ଘର ଭିତରୁ ବାହାରି ଗଲେ ।

ପୁଲକର ନାମ ଧରି ଡାକି ଡାକି ପୁଙ୍ଗି ଆସିଲା । ଦେହଯାକ ନହୁ ଲୁହାଣ । ମୁଣ୍ଡରେ ବନ୍ଧା ହୋଇଛି ଖଣ୍ଡେ ପଟି । ହାତରେ ବାଡ଼ି ଧରି ଟ୍ରେଟେଇ ଟ୍ରେଟେଇ ଚାଲୁଛି ।

ଏ ପୁଲକ, ପୁଲକ, ପୁଲକ—

ଘର ଭିତରକୁ ଯାଇ ପୁଙ୍ଗି ତାକୁ ଖୋଜିଲା । ପୁଲକ ନାହିଁ । ନାଉ ଭୁମ୍ବା ପଡ଼ିଛି । କାହାର ଟାଙ୍ଗି ଖଣ୍ଡେ ଥୁଆ ହୋଇଛି । କ୍ଲାନ୍ତ ହୋଇ କାନ୍ଥକୁ ଆଉଜି

ବସିଲା । ଦେହ ଝୋଲା ମାରଯାଉଥାଏ । ପୁଣି ଡାକିଲା ପୁଙ୍ଗି, ପୁଲକ—ଇ,
ପୁଲକ—ଇ—

ପୁଲକର ଜବାବ ନାହିଁ । ଘର ଅଗରେ ଯାଉଥିଲା ପୁଲକର ମା । ସେ ଘର ଭିତରକୁ ଅସିଲା । ପଚାରିଲା, କସ୍ ହେଲା ରେ ପୁଙ୍ଗି, ପୁଲକ ନାଇଁ କି ?

ପୁଙ୍ଗି ମୁଣ୍ଡ ହଲାଇ ନାହିଁ କଲା । କହିଲା, ମା, ପାଣି·କ ପେଜ ଟିକେ ଦେ ।

ପୁଲକର ମା ହାଣ୍ଡିରୁ ପେଜ ( ପଇଡ ) ଆଣି ଦେଲା । ପୁଙ୍ଗି ଢକ ଢକ କରି ପିଇଦେଲା ।

ପୁଲକର ମା ପଚାରିଲା, କଏ ତତେ ମାରିଲାକରେ ପୁଙ୍ଗି ?

ମାରିନାହିଁ ମା । ସାହୁକାରର ଘର ତୋଲା ହୋଇଚ । କାନ୍ଥ ଉପରକୁ ପଥର ନେଉଥିଲି । ଗୋଡ଼ ଖସିଗଲା । ପଡ଼ିଗଲି ତଳେ । ମୁଣ୍ଡ ଫାଟିଗଲା । ସାହୁକାର ଭଲ ମଣିଷ, ମୁଣ୍ଡରେ କନା ବନ୍ଧେଇଲା । ଭିଡିଆ ଦେଲା । ଦ ଦନ ସିଲ ( ଛୁଟି ) ଦେଇଚ । ଚରିଅଣା ପଇସା ଦେଇଚ ।

ସତେ, ସାହୁକାର ଭଲ ମଣିଷ । ହେ ପୁଙ୍ଗି, ତୁ ଶୋଇଥାରେ । ମୁଁ ପୁଲକକୁ ଡାକୁଚ । କା଼ଠ, ପତର, କ ପାଣି ଲାଗ କେଉଁଠିକି ଯାଇଥିବ । ତୁ ଶୋଇପଡ଼—

ପୁଲକର ମା ଘାସବୁଣା ଚଟେଇ ଖଣ୍ଡେ ଦଉଡ଼ିଆଖଟରେ ପକାଇ ଦେଲା । ପୁଙ୍ଗିର ହାତ ଧରି ଉଠାଇ ତାକୁ ଖଟରେ ଶୁଆଇଲା । ଘରର ତାଟି ଆଉଜାଇ ଅଣିଲା । ଘରୁ ବାହାରକୁ ଅସି ଏଣେ ତେଣେ ଚାହିଁ ମନକୁ କହିହେଲା, ପୁଲକ ଗଲା କୁଆଡ଼େ ? ଦେଖେଁ—

ପାହାଡ଼ତଳ ନିଘଞ୍ଚ ଜଙ୍ଗଲ ଭିତରେ ଗୋଟାଏ ଗଛକୁ ଆଉଜି ବୁଢିଆ ଡମ୍ବ ବସିଚ । ଡ଼ରେଇ କରି ଠିଆ ହୋଇଚନ୍ତି ସୁକ୍ରୁ ଓ ଚଇତୁ । ବେଳ ଦ୍ୱିପ୍ରହର । ପାଖରେ ଥୁଆ ହୋଇଚ ମଦ ହାଣ୍ଡି ।

ବୁଢିଆ ପଚାରିଲା, ସାହୁକାର ବ ସାଥିରେ ଅସୁଚ କ ସୁକ୍ରୁ ?

ସୁକ୍ରୁ କହିଲା, ଏକା ସାହୁକାର ? ମୁନ୍‌ସି ସଙ୍ଗରେ ଦାକାଲଗୁଡ଼ାର ଗାଁ ଲୋକେ, ସାହୁକାର ବନମାଳୀର ଶଳା ଗୋବନ୍ଦ, ଦୁଇଜଣ ଜମାନ୍ ବ ଅସୁଚନ୍ତି । ସାହୁକାର ତତେ ସନ୍ଦେହ କରୁଚ ।

ବୁଢି ଡମ୍ବ ଭାବିଲା, ପଳାଇ ଗଲେ ନିସ୍ତାର ନାହିଁ । ମୁନ୍‌ସି ତା କଥା ଭଲକରି ଜାଣେ ।

ବୁଢ଼ି କହିଲା, ସାହୁକାରର ଯେଉଁ ପୁଅକୁ ବାଘୁଆ ଜଙ୍ଗଲ ଭିତରେ ବାନ୍ଧି ରଖିଥିଲା ତାକୁ ତେମେ ମାରି ଖାଇଲ । ପୋଲିସ୍ କଣ ତମକୁ ଛାଡ଼ିବ ଭାବିଚ ?

ଚଇତୁ କହିଲା, ତୁଇ କହିଲୁକୁ ସିନା ଆମେ ତାହା କଲୁଁ ।

ବୁଢ଼ି ପଚାରିଲା, ମୁଣ୍ଡ ରଖିଲ କେଉଁଠି ?

ଚଇତୁ କହିଲା, ପଥର ଖୋଲରେ । ତୋର କହିଲାପରି ବାଘୁଆର ଠାଙ୍ଗିଟା ପୁଅକର ସେଇ ପାଖରେ ପକେଇ ଦେଇ ଆସିଚ ।

ଭଲ କାମ କରିଚୁ । ମୁନ୍‌ସି ଆଗରେ କହିବୁ ବାଘୁଆ ତୋ ଆଗରେ କହୁଥିଲା, ଗୁରୁମୂର୍ତ୍ତି ସାହୁକାର ଠଙ୍କା ନ ଦେଲା ତ ନାହିଁ, ସୁନାର ଲାଗି ସେ ଚୋରି କରିବ । କହିବୁ ନା ଚଇତୁ ?

କହିବ ।

ଶୁଣ ସୁକ୍ରୁ, ତୁ କହିବୁ ବାଘୁଆ କହୁଥିଲା ସୁନାକୁ ଘେନି ନେବ । ତୁ ପଚାରିଲୁ, ଝୋଲାଠଙ୍କା ତାର ବାପକୁ କେମିତି ଦେବୁ ? ସେ କହିଲା ତତେ, ଠଙ୍କା, ଲୁଗା, ପୁଡ଼, ସବୁ ସେ ରଖିଚ ।

ସୁକ୍ରୁ କହିଲା, ମୁନ୍‌ସି ଯଦି ପଚାରେ ବାଘୁଆ କେଉଁଠୁ ଆଣିଲା ?

ବୁଢ଼ି ଉପଦେଶ ଦେଲା, ତୁ କହିବୁ, ବାଘୁଆ ସେ କଥା କହିଲା ନାହିଁ ।

ସୁକ୍ରୁ ଓ ଚଇତୁ ବୁଢ଼ିଆର କଥା ଭାବିଲେ । ମୁନ୍‌ସି ଆଗରେ ଏତିକି କହିଲେ ତ କିଛି କ୍ଷତି ନାହିଁ । ବିନା ପରିଶ୍ରମରେ ସେମାନେ ଠଙ୍କାରୁ ଭାଗ ପାଇଚନ୍ତି । ଆଉଦାନକୁ ଆଉଦାନ ଅଛି । ବୁଢ଼ିଆର କଥା ଶୁଣିଲେ ତାଙ୍କର ବିପଦ ନାହିଁ ।

ବୁଢ଼ି ପଚାରିଲା, ମୋ କଥା ମନେ ରହିଲା ?

ସୁକ୍ରୁ କହିଲା,—ହଁ ।

ବୁଢ଼ି କହିଲା, ତେମେ ଦହେଁ ମୋ ପାଖରୁ ଚାଲିଯାଅ । ମୁନ୍‌ସି ପାଖକୁ ଏକାଠି ଯିବ ନାହିଁ । ସୁକ୍ରୁ ତୁ ଆଗ ଯିବୁ । ଚଇତୁ ତୁ ପରେ ଯିବୁ ।

ସୁକ୍ରୁ ଓ ଚଇତୁ ଚାଲିଗଲେ । ବୁଢ଼ିଆ ଉଠି ଠିଆହେଲା । ଚାରିଆଡ଼କୁ ଚାହିଁଲା । ଗଛ ଗହଳ ଦେଇ ଗଲେ ଯେଉଁ ଚାଲିବାଟଟି ଉଠି ପଡ଼ି ବଙ୍କେଇ ବଙ୍କେଇ ଗାଁ ଆଡ଼କୁ ଗଡ଼ିଚି, ସେହି ବାଟରେ ଦୁଇଜଣ କିଏ ଆସୁଥିଲା ପରି ମନେ ହେଲା । ବୁଢ଼ିଆ ନଇଁପଡ଼ି ଏକିକି ତେଣିକି ଚାହିଁଲା, ଦେଖିଲା—ଖୁସିହେଲା, ମାଗତା ପୁଲକର ହାତ ଧରି ଆସୁଚ :

ପୁଲକ ଓ ମାଗତା ସେହି ବାଟରେ ଯାଉଁଣୁ ଅଗରେ ବୁଢ଼ିଆକୁ ଦେଖି ଚମକି ଠିଆହେଲେ । ବୁଢ଼ିଆ ହସି ହସି ପାଖକୁ ଗଲା । ପଚାରିଲା, କୁଆଡ଼େ ଯାଉଚ ମାଗତା ?

ମାଗତା କହିଲା, ମୁଁ ପୁଲକକୁ ଘିଚି ନେଉଚ । ସେ ପୁଂଗିପାଖେ ରହିବ ନାହିଁ । ପୁଂଗି ଖମ୍ବାର ହେଲା । ପୁଲକ ମୋର ଧାଂଗଡ଼ୀ ହେବ । ପୁଂଗିର ହୋଲା ଠଙ୍କା ମୁଁ ଫେରେଇ ଦେବ । ଆଉ କଅଣ ?

ବୁଢ଼ିଆ ତାର କଥା ସମର୍ଥନ କରି କହିଲା, ଅରେ, ନାଇକର ପୁଅ ମାଗତା, ଭଲ କରୁଚୁ । ପୁଲକ ଭଲ ଧାଂଗଡ଼ୀଟେ । ମୁଇଁ କହିପିଲା ହୋଇ ଥାଇଛ ତ କେବଠୁଁ ପୁଲକକୁ ଘିଚି ନେଇ ଯାଇଛ । ହେଲେ ମାଗତା, ପୁଂଗି ଜାଣିବ ତ ତତେ ହାଣିଦେବ ନାଇଁ କି ? ତାର ସାଥିରେ ଲଢ଼ିଲେ ପାରିବୁ କି ?

ମାଗତା ନିଃସହାୟ ଆଖିରେ ପୁଲକକୁ ଚାହିଁଲା ।

ପୁଲକ ଉତ୍ତେଜିତ ହୋଇ କହିଲା, ନାଇକର ପୁଅକୁ ହାଣିବ ପୁଂଗି ଖମ୍ବାର ? ମାଗତା ତାର ଠଙ୍କା ଦେବ । ମାଗତାର କଣ ଠଙ୍କା ନାଇଁ କି ?

ବୁଢ଼ି କହିଲା, ପୁଲକ ସତ କହୁଚ । ତେବେ ହେ ପୁଲକ, ମାଗତା ତୋର ବଂଶ ଭାଇଟା ଯେ—

ମାଗତା କହିଲା, ମୁଇଁ ଜୋରିମାନା ଦେବ, ଗାଁ ଲୋକଙ୍କୁ ଖାଇବାକୁ ଦେବ । ବଂଶ ଭାଇ ହେଲେ କସ ହେଲା ?

ପୁଲକ କହିଲା, ଭାରି କଥାଟେ କହିଲୁ ତ । ଥୋୟାକା ହାଣ୍ଡି କପରି ଥୋୟାକା ମିଲିକୁ ଘିଚିନେଲା । ସେମାନେ ପୁଣି ଧାଂଗଡ଼ା ଧାଂଗଡ଼ୀ ହୋଇ ଘର କରୁଚନ୍ତି ।

ବୁଢ଼ି ସମ୍ମତି ଜଣାଇଁ କହିଲା, ସତକଥା କହିଲୁ । ଯା, ଯା—

ମାଗତା ଓ ପୁଲକ ଅଗକୁ ଚାଲିଲେ । ବୁଢ଼ିଆ ପଛରୁ ଡାକି କହିଲା, ସେଣେ ଯାନାଇଁରେ, ବାଘ—

ମାଗତା ଚମକି ଠିଆହେଲା ।

ବୁଢ଼ି ପାଖକୁ ଯାଇ କହିଲା, ହଁରେ ମାଗତା, ମୁଇଁ ସେଣେ ଯାଉଥିଲି । ସେଇ ପାହାଡ଼ତଳ ହୋଲାରୁ ଉଠିକରି ପଲେ କଅଁଦ ଛୁଟି ପଳେଇଲେ । ମାଙ୍କଡ଼ ଖେଙ୍କିଲେ । ଡରିକରି ଏଇ ଗଛ ଉପରେ ମୁଁ ଚଢ଼ି କେତେବେଳୁ ବସିଥିଲି । ତମକୁ ଦେଖି ଓହ୍ଲାଇଲି ।

ମାଗତା ଭୟରେ ଡାକିଲା, ପୁଲକ—।

ପୁଲକ ତାର ହାତ ଧରି କହିଲା, ବାଘକୁ ଡରୁଚୁ, ତୁଇ କହିପିଲା ? ତୋର ହାତରେ ଟାଂଗି ଅଛି, ବାଘ କସ କରିବ ?

ନାଇଁ ପୂଲକ, ବାଘ ଖାଇଦେବ ।

ପୂଲକ ମାଗତା ହାତରୁ ଠେଂଗି ଟାଣିନେଇ କହିଲା, ଦେ, ମତେ ଠେଂଗି ଦେ । ଆ ମୋର ପଛରେ । ବାଘ ଆଇବତ ମୁଇଁ ତାକୁ ହାଣିବ । ତୁଇ ଦେଖିବୁ ଗୃହ—

ନାଇଁ ପୂଲକ—

ବୁଦ୍ଧି କହିଲା, ଶୁଣ ପୂଲକ । ଆରେ, ତୋର ମନ ମାଗତାଠିଁତ ମାଗତାର ମନ ତୋଠି ଗାଜ । ବଣ ଜଂଗଲକୁ କ ବାଘର ମୁହଁକୁ ଯିବ କାହିଁକ ? ହେ ମାଗତା, ତୁଇ ପୂଲକକୁ ନଜର ଘରକୁ ନେଇ ଯା । ରଖ ତାକୁ ଧାଂଗଡ଼ୀ କରି । ନାଇକ ପଚ୍ଛରଲେ ସେଇଆ କହ । ପୁଂଗି ଆସିଲେ ତାକୁ ଠେଙ୍ଗା ଦେଇଦେବୁ । ସୁନାକୁ ତ ବାଘ୍ଯା ନେଲା । ଲତାକୁ ତୋର ବାପ ଗୃହେଁ ନାହିଁ । ପୂଲକକୁ ତୋର ବାପ ନାଇକ ଭଲ ପାଏ ରେ ।

ପୂଲକ ଅଗ୍ରହରେ ବୁଦ୍ଧିଅକୁ ଅନେଇଲା । ବୁଦ୍ଧିଅ ବୁଝିଲା ତାର କଥା ପୂଲକର ମନକୁ ପାଇଚ । ସେ କହିଲା, କେତେ ଦନ ତଳେ ନାଇକ ମତେ କହିଥିଲା, ହେ ବାରକ, ପୂଲକ ଯଦ ମୋର ବଂଶର ଝିଅ ହୋଇ ନ ଥାନ୍ତା, ମାଗତାର ଲାଗି ତାକୁ ମୁଇଁ ଆଣିଥାନ୍ତି । ମାଗତା ସିନା ସୁନାକୁ ଗୃହୁଁଚ, ହେଲେ ସୁନା କ ପୂଲକ ଲାଖି ହେବ କରେ ? ମୁଇଁ ତୁନ ପଡ଼ିଲି । କସ୍ ଆଉ କରନ୍ତି । ମାଗତା ତ ସୁନାର ପଛରେ ଗୋଡ଼ାଇଚ । ସୁନା ତ ଗଲା, ମାଗତା ଗୃହିଁଲା ପୂଲକକୁ । ଭଲ ହେବ ପୂଲକ, ନାଇକ ମଂଗିବ ।

ବୁଦ୍ଧିଅ ତୁନ ହେଲା । ମାଗତା ଓ ପୂଲକ ବୁଦ୍ଧିଅର କଥା ଭାବିଲେ, ବାରକ ଭଲ କଥା କହୁଚ ତ !

ପୂଲକ ପଚ୍ଛରଲା, ହେ ବାରକ, କସ୍ ତେବେ କହୁଚୁ ତୁଇ ?

ତମର ଭଲକୁ ମୁଇଁ କହୁଚ । ତୁ ପୁଂଗି ଘରକୁ ଫେରଯା । ରହ ଆଉ ଦୁଇ ଗୃରଦନ । ମନର କଥା ଆଉ କାହାକୁ କହିବୁ ନାଇଁ । ମୁଁ ନାଇକକୁ ସବୁ କଥା କହିବ । ମୋର କଥାରୁ ସେ ବାହାର ହେବ ନାହିଁରେ ପୂଲକ, ମୁଇଁ ଗାଁଅର ବାରକ ଲୁହେଁକ ? ନାଇକ ମଂଗିଲେ, ଆଉ ଭାବନା କଣ ? ପୁଂଗି କସ୍ କରିବ ?

ମାଗତା କହିଲା, ବୁଦ୍ଧିଅ ଭଲ କହୁଚ ପୂଲକ ।

ବୁଦ୍ଧିଅ କହିଲା, ସତ ଏକା । ଦନ ଗୃରଟା ପୁଂଗି ପାଖରେ ରହ ପୂଲକ, ନାଇକ ମଂଗିଲେ ମାଗତା ତତେ ଧାଂଗଡ଼ୀ କରି ତା ଘରକୁ ନେବ । ମତେ କଣ ଦେବୁରେ ପୂଲକ ? ତୁ ମାଗତାର ମାଇପ ହେବୁ, ନାଇକର ବୋହୂ ହେବୁ, ପେଜ ଦେବୁ ନାଁ ? ଭୁଲିବୁ ନାଇଁ ତ ?

ପୁଲକ ହସିଲା । କହିଲା, ଦେବାରେ ବାଉକ, ତୁଇ ବଞ୍ଚିଥିବା ଯାକେ ଦେଉଥିବ ।

ବେଶ୍, ତୁଇ ଘରକୁ ଫେରିଯା ପୁଲକ । ମାଗତା, ତୁଇ ରହ ମୋ ପାଖରେ । ତୋତେ ଫାଗରେ ନେଇ ମୁଁ ନାଇକ ଆଉ ଦଶାଉ ପାଖକୁ ଯିବି । ସବୁ ଠିକ୍ ହୋଇଯିବ । ପୁଲକ ତୁଇ ଯା, ଆଜି ଏକା ଯାକର ପାଖରେ ଦାଣ୍ଡ ଭୁକୁଡ଼ା ଦେ । ମନର କଥା ମନରେ ରଖ । ବୁଝିଲୁ ?

ପୁଲକ ସବୁ ବୁଝିଲା । ବାଉକ ଉପରେ ଖୁସି ହେଲା । ଭାବିଲା, ନାଇକର ବୋହୂ ହେଲେ ବାଉକକୁ ଠଙ୍କା ଦେବ, ଲୁଗା ଦେବ, ପୁଣି ନିତି ଦେବ ଭାତ । ଠାଙ୍ଗିଠା ମାଗତା ହାତକୁ ଦେଇ ଆନନ୍ଦରେ ପୁଲକ ଫେରିଲା । ନାଇକର ବୋହୂ ସେ ହେବ । ପୁଙ୍ଗିକୁ ଯିନା ଧନେ ଭଲ ପାଉଥିଲା, ପୁଙ୍ଗିର ଦେହରେ ବଳ ଅଛି, ସେ ଭଲ ପିଲା, କିନ୍ତୁ ପୁଙ୍ଗି ଖମ୍ବାର ହେଲା । ପୁଲକ ହେଲା ଏକୁଟିଆ ।

ପୁଲକ ଗହନ ବନର ଗଛ ଗହଳି ତଳେ ଛପି ଗଲା ।

ବୁଢ଼ିଆ ମାଗତାର କାନ୍ଧରେ ହାତ ପକାଇ କହିଲା, ବସ୍ ଏଇଠି ମାଗତା ।

ଚାଲ୍ ଯିବା ବୁଢ଼ିଆ, ବାଘ ଆସିବ ଯଦି—

ବାଘ ଡୋଙ୍ଗର ସେପାଖକୁ ଚାଲି ଗଲାଣି । ତୁଇ ବସ ମୋ ପାଖରେ । ତତେ କେତେ କଥା କହିବ । ତୁଇ ମୋର ପିଲା ଦିନର ସାଙ୍ଗଠା । ତୋ ବାପର ପରେ ତୁଇ ହେବୁ ଗାଁର ନାଇକ । ମୁଁ ହେବ ତୋର ବାଉକ । ମୋର କଥା ତୁଇ ଶୁଣିବୁ ତ ?

ମାଗତା ବୁଢ଼ିଆ ପାଖରେ ବସିଲା । ବୁଢ଼ିଆ ତାକୁ ମଦ ଦେଲା । ମାଗତା ପିଇଲା । ବୁଢ଼ିଆ ମଧ୍ୟ ପିଇଲା ।

କଥାଟେ ପଚାରିବ ସତ କହିବୁ କି ମାଗତା ?

କିସ୍ କଥା ?

ତୁଇ ସୁନାକୁ ଧାଙ୍ଗଡ଼ୀ କରିବୁ କି ଲତାକୁ କି ପୁଲକକୁ କରିବୁ । କାହାଠି ତୋର ମନ ?

ମାଗତା କହିଲା, ସୁନାକୁ ବାଘ୍ନା ନେଲା । ସୁନା ମତେ ଚାହେଁ ନାହିଁ । ଲତା ମତେ ଚାହେଁ । ମୁଁ ତାକୁ ଚାହେଁ ନା । ବାପ କହିଲା, ଲତାର ସାଥିରେ ମିଶିବ ନାହିଁ । ପୁଲକକୁ ମୁଁ ଚାହୁଁଥିଲି । ସେ କହିଲା ସେ ହେବ ପୁଙ୍ଗିର ମାଇପ ।

ହେଲା ତ । ପୁଣି ହେଲା ଖମ୍ବାର । ପୁଲକ ତାକୁ ଗୃହ୍ୟ ନାହିଁ । କହୁଛ, ମୋର ଘରକୁ ଆସିବ । କହୁଛ, ହେ ମାଗତା, ଘିଅ ନେ ମତେ । ମୁଁ କହିଲି, ଚାଲ—

ବୁଦ୍ଧିଆ ଭୁନ ଭୁନ କହିଲା, ମାଗତା, ସୁନାକୁ ମାଇପ କରି ନେବୁ କି ? ବାୟୁାକଜ ତତେ ଠକି ଦେବ ? ତୁଇ ନାଇକର ପୁଅ ପୁଣି ମୁଁ ତୋର ବାରିକ । ପିଲାଦିନର ସାଙ୍ଗ । ତା ହାତରୁ ସୁନାକୁ ଆଣି ମୁଁ ତୋ ହାତରେ ଦେବି ।

ଏଁ—?

ଯାହା କହୁଛି ସତ କଥା ।

ମତେ ବାୟୁା ମାରି ଦେବ ନାହିଁ କି ?

ସୁନା ହେବ ତୋର ଆଉ ବାୟୁା ଶିକ୍ଷା ପାଇ ଜେଲରେ ରହିବ ।

କପରି ଏହା ହେବ ?

ହେବ କଅଣ ରେ, ସବୁ ହୋଇ ସାରିଛି । ତୋର ପାଇଁ ଆଗରୁ ମୁଁ ସବୁ ଠିକ୍ କରି ରଖିଛି । ମୋ ନାଇକର ପୁଅକୁ ବାୟୁା ଠକିବ କି ?

ବୁଦ୍ଧିଆ ତାର ବଗୁରିଲା ଫନ୍ଦୀ କଥା ମାଗତାର କାନ ପାଖରେ ଭୁନ ଭୁନ କହିଲା । ମାଗତା ଖୁସି ହୋଇ ବୁଦ୍ଧିଆକୁ କୁଣ୍ଢାଇ ଧରିଲା । ବୁଦ୍ଧିଆ ପୁଣି ତାର କାନ ପାଖରେ ମନ କଥା କହିଲା । ମାଗତା ମୁଣ୍ଡ ହଲାଇ ସମ୍ମତି ଜଣାଇଲା ।

ବୁଦ୍ଧି ପଚାରିଲା, ହେଲା ତ ? ବେଶ୍, କଅଣ କହିବୁ ମୁନ୍‌ସି ଆଗରେ ?

ମାଗତା କହିଲା, କହିବି, ରାତିରେ ତୁଇ ଆଉ ମୁଇଁ ଜଅଦ ଶିକାର କରିବାକୁ ଝୋଲା ପାଖରେ ଜଗିଥିଲୁଁ । କଏ ଦୁଇ ତିନଜଣ ଆସିଲେ ସେ ବାଟରେ । ଜଣେ ପଟେ ପୁଡ଼ା ଧରିଥିଲା । ଦି ତିନଜଣ ଆଗରେ ଚାଲିଗଲେ । ପଛରେ ଆଉ ଜଣେ ଆସିଲା । ତୁଇ ଆଉ ମୁଁ ତା ପାଖକୁ ଗଲୁ—

ଆଉ କଅଣ କହିବାକୁ ହେବ ମାଗତା ଭୁଲିଗଲା । ସେ ଚୁପ ରହିଲା ।

ଚୁପ ରହିଲୁ ଯେ ।

ଭୁଲିଗଲି ବାରିକ ।

ଶୁଣ, ମୁଇଁ ବାରିକ ତାକୁ ଧରିଲି । ତୁଇ ନାଇକର ପୁଅ ମୋ ପାଖକୁ ଗଲୁ । ସେଇ ଚୋର ଲୋକଟା ଏଇ ବାୟୁା କନ୍ଧ । ତା କାନ୍ଧରେ କେତେ ଲୁଗା ପଡ଼ିଥିଲା । କାନରେ କେତେ କଅଣ ବାନ୍ଧିଥିଲା । ବୁଝିଲୁ କି ?

ହଁ ବୁଝିଲି । ପୁଣି କହିବି, ଆମେ ତାକୁ ପଚାରିଲୁ, ସେ କିଛି କହିଲା ନାହିଁ । ବାରିକ ହାତରୁ ହାତ ଝାଣି ନେଇ ପଳେଇଲା । ଏଇଆ କହିବାକୁ ଶିଖାଇଲୁ ତ ବାରିକ ମୁଇଁ ଭୁଲି ଯିବି କି ? ବାୟୁା ଚୋର ହେବ, ବାୟୁାକୁ ମୁନ୍‌ସି ବାନ୍ଧି-ନେବ । ଶିକ୍ଷା କରାଇବ । ସୁନା ହେବ ମୋର ଧାଙ୍ଗଡ଼ୀ । ନୁହେଁକି ବାରିକ ? ପୁଣି ସଙ୍ଗରେ ପୁଲକ ଥାଉ ।

ବୁଦ୍ଧି ବାଉକ ମାଗତାର ପିଠି ଥାପଡ଼ କହିଲା, ସାବାସ୍ । ତୁଇ ମୋର ନାଇକର ପୁଅ, କାଲ ପୁଣି ନାଇକ ହେବୁ । ମୁଁ ହେବ ତୋର ବାଉକ୍ । ତୋ ପାଇଁ ମୁଁ ସବୁ ସୁବିଧା କରିଦେବ । ମୁଁ କଣ କହୁଛି ଶୁଣ । ମନେରଖ । ମୁନ୍‌ସି ଆଗରେ କହିବୁ । କୋଠ ଘରେ କହିବୁ । ବାୟାକୁ ଶିକ୍ଷା କରାଇବା । ସୁନା ଭଲ ଝିଅଟେରେ ମାଗତା ! ସେ ତୋର ଧାଙ୍ଗଡ଼ୀ ହେବ ।

କଣ୍ କହିବ ନାଇକ ?

କହିବୁ ଆମେ ଦହେଁ ତା ପଛରେ ଗୋଡ଼େଇଲୁ । ବାୟା ଝୋଲ ସେ ପାଖେ ଡୋଙ୍ଗର କଡ଼ରେ ଲୁଚିଗଲା । ତାକୁ ଖୋଜି ଖୋଜି ପାଇଲୁ ନାହିଁ ।

ମାଗତା ବୁଦ୍ଧିଆର କହିବାମତେ ସବୁ କଥା ଆବୃତ୍ତି କଲା । ବୁର୍ଦ୍ଧିଆ ବାରମ୍ବାର ତାକୁ ଶିଖାଇଲା । ଖୁସି ହୋଇ ମାଗତାର ପିଠିରେ ହାତ ମାରି କହିଲା, ବେଶ୍, ମନେ ରଖିଥା ମାଗତା । ଏତିକ କହିବୁ । ମୁଁ ବ କହିବ ।

ଡୋଙ୍ଗର କଡ଼ରେ ଅଗନାଗ୍ନି ବଣ । ତାର ଭିତରେ ଡୋଙ୍ଗରକୁ ଗୁଡ଼େଇ ହୋଇ ଗୋଟିଏ ଝୋଲା । ତଳର ପଥରମାଳ ଉପରେ ଝର ଝର କୁଳୁକୁଳୁ ହୋଇ ଝରଣାଟି ବହି ଯାଉଛି । ସେଇ ଝରଣା କୂଳରୁ ଟିକିଏ ଗୁଡ଼ ଗୋଟାଏ ବଡ଼ ପଥରକୁ ଲାଗି ଭଙ୍ଗା କୁଡ଼ିଆ । କୁଡ଼ିଆ ଆଗରେ, ଝୋଲାକୂଳ ପଥର ଉପର ଗଛମୂଳରେ ବସିଚନ୍ତି ସୁନା ଓ ବାୟା ।

ସୁନା ପିନ୍ଧିଛି ଖଣ୍ଡେ ନାଲି ଶାଢ଼ୀ । ବେକଉପରୁ ଓହଳପଡ଼ିଛି ଲମ୍ବ ସୁନାହାର । ଛାତି ଉପରେ ଦୋହଲୁଛି ପଦକ । ବେକରେ ପୁଣି କେତେ ରଙ୍ଗର କାଚମାଳ ଓ ପୋହଳା । ଜଡ଼ାତେଲ ଲାଗି ମୁଣ୍ଡ ଦିଶୁଛି ଚକ୍ ଚକ୍ । ବାଳ ଉପରେ ଖୋସା ହୋଇଛି ଫୁଲ ।

ବାୟା ବସିଛି ତାପାଖରେ । ପିନ୍ଧିଛି ଖଣ୍ଡେ ଧୋବ ଫର୍ ଫର୍ ଲୁଗା ।

ବାୟା ସୁନାର କାନ୍ଧରେ ହାତ ପକାଇଲା । ତାର ମୁଣ୍ଡକୁ ଛାତି ଆଡ଼କୁ ଟାଣିନେଇ ଗେଲ କଲା । କେଡ଼େ ଆନନ୍ଦ କେଡ଼େ ଫୁର୍ତ୍ତି ତା ମନରେ, ସୁନା ଆଜି ତାର ହୋଇଛି । ଗରିବ ହେଲେ ମଧ୍ୟ ଯାଙ୍କର ଠାକୁରାଣୀ ଦୟାରୁ ସେ ସୁନାକୁ ପାଇଛି । ମାଗତା ହାରିଛି । ମାଗତା ଆଉ ସୁନା ଆଡ଼କୁ ଅନାଇଁ ପାରିବ ନାହିଁ ।

ସୁନାର ମନରେ ସେମିତି ଆନନ୍ଦ । ବାୟା ତାକୁ ଘିନି ଆଣିଚି । ଶାଢ଼ୀ ସୁନାହାର ଦେଇଚି । ବାହାଘର ତ ସରିଲା । ଏଥର ଝୋଲାଟେଙ୍କା, ଗାଁ ଲୋକଙ୍କୁ

ଟେଲିଙ୍କ, ନାଟ ଗୀତ, ପୁଣି ପ୍ରଥା ଅନୁସାରେ ସାମାନ୍ୟ କେତେକ ଆଦ ବଧ କର୍ମ ! ବାସ୍ତୀ ଠଙ୍କା ରଖିଛି । ବୁଦ୍ଧି ଡମ୍ବ ପୁଣି ତା ପାଇଁ ରଖିଛି ପୁଡ଼ ।

ଭଲ ସାଙ୍ଗଟେ ବୁଦ୍ଧି ଡମ୍ବ ।

ବାସ୍ତୀ କହିଲା, ଗୀତ ବୋଲ ସୁନା ।

ତୁଇ ବୋଲ ଆଗ ।

ନାଇଁ ତୁଇ ବୋଲ । ଆମର ପାଟି ଶୁଣିଲେ ବାଟ ଧରୁ ତୋର ବାପା, ନାଇକ, ଆଉ ଗ୍ରାମ ଲୋକେ ଅସିବେ । ଅସିଲେ ସିନା ଝୋଲା ଠଙ୍କା ଦେବ । ପୁଣି ଫେରିଯିବା ଗାଁକୁ । ଏଇ ଜଙ୍ଗଲ ମଝିରେ ବାଘପଲ ଭିତରେ କେତେଦିନ ଆଉ ରହିବା ?

ବୁଦ୍ଧିଅ ବାଲିକ ମୋ ବାପକୁ ଆଉ ଗ୍ରାମଲୋକଙ୍କୁ ଖବର ଦେଇଥିବ । ସେମାନେ ଅସୁଥିବେ । ବେଳ ମୁଣ୍ଡଉପରକୁ ଉଠିଲାଣି । ଗୀତ ବୋଲିବାକୁ ମନ ଡାକୁନାହିଁ ।

ଗୁଲ ତେବେ ଜଙ୍ଗଲ ଭିତରେ ବୁଲିବା ।

ସୁନାର ହାତଧରି ବାସ୍ତୀ ଉଠିଲା । କାହାର ପାଟି ଶୁଭିଲା ଦୂରରୁ ବନ ଗହନ ସେପାଖରୁ । ସୁନା କହିଲା, ରହ ବାସ୍ତୀ, ସେମାନେ ଅସୁଛନ୍ତି । ଆଉ କୁଆଡ଼େ ଯିବାନାହିଁ । ଗ୍ରାମ ଲୋକେ ଅସିବେ । ଆମ୍ଭକୁ ନ ଦେଖି ପୁଣି ଜଙ୍ଗଲ ଭିତରେ ଖୋଜି ଖୋଜି ହଇରାଣ ହେବେ । ହସିହସିକା ପୁଣି ସେ କହିଲା, ପିଠିକୁ ପଥର ପରି ଟାଣ କରିବୁ ହେ ବାସ୍ତୀ, ମୋ'ର ଭାଇ, ପୁଣି ଗାଁ ଟୋକାଏ ତତେ ଆଜି ଛାଡ଼ିବେ ନାହିଁ । ତୋ ପିଠିରେ ଅଜି କେତେ ମାଡ଼ ବସିବ ।

ମାଡ଼କୁ ଡରେ କି ସୁନା ? ତୋ ଲାଗି ମୋ ପିଠିକୁ ମୁଁ ପଥର କରିବ ।

କୋଳାହଳ ପାଖେଇ ଅସିଲା । ସୁନା ଓ ବାସ୍ତୀ ଗୁରଆଡ଼କୁ ଗୁହାଁଲେ । ସୁନା ଖୁସିହୋଇ ବାସ୍ତୀକୁ କୁଣ୍ଢାଇ ଧରିଲା । ବାସ୍ତୀ ତାର ମୁଣ୍ଡରେ ମୁଣ୍ଡ ଲଗାଇ ପିଠି ଆଉଁସିଲା । ସୁନା ପୁଣି ସିଧା ସଳଖ ଠିଆ ହୋଇ କହିଲା, ମୋର ବାପ ଭାଇ ଅସୁଛନ୍ତି । ବାସ୍ତୀ, ଅମେ ପୁଣି ଗାଁକୁ ଯିବା ଫେରି । ମାଗତା ବାହାହେବ ଲତାକୁ । ତା ଛଡ଼ା ଆଉ ଅଛି କିଏ ? ଲତାଟା ଭଲ ଝିଅ । ମୋର ପିଲାଦିନର ସାଙ୍ଗ । ଲତା ହେବ ନାଇକର ବୋହୂ । କେଡ଼େ ସୁଖରେ ରହିବ । ଲତା ଖୁସି ହେବ । ଆଉ ଅମେ— ?

ଅମେ ବି ଖୁସି ଅନନ୍ଦରେ ରହିବା ସୁନା, ନାଇକକୁ ମାଗିଲେ ସେ ଖଣ୍ଡେ ଭୂମିଦେବ । ଭୂମି ତଷିବା । ପୋଡ଼ୁ ଗୃଷ କରିବା । ମୁଇଁ ବେଳ ପାଇଲେ କୁଲି କରିଯିବି । ଅମେ ବି ସୁଖରେ ରହିବା । ନୂଆ ଘର ବାନ୍ଧିବା ।

ସୁଖରେ ରହିବା ବାସ୍ତୀ । ତୋ ସାଥିରେ ମୁଇଁ ସଦାବେଳେ ଥିବ । ତୋ ସଙ୍ଗେ ମିଶି କୁଲି-କରିବ । ଡୋଙ୍ଗର ଜଗିବି—

କୋଲାହଳ ପାଖେଇ ଆସିଲା । ବଡ଼ ପଥର କଡ଼ ବାଙ୍କୁଲ ବାଟରୁ, ଗଛ ଗହଳ ଭିତରୁ ବାହାରି ପଡ଼ିଲେ ଏକ ସଙ୍ଗେ ଅନେକ ଲୋକ । ବାୟା ଓ ସୁନାଙ୍କର ଆଗରେ ଠିଆ ହେଲେ—ମୁନ୍‌ସି ବାବୁ, ଜଣେ ଜମାନ୍, ଜାନ ଭେଡ଼କା, ନାଇକ ନୋକା, ଧଣାରି, ମାଗତା, ବୁଦ୍ଧିଆ, ସୁକୁ, ଚଇତୁ, ପୁଣି ବନମାଳି ସାହୁକାର ।

ମୁନ୍‌ସି ପଚାରିଲେ, ଏଇ ତୋର ଝିଅ ସୁନା ?

ଭେଡ଼କା ଉତ୍ତର ଦେଲା, ଚଉ ମହାପ୍ରଭୁ । ରକ୍ଷାକର ।

ମୁନ୍‌ସି ପଚାରିଲେ, କରେ ନୋକା ନାଇକ, ଏଇ ଟୋକାର ନାଆଁ ବାୟାକନ୍ଧ ?

ହଁ, ଅଧିକାରୀ—

ବନମାଳି ସାହୁକାର ହାତ ଯୋଡ଼ି ଜଣାଇଲା, ଦେଖ ମୁନସି, ସୁନା ଯେଉଁ ଶାଢ଼ୀ ପିନ୍ଧିଛି, ବେକରେ ଯେଉଁ ସୁନାହାର ଝୁଲାଇଛି, ସେ ସବୁ ମୋର । ଯେଉଁ ନିଅମ ହେବ ମୁଁ କରିବ ।

ମୁନ୍‌ସି ପଚାରିଲେ, ହେ ଟୋକୀ, କିଏ ତତେ ଦେଲା ରେ ?

ସୁନା ତୁନି ରହିଲା । ଭୟରେ ଚାରିଆଡ଼କୁ ଚାହିଁଲା ।

କହ, ଡର ନାହିଁ, ବାୟା କଣ ଦେଇଛି କି ? ମୁନ୍‌ସି ପଚାରିଲେ ।

ସତକଥା କହିଦେ ସୁନା । ପୁଗି ଗାଁର ଜାନ କାଡ଼ାକା ଭେଡ଼କା ତାର ଝିଅକୁ କହିଲା ।

କହ, ଡର ନା ସୁନା । କନାମ ଗାଁର ନାଇକ ମିଲକା ନୋକା ପ୍ରବର୍ତ୍ତାଇଲା ।

ସୁନା କହିଲା ମତେ ବାୟା ଦେଇଛି ।

ବାୟା ଯେଉଁ ଖଦି ପିନ୍ଧିଛି ସେ ମିଶା ମୋର—ସାହୁକାର ବନମାଳି କହିଲେ ।

ମୁନ୍‌ସି ପଚାରିଲେ, କରେ ବାୟା ?

ବାୟା ନିର୍ଭୟରେ ଉତ୍ତର ଦେଲା, "ସତକଥା ମହାପ୍ରଭୁ । ବୁଦ୍ଧିଆ ବନମାଳି ସାହୁକାର ଘରୁ ଚୋରି କଲା । ମତେ ଶାଢ଼ୀ, ସୁନାହାର, ଦଇଟା ଖଦି, ଅଞ୍ଜୁଳେ ଟଙ୍କା ଦେଲା । ଆଉ ସବୁ ଟଙ୍କା ସେ ନେଲା ।

ବୁଦ୍ଧି ବାଉକ ହାତ ଯୋଡ଼ି କହିଲା, ଚୋର ଫଟ୍‌କାରଟେ ସେ ମହାପ୍ରଭୁ । ଦେଖ୍, ଦେଖ୍, କେମିତି ମିଛ କଥା କହୁଛି । ମୁଁ ତାକୁ ଧରିଲି ବୋଲି ମତେ ଚିହିଥିଲା, ମୋ ନାମରେ ମିଛ କହିବ ।

ବାଯ୍ଯୁା କହିଲା, ନାଇଁ ମାହାପ୍ରୁ, ବୁଢ଼ିଆ ଡମ୍ବ ମିଛ କହୁଛି । ମୁଁ ତା ସାଙ୍ଗରେ ଯାଇଥିଲି । ସାହୁକାର ଘରେ ପଶି ନାହିଁ । ବୁଢ଼ିଆ ଡମ୍ବ ଏକା ପଶିଲା, ସବୁ ଆଣିଲା, ପୁଡ଼ ଆଣିଲା । ପୁଡ଼ ସେ ରଖିଛି ।

ବୁଢ଼ିଆ ମାଗତାକୁ ଚାହିଁ କହିଲା, ଦେଖ୍‌ତରେ ମାଗତା, ବାଯ୍ଯୁା କେମିତି ମିଛ କଥା କହୁଛି । ଜହ୍ନ ରାତିରେ ଭୁଇ ଆଉ ମୁଇଁ ଝୋଲା ପାଖରେ ଶିକାର କରିବାକୁ ଜଗି ବସିଥିଲୁ ନା ? ଏଇ ବାଯ୍ଯୁା କନ୍ଧ ପୁଡ଼ ପଟେ ନେଇ ଯାଉଥିଲା । ମୁଇଁ ତାକୁ ଧରିଲି ।

ମୁନ୍‌ସି ପଚାରିଲେ, କିରେ ମାଗତା ?

ସତ କଥା ମାହାପ୍ରୁ । ବାଯ୍ଯୁା କନ୍ଧ କାନରେ କସ୍‌ଟା ବାନ୍ଧିଥିଲା । କାନ୍ଧରେ ତାର ଏଇ ଶାଢ଼ୀ ଲୁଗା ଥିଲା ।

ବାଯ୍ଯୁା କହିଲା, ମାଗତା ମିଛ କହୁଛି । ମତେ ସେ ଦେଖି ନାହିଁ । ବୁଢ଼ିଆ ଡମ୍ବଠୁଁ ଜିନିଷ ଆଣି ମୁଁ ଲୁକି ଲୁକି ପଳେଇ ଆସିଲି ।

ମାଗତା କହିଲା, ମୁଇଁ ଦେଖିଛି ମାହାପ୍ରୁ ।

ବାଯ୍ଯୁା ମତେ ସବୁ କହିଥିଲା, ସୁକ୍ରୁ ଡମ୍ବ କହିଲା, ସୁନାକୁ ସେ ଘିଁଚି ନେବ, ଧାଙ୍ଗଡ଼ୀ କରିବ । ଝୋଲା ଠଙ୍କା ଦେବାପାଇଁ ସେ ସାହୁକାର ଘରୁ ଚୋରିକଲା ବୋଲି ମତେ କହିଲା ମାହାପ୍ରୁ ।

ଚଇତୁ ଡମ୍ବ କହିଲା, ସେଇକଥା ବାଯ୍ଯୁା ମତେ ମିଶା କହିଲା ମାହାପ୍ରୁ । ମିଛ କହିବ କି ? ଉପରେ ଧର୍ମ, ତଳେ ଧରତୀ, ମିଛ କହିଲେ ଆଖି ଫୁଟି ଯିବ ନାଇଁ କି ?

ବାଯ୍ଯୁା କହିଲା, ସମସ୍ତେ ମିଛ କହୁଛନ୍ତି ମାହାପ୍ରୁ ।

ମୁନ୍‌ସି ରାଗିଯାଇ କହିଲେ, ଚୋପ୍ ବଦମାସ୍ । ସମସ୍ତେ ମିଛ କହୁଛନ୍ତି, ଏକା ଏଇ ସତ କହୁଛି । ଠଙ୍କା କଣ କଲୁ ? ପୁଡ଼ କଣ କଲୁ ?

ଠଙ୍କା ରଖିଛି । ପୁଡ଼ ବୁଢ଼ିଆ ଡମ୍ବ ନେଲା ।

ଦେଖ ମାହାପ୍ରୁ ମିଛ କହୁଛି ମୋ ନାମରେ ।

ସୁକ୍ରୁ କହିଲା କେତେ ଦୂରରେ, ଝୋଲା ପାଖରେ ଗୋଟେ ପୁଡ଼-ମୁଣ୍ଡ ପଡ଼ିଛି । ମୁଁ ଆସୁଥିଲି ଦେଖିଲି ।

ମୁନ୍‌ସି ଆଦେଶ ଦେଲେ, ଜମାନ୍, ବାଯ୍ଯୁା କନ୍ଧକୁ ହାତକଡ଼ା ଦେଇଦିଅ । ଏଇ ଟୋକୀକୁ ବି ଆରେଷ୍ଟ କର ।

ଭେଡ଼କା ପ୍ରାର୍ଥନା କଲା, ମୋର ଧାଙ୍ଗଡ଼ୀ ଝିଅ ମାହାପ୍ରୁ । ତାର କି ଦୋଷ ? ବାଯ୍ଯୁା କନ୍ଧ ତାକୁ ସବୁ ଦେଇଛି । ସୁନା, କାଢ଼ିଦେ ବେକରୁ ହାର, ତୋ ଲୁଗା ତୁ ପାଲଟିପକା ।

ସୁନା ଅଚଳ ରହିଲା ।

ଜମାନ୍ ବାୟା କନ୍ଧ ହାତରେ ବେଡ଼ି ପିନ୍ଧାଇଲା । ସୁନା ଆଉ ତାର କୋହ ସମ୍ଭାଳି ପାରିଲା ନାହିଁ । ମୁନ୍‌ସିଙ୍କର ଗୋଡ଼ ତଳେ ପଡ଼ି କାନ୍ଦିବାକୁ ଲାଗିଲା । ମୁନ୍‌ସି ପଛକୁ ଘୁଞ୍ଚି ଠିଆହେଲେ । ନୋକା ନାଇକ ସୁନାର ହାତ ଧରି ତଳୁ ଉଠାଇଲା । କହିଲା, ଧାଙ୍ଗଡ଼ୀ ଟୋକୀ, ମୋର ମାଗତା ପାଇଁ ତାକୁ ଠିକ୍ କରିଛି । ତା'ର ଦୋଷ ନାହିଁ । ଏଇ ବାୟା କନ୍ଧ ତାକୁ ଭୁଲେଇ ଆଣିଛି ।

ମୁନ୍‌ସି ପଚାରିଲେ, ତେବେ ଚୋରି ମାଲ ?

ନୋକା ନାଇକ ସୁନାର ବେକରୁ ହାର ଖୋଲି ମୁନସିଙ୍କୁ ଦେଲା । କହିଲା, ନେ ତୋର ଚୋରିମାଲ । ଶାଢ଼ୀ ଖଣ୍ଡିକ ଘରକୁ ଗଲେ ଦେଇଦେବି । ସୁନା ମୋର ବୋହୂ ମୁନ୍‌ସି, ଡେଙ୍ଗା ଜାନି ମତେ କଥା ଦେଇଛି । ତାକୁ ଛାଡ଼ିଦେ ।

ଆଗରେ ବାୟା କନ୍ଧ, ଦୁଇ ହାତରେ ଲୁହା କଡ଼ି, ଅଣ୍ଟାରେ ବନ୍ଧା ହୋଇଛି ଦଉଡ଼ି, ଛେଳିଛୁଆପରି ବଲ ବଲ କରି ଚାରିଆଡ଼କୁ ଚାହୁଁଛି । ତୁଣ୍ଡରୁ ଆଉ କଥା ବାହାରୁ ନାହିଁ । ସତ କଥା ସେ କହି ଦେଇଛି । ଆଉ ତା'ର କିଛି କହିବାର ନାହିଁ । ଏଣିକି, ଯେଉଁମାନେ ବିଚାର କରିବେ, ଯେଉଁମାନେ ଆଇନ୍ ଧରି ବସିଛନ୍ତି, ତାଙ୍କର ଦାୟିତ୍ୱ ।

ଉପରେ ଆକାଶ, ତଳେ ଧରିତ୍ରୀ ମାତା, ଚାରିପାଖେ ଗଛ, ପଥର, ପାହାଡ଼, ଝରଣା । ସମସ୍ତେ ଯେପରି ସତ୍ୟର ଅବତାର, ବାୟା କନ୍ଧ ମଧ୍ୟ ଠିକ୍ ସେହିପରି । ବୁଦ୍ଧି ଉମ୍ବର ମୁହଁକୁ ଚାହିଁ ତା'ର ଆତ୍ମା ବାହୁନଉଠୁଛି ।

ବୁଦ୍ଧିଆ ଉମ୍ବ ପିଲା, କନ୍ଧର ସେ ଆଖି । ବନଚନ୍ଦନର ତଳେ ସେ ଚଳନ୍ତି ସାପ । ସେ ଚୋରି କରିଛି, ଠକିଛି, ମିଛ କହିଛି, ଟାଁ ଟାଁରେ ସୃଷ୍ଟି କରିଛି କନ୍ଦଳ । ରକ୍ତଧାର ଛୁଟାଇଛି, ରକ୍ତ ପିଇ ବଞ୍ଚିଛି । ତଥାପି କନ୍ଧପିଲା ତାର କଥା ମାନେ । ବୁଦ୍ଧିଆ ଉମ୍ବ ବାୟାର ଦୁର୍ଦ୍ଦଶା ଦେଖି ହସୁଛି ।

ମାଗତା କନ୍ଧ ପିଲା, ମିଛ କହି ଥରି ଉଠିଛି ତାର ଆତ୍ମା । ତଥାପି, ସେ ମିଛ କହୁଛି । ଆଗରେ ସୁନା, ଯାହାକୁ ସେ ଚାହେଁ, ଯାହାକୁ ସେ ହାସଲ କରିବ ।

ସୁନା, ସବୁ କଥା ସେ ବୁଝିଛି । ସ୍ୱପ୍ନ ତାର ଭାଙ୍ଗିଛି । ତାଆରି ପାଇଁ ନିରୀହ, ସରଳ, ଅନାଥ ବାୟା କନ୍ଧ ଚୋର ହୋଇଛି । ପୁଣି ଶିକ୍ଷା ପାଇବ— କେବଳ ତାଆରି ପାଇଁ । ସ୍ୱପ୍ନ ଭାଙ୍ଗିଛି । ସବୁ ଆଶା ମିଳାଇ ଯାଇଛି । ମାଗତା ହେବ ତାର ଧାଙ୍ଗଡ଼ା—ମାଗତା !

ମିଲିକା ନୋକାର ହାତରୁ ହାତ ଖସାଇ ସୁନା ଧାଇଁଗଲା ବାୟାର ପାଖକୁ । ବାୟାକୁ କୁଣ୍ଢାଇ ଧରି ଛଳ ଛଳ ଆଖିରେ ସୁନା ମୁନ୍‌ସିଙ୍କୁ ପ୍ରାର୍ଥନା କଲା, ମାହାପ୍ରଭୁ ନେ ନେ, ତୁ ସବୁ ନେଇଯା । ବାୟା ଚୋରି କରି ନାହିଁ ।

ତାର କିଛି ଦୋଷ ନାହିଁ । ସବୁ ତାକୁ ବୁଦ୍ଧି ଡମ୍ଫ ଦେଇଛି । ତୁ ସବୁ ନେଇ ଯା । ମୁନ୍‌ସି ମାହାପ୍ରୁ, ତାକୁ ଛାଡ଼ ଦେ । ଆମର କିଛି ଲୋଡ଼ା ନାହିଁ । ବାଘୁଆ ମୋର ଧାଙ୍ଗଡ଼ା; ଅମେ ଜଙ୍ଗଲକୁ ପଳାଇବୁ ମୁନ୍‌ସି ମାହାପ୍ରୁ, ତାକୁ ଛାଡ଼ ଦେ ।

ମୁନ୍‌ସି ରାଗିଯାଇ କହିଲେ, ଜମାନ୍, ସେ ଟୋକୀକୁ ବି ଆରେଷ୍ଟ କର ।

ଜମାନ୍ ସୁନାର ହାତ ଧରିଲା ।

ସୁନା କହିଲା, ବାଘୁଆ ଯଦି ଶିକ୍ଷା ଯିବ, ମତେ ବି ଶିକ୍ଷା କରେଇ ଦେ ମୁନ୍‌ସି, ମୁଇଁ ଶିକ୍ଷା ଦୋଷ କରିଛି ।

ନୋକା ନାଇକ କହିଲା, ଅରେ ମାଗତା, ସୁନାର ହାତ ଧରି ନେଇଗଲି ଗାଁକୁ । ସେ ତୋର ଧାଙ୍ଗଡ଼ୀ । ଭେଡ଼କା ଜବାବ ଦେଇଛି ।

ଭେଡ଼କା କହିଲା, ସତ କଥା ମାଗତା—

ମାଗତା ସୁନାର ହାତ ଧରି ବାଘୁଆ ପାଖରୁ ଟାଣି ଆଣିଲା । ସୁନା ଚିଲ୍ଲାର କଲା । ତାର ପ୍ରାର୍ଥନା କେହି ଶୁଣିଲେ ନାହିଁ ।

ସୁନାକୁ ସଙ୍ଗରେ ଧରି ଗ୍ରାମ ଲୋକେ ଗ୍ରାମକୁ ଫେରିଲେ । ଦରିଦ୍ର ବାଘୁଆକୁ ସଙ୍ଗରେ ଧରି ମୁନ୍‌ସି ପୁଡ଼ ମୁଣ୍ଡ ଦେଖିବାକୁ ଆଗେଇ ଗଲେ । ସଙ୍ଗରେ ଗଲେ ବୁଦ୍ଧିବାରିକ, ଚଇତୁ ଓ ସୁକ୍ରୁ ।

ସିପି ଗାଁର ଶ୍ରେଷ୍ଠ କନ୍ଦ-ପଲ୍ଲୀ ବାହାଟରେ—ଡୋଙ୍ଗର ତଳ ପଥର ଚଟାଣ ଉପରେ ବସିଛି ସୁନା । କୋଳରେ ତାର ବର୍ଷକର ପୁଅ । କେତେ ଗୁଡ଼ାଏ ଫୁଲ ପତର ପିଲାର ଆଗରେ ଜମାଇ ଦେଇଛି । ପିଲାଟି ଖେଳୁଛି । ନିଜେ ସୁନା ଗୁହିଁ ରହିଛି ସାମ୍ନାର ଗେଡ଼୍‌ଡା ଆଡ଼କୁ, ବେଳ ଦ୍ୱିପ୍ରହର ।

ପଛରୁ ଛପି ଛପି ଆସିଲା ଲତା । ସୁନାର ଦୁଇ ଆଖି ବୁଜି ଧରିଲା ।

ସୁନା କହିଲା, ଛାଡ଼ ଲତା ।

ଲତା ଆଖି ଖୋଲିଦେଲା । ପିଲାଟିକୁ କୋଳକୁ ନେଲା । କହିଲା, ମୁଁ ଜାଣେ, ତୁ ଏଇଠି ଥିବୁ । ତୋ ଘରକୁ ଯାଇଥିଲି । ମାଗତା ନାଇକ ନାହିଁ । ତୋର ଖମ୍ବାରି ପୁଟିଆ କହିଲା, ମାଗତା ପୁଲକ ସାଥିରେ କେଣେ ଯାଇଛି, ଆଉ ତୁ ଟିକି ନୋକାକୁ ଧରି କେଣେ ଯାଇଛୁ । ଖୋଜି ଖୋଜି ଆସିଲି ।

କିସ୍ ଲାଗି ମୋତେ ଖୋଜିଥିଲୁ ରେ ଲତା ?

ଏଇ ଟିକି ନୋକାର ଲାଗି । ଲତା ମାଗତାର ସାନପୁଅ ନୋକାକୁ ଛାତିରେ ଯାକି ଧରିଲା । କହିଲା, ଦେଖ ସୁନା, ନୋକା ନାଇକ ମତେ ଛାଡ଼ ତଳେ ବୋହୂ କଲା । ଯାକର ଠାକୁରାଣୀ ତାକୁ ରଖିଲା କି ? ଅଧର୍ମ କଥା କଲା । ତୁଇ

ତା'ର ବୋହୂ ହେଲୁ । ମାସ ଗୋଟେ ପୂରିଲା ନାହିଁ । ନୋକା ନାଇକକୁ ବାଘ ଖାଇଲା । ଦଶାର-ସିନା କହୁଚ, ସେଇ ନୋକା ତୋର କୋଳରେ ଜନମ ହୋଇଚ, ମୁଁ କହୁଛ, ସେଇଟା ମିଛ କଥା । ନୋକା ହୋଇଛ ବାଘ ଢୁମା ।

ସତ ଲୋ ଲତା, ନୋକା ନାଇକକୁ ବାଘ ଖାଇ ନାଇଁ, ତାକୁ ଖାଇଛି ବାଯୁାର ବାପ ବାଘ-ଢୁମା । ମାଗତା ଫଟକାର କାମ କଲା, ମିଛ କହିଲା, ବାଯୁାକୁ ଶିକ୍ଷା କରେଇଲା । ବାଯୁାର ବାପ ମାଗତାର ବାପକୁ ଖାଇଲା । ଲତା ରେ— !

ତୁନ ରହିଲୁ ଯେ ସୁନା ?

ଏଇଠି ଥିଲା ବାଯୁାର ଭଙ୍ଗା ଘର । ଦ ବରଷ କ କେତେ ହେଲାଣି । ତା ଘରର ଚିହ୍ନ ନାହିଁ । ଉହ ଉପରେ କେତେ ବଣୁଆ ଗଛ ଉଠିଲାଣି । ବାଯୁା ଆଉ ଫେରିବ ନାହିଁ ଲତା ?

ସୁନାର ଆଖି ଛଳ ଛଳ ହେଲା ।

ଲତା କହିଲା, ସିଠାମ ଭଙ୍ଗୁ ଉମ କୋରାପୁଟ ଜେଲରୁ ଫେରିଛି । ତାକୁ ପଚରିଲି ଯେ ସେ କହିଲା, ବାଯୁା ଜେଲରୁ ପଲାଇବାକୁ ବସିଥିଲା, ଧରାପଡ଼ି ପୁଣି ବେଶୀ ଦିନ ଶିକ୍ଷା ପାଇଛି । ଭଙ୍ଗୁକୁ ପଚରୁଥିଲା ତୋ କଥା । ଭଙ୍ଗୁ ସବୁ କହିଲାରୁ ବାଯୁା କହିଲା, ଶିକ୍ଷା ଭୋଗି ଫେରିଲେ ମାଗତାର ମୁଣ୍ଡ ହାଣିବ । ମାଗତା ମିଛ କହି ତା'କୁ ଶିକ୍ଷା କରେଇଛି ।

ବାଯୁା କେବେ ଫେରିବ ଲତା ?

ଆଜି ନ ହେଲେ, କେବେ ତ ଫେରିବ ।

ଲତା, ତୁ ବାଯୁାର ଘରଣୀ ହେବୁ ?

ଲତା ଘୃଣାରେ ଚାହିଁଲା ସୁନାକୁ । କହିଲା, କାହିଁକି ଲୋ ? ତୁ ହେଲୁ ନାଇକର ଘରଣୀ, ଯେଉଁ ନାଇକ ମୋର ଅଣ୍ଡିରା, ଆଉ ମୁଁ ହେବି କେଡ଼ରା ( ଦାଗୀର ) ଘରଣୀ ?

ନାଇକର ଘରଣୀ ହୋଇ କି ସୁଖ ମୁଁ ପାଉଛି ତ ଦେଖୁଛୁ ଲତା ? ମାଗତା ଦିନରାତି ମଦ ଖାଉଛି । ପରର ଧାଙ୍ଗଡ଼ୀ ପଛରେ ଧାଉଁଛି । କି ସୁଖ ମୋର ? ବାପ ମତେ ତାରି ହାତରେ ଦେଲା । ଆଜି ପୁଣି ବାପ କହୁଛି, ସୁନା, ଚାଲିଆ ମୋ ଘରକୁ । ତୋ ପାଇଁ ଅନ୍ୟ ଧାଙ୍ଗଡ଼ା ଠିକ୍ କରିବି । ମାଗତା ତାର ଝୋଲା ଟଙ୍କା ଫେରାଇ ନେବ ତ ଆଉ କଣ ?

ସେଇଆ କରୁନୁ ସୁନା, ବାପାର କଥା ଅମାନ୍ୟ କରନା ।

ବେଳେବେଳେ ମୋର ମନ ଡାକୁଛି । ଏଇ ପିଲାଟା ମୋର ଗୋଡ଼ ବାନ୍ଧି ରଖିଛି ରେ ଲତା । ପୁଣି ଭାବୁଛି, ପିଲା ତ ମୋର ନୁହେଁ, ପିଲା ମାଗତାର ।

ତୁଇ ଯଦି ମାଗତାର ଘରଣୀ ହୋଇଥାନ୍ତୁ, ଏ ପିଲା ତୋ କୋଳରେ ଜନମ ହୋଇଥାନ୍ତା । ମାଗତା ତାର ପିଲାକୁ ରଖୁ, ମୋର କଣ ହେବ ?

ସତ କଥା, ସୁନା । ଏଇଟା ମାଗତାର ପିଲା । ଯିଏ ତାର ଧାଙ୍ଗଡ଼ୀ ହୋଇ ଥାନ୍ତା ତା କୋଳକୁ ଅସିଥାଅନ୍ତା ।

ସତ ଯେ, ତେବେ ଯଦି ପିଲାକୁ ଛାଡ଼ି ବାପ ଘରକୁ ମୁଁ ଚାଲିଯାଏ, ମଦ ଖାଇ ଦିନେ ମାଗତା ତାକୁ ମାରିଦେବ । ହେଉପଛେ ସେ ମାଗତାର ପିଲା, ମୋ ପେଟରେ ଥାଇ ମୋ ରକତ ଖାଇ ବଢ଼ିଛି ତ ? ସେଥିଲାଗି, ମାଗତାର ଘରଛାଡ଼ି ଯାଇ ପାରୁ ନାହିଁ ରେ ଲତା, ସବୁ ଦୁଃଖ କଷ୍ଟ ସହି ମୁଁ ପଡ଼ି ରହିଛି ।

ମାଗିବି ସୁନା, ଏ ପିଲାକୁ ମତେ ଦେବୁ ? ମାଗତା ମତେ ଘରଣୀ କଲା ନାହିଁ ସିନା, ତା ପିଲା ମତେ ମା କରୁ, ମୋ ବାପର କଥା ରହୁ । ତା ଜୁମା ଶାନ୍ତ ପାଉ ।

ସୁନା ମୁହଁ ଫଣଫଣ କରି କହିଲା, ମୁଇଁ କିଏ ଯେ ମାଗତାର ପିଲାକୁ ତୋତେ ଦେବି ? ମୁଇଁ ମିଶା ମାଗତାର ଖମ୍ବାରି ହୋଇଛିରେ ଲତା, ତା ମାଡ଼ ଗାଳି ସହୁଛି, ପେଜ ମନ୍ଦେ ପିଉଛି, ପିଲାକୁ ପାଳୁଛି । ତୁଇ ଯା ମାଗତାକୁ ମାଗିବୁ ।

ଲତାର ହାତରୁ ଟିକିପୁଅ ମିଲିକା ନୋକାକୁ ଟାଣି ନେଇ ସୁନା ଛାତିରେ ଲଗାଇଲା । ଲତା ଆଖି ଛଳ ଛଳ କରି ସୁନାକୁ ଚାହିଁରହିଲା ।

ପଥର କଡ଼ ଅରଣ୍ୟ ଭିତରୁ ପୁଙ୍ଗି ବାହାରି ଅସିଲା । ଖୋଜି ଖୋଜି ସେ ପୁଲକକୁ ପାଉ ନାହିଁ । କାଳେ ସେ ପାଣି ଘାଟରେ ଥିବ, ସେଥିପାଇଁ ଝରଣା କୂଳକୁ ଅସିଲା । ପୁଲକକୁ ସେଠାରେ ନ ପାଇ ଲତାକୁ ପଚାରିଲା, ପୁଲକକୁ ଦେଖିଲୁ କି ?

ଲତା ଉତ୍ତର ଦେଲା, ନାଇଁରେ ପୁଙ୍ଗି ।

ପୁଙ୍ଗି ବ୍ୟସ୍ତ ହୋଇ ପଚାରିଲା, ବାଘ ମାରିଛି ବୋଲି ସାହୁକାରଠୁଁ ଛୁଟି ନେଇ ଅସିଲି । ଦେଖିଲି ଘରେ ତାଟି ପଡ଼ିଛି, ପୁଲକ ନାହିଁ । ତଣ୍ଟି ଶୁଖି ଯାଉଛି । ଘରେ ପେଜ ଟିକେ ବି ରଖି ନାହିଁ । ଗଲା କୁଆଡ଼େ ?

କନ୍ଦା ଖୋଳି ଯାଇଥିବ ।

ପୁଙ୍ଗି କହିଲା, ବୁଢ଼ିଆ ଡମ୍ବ କହୁଛି, ମାଗତା ସଙ୍ଗେ ପୁଲକ ବଣକୁ ଯାଇଛି । ଡମ୍ବ ଫଟିକାର ସବୁବେଳେ ମିଛ କହେ ।

ଗଛ ଉହାଡ଼ରୁ ବୁଦ୍ଧିଆ ଡମ୍ବ ବାହାରିପଡ଼ିଲା । ବୋଧହୁଏ ସେ ପୁର୍ଗିର ପଛେ ପଛେ ଲୁଚିକରି ଆସୁଥିଲା । ପୁର୍ଗିର କଥା ଶୁଣି ସେ କହିଲା, ମିଛ ନୁହେଁ ରେ ପୁର୍ଗି, କନାମ ଗାଁ ବାହାରେ ଦୁହେଁ ଏକାଠି ଯାଉଥିଲେ, ମୁଁ ନିଜେ ଦେଖିଛି ।

ପୁର୍ଗି ମନକୁ ମନ କହିହେଲା, କନାମ ଗାଁ ବାହାରେ ? ଯାଏଁ ଦେଖେଁ ।

ପୁର୍ଗି ହାତର ଝାଙ୍ଗି କାନ୍ଧରେ ପକାଇ ଝଲଝଲକା ପୁଣି ଜଙ୍ଗଲ ଭିତରକୁ ଗୁଲିଗଲା । ପଛକୁ ଫେରି ଗୁହିଁଲା ନାହିଁ ।

ବୁଦ୍ଧି ବାରିକ ଟିକିଏ ଅପେକ୍ଷା କଲା । ପୁର୍ଗି ବଣ ଭିତରେ ଲୁଚିଗଲାରୁ ସେ କହିଲା, ତେବେ ଏଠି କଣ କରୁଛରେ—

ସୁନା କହିଲା ତୋର କସ୍ ଥାଏ ?

ବାସ୍ନା କନ୍ଧ ଖବର ପଠାଇଛି ।

ଲତା କହିଲା, ତୁଇ ମିଛ କହିଲାରୁ ତାର ଶିକ୍ଷା ହେଲା ।

ମୋର କ ଦୋଷ ? କହ ସୁନା, ତୋ ଲଗି, ବାସ୍ନାର ଲଗି ମୁଇଁ ଚୋରି କଲି ନାଇଁ କ ? ବାସ୍ନା ମୋର ସାଥିରେ ସିନା ଥିଲା । ସୁକ୍ରୁ ଚଇତୁ ପୋଲିସରେ କହିଦେଲେ । କୋର୍ଟଘରେ ମହାପ୍ରଭୁ ଆଗରେ ମୁଇଁ ସିକ୍ସନ ପୋଥି ( ପେନାଲ୍ କୋଡ୍ ) ଧରି ସତ କଥା କହିଲି । ନାଇକ ହେଲେ କସ ହେଲା, ମାଗତା ମିଛ କହିଲା । କୋର୍ଟଘର ମତେ ଛାଡ଼ିଦେଲେ । ବାସ୍ନାକୁ ଶିକ୍ଷା କରେଇଲେ । ମୋର କ ଦୋଷ ରେ ସୁନା ?

ସୁନା ପଚାରିଲା, ବାସ୍ନା ସଙ୍ଗେ ତୋର କେଉଁଠି ଦେଖା ହେଲା ବାରିକ ?

ମୋର ଦେଖା ହୋଇ ନାହିଁ । ଭଙ୍ଗୁ ଜେଲରୁ ଫେରିଛି । ସେ କହୁଥିଲା—

ଲତା ପଚାରିଲା, କସ କହୁଥିଲା ?

ବୁଦ୍ଧିଆ କହିଲା, ଶିକ୍ଷା ସରିଲେ ବାସ୍ନା ଫେରିବ ।

ସୁନା କହିଲା, ଫେରୁ, ମୋର କ ଥାଏ ?

ବୁଦ୍ଧି କହିଲା, ବାସ୍ନା ସିଠାମ୍ ଭଙ୍ଗୁକୁ କହିଲା ଯେ ଶିକ୍ଷା ପାଇ ଫେରିଲେ ସେ ତୋର ଖମ୍ବାରି ହେବ ।

ମୋର କସ ହେବ ଖମ୍ବାରି ? ଯା, ଯା, ମାଗତାକୁ କହିବୁ ।

ସୁନା ମୁହଁ ଚୂଁଇ ନ ରହି ପିଲାକୁ ଗ୍ଲାଉରେ ଯାକି ଗୋଡ଼୍ଡା କୂଳେ କୂଳେ ଗୁଲିଗଲା । ଥରେ ହୋଇ ପଛକୁ ଫେରି ଗୁହିଁଲା ନାହିଁ ।

ବୁଢ଼ି କହିଲା, କଉଁଠେ ଲତା, ତତେ ଧାଙ୍ଗଡ଼ା ମିଳୁ ନାହିଁ କି ?

ତୁଇ ତ ଡମ୍ବ ଲୋକଟେ, ନୋହିଲେ ତୋ ସାଥିରେ ପଳାଇ ଯାଆନ୍ତି । ଡମ୍ବ ଫଟ୍‌କାର, ସବୁ ଟୋକିଙ୍କ ବଦମାସୀର ମୂଳ ତୁଇ ।

ମୁହଁ ମୋଡ଼ି ଲତା ଚାଲିଲା ସୁନାର ବାଟରେ । ପଛରୁ ଡାକ ଛାଡ଼ିଲା ବୁଢ଼ିଆ, ହେ ଲତା, ଜଙ୍ଗଲ ଜମାନ ଅଇଚରେ, ତତେ ଖୋଜଛି । ଲତା, ହେ ଲତା—

ଲତା ଫେରି ଚାହିଁଲା ନାହିଁ ।

ସଞ୍ଜ ପହର ଗଡ଼ି ଗଲାଣି । ପାହାଡ଼ ଫାଙ୍କରୁ ଉଠିଲାଣି ଜହ୍ନ । ମାଗତା ନାଇକର ଘର ଆଗ ବୁଦାବୁଦିକା ଜଙ୍ଗଲ ଭିତରେ ବଡ଼ ବଡ଼ ମହୁଲ ଗଛ । ଗଛ ଡାହାଡ଼ରେ ଛାଇଁଛାଇଁକା ଆଲୁଅ ଛାଇତଳେ ଠିଆ ହୋଇଛି ବାସୁ। କନ୍ଧ । ଅଢ଼େଇ ବର୍ଷ ଜେଲ ଭୋଗି ସେ ଫେରି ଆସିଛି । ସବୁ କଥା ସେ ଶୁଣିଛି । ଜୀବନର ସବୁ ଆଶା ତାର ପୋଡ଼ି ଜଳି ଯାଇଛି । ବାକି ରହିଛି, ପ୍ରତିଶୋଧ ।

କାନ୍ଧରେ ଟାଙ୍ଗିଆ । ଭାବୁଛି, ଥରେ ଯଦି ମାଗତାକୁ ସେ ଦେଖନ୍ତା, ମାଗତା, ଯିଏ ତାର ଛାତି ଉପରୁ ସୁନାକୁ ଟାଣି ନେଇଛି, କୋର୍ଟ ଘରେ ମିଛ କହି ଯିଏ ତାକୁ ଭୋଗେଇଛି ଜେଲ, ତାର କାନ୍ଧରୁ ମୁଣ୍ଡ ଛିଣ୍ଡାନ୍ତା । ବାସୁାର ରକ୍ତ ଗରମ ହୋଇ ଉଠିଲା । ମାଗତା କାହିଁ ? ଏତେବେଳଯାଏ ଫେରୁ ନାହିଁ କାହିଁକି ? ଗୋଟିଏ ଚୋଟ, ତାପରେ ନିଜେ ମୁଣ୍ଡଟା ଧରି ଥାନାରେ ହାଜର ହୋଇ ଯାଆନ୍ତା !

ମାଗତା ଆସିଲା ନାହିଁ । ଘର ଭିତରୁ ପଦାକୁ ବାହାରି ଆସିଲା ସୁନା । ବାସୁାର ଛାତି ଦମ୍‌କି ଉଠିଲା, ସୁନା !

ସୁନାର ଆଖିରେ ପଡ଼ିଲା ଗୋଟାଏ ଚଳନ୍ତି ଛାଇ । ଚମକି ଉଠିଲା । ମନ ଭିତରୁ ଯେପରି କିଏ କହି ଉଠିଲା, ବାସୁା, ବାସୁା—ଥରିଲା ତୁଣ୍ଡରୁ ବାହାରି ଆସିଲା କ୍ଷୀଣ କରୁଣ ସ୍ୱର, କି—ଏ, ବାସୁା ?

ବାସୁା ନିଜକୁ ଆଉ ଛପାଇ ପାରିଲା ନାହିଁ । ଗଛ ଗହଳି ଭିତରୁ ବାହାରି ପଡ଼ିଲା ଜହ୍ନ ଆଲୁଅକୁ । ଡାକିଲା, ସୁନା—

ସୁନା ଧୈର୍ଯ୍ୟଧରି ପାରିଲା ନାହିଁ । ଧାଇଁ ଯାଇ ବାସୁାକୁ ଆଲିଙ୍ଗନ କଲା । ତାର ଛାତି ଉପରେ ମୁଣ୍ଡ ରଖି ଭୁକ ଭୁକ କାନ୍ଦିବାକୁ ଲାଗିଲା । ବାସୁାର ଆଖିରେ ଆସିଲା ଲୁହ ।

ଫେରି ଆସିଛୁ ବାସୁା ?

ଅସିଛୁ ସୁନା, ମାଗତାର ମୁଣ୍ଡଟା ଧରି ପୁଣି ଫେରି ଯିବ କୋଉଠି ଘରକୁ ।

ଛି, ବାପୁ, ମାଗତାର କି ଦୋଷ ?

ତେବେ ଦୋଷ କାହାର ?

ଦୋଷ ମୋର । ମୁଇଁ ମଙ୍ଗିଲି ବୋଲି ମାଗତା ମତେ ଘରଣୀ କଲା ।

ମାଗତା ମତେ ଶିକ୍ଷା କରେଇଲା, କହ୍ନପୁଅ ହୋଇ କୋଉଠି ଘରେ ମିଛ କହିଲା ।

ମୋର ଲାଗି ତ ?

ତୋର ଲାଗି ?

ସୁନାକୁ ଗ୍ରଛଡ଼ପରୁ ଠେଲିଦେଲା ବାପୁ । ସୁନା ପଡ଼ୁ ପଡ଼ୁ ଠିଆ ହୋଇଗଲା । କହିଲା, ମୁଇଁ ତୋର ଦୋଷ କରିଛୁ । ମୋ ମୁଣ୍ଡ ଛୁ ନେ ବାପୁ, ମାଗତାର କିଛି ଦୋଷ ନାହିଁ ।

ବାପୁ ଠିଆହୋଇ ଭାବିଲା । ସୁନାକୁ କିଛି ଉତ୍ତର ନ ଦେଇ ଠାଙ୍ଗିଅଟି କାନ୍ଧରେ ପକାଇ ଟଳଟଳ ଅଗକୁ ଚାଲିଲା । ସୁନା ଷଣେ ତାର ପଛରୁ ଚାହିଁ ଡାକିଲା, ବାପୁ, ବାପୁ—

ବାପୁ ଅଟକି ରହିଲା ନାହିଁ । ସୁନା ତାର ପଛରେ ଧାଇଁଯାଇ ତା'ର ହାତଧରି ଅଟକାଇଲା ।

ବାପୁ—

କଣ କହୁଛୁ ?

କଥାଟେ ମାନିବୁ ବାପୁ ?

କିସ କଥା ସୁନା ?

ଯେଉଁଠି ତତେ ପୁଲିସ ଜମାନ୍ ଧରିଥିଲା ସେଇଠି ଭୁଇ ଥିବୁ କାଲି ଗାଧୁଆ ବେଳେ ?

କିସ ଲାଗି ?

ସେଇଠି ତତେ ସେଇ କଥା କହିବ । ଥିବୁ ବାପୁ ?

ଥିବ ସୁନା ।

ଯା ଏଥର ।

ବାପୁ ଚାଲିଗଲା । ସୁନା ଘର ଅଗକୁ ଅସିଲା । ମାଗତା ଠିଆ ହୋଇଛୁ । ପାଟିରୁ ବାହାରୁଛି ମଦଗନ୍ଧ । ସୁନାକୁ ଦେଖି ଖନମଗା ପାଟିରେ କହିଲା, ହେ, ସୁଲକ—ସୁଲକ—ସୁଲକ—

ମୁଁ ସୁନା ।

ହେ ସୁନା, ସୁନା, ସୁର୍ଙ୍ଗି କହୁଛୁ ହାଣିବ । ମୁଁ ତାକୁ ଅଗ ହାଣିବ, ଅଗ ହାଣିବ ।

ସେ ଠେଲିବାକୁ ଲାଗିଲା । ସୁନା ତାର ହାତ ଧରି ଅଟକାଇ ରଖିଲା । ଉତ୍ତର ଦେଲା ନାହିଁ । ମନ କଥା ମନରେ ଥାଉ । ମାଗତା ଆଗରେ କହିବ କାହିଁକି ? ମାଗତା ତାକୁ ଘରଣୀ କରିଛି ସତ, ଜନନୀ ବି କରିଛି, କିନ୍ତୁ ମାଗତା ତାକୁ ହଜର କରି ପାରି ନାହିଁ । ମାଗତାର ମନ ତା'ପାଖରେ ନାହିଁ, ଦୂରରେ, କେତେ ଦୂରରେ— ।

ସକାଳେ, ଲତା ଘର କାମରେ ବ୍ୟସ୍ତ । ତାର ବୁଢ଼ୀ ମା ଘର ଆଗରେ ବସି ଛେଳି ଛୁଆକୁ ପତ୍ର ଖୋଉଛି । ଧାଙ୍ଗଡ଼ୀ ଝିଅ । ଲତା ଉପରେ ତାର ଆଖି ପଡ଼ିଲା । ବିରକ୍ତ ହୋଇ କହିଲା, କେତେ ଦିନ ଆଉ ବସି ଥିବୁ ଲୋ ? ଯେତେ ଧାଙ୍ଗଡ଼ା ଆଇଲେ ସମସ୍ତିଙ୍କୁ ଘଉଡ଼ି ଦେଲୁ । ତୋ ସାଙ୍ଗର ଝିଏ, ପୁଣି ତୋଠୁ ପିଲା ଝିଏ ଘର କଲେଣି, ଆଉ ତୁଇ ବସିଥା ?

ବଢ଼ିଣାଠା ପିଣ୍ଡା ତଳକୁ ରଖିଦେଇ ଲତା କହିଲା, ଦେଖ୍ ମା, ମୁଇଁ ଧାଙ୍ଗଡ଼ା ସାଥିରେ ପଳେଇଲେ ତୁଇ କେମିତି ଚଳିବୁ ? ତୋର ପୁଅ ତ ନାହିଁ । ଆଉର୍, କିସ୍ ଲାଗି ମୁଁ କାହା ସାଥିରେ ଯିବ ? କେହି ତ ହୋଲା ଠଙ୍କା ନେଇ ଆସୁ ନାହିଁ ।

ଏଇ ବରଷ ଚଇତ ପରବରେ ତୁଇ କାହାର ସାଥିରେ ଗୁଲି ଯାରେ ଲତା, ତୋର ସୁଖ ଦେଖି ମୁଇଁ ଆଖି ବୁଜିବ ।

ଲତା ଜବାବ ଦେଲା ନାହିଁ । ମାଠିଆ ଧରି ପାଣି ପାଇଁ ଗେଡ଼ିଆକୁ ଯିବାକୁ ବାହାରିଲା । ବୁଢ଼ୀ ତା ହାତରୁ ପାଣିମାଠିଆ ଛଡ଼ାଇ କହିଲା, ତୁଇ ଘରେ ଥା । ମୁଁ ମାଠିଆଏ ପାଣି ନେଇ ଆସେ, ଏଇ ସୁନା ଆସୁଛି ।

ବୁଢ଼ୀ ମାଠିଆ ଧରି ଗୁଲିଗଲା । ଗୁଡିରେ ସାନ ନୋକାକୁ ଜାକି ସୁନା ପହଞ୍ଚିଲା ଲତାଘରେ । ଗୋଟିଏ କାଖରେ ମାଠିଆ । ସୁନା ଆଜି ପ୍ରଫୁଲ୍ଲ ଦିଶୁଛି । ଭଲ ଶାଢ଼ୀ ପିନ୍ଧିଛି । ଯତ୍ନକରି କୁଣ୍ଡାଇଛି ମୁଣ୍ଡ । ଏଡ଼େ ସକାଳୁ ପେନ୍ଥା ପେନ୍ଥା ଫୁଲ ଖୋସିଛି ମୁଣ୍ଡରେ ।

କଲୋ, ଆଜି ସଜବାଜ ହୋଇ ପାଣିକି ଯାଉଛୁ କାହିଁକି ?

ଲାଜ ଲାଜ ହୋଇ ସୁନା କହିଲା, ତୁ ଯିବୁ ନାହିଁକି ?

ମା ଯାଇଛି ।

ହାତ ବଢ଼ାଇ ଟିକି ନୋକାକୁ ଲତା ସୁନାର ଗୁଡି ଉପରୁ ଝାମ୍ପି ନେଲା । ତା ମୁହଁରେ ବାରମ୍ବାର ଚୋକ ଦେବାକୁ ଲାଗିଲା । ଟିକି ନୋକା କିର୍ କିର୍ ହୋଇ ହସିଲା । ଲତା ତାକୁ ଗୁଡିରେ ଯାକି ଧରି ହସି ହସି ନଚ୍ଚାଇ ଦେଲା ।

ସୁନାର ମୁହଁ ଗମ୍ଭୀର । ଆଖି କାନ୍ଦସ ।

ଭାଇ ଜଣେ ହେବ ଲୋ ତୋର ଏ ପୁଅ ନୋକା ।

ଲତା, ମୁଇଁ ଫେରଲା ଯାକେ ନୋକାକୁ ରଖିବୁ କ ପାଖରେ ?

ପାଣିକି ଯିବୁ ତ ? ଯା, ନୋକାର ସାଙ୍ଗେ ମୁଇଁ ଖେଳୁଥିବ । ତୁଇ ଆଇଲେ ତତେ ଦେବ ।

ଆଉର କାହାକୁ ଦେବୁ ନାହିଁରେ, ପିଲା ମୋର କାନ୍ଦବ । ଫେରୁ ଫେରୁ ଟିକେ ଡେର ହେବ ଲତା !

ତାର ବାପ ମାଗତାକୁ ମିଶା ଦେବ ନାହିଁ, ହେଲା ତ ?

ସୁନା ମାଠିଅଟି ଧର ଗୃଲ ଯାଉଁ ଯାଉଁ ଲୁହ ଝରା ଆଖିରେ ଟିକି ନୋକା ଆଡ଼କୁ କଣେଇଁ ଗୃହିଁଲା । ସେ ହସୁଥିଲା ଲତା ମୁହଁକୁ ଗୃହିଁ । ଲତା ତାକୁ ଗେଲ କରବାରେ ବ୍ୟସ୍ତ ।

ପାହାଡ଼ ତଳ ଝରଣା କୂଳରେ, ଅଢ଼େଇ ବର୍ଷ ତଳେ ଯେଉଁଠି ପୋଲିସ ତାକୁ ବାନ୍ଧିଥିଲା, ଯେଉଁଠି ତାର ଗୁଡ଼ିଛ ଉପରୁ ସୁନାକୁ ମାଗତା ଟାଣି ନେଇଥିଲା, ସେଇଠି ଗୃହିଁ ବସିଛ ବାୟା । ସୁନା ଆସିବ, କଥାଟିଏ କହବ । କିସ୍ କଥା ? ବାୟାର ତାହାହିଁ ଚନ୍ତା ।

ସେ ଜେଲରୁ ଫେରଛି । ଦୁନଆଁରେ ସେ ଏକା । ସାହା ସମ୍ବଳ କଛି ନାହିଁ । ଅଣ୍ଟା ଗୃରପାଖେ କନାଧଡ଼ି, ଗୃର ଅଙ୍ଗୁଳି କନା ଖଣ୍ଡେ ସାମନାରେ ଓହଳଛ, ହାତେ ତଳକୁ । କାନ୍ଧରେ ଖଣ୍ଡେ ଠାଙ୍ଗିଆ । ଆଉ ହାତରେ ଗୁଣ ହୁଗୁଲା ଧନୁ ଖଣ୍ଡେ । ଅଣ୍ଟା ପାଖକୁ ଚମ ମୁଣିରେ କେଇଖଣ୍ଡି କାଣ୍ଡ ।

ସୂର୍ଯ୍ୟ ଉଠିଲେ ପାହାଡ଼ ଉପରକୁ । ଗାଧୁଆ ବେଳ ହୋଇ ଆସିଲା । ସୁନା କାହିଁ ? କି କଥା ସେ କହବ ? କାହିଁକି ବାୟା କନକୁ ସେ ଅଟକାଇ ରଖିଲା ? ସେ ଆସିଥିଲା ମାଗତାର ମୁଣ୍ଡ ନେବାକୁ । ଷମା କର ପାର ନାହିଁ । ଫେର ଯାଉଛ ହତାଶ ହୋଇ । ଫେରଯିବ, ବହୁତ ଦୂରକୁ—

ଏଇ, ଧାଡ଼ ଧାଡ଼ ପାହାଡ଼ ମାଳ ସେ ପାଖେ ସେ ଯେଉଁ ଧୂଆଁଳିଆ ଉଚ୍ଚ ପାହାଡ଼, ଲମ୍ବ ପାଚର ପଣ ନେଳ ଆକାଶରେ ଯାହାର ମଥା ମିଶି ଯାଇଛ, ଯାହାର ଗୁଡ଼ିରେ ପେଟରେ ଚଳନ୍ତ ମେଘର ରୁପେଲି ପରଦା, ସେଇ ନମଗିର ପାହାଡ଼ । ବାୟାର ଦୃଷ୍ଟି ସେଇଠି । ସେଠି ପଶୁ ମଣିଷର ଭେଦ ନାହିଁ । ବାୟାର ଆଖି ଚଳନ୍ତ ମେଘ ଉପରେ ।

ସୁନା ଅସିଲା । ଅଣ୍ଟାରେ ପତର ମାଳ, ଛାତିରେ ସଜ ସାବୁଜା ପତର । ମୁଣ୍ଡରେ ଫେନ୍ଥା ଫେନ୍ଥା ଫୁଲ । ସୁନା ଅସିଲା ହସି ହସିକା । ତେରଛା କଅଁଳ ସୂର୍ଯ୍ୟ କିରଣ ସଜ ପତର ଉପରେ ଚକ୍ ଚକ୍ ଦିଶୁଚି ।

ସୁନା ଧରିଲା ବାଯ୍ଯାର ହାତ ।

ବାଯ୍ଯା ଫେର ଗୃହିଁଲା, ହଁ, ଏଇତ ସେ ସୁନା, ଅଢ଼େଇ ବର୍ଷ ଅଗର ସୁନା, ମାଗତା ନାଇକର ଘରଣୀ ନୁହେଁ ।

ବାଯ୍ଯା !

ସୁନାର ଦୁଇ ଆଖିରୁ ଲୁହଧାର ଗଡ଼ି ଅସୁଚି ।

କିସ୍ ରେ ?

ମୁଁ ଫେର ଅସିଚି ବାଯ୍ଯା । କଥାଟେ କହିବି ?

କିସ୍ କଥା ସୁନା ?

ଗୃଲ୍ ପଳାଇବା ।

ପଳାଇବା ?

ହଁ, ସେଇ ଡୋଙ୍ଗର୍ ସେପାର ନମଗିର ପାହାଡ଼ ଉପରକୁ । ସେଠି କେହି ଖୋଜି ଠିଙ୍କା ମାଗିବେ ନାହିଁ ବାଯ୍ଯା—

ସୁନା !

ବାଯ୍ଯାର ଆଖିରେ ଟଳ ଟଳ ଲୁହ ।

ନାହିଁ କରନା ବାଯ୍ଯା, ମାଗତାର ପିଲାକୁ ମୁଁ ଲତାକୁ ଦେଇ ଅସିଚି । ଗୃଲ—

ଅରେ ସୁନା—

ସୁନା ଦୁଇ ହାତରେ ବାଯ୍ଯାକୁ କୁଣ୍ଢାଇ ଧରିଲା । ଦୁଇ ଆଖିରୁ ଲୁହଧାର ଗଡ଼ୁଥାଏ । କାନ ପାଖରେ କହିଲା, ଗୃଲ୍ ବାଯ୍ଯା, ନାହିଁ କରନା, ଡେରି ହେଉଚି ।

ବାଯ୍ଯା ସୁନାର ପିଠି ଅଉଁସିଲା । କହିଲା, ତେବେ ଗୃଲ୍ ।

ବାଯ୍ଯାର ଛାତି ଉପରୁ ସୁନା ଅଲଗା ହେଲା । ବାଯ୍ଯା ଧରିଲା ସୁନାର ହାତ । ଦହେଁ ଗୃଲିଲେ ଡୋଙ୍ଗର ଉପରକୁ । କାହାରି ତୁଣ୍ଡରେ ଭାଷା ନାହିଁ । ଦୂରରେ, କେତେ ଦୂରରେ ଢେଉଢେଉକା କାନ୍ଥ ପରି ଦିଶୁଚି ନମଗିରି ପାହାଡ଼ ମାଳ । ଅକାଶର ବାଦଲତଳେ ତାର ନୀଳ ଶୃଙ୍ଗ ଛପି ଯାଇଚି ।

---

# କ୍ଷଣିକା

ସୂର୍ଯ୍ୟ ଉଠି ନ ଥାନ୍ତି । ପୂର୍ବଦିଗ ଉଜ୍ଜ୍ୱଳ ଦିଶିଲାଣି । ଖରଦିନ । ମଠର ବାସ୍ କଟକ ଷ୍ଟେସନ ଛାଡ଼ିଲା । ଛୁଟିଲା ପୂର୍ବମୁହାଁ ହୋଇ, ଜୟପୁର ରହାମା । ମୋର ସେଇଆଡ଼େ କାମ ଥାଏ । ବସ୍‌ରେ ପଇଶ ଜଣଙ୍କ ପାଇଁ ବସିବାର ସ୍ଥାନ, କିନ୍ତୁ ସେଦିନ ଲୋକ ଭିଡ଼ ହେତୁ ଆହୁରି ଦୁଇ ତିନିଜଣ ଅଧିକା ବସିଥାନ୍ତି । ଛାତ ଉପରେ ସାଇକଲ ଓ ଅନ୍ୟାନ୍ୟ ଜିନିଷପତ୍ର ଯାହା ତ ଅଛି, ତା ଛଡ଼ା, ଭିତରେ ମଧ୍ୟ ଜିନିଷପତ୍ର ଖୁନ୍ଦା ହୋଇଛି । ଗୋଡ଼ ରଖିବାକୁ ସ୍ଥାନ ନାହିଁ । ଆଉ ଦଶଜଣଙ୍କ ପରି ମୁଁ ମଧ୍ୟ ଜଣେ ସାଧାରଣ ଯାତ୍ରୀ । ବଡ଼ ବ୍ୟସ୍ତ ହୋଇ ପଡ଼ୁଥାଏଁ— କେତେବେଳେ ଆମର ଏ ଦୁଃଖ ଯିବ ।

ବସ୍ ଛୁଟିଛି । ଦୁଇପାଖର ଦୁଇ ଧାଡ଼ି ଗଛ ସତେ କି ଗତିଶୀଳ ହୋଇ ପଡ଼ିଛନ୍ତି । ଦୁଇ ପାଖର ହିଡ଼ବିଲ ଶସ୍ୟ ସବୁଜ ଦେଖା ଯାଉଛି । ମନ କପୋତ ଊନ୍ମୁକ୍ତ ହୋଇ ଉଠିଲାଣି । ପାଖର ଲୋକଟି ଘନ ଘନ ବିଡ଼ି ଟାଣୁଛି ଓ ଧୂଆଁ ଛାଡ଼ୁଛି ସମସ୍ତଙ୍କର ମୁହଁରେ । ଆଗର ଲୋକଟି ତାର ଘାଗଡ଼ା କଣ୍ଠରେ ଗୋଟିଏ ଅଶ୍ଳୀଳ ସଙ୍ଗୀତର ପଦକୁ ଆବୃତ୍ତି କରୁଛି । ଆଉ, ମନେ ମନେ କେଡ଼େ ଆନନ୍ଦ ଅନୁଭବ କରୁଛି । ସେ ପାଖରେ ସେ କଲିକତିଆ ବାବୁଟି, ଅନର୍ଗଳ ବକ୍ତୃତା ଦେବାରେ ବ୍ୟସ୍ତ । ଦାନ୍ତରେ ସୁନାଖିଲ, ହାତରେ ଗୋଟିଏ ପୁରୁଣା ରଷ୍ଟୱାଚ୍ । ବେଳେ ବେଳେ ପକେଟରୁ ଗ୍ରେଟ ପାନିଆଁଟି କାଢ଼ି ମୁଣ୍ଡ ସାଉଁଳି ନେଉଛି । ଆଉ ପାଖକୁ ବସିଛି ଯେଉଁ ବୁଢ଼ାଟି, ମୁଣ୍ଡରେ ଚୂଟି, କାନରେ ନୋଳି, ଘୁମେଇ ପଡ଼ୁଛି ପାଖ ସିଲ୍କ ପଞ୍ଜାବୀପିନ୍ଧା ବାବୁଟି ଉପରେ । ଚୁଟି ଝିଙ୍କା, କହୁଣି ଗେହା ଓ ଗାଳି ଖାଇ ମଧ୍ୟ ବୁଢ଼ାର ନିଦ ଭାଙ୍ଗୁନାହିଁ । ଏମିତି—

ବସ୍ ଛୁଟିଛି— । ସୂର୍ଯ୍ୟ ଉଠିଲେ ଦୂର ବରଗଛ ଗହଳି ଭିତରୁ । କେହି ଚାହିଁଲେ ନାହିଁ ସେ ଆଡ଼କୁ । ଥରଟିଏ ଚାହିଁ ମୁଁ ମଧ୍ୟ ଆଖି ଫେରାଇଲି । ମୋର ବନ୍ଧୁମାନଙ୍କର କ୍ରିୟା କଳାପ ଲକ୍ଷ୍ୟ କରି ତାରି ଭିତରେ ମନ ହଜାଇଦେବାକୁ ଚେଷ୍ଟା କଲି ।

ହଠାତ୍ ବସ୍ ବନ୍ଦ ହୋଇଗଲା । ଡ୍ରାଇଭର୍ ଯେତେ ଚେଷ୍ଟା କଲା ଚଳାଇବାକୁ, ହେଲା ନାହିଁ । ହତାଶ ହୋଇ କହିଲା, ଆପଣମାନେ ଟିକିଏ ଓହ୍ଲାନ୍ତୁ, ମୁଁ ଦେଖେଁ । ବିରକ୍ତ ଲାଗିଲା । ହେଲେ ଉପାୟ ନାହିଁ । ବସ୍ ଯଦି

ଠିକ୍ ନ ହୁଏ, କେଜାଣି କେତେ ସମୟ୍ ବାଟରେ ପଡ଼ିରହିବାକୁ ହେବ । ହେ ଭଗବାନ୍ ! କି ଦୁର୍ଯୋଗ ଆଜି । ସମସ୍ତେ ଓହ୍ଲାଇଲେ ।

ରାସ୍ତା କଡ଼ର ଝଙ୍କାଳିଆ ବରଗଛ ତଳେ ବସିଲି । ରାସ୍ତା ପାଖରୁ କିଛି ଦୂର ଗୁଡ଼ ବଳ ମଝିରେ ଛୋଟ ପୋଖରୀଟିଏ । ଦଳ ଭିଡ଼ ରହିଛି । ପୋଖରୀ ହୁଡ଼ାରୁ ବଙ୍କେଇ ବଙ୍କେଇ ଚାଲି ବାଟଟିଏ ପଡ଼ିଛି ପାଖ ଗାଁ ଆଡ଼କୁ । ମୋର ଆଖି ସେହି ବାଟ ଉପରେ ଲାଖି ରହିଲା ।

ସକାଳର ସୁନେଲି କିରଣ ପଡ଼ୁଥିଲା ତାର ସୁନ୍ଦର ଫୁଟିଲା ଫୁଟିଲା ମୁହଁ ଉପରେ । ଅମଳିନ ସଦ୍ୟଫୁଟା ପଦ୍ମ ଫୁଲଟି ଯେପରି ଧୀର ମନ୍ଥର ଗତିରେ ଚାଲି ଚାଲି ଆସୁଛି ! ଲାଳାୟିତ ଗତି, ନାଲି ରଙ୍ଗୀନ ଲୁଗାର ଓଢ଼ଣା କପାଳର ଅଧେ ଘୋଡ଼ାଇ ରଖିଛି । ଝୁମୁ ଝୁମୁ ବାଜୁଥିଲା ନୂପୁର । ସଙ୍ଗରେ ତାର ଆଉ ଜଣେ ଝିଅ ।

ଦୃଷ୍ଟି ମୋର ଛାଣି ହୋଇଗଲା—ସତେ କେଡ଼େ ସୁନ୍ଦର ! କବିତାର ମୂର୍ଚ୍ଛନା ଉଠିଲା ଛାତିରେ । କାହାର ପ୍ରେୟସୀ ? କିଏ ସେ ଭାଗ୍ୟବାନ୍ ! ମନ ଉଚ୍ଛନ୍ନ ହେଲା ଜାଣିବାକୁ—କାହାକୁ ପଚାରିବ ? ସଂସ୍କୃତ ଚେଇଁ ଉଠିଲା ମନରେ—ପର ଦାରେଷୁ ମାତୃବତ୍ । ଆଖି ଫେରାଇଲି । ପକେଟରୁ ଖବରକାଗଜ କାଢ଼ି ପଢ଼ିବାକୁ ଚେଷ୍ଟା କଲି । ଆଖି ଆଗରେ ଅକ୍ଷରଗୁଡ଼ା କେବଳ ଗତି କରିଗଲା, କିଛି ବୁଝିଲି ନାହିଁ । ମନଭିତରୁ ଇଙ୍ଗିତ ଦେଲା କିଏ—ଫେରି ଚାହାଁ । ଲାଜ ମାଡ଼ିଲା ନିଜକୁ । ମୋର ଅପରିଚିତ ବନ୍ଧୁମାନଙ୍କ ଆଡ଼କୁ ଥରେ ଚାହିଁଲି । କେତେଜଣ ବସ୍ ମରାମତି କରିବାରେ ବ୍ୟସ୍ତ । ଆଉ କେତେଜଣ ବାଁରେଇହୋଇ ବରଗଛ ଆଡ଼କୁ ମୋହିଁଛନ୍ତି ।

କଣେଇଁ ଚାହିଁଲି ପୋଖରୀ ଆଡ଼କୁ । ପୋଖରୀର ଶେଷ ପାହାଚରେ ବସିଛି ସେହି ଅପରିଚିତା । ଗୋଡ଼ ଦଓଟି ପାଣି ଭିତରକୁ ଲମ୍ବାଇ ଦେଇଛି । ମୁଣ୍ଡରେ ଆଉ ଲୁଗା ନାହିଁ । ଖଣ୍ଡେ ଗାମୁଛାରେ ଫୁଙ୍ଗୁଳା ହାତକୁ ଘଷି ପରିଷ୍କାର କରୁଛି । ତାର ସଙ୍ଗରେ ଆସି ଥିବା ଝିଅଟି, ଯୌବନ ଯାହାର ପାଖେଇ ଆସିଲାଣି, ଚଳ ଚଳ କରି ପାଣି ପକାଉଛି ତା ଉପରକୁ, ହସି ହସି ପାଣିକୁଆ ପରି ମୁଣ୍ଡ ବୁଡ଼ାଇ ଓଦା ସରସର ହୋଇ ଉଠୁଛି ଉପରକୁ । କହୁଛି, ଅସୁନା ନୂଆଁ'ଉ, ଉତ୍ତୁରି ହେବ ଯେ—ହାତ ଧରି ଟାଣୁଛି ପାଣି ଭିତରକୁ ।

ଓଠ ପାଖଡ଼ାରେ ଚମକି ଉଠୁଛି ହସ, ରହ ମ, ଏ ଗାଡ଼ଟା ଯାଉ । ମିଣିପଗୁରି ପରି—। କଥା ଅଧାକରି ତେରଛା ଚାହିଁଲା । ମୁହୂର୍ତ୍ତେ ଆଖି ଦୁଇଟିର ଲାଜଜଡ଼ିତ କୌତୂହଳ ଚାହାଣୀ, ମୋର ମୋହଗ୍ରସ୍ତ ପିପାସାକୁଳ ଆଖିରେ ମିଶିଲା । ମନେ ହେଲା ଯେପରି ସେ ଦୃଷ୍ଟି ମୋର ଅନ୍ତର ଭେଦ କରୁଛି । ସେ ଦୃଷ୍ଟି ଆନତ କଲା ।

ତାର ସଙ୍ଗୀ କହିଲା, ଅସ ମଁ ! ମିଶିପ ଗୁପ୍ କଣ ତମକୁ ଅନେଇ ବସିଛନ୍ତି କି ?

ଷୋଡ଼ଶୀ ଓହ୍ଲାଇଲା ପାଣି ଭିତରକୁ ।

ସେହି କଲିକତିଆ ବାବୁଟି—ଦାନ୍ତରେ ଯାହାର ସୁନାଖିଲ—ପାଖକୁ ଆସି କହିଲା, ବାବୁ କଣ ଖବର ? ଟିକିଏ ପାଟି କରି ପଢ଼ିବେ ନାହିଁ ? ସେ ମୋ ଆଗରେ ବସିଲା । ନିଜକୁ କିପରି ଅପରାଧୀ ମନେ କଲି । ପୋଖରୀ ଆଡ଼କୁ ଆଉଥରେ ଚାହିଁବାକୁ ଇଚ୍ଛା ହେଉଥିଲେ ମଧ୍ୟ ଭଦ୍ରତା ଖାତିରରେ, ଖବରକାଗଜ ପଢ଼ିବାକୁ ଲାଗିଲି—"କଟକରେ ଭୀଷଣ ଘରପୋଡ଼ି..."

କଲିକତି ବାବୁଟି ଖାଲି 'ହୁଁ' ମାରୁଥାଏ । ମଜା ଦେଖିବାକୁ ତାକୁ କଣେଇଁ ଚାହିଁ—ପଢ଼ିବାର ଛଳନା କରି କହିବାକୁ ଲାଗିଲି, ଗୋପାଳ ବାବୁଙ୍କର ଗାଈ ଛଟୋଟି ମଣିଷ ଛୁଆ ଜନ୍ମ କରିଛି । ଦୁଇଦିନ ତଳେ କଲିକତାରେ ଘୋଡ଼ା ବୃଷ୍ଟି ହୋଇଥିଲା—

ହୁଁ, ହୁଁ—

ବାବୁଟି ଏକ ଆଖିରେ ପୋଖରୀ କୂଳକୁ ଚାହିଁ ରହିଛନ୍ତି । ଅପେ ଅପେ ପକେଟରୁ ପାନଅଣ୍ଟା କାଢ଼ି ହୋଇ ଯାଉଛି ଓ ମୁଣ୍ଡ ସାଉଁଳିବାରେ ବ୍ୟସ୍ତ ଅଛି । ମୁଁ ପଢ଼ା ବନ୍ଦ କଲି, ତଥାପି ବାବୁଟି ଦୁଇଥର ହୁଁ ହୁଁ କହି କଣ ଯେପରି ଶୁଣୁଛନ୍ତି, ତାର ପ୍ରମାଣ ଦେବାକୁ ବ୍ୟସ୍ତ । ତାଙ୍କର ଆଖି ଲାଖି ରହିଥିଲା ପାଣି ଭିତରେ । ସେହି ବୋହୂଟିର ପିଠିରୁ ଲୁଗା କାଢ଼ି ଫୁଙ୍ଗୁଳା ପିଠିରେ ଆଉ ଜଣିଅଟି ହଳଦୀ ଲଗାଇ ଦେଉଛି । ମୋର ଭାରି ରାଗ ହେଲା । ଅନୁଭବ କଲି ସତେ ଯେପରି ଲୋକଟା ମୋତେ ନିର୍ବୋଧ କରୁଛି ।

ମନେ ହେଲା, ସତେ ଯେପରି ସେହି ଅଜଣା ବୋହୂଟିକୁ ଦେଖିବାର ଓ ତାର ଅଧଲଙ୍ଗଳା ଦେହର ସବୁ ଶୋଭା ସବୁ ମଧୁରତା ଉପଭୋଗ କରିବାର ଏକମାତ୍ର ମୋରି ଅଧିକାର, ମୋର କେହି ପ୍ରତିଦ୍ୱନ୍ଦ୍ୱୀ ହେବ ଏହା ମୁଁ ସହି ପାରିବି ନାହିଁ । ମୋରି ଭିତରୁ ଯେପରି କିଏ କହି ଉଠିଲା, ମୋର, ସେ ମୋର—

କଲିକତିଆ ବାବୁଟିର ହାତ ଧରି ଟିକିଏ ଯୋର୍‌ରେ ହଲାଇ ଦେଇ କହିଲି, ନିଅ । ତମେ ନିଜେ ଏ କାଗଜ ପଢ଼ । ମୁଁ ପଢ଼ି ପାରିବି ନାହିଁ ।

ସେ ଟିକିଏ ଚମକି ପଡ଼ିଲା ପରି ହୋଇ ମୋତେ ଅନାଇ କହିଲା, ଥାଉ, ରଖନ୍ତୁ, ମଠରରେ ପଢ଼ିବା । ପୁଣି ଚାହିଁଲା ପୋଖରୀ କୂଳକୁ । ବୋହୂଟି ପାଣି ଭିତରେ ପଶିଲାଣି । କେଡ଼େ ନିସ୍ପୃହ ଆଖିରେ ମୋରି ଆଡ଼କୁ ଚାହିଁ ରହିଛି । ହୁଏତ ମୁଁ ଭାବୁଥିଲି ସେହିପରି । କଲିକତିଆ ବନ୍ଧୁଟି ମଧ୍ୟ ସେଇ କଥା ଭାବୁଥିବ ।

ଆରପାଖ ହୁଡ଼ାରେ ଠେହଲ ମାରୁଛି ଯେଉଁ ଲୋକଟି—ଗାଗଡ଼ା କଣ୍ଠରେ ଗାଉଛି ଅଶ୍ଳୀଳ ଗୀତ, ସେ ମଧ୍ୟ ଭାବୁଛି ସେଇ କଥା । ମୁଣ୍ଡରେ ଚୁଟି, କାନରେ ନୋଳି, ବୟସ ଷାଠିଏ ପାଖାପାଖି—ହାତରେ ନୋଟାଟିଏ ନେଇ ପାହାଚରେ ଓହ୍ଲାଉ-ଲାଣି—ବୟସ ଗଲାଣି ଶୋଷ ମରୁନାହିଁ । ସେ ବି ଭାବୁଛି—

ମଠର ପାଖରୁ ଅଜ ଦୁଇ ଗୃହଜଣ ବରମୂଳକୁ ଗଡ଼ଲେଣି । ଅରେ ଅରେ, ଏ ଲୋକ ଗୁଡ଼ାକ ବଡ଼ ଅଭଦ୍ର ତ । ବଗୃହ କଣ ଜାଣିଥିଲା, ଆଜ ମଠର କଳ ବିଗିଡ଼ିବ । ଅଜ, ସେ ଏପରି ହରଗଣ ହେବ ? ଗାଁ ବାହାର – ବଲ ମଝି ଏକୁଟିଆ ପୋଖରୀରେ ନବେଳାରେ ଗାଧୋଇବାରେ ଯେଉଁ ଆନନ୍ଦ, ଯେଉଁ ସ୍ୱାଧୀନତା, ସେତକ ତାର ଅଜ ସରିଛି । ଭରା ଯୌବନ ଓ ଝରାଲଙ୍କା, ଦମକା ଗ୍ରନ୍ଥ ଓ ଚମକା ଫକୋଚ, ଉଚ୍ଛୁଳା ପ୍ରେମ ଓ ତୀକ୍ଷ୍ଣ କଟାକ୍ଷ ଧର, ସେ କେବେ ଆସିବ ନାହିଁ ଏପରି ।

ଝିଅଟି ଉପରକୁ ଉଠି ଲୁଗା ପାଲଟି ଡାକଲାଣି, ଅସୁନା ନୂଆ'ଉ, କେତେ ଡେରି ହେଲାଣି ?

ବୋହୂଟି ବେକଯାଏ ପାଣିରେ ବୁଡ଼ାଇ ରଖିଛି । ପାଣି ଉପରକୁ ଯେଉଁ ମୁଣ୍ଡଟି ଉଠିଛି, ସେ ମଧ୍ୟ ଘୋଡ଼ା ହୋଇଛି ରଙ୍ଗୀନ୍ ପଣତରେ । ପୋଖରୀରେ ଫୁଟିଥିବା ଦୁଇଗୃହଟା ନାଲି କଇଁଫୁଲ ପରି ସେ ମଧ୍ୟ ଯେପରି ଗୋଟିଏ । ମୁହଁ ବୁଲାଇଛି ନଣନ୍ଦ ଆଡ଼କୁ ।

ଅସୁନା—?

ରହ ।

ମୁଁ ତେବେ ଆଗରେ ଯାଉଛି । ଦୁଇ ପାହାଚ ଉଠୁଛି ଝିଅଟି । ହାତରେ ତାର କଇଁଫୁଲ ।

ରହ ମ— ।

ଅଟକ ରହୁଛି ଝିଅଟି । ଜାଣେ ନା ସେ, କାହିଁକି ତାର ନୂଆ'ଉ ପାଣିରୁ ଉଠିବାକୁ ଉଚ୍ଛୁର କରୁଛି । ଜାଣେ ନା ସେ କାହିଁକି ଏତେ ଅପରଚିତ ଲୋକ ସେହି ସୁନା ପ୍ରତିମାର ପାଣିରୁ ଉଠିବା ମୁହୂର୍ତ୍ତକୁ ଗୃହିଁ ରହିଛନ୍ତି । ହୁଏ ତ ସମସ୍ତେ ବିବାହିତ, ହୁଏ ତ ସମସ୍ତେ ନାରୀ ଦେହ ସଙ୍ଗେ ଘନିଷ୍ଠ ଭାବରେ ପରିଚିତ, ତଥାପି ସେଥିରେ କଣ ନୂତନତ୍ୱ ଅଛି ? ଅଥବା, ନୂତନତ୍ୱ ମଣିଷର ମନରେ ?

ନ ଯଯୌ ନ ତସ୍ଥୌ—

ମଠର ଡ୍ରାଇଭର ହର୍ଣ୍ଣ ଦେଲା—

ଇଚ୍ଛା ନାହିଁ, ବାଧ୍ୟ ହୋଇ ଯେପରି ସମସ୍ତେ ବସ୍ ଭିତରକୁ ଆସିଲେ । ଯିବାକୁହିଁ ତ ହେବ । ସ୍ୱପ୍ନ ଭାଙ୍ଗିଲା—ବସ୍ ଗୃଲିଲା—

ସେହି ବାଟେ ନିତି ଗୁଲୁଛୁ କେତେ ବସ୍— । କେତେଥର ମୁଁ ଯାଇଛି । ବରଗଛ ପାଖେଇ ଆସିଲେ ଆଖି ଦୁଇଟା ଆପେ ଆପେ ଟାଣି ହୋଇଯାଏ ସେହି ପୋଖରୀ ଘାଟକୁ । ଭରପାଣି, ଦଳ, ନାଲିକଇଁ, ପାହାଚ, ହୁଡ଼ା, ଲମ୍ବି ଯାଇଛି ଯେଉଁ ବାଟଟି ବଙ୍କେଇ ବଙ୍କେଇ ଗାଁ ଭିତରକୁ— ।

ସବୁ ପଡ଼େ ଆଖିରେ । ପଡ଼େ ନାହିଁ ସେହି ହସକୁଢ଼ ନିବୋଧ ଝିଅଟି, ଆଉ ଶରତ ପୂନେଇଁର ଅନାବିଲ ଉଜ୍ଜ୍ୱଳ ଗୁହଦପର ଉଇଁଥିଲା ଯେଉଁ ଯୁବତୀ— ରୂପର ଢେଉ ଖେଳାଇ ଦେଇଥିଲା,—ସେହି ଷଣିକା ! ଯାହାକୁ ମୋର ବୋଲି କହିବାକୁ ଉଚ୍ଛନ୍ନ ହୋଇଥିଲା ମନ ।

ବସ୍ ଗୁଲୁଯାଏ । ଅଦୃଶ୍ୟ ହେବାଯାଏ ଗଛଟିକୁ ପଛେଇ ଗୁହେଁ । ଛପିଯାଏ ଗଛ । କପଟ ଖରାପ ଲାଗେ । ପ୍ରଶ୍ନ ଉଠେ ଭିତରେ, କାହିଁ ସେ— ?

# କାଲି ଓ ଆଜି

ଅପରେସନ୍ ପରେ, ଯେତେବେଳେ ମାୟାର କ୍ଲୋରୋଫର୍ମ ନିଶା ଭାଙ୍ଗିଲା, ସେ ବଲ ବଲ କରି ଗୁହିଁଲା ଗୁରିଆଡ଼କୁ । ଡାକ୍ତରଖାନା ଭିତରେ ଯେଉଁ କୁଟୀରଟି ସ୍ୱତନ୍ତ୍ର ଭଡ଼ା ନେଇ ମାୟାର ବାପା ତାକୁ ରଖିଥିଲେ, ତାହାରି ଗୋଟିଏ କୋଠରୀ । ତାର ବାପା ମା ଭାଇ ଭଉଣୀ, ଭଣେଇ, ପୁଣି ବନ୍ଧୁ ବାନ୍ଧବ ପ୍ରିୟଜନ ସମସ୍ତେ ଆକୁଳ ଆଖିରେ ଗୁହିଁ ରହିଛନ୍ତି ତାରି ଆଡ଼କୁ । ସମସ୍ତେ ଯେପରି ତାରି ଦୁଃଖ ପ୍ରାଣେ ପ୍ରାଣେ ଅନୁଭବ କରୁଛନ୍ତି । ତା ପାଇଁ କିଛି କରିବାକୁ ଯେପରି ସମସ୍ତେ ବ୍ୟାକୁଳ ଆଖିରେ ଗୁହିଁ ରହିଛନ୍ତି—ବିଶେଷତଃ ସତ୍ୟପ୍ରିୟ, ରମାନାଥ ଓ ଗଡ଼କୃଷ୍ଣ ।

ମାୟା ଛଳଛଳ ଆଖିରେ ଗୁହିଁଲା—ସତ୍ୟପ୍ରିୟ, ରମାନାଥ ଓ ଗଡ଼କୃଷ୍ଣ ପାଖକୁ ଆସିଲେ । ଓକିଲ-ସତ୍ୟପ୍ରିୟ ନଇଁପଡ଼ି ମାୟାର ଗୋଟିଏ ହାତ ଉଠାଇ ପାପୁଲିକୁ ଧୀରେ ଧୀରେ ଆଉଁସିଲେ । ପ୍ରଫେସର ରମାନାଥ ଖଣ୍ଡିଏ ପଙ୍ଖାଧରି ମାୟାର ମୁଣ୍ଡ ଉପରେ ବିଞ୍ଚିବାକୁ ଲାଗିଲେ । ଗଡ଼କୃଷ୍ଣ ସଙ୍ଗୀତଜ୍ଞ, ଆଖି ଛଳ ଛଳ କରି ପାଖରୁ ଗୁହିଁ ରହିଲେ ।

ମାୟା ଧନୀ ଜମିଦାରର ଝିଅ—ସୁନ୍ଦରୀ—ସତର ବର୍ଷର ଯୁବତୀ । ଯୌବନର ଲାବଣ୍ୟ ଛଳ ଛଳ ହେଉଛି ଦେହରେ, ଉତ୍ତେଜନା ମନରେ, ଆକର୍ଷଣ ଆଖିରେ । ମାୟା ପାଠୋଇ, କଲେଜ ଛାତ୍ରୀ । ସତ୍ୟ, ରମା ଓ ଗଡ଼ ତିନିଜଣଙ୍କୁ ସେ ଭଲ ପାଏ । ତିନିହେଁ ମଧ୍ୟ ତାକୁ ଭଲପାନ୍ତି ।

କଟକେରେ ଦୁଇ ସପ୍ତାହ ରହି ମାୟା ନିଜ ଘରକୁ ଫେରି ଆସିଲା । ଟିକିଏ ଭଲ ହୋଇଥିଲେ ମଧ୍ୟ ସମ୍ପୂର୍ଣ୍ଣ ଆରୋଗ୍ୟ ହୋଇ ନ ଥାଏ । ବିଛଣାରୁ ଉଠିବାର ଶକ୍ତି ନ ଥାଏ । ଦୁଇ ସପ୍ତାହ କ୍ରମାଗତ ବିଛଣାରେ ପଡ଼ି ରହି ସେ ବ୍ୟସ୍ତ ହୋଇ ଉଠିଥିଲା । ମନ ଲୋଡ଼େ, ପ୍ରିୟଜନମାନେ ସବୁବେଳେ ତାକୁ ଘେରି ବସିଥାନ୍ତେ କି ? କିନ୍ତୁ, ସମସ୍ତଙ୍କର ତ ଧନ୍ଦା ଅଛି !

ବାପ ମା, ସାନଭାଇ, ବଡ଼ଭଉଣୀ ଓ ଉପୋଟି ଭଣୋଇଙ୍କ ଛଡ଼ା ପ୍ରତିଦିନ ଆଉ କେହି ଆସନ୍ତି ନାହିଁ । ବନ୍ଧୁବାନ୍ଧବ ଓ ଅନ୍ୟ ଆତ୍ମୀୟମାନେ, ଦୁଇଚାରି ଦିନ ଛାଡ଼ି କେବେ କେମିତି ଆସିଲେ ଭଲମନ୍ଦ ପଚାରି ଠିଆ ଠିଆ ଚାଲି ଯାନ୍ତି । ସତ୍ୟ, ରମା ଓ ଚିଛି, କେତେବେଳେ କିଏ ଆସନ୍ତି, ପାଖରେ ବସି ହାତ ମୁଣ୍ଡ ଚିପନ୍ତି, ଏଣୁ ତେଣୁ ଗଳ୍ପ କରନ୍ତି ।

ରମା କହେ, ଭାରି ଝଡ଼ି ଯାଉଛ ମାୟା—

ମାୟା ହସେ । ଉତ୍ତର ଦିଏ, ନାଇଁ ତ, ଆପଣଙ୍କ ଆଖିକୁ ସେମିତି ଦିଶୁଛି ।

ସତ୍ୟ କହେ, ଏତେ ଦିନ କାଳ ବିଛଣାରେ ପଡ଼ି ପଡ଼ି ଭାରି କଷ୍ଟ ହେଉଥିବ, ଶୋଇ ଶୋଇ ଉପନ୍ୟାସ ପଢ଼ ।

ମାୟା ଗମ୍ଭୀର ହୋଇ ଉତ୍ତର ଦିଏ, କଷ୍ଟ ଆଉ କଣ ? ଦେହସହା ହେଲାଣି ।

ସତ୍ୟ ଉପନ୍ୟାସ ଆଣିଦିଏ, ମାୟା ପଢ଼େ ।

ଚିଛି ବୋଲେ ଗୀତ । ମାୟା ତନ୍ମୟ ହୋଇ ଶୁଣେ । ଶୁଣୁ ଶୁଣୁ ଆଖି ବୁଜିଦିଏ । ଶୁଏ, କ୍ଷଣକ ପାଇଁ ସବୁ ଯନ୍ତ୍ରଣା ଭୁଲିଯାଏ ।

ଦୁଇମାସ କଟିଗଲା ।

ମାୟା ଦୁର୍ବଳ ହୋଇ ପଡ଼ୁଛି । ଅପରେସନ୍ ଘାଆ ଶୁଖି ଯାଇଥିଲେ ମଧ୍ୟ ବେଳେବେଳେ ଭିତରି ଯନ୍ତ୍ରଣା ଅନୁଭବ କରୁଛି । ବେଳେବେଳେ ସାମାନ୍ୟ ଜର ମଧ୍ୟ ହେଉଛି । ପ୍ରତିଦିନ ଡାକ୍ତର ଆସି ଆଶାର ବାଣୀ ଶୁଣାଇ ଯାଉଛନ୍ତି । ନୂଆ ନୂଆ ଔଷଧ, ନୂଆ ଡାଏଟ୍ ଠିକ୍ କରି ଯାଉଛନ୍ତି । ମାୟା ନିୟମରେ ଚଳୁଛି ।

ସବୁବେଳେ ପାଖରେ ମା ଜଗି ବସିଛନ୍ତି । ବାହାର କାମ ସାରି ବାପା ଦିନକୁ ଦୁଇ ତିନିଥର ଆସନ୍ତି । ଅଫିସ୍ ଫେରନ୍ତି ପ୍ରତିଦିନ ମଝିରେ ଭଣୋଇ ଆସି ପାଖରେ ବସନ୍ତି, ମୁଣ୍ଡ ଆଉଁସନ୍ତି । ବଡ଼ ଭଉଣୀ ଦୁଇ ତିନି ଦିନରେ ଥରେ ଆସନ୍ତି । ପିଲାଛୁଆ ଜଞ୍ଜାଳ, କଣ କରିବେ ? ସାନ ଭାଇଟା ଆଜି କାଲି ପାଠରେ ମନ ଦେଲାଣି । ସବୁଦିନେ ପାଖକୁ ଆସିବାକୁ ବେଳ ପାଏ ନାହିଁ ।

ସତ୍ୟପ୍ରିୟ ସାତଦିନରେ ଥରେ ଆସନ୍ତି, ଶନିବାର ରାତିରେ । ଅବସର କାହିଁ ? ସବୁବେଳେ କେଉଁ କାମରେ ବ୍ୟସ୍ତ—ସେଇଆ ତାଙ୍କର କୈଫିୟତ୍ । ମାୟାର ଆଗରେ ବସି କେତେ ଉତ୍ସାହର ବାଣୀ ଶୁଣାନ୍ତି । ମାୟା ରୋଗର ଯନ୍ତ୍ରଣା ଭିତରେ ମୃଦୁ ହସି ଦିଏ ।

ପ୍ରଫେସର ରମାନାଥ ଯିବା ଆସିବା ପ୍ରାୟ ବନ୍ଦ କରି ଦେଲେଣି । ଅକସ୍ମାତ୍ କେବେ ଆସିଲେ, ମାୟାର ଗୋଡ଼ରୁ ମୁଣ୍ଡଯାଏ ଥରଟିଏ ଚାହିଁଦେଇ କହନ୍ତି, ଇମ୍ପ୍ରୁଭ୍ଂ । ତାପରେ ଚିକିତ୍ସା ସମ୍ବନ୍ଧରେ ପଦେ ଅଧେ ପଚାରି ଠିଆ ଠିଆ ଚାଲିଯାନ୍ତି । ମାୟା କିଛି ବୁଝିଏ ।

ଗାୟକ ଗଣିକୃଷ୍ଣ ଅନେକ ସମୟରେ ଆସନ୍ତି । ମାୟା ଅନୁରୋଧ କଲେ ସେ ଗୀତ ବୋଲି ଶୁଣାନ୍ତି । ରୋଗୀର ସ୍ୱାସ୍ଥ୍ୟ, ରୂପ, ଚିକିତ୍ସା ବା ଖାଦ୍ୟ ସମ୍ବନ୍ଧରେ ପଦେ ହେଲେ ପଚାରନ୍ତି ନାହିଁ । ସେ ଜାଣନ୍ତି, ଏସବୁ କଥା ବୁଝିବାକୁ ତାଠାରୁ ସୁଯୋଗ୍ୟ ଅନ୍ୟଲୋକ ଅଛନ୍ତି ।

କଟିଗଲା ଗୋଟିଏ ବର୍ଷ ।

ମାୟା ଆଜି ଅତି ଦୁର୍ବଳ ହୋଇଛି । ସନ୍ଧ୍ୟାବେଳେ ଜର, କାଶ, ଇନ୍‌ସୋମ୍‌ନିଆ । ଦେହରେ ରକ୍ତମାଂସ ଆଉ ନାହିଁ । ହାଡ଼ ଉପରେ ଧୂଡ଼ୁଧୂଡ଼ୁ ଚମ । ଶେତା ଦେହ । ଆଖି ପଶି ପଶି ଗଲାଣି । ଅନ୍ୟକୁ ଭର ନ ଦେଇ ଉଠି ବସିବାର ଶକ୍ତି ନାହିଁ । ଚିକିତ୍ସା ଚାଲିଛି । ରୋଗ କଣ ଡାକ୍ତରମାନେ ଠିକ୍ ପାରୁ ନାହାନ୍ତି । ତଥାପି, ସେମାନଙ୍କର ଓପିନିୟନ୍—ଇମ୍ପ୍ରୁଭ୍ଂ ।

ସବୁବେଳେ ମା ଅଛନ୍ତି ପାଖରେ । ବାପ ଭାଇ କେତେବେଳେ କେମିତି ଆସନ୍ତି । ଭଉଣୀଙ୍କର ଆଜିକାଲି ବହୁତ ଇନ୍‌ଗେଜମେଣ୍ଟ ଲେଖା । ଭଉଣୀର ପିଲାମାନେ ଏବେ ଘନ ଘନ ବେମାର ପଡ଼ୁଛନ୍ତି । ସେଥିପାଇଁ ସେ ଦୁହିଙ୍କର ଦେଖା ମିଳିବା କଷ୍ଟ ହେଉଛି ।

ସତ୍ୟପ୍ରିୟ ଓ ରମାନାଥ ସମ୍ଭବତଃ କଟକରେ ନାହାନ୍ତି । କାହିଁ ଦେଖା ଦର୍ଶନ ମିଳୁନାହିଁ ତ ! ଗଣିକୃଷ୍ଣ ବାବୁଙ୍କର କଣ୍ଠ ଖରାପ ହୋଇଗଲାଣି ପରା !

ମାୟାର ଏକ୍‌ସ-ରେ ଏଗ୍‌ଜାମିନେସନ୍ ହୋଇଗଲା । ଡାକ୍ତର ସବୁ ଶୁଣି ଶୁଣି କହିଲେ, ଲଙ୍ଗ୍‌ସରେ ପ୍ୟାଚ୍—ଗୁପ୍ତ କଥାଟା ଧୀରେ ଧୀରେ ସମସ୍ତେ ଜାଣିଲେ, ଏକା ଜାଣିଲା ନାହିଁ ମାୟା !

ଅଲଗା ଗୋଟିଏ ରୁମ୍‌ରେ ମାୟାର ରେଗୁଲାର ଟ୍ରିଟ୍‌ମେଣ୍ଟ୍ ଚାଲିଲା । ସବୁବେଳେ ପାଖେ ପାଖେ ନର୍ସ ଥାଏ । ସେ ଘରେ ପଶି ରୋଗୀକୁ ଡିଷ୍ଟର୍ବ କରିବାର ଅଧିକାର କାହାରି ନାହିଁ । ସେ ସବୁବେଳେ ଶୋଇବ । ଡାକ୍ତରଙ୍କ କହିବା ମତେ ଡାଏଟ୍ ଓ ମେଡିସିନ୍ ଖାଇବ ।

କେହି କେହି ଦେଖିବାକୁ ଆସିଲେ ପଦାରେ ଥାଇ ଭିତରକୁ ମୁଣ୍ଡ ଗଳାଇ ଚାହିଁ ଯାଆନ୍ତି ।

ବାପ ଭାଇ ଭଉଣୀ ଘର ଭିତରକୁ ପଶିଲେ ଦୂରେଇ କରି ରଖା ହୋଇଥିବା ଚଉକିରେ ବସି ତୁନି ହୋଇ ଅନାଇ ରହନ୍ତି । ଏକା ମା ସମ୍ଭାଳି ହୋଇ ରହି ପାରନ୍ତି ନାହିଁ । ପାଖରେ ବସନ୍ତି, ହାତ ଆଉଁସନ୍ତି ।

ନର୍ସ ବାରନ୍ତି ହୁଏ ।

ସେ ଦିନ ମାୟାର ଆଖିରୁ ଅନବରତ ଲୁହ ଝରିବାକୁ ଲାଗିଲା । ପିଲାଦିନରୁ ଆଜି ଯାଏ ଘଟିଥିବା ଘଟଣା ଗୁଡ଼ିକ ଗୋଟି ଗୋଟି କରି ଦୁର୍ବଳ ମନକୁ ଅସ୍ଥିର କଲା । ବନ୍ଧୁ ବାନ୍ଧବ ଆତ୍ମୀୟ ସ୍ୱଜନ ଆଜି କାହାନ୍ତି ? କେହି ତ ପାଖକୁ ଆସୁ ନାହାନ୍ତି ? କାହାନ୍ତି ସତ୍ୟପ୍ରିୟ, ରମାନାଥ ଆଉ ଗଡ଼କୃଷ୍ଣ—ଯେଉଁମାନେ ଦିନେ ତାର ପାଖରେ ବସି, ତାର ଆଡ଼କୁ ଚାହିଁବାକୁ, ତାର ହସ ଦେଖିବାକୁ, କଥା ଶୁଣିବାକୁ ବେଳ ଅବେଳ ନ ମାନି ଧାଇଁ ଆସୁଥିଲେ, କେତେ ଆଗ୍ରହରେ । ଯେଉଁମାନେ କାଲି··· । ଭାବି ପାରେ ନାହିଁ ମାୟା ।

ଦୁନିଆଁ ଆଜି ବଦଳିଛି ?

ଲୁହଭରା ଆଖିରେ ମାୟା ଚାହିଁଲା ନିଜର ଦେହକୁ—ହାଡ଼ ଦିଖଣ୍ଡ । ନିଶ୍ୱାସ ନେଲା ବେଳକୁ ଗ୍ରୁଡି ଧରୁଛି । ମୁଣ୍ଡ ଟେକିଲେ, ମୁଣ୍ଡ ବୁଲାଉଛି । ଆଖି ଆଗରେ ସବୁ ଦିଶୁଛି ଅନ୍ଧାର—ଅନ୍ଧାର—

ଦୁନିଆ ବଦଳି ନାହିଁ—ବଦଳିଛି ମାୟା ।

# ଅପା

ଭଉଣୀ ଦିଓଟି—ପରସ୍ପରକୁ କ୍ଷଣେ ନ ଦେଖିଲେ ବଣା । ବଡ଼ ଘରର ଅଲଅଲି ଝିଅ, କେଉଁ କଥାରେ ଅଭାବ । ଇନ୍ଦିରା—ପନ୍ଦର ବର୍ଷର ସୁବର୍ଣ୍ଣ ପ୍ରତିମା । ଧୀର-ସ୍ଥିର, ଶାନ୍ତ, ଲୁହାର ବୋଲିଥି; ଆଉ ସୁଧା—ଦଶ ପୂରି ଏଗାର ଚାଲିଛି । ଗଠଣଟି ସୁନ୍ଦର ହେଲେ ବି ରଙ୍ଗ ଟିକିଏ ନାଠ, ଉଚ୍ଚ କପାଳ, କନିଆ ଆଖି । ଦୁଷ୍ଟ ନୁହେଁ, ଭାରି ଚଞ୍ଚଳ ପୁଣି ଭାରି ଅଭିମାନିନୀ ।

—ଦେଖିଲୁ ବୋଉ ସୁଧା ଆଜି କେମିତି ଟିକି ବୋହୂଟି ପରି ସୁନ୍ଦର ଦିଶୁଛି, ମୋର ସବୁ ଗହଣା ପିନ୍ଧି ଫୁଲେଇ ହେଉଛି ।

ଦେଖୁଥା ଲୋ ଭୁଇ ! ତୋତେ କଣ ଅଳ୍ପ ଦୁଃଖ ଶୋଷ ନାହିଁ ଇନ୍ଦୁ, ଦିନଯାକ ଲାଗି ସୁନ୍ଦରକୁ ସଜାଉଥିବୁ ବସି । ତୃପ୍ତିର ଅଭାବରେ ମୁହଁ ଉଜଳି ଉଠିଲା ତାଙ୍କର ।

ଦି ବର୍ଷ କଟିଗଲା ଦେଖୁ ଦେଖୁ । ଇନ୍ଦୁର ବାହାଘର ନେଇ ସମସ୍ତଙ୍କ ମନ ବ୍ୟସ୍ତ । ମଧ୍ୟସ୍ଥ ଗାଁ ଗାଁ ବୁଲି ବିଫଳ ହୋଇ ଫେରୁଛନ୍ତି । ମନଲାଖି ପାତ୍ରଟିଏ ମିଳୁନାହିଁ; ଯେ ମିଳୁଛି ଘର ଭଲ ତ ପାତ୍ର ମୂର୍ଖ—ପାତ୍ର ଭଲ ତ ଘରେ ଚୁଲି ଜଳୁ ନାହିଁ—ଉଭୟ ଭଲ ତ, ସୁହୃନାହିଁ ମେଳକ । ଇନ୍ଦୁବୋଉଙ୍କ ଆଖିରେ ସବୁବେଳେ ଲୁହ, ସତେ କଣ ଇନ୍ଦୁ ମୋର ବାଢ଼ୁଅ ରହିବ ? ସତେ ତା ପାଇଁ କେହି ଜନ୍ମ ହୋଇ ନାହିଁ ?

ଭଲ ଯୋଗରେ ଚଉଧୁରୀଙ୍କ ଘରେ କଥା ପଡ଼ିଲା । ପାଖ ଗାଁ, ବାଠ ଗୃହକୋଶ । ଡାକ ନା, ବୁନିଆଦି ଖାନ୍‌ଦାନ୍ । ମେଳକ ଭଲ ମୁହିଁ୍ଛା । କାର୍ତ୍ତିକ ପରି ସୁନ୍ଦର ପିଲାଟି । ଭାରି ଗୁଣର, ଖାଲି ଅଳପ ପଢ଼ା । ଏବେଣ ନାକବୁଡ଼ ହେଲେଣି, ଆଉ ଦଣ ଘାଠରେ ଗୃଖିବାକୁ ବେଳ କାହିଁ ?

ଜବାବ ଦେଲେ ।

ବୈଶାଖ ପନ୍ଦର ଦିନ ବାହା । ବଡ଼ ଘରର ବଡ଼ କାଣ୍ଡକାରଖାନା । ଫୁଲ ଫାନସ୍, ରୋଷଣି, ବାଣ—ଠିକ ଗାଁଟି ହାଲୋଳ ଦିଶିଲା । ବଡ଼ବାଜା ତେଲିଙ୍ଗି ବାଜା, ତୋପବାଜି, ହାବେଲି, କାନଅତଡା ପଡ଼ିଲା । ଲୋକେ କହିଲେ, ଧନ୍ୟ ଧନ୍ୟ, ଯାହାର ମନ ଯେଉଁ ତାର ପ୍ରଭୁ ସେଉଁ । ଆହା, ଇନ୍ଦୁଟି ଯେମିତି, ତା ନାଖି ଏକା ଘର ବର ।

ବାହାଘର ଧୂମ୍‌ଧଡ଼କ ସରିଲା । ମାସେ ପୂରି ଦି ମାସ ଗଲିଲା । ଭୁଲି ଗଲେ ସମସ୍ତେ ଇନ୍ଦୁକୁ । ଏକା ଭୁଲି ପାରି ନାହିଁ ସୁନ୍ଦରଟି । ଅପା କଥା ମନେ ପଡ଼ିଲେ ତାର ଆଖି ଓଦେଇ ଆସେ । ବିଦାବିଦ ବେଳରେ ସେ ଯେଉଁ କରୁଣ ଦୃଶ୍ୟଟି ! ଇନ୍ଦୁର ଆଖିରୁ ଧାର ଧାର ଲୁହ ଝରି ପଡ଼ୁଥାଏ, ବିଦାହେଲା—ଛର ବିଦାୟ !

ବେଲ ବଦଳେ । ରଜା ହରିଶ୍ଚନ୍ଦ୍ର ମଶାଣି ଜଗନ୍ତି । ଇନ୍ଦୁ ରାଜୁଳିବା ମଶିଷ ! ସ୍ୱାର୍ଥତ୍ୟାଗୀ ସମଦର୍ଶୀ ମୁରବିମାନେ ମରି ହଜି ଗଲେ ଘର ଭାଙ୍ଗିବା ଘଡ଼ିକର ପାଠ । ଅସନ୍ତୋଷ, ଅଶାନ୍ତି, ହିଁମିଚି ଖେଳରୁ ମହାଭାରତ ଯୁଦ୍ଧ । ଭିନେ ହେବା ତ ମାମୁଲି, କିନ୍ତୁ ଭିନେ ହେବା ପରେ ଆଉ କିଛି ନ ଥାଏ । ଗୋଟାଏ ଯିଦ୍, ଗୋଟାଏ ଅନ୍, କଳ୍ପିତ ସ୍ୱାଧୀନ ଜୀବନର ଗୋଟାଏ ଝାପ୍‌ସା

ମୋହ ! ସବୁ ଭାଙ୍ଗେ ଯେତେବେଳେ ପିଲାଏ ଓପାସରେ ବସନ୍ତି; କିନ୍ତୁ ସେତେବେଳକୁ ନେଡ଼ ଗୁଡ଼ କନ୍ଧଗିକୁ ବୋହି ଆସିଥାଏ ।

ରାଜୁ ଇନ୍ଦିରାଙ୍କର ସେ ମୋହ ଭାଙ୍ଗିଲା ପୂରା ଛଅକୋଡ଼ି ବର୍ଷ ପରେ । ଶାଶୁଙ୍କୁ ଧରି ଛଅ ପ୍ରାଣୀ କୁଟୁମ୍ବ । ଶଶୁର ମଲା ଆଗରୁ, ଭାଇଙ୍କର ମକଦମାରେ ସବୁ ପ୍ରାୟ ଶେଷ କରି ଯାଇଥିଲେ । ବାକି ଯାହାଥିଲା ଗଲା ତାଙ୍କ ପଛେ ପଛେ । କେତେ ଅଳଅଳ ହୋଇ ବଢ଼ିଥିଲେ ବାପଘରେ, କିନ୍ତୁ ଆଜି ନଣ୍ଟିନ୍ତରେ ପେଟକୁ ଦାନା ମୁଠାଏ ମିଳୁ ନାହିଁ । ଏକଥା ବେଳେ ବେଳେ ଇନ୍ଦିରାଙ୍କର ମନେ ପଡ଼େ, ମନରେ କଷ୍ଟ ହୁଏ, କିନ୍ତୁ ରାଜୁଙ୍କର ମୁହଁକୁ ଗୃହିଁଲେ ସବୁ ଦୁଃଖ କଷ୍ଟ ଉଭେଇ ଯାଏ ମନରୁ ।

ବାପ ଘରର ଷାଣ ଭାଙ୍ଗିଛି ବାପା ମଲା ଦିନୁ । ବୋଉ ତ ମଲା ସାପ । ବଡ଼ବାପାଙ୍କ ହାତ ଠେକାରେ ଥାନ୍ତି । ସୁନ୍ଦରି ନେଇ ତାଙ୍କର ସବୁବେଳେ ଚିନ୍ତା । ଆହା ସତେ କଣ ତାଙ୍କ ହାତକ ବହାତ ହେବ । ଏହି ସବୁ କଥା ଭାବି ଭାବି ବୋଉଙ୍କର ଅବସ୍ଥା ରହିଲାଣି । ତାଙ୍କୁ ବା ନିଜର ଦୁଃଖ ଜଣାଇ ଲାଭ କଣ ! ଆହୁରି ବେଶି ହନ୍ତସନ୍ତ ହେବେ । କପାଳକୁ ଆଦରି ଇନ୍ଦିରା ସବୁ ଦୁଃଖ କଷ୍ଟ ଅଙ୍ଗେ ନଭାଇ ବେଳ କାଟନ୍ତି । ଠାକୁରଙ୍କୁ ଡାକନ୍ତି, ଆହା ସୁନ୍ଦରି କେମିତି ଉଠିଯାନ୍ତା କି !

ବନ୍ଦୋବସ୍ତରେ ଅମିନ୍-ମୋହରର ହୋଇ ରାଜୁ ବୁଲୁଛନ୍ତି ବାଲେଶ୍ୱର ଜିଲାର କେଉଁ କପଟ ମୋଫସଲରେ । ସେଠି ଯାଇ ବେଳରୁ ଆସିବାକୁ ପନ୍ଦର ଦିନ ! ପେଟରେ ପାଞ୍ଚମାସର ପିଲାଧରି ଇନ୍ଦିରା ଥାନ୍ତି ଘରେ, ଏକୁଟିଆ । ବୁଢ଼ୀ ଶାଶୁ—ଥାଇ ନଥିଲା ପରି । ସବୁବେଳେ ରୋଗରେ ଘାଣ୍ଟି ହେଉଥାନ୍ତି ! ହାତ ଧରି ଉଠାଇଲେ ଉଠନ୍ତି, ବସାଇଲେ ବସନ୍ତି ।

ଦିନକର—ଇନ୍ଦିରାଙ୍କ ବାପଘରୁ ଭଣ୍ଡାରି ଆସିଲା ଗୁଆ ନେଇ—ସୁନ୍ଦ ଦେଇଙ୍କ ବାହା ! ପଗୃରିବାରୁ କହିଲା, ପାଟ୍ନାଘର କଟକରେ । ଜାତି ଟିକିଏ ଖ୍ଲେଟ, ହେଲେ ସେ କଥା ଏବେ ଧରୁଛି କିଏ ? ତାର କେହି ନାହାନ୍ତି, କିଛି ବି ନାହିଁ, ହେଲେ ପାଠ ଦି ଅକ୍ଷର ପଢ଼ିଛି—ଡାକ୍ତରି ପାଠ । ପେଟ ଅପୋଷା ରହିବ ନାହିଁ ।

ଖୁଡ଼ି ଥରକେ ଗୋଟିଏ ଦୀର୍ଘଶ୍ୱାସ ବାହାରିଗଲା । ଅତୀତଟା ରୂପ ପାଇ ସତେକି ଇନ୍ଦିରାଙ୍କର ଆଖି ଆଗରେ ଠିଆ ହେଲା ଆସି । ସୁନ୍ଦ—ଖେଳ କଣ୍ଢେଇ ! ତାରି ବାହାଘର । ଲୁହ ଢଳ ଢଳ ଆଖିରେ ପଗୃରିଲେ, ଆଉରି ଫଗୁଆ ! ବୋଉର ମନ ମାନୁଛି ଟି ?

ସେ କଥା କାହିଁକି କହୁଛ ସାଙ୍ଗାଣି । ଦିନ ଗଲା, ଯେଉଁଠି ବସୁଛନ୍ତି ଆଖିରୁ ଲୁହ ବୋହିଯାଉଛି । କଣ କରିବେ ? ବୟସ ହେଲା, ନିମିତ୍ୟ ଉଠିବା ତ ଯେମିତି ହେଲେ !

ଟିକିଏ ଭାବି ଇନ୍ଦିରା କହିଲେ, ବୋଉକୁ କହିବୁ କାନ୍ଦିବ ନାହିଁ । ଜନ୍ମ ଦେଇଛି ବୋଲି କିଛି କମି ଦେଇନାହିଁ । ଆଖିରେ ଲୁହ ଆସିଲା ।

ଫଗୁଆ ମୁରୁକି ହସି ପଚାରିଲା, ତେବେ ଯିବ ନାହିଁକି, ମୋ ହାତରେ ଖବର ପଠାଉଛ ?

ଯିବି ଏକା ଥରେ ମଶାଣି ଭୂଇଁକରେ । କାନ୍ଦି କାନ୍ଦି ହୋଇ କହିଲେ, ସୁନ୍ଦିକୁ କହିବୁ, ଯେଉଁଦିନୁ ତା ଅପା ଗାଁ ଗୋହିରୀ ଡେଇଁ ଆସିଛି, ସେହି ଦିନୁ ସେ ପର ଘରକୁ ଆସି ନାହିଁ ଯେ ଯମଘରକୁ ଆସିଛି । ଆଖିରୁ ଲୁହ ପୋଛିଲେ ପଣତରେ ।

ବୃନ୍ଦାବନ ନେଖାରେ ଦିଅର ହେବେ—ପାଞ୍ଚ ପୁରୁଷ ଛଡ଼ା ! ମାଇ ସଞ୍ଜ ମାଡ଼ି ଆସୁଛି—ଘର ଅଗକୁ ଆସି ଡାକ ଛାଡ଼ିଲେ—ଅରେ କୁଆଡ଼େ ଗଲୁ କି ହୋ ନୂଆବୋହୂ । ତମ ଭଉଣୀଙ୍କ ବାହାଘର ଫାର୍ସ ଶୁଣିବ ଆସ ! ତଟକା ଖବର । ଧାଇଁ ଆସ ଝଟ ।

ମୁଣ୍ଡ ଉପରକୁ ଓଢ଼ଣା ଟାଣି ରୋଷଘରୁ ବାହାରି ପଡ଼ିଲେ ଇନ୍ଦିରା । ପଚାରିଲେ—କାହାଠୁଁ ଶୁଣିଲ ?

ତମ ଗାଁ ଯୋଗୀଙ୍କଠୁ । ଭାରି ହାନ୍ତୁଳିକିଆ ବାହା ! ବାଣ, ଫୁଲ, ରୋଷଣି କିଛି ନାହିଁ । ବାଜା ନାହିଁ । ବର ଠୁଁ ଠୁଁ ଆସି ଦାଣ୍ଡରେ ହାଜର । କୁଣିଆ ସାଆଁତ କହିଲେ ବରଙ୍କର ଧୋବଧାବଳିଆ କେଇଜଣ ସାଙ୍ଗ ! ଯେଉଁ ଛି ଛି ପଡ଼ୁଛି !

ପିଲାଟି ଦେଖିବାକୁ କେମିତି ? ତା ନାଟି କଣ—ଅନ୍ୟମନସ୍କ ହେଲା ପରି ଇନ୍ଦିରା ପଚାରିଲେ ।

କନ୍ଦର୍ପ ତ ! ଅମାବାସ୍ୟା ପରି ରୂପ ! ଅତି ଦୁର୍ବଳ ସଂକ୍ରାନ୍ତ ପୁରୁଷ—ପୁଣି ଡାକ୍ତର । ଏସବୁ କାଣ୍ଡ ଦେଖି ବଡ଼ବାପ ତମର ତାକୁ ଶତାଠାଏ କାଟିଛନ୍ତି । କିଛି ହେଲେ ନାହିଁ । ଏମିତି କି, ଝିଅକୁ ଦହେ ଦହେ ବିଦା କଲେ ।

ହଉ, ଠାକୁରେ ତା କପାଳ ସୁନ୍ଦର କରନ୍ତୁ !

ଦୁଇ ବର୍ଷର ଝିଅଟିକୁ କୋଳରେ ଧରି ଇନ୍ଦିରା ଆକାଶକୁ ଚାହିଁ କେତେ କଣ ଭାବୁଛନ୍ତି—ଜା ଆସି ଗର୍ଜନ କରି କହିଲେ, ଶୋଇଲା ପିଲାଟାକୁ କୋଳରେ ଧରି ତୁନି ହୋଇ ବସିଛ, ଚୁଲିରେ କୁହୁଳା ପଡ଼ିବ ନାହିଁ କି ? ଚାହିଁଲ, ରାତି ଆସି ଦୁଇ ଘଡ଼ି ହେଲାଣି ।

ନଗୀଦ ନିଃସହାୟ ଚ୍ଛେଲିଛୁଅଟି ପରି ସେ ବଲ ବଲ କରି ତାଙ୍କ ମୁହଁକୁ ଚାହିଁଲେ । ଅନ୍ଧାରିଆ ପିଣ୍ଡା ଉପରେ ମଶା ବଣରେ ପିଲାଟାକୁ ଖଣ୍ଡେ ନଡ଼ିଆ ଚାଟିଏ ଉପରେ ଶୋଇ ଦେଇ ଧୀରେ ଧୀରେ କହିଲେ—ଯାଉଛି ଅପା !

ପ୍ରତିବାଦ କରିବାର ଉପାୟ ନାହିଁ—ସାହସ ନାହିଁ । ସବୁ ଦୁଃଖ କଷ୍ଟ ଗାଲିମନ୍ଦ ଦେହସହା ହୋଇଛି । ସବୁ ଠାଣ ଭାଙ୍ଗିଛି । ଦୁଇ କୁଳରେ ନଜର ହୋଇ କେହି ନାହାନ୍ତି ! ହତଭାଗୀ ସାବିତ୍ରୀ—ପେଟ-ରଣ୍ଡୀ ପିଲାଟା ! ସେହି ଏକା ବନ୍ଧନ ! ତାରି ପାଇଁ ସେ ବଞ୍ଚି ରହିଛନ୍ତି । ପରର ମନ ନେଇ ଅପରି-ଚିତକୁ ଆପଣାର କରି ସେ ସାବିତ୍ରୀ ପାଇଁ ପର ଗୋଡ଼ତଳେ ମୁଣ୍ଡ ଦେଇଛନ୍ତି । ମୁଣ୍ଡର ସିନ୍ଦୂର ଲିଭିଲା ଦିନୁ—ହାତର ସଙ୍ଖା ଭାଙ୍ଗିଲା ଦିନୁ ସେ ବୁଝିଛନ୍ତି—ଜୀବନଟା ଅଲୋଡ଼ା, ବ୍ୟର୍ଥ ।

ବୃନ୍ଦାବନ ଦିନେ କହିଲେ, ନୂଆବୋହୂ, ବାପଘର ତମର ଏଡ଼େ ବଡ଼ ତଥାପି ତମେ ପିଲାଟାକୁ ନେଇ ଏଠି ବାରି ହଇରାଣ ହେଉଛ !

ବାପ ମା କି ଭାଇ ମୋର କେହି ନାହାନ୍ତି । କାହା ପାଖେ ଶରଣ ପଶିବି, ଅଳି କରିବି, ମାନ କରିବି, ବୃନ୍ଦାବନ ! ବଡ଼ବାପା ପର । ପରଙ୍କ ମନ ମୋ ପାଇଁ ତଟିବ ବା କାହିଁକି ? ଦୀର୍ଘଶ୍ୱାସ ଛାଡ଼ିଲେ । ଧନ ସମ୍ପତ୍ତିର ପ୍ୟାରି ସମସ୍ତେ ।

କିନ୍ତୁ ସମ୍ପତ୍ତି ତ ତମର—

ସମ୍ପତ୍ତି ମୋର ଲୋଡ଼ା ନାହିଁ । ମୁଁ ଜୀବନରେ ଯାହା ପାଇ ହଜାଇ ବସିଛି କେହି ମୋତେ ତାକୁ ଆଉ ଫେରାଇ ଦେବେନାହିଁ । କାହିଁରେ ମୋର ଆଶା ନାହିଁ । ଏମିତି ଦୁଃଖେ କଷ୍ଟେ ତମଚିମାନଙ୍କ ଆଶ୍ରାରେ ପଡ଼ି ବେଳିକଟି ଯାଉ । ଠାକୁରେ ଝିଅ ବିକଟେ ଦେଇଛନ୍ତି । ତାର ଭଲ ମନ୍ଦ ଭବିଷ୍ୟତ ସେ ବୁଝିବେ । ତେମେମାନେ ଥାଉଁ ଥାଉଁ ସେ କିଛି ଛତରରେ ପଶିବ ନାହିଁ ।

କେତେ ବର୍ଷ ଏ ଭିତରେ କଟିଗଲା—କେତେ ଓଲଟ ପାଲଟ । ସବୁ ତ ଗଲା, ମନ ଭିତରେ ରହିଗଲା କେଇଟା ସ୍ମୃତିର ଦାଗ । ଏମିତି ରହେ—ଦେଖୁ ଦେଖୁ ଜୀବନଟା ଏମିତି ପାଣି ସୁଅ ପରି ବହି ଚାଲିଯାଏ । ସୁଖରେ ନିଶ୍ଚିନ୍ତରେ ଯାହାର ସମୟ କଟେ ଜୀବନଟା ତାର ସ୍ୱପ୍ନ—ଜୀବନଟା କଣ ସେ ଜାଣି ପାରେ ନାହିଁ । ଜନ୍ମ ତାର ବୃଥା । ଜୀବନକୁ ଉପଲବ୍ଧି କରେ ଏକା ସେହି, ଯେ ସମୟ ସଙ୍ଗେ, ଅବସ୍ଥା ସଙ୍ଗେ ଯୁଦ୍ଧ କରି କରି ଚାଲିଯାଏ । ମୁହୂର୍ତ୍ତକ ତାକୁ ଯୁଗେ !

ଅଟଗୋ ତରି ବୋଉ, କଣ ପରି ଦବ କହିଥିଲ ? ସେ ସାହିର ପାନଘର ବୁଢ଼ୀ ଆସି ପଚାରିଲା ।

ଇନ୍ଦିରା ବଢ଼ବରି ଗୁଣୁ ଗୁଣୁ କହିଲା, ଚାରିପଇସା ସୁଧ ନ ଦେଲେ ଦେବି ନାହିଁ ।

ଗରଜ ସେମିତ ବଳେଇଉଛି—ଟଙ୍କା ପାଞ୍ଚଟା ଦିଅ, ଏଇ ଫୁଲଗୁଣାଟା ବନ୍ଧା ରଖ । ଯାହା ସୁଧ ନେବାର ନିଅ ପଛେ । ବୁଢ଼ୀ ପିଣ୍ଡାରେ ବସିଲା ।

ସେ ସାହିର ପିଲାଟିଏ ଆସି କହିଲା, ଦେଠୀ, ବସ ହେଲାଣି ?

ଦଉଡ଼ିଛିରେ ବାପ । ଟିକେ ରହ ।

ମୋତେ ପଇସାକର ଦେବୁ । ବୋଉ କହୁଛି ଆଜ ଗୋଟାଏ ଲାଭ ଦେବୁ, ଏଁ ?

ଅଲୋ ତାସ !

ଦଶ ବର୍ଷର ଘୁନାଖଡ଼ିକା ପର ଝିଅଟିଏ ପାଖକୁ ଆସି କହିଲା, କଣ ବୋଉ ?

ଇନ୍ଦର କହିଲା—ବୁଢ଼ୀଠୁଁ ଫୁଲଗୁଣା ରଖି ଟଙ୍କା ପାଞ୍ଚଟା ଦେ······

ମାଇପି ମହଲରେ ଇନ୍ଦର ଗୋଟିଏ ଶ୍ରେଷ୍ଠ ମହାଜନ । ପେଟକୁ ଖେଣ୍ଟି, ଅମ୍ବ, ନଡ଼ିଆ, କଖାରୁ, ଲଙ୍କାମରିଚ, ସଜନାଛୁଇଁ, ବସ, କାକସ ବକ ଯେଉଁ ଗୁଡ଼ପଇସା ସେ ପାନ୍ତି ତାକୁ ସଞ୍ଚି ରଖନ୍ତି । ପୂରା ଟଙ୍କାଟିଏ ହେଲେ ସୁଧ ଲଗାନ୍ତି । ଲୋକେ କହନ୍ତି ତାଙ୍କ ହାତରେ ପାଁପା ପାଣି !

ପର ଘରେ ଗୋଡ଼ ଦେଇ ଏ ଦୀର୍ଘ ପଚଶ ବର୍ଷ ଭିତରେ ଗାଁ ଦାଣ୍ଡ ଡେଇଁ ସେ କେବେ କାହିଁ ଯାଇ ନାହାନ୍ତି । ଛଅ ଗୁଡ଼ବର୍ଷ ତଳେ ଯେତେବେଳେ ଅଧେ ଜମି ବନ୍ଧା ଦେଇ ଝିଅର ବାହାଘର ନିମିତ୍ୟ ଖୋରଧା ବଇଜରେ କଲେ, ସେହି ସମୟରେ କୁସୁନ ମୁହୁଲିର ବଳଦଗାଡ଼ି ଚଢ଼ି କଟକ କଲଟେସ ଯାଇଥିଲେ । ଜୀବନରେ ପଦାକୁ ଯିବା ସେହି ତାଙ୍କର ପ୍ରଥମ । ଝିଅ ବଦାକଲା ଦିନୁ କାନ୍ଦି କାନ୍ଦି ବେଳ କଟେ । ସବୁବେଳେ ମରଣକୁ ନିମନ୍ତ୍ରଣ କରି କହନ୍ତି—ଆଉ କାହିଁକି ? ଯାହା ପାଇଁ ବଞ୍ଚି ରହିଥିଲି ସେ ତ ପରଘରେ ।

ମରଣକୁ ଯେ ଗୁହେଁ, ଯେ ଡାକେ, ସେ ତାକୁ ଧରା ଦିଏ ନାହିଁ । ପରକୁ ଆପଣାର କରି ଦିନ କେତେଟା କଟେଇ ଦେଇ ଶାନ୍ତିରେ ଆଖି ବୁଜିବା ତାଙ୍କ ଜୀବନର ଏକମାତ୍ର ଇଚ୍ଛା ।

ଶର ହନ୍ତସନ୍ତ ଜୀବନରେ ତାଙ୍କର ସେ ଶାନ୍ତି କାହିଁ ! କିଏ ଆସି ଉଡ଼ା ଖବର ଦେଇଗଲା—ତସର ଦେହ ଭଲ ନାହିଁ—ଜ୍ୱାଇଁର ପେଟ ବଥାଉଛି, ନାଉଟି ବ ଠୁ କୁରୁ ଠୁ କୁରୁ ଗୁଲୁ ଗୁଲୁ ମୁହଁ ମାଡ଼ ପଡ଼ ତାକୁ ଫଟେଇଛି । ଦୁଃଖ ତ କଛ ଗଛରେ ଫଳେ ନାହିଁ । କାନ୍ଦି କାନ୍ଦି ବେଳ କଟେ ।

ବାପଘର ଗାଁରୁ ଭଣ୍ଡାର ଆସିଛି । ସକାଳ ପହରୁ କାଉ ଉଡ଼ୁଥିଲା । ସମସ୍ତେ ତ ମରି ହଜି ଗଲେ । ବଡ଼ବାପାଙ୍କ ସାନପୁଅ ବେଣୁ—କୁଳକୁ ଏକା ସେହି । ନା ଶୁଣିଛି, କିନ୍ତୁ ଇନ୍ଦର ତାର ଜନ୍ମ ଦେଖି ନାହିଁ କି ରୂପ ଗୁଣ

ଜାଣେ ନାହିଁ । ଭଣ୍ଡାର ଅସିଲୁ ଖବର ନେଇ, ଅପାକୁ କହବୁ—ଅସିବାକୁ ମଙ୍ଗିଲେ ସବାର ଗଡ଼ଡ଼ ପଠାଇବ ।

କରେ କାହିଁକ କୁସୁନଅାଁ—

ବାବୁ କହଲେ—ଅପା ସେଠି ବାର ହଇରାଣ ହେଉଛି । ଗୃଲ୍ ଅସୁ ମୋ ପାଖକୁ । ଏଠି ବ ଗୋଲଖାଟି ଭିତ୍ତ ହଇରାଣ ହେଉଛି । ମା ନଥିଲା ପିଲା-- ଘରକୁ ଘରଣୀ ନ ଥିଲେ ଯେମିତ୍ତ । ଦଇବ ତ ସହୁନାହିଁ । ଛନ ବାହା—ଅଉ କଣ ବେଲ ଅସୁଛି । ସାଆନ୍ତେ ବଡ଼ କଷ୍ଟରେ ଅଛନ୍ତ । ସୁବଧାରେ ମୁଠିଏ ଫୁଟାଇ ଦେବାକୁ କେହ ନାହିଁ ତ ।

ଭିବ ଚନ୍ଦ୍ର କହଲେ, ନାଇଁରେ କୁସୁନ, କହଦେବୁ, ମୁଁ ଯାଇ ପାରବ ନାହିଁ । ମନକୁ ମନ କହଲେ—ଗଣ୍ଡାପୂନେଇ ଦନ ମାଇ ! ଜାଣିକର ତ ମଲେ କାଉ ହେବ—ଏଥିକ ଡର ପଡ଼ୁଛି ।

ଘଧୁ ପଗୃରଲା ମଧୁକୁ, ମଧୁଭାଇ, ଡାକ୍ତରଙ୍କ ଘରୁ ଗୃକର ଗ୍ରଡ଼ ଅସିଲୁ କାହିଁକ ରେ ? ବ୍ରଜବାବୁ ଡାକ୍ତର ତ ଭଲ ଲୋକ ବୋଲ ଶୁଣିଛି ।

କଏ ନାହିଁ କରୁଛି । କନ୍ତୁ ଭଇ ତାଙ୍କ ଘରଣୀଙ୍କ ଜାଲା କଏ ସହବ ? ରହଗଲ ଗୃରମାସ ସେହ ଢେର ।

ଇନ୍ଦ୍ରବ ଗୃଲ ଯାଉ ଯାଉ ଅଟକ ଯାଇ ପଗୃରଲେ, କ'ଣ କରେ ମଧୁଆ ! କଣ ବ୍ରଜବାବୁ ଡାକ୍ତରଙ୍କ କଥା କହୁଥିଲୁ ?

ତେମେ ଚନ୍ଦ୍ର କ ତାଙ୍କୁ ସାନ୍ତାଣୀ ?

ହଁ ଚନ୍ଦ୍ର—ଗମ୍ଭୀର ହୋଇ କହଲେ । ମୁହଁଟି ଶୁଖିଗଲା ତାଙ୍କର ।

ତାଙ୍କ ଭିରଜାଙ୍କ ଦାଉ କଏ ସହବ । ବାପ୍‌ରେ, ବଡ଼ ପୁଅ ବଲାତ ଗଲା ଦନୁ ତାଙ୍କ ପ୍ରତାପ ବଢ଼ିଯାଇଛି ଯେ ମଣିଷକୁ ମଣିଷ ପର ଦେଖୁ ନାହାନ୍ତ । ସଞ୍ଜହେଲା ତ ମଟର ଚଢ଼ି ଭର୍ କର କଟକ ସହରକୁ ଦଧେଇ କର ନ ଅସିଲେ ମନ ଶାନ୍ତ ନାହିଁ । ଝିଅ ଗୁଡ଼ାଙ୍କୁ ତ ଶେଷ କରଛି ।

ଅଉ ଅଧିକା ଶୁଣିବାକୁ ଇନ୍ଦ୍ରବ ଅପେକ୍ଷା କଲେ ନାହିଁ । କହଗଲେ, ଅରେ, ଠାକୁରେ ଯାହାକୁ ଦେଇଛନ୍ତ ସେ ନ କରବ କାହିଁକ ? ଅଖିରୁ ଜଗିଡ଼ ପଡ଼ଲା ଲୁହ ଦ ଠୋପା ।

ମହାଜନ ଦେଣା ନାଲସରେ ବଜକ ଜମିତକ ନଲମ ହୋଇ ଯାଇଛି । ଦେଣା ଟଙ୍କା, ସୁଧ, ଖର୍ଚ୍ଚା ଯାଇ ଅଉ ଟଙ୍କା ଫେର ପାଇବାର କଥା । ଇନ୍ଦ୍ରବ ତ ନାହିଁକର

କହିଲେ, କଟକ ଯିବି ନାହିଁ ବୃନ୍ଦାବନ, ପନ୍ଦରଟି ଟଙ୍କା ମୋର କଣ ହେବ ! ଜମି ବନ୍ଧକ ଗଲା ତ ଗଲା ।

ଆରେ, ଅସ୍ତ୍ର ନବୁଝିଆ ଲୋକ ତ ? ଘରପୋଡ଼ରୁ କୁଟାଖିଏ ମିଳିଲେ ଭଲ । କଟକ ସହର ବି ଦେଖା ହେବ । ସୁବିଧା ମିଳିଲେ ସେହି ଟଙ୍କାରେ ପୁରୀ ଯାଇ ଜଗନ୍ନାଥ ଦର୍ଶନ କରି ଆସିବ । ଧର୍ମ କର୍ମ କରିବାକୁ ବେଳ କଣ ଆଉ ରହିଁ ବସିଛି ?

ଠାକୁର ଦର୍ଶନ କରିବା ନାଁ ଶୁଣି ଇନ୍ଦ୍ରବି କଟକ ଯିବାକୁ ମଙ୍ଗିଲେ ।

ବେଳ ଏଗାରଟା—ଖରାଦିନ—ଅପ୍ରେଲ ମାସ । କଚେରୁ କାମଦାମ ସାରି ଷ୍ଟେସନ ଯିବା କଥା । ପୁରୀଗାଡ଼ି ଦଶଟାରେ ଛାଡ଼ିବ । ଟିକିଏ ଆଗରୁ ଯାଇ ଷ୍ଟେସନରେ ଟିକଟ୍ କିଣି ଅପେକ୍ଷା କରି ବସିବା ଭଲ । ଆଗ କାମ ଆଗ । ପଛୁଆଥିଲେ ପଛୁଆଥିବ । ବୃନ୍ଦାବନ କହିଲେ, ନୂଆବୋହୂ, ଷ୍ଟେସନରୁ ଗାଡ଼ି ବିଦା କରି ଦେବା···। ଚାଲିରେ ହେ ରାଧୁଆ । ରହ ରହ, ମନେ ପଡ଼ିବ ନାହିଁ, ନେ, ଏ ଶଠିଖଣ୍ଡ ତୋ ବଟୁଆରେ ରଖ । ଗାଁରେ ପହଞ୍ଚି ଆଗ ଏ ଖଣ୍ଡି ହରି ଭାଇଙ୍କ ଘରେ ଦେଇ ଦେବୁ । ଭାରି ଜରୁରି, ବୁଝିଲୁ ?

କିଏ ଦେଇଛି ବୃନ୍ଦାବନ ?

ନେତ୍ରମଣି । ବାବାଜିଙ୍କୁ ଛନଦନ ହେଲା ଜର ହୋଇଥିଲା । କଲେଜ ପରୀକ୍ଷା ଦେଇ ପାରି ନାହିଁ । ନେତ ବଡ଼ ହଇରାଣ । ଗୁଡ଼ୁରି ଗାଡ଼ୁରି ପିଲା ଛୁଆଙ୍କର ଖବର ବୁଝିବ, କି ଭାଇଟିକୁ ଜଗି ବସିବ । ଚାକର ବାକର ଲୋକେ କଣ ଦେହକୁ ଲଗାଇ କାମ କରିବେ ? ତହିଁରେ ପୁଣି ଲୋକନାଥ ଗସ୍ତରେ କୋଉ ମୋଫସଲର ସ୍କୁଲ ଦେଖି ବୁଲୁଛି କେଜାଣି ?

ଗାଡ଼ି ଅଟକାଇବାକୁ ଆଦେଶ ଦେଇ ଇନ୍ଦ୍ରବି ବୃନ୍ଦାବନକୁ କହିଲେ, ଏଇବାଟେ ପୁରୀ ଯିବ, ପିଲାଟାକୁ ଟିକେ ଦେଖି ନ ଗଲେ ଅପା କହିବେ କଣ । ସେ ଯେପରି ଲୋକ ! ମନଟା ବି ବଡ଼ ଘାଣ୍ଟି ହେବ । ଚାଲ ସେହିବାଟେ ପଶି ଯିବା । ନିଅ, ଏ ଟଙ୍କାଟି, କିଛି ଫଳମୂଳ ବାଟରୁ କିଣି ନେବ ।

ବକ୍ସିବଜାର ବଣିଆ ସାହି ପାଖ ପୁରୁଣା ଦୋମହଲା କୋଠାଟି । ଉପର ମହଲାର ଗୋଟିଏ କୋଠରୀ । ପଛ ପାଖ—ଉତ୍ତର ପାଖର ବଡ଼ ଝରକା ପାଖରେ ପଡ଼ିଥିବା ବଡ଼ ପଲଙ୍କ ଉପରେ ଶୋଇଛି ବାବାଜି । ଗୋଡ଼ ତଳେ ନେତ୍ରମଣି ବସି ପାଦ ଆଉଁସୁଛନ୍ତି । ମୁଣ୍ଡ ପାଖରେ ଲୁହଭରା ଆଖିରେ ଇନ୍ଦ୍ରବି ବସି ମୁଣ୍ଡରେ ହାତ ବୁଲାଉଛନ୍ତି ।

ବାପାଟା ମୋର ଛନଦନ ଜରରେ କେତେ ଝଡ଼ିଗଲା, ନେତ !

ହଁ ଖୁଡ଼ି, କଣ କରିବ ? ବାରି ନେଞ୍ଜରି । ପିଲାଟାର ଭଲ ଯତ୍ନ ନେଇ ପାରୁନି ।

ବୃନ୍ଦାବନ ଅସି କହିଲେ, ଝଟ ଅସ ନୂଆବୋହୂ ! ଗାଡ଼ି ବେଳ ଯେ ହୋଇଗଲା ! ମୁହଁ ଟେକି ଇନ୍ଦିରା କହିଲେ, ଏଇଠି ତ ମୋର ଜଗନ୍ନାଥ ତୀର୍ଥ, ବୃନ୍ଦାବନ; ଯିବି ଆଉ କେଉଁଠିକି ? ଆଜି ଦିନଟା ଯାଉ ।

ମୁହଁ ଶୁଖାଇ ବୃନ୍ଦାବନ ତଳକୁ ଓହ୍ଲାଇଲେ—କେତେ ବଡ଼ ଆଶାଟା ଭାଙ୍ଗି ଯିବ ପରା !

କୋଠାକୁ ଲାଗି ଆଉ କାହାର ବଡ଼ ବଗିଚା । ମଝିରେ ସୁନ୍ଦର ସୁରକ୍ଷିତ ପୋଖରୀ । ଚୁଆଡ଼େ ଶାଗ ସବ୍‌ଜି ଫୁଲଗଛ । ପୋଖରୀ ସେପାଖେ କେତେବଡ଼ ତିନିମହଲା କୋଠାଟା, ସତେ କି ଇନ୍ଦ୍ର ଭୁବନ । ଇନ୍ଦିରାଙ୍କର ଆଖି ଲାଗି ରହିଲା ପରା । ହଠାତ୍ କେଜାଣି କାହିଁକି ଇନ୍ଦିରା ବଡ଼ ଚଞ୍ଚଳ ହୋଇ ଉଠିଲେ ।

କଣ ଦେଖୁଛ ଖଡ଼ି ?

ଦେଖିଲୁ ନେତ, କେମିତି ଚହ୍ଲା ଚହ୍ଲା ପରି ଲାଗୁଛି । ସ୍ତ୍ରୀ ଲୋକଟି କାହା ପରି ଦିଶୁଛି ତ, ରହ—

ସରୁ ହସି ନେତ୍ରମଣି କହିଲେ, ଚହ୍ଲିଲ, ଚହ୍ଲିଲ···।

ଚହ୍ଲିଲି ନେତ ଚହ୍ଲିଲି । ଆଖିରେ ଲୁହ ଚଳ ଚଳ ହେଲା—ରକ୍ତ ! ଏଡ଼େଟି ଦିନୁ କଣ୍ଢେଇ କରି ଖେଳୁଥିଲି । ଆଜି ସିନା ସୁନ୍ଦ ବଡ଼ ଲୋକ ଲୋ ନେତ, ଏଇ ହାତରେ କେତେ ତା କାନ ମୋଡ଼ିଛି । ଧୂଅରୁ କେତେ ଧୂଳି ଝାଡ଼ି ଦେଇଛି । ଆଖିରୁ ଲୁହ ପୋଛିଲେ । ଜାଣିଥିଲି ତମ ବସା ପାଖରେ ତା ଘର, ନୋହିଲେ ଦେଖି ଦେଖୁ ଚହ୍ଲନ୍ତି କିପରି ? ଖାଲି ମୁହଁ ଛୁଟିକା—। ଅହା ! କେତେ କଷ୍ଟ ସେ ପାଇ ନ ଥିଲା ।

ସଞ୍ଜବୁଡ଼େ ନେତ୍ରମଣି କହିଲେ, ଯିବ କହୁଥିଲ ତାଙ୍କ ଘରକୁ ଖୁଡ଼ୀ ?

ହଁ ଯିବି । ଏକା ପେଟରୁ ବାହାରିଛୁ । କର୍ମ ସିନା ଭିନେ ଲୋ ଝିଅ, ରକ୍ତ ତ ଏକା । କଠିକି ଆଇଛି, ଦେଖି ଯାଇଥାଏଁ । ମରିଗଲେ କିଏ କାହାର । ତୁ ମୋ ସଙ୍ଗେ ଯିବୁ ଝିଅ ?

ନାଇଁ ଖୁଡ଼ୀ । ବଡ଼ଲୋକ ସେମାନେ । କାଲେ···

ହଉ ତୁ ନ ଯା । ପୁଅ ଝିଅ ଖରାପ···

ଚାକର କେତେବେଳକେ ଫେରି ଅସି ନେତ୍ରମଣିଙ୍କୁ କହିଲା, ଡାକି ଡାକି ମୋର ତଣ୍ଟି ଶୁଖିଗଲା, କେହି କବାଟ ଖୋଲିଲେ ନାହିଁ । ଦୋମହଲା ଉପରେ କଲବାଜା ବାଜୁଛି । ସମସ୍ତେ ସେଇଠି । କେତେବେଳକେ କିଏ ଗୋଟାଏ ଅସି କବାଟ ଖୋଲିଲା, କହିଲା—ଡାକ୍ତରବାବୁ ନାହାନ୍ତି । ମୁଁ କହିଲି—ତାଙ୍କଠି କାମ ନାହିଁ । ସାନ୍ତାଣିଙ୍କୁ ଦେଖା କରିବାକୁ ତାଙ୍କ ଗାଁରୁ କିଏ ଅସିଛନ୍ତି । ସେ କହିଲା, ବାଇସ୍କୋପ ଦେଖିବାକୁ ଯିବେ ବୋଲି ସଜ ହେଉଛନ୍ତି । ଦେଖା ହେବାର ବେଳ ନାହିଁ ।

ଝୁଡ଼ୀ ଫେରି ଆସିଲେ ନାହିଁ ?

ଫେରି ଆସିଥାନ୍ତେ । ଗୃକରଟା କଣ ମନରେ ପାଏଁ ତାଙ୍କୁ ଭିତରକୁ ଡାକି ନେଲା । ଦାଣ୍ଡରେ ବସି ମୁଁ ଫେରିଲି ।

ରାତି ପ୍ରାୟ ଦଶଟା । ଇନ୍ଦ୍ରବାବୁ ଫେରିଲେ । ନୂଆ ବାଲ୍ଗା ଲୁଗା ଖଣ୍ଡେ ପିନ୍ଧିଛନ୍ତି । ଆଲୁଅ ନେଇ ସଙ୍ଗରେ ଆସିଛି ଡାକ୍ତରଘର ଗୃକର । ହାତରେ ଧରିଛି ଇନ୍ଦ୍ରବାବୁଙ୍କ ପାଲଟା ପୁରୁଣା ଲୁଗା ।

ଗୃକର ଫେରିଗଲା । ନେହମଣି ପଗ୍ଗୃରିଲେ, ଏତେ ଡେରି ହେଲା କାହିଁକି ଖୁଡ଼ୀ ?

ବିରସ ଓଠରେ କ୍ଷୀଣହସର ଆଲୁଅ ଉଜଳି ଉଠିଲା—କେତେ ଯୁଗ ପରେ ଦଂଭଉଣୀର ଦେଖା । ମୁହିଁକୁ ଗୃହିଁ ବସୁ ବସୁ ଏତେବେଳ ହୋଇଗଲା । ଝିଅ ! ରଜାଘର କାରଖାନା; ସୁନ୍ଦ କଣ ମୁହୂର୍ତ୍ତେ ଥିର ହୋଇ ବସି ପାରୁଛି ?

ଚିହ୍ନି ପାରିଲେ ?

ଚିହ୍ନା ଦେଲେ ନ ଚିହ୍ନ ବ କିଏ ? କହୁ କହୁ ମୁହଁଟି ଶୁଖିଗଲା ।

ଆସିଲା ବେଳକୁ ଟଙ୍କା ପାଞ୍ଚୋଟି ମୋ ହାତରେ ଦେଲା । ହେଉଥିଲି, ନବାକୁ ନାହିଁ କରିବ । ପାଟି ଖୋଲିଲା ନାହିଁ ନେତ । ସେ ବ ମୋତେ ବିଦାକର ଯାଇଁ ମଟର ଗାଡ଼ିରେ ଝଟ୍ ଚଢ଼ିଲା ।

ଝିଅଗ୍ରୁଡ଼ିଙ୍କୁ ଦେଖିଲ ?

ସେମାନେ ସବୁ କଲବାଜା ବଜାଉଥିଲେ । ଯେତେ ଖବର ପଠାଇଲି ଆଇଲେ ନାହିଁ ।

ରାତି ଜାଗୁଲ୍ ଜାଗୁଲ୍ । ଇନ୍ଦ୍ରବାବୁ ନେହମଣିକୁ ଉଠାଇ ତାର ଓଠରେ ହାତ ଦେଇ କହିଲେ, ଯାଉଛି ମା, ଏଣିକିବେଳୁ ବାହାର ପଡ଼ିଲେ ଦନ ଦ୍ୱିପହରକ ଘରେ ପହଞ୍ଚିବ । ବାବାଜି ଧିଅ କଥା ତ ଦେଖି ଯାଉନ୍ତି—ଅପାକୁ କହିଦେବ । ନେହମଣିଙ୍କ ହାତରେ ଟଙ୍କା ପନ୍ଦରଟି ଓ ଖଣ୍ଡେ ଚିଠି ଦେଇ କହିଲେ, ସକାଳ ହେଲେ ତୋ ଗୃକର ହାତରେ ଏତକ ସୁନ୍ଦରମଣି ପାଖକୁ ପଠାଇ ଦେବୁ ମା । ଜୀବନଟା ଯାକ ତ ଦୁଃଖ ଜଞ୍ଜାଳ ଭିତରେ ଭାଙ୍ଗି ଚକଟି ହୋଇ ବାର ହାଇରାଣ ହରକତ ଓପାସ ଭୋକରେ ସମସ୍ତ କାଟିଛି । କେହି ମୋର ସାହା ଭରସା ହୋଇନାହାଁନ୍ତି । କାହାର ହାତ ଟେକାକୁ ଅନାଇଁ ନାହିଁ । ଅକାଳେ ସକାଳେ ପେଜ଼ୁଁ ଭଉଣୀ ପଦେ ପଗ୍ଗୃରେ ନାହିଁ ଆଜି ଏ ବାହୁଡ଼ା

ଜୀବନରେ ତାଠୁଁ ପାଞ୍ଚ ଟଙ୍କା ନେଇ ମୋର କିଛି ବଡ଼ତ୍ୱ ହେବ ନାହିଁ । ଜାଣିକରି ତ ଏକା ନଥିଲି । ଭଉଣୀ ଘରେ ଖାଇଥିଲି, ଲୁଗା ପାଞ୍ଚହାତ ପିନ୍ଧାଇଲେ । ସେ ତ ଗଳ୍ପ ମହନ୍ତପଣିଆଁ କଥା । ଯେତେ ଗରିବ ହେଲେ ବି ମୋଘରେ ସେ ଖାଇଥିଲେ କଣ ମୁଁ ଘୃଣା କରି ନ ଥାନ୍ତି ?

ନେତ୍ରମଣି କହିଲେ, ତାତ କରିବାର କଥା ।

ସେଇଥି କହି, ଟଙ୍କା ପାଞ୍ଚଟା ଭିକ ମାଗିଲା ପରି ନେବ କାହିଁକି ? ନା, ଟଙ୍କା ତାକୁ ଫେରାଇ ଦେଉଛି । ନୂଆ କରି ଆସିଥିଲି । ଝିଅର ପୁତୁରାଙ୍କୁ ଦେଖିବାର କଥା । ଟଙ୍କା ଦଶଟା ପଠାଇ ଦେଉଛି, ରଖିଲେ ରଖିବ ନୋହିଲେ ନାହିଁ । ଯେତେ ବଡ଼ଲୋକ ହେଲେ, ମୋର ଭଉଣୀ ତ ସୁନ୍ଦ—ମୋର ସାନ ଭଉଣୀ—ଏକା ନାହି ଦାଖଣ୍ଡ । ଏକା ରକ୍ତ ଦାଧାର··· ।

ତହିଁ ପରଦିନ । ବେଳ ପ୍ରାୟ ଦଶଟା । ସୁନ୍ଦରମଣି ଝିଅ ମାନଙ୍କୁ ସଙ୍ଗେ ଘେନି ହଠାତ୍ ପହଞ୍ଚିଗଲେ ! ଅଦିନଆ ଅତିଥି ଦେଖି ନେତ୍ରମଣି ଟିକିଏ ବ୍ୟସ୍ତହୋଇ ପଡ଼ିଲେ । ସେ ଦିଗକୁ ଲକ୍ଷ୍ୟ ନ ରଖି ସୁନ୍ଦରମଣି ପଚାରିଲେ, ଅପା କାହିଁ ।

ନେତ୍ରମଣି କହିଲେ, ସେ ପାହାନ୍ତାରୁ ଘରକୁ ଗଲେଣି ।

ସେ ଯେଉଁ ଚିଠି ଦେଇ ଯାଇଥିଲା ତେମେ ତାକୁ ପଢ଼ିଛ ?

ନା ! ଟଙ୍କା ଆଉ ଚିଠି ସକାଳେ ତମ ପାଖକୁ ପଠାଇ ଦେବାକୁ କହି ଯାଇଥିଲେ । ରାତି ପାହିଲାରୁ ମୁଁ ତମ ପାଖକୁ ପଠାଇ ଦେଇଛି ।

କ୍ଷଣକାଳ ଗମ୍ଭୀର ହୋଇ ସେ କହିଲେ,—ଅପା କଣ ଆସିଥିଲା ମୋତେ ଅପମାନ ଦେଇ ଯିବାକୁ ।

ସାମାନ୍ୟ ହସି ନେତ୍ରମଣି କହିଲେ, ନାହିଁ ତ ! ଖୁଡ଼ୀ କହୁଥିଲେ—ଆଜି ସିନା ମୁଁ ଟରିବ ଲୋ ଝିଅ, ସୁନ୍ଦ ମୁଣ୍ଡରେ ଗୋଡ଼ ରଖି ପରା ମୋର ଜନ୍ମ ! ତାର ଧାରୁଆ ରହିବ କେମିତି ? ମୁଁ ତାର ଅପା !

# ଆକାଶ କଇଁଆ

ଗନ୍ଧର୍ବ ଗରିବ, ତେଣୁ ତାକୁ ଲୋକେ ଗନ୍ଧଆ ବୋଲି ଡାକନ୍ତି । ମୂଲ ଲାଗି ପେଟ ପୋଷେ । ଏଇ କଟକ ସହରରେ ତାର ଘର । ଶ୍ରେଷ୍ଠ ନୂଆଁଣିଆ ଗୁହଳଘର, ଦଉଡ଼ି ବାଖରି, ମାଙ୍କଡ଼ ଓ ପବନ ଯାହାର ଗୁହଳ ଓଲଟ ପକାଇଛନ୍ତି । ଘର ଛଡ଼ା ଶ୍ରେଷ୍ଠ ବାଡ଼ିଟି, ସବୁ ମିଶି ଜମି ଗୁଣ୍ଠେ । ଗୃହଆଡ଼େ ଜଗଦୀଶବାବୁଙ୍କ

ଘର ବାଡ଼ି ଘେରି ରହିଛି । ଉଚ୍ଚ ଦୋତାଲା କୋଠା—ବଡ଼ବଡ଼ ଝରକା ଗୋଟିଏ ପାଖରେ । ପଛ ପଟେ ସେପେଇ ଘର—ସେ ପଟକୁ ବାଡ଼ି—ସବୁ ମିଶି ମାଣକରୁ ଅଧିକ ହେବ ।

ଗନ୍ଧର୍ବର ଏ ସମ୍ପତ୍ତି ମଉରସି । ଆହୁରି କେତେ ଜମି ଥିଲା—ଲାଗିଲାଟି—ତାରି କୁଟୁମ୍ବର । ସମସ୍ତେ ମରିହଜିଗଲେ । ଯେଉଁମାନେ ବଞ୍ଚିଥିଲେ ପେଟ ଜାଳାରେ ପଡ଼ି ଏଇ ଜଗଦୀଶ ବାବୁଙ୍କ ବାପାଙ୍କୁ ବିକ୍ରି କରି ଚାଲିଗଲେ । ଏକା ରହିଥିଲା ଗନ୍ଧଆର ବାପ । ଟଙ୍କାର ଲୋଭ, ପାକଲାପାକଲି, ଧମକ ଚମକ କିଛି ନ ମାନି ଜମିଖଣ୍ଡି ପକାଇ ରଖିଥିଲା । ମଲାବେଳେ କହି ଯାଇଥିଲା, ଅରେ, ଯାଉଛିରେ, ତୁ ମୋର ସେଜଗାଳିଆ ପୁଅ । ମୂଳଆମୁଣ୍ଡ । ଦୁଃଖେ କଷ୍ଟେ ପେଟକୁ ମୁଠିଏ ଦେଇ ତତେ ବଞ୍ଚାଇଛି । ତୋ ପାଇଁ ଛାଡ଼ିଗଲି ଏଇ ଜମି ଖଣ୍ଡିକ, ଭଙ୍ଗା ଘରଟା, ଆଉ ମା ଛେଉଣ୍ଡ ତୋର ଏଇ ସାବତ ଭଉଣୀଟି—ଚାନ୍ଦ । ସାତବର୍ଷକାଳ ହେବ ମିହନ୍ତ କରି ସେ ଭେଇଛି, ଚାନ୍ଦଟିକୁ ଖୋଇ ପେଇ ମଣିଷ କରୁଛି । ଚାନ୍ଦ ଆଜି ପନ୍ଦର ବର୍ଷର ଝିଅ, ଆଉ ସେ ଛରଶି ପାଖେଇଲାଣି ।

ଜଗଦୀଶ ବାବୁ କେତେଥର ଡାକି କହିଲେଣି, ଅରେ ଗନ୍ଧର୍ବ, ପିଲାଟାକୁ କେଉଁଠି ଦେଖି ଉଠେଇ ଦେ । ଆଉ, ତୋର ବି ବୟସ ବଳେଇ ପଡ଼ୁଛି । ଜଗଦୀଶ ବାବୁଙ୍କର ବୟସ ପଚାଶ ପାରି ହୋଇ ଗଲାଣି । ଜମିଦାର । ବ୍ୟବସାୟ ବି ଅଛି । ଘରେ ସ୍ତ୍ରୀ, ପୁଅ, ବଡ଼ ଦୁଇଝିଅ । ମଟର ଗାଡ଼ି । ଜମିଟା ତାଙ୍କର ଖଣ୍ଡିଆ ହୋଇ ରହିଛି । ଗନ୍ଧଆର ଘରଟି ଯଦି ହତା ଭିତରେ ପଶେ, ବେଶ୍ ଚାରିଖୁଣ୍ଟିଆ ହୋଇଯିବ । ରାସ୍ତାକୁ ଲାଗିଯିବ ।

ଗନ୍ଧଆ ଜାଣେ, ବାବୁ ତାରି ଜମିଖଣ୍ଡି ଚାହାନ୍ତି । ସେଇଥିପାଇଁ ତାଙ୍କର ଏତେ ଦୟା, ସହାନୁଭୂତି, କଅଁଳକଥା । ସେ କିଛି କହେ ନାହିଁ । ଚାଲିଆସେ, ମନେ ମନେ ଘମ୍ପରି ହୁଏ—ମୋ ବୋଝ ମୁଁ ସମ୍ଭାଳିବି, ତେମେ କିଏ ? ସକାଳୁ ଉଠି ଭଉଣୀ ସଙ୍ଗେ ମିଶି ଘରକାମ କରେ । ବେଳ ହେଲେ ମୁଠିଏ ଖାଇଦେଇ ଯାଏ କାମ ଅନଶାରେ । ସଞ୍ଜବେଳେ ଫେରେ । ଚାଉଳ ପଛରା କାଠ ମୁଣ୍ଡରୁ ଓହ୍ଲାଇଦିଏ ଚାନ୍ଦ ଆଗରେ । ବଳକା ପଇସା ଦିଏ ତା ହାତକୁ । ଛିଣ୍ଡା ସପଟା ପିଣ୍ଡାରେ ପାରି ଶୋଇପଡ଼େ । ନହୁମାକେ ହୋଇଯାଏ ନିଦ । ଚାନ୍ଦ ପଶେ ଚାଳ-ଘରେ । ଛୋଟ ଡିବରିଟି ଜାଳେ । ସେଲାଇ ବସାଏ ।

ନଘଡ଼ନଦରେ ଶୁଏ ଗନ୍ଧଆ । ଜଗଦୀଶ ବାବୁଙ୍କ ଦୋତାଲାର ଘରଗୁଡ଼ିକ ଉଜ୍ଜ୍ୱଳଉଠେ ବିଜୁଳି ଆଲୁଅରେ । ଦକ୍ଷିଣା ପବନ ପାଇଁ ଖୋଲା ହୁଏ ଝରକା ଗୁଡ଼ିକ । ସେ ଘରେ ରେଡ଼ିଓ ବାଜିଉଠେ । କେତେ ଭଦ୍ରଲୋକ ଟେବୁଲର ଚାରିପାଖେ ଘେରି ରହିଛନ୍ତି । ତାଙ୍କର ବଡ଼ଝିଅ ଚନ୍ଦ୍ରିକା ହସି ହସି ପରଷି ଯାଏ

ଗୃହା । ଶ୍ରେଷ୍ଠ ଗୃହଳଘର ଭିତରୁ ଅନାଏ ଗୃହ । ନାକ ଟେକେ । ପାଖଘରେ ପଡ଼େ ଆଖି—ସାନକ୍ଷିଅ ଅଞ୍ଜଳର ପଢ଼ାଘରେ । ସେ ପନ୍ତା ତାର ମାଷ୍ଟର ? କେମିଛ ବେଅଢ଼ା ହସ ! ଇଶ୍—ଆଖି ଫେରାଏ ଲାଜରେ, ଭୟରେ, ସଙ୍କୋଚରେ । ଆଖି ପଡ଼େ ଅନ୍ୟ ଘରେ—ଯେଉଁଠି ପଢ଼େ ବାବୁଙ୍କ ପୁଅ ଅନନ୍ତ—ଗୃହଁରହେ ଅପଲକ ଆଖିରେ—

ଚାଲ୍ ଉପରେ ଚଉକାଣ୍ଟ ଘଡ଼ଘଡ଼ ହୁଏ । ଆଖି ଫେରାଏ—ଯେପଣ ଅନଚ୍ଛାରେ—

ଜଗଦୀଶ ବାବୁଙ୍କ ଷ୍ଟୋରଘରୁ ମାଛଭଜାର ଗନ୍ଧ ଆସେ ।

ଭାଇ ନଘଡ଼ନନ୍ଦରେ ଶୋଇଛି । ଥାହା, ଦନସାରା ଖଟିଖଟି କେଡ଼େ କ୍ଳାନ୍ତ ହୋଇ ପଡ଼ିଥିବ ! ଗୃହ ଭାବେ । ଭାଇର ଗୋଡ଼ ଘଷେ । ଗୃହେଁ ପୁଣି ଦୋତାଲାର ଝରକା ଗୁଡ଼ିକୁ । ନାକ ଟେକେ ! ଆଖି ବୁଜେ । ଭାବେ, ଚେଉବ ହେବା ଭଲ । ବଡ଼ଲୋକଙ୍କର ଟବଅଡ଼ା କଥା । ପୁଣି ଭାବେ, ବଡ଼ଲୋକଙ୍କ ନେଖାରେ ଗରବ ଗୁଡ଼ା ମଣିଷ ନୁହନ୍ତି—ନର୍ଜୀବ ପଥର !

ଟନ୍ଦବର ନଦ ଭାଙ୍ଗେ । ଭାଇ ଭଉଣୀ ଦୁଓଟି ଖାଇ ଶୋଇପଡ଼ନ୍ତି ।

ରାତି ପାହେ, ବେଳ ହୁଏ, ଗଢ଼ବ ଯାଏ କାମକୁ । ଜଗଦୀଶ ବାବୁଙ୍କ ଝରକା ଗୁଡ଼ିକ ସେମିତି ଖୋଲା ଥାଏ । ଉପରୁ ଡାକେ ଚନ୍ଦ୍ରିକା—କଟଲା ଗୃହ, କଣ କରୁଛୁ ? ଉତ୍ତର ଦଏ, ଘର ଲିପୁଛି ।

ଝରକା ବନ୍ଦହୁଏ । ହସ ଶୁଭେ—ଦୁଇଜଣଙ୍କର । ମରଦାନଆ କଣ୍ଠ ! ସେ ପ୍ରଶ୍ନ ପଗୃରେ ଅଞ୍ଜଳ, କଣ କରୁଛୁ କି ?

ଗୃହ କହେ, କନ୍ଥା ସିଉଁଛି । ମାଷ୍ଟର ବାବୁଙ୍କର ପାଟି ଶୁଭେ । ତଳ ଝରକା ବନ୍ଦ ହୁଏ ।

ଖୋଲାଥାଏ କେବଳ ସେଇ ଝରକାଟି—ଯେଉଁଠି ବସି ପଢ଼ନ୍ତି ଅନନ୍ତବାବୁ । ଧୀର ସ୍ଥିର; ସେ ଘରେ ହସ ଶୁଭେ ନାହିଁ । କେହି ଗୋଲମାଲ କରନ୍ତି ନାହିଁ । ଅନନ୍ତ ବାବୁ ଜାଣିକରି ଅନାନ୍ତି ନାହିଁ ଗଢ଼ବର ଘରକୁ, କେବଳ ଗୃହ ପିଣ୍ଡାରେ ବସି କନ୍ଥା ସିଏଁ—ଲୁଗା ସିଏଁ—ଗୃହଁ ରହୁଥାଏ ଚୋଟିଏ ମୁହଁକୁ—ହେଉ ହେଲା ଦଲା, ଗୃହଁରେ ଶିହରଣ ଜାଗିଲା ଦଲା । କାଲି ଯେଉଁ ଆଖିରେ ତାର ଅବୁଝା କୌତୂହଳ ଖେଳୁଥିଲା, ଆଜ ସେଥିରେ ଜଳୁଲାଗି ପିପାସା—

କିନ୍ତୁ କାହିଁକି ? ଗଢ଼ବର ଝିଅ ସେ—ଧନୀର ପୁଅକୁ ଗୃହିଁବ କାହିଁକି ? ଆକାଶର ତାରା ଆଉ ସେ ନବୋଧ ବାମନ ! ତଥାପି ସେ ବ୍ୟାକୁଳ ହୋଇ ଅନାଇଁ ରହେ—। ଥରେ ଅଧେ ଅକସ୍ମାତ୍ ପଦାକୁ ଗୃହଁଲେ, ଦୃଷ୍ଟିପଡ଼େ ଅନନ୍ତର ଦୃଷ୍ଟିରେ । ମୁହଁ ବୁଲାଏ । ସ୍କୁଲ ଓ କଲେଜ ଯିବାର ବେଳ ହୁଏ । ଗୋଟିଏ

ମଟରରେ ଝିଅ ଦୁହେଁ ଓ ପୁଅ ବସନ୍ତି । ଜଲାଙ୍କବାଟି ବାଟେ ଚାହିଁ ରହିଥାଏ ଚାନ୍ଦ । ମଟର ଚାଲେ । ଚାନ୍ଦ ଫେରେ ଘରକାମ କରିବାକୁ ।

ଚାନ୍ଦର ଲୁଗା ନାହିଁ । ପୁରୁଣା ଲୁଗାରେ ତାଳି ପକାଇ କେତେଦିନ ଆଉ ଚଳିବ ? ପୁରି ପୁରି ଛିଣ୍ଡି ଯାଉଛି । ଲୁଗା ଖଣ୍ଡେ ପାଇଁ ଭାଇକୁ କହିବ କହିବ ହେଉଛି କେତେ ଦିନରୁ । ପାଟି ନେଉଟୁ ନାହିଁ । ଯାହା ରୋଜଗାର କରେ ସେତକ ପେଟକୁ ଅଣ୍ଟେ ନାହିଁ । ସଞ୍ଚି ସଞ୍ଚି ପଇସା ବାରଣା କରୁଛି । ଲୁଗା ଖଣ୍ଡକୁ ନିଅଣ୍ଟ ହେବ । କହେ ନାହିଁ ।

ଆଉ ତ ଚଳି ହେଉନାହିଁ ! ଚାନ୍ଦ ଚାହେଁ ନିଜର ଦେହକୁ—ଯାହାକୁ ଭଲକରି ଘୋଡ଼ାଇ ରଖିବାର ସମ୍ବଳ ତାର ନାହିଁ । ଭାଇକୁ ତାର ଲାଜ ନାହିଁ—ଯେ ନିତି ତା ପାଖେ ଆତଯାତ, ଯାହା ପିଠିରେ ସେ କାଲି ନାଉ— । ତାର ଲାଜ ଆଉଜଣଙ୍କୁ—ଯିଏ ଭୁଲରେ କେବେ ତାକୁ ଅନାନ୍ତି ନାହିଁ ।

ଲୁଗା କଥା ଭାଇକୁ ସେ ଦିନେ କହିଲା । ଗଳିବ ଆଣିଥିଲା ତା ପାଇଁ ଖଣ୍ଡେ ନାଲି କସ୍ତା, ଯାହାର ଦାମ୍ ସୁଝିବାକୁ ଦିଓଟି ପ୍ରାଣୀଙ୍କର ସାତଦିନ ଯାଏ ଚୁଲି ଜଳି ନ ଥିଲା ଘରରେ । ତଥାପି ତାଙ୍କର ଆନନ୍ଦ । ଜଗଦୀଶ ବାବୁଙ୍କ ରୋଷଘରୁ ପୋଡ଼ାଘିଅର ଗନ୍ଧ ଉଠେ, ପୁରି ଲୁଚି ଭଜା ! ତଳ ରୋଷଘରୁ ମାଂସ ଝୋଳର ବାସ ଆସେ, ପବନରେ ଉଡ଼େ—ଦିଓଟି ପ୍ରାଣୀ ନିଶ୍ଚିନ୍ତରେ ଘୁଙ୍ଗୁଡ଼ି ମାରନ୍ତି ଏପାଖେ ।

ଅନନ୍ତ କଲେଜରେ ଏମ୍. ଏ. ପଢ଼େ । ବଡ଼ଲୋକୀ ମଝିରେ ଥାଇ ମଧ୍ୟ ତାର ବଡ଼ଲୋକୀ ନାହିଁ । ସେଥିରେ ଭାସି ଭାସି ଯାଏ, କିନ୍ତୁ ସେ ଅନୁଭବ କରେ ଯେପରି ଏ ସବୁ ଜୀବନ ନୁହେଁ, ଜୀବନର ଛାଇ । ସେ ଟି ପାର୍ଟିରେ ଯୋଗଦିଏ, ଗୀତ ଶୁଣେ, ଭଉଣୀ ଓ ସେମାନଙ୍କର ବନ୍ଧୁ ମାନଙ୍କର ନାଚ ଦେଖେ, ମଟର ଚଢ଼େ, ସମସ୍ତଙ୍କୁ ନେଇ ସିନାମା ଦେଖିଯାଏ, ତଥାପି ସେ ଭାବେ ଏ ସବୁ କେବଳ ଅନ୍ୟ ମାନଙ୍କର ଆନନ୍ଦ ପାଇଁ, ତୃପ୍ତି ପାଇଁ । ନୋହିଲେ ତା ସମାଜର ଆଉମାନେ ହସିବେ, ବେଖାତିର କରିବେ । ବିଦ୍ରୋହ କରିବାକୁ ଇଚ୍ଛା ହୁଏ, କିନ୍ତୁ କରିପାରେ ନାହିଁ । ଅଭିନୟର ଜୀବ ପରି ସେ କରେ ଅଭିନୟ । ପଢ଼େ—ପଢ଼ାରେ ହଜାଇ ଦିଏ ନିଜକୁ ।

ସେଦିନ ସଞ୍ଜରେ—। ଚନ୍ଦ୍ରିକା ଓ ଅଞ୍ଜଳି ପଶିଲେ ତା ପଢ଼ା ଘରେ । କହିଲେ ଭାଇ, ଆମକୁ ସିନେମା ଦେଖାଇ ନେବ ଚାଲ । ଅନନ୍ତ ମୁଣ୍ଡ ଟେକି ଚାହିଁଲା । ଭଉଣୀ ଦୁହେଁ ତାର ସୁସଜ୍ଜିତା ସିନେମା ଷ୍ଟାରଙ୍କ ଅନୁକରଣରେ । ମୂଲ୍ୟବାନ୍ ଫିନ୍ ଫିନ୍ ଶାଢ଼ୀ—ଦୁଇରଙ୍ଗର ଦୁହେଁ ପିନ୍ଧିଛନ୍ତି । ସିଲ୍କ ବ୍ଲାଉଜ୍—ଉଲଗ୍ନ ନୁହନ୍ତି, ତାର କୈଫିୟତ୍ ! ରାଗ ହେଲା ମନରେ, କିନ୍ତୁ କିଛି କହିବାର

ଅଧିକାର ତାର ନାହିଁ । କହିଲେ କାନ୍ଦିବେ, ମା ହେବେ ବିରକ୍ତ । ତଥାପି, ସେ କହିଲା, ତମର ପଢ଼ା ସରିଗଲାଣି ?

ଚନ୍ଦ୍ରିକା କହିଲା, ଆଜି ଯେ ଶନିବାର ।

ଅଞ୍ଜଳି ତାର ହାତ ଧରି ଟାଣିଲା ।

ନିରୁପାୟ । ବହି ବନ୍ଦ କରି ଗଲା ସେମାନଙ୍କ ସଙ୍ଗରେ ।

ପରଦିନ ।

ଗତ ରାତିର କଥା ଭାବୁଥାଏ, ହଠାତ୍ ତା ଆଖିରେ ପଡ଼ିଲା ବୃନ୍ଦା । ଚମକି ଉଠିଲା । ବୃନ୍ଦା—ଏ ଘରର କୁଟୁମ୍ବ ନ ହୋଇ ମଧ୍ୟ ସତେ ଯେପରି ଏଇ ଘରର ଗୋଟିଏ ଅଂଶ । ସେ ଦିନ ତାର ମା ମଲା, ଆଉ ସେ ଦିନ ମଲା ତାର ବାପ । ଭାଇର ଯତ୍ନରେ ତାର ସେଇ ଶ୍ରେଷ୍ଠ ଘରର ଅଗଣାରେ ଲଙ୍ଗଳା ହୋଇ ନାଚୁଥିଲା, ଯେତେବେଳେ ଚନ୍ଦ୍ରିକା ଓ ଅଞ୍ଜଳି ସଭ୍ୟତାର ଆବରଣରେ ଲୁଚିବାକୁ ଚେଷ୍ଟା କରୁଥିଲେ । ସବୁ ସେ ଜାଣେ, ସବୁ ତାର ଆଖି ପାଖରେ ଭାସି ଯାଉଥିଲା, କିନ୍ତୁ କେବେ ସେ କିଛି ଦେଖି ନ ଥିଲା ।

ଦେଖିଲା ସେ ଦିନ— ।

ବୃନ୍ଦା ଛିଣ୍ଡା ମଇଳା ଲୁଗାଟି ପିନ୍ଧି ତାର ଅଗଣାରେ କାମ କରୁଛି । କି ସୁନ୍ଦର ! ତାର ମଇଳା କୋଚଟ ଲୁଗାର ଆବରଣ ଭିତରୁ ଝଟକି ଉଠୁଛି ବାହୁଲତା । ଓପାସ ଦେହକରେ ବେଲ କାଟି ମଧ୍ୟ କି ସୁନ୍ଦର ସ୍ୱାସ୍ଥ୍ୟ ! ମୁହଁରେ ପାଉଡ଼ର ବୋଳା ହୋଇନାହିଁ କି ଓଠରେ ଘଷା ହୋଇ ନାହିଁ ଲିପ୍‌ଷ୍ଟିକ୍ । ଯତ୍ନକରି ବାନ୍ଧିନାହିଁ ମୁଣ୍ଡ କି କାନ ଯୋଡ଼ାଇ ନାହିଁ । ତଥାପି ଲାବଣ୍ୟ ଫୁଟି ଉଠୁଛି ତା ଅଙ୍ଗରୁ । ପ୍ରକୃତିର ସହଜ ଜାତ ପିଲା ସେ, ସଭ୍ୟତାର କୃତ୍ରିମତା ଛୁଇଁନାହିଁ ତାକୁ । ତନ୍ମୟ ହେଲା ଅନନ୍ତ ! ଝରକା ପାଖକୁ ଘୁଞ୍ଚି ଆସି ଚାହିଁ ରହିଲା ବୃନ୍ଦାକୁ । ମନ ଆନନ୍ଦରେ ପୂରି ଉଠିଲା ।

ବେଳ ଦଶଟା—ତେରଛା କିରଣ ପଡ଼ୁଥାଏ ତାର ମୁହଁରେ ।

ବୃନ୍ଦା ଚାହିଁଲା ଉପରକୁ । ଚାରି ଚକ୍ଷୁର ମିଳନ ହେଲା ମୁହୂର୍ତ୍ତେ । ରଙ୍ଗିଲା ହେଲା ବୃନ୍ଦାର କପାଳ—ସରମରେ । ବାଁଟରିଇ ହୋଇ ଉଠିଗଲା ଘର ଭିତରକୁ । କପଟ ଗୋଟାଏ ସଂକୋଚରେ ଅନନ୍ତ ବନ୍ଦ କଲା ତଳ ଝରକା ।

ଚାରି ଆଖିର ମିଳନ ହୋଇଛି ଅନେକ ଥର, ପ୍ରତିଦିନ । ଦୁଇଟା ମନ ଟାଣି ହୋଇ ଆସିଛି । ଅସ୍ପଷ୍ଟ ମିଳନ ଚାହୁଁଛି । ବାଧା ଦେଉଛି ପରିସ୍ଥିତି—ସଭ୍ୟତା—ଅକାଶ କୁଇଁଆ ଛଲକା ମାଛ । ପଦଟିଏ କେହି କାହାକୁ ମୁହଁରେ କହୁନାହିଁ—ଥରଟିଏ କେହି ହସିବାକୁ ସାହସ କରୁନାହିଁ । ଇଙ୍ଗିତ, ସଙ୍କେତ—ସେ ତ ଦୂରର କଥା !

ଅମ୍ବା ଚାହିଁଲା ଅମ୍ବାକୁ ।

ଅନନ୍ତ ଘର କବାଟ ବନ୍ଦ କରେ । ଗୃହିଁ ରହେ ଗୃନ୍ଦକୁ । ଗୃନ୍ଦ କାମକରେ—ଅନାଏଁ ଅନନ୍ତକୁ । ଦୁଇଟା ମନ ମିଶି ଏକ ହୁଏ । ଦୁଇଟା ଦେହର ମଝିରେ କେତେ ବଡ଼ ବ୍ୟବଧାନ—ଦୋତାଲା କୋଠା, ସମାଜ, ଶିକ୍ଷା, ସଭ୍ୟତା, ଧନ । ସରମରେ ରଙ୍ଗ ହୁଏ ତାର ମୁହଁ । ହସ ଭରିଯାଏ ଓଠରେ । ନବୋଧ ଝିଅଟା । ବୁଝେ ନାହିଁ ଆଉ କିଛି, କେବଳ ଜାଣେ ତାର ଅମ୍ବା ଗୃହୁଁଛି ଜଣକୁ ।

ବୁଝେ ଅନନ୍ତ । ଗୃନ୍ଦର ମୁହଁରେ ହସ ଦେଖିଲେ ତାର ଅମ୍ବା ଥରି ଉଠେ । ମନେ ହୁଏ, ଯାହା ଅସମ୍ଭବ ସେଥିକି ମନ ବଳାଇବ କାହିଁକି ? ଫେରି ଅସେ ଟେବୁଲ ପାଖକୁ । ବସି ପାରେ ନାହିଁ । ଗ୍ରୁଛ ଭିତରେ ଯେଉଁ ଭୁମୂଳ ଯୁଦ୍ଧ—ବୁଝେ ଏକା ସେହି । ପୁଣି ଝରକା ପାଖକୁ ଅସେ—ଗୃନ୍ଦ ନାହିଁ । ଘର ଭିତରେ କଣ କାମ କରୁଛି । ବ୍ୟାକୁଳ ହୁଏ ଅଖି ।

ଅଞ୍ଜଳି ପଶିଲା ଘରେ । ସଙ୍ଗରେ ତାର ବନ୍ଦନା—ଅଞ୍ଜଳିର ସାଙ୍ଗ । ବଡ଼ ଲୋକର ଝିଅ । କଣ୍ଢେଇଟିଏ ପରି ସଜା ହୋଇଛି । ପ୍ରଣାମ କଲା । ଅଞ୍ଜଳିର ନିର୍ଦ୍ଦେଶରେ ବସିଲା ଅନନ୍ତ ପାଖରେ ରଙ୍ଗ୍ ଚେୟାରରେ । ଅଞ୍ଜଳି ଭାଇକୁ ଅଉଜି ଠିଆ ହେଲା ତା ଚଉକି ପାଖରେ । ଅନନ୍ତର ମୁଣ୍ଡରେ ହାତ ବୁଲାଇ, ଗେହ୍ଲେଇ ପଗୃରିଲା, ଭାଇ ମ, ସତ କହିଲ, ବନ୍ଦନା କେଡ଼େ ସୁନ୍ଦର !

ବନ୍ଦନାର ପାଉଡ଼ର ବୋଳା ପୂରିଲା ପୂରିଲା ଧଳା ଗାଲରେ ଗୋଲାପ ଫୁଟିଲା । ସେ ଦୃଷ୍ଟି ନୁଆଁଇଲା ।

ଅନନ୍ତ କହିଲା, ବେଶ୍ ସୁନ୍ଦର ! ତୁ ଯାତ ମୁଁ ପଢ଼େ—

ଖୁସି ହୋଇ ଅଞ୍ଜଳି ଗୃଲିଗଲା ବନ୍ଦନାର ହାତ ଧରି ।

ଚନ୍ଦ୍ରିକା ଅସିଲା । ଅନନ୍ତ ସଙ୍ଗେ ସେ ଥଟ୍ଟା କରେ । କଳିଆ କରେ । ତଳ ଉପର ଭାଇ ଭଉଣୀ । ତାର ବହି ଉପରେ ହାମୁଡ଼େଇ ପଡ଼ି କହିଲା, ବନ୍ଦନା ହେବ ମୋର ନୂଆଉ, ଜାଣ ତ ? ବାପା ଜବାବ ଦେଇ ସାରିଲେଣି ।

ଅନନ୍ତ ବିଶ୍ୱାସ କରି ପାରିଲା ନାହିଁ । ଥଟ୍ଟା ମଣି କହିଲା, ବାପା ତତେ ଆଗ ବିଦା କରନ୍ତୁ— ।

ଚନ୍ଦ୍ରିକା ରାଗ ତମତମ ହୋଇ ଗୃଲିଗଲା ।

ଗଙ୍ଗାଧରଙ୍କ ଗ୍ରୁଛରେ ଚମକ ଲାଗିଲା ସେ ଦିନ । ନିଜ ଅଖିରେ ଦେଖିଛି—ଗୃନ୍ଦ କପରି ଗୃହିଁ ରହିଥିଲା ଦୋତାଲାର ଝରକା ଅଡ଼କୁ, ଅଉ ଝରକାର ଆରପାଖୁ ଅନନ୍ତ ବାବୁଙ୍କର ଅଖି ଦୁଇଟା ଧୀରେ ଧୀରେ ଛପି ଯାଉଥିଲା । ଗୃନ୍ଦ ହସିଥିଲା ସେ ଦେଖିଛି । ରାଗରେ ଜଳି ଉଠିଲା ତା'ର ମନ । ଯିଏ ତାର ଶିର ଶତ୍ରୁ—ସେଇ ଘରର ପିଲା— । ଗୃନ୍ଦକୁ ପାଖକୁ ଡାକିଲା । କିଛି ନ କହି

ବୁନ୍ଦୁଗୁପୁଡ଼ା ମାରିଲି ତା ଗାଲରେ । ପଦଟିଏ କଥା ବାହାରିଥିଲା ତା ତୁଣ୍ଡରୁ—ଆଜି ଦିନେ ?

ଗନ୍ଧର୍ବ ଓପାସ ରହିଲା ଘରେ । କେହି ଜାଣନ୍ତି ନାହିଁ, କେତେ କାନ୍ଦିଲା କେତେ ଭାବିଲା— । କିଛି ଠିକ୍ କରି ପାରିଲା ନାହିଁ ।

ଗୃନ୍ଦ କାନ୍ଦିଲା । କଣ ତାର ଦୋଷ ? ଭିତର କଥା ଓ ଅକଥ, ଗାଲ ମନ୍ଦକୁ ତାର ଛଳ ନ ଥାଏ ।

ସକାଳେ—ଗନ୍ଧର୍ବ ଗୃହିଁଲା ଗୃନ୍ଦକୁ । ଗୋଟାଏ ରାତିରେ ତାର ଅବସ୍ଥା କଣ ହୋଇଛି । କଳାକାଠ ହୋଇଛି ତାର ମୁହଁ, ଲାଜରେ ମଥା ଟେକି ପାରୁନାହିଁ । କଣ ତାର ଦୋଷ ?

କଣ ତାର ଦୋଷ—ଗନ୍ଧର୍ବ ବୁଝି ପାରିଲା ନାହିଁ । ବରଂ ଦୋଷ ତାର । ଗୃନ୍ଦ ବଡ଼ ହୋଇଛି । ପର ଘରକୁ ଯିବାର ବୟସ ତାର ହେଲାଣି । ଆଜଯାଏ ସେ କଥା ତ ସେ ଭାବି ନ ଥିଲା ! ତା ଆଖିରେ ଗୃନ୍ଦ ଥିଲା ପିଲା, କିନ୍ତୁ ସବୁ ଦିନେ କେହି ପିଲା ରହେ ନାହିଁ । ଗୃନ୍ଦ ବଡ଼ ହୋଇଛି । ଝିଅ ଘିଅ—ରଖିଲେ ଦୋଷ, ରହିଲେ ଗନ୍ଧ । ଗୃନ୍ଦକୁ ବାହା କରିବ ।

ଗନ୍ଧର୍ବର ଧୈର୍ଯ୍ୟ ରହିଲା ନାହିଁ ଗୃନ୍ଦକୁ ପର ଘରକୁ ଦେଇ ରହିବ କିପରି ? ଚଳିବ କେମିତି ? ଗୃନ୍ଦ ତାର ଜୀବନ—ତାର ଉତ୍ସାହ, ପ୍ରେରଣା । ଗୃନ୍ଦ ପାଇଁ ସେ ବଞ୍ଚି ରହିଛି । ନିଜେ ବାହା ହେବ ? ନାଇଁ, ନାଇଁ, ବଡ଼ ଲୋକର କୋଠାତଳେ ଗରିବ ଚଳିବା ଅସମ୍ଭବ । ଝରକାର କବାଟ ସେ ବନ୍ଦ କରି ପାରିବ ନାହିଁ । ବୋହୂ ଭୁଆସୁଣୀ ଚଳିବେ କିପରି ? ଉଁ-ହୁଁ—

ଗୃନ୍ଦ ପାଇଁ ବର ଖୋଜିବାରେ ଗନ୍ଧର୍ବ ଲାଗିପଡ଼ିଲା ।

ଝରକା ଖୋଲି ଗୃହେଁ ଅନନ୍ତ । ଦେଖେ ଗୃନ୍ଦ ସେହି ଭଙ୍ଗା ଘରେ ଆତ ଯାତ ହେଉଛି । ମୁଣ୍ଡରେ ଓଢ଼ଣା । ଥରଟିଏ ତା ଆଡ଼କୁ ଅନାଉଁ ନାହିଁ । ଇଚ୍ଛା ହୁଏ ଡାକିବାକୁ । ପାଟି ଫିଟେ ନାହିଁ । ଏପାଖ ଘରେ ଚନ୍ଦ୍ରିକା—କାହା ସଙ୍ଗେ ଆଡ୍‌ଡ଼ା ଦେଉଛି । ହସୁଛି ପାଟି କରି । ସେ ପାଖ ଘରେ ଅଞ୍ଜଳି—ମାଷ୍ଟର ତାକୁ ପଢ଼ାଉଛି । ତଳ ଘରେ ମା କାରବାର ହେଉଥିବେ । ଅଫିସ୍ ଘରେ ବାପା— ।

ଅନନ୍ତ ସେହି ଚଳନ୍ତି ପ୍ରତିମାକୁ ଗୃହିଁ ରହେ— ।

ଗୃନ୍ଦ ପଶେ ଘରେ । କବାଟ ଆଉଜାଏ । ଫାଙ୍କରେ ଗୃହେଁ ଅନନ୍ତର ବିରସ ମୁହଁକୁ । ଦୁଇ ଆଖି ଦେଇ ଗଡ଼ ପଡେ ତତଲା ଲୁହ । ଇଚ୍ଛା ହୁଏ କବାଟ

ଖୋଲି ଥରେ ଗୃହଁବ । ଡର ମାଡ଼େ । ଝିଅର ରୂପ ନାଲି ନାଲି ଆଖି ଉଭାହୁଏ ଆଗରେ । ମନ ହୁଏ କଣ କହିବାକୁ । କଣ କହିବ ଠିକ୍ କରି ପାରେ ନାହିଁ । ସାହସ ହୁଏ ନାହିଁ । ସବୁ ଝରକା ଖୋଲା ଅଛି ।

ଘର କାମ ଡାକ ଦିଏ । ଓଢଣା ଦେଇ ପଦାକୁ ଆସେ ।

ଅନନ୍ତ ଭାବେ, ବନ୍ଦନାକୁ ସେ ବାହା ହେବ ନାହିଁ । ସେ ଧନୀ ଘର ଝିଅ । ତାର ଜୀବନ କୃତ୍ରିମ । ସେ ବାହା ହେବ—ଗୃନ୍ଦକୁ । ବିଶ୍ୱାସ ହୁଏ ନାହିଁ ନିଜର ଭାବନାରେ । କିଏ ଏହା ବିଶ୍ୱାସ କରିବ ? କିଏ ଏପରି ପସନ୍ଦ କରିବ । ତଥାପି ସେ ଭାବେ ଦିନେ ସାହସ କରି କହିବ । ଦିନେ—

ପାନ ଠିକ୍ ହେଲା । ତାର ପରି ଗରିବ ମୁଣ୍ଡ । ଗଜ୍ଜବର ଭାବନା ପଡ଼ିଲା—ଧନ କାହିଁ ? ବାହାଘର ହେବ କିପରି ?

କୋଡ଼ିଏ ଏକୋଇଶ ବର୍ଷର ସୁନ୍ଦର ଟଭେଣ୍ଡା । ତାର କେହି ନାହିଁ । ଆଉ ବଜାରରେ ଶ୍ରେଷ୍ଠ ଦରଭଙ୍ଗା ଘରଟି । ପାଖ ଅଖରେ ସମସ୍ତେ ରହନ୍ତି ମୂଲିଆ । ବଡ଼ ଲୋକର ଧାପ ସେଠି ପଡ଼ି ନାହିଁ । ସେଇଠି ଗୃନ୍ଦର ବାହାଘର ହେବ । ଗୃନ୍ଦକୁ ସେ ସୁଖୀ କରିବ ଜୀବନ ଦେଇ ।

ଜଗଦୀଶ ବାବୁଙ୍କ କଟେର ଘରେ ଗଜ୍ଜବ କବଲା ସମ୍ପାଦନ କଲା । ପିତୃ ପୁରୁଷର ଭିଟଟି ସେ ବିକି କଲା ଶେଷକୁ । ବାପର କଥା ରଖି ପାରିଲା ନାହିଁ । ଯାଉ— । ଟଙ୍କା ନେଇ ଘରକୁ ଫେରିଲା । ଗୃନ୍ଦକୁ କିଛି କହିଲା ନାହିଁ । ସାତଦିନ ଭିତରେ ତାଙ୍କୁ ଘର ଛାଡ଼ି ଯିବାକୁ ହେବ । ଜଗଦୀଶ ବାବୁଙ୍କ ସଙ୍ଗେ ସେହି କରାର ।

ଗଜ୍ଜବର ଗୋଡ଼ ତଳେ ଲାଗୁ ନ ଥାଏ । ବଜାରକୁ ଯାହା ସେ କିଣି ଆଣିଥିଲା, ନିଜ ହାତରେ ଗୃନ୍ଦକୁ ନାଇ ଦେଲା । ଖଡ଼ୁ, କାଚ, ହାର, ନୂଆଶାଢ଼ୀ— । ଆଖି ପୂରାଇ ଗୃନ୍ଦକୁ ଗୃହଁଲା । କେଡ଼େ ସୁନ୍ଦର ତାର ଭଉଣୀ— ଏଇ ଗୃନ୍ଦଟି । ତୃପ୍ତି ଆସିଲା ମନରେ । ଗୃନ୍ଦ କିଛି ପଗୃରି ପାରିଲା ନାହିଁ । ଯାହାକୁ ସେ ଏତେ ଭଲ ପାଏ, ତାକୁ ସେ ଭୟ କରିଛି ସେହି ଦିନରୁ, ଯେଉଁଦିନ ସେ ବିରକ୍ତ ହୋଇ ତାକୁ ଥାପଡ଼ ମାରିଥିଲା ।

ଗୃନ୍ଦକୁ ପାଖରେ ବସାଇ, ତାର ପିଠିରେ ହାତ ବୁଲାଇ ସେ କଅଁଳେଇ କହିଲା, କାଲି ସଞ୍ଜ ଅଗରୁ ଆମେ ଏ ଘର ଛାଡ଼ି ଗୃଲିଯିବା ଲୋ— ।

ଗୃନ୍ଦ ଚମକି ପଡ଼ିଲା । ସାହସ କରି ପଗୃରିଲା, କାହିଁକି ?

ଗଜ୍ଜବ ଧୈର୍ଯ୍ୟ ଧରି କହିଲା, ଘରଟା ଜଗଦୀଶ ବାବୁଙ୍କୁ ବିକି କରି ଦେଇଛି ।

ଏଁ— ! ଗୃନ୍ଦ ଥକ୍କା ହୋଇଗଲା ।

ହସି ହସି ଗନ୍ଧର୍ବ କହିଲା, ହଁ ଲୋ, ବଡ଼ ଲୋକର କୋଠା ତଳେ ଗରିବ ଚଳିପାରେ ନାହିଁ । ତାଛଡ଼ା ଆମର ଏ ଘରଟା କଣ ହେବ ? କାଲି ଗ୍ରାଡ଼ ପହିର ଦିନ ତୋର ମଙ୍ଗନ—ସେଇଠି ହେବ, ଏଠି ନୁହେଁ ।

ଶୃନ୍ଦା ଆଉ ସମ୍ଭାଳି ପାରିଲା ନାହିଁ ନିଜକୁ । ଭାଇକୁ କୁଣ୍ଢାଇ ଧରି ଭେଁ କିନା କାନ୍ଦି ଉଠିଲା । ପିଠି ଆଉଁସି ଗନ୍ଧର୍ବ କାନ୍ଦଣା ସ୍ୱରରେ କହିଲା, କାନ୍ଦନା ଲୋ, ମୁଁ ବଞ୍ଚି ଥାଉଣୁ ତୋ ଆଖିରେ ଲୁହ ଦେଖିବି ନାହିଁ ।

ଜଗପ୍ରାଣ ବାବୁଙ୍କ ଦୋତାଲା ଉପରୁ ହସର ଲହରୀ ଛୁଟି ଆସିଲା । ବାଃ, ବନ୍ଦନା ଏଡ଼େ ସୁନ୍ଦର ବୋଲିପାରେ, ନାଚ ପାରେ ? ଚନ୍ଦ୍ରିକା ତାକୁ କୁଣ୍ଢାଇ ପକାଇଲା ।

ଅନନ୍ତ କିଛି ବୁଝି ପାରିଲା ନାହିଁ । ହଠାତ୍ ଶୃନ୍ଦାର ଏ କି ପରିବର୍ତ୍ତନ ! କେଡ଼େ ସୁନ୍ଦର ପଣ୍ଟିଏ ପରି ଦିଶୁଛି । ଶୃହିଁବାକୁ ଆଖିରେ ତାର ସଙ୍କୋଚ ନାହିଁ, ବିରସ ଭାବ, ମଉଳା ମୁହଁ, ଆଖିରେ ଲୁହ । ଜାଣିବାକୁ ପ୍ରାଣ ଛଟପଟ ହେଲା ।

ପଗ୍ଭରିବ ?

ପଗ୍ଭରି ପାରିଲା ନାହିଁ । ଭାବିଲା ଆଉଦିନେ ପଗ୍ଭରିବ ନିରୋଳା ବେଳରେ—

ପରଦିନ ଅନନ୍ତ ଝରକା ଖୋଲି ଗ୍ଭହିଁଲା । ଘରଗୁଡ଼ିକର କବାଟ ଖୋଲା ରହିଛି । ଯାହାକୁ ସେ ମନେ ମନେ ଖୋଜୁଥିଲା, ତାର ଦେଖା ଦର୍ଶନ ପାଇଲା ନାହିଁ । ତଥାପି ସେ ଗ୍ଭହିଁ ରହିଲା, କାଳେ ସେ ବାହାରି ଆସିବ କେଉଁଠୁ ।

## ଅବୋଧ

୧୯୨୭ ସାଲର କଥା । ଦେଖୁ ଦେଖୁ ଅଠାଇବର୍ଷ କଟିଗଲାଣି । ସେ ଆଜି କେଉଁଠି, କାହା ଘରଣୀ ମୁଁ ଜାଣେ ନାହିଁ । ଖବର ରଖିବାକୁ ମୁଁ କେବେ ଚେଷ୍ଟା କରି ନାହିଁ । ଅବିବାହିତ ଓ ବିବାହିତ ଜୀବନରେ କେତେ ଆଖିର ଇସାରାରେ କେବେ କେଉଁଠିକି ଟାଣି ହୋଇ ଯାଇଥିଲି ଭାବିବାକୁ ବସିଲେ ସହଜରେ ସବୁ କଥା ମନେ ପଡ଼େ ନାହିଁ । କେଉଁଠି ଆଦର କେଉଁଠି ଅପମାନ ପାଇଛି, କେଉଁଠି ଲୋକନିନ୍ଦା ସହିଛି, କେଉଁଠି ହୋଇଛି ହତାଶ ।

ସେତେବେଳେ ମୋର ବୟସ ଊଣେଇଶି । ସେହି ବର୍ଷ ପାଟଣା ବି: ଏନ୍: କଲେଜରୁ ଆଇ. ଏସ୍. ସି. ପରୀକ୍ଷା ଦେଇ ମୁଁ ପାସ୍ କରିଥାଏ । ବନ୍ଧୁ ମହଲରେ ମୋର ଟିକିଏ ସୁନାମ ଥିଲା—ମୁଁ ଭଲ ଅଙ୍କ ଜାଣେ । ପାସ୍ ପରେ ମୁଁ ଭାବନାରେ ପଡ଼ିଥାଏଁ । କଣ କରିବି, ବି. ଏସ୍. ସି. କି ଇଞ୍ଜିନିୟରିଂ ? ପାଟଣାରେ ପଢୁଥିଲେ ଯେଉଁ ସହପାଠୀମାନେ ସେମାନେ ତାଙ୍କର ବାଟ ଠିକ୍ କରି ନେଲେଣି କିନ୍ତୁ ମୁଁ ପାରି ନାହିଁ । ଗରିବ ଘରର ପିଲା । ମୋର ବଡ଼ଭାଇ ପାଟଣା ସେକ୍ରେଟେରିଏଟ୍‌ରେ ଅଳ୍ପ ଦରମାର କିରାଣୀ ।

ସେ ଦିନ ଶନିବାର । ଅପ୍ରେଲ ମାସର ଶେଷ ସପ୍ତାହ । ଭାରି ଗରମ ହେଉଥାଏ ଦିପହରେ । ମୋ'ର ଏକୁଟିଆ କୋଠରୀରେ ବସି ମୁଁ ଲେଖୁଥାଏ ଗୋଟିଏ ଗଳ୍ପ । ଆରଘରେ ପିଲା ଛନୋଟିଙ୍କୁ ନେଇ ନୂଆବୋହୂ ଶୋଇଥାନ୍ତି । ପାଟଣା ହାଇସ୍କୁଲ ଗେଟ୍ ପାଖରୁ ପଶ୍ଚିମମୁହାଁ ହୋଇ ଯେଉଁ ରାସ୍ତାଟି ଲମ୍ବି ଯାଇଛି, ତାରି ବାଁ ପାଖେ ଆମର ଘର—ପଦାରୁ କିଏ ଜଞ୍ଜିର ଖଡ଼ ଖଡ଼ କଲା । ବିରକ୍ତ ହୋଇ ଉଠିଲି । ଦାଣ୍ଡଘରକୁ ଯାଇ କବାଟ ଖୋଲିଲି । ମୁହଁ ଚମକି ଉଠିଲି ହଠାତ୍ । ଯାହାରି କଥା ଆଜି ମୁଁ ଲେଖୁଛି, ସେ ଓ ତାର ମା । ସେମାନେ ଘର ଭିତରକୁ ଆସିଲେ ।

ନୂଆଉ କବାଟ ଖୋଲିଲେ ।

ବାପ ମାଙ୍କର ସେଇ ଗୋଟିଏ ଝିଅ—ସଦ୍ୟ ଫୁଟିଲା ମଲ୍ଲୀଫୁଲ ପରି ସିଏ ସୁନ୍ଦର ଆଉ ହାସ୍ୟମୟୀ । ତାର ବାପା ସେକ୍ରେଟେରିଏଟ୍‌ର ଅନ୍ୟ ବିଭାଗରେ କାମ କରନ୍ତି—ଯେପରି ସେ ସ୍କୁଲକାୟ ତାଙ୍କର ବୁଦ୍ଧିଟା ବି କୁଆଡ଼େ ସେହିପରି । ଅଭିଜ୍ଞତା ବଳରେ ଉଠି ଉଠି କେତେ ଉପରକୁ ଗଲେଣି । ସେ ବଙ୍ଗାଳୀ ବ୍ରାହ୍ମ । କିନ୍ତୁ ମୋର ବନ୍ଧୁମହଲରେ ସେ ହୋଇଗଲେ ବିଦିତ କେବଳ ତାଙ୍କର ଏଇ ଚଉଦ ପନ୍ଦର ବର୍ଷର ଝିଅଟି ପାଇଁ । ବନ୍ଧୁ ମହଲରେ ତା ବିଷୟରେ ଅନେକ ଚର୍ଚ୍ଚା ହୁଏ । ଲୋକେ ଅନେକ କଥା କହନ୍ତି । ତାର ଦୁର୍ନାମ ରଟାନ୍ତି ।

ନୂଆଉ ସେମାନଙ୍କୁ ନେଇ ମୋରି ପଢ଼ାଘରେ ବସାଇଲେ । ତାର ମା ନୂଆଉଙ୍କର ଅନେକ ଦିନର ବନ୍ଧୁ, ଏଇ ପାଟଣାରେ । କେବେ କେବେ ସଞ୍ଜବେଳେ ଭାଇଙ୍କ ସଙ୍ଗେ ସେ ତାଙ୍କ ଘରକୁ ବୁଲି ଯାନ୍ତି । ସେ ମଧ୍ୟ ଆସନ୍ତି । ଅନେକ ଥର ଦେଖାହୁଏ । କଥାବାର୍ତ୍ତା କେବେ ହୋଇ ନାହିଁ ।

ଦାଣ୍ଡକବାଟ ବନ୍ଦକଲି । ଲେଖାଟା ତେଣେ ଅଧାହୋଇ ପଡ଼ିଛି । ଟେବୁଲ ଆଗରେ ଖଣ୍ଡେ ସପ ପାରି ଛନହେଁ ବସି ଗପ ଆରମ୍ଭ କରି ଦେଲେଣି । ସେ ଘର ଭିତରକୁ ପଶି ବହିଟା ଆଣିବାକୁ ମନ ହେଉଥିଲେ ମଧ୍ୟ ଗୋଡ଼ ଚଳୁନାହିଁ । ସେଇ ଯେଉଁ ଝିଅଟା ଅଛି, କେବଳ ତାରି ପାଇଁ ସଙ୍କୋଚ ।

ନୂଆଉଙ୍କୁ ମୋର ଭାରି ଡର । ସେ ମନକଥା ଜାଣିପାରନ୍ତି । ରାଗନ୍ତି ନାହିଁ । ହସନ୍ତି ନାହିଁ । କଟମଟ କରି ଚାହାନ୍ତି । ଭୟରେ ମୁଁ ଥରଉଠେ । ଦିନେ ତାଙ୍କ ଆଖିରେ ଧରା ପଡ଼ିଥିଲି । ଆମ ଘର ଆଗରେ ସେ ଯେଉଁ ବଙ୍ଗାଳୀ ବାବୁଟି, ବୟସ ପଚାଶ ପାଖେଇଲାଣି, ପାଞ୍ଚୋଟି ପିଲାର ବାପ ହୋଇ ଦୁଇ ବର୍ଷ ତଳେ ଘରଣୀଙ୍କୁ ହରାଇ ନୂଆ ବାହା ହୋଇଛନ୍ତି । ଯେ ଆସିଛି, ସେ ଷୋଡ଼ଶୀ—ସୁନ୍ଦରୀ । ସାବତ ପିଲାଙ୍କୁ ଦେଖିପାରେ ନାହିଁ । ଅଫିସରୁ ଫେରି ବାବୁ ପିଲାମାନଙ୍କର ଗୁହାରି ଶୁଣନ୍ତି । କବାଟ ବନ୍ଦକରି ସ୍ତ୍ରୀଙ୍କୁ ନିର୍ମମ ଛେଚନ୍ତି । ସେ କାନ୍ଦିଉଠେ । ଆମ ଘରକୁ ଶୁଣାଯାଏ । ପରଦିନ ନୂଆଉ ପଚାରନ୍ତି—କାହିଁକି କାନ୍ଦୁଥିଲି କି କାଲି ? ସେ ଉତ୍ତର ଦିଅନ୍ତି, ମୋର ପିଉସୀ ମରିଗଲେ । କେବେ ମରେ ତାଙ୍କର ପିଉସୀ, କେବେ ମାଉସୀ, ଖୁଡ଼ୀ, ବଡ଼ମା ।

ଦିନେ ନୂଆଉ ହସି ହସି କହିଲେ, ତମର ତ ବହୁତ ପିଉସୀ ମାଉସୀ ! ସେ ଅବାକ୍‌ହୋଇ ଚାହିଁଲା । ଆଖି ହେଲା ଛଳ ଛଳ । ସବୁ କହିଲା—ତାର ସବୁ ଦୁଃଖ—ମୁଁ ଏ ଘରେ ଥାଇ ଶୁଣୁଥାଏ । କବାଟ ଫାଙ୍କରେ ଚାହେଁ ସେହି ତରୁଣୀକୁ ।

ଦିନେ ନୂଆଉ କହିଲେ, କହେ। କବାଟ ଫାଙ୍କରେ କଣ ଦେଖୁଥିଲ ?

ଅପ୍ରସ୍ତୁତ ହୋଇ କହିଲି, ନାହିଁ ତ ।

ସେ କଟମଟ କରି ଚାହିଁଲେ ମୋ ମୁହଁକୁ । ମୋର ଗୁଣ୍ଠି ଥରି ଉଠିଲା । ତଳକୁ ମୁହଁ ପୋତିଲି । କହିଲେ, ଯା'ପଢ଼ । ପର ଘରର ଝିଅ ବୋହୂଙ୍କୁ ସେମିତି ଚାହିଁବ ନାହିଁ ।

ଧୀରେ ଧୀରେ ମଝିଘରେ ପଶିଲି । ପିଲା ଛଅୋଟି ନିଶ୍ଚିନ୍ତରେ ଶୋଇଛନ୍ତି । ଗୋଟିଏ ବୁଢ଼ୀ ଖେଳିଲା ମୁଣ୍ଡରେ । ସାନଟି—ବେଗଣୀ, ପୁଣି କାନ୍ଦୁରୀ । ବର୍ଷକର ଝିଅ । ନୂଆଉ ତାକୁ ବେଶି ଭଲପାନ୍ତି । ଆସ୍ତେ ଚିମୁଟି-ଦେଲି । ସେ ଉଠିଲା—କାନ୍ଦିଲା । ଭାବିଲି, ଏଥର ସେ ଆସିବେ । ତାଙ୍କ ସଙ୍ଗେ ଆଗନ୍ତୁକା ଦୁଇଜଣ ମଧ୍ୟ ଆସିବେ । ମୁଁ ମୋ ପଢ଼ାଘରକୁ ଯିବି ।

ନୂଆଉ ଡାକିଲେ, ବିଶୁ, ପିଲାଟାକୁ ଉଠାଇଲ ? ଦେଇଯା—

ଓଃ—ତାଙ୍କୁ ମୁଁ କେବେ ଜିତି ପାରିନାହିଁ । ମୋର ସବୁ କଥା ସବୁ ଚାଲାକି ସେ ଧରି ପକାନ୍ତି । ପିଲାଟା ବହୁଧରି କାନ୍ଦିଲା । ନ ନେଇ ଉପାୟ ନାହିଁ । ତାକୁ ନେଇ ନୂଆଉଙ୍କୁ ଦେଲି । ଚଉଦ ପନ୍ଦରବର୍ଷର ଯେଉଁ ଝିଅଟି—ଅମଳା ତାର ନା । ଆଖି ଟେକି ମତେ ଚାହିଁଲା । ତାର ମା ମଧ୍ୟ । ଦୂରରୁ ଦେଖିବାକୁ ଯାହାକୁ ଲୋକ ଉହାଳ ବକାଳ ହେଉଥାଏ, ଥରଟିଏ ଚାହିଁ ଦେବାକୁ ଖୋଜେ କେତେ ଆଗ, ପାଖରେ ଦେଖିଲେ ଆଖି ଟେକି ହୁଏନାହିଁ । ପଳାଇ ଆସିବାକୁ ମନ ହୁଏ ।

ନୂଆଉ କହିଲେ, ପିଲାଟାକୁ କେମିତି ଲାଗୁଛି ? ହସିଲେ । ଆଉ ଦୁଇଜଣ ମଧ୍ୟ ମୁଣ୍ଡ ହଲାଇ ହସିଲେ । ରାଗହେଲା ମନରେ । କିଛି କହିପାରିଲି ନାହିଁ ।

ଅମଳାର ମା କଁଳେଇ କହିଲେ, ବସ ।

ନୂଆଉଙ୍କ ଦୃଷ୍ଟିରେ ଅନୁମତିର ସଙ୍କେତ ପାଇଲି । ଟିକିଏ ଗୁଡ଼ି ବସିଲି ।

ଅମଳା ସଙ୍ଗେ ସେଇ ଥର ମୋର ପ୍ରଥମ ଦେଖା । ଯେତେବେଳ ଯାଏ ସେଠାରେ ବସିଲି, ଅମଳା ପାଟି ଖୋଲିନାହିଁ । ତାର ମା ଓ ନୂଆଉ କେତେ ଆଉର କେତେ କଥା ଗପିଲେ । ତାଭିତରେ ବେଶି ହେଉଛି ଘରକରଣା କଥା ।

ପାଅଁଟା ବାଜିଲା । ନୂଆଉ ସେମାନଙ୍କର ଚର୍ଚ୍ଚାକଲେ । ସେକ୍ରେଟେରି- ଏଟ୍‌ରୁ ଜଣ ଜଣ ହୋଇ ଅମଲା ଫେରିଲେ । ସେମାନେ ଯିବାକୁ ବାହାରିଲେ । ନୂଆଉଙ୍କର ଆଦେଶ ପାଇ ତାଙ୍କୁ ଛାଡ଼ଦେଇ ଆସିବାକୁ ଗଲି ।

ବାଟରେ କଥାଭାଷା । ଅମଳାର ମା କେଡ଼େ କୋମଳ, ସ୍ନେହଭରା ତାଙ୍କର କଥା । କହିବାର ଭଙ୍ଗୀରେ ଶତ୍ରୁକୁ ମଧ୍ୟ ଆପଣାର କରିନେବେ । ଅମଳା ଭଲ ପଢ଼େ, ଅଙ୍କରେ ଦୁର୍ବଳ । ତା ବାପା ଅଜୟବାବୁ ଇତିହାସରେ ଗ୍ରାଜୁଏଟ୍ । ଅଙ୍କ ଜଣା ନାହିଁ । ମାଷ୍ଟର ରଖି ଝିଅକୁ ପଢ଼ାଇବାକୁ ତାଙ୍କର ରୁଚି ପଡାଉ ନାହିଁ । ତାଙ୍କର ଧାରଣା, ଟିଉସନ ମାଷ୍ଟର ଗୁଡ଼ା ଭଲ ନୁହନ୍ତି । ଅଜୟ ବାବୁ କଲିକତାରେ ତାଙ୍କୁ ପଢ଼ାଉଥିଲେ । ପଢ଼ା ତ ହେଲା ନାହିଁ, ଶେଷକୁ ବିବାହ ହେଲା । ତାଙ୍କର ଅନ୍ୟ ଦୁଇ ଭଉଣୀ କେଡ଼େ ଭଲରେ ଅଛନ୍ତି । ଜଣେ ଆଇ. ସି. ଏସ୍. ଅଫିସରଙ୍କ ଘରଣୀ । ସେ ପଞ୍ଜାବୀ, ଲାହୋରବାସୀ । ଆଉ ଜଣକ ଭଜାଗା- ପଞ୍ଚମରେ ଥାନ୍ତି—ସେମିତି ଜଣେ ବଡ଼ ଅଫିସରଙ୍କର ହାତ ଧରିଛନ୍ତି—ତେଲେଙ୍ଗା । ଏକା ସେ— । ତେବେ ତାଙ୍କ ମନରେ ଦୁଃଖ ନାହିଁ । ଅଜୟବାବୁ ଭଲ ମଣିଷ । ଅମଳାର ଅଙ୍କ ଦେଖିବାକୁ ସେ ଅକ୍ଷମ । ମୋର ତ ସମୟ ଅଛି । ଛୁଟି, କାମ ନାହିଁ । ସେ ତ ମୋତେ ପୁଅ ପରି ଦେଖନ୍ତି । ଭଲପାନ୍ତି । ଗୃହଟା ପରେ, କମ୍ବା ସନ୍ଧବେଳେ କେବେ କେମିତି ଅମଳାର ଅଙ୍କ ଦେଖିଲେ ଭଲ ହୁଅନ୍ତା । ଅମଳା ମୋର ଭଉଣୀ—ଇତ୍ୟାଦ ।

ତାଙ୍କ ଘରେ ପହଞ୍ଚିଲା ବେଳକୁ ଅଜୟ ବାବୁ ଆସି ପହଞ୍ଚିଥିଲେ । ପ୍ରଣାମ କଲି । ସେ ମୁଣ୍ଡ ହଲାଇ ହସିଲେ । ଘଣ୍ଟାଟିଏ ତାଙ୍କ ଘରେ ରହିଲି । ଜଳଖିଆ, ଚା, ଗପ । ଅମଳା ମଧ୍ୟ ଗଳ୍ପରେ ଯୋଗ ଦେଇଥିଲା । ଏଣୁ ତେଣୁ ଦୁଇ ଚାରି ପଦ କଥା ଭାଷା ମଧ୍ୟ ତା ସଙ୍ଗେ ହେଲି । ବିଦାୟ ନେଲି । ଅମଳାର ଶେଷ କଥା— କେବେ ଆସିବେ ?

ଉତ୍ତର ଦେଲି—ଆସିବ ।

ମନ ଆନନ୍ଦରେ ଫେରିଲି । ଆଜି ମୁଁ ଗର୍ବ କରୁଛି । ଯେଉଁ ଅମଳାକୁ ଦେଖିବାକୁ ମୋର ବନ୍ଧୁମାନେ ଛଟପଟ ହୁଅନ୍ତି, ଦରକାର ନ ଥିଲେ ମଧ୍ୟ ତାଙ୍କର ଘରଆଗ ରାସ୍ତା ବାଟେ ବାରମ୍ବାର ଠେଲି ମାରନ୍ତି—କାଳେ ଝରକାର ପରଦାଟା ଟିକିଏ ଖସି ଯାଇଥିବ, ସେଇ ବାଟେ ଦେଖାହେବ । ସେହି ଅମଳା ମୋର ବନ୍ଧୁ ହେଲାଣି । ମୁଁ ଭାଗ୍ୟବାନ୍ ।

ମୋର ବନ୍ଧୁମାନଙ୍କର ଧାରଣା—ଅମଳା ଚର୍ଦୋନୀବାଗର ଉଦୀୟମାନ ଚନ୍ଦ୍ର । ସୁନ୍ଦର, ନିର୍ମଳ । ଗାର୍ଲସ୍କୁଲର ଗାଡ଼ିପଛରେ ଛ ମାସ କାଳ ଧାଇଁ ଧାଇଁ ଫଟିକର ମୁଖାର୍ଜି ଓ ଅଜିଦ୍ ହତାଶ ହୋଇ ଦୀର୍ଘଶ୍ୱାସ ଗ୍ରହିଥିଲେ । ଦିନେ ଅନ୍ଧାର ରାତିରେ କେଡ଼େ ସାହସରେ ଫଟିକର ଗଲା ଝରକା ପାଖକୁ । ଅଧା ମୁକୁଳା ପର୍ଦାରି ଅନ୍ତରାଳରେ ପ୍ରାଣ ଭରି ଅମଳାର ଅମଳ ରୂପକାନ୍ତି ପାନ କରିବା ତାର ଇଚ୍ଛା । ଅଜିଜ୍ ଦୂରରେ ଠିଆ ହୋଇଥାଏ । କିନ୍ତୁ, ଅହା, ତାର ଭାଗ୍ୟରେ ଥିଲା ଅମଳାର କୁଳୁକୁଳିଆ ପାଣି ।

ବନ୍ଧୁ ଦୁହେଁ ହତାଶ ହୋଇ ଫେରିଥିଲେ ସିନା, ଫଟିକର ଜୀବନରେ ଅମଳାର ସେହି ଅଜଣା କୁଳୁକୁଳିଆ ପାଣି ଉପରି ଗୌରବର ଟିକା ପିନ୍ଧାଇ ଦେଇଥିଲା । କେତେ ବନ୍ଧୁଙ୍କ ଆଗରେ ସେ କଥା ସେ ଗପିଛି । ଶୁଣି ଶୁଣି ବନ୍ଧୁ ରାଜେନ୍ଦ୍ରପ୍ରସାଦ ନଖରେ ହାତ ପକାଇ ପ୍ରତିଜ୍ଞା କରିଥିଲା ବନ୍ଧୁ ଉପରେ ଅପମାନର ପ୍ରତିଶୋଧ ସେ ନେବ । ଅମଳାର ଫଟୋ ଗଦାନୀବାଗର ପ୍ରତି ଆଲବମ୍ ଖୁମ୍ବରେ ଲାଗିବ ।

ଦୁଇମାସ କାଳ ସନ୍ଧ୍ୟା ପରେ ହାତରେ ଫଟୋ ଯନ୍ତ୍ର ଧରି ସେ ସେଇ-ବାଟରେ ଠେଲି ମାରୁଛି । ପରୀକ୍ଷା ପାଖେଇ ଆସିଲା ତଥାପି ତାର ଝୁଙ୍କ ଭାଙ୍ଗିଲା ନାହିଁ । ମୁଁ ମଧ୍ୟ ଅନେକଥର ତାର ସଙ୍ଗରେ ଯାଇଛି । ଦିନେ ସୁଯୋଗ ମିଳିଲା । ଅନ୍ଧାର ରାତି । ଝରକାରେ ପରଦା ନାହିଁ । ଟେବୁଲ ସେପାଖେ ଅମଳା ବସି ଏକଧ୍ୟାନରେ ପାଠ ପଢ଼ୁଛି । ଆଗରେ ଜଳୁଛି ଲ୍ୟାମ୍ପ । ଟେବୁଲ ଉପରୁ ମୁଣ୍ଡ ଆଖି ଉଠାଉ ନାହିଁ । କି ସୁନ୍ଦର ! ରାଜେନ୍ଦ୍ର ତନ୍ମୟ ହେଲା । ମୋ ହାତକୁ ଟାଣିନେଇ ଚୁମ୍ବନ କରି କହିଲା—ହାୟରେ ଦୋସ୍ତ !

ଛପି ଛପି ଝରକା ପାଖକୁ ଗଲା । ଟିକିଏ ଦୂରରୁ—ମନେ ମନେ—ଏକ ଦୁଇ ତିନ । ଆହୁରି ଥରେ—ଆହୁରି ଥରେ । ଧାଇଁ ଆସିଲା ମୋ ପାଖକୁ । ଏଥର, ଏଥର ଯିବ କୁଆଡ଼େ ?

ଫଟୋଗୁଡ଼ିକ କଳାହୋଇ ଯାଇଛି । କିଛି ଜାଣି ହେଉ ନାହିଁ । ତଥାପି ରାଜେନ୍ଦ୍ର ମୁର୍ହି ଟାଣିକରି କହେ, ଆରେ ଏଇ କଳା ପର୍ଦା ଭିତରେ ସେ ଛପି-ରହିଛି । ଲଗାଏ ମୁହଁରେ, ରଖେ ଗୁଞ୍ଜି ପକେଟରେ । ସେଇଟା ତାର ସିକ୍ରେଟ୍ ।

ଅନ୍ୟ କେହି ବୁଝନ୍ତି ନାହିଁ, ବୁଝେ ସେ । ହତାଶାଭିତରେ ଅନୁଭବ କରେ ତୃପ୍ତି ।

ସେଇ ଅମଳା—ମୋର ଅତି ପାଖରେ—ହାତପାହାନ୍ତରେ—ଯେବେ ଇଚ୍ଛା ଦେଖାହେବ । କଥାଭାଷା—

କିନ୍ତୁ ନୂଆଭଉଙ୍କର ତୀକ୍ଷ୍ଣ ଆଖିକୁ ମାତ୍ରେ ଡର । ସେ ସବୁ ଠଉରେଇ ନେବେ । ନା, ତାଙ୍କୁ କହିବ ନାହିଁ । କହିବ ଯଦି ଯାଉ ଦିନାକେତେ—

ଅଜୟ ବାବୁଙ୍କ ଘରେ ମୋର ପୂର୍ଣ୍ଣ ସ୍ୱାଧୀନତା—ଯେପରି ମୁଁ ସେହି ଘରର ଜଣେ ଲୋକ । ଯେତେବେଳେ ଇଚ୍ଛା ସେତେବେଳେ ମୋର ଅବାଧଗତି । ତେବେ, ଜାଣି ଜାଣି ମୁଁ ସବୁବେଳେ ଆସେ ନାହିଁ । ଆଗ୍ରହ ହୁଏ । ଡରୁଥାଏ ମନରେ, କାଳେ କିଏ କଣ ଭାବିବ, କାଳେ କିଏ କଣ କହିବ ? କାଳେ କେହି ବନ୍ଧୁ ଜାଣିନେବେ, ଥଟ୍ଟା କରିବେ ।

ଠିକ୍ ସଞ୍ଜ ଆଗରୁ ମୁଁ ଆସେ । ଅଗଣାରେ ପଡ଼ିଥାଏ ଯେଉଁ ଟେବୁଲ୍‌ଟି, ତାର ଚାରିପାଖେ ଅମଳା ଚାରିଖଣ୍ଡି ଚଉକି ପକାଏ । ସାମନା ସାମନି ହୋଇ ବସନ୍ତି ଅଜୟ ବାବୁ ଓ ତାଙ୍କର ସ୍ତ୍ରୀ । ସାମନା ସାମନି ହୋଇ ବସୁ ମୁଁ ଓ ଅମଳା । ବିସ୍କୁଟ୍—କେକ୍—ଚା—ଗପ ପଡ଼େ କେତେ ଅଡ଼ର, କେତେ କାଳର । ଅଜୟ ବାବୁ ଗପୁଡ଼ି ଲୋକ । ତାଙ୍କ ଛାତ୍ର ଜୀବନର ସବୁ କଥା ଗପନ୍ତି । କିପରି ଅମଳାର ମାଙ୍କ ସଙ୍ଗେ ପ୍ରଥମେ ତାଙ୍କର ଦେଖା । କିପରି—ପାଟିରେ ବାଟ୍ଟୂଳି ବାଜେ ନାହିଁ । ନିଃସଙ୍କୋଚ । କେତେବେଳେ କିଛୁ କିଛୁ ସେ ପରିସ୍ଥିତି ଭୁଲିଯାନ୍ତି । ଅମଳାର ମା ଉଠି ଯାଆନ୍ତି କହି କହି—ଆହା, କଣ ଯେ ଗପୁଛ ଏଣୁ ତେଣୁ । ପିଲା ଦିଟା ବସିଛନ୍ତି ପାଖରେ । ଦିଶୁନାହିଁ କି ?

ଅମଳାର ମୁହଁ ନାଲି ହୋଇ ଉଠେ । ମୁଁ ଚାହିଁପାରେ ନାହିଁ ତା ଆଖିକି । ଅଜୟ ବାବୁ କଥା ବନ୍ଦ କରନ୍ତି । ଏତିକି କହି—ଦୁଇ ଚାରିମାସ ତମର ମାଷ୍ଟରି କରିଥିଲି । ସାରା ଜୀବନ ତମର ଛାତ୍ର ହେବାକୁ ପଡ଼ିଲା । ଅମଳାର ମା ଆର ଘରୁ କହି ଉଠନ୍ତି, ବେଶ୍ ମାଷ୍ଟରି କରିଥିଲ । ଦରମା ତ ଯାହା ନେଲ, ତା ସାଙ୍ଗକୁ—

ବୁଢ଼ା ରସିକତା କରି କହନ୍ତି—ତା ସାଙ୍ଗକୁ ତମର ମନଟା ।

ଝିଅ ଆଗରେ, ଅପରିଚିତ ନ ହେଲେ ବି ଜଣେ ଅଜଣା ଅଶୁଣା ଛାତ୍ର ଆଗରେ ଯେତେବେଳେ ଅଦ୍ୟ ଯୌବନର ଇତିହାସ ସେ ବଖାଣନ୍ତି, ସତେକି ସେ ନିଜକୁ ଓ ଦୁନିଆକୁ ଭୁଲିଯାନ୍ତି । ହାରମୋନିୟମ୍ ଆସେ । ଅମଳା ବୋଲେ ଗୀତ, ଭୁଲ ହେଲେ ମା ଆସି ବତାଇ ଦିଅନ୍ତି । ନିଜେ ବୋଲନ୍ତି । ଅମଳାର କଣ୍ଠ ସୁନ୍ଦର; କିନ୍ତୁ ମୋତେ ମୁଗ୍ଧ କରେ ତାର ଗାଇବାର ଭଙ୍ଗୀ । ତା'ର ସୁନ୍ଦର ଉଜ୍ଜ୍ୱଳ ଆଖି ଦିଓଟିର ପ୍ରାଣ ପୁଲକା ମନ ପରଶା ଗତି । ତାର ମାଙ୍କର ସ୍ୱର

ବୀଣା-କଣା । ସ୍ତବ୍ଧ ହୁଏ । ଗୀତ ଶେଷ ହୁଏ, କିନ୍ତୁ ରାଗିଣୀ ଝଙ୍କୃତ ହେଉଥାଏ କାନରେ ।

ଅଜୟ ବାବୁ ବିହ୍ୱଳ ହୋଇପଡ଼ନ୍ତି । କହନ୍ତି, ବୋଲନା ସେଇ ଯେ ଗୀତଟା—ପରଶ ବର୍ଷତଳେ—ତୁମର କୋଠା ଉପରେ ଗାଇଥିଲ, ଯାହାକୁ ଶୁଣି ମୁଁ ତନ୍ମୟ ହୋଇଥିଲି—ଯେଉଁ ରାଗିଣୀ ମାଷ୍ଟର ଓ ଛାତ୍ରର ଦଉଡ଼ି ଆମ୍ଭାକୁ ବାନ୍ଧି ପକାଇଛି—

ତୁମେ କ'ଣ ପାଗଳ ? ତେମେ ଅନ୍ଧ ?—ଉଠି ଯାଆନ୍ତି ।

ପାଠ ଆରମ୍ଭ ହୁଏ ଘର ଭିତରେ । କେବଳ ଅଙ୍କ । ଅମଳା ଇଣ୍ଟେଲିଜେଣ୍ଟ । ଥରେ ବତାଇ ଦେଲେ ସେ ମାଡ଼ିଯାଏ । ମୁଁ ପାଖରେ ବସି ତାକୁ ଦେଖୁଥାଏ । ଦିନେ ଦିନେ ଅଜୟ ବାବୁ ଓ ତାଙ୍କର ସ୍ତ୍ରୀ ଆମକୁ ଏକୁଟିଆ ଛାଡ଼ି ବୁଲି ବାହାରନ୍ତି । ନିଃସଙ୍କୋଚରେ ଅମଳା ମୋର ପାଖରେ ବସି ପଡ଼େ । ଦୁହେଁ ଆମେ ଗଳ୍ପ କରୁ । ପରସ୍ପରକୁ ଚାହିଁ ହସୁ । ମନଭିତରେ ନିଆଁ ଜଳେ । କଣ ଯେପରି କହିବାକୁ ମନ ହୁଏ । ଅମଳାର ମୁହଁକୁ ଚାହିଁ, ପାଟି ଖୋଲେ ନାହିଁ ।

ଆଠଟା ବାଜେ । ମୁଁ ଫେରେ ।

ନୂଆଜେ ପଚାରନ୍ତି, ଏତେ ଡେରିଯାଏ କେଉଁଠି ଥିଲ ? କହେ, ସିନ୍ହା ଲାଇବ୍ରେରୀରେ ପଢୁଥିଲି । ଦିନେ ଦିନେ କହେଁ, ଅଜୟ ବାବୁଙ୍କ ଘରେ ଥିଲି । ସେ ଗୋଟିଏ ଶ୍ରେଷ୍ଠ ହୁଁ କରନ୍ତି । ସାମାନ୍ୟ ହସନ୍ତି । ମୋତେ ଡରମାଡ଼େ—ସେ ସତେକି ମୋ ପେଟ ଭିତରର କଥା ଜାଣି ପାରନ୍ତି । ମୋର ପଛ ଛପି ଛପି ମୋର ପଢ଼ାଘରେ ପଶେ । ଭାଇ ଦେଖନ୍ତି । କହନ୍ତି, ଆରେ ଶୁଣିଲଣି, ଅଜୟ ବାବୁ ବଶ୍ମକୁ ଭାରି ପ୍ରଶଂସା କରୁଥିଲେ ।

ନୂଆଜଙ୍କର ସେଇ ପଦଟିଏ କଥା—ହୁଁ ।

ଅଜୟ ବାବୁଙ୍କ ଘରେ ମୋର ଯେ ସ୍ୱାଧୀନତା, ସେ ଖବର ମୋର ବନ୍ଧୁମାନେ କେହି କେହି ପାଇଲେଣି । ମୋତେ ପଚାରିଲେ ମୁଁ ଭ୍ରୁରୁଡ଼ୁମାରେ । ମୋର ତରୁଣ ମନରେ ଅମଳାର ରୂପ, ବ୍ୟବହାର, ସବୁ ହୋଇ ଗୋଟାଏ ସ୍ୱପ୍ନମୟ ଆବେଶ ଆଣିଦେଇଥିଲା । ମନରୁ ତାର ଛାଇକୁ ତଡ଼ି ଦେବାକୁ ଚେଷ୍ଟା କଲେ ମଧ୍ୟ ମେ ଯାଉ ନ ଥିଲା । ଇଚ୍ଛା ହେଉଥିଲା ସବୁବେଳେ ତାର ପାଖରେ ବସିଥାନ୍ତି କି ? ଇଚ୍ଛା ହେଉଥିଲା ଅଜୟ ବାବୁଙ୍କର ଜୀବନର ଇତିହାସକୁ ନୂଆକରି ଅଭିନୟ କରିବାକୁ । ମୋର ଭାବନାଟା ହୋଇଥିଲା ଗୋଟାଏ ରଙ୍ଗମଞ୍ଚ, ଆଉ ଅମଳା ତହିଁରେ ଏକମାତ୍ର ନର୍ତ୍ତକୀ !

ଅନ୍ୟମନସ୍କ ହୋଇଥିଲି, ଭାବୁଥିଲି ସବୁବେଳେ । ଗୋଡ଼ କାଢ଼ି ପଦାକୁ ଆସିଲେ ଗୋଡ଼ ଅପେ ଅପେ ଗତିକରେ ଅମଳା ଘରକୁ । ଅଧବାଟରେ ହୋସ୍ ହୁଏ । ବାଟ ଭାଙ୍ଗେ ।—ଏହାର ନାମ କଣ ପ୍ରେମ ? ପ୍ରେମ କରିବାର ଅଧିକାର

ମୋର ଅଛି ? ସମ୍ବଳ ମୋର ଅଛି ? ବୟସ କଣ ହେଲଣି ? ଯୋଗ୍ୟତା ?—ମୋ ପ୍ରଶ୍ନର ଉତ୍ତର ମୁଁ ଖୋଜି ପାଏନାହିଁ ।

ମୁହଁରେ ଯେତେ କଥା କହିବାକୁ ଅଗରୁ ମୁଁ ସ୍ଥିର କରି ଯାଇଥାଏ, ଅମଳାକୁ ଦେଖିଲେ ସବୁ ଭୁଲିଯାଏ । ମନେ ପଡ଼ିଲେ ମଧ୍ୟ କହିବାକୁ ସାହସ ହୁଏ ନାହିଁ । କେତେ ଭାବି ଚିନ୍ତି ଶେଷକୁ ଥରିଲା ହାତରେ ଲେଖିଲି ଖଣ୍ଡେ ଚିଠି । କଣ ଲେଖିଲି ଆଜି ମୋର ମନେ ନାହିଁ । •ଚିଠି ଖଣ୍ଡି ପକେଟରେ ରଖି ସେଦିନ ଅମଳା ଘରକୁ ଗଲି । ଘର ଭିତରକୁ ପଶିଲା ବେଳକୁ ଗୋଡ଼ ଥରି ଉଠୁଥାଏ, ଯେପରି ମୁଁ କଣ ଚୋରି କରିବାକୁ ଆସିଛି । ଇଚ୍ଛା ହେଉଥାଏ ପଦାକୁ ଯାଇ ଚିଠି ଚିରି ପକାଇବି । ପୁଣି ଭାବେ, ନାହିଁ କାଲେ ସେ ବି ମୋତେ ଲଭ୍ କରୁଥିବ । ବଡ଼ କଷ୍ଟରେ କେଡ଼େ କୌଶଳରେ ଅଙ୍କ ବହି ମଝିରେ ଚିଠିଖଣ୍ଡି ରଖି ଦେଇ ଆସିଲି । ପଦାକୁ ଆସି ଦୀର୍ଘଶ୍ୱାସ ଛାଡ଼ିଲି । ଆଉ ଯାଇ ପାରିଲି ନାହିଁ । ମୋର ମୁଣ୍ଡ ଘୂରିଗଲା । ଆରେ ମୁ କଣ କଲି ସତେ । ଯଦି ଧରାପଡ଼େ ? କଣ ସେମାନେ ଭାବିବେ ? ସେମାନଙ୍କର ସ୍ନେହର କଣ ଏଇ ପ୍ରତିଦାନ ମୁଁ ଦେଲି ?

କାନ୍ଦି ମାଡ଼ିଲା । ଆଖିରେ ଭରିଲା ଲୁହ । ମୁଣ୍ଡର ବାଳ ଛିଣ୍ଡାଇ ପୁଣି ଫେରିଲି ଅମଳାର ଘରକୁ । ନା ! ନିଶ୍ଚୟ ଚିଠିଖଣ୍ଡି ଫେରାଇ ଆଣିବି । ଅମଳାର ଘରେ ସବୁ ଅଲୁଅ ଲିଭିଲାଣି । ଶୋଇଲେଣି । କଣ କରିବି ବୁଦ୍ଧି ଦିଶିଲା ନାହିଁ । କଣ ଲେଖିଥିଲି ମନେ ପକାଇବାକୁ ଚେଷ୍ଟା କଲି । ମନେ ପଡ଼ିଲା ନାହିଁ । ଫେରିଲି ଘରକୁ ।

ସାତୋଟି ଦିନ କି ଯନ୍ତ୍ରଣା ମୁଁ ଅନୁଭବ କରିଛି, ଭାଷାରେ ପ୍ରକାଶ କରି ପାରୁନାହିଁ । ସବୁବେଳେ ମନେ ହେଉଥାଏ, ଯେପରି ଅଜୟ ବାବୁ ଚିଠିଖଣ୍ଡି ନେଇ ଆସିବେ । ଭାଇଙ୍କୁ ଦେଖାଇବେ । ନୂଆଉ ଜାଣିବେ । କି ଲଜ୍ଜା ! କାହା ଆଗରେ ମୁହଁ ଦେଖାଇବି ?

ସାତୋଟି ଦିନ ମୁଁ ଘରୁ ବାହାରି ନାହିଁ ।

ଶନିବାର ସଞ୍ଜରେ—

ଅଜୟ ବାବୁ ମୋ ନାଁ ଧରି ଡାକିଲେ । ଭାଗ୍ୟକୁ ଘରେ ଭାଇ ନ ଥାନ୍ତି । ମୋର ଛାତି ଉଠୁଥାଏ ପଡ଼ୁଥାଏ । କେଡ଼େ କଷ୍ଟରେ କବାଟ ଖୋଲି ପଦାକୁ ଆସିଲି । ପ୍ରଣାମ କଲି ।

ସେ ହସିଲେ । କହିଲେ, କି ବାବୁ, ତୁମର ଦେଖା ନାହିଁ ଯେ ? ତୁମର ମାଉସୀ କହି ପଠାଇଲେ ଡାକି ଦେବାକୁ । ଅସ । ମନା କରି ପାରିଲି ନାହିଁ । ଗଲି । ହାଣମୁହଁକୁ ଗଲାପରି ଲାଗୁଥାଏ । କାଲେ—

କିଛି ପରିବର୍ତ୍ତନ ଦେଖିଲି ନାହିଁ । ଗପ, ଗଳ୍ପ, ଗୀତ । ଆନନ୍ଦ ସବୁ ଆଗ ପରି । ଆଦର । ଅମଳାର ସେମିତି ହସିଲା କଥା । ବିଶୁଭାଇ ଡାକ । ନିଖାଦ ଗୃହିଣୀ ।

ସ୍ୱପ୍ନ ନୁହେଁ ତ ?

ଦିନ ପରେ ଦିନ ଗଡ଼ିଗଲା । ପୂର୍ବ ପରି । ବରଂ ଅମଳା ଏଥର ହାତଧରି ଡାକେ । ବିଜୁଳି ଛୁଟାଏ ରକ୍ତରେ । ଆସ ବିଶୁଭାଇ ଅଙ୍କ କରିବା । ଏତେ କଣ ଗଳ୍ପ ଶୁଣୁଛ—? ଭାବେ, ଚିଠିଟା ବୋଧହୁଏ ହଜିଗଲା । ରକ୍ଷା । ମନରୁ ଦୁଶ୍ଚିନ୍ତା ଗଲା । ତଥାପି, ଅମଳା ପ୍ରତି ମୋହ ମନରୁ ଗଲା ନାହିଁ ।

ଦିନେ ସନ୍ଧ୍ୟାରେ—ଆମ ଦୁହିଁଙ୍କୁ ଏକାଠି ଛାଡ଼ି ଅଜୟ ବାବୁ ଓ ତାଙ୍କର ସ୍ତ୍ରୀ ବୁଲି ବାହାରି ଗଲେ । କେଇଖଣ୍ଡି ଅଙ୍କ ଶେଷକରି ଏଣୁ ତେଣୁ ଗଳ୍ପ କରୁଥାଉଁ । ମନ ଛକପକ ହେଉଥାଏ ଗୋଟାଏ କଥା ପଚାରି ହେବାକୁ ।

କହିଲି, ଅମଳା, ଗୋଟାଏ କଥା ପଚାରିବି । ସାହସ ହେଉନାହିଁ ।

ଯେପରି ଆଶ୍ଚର୍ଯ୍ୟ ହୋଇ ମୋ ମୁହଁକୁ ଚାହିଁଲା । କଣ ଭାବି ଉତ୍ତର ଦେଲା ପ୍ରଶ୍ନରେ—; ସାହସ ହେଉ ନାହିଁ କାହିଁକି ?

ରହି ରହି କହିଲି, ମୁଁ ଗୋଟାଏ ଭୁଲ କରିଛି ।

ଅଙ୍କ ? ସେ ହସିଲା ।

କହିଲି, ବିଦ୍ରୁପ କରୁଛୁ ? ମୁଁ ତୋ ପାଖରୁ କ୍ଷମା ଚାହେଁ ।

ଚମକି ଉଠିଲା ପରି ସେ କହିଲା, କ୍ଷମା ମୋ ପାଖରୁ ? ଉଠି ଠିଆ ହେଲା । ମୋର ହାତ ଧରି କହିଲା, କହ ବିଶୁଭାଇ, ମୁଁ କଣ ଅପରାଧ କରିଛି ତମ ପାଖରେ—ତାର ଆଖି ଛଳ ଛଳ ହେଲା ।

ମୁଁ କୁଣ୍ଠିତ କଣ୍ଠରେ ଧୀରେ ଧୀରେ କହିଲି, ତୋ' ପାଖକୁ ମୁଁ ଗୋଟାଏ ଚିଠି ଲେଖିଥିଲି— ।

ଅବିକୃତ ସ୍ୱରରେ, ଓଠରେ ହସ ଚମକାଇ, ସେ କହିଲା—ପାଇଛି, କିନ୍ତୁ କାହିଁକି ଆପଣ ଚିଠି ଲେଖିଲେ ?

ମୋର ଭୁଲ୍ ହୋଇଛି ଅମଳା !

ଭୁଲ୍ ହୋଇଛି ବିଶୁଭାଇ ?

ସେଥିପାଇଁ ମୁଁ କ୍ଷମା ଚାହୁଁଛି । କଣ ମନେ ହେଲା, କେତେ ଦିନ ନିଜ ଭିତରେ ନିଜେ ମୁଁ ଯୁଦ୍ଧକରି ହାରିଲି । ଚିଠି ଖଣ୍ଡେ ଲେଖି ତୋର ଅଙ୍କ ବହିରେ ରଖିଦେଲି । ନିଜର କାର୍ଯ୍ୟ ପାଇଁ ମୁଁ ଅନୁତାପ କରୁଛି ।

କିଏ ଯେପରି ମାଡ଼ ମାରିଲା ପରି ସେ ଚଉକିରେ ବସି ପଡ଼ିଲା । ଦୁଇ ହାତରେ ମୁହଁ ଘୋଡ଼ାଇ ସେ କାନ୍ଦିଲା । ସେହି କାନ୍ଦଣା ସ୍ୱରରେ କହିଲା, ଆପଣ ଅନୁତାପ କରୁଛନ୍ତି ? ଆପଣ ତେବେ ଏ କଥା ମିଛରେ ଲେଖିଥିଲେ ?

ସେ ଚଉକିରୁ ଉଠିଲା । ଆଖିର ଲୁହ ଗାଲ ଉପରେ ଦୁଇଧାର ହୋଇ ଗଡ଼ ପଡ଼ୁଥାଏ । ଅଲମାରୀ ଖୋଲି ଗୋଟିଏ ଫାଇଲ ଆଣି ମୋ ଆଗରେ ଥୋଇଦେଲା । ଆଖିରୁ ଲୁହ ପୋଛି କହିଲା, ପଢ଼ନ୍ତୁ— ।

ଚିଠି ଗୁଡ଼ିକରେ ଆଖି ପକାଇ ଗଲି । ସବୁ ଅମଳାକୁ ଲକ୍ଷ୍ୟ କରି ଲେଖା ହୋଇଛି । ପ୍ରତ୍ୟେକଟିରେ ପୂର୍ଣ୍ଣ କେବଳ ପ୍ରେମ, ଉନ୍ମାଦନା, ଠାଏ ଠାଏ ଅଶ୍ଳୀଳତା । ଫକୀର, ଅଜିଜ୍, ଗଜେନ୍ଦ୍ର, ଏମିତି ଅନ୍ତୁର ଅନେକ । ମୋଟରେ ଦଶ ଖଣ୍ଡି ।

ପଚାରିଲି, ଏ ସବୁ ରଖିଛୁ କାହିଁକି ?

କହିଲା, ଜାଣେ ନା କାହିଁକି ।

ମୋର ଚିଠି ଖଣ୍ଡି ଖୋଜି ପାଇଲି ନାହିଁ । ସେ ଯେପରି ମୋର ମନ କଥା ବୁଝିଲା । ଖଣ୍ଡେ ବହି ଭିତରୁ ଚିଠିଖଣ୍ଡି କାଢ଼ି ହାତରେ ଧରି କହିଲା, ବଶୁଭାଇ, ସବୁଦିନେ ଏ ଚିଠି ଖଣ୍ଡି ମୁଁ ଥରେ ଥରେ ପଢ଼େ । ମନରେ ମୋର ଗର୍ବ ଆସେ, ବଶୁ ଭାଇ ମତେ ଏତେ ଭଲ ପାଏ ! କିନ୍ତୁ —

ସାହସର ସହିତ ପଚାରିଲି, କିନ୍ତୁ କଣ ?

ମୁହଁ ମଉଳାଇ କହିଲା, ମୁଁ ଭୁଲ ବୁଝିଥିଲି । ତମେ ଚିଠି ଲେଖି ଅନୁତାପ କରିଛ । ଏ ଚିଠିରେ ତମର ପ୍ରେମ ନାହିଁ, ଅଛି କେବଳ ଉତ୍ତେଜନା, ମୋହ । ଭାବିଥିଲି, ଏ ଖଣ୍ଡି ମୋର ଜୀବନ ସର୍ବସ୍ୱ କରି ରଖି ପାରିବି, କିନ୍ତୁ— ନା, ମୋର ଏଇ ଚିଠି ଫାଇଲରେ ରହିବା ଉପଯୁକ୍ତ, ବଶୁ ଭାଇ—

ଆଖିରୁ ପୁଣି ଝରିଲା ତାର ଲୁହ ।

ଅମଳା ! ତାର ହାତ ଧରିଲି ।

ମୋର ହାତ ଛୁଆଁଡ଼ି କାନ୍ଦଣା ସ୍ୱରରେ କହିଲା—ନା ଏ ଚିଠି ଫାଇଲରେ ରହିବ ନାହିଁ । ଆପଣ ମୋତେ ଅପମାନ ଦେଇଛନ୍ତି, ତେଣୁ ଆପଣଙ୍କୁ ମୁଁ ଫେରାଇ ଦେବାକୁ ଚାହେଁ ନାହିଁ । ଚିଠି ଖଣ୍ଡି ଚିରି ଚିରି କରି ଛିରି ପକାଇଲା । ଆଉ କିଛି ନ କହି ସେ ପଦାକୁ ଉଠିଗଲା ।

କିଛି ସମୟ ପରେ ତାର ବାପ ମା ଆସିଲେ ।

ଅଭିନୟ ପରି ସେ ଦିନ ସନ୍ଧ୍ୟାର ଦୃଶ୍ୟଟି ଆଖି ଆଗରେ ପଡ଼େ । କଣ ମୋର' ଭୁଲ୍ ହେଲା ମୁଁ କିଛି ଜାଣି ପାରିଲି ନାହିଁ ।

ତା ପରେ ଅନେକ ଥର ଯାଇଛି ତାଙ୍କ ଘରକୁ । ବ୍ୟବହାରରେ କୌଣସି ପରିବର୍ତ୍ତନ କି ଅମଳାର ସ୍ନେହ ଆଗ୍ରହରେ ତ୍ରୁଟି ମୁଁ ଲକ୍ଷ୍ୟ କରି ପାରି ନାହିଁ । ଅମଳା ପାଖରେ ବସେ । ସେ କଥା କହେ, ସେ ହସେ, କିନ୍ତୁ ମୋର ମନେ ହୁଏ, ଯେପରି ସେଥିରେ ସରସତା, ଆଗ୍ରହ ନ ଥାଏ । ମାଢ଼ ମାରିଲା ପରି ଲାଗେ, ଗୁଳିଆସେ । ସେ ନମସ୍କାର କରେ, ଅଟକାଏ ନାହିଁ ।

କଟକରେ ପଢ଼ିବା ମୋର ଠିକ୍ ହେଲା । ପ୍ରାୟ ମାସକ ପରେ, ଜୁଲାଇ ମାସର ପ୍ରଥମ ସପ୍ତାହରେ ମୁଁ ଯାଇଥିଲି ତାଙ୍କ ଘରକୁ—ସେଇ ସଞ୍ଜବେଳେ । ଅନ୍ଧାର । ଅମଳା ଅସିଥିଲା ଦାଣ୍ଡକୁ ମୋତେ ବିଦାୟ ଦେବାକୁ । ଭାରି ଦୁଃଖ ହେଉଥାଏ ମନରେ । କହିଲି, ଅମଳା, ତୋ ସଙ୍ଗେ ଏଇ ମୋର ଶେଷ ଦେଖା—ମୁଁ କଟକ ଯାଉଛି ।

ସେ ମୋର ହାତ ମୁଠାଇ ଧରିଲା—

ମୋର ମନେହେଲା, ଯେପରି ସେ କେତେ •କଣ କହିବାକୁ ବସିଥିଲା, କହି ପାରିଲା ନାହିଁ । ମୁହୂର୍ତ୍ତକ ପରେ ମୋର ହାତ ଗୁଡ଼ ଥରିଲା ସ୍ୱରରେ କହିଲା, ନମସ୍କାର !

## ବନ୍ଧୁ

ବେଳ ପ୍ରାୟ ଗୁରଟା । ଗଛ ପଧାନେ ତାଙ୍କ ଉଚ ଚଉପାଢ଼ି ଉପରେ ତୁନହୋଇ ବସି କଣ ଭାବୁଛନ୍ତି । ବୟସ ଷାଠିଏ ସେପାଖ । ଦେହରୁ ଶକ୍ତି କମି ଆସିଲାଣି । ଆଖି ହେଲାଣି ନିଷ୍ପ୍ରଭ । ଚନ୍ଦାମୁଣ୍ଡ ଚକ୍ ଚକ୍ ଦିଶୁଛି । ଦେହର ଚମ କୁଞ୍ଚୁକୁଞ୍ଚିକା । ମୁଣ୍ଡରେ ଚଟା । ବେକରେ ତୁଳସୀମାଳା । ହାତରେ ଝୁଲାମୁଣି ।

ଗଛ ପଧାନ ନା ଶୁଣିଲେ ଗର୍ଭିଣୀଗାଈ ବାଟ ଗୁଡ଼େ । ଗୁଇ ପଡ଼ିଲେ ଲୋକେ ଦଶହାତରୁ ଜୁହାର ହୋଇ ବାଟ ଭାଗନ୍ତି । ଗଳା ଖଙ୍କାର ବାଡ଼ ଠକ୍‌ଠକ୍ କରି ନଇ ବନ୍ଧରେ ଗୁଲି ଯାଉଥିଲେ ବୋହୂ ଝିଏ ଥରିଥରିକା ଆଡ଼ହୋଇ ବସନ୍ତି । ଗଛ ପଧାନ—ଆଜି ଚିନ୍ତାମଗ୍ନ କାହିଁକି ?

ପଧାନ ସାହିର ରଜା ଥିଲେ ତାଙ୍କ ବାପ ଅଜା । କେମିତି ବଡ଼ପଣରେ ଘର କରୁଥିଲେ ! ସମସ୍ତଙ୍କୁ ଭେଲେଇ ରଖୁଥିଲେ । ଦଶଖଣ୍ଡି ଗାଁରେ ନାଁ ପଡୁଥିଲା । ଗଛ ପଧାନ ମୁରବି ହେଲାଦିନୁ ଘରର ଶିରୀ ତୁଟିଛି । ଆଜି କର୍ପୂର ଯାଇ କନା ପଡ଼ିଛି । ପୁଅ ନାତି ବାଲୁଙ୍ଗା ହୋଇଛନ୍ତି । ବାଟରେ ଠିଆ ହେବାକୁ ବେଶି ଦିନ ନାହିଁ । ତଥାପି, ଗଛ ପଧାନଙ୍କର ପ୍ରତାପ କମିନି ନାହିଁ । ଆଖପାଖ ପଚିଶିଖଣ୍ଡି ଗାଁରେ ତାଙ୍କର ନାଁ ପଡ଼େ । ଲୋକେ ଚମକି ଉଠନ୍ତି । ଭକ୍ତିରେ ନ ହେଲେ ଭୟରେ ମୁଣ୍ଡ ନୁଆନ୍ତି ।

ପଧାନଙ୍କ ମନରେ ଦୁଃଖ କାହିଁକି ?

ପୂର୍ବ ଛଅଟି ମାସ କଟିଗଲା—କଟକର ମୁହଁ ଦେଖି ନାହାନ୍ତି । ଫଉଜଦାରୀ ଆଇନ୍ କେତେ ବଦଳି ଯିବଣି । କେତେ କେତେ ନୂଆ ନଜିର୍ ବାହାରିବଣି ।

ଓକିଲ, ମୁକ୍ତାର, ହାକିମ ହୁକୁମା, ତାଙ୍କୁ ଭୁଲି ଯିବେଣି । ଏଇଥି ପାଇଁ କଣ ପୂର୍ବ ଚୂଳିଶଟି ବର୍ଷ ସେ ପରିଶ୍ରମ କରିଥିଲେ ? ଜମି ଜମିଦାରୀ ବାକି ଗରିବଙ୍କୁ ଉଦ୍ଧାର କରିବାକୁ, ମୁଦାଲାଙ୍କୁ ରକ୍ଷା କରିବାକୁ ସେ ପଣ କରିଥିଲେ ? ସିଙ୍ଗଲକୋର୍ଟର ସବୁ ଦଫା କାମରେ ଲଗାଇଥିଲେ ? ପଚିଶଖଣ୍ଡି ଗାଁରେ କେତେ ଘର ଭାଙ୍ଗିଥିଲେ, କେତେ ଘରେ କାନ୍ଦବୋବାଳି ପକାଇଥିଲେ ?

ଗଣ୍ଡ ପଧାନ ବ୍ୟସ୍ତ ହୋଇ ଉଠିଲେ । ଭଗି ଜେନାଙ୍କର ଜୟଧ୍ୱନି ଚାରିଆଡ଼େ ଶୁଣାଯାଉଛି । ଏଇ ଛମାସ ଭିତରେ ଦଶଦଶଟା କେଶ୍ ହେଲାଣି । ଭଗି ଜେନା ଯହିଁରେ ହାତ ଦେଉଛନ୍ତି ଜିତୁଛନ୍ତି । ଦଶଟା କେଶ୍‌ରୁ ଛଅଟା ମିଛ । ତଥାପି ଜେନାଏ ଜିଣିଲେ । ଜେନା ସାହିରେ ଜନ୍ତାଲ ହେଲା । ହରିବୋଲ ଦିଆଗଲା । ପଧାନଙ୍କ କାନରେ ପଡ଼ିଲା । ରକ୍ତ ଗୁଡ଼ାଇ ଗ୍ରେବାଇ ସେ ଭୁନ ରହିଲେ । କଣ କରିବେ ? ହାତରେ ଧନ ନାହିଁ । ନୋହିଲେ ଭଗିଆଟା ଆଜି ମରିବ ହୁଅନ୍ତା ?

ପଧାନେ ତରତର କରି ମାଳି ଗଡ଼ାଇଲେ । ବଠାରୁ ପାନ କାଢ଼ି କୋରଣାରେ ଭରି କୁଟିବାକୁ ଲାଗିଲେ । ତାଙ୍କର ଦାନ୍ତ ନାହିଁ । ତାଙ୍କର ଭାବନା ପଚିଶ ବର୍ଷ ପଛେଇଲା—ଭଗିଆ, ତାଙ୍କର ଶତଦିନ ଶତ୍ରୁ ଥିଲା । ଗାଁ ଦାଣ୍ଡର ଧୂଳିଖେଳରେ, ଗଛଚଢ଼ା, ନଈ ପହଁରା, ମାଙ୍କଡ଼ ହୁରୁଡ଼ା, ଡୁଡୁଖେଳ, ପାଠପଢ଼ା, ବୟସବେଳର ଅଖିଠାରା, ଗାଁ ଲୋକଙ୍କୁ ବାହା ନମିତ୍ୟରେ ଖାଇବାକୁ ଦେବା, ଶେଷକୁ ମାଲିମକଦମା, ଚଡାକଠା, ମାଳିଗଡ଼ାରେ ଭଗିଆ ଯାହାକରେ ସେ କରନ୍ତି ତାର ଓଲଟା । ଭଗିଆ ତାଙ୍କର ଚିର ଶତ୍ରୁ !

ମାମଲତକାର ଜୀବନର ଆରମ୍ଭରୁ ଆଜିଯାଏ—ଏଇ ଚାଳିଶ ବର୍ଷ ଭିତରେ ଦଶଶହ ମାଲିମକଦ୍ଦମା ହୋଇ ଯାଇଛି । ହଜାର ହଜାର ଠଙ୍କା ସୁଅମୁହଁରେ ବୋହିଯାଇଛି । ଭଗି ଜେନା ଯେଉଁଠି ମୁଦେଇ ପକ୍ଷ ନେଇଛନ୍ତି, ଗଣ୍ଡ ପଧାନେ ମୁଦାଲାର । ନୋହିଲେ ଅଦଳ ବଦଳ । କେତେବେଳେ କିଏ ଜିଣିଛି, କିଏ ହାରିଛି । ହାର ଜିତ୍ ତ ଦୁନିଆରେ ଲାଗିଛି—ଯେମିତି ଦିନରାତି । ସେଥିଲା କାହାରି ଚିନ୍ତା ନାହିଁ, ଦୁଃଖ ନାହିଁ । ଦୁନିଆଁର ଖେଳ । ଦୁହିଁଙ୍କର ବୁଦ୍ଧିର ଲଢ଼େଇ !

ପଧାନେ ହେଉନ୍ତୁ କି ଜେନାଏ ହେଉନ୍ତୁ, ଏତେ ବର୍ଷ କାଳ ମାମଲତ କଲେଣି । କେତେ କେତେ ମକଦ୍ଦମାରେ ଘାଣ୍ଟିଚକଟି ହେଲେଣି, କିନ୍ତୁ କେହି ତାଙ୍କୁ କେବେ ମୁଦେଇ କି ମୁଦାଲା ହୋଇ, କିମ୍ବା ସାକ୍ଷୀ ହୋଇ ହାକିମଙ୍କ ଆଗରେ ଠିଆ ହେବାର ଦେଖିନାହିଁ । ପକ୍ଷଙ୍କର ପଛରେ ଥାଇ ସେମାନେ କଳ ଚଳାନ୍ତି । ଦରକାର ପଡ଼ିଲେ ସାହାଯ୍ୟ କରନ୍ତି ।

ପଧାନେ ଓ ଜେନାଏଁ ବାଟଘାଟରେ ହାବୁଡ଼ାହାବୁଡ଼ ହେଲେ, ଦୁହେଁ ଦୁହିଁଙ୍କୁ ନମସ୍କାର କରନ୍ତି, ହସାହସି ହୁଅନ୍ତି, ବାଟ ଛାଡ଼ି ଯେଖା ସବୁ ଧରନ୍ତି । ଆଖି ଆଖିର କଥାଭାଷା ହୁଏ । ଉଭୟଙ୍କ ଦୃଷ୍ଟିରେ ଭରିଯାଏ—ବିସ୍ମୟ, ବାହାବାହା, ମୁଗ୍ଧଂଦେହର ଭାବ ! ମୁହଁ ଖୋଲେ ନାହିଁ ।

ଆଜି ପଧାନଙ୍କର ଡେଙ୍ଗାମୁଣ୍ଡ ନଇଁଛି । ଜେନାଏ ପାକଲା ନଶରେ ତାଉଡ଼ିଦେଇ ଛାତି ଫୁଲେଇ ଗାଁ ଦାଣ୍ଡରେ ଚାଲୁଛନ୍ତି । ପାଞ୍ଚ ଦଶଜଣ ତାଙ୍କ ପଛରେ ଧାଇଁଛନ୍ତି, ମସୁଧା ନେବାକୁ ଆଜ୍ଞା ଆଜ୍ଞା ହେଉଛନ୍ତି । ପଧାନେ ଜେନାଙ୍କର ପ୍ରତାପ ଆଖି ଆଗରେ ଦେଖି ଚୁପ ରହିଛନ୍ତି କାହିଁକି ? ହାତରେ ଆଉ ଧନ ନାହିଁ ! କର୍ପୂର ଯାଇଛି—

ସେହି ଦିନ ସଞ୍ଜ ବେଳେ ଘଣ୍ଟାଘଡ଼ିବେଳ—ଦାଣ୍ଡ ଚଉପାଢ଼ି ଉପରେ ଜେନାଏ ବସିଛନ୍ତି—ପାଖରେ ଦୁଇ ଗୁରୁଜଣ ବସି କେବଳ ତାଙ୍କ ବୁଦ୍ଧିର ପ୍ରଶଂସା ଓ ପଧାନଙ୍କ ଅକଲର ଅଭାବ କଥା ଗପୁଛନ୍ତି । ଜେନାଙ୍କର କିନ୍ତୁ ସେଥିରେ କାନ ନାହିଁ । ସେ ଭାବୁଛନ୍ତି ପଧାନଙ୍କ କଥା । ପଧାନେ ଘରେ ରହିଲେ କାହା ସଙ୍ଗେ ଆଉ ସେ ଲଢ଼ିବେ ? ପଧାନେ ପାଣିରେ ସରପକାଉଥିଲେ ଜେନାଏ ପବନରେ ଗଣ୍ଠି ପକାଉଥିଲେ । ପଧାନେ ଆକାଶରୁ ଫୁଲ ତୋଳୁଥିଲେ ଜେନାଏ କୁହୁଡ଼ି ପହଁରୁଥିଲେ । ପଧାନଙ୍କର ବୁଦ୍ଧି କଥା ଜେନାଏ ବୁଝନ୍ତି, ଆଉ ଜେନାଙ୍କର ପଧାନେ ।

ପଧାନେ ଯଦି ମାମଲତ ଗୁଡ଼ି ଘରେ ମାଳଗଡ଼ାଇବେ, ଜେନାଏ କଟକରେ ଯାଇ ପାଣି ବାଡ଼େଇବେ କାହିଁକି ? ଜେନାଏଁ ସ୍ଥିର କଲେ, ହୁଏତ ପଧାନଙ୍କୁ କଟକ ନେବାକୁ ହେବ ନୋହିଲେ ତାଙ୍କୁ ମାମଲତ ଗୁଡ଼ି ଘରେ ରହିବାକୁ ହେବ ।

କାହାକୁ କିଛି ନ କହି ଜେନାଏଁ ବାଡ଼ଖଣ୍ଡେ ଧରି ଉଠିଲେ । ଏକମୁହାଁ ହୋଇ ଚାଲିଲେ ପଧାନଙ୍କ ଘରକୁ ।

ଜୀବନରେ ଆଜି ହୁଏତ ପ୍ରଥମ ତାଙ୍କର କଥାଭାଷା । ନସେଲା ସଞ୍ଜ । ଜହ୍ନ ପଡ଼ିଛି । ପାଖରେ କେହି ନାହିଁ । ନଈବନ୍ଧ କର ବଡ଼ କଦମ୍ବଗଛ ତଳେ—

ଜେନାଏଁ ପଚାରିଲେ, ଦେହ ଭଲ ଅଛି ତ ?

ପଧାନେ କହିଲେ—ହଁ ଭଲ ଅଛି ।

କଟକ ଯାଉନାହଁ ଯେ—

ଉପରକୁ ଯିବାର ବେଳ ପାଖେଇ ଆସିଲା ଜେନାଏଁ, ଏଥର ଆଉ ପାଞ୍ଚର କଥା ଠିକେ ଭାବିବା । ତେମେ ଏଥର ନିର୍ଦ୍ୱନ୍ଦ୍ୱରେ ତମର ସଜଡ଼ି କର । ସବୁ ପ୍ରଶଂସା, ସବୁ ନିନ୍ଦା ତେମେ ନିଅ । ଆମର ଦରକାର ନାହିଁ ।

କିନ୍ତୁ କଟକର ରାସ୍ତା, କଲେକ୍ଟରୀ ଅଦାଲତର ବରଗଛମୂଳ ନ ଦେଖିଲେ ତମକୁ ନିଦ ହେବ କେମିତି ?

ପଧାନେ ହସିଲେ । କହିଲେ, ନିଦ ହେଉ କି ନ ହେଉ, ତମ ସଙ୍ଗେ ଲଢ଼ିବାକୁ ମୋର ବଳ ନାହିଁ । ମୁଁ ମାନି ନେଉଛି ତେମେ ଶେଷକୁ ଜିତିଲ, ଅମେ ହାରିଲୁ ।

ଜେନାଏଁ ତୁନି ରହି କଣ ଯେପରି ଭାବିଲେ ।

ପଧାନେ ଉଠିଯାଉଥିଲେ । ଜେନାଏଁ ତାଙ୍କର ହାତ ଧରି ଅଟକାଇ ରଖିଲେ । ଯେପରି ଦୁଃଖିତ ହୋଇ କହିଲେ—ଲଢ଼ା-ଲଢ଼ି କଥା କହୁଛ କାହିଁକି ପଧାନେ ? ଅମେ କଣ କେବେ ଲଢ଼ିଛୁ ? ଲୋକେ ଲଢ଼ନ୍ତି, ଅମେ ଖେଳୁ । ଏମିତି ତ ପିଲାଦିନୁ ଅମେ ଖେଳିଛୁ । କେବେ ତେମେ ଜିତିଛ, କେବେ ଅମେ ଜିତିଛୁ—ଏଥିକି ଭାବନା କଣ ? ଛମାସ ହେଲା କଟକ ଧାଇଁଛୁ । ଦଶଦଶଟା ମକଦ୍ଦମା ଜିତିଛୁ, କିନ୍ତୁ ସେଥିରେ ସୁଖ ନାହିଁ କି ଆନନ୍ଦ ନାହିଁ । ମତେ ଲାଗିଛି, ସବୁଥିରେ ଯେମିତି ଏକତରଫା ଡିଗ୍ରି ହୋଇଛି ? ଯ୍ୟା ନା କଣ ଖେଳ ନା' ମକଦ୍ଦମା !

ପଧାନେ ଆତ୍ମଗୌରବ ଅନୁଭବ କଲେ । କହିଲେ, ଏ ଖେଳ ଏଇଠି ବନ୍ଦ ରହୁ ଜେନାଏଁ । ଏଣିକି ଅନ୍ୟଖେଳ ଖେଳିବା—ଯେଉଁ ଖେଳ ଅଳ୍ପ ବେଳରେ ସରିବ । ବଡ଼ ଖେଳ ଖେଳିବାକୁ ଆଉ ବେଳ ନାହିଁ ।

ଦହେଁ ମଙ୍ଗିଲେ ।

ଗାଁ ମଝି ଠାକୁରଘର ମେଲାରେ ଦାବା ଖେଳ ହୁଏ । ଗୋଟିଏ ପାଖେ ଜେନାଏଁ ଅରପାଖେ ପଧାନେ । ଦେଖଣାହାରୀ ଅନେକ ବସନ୍ତି ଉଠନ୍ତି, କିନ୍ତୁ ବନ୍ଧୁ ଦୁହିଁଙ୍କର ଆଖି ଗୋଟି ଉପରେ ଲାଗି ରହିଥାଏ । କେତେ ମକଦ୍ଦମା ସେଇଠି ପଡ଼େ । ଜେନାଏଁ ହଅନ୍ତି ଗୋଟିଏ ପଟ, ଅରପଟ ପଧାନେ । ତର୍କ ବିତର୍କ ଗୋଇ ଖୋଲାଖୋଲି ହୁଅନ୍ତି । ଶେଷକୁ କେହି ଜଣେ ହାରେ । ଅନ୍ୟ ଜଣଙ୍କ ସଙ୍ଗେ ମତ ମିଳାଏ । ମକଦ୍ଦମା ନିଷ୍ପତ୍ତି ହୁଏ । ଲୋକେ ଫେରନ୍ତି । ବନ୍ଧୁ ଦହେଁ ଖେଳରେ ମନ ଦଅନ୍ତି ।

ପୂର୍ବ ପାଞ୍ଚୋଟି ବର୍ଷ କଟିଗଲା । ଆଖପାଖ ଦଶଖଣ୍ଡି ଗାଁରୁ ମକଦ୍ଦମା ନେଇ କେହି କେବେ କଟକ ଯାଇ ନାହିଁ । ଜେନା ପଧାନଙ୍କୁ ନ ପଚାରି ଏତେବଡ଼ କାମ କରିବାକୁ କାହାର ସାହସ ହେବ ? ମକଦ୍ଦମା ନିଷ୍ପତ୍ତି ହୁଏ ଠାକୁର ଘରେ—ଦାବା ଖେଳ ପାଖରେ । ଯାହା ନିଷ୍ପତ୍ତି ହୁଏ, ତାକୁ ଏଡ଼ିଦେଇ, ଜେନା ପଧାନଙ୍କ ମୁଣ୍ଡ ଉପରେ ଗୋଡ଼ ଦେଇ କଟକ ଯିବାକୁ କିଏ ସାହସ କରିବ ?

ଜୋରମାନା ଟଙ୍କାରେ ଠାକୁର ଘର ଆଗରେ ପକ୍‌କା ଝୁଲଣ ମଣ୍ଡପ ତିଆର ହେଲା । ସେହି ଝୁଲଣ ମଣ୍ଡପ ଉପରେ ବନ୍ଧୁ ହେଁ ହେଁ ଦାବା ଖେଳନ୍ତି—

ଅଳ୍ପ କେଇଦିନ ବେମାର ପଡ଼ି ଆଗ ଗଲେ ଜେନାଏଁ—ପଧାନଙ୍କ ଆଗରେ । ପଧାନେ ବାଉଳା ହେଲେ । ତାଙ୍କର ଏ ଜୀବନର ଖେଳ ଭାଙ୍ଗିଲା—ଦାବାଖେଳ । ହାତ ବନ୍ଦ ହେଲା, ପାଟି ବନ୍ଦ ହେଲା । ସେ ଅନୁଭବ କଲେ—ଦୁନିଆରେ ସେ ଏକୁଟିଆ । ଜେନାଏଁ ଜିତିଲେ, ଆଉ ହାରିଲେ ସେ । ହାରିଲେ—

କୋଥଳି ଭିତରେ ହାତ ପୂରାଇ ଆଖି ବୁଜି "ରାଧା-କୃଷ୍ଣ" ନାମ ଜପୁ ଜପୁ ପଧାନଙ୍କ ଆଖିରୁ ଲୁହ ଝରେ—ଯେତେବେଳେ ମନେପଡ଼େ—ଜେନାଏଁ ତାଙ୍କର ଶରଣକୁ, ଆଗ ଯାଇ ରାଧାକୃଷ୍ଣଙ୍କର ଚରଣରେ ଆଶ୍ରା ନେଲେଣି, ଆଉ ସେ ଜପୁଛନ୍ତି, ଜପୁଛନ୍ତି !

## ବାସର

ଦୋତାଲାର କଣକିଆ ବଡ଼ କୋଠରିଟି । ଝରକା ଗୁଡ଼ିକ ଦକ୍ଷିଣ ପାଖ ଫୁଲ ବଗିଚା ଆଡ଼କୁ ମେଲା । ସେଇ—ଧୂର୍ଜଟିର ବାସରଘର । ଚତୁର୍ଦ୍ଦଶୀର ତୋରା ଜହ୍ନ ଆକାଶର ମୁଣ୍ଡଉପରକୁ ଉଠିଲାଣି । ସଜା ହୋଇଥିବା ପଲଙ୍କ ଉପରେ ଜ୍ୟୋତ୍ସ୍ନା ! ବୈଶାଖର ସୁଲୁସୁଲିଆ ପବନ ଫୁଲର ଗନ୍ଧରେ ଆମୋଦିତ କରୁଛି କୋଠରିଟି ।

ଧୂର୍ଜଟିର ମନ ଉତଳା ହୋଇ ଉଠୁଛି । ଆଜି ସେ ତାର ସ୍ୱପ୍ନ-ପ୍ରତିମାକୁ ଭେଟିବ, ଯାହାର ପାଇଁ ସେ ପଚିଶଟି ବୈଶାଖ ଅପେକ୍ଷା କରି ରହିଛି । ଅପରିଚିତ ହେଲେ ମଧ୍ୟ, ମନେ ହେଉଛି, ସତେ ଯେପରି ତାର ଅନନ୍ତକାଳର ସାଥୀ, ତାର ପ୍ରେମ-ଯଜ୍ଞର ପୂର୍ଣ୍ଣାହୁତି । ବେଦୀ ଉପରେ ଥରଟିଏ ତାର ଉଜ୍ଜ୍ୱଳ ମୁହଁକୁ ଦେଖିଛି । କେଡ଼େ ସୁନ୍ଦର ! ଯେପରି ସେହି ସୁନ୍ଦର ମୁହଁଟି ତାର ହୃଦତଳେ ଛପି ରହିଥିଲା—ଜୀବନ୍ତ ହୋଇ, ମୂର୍ତ୍ତିମତୀ ହୋଇ ଆଗକୁ ଆସିଛି । ସେ ଭାଗ୍ୟବାନ୍ ।

ରାତି ଦଶଟା । ଧୂର୍ଜଟି ଅସ୍ଥିର ହୋଇ ପଲଙ୍କ ଉପରୁ ଉଠିଲା । ଓଃ ଏତେ ଡେରି ! କେବେ ଏ ସବୁ ପୁରୁଣା କଥା ସମାଜରୁ ଯିବ କେଜାଣି ! ସେ ବାରଣ୍ଡାକୁ ଆସିଲା । ଗୃହଁଲା ତଳକୁ—ଅଗଣାରୁ ଲୋକ ଭିଡ଼ କମି ନାହିଁ । ମା

ଖୁଡ଼େଇ କାରବାର ହେଉଛନ୍ତି । କେତେ ମାଇପେ ଖାଇ ବସିଛନ୍ତି । ପାଟିଗୋଳ, ହସ ତାମସା । ଧୂର୍ଜଟି ହତାଶ ହେଲା—ଆହୁରି କେତେ ଡେରି ହେବ ।

ଧୂର୍ଜଟି ପାଖ କୋଠରୀକୁ ଗଲା । ନୂଆବୋହୂ ପିଲାଗୁଡ଼ିକୁ ଶୁଆଉଛନ୍ତି । କହିଲେ, ନିଦ ହେଉ ନାହିଁକି ଧୀର ?

ଧୂର୍ଜଟି କିଛି ନ ଜାଣିଲାପରି କହିଲା, ତଳେ ଭାରି ଗୋଳମାଳ ହେଉଛି, ନୂଆଉ ।

ନୂଆଉ କହିଲେ, ହେବାର କଥା । ରାତି ସାରା ତ ଅନିଦ୍ରା ହେବ, ଟିକିଏ ଶୋଇପଡ଼ ।

ପିଲାଟାକୁ ଶୁଆଇ ନୂଆଉ ଉଠିଲେ । ହସି ହସି ତଳକୁ ଓହ୍ଲାଇ ଗଲେ ।

ଧୂର୍ଜଟି ଫେରିଲା ବାସରଘରକୁ । ଗୋଡ଼ତଳ ଝରକା ପାଖରେ ଠିଆ ହୋଇ ପଦାକୁ ଚାହିଁଲା—ଉଜ୍ଜ୍ୱଳ ଜହ୍ନରାତି । ପୋଖରୀ ହୁଡ଼ା ଉପରେ ମଲ୍ଲୀ ରଜନୀଗନ୍ଧା ଫୁଲ ଜୋଛ୍ନାଲୋକରେ ଉଜ୍ଜ୍ୱଳ ଦିଶୁଛନ୍ତି । ଆକାଶକୁ ଚାହିଁଲା— ଉଜ୍ଜ୍ୱଳ ଜହ୍ନ, ତଥାପି ତ ପୂର୍ଣ୍ଣ ନୁହେଁ, ଖଣ୍ଡିଆ । ଜହ୍ନ ଦେହରେ କଳଙ୍କ । କଳଙ୍କକୁ ଛାତିରେ ଧରି ସେ ନିର୍ମଳ, ସୁନ୍ଦର, ପବିତ୍ର । ଭାସି ଆସିଲା ମେଘ ଖଣ୍ଡେ ! ତାରି ମଝିରେ ଛପିଗଲା ଜହ୍ନଟି—ମୁହୂର୍ତ୍ତେ । ଭାସିଗଲା ମେଘ । ପୁଣି ମୁକ୍ତ ଉଜ୍ଜ୍ୱଳ ସୁନ୍ଦର ସେଇ ପୁରୁଣା ଜହ୍ନ ।

ଧୂର୍ଜଟିର ଜୀବନ-ଆକାଶରେ ଏମିତି କେତେ ମେଘ ଭାସି ଯାଇଛି, କେହି ଅଟକି ରହି ନାହିଁ । ସତୀ ହେବ ତାର ଜୀବନ-ଆକାଶର ପୂର୍ଣ୍ଣ-ଚନ୍ଦ୍ର । ପ୍ରେମ-ଜ୍ୟୋତ୍ସ୍ନାର ଜୁଆରରେ ସବୁ ସେ ଧୋଇ ଦେବ, ପବିତ୍ର କରିବ । ଯେଉଁ ନକ୍ଷତ୍ର ଗୁଡ଼ିକ ଦୂରରେ ରହି ଆଖିମିଟିକା ମାରୁଥିଲେ, ସେମାନେ ଜ୍ୟୋତ୍ସ୍ନାର ଜୁଆରରେ ଆତ୍ମଗୋପନ କରିବେ, ଧୂର୍ଜଟି ହେବ ସୁଖୀ ।

ସେଇ ବାସର ରାତିରେ—ଯେତେବେଳେ ସେ ତାର ପ୍ରେୟସୀର ପ୍ରେମ-ଅର୍ଘ୍ୟର ପ୍ରତୀକ୍ଷାରେ ଠିଆ ହୋଇଥିଲା, ମନ ଭିତରେ କେତେ ଚିନ୍ତା ଲୁଚକାଳି ଖେଳୁଥିଲା । କେତେ ହସିଲା ଓଠ, କେତେ ଲୁହଭରା ଆଖି, ତାରି ଆଗରେ ଉଭା ହୋଇ ଗୋଟିଏ ପ୍ରଶ୍ନ ପଚାରିବାକୁ ଲାଗିଲେ—ଭୁଲିଗଲ ସତେ ?

ଭୁଲିନାହିଁ । ଭୁଲି ଯିବାକୁ ଚାହେଁ, ଯେଉଁମାନେ ତା ପାଇଁ ହୃଦୟ ଖୋଲି ଦେଇଥିଲେ, ଯେଉଁମାନଙ୍କର ମନର ଦେବତା ହୋଇ ପୂଜା ଗ୍ରହଣ କରିଥିଲା, ସେହିମାନେ ଆଜି ଦୂରରେ ଥାଇ ଆଖିମିଟିକା ମାରୁଛନ୍ତି । କିନ୍ତୁ ସେମାନେ ତ ଆସି ନ ଥିଲେ ଜୀବନ ସାଥୀ ହେବାକୁ ? ବାଟ କଢ଼ା ଚଟିଘରର ବନ୍ଧୁ ! ମୁହୂର୍ତ୍ତିରେ ଦେଖାଶୁଣା, ପରିଚୟ, ଆତ୍ମୀୟତା । କିଏ କେଉଁଠି ବାଟ

ଭାଙ୍ଗିବ, କଏ କୁଆଡ଼େ ଯିବ । ସତୀ ତା ଜୀବନର ସାଥୀ—ସହଯାତ୍ରୀ—ଗୋଟିଏ ଉଦ୍ଦେଶ୍ୟ ଗୋଟିଏ ଲକ୍ଷ୍ୟ ।

ଧୂର୍ଜଟି ଦୀର୍ଘଶ୍ୱାସ ଛାଡ଼ିଲା । ଆଜିଠାରୁ ସବୁ ଭାବନା ସବୁ ଚିନ୍ତା ତାର ଦୂର ହୋଇ ଯାଉ, ସତୀର ପୁଣ୍ୟାଲୋକରେ ଘୁଞ୍ଚିଯାଉ ଅନ୍ଧାର, ଲୁଚ ଯାଆନ୍ତୁ ମିଟିମିଟିକା ନକ୍ଷତ୍ର । ସେ ପଲଙ୍କ ଉପରକୁ ଆସିଲା । କେତେ କଣ ଭାବୁଭାବୁ ତାକୁ ଘୁଇନିଦ ଘୋଟି ଆସିଲା— ।

କାହାର ଭୁନଭୁନ ପାଟି ଶୁଣି, ଘୁଇ ନିଦ ଭାଙ୍ଗିଲା । ଆଖି ଖୋଲିଲା, ଆଲୁଅ ଉଜ୍ଜ୍ୱଳ ହୋଇ ଜଳୁଛି ! ନୂଆଉ ନୂଆବୋହୂର କାନରେ କହୁଛନ୍ତି— ଚୁହଁ ଚୁହଁ ଶୋଇ ପଡ଼ିଲେଣି ଲୋ !

ନୂଆଉ ବାହାରକୁ ଗଲେ, କବାଟ ଅଉଜାଇଲେ ।

ଛଟାଗାଲ ଧୂର୍ଜଟି ପଡ଼ିରହିଲା—ସତୀ କଣ କରିବ ସେ ଦେଖିବ । ଅଗ୍ରହ କୌତୂହଳରେ ତାର ମନ ପୂର୍ଣ୍ଣ ହୋଇଥାଏ । କବାଟ ପାଖ କାନ୍ଥକୁ ଆଉଜି ସତୀ ଖୁଣ୍ଟ ପରି ଠିଆହୋଇ ଥାଏ, ଦେହରେ ଯେପରି ଜୀବନ ନାହିଁ । ମୂଲ୍ୟବାନ ଶାଢ଼ୀଟି ଆଲୁଅରେ ଚକ୍‌ଚକ୍ ଦିଶୁଛି । ଓଢ଼ଣାତଳେ ସତୀର ସୁନ୍ଦର ମୁହଁ ଅଧେ ଛପି ରହିଛି ।

ଲାଜ ! ସଙ୍କୋଚ !

ଧୂର୍ଜଟିର ଉତଳା ମନ ଅପେକ୍ଷା କରି ପାରିଲା ନାହିଁ । ସେ ଧୀରେ ଧୀରେ ଉଠ ଆସିଲା । କବାଟର କିଳଣି ବନ୍ଦ କଲା । ଆଲୋକଟି ସାମାନ୍ୟ କମାଇ ଦେଇ ସତୀ ଆଗରେ ଠିଆ ହେଲା । କଣ କହିବ କିଛି ଠିକ୍ କରି ପାରିଲା ନାହିଁ ।

ଧୂର୍ଜଟିର ଧୈର୍ଯ୍ୟ ଭାଙ୍ଗିଲା । ସେ ହସି ହସି କଥା ଆରମ୍ଭିଲା—

ଧୂର୍ଜଟି କିଛି ବୁଝି ପାରିଲା ନାହିଁ—ସତୀ ନୀରବ କାହିଁକି । କାହିଁକି ସେ ଏତେ କାନ୍ଦୁଛି ? ଯେତେ ଯାହା କହିଲେ ମଧ୍ୟ ପଦଟିଏ ଉତ୍ତର ଦେଉ ନାହିଁ । ମୁହିଁ ଟେକି ଚାହୁଁ ନାହିଁ ।

ସେ ପଚାରିଲା—କାନ୍ଦୁଛ କାହିଁକି ସତୀ ? ଲାଜ ପୁଣି କାହା ପାଖରେ ? ଯେତେବେଳେ ପବିତ୍ର ବେଦମନ୍ତ୍ର ପଢ଼ି ସଂସାର ଆଗରେ ତୁମର ଏଇ ହାତଟି ସଙ୍ଗେ ମୋର ହାତଟି ପୁରୋହିତ ବାନ୍ଧି ଦେଲେ, ସେଇ ମୁହୂର୍ତ୍ତରୁ ଚିରଦିନ ପାଇଁ ତୁମେ ହେଲ ମୋର ଆଉ ମୁଁ ତୁମର—

ସତୀ ଲୁହଭରା ଆଖିରେ ଧୂର୍ଜଟିର ମୁହଁକୁ ଚାହିଁଲା । ପର ମୁହୂର୍ତ୍ତରେ ତାର ପାଦରେ ମୁଣ୍ଡ ଲଗାଇଲା । ଧୂର୍ଜଟି ତାକୁ ତଳୁ ଉଠାଇ ଛାତି ଉପରକୁ

ଛାଣି ନେଉଥିଲା, ସତୀ ଅଲଗା ଠିଆ ହେଲା । ଥରିଲା ସ୍ୱରରେ ନିର୍ଭୟରେ କହିଲା, କ୍ଷମା କରି ପାରିବ ମତେ ?

ଚମକି ପଡ଼ିଲା ଧୂର୍ଜଟି !

ସତୀର ମୁହଁକୁ ଫେରି ଚାହିଁବାକୁ ଧୂର୍ଜଟିର ପ୍ରାଣ ଡାକିଲା ନାହିଁ । ସେ ଝରକା ପାଖରେ ଠିଆହୋଇ ପଦାର ଅନ୍ଧାର ଆଡ଼କୁ ଚାହିଁ କେତେ କଣ ଭାବିଲା । ଏଇଥି ପାଇଁ ବାପ ମା ତା'ର ନାଁ ଦେଇଥିଲେ ସତୀ ? ଦୁଇ କୂଳରେ କଳଙ୍କ ବୋଳିବାକୁ ତାର ଜନ୍ମ ? ଜାଣି ଜାଣି ତେବେ ଧୂର୍ଜଟିର ହାତ ଧରିଲା କାହିଁକି ? ଜୀବନର ଲୋଭ ଛାଡ଼ି ପାରିଲା ନାହିଁ ! ମାନ ମହତ୍ତ୍ୱ ଆଗରେ ଜୀବନକୁ ଏଡ଼େ ମୂଲ୍ୟବାନ ସେ ମଣିଲା ? ଦୁନିଆର ଲୋକେ ଜାଣିଲେ କଣ କହିବେ ? ମୁଣ୍ଡ ଟେକି ବାଟ ଚାଲିବ କିପରି ?

ଝରକାର ରେଲିଂକୁ ଧରି ଧୂର୍ଜଟି ଆଖିରୁ ଲୁହ ଢାଳିଲା । ତା ଭାଗ୍ୟରେ ଏଇଆ ଥିଲା ? ସତୀ—ତାର ଜୀବନର ସବୁ ସୁଖ ପୋଡ଼ି ପାଉଁଶ କରିଛି, ହିମାଳୟ ପରି ଉଚ୍ଚ ଆଶା ତା'ର ଭାଙ୍ଗି ଚୂନା କରିଛି ! ଘଡ଼ି ଠନ୍‌ଠା ବାଜିଲା— ଆଉ ବା କେଇ ଘଣ୍ଟା ! ସକାଳୁ ଉଠି କାହାକୁ ସେ ମୁହଁ ଦେଖାଇବ ?

ସତୀକୁ ଗ୍ରହଣ କରିବ ? ଆଉ, ତା ସଙ୍ଗେ ସଙ୍ଗେ ଦୁନିଆ ଆଗରେ ପର ପିଲାକୁ ନିଜର ବୋଲି ପରିଚୟ ଦେବ ? ସଂସାର ବିଶ୍ୱାସ କରିବ ? ସଂସାର ବିଶ୍ୱାସ କଲେ ମଧ୍ୟ ତାର ଦେହ ସହିବ ?

କି ଘୃଣାର କଥା ! ଥରଟିଏ ଭୁଲ୍ ପାଇଁ ସତୀ କ୍ଷମା ଚାହେଁ । ଥରଟିଏ ଭୁଲ୍ ! ଏ ଭୁଲ୍‌ର ତ କ୍ଷମା ନାହିଁ ?

ମେଘମୁକ୍ତ ଆକାଶରେ କେତେ ଦରନଭା ତାରା ମିଟିମିଟି ହେଲେ । ଧୂର୍ଜଟିର ଆଖି ଆଗରେ ଉଭା ହେଲା କେତେ ସ୍ମୃତିର ଛାଇ—ସମସ୍ତେ ଯେପରି କହି ଉଠୁଛନ୍ତି—ଥରଟିଏ ଭୁଲ୍—ଥରଟିଏ ଭୁଲ୍ —

ବୁଡ଼ି ଯାଉଥିବା ଜହ୍ନ ଉପରେ ଆଖି ପଡ଼ିଲା । ଭସାମେଘ ଉହାଡ଼ରୁ ସେ ତାର ପୂର୍ଣ୍ଣ-ପ୍ରଭା ବିକାଶି ବାହାରି ଆସୁଛି । ଖଣ୍ଡିଆ ଜହ୍ନ—ଦେହରେ ତାର କଳଙ୍କ । ତଥାପି ସେ ସୁନ୍ଦର, ଉଜ୍ଜ୍ୱଳ, ଜୀବନ୍ତ, ପବିତ୍ର ।

ଧୂର୍ଜଟି ସଙ୍କେତ ପାଇଲା ।

ନିରବ, ଆକୁଳ ଲୁହଝରା ଆଖିରେ ଚାହିଁ ରହିଥିଲା ଯେଉଁ ସତୀ— ଥରଟିଏ ଭୁଲ୍ ପାଇଁ ଯିଏ ଆଜି କ୍ଷମା ଚାହେଁ, ଜୀବନ ଭିକ୍ଷା ମାଗେ, ଅନନ୍ତ ପଥର ସହଯାତ୍ରୀ ସ୍ୱାମୀ-ବିଚାରପତି ଆଗରେ—ଧୂର୍ଜଟି ତାରି ଆଡ଼କୁ ଆଖି ଫେରାଇଲା ।

## ଦ୍ୱନ୍ଦ୍ୱ

ସାତ ବର୍ଷର ଘରକରଣା କରି ମଧ୍ୟ ଜ୍ୟୋତ୍ସ୍ନାର ମନଭିତରୁ ଅଲୋକର ସ୍ମୃତି ଏକାଥରେ ଲିଭି ପାରି ନାହିଁ । ଅଲୋକ—ଯିଏ ତାର ପିଲାଦିନର ବନ୍ଧୁ । ଗରିବ ହେଲେ ମଧ୍ୟ ଯିଏ ସୁନ୍ଦର, ଯୁବକ, ଶିକ୍ଷିତ ଆଉ ଅତି ଭଦ୍ର ଥିଲା । ଅଲୋକର ବସା ଥିଲା ତାଙ୍କରି ଘର ଆଗରେ । କପରି ଭାବରେ ଯେ ଅଲୋକ ଓ ଜ୍ୟୋତ୍ସ୍ନାଙ୍କ ଭିତରେ ପରିଚୟ, କଥାଭାଷା, ଘନିଷ୍ଠତା, ବନ୍ଧୁତା ଶେଷକୁ ଦେନାଦେନର ସମ୍ପର୍କ ହେଲା, ତାହାର ଇତିହାସ ଦୁଇଜଣଙ୍କ ଛଡ଼ା ଭିନ ଜଣକୁ ଜଣା ନାହିଁ । ସମସ୍ତେ ବାହାର ଦେଖୁଥିଲେ । ଭିତରର କଥା କେହି ଜାଣୁ ନ ଥିଲେ ।

ଯେଉଁ ବର୍ଷ ଜ୍ୟୋତ୍ସ୍ନା ମାଟ୍ରିକୁଲେସନ୍ ପାସ୍ କଲା, ସେହି ବର୍ଷ ଅଲୋକ ପାସ୍ କଲା ଏମ୍. ଏ. । ଦୁହେଁ କେଡ଼େ ଖୁସି ହୋଇଥିଲେ । ସେ ଦିନ ଅନ୍ଧାର ସଞ୍ଜରେ ଜ୍ୟୋତ୍ସ୍ନାଘର ବଗିଚା ପାଖ ଅମ୍ବ ଗଛତଳେ ଜ୍ୟୋତ୍ସ୍ନାର ହାତଧରି ଅଲୋକ ଭୁନ ଭୁନ କହୁଥିଲା—କାଲି ମୁଁ ଘରକୁ ଯାଉଛି । କିଛିଦିନ ପରେ ଫେରିବି । ଭଗବାନ ଯଦି ସତ୍ୟ ତେବେ ଆମର ଏ ଦୁଇଟା ହାତକୁ କେହି ଅଲଗା କରି ପାରିବେ ନାହିଁ । ସେହି ଅନ୍ଧାର ସଞ୍ଜରେ ଜ୍ୟୋତ୍ସ୍ନା ଆଖିରେ ଭରିଥିଲା ଲୁହ ।

କପରି ଯେ ହଠାତ୍ ଜ୍ୟୋତ୍ସ୍ନାର ବାହାଘର ଇଞ୍ଜିନିୟର ଚନ୍ଦ୍ରକିଶୋର ସଙ୍ଗେ ସ୍ଥିର ହେଲା, ସେ କଥା ଜ୍ୟୋତ୍ସ୍ନା ଜାଣେ ନାହିଁ । ଅତି ପରିଚିତ ଅଲୋକ ବାବୁ କୁଆଡ଼େ ରହିଲେ ? ଜ୍ୟୋତ୍ସ୍ନା ତାଙ୍କୁ ମନେ ମନେ କେତେ ଖୋଜିଲା, ପାଇଲା ନାହିଁ । ଘର ଆଗ ମେସ୍‌ରେ କେତେ ନୂଆ ଲୋକଙ୍କର ମୁହଁ ଦିଶେ, କିନ୍ତୁ ଅଲୋକର ମୁହଁ ଦିଶେ ନାହିଁ । ପ୍ରତିବାଦ କରିବାକୁ, ମନାକରି ମନର କଥା ବାପ ମାଆଙ୍କ ଆଗରେ କହିବାକୁ ସେ ପ୍ରତିଜ୍ଞା କରେ; କିନ୍ତୁ ତାର ମୁହଁ ଖୋଲେ ନାହିଁ । କାଳେ ଅଲୋକ ପ୍ରତାରଣା କରିଥିବ ?

ଅଲୋକ ପ୍ରତାରଣା କରିଥିବ ? ଅସମ୍ଭବ କଥା । କାହାକୁ ପଚାରିବ ? ଚିଠି ଲେଖିବ ? ଅଲୋକର ଠିକଣା ଜଣା ନାହିଁ । ମେସ୍‌ର କୌଣସି ଲୋକ କହି ପାରିଲେ ନାହିଁ । ମନ ଉଚ୍ଛନ୍ନ ହେଉଥାଏ ।

ଯାନ ବାହନ ଧରି ଚନ୍ଦ୍ରକିଶୋର ଆସିଲେ । କେଡ଼େ ଧୁମ୍‌ଧଡ଼କରେ ଜ୍ୟୋତ୍ସ୍ନା ସଙ୍ଗେ ତାଙ୍କର ବାହାଘର ହେଲା । କଟକର ହଜାର ହଜାର ଲୋକ

ଜାଣିଲେ । ଅଲୋକକୁ ଜ୍ୟୋତ୍ସ୍ନା ଗୋଟାଏ ସ୍ୱପ୍ନ ପରି ମନରୁ ପୋଛି ଦେଲା । ଅପରିଚିତ ଚନ୍ଦ୍ରକିଶୋରଙ୍କର ହାତ ଧରି ସେ ଚାଲିଲା ଶଶୁରଘରକୁ ।

ଶଶୁରଘର ଗାଁରେ କିଛିଦିନ ରହି ସମସ୍ତଙ୍କର ସ୍ନେହ ସୋହାଗର ଅଧିକାରିଣୀ ହୋଇ, ଜ୍ୟୋତ୍ସ୍ନା ତାର ସ୍ୱାମୀ ସଙ୍ଗରେ ଚାଲିଲା କୋରାପୁଟ— ଯେଉଁଠି ତାର ସ୍ୱାମୀ ସରକାରୀ ଅସିଷ୍ଟାଣ୍ଟ ଇଞ୍ଜିନିୟର । ଗତଦିନ ଅଲୋକର ସ୍ମୃତି ମନରୁ ଏକାଥରେ ପୋଛି ଦେଲା । ମନେ ପଡ଼ିଲେ, ଭିତରେ ଭିତରେ ଜଳିଉଠେ ରାଗରେ । ଘୃଣାରେ ନାକ ଟେକେ । ଅଲୋକ ହୀନ, ପ୍ରତାରକ, ଅଭଦ୍ର । ଅଲୋକ ସଙ୍ଗେ ତାର ସମ୍ପର୍କ ରଖିବା ଗୋଟାଏ ଅକ୍ଷମଣୀୟ ଭୁଲ ! ଛି—ଛି— ।

ମନେ ମନେ ସେ ଲଜ୍ଜିତା ହୁଏ । ଯେଉଁ ଅପରିଚିତଙ୍କୁ ସେ ସ୍ୱାମୀକରି ପାଇଛି, ତାଙ୍କର ମୁହଁକୁ ଅନାଏଁ, ତାଙ୍କର ପ୍ରେମ କଥା ଭାବେ । ଆତ୍ମହରା ହୁଏ । ଚନ୍ଦ୍ରକିଶୋର—ପୂଜାରୀ ପରି ଯିଏ ଜ୍ୟୋତ୍ସ୍ନାର ପୂଜା କରନ୍ତି, ଜ୍ୟୋତ୍ସ୍ନା ପାଖରୁ ମୁହୂର୍ତ୍ତେ ଦୂରେଇ ରହିବାକୁ ଯିଏ ପାପ କି ଦଣ୍ଡ ବୋଲି ମଣନ୍ତି । ଚନ୍ଦ୍ରକିଶୋର—ଜ୍ୟୋତ୍ସ୍ନା ଯାହାର ଅଙ୍ଗ ! ଜ୍ୟୋତ୍ସ୍ନା ଭାବେ, ଚନ୍ଦ୍ରକିଶୋର ତାର ପ୍ରାଣ ! ଅତୀତଟା ଅନ୍ଧାର—ଭୁଲ ।

ସୁଦୂର କୋରାପୁଟର ପାହାଡ଼ ମାଳ ଭିତରେ ସୁଖରେ ଆନନ୍ଦରେ ଜ୍ୟୋତ୍ସ୍ନା ଓ ଚନ୍ଦ୍ରଙ୍କର ସମୟ ଗଡ଼ି ଚାଲେ । କେହି କାହାର ବିରସ ମୁହଁ ସହି ପାରନ୍ତି ନାହିଁ । ରାଜକାର୍ଯ୍ୟରେ ଚନ୍ଦ୍ର ମୋଫସଲ ଗଲେ ଜ୍ୟୋତ୍ସ୍ନାର ଆଖିରେ ଲୁହ ଭରେ । ଦିନେ ଦୁଇଦିନର ବିରହ ଯେପରି ଲାଗେ ଯୁଗ ଯୁଗ ପରି । ଜ୍ୟୋତ୍ସ୍ନା ଆକୁଳ ହୋଇ ପଡ଼େ । ଚନ୍ଦ୍ରକିଶୋରଙ୍କୁ ନ ଦେଖିବା ଯାଏ ତାର ପ୍ରାଣ ଛଟପଟ ହେଉଥାଏ । ଚନ୍ଦ୍ରକିଶୋର ଟୁରରୁ ଫେରେ । ଜ୍ୟୋତ୍ସ୍ନାର ହସିଲା ମୁହଁରେ ଚୋକ ଦିଏ । ସବୁ ଭାବନା, ସବୁ ଦୁଶ୍ଚିନ୍ତା ପାଶୋରି ଯାଏ । ସ୍ୱର୍ଗର ଆନନ୍ଦ ଓହ୍ଲାଇ ଆସେ ।

ଚନ୍ଦ୍ରକିଶୋର ସେ ଦିନ ନ ଥିଲା । ଦୁଇ ଦିନ ହେବ ଗସ୍ତରେ । ଜ୍ୟୋତ୍ସ୍ନାର ମନରେ ସୁଖ ନାହିଁ । ମୁହୂର୍ତ୍ତଗୁଡ଼ା ଯୁଗପରି କଟୁଛି । କାନ୍ଦକାନ୍ଦର କୋହ ଉଠୁଛି ଗଳାରେ । ଅଫିସ ପିଅନ ଆସି କେତେଖଣ୍ଡ ଚିଠି ଦେଇଗଲା । ଜ୍ୟୋତ୍ସ୍ନା ଖୋଲିଲା । ବାପ ମା ଭାଇ ଭଉଣୀମାନଙ୍କର ଚିଠି । କେତେ ସ୍ନେହ ମମତା ପୂର୍ଣ୍ଣ । ପଢ଼ୁପଢ଼ୁ ଇଚ୍ଛାହେଲା, କେମିତି ଥରେ ଧାଇଁ ଯାଇ ସେମାନଙ୍କୁ ଦେଖି ଆସିବ । ଭାବନାର ପଛେ ପଛେ ଚନ୍ଦ୍ରକିଶୋରଙ୍କର ହସିଲା ମୁହଁ ଆଖି ଆଗରେ ଭାସିହେଲା । ନା, ସେ ତ ଯାଇ ପାରିବ ନାହିଁ ।

ଶାଶୁଘରକୁ ଯିବାର ପ୍ରଥମ କେଇଟି ବର୍ଷ ଝିଅ-ଜୀବନରେ ଭୁଲିବାର କଥା ନୁହେ । ଅତି ପ୍ରିୟ ଅତି ଆପଣାର ଯେଉଁମାନେ ଥିଲେ, ତାଙ୍କ ପାଖରୁ

ଦୂରେଇ ଆସି ଅପରିଚିତ ଲୋକଙ୍କ ମଝିରେ ରହିବା, ପରକୁ ଆପଣାର କରିବାକୁ ଯେଉଁ ଚେଷ୍ଟା ସେଥିରେ ସେ ମଜ୍ଜିରହେ । ଧୀରେ ଧୀରେ ପୁରୁଣା ବନ୍ଧନ ଖୋଲିଯାଏ, ନୂଆ ବନ୍ଧନ ଘେରିହୋଇ ଆସେ । କେଇଟା ବର୍ଷ ଭିତରେ ଅପରିଚିତ, ପର, ଆପଣାର ହୋଇ ଉଠନ୍ତି, ପାଖକୁ ପାଖ ଲାଗି ଆସନ୍ତି । ଆଜି କାଲି ଯେଉଁମାନେ ଆପଣାର ଥିଲେ, ସେମାନେ ହୁଅନ୍ତି ପର । ଦୂରେଇ ଯାନ୍ତି ।

ଜ୍ୟୋସ୍ନାର ମନରେ ଆଜି ସେହି ଦ୍ୱନ୍ଦ୍ୱ ଲାଗିଛି । ଯେଉଁମାନେ କାଲି ଥିଲେ ଆପଣାର, ସେମାନଙ୍କର ସ୍ନେହର ଡୋର ଛିଡ଼ୁନାହିଁ । ଯେଉଁ ଅପରିଚିତଙ୍କୁ ଆପଣାର କରିବାକୁ ସେ ବ୍ୟାକୁଳ ସେମାନେ ଏକାଥରେ ଆପଣାର ହୋଇପାରୁ ନାହାନ୍ତି ।

ଏ ଚିଠି ଖଣ୍ଡି ତାର ଜା ନଣନ୍ଦମାନେ, ଶ୍ରେଷ୍ଠ ଶ୍ରେଷ୍ଠ ଦାଆର ଦାଣ୍ଡି, ଶାଶୂ ଶଶୁର, ସମସ୍ତେ ଲେଖିଛନ୍ତି । ପଢ଼ୁ ପଢ଼ୁ ନିଜକୁ ଭୁଲୁଛି ଜ୍ୟୋସ୍ନା । ମନେ ହେଉଛି, ଯେପରି ସେ ଚିରଦିନ ଏଇ ଘରର ଥିଲା । ଅନ୍ୟ କେଉଁଠୁ ଆସି ନାହିଁ । ସମସ୍ତେ ତାକୁ ଭଲ ପାନ୍ତି । ସମସ୍ତେ ତାର ନିଜର ।

ଖୋଲିଲା ଆଉ ଚିଠି ଖଣ୍ଡ । ଲଫାଫା ଭିତରେ ଶ୍ରେଷ୍ଠକାଗଜ ଖଣ୍ଡେ । ଅଳ୍ପ କେତେ ଧାଡ଼ି ଲେଖା ହୋଇଛି—ବିପଦର ଝଡ଼ ମୁଣ୍ଡ ଉପରେ ବୋହିଗଲା । ଉକାଉକି ହେଲା ପରି ଦିନ ପନ୍ଦରଟା ଭିତରେ ମୋର ବାପ ମା ଗୁଲିଗଲେ । ଦୁଃଖର ପାହାଡ଼ ମୁଣ୍ଡରେ ନେଇ ହୋଇ କଟକ ଆସିଲି—ତମକୁ ଦେଖି ତମ ଆଗରେ ଆଖି ଲୁହ ଢାଳି ଶାନ୍ତି ପାଇବି । ହୁଏତ ମୋର ଦୁଃଖ ଭୁଲି ପାରିବି । କିନ୍ତୁ କାହିଁ ତୁମେ ? ତୁମେ ସୁଖରେ ରହ, ଏଇ କଲ୍ୟାଣ ମୁଁ କରୁଛି । ମୁଁ ଆଜି ବନ୍ଧନହୀନ । ସଂସାରରେ ଏକୁଟିଆ । ସ୍ୱାଧୀନ ।

ଜ୍ୟୋସ୍ନାର ହାତ ଥରି ଉଠିଲା, ମୁଣ୍ଡ ଘୂରିଗଲା । ଆଲୋକ ବାବୁ ଚିଠି ଲେଖିଛନ୍ତି । ସେ ପ୍ରତାରକ ନୁହନ୍ତି । ଆଲୋକ ବାବୁ—ଯାହାକୁ ସେ ମନ ପ୍ରାଣ ସମର୍ପି ଦେଇଥିଲା, ସେ ତାକୁ ଭୁଲି ପାରି ନାହାନ୍ତି । ଏତେ ଦୁଃଖ ତାଙ୍କର ଭାଗ୍ୟରେ ଥିଲା ? ଜ୍ୟୋସ୍ନାର ଦୁଇଆଖି ଭରିଗଲା ଲୁହରେ ।

ଆଲୋକ ବାବୁଙ୍କର ଚିଠିର ଉତ୍ତର ଦେବାକୁ ସେ କେତେ ଥର ଚେଷ୍ଟା କରିଛି । ଲେଖିଲା ବେଳକୁ ହାତ ଥରି ଉଠେ । କଣ ଲେଖିବ ? ଲେଖିବ ଭୁଲି ଯିବାକୁ ? ସେ ଭୁଲି ପାରିବେ ? ଜ୍ୟୋସ୍ନା ନିଜେ ତ ଭୁଲି ପାରୁ ନାହିଁ । ଚିଠି ଲେଖି ପାରେ ନାହିଁ ।

କୋରାପୁଟରେ ଦାଣ୍ଡି ବର୍ଷ ଚନ୍ଦ୍ରଶେଖର ରହିଲେ । ଶ୍ରେଷ୍ଠ ସଂସାରର ବୋଝ ମୁଣ୍ଡରେ ବୋହି ଜ୍ୟୋସ୍ନାର ବେଳ ବେଶ୍ ସୁଖରେ କଟି ଯାଉଥାଏ । ଛାତ୍ରଜୀବନରେ ଯାହା ସେ ପଢ଼ିଥିଲା ସବୁ ତାର ଧୀରେ ଧୀରେ ପାଶୋରି ଯାଉଛି—ଇତିହାସ, ଭୂଗୋଳ, ଆଲ୍‌ଜେବ୍‌ରା— । ଇଂରେଜୀ ଭାଷାଟା କାଳେ

ଭୁଲିଯିବ ବୋଲି କେବେ କେମିତି ଖଣ୍ଡେ ଅଧେ ଉପନ୍ୟାସ ପଢ଼େ । ଖବର କାଗଜ ଓଲଟ ପାଲଟ କରେ । ବେଳେ ବେଳେ ବାପାଙ୍କ ପାଖକୁ ଇଂରେଜିରେ ଖଣ୍ଡେ ଖଣ୍ଡେ ଚିଠି ଲେଖେ ।

ଗୀତ ବୋଲିବା ଭୁଲି ନାହିଁ । କର୍ମକ୍ଳାନ୍ତ ଜୀବନରୁ ଅବସର ନେବାକୁ ଯେତେବେଳେ ଚନ୍ଦ୍ରକିଶୋର ଘରକୁ ଆସନ୍ତି, ଜ୍ୟୋତ୍ସ୍ନା ଗୀତ ବୋଲି ତାଙ୍କୁ ଶୁଣାଏ । ଚନ୍ଦ୍ରକିଶୋରର ବନ୍ଧୁମାନେ ଯଥା—ଡାକ୍ତର, ଡ଼େପୋଟି, ପୋଲିସ୍ ଇନ୍‌ସପେକ୍ଟର ବେଳେ ବେଳେ ଆସି ଅନୁରୋଧ କରନ୍ତି । ସେମାନଙ୍କର ସ୍ତ୍ରୀମାନେ ମଧ୍ୟ ଗୀତ ଶୁଣିବାକୁ ଜ୍ୟୋତ୍ସ୍ନାକୁ ବଳାବଳି କରନ୍ତି । ସେ ଉହାଡ଼ରେ ଥାଇ ଗୀତ ବୋଲେ । ବନ୍ଧୁ ଓ ବନ୍ଧୁପତ୍ନୀମାନେ ପ୍ରଶଂସା କରନ୍ତି । ଚନ୍ଦ୍ରକିଶୋରଙ୍କ ଛାତି ଫୁଲି ଫୁଲି ଉଠେ ଗର୍ବରେ ।

ନୂଆ ଗୀତ ପୁରୁଣା ହୁଏ । ଚନ୍ଦ୍ରକିଶୋର ନୂଆ ରେକର୍ଡ଼—ଓଡ଼ିଆ, ବଙ୍ଗଳା, ହିନ୍ଦି କିଣି ଆଣନ୍ତି, ଗ୍ରାମୋଫୋନ୍‌ରେ ଲଗାଇ ଜ୍ୟୋତ୍ସ୍ନା ଶିଖେ । ନିଜେ ବୋଲି ଶୁଣାଏ । ସେ ବି ହୁଏ ପୁରୁଣା, ଭେସେରା । କିନ୍ତୁ ଚନ୍ଦ୍ରକିଶୋର ଆଖିରେ ଜ୍ୟୋତ୍ସ୍ନା ସବୁ ଦିନେ ନୂଆ, ସୁନ୍ଦର, ରସରା ହୋଇ ପାରେ ନାହିଁ । 'ସହକାର' ଖଣ୍ଡେ ମାସକୁ ମାସ ଆସେ । ଚନ୍ଦ୍ରକିଶୋର ପୃଷ୍ଠପତ୍ର ଓଲଟାନ୍ତି—ଦୁଇଟି ଗଳ୍ପ, ତିନୋଟି କବିତା ପଢ଼ିବାକୁ ଚେଷ୍ଟା କରନ୍ତି, ପଢ଼ିପାରନ୍ତି ନାହିଁ । ଜ୍ୟୋତ୍ସ୍ନା ହାତକୁ ବଢ଼ାଇ ଦିଅନ୍ତି । ପଢ଼େ ଜ୍ୟୋତ୍ସ୍ନା ଅତି କଷ୍ଟରେ । ଗଳ୍ପ ଗୁଡ଼ାକ ଲମ୍ବା— ଏପରି ଲେଖା ଯେ ପାଠକକୁ ଧରି ରଖି ପାରୁ ନାହିଁ । କାହାର ବେଳ ଅଛି ଦର୍ଶନ, ରାଜନୀତି, ପୁଣି ପ୍ରତ୍ନତତ୍ତ୍ୱ ପଢ଼ିବ ? ଜ୍ୟୋତ୍ସ୍ନା କବିତା ପଢ଼େ—ବେଳେ ବେଳେ ଭଲ ଲାଗେ ।

ଗୋଟିଏ କବିତାରେ ତାର ଆଖି ପଡ଼ିଥିଲା ଥରେ । ପଢ଼ୁ ପଢ଼ୁ ସେ ଆଶ୍ଚର୍ଯ୍ୟ ହୋଇ ଚାହିଁ ରହିଥିଲା —ତାର ଜୀବନର କଥା ଜୀବନ୍ତ ହୋଇ ଫୁଟି ଉଠିଛି । ଲେଖକ— ? ଅଲୋକ ! କିଏ ସେ ଅଲୋକ ? ଜ୍ୟୋତ୍ସ୍ନା ଚିହ୍ନେ ନାହିଁ ?

ପ୍ରତି 'ସହକାର' ରେ ଅଲୋକର କବିତା ବାହାରେ । ଜ୍ୟୋତ୍ସ୍ନା ପଢ଼େ । ଚନ୍ଦ୍ରକିଶୋରଙ୍କୁ ପଢ଼ିବାକୁ ଦିଏ । ଦୁହେଁ ପଢ଼ନ୍ତି । ବିରହୀର ଦୁଃଖ, ତାର ଆଖିଲୁହ, ଦୀର୍ଘଶ୍ୱାସ, ପ୍ରେମିକାର ବିରୁଦ୍ଧରେ ଅଭିଯୋଗ ଯେପରି ନିଜେ ଅନୁଭବ କରନ୍ତି ।

ପତ୍ର ପତ୍ରିକାରେ ଅଲୋକର କବିତାର ସମାଲୋଚନା ବାହାରେ । କିଏ କରେ ପ୍ରଶଂସା, କେହି ବା କରେ ନିନ୍ଦା । ଜ୍ୟୋତ୍ସ୍ନା ଜାଣେ, ନିନ୍ଦା ପ୍ରଶଂସାର କୌଣସି ଅର୍ଥ ନାହିଁ । ଯିଏ ଲେଖିଛି, ସେ ତାର ଜୀବନର କଥା, ଅନୁଭୂତିର କଥା ଲେଖିଛି । ସତେ କି ତୁଳି ଧରି ଆଙ୍କି ଦେଇଛି—ନିଖୁଣ ସୁନ୍ଦର ଛବି !

ଲେଖକ ଲେଖିଛି ତା ମନର କଥା—ଯାହାର ପ୍ରତି ଅକ୍ଷରର ଅର୍ଥ ବୁଝେ ଜ୍ୟୋତ୍ସ୍ନା—ଯାହାର ଉଦ୍ଦେଶ୍ୟରେ ପ୍ରତ୍ୟେକଟି କବିତା ଲେଖା । ଜ୍ୟୋତ୍ସ୍ନା କବିତା ଗୁଡ଼ିକ ନିରୋଳାରେ ବସି ପଢ଼େ—ଅତୀତ ଆସି ଆଖି ଆଗରେ ଠିଆ ହୁଏ । ଦିନ ଦିନକର କଥା—ଅଙ୍ଗେ ନିଭେଇଛି ସେ । ଆଖି ଆଗରେ ଠିଆହୁଏ ଅନ୍ଲୋକର ମୂର୍ତ୍ତି—କେଡ଼େ ବିରସ, ଲୁହ ଡଳ ଡଳ ଆଖି । ଯେପରି କରୁଣ ଭାଷାରେ ପଚାରୁଛି···ଏଇଥି ପାଇଁ କଣ ଏତେ ଭଲ ପାଇଥିଲ ? ଦେଲ ମନଟା ଫେରାଇ ନେଲ କାହିଁକି ? କହ, ମୋର ଅପରାଧ କଣ ? ମୁଁ ଗରିବ ବୋଲି ?

ଜ୍ୟୋତ୍ସ୍ନାର ଆଖିରେ ଭରେ ଲୁହ । କୌଣସି ପ୍ରକାର ଉତ୍ତର ସେ ଦେଇ ପାରେ ନାହିଁ । କହି ଉଠେ ତାର ମନ—ମତେ କ୍ଷମାକର, କ୍ଷମାକର ।

ଚନ୍ଦ୍ରକିଶୋର ଦେଖେ ଜ୍ୟୋତ୍ସ୍ନାର ବିରସ ମୁହଁ—କାନ୍ଦିଲା କାନ୍ଦିଲା ଭାବ । କିଛି ବୁଝି ପାରେ ନାହିଁ । ପଚାରେ—ତମର ମନରେ ସରାଗ ନାହିଁ କାହିଁକି ? ଆକାଶରୁ ଓହ୍ଲାଇ ଆସିଲା ପରି ମଣେ ଜ୍ୟୋତ୍ସ୍ନା । ଓଠ ପାଖୁଡ଼ାରେ ଝଲକି ଉଠେ ହସ । ଚନ୍ଦ୍ରକିଶୋର ପାଖକୁ ଘୁଞ୍ଚି ଆସେ । ତାର ମଳିନ ମୁହଁକୁ ଚାହିଁ କହେ, ମୋର ନା ତମର ?

ଚନ୍ଦ୍ରକିଶୋର ହସେ । ଜ୍ୟୋତ୍ସ୍ନାର ମୁହଁ ଉଜ୍ଜଳି ଉଠେ । ଚନ୍ଦ୍ରକିଶୋର ସେଇ ଗୋରା ମୁହଁକୁ ଚାହିଁରହେ । ତାର ଛାତି ଉପରକୁ ଆଉଜି ଆସେ ଜ୍ୟୋତ୍ସ୍ନା । ପ୍ରାଣ ଭିତରୁ ଉଠେ ନୀରବ ଭାଷା—କ୍ଷମାକର, କ୍ଷମାକର ମୋର ଦେବତା ।

ଦୁଇବର୍ଷ ପରେ ଚନ୍ଦ୍ରକିଶୋରଙ୍କର ବଦଳି ହେଲା ବ୍ରହ୍ମପୁର । ବ୍ରହ୍ମପୁରରେ ବର୍ଷଟିଏ ରହିଲା ପରେ ଚନ୍ଦ୍ରକିଶୋରଙ୍କର ପ୍ରଥମ ସନ୍ତାନ କୁମୁଦରଞ୍ଜନର ଜନ୍ମ । କି ସୁନ୍ଦର ପିଲାଟି ! ଜ୍ୟୋତ୍ସ୍ନା କହେ, ଠିକ୍ ତମରି ପରି ହୋଇଛି—ଦେଖ ତାର କପାଳ ନାକ, ହାତ, ଗୋଡ଼ । ପିଲାଟିକୁ କୋଳକୁ ନିଏ । ଗେଲ କରେ । ଚନ୍ଦ୍ରକିଶୋର ତନ୍ମୟ ହୋଇ ଚାହିଁ ରହନ୍ତି । ହସି ହସି କହନ୍ତି—ନା, ନା, ଦେଖ ଠିକ୍ ତମରି ପରି ହୋଇଛି—ତାର ଭ୍ରୂଲତା, ସରୁ ସରୁ ଓଠ, କାନ । କୁମୁଦକୁ ଗେଲକରେ ମା କୋଳରେ ।

ମାସକୁ ମାସ 'ସହକାର' ଆସେ । ଖୋଲିବାକୁ କେହି ବେଳ ପାଆନ୍ତି ନାହିଁ । ଜ୍ୟୋତ୍ସ୍ନା ତାର ନୂଆ ସୃଷ୍ଟିର ପଛରେ ଦିନ ରାତି ଲାଗିଥାଏ । ଚନ୍ଦ୍ରକିଶୋର ଜ୍ୟୋତ୍ସ୍ନାକୁ ଦେଖନ୍ତି—ସଜଫୁଲଟି କିପରି ମଉଳି ଆସିଛି । ଚନ୍ଦ୍ରକିଶୋର ଜ୍ୟୋତ୍ସ୍ନାକୁ ଅତି ପାଖରେ ବାନ୍ଧି ରଖିବାକୁ ଚାହାଁନ୍ତି, କିନ୍ତୁ ଜ୍ୟୋତ୍ସ୍ନା, ପିଲାଟିକୁ ମଣିଷ କରିବାରେ ଢାଳିଦିଏ ମନ ପ୍ରାଣ । ଆଗ କୁମୁଦ—ତା ପରେ ଚନ୍ଦ୍ର ।

ଚନ୍ଦ୍ରକିଶୋର ବେଳେ ବେଳେ ବିରକ୍ତ ହୁଅନ୍ତି ଛୋଟ ଛୋଟ କଥାରେ—ମୋର କାମିଜ୍‌ରେ ବୋତାମ ନାହିଁ, ଟିକିଏ ଦେଖୁ ନା ? କେତେଥର କହିଚ, ମଇଲା ଲୁଗା ପିନ୍ଧିବ ନାହିଁ । ଘର ଦ୍ୱାର ଏପରି ଅପରିଷ୍କାର କରିଛ କାହିଁକି ? ଏଁ, ଏତେ ଟଙ୍କା ଖରଚ ହେଲା ଏ କେଇଦିନ ମଧ୍ୟରେ ?

ଜ୍ୟୋତ୍ସ୍ନା କାବା ହୋଇ ଚନ୍ଦ୍ରକିଶୋରଙ୍କ ମୁହଁକୁ ଗୁହିଁ ରହେ, କଣ ଯେପରି କହିବ କହିବ ହୁଏ । ପାଟି ଖୋଲେ ନାହିଁ । ମନର କୋହ ମନରେ ମରେ । ଆଖିରେ ଭରିଯାଏ ଲୁହ । ଚନ୍ଦ୍ରକିଶୋର ଦେଖି ନ ଦେଖିଲା ପରି ପଳାନ୍ତି । ଟିକି ପିଲା କାନ୍ଦି ଉଠେ । ଜ୍ୟୋତ୍ସ୍ନା ତାକୁ କୋଳକୁ ନିଏ ।

ଚନ୍ଦ୍ରକିଶୋରଙ୍କର ବିରକ୍ତି ଜ୍ୟୋତ୍ସ୍ନାର ଦେହସହା ହେଲା ! ସେ ଯାହା କହନ୍ତି, ଜ୍ୟୋତ୍ସ୍ନା ସଙ୍ଗେ ସଙ୍ଗେ କରେ । ଆଖିରୁ ଆଉ ଲୁହ ଝରେ ନାହିଁ । ମନରେ ଦାଗ ରଖେ ନାହିଁ । କୁମୁଦ ହସେ, କୁମୁଦ ମା ମା ବୋଲି ଡାକେ । ଜ୍ୟୋତ୍ସ୍ନାର ପ୍ରାଣ ପୁଲକି ଉଠେ । ଆପେ ଆପେ ଓଠରେ ଝଲସେ ହସ ।

ସାତ ବର୍ଷ କଟିଗଲାଣି—

ଜ୍ୟୋତ୍ସ୍ନା ଆଜି ଛଅୋଟି ପିଲାର ମା । ରକ୍ତ ମାଂସ ଦେଇ ଛଅୋଟି ପିଲାଙ୍କୁ ଗଢ଼ି ସେ ଦୁର୍ବଳ ହୋଇ ପଡ଼ିଛି । ସଂସାରର ଜଞ୍ଜାଳ ତାର ଦେହସହା ହେଲାଣି । ନିଶ୍ଚିନ୍ତରେ ସ୍ୱାମୀ ପାଖରେ ଘଡ଼ିଏ ବସିବାକୁ ତାର ବେଳ ନାହିଁ । ହାରମୋନିୟମରେ ଏପାକ ବସା ବାନ୍ଧିଲେଣି । କେବେ କେମିତି ମାସେ ପନ୍ଦର ଦିନରେ ଥରେ ଖୋଲି ସ୍ୱାମୀକୁ ଗୀତ ଶୁଣାଇବାକୁ ଆଗ୍ରହ କଲେ ପିଲାଗୁଡ଼ାକ ଗୋଳମାଳ କରନ୍ତି । ବୋଲି ପାରେ ନାହିଁ । ମନଦୁଃଖରେ ବନ୍ଦ କରି ରଖି ଦିଏ । ବହି ଖଣ୍ଡେ ପଢ଼ି ଶେଷ କରିବାକୁ ବେଳ ପାଏ ନାହିଁ । ଆରମ୍ଭ କଲେ ପିଲାଏ ହଇରାଣ କରନ୍ତି ।

କେତେ ତ 'ସହକାର' ଟେବୁଲ୍ ଉପରେ ପଡ଼ି ପଡ଼ି ପୁରୁଣା ହୁଏ, ଶେଷକୁ ଅଲମାରିରେ ସାଇତା ହୁଏ । ଲେଖାରେ ଜ୍ୟୋତ୍ସ୍ନାର ଆଖି ପଡ଼େ ନାହିଁ । ଛଅୋଟି ସନ୍ତାନ ତାର କବିତାର ଉତ୍ସ—ଯାହାଙ୍କର ହସ କାନ୍ଦ, କନ୍ଦଳ ଅଲଅଲଗିରି, ରାଗରୋଷ, ଅଳି, ନିଜ ନିଜ ମଧ୍ୟରେ ଖୁବ୍ ଖେଳିବା ଜ୍ୟୋତ୍ସ୍ନାର ମନରେ ସଙ୍ଗୀତର ମୂର୍ଚ୍ଛନା ଉଠାଏ । ସେମାନେ ତାର କବିତା, ଗଳ୍ପ । ଆଉ, ତାର ସ୍ୱାମୀ ଚନ୍ଦ୍ରକିଶୋର—ତା ଆଗରେ ବିରାଟ ଅଫୁରନ୍ତ ଉପନ୍ୟାସ !

ସମ୍ବଲପୁରରେ ରହିବାର ଦେଢ଼ବର୍ଷ ହେଲାଣି । ଚନ୍ଦ୍ରକିଶୋର ଅଧିକାଂଶ ସମୟ ଅଫିସରେ କଟାନ୍ତି । ସରକାରୀ କାମ, ଯେତେ କରୁଥିବ ସେତିକି ବଢ଼ିଯାଏ । ଘରକୁ ଆସିଲେ ମଧ୍ୟ ନିସ୍ତାର ନାହିଁ । ଦାଣ୍ଡ ଘରେ—ଚୁପଚାପ୍ ସେ କାମ କରନ୍ତି, ଘଡ଼ିଏ ବସିଲେ ପାଖଲୋକ ଆସି ଗୋଳମାଳ କରନ୍ତି । ବିରକ୍ତ ହୋଇ ଘର ଭିତରକୁ ଉଠିଯାନ୍ତି । ବଡ଼ ପିଲାଟା ସ୍ୟାହି ଟାଣି କାନ୍ଥରେ

ବୋଲୁଛି । ମଝିଆଁଟା ସୁଧାଧର କାନ୍ଦୁଛି । ସବା ସାନଟା ଧୂଳିରେ ଗଡ଼ୁଛି । ବିରକ୍ତ ହୋଇ ଉଠନ୍ତି । 'ଏତେ ଗୁଡ଼ାଏ ଚାକର, ତଥାପି ଘରେ ବିଶୃଙ୍ଖଳା ଅଶାନ୍ତି । ଜ୍ୟୋତ୍ସ୍ନାକୁ ଖୋଜନ୍ତି । ସେ ଶେଷ ଘରେ । ଡାକ ଛାଡ଼ନ୍ତି । ଜ୍ୟୋତ୍ସ୍ନା ତରତର ହୋଇ ଉଠି ଆସେ । ହାତରେ ପିଠାଖଣ୍ଡିକା, ଲୁଗା ମଇଳା, ଅସଂଯତ କେଶ । ଝାଳ ଗମ୍‌ଗମ୍ ଦେହ । ପଶିଲି ପଶିଲି ଗାଲ । ଜ୍ୟୋତିହୀନ ଆଖି ।

ଚନ୍ଦ୍ରକିଶୋର ସହିପାରନ୍ତି ନାହିଁ । ମୁହଁ ତମ୍‌ତମ୍ କରି କହନ୍ତି, ତମେ କଣ ଅନ୍ଧ ହେଲ କି ? ଦିଶୁନାହିଁ ପିଲାଗୁଡ଼ା କଣ ହେଉଛନ୍ତି ? ଜ୍ୟୋତ୍ସ୍ନା ଜବାବ ଦିଏ, ତମ ପାଇଁ ଜଳଖିଆ କରୁଥିଲି ପରା ! ଥଟ୍ଟା କରି ରାଗରେ ଚନ୍ଦ୍ରକିଶୋର କହନ୍ତି, ସବୁ ତ ମୋର ପାଇଁ !

କଥା କଟାକଟି ଚାଲେ । ଦିହେଁ ରାଗନ୍ତି । ଚନ୍ଦ୍ରକିଶୋର ମନଇଚ୍ଛା ବକିଯାନ୍ତି । ଜ୍ୟୋତ୍ସ୍ନା ତାର ଉତ୍ତର ଦିଏ । ଦୁହେଁ ରାଗରେ ଫଁ ଫଁ ହୁଅନ୍ତି । ଚନ୍ଦ୍ରକିଶୋର ଚିହିଙ୍କି ଆସନ୍ତି । ଅଭିମାନରେ ଜ୍ୟୋତ୍ସ୍ନା ପଶେ ତାର ଶୋଇବା ଘରେ । ମୁହଁମାଡ଼ି ଶୁଏ । କାନ୍ଦେ । ଚନ୍ଦ୍ରକିଶୋର ଥରଟିଏ ତା ଆଡ଼କୁ ଅନାନ୍ତି ନାହିଁ । ଓ୍ୱାକିଂଷ୍ଟିକ୍ ଧରି ବାହାରକୁ ବାହାରି ପଡ଼ନ୍ତି—କ୍ଲବକୁ— ।

ଜ୍ୟୋତ୍ସ୍ନାର ଲୁହ ଭିତରେ ଉଙ୍କି ହୁଏ ଆଲୋକ । ମନେହୁଏ, ଚନ୍ଦ୍ରକିଶୋରଙ୍କ ସଙ୍ଗେ ତାର ସମ୍ବନ୍ଧ ଆକସ୍ମିକ, ଅସ୍ୱାଭାବିକ । ପ୍ରଥମ ଯୌବନର ତରଳ ମନ ଯାହାର ପାଦ ଧୋଇବାକୁ କୌଣସି ବାଧା ନ ମାନି ଧାଇଁଥିଲା, ସେ ଆଲୋକକୁ ପାଇଥିଲେ ସେ ସୁଖୀ ହୋଇ ପାରିଥାନ୍ତା ।

ଜ୍ୟୋତ୍ସ୍ନା ଉଠେ । ଆଲମାରି ଭିତରୁ ପୁରୁଣା ସହକାର କାଢ଼େ । ପଢ଼େ ଆଲୋକର କବିତା । ପ୍ରତି ମାସରେ ବାହାରୁଛି । ବିରହୀ କବି ଯେପରି ଆଗରେ ଠିଆ ହୋଇ ଛାତି ତଳର ସବୁ ଛପିଲା ବ୍ୟଥା, ଅଭିମାନ ସହଜ କଥାରେ କହି ଯାଉଛନ୍ତି[1] । ସାତ ବରଷ, ସାତୋଟି ମୂହୂର୍ତ୍ତ ପରି ଲାଗୁଛି । ପରିସ୍ଥିତି ମନେ ହୋଇଛି ଯେପରି ସ୍ୱପ୍ନ । ଆଲୋକ—ସାତ ବର୍ଷ ହେଲା ଯେ ଭାବୁଛି, ଝୁରୁଛି !

ପିଲାଗୁଡ଼ାକ କାନ୍ଦି କାନ୍ଦି ଅସ୍ଥିର ହୁଅନ୍ତି ଚାକର ପାଖରେ । ସେମାନଙ୍କର ପାଟି କାନରେ ବାଜେ, ମନରେ ପଶେ ନାହିଁ । ମନ ଚାହେଁ ଧାଇଁ ଯିବାକୁ ଆଲୋକ ପାଖକୁ, ଛାତି ଉପରେ ମୁଣ୍ଡ ରଖି କ୍ଷମା ଚାହିଁବାକୁ । କୋହ ଉଠେ—ଜ୍ୟୋତ୍ସ୍ନା କାନ୍ଦେ ।

ଚନ୍ଦ୍ରକିଶୋରଙ୍କ ମନ କ୍ଲବରେ ଲାଗେ ନାହିଁ । ମନ ଗୋଳେଇ ହୁଏ । କିଏ ଯେପରି କହି ଉଠେ ତାଙ୍କର ଛାତି ଭିତରେ—ସେ ଅନ୍ୟାୟ କରିଛନ୍ତି । ପିଲା-ଗୁଡ଼ାକ ତ ତାଙ୍କର । ଜ୍ୟୋତ୍ସ୍ନା ସଙ୍ଗରେ ଆଣି ନ ଥିଲା । ଜ୍ୟୋତ୍ସ୍ନା ଅଜ୍ଞ ଦୁର୍ବଳ,

ଅସୁନ୍ଦର ହୋଇଛୁ ତାଙ୍କର ପାଇଁ ସିନା ! ଦିନ ସାରା ସେ ତାଙ୍କର ସେବା, ତାଙ୍କର ପିଲାଙ୍କର ସେବା କରିବାରେ ବ୍ୟସ୍ତ । ଖିଆ ପିଆ, ସୁଖ ଆନନ୍ଦ ଭୁଲିଛି । ଚନ୍ଦ୍ର ଚଞ୍ଚଳ ହୋଇ ଉଠନ୍ତି—ସେ ଅନ୍ୟାୟ କରିଛନ୍ତି । ସେ ଭୁଲ୍ କରୁଛନ୍ତି ।

ଅଧା ଖେଳରୁ ଉଠିଆସନ୍ତି । ବନ୍ଧୁମାନେ ଅବାକାବା ହୋଇ ଚାହିଁ ରହିଥାନ୍ତି ।

ଜୋଛ୍ନାର ଆଖିଲୁହ ଚନ୍ଦ୍ରଙ୍କର ଅସହ୍ୟ ହୁଏ । ସେ କିଛି କହନ୍ତି ନାହିଁ । ଜ୍ୟୋତ୍ସ୍ନାକୁ ଟାଣି ନିଅନ୍ତି ପାଖକୁ । ଜ୍ୟୋତ୍ସ୍ନା ହାତ ଛୁଆଁନ୍ତେ—ରାଗ ଅଭିମାନ । ଚନ୍ଦ୍ରଙ୍କର ବାହୁବନ୍ଧନରୁ ଖସି ଆସି ପାରେ ନାହିଁ । ସାତ ବର୍ଷ ପରେ ଇ ଅସେ ଜୀବନ ।

ଅଲୋକର ସ୍ମୃତି ହୁଏ ନଷ୍ଟ ଭ—ଲିଭେ ନାହିଁ, ଛପିଯାଏ ଚନ୍ଦ୍ର-ଜ୍ୟୋତ୍ସ୍ନାର ଘେନାଘେନ ଉହାଡ଼ରେ ।

କବି ଅଲୋକଙ୍କର ପ୍ରଥମ କବିତା ବହି ପ୍ରକାଶିତ ହେଲା—"ଜ୍ୟୋତ୍ସ୍ନା-ଲୋକ" । ଦେଶରେ ପଡ଼ିଲା ଚହଳ । ଧନ୍ୟ ବିରହୀ କବି ! ପ୍ରତି ଧାଡ଼ିରୁ ଝରି ପଡ଼ୁଛି ବେଦନା । ଚନ୍ଦ୍ରକିଶୋର ପଢ଼ି ତନ୍ମୟ ହେଲେ । ଜ୍ୟୋତ୍ସ୍ନା ପଢ଼ିଲା ନାହିଁ । ପୁଣି ବାହାରିଲା—"ବିରହୀ-ଯକ୍ଷ ।" ଚନ୍ଦ୍ରକିଶୋର ପଢ଼ିଲେ । ପଢ଼ିଲା ଜ୍ୟୋତ୍ସ୍ନା । ଚନ୍ଦ୍ରକିଶୋର କହିଲେ ଜ୍ୟୋତ୍ସ୍ନାକୁ, ଚମତ୍କାର ! ଜ୍ୟୋତ୍ସ୍ନା ଉତ୍ତର ଦେଲା, ବାଜେ । ଚନ୍ଦ୍ରକିଶୋର ହସି ହସି କହିଲେ, ବୁଝିବାର ଶକ୍ତି ତୁମର ନାହିଁ । କାବ୍ୟର ନାୟିକା ଯେ, କବିର ଯେ ପ୍ରେରଣା, ଯାହା ପାଇଁ ବିରହୀ ଯକ୍ଷର ଜନ୍ମ, ସେ ମୁହଁ ଖୁଞ୍ଚାଇ କହିଲା—ହୁଏ ତ ସେଇୟା !

ତୃତୀୟ, ଚତୁର୍ଥ, ପଞ୍ଚମ—କବି ଅଲୋକର କାବ୍ୟମାଳା ଖେଳିଗଲା ଦେଶରେ । ସମସ୍ତେ ଆଶ୍ଚର୍ଯ୍ୟ ହେଲେ । ଧନ୍ୟ ଲେଖକ ! ସମସ୍ତଙ୍କ ମନରେ ଉଠିଲା ଗୋଟିଏ ପ୍ରଶ୍ନ—କିଏ ସେ ଭାଗ୍ୟବତୀ, ଯାହାର ସ୍ମୃତି ପୂଜା ପାଇଁ ତାଜମହଲ ଗଢ଼ିଛି କବି ଅଲୋକ—ସୁନ୍ଦର, ଅକ୍ଷୟ, ଅମର !

ଚନ୍ଦ୍ରକିଶୋର ପଚାରିଲେ ଜ୍ୟୋତ୍ସ୍ନାକୁ, କିଏ ସେ କବି, ଆଉ କିଏ ତାର ପ୍ରେୟସୀ ?

ଜ୍ୟୋତ୍ସ୍ନା ପ୍ରଶ୍ନଭରା ଆଖିରେ ଚନ୍ଦ୍ରଙ୍କୁ ଚାହିଁଲା । ଅଜଣା ଭୟରେ ଥରି ଉଠିଲା ତାର ଛାତି ।

ସକାଳେ—

ସମ୍ବଲପୁର ଟାଉନ୍‌ହଲରେ ସଭା—କବି ଅଲୋକ ଆସିଛନ୍ତି, ତାଙ୍କର ଅଭ୍ୟର୍ଥନା ପାଇଁ ।

ସଭା ଶେଷରେ ଚନ୍ଦ୍ରକିଶୋର କବିଙ୍କୁ ନିମନ୍ତ୍ରଣ କଲେ । ଅଲୋକ ନିମନ୍ତ୍ରଣ ଗ୍ରହଣ କଲେ ।

ଚନ୍ଦ୍ର କହିଲେ ଜ୍ୟୋସ୍ନାକୁ, ଅଲୋକ ବାବୁ, କି ସୁନ୍ଦର ରୂପ, ପ୍ରତି କଥାରେ ଯେପରି କବିତା ଫୁଟେ । ତୁମେ ତାଙ୍କୁ ଅଡ଼ ହେବ ନାହିଁ । ନିଜ ହାତରେ ପରଷି ଦେବ । କବି ସବୁ କୁଟୁମ୍ବର ନିଜ ଲୋକ । ଦେଖିଲେ ବୁଝିବ, ଯିଏ ତାଙ୍କୁ ପ୍ରତାରଣା କରୁଛି ସେ ନିର୍ବୋଧ । ସେ ଭୁଲ୍ କରୁଛି । ଦେଖିବ ଆଜ ସଞ୍ଜରେ ।

ଜ୍ୟୋସ୍ନାର ଗୁଣ୍ଡରେ କିଏ ଯେପରି ଛୁରୀ ମାରିଲା । ଉତ୍ତର ଦେଲା ନାହିଁ । ସାତ ବର୍ଷ ପରେ ସେ ଆଜି ଭେଟିବ ଅଲୋକକୁ, ସମସ୍ତଙ୍କ ଅଜ୍ଞାତରେ ଯାହା ପାଇଁ ହୃଦୟର କେଉଁ ଅନ୍ଧାର କୋଣରେ ସେ ଜାଗା ଟିକେ ଗୁଡ଼ ଦେଇଥିଲା । କିପରି ଗୁହିଁବ ତାଙ୍କ ମୁହଁକୁ ? କଣ କହିବ ?

ନିଜ ହାତରେ ସେ ସବୁ ଆୟୋଜନ କଲା ।

ସନ୍ଧ୍ୟାରେ—

କିଏ ଜଣେ ଚିଠି ଖଣ୍ଡେ ଦେଇଗଲା । ଚନ୍ଦ୍ର ଖୋଲିଲେ । ଲେଖାଥିଲା, କ୍ଷମା କରିବେ, ଜରୁରୀ କାମରେ ବର୍ତ୍ତମାନ ମୁଁ ସୋନପୁର ଯାଉଛି ।—ଅଲୋକ ।

ଚିଠିଖଣ୍ଡି ଜ୍ୟୋସ୍ନାହାତକୁ ବଢ଼ାଇ ଦେଲେ ଚନ୍ଦ୍ର ।

## ସାନ ବଡ଼

ଗାଁକୁ ଫେରୁଛି ଚୈତନ । ଦେହରେ କାମିଜ, ଗୋଡ଼ରେ ଜୋତା । ମସ୍ ମସ୍ ଗୁଲୁଛି । ହସ ହସ ମୁହଁ । ବସ୍ତ୍ର ବନ୍ଧ ଉପରେ ବସିଥିଲା । ତା ପାଖରେ ଭଗତୋ । ଦହେଁ ଠିଆ ହେଲେ । ମନ ହେଉଥାଏ ପ୍ରଣାମ କରିବାକୁ । ହାତ ଉଠେ ନାହିଁ । ଚୈତନ ଗାଁ ପିଲା, ତାଙ୍କର ସାଙ୍ଗ—ହେଲା ବା ସେ କଟକର କରଣୀ ବାବୁ !

ବସ୍ତ୍ର ପଗୃରିଲା, କଣ ଛୁଟିରେ ଚୈତନ ବାବୁ ?

ଚୈତନ କହିଲା, ହଁ, ଦୁଇଦିନ ଛୁଟି ।

ଭଗତୋ ପଗୃରିଲା, ପିଲାଏ ଭଲ ଅଛନ୍ତି ?

ଚୈତନ କହିଲା, ହଁ, ତମର କଲ୍ୟାଣରୁ ।

ଚୈତନ ବନ୍ଧ ଉପରୁ ଗଡ଼ିଲା ।

ଭଗତୋ କହିଲା, ଚୈତନ ଭଲ ପିଲା । ଦେଖୁଛୁ ତ ବସ୍ତ୍ର, ଅମରି ଆଗରେ ଏଇ ଗାଁରେ ଛନ ଓଳରେ ଚୁଲି କଲେ ନାହିଁ । ସେ ଲୁଗା ଖଣ୍ଡେ, ସେଇ ପୁଣି—

ବନ୍ଧୁର ଗତ କଥା ମନେ ପଡ଼ିଲା । ଚୈତନକୁ ପାଠ ଅସେ ନାହିଁ ବୋଲି ଗାଁ ଗୁହାଳରେ ପଢ଼ିଲାବେଳେ କେତେଥର ସେ ତାର କାନ ମୋଡ଼ିଛି । ଦୁହେଁ ଏକ ସଙ୍ଗେ ଗୁହାଳରୁ ବାହାରି ଥିଲେ । ପର ପଛରେ ଗୋଡ଼େଇ ସେ ପାଠ ପଢ଼ିଲା । ମଣିଷ ହେଲା । ନୂଆ ଘର ତୋଲିଲା । ଧୀରେ ଧୀରେ ଛଅମାଣ ଜମି କିଣିଲାଣି । ସୁଖରେ ଅଛି । ଆଜି ସେ, ବାପ ଶୁଦ୍ଧକୁ ମାଣେ ଜମି ବିକିଲା । ଖଣ୍ଡିଏ କାନ୍ଥରେ ମାଟି ନେସିବାକୁ ତାର ସମ୍ବଳ ନାହିଁ । ବନ୍ଧୁ ଦୀର୍ଘଶ୍ୱାସ ଛାଡ଼ିଲା । କହିଲା, ହଁରେ ଭାଇ, ଭାଗ୍ୟ !

ଛଅନୋଟି ପିଲାଙ୍କୁ ଧରି ଚୈତନର କୁଟୁମ୍ବରେ ପାଞ୍ଚପ୍ରାଣୀ ଜୀବ । ଟଙ୍କା ଚାଳିଶିଟି ଦରମା ପାଏ । ଘରଭଡ଼ା ଦିଏ ପାଞ୍ଚ ଟଙ୍କା । ବାକି ଟଙ୍କାରେ ପାଞ୍ଚ ପ୍ରାଣୀ କୁଟୁମ୍ବର ପେଟ ପୋଷିବ । ଲୁଗା ଜାମା ପିନ୍ଧିବାକୁ ଦେବ । ବଡ଼ ପିଲାଟି ପୁଅ, ପାଠ ପଢ଼ିବାର ବୟସ ହେଲାଣି । ସାନ ଦିଓଟି ଝିଅ । ଅଜି ସିନା ପିଲା, କାଲି ବଡ଼ ହେବେ । ପର ଘରକୁ ଯିବେ । ତାଙ୍କର ଭବିଷ୍ୟତ ପାଇଁ କିଛି ସଞ୍ଚି ରଖିବା ଦରକାର । ନିଜର ଭବିଷ୍ୟତ ପାଇଁ ମଧ୍ୟ ଜମିବାଡ଼ି କିଛି କରିବା ଆବଶ୍ୟକ ।

ଚୈତନ ଦୁଃଖରେ ଚଳେ । ଅଫିସ୍ କାମରେ ଦିନ ସାରା ବ୍ୟସ୍ତ ଥାଏ । ବେଳ ଟିକିଏ ପାଇଲେ, ଘରକାମରେ ଘରଣୀକୁ ସାହାଯ୍ୟ କରେ । ପିଲାଙ୍କୁ ପାଠ ପଢ଼ାଏ । ଚାକର ବାକର ନାହିଁ ।

ମାସର ପନ୍ଦର ତାରିଖ । ଘରଣୀ କହିଲେ,-ମୋ ପାଇଁ ଖଣ୍ଡେ ଲୁଗା ଆଣିବ । ମଇଳା ପିନ୍ଧି ପିନ୍ଧି ଲୁଗାଗୁଡ଼ା ଚିରୁଛି ।

ଚୈତନ କହିଲା, ସେମିତି ଆଉ ପନ୍ଦର ଦିନ ଚଳ । ପହିଲା ହେଲେ ଆଖି ବୁଜି ଆଗ ଯୋଡ଼ାଏ ଶାଢ଼ୀ କିଣି ନେଇ ଅସିବ ।

ତୁନି ରହିଲା ତାର ସ୍ତ୍ରୀ । କେତେ ପହିଲା ତ ଗଲାଣି, ଦେଖାପାଉ, ଏ ପହିଲାକୁ—

ଯେତେବେଳେ ସ୍ତ୍ରୀଙ୍କର ଅଡେକା ରୂପ ଆଖିରେ ପଡ଼େ, ନିଜର ଛିଣ୍ଡା କାମିଜ ଉପରେ ନଜର ପଡ଼େ, ତାର ପ୍ରାଣ କାନ୍ଦିଉଠେ—ସେ ଗରିବ ! ଭଗବାନଙ୍କର ଯାହା ଇଚ୍ଛା । କାଲି ସେ ଥିଲା ଗରିବ । ଅନେକ ପରିଶ୍ରମ କରିଛି, ଅନେକ କରିଛି ଚେଷ୍ଟା । ତଥାପି ତାର ଦୁଃଖ ଘୁଞ୍ଚିଲା ନାହିଁ । ଶେଷ ଥର ଯେଉଁ ଜମି ମାଣକ କିଣିଥିଲା, ସେଥିପାଇଁ ବନା ଲେଖା ପଢ଼ାରେ ସେ ଶହେ ଟଙ୍କା ହାତ ଉଧାରି ଅଣିଛି, ତାର ସ୍କୁଲ ଜୀବନର ବନ୍ଧୁ ସୁବଳଠାରୁ । ଚାରି ମାସ ହେଲାଣି । ପଇସାଟିଏ ସୁଝି ପାରି ନାହି । ଲାଜରେ ସୁବଳର ଘରଆଡ଼େ ମଧ୍ୟ ସେ ଯାଇପାରେ ନାହିଁ ।

ଏଇ ସୁବଳ, କାଲି ଯେତେବେଳେ ଫି. ଏମ୍. ଏକାଡେମିରେ ପାଠ ପଢ଼ୁଥିଲା, ବଜାର ଚଗଲା ବୋଲି ତା ନାମର ଡାକ ଥିଲା । ସେପର କିଛି ଧନୀ ଘରର ପିଲା ନୁହେ, ତଥାପି ବେଶ୍ ଫୁର୍ତ୍ତିରେ ଥାଏ, ପାନ ଖାଏ, ବଡ଼ି ଟାଣେ, ଟେଢ଼ି କାଟେ, ଫ୍ରେଞ୍ଚ୍‌କଟ୍ ଦାଢ଼ି ରଖେ, ମାଷ୍ଟରମାନଙ୍କ ପଛରେ ଥଟ୍ଟା କରେ । ସବୁ ବିଷୟରେ ଫେଲ୍ ହୋଇ ମାଟ୍ରିକ ଦ୍ୱିତୀୟ କ୍ଲାସରୁ ପଢ଼ା ଛାଡ଼ିଥିଲା । ଦୁଇ ବର୍ଷ କାଳ ଏଣେ ତେଣେ ବୁଲି ଶେଷକୁ ବେପାର ବଣିଜରେ ମନ ଦେଲା । ଅଳୁ ବେପାର, ଧାନ ଚାଉଳ ବେପାର । ଯହିଁରେ ହାତ ଦେଲା ସେଥିରେ ହେଲା ଫେଲ୍ । ବାପର ମରଣ ପରେ ନିଜେ ଯେପରି ଘରର ମାଲିକ ହେଲା, ଘରଡିହ ବନ୍ଧା ପକାଇ, ସାମାନ୍ୟ ଯାହା ଟଙ୍କା ମିଳିଲା ସେଥିରେ ସେ ଆରମ୍ଭ କଲା କାନ୍ଟ୍ରାକ୍ଟି ।

ବର୍ଷ ଦଶଟା ପୂରି ହୋଇନାହିଁ । ଆଜି ସୁବଳ ବଡ଼ଲୋକ, ସୁଖୀ ! କଟକରେ ଦୋତାଲା ଘର, ମୋଫସଲରେ ଜମିବାଡ଼ି । ମଟରଗାଡ଼ି ଚଢ଼ି ବୁଲେ । କେତେ ଫୁର୍ତ୍ତିରେ ଥାଏ । ସୁବଳ ଆଜି ସୁବଳ ବାବୁ ! ଭାଗ୍ୟବାନ୍ । ଭାଗ୍ୟ ଯେତେବେଳେ ଅନୁକୂଳ ହୁଏ, ଶୂନ୍ୟରୁ ଗଳେ ଧନ । ବାଟର ଭିଖାରି ସୁବଳ ହୁଏ ବଡ଼ ଲୋକ !

ଚୈତନ ଭାବିଲା, ଥରେ ଯିବ । ଦୁଇ ଚାରିମାସ ସମୟ ମାଗି ଆସିବ, ନୋହିଲେ ଭଦ୍ରତା ରହିବ ନାହିଁ । ଆଉ ଦିନକୁ ଆଉ ଦିନ ଅଛି ।

ଚୈତନ ଚାଲିଲା—

ସୁବଳ ବାବୁ ନିଜେ ବଡ଼ ଅଭାବରେ ପଡ଼ିଛନ୍ତି । ଦିତାଲା କୋଠା, କୁସନ୍ ଚେୟାର । ବିଜୁଳିପଙ୍ଖା ତଳେ ବସି ମଧ୍ୟ ତାଙ୍କର ଅଭାବ । ଦୁଇଟା ମଟରଗାଡ଼ି ତଥାପି ସେ ଅଭାବଗ୍ରସ୍ତ । ଅନେକଆଡ଼େ ଅନେକ କାମ ନେଇଛନ୍ତି । ଗୁମାସ୍ତାମାନେ ସବୁ ବୁଝାସୁଝା କରନ୍ତି । ସୁବଳ ବାବୁଙ୍କର କେବଳ ସୁପରଭିଜନ କରିବା କଥା, ଏକାଉଣ୍ଟ୍ ଦେଖିବା କଥା ।

ତାଙ୍କର ଅଭାବ ହେଉଛି ୱାର୍କସପ୍ । ଇଟା ଓ ଚୂନ ଲାଗି । ଇଟା ଚୂନ ଆଉ କାଠ କାମପାଇଁ ଯଦି ସେ ପର ଉପରେ ନିର୍ଭର କରନ୍ତି, କାନ୍ଟ୍ରାକ୍ଟି ବ୍ୟବସାୟ କରିବେ କିପରି ? ସୁର୍, ସେନ୍, ଦାସ୍ଙ୍କ ସଙ୍ଗେ କମ୍ପିଟିସନ୍‌ରେ ଠିଆ ହେବେ କିପରି ? ଜାତୀୟତା ଦିଗରୁ ଦେଖିବାକୁ ଗଲେ, ଏମାନଙ୍କ ବ୍ୟବସାୟ କ୍ଷେତ୍ରରୁ ତଡ଼ିବା ଦରକାର । ହାକିମମାନେ ଦେଶୀଲୋକ ହେଲେ ବ କଣ ଜାତୀୟତା କଥା ବୁଝନ୍ତି ? ପାଓ୍ୱାର ବଳରେ ଯାହା ବୁଝନ୍ତି ସେଇ କଥା କରନ୍ତି ! ସେମାନେ ଅନ୍ଧ ହେଲେ ବୋଲି ତ ସୁବଳ ବାବୁ ତୁନିହୋଇ ବସନ୍ତେ ନାହିଁ । ନିଜର ଯଦି ସବୁ ଦିଗରେ ୱାର୍କସପ୍ ଖୋଲିଯାନ୍ତା ଯେତେ ବଡ଼ କାମ ହେଲେ ମଧ୍ୟ ଅକ୍ଲେଶରେ ସେ ଅନ୍ୟମାନଙ୍କ ସଙ୍ଗେ କମ୍ପିଟିସନ୍ କରି

ପାରନ୍ତେ । ଷତ୍ତ ସହ୍ର ମଧ ବଜାଡାସୁଙ୍କ୍ ହାତରେ ନ ମାର ଭିତରେ ମାର ପାରନ୍ତେ । ତେଣିକି, ତେଣିକି ଆଉ ଭାବନା କରିବାକୁ ପଡ଼ନ୍ତା ନାହିଁ ।

ଏହି ସବୁ କାରଣରୁ ସୁବଳ ବାବୁ ଦଶହଜାର ଟଙ୍କା କରଜ କରି ପ୍ରଥମରେ ଗୋଟିଏ କାଠ ଓ୍ୱାର୍କସପ୍ ଆରମ୍ଭ କରିଛନ୍ତି । ତାଙ୍କର ମନ ଧ୍ୟାନ ସବୁ ସେଇଠି । ଟଙ୍କା ଦଶ ହଜାରରେ ବା କି ଓ୍ୱାର୍କସପ୍ ହେବ ! ସେ ଗରିବ । କ୍ୟାପିଟାଲ ଅଭାବ । ଆରମ୍ଭ ସିନା କରିଦେଲେ, ଚଳାଉଛନ୍ତି କପରି ?

ଚୈତନ୍ୟ ସୁବଳ ବାବୁଙ୍କ ଠାରୁ ଏ ସବୁ କଥା ଶୁଣି ଥକ୍କା ହୋଇ ବସି ପଡ଼ିଲା । ପ୍ରକୃତରେ ତ ସୁବଳ ବାବୁ ଗରିବ, ତାଙ୍କ ଦୁଃଖ, ଚିନ୍ତା ଓ ଅଶାନ୍ତିର ପରିସର ବଡ଼ ! ତାଙ୍କୁ ସେ କଣ ବା ସାନ୍ତ୍ୱନା ଦିଅନ୍ତା ? ତାଙ୍କ ପାଖରେ ନିଜର ଦୁଃଖ ଅଭାବ କଥା ବା କଣ କହନ୍ତା ? ସମୁଦ୍ରକୁ ଶଙ୍ଖେ ହେଲେ ବି ତ ସେ ତାଙ୍କର ଧାରୁଥା !

ଚୈତନ ଗମ୍ଭୀର ହୋଇ ଫେରି ଆସିଲା । ଭାବୁଥାଏ, ଆଉ କେଉଁଠି ଶହେଟି ଟଙ୍କା ଧାର କରି ପାରିଲେ ସୁବଳ ବାବୁଙ୍କ ଅଭାବ ବେଳରେ ସେ ଟିକିଏ ହେଲେ ସାହାଯ୍ୟ କରି ପାରନ୍ତା !

## ଜୁଆର ଓ ଭଟ୍ଟା

ଅପାର ଚିଠି ସଙ୍ଗରେ ଆଉ ଖଣ୍ଡେ ଚିଠି ଥିଲା । ଗୋଲ ଗୋଲ ସୁନ୍ଦର ହସ୍ତାକ୍ଷର, କେଡ଼େ ଯତ୍ନରେ ଲେଖା ହୋଇଛି—ଭୁଲିଗଲ ପରା ! କାହିଁକି ଦେଖା ଦର୍ଶନ ନାହିଁ ? ଜାଣେ ଯେ, ଆମକୁ ଡର ଆସିବାକୁ ସାହସ ହେଉ ନାହିଁ । ଏଡ଼ିକି ଡରୁଆ ?

ଅପାର ଚିଠି ଖଣ୍ଡିରେ ଆଖି ପକାଇ ଗଲି—କପରି ଅଛୁରେ ? କେବଠୁଁ ତତେ ଦେଖି ନାହିଁ । ରଜକୁ ନିଶ୍ଚୟ ଆସିବୁ । ତା ପରେ, କେତେ ଗଣ ନିଯୁମ । ଯିଏ ମତେ କୋଳରେ କାଖରେ ବଢ଼ାଇ ଆଣିଥିଲା, ସେହି ଅପା ମୋର ! କେଡ଼େ ଭଲପାଏ ! ଦଣ୍ଡେ ନ ଦେଖିଲେ ବଣା ହେଉଥିଲା ।

ଅପାର ଏଇ ପନ୍ଦର ବର୍ଷ ବିବାହିତ ଜୀବନରେ ସେ ହଓଟି ପିଲାର ମା ହୋଇଛି । ବଡ଼ ଝିଅ ପୂର୍ଣ୍ଣିମାକୁ ଦଶବର୍ଷ ହେଲାଣି । ତଥାପି ତାର ସ୍ନେହ ମୋ ପ୍ରତି କମିନାହିଁ । ଚିରଦିନ ମୋତେ ସେ ଆଠ ବର୍ଷର ଶିଶୁଟି ପରି ଦେଖି ଆସିଛି । ସେହି ଅପା ମୋର ଚିଠି ଲେଖିଛି । ପ୍ରତି ଧାଡ଼ିରେ ଭରି ରହିଛି ସ୍ନେହ,

ଉଦବଗ୍ନତା, ବ୍ୟାକୁଳତା । ବୁଝି ଯେପରି ବୁଝିଲି ନାହିଁ । ଥରଟିଏ ସେହି ଚିଠିରେ ଆଖି ପକାଇ, ଭାଙ୍ଗିଭୁଙ୍ଗି ଲଫାଫା ଭିତରେ ରଖିଲି ।

ଆଉ ଚିଠିଖଣ୍ଡି ହାତରେ ଧରି ଏତେ ଥର ପଢ଼ିଲି କାହିଁକି ? ଯେତେ ପଢ଼ିଲେ ତୃପ୍ତି ଆସୁ ନ ଥାଏ । ପ୍ରତି ଅକ୍ଷର ଭିତରୁ ଗୋଟାଏ କଣ ଅର୍ଥ, ଗୋଟାଏ ଉଦ୍ଦେଶ୍ୟ ବାହାର କରିବାକୁ ମନ ଡାକୁଥାଏ । ବନ୍ଦକରି ରଖିଦେବାକୁ ହାତ ଚଳୁ ନ ଥାଏ । ଚିଠି ଲେଖିଛି ସନ୍ଧ୍ୟା—ଅପାର ସବା ସାନ ନଣନ୍ଦ । ଅପା ବାହାଘର ଦୁଇମାସ ପରେ ତାର ଜନ୍ମ !

ଅପାର ଅନେକ ଗୁଡ଼ିଏ ନଣନ୍ଦ ଥିଲେ । ପିଲାଦିନୁ ସେମାନଙ୍କୁ ମୁଁ ଦେଖି ଆସିଛି ଓ ଡରି ଆସିଛି । ଭାଇ-ଶଳା ବୋଲି ସମସ୍ତେ ମତେ ଥଟ୍ଟା କରନ୍ତି, କନ୍ଦାନ୍ତି । ଅପାର ନଣନ୍ଦମାନେ ଗୋଟି ଗୋଟି ହୋଇ ବାହା ହୋଇ ଗଲେ । ଏକା ରହିଗଲା ସନ୍ଧ୍ୟା, ବାପ ମାଆଙ୍କର କୋଡ଼ପୋଛା ଗେହ୍ଲା ଝିଅଟି ।

ସନ୍ଧ୍ୟା ବଡ଼ ହୋଇ ଆସିଲା । ସେ ବି ମୋତେ ଥଟ୍ଟା କରି ଶିଖିଲା ଅନ୍ୟମାନଙ୍କର ଶିକ୍ଷାରେ । କେତେବେଳେ ତୁନି ତୁନି ପଛରୁ ଆସି ଚିମୁଟି ଦିଏ, ବାଳ ଝିଙ୍କେ, ଶୋଇବା ଅବସ୍ଥାରେ ଉଣ୍ଡି ଉଣ୍ଡି ଆସି ମୁହଁ ଚିତ୍ର କରେ । ଧରିବାକୁ ଧାଇଁଲେ ଛୁଟି ପଳାଏ । ଏ ଘରେ ସେ ଘରେ ପଶି ମାନ୍ୟ ଲୋକଙ୍କ ପାଖରେ ବସେ । ମୁଁ ଓଠ କାମୁଡ଼ି ବଧା ଉଠିଆଏଁ । ଚାଲି ଆସେ । ବଜୁଲି ପରି ତାର ଗଢ଼ । ସୁନା ଖଡ଼କା ପରି ଦେହ । ଦିନକୁ ତିନି ଥର ତିନି ପ୍ରକାର ଲୁଗା ପିନ୍ଧେ । ତାର ମା ନୋହିଲେ ମୋର ଅପା ତାକୁ ସଜେଇ ଦିଅନ୍ତି । ଏସବୁ କାମ ତାକୁ ଅଡୁଆ ଲାଗେ—କେବେ ସେ ମୁକ୍ତ ହୋଇ ଛୁଟି ଆସିବ, ସାଙ୍ଗ ପିଲାଙ୍କ ସଙ୍ଗେ ଖେଳିବ ।

ସନ୍ଧ୍ୟାର ଥଟ୍ଟା ତାମସା ମୋତେ ମୋଟେ ଭଲ ଲାଗୁ ନ ଥିଲା । ଅନ୍ୟମାନେ ଏପରି କି ତାର ମା ମଧ୍ୟ ହସନ୍ତି । ହସି ହସି ଗାଳି ଦିଅନ୍ତି, ଛି ସନ୍ଧ୍ୟା, ଏ କଣ ! ପ୍ରଭାତ କେଡ଼େ, ଆଉ ତୁ କେଡ଼େ ?

ସନ୍ଧ୍ୟାକୁ ଦେଖି ମଧ୍ୟ ଯେପରି ମୁଁ ଦେଖି ନ ଥିଲି । ଦୂରରେ ଥାଇ ତା ନାଁ ମନେ ପଡ଼ିଲେ ଆଖି ଆଗରେ ଉଭା ହୁଏ ଗୋଟିଏ ପିଲା, ସୁନ୍ଦର, ଚଞ୍ଚଳ, ପିନ୍ଧିଥାଏ କେତେବେଳେ କି ରଙ୍ଗର ଶାଢ଼ୀ । ଆଖି ଆଗକୁ ଆସେ ସେହି ଛବିଟି, ଚାଲିଯାଏ ପରମୁହୂର୍ତ୍ତରେ ।

ମୁଁ ଆଇ. ଏ. ପରୀକ୍ଷା ଦେଇ କେତେ ଆଡ଼ ବୁଲି ବୁଲି ଶେଷକୁ ଅପା ଘରେ ପହଞ୍ଚି ଥାଏ । ଭାଇ କେତେଥର ଲେଖିଲେଣି, ଯଦି ଫେଲ୍ ହୁଅ, ଇତିଶ୍ରୀ । ଫେଲ୍ ହେବ ନାହିଁ ଏପରି ଧାରଣା ମୋର ଥିଲା । ତଥାପି କିଏ କହିବ, କଣ ହେବ ? ଅପା ବୁଝିପାରେ । ବୋଧଶୋଧ ଦେଇ କହେ, ଆରେ ଯାହା ହେବାର ହେବ, ଚିନ୍ତା କାହିଁକି ?

ଭାଇ ମୋତେ ପଢ଼ାଉଛନ୍ତି କେବଳ ଲୋକ-ଲଜ୍ଜାକୁ ଡରି । ଟିକିଏ ବାଟ ପାଇଲେ, ମୋ ଆଡ଼କୁ ଟିକିଏ ଖରାପ ଦେଖିଲେ, ସେଇ ଅବସରେ ସେ ବୋଝଟା ଖସେଇ ନିଶ୍ଚିନ୍ତ ହେବେ । ସେଇଥି ପାଇଁ ମୋର ଭୟ ଯଦି ଫେଲ୍ ହୁଏ ପାଠ ଇତିଶ୍ରୀ । ଏଇସବୁ କଥା ଭାବି ଦିନଗୁଡ଼ା ଭଲରେ କଟୁନି ନ ଥାଏ । ଭବିଷ୍ୟତଟା ଢ଼ପର ଅନ୍ଧାରିଆ ଦେଖାଯାଏ । ସେଥିପାଇଁ ବେଶୀ ବେଳ ତାଅସ ଖେଳ, ଉପନ୍ୟାସ ପଢ଼ା ଓ ବାଉଁଆଡ଼ ବଡ଼ ପୋଖରୀରେ ମାଛ ଧରିବାରେ କଟାଏ ।

ଅପାର ଖୁଡ଼ୁତାଶ୍ବଶୁରଙ୍କ ପୁଅ ବଟକୃ, ଯାହାକୁ ସମସ୍ତେ ବଟ ବୋଲି ଡାକନ୍ତି, ସେ ହୋଇଥାଏ ମୋର ପ୍ରଧାନ ସଙ୍ଗୀ । ଅଳ୍ପପାଠ ପଢ଼ିଛି ବଟ । ବଡ଼ ଠାଣେ, ମାଛ ଧରେ, ଅମ୍ବ ପାରେ ଓ ଜମିଦାର ଘର ପିଲା ବୋଲି ସାଧାରଣ ଲୋକଙ୍କ ପାଖରେ ବଡ଼େଇ କରେ । କହୁ କହୁ ରାଗିଯାଏ, ପଦଟିଏ ଜବାବ କେହି ଦେଲେ ସଟଙ୍ଗ ସଙ୍ଗେ ହାତ ଚଳାଏ । ଲୋକେ ତାକୁ ଡରନ୍ତି । ବଟ ମୋର ବନ୍ଧୁ । ସ୍କୁଲ ପରେ ସବୁବେଳେ ମୋର ସଙ୍ଗେ ସଙ୍ଗେ ଥାଏ । ଏକାଠି ଉଠା ବସା, ଖେଳ, ଗାଧୁଆ, ଖିଆପିଆ । ମୋଠାରୁ ସେ ଗଳ୍ପ ଶୁଣିବାକୁ ଭଲ ପାଏ । ନିଜେ ଅଙ୍ଗେଇଲିଭେଇ ଥିବା ଅନେକ କଥା ସେ କହେ । ମୁଁ ମନ ଦେଇ ଶୁଣେ ।

ସନ୍ଧ୍ୟା ତାକୁ ଡରେ । ଏକୁଟିଆ ବେଳେ, ଯେତେବେଳେ ବଟ ମୋ ପାଖରେ ନ ଥାଏ ସନ୍ଧ୍ୟା ଛପି ଛପି ଆସେ, କଣ ଗୋଟାଏ ଦୁଷ୍ଟାମି କରି ଚାଲିଯାଏ । ତାକୁ ଧରିବାକୁ ମୁଁ ପଛରୁ ଧାଏଁ, ଧରି ପାରେ ନାହିଁ । ଏମିତି ମୋର ବେଳ କଟିଯାଉଥାଏ ।

ଦିନେ ବଟକୃ ଆସି ରାତିରେ ମୋର ପାଖରେ ଶୋଇଥିଲା । ମଶାରି ନ ଥିବାରୁ ଖଣ୍ଡେ ଖଣ୍ଡେ ସରୁ ଚଦର ଘୋଡ଼ିହୋଇ ଶୋଇଥିଲୁ । ସେ ଦିନ ବଡ଼ ସକାଳୁ ମୋର ନିଦ ଭାଙ୍ଗିଲା । ବଟକୃ ଡେରି କରି ଉଠେ । ତାକୁ ନ ଉଠାଇ ମୁଁ ପଦାକୁ ଚାଲିଗଲି । ସୂର୍ଯ୍ୟ ଉଠିଲେ । ଫେରିଲି । ଦେଖିଲି ଗୋଟାଏ କଣ କାଣ୍ଡ ନେଇ ଘର ଭିତରେ ଚହଳ ପଡ଼ିଛି । ସନ୍ଧ୍ୟାର ବୋଉ ବିରକ୍ତ ହୋଇ ତାକୁ ଗାଳି ଦେଉଛନ୍ତି । ସନ୍ଧ୍ୟା ଗୋଡ଼ିଏ ଖୁଣ୍ଟକୁ ଆଉଜି କାନ୍ଦୁଛି । ବଟ ଭୁନ ହୋଇ ମୁହଁ ପୋଛି ବସିଛି । ମୋତେ ଦେଖି ମାଉସୀ ତୁନି ହେଲେ । ରାଗ ଫଣଫଣ ମୁହଁଟା ତଥାପି ଶାନ୍ତ ହୋଇ ନ ଥାଏ ।

ପଚାରିଲି, କଣ ହୋଇଛି ମାଉସୀ ?

ସେ ଗର୍ଜି ଉଠିଲେ—ଅରେ ପୁଅ, ଏଇ ସନ୍ଧ୍ୟା, ଏଡ଼େ ବଡ଼ ଝିଅ ହେଲାଣି, ତେର ବର୍ଷର ପିଲା, ମାନ ଅପମାନ ଶିଖିଲା ନାହିଁ । କେତେବେଳେ

ଏକାଳୁ ଯାଇ, ବିଚ ଶୋଇଥି ସେ ଘରେ, ଗୋଟାଏ ଟୋକେଇ ନେଇ ତା ମୁଣ୍ଡ ଉପରେ ଓଗାଡ଼ ଦେଇଛି ।

ମୋତେ ଭାରି ଆଶ୍ଚର୍ଯ୍ୟ ଲାଗିଲା । ଦିନେ କାଳେ ସନ୍ଧ୍ୟା ବିଚ ପାଖ ପଶେ ନାହିଁ । ତାକୁ ବାଘ ସାପ ପରି ଡରେ । ତା ସଙ୍ଗେ ଥଟ୍ଟା କରିବାକୁ ସେ ମନକଲା କାହିଁକି ? ସନ୍ଧ୍ୟାକୁ ପାଖକୁ ଡାକି ପଚାରିଲି । ସେ କହିଲା, ମୁଁ କଣ ଜାଣିଥିଲି ବିଚଭାଇ ବୋଲି ? ମୁଁ ଭାବିଥିଲି ତମେ ସିନା ଶୋଇଛ ।

ସେଇଦିନ ସନ୍ଧ୍ୟା ପଛରେ ମୋର ଆଖି ଗୋଡ଼ାଇ ଯାଇଥିଲା । ସେଇଦିନ ପ୍ରଥମ କରି ଅନୁଭବ କଲି ସନ୍ଧ୍ୟା ଟିକିଏ ବଡ଼ ହେଲାଣି । ସେ ସୁନ୍ଦର । ତାକୁ ପାଖକୁ ଡାକି ଆଉଥରେ ଦେଖିବାକୁ ଆଗ୍ରହ ହୋଇଥିଲା ।

ପରୀକ୍ଷାର ଫଳ ବାହାରିଲା । ଖବର ପାଇଲି, ମୁଁ ଦ୍ୱିତୀୟ ଶ୍ରେଣୀରେ ଆଇ. ଏ. ପାସ୍ କରିଛି । ସମସ୍ତେ ମୋତେ ପ୍ରଶଂସା କରିବାକୁ ଲାଗିଲେ । ମୋର ପାସ୍ ଖବର ପାଇଲାଦିନରୁ ସନ୍ଧ୍ୟାର ଢଙ୍ଗଢାଙ୍ଗରେ ଟିକିଏ ପରିବର୍ତ୍ତନ ଦେଖିଲି । ପାଖକୁ ଆସେ, କଥା କହେ, କିନ୍ତୁ ଥଟ୍ଟା କରେ ନାହିଁ । କିଛି କହିଲେ ସେ ହସେ, ଉତ୍ତର ଦିଏ ନାହିଁ ।

ବିଚର ବ୍ୟବହାରରେ କୌଣସି ପରିବର୍ତ୍ତନ ଦେଖିଲି ନାହିଁ । ପୂର୍ବପରି ବାଡ଼ ଟାଣେ, କାନ୍ଧରେ ହାତ ପକାଏ, ନଜର ବଡ଼େଇ କରି ଗପେ ।

ଭାଇ ଲେଖିଲେ ଚିଠି, ଶୀଘ୍ର ପାଟଣା ଚାଲିଆ । ଏଇଠି ବି. ଏ. ପଢ଼ିବୁ । ଯଦି ନ ଆସୁ କେଉଁଠି ରହି କପରି ପାଠ ପଢ଼ିବୁ ଠିକ୍‌କରି ଲେଖ । ମାସକୁ ଦଶ ଟଙ୍କାରୁ ବେଶୀ ଦେଇ ପାରିବି ନାହିଁ । ଅପା ସଙ୍ଗେ ଅନେକ ତର୍କ ବିତର୍କ କରି ଶେଷକୁ ଠିକ୍‌କଲି ପାଟଣାରେ ପଢ଼ିବି ଓ ଶୀଘ୍ର ପାଟଣା ଯିବି । ସନ୍ଧ୍ୟା ଅପା ପାଖରେ ବସି ଆମର ହାନି ଲାଭ କଥା ଶୁଣୁଥିଲା । କି ଖିଆଲରେ କେଜାଣି ପଚାରିଲା, ବି. ଏ. ପଢ଼ିବାକୁ କଟକରେ କେତେ ଖରଚ ପଡ଼େ ?

କହିଲି, ପ୍ରାୟ ପଚିଶ ଟଙ୍କା ।

ତମ ଭାଇ ଦଶ ଟଙ୍କା ଦେବେ । ବାକି ପନ୍ଦର ଟଙ୍କା ତମ ଅପା ଦେବେ । ମୁଁ ଦେଖିଛି, ତାଙ୍କ ବାକ୍‌ସ ଭିତରେ ବଟୁଆରେ ବିଡ଼ାଏ ନୋଟ ଲୁଚେଇ ରଖିଛନ୍ତି ।

ଅପା ଗେଲରେ ତା ଗାଲରେ ଅଙ୍ଗୁଠି ମାରି କହିଲା, ତମେ ତ ଭାରି ଦୁଷ୍ଟ ! ମୋ ବାକ୍‌ସ ଖୋଲି କାହିଁକି ଉଣ୍ଡୁଥିଲ ?

ସନ୍ଧ୍ୟା କହିଲା, ମୁଁ ଖୋଲି ନାହିଁ । ଭାଇ ଦିନେ ଖୋଲି ଟଙ୍କା ବିଡ଼ାରୁ ନୋଟ କାଢ଼ି ନେଉଥିଲେ, ମୋ ହାବୁଡ଼େ ପଡ଼ିଲେ । ତାଙ୍କ ମନକୁ ସେ କହିଲେ, ଆଲୋ ସନ୍ଧ୍ୟା, ତୋ ନୂଆଉ ଗଣି ଜାଣେ ନାହିଁ । ସେଇଥି ପାଇଁ ମୁଁ ଗଣୁଛି । କହିବୁ ନାହିଁ ତାକୁ । ନୂଆଉ, ଭାଇଙ୍କୁ କହିବ ନାହିଁ, ତୁମକୁ ମୋ ରାଣ ।

କହିଲି, ମୁଁ କହିଦେବି ।

ଉତ୍ତର ଦେଲା ନାହିଁ । ହସିଲା । ମୁଁ ବୁଝିଲି, ତାର ବିଶ୍ୱାସ ମୁଁ କେବେ ତା ନାମରେ କାହାରି ପାଖରେ କହି ପାରିବି ନାହିଁ । କାରଣ, ସେ ଜାଣେ, ତାର ସବୁ ଥଟ୍ଟା, ସବୁ ଅତ୍ୟାଚାର ଅଳ୍ପାଏ ନୀରବରେ ସହି ପାରୁଛି ।

ଅପା କଣ ଯେପରି ଭାବିଲା । କହିଲା, ହଉ ତେବେ ସନ୍ଧ୍ୟା, ବାକି ଟଙ୍କା ମୁଁ ଦେବି । ସନ୍ଧ୍ୟାର ଆଖି ଉଜଳି ଉଠିଲା ।

ଦୁଇ ଚାରିଦିନ ପରେ । ଦି ପହରେ ଭାରି ଗରମ ହେଉଥିଲା । ହଠାତ୍ ଉପରି ପବନ ବନ୍ଦ ହୋଇ ଯାଇଥିଲା । ଖରା ବେଳଟା କଟିଲା ତାଅସ ଖେଳରେ । ଗୋଟାଏ ପାଖରେ ମୁଁ ଓ ଅପା ବସିଥାଉଁ, ଆରପଟେ ସନ୍ଧ୍ୟା ଓ ବିରେନ । ଯେତେ ଚେଷ୍ଟା କଲୁ ଜିତି ପାରିଲୁ ନାହିଁ । ବୋଝ ପରେ ବୋଝ ଖାଇ ବ୍ୟସ୍ତ ହୋଇ ପଡ଼ିଲୁ ଆମେ ଭାଇ ଭଉଣୀ ଦିହେଁ । ଶେଷକୁ ଅପା ବିରକ୍ତ ହୋଇ ଗୋଟାଏ ଆଗରେ ଉଠି ଚାଲିଗଲା । ବିରେନ ମୋତେ କେତେ ପ୍ରକାର ଥଟ୍ଟାକରି ଦୋକାନକୁ ଚାଲିଗଲା ବଡ଼ି କିଣିବାକୁ । ଖେଳୁ ଖେଳୁ ଆନନ୍ଦ ଓ ଉତ୍ତେଜନାରେ ସବୁଯାକ ବଡ଼ି ସେ ଛାଣି ଦେଇଥିଲା । ପଦାଟିଏ ଥଟ୍ଟା କରି ସନ୍ଧ୍ୟା ଯେତେବେଳେ ଚାଲି ଯିବାକୁ ବସେ, ତାର ହାତ ଧରି ଅଟକାଇ ରଖିଲି । ଟିକିଏ ବିଚଳିତ ହୋଇ ଚାରିଆଡ଼କୁ ଚାହିଁ କହିଲା, ଆରେ, ଛାଡ଼ ମୋ ହାତ ।

କହିଲି, ନା ଛାଡ଼ିବି ନାହିଁ ।

ବିନୀତ ହୋଇ କହିଲା, ଓଃ, ମତେ କାଟୁଛି । ଛାଡ଼, କହିନ କଣ କହିବ, ମୁଁ କଣ ପଳାଉଛି କି ?

ମନ ଡାକୁଥିଲା ଯାହା କହିବାକୁ, ସାହସ ହେଲା ନାହିଁ । ରହି ରହି କହିଲି, ନାହିଁ ସନ୍ଧ୍ୟା, ମୋର କିଛି କହିବାର ନାହିଁ ।

ତେବେ—?

ପାଞ୍ଚଦିନ କଟି ଗଲାଣି । ସନ୍ଧ୍ୟାକୁ ଦୂରରୁ ଦେଖେ । ସେ ଚାହେଁ ମୋ ଆଡ଼େ, ମୁଁ ଚାହେଁ ତାକୁ । କିନ୍ତୁ କେଜାଣି କାହିଁକି ତାକୁ ଡାକିବାକୁ ସାହସ ହୁଏ ନାହିଁ । ସେ ବି ନିଜେ ମୋ ପାଖକୁ ଆସେ ନାହିଁ । କଟକ ଯିବି ଯିବି ବୋଲି ଯାଇ ପାରୁନାହିଁ । ସମସ୍ତେ ଜାଣନ୍ତି, ବେଶୀ ଖରା ହେଉଛି ସେଇଥି ପାଇଁ । ମୁଁ ଜାଣେ କେବଳ ସନ୍ଧ୍ୟାରାଣୀ ପାଇଁ । ତାକୁ ଯେତିକି ଦେଖେ, ଅଧିକରି ଦେଖିବାକୁ ଆଗ୍ରହ ହୁଏ ।

ସନ୍ଧ୍ୟା ଅପା ପାଖରେ ବସି ରୁମାଲରୁ ସୂତା କାଢ଼ୁଥାଏ । ଗୁରୁ ନେଉଥା ବେଳ । ମୁଁ ଯାଇ କହିଲି, ଅପା, ମୁଁ କାଲି ସକାଳୁ କଟକ ଯିବି । ଭାଇ ପାଟଣା ଯିବାକୁ ଲେଖିଛନ୍ତି । ଅପା ତାର ସାନ ପିଲାଟିକୁ ବସ୍ତି ଦେଉଥାଏ । କହିଲା, ରହିଲୁ ଆଉ କେତେ ଦିନ । ଏ ଖରାଟାରେ ଯାଇ ଏଠି ସେଠି ବୁଲିବୁ କାହିଁକି ? କଲେଜ ଖୋଲିବାର ଡେରି ଅଛି ।

କହିଲି, ଯଦି କଟକରେ ପଢ଼ିବାର ହୁଏ, ବୋଉଦେଈକାଙ୍କୁ ଦେଖି ଆସିବାକୁ ଥରେ ପାଟଣା ଯିବା ଦରକାର । ନାହିଁ ଯଦି ସେଇଠି ପଢ଼ିବାର ହୁଏ, ତାର ଆୟୋଜନ କରିବାକୁ ହେବ । ଭାଇ ଯାହା ଠିକ୍ କରିବେ ।

କେଣେଇଁ କରି ସନ୍ଧ୍ୟା ଚାହିଁ ଥିଲା ମୋ ମୁହଁକୁ । ରୁମାଲଟିକୁ ଜଙ୍ଘ ଉପରେ ଥୋଇ ଅପା ଆଡ଼କୁ ଚାହିଁଲା । ସେ ବୋଧହୁଏ ଆଶା କରିଥିଲା ପାଟଣା ଯିବାକୁ ଅପା ବାରଣ କରିବ । କିନ୍ତୁ ଅପା କହିଲା, ହଉ ତେବେ, ତୁ ଯା । ଗୋଟାଏ ଜାଗାରେ ବେଶୀ ଦିନ ରହିବା ଠିକ୍ ନୁହେଁ ! ଦୁଇବର୍ଷ ପାଟଣାରେ କଟାଇ ଆ, ନୋହିଲେ ଭାଇଙ୍କ ମନରେ କଷ୍ଟ ହେବ ।

ଉତ୍ତର ଦେଲି ନାହିଁ । ସନ୍ଧ୍ୟାର ମୁହଁ ଫଣଫଣ ହେଲା । ସତେଜ ବଗ ଡମଡମ ଆଖିରେ ସେ ଅପାକୁ ଚାହିଁଲା । ତା ମନର କଥା ମୁଁ ବୁଝିଲି । ସେ କହିବାକୁ ଚାହେଁ, କହୋ, ଏତେ ଟଙ୍କା ବାକ୍ସରେ ରଖିଛ, ପଢ଼ିବା ପାଇଁ ଭାଇକୁ ଦେଇ ପାରୁନ ? ମୁହଁ ଖୋଲି ସେ କିଛି କହିଲା ନାହିଁ, ଉଠି ଚାଲିଗଲା । କେଜାଣି କାହିଁକି ଅପା ଘରେ ଆଉ ଟିକିଏ ରହିବାକୁ ମନ ଡାକୁ ନ ଥାଏ । ସନ୍ଧ୍ୟାର ଉଜ୍ଜ୍ୱଳ ଆଖି ଦିଓଟି ଯେପରି ମତେ ବାନ୍ଧି ରଖିଥାଏ, ନୋହିଲେ ସେଇଠୁ ସିଧା ସିଧା ଉଠି ଚାଲିଆସିଥାନ୍ତି ।

କିଛି ସମୟ ପରେ ପୂର୍ଣ୍ଣିମୀ ଆସି କୋଳରେ ବସିଲା । ବେକରେ ହାତ ଗୁଡ଼ାଇ କହିଲା, ସନ୍ଧ୍ୟା ଅପା କହୁଛି, ତୋ ମାମୁଁ ବଡ଼ ଦୁଷ୍ଟ, ତାକୁ କହ ସେ ଚାଲିଯିବ । ଭଉଣୀ ଘରେ ଭାଇ କୁଆଡ଼େ କୁକୁର । ତା କଥା ମୋ ଦେହରେ ଛୁରି ମାରିଲା ପରି ଲାଗିଲା । ପୂର୍ଣ୍ଣିମୀକୁ ଗେଲ କଲି । ହସିବା ଛଡ଼ା ଅନ୍ୟ ଉପାୟ ମୋର ନ ଥିଲା । ଅପାର ମୁହଁ ମଧ୍ୟ ମଉଳି ଗଲା । ସନ୍ଧ୍ୟାକୁ ସେ କିଛି କହେ ନାହିଁ ।

କେତେ କଥା ମୋ ମନରେ ଓଲଟ ପାଲଟ ହେଉଥାଏ । ଅପା—କାଲି ଯିଏ ମତେ ଭଲ ପାଉଥିଲା, ଆଜି ମୋ ଉପରେ ତାର ବିଶ୍ୱାସ ହେଉ ନାହିଁ । ପାଖରେ ଏତେ ଟଙ୍କା ରଖିଛି । କଟକରେ ରହି ପାଠ ପଢ଼ିଲେ କାଳେ କେବେ ତାର ସାହାଯ୍ୟ ଲୋଡ଼ିବି ସେଥିପାଇ ସେ ଚାହେଁ ମୁଁ ପାଟଣା ଯିବି ।

ଭାଇ—ସେ ମଧ୍ୟ ଉପରଠାଉରିଆ କରି ଲେଖିଛନ୍ତି ପାଟଣା ଯିବାକୁ । ପାଖକୁ ଗଲେ ମନେ ପକାଇ ଦେବେ—କାଳିକାଳିଆ ଭାଇ, ଉଡ଼ ଶିଖିଲେ ଅନ୍ୟ ଗଛରେ ବସନ୍ତି । ନା, କାହାରିଠାରୁ ଆଶା କରିବି ନାହିଁ । କାହାରି ସାହାଯ୍ୟ

ଲୋଡ଼ିବ ନାହିଁ । ଟିଭିସନ୍ କରି ପାଠ ପଢ଼ିବ—ଯେତିକି ହେଲା ସେତିକି । କାହିଁକି ଏତେ ଦିନ ଅପା ଘରେ ମୁଁ ରହିଲି ସତେ ? ଦିନକରୁ ଦୁଇଦିନ ରହିଲେ କୁଣିଆର ମହତ୍ତ୍ୱ ଯାଏ । ଯେତିକି ପୁରୁଣା ହୁଏ ସେତିକି ଆଦର କମେ । ଯେତିକି ଅଧିକ ସେ ବନ୍ଧୁଘରର କଥା ଜାଣେ, ବୁଝେ—ହାନିଲାଭ, ଭଲମନ୍ଦ, ବାଦ୍‌ଛେଦ ତାର ଆଖିରେ ପଡ଼େ । ସେ ଘରର କୁଟୁମ୍ବର ଜଣେ ଅଥଚ ସେ ଜାଣେ ସେ ବାହାରର ଲୋକ ! ଏଠାଁରେ ଆଉ ରହିବି ନାହିଁ । ସକାଳୁ ଉଠି ଚାଲିଯିବି । କାହାରିକୁ କିଛି କହିବି ନାହିଁ, କେହି ଜାଣିବେ ନାହିଁ ।

ସଞ୍ଜରୁ ମୁଁ ମୋର ଲୁଗାପଟା ସଜାଡ଼ିବାରେ ବ୍ୟସ୍ତ ରହିଲି, ଦାଣ୍ଡଘରେ ଯେଉଁଠି ମୁଁ ରହେ । ବଶିଏ ଅସିଲା । କହିଲା, ସଜଡ଼ା ସଜଡ଼ି କାହିଁକି ? କୁଆଡ଼େ ଯିବ କି ? ଥାଉ, ସେ ସବୁ କାଲି ହେବ । ଅସ ଯିବା ଟୋଠା ଆଡ଼ୁ ବୁଲି ଆସିବା । କି ସୁନ୍ଦର ଜହ୍ନବଡ଼ି ଦେଖିଲ !

କହିଲି, ଦେହ ଭଲ ଲାଗୁ ନାହିଁ । ଲୁଗାପଟା ଅସଜଡ଼ା ପଡ଼ିଥିଲା, ସଜାଡ଼ି ରଖୁଛି । ସେ ମୋତେ ସାହାଯ୍ୟ କଲା । କିଛି ସମୟ ପରେ ଚାଲିଗଲା ।

ଅସିଲା ପୂର୍ଣ୍ଣିମା—ମାମୁଁ ମୋତେ କଥା କହ ।

ତାକୁ ଠେଲିକରି କହିଲି, ଆଜି ବଡ଼ ବ୍ୟସ୍ତ ଅଛି । ତୁ ଯା ।

ପୂର୍ଣ୍ଣିମାକୁ କେବେ ମୁଁ ପାଖରୁ ଏପରି ତଡ଼ିଦିଏ ନାହିଁ । ସେ ମନମାରି ଚାଲି ଯାଉ ଯାଉ କହିଲା, ଜାଣେ ଯେ, ସନ୍ଧ୍ୟା ଅପା ତମକୁ ଚାଲି ଯିବାକୁ କହିଲା, ସେଥିପାଇଁ ସଜାଡ଼ୁଛ ଲୁଗାପଟା । ଯାଉଛି ବୋଉକୁ କହିବି ।

ତାକୁ ପଛରୁ ଡାକି କହିଲି, ଛି ପୂର୍ଣ୍ଣିମା, ତତେ ଏତେ କଥା ଚର୍ଚ୍ଚା କରିବାକୁ କିଏ କହିଲା ? ଯା ଖେଳିବୁ । ଉତ୍ତର ନ ଦେଇ ସେ ଚାଲିଗଲା ।

ରାତି ଅଠଟା । ସନ୍ଧ୍ୟା ପଶିଲା ସେ ଘରେ । ଏକୁଟିଆ । ମୋର ସଜଡ଼ା ସଜଡ଼ି କାମ ଶେଷ ହୋଇଥାଏ । ଚଉକିରେ ବସି ଟେବୁଲ ଉପରେ ରଖି ଖଣ୍ଡେ ଇଂରେଜି ଉପନ୍ୟାସ ପଢ଼ୁଥାଏ । ଥରଟିଏ ତା ଆଡ଼କୁ ଚାହିଁ ଦୃଷ୍ଟି ଫେରାଇଲି ବହି ଉପରକୁ । ପଢ଼ାରେ ମନ ଲାଗୁ ନ ଥାଏ । ଆଖି କୋଣରେ ତାକୁ ଚାହିଁ ରହିଥାଏ । ତା ମୁହଁଟି ଗମ୍ଭୀର ଦିଶୁଛି । ମନରେ ଯେପରି ସରସତା ନାହିଁ । ତଥାପି ସବୁଦିନ ପରି ସେ ଧୀରେ ଧୀରେ ଅସି ମୋ ପଛରେ ଠିଆହେଲା । ମୋ ବାଳକୁ ଟାଣିଦେଇ କବାଟ ଆଡ଼କୁ ଦୁଇପାଦ ଘୁଞ୍ଚିଗଲା, କାଳେ ସବୁଦିନ ପରି ତା ପଛରେ ଧାଇଁ ଯିବି, ସେ ଖଲପରି ଛୁଟି ପଳାଇବ । ଧରାପଡ଼ିଲେ କାଳେ ତାକୁ ଟାଣି ଧରିବି, ତାର ବାଳ ଓଟାରିବି, ପିଠି ଶମୁଟିବି, ଥାପଡ଼ ମାରିବି । ସେ ମୋତେ ଅଭିଶାପ ଦେବ, ଭବିଷ୍ୟତରେ ଆଉ ହଇରାଣ କରିବାକୁ ପ୍ରତିଜ୍ଞା କରିବ । ଚାଲିଯିବ କାନ୍ଦୁଣିମାନ୍ଦୁଣି ହୋଇ ।

ଏ ସବୁ ଦୁଷ୍ଟାମୀ ତାର ଅନେକ ଦିନୁ ବନ୍ଦ ଥିଲା । ହଠାତ୍ ଆଜ ମନେ ପଡ଼ିଲା କାହିଁକି ?

ଚୁଡ଼ିଚିଙ୍କା ଖାଇ ମଧ୍ୟ ମୁଁ କିଛି କହିଲି ନାହିଁ । ତା ଆଡ଼କୁ ଚାହିଁଲି ନାହିଁ ଥରେ । ସେ ପୁଣି ମୋ ପାଖକୁ ଫେରି ଆସିଲା । ଆଉଥରେ ବାଳ ଝିଣିଲା । ଦ୍ୱିତୀୟ ଥର କେବଳ ତା ଆଡ଼କୁ ଚାହିଁଲି, କିଛି କହିଲି ନାହିଁ । ଏଥର ସେ ଘୁଞ୍ଚିଗଲା ନାହିଁ । ତାର ବିରସ ମୁହଁ ଭୟରେ ମଳିନ ଦିଶିଲା । ଆଖି ଛଳଛଳ ହେଲା । ଟିକିଏ ଅପେକ୍ଷା କରି କହିଲା, ବୋଉ ଡାକୁଛି, ଆସ ଜଳଖିଆ ଖାଇବ ।

ଜବାବ ଦେଲି, ଭୋକ ନାହିଁ ।

ସେ ତାଟକା ହୋଇ କିଛି ସମୟ ଭୁଜ ରହିଲା ।

ସତେକି ଡରି ଡରି ପଚାରିଲା, ଏଇଠିକି ଆଣିବି ?

ନାହିଁ ।

କାହିଁକି ? କିଛି ତ ଖାଇ ନାହିଁ ?

ଖାଇବା ଦରକାର ନାହିଁ । କୁକୁରମାନେ ଅନେକ ଦିନ ଓପାସ ରହି ପାରନ୍ତି । ବିଛଟିଏ କଣ ରହି ପାରିବ ନାହିଁ ?

ପରର ଚାରିଆଡ଼େ ଆଖି ବୁଲାଇଲା ସେ, ଝରି ପଡ଼ିଲା ଲୁହ ।

କାଲି ଯାଉଛ ସତେ ?

ତୋର ତ ସେଇ ଇଚ୍ଛା ।

ଧୀରେ ଧୀରେ ସେ ଘରୁ ବାହାରିଗଲା ।

ରାତିରେ କବାଟ ଝରକା ଖୋଲି ଶୋଇଥିଲି । ବଡ଼ସକାଳୁ ଲୁଗା ପିନ୍ଧିଲି । ପଞ୍ଜାବି ପିନ୍ଧିଲି । ସେଥିରେ ବୋତାମ ନାହିଁ । ଜୋତା ଖୋଜିଲି ପାଇଲି ନାହିଁ । ସୁଟ୍‌କେଶ ଦେଖିଲି ଖୋଲା ପଡ଼ିଛି, ଲୁଗାପଟା କିଛି ନାହିଁ । ଫାଉଣ୍ଟେନ୍, ଘଣ୍ଟା ଟେବୁଲ ଉପରୁ କିଏ ନେଇ ପଳାଇଛି ।

ଆରେ ନେଲା କିଏ ?

ପଦାକୁ ଆସିଲି । ସାଇକଲ୍ ଚକରେ ପବନ ନାହିଁ । କଣଆଖି ଚାହିଁଲି, ଭଲ୍‌ଟିଉବ୍ ମଧ୍ୟ ଗାଏବ ହୋଇଯାଇଛି । ବେଲ୍ ଉପରେ ଢାଙ୍କୁଣି ନାହିଁ । ମୋର ଧାରଣା ହେଲା, ଏ ସବୁ ସନ୍ଧ୍ୟାର କାମ । ପଞ୍ଜାବିଟା ଓହ୍ଲାଇ ମୁଁ ଗଲି ତା ପାଖକୁ । ମାଉସୀଙ୍କ ନିଦ ଭାଙ୍ଗିଲାଣି । ସେ ପିଣ୍ଡାରେ ବସି ଦାନ୍ତ ଘଷୁଛନ୍ତି । ମତେ ଦେଖି ପଚାରିଲେ, ବାପ, ଦେହ କେମିତି ଅଛି ରେ ? କାଲି ରାତିରେ ଓପାସ ରହିଲୁ । ତୋ ଅପା ଯାଇ ଉଠେଇଲା, ମୁଁ ଉଠେଇଲି, ସନ୍ଧ୍ୟା ଯାଇ ପାଣି ଛିଞ୍ଚିଲା ତଥାପି ତୋର ନିଦ ଭାଙ୍ଗିଲା ନାହିଁ ।

ମତେ ଲାଜ ମାଡ଼ିଲା । କହିଲି, ଭଲ ଅଛି । ପଚାରିଲି, ସନ୍ଧ୍ୟା କାହିଁ ?

କହିଲେ, ଶୋଇଛି । ସଞ୍ଜରୁ ପେଟ ପେଟ ହେଉଥିଲା । ଚୁଡ଼ା ଅମୃ ଗୁଡ଼ାଏ ଖାଇଥିଲା । ସନ୍ଧ୍ୟାରେ କିଛି ଖାଇନାହିଁ ।

ସନ୍ଧ୍ୟା ପାଖକୁ ଗଲି । କେତେ ନିଶ୍ଚିନ୍ତରେ ଶୋଇଛି । ଅଯତ୍ନରେ ମୁଣ୍ଡବାଳ ବିଛିହୋଇ ପଡ଼ିଛି ତକିଆ ଉପରେ । ଘଡ଼ିଏ ଗୃହିଁ ରହିବାକୁ ଇଚ୍ଛା ହେଉଥିଲା । ତା ପାଖରେ ବସିପଡ଼ିଲି । ଧୀରେ ଧୀରେ ତାର ଗୋଟିଏ ହାତ ଟେକି ସୁନା କାଚ ହଓଟି ଓହ୍ଲାଇ ନେଲି । ଆଉ ହାତଟିରୁ କାଚ କାଢ଼ୁଛି, ତାର ନିଦ ଭାଙ୍ଗିଲା । ହାତଟା ଟାଣିନେଇ ସେ ହସି ହସି କହିଲା, ପ୍ରଭାତ ଭାଇ, ନମସ୍କାର ! କଟକରୁ କେତେବେଳେ ଫେରିଲ ?

ତାର ପୂରିଲା ପୂରିଲା କଅଁଳ ଗାଲରେ ଟିକିଟିକି ଗୃପୁଡ଼ା ମାରି କହିଲି, ସ୍ୱୈରଣୀ ?

ସେ ଉଠି ବସିଲା । କହିଲା, ବେଶ୍ ହେଲା । ଭାଇ କୁହାଳିଆ ପଡ଼ିଛ । ତମେ କଟକ ଯାଅ ମନା ନାହିଁ, ମୋ ଉପରେ ଦୋଷ ଦେଇ କାହିଁକି ଯିବ ? ମୋ କଥାକୁ ଛଳ କରି ଉପାସେ ଶୋଇବ ?

ତୁ କାହିଁକି ଉପାସ ରହିଲୁ ?

ମୋ ଖୁସି ।

ଗୋଟିଏ ହାତ ଯେ ନଙ୍ଗଳା, ସେ କଥା ସେ ବୁଝିପାରି ଆର ହାତରୁ କାଚ ଦୁପଟି କାଢ଼ି ମୋ ଆଡ଼କୁ ପକାଇ ଦେଲା । କହିଲା, ବେଶ୍, ସେଇ କାଚ ନେଇଯାଅ । ବିକିବ, ପାଠ ପଢ଼ିବ । ପାଠଣା ଯିବ ନାହିଁ । ତମ ଅପାକୁ ମାଗିବ ନାହିଁ । ସେ ଭାରି ସ୍ୱୈରଠୋକ ।

ତାର ହାତ ଦୁଇଟି ଟାଣିଆଣି କାଚ ପିନ୍ଧାଇ ଦେଲି । କହିଲି, ହେଉ, ପାଠଣା ଯିବ ନାହିଁ । କଟକରେ ପଢ଼ିବ । ଦରକାର ହେଲେ ଏ କାଚ ମାଗିନେବ । ତୋ ପାଖରେ ଥାଉ । କିନ୍ତୁ କଟକ ଯିବାକୁ ତ ହେବ ? ମୋ ଜନପ ଦେ— ।

କଟକ ଯିବ । ଆଜି ନୁହେଁ, ଯେଉଁଦିନ ମୁଁ କହିବି ।

ଥଟ୍ଟାକରି କହିଲି, ଏଠି ରହିଲେ ଯେ କୁକୁର ହେବ ।

ନାଇଁ ନାଇଁ, ଭଉଣୀ ଘରେ ରହିଲେ କୁକୁର ହୁଅନ୍ତି ସିନା, ମୁଁ ତୁମର ଭଉଣୀ ନୁହେଁ, ତମେ ମୋ ଘରେ ରହିବ ।

ତୁ ତେବେ ମୋର କଣ ?

ଉତ୍ତର ନ ଦେଇ ସେ ଉଠିଲା । ହସ ଝରି ପଡ଼ୁଥାଏ ଓଠରୁ ।

ମାଉସୀ ଘର ଭିତରକୁ ଆସିଲେ । ହସ ହସ ହୋଇ ପଚାରିଲେ, କଣ କରେ ପ୍ରଭାତ ?

କହିଲି, କେତେବେଳେ ଯାଇ ମୋର ଘଡ଼ି, କଲମ, ବୋତାମ, ଯୋତା, ଲୁଗାପଠା, ସବୁ ଗୋଟେଇକରି ଆଣିଛି ।

ସତେ ? ପାହାନ୍ତାରୁ ଉଠି ଏଇଆ କରୁଥିଲା ସେ ? ପଚାରିଲାରୁ କହୁଛି, ପଦାକୁ ଚାଲି ଯାଇଥିଲି । ଏଇ ଆଲମାରିରେ ସବୁ ରଖିଛି । କାହିଁକି ଲୋ ସନ୍ଧ୍ୟା ?

ସେ ନିର୍ଭୀକ ଭାବରେ କହିଲା, କାଲି ମୁଁ କହିଲି, ଭଉଣୀ ଘରର ଭାଇ ଯେ କୁକୁର ସଙ୍ଗେ ସମାନ । ସେଇ ରାଗରେ କାଲି ସେ ଖାଇଲେ ନାହିଁ । ସଜଡ଼ା ସଜଡ଼ି କରି ରଖିଥିଲେ । କାହାକୁ ନ କହି ଆଜି ପାହାନ୍ତାରୁ ଚାଲି ଯାଇଥାନ୍ତେ ।

କାହିଁକି ତୁ ଏ କଥା କହିଲୁ ?

କହି ହୋଇଗଲା ।

ଓ, ସେଥିପାଇଁ କାଲି ରାତିରେ ଉପାସ ରହିଲୁ, ପେଟ ମୋଡ଼ୁଛି ବୋଲି କହିଲୁ ? ଅରେ ପ୍ରଭାତ, ସେଇଠାର କଣ ବୁଦ୍ଧି ହେଲାଣି ? କାହାକୁ କଣ କହିବାକୁ ହୁଏ ସେ କଥା ସେ ଜାଣିଲାଣି ନା ? ତାର କଥାକୁ ଛଳ କରୁଛୁ ପୁଅ ? ଏ ଘର କଣ ତୋର ନୁହେଁ ! ସନ୍ଧ୍ୟା କଣ ତୋ ଭଉଣୀ ନୁହେଁ ରେ ? ବେଆଡ଼ା କଥା କହିଲା ତ ତା କାନ ମୋଡ଼ି ଦେଲୁ ନାହିଁ ? ଟିକିଏ ରହି କହିଲେ, ଗୋଡ଼ ଧରି ଷମା ମାଗ ସନ୍ଧ୍ୟା । ଛି, ଆଉ ଦିନେ ଏମିତି କହିବୁ ?

ସନ୍ଧ୍ୟାର ଆଖିରେ ଲୁହ ଭରିଗଲା । ସେ ବିନା ଆପତ୍ତିରେ ମୋ ଗୋଡ଼ତଳେ ମୁଣ୍ଡ ଲଗାଇଲା । ମୁଁ ତାକୁ ତଳୁ ଉଠାଇ କହିଲି, ଅରେ ତୋ କଥାକୁ କଣ ମୁଁ ଛଳ କରିଥିଲି ? ଭାଇ ଚିଠି ଲେଖିଛନ୍ତି ବୋଲି ସିନା ଯାଉଥିଲି !

ମାଉସୀ କହିଲେ, ଯା ସନ୍ଧ୍ୟା, ଯାରେ ପ୍ରଭାତ ଗାଧୋଇ ଆସ, ଖାଇବ । ହେହେଁ ତ ପିଲା । କାହାର ବୁଦ୍ଧି ହେଲା ନାହିଁ । ଏଣିକି ତମର କଜିଆ ମୁଁ ଭାଙ୍ଗିବି । ଯିବଟି ତମେ ।

ଆଜି ସ୍ନାନ ପୂର୍ଣ୍ଣିମା । ବାରଆଡ଼ର ପୋଖରୀ । ଖରା ଦିନେ ମଧ୍ୟ ଦୁଇ ପୁରୁଷ ପାଣି ଥାଏ । ଏ ପାଖରୁ ସେପାଖକୁ ପହଁରି ଯିବା କେଡ଼େ କଷ୍ଟ । ବଚନ୍ଦ୍ର ପୋଖରୀରେ ଛନଘଣ୍ଟା ପହଁରି ପାରେ । ସନ୍ଧ୍ୟା ଖଣ୍ଡିଉଡ଼ା ଦେଉଛି । ଦଶହାତ ପହଁରି ପାରେ । ପୂର୍ଣ୍ଣିମା କୂଳରେ ଥାଇ ଡେଣା ହଲାଏ, ପାଣି ଚାବୁରୁ ଚାବୁରୁ କରେ । ମୁଁ ଏ କୂଳରୁ ସେ କୂଳକୁ ଥରେ ଯାଇ ପୁଣି ସେ କୂଳରୁ ଏ କୂଳକୁ ଫେରି ଆସିପାରେ ।

ଦୁଇପହରେ ବଚନ୍ଦ୍ର ଓ ମୁଁ ବାରପଟ ତୋଟା ଓ ବୁଦବୁଦିକା ଜଙ୍ଗଲରେ କଟାଇଲୁ । ଅପା ଘରର ତୋଟା ପରି ଏତେବଡ଼ ତୋଟା ମୁଁ କେଉଁଠି ଦେଖି ନାହିଁ । ଏ ପାଖରୁ ଡାକିଲେ ଆର ପାଖକୁ ଶୁଭେ ନାହିଁ । ତୋଟା ଭିତରେ

ସୂର୍ଯ୍ୟ କିରଣ ପଡ଼େ ନାହିଁ । ସେ ବର୍ଷ ଅମ୍ଳ ହୋଇଥାଏ । ସଞ୍ଜ ହୋଇ ଆସୁଥାଏ । ପବନ ଶୀତଳ ହେଲାଣି । ଆମେ ବହେ ଫେରିଲୁ । କଥା ହୋଇଥାଏ, ଆଜି ପୋଖରୀରେ ପହଁରି ପହଁରି ଗାଧୁଆ ଅଧା ହେବ ।

ପୋଖରୀ କୂଳକୁ ଆସି ଦେଖିଲୁଁ, ପାହାଚ ଉପରେ ସନ୍ଧ୍ୟା ଓଦା ସର ସର ହୋଇ ଠିଆ ହୋଇଛି । ବାଳ ମୁକୁଳା, ଝରଝର ପାଣି ବୋହି ପଡ଼ୁଛି । ଭୁମ୍ଭାଡୁଆ ଆଖି ପରି ଆଖି ଲାଲ ଦିଶୁଛି । ପାଖରେ ତାର ପୂର୍ଣ୍ଣିମା । ତାର ମଧ ଅବସ୍ଥା ସେହିପରି । ଆମକୁ ଦେଖି ପୂର୍ଣ୍ଣିମା କହିଲା, ସନ୍ଧ୍ୟା ଅପା ବୋଉର ବଡ଼ ହାରଟା ପାଣିରେ ହଜାଇ ଦେଇଛି । ସଞ୍ଜବେଳେ ତାକୁ ଆଉ ନାଇ ଦେଇଥିଲେ । ଆମେ ଦହେଁ କେତେ ଖୋଜିଲୁଣି, ମିଳୁ ନାହିଁ । ଆଜି ତା କପାଳେ କେତେ ମାଡ଼ ଅଛି । ଆଖି ମଳି ମଳି ସନ୍ଧ୍ୟା କାନ୍ଦିଲା ।

ବଡ଼ଭାଇ ହାତ ମୁଠା କରି ଧାଇଁଲା ତାକୁ ମାରିବାକୁ । ବଦମାସ୍, ଯେତେ କହୁଥିଲି ମାନିବ ନାହିଁ । ଆସିବ ଏକୁଟିଆ ପାଣିରେ ବୁଡ଼ିବାକୁ, ପାଇଲୁ ଏଥର ?

ବଡ଼ଭାଇର ହାତ ଧରି ଅଟକାଇଲି । କହିଲି, ତାର ଭୁଲ୍ ହୋଇଛି । ତାକୁ ମାରିଲେ ତ ବାହାଦୁରୀ ଜଣାଯିବ ନାହିଁ । ଖୋଜିକରି ହାରଟା ଆଣିଲେ ତୋର ବାହାଦୁରୀ ଜଣାଯିବ । ଚାଲ ଖୋଜିବା ।

ଘଣ୍ଟାଟିଏ ପାଣିରେ ବୁଡ଼ି ପଙ୍କ ଦଳଣି ଶେଷକୁ ମୁଣ୍ଡ ବନ୍ଧିଲା । ଚନ୍ଦ୍ର ଉଠିଲେ । ମାଉସୀ ଆସିଲେ, ଅପା ଆସିଲେ, ପାଣିରେ ବେଶୀ ବୁଡ଼ିବାକୁ ମନା କରି ଗଲେ, କେହି ତାଙ୍କୁ କିଛି କହୁଟେଲ ନାହିଁ । ଶେଷକୁ ବ୍ୟସ୍ତ ହୋଇ ବଡ଼ଭାଇ ଉଠିଲା । କହିଲା, ଥାଉ, ଯାଉଛି ବଡ଼ମାଙ୍କୁ କହିଦେବି । ଆଜି ମାଡ଼ ଖାଇ ମରିଯାଉ ।

ମୁଁ ମଧ ପାଣିରୁ ଉଠିଲି । ହଠାତ୍ ନଜର ପଡ଼ିଲା ପାହାଚ କରରେ ପ୍ରାୟ ଚାରି ଅଙ୍ଗୁଳ ପାଣିରେ ଘାସଗଛ କଡ଼କୁ ହାରଟା ପଡ଼ିଛି । ଚେନ୍‌ର ଗୋଟିଏ ଅଂଶ ମାଟି ଉପରେ ପଡ଼ି ଅଳ୍ପଅରେ ଚକ୍ ଚକ୍ ଦିଶୁଛି । କିଛି କହିଲି ନାହିଁ । ପଥର ଉପରେ ଠିଆ ହୋଇ ଗାମୁଛା ଚପୁଡ଼ିଲି ।

ବଡ଼ଭାଇ ଲୁଗା ପାଲଟି କହିଲା, ଧାଣ୍ଡିଆରେ ପଙ୍କ । ଯାଉଛି ବଡ଼ମାଙ୍କୁ କହିବି । ପିଠିରେ ଗୁଲି ପିନ୍ଧି ବସିଥାଏ ଲୋ ସନ୍ଧ୍ୟା । ବଡ଼ଭାଇ ଚାଲିଗଲା । ପୂର୍ଣ୍ଣିମା କହିଲା ସନ୍ଧ୍ୟାକୁ, ମୁଁ ଯାଉଚି ଦାଦାକୁ ମନା କରିବି । ତୁ ମାମୁଁଙ୍କୁ କହ, ଆଉ ଟିକେ ଖୋଜୁ । ପୂର୍ଣ୍ଣିମା ଚାଲିଗଲା ।

ସନ୍ଧ୍ୟା ଦୁଇ ପାହାଚ ତଳକୁ ଓହ୍ଲାଇ କହିଲା, ପ୍ରଭାତ ଭାଇ, କଣ କରିବି ? ବୋଉ ଗାଳିଦେବ, ବଡ଼ ଭାଇ ମାରିବେ । କଣ କରିବି ? ତମେ ଆଉ ଥରେ ଖୋଜ ।

ଖୋଜିଲେ ଆଉ ମିଳିବ ନାହିଁ । ମୋ ଦେହ ଶୀତେଇଲାଣି । ଛାଙ୍କି ଉଠୁଛି, ଆଉ ଥରେ ପାଣିରେ ବୁଡ଼ିଲେ ଜର ହେବ । ପର ଘରେ ଜର ହେଲେ କିଏ ମୋ ସେବା କରିବ କହିଲୁ ? କିଏ ମୋ ଗୋଡ଼ ଘଷିବ ?

ମୁଁ ପଚ୍ଛେ କରିବି ।

ଯଦି ମରିଯାଏ—

ମରିବ ନାହିଁ ପ୍ରଭୃତି ଭାଇ—

ଯଦି ମୁଁ ହାରଟା ଖୋଜି ପାଏଁ ମତେ ବର ବୋଲି ଡାକିବୁ ତ ?

ହଁ ହଁ, ତମେ ଯାହା କହିବ, ମୁଁ ମାନିବି । ତମେ ଜଲଦି ଖୋଜ । ବିଚ ଭାଇ ବୋଉକୁ କହି ଦେବଣି । ସେ ଅଧୁଲ ହୋଇ ପଡ଼ିଲା ।

ତାକୁ ଉପରକୁ ଯିବାକୁ କହିଲି, ସେ ଗଲା । ହାରଟିକୁ ଧୀରେ ଧୀରେ ଆଣି, ହାତରେ ଧରି ପୁଣି ପାଣିରେ ପଶିଲି । ଦୁଇ ତିନ ଥର ମୁଣ୍ଡ ବୁଡ଼ାଇ ବେଳେ ପାଣିରେ ଠିଆ ହୋଇ ଡାକିଲି, ସନ୍ଧ୍ୟା, ହାର ମିଳୁନାହିଁ । ପାଖକୁ ଆ ।

ସେ ପାଣି କୂଳକୁ ଓହ୍ଲାଇ ଆସି ଖୁସି ହୋଇ କହିଲା, ପାଇଲଣି କି କଣ ? ସତ କହ ।

ଇସ୍, ଦେହରେ କେତେ ପଙ୍କ ଲାଗିଛି । ଆ ଏଇଠିକି, ମୋ ପାଖକୁ । ହେଇ ଦେଖ୍ ହାର ।

ହାତ ଟେକି ତାକୁ ହାର ଦେଖାଇଲି । ଖୁସି ହୋଇ ସେ ପାଣି ଭିତରକୁ ପଶି ଆସିଲା । ହାତ ବଢ଼ାଇ କହିଲା, ଦିଅ ।

ମୁଁ ତାକୁ ପାଖକୁ ଆଉଜାଇ ଆଣି କହିଲି, ଦେବି ନାହିଁ ତ ହାର । ଆଗ କହ, ମତେ ତୁ ବାହା ହେବୁ ? କହ ।

ବିଳମ୍ବ ନ କରି କହିଲା, ହଁ ।

ତାର ବେକରେ ହାର ପିନ୍ଧାଇ ଦେଲି । ଦେହରୁ ମୁଣ୍ଡରୁ କାଦୁଅ ଧୋଇ, ତାର ମୁଣ୍ଡକୁ ଦୁଇ ହାତରେ ଧରି ଗାଲରେ ଚୋକ ଦେଇ କହିଲି, ହେଲା ତ, ଆଜିଠାରୁ ତୁ ମୋର କନିଆଁ, ମୁଁ ତୋର ବର । ଚାଲ ଉପରକୁ, ଥଣ୍ଡା ହେବ । ଲୁଗା ଚପୁଡ଼ି ଦିହେଁ ଉଠିଲୁ ପୋଖରୀ ହୁଡ଼ାକୁ । ଘରଆଡୁ ମାଉସୀ, ଅପା ଓ ବିଚ ଆସୁଛନ୍ତି ।

ସନ୍ଧ୍ୟାର ହାତ ଚିପି କହିଲି, ଆଇଲେ ଲୋ—

ଅସନ୍ତୁ । ହାର କଣ ହଜିଥିଲା କି ? ଲୁଚେଇ ଦେଇ ତମକୁ ସବୁ ପାଣିରେ ବୁଡ଼ାଉଥିଲି ନା, ଟେବୋଉକି ମୁଁ କହିବି ଯେ ।

ଆଉ ଦୁଇ ଚାରିଦିନ ମୁଁ ରହିଥିଲି । ନଫକୋଟରେ ସନ୍ଧ୍ୟା ଓ ପୂର୍ଣ୍ଣିମା ଗପ ଶୁଣନ୍ତି । ଦିହେଁ ମୋର ଯତ୍ନ ନିଅନ୍ତି । ମଝିରେ ମଝିରେ ସନ୍ଧ୍ୟା ଟିକିଏ ଦୁଷ୍ଟାମି କରେ । ଫାଉଣ୍ଟେନ୍‌ରୁ କାଳି କାଢ଼ି ପାଣି ପୂରାଇ ରଖେ । ଘଣ୍ଟାକୁ ଦୁଇଘଣ୍ଟା

ଲେଟ୍ କରି ଗପ କହିବାକୁ ଡାକେ । ତେଲ ବୋଲି ପାଣି ଦିଏ ଲଗାଇବାକୁ । ଲୁଣ ପକାଇ ଗୁଆ ଆଣି ଦିଏ । ପାନ ଭିତରେ ଦିଏ ଲଙ୍କା ମରିଚ ମଞ୍ଜି । ମୁଁ ବିରକ୍ତ ନ ହୋଇ ତାର ମନେ ପକାଇ ଦିଏ, କହେ, ସେଦିନ କଣ କହିଥିଲୁ ପୋଖରୀ ଭିତରେ ? ପାଣି ଶୁଣିଛି, ମାଛ ବେଙ୍ଗ ସମସ୍ତେ ଶୁଣିଛନ୍ତି, ଗୁନ୍ଦ ଦେଖିଛି—

କହେ, ମଣିଷ ତ କେହି ସାକ୍ଷୀ ନାହିଁ ?

ମୁଁ କହେ, ମୋର ସାକ୍ଷୀ ତୁ ଆଉ ତୋର ସାକ୍ଷୀ ମୁଁ । ଆମେ କଣ ମଣିଷ ନୋହୁଁ ?

ତୁନି ରହେ ।

ତୁନି ରହିଲୁ ଯେ ?

ଆଉ କଣ ବର ବର ବୋଲି ପାଟି କରିବି ? ଥେଇ ଥେଇ ହୋଇ ନାଚିବି ?

ଖିଲ୍ ଖିଲ୍ ହୋଇ ହସେ । ତାକୁ ଗେଲ କରିବାକୁ ପାଖକୁ ଟାଣେ । ସେ ଭଡ଼ ମୋଡ଼ ହୋଇ କହେ, ତା ହେଲେ ତମ ପାଖକୁ ଆସିବି ନାହିଁ ।

ମୁଁ ତାକୁ ଛାଡ଼ିଦିଏଁ ।

ଯେଉଁଦିନ ସକାଳେ ବିଦାବିଦି ହୋଇ କଟକ ଆସିବାର କଥା, ଅପା ମୋତେ ଦଶ ଟଙ୍କାର ଦିଖଣ୍ଡି ନୋଟ ବଢ଼ାଇ ଦେଇ କହିଲା, ଭାଇଙ୍କ ପାଖରୁ ଟଙ୍କା ଆସିବାକୁ ଡେରି ହେବ । ଏତକ ରଖିଥା, ଖ‌ର୍ଚ୍ଚ କରିବୁ ।

ସନ୍ଧ୍ୟା ପାଖରେ ଠିଆ ହୋଇଥିଲା । ଦେଖିଲି ତା ମୁହଁଟା କପରି ଗମ୍ଭୀର ହୋଇ ଉଠିଲା । ଅପାଠାରୁ ଟଙ୍କା ନେବି ଏକଥା ଯେପରି ସେ ସହି ପାରୁ ନାହିଁ । ମୋ ଆଡ଼କୁ ସେ ଉଡ଼ିଲା ଆଖିରେ କଣେଇଁ ଚାହିଁଲା । ତେର ବରଷର ପିଲା ଟିକିଏ, ତାର ବିରକ୍ତ ଭାବକୁ ଉପେକ୍ଷା କରି ପାରିଲି ନାହିଁ । କହିଲି, ଅପା ମଁ, ମୋ ପାଖରେ ତ ଟଙ୍କା ଅଛି, ଏଣେ ତେଣେ ବୁଲିବି, ବରଂ ତୋ ପାଖରେ ଥାଉ । କଲେଜ ଖୋଲିଲେ ମୁଁ ଆସି ନେଇ ଯିବି, ନୋହିଲେ ଲେଖିବି ତୁ ପଠେଇ ଦେବୁ ।

ଅପା ରାଜି ହେଲା । ଛଳ ଛଳ ଆଖିରେ ମୋ ମୁହଁ ପୋଛି କହିଲା, ଯେଉଁଠି ରହିବୁ, ଶୀଘ୍ର ଚିଠି ଦେବୁ ।

ମୁଁ ବିଦାୟ ନେଇ ଆସିଲା ବେଳକୁ ଦାଣ୍ଡଘର ପାଖେ ସନ୍ଧ୍ୟା ଠିଆ ହୋଇଥିଲା । ଶୁଖିଲା ମୁହଁ କାନ୍ଦିଲା କାନ୍ଦିଲା ଦିଶୁଥାଏ । ମୋ ହାତକୁ ଖଣ୍ଡେ

ରୁମାଲ ବଢ଼ାଇଦେଇ କହିଲା, ନିଅ, ତମକୁ ରାଣ ଅଛି କଟକରେ ପହଞ୍ଚିଲା ଆଗରୁ ଖୋଲିବ ନାହିଁ ।

ପକେଟରେ ରଖିଲି । କାଳେ ତା ଆଖିର ଲୁହ ମୁଁ ଦେଖି ପକାଇବି, ସେଥିପାଇଁ ମୁହଁ ବୁଲାଇ ସେ ଚାଲିଗଲା ।

କଟକ ଆସି ରୁମାଲ ଖଣ୍ଡି ଫିଟାଇଲି । ପାଞ୍ଚଟଙ୍କାର ନୋଟ ଖଣ୍ଡିଏ ଗଳି ପଡ଼ିଲା ତା ଭିତରୁ ।

ଏ ଭିତରେ ଦୁଇବର୍ଷ କଟିଗଲାଣି । କଟକ କଲେଜରେ ବି. ଏ. ପଢ଼ି ପାସ୍ କରି ସାରିଛି । ଟଙ୍କା ପଇସାର ବିଶେଷ ଅଭାବ ପଡ଼ିଲା ନାହିଁ । ମାସକୁ ମାସ ଭାଇ ଯାହା ଦେବାର ତ ଦିଅନ୍ତି, ମୁଁ ନିଜେ ଟିଉସନ୍ କରେ । ମେସ୍‌ରେ ଥାଏ । କୌଣସିମତେ ଚଳି ଯାଏ । ଅପାଠାରୁ କେବେ ମୁଁ ଟଙ୍କା ସାହାଯ୍ୟ ଲୋଡ଼ିନାହିଁ, କିମ୍ବା ସେ ନିଜେ କେବେ ଟଙ୍କା ପଠାଇ ନାହିଁ । ବେଳେ ବେଳେ ବିଶେଷ ଅଭାବ ପଡ଼ିଲେ, ଟ୍ରଙ୍କ ଖୋଲି ସନ୍ଧ୍ୟା ଦେଇଥିବା ରୁମାଲଟି ମୁଁ ଖୋଲେ, ସନ୍ଧ୍ୟାର ରୂପ ଆସି ଆଖି ଆଗରେ ଠିଆହୁଏ । ପୁଣି ରୁମାଲଟି ଯଥା ସ୍ଥାନରେ ରଖିଦିଏ । ଅଭାବ କୌଣସି ମତେ ଦୂର ହୋଇଯାଏ ।

ଅପାଘରକୁ ଯିବାକୁ ବରାବର ମନ ହେଉଥିଲେ ମଧ୍ୟ ଏହି ଦୁଇବର୍ଷ ଭିତରେ ଚାରି ପାଞ୍ଚ ଥରରୁ ବେଶୀ ଯାଇନାହିଁ । ଟିଉସନ୍‌ରେ ବେଶୀବେଳ ନଷ୍ଟହୁଏ, ତେଣୁ ଛୁଟିହେଲେ ପାଠରେ ମନଦିଏଁ । ଅଭିମାନ କରି ଅପା ଲେଖେ, ବାଟ ପାଞ୍ଚକୋଶ, ମଟରରେ ତ ନଇପାରି ଟା ଖାଲି, ସାଇକେଲରେ କେତେବେଳ ବା ଲାଗନ୍ତା ? ସନ୍ଧ୍ୟା ଲେଖେ, ନ ଆସିଲେ ନାହିଁ, କିଏ ଝୁରି ମରୁଛି କି ତମର ଲାଗି ? ପୂର୍ଣ୍ଣିମା ଲେଖେ, ନିଶ୍ଚେ ଆସିବ । ସମସ୍ତଙ୍କୁ ଏକା କଥାରେ ଉତ୍ତର ଦିଏ, ଆସନ୍ତା ଛୁଟିରେ ଯିବି ।

କେତେ ଆସନ୍ତା ଛୁଟି ପଛରେ ପଡ଼େ । ଯାଇ ହୁଏ ନାହିଁ । ଦିନେ ଦିନେ ସମସ୍ତେ ମୋର ମନେ ପଡ଼ନ୍ତି । ଛୁଟି ନ ଥିଲେ ବି ଚାଲିଯାଏ ସଞ୍ଜକୁ । ରାତିଟି ରହି ପରଦିନ କଲେଜ ଖୋଲିବା ଆଗରୁ ଫେରେଁ । କି ଆନନ୍ଦରେ କଟେ ! ପ୍ରତିଥର ଦେଖେ, ସନ୍ଧ୍ୟା ବଡ଼ ହୋଇ ଚାଲିଛି, ଆଉ ହେଉଛି ଦିନୁ ଦିନ ସୁନ୍ଦର । ବ୍ୟବହାରରେ ବେଶୀ ପରିବର୍ତ୍ତନ ଦେଖେ ନାହିଁ । ସେମିତି ମନ-ସରସା କଥା, ପ୍ରାଣ-ଫୁଲକା ହସ, ସେମିତି ଥଟ୍ଟା ନକଲ । କେବଳ ଟିକିଏ ଗାମ୍ଭୀର୍ଯ୍ୟ ଧୀରେ ଧୀରେ ଅଧିକୃତ କରୁଛି ତାର ମୁହଁ । ଲଜ୍ଜାରେ ରଙ୍ଗିଲା ହେଉଛି ତାର ଗାଲ । ଆଖିରେ ଭରିଆସୁଛି ଗୋଟାଏ ଅପୂର୍ବ ମୋହିନୀ ଶକ୍ତି, ଯାହାକୁ ଚାହିଁଲେ ଆଖି ଆଉ ଫେରି ଆସିବାକୁ ଚାହୁଁନାହିଁ ।

ଏଇ ଗୃହଥରରେ ଦିନକରୁ ଦୁଇ ଦିନ କେବେ ରହି ନଥିଲି । ଗତଥର ଦୋଳପୂର୍ଣ୍ଣିମା ବେଳେ ଥରଟିଏ ପ୍ରାୟ ପାଞ୍ଚ ମିନିଟ ପାଇଁ ଦେଖା ହୋଇଥିଲା ପୋଖରୀ ପଛ ଆମ୍ବ ତୋଟା ତଳେ, ଗୋଧୂଳି ସମୟରେ ।

ସେହି ଦିନ ସକାଳେ ଭଣୋଇଙ୍କ ସଙ୍ଗେ କଥା ଭାଷା ହେଉଛି, କାନ୍ଥକୁ ଆଉଜି ସେ ବସିଛନ୍ତି ଟିକିଏ କଡ଼କଥା ହୋଇ, ମୁଁ ତାଙ୍କ ଆଗରେ । ସନ୍ଧ୍ୟା ଲୁଚି ଲୁଚି ବାରଣ୍ଡା ବାଟେ ଆସିବାର ଦେଖିଲି । ସନ୍ଦେହ କରି ସତର୍କ ରହିଲି । ସନ୍ଧ୍ୟା ମୋ ଆଡ଼କୁ ପିଚକାରି ଦେଖାଇ ଯେପରି ମାରିବାକୁ ଆରମ୍ଭ କରିଛି, ସଙ୍ଗେ ସଙ୍ଗେ ଅଡ଼େଇ ଗଲି । ନାଲିପାଣି ସିଧା ଭଣୋଇଙ୍କ ଦେହରେ ପଡ଼ିଲା ।

ସେ ପାଟିକରି ଉଠିଲେ । ମୁଁ ହୋ ହୋ ହୋଇ ହସିଲି । ଘଟଣାଟା ଜାଣିପାରି ସନ୍ଧ୍ୟା ପିଚକାରିଟା ପକାଇ ଦେଇ ଦଉଡ଼ି ପଳାଇ ଯାଉଥିଲା । ଲୁଗା ଛନ୍ଦି ହୋଇ ମୁହଁମାଡ଼ି ପଡ଼ିଲା । ମୁଁ ଛୁଟି ଆସିଲି, ତାକୁ ଉଠାଇଲି । ଅପା, ମାଉସୀ, ବଡ ଧାଇଁ ଆସିଲେ । ଭଣୋଇ ମଧ୍ୟ ରଙ୍ଗ-ଗୁଡ଼ୁବୁଡ଼ୁ ହୋଇ ପଦାକୁ ଆସିଲେ । ପଡ଼ିବା ଦୁଃଖରୁ ଲଜ୍ଜା ବଳେଇ ପଡ଼ିଲା ସନ୍ଧ୍ୟାର ।

ସେହି ଦିନ ଗୋଧୂଳୀ ବେଳେ, ପୋଖରୀ ପଛ ଆମ୍ବ ତୋଟା ତଳେ ମୋତେ ଦେଖି ସେ ଠିଆ ହେଲା । ପଚାରିଲି, ଆଘାତ ଲାଗି ନାହିଁ ସନ୍ଧ୍ୟା ? ଗଛ କାଟିଲା ପରି ପଡ଼ିଲୁ ଯେ !

କହିଲା ଲାଜେଇ ଲାଜେଇ, ନା । ତମେ ବଡ଼ ଦୁଷ୍ଟ । ଭାଇ କଣ ମନେ କରିଥିବେ କହିଲ ?

କିଛି ନାହିଁ । ଭୁଲ ହେଲା ତୋର, ମୁଁ ହେଲି ଦୁଷ୍ଟ । ବାଃ—

ପଚାରିଲା, ତମେ କଣ ସତରେ କାଲି ଚାଲିଯିବ ? ପରୀକ୍ଷା କେବେଠୁଁ ସରିଲାଣି, ରହିନ ।

ତାର ଅନୁରୋଧ ଭାଙ୍ଗି ଚାଲିଯିବାକୁ ଇଚ୍ଛା ହେଉ ନଥିଲା, କିନ୍ତୁ ଉପାୟ ନାହିଁ । ସମସ୍ତଙ୍କୁ କହିଛି କାଲି ସକାଳୁ ଯିବି, ରହିବାକୁ ଲାଜ ମାଡ଼ିବ । ସନ୍ଧ୍ୟାକୁ ସେ କଥା ବୁଝେଇ ଦେଲି । ମୋର ଅସୁବିଧାଟା ସେ ବୁଝିଲା । ହସି ହସି କହିଲା, ଘରେ ଗୋଡ଼ ନ ଦେଉଣୁ, 'କାଲି ଯିବି' 'କାଲି ଯିବି' ବୋଲି ଗପି ହୁଅ କାହିଁକି ? ମୁଁ ଭାବେ, ତମକୁ ଏଠି କିଏ ମାରି ଗୋଡ଼ାଏ ।

ଟିକିଏ ରହି କହିଲି, ସେଇ ଯେଉଁ କଥାଟା ଦୁଇ ବର୍ଷ ତଳେ ତୁ କହିଥିଲୁ—ଭଉଣୀଘରେ ଭାଇ କୁକୁର, ସେହି କଥାଟା ମନେପଡ଼େ, ଲାଜ ମାଡ଼େ ।

ନିଃସଙ୍କୋଚରେ କହିଲା, ଆଉ ଗୋଟାଏ କଥା ମୁଁ କହିଥିଲି । ମନେ ଥିବ ତ ?

ଅଛି ।

ତେବେ ଲାଜ କାହିଁକି ? ପୁଣି କେବେ ଆସିବ ?

ଯେବେ ତୁ ମନେ ପକାଇବୁ ।

ଚୋଟାଏ ଆଡ଼୍‌ ବଡ଼ ଝାଣିଝାଣି ବଡ ଓ ଆଉ ଆଡ଼୍‌ ସନ୍ଧ୍ୟାକୁ ଡାକି ଡାକି ପୂର୍ଣ୍ଣିମା ଆସିଲା । ଆମର କଥା ଅଧା ରହିଗଲା ।

ଦୁନିଆରେ ଏମିତି ସବୁ କଥା ଅଧା ରହିଯାଏ ।

ଅପା ଓ ସନ୍ଧ୍ୟାର ଚିଠି ପାଇଲି । ଦୁହେଁ ଲେଖିଛନ୍ତି ଯିବାକୁ, ନିଶ୍ଚୟ ଯିବାକୁ ହେବ । ଆଉ ମୋଟେ ଛଅଦିନ ରହିଲା ରଜ—ଜୁନ୍‌ମାସ ଦଶ ତାରିଖରେ । ଜୁଲାଇରେ କଲେଜ ଖୋଲିବ । ଏମ୍. ଏ. ଓ ଲ. ଏକା ସଙ୍ଗେ ଆରମ୍ଭ କରିଦେବ ବୋଲି ବସୁଛନ୍ତି । ଭାଇ ଚାକିରି ଖୋଜିବାକୁ ଲେଖିଲେଣି । ସେ ଆଉ ପଢ଼ିବାକୁ ଟଙ୍କା ଦେବେ ନାହିଁ । ଭାବନା କଣ ? ହାତରେ କିଛି ଟଙ୍କା ଅଛି । ପୁଣି ଟିଉସନ ଚାଲିବ । ଦେଖାଯିବ ତେଣିକି ।

ରଜକୁ ଥରେ ନ ଗଲେ ଆଉ ସହଜରେ ଯାଇ ହେବ ନାହିଁ । ନିଶ୍ଚୟ ଯିବ ଅନ୍ତତଃ ଦିନେ ଦୁଇଦିନ ପାଇଁ । ସନ୍ଧ୍ୟାର ରୂପଟି ଆଖି ଆଗରେ ଆସି ଠିଆ ହେଲା—ସତେ ଯେପରି ସେ ଡାକୁଛି । ଆଉଥରେ ଚିଠିଖଣ୍ଡି ପଢ଼ିଲି । କାମରେ ମନ ଲାଗିଲା ନାହିଁ । ଯେଉଁ ମେସ୍‌ରେ ମୁଁ ଥାଏଁ, ତହିଁର ପ୍ରାୟ ସବୁ ବନ୍ଧୁ ନିଜ ନିଜର ଗ୍ରାମକୁ ଚାଲି ଯାଇଛନ୍ତି । ମୁଁ ଏକା ରହିଯାଇଛି ।

ହଁ, ଆମେ ଗରିବ । ଦୁଃଖ ହେଲା ମନରେ । କେଉଁ ଆଶାରେ ବାମନ ହୋଇ ଚନ୍ଦ୍ରକୁ ହାତ ବଢ଼ାଇବ ? ସନ୍ଧ୍ୟା ମତେ ଭଲ ପାଏ । ମୋର ମନଟା ବି ସବୁବେଳେ ଛୁଟିଥାଏ ତାରି ପଛରେ । ଦୁନିଆରେ ସୁଖରେ ରହିବାକୁ ହେଲେ, ଟୋକା ବୟସର ଏଇ ଭଲପାଇବାଟା ତ କେବଳ ବଡ଼ କଥା ନୁହେଁ ! ଯାହାକୁ ପାଇବାର ଆଶା ନାହିଁ, ତାରି ପଛରେ ଲଗାମ-ମୁକୁଳା ମନକୁ ଧାଇଁବାକୁ ଛାଡ଼ିଦେଲେ ସାର ହୁଏ ଦୁଃଖ, ଯନ୍ତ୍ରଣା । ଲୋକହସା ହେବାକୁ ପଡ଼େ । ଦୁର୍ନାମ ରଟେ । ଏ ସବୁ ଭିତରରେ କି ଆନନ୍ଦ ଅଛି ?

ସନ୍ଧ୍ୟା ବଡ଼ ଘରର ଅଲିଅଳି ଝିଅ । ତାକୁ ମୋ ପରି ସାହା ସମ୍ବଳହୀନ ବାଟର ବାଟୋଇଟା ହାତରେ ଟେକି ଦେବାକୁ କିଏ ବା ଆଗେଇ ଆସିବ ? ଯାହାକୁ ଗଣ୍ଡିଏ ଭଲ କରି ଖାଇବାକୁ ଦେବାକୁ କି ଖଣ୍ଡେ ଭଲ ଶାଢ଼ୀ ପିନ୍ଧିବାକୁ ଦେଇ ପାରିବ ନାହିଁ, ଯାହାକୁ ରଖିବାକୁ ପରର ଓଳିତଳେ ମୁଣ୍ଡନୋଇଁ ଠିଆ ହେବାକୁ ହେବ, ତାକୁ ଭଲ ପାଇବାର ମୋର କି ଅଧିକାର ଅଛି ?

ସନ୍ଧ୍ୟା ପିଲା । ଉତ୍ତେଜନାରେ ପୂର୍ଣ୍ଣ ହୋଇଛି ତାର ମନ । ଭାବି ଚିନ୍ତି ସ୍ଥିର କରିବାର ବୟସ ତାର ହୋଇନାହିଁ । କାହିଁକି ତା ମନରେ ଆଉ ଉତ୍ତେଜନା ଆଣିବି । ପିଲାଦିନର ଘରକରଣା ଖେଳ ପରି, ଯହିଁରେ ଭାଇ ହୁଏ ବର ଓ ଭଉଣୀ ହୁଏ କନିଆଁ, ସେମିତି ଆମେ ଖେଳିଥିଲୁଁ ଆଜିଯାଏ । ସେ

ଖେଳ ଅଳଠାରୁ ଗ୍ରାଙ୍ଗୁ । ଭାଇ ଭଉଣୀ ଯେପରି ପରସ୍ପରକୁ ଭଲପାନ୍ତି, ଆମର ଭଲ ପାଇବାଟା ସେତିକରେ ଅବଦ୍ଧ ରହୁ । ମୁଁ ଯିବି, ସୁବିଧା ପାଇଲେ ଏଇ କଥା ତାକୁ ବୁଝାଇ ଦେଇ ଆସିବି ।

ଯେତେ ଯାହା ବିଚାର କଲେ ମଧ୍ୟ ମନଟା ବାହୁନି ଉଠେ । ରାଗ ହୁଏ ତାର ଉପରେ, ଯିଏ ସମାଜରେ ଧନୀ ଓ ନିର୍ଦ୍ଧନ ସୃଷ୍ଟି କରିଛି । ସନ୍ଧ୍ୟା ଆସି ଖେଳଯାଏ ମନଗହନର ରଙ୍ଗମଞ୍ଚରେ । ଆଖିରୁ ଝରେ ଲୁହ । ଆହା, ଗରିବ ଘରେ ଜନ୍ମ ହେଲି କାହିଁକି ? ପେଟ ପୋଷିବାକୁ ଯାହାର ସମ୍ବଳ ନାହିଁ—

ଗୃହଦିନକାଳ ନିଜ ଭିତରେ ନିଜେ ମୁଁ କେତେ ବାଦ ପ୍ରତିବାଦ କରିଛି । ବାରମ୍ବାର ସ୍ଥିର କରିଛି ଆଉ ସନ୍ଧ୍ୟାକୁ ମନରେ ସ୍ଥାନ ଦେବି ନାହିଁ । ତା ପାଖରୁ ଦୂରେଇ ରହିବି । ଦୁହିଙ୍କ ମନରେ ଯେଉଁ ନିଆଁ ଜଳୁଛି, ସେ ନିଆଁ ପ୍ରବଳ ହେବା ଆଗରୁ ଲିଭାଇ ଦେବା ଭଲ । ନୋହିଲେ ପୋଡ଼ି ମରିବାହିଁ ସାର ହେବ ।

ଏତେ ତର୍କ ଏତେ ବିଚାର କରି ମଧ୍ୟ କିପରି ଯେ ସନ୍ଧ୍ୟା ପାଖକୁ ଅପାଘରକୁ ଟାଣିହୋଇ ଗଲି, ମୁଁ ଆଜି ଭାବିଲେ ନିଜେ ବୁଝିପାରେ ନାହିଁ ।

ସେ ଦିନ ସଜବାଜ, ପହିଲି ରଜର ଆଗ ଦିନଟା ।

ସାତୋଟି ଦିନ ମୋଟେ ରହିଲି, ଲାଗିଥିଲା ସାତ ମୁହୂର୍ତ୍ତି ପରି । ଦିନ ରାତି ଜଣା ଯାଇନାହିଁ । ଦୋଳଖେଳ, କଉଡ଼ି, ତାଅସ, ଭୂତୁ । କେତେ ଗପ, ଥଟ୍ଟା ତାମସା ହସ । ନିଃସଙ୍କୋଚ ନିର୍ଭୟ ଭାବ । କେତେ ଆଦର, ଯତ୍ନ, ପିଠାପଣା । ଅନ୍ୟମାନେ ଥିଲେ ମଧ୍ୟ ସନ୍ଧ୍ୟାର ସାନ୍ନିଧ୍ୟରେ ବେଶୀ ବେଳ କଟିଛି । ସମସ୍ତଙ୍କ ଉପସ୍ଥିତିରେ ଦୁଇଟି ଆତ୍ମା ଭିତରେ କେତେ ଭାବର ଆଦାନ ପ୍ରଦାନ ହୋଇଛି, ଗୃହାଣୀରେ, ହସରେ, ପଦେ ପଦେ ନିଶ୍ୱାସ କଥାରେ, ଥଟ୍ଟା ତାମସାରେ । ସନ୍ଧ୍ୟା ବୁଝିଛି ମରମର ବେଦନା, ଅଣା । ବୁଝିଛି ମୁଁ । କେତେ ଗୁହାରି କରିଛି ଠାକୁରଙ୍କ ପାଖେ ମନେ ମନେ ।

ଭୁଲି ଯାଇଥିଲି—ମୁଁ ଗରିବ, ନିଃସ୍ୱମୀ । ଦୁଇଟି ଢଳ ଢଳ ଆଖି, ସୁନ୍ଦର ରୂପ, ଦେବୀ ପ୍ରତିମାର ପଦଟିଏ କଥା, ଦରହସିଲା ନାଲି ଓଠ୍ରୁ ଓଠ୍ରୁ ହସ ପାଖରେ ନିଜକୁ ମୁଁ ପାସୋରି ଯାଇଥିଲି । ସେ ମୋତେ ଭଲପାଏ, ମୋର ପ୍ରାଣ ତାକୁ ପାଇବାକୁ ଗୃହେଁ ଏତିକି ଯେପରି ସତ୍ୟ, ଭବିଷ୍ୟତରେ ଆମର ମିଳନ ମଧ୍ୟ ସେହିପରି ସତ୍ୟ, ଏପରି ଧାରଣା ମୋର ହୋଇଥିଲା । ଦିନ ରାତି ଆନନ୍ଦ ଉତ୍ସାହରେ କଟିଯାଉଥିଲା ।

ବର୍ଷା ହେଉଥାଏ । ରଜ-ମଉଜଟା ସତେ କି ନଷ୍ଟ କରିଦେବ । ବତାସ । କେତେବେଳେ ଗର୍ଜିଉଠେ ମେଘ । ଦିପହରେ ସଞ୍ଜର ଅନ୍ଧାର ଘନେଇ ଆସିଥାଏ ।

ବିଷାଦ ଝରିପଡ଼ୁଥାଏ ଆକାଶରୁ । ବିମର୍ଷ-ଭାବ ଅସୁଥାଏ ମନରେ । ଭଲ ଲାଗୁ ନ ଥାଏ ।

ମାଉସୀଙ୍କର ଶୋଇଲାଘରେ ଆମେ ସମସ୍ତେ କଉଡ଼ି ଖେଳୁଥାଉଁ, ମାଉସୀ, ଅପା, ମୁଁ, ବିଚ, ସନ୍ଧ୍ୟା, ପୂର୍ଣ୍ଣିମା ଓ ଆଉମାନେ । ଜମି ଆସିଥାଏ ଖେଳ । ଗୋଟିଏ ପାଖେ ସାରି ଗୁଳୁଥାଏ ଅପା ଓ ଆରପାଖେ ବିଚ । କଦା କଦ । ଆଉମାନେ ସବୁ ଦାନ ପକାଇବାରେ ବ୍ୟସ୍ତ । ଦିଅର ଭାଉଜ ଦୁଇପକ୍ଷର ସେନାପତି, ଅନ୍ୟମାନେ ସୈନିକ । ହାର ଜିତ୍‌ରେ ଭାଗ ନେବେ ସମସ୍ତେ, କିଏ ହସିବ କିଏ ପୁଣି ମୁହଁ ଶୁଖାଇବ ।

ମାଉସୀ କଥା ଆରମ୍ଭ କଲେ, ମୋର ଉଦ୍ଦେଶ୍ୟରେ—ଆରେ ପ୍ରଭାତ, ତୁ ପରା ଗୋଟାଏ ବଡ଼ ପାଶ୍ କରିଛୁ ? ଏଇଠୁ ପାଠ ସରିଲା ନା ଆଉ ଅଛି ?

କହିଲି, ମାଉସି, ପାଠ ସରେ ନାହିଁ । ଆକାଶର ତାରା ଯେମିତି ଗଣି ହୁଏ ନାହିଁ, ପାଠ ସେମିତି କଳି ହୁଏ ନାହିଁ । ଭାବୁଛି ଆଉ ଦୁଇ ବର୍ଷ ପଢ଼ିବି, ଯଦି ସୁବିଧା ହୁଏ ।

ମାଉସୀ ଓଠ ନେଫେଡ଼ି କହିଲେ, ବେଶି ଗୁଡ଼ାଏ ପଢ଼ି ଆଉ ଲାଭ କଣରେ ବାପ, ଏଥର ଚାକିରି ବାକିରି ଖୋଜ, ପଇସା ଉପାର୍ଜନ କର, ମାଣେ ଗୁଣେ ଯେଉଁଠି ହେଲେ ସମ୍ପତ୍ତି, ଭଲ ଘର ଖଣ୍ଡେ କର । ଏମିତି ଅଭେକାଙ୍କ ପରି କେତେଦିନ ଚଳିବ ? ବାପରେ, ନିଜର ହୋଇ ସମ୍ପତ୍ତି ନ ଥିଲେ ସବୁବେଳେ ପର ହାତକୁ ଚାହିଁ ରହିଥିବ ସିନା ! ଟିକିଏ ଚୁପ୍ ହୋଇ ପୁଣି କହିଲେ, ବାପ ଅଜାଙ୍କର ନାମ ରଖିବାକୁ ହେଲେ ସମ୍ପତ୍ତି ଲୋଡ଼ା । ଠଙ୍କା ସଞ୍ଚିଲେ କାହାର ଆଖିକୁ ଦିଶେ ନାହିଁ । ଗୁଣ୍ଠେ କି ବିଶ୍ୱାଏ ଜମି କିଣିଲେ ସମସ୍ତେ ଦେଖନ୍ତି, ପ୍ରଶଂସା କରନ୍ତି । କାଲି ପୁଣି ହାତକି ଦହାତ ହେବ କିପରି ରେ ? ବୋହୂ ଆସି ଗଛମୂଳେ ବସିବ ନାହିଁ ତ ? ବେଳ କଣ ଚାହିଁ ବସିଚ ? ମୋ ସାନକୁହା ମାନ, ଯେଉଁଠି ଦେଖି ଚାକିରିବାକିରିରେ ପଶି ଯା ।

କଥାଟାକୁ ସେଇଠି ଶେଷ କରି ଦେବାକୁ ପ୍ରତିବାଦ ନ କରି କହିଲି, ସେଇଆ କରିବାକୁ ହେବ । ତା ଛଡ଼ା ତ ଉପାୟ ନାହିଁ ।

ସେ ପୁଣି କହିଲେ, ଯେତେ କଷ୍ଟକରି ତମେ ପାଠ ପଢ଼ିଚ, ଠାକୁରେ ନିଶ୍ଚୟ ତମର ଗୁହାରି ଶୁଣିବେ । ତମେ କେବେ ଦୁଃଖ ପାଇବ ନାହିଁ ରେ ।

ତୁନି ହେଲେ । ଏତେ କଥା ହଠାତ୍ କହିବାର କଣ କାରଣ ଥିଲା ମୁଁ ଜାଣି ପାରିଲି ନାହିଁ । ଭାବିବାକୁ ମଧ୍ୟ ବେଳ ନ ଥିଲା ସେତେବେଳେ । କଣେଇଁ ଚାହିଁଲି ସନ୍ଧ୍ୟାକୁ । ତାର ମୁହଁଟା କିପରି ମଳିନ ଦେଖାଗଲା । ବୁଝିଲି, ମୋର ଦରିଦ୍ରାବସ୍ଥାର ବର୍ଣ୍ଣନା କରି ମୋ ମନରେ ଦୁଃଖ ଆଣିବାକୁ ସେ ଏପରି କହି ନ ଥିଲେ, ବରଂ ମତେ ସତର୍କ ହେବାକୁ ସେ ଇଙ୍ଗିତ ଦେଇଥିଲେ ।

ମାଉସୀଙ୍କର ସହାନୁଭୂତି କଥା କେଉଁ ପଦର ଉଦ୍ଦେଶ୍ୟ ଯାହା ଥାଉ, ମତେ କପରି ମାଡ଼ ମାରିଲା ପରି ଲାଗିଲା । ସ୍ୱଭରେ ଆଉ କୌଣସି ଆନନ୍ଦରେ ଯୋଗ ଦେଇନାହିଁ । ସମସ୍ତଙ୍କ ପାଖେ ଥାଏଁ, ମିଶେ, କିନ୍ତୁ ଯେପରି ନିଜକୁ ମୁଁ ଏକୁଟିଆ ଅନୁଭବ କରୁଥାଏ । ମନରେ ଗୁରେଇ ଗୁରେଇ ହେଉଥାଏ ଗୋଟିଏ କଥା, ମୁଁ ଗରିବ, ମୁଁ ବାମନ । ଔଧ ସଙ୍ଗେ ବଣଭୂଆ ପରି ବାଇ ହେଉଛି କାହିଁକି ? କାହିଁକି ମନରେ ଅଲିଭା ନିଆଁ ଜଳାଇଛି ?

ମୁଁ ଆଡ଼େ ଗୃହେଁ ଦେଖେ ଗୃହଆଡ଼େ ବଡ଼ଲୋକଙ୍କର ଛାପା ମାରିଛି । ପବନରେ ମଧ୍ୟ ଯେପରି ବଡ଼ଲୋକୀ ଖେଳ ବୁଲୁଛି । ଏଇ ମୋର ଅପା, ଏଇ ମୋର ଭଣଜା ଭାଣିଜୀମାନେ, ସେମାନେ ବି ବଡ଼ଲୋକର ଆବହାଓ୍ୱାରେ ପଶି ଗଲେଣି । ସନ୍ଧ୍ୟା ବଢ଼ିଛି ଏଇ ଘରର ପାଣି ପବନରେ, ଏଇ ବଡ଼ଲୋକର ପରିସ୍ଥିତି ମଝିରେ । ଅରେ, ଅରେ, ମୁଁ କେଡ଼େ ନିର୍ବୋଧ ! କାହିଁକି ଅଜାଯାଏ ବୃଥା ଆଶାର ପଛରେ ଗୋଡ଼ାଇ ଥିଲି, କି ଭେଲିକି ଲାଗିଥିଲା ମୋର ଚକ୍ଷୁରେ ! ଟିଉସନ୍ କରି ଯେ ପେଟ ପୋଷେ, ପରଘରେ ମେସ୍‌ରେ ଯେ ଦିନଗୁଡ଼ା କଟାଏ, ଦୁଇ ଖଣ୍ଡିରୁ ତିନିଖଣ୍ଡ ଲୁଗା ଯାହାର ନାହିଁ, ଝାଳ ଗନ୍ଧରୁ ରକ୍ଷା ପାଇବାକୁ ଗେଞ୍ଜି ଖଣ୍ଡି ଯିଏ ସାବୁନରେ ଧୋଇ ନ ପାରେ, ପଇସା ଅଭାବରୁ ଯିଏ ବେଳଟିଏ ମୁଢ଼ି ଖାଇ ଶୁଏ, ସେଇ ମୁଁ, ପ୍ରଭାତ । ଗୃହେଁ, ସନ୍ଧ୍ୟାର ହାତ ଧରିବ ? କି ଭରସାରେ ? ମୁଁ ପାଠ ପଢ଼ିଛି । ପାଠଟା ପଦାକୁ ଫୁଟି ବାହାରେ ନାହିଁ । ପାଠ ମଣିଷକୁ ସମ୍ମାନ ଆଣିଦିଏ, ଦୁନିଆର ସୁଖ ଆଣିଦିଏ ନାହିଁ । ଆଣେ ଧନ ସମ୍ପତ୍ତି, ପ୍ରଭୁତ୍ୱ—ଯାହା ମୋର ନାହିଁ ।

କଟରି ଅଲଗା ଅଲଗା ମୋତେ ଲାଗିଲା । ଇଚ୍ଛା ହେଲା ସେହି ଝିପି ଝିପି ବର୍ଷା, ବାଦଲ ସ୍ୱଭକୁ ନ ମାନି ମୁଁ ଛୁଟି ପଳାଇବି ବଡ଼ଲୋକର ପରିସ୍ଥିତିର ବାହାରକୁ । ଏଠି ମୋର ସ୍ଥାନ ନାହିଁ । ଯେଉଁଠି ସେମାନେ ତାଆସ ଖେଳୁଥିଲେ, ମୁଁ ଧୀରେ ଧୀରେ ସେଠାରୁ ଉଠି ଆସିଲି । ଦାଣ୍ଡ ଖଞ୍ଜାର ବାରଣ୍ଡାରେ ବସି ଅନେକ କଥା ଏଣୁ ତେଣୁ ଭାବିଲି । ଧୈର୍ଯ୍ୟ ରହିଲା ନାହିଁ । କାନ୍ଦିଲି ମନଇଚ୍ଛା । ଗରିବର ଭଲ ପାଇବାର ଅଧିକାର ମଧ୍ୟ ନାହିଁ !

ପୂର୍ଣ୍ଣିମା ଆସିଲା, କିଏ ସେ ବସିଛି ?

ଉତ୍ତର ଦେଲି, ମୁଁ ।

ଅରେ, ମାମୁଁ ? ତମକୁ ଖୋଜା ପଡ଼ୁଛି । ତମେ ଏଠି ତୁନି ହୋଇ ବସିଛ ? ଆସ, ଆସ, ଆମକୁ କଥା କହିବ । ସନ୍ଧ୍ୟା ଅପା ତୁମକୁ ଡାକୁଛି । ମୋର ହାତ ଧରି ଟାଣିଲା ।

ମୁଁ କହିଲି, ତୁ ଯା ମା, ମୋତେ ଭଲ ଲାଗୁନାହିଁ । ମୁଁ ଟିକିଏ ଏକୁଟିଆ ବସିଛି ଥଣ୍ଡାରେ । ସନ୍ଧ୍ୟା ଅପାକୁ କହିବୁ ସେଇ ତମକୁ କଥା କହିବ ।

ସେ ପ୍ରତିବାଦ ନ କରି ଚାଲିଗଲା । ମୁଁ ପୁଣି ମୋର ଚିନ୍ତାରେ ବୁଡ଼ି ରହିଲି, ଦାରିଦ୍ର୍ୟର ବିରୁଦ୍ଧରେ କିପରି ଅଭିଯାନ କରିବି, ହୁଏତ ଧନୀ ହେବି ନୋହିଲେ ଧନୀ ଗୁଡ଼ାଙ୍କୁ ଟାଣି ଆଣିବି ଆମରି ସ୍ଥାନକୁ । ମୋର ଅବାନ୍ତର ଭାବନାରେ ବାଧା ଦେବାକୁ ପୁଣି ଆସିଲା ପୂର୍ଣ୍ଣିମା ! କହିଲା, ମାମୁଁ, ତମୁକୁ ଅପା ଡାକୁଛି, ଆସ ।

କହିଲି, ଆଃ, କାହିଁକି ବିରକ୍ତ କରୁଛୁ ? ମତେ ଟିକଏ ନିଶ୍ଚିନ୍ତରେ ବସେଇ ଦେବୁ ନାହିଁ ?

ଆରେ, ଅପା ଡାକୁଛି, ମୁଁ କଣ କରିବି ।

ଯା କହିବୁ, ମୁଁ ଯାଇ ପାରିବି ନାହିଁ ।

ନାଇଁ ତମେ ଆସ ।

ମୋ ହାତ ଧରି ଟାଣିଲା । ମୁଁ ହାତ ଛୁଆଁଡ଼ି ଅଣି କହିଲି, ବେଶୀ ବିରକ୍ତ କଲେ ମୁଁ କଠକ ଚାଲିଯିବି ।

ଦାଣ୍ଡ ଘର କବାଟ ଉହାଡ଼ରୁ ବାହାରି ଆସିଲା ସନ୍ଧ୍ୟା । କଥା ଉପରେ ଯୋର୍ ଦେଇ କହିଲା, ସତେ, କଠକ ଚାଲିଯିବ ? ଯାଅ ତ ଦେଖି, ଏଇ ମୋ ଆଗରେ ।

ପୂର୍ଣ୍ଣିମା ହସିଲା ।

ସମସ୍ତେ ତୁନି ରହିଲୁ ମୁହୂର୍ତ୍ତେ । ସନ୍ଧ୍ୟା କହିଲା, ପ୍ରଭାତ ଭାଇ, ଆଜି ତମର କଣ ହୋଇଛି ? କାହିଁକି ତମର ମୁହଁ ଗମ୍ଭୀର, ବିରସ ଦିଶୁଛି ? ମନରେ ସରାଗ ନାହିଁ । ତୁଣ୍ଡରୁ କଥା ବାହାରୁ ନାହିଁ । କରଛଡ଼ା ଦେଇ ରହୁଛ । ଅନ୍ୟ ମନସ୍କ । କଣ ଏତେ ଭାବୁଛ ? କହ ପ୍ରଭାତ ଭାଇ, କହ ମୋ ରାଣ ।

ସନ୍ଧ୍ୟାର କହିବାର ଭଙ୍ଗୀ, ସନ୍ଧ୍ୟାର ବ୍ୟଥାଭରା ସ୍ୱର ମୋତେ ବିଚଳିତ କରିଥିଲା । ତାର ସବୁ ପ୍ରଶ୍ନରୁ ଝରି ପଡ଼ୁଥିଲା ସମବେଦନା, ଅନ୍ତରର ବ୍ୟଥା । ତାର ସେହି ପ୍ରଶ୍ନ ହିଁ କହି ଦେଉଥିଲା, ସେ ତାର ଉତ୍ତର ଜାଣେ ।

ଉତ୍ତର ଦେଇ ପାରିଲି ନାହିଁ ।

ସେ ଅସ୍ଥିର ହୋଇ ମୋର ହାତ ଧରି ଟାଣିଲା । କହିଲା, ଉଠ ପ୍ରଭାତ ଭାଇ, ଅସ ଆମୁକୁ କଥା କହିବ । ଆସିବ ନାହିଁ ?

ମୁଁ ଉଠିଲି । ତାର ହାତର ପରଶ ମୋତେ ଶକ୍ତି ଦେଇଥିଲା ଉଠିବାକୁ । ପୂର୍ଣ୍ଣିମା, ବାରବର୍ଷର ଝିଅ, ତାର ଉପସ୍ଥିତି ଭୁଲି ଗଦ୍‌ଗଦ କଣ୍ଠରେ କହିଲି, ସନ୍ଧ୍ୟା ! ସନ୍ଧ୍ୟାରାଣି ! କାହିଁକି ମୋତେ ଆସିବାକୁ ଲେଖିଥିଲୁ ? କାହିଁକି ଏତେ ସ୍ନେହ କରୁ ତୁ ? ତୋର ହାତ ଭିତରେ ମୋ ହାତଟା ଅନୁଭବ କରୁଛି ଗୋଟାଏ ଯନ୍ତ୍ରଣା—କହିପାରୁ ନାହିଁ କଣ ସେ । ବୁଝୁଛି, ଏ ଦୁଇଟା ହାତ ଏକାଠି ହୋଇ

ପାରୁବ ନାହିଁ, ମୂଲଆର କାମକରା ଝାଣୁଆ ହାତ ଆଉ ଧନୀଘର ଝିଅର ଲହୁଣୀ ପରି କୋମଳ ହାତ । ଅସମ୍ଭବ ! ଛାଡ଼ ।

ମୋ ହାତକୁ ଚୁପିଟରୁ କହିଲା, ମୂଲିଆ ସିନା ଦେଶର ରଜା ହୋଇ ପାରେ ନାହିଁ, ମନର ରଜା ତ ହୋଇ ପାରେ ? ହାଣ୍ଡି ପୁଣି କଳସ ଢାଳେ ତା ମୁଣ୍ଡରେ, ଦୁଃଖ ତାର ଯାଏ, ସେ ହୁଏ ରଜା । ଝାଣ ହାତ କଅଁଳ ହୁଏ ।

ଯଦି ନ ହୁଏ ସନ୍ଧ୍ୟା ?

କଅଁଳ ହାତ ଝାଣ ହୁଏ ପ୍ରଭାତ ଭାଇ, ଆସ, ଗପ କରିବ । ଆରେ, ଦୁଃଖର ଭାଗ ଦେଲେ ସିନା ଦୁଃଖ କମିବ । ଏଇଥି ପାଇଁ ଅନ୍ଧାରରେ ବସି ଭାବୁଛ, ମୁଁ ଗରିବ, ମୁଁ ଗରିବ, ମୁଁ କାନ୍ଦିବ, ରୁଷିବ, ଖାଇବ ନାହିଁ, ମୁଣ୍ଡ ପିଟିବ ।

ସେ ହସିଲା । ମୁଁ ବି ହସିଲି । ସେତେବେଳକୁ ବର୍ଷା ଛାଡ଼ି ଯାଇଥାଏ । ପୂର୍ଣ୍ଣିମା ଆସେଇ ଗଲାଣି । ନିଜକୁ ଆଉ ସମ୍ଭାଳି ପାରିଲି ନାହିଁ । ସେହି ଅନ୍ଧାରରେ ତାକୁ ଆଉଜାଇ ଆଣିଲି ଛାତି ଉପରକୁ, ମୁହଁରେ ଦେଲି ଚୋକ, ଥରି ଉଠିଲା ଦେହ ।

ପୂର୍ଣ୍ଣିମା ଡାକିଲା, ଅସୁନା ।

ଗଲିଁ ।

ପର ଦିନ ଦୁଇ ପହରେ—

ପୂର୍ଣ୍ଣିମା ଡାକିଲା, ମାମୁଁ ତୁମକୁ ଜେଜେ ଡାକୁଛନ୍ତି ।

ଅପା ସଙ୍ଗେ ଗପ କରୁଥିଲି । ସନ୍ଧ୍ୟା ପାଖରେ ବସିଥିଲା । ଉଠି ଆସିଲି ଦାଣ୍ଡ ଖଞ୍ଜାକୁ । ମଉସାଙ୍କ ଶୋଇଲା ଘରେ ସମସ୍ତେ ବସିଛନ୍ତି । ମଉସା, ମାଉସୀ, ଭଣଜାଇଁ, ଜଣେ ଜ୍ୟୋତିଷ, ପୂର୍ଣ୍ଣିମା, ଅଟ୍ଟୁରି ଅନେକ । ମୁଁ ଯାଇ ମଉସାଙ୍କ ପାଖରେ ବସିଲି । ସମସ୍ତେ ପ୍ରଫୁଲ୍ଲ ଦେଖା ଯାଉଛନ୍ତି ।

ମଉସା କହିଲେ, ସନ୍ଧ୍ୟାର ବାହାଘର କଥା ପଡ଼ିଛି । ରବୀନ୍ଦ୍ରକୁ ତମେ ଚିହ୍ନ ବାବା ?

ଛାତିରୁ ଗୋଟାଏ ନିଅାଁ ଖସି ପଡ଼ିଲା । ଧୈର୍ଯ୍ୟ ଧରି କହିଲି, ହଁ, ଚିହ୍ନେ । ସେ ଦୁଇବର୍ଷ ତଳେ ବି. ଏ. ପାସ୍ କରିଥିଲେ, ଏବର୍ଷ ପୋଲିସ୍ ସବ୍‌ଇନ୍‌ସପେକ୍ଟର ହୋଇଛନ୍ତି ।

ପିଲାଟିର ସ୍ୱଭାବ ଚରିତ୍ର କପରି ?

ଅତି ସୁନ୍ଦର ।

ମଉସା ଖୁସି ହୋଇ କହିଲେ, ଶୁଣିଲ ତ ଏଥର ? ଶରତ୍‌ବାବୁ ଜମିଦାର । ନିଜେ କଳାହାଣ୍ଡିର ଦେଓ୍ୱାନ । ରବୀନ୍ଦ୍ର ତାଙ୍କର ବଡ଼ ପୁଅ । ଏତେ ପାଠ ପଢ଼ିଛି । ସରକାରୀ ଚାକିରି । ମୁଁ ନିଜେ ଦେଖିଛି ତାକୁ କଟକରେ, ସୁନ୍ଦର ସବଳ ପିଲା । ଶାନ୍ତ ଶିଷ୍ଟ । ଜାତକ ଭଲ ମିଳିଛି । ରାଜଯୋଟକ । ଆଉ କଣ ଲୋଡ଼ା ?

ସ୍ୱଭାବ ଚରିତ୍ର କଥା ତ ଶୁଣିଲ । ପ୍ରଭାତ ତାର ସାଙ୍ଗ । ତାଠାରୁ ବେଶି କଏ କହିବ ? ମନ ମାନିଲା ?

ମାଉସୀ କହିଲେ, ଆଉ କାହିଁରୁ ମୋତେ କଣ ମିଳିବ ? ଧନ ଦଉଲତ ରୂପ କିଛି ନୁହେଁ । ପୁରୁଷ ପୁଅ । ପତର ତଳେ ତା ଭାଗ୍ୟ । ଅସଲ ହେଉଛି ସ୍ୱଭାବ ଚରିତ୍ର । ସନ୍ଧ୍ୟା ପ୍ରଭାତ, ଭାଇ ଭଉଣୀଠୁଁ ବଳି ପରସ୍ପରକୁ ଭଲ ପାଆନ୍ତି ! ପ୍ରଭାତ ଯେତେବେଳେ କହୁଛି ଭଲ, ତମେ ଆଖି ବୁଜି ଜବାବ ଦିଅ ।

ମୋର ଆଗରେ ଠିକ୍ ହେଲା—ଜୁଲାଇ ପାଞ୍ଚ ତାରିଖରେ କଟକ ଗୋପାଳଜୀଉ ମନ୍ଦିରରେ ମହାପ୍ରସାଦ ନିର୍ବନ୍ଧ ହେବ । କୋଡ଼ିଏ ତାରିଖରେ ସ୍ୱୀକାର ଚାଲିବ । ବାହାଘର ସତେଇଶ ତାରିଖରେ ।

ସେମାନଙ୍କ ପାଖରୁ ଉଠି ଆସିଲି ଅପା ପାଖକୁ । ନଣନ୍ଦ ଭାଉଜ ଦିହେଁ ବସି ଗପ କରୁଥାନ୍ତି । ନିଜକୁ ମୁଁ ଆୟତ୍ତରେ ରଖି ପାରୁଥିଲି । କିପରି କଟକ ଚାଲି ଆସିବ ସେଇକି ଥିଲା ମୋର ଭାବନା ।

ଅପା ପଚାରିଲା, କରେ କାହିଁକି ଡକାଇ ଥିଲେ ?

ମିଛରେ କହିଲି, ଗୋଟାଏ କାମ ଅଛି କଟକରେ, ମତେ ପଠାଇବାକୁ । ମୁଁ ଏହିକ୍ଷଣି ଯିବି, କାଲି ସକାଳେ ଫେରିବି ।

ଜ'ମା ଯୋତା ପିନ୍ଧିଲି । ଡେରି କଲେ ରକ୍ଷା ନାହିଁ । ମଉସାଙ୍କ ପାଖରେ ପୂର୍ଣ୍ଣିମା ବସି ସବୁ ଶୁଣୁଛି । କଥାଟା ପ୍ରକଟ କଲେ ଆଉ ଧୈର୍ଯ୍ୟ ଧରି ରହି ପାରିବି ନାହିଁ । ସନ୍ଧ୍ୟାର ଅବସ୍ଥା କଣ ହେବ ? ହୁଏତ ସେ କିଛି ଗୋଟାଏ କାଣ୍ଡ କରି ବସିବ ।

ଅପା କହିଲା, ଏତେ ଜରୁରୀ କାମ ? ଜଳଖିଆ ଖାଇ ଯା ତେବେ ।

ମୁଁ ନାହିଁ କରୁ କରୁ ସେ ଜଳଖିଆ ପାଇଁ ବାହାରି ଗଲା । ସର୍ବନାଶ ! ଦାଣ୍ଡଆଡ଼କୁ ଗଲେ ସବୁ କଥା ଜାଣିନେବ ।

ଯୋତା ପିନ୍ଧିଲି ।

ସନ୍ଧ୍ୟା ପଚାରିଲା, ପ୍ରଭାତ ଭାଇ, କଣ ଏମିତି ଜରୁରୀ କାମ ?

ତା ଆଡ଼କୁ ଚାହିଁବାକୁ କି ତା କଥାର ଉତ୍ତର ଦେବାକୁ ମୋର ସାହସ ହେଉ ନ ଥାଏ ।

କହିବ ନାହିଁ ?

ଥରଟିଏ ଚାହିଁଲି ତା ଆଡ଼କୁ । ଧୈର୍ଯ୍ୟ ଧରି ରହି ପାରିଲି ନାହିଁ । ଆଖିରୁ ଲୁହ ଝରିଗଲା ।

ସେ ଉଠି ଆସିଲା ମୋ ପାଖକୁ । କଣ ଯେପରି ସନ୍ଦେହ କରି ମୋର ହାତ ଧରି ଆକୁଳ ବିକଳ ହୋଇ ପଚାରିଲା, କାନ୍ଦୁଛ କାହିଁକି ? କହ । କହ ପ୍ରଭାତ ଭାଇ, କଣ ହୋଇଛି ?

ତା ହାତରୁ ହାତ ଖସାଇ ଆଣିଲା ଧୀରେ । ପଦାକୁ ବାହାରି ଆସିଲା । ଲୁହବୁହା ଆଖିରେ ଶେଷ ଥର ପାଇଁ ଚାହିଁଲା ତା ଆଡ଼କୁ । କିଛି ନ ଜାଣି ମଧ୍ଯ ତା ଆଖିରେ ଲୁହ ଛଳ ଛଳ ହେଉଥିଲା ।

# ବଦିଆ

ବଦିଆ ବାଉରି ଘରର ପିଲା । ପରିଡ଼ାଙ୍କ ଘରେ କାମ କରି କରି ଦିହାଡି କଟିଲା । ଆଜି ବଦିଆକୁ ବୟସ ହେଲାଣି ଛଅ କୋଡ଼ି ଅଠର । କାମ କାର୍ଯ୍ୟକୁ ନପାରିଲା । ଯା ଆସ କରେ । ବାହାରେ ବସି ଘାସ ବାଛେ । କାଠ ଚିରେ । ପରଘରେ ଆଉ ମୂଲ ଲାଗିବାକୁ ଯାଇପାରେ ନାହିଁ । ପୁଅ-ନାତି ପାରି ଗଲେଣି । ଦେହ ମିହନ୍ତ କରି ସେମାନେ, ଆଉ ଘରର ବୋହୂଝିଏ ଯାହା ଭିଆନ୍ତି ସେଥିକରେ ଦୁଃଖେ କଷ୍ଟେ ଦିନ କଟି ଯାଏ । ବଦିଆ ସୁଖରେ ଥାଏ ।

ବାଉରି ଘର ପିଲା ବଦିଆ । ଦେହରେ ପ୍ରାଣ ଥାଉଣୁ ନିଜେ ଭେଇ ପେଟ ପୋଷିବା ତାଙ୍କର ପଣ । ସାତ ପୁରୁଷ ନା କେଜାଣି କେଉଁ ଅନନ୍ତ କାଳରୁ ସେମାନେ ମୂଲିଆ ! ମୂଲିଆମୁଣ୍ଡ ସେମାନେ, ତାଙ୍କର କାମ ତଇଲା ତାଡ଼ି ପର ପାଇଁ ଜମି କରିବା, ଖରା ବର୍ଷା ନ ମାନି ରୋଗ ବଇରାଗକୁ ପିଠିକି ପକାଇ ପର ପାଇଁ, ଖାଉଁଦ ପାଇଁ ଜମି ତଷିବା, ଖାଉଁଦର ଘର ତୋଳିବା, ମାଡ଼ ସହିବା, ପ୍ରାଣ ଦେବା ।

ସେଇ ସେ ବଦିଆ ! ନିଜର କରି ଗୁଣ୍ଠେ କି ମାଣେ ଚଷ ଜମି ନାହିଁ । ଜମି କରିବାକୁ ଚାହେଁ ନାହିଁ । କାଢ଼ ନାହିଁ । ପର ଜମି ଉପରେ ନୂଆଁଣିଆ ଚାଳଘରେ ତାର ଅନନ୍ତ କାଳର ପୂର୍ବ ପୁରୁଷଙ୍କ ଠାରୁ ଆରମ୍ଭ କରି ବଦିଆର ଅନନ୍ତ କାଳର ପୁଅ ନାତି ରହିବେ—ଗାଁ ମୁଣ୍ଡରେ ଯେଉଁଠି ସଢ଼ା ଯୋଡ଼ ପାଣିର ଗନ୍ଧ ଉଠୁଥିବ ଆଉ ପାଖ ମଶାଣିଆଡ଼ୁ ଜୁଇ-ନିଆଁ ଦିଶୁଥିବ, ଭେରଣ୍ଡା ବାଲୁଆଙ୍କର କଲକଲା ରଡ଼ ଶୁଭୁଥିବ ।

ଘର ଆଗରେ ଠିଆ ହୋଇ ଚାରି ଆଡ଼କୁ ଚାହିଁଲେ ଖୁସି ଆନନ୍ଦରେ ଦେହ ଉଲ୍ଲସି ଉଠୁଥିବ । ଏଇ ଯୋଉ ଦିଗହଜା ଗହୀର ବିଲ, ସେଇ ତ ବଦିଆର ଭାଇବିରାଦର ପୁଅପୁତୁରାଙ୍କର ଶାଗପଠାଳି । ବରଷକୁ ବରଷ, ପୁରୁଷକୁ ପୁରୁଷ ସେଇଠି ସେ ଦିହର ଝାଳ ନିଗାଡ଼ି ଦେଇ ଫସଲ କରିବ ଖାଉନ୍ଦ ପାଇଁ, ମୂଲ ଆଣିବ, ଭାଗ ଆଣିବ, ଖାଇବ, ବଞ୍ଚିବ, ପୁଣି ଆର ବରଷ ପାଇଁ ଆର ପୁରୁଷ ପାଇଁ ଆଉ ଆର ଖାଉଁଦ ପାଇଁ । ବଦିଆର ଅଭାବ କଣ ? ଖାଉଁଦ ଘର ଅଇଁଠା ଭାତ,

ବାସି ତୋରାଣି, ନୋହଲା ବେଳକୁ ପୁରୁଣା ଯୋଡ଼ର ଗେଣ୍ଡା କୋଚଆ, ମଇଦାନର ଅନାବନା ଶାଗ, ଛତୁ, ବଣସାରୁ, କଅଁସପୁର, ସେ ପାଖ ବଣର କନ୍ଦା, ଯେମିତି ହେଲେ ପେଟ ପୂରିଲେ ହେଲା ।

ବଦଆର କୁଟୁମ୍ବ ବଡ଼େ । ବସନ୍ତ, ହଇଜା, ଜର ଆଗେ ପଛେ ବଦଆ ସାହିରେ । ଦେଖୁ ଦେଖୁ କେତେ ମଣିଷ ଟଳି ପଡ଼ନ୍ତି । ଯାଆନ୍ତି ! ପୁଣି ଆସନ୍ତି, ଖାଉଁଦର କାମ କରନ୍ତି । କାମକୁ ସଖ୍ୟ ହେଲା ଆଗରୁ ବି କେତେ ଖସି ଯାଆନ୍ତି । ତଥାପି ବଦଆର ଭାଇବରାଦର ବଞ୍ଚି ରହନ୍ତି । ବଦଆର ଝିଅ ନାତୁଣୀ, ଖେଳୁଆଡ଼ ବୁଦ୍ଧି ପିଲା ପଣିଆଁ ଗୁଡ଼ିବା ଆଗରୁ କେତେ ପିଲାଙ୍କର ମାଆ ହୁଅନ୍ତି । କୁମ୍ଭାର ଶାଳରେ ହାଣ୍ଡି ମାଠିଆ କେତେ ତ ଗଢ଼େ, ଅଧେ ଭାଙ୍ଗେ ଅଧେ ରହେ । ଯେଉଁମାନେ ରହନ୍ତି, ଖାଉଁଦର ଜମି ଚଷିବାକୁ ରହନ୍ତି ।

ଏମିତି କେତେ ଉଠୁପଡ଼ ବଦଆ ଦେଖିଛି ତାର ଦାହାଡରେ । କେତେ ହସ କାନ୍ଦର ଢେଉ ଉଠିଛି ତାର ଘରେ, ତାର ସାହିରେ । ତଥାପି ସେ ବଞ୍ଚିଛି । ଖାଉଁଦର କାମ କରୁଛି ତିନକୋଡ଼ି ବରଷ । ଆଉ ପାରୁନାହିଁ । ମନ ହାଇଁ ପାଇଁ ହେଉଛି ।

ବଦଆକୁ ଯେତେବେଳେ ଅଠବରଷ, ସେତିକି ବେଳେ ସେ ସନେଇ ପରିଡ଼ାଙ୍କର ଘରେ ଗାଈ ବଳଦ ଜଗିବାକୁ ରହିଥିଲା । ତାର ଆଗରେ ବନେଇ ପରିଡ଼ାଙ୍କର ଜନ୍ମ । କୋଡ଼ରେ କାଖରେ କରି ବନେଇକୁ ସେ ମଣିଷ କରିଥିଲା । ସନେଇ ପରିଡ଼ାଏ ବଦଆକୁ ପୁଅ ପରି ଭଲ ପାଉଥିଲେ । ଛୋଟରୁ ପିଲା ବୋଲି ଦୟା ପାଇ ବାଡ଼ର ସାହିରେ ତା ପାଇଁ ଗୋଟାଏ ଘର ତୋଳେଇ ଦେଇଥିଲେ, ବଦଆକୁ ବାହାଘର ମଧ୍ୟ କରେଇ ଦେଇଥିଲେ ।

ପୁଅକୁ ମଣିଷ କରିବା ଆଗରୁ ସନେଇ ପରିଡ଼ା ଗୁଜରିଗଲେ । ବାର ବରଷର ପୁଅ ବନେଇ କେମିତି ଚଳିବ କଣ କରିବ ଭାବନା ପଡ଼ିଲା । ସନେଇ ପରିଡ଼ାଏ ବଞ୍ଚିଥିଲା ବେଳେ ଯେଉଁ ଭାୟାମାନେ ତାଙ୍କର ଜମି ପାଅଁମାଣକୁ ଚାହିଁ ଓଠ ଚାଟୁଥିଲେ, ସେହିମାନେ ମୁରବିପଣିଆ ଦେଖାଇ ଧାଇଁ ଆସିଲେ । ବନେଇ ତ ପିଲା ଲୋକ, ଆଉ ତାଙ୍କର ମା ବୁଢ଼ୀ ବିଧବା । ଭାସି ଯାଉଥିବା ଲୋକ କୁଟା ଖିଅକୁ ହାତ ବଢ଼ାଇଲା ପରି ସେମାନେ ଗାଁ ଲୋକଙ୍କ ଆଶ୍ରା ନେବାକୁ ମନ କଲେ । ସେତିକିବେଳେ ବଦଆ ବାଧା ଦେଇଥିଲା । ବନେଇକୁ ନରେଇାରେ କହିଥିଲା, ଶୁଣ ସାନ ସାଆନ୍ତେ, କାହା ଗୋଠରେ କେହି ଧୂଆ ଦଏ ନାହିଁ । ଯେଉଁମାନେ ଅଳ ଭଲେଇ ହୋଇ ଧାଇଁ ଆସିଛନ୍ତି, ସେମାନଙ୍କୁ ମୁଁ ଚହ୍ନେ । ତମର ଭଲ ମନ୍ଦକୁ କାହାର ଆଖି ନାହିଁ । ସମସ୍ତଙ୍କର ଆଖି ତମର ପାଅଁମାଣ ତଇଲା ତଡ଼ା ଜମି ଉପରେ । ଜମି ନୁହେଁ ସେ, ସୁନା ଥାଳୀ । ସାନକୁହା ମୋର ମାନ, ପାଠ ଯେତିକି ହେଲା ସେତିକି, ଏଥର ଚାଲବଟି ମୋ ସଙ୍ଗେ ଜମି ଉପରକୁ ।

ବନେଇ ବଲବଲ କର ବନ୍ଧଆ ମୁହଁକୁ ଗୃହଁଥିଲା । ତା ଆଖିରେ ଛଳ ଛଳ ଲୁହ ଦେଖି ସେ ବିଶ୍ୱାସ କଲା । ବନ୍ଧଆର ପଛେପଛେ ଗୃଲଲା ।

ଷାଠିଏଟି ବର୍ଷ ବନ୍ଧଆ ବନେଇ ପରିଡ଼ାଙ୍କ ସଙ୍ଗେ କାମ କରୁଛି । ବନେଇ ପରିଡ଼ା ମଣିଷ ହେଲେ । ବନ୍ଧଆର ଝାଳରେ ତାଙ୍କର ସମ୍ପତ୍ତି ଦାନୁଦାନ ବଢ଼ିଲା । ଜମିବାଡ଼, ବାଗବଗିଚୃ, ସାତସେଣିଆ ଘର, ଶେଷକୁ ଜମିଦାରୀ, ସବୁ ଏହି ବନ୍ଧଆ ହାତରେ ଗଢ଼ା । ବନେଇ ପରିଡ଼ାଙ୍କର ଧନ ଜନ ଗୋପ ଲକ୍ଷ୍ମୀ ବଢ଼ିଲା । ସାତଖଣ୍ଡି ଗାଁରେ ନାଆଁ ପଡ଼ିଲା । ଝିଅମାନେ ବଡ଼ ବଡ଼ ଘରେ ବାହା ହୋଇ ଗୃଲଗଲେ । ନତାଇ ଓ ଗଉର ଦୁଇ ପୁଅ ପାଠ ପଢ଼ିଲେ, କଟକ ଗଲେ, ବାବୁ ହେଲେ । ପୁଣି ଘରକୁ ଫେରି ଆସିଲେ । ବାହା ନମିତ୍ୟ ହେଲା । ବୁଢ଼ା ବନେଇ ପରିଡ଼ା କୋଡ଼ରେ ନାତିନାତୁଣୀ ଖେଳାଇ ବୁଢ଼ୀ ମଲାର ଦୁଃଖ ଭୁଲିଲେ ।

ବନ୍ଧଆ ମଧ୍ୟ ପୁଅ ନାତି ନେଇ ଘର କଲା । ନିଜେ ନପାରିଲା ହେଲା ବେଳକୁ ପୁଅ ନାତି ମଣିଷ ହୋଇ ହଳ ଧରିଲେ । ପରିଡ଼ା ଘର ଜମି ଅଚଷା ରହିଲା ନାହିଁ ।

ଦିନେ ବନେଇ ପରିଡ଼ା ବନ୍ଧଆକୁ ଡାକି କହିଲେ, ଅରେ ବନ୍ଧଆ, ଦିହାତି ଗଲା, ଜମି ମାଣେ କି ଗୁଣ୍ଠେ ନଜର କରି ଚପିଲୁ ନାହିଁ । ଆମ ବେଳକାଳ ସରି ଆସିଲା । କେତେବେଳେ କେଉଁ କଥା । ମୁଁ କହୁଛି, ତଳଚକରେ ଯେଉଁ ପାଞ୍ଚମାଣ ଶାରଦ ଜମି ଅଛି, ସେତକ ତୋ ନାମରେ ଲେଖି ଦେଉଛି, ତୁ ଚୃଷ କରି ଖା ।

ବନ୍ଧଆ ହସିଲା । କହିଲା, ସାଆନ୍ତେ, ତମେ ମୋ ଆଗରେ ନା ମୁଁ ତମ ଆଗରେ ? ଠାକୁରେ କରନ୍ତୁ, କେମିତି ତମର ଆଗରେ ଆଖି ବୁଜି ଦିଏଁ ।

ପରିଡ଼ାଏ କହିଲେ, ଅରେ ତୋ କଥା ମୁଁ କହୁ ନାହିଁରେ, ତୋ ଅନ୍ତେ ତୋ ପିଲାଙ୍କ ପାଇଁ ସେତକ ଥାଉ ।

ବନ୍ଧଆ କହିଲା, ମୋ ପିଲାଏ ଅଜ ବଡ଼ ହେଲେଣି, କାମ କରି ଶିଖିଲେଣି । କାହାପାଇଁ ସାଆନ୍ତେ ? କାହା ଭାତ ପାଣିରେ ତାଙ୍କର ଗଣ୍ଡି ବଢ଼ିଲା ? ସବୁ ତ ତମେ କରିଛ । ଏଇ ଯେଉଁ ଗହ୍ୱାର ଦିଶୁଛି, ଆଖି ପାଉ ନାହିଁ, ସେ କାହାର ? ବନେଇ ପରିଡ଼ାଙ୍କର ସିନା ନାଁ, ମୋ ପିଲାଏ ତ ତାରି ଭିତରେ କାମ କରି ପେଟ ପୋଷିବେ, ମଣିଷ ହେବେ । ସବୁ ଜମି ମୋ ପିଲାଙ୍କର । ପାଞ୍ଚମାଣ ଜମି ନିଶ୍ଚି କରି ନେବ କାହିଁ କି ?

ଗୁନ ଗୁନ କରି ପରିଡ଼ାଏ କହିଲେ, ନତେଇ ଗଉର ଅଜ ସିନା ଭଲ ଅଛନ୍ତିରେ ବନ୍ଧଆ, ମୁଁ ବଞ୍ଚିଛି, ଖୁଣ୍ଟ ଠାଣ ଅଛି, କାଲି ଯଦି ମୁଁ ଆଖି ବୁଜେ କଣ ହେବ କିଏ କହିବ ? ସେଇଥି ପାଇଁ କହୁଥିଲିରେ—

ବଢ଼ଅ କହୁଲା, ସେମାନେ ପାଠ ପଢ଼ିଛନ୍ତି, ବୁଦ୍ଧି ଅଛି, ଭଲରେ ଚଳିବେ । ଏକା ମନ ଏକ କଥା । ଜମି ପାଞ୍ଚମାଣ ଯଦି ନଏ ମୋ ଅନ୍ତେ ମୋ ପିଲାଏ ହଣା ହଣି ହୋଇ ମରିବେ । ମୂର୍ଖ ହୁଣ୍ଡା ଗୁଡ଼ା । ମୁଁ ବଞ୍ଚିଥାଉଣୁ ତାଙ୍କୁ ସବୁ ଭଳେ କରି ଦେଇଛି । ମୋର ଲୋଡ଼ା କଣ ? ମୁଠିଏ ଖାଇବା କଥା ତ ? ଏଇଠି ବସି ତ ଖାଉଛି ଆଉ କଣ ?

ପରଡ଼ାଙ୍କ ମନ ମାନିଲା ନାହିଁ । କହିଲେ ତୋ ଘରପାଖରେ ଯେଉଁ ନଡ଼ିଆ ବଗିଚା ନିଜ ହାତରେ ତୁ କରିଛୁ, ସେତକ ତୋର ହୋଇ ଥାଉ । ମୁଁ ଲେଖିଦେଇ ଯାଉଛି ।

ବଢ଼ଅ ମୁହଁ ଭୂକୁଣ୍ଡା କଲା ।

ମାସ ଦିଟା କଟି ନାହିଁ, ସମାନ୍ୟ କଣ ରୋଗରେ ବନେଇ ପରଡ଼ା ଗ୍ଲଲଗଲେ । ବଢ଼ଅ ପାଖରେ ଥାଏ । ତାର ଶୁଖିଲା ଆଖି ପତାରୁ ଲୁହ ଝରିଲା ନାହିଁ । କେବଳ ଦୀର୍ଘଶ୍ୱାସ ଛାଡ଼ିଲା ।

ସମୟ ଗଡ଼ି ଗ୍ଲଲା । ପରଡ଼ାଏ କୋଉ କାମ ବାକି ରଖି ନାହାନ୍ତି । କାହାକୁ କିଛି ଭାବିବାକୁ ପଡ଼ିଲା ନାହିଁ, ପୂର୍ବପରି ସଂସାର ଗ୍ଲଲା । ନଚେତ୍ର ପରଡ଼ାଏ ଅଉ ଗଉର ପରଡ଼ାଏ ଏକା ମନ ଏକା କଥାରେ ସଂସାର ଚଳାଇଲେ ।

କଟିଗଲା ଛନୋଟି ବର୍ଷ । କେଜାଣି କାହାଁର ଘର ଭିତରେ କୁହୁଳି କୁହୁଳି ଅଶାନ୍ତିର ନିଆଁ ପଦାକୁ ଫୁଟି ବାହାରିଲା । ଯେଉଁ ଭାଇ ଦିହେଁ ପରସ୍ପରକୁ ଖଣେ ନ ଦେଖିଲେ ବଣା ହେଉଥିଲେ, ସେହିମାନେ ପୁଣି ମୁହଁ ଗ୍ଲହାଁଗ୍ଲହିଁ ହେଲେ ନାହିଁ । ଗାଁ ନାରଦେ ଦୁଇଦଳ ହୋଇ ଦୁହିଙ୍କ ବିରୁଦ୍ଧରେ ଦୁହିଁଙ୍କୁ ମତେଇବାକୁ ଲାଗିଲେ । ଘର ଭିତରେ, ପୁଣି ଘର ବାହାରେ କଳିଆ ଓ ଅଶାନ୍ତି ସୃଷ୍ଟି ହେଲା । ଶେଷକୁ ହାଣ୍ଡି ଭିନ୍ନେ ହେଲା ।

ଏ ଖବର ପାଇ ବଢ଼ଅର ପ୍ରାଣ ଛଟପଟ ହେଲା । ଘର ମାଇପଙ୍କ ଠାରୁ ଆରମ୍ଭ କରି ବାବୁ ଦୁହିଙ୍କ ପର୍ଯ୍ୟନ୍ତେ ସେ ଯେତେ ବୁଝାସୁଝା କଲା କେହି ତା କଥା ଶୁଣିଲେ ନାହିଁ । ଭାଇ ଦିହେଁ ବଢ଼ଅକୁ ମୁରବି ପରି ମାନନ୍ତି, ଭଲ ପାଆନ୍ତି, ତଥାପି ବଢ଼ଅର କଥା କେହି ଶୁଣିଲେ ନାହିଁ । ବଢ଼ଅ ହତାଶ ହୋଇ ମନ ଦୁଃଖରେ ନିଜ କୁଡ଼ିଆକୁ ଫେରିଲା । ଭାବିଲା, ଆହା, ରକ୍ତ ଢ଼ାଳି ଯେଉଁ ସମ୍ପତ୍ତିକୁ ସେ ଷାଠିଏ ବର୍ଷରେ ଗଢ଼ି ଆଣିଥିଲା, ଦେଖୁ ଦେଖୁ ତାକୁ ଭାଇ ଦୁଇଟା ଧ୍ୱଂସ କରି ଦେବେ ? ବାବୁ ହୋଇ ତ ପିଲାଦିନୁ ବଢ଼ି ଆସିଲେ, ଲଙ୍ଗଳ କଣ୍ଢିରେ ଦିନେ କେବେ ହାତ ପକାଇ ନାହାନ୍ତି, ସମ୍ପତ୍ତି କରିବା, ପୁଣି ତାକୁ ଚଳାଇବା ଯେ କି କଷ୍ଟ, କୁଆଡ଼ୁ ବୁଝିବେ ସେମାନେ ?

ବଦଆ କଥା କେହି ଶୁଣିଲେ ନାହିଁ । ଗାଁ ଲୋକେ ତାଳମାର ମଜା ଦେଖିବାକୁ ବାବୁ ଦୁହିଁଙ୍କୁ ଟିହାଇବାକୁ ଲାଗିଲେ । ଠିଆ ପାଲା ଆରମ୍ଭ ହେଲା । ଭାଇ ଦୁହେଁ ପଛରେ ରହିଲେ ।

ଶତ୍ରୁ ଜନ୍ମେ ମା ପେଟରୁ । ଆଉ ମା ପେଟର ଶତ୍ରୁ ଯେବେ ତଗଛି ଗୃହେଁ, ସଂସାର ଜଳପୋଡ଼ି ଛାରଖାର ହୁଏ । ନଟେଇ ଓ ଗଉର ବାବୁଙ୍କର ଅବସ୍ଥା ହେଲା ସେହିପରି । ବାପେ କମେଇଁ ଯାଇଥିବା ସମ୍ପତ୍ତିର ମଝିରେ ଗାର ପଡ଼ିଲା । ନଜେ ବଦଆ ଥାଇ ଚଳନ୍ତ ଅଚଳନ୍ତ ସବୁ ସମ୍ପତ୍ତି ଦୁଇ ଭାଗ ହେଲା । କେହି ଉଁ ଚୁଁ ହେଲେ ନାହିଁ । ଗାଁ ଲୋକେ ଛିଦ୍ର ଖୋଜିବାକୁ ଆରମ୍ଭ କଲେ । ପଛରେ ମତାଇବାକୁ ଲାଗିଲେ—ଶୁଣ ଗଉର ବାବୁ, ବାଇଠଗି ବାକି କଆରରେ ଅଛୁ ପିଅଜ ସବୁ ହୁଏ, ସୁନା ଫଳେ ବାବୁ ସୁନାଫଳେ । ବଦଆ ପକ୍ଷପାତ କରଛି । ଗଉର ବାବୁ ରାଗିଲେ । ବଦଆକୁ କଛି କହିଲେ ନାହିଁ ।

ଆର ପକ୍ଷ ନଟେଇ ବାବୁଙ୍କୁ ମତେଇଲେ—ସରଳଆ ମଣିଷ ଦେଖି ଗଉର ବାବୁଙ୍କ ସଲାରେ ବଦଆ ଆମ୍ବ ତୋଟାରେ ଯେଉଁ କଛ କରଛି ଦେଖୁଛ ତ ? ମହାଦେବଙ୍କ ପାଖ ତୋଟାରେ ସବୁ ଗଛର ଆମ୍ବ ସରସ । ସେ ପଡ଼ିଲା ତାଙ୍କ ଭାଗରେ ।

ଏମିତ କେତେ କଥା । ଦୁଇ ଭାଇଙ୍କର ମନ ଫାଟିଲା । ଦୁହେଁ ରାଗିଲେ ବଦଆ ଉପରେ । ବଦଆ ବଦ୍‌ମାସ୍, ପକ୍ଷପାତ ବଗୃର କରଛି । କନ୍ତୁ ବଦଆକୁ କେହି କଛି କହି ପାରିଲେ ନାହିଁ । ନଜ ପାଇଁ ସେ କଛି ନେଇ ନାହିଁ, କଛି ରଖି ନାହିଁ । ଭାଇ ଦୁହେଁ ଯେତେବେଳେ ତାକୁ ପାଅମାଣ ଜମି ଦେବାକୁ କହନ୍ତି, ବଦଆ ହସି ହସି କହିଲା, କଣ ହେବ ? ଏ ସମ୍ପତ୍ତି ଆଉ କାହାର କ ? କଏ ନେଇଛ ? ଠାକୁରେ ତମର ବଢ଼ନ୍ତି କରନ୍ତୁ, ସୁଖରେ ରହ । ମୋ ପାଇଁ ଖଣ୍ଡେ ଆମ୍ବ ଡାଳ ଦରକାର, ଏ ଦେହଟା ଯେପରି ବଲୁଆ କୁକୁର ନ ଖାଆନ୍ତି ।

ଦୁଇ ଭାଇଙ୍କର କ ଦୁଇ ଜାଆଙ୍କର ଦେଖା ଶୁଣା କ କଥା ଭାଷା ନ ଥାଏ । କେହି କାହାର ଭଲମନ୍ଦରେ ନ ଥାନ୍ତି । ନଜ ନଜର ସମ୍ପତ୍ତି ବଢ଼ାଇବାରେ ବ୍ୟସ୍ତ ।

ବଦଆ ଆଉ ପରଢ଼ା ଘରକୁ ଯା ଆସ କରେ ନାହିଁ । ବାରରେ ବସି ଘାସ ବାଛେ, ଦାଣ୍ଡରେ ଖେଳାଏ ଅଣନାଣ୍ଡ । ପୁଅ ଦୁହେଁ ଦରବୁଢ଼ା ହେଲେଣି, ଆଉ ନାତ ଗୃରିହେଁ ମୁଆନ ଟୋକା । ପୁଅ ଦୁହେଁ ଭଲେ । ବଦଆ ପାଳି କରି ରହେ, ବଡ଼ ପୁଅ ଘରେ ମାସେ, ସାନ ପୁଅ ଘରେ ମାସେ । ପିଲାଏ ମୂଲ ଲାଗନ୍ତି, ଦୁଃଖେ କଷ୍ଟେ ଚଳିଯାଏ ।

ନତାଇ ଓ ଗଜର ବାବୁ ସମ୍ପତ୍ତି ବଢ଼ାଇବାକୁ ଲାଗିଲେ । ଆଜ ଯଦି ନତାଇ ବାବୁ କିଣିଲେ ମାଣେ, କାଲି କିଣିଲେ ଗଜର ବାବୁ ପାଞ୍ଚ ପା । ବଢ଼ିବାକୁ ଲାଗିଲା । ଲୋକେ କହିଲେ, ବାପ୍‌ସେ ବେଠା ପିଅଦା । ଭାଇ ଦିଟା ରାଜ୍ୟ କିଣିବେ ।

ବଦିଆ ଶୁଣେ । ହାତ ଦିଓଟି ଯୋଡ଼ି ମୁଣ୍ଡରେ ଲଗାଏ । ମନେ ମନେ ଗୁଣି ହୁଏ, ଠାକୁରେ ବଢ଼ିଛ କରନ୍ତୁ ।

ଲୋକନାଥ ମହାନ୍ତି ତାଙ୍କର ମୈତ୍ର ଲୋକନାଥ ପଣ୍ଡାଙ୍କୁ ଉନ ଉନ କହିଲେ—ମୈତ୍ରେ, ସେ ଗାଁର ପରଡ଼ା ଦିହେଁ ହୋ, ରାଜ୍ୟ କିଣିବେ । ଗରିବ ଗୁରୁବାଙ୍କର ସବୁ ସମ୍ପତ୍ତି ତାଙ୍କର ଘରେ ପଶିଲା । ସେଇମାନେ ଏକା ଘର କରିବେ, ଆଉ ସମସ୍ତେ ଭିକ ମାଗିବେ, ରାଜ୍ୟରୁ ଯିବେ ? ମୈତ୍ର ଦୁହେଁ ପୋଖତା ମାମଲତକାର । ଦିହେଁ ଦୁହିଁଙ୍କ ମୁହଁକୁ ଗୃହିଁ କେତେ ବିଗୃର କଲେ ।

ଆର ଗାଁର ମୁକୁନ୍ଦ ମା, ପୁଅ ଝିଅ ଦିଓଟି । ସାବତ ପୁଅ ଗଣେଶାକୁ କେତେ ଭଲ ପାଉଥିଲା । ବାହା କଲା, ବରଷ ପୂରିଲା ନାହିଁ । ଅଲକ୍ଷଣୀ ବୋହୂଟା ଯେମିତି ଘରେ ଗୋଡ଼ ଦେଇଛି, ପୁଅଟା ଦିନୁଦିନ ଶୁଖିଗଲା, ଶେଷକୁ ମଲା ।

ଘଣ୍ଟା ଦିଟା ଆଉ ମୁକୁନ୍ଦଙ୍କର ସଂସାର କୌଣସି ମତେ ଚଳିଲା, ପରଘରେ ପାଇଟି କରି । ମୁକୁନ୍ଦ ପର ଘରକୁ ଗଲା । ତା ମା ନିଶ୍ୱାସ ମାରିଲା ।

ଶାଶୂ ବୋହୂଙ୍କର ଲାଗେ ଝଟାପଟା କଳିଆ ।

ଶାଶୁ କହେ, ଯାହା ଯୋଉଁଠୁ ଆଣି ଘରେ ରଖିଲି ଅଲକ୍ଷଣୀ ବୋହୂଟା ସବୁ ନେଇ କେଉଁ ଛଟକରେ ବାପଘରେ ଥୋଇ ଦେଇ ଆସୁଛି ।

ବୋହୂ କହେ, ପରଘରେ ପାଇଟି କରି ଯାହା ଯେବେ ଆଣିଲି ଶାଶୁ ନେଇ ଝିଅଘରେ ପୂରେଇଲା ।

ବୋହୂତ ଠୋକା କନ୍ତୁ ଶାଶୁ ବୁଢ଼ା ହଡ଼ା ନୁହେ, ବଅସ ଅଛି । କଳିଆ ଲାଗେ, ଚୂଟି ଧରା ଧରି, ଦିହେଁ ଦିହିଁଙ୍କର ଅବଗୁଣ ଗାଆନ୍ତି । ବାରିଆଡ଼େ ନିନ୍ଦା-ମିନ୍ଦା କରି ଗପନ୍ତି ।

ସମ୍ପତ୍ତି ଭିତରେ ଗୃରଗୁଣ୍ଠ ଜମି, ତାର ଉପରେ ଘର ଦୁଇ ବଖରା, ନଡ଼ିଆଗଛ ଦିଓଟି ଆମ୍ବଗଛ—ଗୋଟିଏ । ଶାଶୂ ବୋହୂଙ୍କର ଅଲଗା ହାଣ୍ଡି । ଘର, ନଡ଼ିଆଗଛ ସିନା ଭାଗ ହେଲା, ଆମ୍ବଗଛଟା ରହିଗଲା ଇଜମାଲି ।

ସଞ୍ଜବେଳେ—

ବୋହୂ କାନ୍ଦି କାନ୍ଦି ଗୁହାରି କଲା ପଣ୍ଡାଙ୍କ ଆଗରେ, ଶାଶୂ ମୋର ଗୃହପୁଞ୍ଜା ନଡ଼ିଆ କେବେ ପରେଇ ନେଇ ଝିଅ ଘରେ ଦେଇଛି । ମୁଁ କେମିତି ଚଳିବି ? ତମେ ମୋର ବାପ, ମତେ ରକ୍ଷାକର ।

ପଣ୍ଡାଏ ଦୁଃଖିତ ହୋଇ କହିଲେ, ସେଟା ତ ଗୃହାବାଳଟା, ତା ପାଖରେ ଚଳିବା ବଡ଼ କଷ୍ଟ । ତୋର ତ ଧୁରନ୍ଧର ଭାଇ ଅଛି ଲୋ, ଯାଉନୁ ସେଠିକି ରହିବୁ ? ଏଠି ତୋର କିଏ ଅଛି କି ? ଜମି ଗୃହଗ୍ରସ୍ତ, ସେଥିରେ ତାର କିଛି ଅଧିକାର ନାହିଁ । ଏ ତ ଅଚଳ କଥା । ନୂଆଚଳ ନୂଚେଇ ଯଦି ଜମି ତା ଝିଅ ନାଆଁରେ କରିଦିଏ, ତୁ ଭିକ ମାଗିବୁ ସିନା । ଆଗରୁ ସାବଧାନ ହୋଇ ଜମିତକ ଯଦି ତୁ ବିକି ଦେଇ ଭାଇ ପାଖକୁ ଯାଉ, ଅବଶ୍ୟ ସୁଖରେ ଚଳିବୁ । ତୋର ତ ବୟସ ଅଛି, ତମ କୁଳରେ ବ ଦୁତିଅ ଅଛି ।

ଟୋକୀର ଦେହ ଶିର୍‌ଶିରେଇ ଉଠିଲା, ମୁଣ୍ଡ ନୋଇଁଲା ।

ପଣ୍ଡାଏ କହିଲେ, ଆଲୋ, ହାତରେ ଟଙ୍କା ପଡ଼ିଲେ ତୁ କାହିଁକି କାହାକୁ ଡରିବୁ ?

ଟୋକୀ ବୋହୂ ମର୍ଗିଲା । ଲମ୍ବ ହୋଇ ପଣ୍ଡାଙ୍କର ଗୋଡ଼ତଳେ ପଡ଼ି କହିଲା, ମୁଁ ତମର ଝିଅ, ମତେ ରକ୍ଷା କର ।

ପଣ୍ଡା ତାର ହାତଧରି ଉଠାଇଲେ । କହିଲେ, କାନ୍ଦ ନା ଲୋ, ମୁଁ ଯାହା ଯାହା କହିଲି ସେଇଆ ହେବ, କାହାକୁ କିଛି କହିବୁ ନାହିଁ ।

ଠିକ୍ ସେତିକବେଳେ—

ମହାନ୍ତଙ୍କ ଗୋଡ଼ତଳେ ପଡ଼ିଛି ଶାଶୂ, ମତେ ରକ୍ଷାରକ୍ଷଣ କର ସାଆନ୍ତେ । ବୋହୂଟାର ଜାଲାରେ ଆଉ ଚଳି ପାରିଲି ନାହିଁ । ମୋ ଟଛରୁ ପାଅଣ୍ଡା ନଡ଼ିଆ କେତେବେଳେ ପରେଇ ଭାଇ ଘରେ ରଖିଛି, ମୁଁ କେମିତି ଚଳିବି ସାନ୍ତେ ?

ମହାନ୍ତଏ କହିଲେ, ଆଲୋ ତୁ କାନ୍ଦନା ଲୋ, ପୁଅ ମଲାପରେ ସବୁ ସମ୍ପତ୍ତିର ଅଧିକାରଣୀ ତୁ । ଘଣ୍ଡ ବୋହୂଟା ଦୁତିଅ ହୋଇଗଲା ?

ନାଇ ସାଆନ୍ତେ, ସେ ତ ଦୁତିଅ ହୋଇ ନାହିଁ ?

କାହିଁକି ହେବ ? ନ ହେଲେ ଯେ ସମ୍ପତ୍ତିରୁ ଭାଗ ନେବ । କହିବାକୁ ହେବ ଯେ ସେ ଦୁତିଅ ହୋଇଛି । ସେ ସବୁ କଥା ମୁଁ ବୁଝିବି । ତୁ ଗୋଟିଏ କାମ କର । ସବୁ ଯାକ ବିକି ଦେଇ ଝିଅ ଘରକୁ ଯାଇ ରହ । ମୁକୁଳି ତୋର ଗୋଟିଏ ବୋଲି ଝିଅ । ଘଣ୍ଡ ବୋହୂଟା ବଳେ ଯାଇ ବାପ ଘରେ ପଶିବ । ତୋର ବ ତ ବୟସ ବଳେଇ ନାହିଁ !

ଶାଶୂ ଆଖିରୁ ଲୁହ ପୋଛି କହିଲା, ଠାକୁରେ ତମର ବଡ଼ତି କରନ୍ତୁ ବାବା, ନଅଗ୍ରିକୁ ଥାଇଛି କର ।

ମହାନ୍ତଏ ହସି ହସି କହିଲେ, ଆଚ୍ଛା, ଆଚ୍ଛା, ତୁ କିଛି ଭାବ ନା ।

ସେଇ ରାତିରେ ଦୁଇ ମୈତ୍ର ପରାମର୍ଶ କଲେ । ପରଦିନ ସକାଳେ ଦିହେଁ ଗଲେ ପରିଡ଼ାଙ୍କ ଘରକୁ । ନଟେଇ ପରିଡ଼ା ମହାନ୍ତିଙ୍କର ପଦ୍ମତୋଳାରେ ଭୁଲିଲେ, ଆଉ ଆର ଘରେ ଭୁଲିଲେ ଗଉର ପରିଡ଼ା ପଣ୍ଡିଙ୍କର ତୁନି ତୁନି ଗାରଡ଼ି ମନ୍ତ୍ରରେ ।

ଏକାଦିନକେ କବଲା ସମ୍ପାଦନ ହେଲା, ଏକାଦିନକେ ରେଜେଷ୍ଟ୍ରି । ଶାଶୁ ଜାଣିଲେ ବୋହୂ ଯାଇଛନ୍ତି ଭାଇ ଘରକୁ, ଆଉ ବୋହୂ ଜାଣିଲେ ଶାଶୁ ଗଲେ ଝିଅ ଘରକୁ । ଶାଶୁଙ୍କର ଜମି କବଲା ଦେବୀଦୋଳ ରେଜିଷ୍ଟ୍ରି ଅଫିସରେ ରେଜିଷ୍ଟ୍ରି ହେଲା । ଜଗତସିଂହପୁର ଅଫିସରେ ବୋହୂଙ୍କ କବଲା ହେଲା ରେଜିଷ୍ଟ୍ରି । ଆଗ କବଲାରେ ମହାନ୍ତିଏ ଚିହ୍ନାଣି ସାକ୍ଷୀ ହେଲେ, ଆଉ ପଛ କବଲାରେ ପଣ୍ଡିଏ ।

କାହା କଥା କେହି ଜାଣିଲେ ନାହିଁ ।

ନଟେଇ ପରିଡ଼ାଏ ଘର ଓ ଘର ଉପର ଦଖଲ ନେଲେ ସକାଳେ । ନିଜେ ଥାନ୍ତି, ମହାନ୍ତିଏ ବି ଥାନ୍ତି । ଏ ଖବର ପାଇ ଗଉର ପରିଡ଼ାଏ ପଣ୍ଡିଙ୍କୁ ନେଇ ଗଲେ ଉପରବେଳା । ଘର ଦଖଲ ନେଲେ । ଦୁଇ ଭାଇଙ୍କର ଦୁଇଟି ତାଲା ପଡ଼ିଲା ।

ବୋହୂ ହେଲେ ଦୁଇଅ—ବର ଘରକୁ ଗଲେ । ଶାଶୁ ବି ସୁବିଧା ଉଣ୍ଡି ନୂଆ ସଂସାର ପାତିଲେ । ଏଣେ ପରିଡ଼ାଙ୍କ ଘରେ ନିଆଁ ଜଳିଲା ।

ପ୍ରଥମ ମକଦ୍ଦମା ଫଉଜଦାରୀ କୋର୍ଟରେ । କାଉଣ୍ଟର୍ କେଶ୍ । ନଡ଼ିଆ ଚୋର ଆଉ ଖୁଣ୍-ଜାର । ସେଇ ଶାଶୁବୋହୂଙ୍କ ଜମି ଉପରେ । ନଟେଇ ପରିଡ଼ାଏ ଜିତିଲେ । ମହାନ୍ତିଙ୍କୁ କୁଣ୍ଢାଇ ପକାଇ କହିଲେ, ମାନ ରହିଲା । ଗଉର ପରିଡ଼ାଏ ଫଉଜଦାରୀରେ ହାଇକୋର୍ଟ ଯାଏ ଯାଇ ପରାସ୍ତ ହୋଇ ଜୋରିମନା ଟଙ୍କା ଗଣି ଦେଇ ଆସିଲେ । ମୁଣ୍ଡ ନୋଇଁବାର ପିଲା ସେ ନୁହନ୍ତି । ସିଭିଲ୍ କୋର୍ଟରେ ନମ୍ବରୀ ମକଦ୍ଦମା ଦାଏର କଲେ ।

ନିଆଁ ଜଳିଲା, ପଣ୍ଡିଏ ଅହୁତି ଦେଲେ, ମହାନ୍ତିଏ ବିଞ୍ଚିଲେ । ଶତ୍ରୁତା ବଢ଼ିଲା । ଗଉର ପରିଡ଼ା ହିଡ଼ କଟେଇ ମକଦ୍ଦମା ଦାଏର କଲେ । ନଟେଇ ପରିଡ଼ାଏ କଲେ କାଞ୍ଜିଅହୁଦା ମକଦ୍ଦମା । ଚାଲିଲା, ଚାଲିଲା—ଅନ୍ତ ନଟେଇ ପରିଡ଼ାଏ ଜିତିଲେ ତ କାଲି ଗଉର ପରିଡ଼ାଏ । ଦିନୁଦିନ ରାଗ ବଢ଼ିଲା, ଜିଦ ବଢ଼ିଲା । ଅନ୍ନର ମୂଲ୍ୟ ଭାଇ ଦିହେଁ ଉପଲବ୍ଧି କଲେ । ଆଗ ମାନ୍, ପଛେ ଜାନ୍ । ସୁଅ ମୁହଁରେ ଟଙ୍କା ଖରଚ ଚାଲିଲା । ଅରେ, ମାନ୍ ନ ରହିଲେ ସମ୍ପତ୍ତି ଚାଲିଯିବ । ଦିନ ଦି ପହରେ ଆଖିରେ ଅଙ୍ଗୁଠି ଗେଞ୍ଜି ଲୋକେ ଲୁଟ୍ କରି ନେଇ ଯିବେ ।

ଭାଇ ଦିହେଁ କେହି କାହାର ମୁହଁ ଚାହାନ୍ତି ନାହିଁ । ଜା ଦିହେଁ ସବୁଦିନେ କଜିଆ କରନ୍ତି, ପିଲାରେ ପିଲାରେ କଜିଆ ନେଇ । ପିଲା କଜିଆରୁ ଛନଛନଟା ମକଦ୍ଦମା ହୋଇଗଲା । ଅହୁରି ବି ଚାଲିଛି । ଗଉର ପରିଡ଼ାଙ୍କ ସ୍ତ୍ରୀ

ନଟେଇ ପରିଡ଼ାଙ୍କ ଝିଅକୁ ଖଡ଼୍ଭୁଷା ମାରିଥିଲେ ବୋଲି ମୃଦାଲି ହୋଇ କୋଠକୁ ଗଲେ । ଜା ଓ ଦେଢ଼ଶୁର କୋଠ ଘରେ ସଂସାର ଆଗରେ ମିଛ ସାକ୍ଷ୍ୟ ଦେଇ ଭାଇବୋହୂଙ୍କୁ ଚୋରମାନା କରାଇଲେ ।

ଏଥର ଆଉ ରକ୍ଷାରକ୍ଷଣ ନାହିଁ । ମକଦ୍ଦମାର ନିଶା ପଶିଲା, ଘର ଭିତରେ, ମାଇପି ମହଲରେ । କାନରେ ଶୁଣା ନ ଥିବ, ଯେଉଁ ଦଫାରେ ନଟେଇ ପରିଡ଼ାଙ୍କ ନାମରେ ତାଙ୍କର ଭାଇବୋହୂ ମକଦ୍ଦମା ରୁଜୁ କରିଥିଲେ । କେଶ୍ ଗୃଲିଲା । ହଲପ୍ ନେଇ କୋର୍ଟ ଘରେ କାନ୍ଦି କାନ୍ଦି ପରିଡ଼ାଙ୍କ ଘରଣୀ ଦେଢ଼ଶୁରଙ୍କ ବିରୁଦ୍ଧରେ ଯେଉଁ କଥାମାନ କହିଗଲେ, ସେଥିରୁ ଦୁଇ ଗୃରି ପଦ ଶୁଣି ନଟେଇ ପରିଡ଼ାଏ ମୋହ ହୋଇ ପଡ଼ିଲେ । ନଟେଇ ପରିଡ଼ାଏ ଖଲାସ ହେଲେ ସନ୍ଦେହରେ ।

ଗଉର ପରିଡ଼ାଏ ତାଙ୍କ ସ୍ତ୍ରୀଙ୍କୁ ଗୃହିଁ ହସି ହସି କହିଲେ, ଖସି ଗଲା ତ, ଜେରାରେ ତମେ ବିଗାଡ଼ ଦେଲ । ଘରଣୀ ଉତ୍ତର ଦେଲେ, ମିଛ କଥାଗୁଡ଼ା କେମିତି କଣ ଗୋଳମାଳ ହୋଇ ଗଲା । ବାଃ, ଶିଖେଇ ଦେବା ଭାରି ସହଜ, ଆଉ ଏତେ ଲୋକଙ୍କ ଆଗରେ କହିବା କଣ ସହଜ ?

ଅଚ୍ଛା, ଏକା ମାଘକେ ଶୀତ ଯାଏ ନାହିଁ ।

ପୂରା ପାଞ୍ଚିଟି ବର୍ଷ ମକଦ୍ଦମାରେ ପରିଡ଼ା ବଂଶ ଉଚ୍ଛନ୍ନ ହେବାକୁ ବସିଲେ । ଜମି ଜମିଦାରି କେତେ ହେଲା ବିକ୍ରି, କେତେ ବା ପଡ଼ିଲା ବନ୍ଧା । ଘରର ଘରଣୀ ନାକରେ ନିମକାଠି ଦେଇ ବୁଲିଲେ । ରାଗ ଯେ ବ୍ରହ୍ମଚଣ୍ଡାଳ, ଦାନୁଦାନ ବଢ଼ିଲା । ଯାଉ, ସବୁ ପଛେ ଯାଉ, ମାନ୍ ରହୁ, ମାନ୍ !

ପଣ୍ଡାଏ ମହାନ୍ତିଙ୍କ ମୁହଁକୁ ଗୃହିଁଲେ କଠମଠ କରି, ଆଖିର କଥା ଆଖି ବୁଝିଲା । ଭୁଣ୍ଡ କହିଲା, ହଇକଏ ମହାନ୍ତିଏ, ହାଇକୋର୍ଟରୁ ଡିଗ୍ରୀଠାନ ପାଇଲେ ତମର ନିଶ ଦାପଠା ଓପାଡ଼ ନ ଦେବ ଯଦି ।

ଉତ୍ତର ଦେଲେ ମାହାନ୍ତିଏ, ରଖି ଥା ହେ ତମର ବଡ଼ତି କଥା ପଣ୍ଡାଏ, ହାଇକୋର୍ଟରେ ଚତ୍‌ପଟାଙ୍ଗ ହୋଇ ପଡ଼ିଲେ ଦାନ୍ତ ଦ ପାଟି ଭାଙ୍ଗି ଯିବ ହେ—

ମହାନ୍ତିଏ କହିଲେ ନଟେଇ ପରିଡ଼ାଙ୍କୁ, ହାଇକୋର୍ଟରେ ଶୁଣାଣି ହେବ । ଭଲ ଓକିଲ ନ ଦେଲେ ଚଳିବ ନାହିଁ । ଏତେ କରି କରି ଶେଷ ବେଳରେ ଯେତେବେଳେ ଫଳ ପାଚ ପାଚ ଆସୁଛି, ହଟି ରହିଲେ ହେବ ପରିଡ଼ାଏ ?, ମୁଣ୍ଡ ଟେକି ସଂସାରରେ ଆମେ ବାଟ ଗୃଲିବା କେମିତି ? ଜାନ୍ ଯାଉ, ମାନ୍ ଥାଉ ।

ନଟେଇ ପରିଡ଼ାଏ ଜମି ବନ୍ଧା ଦେବାକୁ ମଙ୍ଗିଲେ । ବଡ଼ ଓକିଲ, ବେଶୀ ଫିସ୍ !

ଗଉର ପରିଡ଼ାଏ ପଣ୍ଡାଙ୍କ କଥା ତଳେ ପକାଇଲେ ନାହିଁ । ସେ ବି ନିଶରେ ତାଉ ଦେଇ କାଗଜ କିଣିଲେ ସମ୍ପତ୍ତି ବନ୍ଧକ ଦେବେ ।

ବଦଆ ଆଜ ବଛଣାରୁ ଉଠି ପାରୁ ନାହିଁ । ଧଇଁ କାଶ । ଗୋଡ଼ ଦୁଇଟା ବ ଫୁଲି ଗଲାଣି । ଜର । ପୁଅ ନାତିଙ୍କ ଠାରୁ ପରିଡ଼ା ଘରର ହାଲହଇକତ ଶୁଣେ । ଥକ୍କା ହୋଇ ବସିପଡ଼େ । ଆଖିରୁ ଗଡ଼ି ପଡ଼େ ଲୁହ । ମନକୁ ମନ କହୁହୁଏ, ସଇଲା, ସବୁ ସଇଲା । ଷାଠିଏ ବର୍ଷକାଳ ହାଡ଼ଭଙ୍ଗା ପରିଶ୍ରମ କରି ପୋଷି ପୋଷି ଝାଳ ଦହରୁ ନିଗାଡ଼ି ଯେଉଁ ସମ୍ପତ୍ତି ସେ କରିଥିଲା, ତାର ଦେଖନ୍ତରେ ସବୁ ଶେଷ ହୋଇଯିବ । ସୁଦକ୍ଷ କାରିଗର ପରି ଯେଉଁ ମନ୍ଦିର ବଦଆ ତୋଳିଥିଲା, ନୁହବବାଦରୁ ସେ ମନ୍ଦିର ଟଳ ପଡ଼ିବାକୁ ବସିଲାଣି । ବଦଆ କି ସହନ୍ତା !

ବଡ଼ ନାତିର ମୁହଁରୁ ବଦଆ ଶୁଣିଲା, ଗାଁ ଲୋକେ ଦୁଇ ଦଳ ହୋଇ ଦୁଇ ସାଆନ୍ତଙ୍କୁ ଠେଲୁଛନ୍ତି । ମୁକୁନ୍ଦମା ଉପରେ ଫଉଜଦାରି ହେବ । ନତେଇ ପରିଡ଼ାଏ ବସିନପୁରରୁ ପଚାଶ ଜଣ ପାଣ ଯୋଗାଡ଼ କରୁଛନ୍ତି, ଜଣ ପ୍ରତି ପାଞ୍ଚ ଟଙ୍କା ନେବେ । ଲୋକ ଗଲାଣି—

ସାନ ନାତି କହିଲା, ଗଜର ପରିଡ଼ା ମଧୁପୁରକୁ ଖବର ପଠେଇଛନ୍ତି, ତାଙ୍କର ବ ପଚାଶ କି ଷାଠିଏ ଲୋକ ଆସୁଛନ୍ତି—

ବଦଆ ବୁଢ଼ା ଥଙ୍ଗେଇ ଥଙ୍ଗେଇ ପଚାରିଲା, ଫଉଜଦାରିଟା ହେବ କାହିଁକରେ ପିଲାଏ ? କଣ୍ଟ ବୁଝିଛ ? ମୁକୁନ୍ଦ-ମା ଘର ପାଇଁ ପରା ମକଦମା ଚାଲିଛି ?

ବଡ଼ ନାତି ଏଣିକି ତେଣିକି ଚାହିଁ ଗୁପ୍ତରେ କହିଲା, ନତେଇ ପରିଡ଼ାଏ ହୁକୁମ ଦେଇଛନ୍ତି ସାନ ପରିଡ଼ାଙ୍କୁ ଶେଷ କରିଦିଅ ।

ସାନ ନାତି କାବା ହୋଇ ଚାହିଁଲା । କହିଲା, ପରିଡ଼ାଏ ତ ସେମିତି ହୁକୁମ ଦେଇଛନ୍ତି, ବଡ଼ ପରିଡ଼ାଙ୍କୁ ଦି ଗଡ଼ କରି ଦେବାକୁ ।

ବଦଆ କହିଲା, ତମେ ସେ ଫଉଜଦାରି ପାଖକୁ ଯିବ ନାହିଁରେ ।

ସଞ୍ଜ ପହରୁ ବଦଆକୁ ଟିକିଏ ନିଦ ହୋଇ ଯାଇ ଥିଲା । ସ୍ୱପ୍ନ ଦେଖିଲା, ଭାଇ ଦିହେଁ ମୁକୁନ୍ଦ-ମା ଉପରେ ଛଟ୍‌ହୋଇ ପଡ଼ିଛନ୍ତି, ମୁଣ୍ଡ ଫାଟି ରକ୍ତ ବୋହି ଯାଉଛି, କେତେ ଲୋକ ହାଉ ହାଉ ହେଉଛନ୍ତି । ବଦଆ ଚମକି ଉଠିଲା । ଚାହିଁଲା ପଦାକୁ । ଚତୁର୍ଥୀର ବାଙ୍କୁଲି ଜହ୍ନ ସେତେବେଳଯାଏ ବୁଡ଼ି ଯାଇ ନାହିଁ । ଖସିଦାନଆ ସୁଲୁସୁଲିଆ ପବନ ବୋହୁଛି । ମନରେ ଗୋଟାଏ ଖିଆଲ ପଶିଲା । ଭାରି ଖୁସି ତାକୁ ଲାଗିଲା । ଆଜ, ଆଜ ସବୁ କଜିଆ ଶେଷ ହେବ । ପରିଡ଼ା ବଂଶକୁ ସେ ନିଶ୍ଚୟ ରକ୍ଷା କରିବ । ଦାନା ଖାଇଛି । ବଞ୍ଚି ଥାଉଣୁ ଭାଇ ଦିଟାଙ୍କୁ ଭିକ ମଗେଇ ଦେବ ନାହିଁ । ଯାହା ହେଲେ ଗୋଟାଏ ସେ କରିବ ।

ବଦଆ ଉଠିଲା । ଏତେ ଦୁର୍ବଳ ଯେ ଚାଲିଲା ବେଳକୁ ଦେହ ଥରୁଛି, ମୁଣ୍ଡ ବୁଲାଉଛି । ଖୋଜି ଖୋଜି ଝକ୍‌ମକି ପଥର ଧରିଲା । ପିକା ଲଗାଇଲା ।

ଗୋଟିଏ ହାତରେ ଠେଙ୍ଗା ତ ଆର ହାତରେ କୁରାଢ଼ି ଧରି ସେ ଏକମୁହାଁ ହୋଇ ଚାଲିଲା ।

ରାତି ଅଧ । ଅନ୍ଧାର ରାତି । ମୁକୁନ୍ଦ-ମାର ଏକୁଟିଆ ଘରଆଡ଼ୁ ଗଛ ହଣାର ଶବ୍ଦ ଠକ୍ ଠକ୍ ଶୁଭୁଛି । ଗାଁ ଲୋକଙ୍କର କାହାରି ସାହସ ହେଉ ନାହିଁ ପାଖକୁ ଯିବାକୁ । ଭୂତ କି ପ୍ରେତ କି ଆଉ କଣ କିଏ ଜାଣେ ?

ସାହସ କରି କିଏ ଜଣେ ପାଖକୁ ଆସିଲା । ପଚାରିଲା, କିଏ ରେ ?

ମୁଁ ବଦଆ ।

କାହା ତରଫରୁ ?

ବଡ଼ ପରିଡ଼ାଏ ।

ସେ ଚାଲିଲା ସାନ ପରିଡ଼ାଙ୍କୁ ଖବର ଦେବାକୁ । ମଜାଟା ଦେଖିବାକୁ କିଏ ନ ଚାହେଁ ? ଟିକିଏ ଦୂରେଇ ହୋଇ ରହିଲେ ହେଲା ।

ଆଉ ଦି ଜଣ ଆସିଲେ । ପଚାରିଲେ, କିଏ ରେ ?

ମୁଁ ବଦଆ ।

କାହାଆଡ଼ୁ ?

ସାନଙ୍କ ଆଡ଼ୁ ।

ଧାଇଁଲେ ବଡ଼ଙ୍କ ପାଖକୁ ।

ଏମିତି କେତେ ଜଣ ଆସିଲେ । ପଚାରି ବୁଝିଲେ । ଅଣ ନିଶ୍ୱାସୀ ହୋଇ ରାତି ଅନ୍ଧାରରେ ଖବର ଦେବାକୁ ଧାଇଁଲେ ପରିଡ଼ାଙ୍କ ଘରକୁ । କିଏ ଗଲା ସାନଙ୍କ ପାଖକୁ, ଆଉ କିଏ ଗଲା ବଡ଼ଙ୍କ ପାଖକୁ । ବଦଆର ହାତରୁ କୁରାଢ଼ି ଖସିଲା ନାହିଁ । ତରତର କରି ଚୋଟ ହାଣିଲା ।

ଆଗ ପଡ଼ିଲା ନଡ଼ିଆ ଗଛ ଦିଟା । ଲାଗିଲା ଆମ୍ବ ଗଛରେ । ରାତି ପାହାନ୍ତା ହେଲା । ବେଶି ବେଶି ଲୋକ ଆସିଲେ । ଦେଖି ଦେଖି ଚାଲିଗଲେ । ଆମ୍ବଗଛ ମାଡ଼ି ବସିଲା ଘର ଉପରେ । ବଦଆ ଟିକିଏ ଦୂରକୁ ଘୁଞ୍ଚି ଆସିଲା । ହସ ଉଠିଲା ତାର ଶୁଖିଲା ଓଠରେ ।

ଦେଖଣାହାରି ଦୁଇଚାରିଜଣ ପାଖରେ ଆସି ଠିଆ ହେଲେଣି । ଯିଏ ଯେତେ ପଚାରୁଛି ସେ ଉତ୍ତର ଦେଉନାହିଁ । ଆହୁରି ଟିକିଏ କାମ ବାକିଅଛି । ଏତେ ଲୋକଙ୍କ ଆଗରେ କରି ହେବ ନାହିଁ ।

ବଦଆ ପାଗଳ ହେଲା । ଆଜି ତା ଦେହକୁ ଭୀମର ବଳ ଫେରି ଆସିଛି । ସେ ଠେଙ୍ଗା ଧରିଲା । ଯେଉଁମାନେ ପାଖରେ ଠିଆ ହୋଇ ମଜା ଦେଖୁଥିଲେ, ଠେଙ୍ଗା ଟେକି ସେହିମାନଙ୍କ ଆଡ଼କୁ ଧାଇଁଲା । ଦେଖଣାହାରି ପଛକୁ ହଟିଲେ । କେହି କେହି ସ୍ଥାନ ଛାଡ଼ି ଚାଲିଗଲେ । ଫୁଙ୍କି ଫୁଙ୍କି ବଦଆ ଭଙ୍ଗାଘରେ ନିଆଁ ଲଗାଇଲା । ନିଆଁ ଜଳି ଉଠିଲା । ବଦଆ ଠାଙ୍ଗିଆ ଧରି ଘର ଚାରିପାଖେ ଚକ୍କ

ପର ଧାଇଁଲା, କାହାରିକୁ ପାଖରେ ପୂରାଇ ଦେଲା ନାହିଁ । ବଦଆ ପାଗଳ ହୋଇଛି । ରକ୍ତମୁଖା ହୋଇଛି । ପାଖରେ ପଶିବ କିଏ, କାହାର ଗରଜ ପଡ଼ିଛି ।

ବେଳୁବେଳ ନଈଁ ଶିଖା ଉପରକୁ ଉଠିଲା । ବେଳୁ ବେଳ ଲୋକ ଗହଳ ବଢ଼ିଲା । ତଥାପି ପାଖରେ କେହି ପଶି ପାରିଲେ ନାହିଁ । ବଦଆର ଆଖି ଚକ୍ରପରି ଭ୍ରମୁଥାଏ ।

ସକାଳ ହେଲା । ସୂର୍ଯ୍ୟ ଉଠି ନ ଥାନ୍ତି—

ଦୁଇ ଦଳ ଲୋକ ଠେଙ୍ଗା ବାଡ଼ି ଧରି ଦୁଇଆଡ଼ୁ ପହଞ୍ଚିଲେ । ସାଥିରେ ଅଛନ୍ତି ପରିଡ଼ା ଭାଇ ଦହେଁ । ଲୋକଙ୍କର ପାଟି ତୁଣ୍ଡ ରେରେକାର ଶବ୍ଦରେ ସେଇଟି ଗାଁଟିରେ କାନ ଅତଡ଼ା ପଡ଼ୁଥାଏ । ଦେଖଣାହାରୀ ବେଶୀ ଦୂରକୁ ଘୁଞ୍ଚିଗଲେ । ସମସ୍ତେ ଭାବୁଛନ୍ତି ଆଜି ଗୋଟାଏ କାଣ୍ଡ ହେବ । କେତେ ମୁଣ୍ଡ ଫଟାଫଟି, ହୁଏ ତ ମର୍ଡରକେଶ୍ । ଦ ଭାଇଙ୍କ ଭିତରୁ ଜଣେ ନୋହିଲେ ଦୁଇଜଣ ଯାକ ଆଜି ଶେଷ ହୋଇଯିବେ ।

ଲୋକେ ଆଗ୍ରହରେ ଚାହିଁ ରହିଲେ । ବଦଆ ପ୍ରମାଦ ଗଣିଲା । ତଥାପି ତାର ଧୈର୍ଯ୍ୟ ଭାଙ୍ଗିଲା ନାହିଁ । ସ୍ଥିର ହୋଇ ଏକା ଥାନାରେ ଠିଆ ହୋଇ ରହିଲା । ଦେହରୁ ଗମ୍ ଗମ୍ ଝାଳ ନିଗିଡ଼ି ପଡ଼ୁଛି । ବେଶୀ ଗୁଡ଼ାଏ ପରିଶ୍ରମ କରି ଥିବାରୁ ଦେହ ମୁଣ୍ଡ ଥରି ଉଠୁଛି ।

ରେରେକାର କରି ଦୁଇ ପକ୍ଷର ଲୋକ ମୁକଦ୍ଦମା ଭଳି ଉପରକୁ ମାଡ଼ି ଆସୁଛନ୍ତି, ଆଗରେ ଅଛନ୍ତି ଦୁଇ ପରିଡ଼ା । ବଦଆ ତଳେ ପକେଇ ଦେଲା ତାର ଠେଙ୍ଗା । ଦୁଇ ହାତ ଉପରକୁ ଟେକିଲା । ଦୁଇ ଭାଇଙ୍କୁ କଅଁକୁ ଡାକିଲା ।

ବଡ଼ ପରିଡ଼ାଏ ଆଖି ତରାଟି କହିଲେ, କହ ତୁ କାହାର ଲୋକ, ଆଜି ତୋର ଦେହରୁ ମୁଣ୍ଡଟା ଅଲଗା କରିଦିଏଁ । ସାନ ପରିଡ଼ାଏ ଦାନ୍ତ ଦେଖାଇ କହିଲେ, କହ, କହ, ଏଇ ଜଳନ୍ତା ନିଆଁରେ ତୋତେ ଜିଅନ୍ତା ପୋଡ଼ି ପାଉଁଶ କରେ । ବଦଆ ଗୋଟାଗୁଡ଼ାଏ ଥରିବାକୁ ଲାଗିଲା । ବସି ପଡ଼ିଲା । ପୂର୍ବପରି କହିବାକୁ ଲାଗିଲା, ପାଖକୁ ଆସ, ପାଖକୁ ଆସ ସାଆନ୍ତେ, କାନରେ କହିବି ।

କେହି ତାର ପାଖକୁ ଗଲେ ନାହିଁ ।

ବଦଆ ଥରି ଥରି ପୁଣି ଉଠିଲା । ଠେଙ୍ଗାଟା ତଳୁ ଉଠାଇ ଧରି ବଡ଼ ପରିଡ଼ାଙ୍କ ପାଖକୁ ଗଲା । ପଚାରିଲା, ମହାନ୍ତିଏ କାହାନ୍ତି ? ମହାନ୍ତିଏ ଲୋକଙ୍କୁ ଉତ୍ତେଜିତ କରି ଠେଙ୍ଗା ଧରି ଆଗକୁ ବାହାରି ପଡ଼ିଥିଲେ । ବୁଢ଼ାଲୋକ । ଚାଲି ନ ପାରି ପଛରେ ପଡ଼ି ଯାଇଛନ୍ତି ପରା !

ମହାନ୍ତିଏ ନାହାନ୍ତି ।

ବଦଆ ବୁଲି ପଡ଼ି ସାନ ପରିଡ଼ାଙ୍କ ପାଖକୁ ଯାଇ ପଚାରିଲା, ପଣ୍ଡାଏ କାହାନ୍ତି ?

ପଣ୍ଡାଏ ବି ନାହାନ୍ତି । ସେ ଆଗେ ଆଗେ ଆସୁଥିଲେ ତ !

ବଦଆ ଦୁଇ ପକ୍ଷର ମଝିରେ ଠିଆ ହୋଇ କହିଲା, ମହାନ୍ତଏ ଆସିବେ ନାହିଁ କି ପଣ୍ଡାଏ ମଧ୍ଯ ଆସିବେ ନାହିଁ । ତମକୁ ସବୁ ହାଣ ମୁହଁକୁ ପଠେଇ ଦେଇ ପଛରେ ଥାଇ ହଦେଁ ତାଳି ମାରିବେ । ଶୁଣ ସାଆନ୍ତମାନେ, ତୁମେ ତାଙ୍କର ଶାଗ ପଠାଳି । କଳମଞ୍ଜି ବୁଣି କାଟି ଖାଉଥିବେ, ଖାଉଥିବେ ।

ଏତିକି କହି ବୁଢ଼ା ବଦଆ ବେଦମ ହୋଇ ପଡ଼ିଲା । ଟିକିଏ ଅଟପଷା କରି ସାନ ପରିଡ଼ାଙ୍କର ହାତଧରି ଘୋଷାଡ଼ି ଆଣିଲା ବଡ଼ ପରିଡ଼ାଙ୍କ ପାଖକୁ । ଦେହରେ ତାର ଭୀମର ବଳ । ବଡ଼ ପରିଡ଼ାଙ୍କ ଗୋଡ଼ ତଳେ କଚାଡ଼ି ଦେଲା ।

ସାନ ପରିଡ଼ାଙ୍କ ଲୋକେ ଠେଙ୍ଗାବାଡ଼ି ଟେକି ଘୁଞ୍ଚି ଆସିଲେ ଆଗକୁ । ମାଲିକର ପଦେ କଥାକୁ କାନେଇଁଛନ୍ତି । ହାତ ଗୋଡ଼ ଚୂନା କରିଦେବେ । ବଡ଼ ପରିଡ଼ାଙ୍କର ଲୋକେ ବି ଠେଙ୍ଗା ବାଡ଼ି ଟେକି ପାଖେଇ ଆସିଲେ ।

ବଦଆ କହିଲା, କଥା ଥରି ଉଠୁଥାଏ—ସବୁ କଜିଆର ମଞ୍ଜି ହେଉଛି ଏଇ ମୁକୁଛି-ମାର ଘର, ଗଛ ଆଉ ଡିହ । ଡାଳ ପତ୍ର ମେଲି ମେଲି ଯେ ଗୁଲିଛି । ଗଛ ହଣାହେଲା, ଘର ଜଳିଲା, ଡିହଟା ରହିଛି । ଦେଖ ସାଆନ୍ତମାନେ, ସେଇ ଜଳନ୍ତା ନିଆଁ ଭିତରେ ବନେଇ ପରିଡ଼ା ଠିଆହୋଇ କାନ୍ଦୁଛନ୍ତି । ତାଙ୍କର ଆଖିର ଲୁହରେ ଏ ନିଆଁ ଲିଭିବ । ମୁଁ ତାଙ୍କର ଲୋକ । ଠିଆ ହେଲି କାହିଁକି ବଡ଼ସାଆନ୍ତେ, ସାନ ସାଆନ୍ତଙ୍କୁ ତଳୁ ଉଠାଇ କୋଳ କର, ନଡେଇ ଗଉର ମିଳନ ଦେଖି ଲୋକଙ୍କର ଚକ୍ଷୁ ପବିତର ହେଉ ।

ବଡ଼ ପରିଡ଼ାଏ ଚଳିଲେ ନାହିଁ । ସାନ ପରିଡ଼ାଏ ତଳୁ ଉଠିଲେ । ଦୁଇ ଜଣଙ୍କର ଦୁଇହାତ କଟମଟ କରି ଧରି ବଦଆ କହିଲା, ତାର କୋରଡ଼ ଆଖିରୁ ଲୁହ ଝରୁଥାଏ—ତମର ମାନମହତ ତଳେ ପଡ଼ିବ ସାଆନ୍ତେ ? ନାଇଁ ନାଇଁ, ତମର ଏଇ ବୁଢ଼ା ବଦଆର ତାଳୁ ଫଟାଅ, ଶୂନ୍ୟେଶୂନ୍ୟେ ତାକୁ ନେଇ ଏ ଜଳନ୍ତା ନିଆଁରେ ପୋଡ଼ିଦିଅ, ତାରି ସାଙ୍ଗେ ତମ ମାନ ମହତ ଜଳିଯାଉ ସାଆନ୍ତେ । ମୁକୁଛିମାଆର ଡିହଟା, ନିଆଁଶି ଡିହ । ତା ଉପରେ ଲୋକନାଥଙ୍କ ମନ୍ଦିର ତୋଳ, ପଣ୍ଡାଏ ଜଳ ତୁଳସୀ ଦେବେ, ମହାନ୍ତଏ ନାମ ଜପିବେ ସେଇଠି ।

ଏ ଦୃଶ୍ୟ ଦେଖିବାକୁ ଗାଁ ଲୋକେ ରୁଣ୍ଡ ହୋଇଗଲେ । ବଡ଼ ସାଆନ୍ତଙ୍କ ଆଖି ଛଳ ଛଳ ହେଲା । ସାନ ସାଆନ୍ତଙ୍କ ଗ୍ରୀବା ପଡ଼ିଲା ଉଠିଲା । ବଦିଆ ଦିଓଟି ହାତ ଏକାଠି କଲା । ନଡାଇ ଗଉର ମିଳନ ହେଲା । ଭାଇ ଦିହେଁ ପରସ୍ପରକୁ କୁଣ୍ଢାଇ ଧରିଲେ ।

ଭାଇ ଦିହେଁ ଶୂନ୍ୟେ ଶୂନ୍ୟେ ବଦିଆକୁ ଉପରକୁ ଟେକିଲେ । ଦୁଇ ପକ୍ଷର ସବୁ ଠେଙ୍ଗାବାଡ଼ି ନଇଁ ପଡ଼ିଲା । ଗାଁ ଲୋକେ ହରିବୋଲ ଦେଇ ପାଖେଇ ଆସିଲେ ।

ଏ ଦୃଶ୍ୟ ଦେଖିବାକୁ ବଦିଆର ଆଖି ଡୋଳାରେ ଆଉ ଜ୍ୟୋତି ନ ଥିଲା ।

# ନିଧିବୋଉ

ଦୁନିଆରେ ଯେତେ ସ୍ତ୍ରୀ ଅଛନ୍ତି ସମସ୍ତେ ଭଲ, ଏକା ନିଧିବୋଉଙ୍କୁ ଗ୍ରହ ! ଛି ଛି, କି ଜଞ୍ଜାଳ ଦୁର୍ଭାଗ୍ୟର କଥା ! ବାପା ମତେ ଏ ବିପଦରେ ପକେଇଲେ ! ମୁଁ ନାହିଁ କରୁଛିଟି ! ବାହା ହେବି ନାହିଁ ବୋଲି ଖବର ପଠେଇଲି, ତଥାପି ସେ ଶୁଣିଲେ ନାହିଁ । ଅହା ହା, କି ପ୍ରଶଂସା, ନଦିଆବାବୁଙ୍କ ଝିଅ ମନୋରମା ସବୁ ବିଷୟରେ ଭଲ, ଗୋଟିଏ ଗୃଉଲରେ ଗଢ଼ା, ସାକ୍ଷାତ ଦେବୀ ପ୍ରତିମା, ସାମାନ୍ୟ ପାଠ ପଢ଼ିଲେ କଣ ହେବ ବୁଦ୍ଧିମତୀ, ଧୀର ସ୍ଥିର, ଘର କାମରେ ନିପୁଣା ! କେଉଁଠା ଅଉ ବାକି ? ବୋଉଙ୍କର ବି ପ୍ରଶଂସା । ନିଜେ ସେ ଦେଖି ଶୁଣି ଜବାବ ଦେଇଛନ୍ତି ।

ବରଷ ଛଅଟା ନ ପୂରୁଣୁ ଖାଲି ନିଧିର ମୁହଁ ଦେଖି ଉକାଡ଼ଙ୍କ ହୋଇ ବାପା ବୋଉ ତ ଚଳିଲେ ସେ ପୁରକୁ, ଅଉ କିଛିଦିନ ରହିଥିଲେ ସିନା ବୁଝିଥାନ୍ତେ ତାଙ୍କ ଲକ୍ଷ୍ମୀ ବୋହୂଙ୍କର ଗୁଣ । ବାହାଘରଠା କାଲିପରି ଲାଗୁଛି । ଦେଖୁ ଦେଖୁ ଏଗାରବର୍ଷ କଟିଗଲା । ଛଅଟା ପିଲା ହେଲେଣି । ଗୋଟିଏ ପିଲା ସଂସାରକୁ ଆଣିଲେ ତାଙ୍କର ତୋଡ଼ ଆଉ ଟିକେ ବଢେ । ମୋ ପରି ବେପରୁଆ ଲୋକ ମେଣ୍ଢାଠୁଁ ବଳିଲାଣି, ତଥାପି ତାଙ୍କର ଟିକେ ଦୟା ହେଉ ନାହିଁ ।

ସବୁବେଳେ ଖିଟ୍‌ଖିଟ୍, କଳିଆ, ପାଟିତୁଣ୍ଡ, ଅଶାନ୍ତ, କାନ୍ଦ, ଫୋପଡ଼ାକଚଡ଼ା । କେତେ ଏବେ ମଣିଷ ସହିବ ? ଘରେ ଗୋଡ଼ ଦେଲେ ଆରମ୍ଭ ହେଲା ବଚନିକା । ଯିଏ ଯାହା କରୁ ସବୁ ଦୋଷ ମୋର । ଚାକର ଠୋକାଠା ଘର ଭଲକରି ଓଳେଇଲା ନାହିଁ ସେଥିପାଇଁ ମୁଁ ଦାୟୀ । କାନରେ ବାଜି ଯାଉଛି ନିଧିବୋଉଙ୍କର କଳକଳା ରଡ଼ି, ଏତେ ଲୋକଙ୍କୁ ଚାକର ମିଳୁଛନ୍ତି ଯାଙ୍କୁ ମିଳୁ ନାହାନ୍ତି ସେ ଏଇ ଅଳସୁଆ ଠୋକାଠାକୁ ରଖି ହଇରାଣ କରୁଛନ୍ତି । ଲୁଗା ଆଣିବାକୁ ଧୋବା ଡେରି କଲେ, ପିଢ଼ା ଉପରେ ମାଙ୍କଡ଼ ବସିଲେ, ନିଧିଆ ପାଠ ନ ପଢ଼ିଲେ, ସିଧିଆ ଲଣ୍ଠନରେ ହାତ ବଜେଇ କାଚ ଭାଙ୍ଗିଲେ, କି କୋଳପିଲା ବୁଧିଆର ନାକରୁ ପାଣି ଗଡ଼ିଲେ ଦୋଷ ହେବ ମୋର ।

କାହାକୁ କହିବି, ଲାଜର କଥା । ଆଜି ସକାଳେ ନିଧି ବୋଉ ବିଛଣାରୁ ଉଠି କୂଅରୁ ଲୋଟାଏ ପାଣି ଆଣିବାକୁ ଗଲେ । ମୁଁ ଆଗରୁ ଉଠି ମୋର ନିତ୍ୟକର୍ମ ସାରି ପିଣ୍ଡାରେ ବସି ନିଧିଆକୁ ପାଠ ପଢ଼ାଉଥିଲି । ଚାକର ଠୋକାଠା ନଳା ମୁହଁରେ ବସି ବାସନ ମାଜୁଛି । ସିଧିଆ ବାଡ଼ିଖଣ୍ଡେ ଧରି ପୋଷା ବିଲେଇ ପଛରେ ଗୋଡ଼ଉଛି । ବୁଧିଆ ଉଠି ନାହିଁ । ନିଧିବୋଉ ସବୁଦିନେ ସବା ପଛରେ ବିଛଣା ଛାଡ଼ନ୍ତି । ତାଙ୍କର କୈଫିୟତ, ବୁଧିଆଟା ଘଡରେ ଶୋଇ ଦେଉନାହିଁ ।

ତାଙ୍କ କୈଫିୟତ ସେ ଦିଅନ୍ତୁ, ସେ ଗ୍ରହଣ କରନ୍ତୁ, ମୁଁ ପାଟି ଫିଟାଏ ନାହିଁ । ହସିଲେ ବି ରକ୍ଷା ନାହିଁ । ସଙ୍ଗେ ସଙ୍ଗେ ପ୍ରଶ୍ନ, ହସ ମାଡ଼ୁଥିବ ତ ? ଖାଇ ପିଇ ନିଶ୍ଚିନ୍ତ ହୋଇ ଶୋଇପଡ଼ ଘୁଙ୍ଗୁଡ଼ି ମାରୁଥିବ, ମୋ ଦେହଗଣ୍ଡି ଦେଖିବ କାହିଁକି ? ମୁଁ ଏ ଘରେ ଆଉ ଦଣ୍ଡେ ରହିବି ନାହିଁ । ସେଇଠୁ ଆରମ୍ଭ କାନ୍ଦ, ଅଶାନ୍ତିର ବୀଜବପନ । ତେଣୁ, ସବ୍‌ସେ ଚୁପ୍ ଭଲ ।

ହଁ ଅଜବ କଥା । ତରତର ହୋଇ କୂଅରୁ ପାଣି ଲୋଟାଏ କାଢ଼ି ପାଟିରେ ଦାନ୍ତକାଠି ପୂରେଇ ପିଣ୍ଡା ଉପରକୁ ଆସିଲାବେଳକୁ କୂଅମୂଳ ଶିଉଳି ଉପରେ ତାଙ୍କର ପାଦ ପଡ଼ିଗଲା । ଗୋଡ଼ ଖସିଗଲା । ହାତରୁ ପାଣିଲୋଟା ଖସି ପଡ଼ିଲା । ନିଜେ ସେ ପଡ଼ୁ ପଡ଼ୁ ତଳେ ହାତଭରା ଦେଇ ଅଟକିଗଲେ । କିଏ ନ ହସିବ ? କିଏ କିଣ ଜାଣି ଜାଣି ହସେ ? କିଏ ଜଣେ ପଡ଼ିଗଲେ ଦେଖଣାହାରିଙ୍କ ମୁହଁରେ ତା ଗ୍ଲାଅଁକୁ ହସ ଆସେ । ସାହାଯ୍ୟ, ସହାନୁଭୂତି, ଦୁଃଖ ପଛ କଥା । ଗୃହର ଟୋକା ହସିଲା, ନାତୁଣୀ ହସିଲା । ମୁଁ ବି ହସିଦେଲି । ସଙ୍ଗେ ସଙ୍ଗେ ଉଠି ଆସିଲି ସାହାଯ୍ୟ କରିବାକୁ ।

ତାଙ୍କ ଦେହରେ ହାତ ନ ଦେଉଣୁ ସେ ଉଠି ଠିଆ ହେଲେ । ହେଲା ଆରମ୍ଭ, କାହିଁକି ହସିଲ ?

ବାଧା ହେଇ ନାହିଁ ତ ?

ରଖିଥା ତମର ସୋଗ । ପ୍ରାଣ ଗ୍ଲାଡ଼ିଯାଉଥିଲେ ତ ପାଟିରେ ଟୋପାଏ ପାଣି ଦେବ ନାହିଁ, ଭଗାରିଙ୍କ ଭୁଣ୍ଡରୁ ହେଲେ ଅଦ୍ଧା ପଦ ବାହାରିବ, ଏ ଘରେ କାହାରି ଭୁଣ୍ଡରୁ ବାହାରିବ ନାହିଁ । ବାସି ମୁହଁରେ ପାଣି ନ ଦେଉଣୁ ଲାଗିବ କାମ ଯେ ଗଛଅଧ ହେଲେ ବି ସରିବ ନାହିଁ । ପେଟକୁ ମୁଠାଏ ଖାଇବାକୁ ଦେଉଛ ବୋଲି ମୁଣ୍ଡ କିଣିଛ ? ବଳେ ବଳେ ଆସି ମୁଁ ତମ ଘରେ ପଶିଥିଲି କି ? ଏତେ କାମ ମୁଁ କରି ପାରିବି ନାହିଁ କି, ଏତେ ଦହଗଞ୍ଜ ହେବି ନାହିଁ ।

ଭାରି ହସ ମାଡ଼ୁଥାଏ । ଓଠ ଚାପି ପିଣ୍ଡାକୁ ଆସିଲି । ଭାବିଥିଲି ମେଘ ସିନା ଉଠେଇଲା, ବର୍ଷିବ ନାହିଁ । ଯୁଦ୍ଧର ନିମନ୍ତ୍ରଣ ଏଡ଼ିଦେଲି ସିନା, ମନଟା କେମିତି କେମିତି ହେଉଥାଏ । ଆଜି ଗୁରୁବାର, ଆମ ଦାମ୍ପତ୍ୟ ଜୀବନର ସବୁଠୁ ଖରାପ ଦିନ ଏଇଟା । ଘରେ ଅଶାନ୍ତି ହେବନାହିଁ ବୋଲି ଆଗରୁ ଯେତେ ପ୍ରତିଜ୍ଞା ମନେ ମନେ କଲେ ବି କାହିଁ କଳିହୁଡ଼ୀ ମନ୍ଥରା ଛପି ଛପି ଆସି ଆମ ମଝିରେ ଠିଆ ହୁଏ । ପାଲା ଲଗାଏ । ଆଜି କାଲୁ ମୁଁ ଶପଥ କରିଛି, ତୁଣ୍ଡ ଖୋଲିବି ନାହିଁ । ନାତିବୋଉ ଯେତେ ଯାହା କହିବେ ଖାଲି ଶୁଣିବି ।

ବେଶି ବେଳଯାଏ ପ୍ରତିଜ୍ଞା ରଖି ପାରିଲି ନାହିଁ । ସକାଳ ଆଠଟା ହେବ, ଏ ଘରେ ବସି ଖଣ୍ଡେ ବହି ପଢ଼ୁଛି । ଅପେକ୍ଷା କରି ବସିଛି, ନାତିବୋଉ ଚା ଆଣିଦେବେ । ଗୃହାଟା ଗୋଟିଏ ସଉକ ନୁହେଁ, ଆମ କରଣୀ ଜୀବନର ଦରକାରୀ

ଖଜ । ପେଟରେ ମନ୍ଦାଏ ପଡ଼ିଗଲେ ଭୋକ ଶୋଷ ମାରିଦିଏ । ଅଳ୍ପ ଖରଚରେ ସଂସାର ଚଳେ । ଏ ବେଳା ମୁଠିଏ, ସେ ବେଳା ମୁଠିଏ ଭାତ, ଦୁଇବେଳା ଚା । ବେଶୀ କରଜ କରିବାକୁ ପଡ଼େ ନାହିଁ ।

ଚା ଆସିଲା ନାହିଁ । ଉଠି ଆସିଲି ରୋଷଘରକୁ । ଚୁଲି ଉପରେ ଭାତହାଣ୍ଡି, ନିଆଁ ଭୁସ୍ ଭୁସ୍ ଜଳୁଛି । ପାଣି ଗର୍ଜୁଛି । ନିଧିବୋଉ ପରିବା କାଟୁଛନ୍ତି । ଗୃହର ଟୋକା ବେସର ବାଟୁଛି । ସାନ ପିଲାଟା କଂସା ତାଟିଆ ଧରି ଖେଳୁଛି ।

କହେ।, ଚା ?

ନିରୁତ୍ତର ।

ଶୁଭୁନାହିଁ କି ?

କଣ ?

ଚା ?

ନାହିଁ ।

କାହିଁକି ନାହିଁ ?

କାଲି ସକାଳୁ ସରିଲାଣି ।

ମଗେଇଲ ନାହିଁ ?

କାହା ହାତରେ ? ସମସ୍ତେ ଅଫିସରେ କାମ କରୁଛନ୍ତି ନା ଏକା ତମେ କରୁଛ ? ସକାଳ ଦଶଟାରୁ ଯାଇଥିଲ ତ ଫେରିଲ ସାଢ଼େ ନଅଟାରେ । ଭୋକରେ ହାଉହାଉ ହେଉଥିଲି, ଭାତ ଦିଅନ୍ତି ନା ଚା ପାଇଁ ବଜାରକୁ ପଠାଇ ଦିଅନ୍ତି ? ଘର କରି ଘରକଥା ତ ବୁଝିଲ ନାହିଁ, ଅଫିସ କାମ ନାଆଁରେ ସାଢ଼େ ନଅଟା ଦଶଟା ଯାଏ କୁଆଡ଼େ ଯାଇ ରହୁଛ, ଏକୁଟିଆ ଘରେ ମୁଁ ।

କିଛି ନ କହି ସହଳ ସହଳ ଅଫିସକୁ ବାହାରିଲି । ନିଧିବୋଉ ଅନୁଦାର ବୋଲି ଜାଣିଥିଲି, ଏତେ ଖରାପ ବୋଲି ମୋର ଧାରଣା ନ ଥିଲା । ଦଶବାର ପାହଣ୍ଡ ଯାଇଛି କି ନାହିଁ, ବାରିକବାଟ ଖୋଲି ନିଧିଆ ଡାକ ଛାଡ଼ିଲା, ବାପା— ବାପା— !

କେଡ଼େ ଅଶୁଭ କଥା । ଅନୁକୂଳ କରି ଅଫିସକୁ ବାହାରିଲା ବେଳେ ପଛରୁ ଡାକୁଛି ଏ ପିଲାଟା । କେତେ ଥର ମନା କଲିଣି, ବିରକ୍ତ ହେଲିଣି, ଥରେ କାନମୋଡ଼ି ଦୁଇ ଥାପଡ଼ ମାରିଥିଲି, ତଥାପି ଏ ଟୋକାଟା କିଛି ଶିଖିଲା ନାହିଁ । ପଛରୁ ଡାକିଲେ ମନ ଦୁଡ଼ୁଗୁଡ଼ୁ ହୁଏ । ଶହ ଶହ ଫାଇଲ ତ ଆତଯାତ ହେଉଛି । କାହା ଧିଅରେ କଣ ଅକଳ ହେବ, ବାଘ ଭାଲୁ ସାପ ବାହାରି କାମୁଡ଼ିବାକୁ ଗୋଡ଼ାଇବ । କି କଷ୍ଟରେ ଯେ ଗୃହକରିଟା ତେରବର୍ଷ କାଳ ବଢ଼ାଇ ରଖିଛି, ଗୋଡ଼ ଭାଙ୍ଗି ଠିଆହେବା, ମୁଣ୍ଡ ନୋଇଁ 'ଅକ୍କା ହୁଁ' କରିବା, ହସ ନ ମାଡ଼ୁଥିଲେ ବି ହାକିମଙ୍କ ମୁହଁରେ ହସ ଦେଖିଲେ ନିଜେ ଓଠ ଚାପି ଚାପି ହସିବା, ପରର

ଦୁଃଖରେ ମନ ଖୁସି ହେଉଥିଲେ ବି, ଭଲ ହୋଇଛୁ ଖା କେଆଁ ଏ ମନ କହୁଥିଲେ ବି, ମୁହଁ ଶୁଖେଇ ସହାନୁଭୂତି ଦେଖାଇବା, ଏମିତି କେତେ ଆଉ ଶିଖି, ନିତି କେତେ ଅଭିନୟ କଲେ ବି ସବୁବେଳେ ଡର, ଗୃହକର୍ତ୍ତା ଗଲା କି ? ଦୁଃଖ କଣ କେହି ବୁଝିବେ ? ସ୍ତ୍ରୀଟା ଯେଉଁଠି ଅପଦାର୍ଥ ପିଲା ଗୁଡ଼ାଙ୍କର ଦୋଷ ଦେଇ ଲାଭ କଣ ? ବୁଲିପଡ଼ି ରାଗିକରି ପଚାରିଲି, କଣ ରେ ?

ଜଳଖିଆ ଖାଇ ଯାଅ ।

ଏଁ —?

ମା ଡାକୁଛି, ଜଳଖିଆ ଖାଇ ଯାଅ ।

ରାଗରେ ଜଳି ଉଠିଲି । ଭାବିଲି, ଧାଇଁ ଯାଇ ପିଲାଟାକୁ ଗୋଟାକେତେ ଥୋଇଦେବି । ମନକଥା ମନରେ ମଲା । ରାସ୍ତା ଉପରେ କେତେଜଣ ଭଦ୍ରଲୋକ ଯାଉଛନ୍ତି । କଣେଇଁ କଣେଇଁ ମୋ ଆଡ଼କୁ ଚାହୁଁଛନ୍ତି । ଆଖିରେ ହସର ଆଭାସ ।

କବାଟ ଫାଙ୍କରେ ନିଧିବୋଉଙ୍କ ନାଲି ଶାଢ଼ୀର ଅଞ୍ଚଳ ଦୋହଲୁଛି । ରାଗ ପଛେ ପଛେ ଗୋଡ଼େଇ ଆସିଲା ଅଭିମାନ । ପ୍ରତିଶୋଧ ନେବାର ଏଇ ଠିକଣା ବେଳ । ନରମ ହେଲେ ତୁ ଗରମ ହୋଇବୁ । କହିଲି, ଡେରି ହେଲାଣି, ଆସେ ।

ଭଦ୍ରଲୋକ ହହେଁ ଆଗେଇ ଗଲେ । ମୋ ଆଡ଼କୁ ନ ଚାହିଁ ମୋ ବାଡ଼ି କବାଟ ଆଡ଼କୁ ଚାହିଁ ଚାହିଁ ଚାଲିଗଲେ । ନିଧିଆର ମୁହଁ ପାଖେ ନିଧି ବୋଉଙ୍କ ମୁହଁରୁ ଚଉଠେ ହସିଲାଣି । ନିଧିଆ ଡାକ ଛାଡ଼ୁଛି, ମା କହୁଛି ଟିକିଏ ଚା ଖାଇ ଯା ।

ଏଥିରେ କିଏ ରାଗ ସମ୍ଭାଳି ପାରିବ ? ଚା ପଚା ନ ଥିଲା, ପୁଣି ଆଇଲା କେଉଁଠୁ ? ମୁଁ ବୋଲି ଧୈର୍ଯ୍ୟଧରି ରାଗ ସମ୍ଭାଳି ତୁନ ହୋଇ ଆଗକୁ ଚାଲିଲି । ଶୁଣିଲି ନାହିଁ । ପଛକୁ ଚାହିଁଲି ନାହିଁ । ପ୍ରତିଜ୍ଞା କଲି, ଆଜି ରାତି ଦଶଟାରେ ଫେରିବି, ଖାଡ଼ା ଉପାସ, ଖେଳ ଲାଗିଛି, ନା !

## ରାମୁଲୁ

ତା ନାଁ ରାମୁଲୁ । ସେ ଭଣ୍ଡାରୀ ଘର ପିଲା । କଳା ମିଚ ମିଚ ରଙ୍ଗ, ହାଡ଼ୁଆ ଦେହ, ଡେଙ୍ଗା, ନାଲି ନାଲି ଆଖି । ଚେପ୍ଟା ନାକ । ଟ୍ରେଟ ଟ୍ରେଟ କାନ ହଳଟି । ମୁଣ୍ଡରେ ବେତାଏ ବାଳ । କେବେ କେମିତି କୁଣ୍ଡାଏ ନୋହିଲେ ସେମିତି ଫୁର୍ ଫୁର୍ ଉଡ଼େ । ଏତିକି ତାର ବିଶେଷତ୍ୱ । ଏତିକି ଛଡ଼ା, ସାଧାରଣ

ମଣିଷ ପିଲା ପରି ସେ ବି ଗୋଟିଏ ମଣିଷ ପିଲା, ଚଳପ୍ରଚଳ ହୁଏ, ଖାଏ, ପିଏ, କଥା କହେ, ଶୋଇ ଘୁଙ୍ଗୁଡ଼ି ମାରେ ।

ତା ନାଁ ରାମୁଲୁ, ରାମଚନ୍ଦ୍ରର ସଂକ୍ଷିପ୍ତ ସଂସ୍କରଣ । ତାର ବାପ ମା ନାହାନ୍ତି, ଅବଶ୍ୟ ଦିନେ ଥିଲେ । ଲୋକେ କହନ୍ତି ତା ବାପଟା ମଦୁଆ ଥିଲା । ଯାହା ରୋଜଗାର କରୁଥିଲା, ସବୁ ମଦ ଖାଇ ଉଡ଼େଇ ଦେଉଥିଲା । ରାତି ଅଧରେ ମାତାଲ ହୋଇ ଘରକୁ ଫେରି ନିର୍ଧୂମ ଛେଚୁଥିଲା ତାର ସ୍ତ୍ରୀକୁ । ମନ ଶାନ୍ତ ନ ହେଲେ ବଳକା ମାଡ଼ ପଡୁଥିଲା ରାମୁଲୁ ପିଠିରେ । କେବେ କେବେ ଛିଟିକି ଯାଉଥିଲା ଟିକି ଝିଅ ସୀତାମ୍ମା ଉପରକୁ । ପିଲାଦିନୁ ମାଡ଼ ଖାଇ ରାମୁଲୁ ହୋଇଛି ଟାଣ । ଛୋଟକିଆ ମଣିଷ । ଦୁନିଆର ମାଡ଼ ଗାଳିକୁ ପିଠେଇ ଦେବାକୁ ପାରଙ୍ଗମ ।

ରାମୁଲୁକୁ ଯେତେବେଳେ ଦଶ ବର୍ଷ ଆଉ ସୀତାମ୍ମାକୁ ଛ, ସେତିକିବେଳେ ବାପର ଗୋଗୋଛିବାଡ଼ିଆ ସହି ନ ପାରି ରାମୁଲୁର ମା ତାର ଦେଖିଲା କାମ କରିଦେଲା । ପିଲା ଦିଟାଙ୍କ ବୋଝ ପଡ଼ିଲା ମଦୁଆ ବାପ ଉପରେ । ସ୍ତ୍ରୀ ମରଣର ଦୁଃଖ ସହି ନ ପାରି ବୁଢ଼ା ଅହୁରି ଅଧିକ ମଦ ପିଇଲା । ମଦ ପିଇ ସେ ଆଉ ମାତାଲ ହୁଏ ନାହିଁ । ଟଳି ଟଳି ଆସି ନିସ୍ତେଜ ହୋଇ ଯେଉଁଠି ହେଲେ ପଡ଼ିଯାଏ । ରାତି ପାହେ । ଭଣ୍ଡାଗି ମୁଠି ଧରି ବାହାରି ପଡ଼େ ଛତ୍ରପୁର ବଜାରକୁ । ଲୋକଙ୍କୁ ସେ ଭଦ୍ର କରେ । ପଇସା ରୋଜଗାର କରେ । ହୋଟେଲରେ ସେ ନିଜେ ଖାଏ, ପିଲା ଦିଓଟିଙ୍କୁ ଖୁଆଏ । ସଞ୍ଜର ମଉଜ ପାଇଁ କିଛି ସଞ୍ଚି ରଖେ । ପୁଣି ଭେଇବାକୁ ଚେଷ୍ଟା କରେ ।

ଛତ୍ରପୁର ପାଖ ଗ୍ରେଟ ପଡ଼ାରେ ତାର ଖଣ୍ଡେ ସାନ ଗୃହଘର ଥିଲା । ଭେଇଲା ଧନ ସଞ୍ଜ ମଉଜକୁ ନିଅଣ୍ଟ ହେଲାରୁ ଘରଖଣ୍ଡି ବି ସେ ବନ୍ଧା ପକେଇ ଦେଲା । ଦିନେ ସଞ୍ଜବେଳେ ମନ ପୂରେଇ ସେ ପିଇଲା—ପେଟ ପୂରେଇ ତ ସବୁଦିନେ ପିଏ—ଆଉ ଟଳି ଟଳି ଅସୁ ଅସୁ ଗୋଟିଏ ହୋଟେଲ ପିଣ୍ଡାରେ ନିଶ୍ଚିନ୍ତରେ ଶୋଇ ପଡ଼ିଲା । ଆଉ ସେ ଉଠିଲା ନାହିଁ । ଲୋକେ କହିଲେ, ମଲା ନାହିଁ ତରିଗଲା ।

ରାମୁଲୁ ଓ ସୀତାମ୍ମା ଆସି ରାସ୍ତାରେ ଠିଆ ହେଲେ । ମାଗିକରି କିଛି ଦିନ ଚଳିଲେ । ଅନିବୃତ୍ତ ଦିନେ ଆସିଲେ ଜଣେ ଅଜ୍ଞାଦିନ୍ କକା । ସେ କୁଆଡ଼େ ଖଡ଼ଗପୁରରେ ରେଲ ଇଲାକାରେ କାମ କରନ୍ତି—ପଏଣ୍ଟସମ୍ୟାନ୍ । ଆଖିରୁ ଲୁହ ଗଡ଼େଇ, ଅହା, ଉହୁ କହି ପିଲା ଦିଓଟିଙ୍କୁ ସେ ନେଇଗଲେ ପାଖକୁ । ମାସ ଛଅଟା ନ ପୂରୁଣୁ ରାମୁଲୁ ଆସି ପୁଣି ଛତ୍ରପୁର ଦାଣ୍ଡରେ ହାଜର । ସୀତାମ୍ମା କାହିଁ ବୋଲି ପଚାରିଲେ, ସେ କହେ ଦାଦି ପାଖରେ । ତୁ କାହିଁକି ପଳେଇ ଆସିଲୁ ପ୍ରଶ୍ନର ଉତ୍ତର ସେ ଦିଏ ନାହିଁ ।

ଛତ୍ରପୁର ଦାଣ୍ଡରେ ଏଗାର ବର୍ଷର ପିଲା ଗମୁଲ୍ଲ ପେଟପାଟଣା ଧରି ବୁଲେ, ଚଳନ୍ତ ପାଣିରେ ଗଡ଼ଗଡ଼କା ଯାଏ ଯେପରି ବାଲିଗରଡ଼ା । କେଉଁଠି ଅନ୍ଧାରରେ ପଡ଼ି ଲାଖିଗଲେ କିଛି ସମୟ ଅଟକିଯାଏ ସିନା । ସୁଅ ଚଢ଼େ, ବାଲିଗରଡ଼ା ପୁଣି ଗଡ଼ଗଡ଼ ଯାଏ । ଦେହରେ ଶିଉଳି ଲାଗେ ନାହିଁ । ଗମୁଲ୍ଲ ଗଡ଼େ, କେତେ ଅବତାର ଧରେ, କେତେ ଲୋକଙ୍କ ଘରେ, କେତେ ଦୋକାନ, କେତେ ହୋଟେଲରେ ପୁଣି ବାବୁଭୟାଙ୍କ ପାଖରେ । ସେ ସ୍ୱାଧୀନ ଦେଶର ସ୍ୱାଧୀନ ପିଲା । କାହାକୁ ତାର ଡର ? କାହାକୁ ତାର ଖାତିର ? ସେ ଛେଉଣ୍ଡ ମଣିଷ ପିଲା ।

ଗମୁଲ୍ଲ କାହାର ପିଲା ଖେଳଉଛି—ମାସ ଦିଟା ନ ପୂରୁଣୁ ଗମୁଲ୍ଲ ସେଠୁ ଚାଲି । ତା ମନକୁ ସେ ଚାଲିଗଲା କି ଗୃହକର୍ତ୍ତା ବିଦାକରି ଦେଲେ ଏ ବିଷୟ କେହି କେବେ ତଦନ୍ତ କରିବାକୁ ମନ କରି ନାହିଁ । ପୁଣି ଗମୁଲ୍ଲ ଦିନେ ଆଉ ଜଣଙ୍କ ଘରେ, ପାଣି କାଢ଼ୁଛି, ବାସନ ମାଜୁଛି, ଲୁଗା କାଚୁଛି । ଭୂତପରି କାମ କରେ । ଖିରଡ଼ିରି ମାନେ ନାହିଁ । ଭଲ ମନ୍ଦ ବିଚାରେ ନାହିଁ । ଓଜର ଆପତ୍ତି କରେ ନାହିଁ । ଏଗାର ବାର ବର୍ଷର ପିଲା, ଗୋଟାଏ ବଡ଼ ମଣିଷର କାମ କରେ ।

ତେବେ ସେ ଏତେ ଘର ବୁଲେ କାହିଁକି ? ଗମୁଲ୍ଲ ପଙ୍ଖା ଟାଣୁଛି, ଗମୁଲ୍ଲ ହୋଟେଲରେ କପ୍ ପିଆଲା ଧୋଉଛି । ସେଠୁ ଗଲାଣି । ଗମୁଲ୍ଲ ଘଣ୍ଟି ବଜେଇ ବିସ୍କୁଟ ବିକୁଛି । ସେଠୁ ବି ଗଲାଣି । ପୁଣି ଗମୁଲ୍ଲ ଆଉ କାହାରି ବାସନ ମାଜିଲାଣି, ସେଠୁ ବି—

କାହିଁକି ? ଗମୁଲ୍ଲ ତ ଚୋର ନୁହେଁ । ଯେତେ ଘରେ ସେ ରହିଛି ସବୁଠି ପଚାରି, ଲୋକେ କହିବେ ଗମୁଲ୍ଲ ଚୋର ନୁହେଁ । ହଜିଲା ଧନ ତାକୁ ମିଳିଲେ ସେ ସଙ୍ଗେ ସଙ୍ଗେ ଦେଇଦିଏ । ଭଗବାନ ବି ହଜିଲା ଧନ ଖୋଜିବାର ଶକ୍ତି ତାକୁ ଦେଇଛନ୍ତି । ଅନ୍ୟମାନେ ଖୋଜି ହତାଶ ହେଲେ, ଗମୁଲ୍ଲ ଖୋଜେ । ତା ଆଖିରେ ପଡ଼େ । ସେ ପାଏ । ସଙ୍ଗେ ସଙ୍ଗେ ଦେଇପକାଏ ।

ସେ ଚାଳାକ ନୁହେଁ । ଅମୃତ ଥିଲେ ବି ଅଣେଇବ ନାହିଁ । ପାଟି ସୁଆଦ, ଜିଭ-ଲାଳସା କଣ ସେ ବୁଝେ ନାହିଁ । କାହିଁରେ ତାର ଶ୍ରଦ୍ଧା ବା ଅଶ୍ରଦ୍ଧା ନାହିଁ । ପେଟଟି ପୂର୍ଣ୍ଣ ହେଲେ ହେଲା । ଭାତ ଆଉ ଶାଗ, ମାଣ୍ଡିଆ ଜାଉ, ପଖାଳ ଲୁଣ, ପୁଞ୍ଜିଏ ଲଙ୍କା, ପେଟେ ପାଣି । ମିଠେଇ ବିସ୍କୁଟ ଦେଲେ ସେ ମନା କରେ ନାହିଁ । ଯାହା ଦିଅ, ଜଳ ଫଳ ମିଶି ପେଟଟି ପୂରିଲେ ହେଲା । ପେଟ ପୂରି ନଥିଲେ ସେ କାମକୁ ଡରେ ନାହିଁ । ଗାଳିଦେଲେ ପାଟି ଯୋଡ଼ି-ହେବ, ମାଡ଼ ମାରିଲେ ତମ ହାତ ବଥେଇବ, ତାର କି ଯାଏ ? ସେ ଛେଉଣ୍ଡ ମଣିଷ ପିଲା । ତେର ବର୍ଷ ହେଲାଣି ।

ବାହାର କରିଦେଲେ ସଙ୍ଗେ ସଙ୍ଗେ ଆଉ କିଏ ତାକୁ ରଖିନେବ ! ଲୋକର ତ ଅଭାବ ! ଜଣକର ଚାକରକୁ ଶିଖେଇ ଲୋଭ ଦେଖେଇ ଆଉ ଜଣେ ନିଜର କରିବାକୁ ଚେଷ୍ଟା କରୁଛି । ଗମୁଲ୍ଲ କାହାର ଶିକ୍ଷାରେ ପଡ଼େ ନାହିଁ । ଶିକ୍ଷାରେ ପଡ଼ିବା ଭଳି ବୁଦ୍ଧି ବିବେକ ତାର ନାହିଁ । ତା ମନକୁ ପାଇଲେ ରହେ, ମନକୁ ନ ଆସିଲେ ଗୁଣ୍ଡ ଗୁଣ୍ଡ ଚାଲିଯାଏ । ଆଗରୁ ଖବର ଦିଏ ନାହିଁ ।

ଚାକିରି ତାକୁ ମିଳେ । ଲୋକେ ସବୁବେଳେ ଶସ୍ତା ଚାହାନ୍ତି । ଗମୁଲ୍ଲ ଅଛି ଶସ୍ତା । ପେଟ ପୂରି କରି ଦି ବେଳା ଦି ମୁଠି ଖାଏ, ସକାଳେ ଏଣୁଟଣୁ ଯାହା ହେଲେ ମୁଠିଏ କ ତାଟିଆଏ, ମାସ ଶେଷରେ ଦୁଇ ଟଙ୍କାରୁ ପାଞ୍ଚ ଟଙ୍କା ଦରମା—ରଖିବା ଲୋକର ତୁଣ୍ଡରୁ ଯାହା ବାହାରିଲା । ଚିରା ଫଟା କରି ଖଣ୍ଡେ ଅଧେ ଲୁଗା, ପ୍ୟାଣ୍ଟ୍ କ ଜାମା ଦେଲେ ଦିଅ, ନୋହିଲେ ନାହିଁ । ସେ ମଇଳା ହେଲେ, ଅଦେଖା ହେଲେ ଲାଜ ସରମ ତାକୁ ହୁଏ ନାହିଁ । ଯିଏ ତାକୁ ଆଶ୍ରା ଦିଏ, ଲାଜ ସରମର ଦାୟିତ୍ୱ ତାର ।

ଗମୁଲ୍ଲକୁ ଚାକିରି ଅଭାବ ହୁଏ ନାହିଁ । ଯେଉଁ ଟଙ୍କା ସେ ଦରମା ପାଏ, ମାସ ଆରମ୍ଭରୁ ସେତକ ଖର୍ଚ୍ଚ କରିଦିଏ । ଇଡ଼ଲି, ଚା, ପାନ, ସିନେମା ଦେଖା, ଜୁଆଖେଳ । ସାଙ୍ଗସାଥି ଯଦି ଜୁଟନ୍ତି, ସେମାନେ ଗମୁଲ୍ଲ ପଇସାରେ ଦିନେ ଅଧେ ମଉଜ ଉଡ଼ାନ୍ତି । ପଇସା ସରିଲେ ଗମୁଲ୍ଲ ପୁଣି କାମରେ ମନ ଦିଏ । ଦରମା କଥା ପଚାରିଲେ ଜବାବ୍ ଦିଏ ନାହିଁ । ସୀତାମ୍ମା କଥା ପଚାରିଲେ, କହେ, ଦାଦି ପାଖରେ ଅଛି ।

ଗମୁଲ୍ଲର ଦୋଷ, ସେ ଶୋଇବାକୁ ଭଲ ପାଏ । ସବୁବେଳେ ନିହେଁ— ସୂର୍ଯ୍ୟ ଅସ୍ତ ହେଲେ, ମାଲ ଦେଶରେ ବାଦଲ ପରି ତାକୁ ନିଦ ଘୋଟି ଅସେ । ଯେଉଁଠି ବସେ ସେଇଠି ସେ ଘୁମାଏଁ । ଘୁମାଇ ଘୁମାଇ ଟଳି ପଡ଼େ, ଶୋଇପଡ଼େ । ପାଟି ତୁଣ୍ଡ କଲେ ତାର କାନରେ ପଶେ ନାହିଁ । ବିଧା ଗୋଇଠା ମାଇଲେ ତାର ପଥର ଦେହରେ ଭେଦେ ନାହିଁ । ଓଜନିଆଁ ମାଡ଼ ପିଠିରେ ବସିଲେ ପ୍ରତିଡାଳର ଗୋଟିଏ ଜବାବ୍ ତୁଣ୍ଡରୁ ବାହାରେ, ଉଁ—ଉଁ—

ଘଣ୍ଟା ଦି ଘଡ଼ିକ ଥରେ ତାର ନିଦ ଭାଙ୍ଗେ । ସେତିକିବେଳେ ସେ ଖୋଜେ ଖାଇବାକୁ । ଯାହା ଦିଅ, ଓଜର ନାହିଁ ଅପତ୍ତି ନାହିଁ । ତରତର କରି ଉଦରସ୍ଥ କରେ । ସେତିକିବେଳେ କୌଣସି କାମ ବରାଦ କଲେ ସେ ନିଦରେ ଟଳି ଟଳି କରେ । କାମ ସରିଲେ ବିଛଣା । ସଙ୍ଗେ ସଙ୍ଗେ ନିଦ, ଘୁଙ୍ଗୁଡ଼ି । ଖାଇବାକୁ ଉଠାଇବାକୁ ତାକୁ ଘୋଷଡ଼ାଘୋଷଡ଼ି ନ କଲେ, କମ୍ବା ଘଣ୍ଟା ଦି ଘଡ଼ିରେ ନିଦ ଭାଙ୍ଗିଲା ବେଳକୁ ତାକୁ କିଛି ଖାଇବାକୁ ନ ଦେଲେ, ସେ ଅଭିମାନ କରେ ।

ମନର ଅଭିମାନ ମନରେ ମରେ । କାହାକୁ କିଛି କହେ ନାହିଁ । ପୁଣି ଶୋଇ-ପଡ଼େ । ନିଦରେ ହୁଏ ଅଚେତନ ।

ନିଜ ମନକୁ ସକାଳୁ ତାର ନିଦ ଭାଙ୍ଗେ ନାହିଁ । କେହି ଡାକିଲେ ସେ ଜବାବ ଦିଏ ନାହିଁ । ହାତ ଧରି ଟାଣିଲେ ହାତ ଟାଣି ନେଇ କୁଙ୍କୁଡ଼ିକାଙ୍କର ହୋଇ ଶୁଏ । ଛାଡ଼ି ଚାଲି ଆସିଲେ ପୁଣି ତାକୁ ହୁଏ ନିଦ । ମନକୁ ନିଦ ଭାଙ୍ଗେ ଦିନ ନଅଟାରେ । ଯାହା ଘରେ ସେ ଆଶ୍ରା ନିଏ, ସେ ତ ଆଉ ଏତେବେଳ ଯାଏ ଅପେକ୍ଷା କରିବେ ନାହିଁ, ତେଣୁ ରାମୁଲୁଙ୍କୁ ଉଠାଇବାକୁ ସବୁ ପ୍ରକାର ଉପାୟ ଉଦ୍‌ଭାବନ କରିବାକୁ ପଡ଼େ—ବିଧା, ଗୋଇଠା, ପାଣି ଛିଞ୍ଚା ଇତ୍ୟାଦି । କୁମ୍ଭକର୍ଣ୍ଣର ନିଦ ଭାଙ୍ଗେ । ଆଖି ମଳି ମଳି ଚାରିଆଡ଼କୁ ଚାହେଁ । କାନରେ ପଡ଼େ ଗୃହିଣୀଙ୍କର କଳକଳା ରଡ଼ି, ଗୃହସ୍ଥଙ୍କ ଗର୍ଜନ ତର୍ଜନ—ଆଜି ସେ ଯାଉ । କିଏ ତା ପଛରେ ଦିନରାତି ଲାଗିଥିବ ? ସେରେ ଚାଉଳର ଭାତ ଗିଳିବ । ହକ ଦରମା ନେବ । ଏତେ ଦହଗଞ୍ଜ କାହିଁକି ? ଆଜି ସେ ଯାଉ । ବାପ ଲୋ, କି ନିଦ ! ଏମିତି ଚାକର ନ ଥିବା ଭଲ ।

ରାମୁଲୁ ସବୁ ଶୁଣେ, ତୁନି ରହେ । ଭଡ଼ଭଡ଼ ହୋଇ ବାହାରି ପଡ଼େ କାମ ଉପରକୁ । ବିଚକ୍ଷଣ । ବିଜୁଳି । କିଏ କହିବ, ଏଇ ଟୋକାଟା ଉପରେ ଗାଳି ମାଡ଼ ବର୍ଷିଥିଲା ବଡ଼ିସକାଳେ ? କିଏ କହିବ ରାମୁଲୁ ଅଳସୁଆ, ଅଯୋଗ୍ୟ ଚାକର ? କେଉଁ କାମ ସେ ନ କରେ ? କେଉଁ ପାଇଟି ସେ ନ କରି ପାରେ ? ଯହିଁରେ ଲଗାଅ ସେ ଲାଗିଯିବ । ନା ଶବ୍ଦ ତୁଣ୍ଡରେ ନାହିଁ । ଘରର ସଭିଙ୍କ ପ୍ରୀତି ଲୋଭି । ସବୁ ଚିଜ ଉପରେ ଆଖି । ପିଢ଼ାରେ କାଉ ବସେଇ ଦେବ ନାହିଁ ।

ସକାଳ କଥା ସଞ୍ଜବେଳକୁ ସମସ୍ତେ ଭୁଲି ଯାଆନ୍ତି । ନିତି ସକାଳ, ନିତି ସଞ୍ଜରେ, ପୁଣି ନିତି ରାତି ଅଧରେ ଘରର ସମସ୍ତେ ବିରକ୍ତ ହୋଇ ଗର୍ଜନ ତର୍ଜନ କରି 'ରାମ ରାମ, ରାମୁଲୁ ରାମୁଲୁ' ବୋଲି ରଡ଼ି ଛାଡ଼ନ୍ତି । ଦଶ ପଚଶ ଡାକ ନୁହେଁ, ଶତ ସହସ୍ର ଡାକ । ଭଗବାନଙ୍କର କୃତି ଏ, କାହାର ଦୋଷ ଦେବ ? କଳିଯୁଗରେ କାମ ଭିଡ଼ରେ ଲୋକେ ରାମନାମ, ରାମଧୁନ ପାଶୋରିଲେଣି । ଭାଗ୍ୟବାନ ପୁରୁଷ ଯିଏ କେବଳ ସେଇ ପାଏ ରାମଲୁକୁ ଚାକର କରି । ଭଲରେ ନ ହେଲେ ମନ୍ଦରେ, ସ୍ନେହରେ ନ ହେଲେ ଘୃଣାରେ, ରାଗ ରୋଷରେ, ସ୍ଥିର ମନରେ ନ ହେଲେ ଅସ୍ଥିର ମନରେ, ଘରର ସମସ୍ତଙ୍କୁ ରାମଧୁନ ଭଜିବାକୁ ପଡ଼େ ତିନିଥର । ନିତି ଦସ୍ୟୁ ରତ୍ନାକରର କଥା ମନେ ପଡ଼େ ।

ଲାଗ ଲାଗ ଦୁଇ ଚାରିଦିନ ଶ୍ରୀ ରାମୁଲୁଙ୍କୁ ରାତି ଅଧରେ ନ ଉଠାଇଲେ, ଅବଶ୍ୟ ବଳପ୍ରୟୋଗ କରି ଗର୍ଜନ ତର୍ଜନ କରି, ଆଉ ସେ ଉପାସ ରହିଲେ, ନିଜ ମନକୁ ସେ ଘର ଛାଡ଼ି ଚାଲିଯାଏ । ଏଠି ପଟିବ ନାହିଁ । ଏମାନେ ଭକ୍ତ ନୁହଁନ୍ତି ।

'ରାମଧୂନ୍' କରି ଜାଣନ୍ତି ନାହିଁ । ଶ୍ରୀରାମ ଉପବାସ । ତେଣୁ ନୂତନ ଭକ୍ତ ଅନ୍ୱେଷଣ । ଡାକଲେ ଆଉ ନ ଶୁଣେ ।

ଚଉଦ ବର୍ଷର ଟୋକା ରାମୁଲୁ । ଜଣେ ଭକ୍ତକୁ ଛାଡ଼ି ଦୁଇ ଦିନ ହେଲା ବାହାରି ଆସିଛି । ପୂରା ମାସକର ଦରମା ଚାରୋଟି ଟଙ୍କା ଅଛି ଅଣ୍ଟାରେ । ସେତକ ନ ସରିବା ଯାଏ ନୂଆ ଘର ଅନ୍ୱେଷଣ କରିବା ଲୋଡ଼ା ପଡ଼ି ନାହିଁ । ଇଡ଼ିଲି, ଚା, ପାନରେ ଅନ୍ତତଃ ଚାରି ପାଞ୍ଚ ଦିନ ସୁଖରେ କଟିବ । ରାମୁଲୁ ଭାରି ଖୁସି । ରଜା ପୁଅକୁ ଖଜା ଖୋଇବାକୁ ସେ ପଚାରିବ ନାହିଁ ।

ଛତ୍ରପୁର ଦାଣ୍ଡର ଗୋଟିଏ ଶ୍ରେଷ୍ଠ କଫି ହୋଟେଲରେ ସେ ଇଡ଼ିଲି ଖାଉଛି । ରେଜା ପଇସା ଛାଣ୍ଡ । କାମିଜ ପକେଟରେ ହେଉଛି ଝମ୍‌ଝମ୍ । ତାରି ପରି ଆଉ କେତେ ଜଣ ବି ବସି ତାରି ପଇସାରେ ଇଡ଼ିଲି ଖାଉଛନ୍ତି । ବେଳ ହେବ ଚାରିଟା । ବିଚାର ପଡ଼ିଲା ଏବଂ ସ୍ଥିର ହେଲା ସମସ୍ତେ ଆଜି ସମୁଦ୍ର କୂଳକୁ ଯିବେ । ଖରାଦିନ ! ସମୁଦ୍ର ଗାଧୁଆ ବଡ଼ ମଉଜ । ସଞ୍ଜ ଆଗରୁ ସମସ୍ତେ ଫେରି ଆସିବେ ।

ଛତ୍ରପୁର ବଜାର ପାଖରୁ ସମୁଦ୍ର କୂଳ ଦେଢ଼ ମାଇଲ ବାଟ ହେବ । ଅଳ୍ପ ବାଟ ହେଲେ ବି ସିଧା ସଳଖ ଠୁଁ ଠୁଁ ଚାଲି ଯାଇ ହୁଏ ନାହିଁ । ସମୁଦ୍ର ଆଡ଼କୁ ପାଏ ବାଟ ଗଲେ ପଡ଼େ ଗୋଟାଏ ଝିଲ । ତା ନା ତାମ୍ପରା । ଚାରି ପାଞ୍ଚ ମାଇଲ ଲମ୍ବ, ଦୁଇ ଫର୍ଲଙ୍ଗରୁ ଚାରି ଫର୍ଲଙ୍ଗ ଚଉଡ଼ା । ଏ ପାଖ କୂଳର କଡ଼େ କଡ଼େ ଘଞ୍ଚ କଅଁ ବଣ । ଫୁଲ ଫୁଟେ । ଅର୍କ ଛଅରି ହୋଇ ପିମ୍ପାରେ ବନ୍ଦ ହୋଇ ଚାଲାନ୍ ହୁଏ ଉତ୍ତର ଭାରତକୁ । ଶ୍ରେଷ୍ଠ ଶ୍ରେଷ୍ଠ ଅନେକ କାଠୁଆ କୂଳରେ ଥାଏ । କିଛି ପଇସା ଦେଲେ ନାଉରୀ କାଠୁଆରେ ବସେଇ ତାମ୍ପରା ପାରି କରିଦିଏ ।

ରାମୁଲୁ ଓ ତା ସଙ୍ଗୀମାନେ ତାମ୍ପରା ପାରି ହେଲେ । କେତେ ବାବୁଭୟା, କେତେ ସ୍କୁଲ ଛାତ୍ର ମଧ୍ୟ ସେମାନଙ୍କର ଭଡ଼ା ନୌକାରେ ପାରି ହୋଇଛନ୍ତି । ତାମ୍ପରା ସେପାରି ଝାଉଁବଣ, ବାଜାଆମ୍ବ ଗଛ ବଣ । ବାଜାଆମ୍ବ ପାଚ ଗଛରେ ଲଦି ହୋଇଛି । ସୁଲୁସୁଲିଆ ପବନ । ଅଧ ମାଇଲରୁ ଅଧିକ ବାଲି ଚାଲିଲେ ଯାଇଁ ସମୁଦ୍ର ତଟ । ଲହଡ଼ିର ଗର୍ଜନ ଶୁଭୁଛି । ପାଣି ଦିଶୁ ନାହିଁ ।

ସମସ୍ତେ ଧାଇଁଲେ ସମୁଦ୍ର କୂଳକୁ । ଭାରି ମଉଜ । ପୂନେଇଁ ପାଖ ଜହ୍ନ କେତେଡ଼ ଉଜ୍ଜ୍ୱଳ ହୋଇ ଆକାଶ ଉପରକୁ ଉଠି ଆସିଲେ । ସଞ୍ଜ ଗଡ଼ିଗଲା । ସମସ୍ତେ ଫେରିଲେ । କେହି ରାମୁଲୁକୁ ଖୋଜିଲେ ନାହିଁ ।

ଏକ ସଙ୍ଗେ, ଅତି ପାଖରୁ ଯେତେବେଳେ ଶବ୍ଦ ଶବ୍ଦ କଣ୍ଠରେ ମେଘର ରଡ଼ି ପରି ଗୋଟିଏ ପ୍ରଶ୍ନ—ହୁ-କେ ହା—ରାମୁଲୁର କାନରେ ପଡ଼ିଲା, ସେ ଚମକି ଉଠିଲା । ଚାହିଁଲା, ଆଗରେ ସମୁଦ୍ର ଗର୍ଜୁଛି, ଲହଡ଼ି ପରେ ଲହଡ଼ି ମାଡ଼ି ଆସୁଛି, ଭାଙ୍ଗି ପଡ଼ୁଛି କୂଳରେ, ଝକ୍ ଝକ୍ ଦିଶୁଛି ଜହ୍ନ ଆଲୁଅରେ । ଉପରେ ନେଳିଆ ଆକାଶ । କେତେ ଉପରକୁ ଜହ୍ନ ଉଠିଲାଣି । ଦୁଇ ଆଡ଼କୁ ଚାହିଁଲା—ଲମ୍ବି

ଯାଉଛି ସମୁଦ୍ର କୂଳର ଧୂସର ବାଲି । ପଛକୁ ଚାହିଁଲି, ବାଲି ପାହାଡ଼ ପଛରେ ଅନ୍ଧାରିଆ ଝାଉଁ ବଣ, ଲଙ୍କାଆମ୍ବ ବଣ ।

କେହି କୁଆଡ଼େ ନାହାନ୍ତି ।

ହୁ-କେ-ହା—

ରାମୁଲି ଉଠିଲା । ମୁଣ୍ଡ ଘୂରିଗଲା । ସନ୍ଦେହ ହେଲା ସେ ଅଛି କି ନାହିଁ ! ବାହା ଭଡ଼ ତାର ପିଣ୍ଡରୁ ଅଧେ ପ୍ରାଣ ଶୋଷି ନେଇଥିଲା । ସେ ଯେ ବଞ୍ଚିଛି ଏହାର ପ୍ରମାଣ ଦେବାକୁ ମେ ଧାଇଁଲା—ବେଗରେ ଧାଇଁଲା, ଅନ୍ଧାର ବେଗରେ । ଧଇଁ ସଇଁ ହୋଇ ତାମରା କୂଳରେ ମିଳିଲା । କେହି କୁଆଡ଼େ ନାହିଁ । ଛତ୍ରପୁର ସହରର ଆଲୁଅ ମାଳ ଦିଶୁଛି । ଡାକିଲା ବଡ଼ପାଟି କରି, କେହି ଶୁଣିଲେ ନାହିଁ ।

ଦୁରଣା ।

ପାଖରୁ ବାଲିଆପଲ ଜବାବ ଦେଲେ, ବା-ହା—

ରାମୁଲି ହତାଶ ହେଲା ନାହିଁ । ପାଖ ଲଙ୍କାଆମ୍ବ ଗଛକୁ ଚାହିଁଲା ।

ନିଦ ଭାଙ୍ଗିଲା କାଉର ଡାକ ଶୁଣି । ଦିହଟା ଗରମ ଲାଗୁଛି । ରାମୁଲି ଆଖି ଖୋଲିଲା । ଗଛ ଉପରେ ସେ ରାତି କାଟିଛି । ଖରା ପଡ଼ିଲାଣି । ଆଗରେ ତାମରା । ପଛରେ ସମୁଦ୍ର ।

# ବ୍ରହ୍ମାଙ୍କ ପ୍ର-ପଣନାତି

ପାରଳାଖେମଣ୍ଡି ଯିବାର ଟ୍ରେନ ରେଲଗାଡ଼ି ଚାରିଟା ଛରିଶ ମିନିଟରେ ଷ୍ଟେସନ ଛାଡ଼ିଲା । ଗୁଣୁପୁର ଯିବ, ବାଉଣ ମାଇଲ । ଗୋଟିଏ ବୋଲି ଇଣ୍ଟର କ୍ଲାସ୍ ଡବା । ସେଥିରେ ମୋଟେ ଛ ସାତ ଜଣ ଆରୋହୀ । ମୁଁ ଓ ମୋର ବନ୍ଧୁ ପାଣି ଖବରକାଗଜରେ ମନ ଦେଲୁଁ । ମୁଁ ଯେତେବେଳେ ପାକିସ୍ଥାନ, ହିନ୍ଦୁସ୍ଥାନ, ଅଖଣ୍ଡ ସ୍ୱାଧୀନ ବଙ୍ଗଳା ବା ବିଖଣ୍ଡିତ ପଞ୍ଜାବ ଓ ବଙ୍ଗଳା ସମସ୍ୟାରେ ମନ ପ୍ରାଣ ଢାଳି ଦେଇଥିଲି, ସେତିକିବେଳେ ପାଣି ବାବୁ ଉତ୍ତେଜିତ ହୋଇ ମୋତେ ହଲେଇ ଦେଇ କହିଲେ—ଦେଖନ୍ତୁ, ଦେଖନ୍ତୁ ଏ ଟ୍ରେନ ସମ୍ବାଦ, କେଡ଼େ ଗୁରୁତର !

ସେ ଯେଉଁ ସମ୍ବାଦ ଆଡ଼କୁ ମୋର ଦୃଷ୍ଟି ଆକର୍ଷଣ କଲେ ତା ଉପରେ ଆଖି ପକେଇଲି—ମେଦିନାପୁର, ମେ ୨୨ ତାରିଖ । ମେ ୧୭ ତାରିଖରେ ମେଦିନାପୁର ଶାଳବଣୀଠାରେ ଘରପୋଡ଼ି ଓ ଲୁଟି ହୋଇ ଗଣ୍ଡଗୋଳ ଉପୁଜି-ଥିବାର ଖବର ମିଳେ—ଇତ୍ୟାଦ ।

ପଚାରିଲି, ଏଥିରେ ନୂଆ କଥା କଅଣ ଅଛି ? ଦେଶ ସାରା ଏମିତି ଗଣ୍ଡଗୋଳ ଗୁଣ୍ଡା ପ୍ରକୃତିର ଲୋକେ ଚଳେଇଛନ୍ତି । ଜୁନ୍ ୧୯୪୮ ପରେ ଏସବୁ ଥଣ୍ଡା ପଡ଼ିଯିବ । ସବୁଥିରେ ତୃତୀୟ ପକ୍ଷର ହାତ ଅଛି ବୋଲି ସମସ୍ତେ ଦୁଆ ଧରିଛନ୍ତି ।

ପାଣ୍ଡେ ମୁହଁ ଫଣ ଫଣ କଲେ । କହିଲେ ଅପଣ ବୁଝିଲେ ନାହିଁ ମୋ କଥା ! ଦେଖିଲେ, ଏ ଯେଉଁ ବିବୃତି ଦିଆ ହୋଇଛି, ତାର ସ୍ୱାକ୍ଷରକାରୀ କେଉଁମାନେ ?

ପଢ଼ିଲି—

୧ । କୁମାର ଚନ୍ଦ୍ର ଜାନା, ପ୍ରେସିଡେଣ୍ଟ ଡି. ସି. ସି. ୨ । ଗୁରୁଚନ୍ଦ୍ର ମହାନ୍ତି, ଏମ୍. ଏଲ୍. ଏ., ସେକ୍ରେଟେରି ଡି. ସି. ସି, ୩ । ନିକୁଞ୍ଜ ବିହାରୀ ମାଇତି, ଏମ୍. ଏଲ୍. ଏ. ୪ । ଆନନ୍ଦ ପ୍ରସାଦ ଚଉଧୁରୀ ଏମ୍. ଏଲ୍. ଏ ।

ବନ୍ଧୁ ପଚାରିଲେ, ଏମାନେ କଣ ଓଡ଼ିଆ ନା ବଙ୍ଗାଳି ?

ମୁଁ କହିଲି, ଅପଣ ସେ କଥା ଭାବୁଛନ୍ତି ?

ନିଶ୍ଚୟ । ବଙ୍ଗଳା ସ୍ୱାଧୀନ ଅଖଣ୍ଡ ହୋଇ ରହୁ କି ବିଭାଗ ହୋଇ ପାକିସ୍ଥାନ ହିନ୍ଦୁସ୍ଥାନ ହେଉ ସେଥିରେ ଆମର ଯାଏ ଆସେ କଣ ? ଆମେ ଚାହୁଁ ଆମର ମେଦିନୀପୁର ଜିଲ୍ଲା, ବାଙ୍କୁଡ଼ାର ଦକ୍ଷିଣଭାଗ ଓ ····· ।

ସେଠିକି ଥାଉ ମହାଶୟ, ସେମାନଙ୍କୁ ପଚାରି ଅପଣଙ୍କ ଦାବୀ ସାବ୍ୟସ୍ତ କରିବେ । ସେମାନେ ଯଦି ଆସିବାକୁ ଅମଙ୍ଗ ହୁଅନ୍ତି, ଅପଣ ଘର ପୁଅକୁ ଘରକୁ ଫେରାଇ ଆଣିବାକୁ ବ୍ୟଗ୍ର ବ୍ୟାକୁଳ ହୋଇ କାନ୍ଦି ମୁଣ୍ଡ ବାଡ଼େଇଲେ ଲାଭ କଣ ?

ବନ୍ଧୁ ତୁନି ରହିଲେ । ଦୁଃଖ ଓ ନୈରାଶ୍ୟରେ ତାଙ୍କର ମୁହଁ ମଉଳିଲା । ଟିକିଏ ତୁନି ରହି ଦୀର୍ଘଶ୍ୱାସ ଛାଡ଼ି କହିଲେ, ହତଭାଗ୍ୟ ଦେଶ ଏ ଓଡ଼ିଶା ଦେଶ, ହତଭାଗ୍ୟ ଜାତି ଏ ଓଡ଼ିଆ ଜାତି । ଧ୍ୱଂସ ଅନିବାର୍ଯ୍ୟ । ଜାତିଟା ଲୋପ ହେବାକୁ ବେଶି ଦିନ ଲାଗିବ ନାହିଁ । ମୁଁ କୌଣସି ମତାମତ ପ୍ରକାଶ ନ କରି ଖବର କାଗଜରେ ମନଦେଲି । ସୀତାପୁର (ମ) ଷ୍ଟେସନ ହେଲା । ପାଣ୍ଡେ ବାବୁ ପ୍ଲାଟ୍‌ଫର୍ମ ଉପରକୁ ଓହ୍ଲେଇ ସପୁରି ପଣସ ମୂଲ କଲେ ।

ମୋ କଡ଼ ବେଞ୍ଚ୍‌ରେ ବସିଥିଲେ, କୋଡ଼ିଏ ଏକୋଇଶି ବର୍ଷର ଜଣେ ଯୁବକ, ପ୍ୟାଣ୍ଟ ପିନ୍ଧା । ତାଙ୍କ ପାଖକୁ ସତର ଅଠର ବର୍ଷର ଜଣେ ଯୁବତୀ । ଦୁହେଁ ତେଲଗୁ ଭାଷାରେ କଣ କଥାଭାଷା ହେଲେ—ବୁଝି ପାରିଲି ନାହିଁ । ଝିଅଟି ସୁନ୍ଦରୀ । ଅଧୁନିକା । ଇଂରେଜୀ ଖବରକାଗଜ ଖଣ୍ଡେ ହାତରେ ଧରିଛି । ବେଳେ ବେଳେ ପଢ଼ିଲା ପରି ଆଖି ବୁଲାଉଛି ।

ଗାଡ଼ି ଗ୍ରଡ଼ିଲା । ପାଦ୍ର ବାବୁ ସପୁରି ଧରି ଗାଡ଼ି ଭିତରକୁ ଆସିଲେ । ମୋ ପାଖରେ ବସି ପଚାରିଲେ, ଛୁରି ରଖିଛନ୍ତି ? ମୁଁ ନାହିଁ କଲି । ତାଙ୍କ କଡ଼ ବେଞ୍ଚରେ ଜଣେ ସାହେବ ପୋଷାକ ପିନ୍ଧା କଲା ମଚମଚ ସ୍ଥୂଳକାୟ ଭଦ୍ରଲୋକ । ସେ ପକେଟରୁ ଛୁରି କାଢ଼ି ପାଦ୍ରବାବୁଙ୍କୁ ଦେଲେ । ପାଦ୍ରବାବୁ ସପୁରିରୁ ଚୋପା ଛଡ଼ାଇ ଖଣ୍ଡ ଖଣ୍ଡ କରି କାଟି ଖବର କାଗଜରେ ରଖିଲେ । ହାତ ପୋଛି ଖବରକାଗଜଟି ପ୍ରଥମେ ସେ ଝିଅଟି ପାଖକୁ ନେଇ ଆଗରେ ଧରି କହିଲେ, ନିଅନ୍ତୁ । ଝିଅଟି ସଙ୍କୋଚ କରୁଥିଲା । ପାଖ ଯୁବକର ଆଖିରେ ଅନୁମତିର ଆଭାସ ପାଇ ଖଣ୍ଡେ ସପୁରି ହାତରେ ଉଠାଇ ନେଲା । ତାପରେ ସେ ଯୁବକ, ତା ପରେ ମୁଁ, ସେଇଠୁ ମୋଟାବାବୁ, ଶେଷକୁ ପାଦ୍ର ବାବୁ ।

ହଠାତ୍ ଗମ୍ଭୀର ବଲ ମଝିରେ ଗାଡ଼ି ରହିଲା । ସଞ୍ଜ ହେଲାଣି । ପାଦ୍ରବାବୁ କହିଲେ, ସର୍ବନାଶ ! ଇଞ୍ଜିନ ଖରାପ ହେଲାଣି । ପାରଲାଖେମୁଣ୍ଡି ଗାଡ଼ିର ଏଇଟା ଗୋଟାଏ ରୋଗ । ଦେଖନ୍ତୁ କେତେ ରାତି ହେଉଛି ! ଗୁଣୁପୁରରେ ପହଞ୍ଚିଲା ବେଳକୁ ରାତି ଅଧ ହେବ ।

ଗାଡ଼ିରେ ଆଲୁଅ ନାହିଁ । ପାଦ୍ରବାବୁ ଲଣ୍ଠଣ ଲଗାଇଲେ । ମୋଟା ବାବୁ ଯୁବକଟିକୁ ଇଂରେଜୀ ଭାଷାରେ ପଚାରିଲେ, ଆପଣ ଯିବେ କୁଆଡ଼େ ?

ଯୁବକ ଉତ୍ତର ଦେଲେ, ଗୁଣପୁର ।

ମୁଁ ପଚାରିଲି, ଗୁଣପୁରରେ ଆପଣ କଣ କରନ୍ତି ?

ମୋ ଭାଇ ସେଠି ପ୍ଲିଡ଼ର ।

ପ୍ଲିଡର ? ତାଙ୍କ ନାମ କଣ ?

ରାମା ରାଓ ପଟ୍ଟନାୟକ ?

ଆପଣ ଓଡ଼ିଆ ତେବେ ?

ନା, ଆମେ ତେଲଙ୍ଗା କରଣ ।

ପାଦ୍ରବାବୁ ଚହଙ୍କି ଉଠିଲେ—ହାନ୍ ? ତେଲଙ୍ଗା କରଣ ? ତେଲଙ୍ଗା କରଣ କଣ ? କହନ୍ତୁ ଶ୍ରେଷ୍ଠ କରଣ । ଆପଣଙ୍କ ଘର କେଉଁଠି ?

(ଇଂରେଜୀ ଭାଷାରେ) ପାରଲାଖେମୁଣ୍ଡି ।

ଓଡ଼ିଆ ଜାଣନ୍ତି ନାହିଁ ?

ଟିକେ ଟିକେ ଶିଖିଛି ।

ଆପଣଙ୍କର ସ୍ତ୍ରୀ—?

ସେ ମୋର ଭଉଣୀ ହୁଅନ୍ତି । ସେ ମୋଟେ ଜାଣନ୍ତି ନାହିଁ । ତାଙ୍କ ଘର ପାର୍ବତୀପୁର ପାଖରେ ।

ମୁଁ ପଚାରିଲି, ଆପଣଙ୍କ ଘର ପାରଲା, ତାଙ୍କ ଘର ପାର୍ବତୀପୁର । ସେ ଆପଣଙ୍କର ଭଉଣୀ କିପରି ହେଲେ ? ଯୁବତୀଟି ମୁହଁ ବୁଲାଇ ହସିଲା । ମୁହିଁ ନାଲି

ଦେଲା । ଆଖି ତଳକୁ ନୋଇଁଲା । ଯୁବକ ଖଣ୍ଡିଖଣ୍ଡିଆ ଓଡ଼ିଆ ଭାଷାରେ ଥଙ୍ଗେଇ ଥଙ୍ଗେଇ ଉତ୍ତର ଦେଲା, ସେ ମୋ ବଡ଼ ଭାଇଙ୍କ ଶଳାର ସ୍ତ୍ରୀ । ଯୁବକଟି ହସିଲା । ଯୁବତୀ ମଧ୍ୟ ।

ଆପଣଙ୍କର ଭାଇଙ୍କ ଶଶୁରଘର କେଉଁଠି ?

ବିଜୟାନଗରମ୍ ଜିଲ୍ଲା, କୋଠବୋମାଳି ।

ମୁଁ କହିଲି, ବୋମାଳି ଗାଁ ତ ଶ୍ରେଷ୍ଠ କରଣମାନଙ୍କର ପୀଠ ।

ତେବେ ଆପଣଙ୍କର ଭଉଣୀ ନିଶ୍ଚୟ ଓଡ଼ିଆ ଜାଣନ୍ତି । ଯୁବତୀଟିଙ୍କ ଉଦ୍ଦେଶ୍ୟରେ ପଚାରିଲି, ଆପଣଙ୍କର ନାମ କଣ ?

ଲାଜେଇ ଲାଜେଇ କହିଲା, ସୁଭଦ୍ରାମ୍ମା ।

ଆପଣ ତେବେ ଓଡ଼ିଆ ଜାଣନ୍ତି ?

ଟିକେ ଟିକେ ଜାଣେ ।

ଯୁବକଟି ଆଶ୍ଚର୍ଯ୍ୟ ହୋଇ ଅନେଇଲା ସୁଭଦ୍ରାକୁ । ଗୋଟାଏ ତଥ୍ୟ ଆବିଷ୍କାର କଲା ପରି ପଚାରିଲା, ଅରେ, ତମେ ଓଡ଼ିଆ ଜାଣ ? ଏ କଥା ତ ମତେ ଜଣା ନ ଥିଲା । ଝିଅ ହସିବାକୁ ଲାଗିଲା ।

ପାତ୍ରବାବୁ କହିଲେ, ଯାହାହେଉ ଆଜି ଆପଣ ଜାଣିଲେ । ମୋ ଘର ଭିଜାଗାପାଟଣାରେ । ମୋ ମାମୁଘର ସାଲୁରରେ, ମୋ ଶଶୁର ଘର କୋଠ-ବୋମାଳିରେ । ମୁଁ ବି ଶ୍ରେଷ୍ଠ କରଣ । ମୋ ମା ଜାଣନ୍ତି ଓଡ଼ିଆ । ମୋ ସ୍ତ୍ରୀ ଜାଣନ୍ତି ଓଡ଼ିଆ । ଆମ ଘରେ ଓଡ଼ିଆରେ କଥାଭାଷା । ସେଥିରେ ଶତକଡ଼ା ପଚିଶ ତେଲୁଗୁ ମିଶା । ସେ ଭାଷାକୁ ଆମେ ଓଡ଼ିଆ ଭାଷା କହୁ । ଜାଣନ୍ତି ମହାଶୟ, ତେଲୁଗୁ କରଣ ଆମେ କେତେ ବଡ଼ ଜାତି ? ମହାପ୍ରତାପୀ ରାଜା ପ୍ରତାପରୁଦ୍ର ଦେବଙ୍କ ମହାଶକ୍ତି-ଶାଳୀ ମହାପଣ୍ଡିତ ମହାପ୍ରଭୁ ଚୈତନ୍ୟ ଦେବଙ୍କର ମହାଭକ୍ତ ରାଜା ରାମାନନ୍ଦ ରାୟ ପଟ୍ଟନାୟକ ଆମର ପୂର୍ବପୁରୁଷର ଲୋକ । ଓଡ଼ିଶାର ଶେଷ ସ୍ୱାଧୀନ ସମ୍ରାଟ କଳିଙ୍ଗାଧିପତି ଶ୍ରୀ ଶ୍ରୀ ମୁକୁନ୍ଦ ହରିଚନ୍ଦନ ଜଗଦେବ ପଟ୍ଟନାୟକ ଶ୍ରେଷ୍ଠ କରଣ । ସେ ଆମର ପୂର୍ବପୁରୁଷ । ଏତେ ବଡ଼ ବଂଶ ଆଉ ଏତେ ବଡ଼ ଜାତିର ସନ୍ତାନ ହୋଇ ନିଜକୁ ଭୁଲି ଆପଣ ଆଜି କହୁଛନ୍ତି ଆପଣ ତେଲଙ୍ଗା କରଣ ? ଲଜ୍ଜାର କଥା !

ଯିଏ ଓଡ଼ିଆ ଭାଷା ନ ଜାଣେ ?

ଉତ୍ତେଜିତ ପାତ୍ର ବାବୁ ହାଙ୍କିଲେ, ସେ କଣ ବାପା ମା ପୂର୍ବପୁରୁଷଙ୍କୁ ଭୁଲିଯିବ ? ସେ ନିଜକୁ ଓଡ଼ିଆ ବୋଲି ବିଶ୍ୱ ଆଗରେ ପରିଚୟ ଦେଉ, ପୁଣି ମୁଣ୍ଡ ନୁଆଇଁ କହୁ, ମୁଁ ଓଡ଼ିଆ ଭାଷା ଜାଣେ ନାହିଁ ।

ଏତେବେଳକେ ମୋଟା ବାବୁଟି କହିଲେ, ଓଡ଼ିଆ ବୋଲି ପରିଚୟ ଦେଲେ ଆମକୁ ଚାକିରି ଦେବ କିଏ ଆଜ୍ଞା ? ଇଏତ ଆଉ କପିଳେନ୍ଦ୍ର

ପୁରୁଷୋତ୍ତମ କି ପ୍ରତାପରୁଦ୍ରଙ୍କର ଅମଳ ନୁହେଁ ? ୧୦୪୨ରୁ ଆରମ୍ଭ କରି ୧୫୬୮ ସାଲ ଯାଏ ଯେତେବେଳେ ଆମର ପୂର୍ବପୁରୁଷମାନେ ହୁଗୁଳି ନଦୀରୁ କୃଷ୍ଣା ନଦୀ ଯାଏ ବିରାଟ ସାମ୍ରାଜ୍ୟ ଶାସନ କରୁଥିଲେ ସେଇଠିକ ବେଳେ, ସେହି ଗୌରବମୟ ପାଞ୍ଚଶ ବର୍ଷ ଭିତରେ ଉତ୍ତର ଖଣ୍ଡରୁ କେଉଁ କରଣ ବଂଶ କେତେ-ବେଳେ ଆସି କେଉଁ ଗ୍ରାମ ବା ପଟ୍ଟର ନାୟକ ନିଯୁକ୍ତ ହୋଇ ରହିଥିଲେ ଏ କଥା କିଏ କହି ପାରିବ ? ଶୁଣନ୍ତୁ ମହାଶୟ, ମୋ ଘର ପାଲକୁଣ୍ଡା । ବର୍ତ୍ତମାନ ବି ଆପଣ ଦେଖିବାକୁ ପାଇବେ, ଭିଜାଗାପଟ୍ଟମ ଜିଲ୍ଲାର ଅଧିକାଂଶ ଗ୍ରାମର କରଣ ଏଇ ପଟ୍ଟନାୟକ ଜାତି । ଘରେ ଯେଉଁ ଭାଷା କହନ୍ତି ସେଥିରେ ଅଧେ ଓଡ଼ିଆ ଅଧେ ତେଲଙ୍ଗା ମିଶା ।

ମୁଁ ଆଶ୍ଚର୍ଯ୍ୟ ହୋଇ ତାଙ୍କୁ ଚାହିଁଲି । ପଚାରିଲି, ଆପଣଙ୍କ ନାମ ? କହିଲେ ଜେ. କେ. ପଟ୍ଟନାୟକ ଅର୍ଥାତ୍ ଜଗୁ ମହାନ୍ତି କୃଷ୍ଣା ରାଓ ପଟ୍ଟନାୟକ । ଜଗୁ ମହାନ୍ତିଟା ଆମ ଘର ନାମ । ଶୁଣିଛି, ସେହି ଆମର ପୂର୍ବପୁରୁଷ । ସେ ଉତ୍ତର ଖଣ୍ଡରୁ ଆସି କେତେ ଶହ ବର୍ଷ ପୂର୍ବେ କେଜାଣି, ଦକ୍ଷିଣାଞ୍ଚଳରେ ପଟ୍ଟନାୟକ କାମ କରୁଥିଲେ । ସବୁ ସିନା ଭୁଲିଛୁ ଆଜ୍ଞା, ପୂର୍ବପୁରୁଷର ନାମଟା ରଖିଛୁ । ଆମର ପୁରୋହିତ ମିଶ୍ରାଲୁ ସୂର୍ଯ୍ୟନାରାୟଣା ଅର୍ଥାତ୍ ସୂର୍ଯ୍ୟନାରାୟଣ ମିଶ୍ର । ତାଙ୍କ ସମ୍ବନ୍ଧ ଉତ୍ତଲୁ କାମେଶ୍ୱର ରାଓ ଅର୍ଥାତ୍ କାମେଶ୍ୱର ହୋତା । ଏମିତି ଅବତାର ଆମର ଚାଲିଛି ।

ପଚାରିଲି, ଆପଣ କଣ କରନ୍ତି ?

କହିଲେ, ମୁଁ ସ୍କୁଲ ମାଷ୍ଟର, ହାଇସ୍କୁଲର । ପିଲାଙ୍କୁ ଇତିହାସ ପଢ଼ାଏ ପୁଣି ତେଲୁଗୁ ସାହିତ୍ୟ ବି ଶିଖାଏ । ମୋର ଅନ୍ୟ ନାମ ଜେ: କିଷ୍ଟା ରାଓ ।

ପାହିବାବୁ କେତେବେଳଠୁ ତୁନି ରହିଥିଲେ । ଏତେବେଳକେ ହାକିଲେ—ରଖନ୍ତୁ ଆପଣଙ୍କର ବୀରତ୍ୱ । ମୁଁ ଅନୁରୋଧ କରୁଛି, ନିଜକୁ ନିଜେ ଠକନ୍ତୁ ନାହିଁ ।

କୃଷ୍ଣା ରାଓ କହିଲେ, ନିଜକୁ ଠକୁ ନାହିଁ ତ, ଅନ୍ୟକୁ ଠକୁଛୁଁ । ଶୁଣନ୍ତୁ, ମୁଁ ଯେତେବେଳେ ମାନ୍ଦ୍ରାଜରେ ପାଠ ପଢ଼ୁଥିଲି, ହଠାତ୍ ଦିନେ ମୋର ଜଣେ ବନ୍ଧୁଙ୍କର ନାମ ଶୁଣିଲି । ସେ ମୋର ସହପାଠୀ । ତାଙ୍କ ନାମ ଏନ୍. ରାଜଭୂଷଣନ୍ । ସେ ତାମିଲ୍ କରଣ । ଆଶ୍ଚର୍ଯ୍ୟ ହେଲି ମହାଶୟ । ଦିନେ ତେଲୁଗୁରେ ପଚାରିଲି । ସେ ବୁଝିଲେ ନାହିଁ । ଇଂରେଜୀରେ ପଚାରିଲି, ଆପଣଙ୍କ ନାମ କଣ ? ସେ କହିଲେ, ନର-ମହାନ୍ତି ରାଜଭୂଷଣ ପଟ୍ଟନାୟକ । ଘର ସେଲମ୍ ଜିଲ୍ଲା । ତାଙ୍କର ପରି ଅନେକ ତାମିଲ କରଣ ରାମେଶ୍ୱର ଯାଏ ଅଛନ୍ତି । ନିଜ ଭିତରେ ବନ୍ଧୁ ବାନ୍ଧବ କରନ୍ତି । ଓଡ଼ିଆ କି ତେଲଙ୍ଗା ଭାଷା ଜାଣନ୍ତି ନାହିଁ ।

ପାଳବାବୁ ଦୀର୍ଘଶ୍ୱାସ ଛାଡ଼ିଲେ ।

କୃଷ୍ଣା ସାଓ କହିଲେ, ୧୯୪୭ ସାଲ ହେଲା ମହାଶୟ । ଓଡ଼ିଆ ଜାତିର ଗୌରବମୟ ଇତିହାସର ଗୁରୁଶହ ବର୍ଷ ଆଗେର ଅସିନ୍ତାସି । ଭାଷା ପଛକ୍କୁ ଭୁଲ୍ନିଁ, ପୂର୍ବ ପୁରୁଷକୁ ଭୁଲିନାହୁଁ । ଉତ୍ତରରେ ଅପଣଙ୍କର ମେଦିନୀପୁରରେ, ସେମାନେ ଭାଷା ନ ଭୁଲି ମଧ୍ୟ ବଙ୍ଗାଳିଙ୍କ ଭରରେ ପୂର୍ବପୁରୁଷଙ୍କୁ ଭୁଲିଲେଣି । ଦୁଃଖ ନାହିଁ ମହାଶୟ, ସମସ୍ତେ ଅମେ ବ୍ରହ୍ମାଙ୍କ ପ୍ର-ପଣନାତି ।

# ପ୍ରତିକାର

ମଧୁ, ଛି ଏଡ଼କି କୁଳାଙ୍ଗାର ରେ··· ! ଆଜି ଯଦି ତୋର ବାପା ଥାଆନ୍ତେ··· ! କଥାଟା ମାଆଙ୍କ ତୁଣ୍ଡରେ ଅଧା ରହିଗଲା । ତାଙ୍କର ଦୁଇ ଆଖିରୁ ଲୁହଧାର ଝରିବାକୁ ଲାଗିଲା ।

ସଞ୍ଜବୁଡ଼ । ନଳଟିଏ ବାରଣ୍ଡାରେ ଜଳୁଛି । ମା କାନ୍ଥକୁ ଆଉଜି ମୁଣ୍ଡରେ ହାତ ଦେଇ ତଳକୁ ମୁହଁପୋତି ବସିଛନ୍ତି । ଆଖି ଆଗରେ ଖଣ୍ଡେ କାଗଜ । ଟିକିଏ ରହି ପୁଣି ବ୍ୟସ୍ତ ହୋଇ ସେ କହିଲେ, ସତର ଅଠର ବର୍ଷର ଟୋକାଟା ତୁ, ବୁଦ୍ଧିଶୁଦ୍ଧି ତୋର ଚଳାରେ ପଶିଲା । ଶେଷକୁ ମୋ ମୁହଁରେ କାଳି ବୋଳିଲୁ ରେ ଅଲାଜୁକ !

ତଳକୁ ମୁହଁପୋତି ମୁଁ ଲାଜରେ ସଢ଼ି ଯାଉଥାଏଁ । ବାଟଘର ଦ୍ୱାରବନ୍ଧ ମାଡ଼ି ବସିଛି ରେଣୁ ।

ମା ଗର୍ଜି ଉଠିଲେ, ହଇରେ, ରେଣୁ କିଏ, ଆଉ ସେମି କିଏ ରେ ? ରେଣୁ ଯେମିତି ତୋର ଭଉଣୀ, ସେମି ସେମିତି; ନ ହେଲା ବା ଏକା ନାହିଁ ଦ ଖଣ୍ଡ । ତୋର ଏତେ ସାହସ ରେ···! ଛି ! ସେମି ବୋଉ ଦପଦପରେ ଆସି ଏ କାଗଜଖଣ୍ଡ ମୋତେ ଦେଇ କହିଗଲେ, ଭଉଣୀ, ପାଞ୍ଚବର୍ଷ ହେଲା ଅମେ ଆସି ତମର ଏ ଘରେ ଭଡ଼ା ରହିଲୁଣି । ତମର ଆଗରେ ସେମି ମୋର ନଙ୍ଗଳା, ମୋର ଆଗରେ ମଧୁ ତମର ପିଲା । ତାକୁ ମୁଁ ପୁଅ ପରି ଦେଖେଁ, ଶେଷକୁ ଛି··· ଛି···! ସେମି ବୋଉ କାନ୍ଦି କାନ୍ଦି କହିଲେ, ତା ବାପର ତ ଓକିଲ ବେଉସା, ଯେଉଁଠି ରହିଲେ ପସରି ମେଲି ବସିବା କଥା; ଆଉ ଏଠି ରହି ହବନି ଭଉଣୀ ! କାଲି ସକାଳୁ ତମ ବସା ଛାଡ଼ିଯାଉଛୁ ।

ଅରେ ମଧୁଆ, ତୋ ପାଇଁ ମୁଁ ଯାଉଛି କେଉଁଠି କୂଅକୁ ଡେଇଁ ମରିବି; ତୋ ଜାଲା ସହି ପାରିବନି ଆଉ । ମା ତୁନି ହେଲେ ।

ଲାଜରେ ମୋ ମୁଣ୍ଡ ସତେ କି ଛିଣ୍ଡି ପଡ଼ିବ ! ଆକାଶଟା ଯଦି ମୋ ମୁଣ୍ଡ ଉପରେ ଅଜାଡ଼ି ହୋଇ ପଡ଼ନ୍ତା ସେତେବେଳେ ! ଏଡ଼ିକି ଓଲୁ ସେମିଟା !

ମା ଶୁଣି କହିଲେ, ହଇରେ, ତୁ ଏଡ଼େ ବଗୁଲିଆ । ସେମିଟି, ଆହା, କେଡ଼େ ସୁଧାର ପିଲା, କେଡ଼େ ଭଲ ପିଲା ସେ । ଚଉଦ ବରଷର ଝିଅ, ରେଣୁ ସାଙ୍ଗର, କାନ୍ଦୁଛି ଯେ···ଓଃ—ଗଛରୁ ପତର ଝଡ଼ିବ । ସେମି ବୋଉ ଯେତେବେଳେ ଏ କାଗଜଖଣ୍ଡି ତା ବହି ଭିତରୁ କାଢ଼ି, କାନ ଧରି ତାକୁ ପଚାରିଲେ, ବିଚାରି ଆଖି ତରଛି ଘଡ଼ିଏ କାଳ ଚାହିଁ ରହିଲା । ପିଲା ଲୋକ, ଛନ୍ଦମନ୍ଦ କି ଜାଣେ ! ଠକ୍ ଠକ୍ ଲୁହ ଗଡ଼ିଲା ତା ଆଖିରୁ । ଏଁ, ମଧୁଭାଇ ଏ ଚିଠି ଲେଖିଛି !

ଏତେ ଦୁଃଖ, ଏତେ ଭୟ ଭିତରେ ବି ମୋତେ ଟିକିଏ ଆମୋଦ ଲାଗିଲା । ସେମି କୁଆଡ଼େ ଅବାକାବା ହୋଇ ଘଡ଼ିଏ ଚାହିଁ ରହିଲା ମୋ ଚିଠିକି । ଆହା ! କେଡ଼େ ସରଳ ! ସତେ ଯେମିତି ମୋର ଏ ଚିଠିଟା ତାକୁ ନୁଆ । କାନ୍ଦିବାର କଥା, କାନ୍ଦିଲା । ଭୟରେ ନା ଅଭିମାନରେ ନା ଆଉ କାହିଁକି ? ଏଡ଼ିକି ଓଲୁ ଏ ବୁଢ଼ୀଗୁଡ଼ାକ ! ଗୋଟାଏ ହାତରେ ତାଳି ବାଜେ ? ଆଉ ପହିଲି ଚିଠିଟାରେ ମଧୁର ଏତେ ସାହସ ହୁଅନ୍ତା ?

ମା ନରମ ହୋଇ କହିଲେ, ମଧୁ, ଯାହା ହବାର ତ ହୋଇ ସାରିଛି । ପିଲା ମନ ତୋର, ବଗୁଲିଆ ବଜାଣି ଟୋକାଙ୍କ ସଙ୍ଗେ ମିଶି ନିଜକୁ ଆଉ ନଷ୍ଟ କରି ଦେ ନା ରେ । ମୋ ବାପା, ମୋ ଧନ ! ଭଲ ପିଲା ତୁ, ପରୀକ୍ଷା ଦେଇଛୁ, ପାଶ୍ କଲେ କଲେଜରେ ପଢ଼ିବୁ । ଏମିତି ଚଗଲା ବୁଦ୍ଧି କଲେ ଲୋକେ ଘୃଣା କରିବେ; ପାଖରେ ପୂରାଇବେ ନାହିଁ । ଦୁନିଆରେ ମଣିଷ ହୋଇ ଚଳିବୁ କେମିତି ରେ ! ଛି ବାପା ।

ମାଆଙ୍କ କଅଁଳ କଥାରେ ମୋତେ କାନ୍ଦ ମାଡ଼ିଲା । ଆହା ! ମୋ ଉପରେ କି ବିଶ୍ୱାସ, କି ଆଶା ତାଙ୍କର !

ଏଥିପାଇଁ ଦାୟୀ କିଏ ?

ଜହ୍ନରାତି । କୋଠା ଉପରେ ସେ ଦିନ ସେ ମୋ ଆଡ଼କୁ ଚାଳି ପଡ଼ି କହିଲା, ଭାରି ମୁଣ୍ଡ ବିଥାଉଛି ମଧୁଭାଇ, ଟିକିଏ ଚିପି ଦିଅନି । ଆରମ୍ଭ ତ ସେଇଠୁ ।

ମା କହିଲେ, ବାପା, ଯାହା ହେବାର ତ ହୋଇ ସାରିଛି, ଯେତେ ଗାଳି ବାଦାରି ହେଲେ କି ଆଉ ଫୋପାଡ଼ିଲା କାଣ୍ଡ ନିଜ ବାଟରେ ଫେରିଆସିବ ? ସେମି ମନରେ, ତା ବୋଉ ମନରେ ତୋ ନେଇ ଯେଉଁ ଦୁଃଖ ହୋଇଛି, ସେ ଦୁଃଖକୁ ଦୂର ନ କଲେ କେଉଁ ମଣିଷପଣିଆଟା ତୋର ରହିବ ? ତୁ ଆଜି ନିଜେ ଯାଇ

ପେମିବୋଉର ଗୋଡ଼ଧରି କ୍ଷମା ମାଗ । ପେମିକୁ କ୍ଷମା ମାଗି କହ, ତୁ ତାକୁ ଅଜାଣତରେ ଯେଉଁ ଅପମାନ ଦେଇଛୁ, ସେଥିପାଇଁ ତୁ ଦୁଃଖିତ । ସେ ଯେପରି ତୋ ଅପରାଧ କ୍ଷମା କରେ ।

ଅପରାଧ ତ ଏକା ମୋର ନୁହେଁ, ମୁଁ କାହିଁକି କ୍ଷମା ମାଗିବି ? ପେମିବୋଉ ଖୁଡ଼ୀର ଗୋଡ଼ ଧରିବାକୁ ମୋର ଆପତ୍ତି ନ ଥିଲା । ଯଦି ସେମାନେ ଏହି ରାଗରେ ବସା ଛାଡ଼ି ଚାଲିଯାଆନ୍ତି, ମାସକୁ ମାସ ଭଡ଼ା ( କମ୍ ନୁହେଁ, ପନ୍ଦର ଟଙ୍କା ) ଲୋକସାନ ହେବ । ଆଉ ଜଣେ ଭଡ଼ାଟିଆ ନ ମିଳିବାଯାଏ ପୁଣି ବାର ଦିଇଗଣ । କିନ୍ତୁ ପେମିଠାରୁ କ୍ଷମା ? ଯେ ନିଜେ ଚୋର, ତାରି ପାଖରେ, କାହିଁକି ?

ମା ପଚାରିଲେ, ଯିବୁଟି ବାବୁ ? ନହି ତୋତେ ଲାଜ ମାଡ଼ୁଛି ମୁଁ ସାଙ୍ଗରେ ଯିବି । ତୋ ସଙ୍ଗେ ମୁଁ ବି ତାଙ୍କର ଗୋଡ଼ ଧରିବି । ନିର୍ଲଜ କାମ ତ କରିଛୁ, ଘୋଡ଼ାଇବାକୁ ବସିଲେ କଥା ଲୁଚିବ ନାହିଁ ।

ଏତେ ଶୀଘ୍ର ମାଆଙ୍କ କଥାରେ ରାଜି ହେବାକୁ ମୋତେ ଖରାପ ଲାଗିଲା । ମା କହିଲେ, ରାତି ବେଶି ହେଲାଣି ମଧୁ, କାଲି ସକାଳେ ଯିବୁ । ବାବାଙ୍କୁ ଏ ବିଷୟରେ କିଛି ନ କହିବାକୁ ମୁଁ ପେମିବୋଉକୁ ରାଣ ପକାଇ ଆସିଛି ।

ରକ୍ଷା କର ଭଗବାନ, ସେତିକି ମୋର ଡର ଥିଲା । କାଗଜ ଖଣ୍ଡ ହାତରେ ଧରି ମା ଭାତ ବାଢ଼ିବାକୁ ଚାଲିଗଲେ । ପଢ଼ାଘର ଭିତରକୁ ଯାଇ ନଲଟେଣ ତେଜି ଭିତରୁ ମୁଁ କବାଟ କଲିଲି ।

ଆରଦିନ ସକାଳେ ।

ମା କହିଲେ, ଚାଲ ମଧୁ !

ମୁଁ ଆପତ୍ତି କଲି ନାହିଁ । କାମିଜ ଗୁଡ଼ି ପକେଟରେ ହାତ ମାରି ନିର୍ଭୀକ-ଭାବରେ ଉତ୍ତର ଦେଲି, ହଉ ଚାଲ୍ ! ଭାବିଲି, ଦେଖାଯାଉ, କିଏ କାହା ପାଖରେ ନଇଁବ; କ୍ଷମା ଚାହିଁବା କାହାର ଅଛି ଦରକାର ।

ମୋର ରୁକ୍ଷ ଉତ୍ତର ଶୁଣି, ମା ବିସ୍ମିତ ହୋଇ ପଛକୁ ମୁହଁ ଫେରାଇ ମୋତେ ଚାହିଁଲେ । ମୋ ମୁହଁରୁ ସେ କଅଣ ଦେଖିଲେ କେଜାଣି, ଥକା ମାରି ମୁହୂର୍ତ୍ତେ ଚାହିଁ ଦୁଃଖିତ ହୋଇ ପଚାରିଲେ, ପେମିବୋଉର ଗୋଡ଼ ଧରିବୁଟି ବାପ ?

କହିଲି ଯଦି ଦୋଷ କରିଥିବି, ନିଶ୍ଚୟ ଗୋଡ଼ ଧରିବି; କିନ୍ତୁ ବୋଉ, ତୁ କାହିଁକି ତାଙ୍କ ଗୋଡ଼ ଧରିବୁ ଶୁଣେ ? ତୋର କି ଦୋଷ ? କହିବାକୁ ବସିଥିଲି, ଆଛା ଦେଖାଯାଉ, ତୋ ସ୍ୱପୁଅ ଅପେକ୍ଷା ତାଙ୍କ ଝିଅଟା କେଉଁଗୁଣରେ କମ୍ । କଥା ତଣ୍ଟିରେ ଅଟକିଗଲା ।

ମାଆଙ୍କ ପଛେ ପଛେ ବାପ ବାଟେ ଗଲି । ରେଣୁ ଏକୁଟିଆ ଘରେ ରହିଲା ପଢ଼ିବାକୁ । କିଛି ବୁଝିପାରେ ନାହିଁ କି କଣ, ନୋହିଲେ ସକାଳୁ ଉଠି ଆଗ ଅସି ମୋତେ ପଚାରନ୍ତା, କଥା କଣ ଭାଇ; ଆଜ ମୁହଁ ଶୁଖାନ୍ତା ମୋଠୁ ଉତ୍ତର ପାଇ, ତୋ ମୁଣ୍ଡ !

ପେମିର ପଢ଼ାଘରେ ଗୋଟାଏ ଚେୟାର୍ ଉପରେ ଭୁନ ହୋଇ ବସି ତା ବୋଉ କଣ ଗୁଡ଼ାଏ ଭାବୁଥିଲେ । ପେମି ଟେବୁଲ ପାଖରେ ଠିଆ ହୋଇ ବହିଗୁଡ଼ା ଘଣ୍ଟାଘଣ୍ଟି କରି କଣ ଯେମିତି ଖୋଜ ଛି । ସୁନ୍ଦର ମୁହଁଟି ତାର ଝାଉଁଳି ପଡ଼ିଛି । ଦୁଃଖ ହେଲା ନାହିଁ, ରାଗ ହେଲା । ଏଡ଼େ ବିଶ୍ୱାସଘାତକ ! ଅଚ୍ଛା, ଦେଖି ଛି ରହ ! ପକେଟରେ ହାତ ମାଇଲି । ମୁଁ ଭିତରେ ତୋର ମାନ, ତୋ ଠାଣ ସବୁ ଲୁଚାଇ ରଖିଛି ଲୋ ।

ଆମକୁ ଦେଖି ପେମିବୋଉ ଖୁଡ଼ୀ ଚେୟାର୍ ଛାଡ଼ି ଠିଆ ହେଲେ । ମୋ ମୁହଁକୁ କଟମଟ କରି ଚାହିଁ ଚାହିଁ ତାଙ୍କର ଆଖି ଲୁହ ଚଳ ଚଳ ହେଲା । ସେ ଓଠ ଥରାଇ ଅତି କଷ୍ଟରେ କହିଲେ, ହଇରେ ମଧୁ, ତୁ ପୁଣି···

ମୁଁ ପକେଟରୁ କଣ କାଢ଼ିବାକୁ ଯାଉଛି ଆଖି ପଡ଼ିଲା ପେମି ଉପରେ । ସେ ତେରଛ ଆଖିରେ ମୋଆଡ଼ ଆଡ଼କୁ ଚାହିଁ କାନ୍ଦୁଛି । ତାର କରୁଣ ଚାହାଣୀ ଭିତରୁ ମୁଁ କଣ ଦେଖିଲି କେଜାଣି, ଅପେ ଅପେ ମୋର ହାତଟା ତଳକୁ ଓହ୍ଲାଇ ଆସିଲା । ଓଃ, ପେମିର ଏତେ ବିଶ୍ୱାସ ମୋ ଉପରେ, ଏତେ ଅଧିକାର ! ସେଇଥିପାଇଁ ତାର ଏତେ ଠାଣ । ମୁଁ ଚଣ୍ଡାଳ କଣ କରିବାକୁ ଯାଉଛି ? ପେମିବୋଉ ଖୁଡ଼ୀର ଦି ଗୋଡ଼ ଧରି ପଡ଼ିଗଲି ।

ସେ ମୋତେ ତଳୁ ଉଠାଇ ଗଦ୍‌ଗଦ୍ କଣ୍ଠରେ କହିଲେ, ମଧୁ, ପେମି ପରା ତୋ ଭଉଣୀ ରେ ! ମୋ ଆଖିର ଲୁହ ପୋଛି ସେ ଭଙ୍ଗାସ୍ୱରରେ ପୁଣି କହିଲେ—ଛି, ଚଗଲାଟା, ଆଜ କେବେ··· ! ବେଶି କହିପାରିଲେ ନାହିଁ ।

ମୋର କଣ୍ଠ ରୁଦ୍ଧ ହୋଇ ଅସିଲା, ଆଖିରେ ତତଲା ଲୁହ ଭରିଗଲା । ଦେଖିଲି ପେମିର ନାଲି ଟୁକୁଟୁକୁ ଓଠ ଦିଫାଳରେ ବିଜୁଳିର ଚମକ ଖେଳି ଅସୁ ଅସୁ ହଠାତ୍ ଯେପରି ନିଭି ଯାଉଛି । ସନ୍ଦେହ ମିଶା ତେରଛ ଚାହାଣୀଟି ସେ ଧୀରେ ଧୀରେ ମୋ ମୁହଁରୁ ଟାଣି ନେଉଛି ଅନ୍ୟଆଡ଼କୁ ।

# ଯୋ ହୁକ୍ରୁମ

କଳଙ୍ଗାଘାଟି ପାର ହୋଇ ଉଦୟଗିରି ବାଟେ ଦୁଇ କୋଶ ଗଲେ ପାହାଡ଼ ମାଳର ମଝିରେ ଯେଉଁ କନ୍ଧ ଗାଁଟି ପଡ଼େ ତାର ନାଁ ବପିଲଙ୍ଗି । ବଡ଼ ରାସ୍ତା ପାଖରୁ ଦେଢ଼ ମାଇଲ । ସେଇ ଗାଁର ପାଣସାହି ପାଖ ପଡ଼ିଆରେ ସେଦିନ ଗୋଟାଏ ସଭା ହେଉଥିଲା । ଆଖପାଖ କୋଡ଼ିଏ ଖଣ୍ଡି ଗାଁରୁ ଲୋକେ ଆସି ରୁଣ୍ଡ ହୋଇଥିଲେ । ବେଳ ରତରତ ।

ଉଦୟଗିରିର କନ୍ଧ । ସେମାନେ ସଭ୍ୟ ହେଲେଣି । ଲୁଗା ଅଙ୍ଗୀ ପିନ୍ଧିଲେଣି । କନ୍ଧ ଭାଷା ଭୁଲି କେହି କେହି ଓଡ଼ିଆକୁ ମାତୃଭାଷା କଲେଣି । ଲେଖିପଢ଼ି ଶିଖିଲେଣି । ମିଶନାରି ମାନଙ୍କ ଶିକ୍ଷାରେ ପାଣମାନେ ତ ପୂରାପୂରି ସଭ୍ୟ ହୋଇ ସାରିଲେଣି । ତାଙ୍କ ଘରର ମାଇପେ ସେମିଜ, ବ୍ଲାଉଜ, ସାୟା, ଧୋବଶାଢ଼ୀ ପିନ୍ଧି ପଦାକୁ ବାହାରନ୍ତି । ହଳଦୀ ପରିବର୍ତ୍ତେ ଏଣିକି ସାବୁନ ବ୍ୟବହାର କଲେଣି । ଜୈବ୍ର ଗୁଡ଼ ବ୍ୟବସାୟରେ ମନ ଦେଲେଣି । କିନ୍ତୁ ଏଇ ଆଦିମ କନ୍ଧ-ଜାତି ସଭ୍ୟ ଶିକ୍ଷିତ ହେଲେ ମଧ୍ୟ କୁଳର ପ୍ରଥା ଗୁଡ଼ ପାରି ନାହାଁନ୍ତି ।

ଉଦୟଗିରିର କନ୍ଧୁଣୀ—ଶ୍ୟାମଳ ରଙ୍ଗ । କେହି କେହି ମଧ୍ୟ ଗୋରି । ବଳିଲା ବଳିଲା ଦେହ ହାତ, ପୂରିଲା ପୂରିଲା ମୁହଁ । ଲୋଭନୀୟ ସ୍ୱାସ୍ଥ୍ୟ । ଉଚ୍ଚ—ଶ୍ରେଷ୍ଠ । ତ୍ରିରୁ ଚାଳିଶୀ ବର୍ଷର ପ୍ରୌଢ଼ା ପନ୍ଦର ବର୍ଷର ଝିଅ ପରି ଦିଶେ ।

କନ୍ଧୁଣୀ-ଝିଅ ସବୁବେଳେ ପ୍ରଫୁଲ୍ଲ । ହସିଲା ମୁହଁ । ନିଃସଙ୍କୋଚ ଭାବ । ଲାଜର ବାସ ପଶି ନାହିଁ ତାର ମନରେ । ଯୁବା ମନକୁ ଓଟାରିବାକୁ ସେ ହାଣେ ନାହିଁ କଟାକ୍ଷ, କରେ ନାହିଁ ଅଙ୍ଗଭଙ୍ଗୀ । ସରଳ ଭାବ, ଅନଳସ ଭଙ୍ଗୀ । ସ୍ୱଭାବ-ସୁଲଭ ଲୀଳାୟିତ ଗତି । ନିଶ୍ୱାସ ଚୁହାଁଣୀ । ଉଜ୍ଜ୍ୱଳ ଆଖି । ଲାବଣ୍ୟଝରା ସ୍ୱାସ୍ଥ୍ୟ-ସମ୍ପଦ । ଭରାଯୌବନ ଓଟାରେ ଯୁବକର ମନ ।

ଉଦୟଗିରିର କନ୍ଧ ଝିଅ, ଚନ୍ଦକରା ତାର ମୁହଁ । ହାତ ଗୋଡ଼, ମୁହଁରେ ସେ ଚିତା କୁଟାଏ । କାନ ପାଖରୁ ଆର କାନ ଯାଏ, କପାଳ ଉପରେ କୋଠ କୋଠିକା ଚନ୍ଦ । ନାକ ଅଗରୁ କପାଳର କେଶଯାଏ ଲମ୍ବ ଲମ୍ବି ତିନୋଟି ଗାର । ପୂରିଲା ଗାଲ ଉପରେ ଫୁଲର ଛବି । ଚିବୁକରେ ଠୋପିଠୋପିକା ନକ୍ଷତ୍ର । ଆଖି ତଳୁ କାନଯାଏ ଗୁଡ଼ି ଗୁଡ଼ି ତିନି ଚାରିଟି ଗାର । ଡୋରା ମୁହଁରେ କଳା ନେଳୀ ଗାର ଫୁଟି ଦିଶେ । ନଆ ଦେଖିଲେ ବିରକ୍ତ ଲାଗେ । ରାଗ ହୁଏ—କେତେ ସୁନ୍ଦର ମୁହଁକୁ ଚିତା କୁଟି ବିକୃତ କରିଛନ୍ତି । ଅସନା ଅସୁନ୍ଦର । ଅଭ୍ୟାସ ହେଲେ ଆଖିସହା ହେଲେ ସୁନ୍ଦର ଦିଶେ । ମୁହଁଟିମାନ ଫୁଟିଲା ଫୁଲ ପରି ।

କାହିଁକି ଏପରି କରାହୁଏ ? କେତେ ଲୋକ କେତେ କଥା କହନ୍ତି । କନ୍ଧ କହେ କୁଳର ପ୍ରଥା । ସଭ୍ୟ ମଣିଷ ସେହି ପୁରୁଣା ପ୍ରଥାର ଭିତରି କଥା ଅବିଷ୍କାର କରିବାକୁ ଚେଷ୍ଟା କରେ । କେହି କହେ, ଭଞ୍ଜ ରଜାଙ୍କର ପ୍ରେମାକୁଳ ଗ୍ରେଗ-ଗୃହାଣୀ, ଲୋଭିଲା ମନରୁ ଉଦ୍ଧାର ପାଇବାକୁ କନ୍ଧୁଣୀ ତାର ମୁହଁ ବିକୃତ କରେ । ଭଞ୍ଜରାଜ ଗଲେଣି କିନ୍ତୁ ଉପ୍ଯୁକ୍ତ ପ୍ରଥା ହୋଇ ରହି ଯାଇଛି । କେହି କହେ, କନ୍ଧଝିଅ ବଣ ପାହାଡ଼ରେ ପଶି କାଠ ହାଣେ, ପତର ଛିଣ୍ଡାଏ, କନ୍ଦା ଖୋଳେ, କ୍ଷେତ ଜଗେ । ବାଘମାମୁଁ ବାହାରି ପଡ଼ିଲେ ମଣିଷ ବୋଲି ଚିହ୍ନେ ନାହିଁ, ବାଘ ପିଲା ବୋଲି ଦୃଷ୍ଟି ଫେରାଇ ଚାଲିଯାଏ । ଆଉ କେହି କହେ, କନ୍ଧ-ରାଇଜର ପ୍ରତି ଗଛ, ନାଳ, ପଥର ଖୋଲ, ଝୋଲାରେ ଥାଏ ଦେବତା । ନିଖୁଣ ସୁନ୍ଦର କନ୍ଧ ଝିଅକୁ ସେ ଗ୍ରାସ କରେ । ଦେବତାର ଲୋଭରୁ ଉଦ୍ଧାର ପାଇବାକୁ କନ୍ଧ ଝିଅର ମୁହଁକୁ ବିକୃତ ଖୁଣ କରାଯାଏ । କନ୍ଧ ପୁଅର ଆଖିକୁ କନ୍ଧ ଝିଅର ଚିହ୍ନକୁଟା ମୁହଁ ସୁନ୍ଦର ଦିଶେ ।

ହଁ, ବରିପିଲଙ୍ଗିରେ ସଭା । କେତେ କନ୍ଧ କନ୍ଧୁଣୀ ଜମା ହୋଇ ଶ୍ରେଷ୍ଠ ଅଧିକାରୀଙ୍କର ବକ୍ତୃତା ଶୁଣୁଛନ୍ତି । ଶ୍ରେଷ୍ଠ ଅଧିକାରୀ—ପ୍ୟାଣ୍ଟ, କୋଟ, ଟାଇ, ମୁଣ୍ଡରେ ହ୍ୟାଟ, ପାଦରେ ଜୋତା । ବକ୍ତୃତା ଦେଲେ—ମାଙ୍କଡ଼ମାନେ ଆମର ଶତ୍ରୁ । ସେମାନେ ଆମର ଫସଲ ନଷ୍ଟ କରୁଛନ୍ତି । ସେମାନେ ନ ଥିଲେ ଆମେ ଯେତେ ଫସଲ ଅମଦାନି କରନ୍ତୁ ଏବେ ତାର ଅଧେ ବି କରିପାରୁ ନାହୁଁ । ସେମାନଙ୍କୁ ମାରିବାକୁ ହେବ । ସେମାନଙ୍କର ବଂଶ ନିପାତ କରିବାକୁ ହେବ । ତେବେ ଯାଇଁ ଆମର ରକ୍ଷା । ସରକାର ଆଦେଶ ଦେଇଛନ୍ତି ମାଙ୍କଡ଼ ମାରିଲେ ପୁରସ୍କାର ମିଳିବ । ଟଙ୍କା— । ବୁଝିଲ ତ ?

ଅଧିକାରୀଙ୍କର ଉପଦେଶ ସମସ୍ତେ ଶୁଣିଲେ । ମନରେ କେତେ ପ୍ରଶ୍ନ ଉଠୁଥିଲେ ମଧ୍ୟ ସାହସ କରି କେହି କିଛି ପଚାରି ପାରିଲେ ନାହିଁ । ଓଲଟି ପ୍ରଶ୍ନ ପଚାରିବା କନ୍ଧ ପିଲାର ପ୍ରକୃତି ନୁହେଁ । ସେ ଶୁଣେ । ଯାହା ବୁଝେ ମନକୁ ଆସିଲେ କରେ ନୋହିଲେ ତୁନି ହୋଇ ରହେ ।

ଗୁମାଗୁଡ଼ା ଗାଁ ବରିପିଲଙ୍ଗିକୁ ବାଟ କୋଶେ ହେବ । ପାହାଡ଼ର ଗଡ଼ାଣିରେ କୋଡ଼ିଏ ଘର କନ୍ଧ, ପାଞ୍ଚଘର ପାଣ ସେ ଗାଁରେ ରହନ୍ତି । ସେହି ଗାଁର ରଘୁ କନ୍ଧ ସଙ୍ଗରେ ତାର ସ୍ତ୍ରୀକୁ ନେଇ ଶଶୁର ଘରକୁ ଯାଉଛି । ଶାଶୁ ବେମାର । ଏତେ ଲୋକ ଏକାଠି ହୋଇଛନ୍ତି ଦେଖି ଘଟଣାଟା ଜାଣିବାକୁ ଟିକଏ ଠିଆ ହୋଇଗଲା । ଅଧିକାରୀ ବକ୍ତୃତା ଦେଉଛନ୍ତି,—ସମସ୍ତେ ତ ବୁଝିଲ ଯାହା କହିଲି । ଜଣେ ଜଣେ ଯଦି ଦଶଟି କରି ମାଙ୍କଡ଼ ମାରି ପାର ଏକା ଥରେ ସେମାନଙ୍କର ବଂଶ ନିପାତ ହେବ । ତମର ଫସଲ ଆଉ ନଷ୍ଟ ହେବ ନାହିଁ । ଦ୍ୱିଗୁଣ ଲାଭ କରିବ । ପ୍ରତି ମାଙ୍କଡ଼ ପାଇଁ ଦୁଇ କି ଚାରି ଟଙ୍କା ପୁରସ୍କାର ପାଇବ । ବଡ଼

ହାକମ ଉଦୟଗିରିରେ ପୁରସ୍କାର ଦେବେ । ଦଶଟା ମାଙ୍କଡ଼ ସଙ୍ଗରେ ଧରି ତନେ ତ ଗୁଳ ଗୁଳ ଯାଇ ପାରିବ ନାହିଁ । ମାଙ୍କଡ଼ ମରିର ପ୍ରମାଣ ସ୍ୱରୂପ ଦଶଟି ମାଙ୍କଡ଼ ଲାଙ୍ଗୁଡ଼ ହାଜର କଲେ ଯଥେଷ୍ଟ ହେବ । ବୁଝିଲ ତ ? ପ୍ରତ୍ୟେକ ଲୋକ ଭାଗରେ ଦଶଟି ମାଙ୍କଡ଼ । ଦଶଟି ଲାଙ୍ଗୁଡ଼ ନେଇ ଉଦୟଗିରି ମୁକାମରେ ହାଜର କରିବ । ପୁରସ୍କାର ପାଇବ । ବୁଝିଲ ତ ?

ଜଣେ କନ୍ଧ ସାହସ କରି ଉତ୍ତର ଦେଲା, ହଁ । ଆଉମାନେ ପାଳି ଧରିଲେ— ହଁ ମହାପ୍ରଭୁ । ସଭା ଭାଙ୍ଗିଲା ।

ଗୁମାଗୁଡ଼ାର ଛତ୍ରୁ କନ୍ଧ ବାଟରେ ତାର ଧାଙ୍ଗଡ଼ୀକୁ ପଚାରିଲା, ଅଧିକାରୀ ମାଙ୍କଡ଼ ଲାଙ୍ଗଡ଼ କଣ କରିବ କି ?

କି ଜାଣେ । ଔଷଦ କରିବ କି କଣ ?

ଅଠଦିନ ପରେ—

ଛତ୍ରୁ କନ୍ଧ ଦିନ ପାଞ୍ଚଟା ବେଳେ ଉଦୟଗିରିରେ ପହଞ୍ଚିଲା । ସକାଳୁ ଗୁଳ ଗୁଳ ଆସିଛି । କ୍ଳାନ୍ତ । କାନ୍ଧରେ ତାର ଦଶଟି ମାଙ୍କଡ଼ ଲାଙ୍ଗୁଡ଼—ଖଣ୍ଡେ ଛିଣ୍ଡା ଅଖାରେ ଗୁଡ଼ା ହୋଇଛି । ମନ ଭିତରେ ଫୂର୍ତ୍ତି । ତାଙ୍କ ଗାଁରୁ ଆଗ ସେ ଶ୍ରେଷ୍ଠ-ଅଧିକାରୀର ଆଜ୍ଞା ପାଳିଛି । ଆଉମାନେ ବଣ ଜଙ୍ଗଲରେ ପଶି ମାଙ୍କଡ଼ ଧରିବାକୁ ଚେଷ୍ଟା କରୁଛନ୍ତି । କାହାରି ପୂରି ଦଶଟି ହୋଇନାହିଁ । ସେ କିନ୍ତୁ ଏକାଥରେ ଦଶଟି ପାଇଗଲା ! ସେତିକି ତାର ଭାଗ୍ୟ । ଧନ୍ୟ ତାର ଧାଙ୍ଗଡ଼ୀର ବୁଦ୍ଧି । ତାରି କୁହା ମାନି ବାଇଲଷେତରେ ଫାଶ ପକାଇଲା ବୋଲି ସିନା ଏକାଥରେ ତେରଟା ମାଙ୍କଡ଼ ଧରା ପଡ଼ିଲେ । ଦଶଟା ଲୋଡ଼ା । ତେଣୁ ତିନିଟାଙ୍କୁ ସେ ସଙ୍ଗେ ସଙ୍ଗେ ଛାଡ଼ି ଦେଲା ।

ଖୋଜି ଖୋଜି ଛତ୍ରୁ ଶ୍ରେଷ୍ଠ ଅଧିକାରୀର ବସାଘର ଠାବ କଲା । ଅଧିକାରୀ ଘରେ ଥିଲେ । ଖବର ପାଇ ପଦାକୁ ଆସିଲେ । ଛତ୍ରୁ ଅଖା ଖୋଲି ଗୋଟି ଗୋଟି କରି ଦଶଟି ଲାଙ୍ଗୁଡ଼ ଗଣିଦେଲା । କହିଲା, ଏଇ ମୋର ଭାଗ ମହାପ୍ରଭୁ—

ଅଧିକାରୀ ଖୁସି ହୋଇ ପଚାରିଲେ, ତମ ଗାଁର ଆଉମାନେ ?

ମାଙ୍କଡ଼ ଖୋଜୁଛନ୍ତି ମହାପ୍ରଭୁ । ରଖ ତୋର ଲାଙ୍ଗୁଡ଼ । ମୁଁ ମୋର ଶଶୁର ଘରକୁ ଫେରିଯିବି । ଶାଶୁର ଦେହ ଭଲ ନାହିଁ । ଛତ୍ରୁ ଉଠି ଠିଆ ହେଲା ।

ଅଧିକାରୀ କହିଲେ, କାଲି ଯିବୁଟି । ବଡ଼ ଅଧିକାରୀ ତୋତେ ଟଙ୍କା ପୁରସ୍କାର ଦେବେ; ରହିଯା । ଅନେକ ଟଙ୍କା ପାଇବୁ ।

ଛତ୍ରୁ କହିଲା, ନାଇଁ ମହାପ୍ରଭୁ, ଲାଙ୍ଗୁଡ଼ ବିକା ଟଙ୍କା ମୁଁ ଖାଇବି ନାହିଁ । ରଖ ତୋର ଲାଙ୍ଗୁଡ଼ ।

କେମିତି ଧଇଲୁରେ ?

ବାଇଲ କ୍ଷେତରେ ଫାଶ ପକେଇଲି । ତେରଟା ପଇଲେ । ଦଶଟାର ଲାଙ୍ଗୁଡ଼ କାଟିଦେଲି । ଖଣ୍ଡିଆ ଜାଗାରେ ତେଲ ହଳଦୀ ଲଗେଇ ଦେଲି ମୋର ଧାଙ୍ଗଡ଼ୀ । ଛାଡ଼ ଦେଲି ସବୁ । କୁଆଡ଼େ ଜଙ୍ଗଲ ଭିତରକୁ ପଳେଇଲେଣି । ତୁଇ ମୋଠୁ ଦଶଟା ଲାଙ୍ଗୁଡ଼ ମାଗିଥିଲୁ । ନେ—

କରେ, ମାରିଦେଲୁ ନାହିଁ ଜୀବନରୁ ?

ଚଞ୍ଚୁ କାବା ହୋଇ ଚାହିଁଲା । କହିଲା, ମାଙ୍କଡ଼ ତ ଦେବତା ? ଜୀବନରୁ ମାରିବ କାହିଁକି ? ନେ ତୋର ଲାଙ୍ଗୁଡ଼ ।

# ଗପ ନୁହେଁ

ଜୟପୁର ସହରର ପଶ୍ଚିମରେ ଯେଉଁ ବଡ଼ ସରୋବରଟି ଅଛି ତାର ନାମ ଜଗନ୍ନାଥ ସାଗର । ଯେଉଁ ଦେଶରେ ବଡ଼ ବଡ଼ ଗଛ ନ ଥାଏ ସେ ଦେଶରେ ଜଡ଼ା ଗଛକୁ ବି ଦ୍ରୁମ କୁହାଯାଏ । ସେଇ ସୂତ୍ରର ପ୍ରୟୋଗ କରି ଏଇ ପୁଷ୍କରିଣୀର ନାମକରଣ ହୋଇଛି—ସାଗର, ପୁଣି ଜଗନ୍ନାଥ ସାଗର । ଦୁଇଟି ଯାକ ବଡ଼ କଥା । ଜୟପୁରର ଜମିଦାର ବି ମହାରାଜା ନାମରେ ପରିଚିତ । ଆଜି କ୍ଷୁଦ୍ର ମଜୁରିଆ ମୁଁ, ଜଗନ୍ନାଥ ସାଗରେ ଉପରେ ଶ୍ରେଷ୍ଠ ଏକ ମହଲା କୋଠାଟିଏ ଭଡ଼ା ନେଇଅଛି । ତାକୁ ମୁଁ ମହାପ୍ରାସାଦ ବୋଲି ପରିଚିତ କରିବାକୁ ଚାହେଁ ।

ମୋର ପ୍ରାସାଦର ବିଶେଷତ୍ୱ, ସଞ୍ଜ ହୋଇ ଆସିଲେ ସାଗରର ବେଳାଭୂମି ସନ୍ତସନ୍ତିଆ ଅରମା ଭିତରୁ ଲକ୍ଷ ଲକ୍ଷ ମଶକ ଭିଜୁଁ ଭିଜୁଁ ହୋଇ ଉଠନ୍ତି, ପ୍ରାସାଦକୁ ମୋର ଆକ୍ରମଣ କରନ୍ତି । ସେଥିରେ ମୁହେଁ, ମୋର ଓ ମୋର ପିଲାଟି ମାନଙ୍କର ଗୋଡ଼ରୁ ମୁଣ୍ଡ ଯାଏ ଚୁମ୍ବନ କରି ବେଶ୍ ଆମୋଦପ୍ରଦ କୁଣ୍ଡନର ପ୍ରେରଣା ଦିଅନ୍ତି । ରକ୍ତ ସେମାନେ ଶୋଷନ୍ତି କିନ୍ତୁ ଋଣ ସୁଝିବାକୁ ଦେଇ ଯାଆନ୍ତି ଏକାଥରେ ରକ୍ତ ଭିତରେ ମେଲେରିଆର ମହାପ୍ରସାଦ—ଏଇ ମୋର ମହାପ୍ରାସାଦ ଭିତରେ । ସାଗରର ବେଳାଭୂମି ଉପରେ ସାନ୍ଧ୍ୟ ସମୀରଣ ସେବା କରିବାକୁ ବେଳେ ବେଳେ ଆଗ୍ରହ ହୁଏ । ସାନ୍ଧ୍ୟ ସମୀରଣ ସତ, କିନ୍ତୁ ମନ ଉଲସି ଉଠେ ନାହିଁ, ନାକ ଉଲସି ଉଠେ । ଦେବ ଭାଷାରେ ସ୍ୱର୍ଗର ଅନ୍ୟ ନାମ ନାକ ।

ଶ୍ରେଷ୍ଠ ମୋର ମହାପ୍ରାସାଦ, କିନ୍ତୁ ଭଡ଼ା ଦିଏ ଅଧିକ । ଯେତେ ଭଡ଼ା ଦେଲେ ବି ମନରେ ବିଶେଷ ଦୁଃଖ ନ ଥାଏ, କାରଣ ମୋର ମଜୁରି ଛଡ଼ା ସବୁ ଜିନିଷର ଦାମ ବଢ଼ିଛି ଚାରିଗୁଣ । ମୋର ବସାକୁ ଲାଗି ପଶୁ ଡାକ୍ତରଖାନା । ବଡ଼

ସକାଳୁ ଛେଳିପଲର ଚିତ୍କାରରେ ନିଦ ଭାଙ୍ଗେ । କବାଟ ଖୋଲି ପଦାକୁ ଆସେ । ଦେଖେ, କେତେ ଲୋକ ପଞ୍ଝାଏ ଛେଳି ଧରି ଠିଆ ହୋଇଛନ୍ତି ଡାକ୍ତର ବାବୁଙ୍କୁ ଅପେକ୍ଷା କରି । କେବଳ ଛେଳି ନୁହେ ମେଣ୍ଢା ବି । ମାଈ ଓ ଅଣ୍ଡିରା, ପିଲା ଓ ବୁଢ଼ା । ଧଡ଼ିଆ ଧେଡ଼ଙ୍ଗା ପୁଣି ମୋଟାସୋଟା । ବଲ ବଲ କରି ସବୁଆଡ଼କୁ ଚାହାନ୍ତି । ମେଁ ମେଁ କରି ବୋବାନ୍ତି । ଚାହାଁଣୀ ବା ସ୍ୱରରେ ଅକୁଳ ବିକଳ ଭାବ ନ ଥାଏ । ସବୁ ଦିନର ଚାହାଣୀ ଓ ବୋବାଳିଠାରୁ ଟିକିଏ ହୋଇ ତଫାତ୍ ନାହିଁ । ହୁଏତ ସେମାନେ ବୁଝନ୍ତି ନାହିଁ କାହିଁକି ଏଠାକୁ ଅଣା ହୋଇଛନ୍ତି ! ତେଣୁ ସେମାନେ ପ୍ରତିବାଦ କରନ୍ତି ନାହିଁ; ଅକୁଳ ବିକଳ ହୋଇ କାନ୍ଦନ୍ତି ନାହିଁ । ବଲ ବଲ କରି ଚାହିଁ ରହନ୍ତି, ଦୋଷୀ ଯେପରି ଚାହିଁ ରହେ ତାର ବିଚାରକର ମୁହଁକୁ ।

ବିଚାରକ ସ୍ୱୟଂ ଡାକ୍ତର । ନିରେଖି ଚାହାନ୍ତି, ତନଖି କରନ୍ତି । ଛେଳି ମେଣ୍ଢା ଆଣିଥିବା ଲୋକଙ୍କୁ କେତେ ପ୍ରଶ୍ନ ପଚାରନ୍ତି । ଦେଖା ଦେଖି ସରେ । ଗମ୍ଭୀର ହୋଇ ସେଇ ନିରୀହ ନିଃସହାୟ ପଶୁଗୁଡ଼ିଙ୍କର ମୁହଁକୁ ବଲ ବଲ କରି ଚାହିଁ ପଦେ ପଦେ କଥାରେ ରାୟ ଦେଇ ଦିଅନ୍ତି—ପାଶ୍ । ବିଚାରପତିର ଆଦେଶ, ପ୍ରାଣଦଣ୍ଡ । ଦୋଷ କଣ କେହି କେବେ ପଚାରି ନାହିଁ । ସାକ୍ଷୀ ଗୁହା କେହି କେବେ ଖୋଜି ନାହିଁ । ପାପ ପୁଣ୍ୟ କଥା କେହି କେବେ ଭାବି ନାହିଁ । ସାଧାରଣ କଥାଟିଏ ପରି ପଦକରେ ପ୍ରାଣଦଣ୍ଡ ଆଦେଶ । ଡାକ୍ତର ଭାବନ୍ତି, ଦିନକର କର୍ତ୍ତବ୍ୟ ଭିତରୁ ଏ ବି ଗୋଟିଏ କର୍ତ୍ତବ୍ୟ । ମନ ପ୍ରାଣ ଦେଇ ସେ ଅତି ସାବଧାନ ହୋଇ ତାଙ୍କର କର୍ତ୍ତବ୍ୟ ପାଳନ କରିଛନ୍ତି । କେତେ ଲୋକଙ୍କର ସ୍ୱାସ୍ଥ୍ୟର ଭଲମନ୍ଦ ତାଙ୍କରି ବିବେଚନା ଉପରେ ନିର୍ଭର କରେ । ତେଣୁ ସେ ସତର୍କ । କଂସେଇମାନେ ଲାଭ କ୍ଷତି କଥା ବିଚାର କରନ୍ତି । ଦେଖଣାହାରି କେଉଁଟା ମନ୍ଦ ସେହି କଥା ଚର୍ଚ୍ଚା କରନ୍ତି । ପାଖରୁ ବୁଲା କୁକୁର ଗୁଡ଼ା ଜିଭ ଜିଭ କରି ଚାହିଁ ରହିଥାନ୍ତି ।

କଂସେଇମାନେ ଛେଳି ମେଣ୍ଢା ପଲ ଅଡ଼େଇ ନିଅନ୍ତି । ଘଣ୍ଟାକ ପରେ ବଡ଼ ବଡ଼ ଟୋକେଇରେ ବୋଝେଇ କରି ଛେଳି ମେଣ୍ଢା ଗୁଡ଼ିଙ୍କର ଚମଛଡ଼ା, ମୁଣ୍ଡ କଟା, ପେଟ-ଚିରା ଗଣ୍ଡି ହାଜର କରନ୍ତି ଡାକ୍ତରଙ୍କ ଆଗରେ । କଲିଜା ଫୁସ୍ ଫୁସ୍, ଚିରା ପେଟ ଭିତରୁ ଦିଶୁଥାଏ ଜଳ ଜଳ । ଚର୍ବିର ଦଉଡ଼ା ଗୁଡ଼ା ହୋଇଥାଏ ଚମଛଡ଼ା ନାଲିଆ ପିଞ୍ଜରା ଉପରେ । ପିଞ୍ଜରାକୋଠ ଓ ଶିରା ହାଡ଼ ଗଣି ହେଉଥାଏ । ମୁଣ୍ଡ ନାହିଁ, ଖୁରା ନାହିଁ । ମଣିଷର ଖାଦ୍ୟ । ଯେଉଁମାନେ ଘଣ୍ଟାକ ଆଗେ ଏଇ ରାସ୍ତା ଉପରେ ଠିଆ ହୋଇଥିଲେ, ବଲବଲ କରି ଏଣିକି ତେଣିକି ଚାହିଁଥିଲେ, ପାଟି କରୁଥିଲେ, ରାସ୍ତା ଉପରୁ କୁଟା ପତର ଗୋଟେଇ ଖାଉଥିଲେ, ସେଇ ସେମାନଙ୍କର କବନ୍ଧ ! ସମସ୍ତଙ୍କର ଛେଦା ମୁଣ୍ଡ, ରକ୍ତବୋଳା ମୁଣ୍ଡ ଗୋଟିଏ

ଟୋକେଇରେ ଜମା ହୋଇଛି । ଜଳ ଜଳ ଆଖି । ଜଭ କାମୁଡ଼ା । ପାଟିଭୁଣ୍ଡ ନାହିଁ । ହଲଚଲ ନାହିଁ । ସମସ୍ତେ ସ୍ଥିର, ନିଶ୍ଚଳ । ମଣିଷର ଖାଦ୍ୟ !

ଡାକ୍ତର ଛାପା ମାରୁଛନ୍ତି ଗଣ୍ଡି ଉପରେ । କର୍ତ୍ତବ୍ୟ । ଟୋକେଇ ସବୁ ବୁହା ହୋଇଗଲା ହାଟକୁ । କେତେ ଘରେ ଆଜି ମହୋତ୍ସବ, ମସଲା ବଟା ଚାଲିଛି । ବନ୍ଧୁ ବାନ୍ଧବ ନିମନ୍ତ୍ରିତ ହୋଇଛନ୍ତି । ଖାନା ପିନା, ମଉଜ ମଜଲିସ୍, ମାଂସ ପଲଉ, ଚପ୍, କଟ୍‌ଲେଟ୍, କରି, ଆଉ କେତେ କଣ । ଭଲ ଭଲ ବାସନା ଉଠେ । ନାକରେ ବାଜିଲେ ଭୋକରେ ଗରଜେ ପେଟ । ମଣିଷ ଆନନ୍ଦ କରେ ଏଇ ଛେଳି ମେଣ୍ଢାଙ୍କର ମାଂସ ଖାଇ । ଏଇ ଛେଳି ମେଣ୍ଢା ! ଘଣ୍ଟାକ ଆଗରୁ ଯେ ଏକାଠି ଠିଆ ହୋଇଥିଲେ, ବଲବଲ କରି ଏଣେ ତେଣେ ଚାହୁଁଥିଲେ, ମେଁ ମେଁ କରି ଚିତ୍‌କାର କରୁଥିଲେ ଆଉ ଜଣାଇ ଦେଉଥିଲେ ଆମର ବି ଜୀବନ ଅଛି, ଆମେ ଦେଖିପାରୁ, ଶୁଣିପାରୁ, କହିପାରୁ, ଚାଲବୁଲ କରୁ, ଖାଉ, ହଗୁ, ଶୋଉ, ପିଲା ଜନମ କରୁ, ପାଟି କରିପାରୁ ଅବିକଳ ମଣିଷ ପରି । ଆମର ଜୀବନ ଅଛି, ଆତ୍ମା ଅଛି ।

ନିତି ଦେଖି ଦେଖି ମନ ମୋର ପଥୁରିଆ ହୋଇଛି । ଦୁଃଖ ଆସୁନାହିଁ । ହିଁ, ସେମାନେ ମଣିଷର ଖାଦ୍ୟ । ଦୁନିଆରେ ଯେତେ ଯାହା ଅଛି ସବୁ ମଣିଷ ପାଇଁ । ମଣିଷ ପିଲାକୁ ମଣିଷ ପିଲା ଆଖି ଦେଖାଇଲେ ଆଇନ ତାକୁ ଦଣ୍ଡଦିଏ । ଛେଳି ମେଣ୍ଢା ହାଣିଲେ ଦଣ୍ଡ ନାହିଁ । କୁକୁଡ଼ାର ବେକ ମୋଡ଼ିଲେ, ଭ୍ରୁଣହତ୍ୟା କଲେ ଦଣ୍ଡ ନାହିଁ । ସବୁ ପ୍ରାଣୀ ମଣିଷ ପାଇଁ, ମଣିଷ କାହାରି ପାଇଁ ନୁହେଁ । ମଣିଷ ରଜା, ଆଉ ସମସ୍ତେ ପରଜା । ମଣିଷ ଯାହା କରେ ସବୁ ନ୍ୟାଯ୍ୟ ।

ଆଉ ଏ ଘରଚଟିଆ ଗୁଡ଼ିକ ? ପଲ ପଲ ମାଡ଼ି ଆସନ୍ତି । ମୋର ଏହି ମହାପ୍ରାସାଦର ଭିତରେ ବାହାରେ କଡ଼ି ବରଗା ଫାଙ୍କରେ ବସା ବାନ୍ଧି ରହନ୍ତି । ସବୁବେଳେ ଚିଁ ଚିଁ ଫର ଫର । କୁଟା କାଠି ବୋହି ଆଣନ୍ତି । ନିର୍ଭୟ । ସବୁ ପୁରୁଷ-ଘରଚଟିଆ ଦିଶନ୍ତି ଏକାପରି । ଧଳା ପେଟ । ବେକ ପାଖରେ କଳା ଦାଗ । ମାଟିଆ ପିଠି । ଘରଣୀ ଘରଚଟିଆ ଗୁଡ଼ିକ ବି ସେମିତି ଦିଶନ୍ତି । ପେଟ ଉପର, ବେକ ତଳେ କଳାଦାଗ ନାହିଁ । ଶ୍ରେଷ୍ଠ ଶ୍ରେଷ୍ଠ ଚଢ଼େଇଟି ମାନେ ସବୁବେଳେ ମୁଖର, ସବୁବେଳେ ଚଞ୍ଚଳ । ପରିଶ୍ରମୀ ।

ରବିବାର ଦ୍ୱି ପ୍ରହରେ—ବିଶ୍ରାମ ନେବାକୁ କବାଟ ଆଉଜେଇଲି । କଡ଼ ଯେଉଁଠି କାନ୍ଥରେ ଲାଗିଛି ତାରି ଫାଙ୍କରୁ ହଉଟି ଚଢ଼େଇ ଉଡ଼ି ଆସିଲେ । ଘରଣୀଟି ପଦାକୁ ବାହାରି ଯାଉଥିଲା । ଦୁର୍ଯୋଗ ! କବାଟ ଚୂପରେ ଚପି ହୋଇଗଲା । କବାଟ ଖୋଲିଲି । ଠିକ ଦିହଟି ତାର ନିଛୁ ନୁହାଣ, ପିଣ୍ଡରେ ପ୍ରାଣ ନାହିଁ । ଆହା ! ଦୁଃଖ ହେଲା । ନିରୀହ, ନିର୍ଦ୍ଦୋଷ ପ୍ରାଣୀଟି !

ସ୍ୱାମୀ ତାର ଉଡ଼ିଗଲା ପଦାକୁ । ଅସ୍ଥିର ହୋଇ କାନ୍ଦିଲା । ଶଁ ଶଁ ହୋଇ ଅଭିଶାପ ଦେଲା । ଭଲ କରି ଦେଖିଲି ପେଟ ତଳେ ଟିକିଏ ଅଳନ୍ଦୁ ଲାଗିଛି । ତାର କାନ୍ଦଣା ଦେଖି ମୋତେ ବିକଳ ମାଡ଼ିଲା ।

ଦୁଇଦିନ କାଳ ସେ କାନ୍ଦିଛି । ଘରେ ପଶି ନାହିଁ । ପୁଣି ଅଦୃଶ୍ୟ ହୋଇଗଲା ।

ଦୁଇଦିନ ପରେ ଶଁ ଶଁ ଶୁଣି କାନ୍ଥକୁ ଚାହିଁଲି । କଡ଼ି ଫାଙ୍କର ସେଇ ପୁରୁଣା ବସା ଭିତରୁ ଦଉଡ଼ି ଟିକି ଟିକି ମୁହଁ ଦିଶୁଛି । ପୁରୁଷଟି ଉଡ଼ି ଆସିଲା । ପେଟ ତଳେ ଅଳନ୍ଦୁ ଦାଗ । ସେଇ ସେ । କଡ଼ି ସନ୍ଧିରୁ ଖସି ପଡ଼ିଲା ଗୋଟିଏ ପରେ ଗୋଟିଏ ଚୁଆଟି ଟିକି ଟିକି ଛଉଛଉକା ଡିମ୍ବ । ଚଟାଣରେ ପଡ଼ି ଭାଙ୍ଗି ଛନ୍ନଛତର ହେଲା । ଘରଣୀଟି ଉଡ଼ି ଆସିଲା । ସ୍ୱାମୀ ସ୍ତ୍ରୀ ଦିହେଁ ଉଡ଼ିଗଲେ ପଦାକୁ । କିଛି ସମୟ ପରେ ଦିହେଁ ଫେରିଲେ—

ପୁରୁଣା ଘରେ ନୂଆ ସଂସାର, ନୂଆ ଘରଣୀ । ପୁରୁଣା ଘରଣୀର ସ୍ମୃତି ବି ଲୋପ ହୋଇଛି ।

## ବାସୁଦେଇଙ୍କ କୋପ

ତୋର କଣ ଆଉ କେହି ନାହିଁ ବୁଢ଼ା ?

ପୋଷଣହାରି କେହି ନାହିଁ ବାବା ! ଦଶ ବରଷର ଟୋକୀଟିଏ—ଗେଣ୍ଟି । ସେଇ··· ।

ଜମିବାଡ଼ି ?

ସବୁ ଯାଇଛି ହରିଆ ପଛେ ପଛେ । ନୋହିଲେ ଏ ବୟସରେ ମୁଣ୍ଡରେ ତରଭୁଜ ବୋଝ ନେଇ ବିକି ବୁଲୁଥାନ୍ତି ? ଓହୋ, ଏ ଯେଉଁ ଖରା !

ହରିଆ କିଏ ?

ଷୋଳ ବରଷର ଭେଣ୍ଡା ପୁଅ ମୋର । ଥିଲେ ଅଇକା ତମର ବଗା ହୋଇଥାନ୍ତା । ବୁଢ଼ାର ଆଖିପତା ଓଦେଇ ଆସିଲା । ଚନ୍ଦା ମୁଣ୍ଡରେ ହାତ ଦେଇ ସେ ଦୀର୍ଘଶ୍ୱାସ ଛାଡ଼ି କହିଲା, ହରିଆ ସାଙ୍ଗରେ ତା ମା ବି ଗଲା ! ଏକା ରହିଗଲି ମୁଁ, ଏଇ ଗେଣ୍ଟି ପାଇଁକି ।

କଣ ହୋଇଥିଲା ତାର ?

ସେ ଆଖି ପୋଛି କହିଲା, ଅନାହୁତରେ ବାବା, ଦଇବଯୋଗ କଥା । ଖରାଦିନ, ଉଦୁଉଦିଆ ଝୋଲାମରା ଦିପହର । ଘରକାମ ସାରି ଗୁହାଳଘର

ପିଣ୍ଡାରେ ଖଣ୍ଡେ ନଡ଼ଅ ଗୁଁଅଁର ଉପରେ ପଡ଼ିଯାଇଛି । ନିଦ ହୋଇନାହିଁ । ଆଖି ପତା ମାଡ଼ି ପଡ଼ୁଛି, ସପନ ଦେଖିଲି । ନା ସପନ ନୁହେଁ, କେମିତି ଗୋଟାଏ ଅଧାଶୁଆ ଅଧାଉଠା ବେଳରେ ସତେ ଯେମିତି ଦେଖିଲି—ଦିବ୍ୟ ସୁନ୍ଦର ମାଇପି-ଟିଏ । ମଥା ଉପରେ ଝଙ୍କା ପରି ସୁନ୍ଦର ଖୋପା । ଗୋଡ଼ତଳେ ନୁଖୁରା ଅଲଗା ବାଳ ଘୁଷୁରି ଯାଉଛି । ଅଦ୍ଭୁତ ଲାଗିଲା ! ସତେ ଯେମିତି ମୋ ଆଗରେ ଠିଆ ହୋଇ କହିଲେ, ହଇରେ ବନା, ତୋ ପୁଅର କେଡ଼େ ବହପ ଦେଖ୍ ତ ରେ ! କଣ୍ଟା ପିଲାଟୁଆ ନୁହେଁ, ବୁଦ୍ଧି ଥିଲା ଭେଣ୍ଡାଟା । କଣ୍ଟା ବଗୁଲି ନାହିଁ, ଗୁଆଉଳ ଦେଖି ମୋର ଘରେ, ମୋର ଅସ୍ଥାନ ତଳେ ପ୍ରସା କଲା । ମୁଁ ଆଖି ବୁଜିଲି । ଆରେ ଏଡ଼କ ଚଗଲାଟା, ତୋ ପେଟର ଛୁଆ ହୋଇ ପାଆଁଣ ପାହାର ମାରି ମୋର ଘୋଡ଼ା ହାତୀ ଭାଙ୍ଗି ମାଙ୍କଡ଼ ମାରିଲା, କଣ୍ଟା କହିଲି ନାହିଁ । ଦେଖତ ସାହସ, ପୁଣି ମୋର ଅଡ଼କୁ ଗୋଡ଼ କରି ଶୋଇଲା ! ବାର ବାର ତିନି ବାର । କେତେ ସହନ୍ତ ରେ କହିଲି ? ଡାଳ ଖଡ଼ ଖଡ଼ କରି ହୁଁକାର ମାରି ତାକୁ ଚେତେଇଲି, ସବୁ କଥା ସପନେଇ କହିଲି । ସେ ଉଠିଲା, ମୋ ଅଡକୁ କଣେଇଁ କରି ଥରେ ଗୃହିଁଲା । ସେଇଠୁ ଯେଉଁ କଥାକୁ ସେହି କଥା । ଅବାଧ ପିଲାଟା, ବେଶି ଉଦ୍‌ବାର୍ଯ୍ୟ ହେଲାଣି । ତୋର ମୋହବତ୍‌କୁ ଏବେ ସହିଲି, ଏତେ କହିଲି, ଆଉ ସହି ପାରିବ ନାହିଁ···

ମୁଁ ଆଖି ଖୋଲି ଦେଖିଲି କେହି ନାହିଁ । ଯୋଗ କଡ଼ାଇଛି, କଣ କରିବ ? ଉଠି ପାରିଲି ନାହିଁ, ପୁଣି ଆଖି ବୁଜି ହୋଇଗଲା । ଶୋଇ ପଡ଼ିଲି ଟିକେ । ଗୁଇ ନେଉଟ ବେଳକୁ ନିଦ ଭାଙ୍ଗିଲା । ଗାଈଗୋରୁ ଗୋଠରୁ ବାହୁଡ଼ି ଗୃଲ ଓଟାରୁଛନ୍ତି । ହରିଆ କାଇଁ ? ଏମିତି ଗୋଟାଏ କଣ ସପନ ଦେଖିଲି । ମନ ଲାଗିଲା ନାହିଁ, ବାସୁଲେଇଙ୍କ କୋଚଲା ବଣକୁ ଗଲି ।

କଣ କହିବ ବାବୁ, ଯାହା ଦେଖିଲି···

ଆଖିରୁ ଲୁହଧାର ଗଡ଼ିଲା ।

ସେଇ ନଇକୂଳରେ ଏକୁଟିଆଟା କୋଚଲା ବଣ ଭିତରେ ହରିଆ ମୋର ହତଜ୍ଞାନ ହୋଇ ଗଡ଼ୁଛି । ହି ମୁହଁ ଛୁଟିଛି ।

ହରି, ହରି ରେ ! କେତେ ଡାକିଲି—ସେ କାହିଁକି ଜବାବ ଦିଅନ୍ତା ? ଜୁଳୁ ଜୁଳୁ କରି ଖାଲି ମୋ ମୁହଁକୁ ଗୃହିଁଲା । ଏଡ଼େ ତୋର ଦେହ କଳାକାଠ ପଡ଼ିଗଲାଣି । ଆଖି କେଉଁଟି କୋରଡ଼ ଭିତରେ ପଶିଛି । ଢୁ କରି କୋଚଲା ସିଆରେ ମୁଣ୍ଡ ପିଟିଦେଲି । ମା ଗୋ ବାସୁଲେଇ, ଏ ମୁଣ୍ଡ ରଖ, ପାଞ୍ଚ ମୁଣ୍ଡ ଦେଉଛି··· । ହେ କରି କାନ୍ଦି ଉଠିଲି । ଓହୋ ! ଆଉ କଣ ସତେ··· !

ସାତ ଅଧକୁ ହରି ମୋର ବଳବଳେଇ ଉଠିଲା । ତା ମା ଆଉ ମୁଁ ଦିହେଁ ପାଖରେ ବସି କାନ୍ଦୁଥାଉଁ । କେତେ ତ ଗୁଣିଆ ବଇଦ ଆସିଲେ, ଓଷଦ ଦେଇ

ଦେଇ ଥକଲେ, ବାହୁଡ଼ିଲେ । ବା କୁ ବତା କାହ୍ନି ସହୃବରେ ବାପା ! ବାଇଦ ବାଜଣା କର ଠାକୁରାଣୀଙ୍କୁ ଗାଧୋଇ ଦେଇଥିଲି, କଦଳୀ ଉଖୁଡ଼ା ବାଲଲୀଳା କରଥିଲି, କଂସାବାସନ ଗହଣାଗାଣ୍ଠି ବନ୍ଧା ପକାଇ ପାଞ୍ଚଟା କଲା ଗାରଡ଼ ଆଣି ବୋଦା ପକାଇଲି, ତଥାପି ଠାକୁରାଣୀଙ୍କ ମନ ତୁଟିଲା ନାହିଁ । ରାତ୍ର ଅଧକୁ ସେ ଦରଅ ଠେଇଁ ଅବତରଲେ —

ଅଡ ଉଦ୍‌ବାର୍ଯ୍ୟ ହେଲା ତୋ ପୁଅଟା ରେ, କହ ହରଅ ଉଠି ବସିଲା । କର ଲେଉଟାଇବାକୁ ଯାହାର ଶକ୍ତ ନ ଥିଲା, ସେ ପୁଣି ଉଠି ବସିଲା ! ଧରବାକୁ ଗଲି, ହାତ ବଢ଼ାଇଲି, ହାତ ଛୁଆଁଡ଼ ଦେଲା । କାହ୍ନି ଆସିଲା ସେ ଜୋର ତାର ! ବାପ ମା ଆମେ, ଆମର କୋଡ଼ରେ ପିଲାଦନୁ ତାକୁ ଖେଳାଇ ବଢ଼ାଇ ଆସିଥିଲୁଁ, ତାର ଆଖିତରଟା ଦେଖି ଆମେ ବ ଡରଗଲୁ ରେ ବାପ ! ଠାକୁରାଣୀ ତା ଠିଁ ଅବତରଲେ । ଯାହା ମୁଁ ସପନ ଦେଖିଥିଲି ପୁଣି ଥରେ ସେହ କଥା ସେ କହଗଲେ । ଶେଷକୁ କହଲେ, ମୋତେ ଅମାନ୍ୟ କଲୁ ହରଅ, ଏତେ ବଦ୍‌ପ !

ପୁଣି ହରଅ ବଛଣା ଉପରେ ଢଳି ପଡ଼ିଲା । ହତଜ୍ଞାନ । ଦହେଁ ଆମେ ଗଳାରେ ଲୁଗା ଦେଇ ଲମ୍ବ ଲମ୍ବ ହୋଇ ଗଡ଼ିଲୁ । ଠାକୁରାଣୀଙ୍କୁ କେତେ ମାନସିକ କର ଗୁହାରିଲୁଁ । ସେ ଆଉ ଅବତରଲେ ନାହିଁ କ ଜବାବ୍ ଦେଲେ ନାହିଁ । ହରଅ ହତଜ୍ଞାନ ହୋଇ ପଡ଼ିଥାଏ, ସୋରଣବଦ ନାହିଁ । ମା ତାର ପାଗଲ ପର ହୋଇ ଉଠିଲା । ଗୁଡ଼ରେ ହାତ ମାର କାନ୍ଥରେ ମୁଣ୍ଡ ପିଟିଦେଲା । କାନ୍ଦ କାନ୍ଦ ବକଲ ହୋଇ କହଲା, ଯାଉଛୁ ଉପାଧିଆ ପଡ଼ବ । ମୋ ଜବାବ୍‌କୁ ଅନେଇଲା ନାହିଁ ।

ଅନ୍ଧାର ରାତ୍ର, କାହାର ସୋରଣବଦ ନାହିଁ । ପୁଅ ପାଖରେ ମୋତେ ଏକୁଟିଆ ଛାଡ଼ ସେ ଚାଲିଗଲା । ମନା କଲି ନାହିଁ, ବାଧା ଦେଲି ନାହିଁ ।

ସକାଳ ପହରକୁ ହରଅ ଚାଲିଗଲା । ମୋ ରଡ଼ଘାତରେ ଲୋକଙ୍କ ନଦ ଭାଙ୍ଗିଲା । କେହ କେହ ଆସି ବୋଧଶୋଧ କର କହଗଲେ, କପାଳରେ ନ ଥିଲା, କପାଳ ! ବହେ ଛାଟିପିଟି ହୋଇ କାନ୍ଦଲି ।

ବନା ଭାଇରେ, ବାସୁଳେଇଙ୍କ କୋଠଲା ତଳେ ଯା ଦେଖିବୁ ଯା ··, କହୁ କହୁ ଗୋପାଳ ଓଝା କଥାଟାକୁ ଅଧା କର ତ୍ରିବନ ପାତ୍ର କାନରେ କଣ ଫୁସ୍‌ଫୁସ୍ କର କହଲା ।

ମୋ କାନରେ କଥାର ପଦେ ଅଧେ ବାଜଗଲା—

ଏ । କଣ !

ପୁଅକୁ ଛାଡ଼ ଛୁଟିଲି । ଯାହା ଭାବଥିଲି ଦେଖିଲି ସେଇଆ । କୋଠଲା ଗଛ ଡାଳରେ ହରଅ ମା ଝୁଲୁଛ । ଜଭଟା ପଦାକୁ ମୁଖରୁ ବାହାର ପଡ଼ିଛ ।

ଗୋଡ଼ ଦିଟା ଭୂଇଁ ଉପରୁ ଦି ଅଙ୍ଗୁଳ ଛାଡ଼ିଛି କି ନାହିଁ । ମୋର ସଂସାର ସରିଛି, ଅବାକାବା ହୋଇ ମୁଣ୍ଡରେ ହାତ ଦେଇ ଥକା ହୋଇ ସେଇଠି ବସି ପଡ଼ିଲି ।

ବାସୁଲେଇଙ୍କ କୋପରୁ ଆଜି ମୋର ଏ ଦଶା ! କହୁ କହୁ ବୁଢ଼ା ପୁଣି ଆଖିରୁ ପୋଛିଲା ଲୁହ ।

# ନାମଟି ତାର ରମ୍ପା

ସିନେମା । ତନ୍ମୟ ହୋଇ ପରଦା ଆଡ଼କୁ ଚାହିଁ ରହିଛି ସଭ୍ୟ ସମାଜ । ବମ୍ବେ ଠିକର ବିଖ୍ୟାତ ପ୍ରଡ଼କସନ । ବମ୍ବେ କଲିକତା କି ଅନ୍ୟ କେଉଁ ବଡ଼ ସହର କଥା ଛାଡ଼, ଶ୍ରେଷ୍ଠ କଟକ ସହରରେ ତିନି ସପ୍ତାହ ଚାଲିଲାଣି । ଗାଉଛି ଦୁଇଟା ସୋ । ଦୁଇ ଦିନ ଆଗରୁ ଟିକେଟ୍ ବୁକ୍ କରିବାକୁ ଚେଷ୍ଟା କରି ମଧ୍ୟ ଅନେକଙ୍କୁ ବିଫଳ ହୋଇ ଅପେକ୍ଷା କରିବାକୁ ହେଉଛି ପରଦିନ ପାଇଁ । ତେବେ କେହି ହତାଶ ହୋଇ ନାହାଁନ୍ତି ।

୧୯୪୫ ସାଲର ଭାରତ ବିଖ୍ୟାତ ପ୍ରୋଡକ୍ସନ୍ । ପତ୍ରପତ୍ରିକାରେ କେତେ ପ୍ରଶଂସା । ଷ୍ଟାର୍‌ମାନଙ୍କର ଭିନ୍ନ ଭିନ୍ନ ଅବସ୍ଥାର ଛବି ସଭ୍ୟ ମଣିଷକୁ ପାଗଳ କରୁଛି । ଗଳ୍ପର ବିଷୟବସ୍ତୁ, କଥୋପକଥନ, ଡିରେକ୍‌ସନ, ଫଟୋଗ୍ରାଫି, ପ୍ରାକୃତିକ ଦୃଶ୍ୟ, ବିଶେଷତଃ ହିରୋଇନ୍ ଶ୍ରୀମତୀ ନୀହାରିକା ଦେବୀଙ୍କର ସଙ୍ଗୀତ ଓ ନୃତ୍ୟ-ଚାତୁରୀ ଦର୍ଶକଙ୍କର ମନକୁ ଓଟାରି ରଖିଛି । ସେଥିପାଇଁ ହାଉସ୍ ଫୁଲ୍, ବାହାରେ ଏତେ ମଟର, ଗାଡ଼ି, ରିକ୍‌ସା, ସାଇକଲ୍ ଭିଡ଼ ।

ଛବି ଚାଲିଛି—ଏଇଟି ଛବିର ଶ୍ରେଷ୍ଠ ଅଂଶ । ବିରହିଣୀ ନୀହାରିକା ଘୋର ଅରଣ୍ୟ ଭିତରେ ପ୍ରେମିକର ସାଥିରେ ଯାଉଁ ଯାଉଁ ଅସ୍ତଗାମୀ ସୂର୍ଯ୍ୟର ସୁନେଲି ଆଭାରେ ରଞ୍ଜିତ ଜଳପ୍ରପାତ ପାଖରେ ପହଞ୍ଚିଗଲେ । ନୀହାରିକା ଓ ତାଙ୍କର ପ୍ରେମିକ ପଳାତକ । ଜଣେ ଧନୀର କନ୍ୟା, ଉଚ୍ଚ ଜାତିର ହିନ୍ଦୁ ସନ୍ତାନ । ପ୍ରେମିକ ଉଚ୍ଚ ଶିକ୍ଷିତ ହେଲେ ମଧ୍ୟ ହରିଜନ ଘରର ପୁଅ । ଦରିଦ୍ର । ଦୁହେଁ ପ୍ରେମରେ ପଡ଼ିଥିଲେ । ବନ୍ଧୁ ବାନ୍ଧବ ବିବାହ ଅନୁମୋଦନ କଲେ ନାହିଁ । ତେଣୁ ସଭ୍ୟ ସମାଜ ଛାଡ଼ି ସେମାନେ ଜଙ୍ଗଲରେ ପଶିଛନ୍ତି । ସ୍ୱାଧୀନ ଆଦମ ଜୀବନ କଟାଇବେ । ପ୍ରେମ ଅପେକ୍ଷା ସମାଜର ବନ୍ଧନ, ସଭ୍ୟତାର ଆଇନ୍ ବଡ଼ ନୁହେଁ ।

ସେଇ ଜଳପ୍ରପାତ ପାଖରେ, ଜଙ୍ଗଲ ମଝିରେ, ଯେଉଁଠି ଚାରିଆଡ଼େ କେବଳ ଫୁଲଗଛ, ଗଛ ଡାଳରେ କପୋତ କପୋତୀ, ବୁଦା ଉହାଡ଼ରେ ହରିଣ

ହରିଣୀ, ଫୁଲ ଉପରେ ପ୍ରଜାପତି, ସେଇଠି ନାୟକ ନାୟିକା ପ୍ରେମିକର ହାତ ଧରି ପ୍ରେମ ସଙ୍ଗୀତ ବୋଲିଲେ । ପ୍ରେମିକ ବି ସଙ୍ଗୀତରେ ଦେଲେ ଉତ୍ତର । ଗୋଡ଼ିଆଗୋଡ଼ି, ଲୁଚକାଳି ଖେଳ, ମୁଖ ଭଙ୍ଗୀ, ଆଖି ଠାରାଠାରି । ନାୟାିକା ଆଧୁନିକା । ବେଶ ଭୂଷା ଆଧୁନିକ ରୁଚି ପ୍ରକାରେ । ତେଣୁ, ନାଚିଲା ବେଳେ ଯୌବନ ଆଭରଣ ଠେଲି ପଡ଼ୁଛି । ଡେକା ଭଉଁରୀ ଖେଳି ବୁଲି ଗଲା ବେଳେ ପତଳା ଶାଢ଼ୀ ଓ ଘାଗରା ଚକ୍କ ପରି ବୁଲି ଉପରକୁ ଉଠୁଛି । ଜଘନର ଶୋଭା ବିକଶି ଉଠୁଛି ।

ଏଇଠି ତାଳିମାଡ଼ ।

ତାପରେ ପ୍ରେମିକ କରୁଛି ଆଲିଙ୍ଗନ, ନାୟିକାର ଅଧର-ସୁଧା ପାନ ।

ତାଳିମାଡ଼ ଅଦ୍ଭୁତ ଶବ୍ଦ ।

ରଘୁନାଥର ପାପୁଲି ଛପୁଛି ସାଧନା । ରଘୁ ଉତ୍ତର ଦେବାକୁ ମୁଣ୍ଡ ବଙ୍କେଇ ସାଧନାର ମୁଣ୍ଡରେ ପ୍ରେମାଘାତ କରୁଛି । ସେମାନେ ବି ଆଧୁନିକ । ସେମାନେ ବି ଶିକ୍ଷିତ । ଭାଇ ଭଉଣୀର ସମ୍ବନ୍ଧ ପାଇ ନିଖାଦ ନିର୍ମଳ ପବିତ୍ର ଭ୍ରାତୃ-ସ୍ନେହର ଆବରଣ ତଳେ ସେମାନେ ବି ପ୍ରେମରେ ପଡ଼ିଛନ୍ତି । ସେମାନେ ବି ସଭ୍ୟତାର ବିକାଶ କରୁଛନ୍ତି । ତାଙ୍କ ଆଗରେ ବି ଭବିଷ୍ୟତର ଗୋଟାଏ ପ୍ରବ୍ଲେମ୍ ।

ରଘୁନାଥ ଏମ୍. ଏ. ପାସ୍ କରି ଗୋଟିଏ ବର୍ଷ ଟିଉସନ୍ କରି କଟକରେ ବସା ଖରଚ ଚଳାଇଲା ପରେ ସବ୍-ଡ଼େପୋଟି ଗୁଳରି ଖଣ୍ଡେ ପାଇ ପାରିଛି । ଘରେ ବାପ, ମା, ଭାଇ, ଭଉଣୀ । ଗରିବ ଘରର ପୁଅ । ସମସ୍ତେ ଆଶାକୁଳ ଆଖିରେ ଚାହିଁ ରହିଛନ୍ତି ତାରି ରୋଜଗାରକୁ । ସେ ବି ତ ହେଳା କରିନାହିଁ ! ସାଧନାକୁ ଟିଉସନ୍ କରି ପଚାଶଟି ଟଙ୍କା ପାଉଥିଲା । ସେଥିରୁ ସେ ଘରକୁ ଅକ୍ଲେଶରେ ପାଞ୍ଚ ଟଙ୍କା ପଠାଇ ପାରୁଥିଲା ।

ସାଧନା ଧନୀ ଘରର ସବା ସାନ ଝିଅ । ବାପ ବଡ଼ ସରକାରୀ ଚାକିରି କରନ୍ତି । ବଡ଼ ଭାଇ କଲିକତାରେ ବଡ଼ ପାଠ ପଢ଼ୁଛି । ସେ ଏ ବର୍ଷ ପ୍ରଥମ ଶ୍ରେଣୀରେ ଆଇ. ଏ. ପାଶ୍ କରିଛି । ସେଥିପାଇଁ ସେ ରଘୁ ପାଖରେ କୃତଜ୍ଞ । ପୂରା ଗୋଟିଏ ବର୍ଷ ରଘୁ ଅକ୍ଲାନ୍ତ ପରିଶ୍ରମ କରିଛି । ସାଧନାକୁ ମଧ୍ୟ ଖଟଟାଇଛି ।

ଟିଉସନ୍ ସ୍ଥିର ହେଲା ଦିନ ଠିକ୍ ହେଲା, ସପ୍ତାହରେ ରଘୁ ତିନି ଥର ଆସିବ, ଘଣ୍ଟାଏ କରି ପଢ଼ାଇଯିବ, ସେଥିକରେ ପଚାଶ ଟଙ୍କା । କିନ୍ତୁ କାର୍ଯ୍ୟରେ କଣ ତାହା ହୋଇପାରିଲା ? ପ୍ରଥମ ସପ୍ତାହ ତିନି ଘଣ୍ଟା, ଦ୍ୱିତୀୟ ସପ୍ତାହ ପାଞ୍ଚ ଘଣ୍ଟା, ତୃତୀୟ ସପ୍ତାହ ପୂରା ସାତ ଘଣ୍ଟା । ଏଥି ପାଇଁ ସାଧନାର ବାପାଙ୍କୁ ଅଧିକା ଟଙ୍କା ଦେବାକୁ ପଡ଼ିନାହିଁ । କେବଳ ସାଧନାର ମା ରଘୁର ଆଗକୁ ଆସି କୁଆଁଳିଆ କଣ୍ଠରେ ପୁଅ ବୋଲି ଦୁଇ ଚାରି ଥର ଡାକିଛନ୍ତି । ସେଇ ସୁବିଧା ନେଇ, ସାର୍

ପରିବର୍ତ୍ତେ ସାଧନା ଭାଇ ବୋଲି ସମ୍ବୋଧନ କରୁଛି । ମାଷ୍ଟରଙ୍କୁ ଭକ୍ତି ଦେଖାଇବା ପରିବର୍ତ୍ତେ ରଘୁ ଭାଇ ପାଖରେ ଗେହ୍ଲେଇ ହେଉଛି, ଅଳି କରୁଛି, ଅଭିମାନ କରୁଛି ।

ଛଅ ସପ୍ତାହ ପରେ ସମସ୍ତଙ୍କର ଆଉ ସ୍ଥିରତା ରହି ନ ଥିଲା । ସାଧନାର ମା ରଘୁକୁ ଖାଇବାକୁ ଡାକନ୍ତି । ପୁଅ ପୁଅ ହୋଇ ପାଣି ପିଅନ୍ତି ନାହିଁ । ସୁଖ ଦୁଃଖ ହୁଅନ୍ତି । ରଘୁ ସତେ କି ଘରର ପିଲା, ହେଉ ପଛେ ଅନ୍ୟ ଜାତିର ।

ସାଧନା ସଙ୍ଗେ ରଘୁର ଅବାଧ ମିଳାମିଶା । ସାଧନା ସଭ୍ୟ ଜଗତର ପିଲା । ଅତି ଆଧୁନିକ ଘରର ଝିଅ । ସବୁ ବିଷୟରେ ଅପ୍-ଟୁ-ଡେଟ୍ । ଆଧୁନିକତା ଶିଖେଇବା ପାଇଁ କଟକରେ ତ ଛଅଟା ସିନେମା ଘର, ଦୁଇଟା ରଙ୍ଗମଞ୍ଚ ! ତଥାପି ଏ ସବୁ ନିଅଣ୍ଟ । କପାଳ ଅଧଲଙ୍ଗୁଳି ଠାଣିରେ ଲୁଗା ପିନ୍ଧିବାକୁ ହେବ, ମୁଖ ଭଙ୍ଗୀ, ଆଖି ଠାରଟା, ନିତମ୍ବହଲା ଚାଲି, ନାଲି ଓଠ, ପୁଣି କଥା ଭାଷା ଏ ସବୁ ଏଇ ସିନେମାଘର ଶିକ୍ଷା ଦିଏ । ଚିଠି ଲେଖାଲେଖି କରିବା ସହଜ । ପ୍ରେମର ଏକ୍‌ସପେରିମେଣ୍ଟ କରିବାକୁ ହେଲେ ପାଖରେ ଶିକ୍ଷିତ, ଆଧୁନିକ ରୋମାଣ୍ଟିକ୍ ତରୁଣ ଶିକ୍ଷକ ଓରଫ ଲେଖାପୋଖା ଭାଇ ଥିଲେ ହେଲା ।

ଦୋଷ କାହାର ନୁହେଁ । ପ୍ରଗତିଶୀଳ ସଭ୍ୟ ସମାଜରେ ସବୁ ସମ୍ଭବ, ଆଉ, ଯାହା ସମ୍ଭବ ସବୁ ପ୍ରଗତି । ତେଣୁ ସାଧନା ଯେ ରଘୁର ପ୍ରେମରେ ପଡ଼ିଲା, ଅଥବା ରଘୁ ପଡ଼ିଲା ସାଧନାର ପ୍ରେମରେ ଏଥିରେ ଆପତ୍ତି କରିବାର କିଛି ନାହିଁ । ହେଁ ଦୁଇ ଜାତିର, କିନ୍ତୁ ଗୁରୁଆଡ଼େ ତ ହୁରି ପଡ଼ୁଛି ହିନ୍ଦୁ ସମାଜରୁ ଉଠାଅ ଜାତି-ଭେଦ ! ଷଣ୍ଢ କଣ ?

ରଘୁନାଥ ସବ୍‌ଡ଼େପୋଟି ହେଲା ପରେ ସାଧନାର ଘରେ ତାର ସମ୍ମାନ ବଢ଼ିଲା । ଟିଉସନ୍ ଆବଶ୍ୟକ ନଥିଲେ ମଧ୍ୟ ଘନିଷ୍ଠତା ତ ବଢ଼ିଛି, ରଘୁନାଥର ଆଗମନରେ ବାଧା ଦେବ କିଏ ? ସାଧନାର ଫଟୋ ପାଖରେ ରଖିବା କି ସାଧନା ସଙ୍ଗେ ଚିଠି ଆଦାନ ପ୍ରଦାନ କରିବାରେ କାହାର ତ ଆପତ୍ତି ନ ଥାଏ । ରଘୁନାଥ ସଙ୍ଗେ ସିନେମା ଦେଖି ଯିବାକୁ ମଧ୍ୟ ବାଧା ନାହିଁ । ଉଭୟେ ବୟସ୍କ । ନିଜର ଦାୟିତ୍ୱ ଅବଶ୍ୟ ବୁଝନ୍ତି ! ପୁଣି ଭାଇ-ଭଉଣୀ ! ପବିତ୍ର ସମ୍ବନ୍ଧ !

ରଘୁନାଥ ଟିକିଏ ଅଡୁଆରେ ପଡ଼ୁଛି । କେଉଁ ପିଲାଦିନର ସମ୍ବନ୍ଧ ପାଇଁ ବାପା ତା ପାଇଁ କନ୍ୟା ସ୍ଥିର କରିଛନ୍ତି । ସ୍ୱଜାତି । ସୁନ୍ଦରୀ । ଅଳ୍ପ ପାଠ ପଢ଼ିଛି । ଅଳ୍ପବୟସୀ । ଘର କାମରେ ନିପୁଣା । ଲାଜକୁଳୀ । ସମାନସ୍କନ୍ଧ ବନ୍ଧୁ । ବାପ, ମା, ଭାଇ, ଭଉଣୀ ସଭିଙ୍କ ମନକୁ ପାଇଛି ବୋଧହୁଏ । ଚିଠି ପାଇ ଉତ୍ତର ଦେଇ ପାରି ନାହିଁ । କରେ କଣ ବିଚରା ! ଗୋଟିଏ ପାଖେ ଆଧୁନିକା ସାଧନା ଯାହାକୁ ସେ ଭଲପାଏ, ଆରପାଖରେ ମଫସଲର ଝିଅ ଚମ୍ପା ! ପ୍ରସ୍ତାବ ବାଢ଼ିଲେ ସାଧନାର ବାପ ମା ଅମଙ୍ଗ ହେବେ ନାହିଁ । କିନ୍ତୁ ତାର ବାପ ମା ? କରେ କଣ ?

ଆଜି ପୁଣି ଆଦେଶ ପାଇଛି, ଗୋଟାଏ ସ୍ୱତନ୍ତ୍ର କାମରେ ତାକୁ ତୁରନ୍ତ ବାଲି-ଗୁଡ଼ା ଯିବାକୁ ହେବ । ପୂର୍ବରୁ ଏହି ବିଷୟର ସମାଧାନ କରିବା ଉଚିତ । ସେଇଥିପାଇଁ ସଞ୍ଜରେ ସେ ସାଧନା ପାଖକୁ ଯାଇଥିଲା । ବଦଳି ଆଦେଶ କଥା ସଭିଙ୍କୁ କହି ପାରିଲା ସିନା, ଆଉ କଥାଟି ତ ମୁହଁରୁ ବାହାରିଲା ନାହିଁ ।

ମନଦୁଃଖରେ ସାଧନା ପ୍ରସ୍ତାବ କଲା ସିନେମା ଦେଖିବାକୁ । ସିନେମା ସୋ ପରେ—ଗୋଟିଏ ରିକ୍‌ସାରେ ଠେଲାଠେଲି ହୋଇ ବସିଛନ୍ତି ରଘୁନାଥ ଓ ସାଧନା । ଜଣକର ହାତ ଆଉ ଜଣଙ୍କର ହାତ ଭିତରେ ବନ୍ଦୀ । ଦୁହିଁଙ୍କର କାମନା ଦୁହିଁଙ୍କୁ କରିଛି ବେଷ୍ଟନ । ଦେହର ପରଶ ଦହିଙ୍କ ମନରେ ପୁଲକର ଢେଉ ଖେଳାଉଛି । ରିକ୍‌ସା ଚାଲିଛି ।

ସାଧନା ପଚାରିଲା, କେବେ ଯିବ ?

ପନ୍ଦର ଦିନ ।

ଛୁଟି ଦେବାରେ ହେଲା କରିବ ନାହିଁ ।

ଛୁଟି ଦେଇ ହୁଏ ନାହିଁ । ରଘୁନାଥ ଯେଉଁ କାମରେ ବାଲିଗୁଡ଼ା ଆସିଛି, ସେ ତ ବଡ଼ ଅସାଧ୍ୟ । ଅରଣ୍ୟ ଭିତରେ ଭ୍ରମି ବଣୁଆ ଜାତିର ଭଲ ମନ୍ଦ, ସୁଖ ଦୁଃଖ ବୁଝିବ, ସେମାନଙ୍କର ଉପରି ଉନ୍ନତି ହେବ ସେ ବିଷୟରେ ରିପୋର୍ଟ୍ ଲେଖିବ । ଅସାଧ୍ୟ ଓ ବିପଦସଙ୍କୁଳ ହେଲେ ମଧ୍ୟ ରଘୁନାଥ ପଛେଇ ରହେ ନାହିଁ । ସଙ୍ଗରେ ଲୋକବାକ, ତଳିଆ କର୍ମଚାରୀ ଓ ସ୍ଥାନୀୟ ଦ୍ୱିଭାଷୀ ଲୋକ ଧରି ଯେ ବଣ ପାହାଡ଼, ନଈ ନାଳ ଡେଇଁ ଗୋଟିଏ ଗାଁରୁ ଆଉ ଗାଁକୁ ଯାଏ । ବାଲିଗୁଡ଼ାର କନ୍ଧଙ୍କ ସଙ୍ଗେ ମିଶେ, ସେମାନଙ୍କର ହାଲଚାଲ ବୁଝେ । ରିପୋର୍ଟ ଲେଖେ ।

ଚାରି ମାସ କଟିଲା । ସଭ୍ୟ ସମାଜଠାରୁ ବହୁ ଦୂରରେ ଆଜି ରଘୁନାଥ । ବାଲିଗୁଡ଼ା ଗାଁରୁ ପନ୍ଦର କୋଡ଼ିଏ ମାଇଲ ଦୂରରେ । ରାସ୍ତାଘାଟ କିଛି ନାହିଁ । ବଣ ପାହାଡ଼ ନଈ ନାଳ ଡେଇଁ ଡେଇଁ ଆସିଛି । ଖରାଦିନ ବୋଲି ଏତିକି ସମ୍ଭବ ହେଲା । ବର୍ଷାଦିନ ହୋଇଥିଲେ ଆସିବା ହୁଏତ ଅସମ୍ଭବ ହୋଇଥାନ୍ତା । ଆପଦ ବିପଦ ।

ନଗ୍ନ-ପ୍ରକୃତିର ସଂସର୍ଗରେ ମୋଟେ ଚାରୋଟି ମାସ କଟାଇ ସଭ୍ୟତା ସମ୍ବନ୍ଧରେ ତାର ମତ ବଦଳିଛି । ଆଗରେ ପାହାଡ଼ । ପାହାଡ଼ ଉପରୁ ଖସି ଆସୁଛି ଯେଉଁ ଝରଣା ଠିକ୍ ସେହିପରି ଜୀବନର ଗତି ଏଠାରେ ବାଧାହୀନ, ସ୍ୱଚ୍ଛନ୍ଦ । ସଭ୍ୟତାର ଆଭରଣ ନାହିଁ । ସଂସ୍କୃତିର ମୁଖା ପିନ୍ଧି କେହି ଏଠି ଅଭିନୟ କରୁ ନାହିଁ । ବମ୍ବେ ଷ୍ଟୁଡିଓର କୃତ୍ରିମ ପ୍ରାକୃତିକ ଦୃଶ୍ୟ ଏଠି ନାହିଁ । ଜୀବନ ନିଜର ପ୍ରକୃତ ରୂପ ଧରି ଠିଆ ହୋଇଛି ।

ସେଇ ଶ୍ରେଷ୍ଠ ଜଳପ୍ରପାତ ପାଖରେ—ଜଙ୍ଗଲ । କେବଳ ଫୁଲଗଛ ନାହିଁ, କଣ୍ଟାଗଛ ବି ଅଛି । ଗଛ ଡାଳରେ କପୋତ କପୋତୀ । ଗଛ ଖୋଲରୁ ଅଜଗର ମୁହଁ କାଢ଼ିଛି । ଗଛ ତଳେ କେଉଁଠି ମୃଗଶିଶୁ ନାଚ କରୁଥିବ ସନ୍ଦେହ ନାହିଁ; କିନ୍ତୁ ଝୋଲା ଭିତରେ ରକ୍ତ ମୁହାଁ ବାଘ ଦେହ ହଲାଉଛି, ଓଠ ଘୃଷୁଛି । ପରଦା ଉପରେ ଗୋଟିଏ ମାହାରିକାର ନୃତ୍ୟ । ଦେହରୁ ଖସି ପଡ଼ୁଥିବା ପାତଳ ଶାଢ଼ୀ ଆଡ଼କୁ ଶହ ଶହ ଲୋକ ଲୋଭିଲା ଆଖିରେ ଚାହିଁଛନ୍ତି । ସେଇ ଝରଣାରେ କେତେ କୁଟିଆ-କନ୍ଧ ଲଳନା, ଉଲଙ୍ଗ-ଯୌବନା ସ୍ନାନ କରୁଛନ୍ତି ଆଉ ସେଇ ବାଟେ କେତେ କନ୍ଧ ଯୁବକ ଯାଉଛନ୍ତି; କେହି ତ କାହାର ଉପରେ କଟାକ୍ଷ ହାଣୁ ନାହିଁ ? ଲାଜରେ ସଙ୍କୁଚିତ ହୋଇ କୁଟିଆ ଯୁବତୀ ଗୁହାରେ ଲୁଚୁ ନାହିଁ ।

ଲାଜର ବିଷ ପଶି ନାହିଁ କାହାର ମନରେ । ସଭ୍ୟ-ଦୁନିଆର ଲୁଚକାଳି-ଖେଳ-ପ୍ରେମ ସେଠାରେ ନାହିଁ ! ସେଠାରେ ବି ଲୋକେ ସଂସାର କରନ୍ତି । ସ୍ୱାମୀ ସ୍ତ୍ରୀ ପୁଅ ଝିଅ ନେଇ ସମାଜ ଗଢ଼ନ୍ତି । ପ୍ରଚଳିତ ପ୍ରଥାର ବ୍ୟତିକ୍ରମ ହେଲେ ବେକରୁ ମୁଣ୍ଡ ଛିଣ୍ଡାନ୍ତି !

ରଘୁନାଥର ମନେ ପଡ଼େ ସାଧନା ! ଶିକ୍ଷିତା । ଆଧୁନିକା । ସିନେମା ଷ୍ଟାର୍ । ବାହାର ଓ ଭିତର ଆଭରଣ ତଳେ ତାର ସଭ୍ୟ ଜୀବନର ବିକାଶ । ଯାହା ସେ ଅନୁଭବ କରେ, ପୁଣି ଯାହା ସେ ଅନୁଭବ ନ କରେ ଅଥଚ ଉପନ୍ୟାସର ନାୟିକାର ଅନୁଭବ କରିବା ଉଚିତ, ସବୁ ସେ-ଭାଷାରେ ପ୍ରକାଶ କରିପାରେ । ପ୍ରକାଶ କରିଛି । ରଘୁନାଥ ବି ପଛୁଏ ନାହିଁ । କେତେ ଚେଷ୍ଟା କରି ସେ ମଧ୍ୟ ପଦ୍ୟ ଲେଖେ, କବିତା ଲେଖେ ।

ସାଧନା ହୁଏତ ଭବିଷ୍ୟତରେ କେବେ ଦିନେ ଜନନୀ ହେବ । ଶିକ୍ଷା, ସଭ୍ୟତା ଆଧୁନିକତା ତାକୁ ଜନନୀ ହେବାର କାମନାରୁ ଦୁରେଇ ରଖିପାରିବ ନାହିଁ । ଜନନୀ ହେବାକୁ ସେ ହେବ ପତ୍ନୀ, ପୁଣି ପତ୍ନୀ ହେବାକୁ ସେ ପ୍ରେମ କରିବ । ରଘୁନାଥ କି ଆଉ କାହାକୁ ତାର ଆଡ଼କୁ ଟାଣିବ । ଆଭରଣର ତଳେ ଥାଇ ସେ ଖେଳିବ ଲୁଚକାଳି ।

ଏଇ ଶ୍ରେଷ୍ଠିଆ ଯୁବତୀଟି ମଧ୍ୟ ଦିନେ ଜନନୀ ହେବ । ଉନ୍ମୁକ୍ତ ତାର ଯୌବନଶ୍ରୀ । ପ୍ରେମର ଭାଷା ଜାଣେ ନାହିଁ, ଶିକ୍ଷା ନାହିଁ, ଆଧୁନିକତା ଜଣା ନାହିଁ । ଆଭରଣ ତଳୁ ଅଭିନୟ କରି ଜାଣେ ନାହିଁ । ମାତୃତ୍ୱର ପ୍ରେରଣା କିନ୍ତୁ ମନରେ ସଜାଗ । ଯେଉଁ କନ୍ଧ ଯୁବକଟି ତାର ହାତ ଧରି ଟାଣି ନେବ, ଯାହା ସାଥିରେ ଯିବାକୁ ତାର କାମନା ତାକୁ ବାଧା ଦେବ ନାହିଁ, ସେହି ହେବ ତାର ସନ୍ତାନର ପିତା, ତାର ସ୍ୱାମୀ ।

ଚମ୍ପା—! ଅଜଣା । ସେ ବି ଯୁବତୀ । ବାପ ମା ଭାଇ ବନ୍ଧୁ ସମସ୍ତେ ତାକୁ ବାଛିଛନ୍ତି । ସେ ବି ଦିନେ ହେବ ଜନନୀ । ପ୍ରଭେଦ କିଛି ନାହିଁ । କାହିଁକି

ସୁଖର ସଂସାରରେ ଅଶାନ୍ତି ସୃଷ୍ଟି କରିବ ? କାହାଁକ ବା ଚହଲ ଆଣିବ ସମାଜରେ ? କାହାଁକ ସେ ଅଭିନୟର ନାୟକ ସାଜି ଚତ୍କାର କରିବ ନୂଆ ଆଦର୍ଶ ?

ସାଧନାର ଶିକ୍ଷକ ସେ ହୋଇଥିଲା, ପୁଣି ହେଲା ଭାଇ ··ସେଇଠି ପ୍ରଗଢ଼ ଅଟେକ ରହୁ ।

ବାଲିଗୁଡ଼ାର ଘୋର ଅରଣ୍ୟ ଭିତରେ ସେ ଯେଉଁ ଗ୍ରେଟ ରେଷ୍ଟ୍ ସେଡ୍ ଟି, ସେଇଠି ସେ ଦୁଇଟି ଚିଠି ଲେଖିଲା ସେଇ ରାତିରେ । ପ୍ରଥମଟି ବାପାଙ୍କ ପାଖକୁ । ଆଉ ଅରଟି—

ସ୍ନେହର ଭଉଣୀଟି ମୋର ସାଧନା,

× × × ନାମଟି ତାର ଚମ୍ପା । ଇତି ।

ତୋର ଶୁଭକାଙ୍କ୍ଷୀ

ଭାଇ

## ତଥାପି

ମୋହନ ଦାସ ପାଣ୍ଡିତ । ବୟସ ଏକସ୍ତରି ।

ଗାଁ ମଝିରେ ଶିବ ପାଣ୍ଡର ଘର । ପିଣ୍ଡାରେ ଏକୁଟିଆ ବସି ମୁଣ୍ଡରେ ହାତ ଦେଇ ସେ ଭାବୁଛି, ଏଇଥର ଖସିବେ ! ଠାକୁରେ ଦୁଃଖ ବୁଝିବେ । ଦୁଇଶ ଟଙ୍କା ଧାର ଆଣି ଝିଅ ବାହାଘର କରିଥିଲା ଦଶ ବର୍ଷ ତଳେ । ତିନିଶ ଟଙ୍କା ସୁଝିଲାଣି । ତେବେ ବ ବୁଢ଼ା କହୁଛି ଆଉରି ଦୁଇଶ ବାକି । ମକଦମା କରିବାକୁ ଗୁମାସ୍ତାକୁ କହିଲାଣି । ହରି ଭରସା ।

ପୁରୋହିତ ବାମ ଆଗୃହେ ତାଲିକା କରୁଛନ୍ତି । ଆଖିରେ ଚଷମା । ଦୁଇ ବର୍ଷ ତଳେ ଯେତେବେଳେ ବୁଢ଼ାଙ୍କୁ ହଇଜା ଧରିଥିଲା, ସେତେବେଳେ ଶୁଦ୍ଧିକ୍ରିୟା ପାଇଁ ଗୋଟିଏ ତାଲିକା କରିଥିଲେ, ସେଇଟା ପୁରୁଣା ହେଲାଣି । ଜିନଷପତ୍ରର ଦାମ ତିନି ଗୁଣ ବଢ଼ିଲାଣି, ତାଲିକାକୁ ଉଝାଳ ନେବାକୁ ହେବ । ଏତେ ଯଜମାନ, ତଥାପି ପନ୍ଦର ଦିନ ହେଲା ରୋଜଗାର ବନ୍ଦ । ବଡ଼ ମୁଣ୍ଡ, ଏ ଖସିଲେ ଅବଶ୍ୟ ଭଲ ରକମର ଗୋଟାଏ ରୋଜଗାର ହେବ । ଦେଖାଯାଉ । ହରି ଭରସା ।

ଗାଁ ମୁଣ୍ଡ ବରଗଛ ତଳେ ଅନାଥ ଭିକାରୁଣୀଟି ଭଙ୍ଗା ଗୁଡ଼ଳ ଗଣ୍ଡିଏ ଗୋବାଉ ଗୋବାଉ ଭାବୁଛି, କେତେ ଦିନ ହେଲା ପେଟ ପୂରକର ଗଣ୍ଡିଏ ଖାଇବାକୁ ପାଇନାହିଁ । ଛିଣ୍ଡା ଲୁଗାଟାରେ ଦେହ ଘୋଡ଼ାଇ ହେଉ ନାହିଁ ।

ଠାକୁରେ କଲେ ଏଇ ମାସରେ ମନକାମନା ପୂରିବ । ଗାଁରୁ ଏତେ ବଡ଼ ମୃତ୍ୟୁ ଖସିଯିବ । କଙ୍ଗାଳ ଭୋଜନ କଣ ହେବ ନାହିଁ ? ଦୁଃଖୀ ଦରିଦ୍ରଙ୍କୁ କଣ ପିନ୍ଧିବାକୁ ଗୁରୁ ହାତ ମିଳିବ ନାହିଁ ? ବୁଢ଼ାଟା ସିନା ଗଲା, ତା ପିଲାମାନେ ତ ଖବର ପାଇ ଆସିବେ ! ଶୁଦ୍ଧି ଘର କରିବେ ! ହରି ଭରସା ।

ଦାସେ ଜର ତାଡ଼ିରେ ଛଟପଟ ହେଉଛନ୍ତି । ମୁଦିଲା ଆଖି । ମନ ଭିତରେ ଉଠୁଛି ଗୋଟାଏ ପ୍ରଶ୍ନ—ଏଇଥର ଶେଷ ।

ଯମରାଜା ଆଗରେ ଠିଆ ହୋଇଛନ୍ତି । କହୁଛନ୍ତି—ଚାଲ ଦାସେ । ଡେରି ହେଉଛି ।

ଆଉ ଗୋଟାଏ ବାଇଦା ଦିଅ ମହାପ୍ରଭୁ । ବେଶି ନାହିଁ, ବରଷ ପାଞ୍ଚଟା । କେତେ କାମ ବାକି ପଡ଼ିଛି । ଗୁରୁଟା ମକଦମା କୋର୍ଟରେ ଗଡ଼ୁଛି । ସେ ପାଖ ଅମାର ଘର ଅଧା ତୋଳା ହୋଇ ପଡ଼ିଛି । ସମ୍ପତ୍ତିଟା ପିଲାଗୁଡ଼ାଙ୍କ ଭିତରେ ବାଣ୍ଟି ପାରି ନାହିଁ । ବାଡ଼ଅ ବାଡ଼ି ହୋଇ ସବୁ ନଷ୍ଟ କରିଦେବେ । ଭାରି ଭଲ ପାଏ ମୋର ଏଇ ସାନ ନାତୁଣୀଟିକୁ । ତା ହାତକୁ ଦି ହାତ କରି ଦେଲେ ମୁଁ ନିଶ୍ଚିନ୍ତ । ରମା ମୋର ଲକ୍ଷ୍ମୀ ବୋହୂ । ତା କୋଳରେ ପୁଅଟିଏ ଦେଖିବି ।

ଯମରାଜ ହସିଲେ, ଏତେ କାମ ବାକି ଥୋଇ ବସିଛ କାହିଁକି ଆଜି ଯାଏ ? ସାତ ଥର ଆସିଲିଣି ନେବାକୁ । ସବୁ ଥର ତମେ ବାଇଦା ମାଗୁଛ । ଏମିତି କେତେ କାମର ଛଳନା ଦେଖାଉଛ । ଆର ଥର ଆସିଲା ବେଳେ ଏ ସବୁ କାମ ତ ତମ ତାଲିକାରେ ନଥିଲା ? ନା, ନା, ଏଥର ଆଉ ମହଲତ ଦେବିନାହିଁ । କ୍ରୋଧେ ହସୁଛନ୍ତି । ବାହାରି ପଡ଼ ଜଲଦି ।

ଦାସେ ହାତଯୋଡ଼ି କହିଲେ, ଏପରି ନିଷ୍ଠୁର ହେଲେ କେମିତି ଚଳିବ ? ତେମେ ଆର ଥର ଆସିଲାବେଳେ ଏ ସବୁ କାମ ଆବଶ୍ୟକ ହୋଇ ନ ଥିଲା । ପରିସ୍ଥିତି ଉପରେ କାହାର ହାତ ଅଛି ? ପାଞ୍ଚ ବର୍ଷ ନ ହେଲେ ଛଅ ବର୍ଷ ମହଲତ ଦିଅ ମହାରାଜ । ଯ୍ୟାରି ଭିତରେ ଏସବୁ କାମ ଛାଡ଼େଇ ଦେବି ।

ଯମରାଜ ଗଦା ଠେକି କହିଲେ, ଛଅ ବର୍ଷ ତ ଦୂରର କଥା ଛଅ ଘଣ୍ଟା ମହଲତ ଦେବି ନାହିଁ । ତମ କଥାରେ କି ମୂଲ୍ୟ ଅଛି ହେ ଦାସେ ? ସବୁଥର ତ କହୁଛ ଆଉ ମହଲତ ମାଗିବି ନାହିଁ, ବାକିଥିବା କାମ ଶେଷ କରିବି । ତଥାପି ତ ବାଇଦା ମାଗୁଛ । ନୂଆ ନୂଆ କାମରେ ହାତ ଦେଉଛ ।

ନେହୁରା ହୋଇ ଦାସେ କହିଲେ, ଆଉ ଲଜ୍ଜା ଦିଅନା । ଅବସ୍ଥା ସେମିତି ଆସୁଛି, ମୋର କି ଗୁରୁ ? ଗୋଟିଏ ବର୍ଷ ହେଲେ ସମୟ ଦିଅ । ତମ ଗୋଡ଼ ଧରି କହୁଛି । ଏ ଭିତରେ ସବୁ କାମ ସାରି ଦେବି । ଆଉ ମହଲତ କେବେ ମାଗିବି ନାହିଁ ।

ଯମରାଜ ଭାବିଲେ । କହିଲେ, ଗୋଟିଏ ଦିନ ବି ହେବ ନାହିଁ । ଧର୍ମୀ ରାଉଳର ବୋହୂର ଋତୁ କଟିଗଲା । ଏଥର ସେ ଗର୍ଭବତୀ ହେବ । ଯୋଗ କଢ଼େଇଛୁ । କୁଆଡ଼ୁ ଆଣି ତାକୁ ଗୋଟିଏ ଅମୋଘ ଆତ୍ମା ଦେବ କହିଲ ଦାସେ ? ତମୁକୁ ଏକଷ୍ଟ୍ରୀ ପୁତ୍ର ବାଆସ୍ତରୀ ପଶିଲା । ତମର ଆତ୍ମାକୁ ନେଲେ ଧର୍ମୀ ରାଉଳର ବୋହୂ ମନ୍ଦସ୍ୱାର ଗର୍ଭରେ ସମ୍ଭାଦିବ ।

ବିଚଳିତ ହୋଇ ଦାସେ କହିଲେ, କଣ କହୁଛ ହେଲେ ?

ବୁଝି ପାରୁ ନା, ଏଡ଼େ ସହଜ କଥା ? ତମେ ଧର୍ମୀ ରାଉଳର ନାତି ହୋଇ ଜନ୍ମ ହେବ ।

ଦାସେ ଛଟପଟ ହେବାକୁ ଲାଗିଲେ । ଗତ କଥା ତାଙ୍କର ମନେ ପଡ଼ିଲା । ଧର୍ମୀ ରାଉଳ ବିପଦରେ ପଡ଼ିଥିଲା ବେଳେ ଦାସେ ତାଙ୍କୁ ଟଙ୍କା କରଜ ଦେଇ-ଥିଲେ । ସୁଧ ମୂଳ ବାବଦ୍‌କୁ ଯାହା ତାଙ୍କର ପାଉଣା ହେଲା ସେଥିପାଇଁ କୋର୍ଟରେ ନାଲିସ୍ କରି ଧର୍ମୀ ରାଉଳର ଘର ଦ୍ୱାର ଜମିବାଡ଼ି ସବୁ ସେ ନିଲାମ କରେଇ ନେଲେ । ସେଇ ଦୁଃଖରେ ରାଉଳର ପୁଅ ବାଇଆ କୁକୁର ପରି ଏଣେ ତେଣେ ବୁଲି ଶେଷକୁ ମଲା । ରାଉଳ ବୁଢ଼ା ସ୍ତ୍ରୀଠି କୁଡ଼ିଆଟିଏ ରାଉଳସାହିରେ କରି ରହିଛି । ନିଜେ ମୂଲ ଲାଗେ । ବୋହୂ ବି ପରଘରେ ଧାନ କୁଟେ । ବଡ଼ କଷ୍ଟରେ ଉପାସ ଭୋକରେ ଶଶୁର ଓ ବୋହୂଙ୍କର ଦିନ କଟେ ।

ଯେଉଁ ଧର୍ମୀ ରାଉଳର ସର୍ବନାଶ କରିଛନ୍ତି, ସେ ପୁଣି ହେବେ ତାରି ନାତି ? ଧର୍ମରାଜ ଯମରାଜାଙ୍କର ଏ ତ ହେବ ଅନ୍ୟାୟ ବିଚାର । ଦାସଙ୍କ ମୁଣ୍ଡରେ ଗୋଟାଏ ବୁଦ୍ଧି ଖେଳିଲା । ହାତ ଯୋଡ଼ି ଜଣାଣ କଲେ, ମହାରାଜ ! ମନ୍ଦସ୍ୱା ଯେ ବିଧବା ?

ଧର୍ମରାଜ ହସି ହସି କହିଲେ, ମୁଁ ଜାଣେ । ମେଲି ସାହୁ ତେଲିକି ତ ଜାଣିଥିବ ?

ଚମକି ଉଠିଲେ ଦାସେ । ମେଲି ସାହୁ ସାଧା କାଗଜରେ ଦସ୍ତଖତ୍ କରି ତାର ସ୍ତ୍ରୀ ବେମାରି ପଡ଼ିଥିଲା ବେଳେ ମୋଟେ ତିରିଶ ଟଙ୍କା ନେଇଥିଲା । ଦାସେ ତହିଁରେ ଶୂନ୍ୟ ବସେଇ ତିନଶ ଟଙ୍କାକୁ ମକଦ୍ଦମା ଚଳେଇଛନ୍ତି । ଜିତିବା ଉପରେ ।

ଡରି ଡରି କହିଲେ ଦାସେ, ଜାଣେ ।

ଯମ କହିଲେ, ମେଲି ସାହୁ ସ୍ତ୍ରୀର ଆତ୍ମାକୁ ଆଣି ତମର ଏଇ ସାନ ମଝିଆଁ ବୋହୂର ପେଟରେ ରଖିବାରୁ ତମର ଏ ନାତୁଣୀ ଗୁଣ୍ଡି ଜନ୍ମ ହେଲା । ନାତିଟିଏ ତମେ ଖୋଜୁଥିଲ । ସେଥିପାଇଁ ଧର୍ମୀ ରାଉଳ ପୁଅର ଆତ୍ମାକୁ ଆଣି ପୁଣି ତମର ଏଇ ବୋହୂର ପେଟରେ ଥୋଇଛୁ । ମେଲି ସାହୁର ସନ୍ତାନ ହୋଇ ମନ୍ଦସ୍ୱା

ଗର୍ଭରେ ତମେ ଜନ୍ମ ହେବ । ଗୁଡ଼ି ନାହିଁ କି ଦାସେ ? ଆମ ମନ୍ତ୍ରୀ ଚନ୍ଦ୍ରଗୁପ୍ତର ଆଇନ ବହିରେ ମୋଟେ ଗୋଟିଏ ଦଫା—"ଯେସାକୁ ତେସା" ।

ଗୃହଆଡ଼ ଅନ୍ଧାର ଦିଶିଲା ଦାସଙ୍କୁ । ଅତି ବିନୟ ହୋଇ ଦାସେ ଭଣିଲେ, ଗୋଟିଏ ମାସ ସମୟ ଦିଅ ଯମରାଜ । ଆଉ ମହଲତ ମାଗିବି ନାହିଁ । ମୋଠୁ ବୟସ୍କ ଲୋକମାନେ କେତେ ତ ଅଛନ୍ତି । ଧର୍ମୀ ରାଉଳର ନାତି ହେବାକୁ ତାଙ୍କ ଭିତରୁ ଜଣକୁ କାହାକୁ ନିଅ । ବଳୁ ପାଲତକୁ ନଉ ବର୍ଷ, କରସତୁଲ୍ଲାକୁ ପଞ୍ଚାଶି, ଶାମୁଏଲ ମିଶ୍ରକୁ ଛଅସ୍ତରୀ, ହରି ଦାସକୁ ନେସ୍ତରୀ—ଏମିତି କେତେ ଲୋକ ତ ଅଛନ୍ତି ।

ଯମରାଜ କହିଲେ, ସେମାନଙ୍କ ଆତ୍ମା ତ ଅମୋଘ ରହିବ ନାହିଁ ? ମୋର ଗୋଟାଏ ଅମୋଘ ଆତ୍ମା ଦରକାର । ଆଉ ଡେରି କରନା ଦାସେ । ଭଲରେ କହୁଛି । ବାହାରିପଡ଼ । ନୋହିଲେ ମୋ ସିପେଇଙ୍କୁ ଡକେଇ ତମକୁ ବନ୍ଧେଇ ନେବି । ସେମାନେ ଯଦି ତମକୁ ମାଡ଼ ଦିଅନ୍ତି, ମୋତେ ଆଉ କହିବ ନାହିଁ ।

ଦାସେ ଗୁହାରି କଲେ—ତମେ ଏଡ଼େ ନିଷ୍ଠୁର ବୋଲି ମୁଁ ଜାଣି ନ ଥିଲି । ଯାହା ତ ହେବାର ହେଲା, ମୋର ଶେଷ ଅନୁରୋଧଟି ରଖାକର । ଗୋଟିଏ ଦିନ ସମୟ ମତେ ଦିଅ । କାଲି ଏତିକି ବେଳକୁ ଆସିବ । କିଛି ଆପତ୍ତି ନ କରି ମୁଁ ତମ ପଛେ ପଛେ ଗୋଡ଼େଇ ଯିବି । ନାହିଁ କର ନା, ତମର ଗୋଡ଼ ଧରୁଛି । ମୋତେ ଗୋଟିଏ ଦିନ ସମୟ ଦିଅ ।

ଯମରାଜ ଆଶ୍ଚର୍ଯ୍ୟ ହୋଇ ପଚାରିଲେ, ଗୋଟିଏ ଦିନ ସମୟ ନେଇ କଣ କରିବ ?

ଦାସେ କହିଲେ, କାଲି ଆସିଲେ ବଳେ ବୁଝିବ ।

ଯମରାଜ କହିଲେ, ଅଚ୍ଛା, ତାହା ହିଁ ହେଉ । ଗୋଟିଏ ଦିନ ସମୟ ଦେଲି । କାଲି ସଙ୍ଗରେ ସିପେଇ ନେଇ ଆସିବି । ତମର କୌଣସି ଆପତ୍ତି ଶୁଣିବି ନାହିଁ । ଯମରାଜ ଅନ୍ତର୍ଦ୍ଧାନ ହେଲେ ।

ଦାସଙ୍କ ଦେହରୁ ଗମ୍ ଗମ୍ ଝାଳ ଫିଟି ପଡ଼ିଲା । ସେ ଆଖି ଖୋଲି ବଲ ବଲ କରି ଗୃହଆଡ଼କୁ ଗୁହିଁଲେ । ନଜର ପଡ଼ିଲା ନାଥିଆ ଉପରେ । କୁନ୍ଥେଇ କୁନ୍ଥେଇ କହିଲେ, ଆରେ ନାଥିଆ, ଗୁମାସ୍ତା ବାବୁଙ୍କୁ ଡାକ । କହ କାଗଜ କଲମ ନେଇ ଆସିବେ । ହଁ ଶୁଣ । ଆମ ଗ୍ରାମର ହରି ମହାପାତ୍ରେ, ଚେମ ପଟ୍ଟନାଏକ, ଚୈନାଇ ରାମଚନ୍ଦ୍ର ପାଢ଼ୀ ଏମାନଙ୍କୁ ଡାକ ତ । ଧାଇଁ ଯା—

ଭଣ୍ଡାରି ନାଥିଆ କଥା ମାନିଲା ।

ପରଦିନ ସନ୍ଧ୍ୟାବେଳେ—

ଦାସଙ୍କର ଶବ ଦାହ କାର୍ଯ୍ୟ ଶେଷ କରି ସାହି-ଭାଇମାନେ ଯେତେବେଳେ ଅଗଣାରେ ପହଞ୍ଚିଲେ, ଦେଖିଲେ ଅନ୍ୟାନ୍ୟ ଗ୍ରାମବାସୀମାନେ ସେଠାରେ

ଏକଜୋଟ ହୋଇ ପାର୍ଟି କରୁଛନ୍ତି । କଥା କଣ ବୁଝିବାରୁ ଜଣା ପଡ଼ିଲା, ଗତ କାଲି ସନ୍ଧ୍ୟାରେ ଦାସେ ଧୀର ମନ, ସ୍ଥିର ବୁଦ୍ଧି, ଶରୀରକମଳ ହୋଇଥାଇ, କାହାର ଶିକ୍ଷାରେ ନ ପଡ଼ି, ସ୍ୱଇଚ୍ଛାରେ ତାଙ୍କର ସ୍ୱୋପାର୍ଜିତ ସ୍ଥାବରାସ୍ଥାବର ସମସ୍ତ ସମ୍ପତ୍ତି ଧର୍ମୀ ରାଉଳର ବାଧବା ବୋହୂ ମନରାଣୀ ବେଓ୍ୱାର ନାମରେ ଦତ୍ତ ପତ୍ର କରି ମୁଖିଆ ମୁଖିଆ ଲୋକଙ୍କ ଆଗରେ ଦାନପତ୍ର ସମ୍ପାଦନ କରିଛନ୍ତି ।

# ମରଦ୍‌ କା ବାତ୍‌

ନର-ରାକ୍ଷସ ପଡ଼ଲେ ବି ଧରାଯାଏ ନାହିଁ କାରଣ ରାଜଯୋଟକ । ପାଠ କହିଲା, ସମ ସ୍ରେଣୀ ଚ ଦମ୍ପତ୍ୟୌ······

ପଣ୍ଡିତେ ଦଶଟି ଟଙ୍କା ଅଣ୍ଟାରେ ଖୋସିଲେ । କଲ୍ୟାଣ କରି ବିଦାୟ ନେଲେ । କହିଗଲେ, ଶୁଭସ୍ୟ ଶୀଘ୍ରଂ······ ।

ନନ୍ଦ କହିଲା, ଅରେ ଗୋବିନ୍ଦ, ଏ ଗୁଡ଼ା ସବୁ ପୁରୁଣା କଥା । ଜାତକ ମୁଖାମୁଖି ଗୋଟାଏ କଣ ରେ ? ଜାତକ ତ ସମସ୍ତଙ୍କର ମୁଖା ହେଉଛି । ଆପଦ ବିପଦ କଣ ଆସୁ ନାହିଁ ? ଏ ଗୁଡ଼ା ସବୁ ବାଜେ କଥା । ଯାହା ହେଉ, ପଣ୍ଡିତେ ତ କହିଗଲେ ଆପତ୍ତି ନାହିଁ । ତୋର ଏଥର ବାଧା ଦେବା ଉଚିତ ନୁହେଁ । କନ୍ୟାଟି ଯଦି ସୁନ୍ଦର, ପାଠ ଯଦି ପଢ଼ିଛି, ପକ୍‌କା ଜବାବ ଦେଇ ଦେ ।

ଗୋବିନ୍ଦ କହିଲା, ମନର ସନ୍ଦେହ ତ ତୁଟିଲା, ଏଥର ମୁଁ ଦାଦାଙ୍କୁ ଲେଖିଦିଏଁ । ସେ ଜବାବ ଦେଉନ୍ତୁ ।

ନନ୍ଦ ଓ ଗୋବିନ୍ଦ ଦୁଇ ବନ୍ଧୁ । ଦିହେଁ ଦଶଟି ଅଫିସର କିରାଣୀ । ଗୋଟିଏ ମେସ୍‌ରେ ଥାନ୍ତି । ଦିହେଁ ଅବିବାହିତ । ଗୋବିନ୍ଦ ସେଇଦିନ ତାରି ଦାଦାଙ୍କ ପାଖକୁ ଚିଠି ଲେଖି ଦେଲା—ପଣ୍ଡିତେ କହିଲେ କିଛି ଆପତ୍ତି ନାହିଁ ।

ଗୋବିନ୍ଦ ସ୍ୱପ୍ନ ବି ଦେଖିଲା—ସୁନ୍ଦର । ପାଠ ପଢ଼ିଛି । ଭଲ ସ୍ୱାସ୍ଥ୍ୟ । ବେଶ୍‌ କାମିକା । ଅପ୍‌ଟୁଡେଟ୍‌ । ଗୋବିନ୍ଦ ସ୍ୱପ୍ନ ଦେଖିଲା କେତେ ଛବି ବାହାରି କେତେ ରୂପ । ତାରି ଭିତରୁ ଜଣକ ପରି ସେ ହୋଇଥିବ ତ ! ସୁନ୍ଦର ନାମଟି— ରମା । ଗୋବିନ୍ଦକୁ ପଚିଶ ବର୍ଷ । ବାହା ହେବାକୁ ଉଡ଼ିଲା ବିକଳ ।

ପ୍ରସ୍ତାବ ଆଗେଇଲା । ମହାପ୍ରସାଦ ନିର୍ବନ୍ଧର ଦିନ ବି ସ୍ଥିର ହୋଇଗଲା । ଗୋବିନ୍ଦର ବାପ ନାହାନ୍ତି । ମା ଗାଁରେ । ଦାଦି ମୁରବି । ଗୋକୁଳ ତାରି ମାଉସୀ ପୁଅ ଭାଇ । କଲେଜରେ ବି. ଏ. ପଢ଼େ । ଗୋକୁଳର ବଡ଼ ଭଉଣୀ

ରମାର ଭାଉଜ । ମହାପ୍ରସାଦ ନିର୍ବନ୍ଧ ମୋଟେ ଦଶଦିନ ଅଛି । ଗୋକୁଳ ଆସିଥିଲା ଗୋବିନ୍ଦ ବସାକୁ । ନନ୍ଦ ନ ଥାଏ । ସଞ୍ଜବେଳ । ଗୋକୁଳ କହିଲା, ମନେ ଥରେ ପଗ୍ଭରିଲ ନାହିଁ, ଗୋବିନ୍ଦ ଭାଇ ?

ଗୋବିନ୍ଦର ମନ ପାପ ଛୁଇଁଲା । ପଗ୍ଭରିଲା, କଣ କି ?

ସବୁ ତ ସ୍ଥିର ହୋଇଗଲାଣି ।

ନିର୍ବନ୍ଧ ତ ହୋଇନାହିଁ—

ଜବାବ୍ ଦିଅ ସରିଛି ତ ?

କଣ କହୁଛୁ ତୁ ଗୋକୁଳ ? ଭବିଷ୍ୟତ୍‌ଟା ବଡ଼ ନା ଜବାବ୍‌ଟା ବଡ଼ରେ ? ତତେ ନ ପଗ୍ଭରି ବଡ଼ ଭୁଲ୍ କରିଛି । କହ ?

ଗୋବିନ୍ଦ ଭାଇ, ବଡ଼ ଗୁପ୍ତ କଥା । ଜାଣ ତ ସେ ମୋ ଅଘାର ନଣନ୍ଦ । କଥାଟା ପ୍ରକାଶ ହେଲେ—

ପ୍ରକାଶ ହେବ କାହିଁକି ?

ମୋଠ ଉପରେ ପାଣୀ ସେତେ ଭଲ ନୁହେଁ ।

ଅର୍ଥାତ୍ ?

ଟିକେ ଫାଜିଲ୍ ।

ଗୋକୁଳ ବିଦାୟ ନେଲା । ରାତିରେ ଗୋବିନ୍ଦକୁ ଆଉ ନିଦ ନାହିଁ । ରମା ଫାଜିଲ୍ ! ସେ ଭଲ ନୁହେଁ ! ଗୋକୁଳ ତାକୁ ପିଲାଦିନୁ ଦେଖୁଛି । କାହିଁକି ସେ ମିଛ କହିବ ? ବିଶେଷତଃ ତା ଭଉଣୀର ନଣନ୍ଦ ନାମରେ ? ଦୁନିଆଁରେ କଣ କନ୍ୟାର ଅଭାବ ? ପ୍ରସ୍ତାବ ଭାଙ୍ଗି ଯାଉ । ପ୍ରସ୍ତାବ ସ୍ଥଗିତ ରହିଲା—ନର-ରାକ୍ଷସ, ଭଲ କରି ପରୀକ୍ଷା ନ କରି ସମ୍ବନ୍ଧ ସ୍ଥାପିବା ଉଚିତ ନୁହେଁ ।

ନଗେନ୍ଦ୍ର ବି ଗୋବିନ୍ଦର ବନ୍ଧୁ । ସେ ଆଉ ଗୋଟିଏ ଅଫିସର କିରାଣୀ । ବୟସ ହେବ ଛବିଶି । ଅନେକ ଦିନୁ ବିବାହିତ । ତା ଘର ଆଗରେ ହରିବାବୁଙ୍କ ଘର । ହରିବାବୁ ବି କିରାଣୀ । ନଗେନ୍ ଆଣିଲା ହରିବାବୁଙ୍କ ଝିଅ ଲଳିତା ସମ୍ବନ୍ଧରେ ପ୍ରସ୍ତାବ । ଜାତକ ମିଳିଲା ଭଲ । କୌଣସି ଦୋଷ ନାହିଁ । ଝିଅଟି କୁଆଡ଼େ ଗୋଟିଏ ଗୁଡ଼ିଆରେ ଗଢ଼ା । ଏମିତି ଗୁଣର ଝିଅ ଦୁନିଆଁରେ ଥିବେ କି ନାହିଁ !

ଗୋବିନ୍ଦ ଛପି ଛପି ଯାଇ ଦେଖିଲା ଲଳିତାକୁ । ଥରେ ନୁହେଁ, ଦୁଇ ଗ୍ଭରି ଥର । ଅନ୍ଧାରିଆ ସଞ୍ଜରେ ଝରକା ବାହାରେ, ରାସ୍ତା ଉପରୁ ଅତି ଗୋପନରେ—ଚୋରର ପରି, ଛପି ଛପି । ସେ ମୁଗ୍‌ଧ ହେଲା । ଛବି ବହି ଆଡ଼େଇ ଦେଲା । ସପନର ଜୀବନ୍ତ ଅବଲମ୍ବନ ସେ ପାଇଛି, ଯିଏ ହେବ ତାର ଚିରଦିନ ପାଇଁ । ଜବାବ ସେ ଦେଲା । ନଗେନ୍ଦ୍ର କହିଲା, ହରିବାବୁଙ୍କର ଷୋଳପଣ ଇଚ୍ଛା । ହେଲେ ଝିଅର ମାମୁ ବିଦେଶରେ ଅଛନ୍ତି । ଲଳିତାକୁ ଝିଅ ପରି ଭଲ ପାଆନ୍ତି । ତାଙ୍କର ମତାମତ ଆସିଲେ ଜବାବ୍ ପକ୍‌କା ହେବ ।

ହେଉ ।

ମାସେ କଟିଗଲା । ହରିବାବୁଙ୍କ ଜବାବ୍ ପକ୍‌କା ହେଲା ନାହିଁ । ଗୋବିନ୍ଦ ଛଟପଟ । ଦାଦି ବି ବିରକ୍ତ ହେଲେଣି । ଭଲ ପାତ୍ରୀଟିଏ ଦେଖି ବାହାଘର କରିବାକୁ ମା ବ୍ୟସ୍ତ କରୁଛନ୍ତି । ରମାର ବାପା ଚିଠି ଲେଖିଛନ୍ତି, ହଁ କି ନାହିଁ କହି ଦିଅ । ଟାଳଟୁଳ କରି କେତେ ଦିନ ଗଡ଼େଇବ ?

ନଗେନ୍ଦ୍ର କହୁଛି, ହରିବାବୁ ତ ଚିଠି ଲେଖିଛନ୍ତି ଲଳିତାର ମାମୁଁ ପାଖକୁ, ଶୀଘ୍ର ଉତ୍ତର ଆସିବ ଯେ ।

ନନ୍ଦ କହିଲା, ଅରେ ଗୋବିନ୍ଦ, ଲଳିତା ସୁନ୍ଦର ବୋଲି କଣ ତୁ ତୋର ନିଜତ୍ୱ ଭୁଲି ଖାଲି ଦଉଡ଼ ମାରୁଥିବୁ, ଆଉ ନଗେନ୍ଦ୍ରର ଗୋଡ଼ ଘଷୁଥିବୁ ? ଏଇ ପଚିଶ ତାରିଖ ଆଗରୁ ଯଦି ହରିବାବୁ ପକ୍‌କା ଜବାବ୍ ନ ଦିଅନ୍ତି, ଲଳିତା ବିଷୟରେ ସମ୍ବନ୍ଧ ଭଙ୍ଗ । କହିଦେ ନଗେନ୍ଦ୍ର ବାବୁଙ୍କୁ ଥରେ । ଗୋବିନ୍ଦ ନନ୍ଦର ଉପଦେଶ ମାନିଲା ।

ଛବିଶ ତାରିଖ ହେଲା । ନଗେନ୍ଦ୍ର ବାବୁଙ୍କର ଦେଖା ନାହିଁ ।

ନନ୍ଦ କହିଲା, ଲଳିତା କଥା ଭୁଲିଯା । ସେମାନେ ଧନୀ । ତୁ ଗରିବ । ନଗେନ୍ଦ୍ର ସିନା କଥା ପକେଇଲା, ବୋଧହୁଏ ହରିବାବୁଙ୍କର ଇଚ୍ଛା ନାହିଁ । ରମାର ବାପଙ୍କୁ ପକ୍‌କା ଜବାବ ଦେବାକୁ ତୋ ଦାଦିଙ୍କୁ ଲେଖି ଦେ । ବାହାଘର ବ୍ୟବସ୍ଥା କରନ୍ତୁ, ଡେରି କରି କିଛି ଲାଭ ନାହିଁ ।

କିନ୍ତୁ—

ନରି ଘଷସ କଥା ଭାବୁଛୁ ? ରାଜ-ଯୋଟକ ଯେ ।

ପାତ୍ରୀ ସେତେ ଭଲ ନୁହେଁ ।

କାହିଁକି ?

ବଡ଼ ଫାଜିଲ୍ ।

ଆଉ, ତୁ କଣ କମ୍ ? ଯିଏ ତତେ ଏ ସମ୍ବାଦ ଦେଲା ସେ ଯଦି ନିଜେ ଫାଜିଲ୍ ହୋଇଥାଏ ? ତାର ଯଦି ଅନ୍ୟ କିଛି ଉଦ୍ଦେଶ୍ୟ ଥାଏ ?

ଗୋବିନ୍ଦ ଭାବିଲା ସତେ ତ । ଗୋକୁଳ ତ ଆଗରୁ କେବେ ଆସି ନ ଥିଲା, କି ସେଇ ଦିନଠୁଁ ଆଉ କେବେ ଆସି ନାହିଁ !—ହୁଁ, ଜଣାଗଲା ଯେ ।

ଗୋବିନ୍ଦ ପରଦିନ ତା ଦାଦାଙ୍କ ପାଖକୁ ଚିଠି ଲେଖି ଜଣାଇଲା, ଭଲକରି ଜାତକ ମିଳାଇଲ । ପଣ୍ଡିତମାନେ କହିଛନ୍ତି ନରି-ଷଷସରେ ବାଧା ନାହିଁ । ରାଜଯୋଟକ ହେଲେ ଆଉ କିଛି ଧରା ଯାଏ ନାହିଁ । କିନ୍ତୁ ଗୋବିନ୍ଦର ମନ ଖରାପ । ସଞ୍ଜବୁଡ଼େ ଗଲା ସିନେମା ଦେଖିବାକୁ ମନ ଭୁଲେଇବାକୁ । ସିନେମା ଫେରନ୍ତି ଦେଖା ଲଳିତା ସାଙ୍ଗରେ । ପ୍ରଭାତ ସିନେମା ଆଗରେ ଆଉ କେତେ ଜଣ ସ୍ତ୍ରୀଲୋକଙ୍କ ପାଖରେ ସେ ଠିଆ ହୋଇଛି । କେହି ତ ତାକୁ ଚହ୍ନନ୍ତି ନାହିଁ,

ସେ କନ୍ଦୁ ଲଳିତାକୁ ଜାଣେ । କେତେଥର ଦୂରରୁ ଦେଖିଛି । ଲଳିତା ପ୍ରକୃତରେ ସୁନ୍ଦରୀ ! ଅପ୍‌ଟୁଡେଟ୍ । ଲଳିତା ସୁନ୍ଦରୀ ଆଉ ରମା ଯାହାକୁ ସେ କେବେ ଦେଖିନାହିଁ—ସେତେ ଭଲ ନୁହଁ । ଠିକେ ଫାଜିଲ । ତାର ମନ ଖରାପ ହେଲା ।

ପରଦିନ । ଅଫିସରେ ଦାଦାଙ୍କ ଚିଠି ଖୋଲିଲା—ମହାପ୍ରସାଦ ନିର୍ବନ୍ଧ କାଲି ହେବ । ଖବର ପଠେଇଥିଲି । ସମୁଦି ଜବାବ ଦେଇଛନ୍ତି । କାଲି ସକାଳ ବସ୍‌ରେ ସେମାନେ ସବୁ କଟକ ଆସିବେ । ମୁଁ ବି ଯାଉଛି । କଟକରେ ମହାପ୍ରସାଦ ନିର୍ବନ୍ଧ ହେବ ।

ନଗେନ୍ଦ୍ର ଆସିଲା ହସ ହସ ହୋଇ । ପକେଟରୁ ଖଣ୍ଡେ ଚିଠି କାଢ଼ି କହିଲା, ସବୁ ଠିକ୍ ହୋଇଗଲା । ପାଞ୍ଚ ତାରିଖରେ ମହାପ୍ରସାଦ ନିର୍ବନ୍ଧ । ପଚିଶ ତାରିଖରେ ବାହାଘର । ହରିବାବୁ ଏଇ ଚିଠି ତମ ଦାଦାଙ୍କ ପାଖକୁ ଲେଖିଛନ୍ତି । ଠିକଣାଟା ଦେଲେ ମୁଁ ଆଜି ପଠେଇ ଦେବି ।

ଗୋବିନ୍ଦ କାବା ହୋଇ ଚାହିଁ ରହିଲା ନଗେନ୍ଦ୍ରର ମୁହଁକୁ ।

ଠିକଣାଟା କଣ ?

ଆଜି କଣ ପଚିଶ ତାରିଖ ?

କୋଡ଼ିଏ ତାରିଖରୁ ହରିବାବୁ ଏ ଚିଠି ମତେ ଦେଲେଣି । ଏତେ କାର୍ଯ୍ୟବ୍ୟସ୍ତ ଥିଲି ଯେ ତମକୁ ଦେଖିବାକୁ ବେଳ ପାଇଲି ନାହିଁ ?

କାହିଁକି ? କଣ ହେଲାକି ?

ଗୋବିନ୍ଦ ସବୁକଥା କହିଲା । ନଗେନ୍ଦ୍ର କହିଲା, ବେଦ ଉପରୁ ବର ବାହାରୁଛି, ଏ କଣ ହେଉଛି କି ? ଏଇ ଚିଠି ସଙ୍ଗରେ ତୋ ଦାଦାଙ୍କ ପାଖକୁ ଚିଠି ଲେଖି ସେ ସମ୍ବନ୍ଧଟା ଭାଙ୍ଗିଦେ । ଏମିତି କେତେ ହେଉଛି ନା—

ଅଫିସର ବୁଢ଼ା ଦପ୍ତରୀ ସରଫ୍ ମିଆଁ ସବୁ ଶୁଣୁଥିଲା । ଠିଆ ହୋଇ ପାଚିଲା ଦାଢ଼ି ଆଉଁସି କହିଲା, ସବୁ ଝିଅ ସମାନ ଅଛି । ଏ ଭି ଯେସା ଓଭି ତେସା । ଲେକିନ୍, ହାତୀକା ଦାନ୍ତ୍-ମରଦ୍‌କା ବାତ୍ । ନଗେନ୍ଦ୍ର ମୁହଁ ଓଳିଁ ଗ୍ଭଲିଲା । ହରିବାବୁଙ୍କ ଚିଠିଟି ଚିରି ଚିରି କରି ଫିଙ୍ଗିଦେଲା ।

# ପାରିଧି

ବେଲ ଚାରିଟା । ବନ୍ଧୁମାନେ ପ୍ରସ୍ତାବ କଲେ, ଚାଲ ଯେଉଁଠାଏ ବଉଦ ଆଡ଼ୁ ବୁଲି ଆସିବା । ମହାନଦୀ କୂଲରେ ପାଦ ଚାଲନା କରି ସାନ୍ଧ୍ୟ ବାୟୁ ସେବନ କରି ଆସିଲେ ଚାକିରିଆ ଜୀବନର କ୍ଲାନ୍ତ ଅବସାଦ ଦିନକ ପାଇଁ ହେଲେ ଭୁଲିଯିବା ।

ଡାକ୍ତର ପଚାରିଲେ, କେତେ ବାଟ ?

ଜଙ୍ଗଲ-ଅଫିସର କହିଲେ, ମୋଟେ ଚାଲିଶ ମାଇଲ ।

ପ୍ରସ୍ତାବ ଗୃହୀତ ହେଲା । ଦଶ ପନ୍ଦର ମିନିଟ ଭିତରେ ସମସ୍ତେ ପ୍ରସ୍ତୁତ ହୋଇଗଲେ । ପଞ୍ଚସଖା ରଥରେ ବସିଲେ । ସାରଥି ଲରି ଚଲାଇଲା । ସାରଥି ପାଖରେ ବସିଲେ ଜଙ୍ଗଲ-ବାବୁ । ହାତରେ ଦୁନଳିଆ ବନ୍ଧୁକ । ପାଖରେ କ୍ୟାଟ୍ରିଜ—ସାକ୍ଷାତ ଅର୍ଜୁନ । ପଛରେ କମ୍ବଲ ପାରି ବସିଲେ ଫୁଲବାଣୀର ମଝି ହାକିମ, ପଡ଼-ହାକିମ, ଡାକ୍ତର ସାହେବ ଓ ସ୍କୁଲ-ଅଧିକାରୀ । ପାଖରେ କ୍ଲିନର ଓ ଦୁଇଜଣ ଜମାନ୍ ( ପିଉନ୍ ) ।

ଡିସେମ୍ବର ମାସ । ଶୀତ । ଲରି ଫୁଲବାଣୀ ଛାଡ଼ିଲା । ଛଅ ମାଇଲ ପରେ ଷ୍ଟ୍ରେଟ ଘାଟି ଉଠିଲା । ତାପରେ ଛୁଟିଲା ଧାଡ଼ି ଧାଡ଼ି ପାହାଡ଼ମାଲର ମଝିଏ ମଝିଏ । ସାପେଇ ସାପେଇ ଉଠୁପଡ଼ ରାସ୍ତା ନିଘଞ୍ଚ ବନ ଭିତରେ ପଡ଼ିଛି । କେଉଁଠି ପାହାଡ଼ର ତଲ-ଦେଶରେ ପଇତାପରି ଗୁଡ଼େଇ ହୋଇ ପୁଣି ଆଗ ପାହାଡ଼ର ତଲକୁ ଧାଇଁଛି । ଆଗରେ ପାଣି ନାଲ । ବଲାଗଣ୍ଠିଏ ପାଣି । ଲରିର ବେଗ କମାଇ ନାଲ ଭିତରେ ଗଡ଼ାଇ ସେପାଖ ରାସ୍ତା ଉଠାଣିକୁ ଉଠା ହେଉଛି ।

ଲରି ଛୁଟିଛି । ଯୁଆଡ଼କୁ ଚାହିଁଲେ ପାହାଡ଼ମାଲ । ଆଗରେ ପଛରେ ଦୁଇ କଡ଼ରେ ଦୃଷ୍ଟି ଅଟକୁଛି, ଅଣନିଶ୍ୱାସୀ ଲାଗୁଛି । ମନେ ହେଉଛି ଯେପରି ଆମେ କେଉଁ ଅଜଣା ପୃଥିବୀରେ ଗତି କରୁଛୁଁ । କେବଲ ପାହାଡ଼ ମାଲ । ଜଙ୍ଗଲ । ଉପରେ ନେଲିଆ ଅସୀମ ଆକାଶ । ତଲେ ଠାଏ ଠାଏ ନାଲ । ରାସ୍ତା ପାଖରେ ଗାଁ ଗଣ୍ଡା ଦିଶୁ ନାହିଁ, ଯେପରି କି ମଣିଷ ଜାତିର ସୃଷ୍ଟି ହୋଇ ନାହିଁ ଏ ଦେଶରେ । ଚାଷ ଜମି ତ ଦୂରର କଥା, ଖୋଲା ସମତଲ ସ୍ଥାନ ଟିକିଏ ଆଖିରେ ପଡ଼ୁନାହିଁ । ସିଧା-ସଲଖ ଯେ କୌଣସି ଦୁଇ ପାହାଡ଼ର ବ୍ୟବଧାନ ପାଏ ବାଟ ହେବ କି ନାହିଁ ସନ୍ଦେହ ।

ଅଳ୍ପଅ ଅଛି । ସୂର୍ଯ୍ୟ ଦିଶୁ ନାହାନ୍ତି । କେଉଁ ପାହାଡ଼ର ଆଡ଼ ଆଲରେ ଛପି ଗଲେଣି । ସମସ୍ତେ ଖଣ୍ଡେ ଖଣ୍ଡେ ସିଗାରେଟ୍ ଲଗାଇଲେ । ପଡ଼ ହାକିମ

ପଚାରିଲେ, ଏ ପାଖେ କଣ ଗାଁ ଗଣ୍ଡା ନାହିଁ ? ମଣିଷ କେହି ରହନ୍ତି ନାହିଁ ? କାହାରି ତ ଦେଖା ମିଳୁ ନାହିଁ ?

ମଝି-ହାକିମ କହିଲେ, ଦୁଇ ପାହାଡ଼ ମଝି ସମତଳ ଭୂଇଁରେ ଗାଁ ଅଛି । ଛୋଟ ଛୋଟ କନ୍ଧ-ଗାଁ । ଦଶ ପଚିଶ ଘର । ପାହାଡ଼ ତଳ ଭୂଇଁରେ ଚାଷ କରନ୍ତି । ଧାନ, ମୁଗ, ବିରି, କାନ୍ଦୁଲ ଲଗାନ୍ତି । ନାଳ ଉପରେ ସରସ ଜମିରେ ଠାଏ ଠାଏ ବଗିଚାଅଛି ଚାଷ କଲେଣି । ପାହାଡ଼ର ଗଡ଼ାଣିରେ କେହି କେହି ପାଳୁଅ କରନ୍ତି, କେହି ପୁଣି ହଳଦୀ ଚାଷ କରେ । ପାହାଡ଼ରେ ନିଆଁ ଲଗେଇ ପୋଡ଼ୁଚାଷ ବି କରନ୍ତି ଏମାନେ ଅର୍ଥାତ୍ ଜମି ପୋଡ଼ି କାନ୍ଦୁଲ ପୋତନ୍ତି । ଆଠଶ ବର୍ଗ ମାଇଲ ଏଇ କନ୍ଧମାଳ ରାଜ୍ୟରେ ପ୍ରାୟ ନବେ ହଜାର ଲୋକ ରହନ୍ତି । ଧାନ ଚାଉଳ ସବୁବେଳେ ନଥାଏ ।

ପଡ଼ ହାକିମ ପଚାରିଲେ, ବଞ୍ଚନ୍ତି କଣ ଖାଇ ?

ମଝି ହାକିମ ଉତ୍ତରଦେଲେ, କାହିଁକି ? ଆମ୍ବ ଦିନେ ଆମ୍ବ, ସେଇଠୁ ତାର କୋଇଲି, ମହୁଲ, ଟୋଲ, କାନ୍ଦୁଲ, ସଲପରସ, ନାନା ଜାତି ଶାଗ, ମୂଳ, ଶିକାର କରି ଚଳୁଛନ୍ତି । ତା ଛଡ଼ା ବେପାରୀମାନେ ଘୁମୁସର ଓ ବଉଦରୁ ଧାନ ଚାଉଳ ଆଣି ବିକନ୍ତି । ହଳଦୀ କାନ୍ଦୁଲ କିଣି ନଅନ୍ତି । ବେପାର କରନ୍ତି । କନ୍ଧ ପିଲାର କଷ୍ଟ ଅଭାବ ହୁଏ ନାହିଁ । ଅଭାବ ହେଲେ ବି ସେ ସହିପାରେ । ମରେ ନାହିଁ ।

ପଡ଼ ହାକିମ ଦୀର୍ଘଶ୍ୱାସ ଛାଡ଼ିଲେ । ଆଶ୍ଚର୍ଯ୍ୟ ? ଦାରିଦ୍ର୍ୟ ଟିକିଏ ଉଣା ହେଲା ପରା । ସିଗାରେଟରୁ ଦମେ ଜୋରରେ ଟାଣି ନେଇ ଧୂଆଁ ଲିଆ ପାହାଡ଼ର ମଥାନକୁ ଚାହିଁ ଫୁଙ୍କ କରି ଧୂଆଁ ଛାଡ଼ିଲେ ।

ସ୍କୁଲ ହାକିମଙ୍କର ମନ ସନ୍ତୋଷ ହେଲା ନାହିଁ । କେତେ କଣ ଚିନ୍ତା କରି ପଚାରିଲେ, ସଭ୍ୟ ହେଲେଣି ଏମାନେ ? ଅର୍ଥାତ୍—

ମଝି ହାକିମ କଥାର ମର୍ମ ଅବଗତ ହେଲେ । ଅଳପ ହସି ବଖାଣିଲେ, ଅର୍ଥାତ୍‌ର ପ୍ରୟୋଜନ ନାହିଁ । ଯଥେଷ୍ଟ ସଭ୍ୟତା ହାସଲ କଲେଣି ଏମାନେ । ପିଲାଦିନେ ବୋଧହୁଏ ଗପ ଶୁଣିଛନ୍ତି, କନ୍ଧ ନଙ୍ଗଳା ଜାତି । କନ୍ଧମାଳର ବଣ ଜଙ୍ଗଲ ପାହାଡ଼ ଝରଣାରେ ନଙ୍ଗଳା ହୋଇ ବୁଲନ୍ତି । ସେଥିପାଇଁ ଆଗ୍ରହରେ ଧାଇଁ ଆସିଥିଲେ କନ୍ଧର ନଙ୍ଗଳା ଛବି ଦେଖିବେ, ନା ? ଭୁଲ ନୁହେଁ । ଦିନେ ଏମାନେ ନଙ୍ଗଳା ଥିଲେ । ସବୁ ମଣିଷ ତ ନଙ୍ଗଳା ହୋଉଥିଲେ ସଭ୍ୟତାର ଆରପାଖେ । ଫୁଲବାଣୀ ପାଖର ଗାଁ ଗୁଡ଼ିକ ତ କନ୍ଧ ଭାଷା ଭୁଲି ଗଲେଣି । ଏ ଅଞ୍ଚଳର ଲୋକେ କନ୍ଧ ଭାଷା କହନ୍ତି, ଓଡ଼ିଆ ଜାଣନ୍ତି, ଲୁଗା ପିନ୍ଧନ୍ତି । ନଙ୍ଗଳା କନ୍ଧ ଦେଖିବାକୁ ଯଦି ଆଗ୍ରହ ବାଲିଗୁଡ଼ାମାଳ ଭିତରେ ପଶନ୍ତୁ । ପାହାଡ଼ ଉପରେ

କୁଟିଆ କନ୍ଧ ବୋଲି ଗୋଟାଏ ଜାତି ରହନ୍ତି । ସେମାନେ ପ୍ରାୟ ନଙ୍ଗଳା । ମାଷ୍ଟ୍ରେ ଭୁଜ ହେଲେ ।

ଡାକ୍ତର ଜିଜ୍ଞାସିଲେ, ଚରିତ୍ର ସ୍ୱଭାବ ?

ମଝି ହାକିମ ପାନ ଖିଲ ପାଟିରେ ଗୁଞ୍ଜି ବଖାଣ କଲେ, ଚରିତ୍ର ସ୍ୱଭାବ ଖୁବ୍ ଭଲ । ମିଛ କହି ଜାଣନ୍ତି ନାହିଁ । ଚୋରି କରନ୍ତି ନାହିଁ । ସଭ୍ୟ ସମାଜ ପରି ଦଶଟାଙ୍କ ସଙ୍ଗେ ପ୍ରେମକରି ସଭିଙ୍କୁ ଆଡ଼େଇ ଅଜଣା ଅଶୁଣାକୁ ବାହା ହୁଅନ୍ତି ନାହିଁ । ଯାହାକୁ ପ୍ରେମ କରନ୍ତି ତାକୁ ବାହା ହୁଅନ୍ତି, ଯାହାକୁ ବାହା ହୁଅନ୍ତି ତାକୁ ପ୍ରେମ କରନ୍ତି ।

ପଡ଼ି ହାକିମ ବାଧା ଦେଲେ, ମହାଶୟ, ଆପଣ ଭୁଲ କହୁଛନ୍ତି । ମୁଁ ଜାଣେ, ଏମାନଙ୍କ ଭିତରେ ଚରିତ୍ର ବୋଲି ଗୋଟାଏ କିଛି ନାହିଁ । ଏମାନେ ଯାହା ପାଉ ତା ସଙ୍ଗରେ ମିଶନ୍ତି ।

ମଝି ହାକିମ କହିଲେ, ହୁଏ ତ ଆପଣଙ୍କର ଅଭିଜ୍ଞତା ଅଛି । ମୋର ଗୁରୁ ବର୍ଷ ଅଭିଜ୍ଞତାରୁ ମୁଁ କହୁଛି, ଆପଣଙ୍କର ଧାରଣା ଭୁଲ । ମୁଁ ସ୍ୱୀକାର କରୁଛି ଅବିବାହିତ ଟୋକା ଟୋକୀଙ୍କ ଭିତରେ ଅବାଧ ମିଳାମିଶା ହୁଏ । ଧାଙ୍ଗଡ଼ା ଧାଙ୍ଗଡ଼ୀ ନାଚ, ମଦ, ଜଙ୍ଗଲରେ ହଳ ହଳ ହୋଇ ଛପିଯିବା, ଏ ସବୁ ହୁଏ, କିନ୍ତୁ 'ଯାହା ପାନ୍ତି ତାହା' ଶବ୍ଦ ଆପଣ ବ୍ୟବହାର କରି ପାରିବେ ନାହିଁ । ଏ ସ୍ୱାଧୀନତା କେବଳ କନ୍ଧ ଜାତି ଭିତରେ ସୀମାବଦ୍ଧ । ଅନ୍ୟର ସେଠି ସ୍ଥାନ ନାହିଁ । ଆପଣ ତ ଆପଣ, କୌଣସି ବିବାହିତ କନ୍ଧ ବା କନ୍ଧୁଣୀ ସେ ଉଚ୍ଛୃଙ୍ଖଳତା ଭିତରେ ପଶି ପାରିବ ନାହିଁ । ସାବଧାନ !

ଡାକ୍ତର ଛଳେଇ କହିଲେ, ପଡ଼ି ବାବୁଙ୍କର ଅଗ୍ରହ ହେଉଛି—

ମଝି ହାକିମ କହିଲେ, 'ଆପଣଙ୍କର ବି ହେଉଥିବ । ମୋର ବି ଦିନେ ହୋଇଥିଲା । ଜଣେ କନ୍ଧ ବନ୍ଧୁ ସଙ୍ଗେ ମିଶି କନ୍ଧ ସାଜି ମୁଁ ଥରେ ଧାଙ୍ଗଡ଼ା ଧାଙ୍ଗଡ଼ୀଙ୍କର ନାଚ ଗୀତରେ ମିଶିଥିଲି । ମଦ ନ ଖାଇ ମଧ୍ୟ ମଦୁଆ ହୋଇଥିଲି । ରାତି ଅଧ । ଜହ୍ନ ପଡ଼ିଥାଏ । ନାଚ ଶେଷରେ ହଳ ହଳ ହୋଇ ଜଙ୍ଗଲରେ ପଶିଲେ ସେମାନେ । ଧରା ପଡ଼ିବା ଭୟରେ କନ୍ଧ-ବନ୍ଧୁର ହାତ ଧରି ବଙ୍ଗଳାକୁ ଫେରିଲି ।

ମାଷ୍ଟ୍ରେ ପଚାରିଲେ, ଧରା ପଡ଼ିଥିଲେ ?

ହୁଏତ ଜୀବନଟା ଦେବାକୁ ହୋଇଥାନ୍ତା, ନୋହିଲେ ମାଡ଼ ।

ଏତେ ବଡ଼ ସାହସ ?

ସାହସ ତ କନ୍ଧର ନୁହେଁ, କନ୍ଧ ପେଟରେ ଯେଉଁ ମଦ ଟିକକ ଥାଏ ତାର । ଭଲ ମନ୍ଦ କି ପରିଣାମ ବିଚାର କରିବାଭଳି ଅବସ୍ଥା ତ ସେମାନଙ୍କର ନ ଥାଏ ।

ଲଗ୍ନୀ ବନ୍ଦ ହେଲା । ଜଙ୍ଗଲ ମଝି । ଆଗରେ ଗଡ଼ାଣି । ଶ୍ରେଷ୍ଠ ଝରଣା । ବା ପାଖରେ ପାହାଡ଼ଟା ରାସ୍ତା ପାଖରୁ କାନ୍ଥ ପରି ଉଠିଛି—ପ୍ରାୟ ଦୁଇ ଫର୍ଲଙ୍ଗ ଉଚ୍ଚ । ବେଳ ରାତ ରାତ । ପାହାଡ଼ ତଳ ଘନ-ଅନ୍ଧାର ହେଲାଣି । ଜଙ୍ଗଲବାବୁ ବନ୍ଧୁକ ଧରି ତଳକୁ ଓହ୍ଲାଇଗଲେ । ତରଙ୍ଗ ତରଙ୍ଗ ହୋଇ ଡାହାଣ ପାଖର ଜଙ୍ଗଲ ଆଡ଼କୁ ଅନେଇ ବନ୍ଧୁକ ଲୋଡ୍ କଲେ । ଲଗ୍ନୀ ଉପରେ ବସିଥିବା ବନ୍ଧୁମାନେ ପ୍ରମାଦ ଗଣିଲେ । ସଭଙ୍କ ମନରେ ଗୋଟିଏ ପ୍ରଶ୍ନ—ବାଘ ? ଜଙ୍ଗଲ ବାବୁ ରାସ୍ତା କଡ଼କୁ ଗଡ଼ ଏଣେ ତେଣେ ଚାହିଁଲେ । ମୁଣ୍ଡ ହଲାଇ ବଡ଼ ପାଟି କରି କହିଲେ, ଖସିଗଲା ମିରଗଟା ।

ଡାକ୍ତର ଥଟ୍ଟା କରି କହିଲେ, ସ୍ୱପ୍ନ ଦେଖୁଥିଲେ କି ?

ପଢ଼ିବାବୁ ଚ୍ୟାଲେଞ୍ଜ୍ କଲେ, କେବେ ମାରିଛନ୍ତି ?

ଜଙ୍ଗଲବାବୁ ବନ୍ଧୁକ ଅନ୍‌ଲୋଡ୍ କରି ଫେରି ଆସିଲେ ଆଗ ସିଟ୍‌କୁ । କହିଲେ, ମାରିଛି କି ନାହିଁ ଆଜି ତାର ପ୍ରମାଣ ଦେବି ଫେରିଲା ବେଳକୁ । ରାତି ହେଉ, ଜନ୍ତୁ ପାଣି ଖାଇବାକୁ ଗଡ଼ିବେ ।

ଲଗ୍ନୀ ପୁଣି ଚାଲିଲା ଦ୍ରୁତ ଗତିରେ । ସାରଥି ସାବଧାନ କରି କହିଲା, ରାଣୀପଥର ଘାଟି ହେଲା ଆଜ୍ଞା । ସମସ୍ତେ ଚାହିଁ ରହିଲେ । ଲଗ୍ନୀ ଧୀରେ ଧୀରେ ପାହାଡ଼ରୁ ଖସିଲା । ପାହାଡ଼ ଦେହରେ ବଙ୍କେଇ ବଙ୍କେଇ ସାପ ଗଲା ପରି ରାସ୍ତା ପଡ଼ିଛି । ତଳକୁ ଚାହିଁଲେ ମୁଣ୍ଡ ବୁଲେଇ ଦେଉଛି । ତଳର ପାହାଡ଼ ଦିଶୁଛି ମାଟି ଗଦା ପରି । ଦୁଇ କଡ଼ରେ ଅନ୍ଧାରିଆ ଉପତ୍ୟକା । ଲଗ୍ନୀ ଓହ୍ଲେଇ ଆସୁଛି ତଳ ପାହାଡ଼ ଉପରକୁ । ଉପର ପାହାଡ଼ ଶ୍ରେଷ୍ଠ ବିମାନ ପରି ଦିଶୁଛି । ଶ୍ରେଷ୍ଠ ପାହାଡ଼ ବଡ଼ ଦିଶୁଛି । ତଳର ପାହାଡ଼ ପୁଣି ଦିଶୁଛି କେଡ଼େ ଶ୍ରେଷ୍ଠ । ରାଣୀପଥର ଘାଟି ! ସବୁଠି ବିପଦ । ଭୟ ହେଉଛି, ଲଗ୍ନୀ ଯଦି ଲେଉଟି ପଡ଼େ ପାତାଳ ପୁରିରେ ପଶିବ । କାହାରି ଚିହ୍ନବର୍ଣ୍ଣ ରହିବ ନାହିଁ ।

ସାବଧାନ ଅମର ସାରଥି । ନିର୍ବିଘ୍ନରେ ରଥ ଓହ୍ଲେଇ ଆସିଲା ତଳକୁ । ରଥ ଅଟକିଲା । ଡାହାଣହାତ ରାଣୀପଥର ଗାଁ । ବଙ୍ଗଲା । ପଛକୁ ଚାହିଁଲେ ଖଞ୍ଜା ହୋଇଥିବା ବିମାନମାଳ ପରି ଅଗଣନ ପାହାଡ଼ । ପଞ୍ଚସଖା ଏଇ ପାହାଡ଼ ଦେଶରୁ ଓହ୍ଲେଇ ଆସିଛନ୍ତି ।

ପୁଣି ଲଗ୍ନୀ ଚାଲିଲା । ବଉଦ ରାଜ୍ୟ । ବାଁପାଖେ ପାଚିରି ପରି କନ୍ଧମାଳର ପାହାଡ଼ ଧାଡ଼ି । ଡାହାଣ ହାତ ବଉଦ ରାଜ୍ୟର ସମତଳ ଭୂଇଁ । ଦୂରରେ ମହାନଦୀ । ଦୃଷ୍ଟି ଯେତେ ଦୂର ଯାଏ—ପାହାଡ଼ର ଚିହ୍ନ ବର୍ଣ୍ଣ ନାହିଁ । ବଉଦ । ଶ୍ରେଷ୍ଠ ସହର । ମହାନଦୀ କୂଳରେ । ବିଶେଷତ୍ୱ କିଛି ନାହିଁ । ମହାନଦୀ କୂଳରେ ଦଶ ପନ୍ଦର ମିନିଟ ଭ୍ରମଣ । ସନ୍ଧ୍ୟା । ଜଙ୍ଗଲ ବାବୁ ଫେରିବାକୁ ବ୍ୟସ୍ତ ହେଲେଣି । ସଞ୍ଜ ହେଲା । ପାଣି ଖାଇବାକୁ ଜନ୍ତୁ ଗଡ଼ିବେ । ଅଭିଯାନ ବ୍ୟର୍ଥ ହେବ । ମଝି

ହାକମ ନଈକୁ ଚାହିଁ ରହିଛନ୍ତି । ପାଣି ଭିତରେ ପଥର ମାଳ । ମାଷ୍ଟର ବାବୁ ଗାଧୁଆ ଘାଟରେ ମୁହଁ ଧୋଇ ରାସ୍ତା ଉପରକୁ ଉଠିଲେ ।

ଡାକ୍ତର ଓ ପଡ଼ବାବୁ ଶୀତରେ ଥରୁଛନ୍ତି । ରାତି ହେଲା । ଅନ୍ଧାର ରାତି । ଲଞ୍ଚ ଫେରିଲା । ପୁଣି ସେଇ ରାଣୀପଥର ଘାଟି । ପାହାଡ଼ମାନଙ୍କରେ ନିଆଁ ଲଗା ହୋଇଛି । ଅନ୍ଧାର ରାତିରେ ଯୁଆଡ଼େ ଚାହିଁଲେ ନିଆଁ ର ଗାର । ଲମ୍ବା ଆଲୁଅ ଯେତେ-ଦୂର ଯାଏ ପଡ଼ିଛି ବନ୍ଧୁମାନେ ଚାହିଁ ରହିଛନ୍ତି—କାଳେ କେଉଁଠି ଜନ୍ତୁ ହାବୁଡ଼ିବ !

ଜଙ୍ଗଲ ବାବୁ ହତାଶ ହେଲେ । କହିଲେ, ପାହାଡ଼ରେ ନିଆଁ ଲଗିଛି । ଜନ୍ତୁଗୁଡ଼ା ଭୟରେ ଗୁହାରେ ଲୁଚିଛନ୍ତି ।

ରାତି ଦଶଟା । ଫୁଲବାଣୀ । ବ୍ୟର୍ଥ ହେଲା ପାରିଧି ।

## ମୁଣ୍ଡିସାହାଡ଼ା

ଗାଁ ମଝିରେ ରାଧାର ଶ୍ରେଷ୍ଠ କୁଡ଼ିଆଟି । ଦୂରେଇ ଦୂରେଇ ଗୋଟି ଗୋଟିକା ଅନେକ ଘର । ତେଣିକି ଗାଁ ଦାଣ୍ଡ । ଶ୍ରେଷ୍ଠ ଗାଁଟି ତ ବହ୍ରମପୁର, ବାହୁଦା ନଈର କୂଳରେ । ଗାଁ ମଝିରେ ମାନ୍ଦ୍ରାଜ ଓ ଓଡ଼ିଶାର ସୀମା । ଇଚ୍ଛାପୁରକୁ ବାଟ ଛଅକୋଶ ହେବ କି ନାହିଁ ।

ରାଜନୀତି ସେ ବୁଝେ ନାହିଁ । ଇଚ୍ଛାପୁର କି ବିଜୟନଗର ଓଡ଼ିଶାରେ ମିଶିବା ଉଚିତ କି ନୁହେଁ, ବ୍ରହ୍ମପୁର କି କଟକ ଅନ୍ଧ୍ର ପ୍ରଦେଶରେ ମିଶିବ କି ନାହିଁ ସେ କଥା ସେ କେବେ ବିଚାର କରି ନାହିଁ । ସେ ଜାଣେ ସେ ଇଚ୍ଛାପୁରର ଝିଅ, ବହ୍ରମପୁରର ବୋହୂ । ଇଚ୍ଛାପୁର ତାର ଜନ୍ମଭୂମି, ବହ୍ରମପୁର ତାର କର୍ମଭୂମି । ପୂର୍ବ ପଚିଶଟି ବର୍ଷ କଟିଗଲା । ଘର ଆଗରେ ରାସ୍ତା କଡ଼ରେ ଯେଉଁ ମୁଣ୍ଡିସାହାଡ଼ା ଗଛ, ସେଇ ତାର ସାକ୍ଷୀ । ବାହୁଦା ନଈର ବାଲି, ନଈ ସେପାରି ପାହାଡ଼ ଧାଡ଼ି, ଆଉ ଶେଷକୁ ତାର ଆଖି ଦୁଇଟା, ଏମାନେ ବି ତାର ସାକ୍ଷୀ ।

ଚମ୍ପାଘରର ଝିଅ । ବୋହୂ ହୋଇ ଯେତେବେଳେ ପନ୍ଦର ବର୍ଷର ଝିଅ ବହ୍ରମପୁରରେ ଗୋଡ଼ ଦେଲା ସେତେବେଳେ ଗାଁ ମଝିରେ ତାର ଦରଭଙ୍ଗା କୁଡ଼ିଆ ନ ଥିଲା । ଶାଶୂ ଶଶୁର, ଗେରସ୍ତ, ଦିଅର, ନଣନ୍ଦ ସମସ୍ତେ ଥିଲେ । ହଳ, ବଳଦ, ଗାଈ, ମଇଁଷି, ଛେଳି, କୁକୁର ସମସ୍ତେ ସେ ଘରେ ଆଶ୍ରା ନେଇଥିଲେ । ଜମି ବାଡ଼ି, ଧାନ ଅମାର ।

ରାଧିକୁ ଦେଖି ସମସ୍ତେ ଭାରି ଖୁସି ହୋଇଥିଲେ । ତାର ରୂପରେ କିଛି ବିଶେଷତ୍ୱ ନ ଥିଲା, ଢଙ୍ଗରେ ବି । ଶ୍ୟାମଳ ବର୍ଣ୍ଣ, ପୁରପଲ୍ଲୀର ଶହ ଶହ ଝିଅ

ବୋହୂଙ୍କ ପର ସ୍ୱାସ୍ଥ୍ୟଟି ଭଲ । ଘରକାମ କରିବାରେ ନିପୁଣ । କ୍ଲାନ୍ତ ଜାଣେ ନାହିଁ । ଖିଆ ପିଆରେ ଅପତ୍ତି ଓଜର ନ ଥାଏ । ଘରର ବୋହୂ, ପେଜ ପାଣି ଯାହା ମିଳେ ଖାଇଦେଇ ସମସ୍ତଙ୍କ ସଙ୍ଗେ ଯୋଗ ଦେଇ କାମ କରେ ଘରର ମଙ୍ଗଳ ପାଇଁ ।

ଘର ଅଗରେ ସେ ଯେଉଁ ମୁଣ୍ଡିସାହାଡ଼ା, ବଢ଼େ ନାହିଁ କି ଛିଡ଼େ ନାହିଁ, ପୁରୁଷେ ଉଁଆ, ଝଙ୍କାଳିଆ, ଟିକି ଟିକି ପତର, ତାର ଗଣ୍ଡିର ଗୋଟିଏ ଜାଗାରେ ସିନ୍ଦୂର ଲଗିଛି । ସେଇ ଗଛରେ ଠାକୁରାଣୀ ଅଣ୍ଡା କରିଛନ୍ତି । ଗଛ ପଛକୁ ତିନ ଶାଖିଆ ହୁଙ୍କା । ଛଅ ମାସ ସେ ବଢ଼ି ବଢ଼ି ଉପରକୁ ଉଠେ । ମୁଣ୍ଡି-ସାହାଡ଼ାର ମଥା ଛୁଏଁ । ବର୍ଷା-କାଳରେ ପୁଣି ଛିଡ଼ ଛିଡ଼ ଯାଏ । ମୁଣ୍ଡିସାହାଡ଼ାର ଅଧଯାଏ ଖସି ଅସେ । ହୁଙ୍କା ମୂଳରେ ଗାଡ଼ । ବେଳେ ବେଳେ ନାଗ ସାପ ବାହାରି ଠାକୁରାଣୀଙ୍କୁ ପ୍ରଦକ୍ଷିଣ କରେ, ପୁଣି ଗାଡ଼ରେ ପଶେ । ବାସୁକିର ପ୍ର-ପଣନାତି, ସେ ଶିବଙ୍କର ପଇତା । ମୁଣ୍ଡିସାହାଡ଼ାରେ ହରପ୍ରିୟା ଠାକୁରାଣୀ କି ତାଙ୍କର କେଉଁ ପୋଇଲପରିବାଗ୍ୱର ଅଂଶ ବିରାଜମାନ । ତାଙ୍କର ଦେହ-ରକ୍ଷୀ ରୂପେ ଶିବଙ୍କ ନାଗର ଗୃହକରବାକର କେଉଁ ହରିଜନ ନାଗ ପିଲାର ନାତି-ପଣନାତି ନାଗବଢ଼ା ଠାକୁରାଣୀଙ୍କୁ ଜଗି ରହିଛି । ପଛରେ ପୁଣି କୈଳାସ ପର୍ବତର ନମୁନା ।

ରାଧି ଯେଉଁ ଦିନ ବୋହୂ ହୋଇ ଆସିଥିଲା, ମୁଣ୍ଡି-ସାହାଡ଼ାକୁ ପ୍ରଣାମ କରିଥିଲା । ଠାକୁରାଣୀଙ୍କ ପାଖରେ ପୂଜା, ବାଜା, ଭୋଗରାଗ ମଧ୍ୟ ହୋଇଥିଲା । ପଚିଶ ବର୍ଷକାଳ ସେ ଏଇଆ ଦେଖି ଆସିଛି, ଭଲ ମନ୍ଦ ସବୁ କାମରେ । ହିସାବ କଲେ ଜଣା ପଡ଼ିବ କେତେ ଛେଳି, ମେଣ୍ଢା, କୁକୁଡ଼ାର ରକ୍ତ ମୁଣ୍ଡି-ସାହାଡ଼ା ତଳେ ଢଳା ହୋଇଛି । ଠାକୁରାଣୀଙ୍କୁ ସନ୍ତୋଷ କରା ହୋଇଛି । ଗଛରେ ଯେତେ ପତର ସେତିକି ଅମ୍ବା ସେଥିରେ ଅଣ୍ଡା ନେଇଛନ୍ତି । ସମସ୍ତେ କଲ୍ୟାଣ କରୁଛନ୍ତି—ବିକ୍ରମପୁରର ମଙ୍ଗଳ ହେଉ ।

କାହାର କଣ ମଙ୍ଗଳ ହୋଇଛି କି ନାହିଁ, ରାଧିର ମଙ୍ଗଳ ତାର ଖଣ୍ଡିଆ କୁଡ଼ିଆରୁ ଜଣାଯାଏ । ମୁଣ୍ଡରେ କେରା କେରା ବାଳ ପାଚିଲାଣି । ଦାନ୍ତ କେତୋଟି ହଲିଲାଣି । ଦେହ ହେଲାଣି ପଥୁରିଆ । ମନ ହେଲାଣି ଠାଣ—ଠିକ୍ ଯେମିତି ନଈ ସେପାରି ପାହାଡ଼ ଉପରର ପଥର । ଜୀବନଟା ଏଇ ବାହୁଦା ନଈର ରୁକ୍ଷ ବାଲି ପନ୍ଥା ପରି ନିରସ, ଅନୁର୍ବର, ଅନାବଶ୍ୟକ । ପଚିଶ ବର୍ଷର ଇତିହାସ—ଆଜି ରାଧିକୁ କରିଛି ମୂଲିଆଣୀ । ସେ ବି ହୋଇଛି ଠିକ୍ ଏଇ ମୁଣ୍ଡିସାହାଡ଼ା ପରି । ଦୁଇ କୂଳରେ ତାର ଆଉ କେହି ନାହିଁ । ସବୁ ସେ ସହୁଛି । ତଥାପି ସେ ବଞ୍ଚିଛି । ବଞ୍ଚିବା ପାଇଁ ମୂଲ ଲାଗୁଛି । ଭବିଷ୍ୟତ୍ ପାଇଁ ପୁଣି ସଞ୍ଚିରଖିଛି । ଭବିଷ୍ୟତ୍, ଆହୁରି ତହିଁରେ ଅସ୍ଥା ।

ପଚାଶ ବର୍ଷର କରୁଣ ଇତିହାସ ! ସମସ୍ତେ ତାର ମରି ହଜିଗଲେ । ଗୋଟିକ ପରେ ଗୋଟିଏ । ଠାକୁରାଣୀଙ୍କ ସନ୍ତୋଷ କରିବାକୁ ଜଣଙ୍କର ମରଣ ପରେ ସେଇ ମୁଣ୍ଡ ମାହାଡ଼ା ତଳେ ବୋଦା ରକ୍ତ ଢାଳିଛି । କାକୁତି ମିନତି ହୋଇ ଆଖିର ଲୁହ ନଗାଡ଼ିଛି । ତଥାପି ଦେବତା ଶୁଣି ନାହାଁନ୍ତି । କିଏ ଅଗରେ ଗଲା, କିଏ କାହା ପଛରେ । କଣ ହୋଇଥିଲା, କାହିଁରେ ଗଲେ, ଏସବୁ ବର୍ଣ୍ଣନା କରି ଲାଭ ନାହିଁ । ସମସ୍ତେ ଗଲେ । ଦଶ ବର୍ଷ ତଳେ ସେଇ ଅଲକ୍ଷଣା ଘରେ ରହିଗଲେ ଦୁଇଟି ବିଧବା—ରାଧା ଓ ତାର ଜା ମୋତି ।

ମୋତି ସତର ବର୍ଷର ଟୋକୀ । ସେଇ ବର୍ଷ ବ୍ରହ୍ମପୁରରେ ଲାଗିଲା ନିଆଁ । ଅନେକ ଘର ପୋଡ଼ି ଜଳି ପାଉଁଶ ହେଲା । ରାଧିର ଘର ବି । ସମସ୍ତେ ଭଲ ଘର ତୋଳିଲେ । ରାଧି ତୋଳିଲା ଦୁଇବଖରା କୁଡ଼ିଆ । ବଡ଼ଘର ତାର ହେବ କଣ ? କିଏ ଭୋଗ କରିବ ? ଶଶୁର ଇପାରି କୃଷ୍ଣମୂର୍ତ୍ତି କୃମ୍ଫଟି ଠାରୁ କରଜ ଆଣି ଦୁଇ ପୁଅଙ୍କର ବାହାଘର କରିଥିଲେ । ଗେରସ୍ତ ଓ ଦିଅର ବି ସାହୁଠାରୁ କରଜ ଆଣି ବାପ ମାଙ୍କର ଶୁଦ୍ଧି ଓ ଭଉଣୀର ବାହାଘର କଲେ । ସ୍ୱାମୀ ଓ ଦିଅରଙ୍କର ଚିକିତ୍ସା ପାଇଁ, ପୁଣି ପେତ କ୍ରିୟା ପାଇଁ ରାମ ପଟ୍ଟନାଏକ ଘରେ କାଗଜ ସହିକରି ରାଧି ଓ ମୋତି ଟଙ୍କା ଆଣିଥିଲେ । କୃମ୍ଫଟି, ବ୍ରାହ୍ମଣ ଓ କରଣ ତିନିହେଁ ବିଚାର କରି ରାଧି ମୋତିଙ୍କର ସମ୍ପତ୍ତିବାଡ଼ି ବଣ୍ଟାବଣ୍ଟି କରି ନେଲେ । ଖାଲି ଘର ଡିହ ଓ ଏଇ ଦରଭଙ୍ଗା କୁଡ଼ିଆ ଖଣ୍ଡ ଛାଡ଼ିଦେଲେ । ଭବିଷ୍ୟତରେ ନେବେ ବୋଲି ଆଶା ଥାଏ । ସବୁ ଦଶବରଷ ତଳ ଘଟଣା ।

ଦିନେ ରାତିରେ—ସେଇ କୁଡ଼ିଆ ଘରେ । ମୋତିର ମୁଣ୍ଡକୁ କୋଳରେ ପୂରେଇ ରାଧି ଶୋଇ ସପନ ଦେଖୁଛି । ସବୁ ଦୁଃଖର ସପନ । ଅଙ୍ଗେ ନିଭେଇଲା କଥା । ନିଦ ଭାଙ୍ଗିଲା । ଆଖିରୁ ଗଡ଼ି ଆସୁଥିବା ଲୁହ ପୋଛିଲା । ଅନ୍ଧାରରେ ମୋତିର ମୁଣ୍ଡ ଆଉଁସିଲା । ମୋତିର ନିଦ ଭାଙ୍ଗିଲା । ପଚାରିଲା, କଣ ଅପା ?

ରାଧି ତାର ହାତ ଧରି ଅଙ୍ଗେଇ ଅଙ୍ଗେଇ କହିଲା, ମୋତି ଲୋ, ଅବା ଗୁଣି ପାରୁନୁ ନାହିଁ । ତୋରି କଥା ଭାବୁଥିଲି । ସବୁ ତ ଗଲା । ସାହା ସମ୍ବଳ କିଛି ନାହିଁ । ଟୋକୀ ବୟସ ତୋର । ତୁ ଦୁଇଅ ହୋଇ ଯା ।

ମୋତି ଚମକି ଉଠିଲା । ରାଧି ହାତରୁ ହାତ ଟାଣି ନେଲା ।

ରାଧି ତା ମନ କଥା ବୁଝିଲା । କହିଲା ରାଗିଲୁ କି ? ରାଗ ନା ମୋତି । ତୋରି ଭଲକୁ କହୁଛି । ଲୋକେ ପଙ୍କକୁ ସିନା ଠେଲି ଦେବେ, ବୁଡ଼ିଗଲା ମଣିଷକୁ ଉଦ୍ଧାରିବାକୁ କେହି ହାତ ବଢ଼େଇବେ ନାହିଁ । କୃଷ୍ଣମୂର୍ତ୍ତି ଅନ୍ଧାରରେ ଆସି ଅନ୍ଧାରରେ ଯାଉଛି ସିନା, ଦିନମାନଅ କପାଳରୁ କିଛି ଅଛପା ରହିବ ନାହିଁ ।

ସାପ ପରି ଫଁ ଫଁ ହେଲା ମୋତି । ଦାନ୍ତ କା ଗୁଡ଼ିରେ ହାତ ଗୁଡ଼ି କହିଲା, ଭାରି ସତୀ ସୁଲକ୍ଷଣୀ ନା ତ !

ତା ପାଟିରେ ହାତ ଦେଇ ବାଘ କହିଲା, ପାଟି କର ନା । ଚଢ଼ ମାଡ଼ୁଛି ଯଦି ମୋ ପିଠିରେ ଦି ପୁଞ୍ଜା ବସେଇ ଦେ । ତୋର ଦୋଷ ମୁଁ ଦଉନାହିଁ । ନିଜକୁ ସତୀ ସୁଲକ୍ଷଣୀ ବୋଲି କହୁନାହିଁ । ଅଙ୍ଗେ ଯାହା ନିଭେଇଛି, ସେଇ କଥା ତତେ କହୁଛି । ମୋ ସାନ ଜୁହା ମାନ । ମୋ କଥାରେ ହଁ ଭର । ମା ହେବାକୁ ସମସ୍ତଙ୍କ ମନହୁଏ । ତୋ ଦୋଷ ଦଉ ନାହିଁ କି ମୋର ଚହଲା ମନ ପାଇଁ ମୋ ଦୋଷ ମୁଁ ଦେଉ ନାହିଁ । ତୋର ବୟସ ଅଛି । ତୋ ପାଇଁ ମୁଁ ଅଛି । ଦୂରରେ ଥାଇ ହେଲେ ତୋର ସୁଖ ଟିକେ ଦେଖେଁ । ମୋଢି ଲୋ—ବାଘ ତୁନ ହେଲା ।

ମୋଢି ଥକ୍‌କା ହୋଇ ଭାବିଲା ।

ଖରାଦିନ । ବାହାରେ ଉଜ୍ଜ୍ୱଳ ଜହ୍ନ ଆଲୁଅ । ନିଶବଦ ରାତି । କୁଢ଼ିଆ କଡ଼ ଅମ୍ବଗଛ ଆଡ଼ୁ ଖଣ୍ଡିକାଣ ଶୁଭିଲା । ମୋଢି ଚମକି ଉଠିଲା । ବାଘର ବେକ କୁଣ୍ଢେଇ ଧରି କାନ୍ଧ ଉପରେ ମୁଣ୍ଡ ନଦି ଦେଲା । ଗୋଠାଗୁଏଁ ଥରୁଥାଏ ।

ଅମ୍ବଗଛ ଗୁଇ ଡାଳୁ ତାଳି ଶବ୍ଦ ।

ମୋଢି କଟିମିଟି କରି କୁଣ୍ଢେଇ ଧରିଲା ବାଘକୁ । ଥରିଲା ଗଳାରେ କହିଲା, ତୋ ଇଚ୍ଛା ।

ମୋଢି ଦୁତିଅ ହୋଇଗଲା ନୂଆପଡ଼ା । ବାଘ ଘର ଛିଅ ବନ୍ଧା ପକେଇଲା । ମୋଢିର ହେଲା ପୁଅ । ସାତ ବର୍ଷ ତାକୁ ପୂରିଲା । ବାଧା କେବେ ମୋଢି ଘରକୁ ଯାଇ ନାହିଁ । ସେ ଜାଣେ, ତାର ଖର ନିଶ୍ୱାସରେ ସବୁ ଜଳି ଯାଇଛି । ମୋଢି ପୁଅ ଗେରସ୍ତ ନେଇ ସୁଖରେ ରହୁ । ଆଉଷ ପାଇ ସେମାନେ ସଂସାରରେ ବଞ୍ଚି ରହନ୍ତୁ । ମୋଢି ଖବର ପଠାଏ । ବାଧା ମନା କରେ ।

ବାଧା ଯାଇଥିଲା ନୂଆପଡ଼ା । ଆଠ ବର୍ଷ ପରେ ମୋଢି ସଙ୍ଗେ ଦେଖା । ଦୁଇ ଜଣଙ୍କର ଆଖିରୁ ଝରିଲା ଲୁହ । ସାତ ବର୍ଷର ପୁଅ ଜଟିଆ ମୁଣ୍ଡରେ ହାତ ବୁଲେଇଲା ବାଘ । ଆଠ ବର୍ଷର ସଞ୍ଚିତ ଧନ ଟଙ୍କା କେଇଟି ମୋଢି ହାତରେ ଦେଇ ଆସିଲା ।

ପନ୍ଦର ଦିନ ପରେ—ସଞ୍ଜବେଳେ ମୋଢି ଘରୁ ଲୋକ ଖବର ନେଇ ଆସିଲା, ଜଟିଆର ଦେହ ବଡ଼ ଖରାପ । ଜର । ଆଖି ଫିଟୁ ନାହିଁ । ହତଜ୍ଞାନ ହୋଇ ପଡ଼ିଛି । ମୋଢି ତାକୁ ଥରେ ଯିବାକୁ ଖବର ପଠେଇଛି ।

ବାଘ ମନା କରି ପଠେଇଲା । ଖବର ଦେଲା, କୌଣ ଠାକୁର ନାମରେ ପାଣି ଛଡ଼େଇ ଦେ । ମୁଁ ଯିବ ନାହିଁ । ଲୋକଟି ଫେରିଗଲା ରାତିରେ ।

ସେଇ ଅନ୍ଧାର ରାତିରେ—ରାତି ଅଧ । ଆକାଶ ମେଘାଚ୍ଛନ୍ନ । ଗୋଟିଏ ହୋଇ ନକ୍ଷତ୍ର ଦିଶୁ ନାହିଁ । ନିଥର ପ୍ରକୃତି । ପବନର ହିଲ୍ଲୋଳ ନାହିଁ । ନିଶବ୍ଦ । ବାଧାର ଆଖିକୁ ନିଦ ନାହିଁ । ଯନ୍ତ୍ରଣାରେ ଛଟପଟ ମନ । କେଡ଼େ ଭୁଲ ସେ ନ

କଲି ସତେ ! ମନ ମାରି ଏତେ ଦିନ ତ ସେ ରହିଥିଲା । କାହିଁକି ବାଆଁରେଇ ହୋଇ ଗଲା ସେ ମୋଛ ଘରକୁ ? କାହିଁକି ତାର ପୁଅ ଜଟିଆର ମୁଣରେ ହାତ ବୁଲେଇଲା ? ଦୁନିଆରେ ଜନ୍ମ ହୋଇ କାହାରିକୁ ସ୍ନେହ କରିବାର ଅଧିକାର ତାର ନାହିଁ । ଯାହାକୁ ସେ ସ୍ନେହ କରିଛି ତାର ହୋଇଛି ଅମଙ୍ଗଳ । ସତେ କଣ ଜଟିଆ ବଞ୍ଚିବ । ଜଟିଆକୁ ସେ ସ୍ନେହଭରା ଆଖିରେ ଚୁହିଁଥିଲା । ତାକୁ ସେ ଆଦର କରିଥିଲା । ପେଟ ତାର ପୂରି ଉଠିଥିଲା । ଦଇବ କଣ ସହିବ ? ଠାକୁର ଠାକୁରାଣୀଙ୍କୁ ସେ ଆଉ ଡାକିବ ନାହିଁ । କେତେ ତ ଡାକିଛି । କେହି କେବେ ଶୁଣି ନାହାନ୍ତି । ମୁଣ୍ଡିସାହାଡ଼ା ତଳେ ଉପାଧିଆ ପଢ଼ି ରାଢ଼ି ରାଗି କଟେଇଛି । ତଳେ ମୁଣ୍ଡ କୋଡ଼ି ରକ୍ତ ବାହାର କରିଛି । ତଥାପି ଠାକୁରାଣୀ ଶୁଣି ନାହାନ୍ତି ।

ରାତି ପାହିଲେ ଅଶୁଭ ଖବର ଆସିବ । କେତେ ଅଶୁଭ ଖବର ତ ତା ମନରେ ଭେଦିଛି । ଜଟିଆର ମରଣ ଖବର ବି ସେମିତି ତା କାନରେ ବାଜିବ । ମନରେ ପଶିବ । ହୁଏତ ଥକ୍‌କା ହୋଇ ଘଣ୍ଟାଏ ବସିବ । ଆଖିରୁ ଲୁହ ଗଡ଼େଇବ । ପେଟ ଡାକିଲେ ସବୁ ଦୁଃଖ ଗୁଡ଼ିତଳେ ଛପେଇ, ଗଲା କଥା ପଛକୁ ପକାଇ ପୁଣି ବାହାରି ପଡ଼ିବ ସେ ମୂଲ ଲାଗିବାକୁ ।

ମନର କୋହ ରାଧି ସହି ପାରିଲା ନାହିଁ । ଦେବତାକୁ ସେ ଆଉ ପୂଜା କରିବ ନାହିଁ । ଦେବତା କେବେ ମଣିଷର କଥା ଭାବେ ନାହିଁ । ଏଇ ଯେଉଁ ମୁଣ୍ଡିସାହାଡ଼ା, ଯାହାର ମୂଳରେ ମଣିଷ ତାର ଭକ୍ତି ଅଜାଡ଼ି ଦେଇ ଗୁହାରି କରିଛି, ତାହାର ଦେହରେ ଠାକୁରାଣୀ ବିଜେ କରିଛନ୍ତି, ଜୁଲୁ ଜୁଲୁ କରି ସବୁ ଦେଖୁଛି । କାହିଁକି ସେ ରହିବ, ପୂଜା ପାଣି ପାଇବ ? ସବୁ ତ ଗଲା । ସେ ବି ଯାଉ । ଠାକୁରାଣୀ ତାର ସର୍ବନାଶ କରିଛି । ସେ ତାକୁ ଗୁଣ୍ଡିବ କାହିଁକି ? ରାଧି ମନ ଉଲ୍ଲାସରେ ହସିଲା । ସେ ଦୁର୍ବଳ ମଣିଷ ଉପରେ ଦାଉ ସାଧି ପାରିବ ନାହିଁ । ଦେବତାକୁ ନଜର କରାମତି ଦେଖାଇବ । ଲୋକ ତାର ଯାହା କହିବାର କହନ୍ତୁ ।

ରାଧି ଉଠିଲା । ଅନ୍ଧାରରେ ଦରାଣ୍ଡି ଦରାଣ୍ଡି କଣ ଖୋଜିଲା ।

ରାତି ପାହିଲା । ମୁଣ୍ଡିସାହାଡ଼ା ମୂଳରେ ଲୋକ ଜମା ହୋଇଛନ୍ତି । ରାଧି କଳି କାମୁଡ଼ି ପଡ଼ିଛି । ଦୂରରେ ଛିଙ୍କିକ ପଡ଼ିଛି ଟାଙ୍ଗିଆ ଖଣ୍ଡେ । ମୁଣ୍ଡିସାହାଡ଼ା ମୂଳରେ ଦି ଗୋଟି ଗୋଟି କୁରାଢ଼ି ଦାଗ, ଷୀର ନିଗିଡ଼ି ପଡ଼ୁଛି ।

ରାଧିର ପାଦ ଉପରେ ନାଗ ଦଂଶନର ଚିହ୍ନ । ଗୋଟି ଗୋଟି ଦଉଟି ଦାଗ । ଠାକୁରାଣୀର ପ୍ରତାପ !

# ଭୁଲ

ଖରାଦିନ । ଦ୍ୱିପ୍ରହର । ରାସ୍ତାକଡ଼ ପ୍ରକାଣ୍ଡ ନିମ୍ବଗଛର ଛାଇ-ତଳେ ଭୁଲ କୁକୁରଟି ଶୋଇଛି । ଆଖି ବୁଜିଛି । ଗୁଁଉଁ ଗୁଁଉଁ ଲାଗୁଛି । ପବନ ମାଡ଼ି ଆସିଲା । ଛିଣ୍ଡା କାଗଜ ଖଣ୍ଡେ ଉଡ଼ି ଆସିଲା ତାର ପାଖକୁ । ଆଖି ଖୋଲିଲା । କାଗଜ ଖଣ୍ଡି ଉଡ଼ିଗଲା । ପୁଣି ସେ ଆଖି ବୁଜିଲା । ଜୀବନରେ ତାର ଶାନ୍ତି କାହିଁ ? ହେଇ ଅଉ ଗୋଟାଏ କିଏ ସଣସଣ ହୋଇ ମାଡ଼ି ଆସୁଛି । ଆଖି ଖୋଲିଲା । କେଉଁଠିକାର ଘୁଷୁରି ଟାଏ । ନର୍ଦ୍ଦମାର ପାଣି କାଦୁଅ ଘାଣ୍ଟି ଚକଟି ଚାଲିଛି—ପେଟ-ପାଟଣାର ବ୍ୟବସ୍ଥା କରୁଛି । ତା ପଛରେ ତେରଟି ଛୁଆ । ଇଚ୍ଛା ହେଲା ଦାନ୍ତ ଦେଖେଇ ଗୋଡ଼େଇ ଯିବ, କାହାକୁ ହେଲେ ଚୁଲାଏ କାମୁଡ଼ ଦେଇ ତାର ପରାକ୍ରମ ଦେଖେଇବ । ଭୁଲ ଉଠିବାକୁ ଚେଷ୍ଟା କଲା, ପାରିଲା ନାହିଁ । ପଛ ଗୋଡ଼ରୁ ଚୋଟାଏ ତାର ଦରକଚା ହୋଇଛି । ଛାଡ଼ । ଛାର ଘୁଷୁରିଗୁଡ଼ାଏ ତ, ଯାଆନ୍ତୁ ଆଗେଇ ।

ତଥାପି ଭୁଲ ସତର୍କ । ଆଖି ତରାଟି ସେଇଆଡ଼କୁ ଚାହିଁ ରହିଲା । ସେମାନେ ଗଲେ । ପୁଣି ଆଖି ବୁଜି ଶୋଇବାକୁ ଚେଷ୍ଟା କଲା । ହେଲା ନାହିଁ । ଥପ୍ କରି ମୁଣ୍ଡ ଉପରେ ପାଣିଆ ହୋଇ କିଏ ମେଞ୍ଚାଏ ପଡ଼ିଲା । ଚାହିଁଲା ଉପରକୁ । ଗଛ ଡାଳରେ କାଉଟାଏ ବସିଛି । ମନ ହେଲା ଉଡ଼ିଯାଇ ତା ତଣ୍ଟିଟା ମୋଡ଼ିଦେବ । ଆହା-ହା, କି ସୁନ୍ଦର ରଙ୍ଗ ! କା-କା-କା ! ମରଣ ନାହିଁ ।

ସେମାନେ ଉଡ଼ନ୍ତି । ତାଙ୍କ ସଙ୍ଗେ ବଳ କଷିବାକୁ ସାହସ ନାହିଁ । ଏଇ, ଓଃ, କେତେ ଉପରେ ଶାଗୁଣା ଉଡ଼ୁଛନ୍ତି । ଭାରି ସୁଖୀ ସେମାନେ । ଡର ଭୟ ତାଙ୍କର ନାହିଁ । କିଏ ତାଙ୍କର କଣ କରିବ ? ଯେତେ ଦୂରରେ ଖାଦ୍ୟ ପଡ଼ିଥିଲେ ବି ସେମାନେ ଦେଖିପାରନ୍ତି । ହେଇଟି, ଚାଳ ଉପରେ ପ୍ରକାଣ୍ଡ ଘରଚଟିଆମାନେ ଖେଳୁଛନ୍ତି । ଆକାଶରେ ଯେ ଉଡ଼ିପାରେ ସେ ନିର୍ଭୀକ, ସୁଖୀ । ଭୁଲ ତ କୁକୁର ଜନମ ପାଇଛି, ସବୁ ଦୁଃଖ ତା କପାଳେ । କି ଲାଭ ମିଳିବ ଚଢ଼େଇଙ୍କ କଥା ଭାବି ?

ଭୁଲ ଆଖି ବୁଜିଲା । ପୁଣି କିଏଟାଏ ? ଆଖି ଖୋଲିଲା । ରାସ୍ତା ସେପାଖ କମାଘର ପିଣ୍ଡା ଉପରେ ଦିଟା ମାଙ୍କଡ଼ । ମନ ହେଲା ଧାଇଁଯିବ । ଏମାନଙ୍କ ସଙ୍ଗେ ବଳ କଷିବାକୁ ତାର ଭାରି ଇଚ୍ଛା । ହେଲେ କଣ କରିବ ? ଗୋଡ଼ଟା ତ ପ୍ରଚଣ୍ଡ । ରହ, ରହ, ଗୋଡ଼ଟା ଟିକେ ଭଲ ହୋଇଯାଉ, ମଜାଟା ତମର ଦେଖିବ । କି ମଜା ବା ସେ ଦେଖିବ ? ଭଉଁ ଭଉଁ ହୋଇ ଏପାଖ ସେପାଖ ଦଉଡ଼ିବା ଛଡ଼ା ଆଉ ତ ସେ କେବେ କିଛି କରି ପାରି ନାହିଁ ।

ସେମାନେ ଗଛରେ ଚଢ଼ନ୍ତି । ଏ ଡାଳରୁ ସେ ଡାଳକୁ ଡେଇଁ ଯାନ୍ତି । ଯେଉଁଠି ଯାହା ହାବୁଡ଼ିଲା ଛଡ଼ାଇ ପାଟିରେ ପୂରେଇ ଛୁଟନ୍ତି ଅଗଡାଳକୁ । ଖାଲି ନେଲା ନେଲା ଡାକ । ଢେଲା ପଥର ତାଙ୍କ ପାଖେ ପହଞ୍ଚେ ନାହିଁ । ସେମାନେ ଦାନ୍ତ ଦେଖାଇ ହସନ୍ତି । ଗଛରେ ଯେଉଁମାନେ ଚଢ଼ନ୍ତି ଏଣ୍ଡୁଅ ବଲେଇ, ମାଙ୍କଡ଼, ଗୁଣ୍ଡୁଚି ମୂଷା ଗୋଟିଏ—ସମସ୍ତେ ସୁଖୀ । ଏକା କୁକୁର ପାଇଛି ସ୍ୱାନମାନଥା ଜନମ । କପାଳ କଥା ।

ବୁଲା ପୁଣି ଆଖି ବୁଜିଲା, ଟିକିଏ ହେଲେ ନିଦ ହୋଇଯାଉ । ଏ, ଖପ୍‌ରାଟା କଣ ଉପରେ ପଡ଼ିଲାଣି । ଓଃ କେଡ଼େ ଗରମ । ଯିବ କି ଗୁଡ଼ିଲ ପୋଖରୀ ହୁଡ଼ାକୁ ? ଖରାଦିନେ ବି ପାଣି ଭରିଛି । ଗୁଡ଼ିର ପାଖେ ବଡ଼ ବଡ଼ ତେନ୍ତୁଳିଗଛ । ଥଣ୍ଡା ଜାଗା । ଯିବ କି ? ଗୋଡ଼ଟା କାଟୁଛି । ଏଇଠି ଟିକେ ବୁଲି ଶୋଇଲେ ତ ହେବ । ପୋଖରୀ କୂଳଟା ଭଲ ନୁହେଁ । ଦଣ୍ଡିକିରି ମାଛ, ଯିଏ ତାର ଗୋଟାଏ ନଖକୁ ବି ସରି ନୁହେଁ ସେ ତାକୁ ଥଟ୍ଟା କରିବ ।

ସତ କଥା । ସେମାନେ ବି ସୁଖୀ, ନିରାପଦ । ସାମାନ୍ୟ ବେଙ୍ଗ ଛୁଆଟିଏ ବି । କେତେ ଥର ସେ ଉବଉବ କରି ଅନେଇଛି । ଦେଖିଛି ବଡ଼ ବଡ଼ କାଳିଆ ଶେଉଳ, ମହିଆଁ ମହିଆଁ କଉ, ମାଗୁର, ସାନ ସାନ କେରାଣ୍ଡି, ଦଣ୍ଡିକିରି । କେଡ଼େ ମଉଜରେ ପହଁରନ୍ତି, ବୁଡ଼ି ବୁଡ଼ି ଗୋଡ଼ିଆଗୋଡ଼ି ହୁଅନ୍ତି । ଖାଇବାକୁ ବି ଅଭାବ ନାହିଁ, ପଙ୍କ, ଦଳ, କଇଁ, ପ୍ରଚୁର । ଅଭି ନଉଁଛଣା କୁକୁରଟା ସେ ।

ବୁଲା ଟିକିଏ ଘୁଞ୍ଚି ଶୋଇଲା । ଆଖି ବୁଜିଲା । ଏଇଥର ଟିକେ ଶାନ୍ତିରେ ଶୋଇବାକୁ ଚେଷ୍ଟା କରେଁ ! ଗୁଡ଼ୁଁ କିନ ନିଦ ଭାଙ୍ଗିଲା । କିଏ ଗୋଟାଏ ତାର ଲାଙ୍ଗୁଡ଼ କାମୁଡ଼ୁଛି । ଆଖି ତରାଟି ଗୁହିଁଲା । ଅରେ ଅରେ ମୂଷାଟାଏ । ଗଛ ମୂଳରେ ଗୋଟାଏ ଗାଡ଼ । ଏଇ ଗୁହିଁଲା ମାତ୍ରେ କେଡ଼େ ବେଗରେ ଧାଇଁ ଯାଇ ଗାତରେ ପଶିଲାଣି । ମୁହଁଟି କାଢ଼ି କୁଲୁ କୁଲୁ କରି ଗୁହିଁଛି । ଭାରି ଚଗଲା । ଦେବ କି ପୁଲାଏ ? ଦୁରାଶା ! କିଏ ତାଙ୍କର କଣ କରିବ ? ଗାତ ଭିତରେ ପଶିଲେ ବୁଲାର ବୁଦ୍ଧି ହଜିଯିବ । ସେମାନେ ନିର୍ଭୟରେ ରହନ୍ତି—ବିଲୁଆ, କୋକି, ସାପ, ମୂଷା, ଗୁଣ୍ଡୁଚି ଉଇ ପିମ୍ପୁଡ଼ି ! ଦାଉ ଉଣ୍ଡି ପଦାକୁ ବାହାରି ଯେଉଁଠି ଯାହା ହାବୁଡ଼ିଲା ଗୋଟ୍ଟରି କରି ନେଇ ପଳାନ୍ତି । ସୁଖୀ ସେମାନେ । ବୁଲା ତ ଉଦୁଲ ବିକଳିଆ କୁକୁର ଜନମ ପାଇଛି । ଗାଳି ମାଡ଼ ତାର ଜାତକରେ ଲେଖା ।

ପର କଥା ଭାବି ଲାଭ ନାହିଁ, ଅଭ ଟିକିଏ ଘୁଞ୍ଚି ଶୋଇବା ଭଲ । ଗାଡ଼ ପାଖରୁ ମୁହଁ ଟିକିଏ ଦୂରେଇ ଶୋଇଲା ରାସ୍ତା ଉପରକୁ । ଏଇ ଥାନଟି ଭଲ । ବୁଲା ଆଖି ବୁଜିଲା । ଟେଟ୍, ପୁଣି ଗୋଟାଏ କଣ ଆଇଲାଣି ଏ ପାଖରୁ । ଓ, ଗାଈଟାଏ । କେଡ଼େ କେଡ଼େ ଶିଙ୍ଗ । ମୁଣ୍ଡ ହଲାଉଛି । ଚଢ଼ିଯିବ କି ଉପରେ ?

ଭୁଷି ଦେବ କି ? ନାଇଁ ନାଇଁ, ସୁଧାର ଗାଈଟାଏ, ତାକୁ ସେ ଚିହ୍ନେ । ଅଡ଼େଇ ଯିବ ତା ମନକୁ । ତେବେ କି ବିଶ୍ୱାସ ଅଛି ? ବୁଲା ଦାନ୍ତ ଦେଖାଇ ଗର୍ଜିଲା । ଗାଈଟା ମୁଣ୍ଡ ହଲାଇ କଣେଇଁ କଣେଇଁ ଚାହିଁ ଅଡ଼େଇ ହୋଇ ଚାଲିଗଲା । ବୁଲା ଆଖି ତରିଟି ଅନେଇଥାଏ । ଭାବୁଥାଏ ଏମାନେ ବି ସୁଖୀ—ଏଇ ହାତୀ, ଘୋଡ଼ା, ଗାଈ, ଛେଳି, କୁକୁଡ଼ା । ମଣିଷ ଯାଙ୍କ ପାଇଁ ଘର ତୋଳି ଦେଇଛି । ନିଜେ ଆଣି ଖାଦ୍ୟ ଯାଙ୍କ ମୁହଁ ପାଖେ ଅଜାଡ଼ୁଛି । ଧନ୍ୟ ଏମାନେ । କୁକୁର ଜନମଟା ସିନା ସବୁଠୁ ଖରାପ !

ବୁଲା ଆଖି ବୁଜିଲା । ମୁହୂର୍ତ୍ତେ ଶୋଇଛି କି ନାହିଁ କାନରେ ପଡ଼ିଲା ବିକଟାଳ ରଡ଼ି । ଚମକି ଉଠିଲା । ବାପରେ— ! ସେଇ ଭୟଙ୍କର ଜୀବଟା ଭୁସ୍ ଭୁସ୍ ମାଡ଼ି ଆସୁଛି । ଲୋକେ କେତେ ନାମରେ ଡାକନ୍ତି—କାର୍, ଜିପ୍, ବସ୍, ଲରି । ସମସ୍ତଙ୍କ ପେଟ ଭିତରେ ମଣିଷ ପଶନ୍ତି, ପୁଣି ହସି ହସି ଚାହାନ୍ତି । ବଳଦଟଣା ଗାଡ଼ି କି ଘୋଡ଼ାଲଗା ଝଟ୍‌କାର ହେଲେ ଟିକେ ଦୟାମାୟା ଅଛି ! ଏ ଲରି, ବସ୍ ଗୁଡ଼ାକ ବଡ଼ ନିର୍ଦ୍ଦୟ । ଉଡ଼ନ୍ତି କି ଚାଲନ୍ତି ଜାଣି ହୁଏ ନାହିଁ । ବିନା ଦୋଷରେ ଉପରେ ମାଡ଼ି ଚକଟି ଚାଲି ଯାଆନ୍ତି । ବୁଲାର କେତେ ଜାତିଭାଇ ଯାଙ୍କ ଚକତଳେ ଚକଟି ହୋଇ ମରିଛନ୍ତି । ସେ ଆଖିରେ ଦେଖିଛି । ଦୁଇ ଚାରିଥର ସେ ନିଜେ ବି ଏଇ ରାକ୍ଷସଗୁଡ଼ାଙ୍କ ହାବୁଡ଼ରୁ ନିମିଷକେ ଝମି ଜୀବନ ବଞ୍ଚାଇଛି । ଦୂରରୁ ସାବଧାନ ! ଏଇ ଆଇଲା—ଆଇଲା—

ଏଥର ବୁଲା ଉଠିଲା । ଛୋଟା ଗୋଡ଼ଟି ତଳେ ଲାଗୁନାହିଁ । ତିନି ଗୋଡ଼ରେ ଛୋଟେଇ ଛୋଟେଇ ରାସ୍ତା କଡ଼କୁ ଘୁଞ୍ଚିଗଲା । ଘଁ ଘଁ ହୋଇ ଲରି-ରାକ୍ଷସ ଛୁଟି ପଳେଇଲା ପଛରେ ଧୂଳି ଉଡ଼େଇ । ବୁଲା ଆଖି ମିଟିମିଟି କଲା । ଚାହିଁଲା ଚାରି-ଆଡ଼କୁ । ଅଗ ରାସ୍ତା ଆଡ଼ୁ ଦୁଇଟା ଲୋକ ପୁରୁଷେ ଉଚର ଠେଙ୍ଗା ଧରି ଆସୁଛନ୍ତି । ସମସ୍ତଙ୍କୁ ବିଶ୍ୱାସ ଅଛି ! ଠେଙ୍ଗାହାତ ମଣିଷଙ୍କୁ ବିଶ୍ୱାସ ନାହିଁ । ଆହା କିଛି ନ ଜାଣିଲା ପରି ସାଧୁ ପୁରୁଷ ଦିଓଟି କେମିତି ଆସୁଛନ୍ତି ଦେଖ ତ ! ହସ, ଖୁସି, ଗପ ! ପାଖରେ କାଳୁ କୁକୁର ଦେଖିଲେ ତାଙ୍କ ନାହି ଉଏଁ, ହାତ ଝୁଞ୍ଜ୍ ବୁଞ୍ଜ୍ ହୁଏ । ଭାରି ଅବିଶ୍ୱାସୀ ଜାତି ! ଦୁର୍ଜନ ଦେଖିଲେ ଥାନ ଛାଡ଼ି ଚାଲିଯିବା ଉଚିତ । ଯେ ପଳାଏ, ସେ ଆତ୍ମରକ୍ଷା କରେ ।

ଅଡ଼େଇ ଅଡ଼େଇ ଚାହିଁ ଛୋଟେଇ ଛୋଟେଇ ବୁଲା ଆଗକୁ ଧାଇଁଲା, ତରଙ୍ଗ ତରଙ୍ଗ ଚାହାଁଣୀ, ଏ ପାଖକୁ ସେ ପାଖକୁ, ଚାରିଆଡ଼କୁ । ପଛ ଗୋଡ଼ଟା ଦରଜ । ଧାଇଁଲା ବେଳକୁ କାଟୁଛି । ତଥାପି ଅପେକ୍ଷା କରିବାକୁ ସାହସ ହେଉ ନାହିଁ । ମନ ଟହିଲ । ଛାତି ଧୁଡ଼ୁଧୁଡ଼ୁ । ଦୁନିଆଁରେ ସମସ୍ତେ ତାର ଶତ୍ରୁ । ଜୀବନଟା ରହିଛି ଏଇ ତ ବଡ଼ କଥା । ଛୋଟା ଗୋଡ଼, ଘା ଘାଉଡ଼ିଆ ଦେହ କଥା ଭାବି ଦୁଃଖ କରିବାକୁ ମନ ହୁଏ ନାହିଁ । ମାଛି ଗୁଡ଼ାକ ପଛରେ ଗୋଡ଼େଇ-

ଛନ୍ତି । ପିଠିରେ ବସୁଛନ୍ତି । ଯେତେ ହୁରୁଡ଼େଇଲେ ମାନୁ ନାହାନ୍ତି । କାମୁଡ଼ି ଧରିବାକୁ ଚେଷ୍ଟା କଲେ ଉଡ଼ି ପଳାଉଛନ୍ତି, ପୁଣି ମାଡ଼ି ଆସୁଛନ୍ତି । ଅବେଇଜ ମାଛି ଗୁଡ଼ାକ, ଜନ୍ମରୁ ଶତ୍ରୁ ।

ଏ ହେଉଛି, ସେ ପାଖରୁ କେତେଗୁଡ଼ିଏ ମଣିଷପିଲା ଆସୁଛନ୍ତି । ଦୁଇଜଣ ରାସ୍ତା କଡ଼ରୁ ଢେଲା ଗୋଟେଇ ଧରିଲେଣି । ଜଣେ ଢେଲା ଉଞ୍ଚେଇଲାଣି । ପକେଇବ ଯଦି, ମୁଣ୍ଡରେ ବାଜିଯିବ । କୁକୁରଙ୍କର କାଉଁ କାଉଁ କାନ୍ଦଣା, ଗୁଣ୍ଡିଫଟା ବିକଳ ଚିତ୍କାର, ଦାନ୍ତ ଦେଖା ଛଟପଟ ଯନ୍ତ୍ରଣା ଏଇ ମଣିଷ ପିଲାଙ୍କୁ ଭଲ ଲାଗେ—ଭାରି ଖୁସି ଲାଗେ, ବଡ଼ ବାହାଦୁରୀ । ସେଇଥି ପାଇଁ ସେମାନେ ନାଟ ତାମସା କରନ୍ତି । ଜୀବଜନ୍ତୁଙ୍କର ସ୍ୱରକୁ ଅନୁକରଣ କରି ବୋବାଳି ଛାଡ଼ନ୍ତି । ଯେତେ ପ୍ରକାର ସ୍ୱର ମିଶାମିଶି । ଅନୁକରଣ କରି ହୁଏ ନାଇଁ ବୋଲି କେତେ ଯନ୍ତ୍ର ଗଢ଼ିଲେଣି । ତେବେ ବି କଣ ହେଉଛି ? ତଥାପି ଚେଷ୍ଟା ଚାଲିଛି ।

କୁକୁରଙ୍କ କାନ୍ଦଣା ମଣିଷଙ୍କୁ ଭାରି ଭଲ ଲାଗେ । ଏଇ ସେ ପିଲାଟି ଢେଲା ପକେଇବାକୁ ହାତ ଉଞ୍ଚେଇଲାଣି । ଏତିକିବେଳେ ସେ ସ୍ୱର କାଢ଼ିବ । ବୁଲା ଲାଙ୍ଗୁଳ ଯାକିଲା । ଦାନ୍ତ ଦେଖାଇ କ୍ୟାଉଁ କ୍ୟାଉଁ ହୋଇ ଆକୁଳ କାନ୍ଦଣାର ଲହର ଛୁଟାଇଲା । ଧାଇଁଲା । ଧାଇଁଲା ଏଣିକି ତେଣିକି, ଅନେଇବାକୁ ବେଳ ନାହିଁ । ଅଟକି ଠିଆ ହେବାକୁ ସାହସ ହେଉ ନାହିଁ । ଧାଇଁଲା, ଜୀବନମୂର୍ଚ୍ଛା, କି ବିକଳ ଚିତ୍କାର । ଛୋଟା ଗୋଡ଼ଟା ତା ମନକୁ ତଳେ ଲାଗିଲାଣି । ଆଉ ତିନୋଟି ଗୋଡ଼କୁ ସାହାଯ୍ୟ କଲାଣି । ଓହଳିଲା ଚମଗୁଡ଼ାକ ଏପାଖ ସେପାଖ ହେଉଛି । ଛୋଟ ଛୋଟ ରୁମ ଭିତରେ ଉକୁଣିଗୁଡ଼ାକ ଚଟ୍ ମଟ୍ ଚାଲୁଛନ୍ତି । ଦ କାନ ଭିତରେ ଲୁକୁରମାଛି ସଲସଲ ହେଉଛନ୍ତି । ତାଙ୍କର ବି ଅଦଉତି ସାଧିବାର ଏଇ ବେଳ । ତଥାପି ବୁଲା ଧାଇଁଲା ।

ବଁ, ବଁ, ହୋଇ ଛୁଟି ଆସିଲା ଗୁଡ଼ାଏ ଢେଲା । ବୁଲାର ଆଗରେ ପଛରେ ପଡ଼ିଲା । ଗୋଟିଏ ବି ତା ଦେହରେ ବାଜିଲା ନାହିଁ । ପିଲାଗୁଡ଼ାକ ବାଟ ଭାଙ୍ଗି ଅନ୍ୟଆଡ଼େ ମୋଡ଼ିହେଲେ । ରକ୍ଷା । ବୁଲା ରାସ୍ତା ଉପରେ ଠିଆ ହେଲା । ନିରାପଦ । ଟିକିଏ ହସିଲା । ରାସ୍ତାର ଧୂଳି ଉପରେ ପଡ଼ି ନିଜ ଦେହର ଗୁଆଡ଼େ ଦାନ୍ତ ବୁଲେଇଲା । ଗୋଟାକେତେ ଉକୁଣୀ ଧରି ଦାନ୍ତରେ ଚିପି ମାରିଲା, ଖାଇଲା, ଭଲ ଲାଗି ଅଳେଇଚ ଦାନା ପରି ! ନିଜର ଗୁଣପାଖେ ନିଜେ ବୁଲି, ରାସ୍ତା କଡ଼ର ତତଲା ଧୂଳି ଉଡ଼ାଇ ମାଛିଗୁଡ଼ାକୁ ହୁରୁଡ଼େଇ ଦେଲା । ଧରି ପାରିଲା ନାହିଁ ।

ପାଖ ଗୁଳଘର ଗୁଇତଳେ, ଯେଉଁ ବାଟେ ଘର ଭିତରୁ ନଳା ପାଣି ପଡ଼ାକୁ ଆସେ, ସେଇଠି ସେ ଶୋଇ ଜିଭକାଢ଼ି ଧଇଁକଲା । ଦମ୍ ନେଲା । ନିରାପଦ ଥାନ । ଛୋଟ ବଲେଇଟିଏ କେତେ ଉଚ୍ଚରେ କାନ୍ଥ ଉପରେ ଶୋଇ

ଆଖି ମିଞ୍ଜି ମିଞ୍ଜି କରୁଛି । ତାର ଭୟ ନାହିଁ । ପାଖକୁ ସେ ଆସିବ ନାହିଁ । ସେ ଡରେ । ହଁ, ଏଇ ନବପଦ ଥାନ ।

ବୁଲି ତାର ଛେଚା ଗୋଡ଼ଟିକୁ ଚାଟିଲା ଓ ଭାବିଲା । ଛାଇତଳେ ନବପଦ ଥାନରେ ତା ମୁଣ୍ଡରେ ବାରଚାଉଳିଆ ଭାବନା ପଶେ । ବାରମ୍ବାର ସେ ତାର ଲମ୍ବା ତିନିବର୍ଷର ଜୀବନକୁ ଓଲଟ ପାଲଟ କରି ଦେଖେ । ଉଃ, ଲମ୍ବା ଜୀବନ ! ତିନିବର୍ଷ କେଉଁଠୁଁ ସରିଲାଣି । ଦିନଦିନକର କଥା କହି ବସିଲେ କେତେ ଦିନ ବିତିଯିବ । କିଏ ବା ଶୁଣିବ ?

ଶୁଣିବୁ କିଏରେ ବିଲେଇ ଭାଇ ?

ବୁଲି କାନ୍ଥ ଉପରକୁ ଚାହିଁଲା । ଧୋବ ଫରଫର ଟିକି ବିଲେଇଟି ତାରି ଆଡ଼କୁ ଚାହିଁଛି । ଏଇ ବୋବେଇଲାଣି ମ୍ୟାଉଁ ମ୍ୟାଉଁ । ପଚାରୁଛି ତୁ କାହିଁକି ମୋ ଘରକୁ ଆଇଲୁ ? ତୁ କିଏ ? ମ୍ୟାଉଁ-ମ୍ୟାଉଁ, ମିଆଁ-ଉଁ । ଏମିତି କାହିଁକି ହେଉଛୁ ? ତୋ ଘର କେଉଁଠି ? ତୋ ପିଲାଛୁଆ କାହାନ୍ତି ? ବୁଲି ବୁଝିଲା । ବିଲେଇ ବାପୁଡ଼ା ସଭିଙ୍କ ମନକଥା ବୁଝେ । ମନେ ମନେ କହିଲେ ଆଖି ଭୁକି ସେ ଜାଣିପାରେ । ବୁଲି ପାଟିତୁଣ୍ଡ କଲା ନାହିଁ । ଆଖିଭୁକି ମନେ ମନେ କହିଲା—

ଶୁଣିବୁ କିଏରେ ବିଲେଇ ଭାଇ ? ମନ ଧ୍ୟାନ ଦେଇ ଶୁଣ । ମନ କଥା ମୋର ବୁଝ । ଅନ୍ଧ ହାନମାନିଆ ଜୀବନ । ବାପ କିଏ ଜାଣେ ନାହିଁ । ମୋର ଯେତେବେଳେ ଆଖିର ପରଦା ବନ୍ଦ ହୋଇଥିଲା ସେତିକିବେଳେ ମାଆର କୋଳରେ ଶୋଇ ଦୁଧ ଖାଉଥିଲି । ଶୀତଦିନ । ଜ୍ୱର ଥଣ୍ଡା । ମା କୋଳରେ କୁଙ୍କୁଡ଼ିକାଙ୍କଡ଼ି ହୋଇ ପଶେ । ଉଷୁମ ଲାଗେ । ମା ଥନରୁ ତୁଣ୍ଡ ଖସିଲେ ଆଉ ସେ ଥନରେ ସନ୍ଧାନ ପାଏ ନାହିଁ । ଆଖିରେ ସିନା ଦେଖି ପାରେ ନାହିଁ, ଅନୁଭବ କରେ ମୋରି ପରି ଆଉ କେତେ ଜଣ ବି ମା କୋଳରେ ଯାଲୁବାଲୁ ହେଉଥାନ୍ତି । ମୁଣ୍ଡରେ ମତେ ଠେଲିଦେଇ ମୋ ମୁହଁରୁ ଥନ ଖସେଇ ଦିଅନ୍ତି । ମୁଁ ବି ସେମିତି କରେ । ମା ମୋର ବେଳେ ବେଳେ ମୋତେ ଚାଟେ । ଭାରି ଭଲଲାଗେ ।

ଯେଉଁ ଦିନ ମୋର ଆଖି ଫିଟିଲା ସେଇ ଦିନ ମୋର ମାଆକୁ ଚିହ୍ନିଲି । ତା କୋଳରେ ମୋ ପରି ଆହୁରି ପାଞ୍ଚଟି ପିଲା । ସେମାନେ ମୋର ଭାଇ ଭଉଣୀ । ଆମଘର ଜଣେ କାହାର ଢିଙ୍କିଶାଳ କଡ଼ରେ । ମାଆକୁ ମୁଁ ଅଧିକ ଦିନ ଦେଖି ନାହିଁ । କପାଳ ମନ୍ଦ । ଭାଇ ଭଉଣୀ ସ୍ନେହ ବି ମୁଁ ଜାଣି ନାହିଁ । ଦିନେ ମା ମୋର କୁଆଡ଼େ ଯାଇଥାଏ । ଆମେ ଛଅଟି ଭାଇ ଭଉଣୀ ଏକାଠି ଶୋଇଥାଉଁ । ତିନି ଚାରିଟା ମଣିଷ ପିଲା ଆସି ଆମ ନିଦ ଭାଙ୍ଗିଲେ । ଆମକୁ ସବୁ ଧରିଲେ । ସମସ୍ତେ ଆମେ କାନ୍ଦିଲୁଁ । ସେମାନେ ଆମକୁ ଛାଡ଼ିଲେ ନାହିଁ । ଟିକି ପିଲାଟିଏ

ଗୋଟିଏ ହାତରେ ମତେ ତା ଆର ହାତରେ ମୋର ଗୋଟିଏ ଭାଇକୁ ଧରି ଧାଇଁ ଧାଇଁ ପଳେଇଲା ।

ସେଇ ଦିନରୁ ମାଆକୁ ମୁଁ ଆଉ ଦେଖି ନାହିଁ । ଯେଉଁ ପିଲାଟି ଆମ ଦିହିଁଙ୍କି ନେଇ ଯାଇଥିଲା ସେ ଆମକୁ ମାଆଠୁ ବଳି ଯତ୍ନରେ ପାଳିଲା । ସେ ଘରେ କେତେ ଲୋକ କାରବାର ହୁଅନ୍ତି । କିଏ ଆମର କାନଧରି ନଚାଏ, କିଏ ଗୋଡ଼ଧରି ବୁଲାଏ । ଯେଉଁ ପିଲାଟି ଆମକୁ ନେଇଥିଲା ସେ ଆମକୁ ଖାଇବାକୁ ଦିଏ, କାଖ କରେ, କେତେ ସରଧା କରେ । ଆମେ ଦିହେଁ ତାରି ଗୋଡ଼ ଗୋଡ଼ ଗୃହ୍ଣୁ । ଗୃଗୋଟି ମାସ ଆମର ସୁଖରେ କଟିଲା । ମୋ ଭାଇଟା ବଡ଼ ରାଗୀ । ମତେ ଖାଲି କାମୁଡ଼ ଗୋଡ଼ାଏ, କାମୁଡ଼େ । ଦିନକର ସେ ଖଣ୍ଡେ ହାଡ଼ଧରି ଗୃହ୍ଣୁଛି । ମୁଁ ଦୂରରେ ଥାଇ ଅନେଇ ଥାଏ । ପାଖକୁ ଯିବାକୁ ଡର ମାଡ଼ୁଥାଏ । ଯିଏ ଆମକୁ ଭଲ ପାଏ ସେଇ ପିଲାଟି ଧାଇଁ ଆସିଲା । ଛି, ଛି, କହି ମୋ ଭାଇକି ଧରିଲା । ଏତେ ଚଗଲା ମୋ ଭାଇଟା, ପିଲାଟିର ହାତକୁ ପୁଲାଏ କାମୁଡ଼ି ଦେଲା । ଝର ଝର ହୋଇ ରକ୍ତ ଝରିଲା । ସେ କାନ୍ଦିଲା ।

ସେଇ ଦିନଠୁ ଆମର ସୁଖ ଗଲା, ଆଶା ବି ଗଲା । କେତେ ବଡ଼ ମଣିଷଟାଏ ଆସି ଆଗ ପିଟିଲା ମୋ ଭାଇକି । ମୁଁ ଡରି ଲୁଚି ଲୁଚି ଆଉ ଗୋଟାଏ ଘରେ ପଶିଲି । ସେ ଘରେ ଖାଇବା ଜିନିଷ ତିଆରି ହୁଏ, ଚୁଲିରେ ନିଆଁ ଜଳେ । ବାଃ, ଗୋଟାଏ ଥାଳିରେ କେତେପ୍ରକାର ଖାଇବା ଜିନିଷ । ଭାବିଲି ମୋର ପାଇଁକି ହେବ ! ଲୋକ କରୁଥିଲା । ସବୁବେଳେ ଆମକୁ ଲୋକ କରେ । ଖାଇଲି ମନଇଚ୍ଛା ପେଟ ପୂରେଇ । ଆହୁରି ଖାଇବାକୁ ମନ ହେଉଥାଏ । କିଏ ଜଣେ ଆଇଲା । କେତେବଡ଼ ପାଟିଟାଏ ସେ କଲା । ଡରି କରି ପଦାକୁ ପଳେଇ ଆସିଲି । ତଥାପି ରକ୍ଷା ନାହିଁ । ଖଣ୍ଡେ ବାଡ଼ିରେ ପିଟି ପିଟି ମତେ ଦରମରା କଲେ । ମୋ ଭାଇକୁ କିଏ ନେଲା, ତାର କଣ ହେଲା ମୁଁ ଜାଣେ ନାହିଁ । କିଏ ଜଣେ ମତେ ବୁଲେଇ ବୁଲେଇ ପାଚେରୀ ଡେଇଁ ପଦାକୁ ପକେଇ ଦେଲା । ମରୁ ମରୁ ମୁଁ ବଞ୍ଚିଲି ।

ସେଇଦିନୁ ବାଟ ଅଶ୍ରା । ସବୁଠି ବୁଲେ । ଯାହା ଯେଉଁଠି ମିଳେ ଖାଏ । ନିରାପଦ ଥାନଟିକେ ଖୋଜି ଶୋଇବାକୁ ଚେଷ୍ଟା କରେ । ଆଜଯାଏ ନିରାପଦ ଥାନ ପାଇ ନାହିଁ । ସବୁଠି ଅପଦ । ସମସ୍ତେ ମୋର ଶତ୍ରୁ । ବିନା ଦୋଷରେ ମାଡ଼ । ମୋର ଜାତି ଭାଇମାନେ ମୋର ସବୁଠୁଁ ବଡ଼ ଶତ୍ରୁ ।

କଣ କହିବି ଅଲାଜୁକ କଥା, ଯେଉଁମାନଙ୍କୁ ମୁଁ ଶରଣ ପଶିବା ପାଇଁ ପଞ୍ଚ ଦେବତା କଲି—କାହାରିକୁ ତ ମନା କରି ନାହିଁ, ସେମାନେ ବି ହେଲେ ମୋର ଯମ । ସେଇମାନଙ୍କର ପିଲାଙ୍କୁ ପେଟରେ ଧରି ପରି ଓଳିତଳେ ଜନମ କଲି ଦୁଇଥର ଛଅଟି, ପୁଣି ପାଞ୍ଚଟି । ଯେଉଁମାନେ ପଞ୍ଚ ହେବାକୁ ଅଳି କରୁଥିଲେ

ମାଇଲ୍ ମାଇଲ୍ ଧାଇ ଥିଲେ ମୋର ପଛରେ ମୋର ସ୍ନେହ ପାଇବାକୁ, ସେମାନେ କଣ ପଚାରୁଥିଲେ ? ଓଲଟି କାମୁଡ଼ା । ଯେଉଁମାନଙ୍କୁ ଜନମ କଲି, ଦେହର ରକତ ଦେଇ ବଞ୍ଚାଇଲି, ସେମାନଙ୍କ କଥା କହୁଲେ ନ ସରେ । କିଏ କେତେ ମୋ ପିଲାଙ୍କୁ ଶରଧା ପାଇ କୁଆଡ଼େ ଗୋଟେଇ କରି ନେଇଗଲେ । ସେମାନଙ୍କ ଅବସ୍ଥା କଣ ହେଲା, ମୁଁ ଜାଣେ ନାହିଁ । ଯେଉଁମାନେ ଏବେ ଦାଣ୍ଡରେ ବୁଲୁଛନ୍ତି ସେମାନେ ବଡ଼ ବଡ଼ ହେଲେଣି । ମା ବୋଲି ଶବ୍ଦ ନାହାନ୍ତି । ଦେଖିଲେ କାମୁଡ଼ି ଗୋଡ଼ଉଛନ୍ତି । କପାଳ କଥା । ବୁଲୀର ଆଖିରୁ ଲୁହ ଝରିଲା ।

ସେ ଆଖି ଖୋଲି ଚାହିଁଲା । ବଲେଇ ପିଲାଟି କେତେବେଳୁ କୁଆଡ଼େ ପଳେଇଗଲାଣି । ତା ମନର କଥା ସେ ଶୁଣିଲା ନାହିଁ । ସେ ବି ଡରିଲା । ଅବିଶ୍ୱାସ କଲା । ଶ୍ରେଷ୍ଠ ଗୋଡ଼ଠାରୁ କାହାଣୀ ଶୁଣିବାକୁ ରହିଲା ନାହିଁ । ଯାଉ, ସେ ତ ସୁଖୀ, ଗଛକୁ ଗଛ ଡେଇଁ ବୁଲିବ । ମୂଷାଛୁଆ ମାରି ଖାଇବ । ସେ କାହିଁକି ଶୁଣିବ ପରର କଥା । ମଣିଷ ପିଲା ବଲେଇ ଉପରେ ଅଦଉତି କରେ ନାହିଁ । ଛି, ଛି, ଏ କୁକୁର ଜନମ !

କି ଦୋଷ ସେ କରିଥିଲା କାହାର ? ଭୁକ ହୋଇ ସେ ପୋଲ ତଳେ ଶୋଇଥିଲା । ଦି ଜଣ ମଣିଷ ତାକୁ ଧରିଲେ ସଞ୍ଜ ବେଳଠାରେ । ଲାଙ୍ଗୁଡ଼ରେ କଣ ଗୁଡ଼ାଏ ବାନ୍ଧିଲେ । ନିଆଁ ଲଗେଇଲେ, ସୁ ସୁ ହେଲା । ସେ ଦଉଡ଼ିଲା— ପ୍ରାଣପଣେ ଦଉଡ଼ିଲା । ଲାଙ୍ଗୁଡ଼କୁ ଯେତେ ଏପାଖ ସେପାଖ କଲା ସୁ ସୁ ବନ୍ଦ ହେଲା ନାହିଁ । ସେ ଛୁଟିଲା ଆହୁରି ବେଗରେ । ରାସ୍ତା ଉପରେ ତାର ଯେତେ ଜାତି ଭାଇ ଥିଲେ ସେମାନେ ଭାଉଁ ଭାଉଁ ହୋଇ ପଛରେ ଧାଇଁଥାନ୍ତି । ପାଖରେ ପଶିବାକୁ ସାହସ କରୁ ନ ଥାନ୍ତି । ଲାଙ୍ଗୁଡ଼ରେ ଯାହା ବନ୍ଧା ହୋଇଥିଲା ଫୁଟିଲା ଢ଼ୁ—ଢା—ଢ଼ୁ । ତାଳ ଫଟକା । ବୁଲୀର ଦେହରେ ଖଣ୍ଡିଆ, ଘା । ମାଛି ଭଣଭଣ । ମଣିଷଗୁଡ଼ାକ ଏଡ଼ିକି ନିର୍ଦ୍ଦୟ । ପରର ଦୁଃଖ ଦୁର୍ଦ୍ଦଶା କଥା ବୁଝନ୍ତି ନାହିଁ । ଖେଳିବାକୁ ମନକର ନିଶ୍ଚୟ ପ୍ରାଣୀଙ୍କୁ ଦୁଃଖ କଷ୍ଟ ଦିଅନ୍ତି । ବୁଲା ଯେତେବେଳେ କାନ୍ଦେ ସେମାନେ ସେତେବେଳେ ହସି ହସି ଗଡ଼ୁଥାଆନ୍ତି । ଶ୍ରେଷ୍ଠ ଜୀବ କରି ଠାକୁରେ ମଣିଷକୁ ଜନ୍ମ ଦେଇଛନ୍ତି କଣ ଏଇଥି ପାଇଁ ? କାହା ଆଗରେ ବୁଲା ଗୁହାରି କରିବ ? ନିଜେ ଧର୍ମଦେବ ପରା କୁକୁର ହୋଇ ପାଣ୍ଡବଙ୍କୁ ସ୍ୱର୍ଗକୁ ବାଟ କଢ଼ାଉ- ଥିଲେ ? ମଣିଷ କଣ ସେ କଥା ଭୁଲିଲାଣି ?

ଭୁ—ଭୁ—ଭୁ ।

ବୁଲା ଉଠି ଠିଆ ହେଲା । କେଉଁଠୁ କିଏ ଡାକ । ଚାହିଁଲା । ପାଖ ଘରର ବାଡ଼ି କବାଟ ଖୋଲି ସ୍ତ୍ରୀ ଲୋକଟିଏ ଅଇଁଠା ପତର ପଦାକୁ ପକାଇଦେଲା । ବୁଲା ଛୁଟିଲା ସେଠିକି । ଦୁଇ ଗୋଟା ମୋଟେ ଖାଇଛି, କାହୁଁ ଦୁଇଟା ଅଣ୍ଡିରା କୁକୁର, କେଉଁଠୁ ବଳୁଆ, ଭାଉଁ ଭାଉଁ ହୋଇ ଧାଇଁ ଆସିଲେ ।

ବୁଲା ଲଙ୍ଗ ଡୁଜ କାକଲା; ଦାନ୍ତ ନକୁଟି ଅନୁନୟ କଲା—ଦ ଘଣ୍ଟା ହେଲା ଭୁଣ୍ଡରେ କଛୁ ବାଜ ନାହିଁ, ଆଜ ଗୁଣ୍ଡାଏ ଖାଏଁ, ମୋଟେ ଆଜ ଗେଫାଏ । ଶୀତଦନ ପୁଣି ଆସିବ, ତେମେ ପୁଣି ମୋ ପିଲାଙ୍କ ବାପ ହେବ । ଆଜ ଗେଫାଏ—

ଚ୍ୟାଉଁ—ଚ୍ୟାଉଁ—କୁଁ—କୁଁ କୁଉଁ—ଉଁ—

ଭୋଃ—ଟଭୋଃ—ଭୁଁ୍ୟା—ଭ୍ୟାଉଁ—

ବୁଲାର କାକୁତ ମିନତ ଶୁଣିଲେ ନାହିଁ । ବଳୁଆ କୁକୁର ଦଅଟା ତାକୁ ଝୁଣି ପକେଇଲେ । ଦେହଟା ହେଲା ଖଣ୍ଡିଆଖାବଡ଼ା । ରକ୍ତ ଝରଲା । ବୁଲା ଅଧାପ୍ରାଣ ହୋଇ ଗ୍ରେଟେଇ ଗ୍ରେଟେଇ ଆଗକୁ ଧାଇଁଲା, ପୋଖରୀ କୂଳକୁ । ଭାବଲା ସବୁଠୁ ମନ୍ଦ ଏ କୁକୁର ଜାତଟା । ବନା କାରଣରେ ହେଲେ ନଜ ଭିତରେ କାମୁଡ଼ା କାମୁଡ଼ି । କାହାର ଭଲ କେହି ଦେଖି ପାରନ୍ତି ନାହିଁ । ସେଇଥିପାଇଁ ଦୁନଆର ଅନ୍ୟମାନେ ବ ତାଙ୍କ ଉପରେ ଦାଉ ସାଧନ୍ତି ।

ଦେହ ଗୋଟାକ ପୋଡ଼ୁଛି । ମୁହଁ ବୁଲେଇ ନଜ ଦେହକୁ ନଜେ ଚାଟିଲା । ଆରାମ ଲାଗିଲା । ଗ୍ଭଇତଳେ ଗଛମୂଳେ ଟିକେ ଶୋଇବ । ଏଠି ଭୟ ନାହିଁ । କାନରେ ବାଜଲା ଚବର ଚବର ଶବ୍ଦ, ଭୁନ ଭୁନ କଥା । ଚାହିଁଲା ପୋଖରୀ ଭିତରକୁ । ବାପ୍‌ରେ, ଖଗ ତେଜ ମହଲଣ ପଡ଼ି ଆସୁଛି । ପୋଖରୀ ଭିତରେ ଅନେକ ଲୋକ । ଅଣ୍ଠାଏ ପାଣି । ପଦ୍ମବଣ, ଦଲ, ପଙ୍କ ଚକଟି ଜାଲ ଟଣା ହେଉଛି । କାହା ହାତରେ ପୋଲୁହ କାହା ହାତରେ ମୁଣ୍ଡଧୂମା । କଏ ପୁଣି ନଇଁ ପଡ଼ି ପଙ୍କ ଅଣ୍ଡାଳୁଛି । ଯାହା ହାତରେ ଯାହା ପଡ଼ିଲା ତାକୁ ରପି ଅଣ୍ଟିରେ ଭରୁଛି । ମଣିଷ ଗୁଡ଼ାକ ଭାର ସ୍ୱାର୍ଥପର, ଭାର ନଷ୍ଠୁର । ପାଣି ଭିତରେ ପଙ୍କତଳେ ରହିଲେ ବ ନସ୍ତାର ନାହିଁ ।

ଲୋକ ପଞ୍ଝାଏ ତାର ଆଡ଼କୁ ମାଡ଼ି ଆସୁଛନ୍ତି । କ ବଶ୍ୱାସ ଏ ମଣିଷ ଦ ଗୋଡ଼ିଆଙ୍କୁ ? ଆଗରେ କନ୍ଦସାହି । ସେମାନେ କୁକୁରଙ୍କର ମର୍ଯ୍ୟାଦା ବୁଝନ୍ତି । ସେଇ ଆଡ଼କୁ ଗଲା । ସାହି ମଝିରେ ଭଙ୍ଗା ଚାଳଘର ଭିତରେ କେତେ ଲୋକ ବସିଛନ୍ତି । ଉପରୁ ଓହଳଥିବା ଜନ୍ତୁଟି ଗୋଟାଏ ଛେଳ । ଦୁଇଜଣ ଲୋକ ହଡଆର ଧର ଚମ ଛଡ଼ଉଛନ୍ତି । ମୁଣ୍ଡଟା କଟା ହୋଇ ପାଖରେ ଥଆ ହୋଇଛି । ବାଃ, କେଡ଼େ ଭାଗ୍ୟ ! ଅବଶ୍ୟ ଅଳ୍ପ ହାଡ଼ ଟିକଏ ଚୋବାଇବାକୁ ମିଳବ ।

ମଣିଷଙ୍କ ଘରେ ହପାଜତରେ ରହି ପୋଷା ମାନଲେ ବ ଏହି ଦଶା । ତାଙ୍କର ସେନେହ ଜୀବନ ନଏ । ଯାହା ପଛେ ହେଉ ଆଜ ପାଟି ସୁଆଦ କରବାକୁ—

ବୁଲାର ଖୁସିପଣ ଉଭେଇଗଲା । ଦଶ କ ବାରଟା କୁକୁର ଉଠି ପଡ଼ଲେଣି । କନ୍ଦସାହି କୁକୁର । ବାଘ ସଙ୍ଗେ ଲଢ଼ିବା ଜୀବ । ହେଇ, କଟମଟ କର ଚାହିଁଲେଣି । ଦୁଇଟା ଦାନ୍ତ ଦେଖେଇ ଧାଇଁଲେଣି । ଆଜ ରକ୍ଷା ନାହିଁ ।

ଜୀବନ ନେଇଯିବେ । ବୁଲି ଲାଙ୍ଗୁଡ଼ ଜାକି ଧାଇଁଲା, ପଛେ ପଛେ ତାର ଧୂଳି ଉପରେ ପାଣିର ଧାର । ଆଗରେ ସହର ତଳି ଜଙ୍ଗଲ, ଘାଁ । ସେଇଠି ଭଲ । ଆପଦ ବିପଦ ନ ଥିବ । ଗୁଲଇତଳେ ନଟଗୋଲାରେ ଘଣ୍ଟାଟିଏ ହେଲେ ଶୋଇବ ।

କିନ୍ତୁ ଏ କଣ ? ଗୁରୁଣ୍ଡା ଲୋକ ହୁଙ୍କାପାଖ ମାଟିକୁ ତାଡ଼ୁଛନ୍ତି କାହିଁକି ? ଅଣ୍ଟାଏ ଗାଡ଼ କଲେଣି । ଧଳା ଧଳା ଉଇଟାଙ୍କୁ ଆଣି ଟୋକେଇରେ ରଖିଲେଣି । ହେଇ ସେ ଲୋକଟା କେଡ଼େ ବଡ଼ ପାହାଡ଼ିଆ ମୂଷାର ଅଣ୍ଟାରେ ପାହାରେ ଦେଲା । ରକ୍ତ ବୋହିଲାଣି । ହାତରେ ଧରିଲା । କି ଖୁସି, କି ଆନନ୍ଦ । ଅଦ୍ଭୁତ ଗୋଟାଏ । ଏଥର ଅଦ୍ଭୁତ ଆନନ୍ଦ । ପରିଶ୍ରମ ସାର୍ଥକ ହୋଇଛି । ମୂଷା ତରକାରୀ । ଉତରା ପୁଅର ପାଟିରୁ ଲାଳଗଡ଼େ । ପୁଣି କାହିଁକି ଖୋଳା ଲାଗୁଛି ? ଇସ୍ କେଡ଼େ ବଡ଼ ଚେମଣା ସାପ । ଉତରା ପିଲା ତାର ପିଠିରେ ଦେଲା ପାହାରେ । ଛଟପଟ । ଗୁରୁଣ୍ଡାଯାକ ମଣିଷ ଖୁସି ଆନନ୍ଦରେ ନାଚଲେ । ଭାଗ୍ୟରେ ଥିଲେ ଚେମଣା ମାଂସ ମିଳେ । ଏଡ଼େ ସୁଆଦ ।

ବୁଲି ଖାଲି ବୁଲୁ ବୁଲୁ କରି ଗୃହିଁଲା । ଅହା ମାଟି ଭିତରେ ଗାତ କରି ପଶିଲେ ବି ରକ୍ଷା ନାହିଁ । ମଣିଷ ଏଡ଼େ ନିଷ୍ଠୁର । ମାଟି ଖୋଳି ପ୍ରାଣ ନିଏ ?

ବୁଲି ଜଙ୍ଗଲ ଆଡ଼କୁ ଗଲା । ସେଠି କେହି ନ ଥିବେ ।

ଢ଼—ଢ଼—

କଣ ଫୁଟିଲା ? ପଲଟେ ଚଢ଼େଇ ଫଡ଼ ଫଡ଼ ହୋଇ ଉଡ଼ିଗଲେ ଆକାଶକୁ । ଅଦୃଶ୍ୟ ହୋଇଗଲେ । ଗୁରୁଣ୍ଡା ଚଢ଼େଇ ଡେଙ୍ଗା ଗଛରୁ ଖସି ପଡ଼ିଲେ ତଳେ, ବୁଲି ପାଖରେ । ବୁଲି କାବା ହୋଇ ଗୃହିଁଲା । ତା ଆଗରେ ପଡ଼ିଥିବା ଚଢ଼େଇଟିର ମୁଣ୍ଡରୁ ଝର ଝର ହୋଇ ରକ୍ତ ବୋହୁଛି ।

ଏମାନେ, ଯେଉଁମାନେ ଆକାଶରେ ଉଡ଼ନ୍ତି କାହାର କିଛି ଅନିଷ୍ଟ କରନ୍ତି ନାହିଁ କି କାହାର କିଛି ଧାରନ୍ତି ନାହିଁ, ସେମାନଙ୍କର ବି ମରଣ ଘଟାଏ କିଏ ? ବୁଦା ଖସ୍ ଖସ୍ କରି ଦୁଇଜଣ ଲୋକ ବାହାରି ଆସିଲେ । କାନ୍ଧରେ ନଳୀ । ଏଇ ମଣିଷ ସମସ୍ତଙ୍କର ଶତ୍ରୁ । ବୁଲି ଭାବିଥିଲା ମଲା ଚଢ଼େଇରୁ ଗୋଟାଏ ଝାମ୍ପି ନେଇ ପଳେଇବ । ମଣିଷଟା ତା ଆଡ଼କୁ ନଳୀ ଉଠେଇଲାଣି । ବାପାରେ, ଯଃ ପଳାୟତି ସଃ ଜୀବତି—

ବୁଲି ଖଣ୍ଡେ ଦୂରକୁ ଧାଇଁ ଯାଇ ବୁଦାଉହାଡ଼ରୁ ଗୃହିଁଲା । ଲୋକ ହଓଟି ମଲା ଚଢ଼େଇ ଗୋଟାଉଛନ୍ତି । ଟେକିଲା ନଳୀ କାନ୍ଧରେ ପଡ଼ିଛି । ବୁଲିକୁ ମାରିବାକୁ କେହି ଚେଷ୍ଟା କରୁ ନାହିଁ । ମଣିଷ ଜାତି ଭଲ । ଯାହାକୁ ଯେ ଖାଏ ତାକୁ ସେ ମାରେ । ମଣିଷ କୁକୁର ମାଂସ ଖାଏ ନାହିଁ । କେହି ଖାଆନ୍ତି ନାହିଁ । କୁକୁର ଜନମ ଭଲ । ମଣିଷ ସିନା ମାଡ଼ ଦିଏ ତାକୁ ହେଲେ

ଜୀବନରେ ତ ମାରେ ନାହିଁ । ଗ୍ରେଣ୍ଟା ଗୋଡ଼ଣ୍ଟା ତଳେ ଲାଗିଲାଣି । ଏଥର ସେ ମଣିଷ ବସ୍ତିକୁ ଯିବ, ଏଇ ଆଗ ମଶାଣି ବାଟେ । ଭୋକ ହେଲାଣି । କେଉଁଠି କାହାର ନଳାପାଖେ ଅଇଁଠା ସଙ୍ଗୁଡ଼ି ପଡ଼ିଥିବ । ଟିକିଏ ପାଟିରେ ମାରିଲେ କେଡ଼େ ସୁଆଦ ଲାଗିବ—ମାରୁ ପଛେ କିଏ ଠେକାଠାଏ କି ପାହାରେ ଠେଙ୍ଗା ।

ବୁଲା ଧକେଇ ଧକେଇ ଧାଇଁଲା । ଏ କଣ ! ମଶାଣି ପାଖରେ ଗୋଟାଏ ଗ୍ରେଣ୍ଟ ଗାଡ଼ି ରଖା ହୋଇଛି, ବଡ଼ ବାକ୍ସ ପରି । ଜାଲିଜାଲିକା ବାକ୍ସ ଭିତରୁ ଚାହିଁଛନ୍ତି କୁଜୁକୁଜୁ କରି ଚାରିଟା କୁକୁର । ଚାରିଟାଯାକଙ୍କୁ ସେ ଚିହ୍ନେ । ସେମାନଙ୍କଠାରୁ ସେ ସ୍ନେହ ଶରଧା ବ କେବେ କେମିତି ପାଇଛି, କାମୁଡ଼ା ବ ଖାଇଛି । କୁକୁର ଜନମ, ସୋଗ ବେଗ ଘଡ଼ିକ ଘଡ଼ି । ଦିଟା ଲୋକ ହାତରେ ଚଡ଼ା ଧରି ଠିଆ ହୋଇଛନ୍ତି । ସେମାନଙ୍କୁ ବି ସେ ଚିହ୍ନେ । ଇଉନିଅନ ମେହେନ୍ତର ।

ବୁଲା ଦୂରରୁ ଚାହିଁ ରହିଲା । ଜାଲି ବାକ୍ସର କବାଟ ଅଳ୍ପ ଖୋଲିଲା । ବଉଡ଼ା ଲଗାଇ ବେକରେ ଫାଶ ପକେଇ ଗୋଟାଏ କୁକୁରକୁ ଟାଣି ଆଣିଲା ମେହେନ୍ତର । କୁକୁରଟା ଛଟପଟ ହେଉଥାଏ, ପାଟି କରୁଥାଏ । ମୁଣ୍ଡ ଉପରେ ହେଲା ବଡ଼ ଠେଙ୍ଗାରେ ପାହାରେ । ପିଚ୍ ପିଚ୍ କରି ରକ୍ତ । ଶେଷ ।

ଆଉରି ଗୋଟାଏ । ସେମିତି—ଶେଷ—ଆଉରି ଗୋଟାଏ—

ବୁଲା ଦେଖିଲା । ତାର ମୁଣ୍ଡକୁ ରକତ ଉଠିଲା । ଦୁନିଆଁଟା ତା ଆଖି ଆଗରେ ବୁଲିବାକୁ ଲାଗିଲା । ସେ ଛୁଟିଲା । ସେ ପାଗଳ ହେଲା । ଖାଲି ବୁଲି ବୁଲି କାମୁଡ଼ିଲା ମଣିଷକୁ !

## ପ୍ରଞ୍ଜୁ

ସର୍‌ବୁ କହ ମୁକ୍ତି କହ ଶୁଣୀର ହାତ ଧରି ପଚାରିଲା—କହିବୁ ନାହିଁ ମୁକ୍ତି ? କେଡ଼େ ମଜା ହେବ । କାଲି ସକାଳେ ଯାଇ ସେ ଧାଙ୍ଗଡ଼ାଠୁ ପ୍ରଞ୍ଜୁ (ଜୋଉମାନା) ଅଦାୟ କରି ଆଣିବା । ଗାଁ ଲୋକେ ଭୋଜି ଖାଇବେ । ଖୁସି ହେବେ । ସେ ଲୋକଟା ଠିକ୍ଣା ପଡ଼ିବ । କହ ମୁକ୍ତି ।

ମୁକ୍ତି ମୁଣ୍ଡ ନୋଇଁଲା । କହିବ କି ନାହିଁ ସେଇ କଥା ଭାବିଲା ।

ବାଲିଗୁଡ଼ା ତାଲୁକାର ଅଗନାଗ୍ନି ବନସ୍ତ ଭିତରେ ଗହନ ବନର ତଳେ ଗ୍ରେଣ୍ଟ କନ୍ଧ ଗାଁଟି ସେରନାଗୁଡ଼ା । ଗାଁ ଚାରିପାଖେ ଦୂରେଇ କରି ଢେଉଢେଉକା ପାହାଡ଼ମାଳ । ପାହାଡ଼ ଉପରେ ନଘଞ୍ଜ ଜଙ୍ଗଲ । ପାହାଡ଼ ଗଡ଼ାଣିରୁ ଜଙ୍ଗଲ କାଟି

ଗାଁ ପାଖ ଯାଏ ବଲ କରହୋଇଛି । ସରବୁ କଙ୍କର ଘରଟି ଗାଁ ମଝିରେ, ଧାଙ୍ଗଡ଼ୀ ଘର ପାଖରୁ ଦଶ ହାତ ଗୁଡ଼ି । ଘରକୁ ଲାଗି ପଛପଟକୁ ବଡ଼ ବାଡ଼ି । ବାଡ଼ିରେ ସେ କେତେ ଜାତିକା ଫସଲ ଲଗେଇଛି; ମକା, କାକୁଡ଼ି, ଜହ୍ନି, କଖାରୁ । ବାଡ଼ି ପଛକୁ ଲମ୍ବି ଯାଇଛି ତାର ପଟିପଟିକା ଭୂମି । ପଦର ଭୂମି । କେଉଁ ପଟିରେ ସୁଆଁ ବୋଇଛି ତ କେଉଁ ପଟିରେ ମାଣ୍ଡିଆ । ତଳ ଦାଖଣ୍ଡି ଭୂମିରେ ବୋଇଛି ପଦର ଧାନ । ଷାଠିଏ ଦିନରେ ପାଚେ । ପଛ ପଟର ପାହାଡ଼ ଗଡ଼ାଣିରେ ଜହ୍ନା କ୍ଷେତ କରିଛି ଆଉ ପାହାଡ଼ ମଥାନରେ ପକେଇଛି କାନ୍ଦୁଲ । ପାହାଡ଼ ତଳେ ଗୋଟେ ଝରଣା । ଝରଣା ଉପର ଉଚ୍ଚ ଭୂଇଁରେ ଏବେ ଅଳସି ଲଗେଇଛି । ତା ପାଖର ବାଙ୍କୁଲ କ୍ଷେତରେ କେତେ ବୁଦା ପାଳୁଅ ଗଛ ।

ସର୍‌ବୁର ସମସ୍ତେ ଅଛନ୍ତି—ବାପ, ମା, ସାନ ଭାଇ, ସାନ ଭଉଣୀ । ବାପ ବୁଢ଼ା ହେଲାଣି, କାମକୁ ପାରୁନାହିଁ । ମଦ ମହୁଏ ପିଇ ଦେଇ ଅଚେତ ହୋଇ ଘରେ ପଡ଼ିଛି । ମା ବୁଢ଼ୀ ଶୋଇଛି ସେଇ ଘରେ । ସାନ ଭାଇ ସଇଭୁ କଙ୍କ ଗାଁ ଟୋକାଙ୍କ ସଙ୍ଗେ ଆର ଗାଁକୁ ଯାଇଛି ଧାଙ୍ଗଡ଼ୀ ନଚେଇ । ସରନ୍‌ଗୁଡ଼ାକୁ ଉକା-ବାଡ଼ ବାଟ ଅଧ ମାଇଲ । ସେ ଗାଁର ଝିଅମାନଙ୍କ ସଙ୍ଗେ ଏ ଗାଁର ପୁଅମାନେ ନାଚିବେ, ଗୀତ ବୋଲିବେ, ଆଜି ରାତି ପାଇବ । ସଇଭୁ ବି ଯୁଆନ ହେଲାଣି । ତାର ଗୋଟାଏ ଧାଙ୍ଗଡ଼ୀ ଲୋଡ଼ା ।

ସର୍‌ବୁର ସାନ ଭଉଣୀ ପାର୍‌ବତୀ, ସେ ବି ହେଲାଣି ବଡ଼ । ବର୍ଷେ ହେଲା ଘର ଗୁଡ଼ି ଧାଙ୍ଗଡ଼ୀ ଘରେ ରାତିରେ ଶୋଉଲାଣି । କେତେଥର ପର ଗାଁର ଟୋକାଙ୍କ ସଙ୍ଗେ ନାଚିଲାଣି । ବର ଠିକଣା କହୁନାହିଁ । ତା ମନ ଯେଉଁଠି ଯାହାକୁ ହେବ ସେ ବଳେ କହିବ । ଧାଙ୍ଗଡ଼ା ଯଦି ରାଜି ହେବ ଆଉ ଗଣ୍ଡି ଧନ (ଯୌତୁକ ଟଙ୍କା ଇତ୍ୟାଦି) ଦେବାକୁ ମାଗିବ ପାର୍‌ବତୀର ବାହାଘର ହେବ ।

ସରବୁ କାହାରି କଥା ଭାବୁ ନାହିଁ । ପଦର ଦିନ ହେଲା ତାର ବାହାଘର ସରିଛି । ମୁଲ୍ଲିକୁ ଧାଙ୍ଗଡ଼ୀ କରି ସେ ଉକାବାଡ଼ରୁ ଆଣିଛି । ମୁଲ୍ଲି ସତର ବର୍ଷର ଯୁବତୀ ଟୋକୀ । କଳା ମିଟମିଟ ପୃଷ୍ଟଲା ପୃଷ୍ଟଲା ଦେହ । ଗୋଲ ମୁହଁରେ ଚଟା-କୁଟା ହୋଇଚ । ସର୍‌ବୁ ଆଖିକି ଦିଶୁଛି କେଡ଼େ ଶୋଭାକାର । କେତେ ଝିଅ ତ ତାର ସ୍ତ୍ରୀ ହେବାକୁ ଆଶା ବାନ୍ଧିଥିଲେ । ସେ ଏଇ ମୁଲ୍ଲିକୁ ପସନ୍ଦ କଲା । ମୁଲ୍ଲି ଟାଣୁଆଁ । ଧେଡ଼ଙ୍ଗ ନୁହେଁ । କାମିକା ।

ସରବୁ କୋଡ଼ିଏ ବର୍ଷର ଯୁଆନ୍ । କଳା । ବଳିଷ୍ଠ ବଳିଷ୍ଠ ହାତ ଗୋଡ଼ । ମୁଲ୍ଲି ବି ତାକୁ ବାଛିଲା ଶେଷକୁ । କେତେ ଗାଁର କେତେ ଟୋକା ତ ତାକୁ ନଚେଇଛନ୍ତି, ତା ହାତଧରି ଟାଣିଛନ୍ତି । ହେଲେ ସର୍‌ବୁ ପରି କେହି ତା ଆଖିକୁ ଦିଶିଲେ ନାହିଁ । ପଦର ଦିନ ହେଲା ସର୍‌ବୁ ଘରକୁ ସେ ଆସିଛି । ସର୍‌ବୁ ତାକୁ ଭଲ ପାଏ । ଆସିଲା ଦିନୁ ପଚାରୁଛି, କିହ ମୁଲ୍ଲି ?

କେମିତି ସେ କହିବ ? ଯେଉଁମାନଙ୍କ ସାଙ୍ଗେ ସେ ନାଚଥିଲା, ଯେଉଁମାନେ ରାତି ଅଧରେ ଜହ୍ନ-ଆଲୁଅରେ ତାର ହାତ ଧରି ବଣ ଭିତରକୁ ନଗୋଲା ଥାନକୁ ନେଇଥିଲେ ସେମାନେ ବି ତ ତାକୁ ବାଧା ଦେବାକୁ ପ୍ରସ୍ତୁତ ଥିଲେ । ସେମାନଙ୍କର କି ଦୋଷ ! କାହିଁକି ସେମାନଙ୍କର ନାମ ସର୍‌ବୁ ଆଗରେ କହିବ ? ସେମାନଙ୍କ-ଠାରୁ ପଞ୍ଝି ଅଦାୟ କରେଇବ ? ନ କହିଲେ ତ ସର୍‌ବୁ ଛାଡ଼ିବ ନାହିଁ । ସେ ଜଗିର ଧରିଛି ।

ଭାବିଲା କହିଦେବ କି ମିଛରେ, ତୋରି ଛଡ଼ା କାହାରି ସାଥିରେ ରାତି ଅଧରେ ଉଡ଼ୁଆଳକୁ ଯାଇ ନାହିଁ । ଦେହ ତାର ଥରି ଉଠିଲା । ମିଛ କହିବ କେମିତି ?

ଏମିତି ଜହ୍ନ ରାତିରେ, ଗୁନ୍ଦ ମଥା ଉପରୁ ତଳକୁ ଖସି ଯାଉଥାଏ । ବାଦଲଗୁଡ଼ା ପାହାଡ଼ ମଥା ଉପରେ ରୂପେଲି-ଗୁନ୍ଦୁଆ ଝଣା ହେଉଥାଏ । ରାତି ଏମିତି ଗର୍ଜ୍ଜୁଥାଏ । କାଡଙ୍ଗା ଗାଁର ବାଦ୍‌ଲା କନ୍ଧ ! ନାଚ ଶେଷରେ ଯେତେ-ବେଳେ ସମସ୍ତେ ହାଲିଆ ହୋଇ ପଡ଼ୁଥାନ୍ତି ସେ ତାର ହାତ ଧରି ପଥର ପାଖ ମହୁଲ ଗଛ ତଳକୁ ନେଲା । ବାଘ କେଜାଣି କେତେ ଦୂରରୁ ରଡ଼ି ଛାଡ଼ୁଥାଏ । ଜହ୍ନ ଦେଖିଛି । ବାଦଲ ଦେଖିଛି । ପାହାଡ଼ ଗଛ ପଥର ସମସ୍ତେ ଦେଖିଛନ୍ତି । ବାଦ୍‌ଲା କହିଲା ତା କାନ ପାଖରେ, ଅରେ ମୁଲ୍ଲି, ତତେ ମୁଁ ଧାଙ୍ଗଡ଼ୀ କରି ନେବି । ଗଣ୍ଡି ଧନ (ଝୋଲା) ଦେବି । ସେ ତ ବିଶ୍ୱାସ କରିଥିଲା, ମଙ୍ଗିଥିଲା । ତାର ବାପ ମଙ୍ଗିଲା ନାହିଁ ସିନା ! ନୋହିଲେ ସେ ବାଦ୍‌ଲାର ଧାଙ୍ଗଡ଼ୀ ହୋଇ ଯାଇଥାନ୍ତା ।

ସର୍‌ବୁ ମୁଲ୍ଲିର ହାତ ଧରି ହଲେଇ ଦେଲା । ସେନେହ ପଚାରିଲା, କହ ମୁଲ୍ଲି ! ତୁନ ରହିଲୁ କାହିଁକି ?

ମୁଲ୍ଲି କହିଲା ବାଦ୍‌ଲା କନ୍ଧ ।

କଉଙ୍ଗା ଗାଆଁର ?

ମୁଲ୍ଲି ମୁଣ୍ଡ ଠୁଙ୍ଗାଇ ହଁ ଭରିଲା ।

ଆଉ କିଏ ମୁଲ୍ଲି ?

ମୁଲ୍ଲି ପୁଣି ଭାବିଲା, ଅନ୍ଧାର ରାତିରେ, ନାଚ ଗୀତ ଯେତେବେଳେ ସରିଲା, ଚଇତ ମାସ ତ, ପାହାଡ଼ରେ ନଆଁ ଲାଗି ହାଲୋଲ ଦିଶୁଥାଏ । ସାଇକା ଗାଁର ଧାଙ୍ଗଡ଼ାମାନେ କାଠ ଜାଳି ନଆଁ କରେଇ ସେଇ ଆଲୁଅରେ ଇକାବାଡ଼ର ଧାଙ୍ଗଡ଼ୀମାନଙ୍କୁ ନଚଉ ଥିଲେ । ରାତି ଅଧ । ଅନ୍ଧାର । ମଦ ଖାଇ ସମସ୍ତେ ଝଲମଲ । ଆଖିରେ ନିଦ । ଦେହ ଅବଶ ଲାଗୁଛି । କ୍ଳାନ୍ତ ହୋଇ ସମସ୍ତେ ପଡ଼ିଗଲେ ଆଖପାଖର ଗଛ ମୂଳେ ।

ସକାଳ ହେଲା । ମୁଲ୍ଲିର ନିଦ ଭାଙ୍ଗିଲା । ସେ ଆଖି ଖୋଲି ଦେଖିଲା ତା ପାଖରେ ବିରକା କନ୍ଧ । ହାତଟା ତାର ଦେହ ଉପରୁ ଖସେଇ ଦେଇ ରାଗ

ତମତମ ହୋଇ ବରଜାର ଶୋଇଲା ମୁହଁକୁ ଗୃହିଁଲା କଟମଟ କରୁ । ବରଜା, ସେତ ଧାଙ୍ଗଡ଼ା ନୁହେଁ ? କେତେଦିନ ହେଲା ସେ ହୁକ୍କାବାଡ଼ରୁ ଧାଙ୍ଗଡ଼ୀ ନେଇ ଘର କରୁଛି । ଧାଙ୍ଗଡ଼ୀଙ୍କ ସଙ୍ଗେ କେଉଁ ସାହସରେ ସେ ଅସିଥିଲା ଧାଙ୍ଗଡ଼ୀ ନଚେଇ ? କେଡ଼େ ଅନ୍ୟାୟ୍ୟ ଅନୀଛ କଥା ! ଲୋକେ ଜାଣିଲେ କଣ କହିବେ ? ସମସ୍ତେ ତାକୁ ଛି ଛି କରିବେ ।

ବରଜାକୁ ହଲେଇ ଉଠେଇଲା ମୁକ୍ଲି । ବରଜା ଉଠି ଠିଆ ହେଲା । ମୁକ୍ଲିର ଗଗ-ତରଟା ବଡ଼ ବଡ଼ ଅଖିକୁ ଅନେଇଁ କହିଲା, ନେବ ଲୋ ତତେ ଅଜ୍ ଗୋଟେ ଧାଙ୍ଗଡ଼ୀ କରୁ । ଛଅଟା ଧାଙ୍ଗଡ଼ୀ ପୋଷିବାକୁ ମୋର ଭୂମି-ବାଡ଼ି ଅଛି । ମୋର ଏ ଧାଙ୍ଗଡ଼ୀଟା ଭଲ ନୁହେଁ । କାମକୁ ପାରୁନାହିଁ । ମଦ ପାଣି ପିଇ ଖାଲି ଶୋଉଛି । ହବୁ ନା ମୁକ୍ଲି ମୋର ଦୁଟାଅ ଧାଙ୍ଗଡ଼ୀ ?

ମୁକ୍ଲି ରକ୍ତ-ଗୃଉଲ ଗୈବେଇଲା । ଗଟରେ ତାର ସର୍ବାଙ୍ଗ ଥରୁ ଉଠିଲା । କନ୍ଧଘର ଝିଅ ସେ । ଲାଜ ସରମ ଜାଣେ ନାହିଁ । ଦେହ ତାଙ୍କର ନଙ୍ଗଳା, ଉନ୍ମୁକ୍ତ ଯୌବନା । ଅଣ୍ଟା ତଳକୁ ବେଢ଼ା ହୋଇଛି ଖଣ୍ଡେ ଛନହାଛଅ ମୋଟା ଉମ୍ବ-ବୁଣା କବଟା । ଭାବିଲା ବଡ଼ ପାଟିକରି ଡାକିବ । ସମସ୍ତଙ୍କୁ ଉଠେଇବ, ଏ କୁକୁରଟାକୁ ଧରେଇ ଦବ । ତାର କଣ ଥାଏ ? ସେ ତ ଧାଙ୍ଗଡ଼ୀ । କେହି ତାର ଦୋଷ ଦେବେ ନାହିଁ । ବରଜାର ହେବ ସବୁ ଦୋଷ । ଜାଛରୁ ତାକୁ ଅଟକ କରିବେ । ହୋଳଭାତ ନେବେ ।

ବରଜା କହିଲା ତୁ ଗଗ ନା ମୁକ୍ଲି । ମୋର ଧାଙ୍ଗଡ଼ୀଟାକୁ ମୁଁ ତଡ଼ି ଦେବି, ଅଜ୍ ତତେ ନେବ ଘରକୁ ।

ବରଜା ପଳେଇଲା । ମୁକ୍ଲି କାହାକୁ କିଛି କହିଲା ନାହିଁ । ବରଜାକୁ ସେ ଅଜ୍ କେବେ ଦେଖି ନାହିଁ । ଠକ ଦେଇ ସେ ପଳେଇଲା । କହିବ କ ତାର ନାମଟା ? ମରୁ ସେ ଠକ । ପ୍ରଞ୍ଜୁ ଦେଇ ହଇରାଣ ହଉ । ଖରାପ ଲୋକଟା । ଛଅ ଜଣକୁ ପ୍ରଞ୍ଜୁ ସେ ଦେଲାଣି । ଅଦ୍ଭୁର ଦେଉ । ଜମି ବିକୁ । ପୁଡ଼ି ବିକୁ ।

ସର୍ବୁ ପୁଣି ପଗୃରିଲା କହିବୁ ନାହିଁ ?

ମୁକ୍ଲି ଗୁନ ଗୁନ କହିଲା ବରଜା ।

ଏଁ, ପୁଣି ସେଇ ବରଜା ?

ମୁକ୍ଲି ଉତ୍ତର ଦେବାକୁ ସରବୁ ପାଖରେ ରହିଲା ନାହିଁ । ଛୁଟି ପଳେଇଲା ଘର ଭିତରକୁ ।

ବାଲିଗୁଡ଼ା ମାଲ ଭିତରର କନ୍ଧ-ଲଳନା । ସେ କ ଜାଣେ ବାହାର ଦୁନିଆଁର ସଭ୍ୟତାର କଥା ! ତାର ସଭ୍ୟତା, ଭଲମନ୍ଦ ଜ୍ଞାନ ସ୍ୱତନ୍ତ୍ର । ହୁଏତ ମଣିଷ ଜାଛର ସୃଷ୍ଟି କାଳରୁ ସେ ସେମିଛ ଗଢ଼ା ଅସୁଛି । ସଭ୍ୟତା ଯେ ଅଭରଣରେ ଥାଏ ଏ କଥା ସେ ମୋଟେ ଜାଣେ ନାହିଁ । ମଣିଷ ଦେହର ସବୁ ଅଙ୍ଗ ସମାନ

ଦରକାରୀ । ଯିଏ ଯାହାର କର୍ମ କରନ୍ତୁ । ଗୋଟିଏ ଅଙ୍ଗରେ ଲଜ୍ଜା ଥାଏ ଅଥଚ ଅନ୍ୟ ଅଙ୍ଗରେ ନ ଥାଏ, ଏପରି ଧାରଣା ତାର କେବେ ହୋଇନାହିଁ ।

ଲାଜ ପଦାର୍ଥଟା କଣ ସେ ବୁଝେ ନାହିଁ । ଆଧୁନିକ ସଭ୍ୟତାର ଆଲୋକ ଯେତିକି ପଶୁଛି ତା ମନରେ, ସେ ଅନୁଭବ କରୁଛି ତାର ପରାଧୀନତା ପୁଣି ଅଭାବ । ଭଦ୍ର-ସମାଜର ଆବୃତଦେହ ଭଦ୍ରଲୋକଙ୍କୁ ଡରି ସେ ଗୁଡ଼ରେ ପକାଏ କେବକାଲର ସାଇତା ଲୁଗାରୁ ଖଣ୍ଡେ । ଲାଜ ଦୂର କରିବାକୁ ନୁହେଁ ତ, ସଭ୍ୟ-ସମାଜର ଚଳନ୍ତି ପ୍ରତିମାକୁ ଡରିହରି । ଭଦ୍ରଲୋକ ଚାଲିଗଲେ ଅନାବଶ୍ୟକ ବସନ ଖଣ୍ଡି ରଖିଦିଏ । ଆଗରେ ବାପ, ଭାଇ, ସ୍ୱାମୀ, ଗ୍ରାମଲୋକ । ଲାଜର ଧାରଣା ତା ମନରେ ଜନ୍ମି ନାହିଁ । ସମସ୍ତଙ୍କୁ ସେ ବଲବଲ କରି ଅନାଏଁ । ସମସ୍ତେ ତାକୁ ଉଦ୍ଦେଶ୍ୟହୀନ ଆଖିରେ ଚାହାନ୍ତି, ଆଖି ଫେରାନ୍ତି । ଅଭ୍ୟସ୍ତ ଆଖି । ନିତିଦିନିଆଁ ଆଖି । ସରଳ, ନିରୀହ, ନିଷ୍କପଟ, ଉଜ୍ଜ୍ୱଳ ଆଖି ।

ସଭ୍ୟ ଦୁନିଆଁ ! ବସନ-ବନ୍ଧନେ ଅସଭ୍ୟ ସେ କନ୍ଧ-ଲଳନା ! ଆଦିମ-କାଳର ପ୍ରଥା ତାର ଅଛି । ଯେଉଁ ଗ୍ରାମରେ ତାର ଜନ୍ମ, ସେ ଗାଁର ସମସ୍ତେ ତାର ନିଜର ଲୋକ, କୁଟୁମ୍ବର ଲୋକ । ବାପ, ଦାଦି, ଭାଇ, ସମସ୍ତେ । ସେ ଗାଁରେ କେହି ତାକୁ ବିବାହ କରିପାରିବେ ନାହିଁ । ତେଣୁ ଲାଳସାଭରା ଆଖିରେ କେହି ତାର ହାତ ଧରି ପାରିବେ ନାହିଁ । ପବିତ୍ର ସମ୍ବନ୍ଧ । ସେଠି ଅନାଚାର ନାହିଁ । ତଥାପି ବୟସ ହେଲେ କନ୍ଧ ଝିଅ ଧାଙ୍ଗଡ଼ୀ ଘରେ ଶୁଏ । ସବୁ ଧାଙ୍ଗଡ଼ୀ ଏକାଠି ଶୁଅନ୍ତି । ଗାଁର ବୁଢ଼ୀଲୋକେ ପାଖରେ ଶୁଅନ୍ତି ।

କନ୍ଧ ଝିଅର ଚରିତ୍ର ସ୍ୱଚ୍ଛ । ଅସଭ୍ୟ ସେ ? ସ୍ୱାମୀ ଆଗରେ ଗତ ଜୀବନର ଘଟଣା ସେ ଗୋପନ ରଖେ ନାହିଁ, ହୁଏତ ଟିକିଏ ସଙ୍କୋଚ ଆସେ । ନିଜ ପାଇଁ ନୁହେଁ, ଲାଜ ପାଇଁ ନୁହେଁ, ଗତ-ଜୀବନର ବ୍ୟର୍ଥ-ଆଶାର ସ୍ମୃତି ପାଇଁ । କାରଣ ସେ ଯାହା କରେ, କରେ ବିବାହ ଆଶାରେ । ସ୍ୱାମୀ ଆଗରେ ସ୍ୱୀକାର କଲେ ଦୁନିଆଁର ଲୋକେ ଜାଣିବେ । କେହି ମୁକ୍ତିକୁ ଛିଗୁଲିକରା କରିବେ ନାହିଁ । ମୁକ୍ତି ନାମରେ ଦାଣ୍ଡ-ହାଟ-ଘାଟରେ ଅପବାଦର ନାଗରା ବାଜିବ ନାହିଁ । ଶାଶୁ, ନଣନ୍ଦ, ଜା, ମା, ଖୁଡ଼ୀଭାଇ, ଭଉଣୀ କେହି ତାକୁ ଘୃଣା ଚକ୍ଷୁରେ ଚାହିଁବେ ନାହିଁ । ମୁକ୍ତି ଚିରଦିନ ମୁକ୍ତି ।

ସ୍ଖଳନ ପାଇଁ ଜାତି ଅଟକ ହେବ ନାହିଁ ମୁକ୍ତି । ଚରିତ୍ରର ସ୍ଖଳନ ତ ନୁହେଁ ବାଦଲା କନ୍ଧ ସଙ୍ଗେ ପ୍ରଣୟ । ବିବାହ ବନ୍ଧନର ପୂର୍ବ-ରାଗ । କନ୍ଧଲଳନା ପତିତା ହୁଏ ନା । ପରପୁରୁଷ ସଙ୍ଗେ ପ୍ରେମ କଲେ କନ୍ଧଝିଅର ଦୋଷ ଧରା ହୁଏନା । ଦୋଷ ପୁରୁଷର । ପୁରୁଷ ସବୁବେଳେ ଦୋଷୀ । ମୁକ୍ତିର ସତୀତ୍ୱ—ବିବାହ ପରେ ଯେତେଦିନ ଯାଏ ସେ ସର୍ବୁକନ୍ଧର ପତ୍ନୀ ହୋଇ ରହିଥିବ, ସେ ଥିବ ସ୍ୱାମୀର ଅନୁରକ୍ତା । ପରପୁରୁଷ ସଙ୍ଗେ ମିଶିବ ନାହିଁ ।

ଯଦି ପୁଣି ସେ ମିଶେ ? ପୁଣି ଯଦି ବାହାର କନ୍ଧ କ ବିବାହିତ ବିରଜା କନ୍ଧ ସଙ୍ଗେ ସେ ଗୋପନରେ ପ୍ରଣୟ କରେ ? ହଁ, ସର୍‌ବୁ କନ୍ଧର ଧାଙ୍ଗଡ଼ୀ ସେ । ସର୍‌ବୁ ପ୍ରତି ତାର ଅନୁରକ୍ତ ନିଶ୍ଚୟ ଭାଙ୍ଗିଲା । ଗୋପନ ପ୍ରଣୟ କଥା ଫୁଟି ବାହାରିବ ପଦାକୁ । ସେ ନିନ୍ଦା ପାଇବ । କିନ୍ତୁ ତଥାପି ସେ ଘୃଣ୍ୟା ହେବ ନାହିଁ । ସବୁଥିପାଇଁ ତାର ପ୍ରଣୟୀ ଦାୟୀ । କନ୍ଧ ସମାଜ ଆଗରେ ଦୋଷୀ ହୋଇ ସେ ଠିଆ ହେବ । ଜାତିଆଣ ପାଇଁ, ମାନ ପାଇଁ ସେ ଦେବ ଜୋରିମାନା—ପ୍ରଞ୍ଜୁ । ସମାଜ ତାକୁ କ୍ଷମା କରିବ, ଘଟଣାଟା ହୁଏ ତ ମନରୁ ପାଶୋର ଯିବ ।

ମୁକ୍ଳି ପୁଣି ସୁଖରେ ବଢ଼ିବ ସଂସାର । ଅତୀତ କଥାକୁ କେହି କେବେ ଖୋଳି ତାଡ଼ି ପଚାରିବେ ନାହିଁ । ଅତୀତ ଅତୀତରେ ହିଁ ଛପିଯିବ । କାରଣ ମୁକ୍ଳିର ସ୍ୱାଧୀନତା ଅଛି । ତିନିଟା କି ପାଞ୍ଚଟା ପିଲାର ଜନନୀ ହେଲା ପରେ ମଧ୍ୟ କନ୍ଧ-ଲଳନା ଅନ୍ୟ ପତି ବରଣ କରିପାରେ । ନୂଆଟୋକରସ୍ତ କେବଳ ପୁରୁଣା-ସ୍ୱାମୀକୁ ଗଣ୍ଡିଧନ ( ଯୌତୁକ ଟଙ୍କା) ଫେରସ୍ତ ଦେବ । ବେଶ୍, ସେତିକିରେ ସମ୍ବନ୍ଧ ଛିଣ୍ଡିଗଲା । ପିଲା ପିଲଙ୍କ ପାଇଁ ମୁକ୍ଳି-ଜାତିର ଦାୟିତ୍ୱ ନାହିଁ । ପିଲା ଦିନା ପେଟରେ ସେ ଧରିଥିଲା, ପୁଣି ସଂସାରକୁ ଆଣିଥିଲା, କିନ୍ତୁ ପିଲାର ସୃଷ୍ଟିକର୍ତ୍ତା ତାର ଅଧିକାରୀ କେବଳ ତାର ବାପ !

କନ୍ଧଲଳନା ମୁକ୍ତ, ଅବିକଳ ତାର ଆଭରଣହୀନ ଅଙ୍ଗ ପରି । ପୁଣି ସେ ସ୍ୱାଧୀନ ଠିକ୍ ତାର ଗତି ପରି !

ସର୍‌ବୁର ଘରଣୀ ହେଲେ ବି ମୁକ୍ଳି ମୁକ୍ତ ସ୍ୱାଧୀନ । ସେଇଥିପାଇଁ ସେ ମୁକ୍ତ-କଣ୍ଠରେ ନିର୍ଭୟରେ ସ୍ୱାମୀ ଆଗରେ ପ୍ରକାଶ କଲା ତାର ଅତୀତ କଥା, ଦୁଃଖରେ ନୁହେଁ କି ଆନନ୍ଦରେ ନୁହେଁ—ସାଧାରଣ ଗୋଟିଏ ପ୍ରଶ୍ନର ଉତ୍ତର ପରି । ଆଜ୍ ସର୍‌ବୁ କେଡ଼େ ଖୁସିରେ ମୁକ୍ଳିର ପଛେ ପଛେ ଧାଇଁ ଆସିଲା ଘର ଭିତରକୁ । ମୁକ୍ଳିକୁ ଆଦର କଲା ସେ, ମୁକ୍ଳି ତାର ଧାଙ୍ଗଡ଼ୀ, ଭଲ ଧାଙ୍ଗଡ଼ୀ । ଶେଷକୁ କହିଲା ତ ଦୁଇଟା ନାମ ! ଦୁଇଟା ପ୍ରଞ୍ଜୁ ଆଦାୟ ହେବ । ଭାରି ପାହୁ ତ ! ଦୁଇଟା ପ୍ରଞ୍ଜୁ । ଦୁଇଟା ପ୍ରଞ୍ଜୁ । ମୁକ୍ଳି ତାର ଭଲ ଧାଙ୍ଗଡ଼ୀ ।

ଆରଦିନ ସକାଳେ—ସର୍‌ବୁ ସମ୍ବାଦଟା ଜଣାଇ ଦେଲା ତାର ଗ୍ରାମ ଲୋକଙ୍କୁ । ପଞ୍ଚାଏତ ବସିଲା । ଗାଁ ଲୋକେ ବୁଝିଲେ ସର୍‌ବୁ ଗୋଟାଏ ପ୍ରଞ୍ଜୁ ଆଦାୟ କରିବ । ପ୍ରଞ୍ଜୁ ଉପରେ ସର୍‌ବୁର କି ଅଧିକାର ? ଆଦାୟ କରିବ ସେ, ଗ୍ରାମ ଲୋକେ ଭୋଜି କରି ଖାଇବେ । ଗାଁ ବୋହୁ ମୁକ୍ଳିର ମାନ ପାଇଁ କିରଙ୍ଗା ଗାଁର ବାଦଲା କନ୍ଧ ପ୍ରଞ୍ଜୁ ଦେବ । ଭୋଜି କରି ଖାଇଦେଲେ, ଗାଁ ଲୋକଙ୍କ ପେଟରେ ମାଂସ ଓ ମଦ ପଶିଲେ ମୁକ୍ଳିର ମାନ ଫେରି ଆସିବ ।

ଉଠିଲେ ଗାଁ ଲୋକେ । ସର୍‌ବୁ ବି ଉଠିଲା । ପ୍ରଥାନୁସାରେ କାନ୍ଧରେ ପକାଇଲା ଟାଙ୍ଗିଆ । ଆଗେ ଆଗେ ଚାଲିଲା ସର୍‌ବୁ । ପଛେ ପଛେ କେତେଜଣ

ଗ୍ରାମବାସୀ । ସୂର୍ଯ୍ୟ ଉଠିଲେଣି ପାହାଡ଼ ଉପରକୁ । ସର୍‌ବୁ ଓ ତାର ଗ୍ରାମ ଲୋକେ କଋଙ୍ଗା ଗାଁରେ ପହଞ୍ଚିଲେ । କଋଙ୍ଗାର ଲୋକେ ପର ଗାଁର ଲୋକଙ୍କୁ ଦେଖି କଥାଟା କଣ ଅନୁମାନ କରି ନେଲେଣି । କିନ୍ତୁ କିଏ ସେ କୁକୁର ? ପର ଝିଅ ସଙ୍ଗେ ପ୍ରଣୟ କରି ଗ୍ରୁଡ଼ ଦେଇ ଆସିଲା ? ଧାଙ୍ଗଡ଼ୀ କରି ଘରକୁ ଆଣିଲା ନାହିଁ ? ଏଇ ଗୋଟିଏ ପ୍ରଶ୍ନ ସଭିଙ୍କ ମନରେ ଜାଗିଲା ।

ସର୍‌ବୁ ଗ୍ରଲିଲା ଗାଁ ଦାଣ୍ଡରେ । ପଛରେ ତାର ଗାଁ ଲୋକେ । କଋଙ୍ଗା ଗ୍ରାମର ସ୍ତ୍ରୀ ପୁରୁଷ ଘରୁ ବାହାରି ଘର ଅଗଟରେ ଠିଆ ହୋଇ ଦେଖୁଛନ୍ତି—କାହା ଘର ଅଗରେ ସର୍‌ବୁ ଠିଆ ହେବ ଓ ପ୍ରଞ୍ଜୁ ମାଗିବ । ସମସ୍ତେ କୁତୂହଳୀ । ସର୍‌ବୁ ଠିଆ ହେଲା ବାଦଲା କିନ୍ତ ଘର ଅଗରେ । ବାଦଲା ଅଜି ତାର ବାପ ମା ଘର ଅଗରେ ଦାଣ୍ଡରେ ଠିଆ ହୋଇଥାନ୍ତି । ସର୍‌ବୁ ଠାଙ୍ଗିଅ ଟେକିଲା ମୁଣ୍ଡ ଉପରକୁ, ବାଦଲାର ଦାଣ୍ଡ ଖୁଣ୍ଟରେ ଗୋଟେ ହାଣିଲା । ପୁଣି ଠାଙ୍ଗିଅ ଟେକିଲା, ତାର ପିଣ୍ଡା ଉପରେ ହାଣିଲା ଅଉରି ଗୋଟେ । ଠାଙ୍ଗିଅ ଉଠେଇ କାନ୍ଧରେ ଥୋଇଲା । ଭୂଣ୍ଡ ଖୋଲିବା ଦରକାର ନାହିଁ ।

ଗାଁ ଲୋକେ ବାଦ୍‌ଲା କିନ୍ତ ଘର ଆଗରେ ଠିଆ ହେଲେ । ସମସ୍ତେ ବୁଝିଲେ ବାଦ୍‌ଲାଟା କୁକୁର ହୋଇଛି । କିନ୍ତୁ ବାଦ୍‌ଲା ତ ଭଲ ପିଲା । ଅଜଯାଏ ବାହା ହୋଇ ନାହିଁ । ତେବେ ଯାହା ସଙ୍ଗେ ପ୍ରଣୟ କଲା ତାକୁ ସ୍ତ୍ରୀ କରି ଘରକୁ ନ ଅଣିଲା କାହିଁକି ? ବାଦଲାର ବାପ ମା ତା ମୁହଁକୁ ବିରକ୍ତିଆ ଆଖିରେ ଗ୍ରହିଁଲେ ।

ସରବୁ କହିଲା ବାଦଲାକୁ । ଅରେ ହେ, ଦେ ମୋର ମାନ, ଦେ ମୋର ପ୍ରଞ୍ଜୁ । ନୋହିଲେ—

ବାଦଲା ପଚ୍ଚାରିଲା, କିଏ ତୋର ଧାଙ୍ଗଡ଼ୀରେ ?

ମୁଲ୍ଲି—

ବାଦଲାର ବାପ ଚମକି ଉଠିଲା, ତାର ମା ବି । ବାଦଲାର କି ଦୋଷ ? ମୁଲ୍ଲି କୁ ବାହା ହେବାକୁ ସେ ତ କହିଥିଲା । ଗଣ୍ଡିସୁନା ମାଗିଥିଲା । ବାପ ମନା କଲାରୁ ସମ୍ବନ୍ଧ ଭାଙ୍ଗିଲା । ବାଦଲାକୁ ସେ କରିଛି କୁକୁର । ବାଦଲା ଭଲ ପିଲା । ସେ କାହିଁକି ପର ଝିଅକୁ ଠକନ୍ତା, କାହିଁକି ସେ ପର ଝିଅର ମାନ ସଙ୍ଗେ ବିନା କାରଣରେ ଖେଳନ୍ତା ? ପୁଅର ମନ ଯେଉଁଠି ପାଇଥିଲା ସେଇଠି ବାହା କରିବା ପ୍ରଥା । ବୁଢ଼ୀର ଶିକ୍ଷାରେ ପଡ଼ି ସେ ନିୟମ ଭାଙ୍ଗିଲା । ମୁଲ୍ଲିର ମାନ—ପ୍ରଞ୍ଜୁ ଦେବାକୁ ସେ ବାଧ୍ୟ ।

ବାଦ୍‌ଲା କହିଲା ବାପକୁ, ଦେ ବାପ ପ୍ରଞ୍ଜୁ—ସର୍‌ବୁର ମାନ ।

ସର୍‌ବୁ ପ୍ରଞ୍ଜୁ ନେଲା ପନ୍ଦର ଟଙ୍କା । ମନ ଆନନ୍ଦରେ ସେ ଓ ତାର ଗାଁ ଲୋକେ ଫେରିଲେ । ସେମାନେ ଗାଁ ବୋହୂର ମାନ ଫେରସ୍ତ ପାଇଛନ୍ତି, ଅଛ

ଗଡ଼ ଜିଣି ଫେରୁଛନ୍ତି । ଭଲ ଭୋଜି ହେବ । ମୁକ୍ତି ଭାରି ଭଲ ଧାଙ୍ଗଡ଼ୀ । ସେ ତାର ମାନ ଫେରେଇ ଆଣିଛି । ଗାଁ ଲୋକଙ୍କ ଆଖିରେ ତାର ସମ୍ମାନ ବଢ଼ିଛି ।

କରଙ୍ଗା ଗାଁର ସ୍ତ୍ରୀ ପୁରୁଷ ନିଜ ନିଜ ଘରକୁ ଫେରିଲେ । ନୂଆ କଥା ତ କିଛି ନାହିଁ । ନିତି ଦିନିଆଁ । ବାଦଲ କନ୍ଧ ପରି ଝିଅର ମାନ ଫେରେଇ ଦେଇଛି, ଓଜର ଆପତ୍ତି କରି ନାହିଁ । ପଦେ କଥାରେ ସେ ପ୍ରଞ୍ଜୁ ଦେଇଛି । ସେ କୁକୁର ନୁହେଁ, ସେ ଭଲ ପିଲା । ଗାଁ ଲୋକଙ୍କ ଆଖିରେ ତାର ବି ବଢ଼ିଛି ସମ୍ମାନ । ଗାଁର ସେ ଠେକ ରଖିଛି । ପ୍ରଞ୍ଜୁ ଦେଇଛି । କରଙ୍ଗାକୁ ଧାରୁଆ କରି ରଖିନାହିଁ ?

ସାଇକା ଗାଁର ବିରଜା କନ୍ଧ । ତା ଘରକୁ ବି ସର୍ବୁ ଆଉ ତାର ଗାଁ ଲୋକେ ପ୍ରଞ୍ଜୁ ଆଦାୟ କରିବାକୁ ଯାଇଥିଲେ । ସଙ୍ଗରେ ଯାଇଥିଲା ତାର ସାନ ଭାଇ ସଇତୁ । ବିରଜା ସର୍ବୁକୁ ଫାଙ୍କି ଦେଲା । କହିଲା, ଜାଣେ ନାହିଁରେ ତୋର ଧାଙ୍ଗଡ଼ୀ ମୁକ୍ତିକୁ । ମୋର ନିଜର ଧାଙ୍ଗଡ଼ୀ ତ ଅଛି । ମୁଁ କାହିଁକି କାହାକୁ ପ୍ରଞ୍ଜୁ ଦେବି ।

ସଇତୁ ଚାହିଁଲା ବିରଜାର ଧାଙ୍ଗଡ଼ୀକୁ ! ପାଖରେ ଠିଆହୋଇ ସେ ବଲବଲ କରି ଅନେଇଛି । କାଖରେ ତାର ତିନି ବରଷର ପୁଅ । ସେ ଭାବୁଛି ତା ବିରର କଥା । କେଡ଼େ ଅବିଶ୍ୱାସୀ ? ବାହା ହୋଇ ମଧ୍ୟ ପର ଝିଅ ସଙ୍ଗେ ମିଶୁଛି । କୁକୁର ପରି ସ୍ୱଭାବ । କେବେ ପୁଣି କେଉଁଠୁ ଆଉ ଗୋଟାଏ ସ୍ତ୍ରୀ ଆଣିବ । ଗଣ୍ଡିଧନ ଦେଇ ଦେଲେ ପାଇଟି ସରିଲା । ସେ କାହିଁକି ତେବେ ରହିବ ବିରଜା ଘରେ ? ତିନି ବର୍ଷର ପିଲାଟା ତ ! ବିର୍ଜା ତାକୁ ରଖୁ କି କଣ କରୁ ତାର କି ଥାଏ । ସେ ଚାଲିଯିବ ଆଉ କାହା ସଙ୍ଗରେ ।

ସର୍ବୁର ଭାଇ ସଇତୁ ତାର ଆଖିରେ ପଡ଼ିଲା । ପାହାଡ଼ ତଳ ଝରଣା ପାଖେ ଦିନେ ସେ ତାକୁ କଣେଇ କରି ଅନେଇ ଥିଲା, ଆଉ କଣ କହିବ କହିବ ହୋଇଥିଲା । ଦି ଗାଁର ଲୋକେ ବିର୍ଜା ଘର ଆଗରେ ଜମା ହୋଇଛନ୍ତି । ବିର୍ଜାର ଗୁଣ ଅଲେଖ ବନ୍ଧୁତେ ସମସ୍ତଙ୍କୁ ଗୋଚର ! ତଥାପି କେହି କିଛି କହିଲେ ନାହିଁ ।

ସର୍ବୁ ଓ ତାର ଗାଁ ଲୋକେ ଫେରିଲେ ।

ଅପମାନ !

ଗାଁରେ ବସିଲା ପଞ୍ଚାୟତ । ସ୍ଥିର ହେଲା ଗମାଙ୍ଗ ପାଖରେ ଫେସଦ ହେବ । ଗମାଙ୍ଗ—କନ୍ଧ । ପାଞ୍ଚ ଗାଁର ନାୟକ—ମାଲିକ । ସେ ସର୍ବୁର ଆଉ ତାର ଗାଁ ଲୋକଙ୍କର ମାନ ଫେରାଇ ଦେବ ।

ଗମାଙ୍ଗ ଆଗରେ ଗାଁ ଲୋକେ ଓ ସର୍ବୁ ଠିଆ ହୋଇଛନ୍ତି । ବିର୍ଜା ବି ଆସିଛି । ତା ଗାଁ ଲୋକେ ବି ଆସିଛନ୍ତି । ସର୍ବୁ ସଙ୍ଗରେ ଆସିଛି ମୁକ୍ତି ।

ଗମାଙ୍ଗର ଆଦେଶରେ—ଏତେ ଲୋକଙ୍କ ଆଗରେ ମୁଣ୍ଡି ହାତ ବଢ଼େଇ ଦେଖେଇ ଦେଲା । କହିଲା ଏଇ ବର୍‌ଜା ! ଏଇ—। ଅନ୍ଧାର ଘର—

ମୁଣ୍ଡି ର କଥା ଗମାଙ୍ଗ ଶୁଣିଲା, ପୁଣି ଶୁଣିଲେ ଦୁଇ ଗାଁର ଲୋକେ । ବର୍‌ଜା ବ ତୁନି ହୋଇ ଶୁଣିଲା । ସେ ଦୋଷ କରିଛି । ମୁଣ୍ଡି ସବୁ କଥା କହିଗଲା । ଫାଙ୍କ ଦେବାର ଉପାୟ ନାହିଁ । ଗମାଙ୍ଗର ଆଦେଶ ନ ମାନିଲେ, ଭଲ ମଣିଷ ପରି ପ୍ରଞ୍ଜୁ ଗଣି ନ ଦେଲେ ସର୍‌ବୁ କୋର୍ଟକୁ ଯିବ । ତାର ସ୍ତ୍ରୀର ମାନ ପାଇ ପ୍ରଞ୍ଜୁ ଆଦାୟ କରିବାକୁ କେଣ୍ କରି ଲାଭ କଣ ?

ବର୍‌ଜା ଗମାଙ୍ଗ ଆଗରେ ସର୍‌ବୁକୁ ପ୍ରଞ୍ଜ ଟଙ୍କା ଗଣି ଦେଲା । ଲୋକଙ୍କ ଆଗରେ ସେ ହେଲା କୁକୁର । ସର୍‌ବୁ ଓ ତାର ଗାଁ ଲୋକେ ଗର୍ବରେ ଆନନ୍ଦରେ ତୁହାଇ ମାରି ଫେରିଲେ ଗାଁକୁ । ଆଗରେ ଚାଲିଛି ମୁଣ୍ଡି । ସେ ତାର ମାନ ଫେରି ପାଇଛି । ଗାଁ ଲୋକେ ତାଙ୍କର ସମ୍ମାନ ପାଇଛନ୍ତି । ସେଇଦିନ ଗାଁରେ ହେଲା ବଡ଼ ଭୋଜି ।

ବରଜା ଫେରିଲା ବେଳେ ଘର ମୁକୁଳା । ତାର ଧାଙ୍ଗଡ଼ୀ ପଳେଇଛି । ଦିନେ ଏପରି ହେବ ବୋଲି ସେ ଡରୁଥିଲା । ଗାଁ ଲୋକ ବ ସେଇଆ ଅନୁମାନ କରିଥିଲେ । ଖୋଜା ଚାଲିଲା । ସାତ ଦିନ ପରେ ଖବର ପାଇ ବରଜା ଠାବ କଲା ତାର ଧାଙ୍ଗଡ଼ୀକୁ ସେରନ୍‌ଗୁଡ଼ାରେ । ସେରନ୍‌ଗୁଡ଼ାରେ ପୁଣି ସର୍‌ବୁ କନ୍ଧର ଘରେ । ସରବୁର ସାନଭାଇ ସଇତୁ ତାକୁ ଘରେ ରଖିଛି । ବରଜାର ଛଅ ବର୍ଷର ପୁଅ ବ ସେଇଠି ଅଛି ।

ବର୍‌ଜା ତାର ଗାଁ ଲୋକଙ୍କୁ ସଙ୍ଗରେ ଧରି ସେରନ୍‌ଗୁଡ଼ା ଗଲା, ତାର ଧାଙ୍ଗଡ଼ୀକୁ ଡାକିଲା । ଠାଙ୍ଗି ଟେକିଲା । ସଭିଙ୍କ ଆଗରେ ଯିଏ ଦିନେ ଥିଲା ତାର ଧାଙ୍ଗଡ଼ୀ ସେ ଦେଲା ଜବାବ—ଯିବ ନାହିଁରେ ତୋର ଘରକୁ । ତୁ କୁକୁରଟା । ନେଇ ଯା ତୋର ପିଲା ।

ସଇତୁ ଠାଙ୍ଗି ଟେକି ଧାଇଁଲା ବରଜା ପାଖକୁ । କହିଲା, ସେ ତ ଯିବ ନାହିଁ କହୁଛି, କେମିତି ନବୁ ଦେଖିବି । ନବୁ ତ ତୋର ଗଣ୍ଡିଧନ ? ପଞ୍ଚାଏତ ବସା । ହିସାବ କରି ନେଇ ଯା । ସେ ମୋର ଧାଙ୍ଗଡ଼ୀ ହେଲାଣି । ଗଣ୍ଡି ଧନରେ ତୋର ଅଧିକାର—ତାଠି ନାହିଁ ।

ବର୍‌ଜା ଠାଙ୍ଗି ନୋଇଁଲା । ସଇତୁ ବ ।

ବରଜା କହିଲା, ପିଲାଟାକୁ କେମିତି ବଢ଼େଇବ ଲୋ ? ଦେ ସଇତୁ, ଗଣ୍ଡିଧନ ନ ଦେ ପଛେ ତାର ମା ତୋର ଧାଙ୍ଗଡ଼ୀ ତାକୁ ପାଳୁ । ବଡ଼ ହୋଇ-ଗଲେ ମୁଁ ନେଇଯିବ ।

ସଇତୁ ଚାହିଁଲା ତାର ବୁଢ଼ା ବାପକୁ । ବୁଢ଼ା ମୁଣ୍ଡ ହଲାଇ ନାହିଁ କଲା । କହିଲା, ପର ପିଲା ଏ ଗାଁରେ ରହିବ ନାହିଁ । ନେଇଯା ତୋର ଗଣ୍ଠି ଧନ ବର୍‌ଜା, ନେଇ ପଳା ତୋର ପିଲାକୁ ।

ସାଇକା ଗାଁର ବୁଢ଼ା ନାୟକ କହିଲା ତାର ବୁଢ଼ୀକୁ—ଆଣଲୋ ଆମର ପିଲାକୁ । ଏତେ ପିଲାଙ୍କର ମା ମୋ ଗାଁରେ ଅଛନ୍ତି । ସେମାନେ ଆଜି ଗୋଟାଏ ପିଲାକୁ ମଣିଷ କରିପାରିବେ ।

ବୁଢ଼ୀ ପିଲାର ହାତ ଧରିଲା ।

## ବିଜ୍ଞାନର ବିଜୟ

ସାନଖେମଣ୍ଡି ଜମିଦାରୀର ରାଜଧାନୀ (?) ପୁଡ଼ାମାରି ଗାଁଠାରୁ ଛଅ ମାଇଲ ଦୂରରେ ମୁହାଣ ମାଳର ମୁହଁରେ ସିଂହନାଥ ପାହାଡ଼ ଆଗକୁ ପଛକୁ ଅନ୍ଧାର ଶ୍ରେଷ୍ଠ ବଡ଼ ଅନେକ ପାହାଡ଼ ଅଛି । ସେଇ ସବୁ ପାହାଡ଼ ସନ୍ଧିରେ ବଙ୍କେଇ ବଙ୍କେଇ ଯେଉଁ ରାସ୍ତାଟି ଲୋହାଗୋଡ଼ ବାଟେ ମୁହାଣ ଆଡ଼କୁ ଯାଇଛି ତାରି ଉଠାଣିରେ ବାଁ ପାଖେ ତପ୍ତପାଣି ଝର । ସମୁଦ୍ର ପତ୍ତନରୁ ପ୍ରାୟ ଆଠଶହ ଫୁଟ ଉପରେ । ଝରଟି ପଥର ତଳୁ ବାହାରିଛି । ଉତ୍ତାପ ୧୦୮ ଡିଗ୍ରୀ ( ଫାରନ୍‌ହିଟ ) । ଗନ୍ଧକଗ୍ୟାସ୍‌ର ବୁଦ୍‌ବୁଦ୍‌ ସବୁବେଳେ ବାହାରୁଛି । ଝରଣାର ଚାରି ପାଖେ ପକ୍‌କା ବନ୍ଧ ବାନ୍ଧି କୁଣ୍ଡ କରା ହୋଇଛି । କୁଣ୍ଡର ଚାରିପାଖେ ପକ୍‌କା ଚାନ୍ଦନୀ । ପ୍ରଥମ କୁଣ୍ଡର ନଳା ବାଟେ ତତଲା ପାଣି ଦ୍ୱିତୀୟ କୁଣ୍ଡରେ ପଶୁଛି, ଦ୍ୱିତୀୟରୁ ପୁଣି ପଶୁଛି ତୃତୀୟ କୁଣ୍ଡରେ । ତୃତୀୟ କୁଣ୍ଡର ନଳା ବାଟେ ବଳକା ପାଣି ଗଡ଼ି ଯାଉଛି କେତେ ତଳକୁ ।

ସେଇଠି, ସେଇ ଚାନ୍ଦନୀ ଉପରେ—ସମୟ ଅପରାହ୍ନ ପାଞ୍ଚଟା । ସୂର୍ଯ୍ୟ କେଉଁ ଦୂର ପାହାଡ଼ର ପଛ ପାଖେ ଲୁଚି ଗଲେଣି । ଆଲୁଅ ଅଛି । ତପ୍ତପାଣି କୁଣ୍ଡ ଉପର ପକ୍‌କା ଚାନ୍ଦନୀର ଗୋଟିଏ କଡ଼ରେ ତିନି ଜଣ ଟୋକା ବସି ଗଳ୍ପ କରୁଛନ୍ତି । କୁଣ୍ଡ ପାଖକୁ ଦଶହାତ ଛାଡ଼ି ଖଣ୍ଡେ ପଥର ଉପରେ ବସିଛନ୍ତି ଦୁଇଟା ବୟସ୍କା ଝିଅ । ସେମାନେ ବି ଗଳ୍ପ କରିବାରେ ବ୍ୟସ୍ତ । ଦ୍ୱିତୀୟ କୁଣ୍ଡ ପାଖରେ ଜଣେ ବୟସ୍କ ବାବାଜୀ ବସି ପାହାଡ଼ ଆଡ଼କୁ ବଲବଲ କରି ଚାହୁଁଛନ୍ତି । ବଡ଼ ବଡ଼ ଘନ ଦାଢ଼ି, ମୁଣ୍ଡରେ ଜଟା ।

ପାହାଡ଼ ଉପରେ ଅକର୍ମିଶିଳାଗୁଡ଼ାକ କେଉଁ ଅନାଦି କାଳରୁ ଯେଉଁଠି ସେଇଠି ପଡ଼ି ରହିଚନ୍ତି । ଶହ ଶହ ବର୍ଷ ଧରି ପାଣି ପବନ ଖରା ବର୍ଷା ଗଛ-ଲତା

ପଶୁ ପୁଣି ଉତ୍ପାତଅ ମଣିଷ ତାଙ୍କର ପିଠି ଉପରେ ନାଚ କୁଦ ଯାଇଛନ୍ତି । ତଥାପି ସେମାନେ ଅଛନ୍ତି ସେମିତ । କେତେ ବିଦେଶୀ ସଭ୍ୟ ଅସଭ୍ୟ, କେତେ ଉଦ୍ଦେଶ୍ୟରେ ସେଇ ତପ୍ତପାଣିର ତତଲା ଝର ଦେଖିବାକୁ ବା ପୂଜା କରିବାକୁ ଆସିଛନ୍ତି ଯାଇଛନ୍ତି କିନ୍ତୁ ଏଇ ଅକର୍ମଣିଲାଗୁଡ଼ିକୁ କେହି କେବେ ପଚାରିନ୍ତି ନାହିଁ । ସେମାନେ ସେମିତ ପିଠି ଦେଖେଇ ପଡ଼ିଥାନ୍ତି । ହୁଏତ ଦୁନିଆର ପ୍ରଗତି କଥା ଭାବୁଛନ୍ତି ।

ଆଗନ୍ତୁକ ଯୁବକ ଯୁବତୀ ଅତି ଆଧୁନିକ । କଲେଜ ଛାତ୍ର । ଗ୍ରୀଷ୍ମ ଛୁଟିରେ ତପ୍ତପାଣି ସମ୍ବନ୍ଧରେ ତଥ୍ୟ ସଂଗ୍ରହ କରିବାକୁ ଆସିଛନ୍ତି । ସମସ୍ତେ ପୋଷ୍ଟ ଗ୍ରାଜୁଏଟ୍ ଛାତ୍ର । ପୁଅ ତିନୋଟି ବିଜ୍ଞାନବେତ୍ତା । ଜଣେ କେମିଷ୍ଟ୍ରି, ଜଣେ ଫିଜିକସ୍ ଓ ଆଉ ଜଣକ ବୋଟାନିର ଛାତ୍ର । ଝିଅ ଦିଓଟି ଆର୍ଟ ବା କଳା ବିଦ୍ୟାରତା । ଜଣେ ଇତିହାସ ଓ ଆରକ ଫିଲୋସଫିର ଛାତ୍ରୀ । ବିଶ୍ୱବିଦ୍ୟାଳୟର ରତ୍ନ ଏ ପାଞ୍ଚୋଟି ବନ୍ଧୁ । ମଣିଷ ଜାତିର ମଙ୍ଗଳ କରିବା ଏମାନଙ୍କର ଆଦର୍ଶ । ରାତିକ ତପ୍ତପାଣି ବଙ୍ଗଳାରେ ରହି ସକାଳୁ ଫେରିଯିବେ ।

ଗଳ୍ପ ଚାଲିଛି—କେମିଷ୍ଟ୍ରି ପଣ୍ଡିତ ମୋହନ କହିଲା, ସେ ସବୁ ବାଜେ କଥା । ରେଙ୍ଗୁନର ବିଖ୍ୟାତ ରାସାୟନିକ ଚୌ ହୋ ପୌ ଚବିଶ ବର୍ଷ ଅକ୍ଲାନ୍ତ ପରିଶ୍ରମ କରି ଯେଉଁ ଲବଣ ପ୍ରସ୍ତୁତ କରିଥିଲେ ତାର ଗୁଣ ହେଉଛି, ସେଥିରୁ ଗୋଟିଏ ଗ୍ରେନ୍ ଜିଭରେ ଥୋଇଲେ ମଣିଷକୁ ସାତଦିନ ଯାଏ ଆଉ ଭୋକ ଶୋଷ ହେବ ନାହିଁ । ସାତ ଦିନ ପରେ ଆଉଥରେ ଗୋଟିଏ ଗ୍ରେନ୍ ଜିଭରେ ଥୋଇଲେ ପୁଣି ସାତ ଦିନ—

ଇତିହାସ-ପଣ୍ଡିତା ମିସ୍ ପଚାରିଲା, ଭୋକ ଶୋଷ ସିନା କରେ ନାହିଁ, ମଣିଷ ଦୁର୍ବଳ ହୋଇ ପଡ଼ୁଥିବ । କ୍ଲାନ୍ତ ଦୁର୍ବଳ ହେଲେ ଏପରି ଚାରୋଟି ଗ୍ରେନ୍ ଖାଇଲା ପରେ ପଞ୍ଚମ ଗ୍ରେନ୍ ବେଳକୁ ତାର ପିଣ୍ଡରେ ପ୍ରାଣ ନ ଥିବ ।

ମୋହନ କହିଲା, ଆପଣ ଭୁଲ୍ ବୁଝିଛନ୍ତି ମିସ୍ ଦେବୀ । ମିଷ୍ଟର ପୌ ଏମିତ ସେମିତ ବୈଜ୍ଞାନିକ ନୁହନ୍ତି । 'ଏ' ଠାରୁ 'ଜେଡ୍' ପର୍ଯ୍ୟନ୍ତ ସବୁ ଭିଟାମିନ ସେ ଲବଣରେ ରଖିଛନ୍ତି । ମଣିଷ କୌଣସି କ୍ଲାନ୍ତି ବା ଦୁର୍ବଳତା ଅନୁଭବ କରିବା ତ ଦୂରର କଥା ପଦାର୍ଥଟାର ଏପରି ଗୁଣ ଅଛି ଯେ, ମାତ୍ର ଗୋଟିଏ ଗ୍ରେନ୍ ଜିଭରେ ଥୋଇଲେ ସାତ ଦିନ ଯାଏ ଆପଣଙ୍କର ବୟସ ବଢ଼ିବ ନାହିଁ । ପ୍ରତି ସାତଦିନରେ ଗୋଟିଏ କରି ଗ୍ରେନ୍ ଖାଇଲେ ଆପଣଙ୍କର ବୟସ ଯାବତ୍‌ଚନ୍ଦ୍ରାର୍କେ ଏକୋଇଶି ଟପିବ ନାହିଁ । ମିଷ୍ଟର ପୌ ପୂର୍ବ ସାତୋଟି ବର୍ଷ ସେହି ଲବଣ ବ୍ୟବହାର କରିଥିଲେ । କୌଣସି ଅସୁବିଧା ତ ସେ ଭୋଗ କରି ନ ଥିଲେ । ତାଙ୍କୁ ଯଦି ହଠାତ୍ ପ୍ଲେଗ ଧରି ନ ଥାନ୍ତା କାର୍ଯ୍ୟଟା ଅଧା ରଖି ସେ ମରିଥାନ୍ତେ କାହିଁକି ? ରୋଗ ଉପରେ କାହାର ଶାସନ ଅଛି ?

ମିସ୍ ଦେବୀ ଆଶ୍ଚର୍ଯ୍ୟ ହେଲେ । ପୂର୍ବ ସାତବର୍ଷ ! ଧନ୍ୟ ମହାତ୍ମା ଫୋଁ ! ଗୋଟିଏ ଲବଣ ଆବିଷ୍କାର କରି ଦୁନିଆର ଖାଦ୍ୟ ସମସ୍ୟା ସମାଧାନ କରିଗଲେ । ମିସ୍ ଦେବୀ ପ୍ରକାଶ କଲେ, ବରଂ ! ମହାତ୍ମା ଫୋଁ ଯାହା କରି ଯାଇଛନ୍ତି ଭଗବାନଙ୍କର ବି ସେପରି କରିବାର ଶକ୍ତି ଅଛି କି ନାହିଁ । ଦେଖନ୍ତୁ, ଆଜି ଏଇ ବିଂଶ ଶତାବ୍ଦୀରେ ଦୁନିଆର ଲୋକସଂଖ୍ୟା ଯେପରି ବଢ଼ିଲାଣି, ଖାଦ୍ୟ-ସମସ୍ୟା ଯାହା ହେଲାଣି, ଆଉ ଦଶ ପଚିଶବର୍ଷ ପରେ କେମିତି କଣ ଚଳନ୍ତା ? ଆମର ଏଇ ଭାରତବର୍ଷ କଥା ଦେଖନ୍ତୁ, ୧୦୩ କୋଟି ଲୋକ !

ଫିଜିକ୍‌ସପ୍ରେମୀ କରିମ୍ କହିଲେ, ମହାତ୍ମା ଫୋଁଙ୍କର କୃପାରୁ ଦୁନିଆଁରେ ଆଉ କେହି ହଳଲଙ୍ଗଳ ଧରିବେ ନାହିଁ କି ଫସଲ ଲଗାଇବେ ନାହିଁ । ପୃଥିବୀର ଲୋକ ସଂଖ୍ୟା କେତେ ବଢ଼ୁଛି ଏଥର ବଢ଼ୁ । ସାରା ପୃଥିବୀରେ ହାତ ଧରା ଧରି ହୋଇ ଯେତେ ଲୋକ ଠିଆ ହୋଇ ପାରିବେ ଲୋକସଂଖ୍ୟା ସେତେ ହେଲେ ବି ଅଭାବ ରହିବ ନାହିଁ । କିନ୍ତୁ ମୋହନ ବାବୁ, ଲବଣଟା ମ୍ୟାନୁଫ୍ୟାକ୍‌ଚରିଂ ସ୍କେଲରେ ତିଆରି ହେଉଛି ନା ?

ମୁଣ୍ଡ ହଲାଇ ଦୁଃଖିତ ହୋଇ ମୋହନ ବାବୁ କହିଲେ, ମିଷ୍ଟର ଫୋଁଙ୍କର ଅକାଳ ବିୟୋଗ ସବୁ ମାଟି କରିଦେଲା । ସେ ଲବଣଟାକୁ ସମୁଦ୍ର ଜଳରୁ ତିଆରି କରୁଥିଲେ । ମଲାବେଳେ ତାଙ୍କ ଲାବୋରେଟରିରେ ମୋଟେ ଦୁଇ ସେର ମିଳିଲା । ଫର୍ମୁଲାଟା ମିଳିଛି । ଆମ କଳିଙ୍ଗ ସରକାର ପାଠିଏ ହଜାର ଟଙ୍କା ଦେଇ ସେଥିରୁ ମୋଟେ ଏକଭରି ଲବଣ ଆଣି ରାଜଧାନୀ ଭୁବନେଶ୍ୱରର ରିସର୍ଚ୍ଚ କଲେଜରେ ରଖିଛନ୍ତି । ମୁଁ ନିଜେ ରିସର୍ଚ୍ଚ କରି ଦେଖିଲି ସେଥିରେ ଫୋଁ-ନାମକ ଗୋଟିଏ ନୂଆ ଶକ୍ତିଶାଳୀ ମେଟାଲର ସଲ୍‌ଟ ମିଶିଛି । ଫୋ ଲେଖି ଯାଇଛନ୍ତି, ଯେଉଁଠି ଗନ୍ଧକ ପ୍ରସ୍ରବଣ ଥିବ ସେଇଠି ଏ ମେଟାଲ ସାଧାରଣତଃ ମିଳେ । ତେଣୁ ଆମର ତପ୍ତପାଣିର ଜଳରୁ କିଛି ନେଇ ପରୀକ୍ଷା କରିବାକୁ ହେବ । ଯଦି ମିଳେ—

ଅଗ୍ରହ ଆନନ୍ଦରେ ଝଲସି ଉଠିଲା ତାଙ୍କର ଆଖି । କଥା ଉପରେ ଜୋର୍ ଦେଇ ମୋହନ କହିଲେ, ଯଦି ମିଳେ, ଥାଉନା କେତେ ତଳେ ଅଛି ! ଓ ଡ୍ରମା ବିଜୁଳି ଶକ୍ତି ପୁଡ଼ାମାରିରୁ ଆଣି ପାହାଡ଼ ଖୋଳିବା ଦରକାର ହେବ ନାହିଁ । ସମ୍ବଲପୁର ଅଟୋମିକ କମ୍ପାନୀରୁ ଦୁଇଟି ଗ୍ରେଟ ଗୁଳାରେ ଏ ସବୁ ପାହାଡ଼ ଓଲଟେଇ ଦେବା ଓ ଫୋଁ ମେଟାଲ ବାହାର କରିବା । ତା ପରେ ଆରମ୍ଭ କରିବା ଫୋଁ-ଲବଣ ପ୍ରସ୍ତୁତ ! ସେଇଠୁ ରିସର୍ଚ୍ଚ କରିବା—ଯଦି ଥରଟିଏ ଗୋଟିଏ ଗ୍ରେନ୍ ଜିଭରେ ଥୋଇଲେ ବଞ୍ଚିଥିବା ଯାଏ ଆଉ ଖାଇବା ପିଇବା ଦରକାର ନ ପଡ଼ନ୍ତା ତେବେ ସାରାଜୀବନ ମୁଁ ଲାଗିଯିବି ସେଇ ରିସର୍ଚ୍ଚରେ ।

ବୋଟାନି-ନିପୁଣ ଜୋସେଫଙ୍କର ଗାମ୍ଭୀର୍ଯ୍ୟ ଭାଙ୍ଗିଲା । ସେ ଧୀର ସ୍ଥିର ହୋଇ କହିଲେ, ଯାହା ତୁମେ କର ମଣିଷର ଦୁଃଖ ଫୋଁ ସଲ୍‌ଟରେ ଦୂର ହୋଇ

ପାରିବ ନାହିଁ । ସମସ୍ତେ ଭାବିଥିଲେ ଆଟମିକ ଶକ୍ତି ମଣିଷର କାମରେ ଲଗାଇ ପାରିଲେ ମଣିଷ ସମାଜ ସୁଖରେ ରହିବ । ହେଲା କି ? ସେଇ ଆଟମିକ-ଶକ୍ତି ପ୍ରୟୋଗ କରି ବିଶାଳ-କଳଙ୍ଗର ସବୁ ନଦୀ ଖୋଲା ହୋଇ ସମୁଦ୍ର କୂଳରୁ ଶହ ଶହ ମାଇଲ ଭିତରି ଯାଏ ବଡ଼ ବଡ଼ ଜାହାଜ ଯାତାୟାତର ସୁବିଧା କରିଦେଲା । ସେଇ ଶକ୍ତିରେ ସମୁଦ୍ର ଖୋଲା ହେଲା । ଲୋକେ ବଣିଜ କଲେ । ଧନୀ ହେଲେ । ବଞ୍ଚିଲେ କି ? ରୋଗ ଛାଡ଼ିଲା ନାହିଁ ତ । ମଣିଷକୁ ଦୁଃଖ ଦେଲା, ଶେଷକୁ ଜୀବନ ନେଲା । ମଣିଷକୁ ଏ ଦୁଃଖରୁ ଉଦ୍ଧାର କରିବାକୁ ଜାଭିର ବିଖ୍ୟାତ ବୋଟାନିଷ୍ଟ ମହାତ୍ମା ପଟ-କର୍ଣ୍ଣି ଯେଉ ଔଷଧ ଆବିଷ୍କାର କରିଗଲେ ସେଇଟିକ କେବଳ ଦୁନିଆଁର ଦୁଃଖ କଷ୍ଟ ଦୂର କରି ପାରିବ । ଔଷଧର ନାମ ରଖା ଯାଇଛି କର୍ଣ୍ଣି ପିଲ୍ । ଦେଖିଛ ଭଲା କେହି ?

ଦର୍ଶନ-ବିଦ୍ୟାରତା ଶ୍ରୀମତୀ ଶୋଭନା ବିସ୍ମିତ ହୋଇ ପଚାରିଲେ, କର୍ଣ୍ଣି ପିଲ୍ ? ନାମଟା ଶୁଣିଲା ପରି ମନେ ହେଉଛି ତ ! ଓ, ମନେ ପଡ଼ିଲା, ମହାଶୟ କର୍ଣ୍ଣି ଯେଉଁ ସର୍ବ-ରୋଗ-ହାରକ ଔଷଧ ଆବିଷ୍କାର କରିଗଲେ ସେଇ କଥା କହୁଛ ନା ?

ଯୋସେଫ୍ କହିଲେ, ନିଶ୍ଚୟ । ଟିଲଠାରୁ ଶ୍ରେଷ୍ଠ ହେବ ଗୋଟିଏ ପିଲ୍ । ଥରେ ଗିଳିଲେ ଛଅବର୍ଷ ଛଅମାସ ଛଅ ଦିନଯାଏ କୌଣସି ରୋଗ ବୈରାଗ ହେବ ନାହିଁ । ଧନ୍ୟ ସେ ମହାତ୍ମା ! ମଣିଷ ଜାତିର ଦୁଃଖ କଷ୍ଟ ମୋଚନ କରିବାକୁ ସେ ପୂରା ଷାଠିଏ ବର୍ଷ ଦିନ ରାତି ପରିଶ୍ରମ କରି କେବଳ ଗିଡ଼ିଲରୁ ସେ ବଟିକ ପିଲ୍ ପ୍ରସ୍ତୁତ କଲେ । ପ୍ରଥମେ ଏକ୍ସପେରିମେଣ୍ଟ ଆରମ୍ଭ କଲେ ତାଙ୍କର ବୁଢ଼ା କୁକୁରଟା ଉପରେ । ଦେଖୁ ଦେଖୁ ସେଟା ଯବାନ ହୋଇଗଲା ।

ମିସ୍ ଦେବୀ ଅଗ୍ରହରେ ପଚାରିଲେ, ତା ପରେ ? ଡକ୍ଟର କର୍ଣ୍ଣି ନିଜେ ଖାଇଲେ ନା ?

ଯୋସେଫ୍ କହିଲେ, ସେ ତ ବଡ଼ ମଜାର କଥା । ଡକ୍ଟର କର୍ଣ୍ଣିଙ୍କର ସ୍ତ୍ରୀ ତ ଅନେକ ଦିନୁ ମରି ଯାଇଥିଲେ । ଗୋଟିଏ ବୋଲି ପୁଅ । ସେ ମଧ୍ୟ କେବେଠୁ ବୁଢ଼ା ହୋଇ ମରି ଯାଇଥିଲେ । ତାଙ୍କର କୁଟୁମ୍ବ ଭିତରେ ତାଙ୍କୁ ଛାଡ଼ି ତାଙ୍କର ବୁଢ଼ୀ ବୋହୂ । ପଚଶ ବର୍ଷର ନାତି ଆଉ ସତର ବର୍ଷର ନବବିବାହିତା ନାତୁଣୀ ବୋହୂ । ନାତି ଇଞ୍ଜିନିୟର ବିଦେଶରେ । କର୍ଣ୍ଣିଙ୍କୁ ସେତେବେଳେ ୮୩ ବର୍ଷ । ଗତ ସଞ୍ଜରେ ସେ ପିଲ୍ ଖାଇଥିଲେ । ଜୀବନ ଉପରେ, ମଣିଷ ଉପରେ ସେଇ ତାଙ୍କର ପ୍ରଥମ ଏକସ୍‌ପେରିମେଣ୍ଟ୍ । କାଲେ କଣ ଖରାପ ହେବ ବୋଲି ଦିନ ତମାମ ଲାବୋରେଟରିରେ ବସି ସାରା ଜୀବନ ପରିଶ୍ରମର ଫଳାଫଳ ନିଜ ହାତରେ ଲିପିବଦ୍ଧ କରୁଛନ୍ତି । ସଞ୍ଜ ହେଲା । ବିଜୁଳି ବତୀ ଜାଳି ବୁଢ଼ା ଲେଖିବାରେ ବ୍ୟସ୍ତ ଅଛନ୍ତି । ନାତୁଣୀ ବୋହୂ ଚା ଧରି ପହଞ୍ଚିଲେ । ବୁଢ଼ାଙ୍କୁ ଚାହିଁ ଦେଇ ଖୁସି ହୋଇ

ଗ୍ ଟେବୁଲ ଉପରେ ରଖିଲେ । ହସି ହସି ପାଖକୁ ଯାଇ ପଛ ପଟୁ ଆଖି ବୁଜି ଧରିଲେ ଡକ୍ଟରଙ୍କର । ଡକ୍ଟର ଚମକି ପଡ଼ିଲେ । ସଙ୍ଗେ ସଙ୍ଗେ ବୁଝିଲେ ଷାଠିଏ ବର୍ଷର ସାଧନା ତାଙ୍କର ସଫଳ ହୋଇଛି । ରହସ୍ୟ କରିବାକୁ କହିଲେ, ଓଃ— ଛାଡ଼ ନା ।

ନାତୁଣୀ ବୋହୂ ଅଖି ଖୋଲି ଦେଇ ଡକ୍ଟରଙ୍କର କୋଳକୁ ଆଉଜି ଗେହ୍ଲେଇ ହୋଇ କହିଲେ, କେତେବେଳୁ ଅସି ଏଠି ଲୁଚି କରି ବସିଛ, ନା ! ମୁଁ ଅନେଇଁ ବସିଛି ଡାକବାଙ୍କ ଯନ୍ତ୍ରକୁ । ଆଗରୁ ଖବର ଦେଲ ନାହିଁ ? ଗୁରୁ ହିନ ତଳେ ସର୍ବଦର୍ଶୀ ଯନ୍ତ୍ରକୁ କେତେ କଷ୍ଟରେ ସେଟ୍ କରି ବୁଲେଇ ବୁଲେଇ ତମକୁ ପାଇଲି । ଗୋଟିଏ ଝିଅର ହାତ ଧରି ତମେ କେଉଁ ନଈ କୂଳରେ ବୁଲୁଥିଲ ? କହିବ ନାହିଁ ସେ କିଏ ? କହ ।

ନାତୁଣୀ-ବୋହୂ ଡକ୍ଟର କର୍ଣ୍ଣଙ୍କର ଗ୍ରୀବା ଉପରେ ଲଟେଇ ପଡ଼ିଲେ । ସ୍ନେହରେ ନାତୁଣୀ-ବୋହୂର ପିଠି ଆଉଁଷି କର୍ଣ୍ଣ କହିଲେ, ଆଗ ଗ୍ରୁଠା ଖାଇ ନିଏ ତା ପରେ ସବୁ କହିବ । ନାତୁଣୀ ବୋହୂ ଉଠି ଗ୍ ଅଣିବାକୁ ଗଲେ । ଡକ୍ଟର ଗ୍ ଖାଉ ଖାଉ ସବୁ କହିଲେ । ନାତୁଣୀ ବୋହୂ ଲଜରେ ସରି ଡକ୍ଟରଙ୍କର ଆଗରୁ ଛୁଟି ପଳେଇଲେ । କେହି ଜାଣି ନ ଥିଲେ ଯେ ଅଜା ନାତି ଏକାପରି ।

ପ୍ରଥମ ପିଲ୍‌ରେ ତେୟାଅଶି ବର୍ଷର ବୁଢ଼ା ଠିକ୍ ତେଇଶି ବର୍ଷର ଗଜା ଟୋକା ପାଲଟିଲେ । ଯେଉଁଦିନ ଛଅବର୍ଷ ଛଅମାସ ଛଅଦିନ ପୂରିଲା, ସେଦିନ ଆଖିରେ ଟିକିଏ ଯନ୍ତ୍ରଣା ଅନୁଭବ କଲେ । ଦ୍ୱିତୀୟ ପିଲ୍ ଖାଇଲେ । ଡକ୍ଟର କର୍ଣ୍ଣ ଶତେ ବର୍ଷ ବଞ୍ଚିଲେ । ଦିନ ରାତି କେବଳ ଏକ୍‌ସପେରିମେଣ୍ଟ କରୁଥିଲେ ତୃତୀୟ ପିଲ୍‌ର ଏଫେକ୍‌ଟଟାକୁ ପରମାନେଣ୍ଟ କରି ପାରିବେ । ଅନେକ ଦୂର ଆଗେଇ ଥିଲେ କିନ୍ତୁ ହଠାତ୍ ତାଙ୍କର ମୃତ୍ୟୁ ହେଲା ।

ବୁଢ଼ା ବାବାଜୀ ମନ କର୍ଣ୍ଣ ଦେଇ ସବୁ ଶୁଣୁଥିଲେ । ପାଚିଲା ଦାଢ଼ି ଆଉଁଷି ଆଉଁଷି ପାଖକୁ ଅସି ପଗ୍ରରିଲେ—ଡକ୍ଟର ମଲେ ତେବେ କାହିଁକି ?

ସମସ୍ତେ ବାବାଜିଙ୍କ ଆଡ଼କୁ ଗ୍ରହିଁଲେ । ମିସ୍ ଦେବୀ ରହସ୍ୟ କରି ପଗ୍ରରିଲେ, ବାବାଜୀ ମହାରାଜ, କର୍ଣ୍ଣ ପିଲ୍ ଖାଇବାକୁ ଆଗ୍ରହ ହୋଇଛି କି ?

ବାବାଜୀ ହସି ହସି କହିଲେ, ହେଉଛି । ଯଦି ତୁମ ପରି ଗୋଟିଏ ନାତୁଣୀ-ବୋହୂ ମିଳନ୍ତା—

ମିସ୍ ଦେବୀ ରଗିଯାଇ କହିଲେ, ନିର୍ବୋଧ !

ଯୋଟସଫ୍ କହିଲେ, ରଗନ୍ତୁ ନାହିଁ । ବାବାଜୀ ଯଦି କର୍ଣ୍ଣପିଲ୍ ଖାଆନ୍ତି ଆପଣ ରଗି ପାରିବେ ନାହିଁ । ଆପଣ ତାଙ୍କ ପ୍ରେମରେ ପଡ଼ିଯିବେ । କର୍ଣ୍ଣଙ୍କର ନାତୁଣୀ ବୋହୂ ତାଙ୍କର ପ୍ରେମରେ ପଡ଼ିଥିଲେ; କିନ୍ତୁ କର୍ଣ୍ଣ ଜାଣି ମଧ୍ୟ ନ ଜାଣିଲା ପରି ପ୍ରକାରାନ୍ତରେ ତାଙ୍କୁ ଶାସନ କରିଥିଲେ । ସେଇ ହେଲା ତାଙ୍କ ମରଣର

କାରଣ—ନାରୀର ଅଭିମାନ ନାରୀର ଈର୍ଷା । କ୍ଷମା କରିବେ ମିସ୍ ଦେବୀ, କ୍ଷମା କରିବେ ଶୋଭନା ଦେବୀ !

ଶୋଭନା ଦେବୀ କହିଲେ, ନାରୀ ସମ୍ବନ୍ଧରେ ନିଜର ମତାମତ ପ୍ରକାଶ ନ କରି ଘଟଣାଟା କହିଲେ ତ ହୁଅନ୍ତା !

ଯୋସେଫ୍ କହିଲେ, ଘଟଣା ଅଉ କଣ ? ନାରୁଣୀ ବୋହୂ ଦୁଃଖରେ ପଡ଼ିଲେ । ସ୍ୱାମୀ ଓ ଅଜା ଦୁହେଁ ଏକାପରି । ବରଂ ଅଜା ମୀଟରିଗ ସ୍ୱାସ୍ଥ୍ୟବାନ୍ । ସେ ଡକ୍ଟରଙ୍କୁ ସେଇ ପିଲ୍ ନିମନ୍ତେ ଅନୁରୋଧ କଲେ । ଡକ୍ଟର କହିଲେ, ଏକ୍ସ-ପେରିମେଣ୍ଟ୍ ଶେଷ ନ ହେବା ଯାଏ ସେ କାହାରିକୁ ଦେବେ ନାହିଁ । ନାରୁଣୀ-ବୋହୂ ପ୍ରେମ କରିବାକୁ ଚେଷ୍ଟା କଲେ । ସଂଯମୀ ଡକ୍ଟର ସେ ଆଶା ତାଙ୍କର ରଖିଲେ ନାହିଁ । ଦ୍ୱିତୀୟ ପିଲ୍‌ର ଏଫେକ୍ଟ ଯେଉଁଦିନ ଶେଷ ହେଲା, ଠିକ୍ ସେଇଦିନ ଗ୍ଲ ସଙ୍ଗରେ ନାରୁଣୀ ବୋହୂ ସିଆନାଇଡ଼ ବିଷ ମିଶାଇ ଦେଲେ । ଡକ୍ଟର ମୁହଁରେ ଦେଉଁ ଣ୍ଣ ଠେଲିପଡ଼ିଲେ ।

ବାବାଜି ପଚାରିଲେ, ନାରୁଣୀ-ବୋହୂ ?

ଖୋଜି ଖୋଜି ପିଲ୍ ବାକ୍ସ ପାଇଲେ । ଗୋଟିଏ ପରେ ଗୋଟିଏ ଗିଳି-ବାକୁ ଆରମ୍ଭ କଲେ । ମୋଟେ ଚାରୋଟି ଗିଳିଛନ୍ତି ଯନ୍ତ୍ରଣାରେ ଛଟପଟ ହେବାକୁ ଲାଗିଲେ । ସେ ସିନା ଭାବିଥିଲେ ଏକାଥରେ ଦଶ ପନ୍ଦରଟା ଗିଳିଦେଇ ଅନ୍ତତଃ ଶହେବର୍ଷ ପାଇଁ ଯୁବତୀ ହୋଇ ରହିପାରିବେ, କିନ୍ତୁ ଫଳ ଯେ ଓଲଟା ହେଲା । ମରିବା ଆଗରୁ ସେ ତାଙ୍କର ସବୁ ଦୋଷ ସ୍ୱୀକାର କରିଗଲେ ।

ସମସ୍ତେ ଅବା କାବା ହୋଇ ଚାହିଁ ରହିଲେ ଯୋସେଫ୍‌ଙ୍କୁ ।

ବାବାଜି ପାଚିଲା ଦାଢ଼ି ଆଉଁଷି ମନକୁ ମନ କହିଲେ, ଧନ୍ୟ ସେ କର୍ଣ୍ଣ୍ !
ମହାଭାରତର କର୍ଣ୍ଣ-ରାଜା କବଚ କୁଣ୍ଡଳ ପାଇଲା ପରି ଏ ମହାତ୍ମା ଷାଠିଏ ବର୍ଷ ତପସ୍ୟା କରି ପିଲ୍ ବର ପାଇଥିଲେ ।

ବାବାଜି ପାଖରେ ବସିଲେ । ଯୋସେଫ୍ କହିଲେ, ଡକ୍ଟର କର୍ଣ୍ଣଙ୍କର ସେହି ଲାବୋରେଟାରୀ ବର୍ତ୍ତମାନ ବିଶ୍ୱ-ସରକାର କଣ୍ଟ୍ରୋଲରେ ଅଛି । ପୃଥିବୀର ଯେ କୌଣସି ଦେଶର ବୈଜ୍ଞାନିକ ସେ ଦେଶର ସରକାରଙ୍କର ସୁପାରିସ୍ ନେଇ ସେଠାରେ ରିସର୍ଚ୍ଚ କରିପାରିବେ । କଥା ହେଉଛି କଣ କି, କର୍ଣ୍ଣଙ୍କ ପରେ ସବୁ ଫର୍ମୁଲା ଜଣାଥିଲେ ବି ସେପରି ଷୋଳପଣ କାର୍ଯ୍ୟକାରୀ ବଟିକା ଆଉ କେହି ପ୍ରସ୍ତୁତ କରିପାରୁ ନାହାନ୍ତି । ଏବେ ଖବର ମିଳିଲା ବଲାଙ୍ଗିର ରିସର୍ଚ୍ଚ କଲେଜର ପ୍ରଫେସର ମହାଶୟ ଚନ୍ଦ୍ରବଦନ ସ୍ୱାଧୀନ ଭାବରେ ରିସର୍ଚ୍ଚ କରି ଅନେକ ପରିମାଣରେ କୃତକାର୍ଯ୍ୟ ହୋଇ ପାରିଛନ୍ତି । ମୁଁ ଭାବୁଛି ତାଙ୍କର ସହାୟକ ହୋଇ କାମ କରିବି ।

ପିଜକସ୍ ବିଶାରଦ କରିମ୍ କହିଲେ, ଆପଣମାନେ ରହମ୍ 'ରେ' ସମ୍ବନ୍ଧରେ ନିଶ୍ଚୟ ଖବର ପାଇଥିବେ । ବାଗଦାଦ୍‌ର ପ୍ରଫେସର ରହମ୍ ପେଜ 'ରେ' ବା ରଶ୍ମି ଆବିଷ୍କାର କରିଛନ୍ତି ସେ ରଶ୍ମିର ପ୍ରଭାବ ଯଦି ଚିରସ୍ଥାୟୀ କରାଯାଇ ପାରେ ମଣିଷର ଆଉ ଦୁଃଖ ରହିବ ନାହିଁ ।

ଶୋଭନା ପଚାରିଲେ, କିପରି ?

କରିମ୍ ବୁଝାଇଲେ, ସେ ରଶ୍ମିର ଗୁଣ ହେଉଛି ଯଦି କୌଣସି ଜୀବନ୍ତ ପ୍ରାଣୀକୁ ରଶ୍ମି ଆଗରେ ଠିଆ କରାଯାଏ ତେବେ ମୋଟେ ପନ୍ଦର ମିନିଟ ଏକସ୍-ପୋଜର ପରେ ସେ ପ୍ରାଣୀର ଦେହ ଇମିଉନ୍ ହୋଇଯାଏ । ଅର୍ଥାତ୍ ସେ ପ୍ରାଣୀର ଦେହକୁ ଖରା, ବର୍ଷା, ଶୀତ, ବିଦ୍ୟୁତ୍ କିଛି ବାଧିବ ନାହିଁ । ସେ ଅକ୍ଳେଶରେ ଜଳନ୍ତା ନିଆଁରେ କିମ୍ବା ବରଫ ଗଦାରେ କିମ୍ବା ଘୋର ବର୍ଷା ଓ ବିଜୁଳି-ପ୍ରଭାବିତ ଯେ କୌଣସି ସ୍ଥାନରେ ପୂରା ଗୋଟିଏ ବର୍ଷ ରହିପାରେ । ଅନୁଭବଶକ୍ତି ତାର ଲୋପ ହେବ । ଏଫେକ୍ଟଟା ପରମାନେଣ୍ଟ କରିବାକୁ ସେ ଲାଗି ପଡ଼ିଛନ୍ତି । ବୋଧହୁଏ କୃତକାର୍ଯ୍ୟ ହେବେ ।

ଶୋଭନା ଖୁସି ହୋଇ କହିଲେ, ତେବେ ତ ସଭ୍ୟତାର ରୂପ ବଦଳି ଯିବ । ଯଦି ଖରା, ବର୍ଷା, ଶୀତ, ବିଜୁଳି ମଣିଷ ଦେହକୁ ନ ବାଧେ ତେବେ ମଣିଷର ଅନାବଶ୍ୟକ ଆଭରଣ ଆଉ ଲୋଡ଼ା ହେବ ନାହିଁ । ଚମତ୍କାର ! ଘର-ଦ୍ୱାର, କୋଠାବାଡ଼ି ଆବଶ୍ୟକ ହେବ ନାହିଁ । ଜଳ ସ୍ଥଳ ସବୁଠି ମଣିଷ ନିଶ୍ଚିନ୍ତରେ ବାସ କରି ପାରିବ ।

କରିମ୍ କହିଲେ, ନିଃସନ୍ଦେହରେ ।

ଐତିହାସିକ ମିତ୍ର ଦେବୀ କହିଲେ, ବାଃ, ମଣିଷ ଜାତିର ଇତିହାସ ଥରେ ବଦଳିବ । ସେଇଠୁ ଯାବତ୍‌ଚନ୍ଦ୍ରାର୍କ ଅଟକି ରହିବ ଗୋଟିଏ ସ୍ଥାନରେ । ଧନ୍ୟରେ ମଣିଷ ଜାତି ! ଧନ୍ୟ ତୋର ବୁଦ୍ଧି !

ବାବାଜୀ ଦୀର୍ଘଶ୍ୱାସ ଛାଡ଼ି କହିଲେ, ମୁଁ ବି ଦିନେ ବିଜ୍ଞାନଚର୍ଚ୍ଚା କରୁଥିଲି । ସଂସାରର ଦୁଃଖ ଜଞ୍ଜାଳ ସହି ନ ପାରି ବାଧ୍ୟ ହୋଇ ବୈରାଗ୍ୟ ଅବଲମ୍ବନ କଲି । ଦୁଷ୍ଟା, ମୁଖରା ପତ୍ନୀ, ଅନାଚାରୀ ନିଷ୍ଠୁର ପୁତ୍ର, ଅବାଧ୍ୟ କନ୍ୟା, ଦୁଃଖଦାରିଦ୍ର୍ୟ; ସ୍ନେହମୟୀ ଭଗିନୀର ମୃତ୍ୟୁ, ଅନୁଜର କୁଷ୍ଠରୋଗ; ଏଇ ସବୁ କାରଣରୁ ଗୃହ-ସଂସାର ଛାଡ଼ି ତିରିଶି ବର୍ଷ ହେଲା ମୁଁ ବନରେ ପଶିଛି । ଭଗବାନଙ୍କର ଚିନ୍ତାରେ ଜୀବନ କଟାଉଛି ।

ଶୋଭନା ପଚାରିଲେ, ଭଗବାନଙ୍କ ସଙ୍ଗେ ଦେଖା ହେଲାଣି ଭଲା ? ହସି ହସି ବାବାଜି କହିଲେ, କେହି ତାଙ୍କୁ ଆଖିରେ ଦେଖନ୍ତି ନାହିଁ । ଯିଏ ଇଚ୍ଛାକରେ ତାଙ୍କୁ ପ୍ରତି ମୁହୂର୍ତ୍ତରେ ମନରେ ଉପଲବ୍ଧି କରେ ।

ବୈଜ୍ଞାନିକ ବନ୍ଧୁଦ୍ୱୟ ଉଚ୍ଚ ହାସ୍ୟ କଲେ । କରିମ୍ କହିଲେ, ଭଗବାନ ନିଶ୍ଚିନ୍ତରେ ଚନ୍ଦ୍ରାବିଜ୍ୟରେ ଶୟନ କରନ୍ତୁ । ତାଙ୍କଠାରେ ଆମର କାମ ନାହିଁ । ଆଶା କରୁଛୁ ପଚିଶଟି ବର୍ଷ ଭିତରେ ବିଜ୍ଞାନ ପୂର୍ଣ୍ଣତା ଲାଭ କରିବ । ତାପରେ ମଣିଷ ହେବ ଅମର । ଦୁଃଖ ଦୈନ୍ୟ ରହିବ ନାହିଁ । ସେ ହେବ ନିଶ୍ଚିନ୍ତ ।

ବାବାଜି କହିଲେ, ନିଃସନ୍ଦେହରେ । ମୋର ଆଜି ଆଗ୍ରହ ହେଉଛି ପୁଣି ସମାଜକୁ ଫେରିଯିବି । କର୍ଣ୍ଣିପିଲ ଖାଇ ଶ୍ରୀମତୀ ଶୋଭନା କି ଶ୍ରୀମତୀ ମିତ୍ରା ଦେବୀଙ୍କର ପ୍ରେମରେ ପଡ଼ି ପୁଣି ନୂଆ ସଂସାର ଆରମ୍ଭ କରିବି ।

ରାଗିଯାଇ ଏକ-କଣ୍ଠରେ ଶ୍ରୀମତୀ ଦ୍ୱୟ ଚିତ୍କାର କଲେ, ନିର୍ବୋଧ ।

ବାବାଜି ଗମ୍ଭୀର ହୋଇ କହିଲେ, ରାଗନ୍ତୁ ନାହିଁ । ବୋଧହୁଏ ଆପଣ ହିଁ ଠିକ୍ ଅନୁମାନ କରୁଛନ୍ତି, ମୁଁ ନିର୍ବୋଧ । କାରଣ ଭବିଷ୍ୟତର ଦୁନିଆରେ ଆପଣମାନେ ଲୋଡ଼ା ପଡ଼ିବେ ନାହିଁ ।

ଯୋସେଫ୍ କହିଲେ—ଓ, ଆପଣଙ୍କର ଏପରି ଭାବିବାର କାରଣ ଲାବୋରେଟାରିରେ ମଣିଷ ଶିଶୁ ପ୍ରସ୍ତୁତ । ଦୁନିଆର ସବୁ ଦେଶରେ ଏବେ ଲକ୍ଷ ଲକ୍ଷ ଶିଶୁ ତିଆରି ହେଉଛନ୍ତି । ଲୋକସଂଖ୍ୟା ବଢ଼ିବା ଭୟରେ ବିଶ୍ୱ-ବିଧାନ କମିଟି ଆଇନ କରିଛନ୍ତି, କମିଟିଙ୍କର ବିନା ଅନୁମତିରେ କୌଣସି ଦେଶ ମଣିଷ ଶିଶୁ ପ୍ରସ୍ତୁତ କରି ପାରିବେ ନାହିଁ । କିନ୍ତୁ ଆଧୁନିକ ଯୁଗରେ ନାରୀ ତ ଜନନୀ ହେବାର ଯନ୍ତ୍ର ରୂପେ ଗ୍ରହଣ କରାଯାଏ ନାହିଁ । ନାରୀ ନରର ଆନନ୍ଦର ସାମଗ୍ରୀ ଓ ନର ନାରୀର ଆନନ୍ଦର ବସ୍ତୁ । ବାବାଜୀ ମହାଶୟ, ଆପଣ ଏତିକି ବୁଝିପାରୁ ନାହାନ୍ତି ?

ବାବାଜି କହିଲେ, ଠିକ୍ ବୁଝିଛି ବାବୁ । ସେଥିପାଇଁ ମୁଁ ଗ୍ରହଣ କରିନେଲି ଯେ ମୁଁ ନିର୍ବୋଧ । କ୍ଷମା କରିବେ ମିତ୍ରା ଦେବୀ, କ୍ଷମା କରନ୍ତୁ ଶ୍ରୀମତୀ ଶୋଭନା । ତେବେ, ମୋର ମନେ ହେଉଛି କଣ ଜାଣନ୍ତି ?

କରିମ ପଚାରିଲେ, କଣ ?

ବାବାଜି କହିଲେ, ନର ନାରୀକୁ ବା ନାରୀ ନରକୁ ଆଉ ଆନନ୍ଦ ଦେବ ନାହିଁ । ପୁଣି ଭାବୁଛି ନର ଓ ନାରୀ ଦୁଇଟା ସ୍ୱତନ୍ତ୍ର ଜୀବ ବୈଜ୍ଞାନିକ ଯୁଗରେ ରହି ପାରିବେ ନାହିଁ । ଏକଥା ସ୍ୱତଃସିଦ୍ଧ ।

ମୋହନ ପଚାରିଲେ, କାହିଁକି ?

ବାବାଜି କହିଲେ, ଆପଣଙ୍କର ଫୌସଲନ୍, କର୍ଣ୍ଣିପିଲ୍ ଆଉ ରହିମ୍ 'ରେ' କୃପାରୁ । ଟିଗୋଟିଏ ଜିଭରେ ଥୋଇଲେ ମଣିଷ ବଞ୍ଚିଥିବା ଯାଏ ନ ଖାଇ ନ ପିଇ ରହି ପାରିବ । ଆଉଟିକୁ ଉଦରସ୍ଥ କଲେ ମଣିଷ ନିରୋଗ ହେବ, ଚିର ଯୌବନ ପାଇବ, ଫଳତଃ ଅମର ହେବ । ରହିମ୍ ରଶ୍ମିରେ ଏକ୍ସପୋଜର୍ ନେଲେ ମଣିଷ ବଞ୍ଚିଥିବା ଯାଏ ତାର ଦେହକୁ ଖରା ବର୍ଷା ଶୀତ କାଟିବ ନାହିଁ । ନିଆଁ ତାକୁ ପୋଡ଼ି ପାରିବ ନାହିଁ, ବରଫ ତାକୁ ଶୀତଳ ଲାଗିବ ନାହିଁ, ପୁଣି

ଜଳ ତାଙ୍କୁ ବୁଡ଼ାଇ ପାରିବ ନାହିଁ, ବିଦ୍ୟୁତ ତାଙ୍କୁ ଚମକାଇ ପାରିବ ନାହିଁ। ଧନ୍ୟ ମଣିଷର ଚେଷ୍ଟା !

ମିସ୍ରଦେବୀ କହିଲେ, ବିଜ୍ଞାନ ତ ପର୍‌ଫେକ୍‌ଟ ହୋଇନାହିଁ ।

କିରମ୍ କହିଲେ, ହେବ ।

ମୋହନ କହିଲେ, ନିଶ୍ଚୟ ହେବ ।

ଯୋସେଫ୍ ଉତ୍ତେଜିତ ହୋଇ କହିଲେ, ବେଶି ଡେରି ଲାଗିବ ନାହିଁ । ବିଶ୍ୱର ବୈଜ୍ଞାନିକ ମାନେ ମନ ପ୍ରାଣ ଦେଇ ଲାଗି ପଡ଼ିଛନ୍ତି । ଆଜି ଯାହା ଅସମ୍ଭବ ଲାଗୁଛି, ଯାହା ମଣିଷର ଚିନ୍ତାର ବହିର୍ଭୂତ କାଲି ତାହା ସମ୍ଭବ ହେଉଛି । ସତେ ଏକା ଯଦି ଫୋଁସଲ୍‌ଟ, କର୍ଣ୍ଣପିଲ୍ ଓ ରହିମ୍ 'ରେ'ର ପ୍ରକ୍ରିୟା ପୂର୍ଣ୍ଣ ହୋଇପାରେ ମଣିଷର ଆଉ ଚିନ୍ତା କଣ ? ସେ ଅଜର, ଅମର ହେବ ।

ଶୋଭନା ଚିନ୍ତିତ ହୋଇ କହିଲେ, ଭଗବାନଙ୍କର ନିର୍ଜୀବ ଧାରଣା ଉଠିଆ ମଣିଷର ମନରୁ ଲିଭିବ । ମଣିଷ ହେବ ଭଗବାନ ।

ବାବାଜି କହିଲେ, ଓ ପଥର । ଶୁଣ ବୈଜ୍ଞାନିକମାନେ, ଶୁଣ ଐତିହାସିକ, ଶୁଣ ଗୋ ଦାର୍ଶନିକେ—ବିଜ୍ଞାନର ବିଜୟ ହେଉ ମଣିଷ ହେଉ ଅମର । ମଣିଷ ହେଉ ଅଜର ସୁନ୍ଦର । ମଣିଷକୁ ରୋଗ ଶୋକ ହେବ ନାହିଁ । ଦୁନିଆର ସବୁ କ୍ଷେତ ପଡ଼ିଆ ପଡ଼ିବ । ଗୃଷ କରିବା ଉପକରଣ, ଜମିକୁ ଉର୍ବର କରିବାର ସବୁ ପ୍ରକାର ଉଦ୍ୟମ ଲୋଡ଼ା ହେବ ନାହିଁ । ବିଶ୍ୱସାରା ମରୁଭୂମି ହେବ । ମଣିଷକୁ ଖରା ବର୍ଷା ଶୀତ ନିଆଁ ପବନ ଘରଦ୍ୱାର ଲୋଡ଼ା ହେବ ନାହିଁ । ମଣିଷର ଲୁଗାପଟା ଦରକାର ହେବ ନାହିଁ । ମଣିଷ ନଙ୍ଗଳା ହେବ । ଦୁନିଆ ପିଠିର ମରୁଭୂମି ଉପରେ ସେ ଗୋଟିଏ ଜାଗାରେ ପଡ଼ି ରହିବ ଠିକ୍ ଏଇ ପାହାଡ଼ ଉପରର ପଥର ପରି । ହାତ ଗୋଡ଼ ଆଖି କାନ ପାଟିର ଆଉ କାର୍ଯ୍ୟ ରହିବ ନାହିଁ । ଦୁନିଆଁରେ ସମସ୍ତେ ହେବେ ସମାନ । ବଡ଼ ସାନ, ଦୁଃଖୀ ଦରିଦ୍ର କେହି ରହିବେ ନାହିଁ । ହିଂସା ଦ୍ୱେଷ ଲୋପ ହେବ । ଦେଶ ଦେଶ ଭିତରେ ଜାତି ଜାତି ଭିତରେ କନ୍ଦଳ ଲାଗିବ ନାହିଁ । ମାରଣ ଅସ୍ତ୍ର ଆଟମ୍‌ବମ, ଉଡ଼ାଜାହାଜ ଲୋପ ହେବ । ମଣିଷ ହେବ ଦେବତା—ଅଚଳ ମୂକ ବଧିର ଅନ୍ଧ । ମଣିଷ ହେବ ଦେବତା—ଅଜର ଅମର । ସୃଷ୍ଟି କରିବାର ପ୍ରେରଣା ଲୋପ ହେବ । ମଣିଷର ସନ୍ତାନ ଲୋଡ଼ା ହେବ ନାହିଁ । ନାରୀ ସଙ୍ଗେ ମିଳନ ଏବଂ ସେଥିପାଇଁ ଉଦ୍‌ବେଗ, ଆକର୍ଷଣ ବା ପ୍ରେମର ପ୍ରବୃତ୍ତି ଲୋପ ହେବ । ନର ନାରୀର ସୁଖ ଆନନ୍ଦର ସାମଗ୍ରୀ ହେବ ନାହିଁ, କାମ୍ୟ ନାରୀ ନରର । ସୌନ୍ଦର୍ଯ୍ୟର ଧାରଣା ମନକୁ ଆସିବ ନାହିଁ କାରଣ ସୌନ୍ଦର୍ଯ୍ୟ କେବଳ ପ୍ରେମର ଆବାହକ । କାଳକ୍ରମେ ବିଜ୍ଞାନର କୃପାରୁ ମଣିଷର ମନ ବୋଲି ଗୋଟାଏ କିଛି ରହିବ ନାହିଁ । ମଣିଷ ହେବ ଅମର । ମଣିଷ ହେବ ପଥର । ଲିଙ୍ଗର ଭେଦ ରହିବ ନାହିଁ ।

ବାବାଜି ନୀରବ ହେଲେ । ଉଜ୍ଜ୍ୱଳ ଆଖି କୋଣରୁ ଝରି ଆସିଲା ଲୁହଧାର । ସମସ୍ତେ ଆଶ୍ଚର୍ଯ୍ୟ ହୋଇ ଚାହିଁ ରହିଲେ ତାଙ୍କର ମୁହଁକୁ ।

ବାବାଜି ହସିଲେ । ପୁଣି କହିଲେ, ଶୁଣ ବୈଜ୍ଞାନିକେ, ଶୁଣ ଐତିହାସିକେ, ଦାର୍ଶନିକେ—ଦୁନିଆଁର ଗୃହଅଡ଼େ ଏ ଯେଉଁ ଅଗଣିତ ପଥର ପଡ଼ିଛି, ଦିନେ ସେମାନେ ଜୀବନ୍ତ ଥିଲେ । ବିଜ୍ଞାନର ବିଜୟକେତନ ଉଡ଼ାଇ ଶେଷକୁ ଅମର ହେଲେ, ପଥର ହେଲେ । ତାଙ୍କ ଭିତରେ ଯେଉଁ ଆତ୍ମା ଥିଲା ତାର ଆଉ ସ୍ୱତନ୍ତ୍ର ବିକାଶ ସ୍ୱତନ୍ତ୍ର ଲୀଳା ଆବଶ୍ୟକ ହେଲା ନାହିଁ । ସବୁ ଆତ୍ମା, ସର୍ବବ୍ୟାପୀ ବିଶ୍ୱ-ଆତ୍ମା ଭିତରେ ମିଶି ଏକାକାର ହେଲା । ତେଣୁ ସେମାନେ ଆଜି ନିର୍ଜୀବ, ଅଥଚ, ଅମର । ସେମାନେ ଅନନ୍ତ ଅତୀତ ସଭ୍ୟ ସମାଜର ନିଦର୍ଶନ । ବିଜ୍ଞାନର ଉନ୍ନତିର ଶେଷ । ଆସ ସମସ୍ତେ ଏକ କଣ୍ଠରେ କହିବା—ବିଜ୍ଞାନର ଜୟ ହେଉ ।

ସମସ୍ତେ ଚୁପ ରହିଲେ । ବାବାଜି ପଚାରିଲେ, ଚୁପ ରହିଲ ଯେ ?

ମୋହନ କହିଲେ, ଆପଣ କ୍ଷୁଧାର୍ତ୍ତ । ଆପଣଙ୍କର ଟଫି ସଲ୍ଟ ଲୋଡ଼ା ।

ଯୋସେଫ କହିଲେ, ଆପଣ ବୃଦ୍ଧ, ରୁଗ୍ଣ । ଆପଣଙ୍କର କର୍ଣ୍ଣି ପିଲ୍ ଦରକାର ।

କରିମ୍ କହିଲେ, ଆପଣ ବସ୍ତ୍ରହୀନ । ବଣ ଜଙ୍ଗଲରେ ବୁଲୁଛନ୍ତି । ଆପଣ ଥରେ ରହିମ୍ 'ରେ' ଏକ୍ସପୋଜର ନିଅନ୍ତୁ ।

ମିତ୍ର କହିଲେ, ପଥର ଜାତିର ଇତିହାସ ଆପଣ ଜାଣନ୍ତି ନାହିଁ । ପ୍ରଫେସର୍ ଦାସଙ୍କର ଲେକ୍‌ଚର ଶୁଣନ୍ତୁ । ତା ପରେ ଲେକ୍‌ଚର ଦେବେ ।

ଶୋଭନା କହିଲେ, ଆପଣଙ୍କର ବକ୍ତୃତା ଶୁଣି ଉତ୍ତେଜନା ଦେଖି ମୋର ଆଗ୍ରହ ହେଉଛି ଆପଣଙ୍କର ପ୍ରେମରେ ପଡ଼ିବି, କିନ୍ତୁ ମୋତେ ନିଶ ଦାଢ଼ି ଘୃଣା ଲାଗେ ।

ବାବାଜି ହସିହସିକା କହିଲେ, ଦେଖୁଛି ଆପଣଙ୍କର ବିଜ୍ଞାନ କି ଇତିହାସ ଦର୍ଶନ କାହାଁରେ ବିଶ୍ୱାସ ନାହିଁ । କେବଳ ସୁଅରେ କୁଟାକାଠି ଭାସିଗଲା ପରି ଆପଣମାନେ ସମସ୍ତେ ଭାସି ଚାଲିଛନ୍ତି । ମୁଁ ଜାଣେ ବିଜ୍ଞାନ ପୂର୍ଣ୍ଣ ହେବ ନାହିଁ । ଇତିହାସ ସରିବ ନାହିଁ, ଦର୍ଶନ ସମାପ୍ତ ହେବ ନାହିଁ । ପ୍ରତି ଘଡ଼ିରେ କକ୍ଷ୍ୟଚ୍ୟୁତ ହୋଇ କେତେ ଜଗତ୍ ଜଳି ଯାଉଛି । ଆମର ଏ ପୃଥିବୀ ଦିନେ ଜଳିବ । ବେଶି ଡେରି ନାହିଁ । ଏଇ ଉଷ୍ଣପ୍ରସ୍ରବଣ ତାର ସାକ୍ଷୀ । ପୃଥିବୀର ଗୁଡି ଫାଟିବ । ହୁଏତ ବୈଜ୍ଞାନିକ ତାକୁ ଫଟାଇବ । ଭିତରର ଜଳନ୍ତା ନିଆଁରେ ସବୁ ଦେହ ଧ୍ୱଂସ—ବାଷ୍ପ—କିଛି ନାହିଁ । ହେ ବୈଜ୍ଞାନିକ ବନ୍ଧୁ ମୋର, ଅପୂର୍ଣ୍ଣତାର ଅବତାର, ବିଜ୍ଞାନର ପୂର୍ଣ୍ଣତା ପାଇଁ ଲାଗି ପଡ଼ ସୃଷ୍ଟିର ଧ୍ୱଂସ ଯାଏ । ଲେଖି ଚାଲ ଇତିହାସ । ଆଗୋ ଐତିହାସିକେ, ଅଛି ନାହିଁର ଦ୍ୱନ୍ଦ୍ୱରେ ଲିପ୍ତ ହୁଅ ! ମୋର ପ୍ରେମିକା ଦାର୍ଶନିକା, ଲାଗିପଡ଼ । ପୂର୍ଣ୍ଣତା ଆସିବ ନାହିଁ । ପୂର୍ଣ୍ଣତା ଆସିବା ପୂର୍ବରୁ ଦୁନିଆ

ହେବ ବାସ୍ତ—କିଛି ନାହିଁ । ମୋର ଏ ଅଭିଶାପ ନୁହେଁ । ମୋର ଆଶୀର୍ବାଦ । ମୁଁ ତମର ସ୍ୱରରେ ସ୍ୱର ମିଳାଇ କହିବାକୁ ଚାହେଁ, ବିଜ୍ଞାନର ଜୟ ହେଉ, ମଣିଷ ହେଉ ପଥର, ମଣିଷ ହେଉ ଅମର । ବିଜ୍ଞାନର ବିଜୟ ହେଉ, ସୃଷ୍ଟି ହେଉ ଧ୍ୱଂସ—ବାସ୍ତ—କିଛି ନାହିଁ ।

ସନ୍ଧ୍ୟା । ଅନ୍ଧାର ହୋଇ ଆସୁଛି ।

ଉତ୍ତେଜିତ ବାବାଜି ତପ୍ତ-ପାଣି ଝର କଡ଼େ କଡ଼େ ପାହାଡ଼ ଗଡ଼ାଣିରେ ନିଘଞ୍ଚ ବଣ ଭିତରେ ଲୁଚିଗଲେ ।

# ରହିବି କି ଫେରିବି

ଯିଏ ମୋର ଏଇ ଶରୀରଟିକୁ ରକ୍ତ ମାଂସ ଦେଇ ଗଢ଼ିଥିଲା, ଶୁଭ କ୍ଷଣରେ କି ଅଶୁଭ କ୍ଷଣରେ କେଜାଣି ମୋତେ ଯେ ଦୁନିଆକୁ ଆଣିଥିଲା, ବରଷକ ତଳେ ସେ ମରି ଦେହ ଗୁଡ଼ି ଚାଲିଗଲା । ତାର ବୟସ ସେତେବେଳେ ଅଠସ୍ତରି । ମୁଣ୍ଡରେ ସାମାନ୍ୟ କେତୋଟି ପାଚିଲା ବାଳ । ପାକୁଆ ପାଟି । ଗହୀରିଆ ଆଖି । ଡୋଳାରେ ପରଳ । ମୁଣ୍ଡ ଟେକିଲେ ଥରେ । ଅଣ୍ଟା ପାଖରୁ ବଙ୍କେଇ ଚାଲେ । ତଥାପି ନିଜ କାମ ସେ ନିଜେ କରେ । ଖଟଟି ଉପରେ ବସି ଆଖିରେ ଡୋରଲଗା ଚଷମା ଦେଇ ସେ ମନେ ମନେ ପଢ଼େ ସୁଧାସାର ଗୀତା । ତା ନା ଦୁର୍ଗା, ସେ ମୋ ବୋଉ ।

ଅଠସ୍ତରି ବରଷ, ପାଚିଲା ଆମ୍ବ । କେବେ ଝଡ଼ି ପଡ଼ିବ କେହି ତ ଜାଣନ୍ତି ନାହିଁ । ୧୯୦୮ ସାଲ । ଶୀତ ଦିନ । ମୁଁ ସେତେବେଳେ ଛତ୍ରପୁରରେ ଥାଏଁ । ଛଅ ଚାରି ମାସ ଆଗରୁ କଟକରୁ ଆସି ସେ ମୋ ପାଖରେ ଥିଲା । ପେଟରେ କଣ ଗୋଟାଏ ରୋଗ ହୋଇଥାଏ । ଔଷଧ ମାନୁ ନ ଥାଏ । ଭାରି କଷ୍ଟ ହୁଏ ତାକୁ ବେଳେବେଳେ । ଆତୁର ହୋଇ ଠାକୁରଙ୍କୁ ଡାକେ, ଜଣାଣ କରେ, କାହିଁକି ଆଉ କଷ୍ଟ ଦେଉଛ ଭଗବାନ ! ଉଦ୍ଧାର କର ଏ ସଂସାରରୁ ।

ବାଇଶି ବର୍ଷ ତଳେ ପାଟଣାରେ ଗଙ୍ଗା କୂଳରେ ମୋର ବାପା ମରିଥିଲେ । ସେଇ କଥା ମନେ ପକାଇ ସେ କାନ୍ଦେ । ତାଙ୍କରି ଉଦ୍ଦେଶ୍ୟରେ କହେ, ଭାରି ସୁଖୀ ତମେ । ବାଅଷଠି ବର୍ଷରେ ବସୁ ବସୁ ଟଳି ପଡ଼ିଲ । ଗଙ୍ଗାପ୍ରାପ୍ତି ହେଲ । ମୋ କପାଳେ ବିହି ଏତେ ହାନିମାନ ଲେଖିଥିଲା । ଜୀବନ ଯାଉ ନାହିଁ, ଖାଲି ଛଟପଟ ହେଉଛି । ସେ ପୁରରେ ଥାଇ ତେମେ ମୋ କଷ୍ଟ ଦେଖୁଛ ଟି ?

ହଁ, ମରଣ ସଙ୍ଗେ ସେ ଲଢ଼ିଥିଲା । ମରଣକୁ ଡାକୁଥିଲେ ବି ବଞ୍ଚିବାକୁ ତାର ଅପତ୍ତି ନ ଥିଲା । ନାତି ନାତୁଣୀ ଗୁଡ଼ିକଙ୍କ ସଙ୍ଗେ କଥା ଭାଷା ହେଲାବେଳେ ବରଷକର ସାନ ନାତିଟିକୁ କୋଳରେ ଝୁଲାଇ ହସି ହସି ତାର ମୁହଁରେ ଚୋକ ଦେଲାବେଳେ ତାର ପ୍ରାଣର ଉଲ୍ଲାସ ମୁଁ ଲକ୍ଷ୍ୟ କରିଛି । ସାନ ପିଲାଟି ତାର ନାକ କାନ ଟାଣେ । ଲମ୍ବ ନାକଟିକୁ ପାଟିରେ ପୂରାଇ ନାଲ ସରସର କରେ । ସେ ହସି ହସି ଗଡ଼ିଯାଏ । ପାଟିକରେ, ମତେ ଗିଳିବୁ କିରେ ? ଦେ, ଗିଳି ଦେ—

ଆଜି ହୁଏତ ସେ କାହା କୋଳରେ ନାତି କି ନାତୁଣୀ ହୋଇ ଖେଳୁଥିବ । କେଉଁ ଆଈର ନାକ କାନ କି ପାଚିଲା ବାଳ ଟାଣି କଲଁଳିଆ ପାଟିରେ ପୂରାଇ ନାଲ ସରସର କରୁଥିବ । କୋଡ଼ରୁ କାଖରୁ ଓହ୍ଲାଉ ନ ଥିବ । ହୋଇଥିବ କେଡ଼େ ଅଲଥଲ । ଦୁନିଆଁର ସୁଖ ଦୁଃଖ ଭଲମନ୍ଦ ଛନ୍ଦ କପଟ ଜାଣି ନ ଥିବ । ସୁଖରେ ଥିବ ।

ଭାବେ, କିଏ ଯଦି କହି ପାରନ୍ତା, କହି ଦିଅନ୍ତା, ଏଇ ଥିଲା ତୋର ମାଆ—ଏଇ କଅଁଳିଆ ଶିଶୁଟି, ଧାଇ ଯାଇ ତାକୁ ଘଡ଼ିଏ ଅନାନ୍ତି । ଯେଉଁ ଘରେଇଜରେ ସେ ଥାଉ ପଛେ, ଯାହା କୋଳରେ ଜନମି ଥାଉ, ଜାତି, ବର୍ଣ୍ଣ, ଧର୍ମ, ଭାଷା ସବୁ ଭୁଲି ମୁଁ ଧାଇଁ ଯାଆନ୍ତି ପରା ! ହଁ ଧାଇଁ ଯାଆନ୍ତି ତ । ମନରେ ଗୋଟାଏ ଦୁଃଖ ମୋର ରହି ଯାଇଛି । ବୋଉ ମଲା ବେଳକୁ ତା ପାଖରେ ମୁଁ ନ ଥିଲି । ମୋ ପାଖରେ ସେ କିଛିଦିନ ରହିଲା ପରେ ଅସ୍ଥା ଗୃହିଗଲା । ସେତେବେଳେ ମୋର ସାନଭାଇ ସେଠି ଥାଏ । ସେଠି ବି ପୁଅ ବୋହୂ, ନାତି ନାତୁଣୀ, ରୋଗର ଯନ୍ତ୍ରଣା, ଦୁଃଖ । ତାରି ଭିତରେ ଖୁସି । ଯନ୍ତ୍ରଣା । ବଞ୍ଚିବାର ଉଦ୍‌ବେଗ । ଆଶା । ଟେଲିଗ୍ରାମ୍ ପାଇ ଠିକ୍ ସମୟରେ ମୁଁ ପହଞ୍ଚି ପାରି ନ ଥିଲି । ପରଦିନ ଦଶଟା ବେଳେ ପହଞ୍ଚି ଦେଖିଲି ସେ ନାହିଁ । ଋଷିକୁଲ୍ୟା ସଙ୍ଗେ ବଡ଼ ନଈ ଯେଉଁଠି ମିଶିଛି ତାରି ଉପର ମଶାଣିରେ, ବଡ଼ ବରଗଛ ତଳେ ତାର ମଣିଷ ଦେହର ଅବଶେଷ ଗଦାଏ ପାଉଁଶ । ନିଆଁ ଲିଭିଛି । ପାଉଁଶ ତାତିଛି ।

ଦୁଇ ଭାଇ ସେଇ ପାଉଁଶ ଗଦା ପାଖରେ ମୁଣ୍ଡିଆ ମାରିଲୁ—ଏଇ ଆମ ମାଆର ଶେଷ ସ୍ମୃତି—ଗଦାଏ ପାଉଁଶ, ଦରପୋଡ଼ା କାଠ, କେଇଖଣ୍ଡି ପୋଡ଼ା ଧୋବ ଫର ଫର ହାଡ଼ । ଏଇ ଆମର ମା—ଯିଏ ଆମକୁ ଜନମ ଦେଇଥିଲା, ପାଳିଥିଲା, ହାଡ଼ ମାଉଁସର ରସ ଖୁଆଇ ଦେହରେ ପରଶ, ମନର ସରାଗ, ଆତ୍ମାର ଉଲ୍ଲାସ, ଭାବନାର ରଙ୍ଗ ଦେଇ ଯିଏ କେବଳ ଶୁଭ ମନାସିଥିଲା, ଆଉ ଆଖି ଆଗରୁ ଅନ୍ତର ହେଲେ ଯିଏ ଅଶୁଭ ସପନ ଦେଖି କାଉଳବାଉଳ ହେଉଥିଲା—ପାଞ୍ଚଟି ବାଳୁତ ପିଲା ସେ ହରେଇ ଥିଲା ବୋଲି ।

ଏଇ ଆମର ମା । ମାଟିରେ ମିଶିଲା—ଧରଣୀ ମାତାର ଦେହରେ । ଯୁଆଡ଼େ ଗୃହିଁଲେ ଧରଣୀ ମାତା ଦିଶେ କେଡ଼େ ବଡ଼—ଅସୀମ । ଧାରଣା କରି ହୁଏ ନାହିଁ ।

ମା ମୋର ଅସୀମ ନ ଥିଲେ । ସେ ଥିଲା ସସୀମ । କାହିଁ ମୋର ମାଆ ? ସସୀମ ଦେହର ବେଷ୍ଟନୀ ଭିତରେ ଯିଏ ଅସୀମ ସ୍ନେହ, ଅସରନ୍ତି କଲ୍ୟାଣ ଭରି ରଖିଥିଲା, ଉତ୍ତାପ, ଧୂଆଁ, ଆଲୋକ ହୋଇ ସେ ମିଶିଗଲା ଅନ୍ତରୀକ୍ଷରେ । ଉପରକୁ ଚାହିଁଲେ ଦୃଷ୍ଟି ଲିଭେ । ଭାବନା ହଜେ । ସସୀମ ମାଆ ମୋର ଅନନ୍ତ କଳ୍ପନାତୀତ ଶୂନ୍ୟରେହିଁ ହଜି ଯାଇଛି । ଏଇ ବିରାଟ ଶୂନ୍ୟକୁ ମାଆ ବୋଲି ଧାରଣା କରିପାରେ ନାହିଁ ।

ସେଇଥିପାଇଁ—ଧାଇଁ ଯିବି ମୋର ମାଆକୁ ଦେଖିବାକୁ । କାହା କୋଳରେ ସେ ଝୁଲୁଥିବ । ମନକୁ ମନ ହସୁଥିବ । କି ସୁନ୍ଦର କୁଲୁକୁଲିଆ ମୁହଁ । କଳା ମିଟିମିଟି ଅଖି । ତୂଳିରେ ଅଙ୍କା ସରୁ ଭ୍ରୂଲତା । ଟିକି ମୁଣ୍ଡରେ କୁଞ୍ଚ କୁଞ୍ଚିକା କଜଳ କଳା ବାଳ । ନାଲି ଟୁକୁଟୁକୁ କଅଁଳିଆ ହାତପାପୁଲି, ପାଦ । ସେଇ ମୋର ମାଆ—ସସୀମ । ପର କୋଳରେ ଝୁଲୁଛି । ପରର ପେଟରୁ ଜନମ ଲଭିଛି । ତଥାପି, ସେ ମୋର ମା । ସେ ମୋର ।

ହାତ ପାଖିବ । ଆଖିରେ ଲୁହ ଭରି କହିବ—ସବୁ କହିବ । ସତକଥା ମୁଁ ଜାଣିଛି । ଭୃଗୁ ସଂହିତା ଦେଖ । ଜାତକ ଦେଖ । ଜାଣିଲା ଶୁଣିଲା ଲୋକଙ୍କୁ ପଚାରି ବୁଝ । ଏଇ ଦେଖ, କଥା ଶୁଣି ସେ ହସୁଛି । କହିପାରୁ ନାହିଁ । ତମମାନଙ୍କ କଥା ସେ ବୁଝି ପାରୁ ନାହିଁ । ମୋ କଥା ସେ ବୁଝିଛି । ସେ ମୋ ମା । ହଅ—ମାନବ ନାହିଁ । ଯିଏ ମୋତେ ଜନମ ଦେଇଥିଲା, ଯିଏ ମତେ ମଣିଷ କରିଥିଲା, ତାଆରି ନୂଆ କଲେବରକୁ ମୁଁ ଧରିବ ।

ଯିଏ ତାକୁ ପୁଣି ଜନମ ଦେଇଛି, ଯିଏ ପୁଣି ତାକୁ ପାଶୋରି ବାଲି ପାକୁଆ ପାଟିରେ କୋଳରେ ଝୁଲାଉଛି, ସେମାନେ କାନ୍ଦି ଉଠିବେ ନାହିଁ । ନାଇଁ ସେ ଆମର ପିଲା—ଗ୍ରୀଷ୍ଟରେ ଜାକି ମୋ ମାଆର ନୂଆ କଲେବରର ଜନନୀ କାନ୍ଦି କାନ୍ଦି କହିବ, ସେ ମୋର ଝିଅ, ମୁଇଁ ତାକୁ ରକତ ମାଂସ ଦେଇ ଗଢ଼ିଛି, ମୁଇଁ ତାକୁ ଦଶମାସ ପେଟରେ ଧରି ଅନ୍ତ ଫାଡ଼ି ଜନମ ଦେଇଛି । ସେ ମୋର, ସେ ମୋର—

ସେ ମୋର । ଦୂରରୁ ବି ସେଇ ଆକୁଳ କାନ୍ଦଣା କାନରେ ମୋର ବାଜିବ । କେଡ଼େ ବିକଳ ସେ ଡାକ । ଯାହାର ହାତ ଧରି ଜୀବନ ସଙ୍ଗିନୀ କରି ଆଣିଛି, ଯାହାର କୋଳରେ ମୋର ଶିଶୁଟିମାନେ ଖେଳୁଛନ୍ତି, ଯାହାକୁ ସେ ହୁନଅଁକୁ ଆଣିଛି, ତାରି ଆଗରେ ଠିଆ ହୋଇ, କୁଆଡ଼ର କେଉଁମାନେ ହାତ ପାଖି ମାଗୁଛନ୍ତି—ପିଲାଟିମାନଙ୍କୁ—ସେ ମୋର ମା, ସେ ମୋର ବାପା—ହଅ, ହଅ— ।

ରହିବି କି ଫେରିବି ?

# ବୁଢ଼ୀ ବାୟା

ବାବୁ ସଲାମ୍ । ପଇସାଟେ ଦିଅ ।

କବାଟ ଖୋଲି ଚାହିଁଲି ତା ଆଡ଼କୁ । ଶୀତ ଦିନ । ସକାଳ । ଦୂରରେ, ଢେଉଢେଉକା ଧୂଆଁଳିଆ ପାହାଡ଼ ମଝିରେ ତପନ ଲପନ ଦେଖାଇଲେଣି । ପତଳା କୁହୁଡ଼ି ଭେଦ କରି କଅଁଳ କିରଣ, ତାର ଫୁରୁଫୁରୁ ମୁଣ୍ଡବାଳ ଉପରେ ଲାଖିଛି ଯେଉଁ ବୁନ୍ଦାବୁନ୍ଦା କାକର, ତାରି ଉପରେ ଝଟକି ଉଠୁଛି । ଆଗରେ ମୋର ଠିଆ ହୋଇଛି ବୁଢ଼ୀ ବାୟା ।

ବୁଢ଼ୀ ବାୟାକୁ ସମସ୍ତେ ଚିହ୍ନନ୍ତି, କିନ୍ତୁ ସେ କିଏ ହୁଏତ କେହି ଜାଣନ୍ତି ନାହିଁ । ବୟସ ଷାଠିଏରୁ ବେଶି ହେବ । ମୁଣ୍ଡବାଳ ବଡ଼ ବଡ଼ । ଲମ୍ବ ନିଶ । ମୁଖମଣ୍ଡଳେ ହେବ ଝଙ୍କାଳିଆ ଦାଢ଼ି । ବଡ଼ ବଡ଼ ଆଖି । ଚେପ୍‌ଟାଳିଆ ନାକ । ବଳିଲି ବଳିଲି ଦେହ ହାତ । ବାଙ୍ଗର । ତମ୍ବାଳିଆ ଦେହର ରଙ୍ଗ । ମୁଣ୍ଡରେ, କପାଳରେ, ଗାଲ ଉପରକୁ, ବାଁ ଆଖି ତଳେ କଟା ଘା ଶୁଖିଗଲେ ଯେପରି ଲମ୍ବ ଦାଗ ହୁଏ ସେପରି ଚିହ୍ନ । ଅସୁନ୍ଦର ଦିଶେ, ଭୟଙ୍କର ଦିଶେ ନାହିଁ । ନିଶ ଭିତରୁ ଧଳା ଧଳା ବିଧାଡ଼ି ଦାନ୍ତ ବେଳେ ବେଳେ ଦିଶିଯାଏ ।

ବୁଢ଼ୀ ବାୟା ତାର ଦୁନିଆଁକୁ କାନ୍ଧରେ ବୋହି ବୁଲେ । କାନ୍ଧରେ ତାର ବଡ଼ ବାହୁଙ୍ଗୀ, ଦି ପାଖ ଦଉଡ଼ିରେ ବନ୍ଧା ହୋଇଥାଏ ବୁଜୁଲା ଗୁଡ଼ିଏ । ଆଉ କାନ୍ଧରେ ବି ବାହୁଙ୍ଗୀ, ଦି ମୁଣ୍ଡରୁ ଓହଳି ଥାଏ ଦିଓଟି ଶିକା । ଗୋଟିଏ ପାଖରେ ହାଣ୍ଡି ଉପରେ ହାଣ୍ଡି ତା ଉପରେ ଘଡ଼ି, ତା ଉପରେ ପୁରୁଣା ଟିଣ ଡବା । ଶିକା ଦଉଡ଼ିରେ କନାଧଡ଼ି କି ଗୋଟେ ସରୁ ଦଉଡ଼ିରେ ଟାଣ କରି ବାନ୍ଧିଛି ଗୋଟେ ବଡ଼ ପୁଟୁଳା ମଇଳା କନାରେ । ଆରପାଖ ଶିକାରେ, କଳାକୋଚଟ ଟୋକେଇ ଉପରେ ବୋଝେ ଛିଣ୍ଡାକନା ଗୋସ୍ତାକରି ବନ୍ଧା ହୋଇଛି । ରଙ୍ଗବିରଙ୍ଗର, ଜାଲି ଜାଲିକା ଶାଢ଼ୀ ଓ ଲୁଗା, ଛିଣ୍ଡା ପ୍ୟାଣ୍ଟର ଅଂଶ । ଛିଣ୍ଡା ଲୁଗାର ପୁଡ଼ା ଉପରେ ଗୁଞ୍ଜୁଣି ଦି ଛିନମୁଠା । ଅଉ କାନ୍ଧ ବାହୁଙ୍ଗୀରୁ ଓହଳିଥିବା ପୁଡ଼ା ଗୁଡ଼ିକରେ କଣ ଅଛି କେହି ଜାଣନ୍ତି ନାହିଁ । ଶବ ଲୁଗାର ଓହଳିଥିବା କାନ ଧଡ଼ି ପଦାକୁ ଦିଶେ ।

ଗୃହ ବୋଝର ମଝିରେ ଚାଲେ ବୁଢ଼ୀ ବାୟା ଧୀରେ ଧୀରେ । ଶବ ମଇଳା ଲୁଗା ପିନ୍ଧେ । ଛିଣ୍ଡା କାମିଜ ଗଳାଇଥାଏ ଦେହରେ । ଅଣ୍ଟାରେ ଗୁଡ଼ାଇଥାଏ ଶବ ଲୁଗା କାମିଜ ତଳେ । ସେଥିରେ ବି ଗୋଟେ ଗୋଟେ ଗଣ୍ଠି, ସାନ ସାନ ପୁଡ଼ା । ବୁଢ଼ୀ ବାୟା ରାସ୍ତାକଡ଼ରେ ତାର ଦୁନିଅାର ବୋଝ କାନ୍ଧରେ ବୋହି ଧୀରେ ଧୀରେ ଚାଲେ ଏଇ ଜୟପୁର ଦାଣ୍ଡରେ । ଯିଏ ହାବୁଡ଼େ, ତା ଆଡ଼କୁ ଚାହେଁ, କହେ ବାବୁ ସଲାମ୍; ପଇସାଟିଏ ଦିଅ ! ଯିଏ ଚାଲି ଚାଲି ଯାଏ, ତା ଲେଖାରେ

ସେଇମାନେ ବାବୁ, ସେଇମାନେ ସଲାମ୍ ପାଇବାର ଉପଯୁକ୍ତ, କାରଣ ସେମାନଙ୍କର ମନ ତଟେ, ପଇସାଟିଏ ଦିଅନ୍ତି । ଜୟପୁରର ବଡ଼ଦାଣ୍ଡରେ ଯେଉଁମାନେ ମଟର ଛୁଟାଇ ଧୂଳି ଉଡ଼ାଇ ଛୁଟି ପଳାନ୍ତି, ସାଇକଲ ଚଢ଼ି ଟିଂ ଟିଂ ଘଣ୍ଟି ବଜାଇ ଯାଆନ୍ତି, ସେମାନେ ବି ତ ବାବୁ; ହେଲେ ବୁଟ୍ଟୁ ବାୟାର ସଲାମ୍ ତାଙ୍କ ପାଖରେ ପହଞ୍ଚେ ନାହିଁ । ପଇସାଟିଏ ତାଙ୍କଠାରୁ ମିଳେ ନାହିଁ । ମିଳେ ସଡ଼କର କଅଁଳ ଧୂଳି, ନାଲିଆ ଧୂଳି । ଶୁଖିଲା ରକତ ଗୁଣ୍ଡହୋଇ ଯେପରି ଉଡ଼ିଆସେ, ଜୟପୁରର ଗ୍ରୀଭ ଚରି ଯେଉଁ ନାଲି ନାଲି ଗାର ପଡ଼ିଛି ତାରି ଦେହରେ ।

ସେଇ ଗାଁର ସେଇ ନାଲି ସଡ଼କର କଡ଼େ କଡ଼େ ଗ୍ଲେ ବୁଟ୍ଟୁ ବାୟା— ସବୁ ମଣିଷଠୁଁ ସାନ; କାରଣ ସେ ସମସ୍ତଙ୍କୁ ସଲାମ୍ ଦିଏ, ସମସ୍ତଙ୍କୁ ମାଗେ । ସବୁ ମଣିଷ ରାଜା, ମହାରାଜା, ସ୍ୱାମୀ, ମହାସ୍ୱାମୀ, ମନ୍ତ୍ରୀ, ମହାମନ୍ତ୍ରୀ, ମନ୍ତ୍ରୀଙ୍କଠାରୁ ବଡ଼ । ସେ ସମ୍ରାଟ୍, ସେ ବେ-ପରୱା, ସେ ଶତ୍ରୁହୀନ । ସେ ଦୁନିଆକୁ ଅନୁସରଣ କରେ ନାହିଁ । ତାର ଦୁନିଆ ତା ଆଗରେ ଗ୍ଲେ, ପଛରେ ଗୋଡ଼ାଏ । ଦେହରୁ ଝୁଲେ, କାନ୍ଧରେ ବୋଝ ହୁଏ, ମୁଣ୍ଡରେ ବୋଝ ହୁଏ ନାହିଁ । ତୁଣ୍ଡରୁ ବାହାରେ ହୃଦୟର ସରଳ ନିଷ୍କପଟ ସମ୍ମାନସୂଚକ ଧ୍ୱନି—ବାବୁ ସଲାମ୍ । ହାତ ପାତେ ନାହିଁ ସ୍ୱର ପାତେ । ବଞ୍ଚି ରହିବାରେ ମଣିଷର ଯେଉଁ ଆଗ୍ରହ, ଯେଉଁ ଅଧିକାର, ଯେଉଁ ଉଦ୍ୟମ ତାଆରି ଡାକ ଜୀବନର ସ୍ପନ୍ଦନ—ପଇସାଟିଏ ଦିଅ ।

ଆଗରେ ଠିଆ ହୋଇଛି ବୁଟ୍ଟୁ ବାୟା । କପାଳ ଉପରେ ନୂଆ ଦାଗଟିଏ, ତିନି ଆଙ୍ଗୁଳି ଲମ୍ବ ଅଧ ଆଙ୍ଗୁଳି ଚଉଡ଼ା । ସଦ୍ୟ ଘା । ଭ୍ରୂଲତା ଉପରେ ରକ୍ତର ଦାଗ ଲାଗିଛି, ଶୁଖିଲା ରକ୍ତ । ପଚାରିବାକୁ ମନ ହେଲା । ସେ କଣ ଉତ୍ତର ଦେବ ? ଉତ୍ତର ଦିଏ ନାହିଁ ବୋଲି ତ ତାକୁ କେନ୍ଦ୍ରକରି କେତେ ପ୍ରବାଦ ଗଢ଼ି ଗ୍ଲିଛି । କେଉଁଟା ସତ କେଉଁଟା ମିଛ କିଏ ଜାଣେ ?

କିଏ କହେ ବୁଟ୍ଟୁ ବାୟା ଖୁଣୀ । ଯୌବନରେ ସେ ତା ସ୍ତ୍ରୀ ଓ ଦିଓଟି ପିଲାଙ୍କୁ ହତ୍ୟା କରି ପ୍ରାଣ ବଞ୍ଚାଇବାକୁ ଗୁପ୍ତ ବେଶ ଧରି ବୁଲୁଛି । ବେଳେବେଳେ ଅନୁତାପ କରେ । ମନେ ପକାଇ କାନ୍ଦେ । ମନକୁ ମନ ଭୁଟ୍‌ଭୁଟ୍ ହୁଏ । ମାଗି ଆଣିଲା ଅଇଁଠା ଭାତପୁଞ୍ଜିକ ଅଣଅଡ଼ିଆ ଗଛ ମୂଳରେ, ତା ପଲମରେ ଖାଉ ଖାଉ ହାତ ବନ୍ଦ କରି ବସେ । ଡବଡବ କରି ଆଗକୁ ଗ୍ହେଁ । କାନ୍ଦ ପକାଏ । ଅଧାଖିଆ ଭାତ ତଳେ କୁଢ଼େଇ ଦେଇ ଉଠିଆସେ । ଦୁଇ କାନ୍ଧରେ ଦୁଇ ବାହୁଙ୍ଗୀ ଧରି ଗ୍ଲେ ଆଗକୁ । ପ୍ରଥମେ ଯାହାକୁ ଦେଖେ କହେ, ବାବୁ ସଲାମ୍ । ସ୍ତ୍ରୀ ଲୋକ ଦେଖିଲେ, ଅମ୍ମା ସଲାମ୍ ।

ସେ ଖୁଣୀ, ସେ ଅନୁତପ୍ତ । ତିନି ପୁରରେ ତାକୁ ଠାବ ନାହିଁ । ସେଇଥି ପାଇଁ ସେ ତୁନି ରହେ । କାହାକୁ କିଛି କହେ ନାହିଁ । ହୁଏ ତ ଗତ କଥା ଭାବି ସେ ପାଗଳ ହୋଇଛି—ମୂକ ହୋଇଛି ।

କିଏ କହେ ବୁଟୁ ବାୟା ସାମାନ୍ୟ ଲୋକ ନୁହେଁ । ସେ ଯୋଗୀ, ମହାଯୋଗୀ । ସବୁବେଳେ ସେ ଯୋଗ କରୁଥାଏ, ବସିଲା ବେଳେ, ଠିଆହେଲା ବେଳେ, ଗୁଲିଲା ବେଳେ । ସବୁ ଠାକୁର ତା ଆଗକୁ ଆସନ୍ତି । ହାବେଲା ବେଳେ କଥାଭାଷା ହୁଅନ୍ତି । ସେ ଦେଖିପାରେ, ଆଉ କେହି ଦେଖିପାରେ ନାହିଁ । ସେଇଥି ପାଇଁ ସେ ଭୁଟ୍ ଭୁଟ୍ ହୁଏ । ଦୁନିଆର ଭଲ ମନ୍ଦ କଥା, ପାପ ପୁଣ୍ୟ, ନ୍ୟାୟ ଅନ୍ୟାୟ କଥା ସବୁ କହେ । ଠାକୁର ମାନଙ୍କର ଗୁଇନ୍ଦା ପୋଲିସ । ଯାହା ଦେଖେ, ଯାହା ଶୁଣେ, ସବୁ ଯାଇ କହେ, ଜାଣେ ।

ସେ ଯୋଗୀ । ସେଇଥିପାଇଁ ତାକୁ ଖରା ବରଷା ଶୀତ ବାଧେ ନାହିଁ । ମାଡ଼ଗାଳି ତାକୁ କାଟେ ନାହିଁ । ସେ ଭାରି ଜଣେ !

ପୁଣି କିଏ କହେ—ଓଃ, ଅନେକ କଥା । ମଣିଷର ଉର୍ବର ମୁଣ୍ଡ ଯେତେ ଗଳ୍ପ ଗଢ଼ିପାରେ, ମଣିଷ ଯାହା ଅସମ୍ଭବ ମଣେ ଅଥଚ ବିଶ୍ୱାସ କରିବାକୁ ଭଲପାଏ, ଶୁଣିବାକୁ ଖୁସି ଲାଗେ, କହିବାକୁ ସୁଖ ପାଏ । କହିବାରେ ବାଧା ନାହିଁ । ବୁଟୁ ବାୟା ନିଜେ ଶୁଣେ ନାହିଁ । ଶୁଣିଲେ ବି ପ୍ରତିବାଦ କରେ ନାହିଁ । ଭଲ ମନ୍ଦ, ସାର ଅସାର ତା ପାଖରେ ସବୁ ସମାନ । ଦିଅ ନ ଦିଅ ତୁମେ ସମସ୍ତେ ତାର ବାବୁ । ସମସ୍ତଙ୍କଠି ତାର ଅଧିକାର । ସମସ୍ତଙ୍କୁ ସେ ମାଗେ, ଶୁଣ ନ ଶୁଣ, ଗ୍ରହଣ କର କି ନ କର, ସେ ଯାଚି ଯାଚି ସଲାମ୍ ଦିଏ । ସେ କଣ ମୁସଲମାନ ?

ହିନ୍ଦୁ କି ମୁସଲମାନ ସେ କଥା ବି କେହି ଠିକ୍ କରି କହିପାରନ୍ତି ନାହିଁ । ସେ କେବେ କେଉଁ ଦେବତାର ନାମ ଧରେ ନାହିଁ । କେହି କେହି କହନ୍ତି ତାର ଗୋଟାଏ ଭାଇ ଅଛି କୋରାପୁଟ ରାଜ୍ୟର କେଉଁ ଦୂର ଗାଁରେ । ଜାତିରେ ଡମ୍ବ । ଗୃହବାସ ଅଛି । ପିଲାକୁଟୁମ୍ବ ଧରି ଘର କରୁଛି । ବୁଟୁବାୟା ମାଗିଖାଏ । ନିତିଦେ ପଇସା ଯାହା ପାଏ ସଞ୍ଚି ରଖେ । ନିତି ଗଣେ, ଅନେକ ଥର । ଯିଏ ପଗୃରେ କେତେ ହେଲା—ସେ କହେ ଏତେ ଟଙ୍କା ଏତେଣା ଏତେ ପଇସା । ଦେଖାଇବାକୁ କହିଲେ ଅଣ୍ଟାରୁ କାଢ଼େ ଛଅଟି ପୁଡ଼ା । କେଡ଼େ ଯତ୍ନରେ, ସାବଧାନତାରେ ବନ୍ଧା ଗୋଟି ଗୋଟି କରି ପୁଡ଼ା ଖୋଲେ । ଗଣି ପ୍ରମାଣ ଦିଏ—ତା ହିସାବ ଠିକ୍ । ପଇସାଟିଏ ବି କମ୍ ବେଶି ହୁଏ ନାହିଁ । ପୁଣି ଯତ୍ନ କରି ବାନ୍ଧି ଅଣ୍ଟାରେ ଝୁଲାଏ ।

ଏତେ ଧନ କଣ କରିବୁରେ ବୁଟୁ ?

ଜବାବ ଦିଏ ନାହିଁ । କଣ ସେ କରେ ଲୋକେ ଜାଣନ୍ତି । ଯେଉଁଦିନ ଭାତ କି ପିଠା କି ଆଉ କିଛି ନିଜ ମନକୁ କେହି ତାକୁ ଖାଇବାକୁ ନ ଦିଅନ୍ତି, ସେ ହୋଟେଲକୁ ଯାଏ । ପଦାରେ ବସି ଖାଇବାକୁ ମାଗେ । ପଇସା ଗଣି ଦିଏ । ଦରଦାମ କରେ ନାହିଁ, କେତେ ହେଲା ପଗୃରେ ନାହିଁ । ହୋଟେଲବାଲା ମୁହଁରୁ ଯେତିକି ବାହାରେ ସେ ଗଣିଦିଏ । କେହି ତାକୁ ଠକେ ନାହିଁ । ଟଙ୍କାକର

ପଇସା ହେଲେ ଦୋକାନକୁ ଯାଇ ଟଙ୍କା ଭଙ୍ଗେଇ ରଖେ । ନୋଟ୍ ଛୁଏଁ ନାହିଁ ।

ବୁଢ଼ୀ ବାୟାର ପାଣି କମେ । ସେ ପୁଣି ବାହାର ପଡ଼େ ସଂଗ୍ରହ କରିବାକୁ । ସଲାମ୍ ବକେ, ପଇସା ଅଣେ । ବୁଢ଼ୀ ବାୟାର ପାଣି ବଢ଼େ । ଯିଏ ପଗୃରେ ତାକୁ ସେ କହେ । ଯିଏ ଦେଖିବାକୁ ଗୃହେଁ ତାକୁ ସେ ଖୋଲି ଦେଖାଏ । ଦେଲେ ନଏ, ଖୁସି ହୁଏ ନାହିଁ । କଲ୍ୟାଣ କରେ ନାହିଁ । ଧନ୍ୟବାଦ ବି ଦଏ ନାହିଁ । ନ ଦେଲେ ତାର ଦୁଃଖ ନାହିଁ । ଗୃଲିଗଲେ ଅନ୍ୟ ଭିକାରୀଙ୍କ ପରି ପଛରେ ଗୋଡ଼ାଇ ଅଳି କରେ ନାହିଁ, ବିରକ୍ତ କରେ ନାହିଁ । ନିଜର ହୀନପଣ ଦେଖାଇ ହାତ ପାଞ୍ଚ ଚିତ୍କାର କରେ ନାହିଁ—ହି ଦିନ ହେଲା ପେଟରେ ଦାନା ପଡ଼ି ନାହିଁ, ବାବୁ ଦିଅ, ଧର୍ମ କର ।

କେହି ମାଗିଲେ ବୁଢ଼ୀ ବାୟା ପଇସାଟିଏ ଦିଏ ନାହିଁ । ମୋଟେ ଶୁଣେ ନାହିଁ । ଉତ୍ତର ଦିଏ ନାହିଁ । ହୁଏ ତ ସେ ପରିହାସ ମଣେ । ତାକୁ ଦେଖିଲେ କୁକୁର ଗୋଡ଼ାନ୍ତି ନାହିଁ । ସହରର ସବୁ ବୁଲା କୁକୁର ତ ତାର ଚିହ୍ନାପରିଚ । ବେଳେ ବେଳେ ଏକାଠି ଖାଆନ୍ତି, ଏକାଠି ବି ଶୁଅନ୍ତି । ସହରର ପିଲାଏ ବି ତା ପଛରେ ଗୋଡ଼ାଇ ପାଟି କରନ୍ତି ନାହିଁ କି ଢେଲା ପକାନ୍ତି ନାହିଁ । କେହି ତାକୁ ଗାଳି ଦେଲେ କି ମାଡ଼ ମାରିଲେ ସେ ଖାଲି ମୁହଁ ବୁଲାଇ ଅନାଏଁ । ତା ପାଟିରୁ ବଚନ ବାହାରେ ନାହିଁ । ମୁହଁରେ ରାଗ ରୋଷର ଚିହ୍ନ ଦିଶେ ନାହିଁ । ଆଗକୁ ଗୃଲେ ।

ଏଇ ବୁଢ଼ୀ ବାୟା ଠିଆ ହୋଇଛି । ସକାଳର ପାତଳ କୁହୁଡ଼ି, କଅଁଳ ଖରା । ମୁଣ୍ଡରେ କଣ୍ଠା ଚିହ୍ନ । ସଲାମ୍ ନିଦ ଦେଉଛି । ମାଗୁଛି ପଇସାଟିଏ ।

ପଗୃରିଲି, କେତେ ହେଲାରେ ?

ସାତଶ ଦି ପଇସା ।

କେତେ ?

ସାତଶ ଦି ପଇସା ।

ସନ୍ଦେହ କରିବାର କାରଣ ନାହିଁ । ଅନେକ ଥର ପରୀକ୍ଷା କରିଛି । ସେ ମିଛ କହେ ନାହିଁ । ଭୁଲ କରେ ନାହିଁ । ଦୁଇଦିନ ତଳେ କହିଥିଲା ସାତଟଙ୍କା ଦଶଅଣା ଛଅପଇସା । ଆଜି କମିଲା କାହିଁକି ? ସତେ କଣ ଲୋକଙ୍କ କଥା ସତ ? ତାର ଭାଇଟାଏ ଅଛି, ବେଳେ ବେଳେ ଆସୁଛି, ଆଉ ବୁଢ଼ୀ ଯାହା ସାଇତି ରଖିଛି ତାକୁ ଦେଇ ଦେଉଛି ? ବୁଢ଼ୀର ଏ ରୂପ, ଏ ଭେକ ରୋଜଗାରର ଫନ୍ଦି ?

ପଗୃରିଲି, ଏତେ ଟଙ୍କା ରଖିଥିଲୁ କଣ କଲୁରେ ?

ନେଇଗଲା ।

କିଏ, ତୋ ଭାଇ ?
ଗାଡ଼ିରେ ପିଟିଦେଲା, ନେଇଗଲା ।
କିଏ ନେଲାରେ ?
ପିଟିଦେଲା ନେଇଗଲା ।
ଆରେ କିଏ ନେଲା ?
ନେଇଗଲା । ସଲାମ୍ ବାବୁ, ପଇସାଟିଏ ଦିଅ ।
କିଏ ନେଲା ନ କହିଲେ ପଇସା ଦେବି ନାହିଁ ।
ପିଟିଦେଲା, ନେଇଗଲା, ଗାଡ଼ିରେ । ପିଟିଦେଲା—

ବୁଢ଼ୀ-ବାୟାଣୀ ହାତ ଟେକିଲା । ଆଙ୍ଗୁଠିରେ କପାଳ ଉପରେ ସଦ୍ୟ ଘାଟିକୁ ଦେଖାଇ ଦେଲା । ମୁଖରେ ଦୁଃଖଯନ୍ତ୍ରଣାର କି ନୈରାଶ୍ୟର ଭାବ ନାହିଁ । ସବୁଦିନ ପରି ତାର ମୁହଁଟା ଗମ୍ଭୀର । ଦୃଷ୍ଟି ଉଦ୍ଦେଶ୍ୟହୀନ । ଉକାଣ୍ଠାର ଆକୁଳ ବ୍ୟାକୁଳ ଭାବ ସେ ଦୃଷ୍ଟିରେ ନାହିଁ । ସଦ୍ୟ ଘାଆର ଦୁଇପାଖେ, ତଳେ ଉପରେ ଆହୁରି ଅନେକ ଦାଗ । ସେଗୁଡ଼ିକ ବି ଦିନେ କେବେ ସଜ ଘା ହୋଇଥିଲା । ସେ ଗୁଡ଼ିକରୁ ବି ରକ୍ତର ଧାର ବହିଥିଲା । ବୁଢ଼ୀର ସଞ୍ଚିତ ଧନ ଅପହରଣ କରି ପୁଣି ନୂଆ କରି ମୂଳରୁ ଗଣି ପଇସା ସଞ୍ଚିବାକୁ ପ୍ରେରଣା ଦେଇଥିବ ସେ ସବୁ ଦାଗର ସୃଷ୍ଟି କର୍ତ୍ତା ।

ବୁଢ଼ୀ-ବାୟାଣୀର ସେଥିକି ଭାବନା ନାହିଁ । କପାଳରେ ଘା ଶୁଖି ନାହିଁ— ପୋଡ଼ୁଛି ବୋଲି ତାର ମନେଅଛି । ଘା ଶୁଖିବ । କପାଳରେ ଚିହ୍ନର ସଂଖ୍ୟା ଗୋଟିଏ ବଢ଼ିବ । ତାର ସଞ୍ଚିତ ଧନର ପରିମାଣ ବି ବଢ଼ିବ ଦିନକୁ ଦିନ, ଆଉ ଗୋଟିଏ ସଜ ଘାଆକୁ ନିମନ୍ତ୍ରଣ କରିବାକୁ ।

ବାବୁ ସଲାମ୍, ପଇସାଟେ ଦିଅ ।

ଆଖି ଫେରାଇଲି ପୁଣି ତାର ମୁହଁକୁ । ଶୀତ ଦିନ, କୁହୁଡ଼ିଆ ସକାଳ । ହାଡ଼ଥରା ମାଲୁଅ ସକାଳ । ଦେହ ଥରୁଥିଲା । ମନ ବି ଥରିଗଲା ।

# ପ୍ରେମରାଜକାହାଣୀ

ଲୁଚି ଲୁଚି ସେ ଦେଖେ—କିଶୋର । କିଛି ନ ଜାଣିଲା ପରି କିଛି ନ ବୁଝିଲା ପରି ସେ ଦେଖେ । ସଞ୍ଜେ ଓ ସକାଳେ । ଟେବୁଲ ପାଖରେ ସେ ଏକୁଟିଆ ବସିଥାଏ ତନ୍ମୟ ହୋଇ । ଟେବୁଲ ଉପରେ କେତେ ବହି, କେତେ ଫାଇଲ ଗଦା ହୋଇଥାଏ । ସେ କାମ କରେ । ବହି ପଢ଼େ । ଗଳ୍ପ କବିତା ଲେଖେ, ଆଉ ବେଳେ ବେଳେ ମଥା ଟେକି ଚାହେଁ ପଦାକୁ ।

ବଡ଼ ଝରକାରେ ସବୁଜ ଫୁଲପକା ରେଶମୀ ପରଦା । ସକାଳେ ଓ ସଞ୍ଜରେ ପରଦାର ଦୁଇଟି କାନ ଭୁଇ ଅଡ଼କୁ ଟାଣି ଦିଏ । ମଝି ଫାଙ୍କରେ ଆଲୁଅ ଆସେ । ପବନ ଆସେ । ଧୂଳି ଆସେ । ତା'ଅର ସାଥିରେ ଆସେ ଅଛ ଜଣାଶୁଣା, ଅଛ ପରିଚିତ, ନାଛବନଆଁ ଛବିର ଧାରଣା ।

କିଶୋର ସବୁ ଦେଖେ । ଷ୍ଟେଟ ରାସ୍ତା ଉପରେ ଗଳ୍ପ ଅଇଲ୍ଲ ଲୋକ କଥା ଭାଷା ହୋଇ ଯାଉଛନ୍ତି । ବିଭିନ୍ନ ଭାଷା—ଓଡ଼ିଆ, ତେଲଙ୍ଗା, ବେଳେ ବେଳେ ହିନ୍ଦୀ, କଦବା କେମିତି ଇଂରାଜୀ । ପୁରୁଷ, ସ୍ତ୍ରୀ, ପିଲା । ଖୁସିଗପ, ବେପାର ବଣିଜ କଥା, ହସ, ଝଟାପଟା କଳିଆ, ଥଟାତାମସା, ବିକଳ କାନ୍ଦଣା, ଭିକାରୀର ଡାକ, ପାଗଳାର କୁହାଟ । ସବୁ ଜୀବନର ସୂଚନା, ବଞ୍ଚି ରହିବା ପାଇଁ ଉଦ୍ୟମ, ସୁଖ ଓ ଆନନ୍ଦ ପାଇଁ ଉହାଳ ବିକଳ ଭାବ । କିଶୋର ଦେଖେ, ପରଦା ଫାଙ୍କରେ ରାସ୍ତାର ଯେଉଁ ଅଂଶଟି ଦିଶେ ଅଖିକ । ଏ ଦେଖା ଲୁଗୁଚୁପା ନୁହେଁ, ସିଧା ସଳଖ—ଅଭ୍ୟାସଗତ, ଉଦ୍ଦେଶ୍ୟହୀନ । ମୁହୂର୍ତ୍ତେ ଚାହେଁ, ଆଖି ଫେରାଏ । ଫାଇଲ ଉପରେ କାମ କରେ । ଅଧା କବିତାର ପଦ ଯୋଡ଼େ । ଅଧା ଗଳ୍ପକୁ ଆଗକୁ ଠେଲେ ।

ବଳଦ ଟାଙ୍ଗ କେଁକଟର ହୋଇ ଝିମେଇ ଝିମେଇ ଚାଲେ । ପଛରୁ ହେ, ହେ, ଡାକ ଛୁଟି ଆସେ ଗୋଟିକିଆ ଘୋଡ଼ା ଲଗା ଝଟ୍‌କା । ଆଗରୁ ଟିଣ୍ ଟିଣ୍ ବେଲ୍ ବଜାଇ ଛୁଟିଆସେ ସାଇକଲ । ଏ ପାଖରୁ ସେ ପାଖରୁ ଧାଇଁଆସେ ମଟର ଗାଡ଼ି, ମାଲ ବୋଝେଇ ଟ୍ରକ୍ । ଝରକାରେ ଟଙ୍ଗା ହୋଇଥିବା ଦି ଫାଳିଆ ପରଦା ବାଟେ ପିଚୁ ରାସ୍ତାର ଯେଉଁ ପରୁଶ କି ଷାଠିଏ ହାତ ଦିଶେ ତା'ଅର ଉପରେ ସବୁ ଚାଲିଯାଏ । ରାସ୍ତା ହୁଏ ଶୂନସାନ—ମୁହୂର୍ତ୍ତେ । ବାଜା ବଜେଇ ଅସୁଛନ୍ତି ଦଳେ ଲୋକ । ହାତରେ ପ୍ଲାକାର୍ଡ । ଭଲ ସିନେମା ଆସିଛି । ଚାଲିଗଲେ । ପରିବା ବିକାଳି, ମାଛବାଲି—ଡାକ ଛାଡ଼ୁଛନ୍ତି । ଖବର କାଗଜ ବିକେ ଯେଉଁ ଟୋକାଟି, ଧାଇଁଛି, ପାଟିରୁ ବାହାରୁଛି—ପୂର୍ବ ବଙ୍ଗର ଶରଣାର୍ଥୀ—ଚାଲିଗଲା ।

କିଶୋର ଅଳସ ଅଖିରେ ଚାହେଁ ପଦାକୁ, ଦୃଷ୍ଟି ଫେରାଏ । କାମରେ ମନ ଦିଏ । ଅଭ୍ୟାସଗତ ଅର୍ଥହୀନ ଚାହାଣୀ, ବୈରାଗ୍ୟଚାହାଣୀ ନୁହେଁ ।

ପଲେ ଗୋରୁ ହମ୍ବାଳି ଛାଡ଼ି ଚାଲିଛନ୍ତି । ଜଣକୁ ଜଣେ ମାରି ଗୋଡ଼ଉଛି । ବୁଢ଼ୀଟିଏ ଡରି ଡରି ଝରକା ସାମନା ରାସ୍ତା ସେପାଖ ଏକମହଲା କୋଠାର ପିଣ୍ଡା ଉପରକୁ ଉଠି ଯାଉଛି । ପଞ୍ଚାଏ କୁକୁର ଭୁକି ଭୁକି ଧାଇଁଛନ୍ତି । ପଛରେ ଛୁଟିଛନ୍ତି ଦି ଚାରୋଟି ପିଲା । ହାତରେ ଠେକା, ତୁଣ୍ଡରେ 'ଧଃ ଧଃ' । ଚାଲିଗଲେ ଦଳେ ସ୍ତ୍ରୀଲୋକ ସବୁ ବୟସର । ଅଣ୍ଟାରେ ଲୁଗା ଭିଡ଼ିଛନ୍ତି । ମୁଣ୍ଡଟିମାନ ଛକ୍‌କଣ କରି ବାନ୍ଧିଛନ୍ତି । ହାତରେ ଟୋକେଇ । ଚାଲିଲେ କାମକୁ ହସର ଲହରୀ ଛୁଟାଇ, ସକାଳେ । ଫେରିଲେ କାମରୁ—ମଇଳା ଅପନା କ୍ଳାନ୍ତ, ମୁହଁସଞ୍ଜରେ । କିଶୋର

ଚାହେଁ, ଏ ମୁହଁରୁ ସେ ମୁହଁକୁ ଉଡେ଼ ଦୃଷ୍ଟି । ଏ ଦେହରୁ ସେ ଦେହକୁ କୁଦାମାରେ ଭାବନା । ସେଇଟି ଷୋଡ଼ଶୀ; କିନ୍ତୁ ଆରକ ସୁନ୍ଦର । ହେଲେ କଅଣ ହେବ, ସେ ପାଖରେ ଯେ ହସି ହସି ଯାଉଛି, ତାର ସ୍ୱାସ୍ଥ୍ୟଟି ଚମତ୍କାର । ମୁହଁରେ ଲାବଣ୍ୟ ·· । ଚାଲିଗଲେ ।

କିଶୋରର ଦୃଷ୍ଟି—ଉଦ୍ଦେଶ୍ୟହୀନ ହେଲେ ବି ଅର୍ଥହୀନ ନୁହେଁ । ଚେ଼ବ-ଗୃହିଣୀ ନୁହେଁ କିନ୍ତୁ ସହଜ ଦୃଷ୍ଟିକୁ ଅଜଣା ଆଗ୍ରହ ରଙ୍ଗ ଦେଇଥିଲା । କିଶୋର ଦୃଷ୍ଟି ଫେରିଆଇଲା ଟେବୁଲ ଉପରକୁ । ମନ କିନ୍ତୁ ଫେରିଲା ନାହିଁ । ଅଜଣା ଛବିଲାର ପଛେ ପଛେ ଧାଇଁ ଯାଇଥିଲା ଖଣ୍ଡେ ଦୂର ।

ପରଦାର ଫାଙ୍କ ବାଟେ ଦିଶେ ସୁନୀଳ ଆକାଶରୁ ଖଣ୍ଡେ । ଆକାଶ ଉପରେ ଭାସି ଯାଉଥାଏ ଯେଉଁ ଖଣ୍ଡେ ଖଣ୍ଡେ ବାଦଲ—କେତେ ଆକାର, କେତେ ରଙ୍ଗ । ସୂର୍ଯ୍ୟ ଦିଶେ, ଚନ୍ଦ୍ର ଦିଶେ, ନକ୍ଷତ୍ରମାନେ ଦିଶନ୍ତି । ରାସ୍ତା କଡ଼ ଖମ୍ବର ଗୋଟିଏ ବିଜୁଳି ଆଲୁଅ ବି ଦିଶେ । ରାସ୍ତା ସେପାଖ ଘର ଧାଡ଼ି । ତା ପଛରେ ଡେଙ୍ଗା ଡେଙ୍ଗା କେଇଟି ନଡ଼ିଆଗଛ । ପବନରେ ଦୋହଲେ । ଗଛ ଉପରେ ମାଙ୍କଡ଼ । ବାହୁଙ୍ଗା ଉପରେ ଚଢ଼େଇ !

ସମୁଦ୍ର ଦିଶେ ନାହିଁ । ଦୂରରୁ ତାର ଗର୍ଜନ ଶୁଭେ । ପାଖରୁ ଶୁଭେ କାଉର ରଡ଼ି । ପଲ ପଲ ଘରଚଟିଆଙ୍କର ଚିଁ, ଚିଁ । ଘର ଭିତରୁ ଶୁଭେ ପିଲାଙ୍କର କାନ୍ଦଣା, ପାଠ ପଢ଼ିବାର ସ୍ୱର, ଗୃହିଣୀଙ୍କର ଗର୍ଜ୍ଜନ । ନିଜ ଭାଗ୍ୟକୁ ଅଭିଶାପ ଦେବାର କାନ୍ଦୁଣିମାନ୍ଦୁଣି ସ୍ୱର ।

ଏ ସବୁ କିଶୋରର ଅତି ପରିଚିତ । ସବୁ ତାର ଦେହସହା ହୋଇଛି । ନିତିଦିନିଆ ଅଭ୍ୟାସ, ଜୀବନର ଛନ୍ଦ । ସେ ବ୍ୟସ୍ତ ହୁଏ ନାହିଁ, ଦୁଃଖ କରେ ନାହିଁ । କାର୍ଯ୍ୟରେ ତାର ବ୍ୟାଘାତ ଘଟେ ନାହିଁ । ଫାଇଲ କାମ ଭଲରେ ଚାଲେ । କବିତାର ପଦ ମିଳେ । ଗଳ୍ପ ସମ୍ପୂର୍ଣ୍ଣ ହୁଏ । ତାହାରି ଭିତରେ କେହି କେହି ବାହାରର ଲୋକ ବି ଆସି ପହଞ୍ଚିଛନ୍ତି । ରାଜନୀତି, ସାହିତ୍ୟ, ପାଗଯୋଗ, ବିଜ୍ଞାନ, ପରଘରର ଚର୍ଚ୍ଚା ଏମିତି କେତେ କଥା ପଡ଼େ । ଭଦ୍ରଲୋକ ବିଦାୟ ହୁଅନ୍ତି ।

ମଝି କବାଟ ଖୋଲି ଗୃହିଣୀ ମୁଣ୍ଡ ଗଳାଇ ଆରମ୍ଭ କରନ୍ତି, ହାଇହୋ ଶୁଣିଲଣି—ସେ ବି ଅନେକ କଥା—ଚାଉଳ, ଡାଲି, ଟଙ୍କାପଇସା, ଲୁଗା, ଗହଣା, ପିଲାଙ୍କ ପାଠ, ସାନ ପିଲାଙ୍କ ଜ୍ୱରଟା, କୌଣସି ଆତ୍ମୀୟଙ୍କ ବିରୁଦ୍ଧରେ ଅଭିଯୋଗ, କାହା ଘର ବୋହୂ ଝିଅଙ୍କ ଗୁଣ ଅବଗୁଣ ।

ସେ ବି ଯାଆନ୍ତି । କିଶୋର କାମ କରେ । ଗଳ୍ପ ଲେଖେ, ଝରକା ଫାଙ୍କରେ ପଦାକୁ ଚାହେଁ, ଗୃହିଣୀରେ ଆଗ୍ରହ ଜଳେ । କେଜାଣି କାହିଁକି ସଙ୍କୋଚ ଆସେ । ଡିରି ଡିରି କଣେଇ କଣେଇ ଚାହେଁ । ବାଆଁରେଇ ହେଲା ପରେ ଫାଇଲକୁ ଚାହେଁ, ଅଥବା ଅଧାଥିବା କବିତା କି ଗଳ୍ପକୁ ଚାହେଁ । ମନ କିନ୍ତୁ

ସେଠି ନ ଥାଏ । ପରଦା ଫାଙ୍କ ବାଟେ ଛୁଟିଥାଏ ତାର ଥର ଥର ଗୈରିଗୃହିଁଣୀ । ଟିକିଏ ଅସ୍ଥିରତା ଅନୁଭବ କରେ । ଲେଖି ହୁଏ ନାହିଁ । ଭାବି ହୁଏ ନାହିଁ । ସେ ଗୃହିଁ, କେବଳ ଗୃହିଁ—ପଦାକୁ ।

ସାମ୍ନା ସେ ପାଖ ଏକ ମହଲା କୋଠାର ଛାତ ଉପରେ ଦାଉ ଦାଉ ଜଳୁଛି ରୂପର ଶିଖା । ଷୋଡ଼ଶୀ, କିଏ ସେ ? କାହାର ପତ୍ନୀ ? କାହାର କନ୍ୟା ? ସେ କେବେ ଜାଣିବାକୁ ଚେଷ୍ଟା କରି ନାହିଁ ।

କିଶୋର ଦରବୁଢ଼ା, ଦାନ୍ତ ହଲିଲାଣି, ଥୋଡ଼ିର ବାଳ ପାଚି ପାଚି ଆସୁଛି । ଆଖିରେ ଚଷମା । କିଶୋର ଜାଣେ ସେ ସୁନ୍ଦର ନୁହେଁ । ସେ କାନୁ ଢଙ୍ଗର ଥିଲା । ବୟସର ଧାସରେ ସେ କଳା ପଡ଼ିଛି । ମନ ହୋଇଛି ପଥର । କେବେ ସେ ବିବାହ କରିଥିଲା ସେ କଥା ବି ତାର ମନେ ନାହିଁ । ଅନେକଗୁଡ଼ିଏ ପିଲାଙ୍କର ବାପ । ବଡ଼ ପିଲା ଦିଓଟିଙ୍କର ବିବାହର କଥା ଭାବିବାର ବେଳ ପାଖେଇ ଆସୁଛି ।

ତଥାପି କିଶୋରର ଗୈରିଗୃହିଁଣୀ ଧାଇଁଯାଏ ସେହି ଅପରିଚିତା ରୂପସୀ ପାଖକୁ, ଥରି ଥରି । ଦୃଷ୍ଟିରେ ଆଗ୍ରହ । ମନ ଛନଛନ । ଛାତି ଧଡ଼ ଧଡ଼ । କଣେଇଁ କଣେଇଁ ସେ ଅନାଏଁ । ଓଠ ଉପରେ କେବେ କେମିତି ହସେ । କେବେ ହୁଏ ଗମ୍ଭୀର, କେବେ ଚକିତ, ଅମୋଦିତ ! ଏମିତି—

ଛଅଟି ମାସ କଟିଛି । ସଞ୍ଜେ ଓ ସକାଳେ, ସକାଳେ ଓ ସଞ୍ଜେ—କିଏ ସେ—ଜାଣିବାକୁ କେବେ କେମିତି ଇଚ୍ଛା ହୁଏ ।

ସେ ଦରବୁଢ଼ା । ସେ ପିଲାର ବାପ । ସେ ଭଦ୍ରଲୋକ । ସଭ୍ୟ ସମାଜର ମଣିଷ । ସେ ଦେଖେ, କେବଳ ଦେଖେ, ଅପରିଚିତାର ଦୃଷ୍ଟି ପଡ଼ିଲେ ମୁହଁ ନୁଆଁଏ ଟେବୁଲ ଉପରକୁ । ନିଜ ପାଖରେ ଲୁଚକାଳି ଖେଳେ । ଧୀରେ ଧୀରେ କଣେଇଁ ଗୃହିଁ । ଛଅଟି ମାସ । ସ୍ୱପ୍ନ । ଆନନ୍ଦ । ଆଗ୍ରହ । ଉଦ୍‌ବିଗ୍ନତା । ଡର । ଛପିଲା ସଙ୍କୋଚ ।

ଆଗ କୋଠାରେ ତାଲା ପଡ଼ିଛି । କୋଠା ଉପରେ ସେଇ ସପନ ପ୍ରତିମା, ଷୋଡ଼ଶୀ ରୂପସୀର ଦେଖା ମିଳୁନାହିଁ । ରଙ୍ଗ ଢଙ୍ଗର ଶାଢ଼ୀ, ଗୋଡ଼ ତଳକୁ ଲମ୍ବିଥିବା କେଶ, ମୁହଁର ହସ—ଛପି-ଯାଇଛି । କିଶୋରର ଗୈରିଗୃହିଁଣୀ ଖାଲି ଭ୍ରମି ଭ୍ରମି ଫେରୁଛି । ହତାଶ ଲାଗୁଛି । ଅଡ଼ୁଆ ଅଡ଼ୁଆ । ଚଡ଼ି ଚଡ଼ି । ମନ ଲାଗୁନାହିଁ । ଜାଣିବାକୁ ଆଗ୍ରହ ହେଉଛି ।

କିଶୋର ଜାଣିଲା—ସେମାନେ ବଦଳି ହୋଇ ଯାଇଛନ୍ତି । ଥକ୍କା ହୋଇ ପଡ଼ିଏ ଗୃହିଁଲା ସେ କୋଠା ଉପରକୁ ।

# ବୀରଭଦ୍ର

ସେ ଭଦ୍ରଲୋକ । ସେ ଧନୀ । ଜୟପୁର ସହରରେ ତାଙ୍କର ଛଅ ଜାଗାରେ ବଡ଼ ବଡ଼ ଦୋତାଲା କୋଠାଘର । ଦୁଇଟି ଘର ଭଡ଼ା ଲାଗିଛି । ତୃତୀୟ ଘରଟିରେ ସେ ରହନ୍ତି । ଏଇ ଘରକୁ ଲାଗି ତାଙ୍କର ଗୋଦାମ । ସେ ବଡ଼ ବେପାରୀ । ବ୍ୟବସାୟ କରି ସେ ଲକ୍ଷ୍ମୀଙ୍କୁ ଘରକୁ ଆଣିଛନ୍ତି । ସଚ୍ଚୋଟ ଲୋକ ବୋଲି ତାଙ୍କର ସୁଖ୍ୟାତି ଅଛି, କିନ୍ତୁ ଅତି କୃପଣ ବୋଲି ମଧ୍ୟ ଲୋକେ ତାଙ୍କର ନିନ୍ଦା କରନ୍ତି ।

ସେ ବିତସ୍ପୃହ । ଲୋକଙ୍କର ସୁଖ୍ୟାତି ତାଙ୍କୁ ଧନ ଆଣି ଦେବ ନାହିଁ । ଈର୍ଷାପରାୟଣ ଲୋକଙ୍କର ନିନ୍ଦା ତାଙ୍କର ଧନ ଊଣା କରି ପାରିବ ନାହିଁ—ସତୁରୀ ବର୍ଷର ଅଭିଜ୍ଞତା ତାଙ୍କୁ ଏହି ଶିକ୍ଷା ଦେଇଛି । 'ଅଟଳ ମଞ୍ଜୁଷା ଜଡ଼ ପଇସା'ର ଅର୍ଥ ସେ ଭଲକରି ବୁଝନ୍ତି । ଏତିକି ତାଙ୍କ ଜୀବନର ଅର୍ଥନୀତି । ଶଗଡ଼ ଶଗଡ଼ ପୁସ୍ତକ ପଢ଼ି ଅର୍ଥ ନୀତିରେ ଡକ୍ଟର ହୋଇ ଯେଉଁ ପ୍ରଫେସର ତାଙ୍କର ଗୋଟିଏ ଘରର ଗୋଟିଏ ଅଂଶ ଭଡ଼ାନେଇ ରହିଛନ୍ତି, ତାଙ୍କର ଅଭାବ ଅନାଟନ ବେଳେ ବୀରଭଦ୍ର ଉଧାର ଦିଅନ୍ତି !

ସେ ସତୁରୀ ବର୍ଷର ବୁଢ଼ା । କଳା ମିଚମିଚ ସ୍ୱଳ୍ପ ପୃଥୁଳ ଦେହ । ବାଙ୍ଗର ମଣିଷ । ଗୋଲ ମୁହଁଟିର ବିଶେଷତ୍ୱ କିଛି ନାହିଁ । ଦାଣ୍ଡକୁ ଚାହିଁଲେ ସେପରି ମୁହଁ ଦେଖିବାକୁ ମିଳେ । ତେବେ ବିଶେଷତ୍ୱ ଏତିକି ଯେ, ମୁଣ୍ଡର ବହଳ କେଶ ବୟସ ଅନୁପାତରେ ଧବଳ ହୋଇନାହିଁ । କାଁ ଭାଁ, ମେଞ୍ଚାଏ ମେଞ୍ଚାଏ । ଦାନ୍ତ ଦି ଧାଡ଼ି ଘୋରି ହୋଇଗଲେ ମଧ୍ୟ ଧୋବ ଫର ଫର ହୋଇ ସେମିତି ରହିଛି । ନିଶ ଦାଢ଼ି ନାହିଁ, ପୁଣି ଅଛି । ମାସେ ପନ୍ଦର ଦିନରେ ମନେ ପଡ଼ିଗଲେ ସେ ଭିଦର ହୁଅନ୍ତି । ସାତ ଆଠଦିନ ପରେ ପୁଣି ଧଳା ଧଳା ବାଳ ଗଜୁରି ଉଠି କଳା ମୁହଁରେ ଧଳା ରଙ୍ଗ ବୋଳିଲାପରି ଦିଶେ ।

ବର୍ଷେ ହେଲା ବେଶି ଚଲାବୁଲା କରିପାରୁ ନାହାନ୍ତି । ବେଶିଦୂର ଚାଲିଗଲେ କ୍ଲାନ୍ତ ଅନୁଭବ କରନ୍ତି । ଦେହ ହାତ ଓ ଅଣ୍ଟା ଦରଜ ହୁଏ । ତେଣୁ ଅଧିକାଂଶ ବେଳ ଘରେ ରହନ୍ତି, ଖଟଲାଗୀ ହୋଇଥାନ୍ତି । ଜମିବାଡ଼ିର ଖବର ବଡ଼ ପୁଅ ବୁଝେ । ମଝିଆଁ ପୁଅ ବେପାର ବଣିଜର ଦାୟିତ୍ୱ ନେଇଛି । ସବୁଠୁଁ ଚଲାଖ ସାନପୁଅ । ବଡ଼ ଦୁହିଁଙ୍କୁ ସେ ସାହାଯ୍ୟ କରେ । ଦାଣ୍ଡ ମାମଲତ ବୁଝେ । ଅଧିକ ପାଠ ସେ ପଢ଼ିଛି । ମାଟ୍ରିକୁଲେସନ୍ ଫେଲ୍ ।

ତାଙ୍କର ତିନିଝିଅ ପରଘରକୁ ଗଲେଣି । ସେମାନଙ୍କର ପିଲାପିଲି ହେଲାଣି । କାହାର କେତେ, ତାଂର ହିସାବ ବୀରଭଦ୍ରଙ୍କର ମନେ ରହେ ନାହିଁ । ସେମାନେ ଦୂରରେ ଅଛନ୍ତି । ଆଜିକା ହିସାବ କାଲିକି ବଦଳିଥିବ । ଭଲ ଶିକ୍ଷା ଓ ଉପଦେଶ

ଦେଇ ଧନ ଦରବ ସହ ସେମାନଙ୍କୁ ପରଘରକୁ ପଠାଯାଇଛି । ନିଜନିଜର ବୁଦ୍ଧି ଓ ଦକ୍ଷତାରେ ସେମାନେ ଯଦି ସୁଖରେ ନ ରହିବେ, ଧନସମ୍ପତ୍ତି ନ କରିବେ ତ ସେମାନେ ଓ ସେମାନଙ୍କ ପିଲାଛୁଆ ଦୁଃଖ ପାଇବେ । ତହିଁରେ ଅନ୍ୟମାନଙ୍କର ଦାୟିତ୍ୱ ନାହିଁ ।

ଘରେ ତିନି ବୋହୂ । ସେମାନଙ୍କର ପୁଅ ଝିଅର ଅଭାବ ନାହିଁ । କାହାର କେଇଟି, ସମସ୍ତଙ୍କର ନାମ ମନେ ନ ପଡ଼ିଲେ ବି ଠିକଏ ଭାବି ମୁହଁ ମନେ ପକାଇ ଆଙ୍ଗୁଠିର ପବ ଗଣିଲେ ସଂଖ୍ୟା ଜଣାଯାଏ । ନଅଟି ନାତି ଓ ଛଅଟି ନାତୁଣୀ । କାହାର କେଇଟି, ସେତିକ ତାଙ୍କୁ ଜଣାଅଛି । ଦି ତିନୋଟି ମରିଛନ୍ତି । ହେଲେ ଦୁଃଖ ପାସୋରି ଯିବା ଆଗରୁ ପୁଣି ତିନି ଚାରୋଟି ଆସି ପହଞ୍ଚିଛନ୍ତି । ଶେଷହେଲା ବୋଲି କହି ହେବନାହିଁ । ବଡ଼ ବୋହୂଙ୍କର ପୁଣି ପିଲାଛୁଆ ହେବ । ତାଙ୍କର ବଡ଼ ଝିଅ ଦୁଇଟି ଓ ମଝିଆ ବୋହୂଙ୍କର ବଡ଼ ଝିଅଟି, ଏପରି ତିନୋଟି ନାତୁଣୀଙ୍କର ନିମିତ୍ୟ ସରିଛି । ବଡ଼ ନାତୁଣୀର ପିଲା ଆଗ ସଂସାରକୁ ଆସିବ କି ତାର ଜ୍ୟେଷ୍ଠ ଭାଇ କି ଜ୍ୟେଷ୍ଠ ଭଉଣୀ ଆଗ ଆସିବ ଏହାହିଁ ଦେଖିବାର କଥା । ବଡ଼ ନାତୁଣୀ ଲକ୍ଷ୍ମୀ ଅଜା ଘରକୁ ଆସିଛି ।

ବୀରଭଦ୍ର ସୁଖୀ । ତାଙ୍କର ବଂଶ ବଢ଼ିଛି ଓ ବଢ଼ୁଛି । ଅନ୍ନର ବଢ଼ ବ । ଦେଶସାରା ବୀରଭଦ୍ରଙ୍କର ରକ୍ତ ଖେଳିଯିବ । ସେ ନ ଥିବେ, କେହି ଚିରଦିନ ରହିବେ ନାହିଁ, ଏକଥା ସେ ଭଲକରି ଜାଣନ୍ତି । ତାଙ୍କ ଆଖି ଆଗରେ କେତେ ପରିଚିତଙ୍କର ଶେଷ ଯାତ୍ରା ସେ ଦେଖିଛନ୍ତି । ସେମାନେ ଯେ ସମସ୍ତେ ତାଙ୍କଠାରୁ ବୟସରେ ବଡ଼ ଏପରି ନୁହେଁ । କାଲପରି ଲାଗୁଛି ତ, ନିଜ ସ୍ତ୍ରୀଙ୍କର ମରଣ କଥା କହୁ କହୁ ଦଶବର୍ଷ କଟିଗଲାଣି । କାଲି ପୁଣି ତାଙ୍କର କଅଣ ହେବ କିଏ କହି ପାରିବ ?

ଏପରି ଭାବନା ମନକୁ ଆସିଲେ ବୀରଭଦ୍ର ଚମକି ଉଠନ୍ତି । ଖାତକଙ୍କର ହିସାବ କରୁ କରୁ, ହିଡ଼ମୁଣ୍ଡରେ ଠିଆହୋଇ ଧାନ କଟାଉଣୁ, ଧାନ ଡେଙ୍ଗୁଳା ଲଙ୍କା ଚୂଣା ଗୁଣ୍ଡୁଣୀ ଓ ତେଲ ଗୋଦାମ ସଫା କରାଉଣୁ, କି ଠାକୁର ଠାକୁରାଣୀଙ୍କର ଦର୍ଶନ କରିବାକୁ ମନ୍ଦିରପଥରେ ଯାଉଣୁ ସେ ମୁହୂର୍ତ୍ତେ ନିସ୍ତବ୍ଧ ହୋଇ ରହନ୍ତି । ବଲବଲକରି ଚାରିଆଡ଼କୁ ଚାହାନ୍ତି । ଯେଉଁମାନେ ପାଖରେ, ଦୂରରେ ଓ ଚାରିଆଡ଼େ ଅତଯାତ ହେଉଛନ୍ତି, ସେମାନେ ଅଦୃଶ୍ୟ ହୋଇ ଯାଆନ୍ତି । ଯେଉଁ ପରିଚିତମାନେ ଏ ଦୁନିଆଁରେ ତାଙ୍କ ପାଖରେ କି ଦୂରରେ କାରବାର ହେଉଥିଲେ ଅଥଚ କେବେଠୁଁ ଦୁନିଆଁ ଛାଡ଼ି ଚାଲିଗଲେଣି, ମୁହୂର୍ତ୍ତିକରେ ସେମାନେ ପାଖକୁ ଆସନ୍ତି । କହନ୍ତି—ଶୁଣ ବୀରଭଦ୍ର—

ବୀରଭଦ୍ର ଚାରିଆଡ଼େ ଆଖି ବୁଲାନ୍ତି । ଜଳଜଳ ଚାହିଁଲା ଆଖିରେ କିଛି ଦିଶେ ନାହିଁ । ଚାରିଆଡ଼ର ସବୁଜ ପାହାଡ଼ମାଳର ଡେଉଁଡେଉଁକା ଶୋଭା,

ବାଦଲଭସା ନୀଳ ଆକାଶର ସୁଷମା, ମଣିଷ-ହାତ ଗଢ଼ା ବଡ଼ଶ୍ରେଷ୍ଠ କୋଠାଘର, ଗୃହ-କୁଡ଼ିଆ, ଭଙ୍ଗାରୁଜା ଉହ୍ୟ, ବେଗଗାମୀ ଟ୍ରେକ୍, କାର୍, ରିକ୍ସା ସବୁ ହଜିଯାଆନ୍ତି । ଲୋକଙ୍କର କୋଳାହଳ, ବାହା ନିମିତ୍ୟର ବାଜା, ସିନେମାର ଅକାଣୀ ସଙ୍ଗୀତ କାନରେ ବାଜେ ନାହିଁ । ରକ୍ତ ମାଂସ ମଜ୍ଜା ଗଢ଼ା ଦେହର ପଞ୍ଚେନ୍ଦ୍ରିୟର ଅନୁଭବଶକ୍ତି ଲୋପ ହୁଏ । ଏ ଦୁନିଆଁ ଶୂନ୍ୟ ହୁଏ, ମହାଶୂନ୍ୟ ! ଆଲୋକ କି ଅନ୍ଧାର ମଧ୍ୟ ଅସ୍ତିତ୍ୱ ହରାନ୍ତି । ଗୋଟିଏ ମୁହୂର୍ତ୍ତି ଭିତରେ ସତୁରି ବର୍ଷର ବୃଦ୍ଧର ପଞ୍ଚେନ୍ଦ୍ରିୟର ବାହ୍ୟ ଅନୁଭୂତି ଲୋପ ହୁଏ । ନିଥିଳର ମହାଶୂନ୍ୟତାରେ ମିଶି ସେ ଏକାକାର ହୋଇଯାଆନ୍ତି । ସେକଥା ବି ବୀରଭଦ୍ର ଅନୁଭବ କରନ୍ତି ନାହିଁ ।

ମାତ୍ର ଗୋଟିଏ ମୁହୂର୍ତ୍ତି ! ଷଷ୍ଠେନ୍ଦ୍ରିୟ ଜାଗି ଉଠେ । ସେଇ ଇନ୍ଦ୍ରିୟ କଣ ମନ ଅଥବା ସେହି ଇନ୍ଦ୍ରିୟର କରଣୀ-ଶକ୍ତି ମନ ! ସତୁରି ବର୍ଷର ସବୁ ପାର୍ଥିବ ରୂପ ଓ ଘଟଣା ପ୍ରବାହର ନିଖୁଣ ରୂପ ସେ ନିର୍ଭୁଲ କରି ନିଜ ଭିତରେ ଆଙ୍କି ରଖିଛି, ମାନସ-ଚକ୍ଷୁ ଆଗରେ ଖୋଲି ଧରୁଛି । କେବଳ ଘଟଣାର ମନ-ମର୍ଜି ନୁହେଁ, ସବୁ ଭାଷା ମଧ୍ୟ 'ଟେପ୍ ରେକର୍ଡ' ପରି ସାଇତି ରଖିଛି । ପ୍ରକାଶ କରୁଛି—ଶୁଣ ବୀରଭଦ୍ର, ଦେହ ଛାଡ଼ି ଆସିଲେ ମଧ୍ୟ ଆମର ଅସ୍ତିତ୍ୱ ବିଲୟ ହୋଇନାହିଁ । ଦେଖି ପାରୁଛ ତ, ଆମେ ଅଛୁ, ଆତଯାତ ହେଉଛୁ, କଥା କହୁଛୁ । ଯାହା ଘଟି ଯାଇଛି ସେ ସବୁ ଘଟଣାର ଅଭିନୟ କରୁଛୁ । ଦୁନିଆଁ ତୁମ ଜୀବନର ଯେଉଁ ସବୁ ଗୋପନୀୟ ଘଟଣା ଜାଣେନାହିଁ, ମଣିଷ ଦେହରେ ଆତଯାତ ହେଉଥିଲାବେଳେ ଆମେ ମଧ୍ୟ ଯାହା ଜାଣିପାରୁ ନ ଥିଲୁ, ସେ ସବୁ ଏବେ ପରିଷ୍କାର ଦେଖାଯାଉଛି । ଦେଖି ପାରୁଛ କି, ଶୁଣି ପାରୁଛ କି ତୁମର ସେ ଦିନର କଥା, ହସ କାନ୍ଦ, ରାଗ ରୋଷ ? ସେ ସବୁକୁ ତୁମର ଯେଉଁ ଉଦ୍ଦେଶ୍ୟ ପରିଚାଳିତ କରୁଥିଲା, ସେଇ ସବୁ ଉଦ୍ଦେଶ୍ୟ ମଧ୍ୟ ଜଳ ଜଳ ହୋଇ ଦେଖାଯାଉଛି ଆମର ସତ୍ତ୍ୱହୀନ ନୟନ ଗୁଡ଼ିକୁ । ତମର ଉଦ୍ଦେଶ୍ୟ ତ ମୋଟେ ଗୋଟିଏ !

କିଏ ସେ କହୁଛି ? ରାଜଲକ୍ଷ୍ମୀ ! ବୀରଭଦ୍ରଙ୍କର ଚାଳିଶି ବର୍ଷର ପତ୍ନୀ, ଜୀବନ ସଙ୍ଗିନୀ, ଛଅଟି ପୁତ୍ରକନ୍ୟାଙ୍କର ଜନନୀ । ଦିନରାତି ସେ ପରିଶ୍ରମ କରିଥିଲେ । ଅରଜିଲା ଧନ ସଞ୍ଚୟ କରିଥିଲେ । ପଇସାକ ଉପରେ ଦୁଇ ପଇସା ହୋଇପାରେ ସେଥିପାଇଁ ଚିନ୍ତା କରୁଥିଲେ । ଉଦ୍ୟମ କରୁଥିଲେ । ଉପଦେଶ ଦେଉଥିଲେ । ସେ ଥିଲେ ସେବାରତା ସାଧ୍ୱୀ ସ୍ତ୍ରୀ । ପ୍ରେମମୟୀ । ସ୍ନେହଶୀଳା ଜନନୀ ।

ସୁନାର ଖୋଳରେ ସଜାଇ ଦେବାକୁ କେତେ ଅଳଙ୍କାର ତୁମେ ମୋ ପାଇଁ ଗଢ଼ାଇ ଦେଇଥିଲ । ମୂଲ୍ୟବାନ ଶାଢ଼ୀ ଉପହାର ଦେଇଥିଲ । ମୋତେ ବଞ୍ଚାଇ ରଖିବାକୁ ବ୍ୟାକୁଳ ହୋଇଥିଲ । ଧନ ବ୍ୟୟ କରିଥିଲ । ମୁଁ

ରହି ପାରିଲି ନାହିଁ । ତମର ଧନରତ୍ନ ଅଲଙ୍କାର ଶାଢ଼ୀ ଘରବାଡ଼ି ଜମି ଆସବାବପତ୍ର ଓ ପୁତ୍ରକନ୍ୟା ନାତି ନାତୁଣୀ ସବୁ ଛାଡ଼ି ମୁଁ ଚାଲି ଆସିଲି । ଏବେ ବୁଝି ପାରୁଛ, ସେ ସବୁ ତୁଚ୍ଛ । ସେ ସବୁ ମୋର ଲୋଡ଼ା ନ ଥିଲା ।

କ'ଣ ତେବେ ତୁମର ଲୋଡ଼ାଥିଲା ?

× × × ×

ପଚାଶ ବସ୍ତା ଧାନ, ଷାଠିଏ ବସ୍ତା ଚାଉଳ, ଚାଳିଶି ବସ୍ତା ଗହମ, ଦଶ ବସ୍ତା ଚାଉଳମଣ୍ଡ—

ଗୋତିମାନେ ଗୋଦାମ ଘରେ ପଶି ବସ୍ତା ଗଣୁଛନ୍ତି । ସେହିମାନେ କହୁଛନ୍ତି । ବୀରଭଦ୍ର କାଗଜ ଧରି ହିସାବ କରୁଥିଲେ । ଟିକିଏ ଅନ୍ୟମନସ୍କ ହୋଇ ପଡ଼ିଥିଲେ ପରା ! ଗୋତିଙ୍କର ଡାକ ଶୁଣି ସେ କେଉଁ ଅଜଣା ଦେଶରୁ ଫେରି ଆସିଲେ । ପଞ୍ଚେନ୍ଦ୍ରିୟ ସଜାଗ ହେଲେ । ସେ ଗୋଦାମ ଘରେ ପଶି ଗଚ୍ଛିତ ଦ୍ରବ୍ୟ ଗଣାଉଁଛନ୍ତି ।

କେତେ ବସ୍ତା ଗହମ ଗଣିଲ ?

ଗୋତି ଜଣେ ଆଉଥରେ କହିଲା, ଚାଳିଶି ବସ୍ତା !

ବୀରଭଦ୍ର ହିସାବ ଦେଖିଲେ । ଯେଉଁସବୁ ଅତୀତ ଘଟଣା ଓ ଯେଉଁମାନେ ଥିଲା ଓ ନ ଥିଲା ଲୋକେ, ତାଙ୍କର ଦୁର୍ବଳ ମୁହୂର୍ତ୍ତରେ ମନ ଭିତରକୁ ଚାଲି ଆସିଥିଲେ, ସେମାନେ ପଳାଇଗଲେଣି । ସେମାନଙ୍କ ସଙ୍ଗେ ତାଙ୍କର କୌଣସି ସମ୍ପର୍କ ନାହିଁ । ସେ ବେପାରୀ ଲୋକ, ବେପାର କରି ଧନ ଅର୍ଜିଛନ୍ତି । ଧନ ସଞ୍ଚିଛନ୍ତି । ତାଙ୍କର ପୁଅ ନାତି ସୁଖରେ ରହିବେ । ଆଦ୍ୟ ଜୀବନରେ ସେ ଯେପରି ଦୁଃଖ କଷ୍ଟ ଭୋଗି ଏ ଦୁନିଆଁରେ ତିଷ୍ଠିବେ କି ପେଟକୁ ମୁଠାଏ ନ ପାଇ ଅପନ୍ତରାରେ କେଉଁଠି ଟଳିପଡ଼ିବେ ଏପରି ଚିନ୍ତା କରୁଥିଲେ, ତାଙ୍କର ପୁଅ ନାତି ମାନଙ୍କୁ ସେପରି ଦୁଃଖକଷ୍ଟ ଓ ଭାବନାରେ ପଡ଼ିବାକୁ ହେବନାହିଁ । ସାବଧାନ ହୋଇ ଚଳି ପାରିଲେ ଓ ପିଲାଏ ଏକମନ ହୋଇ ରହିଲେ ଧନ ସମ୍ପତ୍ତି ଆହୁରି ବଢ଼ିବ ।

ବୃଦ୍ଧ ଓ ଅପାରଗ ବୀରଭଦ୍ର ପଲଙ୍କ ଉପରେ ସଳଖ ହୋଇ ବସିଲେ । ସନ୍ଦେହରେ ମୁଣ୍ଡ ଥରି ଉଠିଲା । ପୁଅମାନେ ସ୍ୱାର୍ଥପର ହେଲେଣି । ତାଙ୍କୁ ଓ ପରସ୍ପରକୁ ଲୁଚାଇ ନିଜନିଜର ପାଣ୍ଠି କରିବାକୁ ବ୍ୟାକୁଳ ହେଲେଣି । ପାଣ୍ଠି କଲେଣି । ନିଜ ନିଜ ଭିତରେ ଅଦୃଶ୍ୟ ବେପାର ଚାଲିଛି, କଳାବଜାର ! ବୋହୂମାନେ ନିଜ ନିଜ ଭିତରେ କନ୍ଦଳ ଲଗାଇଲେଣି । ତୋ ପିଲା ମୋ ପିଲା କହି ଶ୍ରେଷ୍ଠ ଶ୍ରେଷ୍ଠ କଥାରେ ପାଟିଭୁଣ୍ଡ କରୁଛନ୍ତି । ସେ ବଞ୍ଚି ରହିଛନ୍ତି ବୋଲି ନାମକୁମାତ୍ର ଗୋଟିଏ ଘେରାଇ ହେଉଛି । ସେମାନେ ଚାହିଁ ରହିଛନ୍ତି ତାଙ୍କର

ଶେଷ ଦିନକୁ । ସେ ଆଖି ବୁଜିଲେ ଦିନ ଛିନ୍ନଟା ନ ପୂରୁଣୁ ଗୋଟାଏ ଘର ଭାଙ୍ଗି ଛିନ୍ନଟା ହେବ ।

ସେ ବଞ୍ଚିଥାଉଣୁ ସେମାନଙ୍କୁ ଭିନ୍ନେ କରିଦେବେ । ଯେତେ ଭାଇ ସେତେ ଘର, ଏ ପ୍ରବାଦ ତ ରହିଛି । ନିଜ ଜୀବନକାଳରେ ସବୁଠାରେ ସେ ଏଇଆ ଦେଖିଛନ୍ତି । ଭାଇ ଭାଇ ମଧ୍ୟରେ କଳହ ହୋଇଛି । ସଞ୍ଚିତ ଧନ ପରଲୋକଙ୍କ ଘରେ ପଶିଛି । ସେମାନେ କଙ୍ଗାଳ ହୋଇଛନ୍ତି । ସେମାନଙ୍କ ପିଲାଏ ବାଟର ଭିକାରୀ ହେବେ, ପେଟକୁ ନ ପାଇ କେଉଁ ଅପନ୍ଥରେ କେଉଁଠି ଠେଲି ପଡ଼ିବେ ? ନାହିଁ ନାହିଁ, ସେମାନେ ପୁଣି ରସ୍ତା କଡ଼ରୁ ଉଠି ଅବିକଳ ତାଙ୍କର ପରି ଧନୀ ହେବେ । ବୀରଭଦ୍ରର ରକ୍ତରୁ ସେମାନେ ଜନମ ।

× × × ×

ଦଶ ବର୍ଷର ପିଲା ଅନାଥ ବୀରଭଦ୍ର ଗୋଟି ଦୋକାନରେ ପ୍ଲେଟ୍ ଧୋଉଛି, ମୁଠିଏ ଅନ୍ନ ଓ ଖଣ୍ଡିଏ ଲୁଗାପାଇଁ । କାର୍ଯ୍ୟରେ ହେଲା କଲେ ଗାଳି ମାଡ଼, ସହି ହେବ ନାହିଁ ।

ଲୁଗା ଦୋକାନରେ ଚାକିରି । ପିଠିରେ ଓ ମୁଣ୍ଡରେ ଲୁଗାବୋଝ ଧରି ଫେରି ବେପାର । ଟଙ୍କାରେ ଅଣାଏ ମଜୁରୀ, ଓଳିଏ ଖାଇ ଓଳିଏ ଉପାସ । ସଞ୍ଚୟ, କେବଳ ସଞ୍ଚୟ ।

ଛୋଟ ଲୁଗା ଦୋକାନ । ସଞ୍ଚୟ କେବଳ ସଞ୍ଚୟ । ବୀରଭଦ୍ର ସାହୁକାର ହୋଇଛି । ଦଶଟଙ୍କା ଧାର ଦେଇ କୋଡ଼ିଏ ଟଙ୍କାର ହ୍ୟାଣ୍ଡନୋଟ୍ ନେଇଛି । ବୀରଭଦ୍ର ଲୁଗା ବେପାର ଛାଡ଼ି ଧାନ, ମୁଗ, ତେନ୍ତୁଳି ଓ ଅଲସି ବେପାର କଲେଣି । ଘରଣୀ ହୋଇ ରାଜଲକ୍ଷ୍ମୀ ଆସିଲେଣି ।

ଧନ ଉପରେ ଆସିଲା, ସମ୍ପତ୍ତି ଉପରେ ହେଲା, ସେ ଆଜି ନିଜେ ବୁଝି ପାରୁନାହାନ୍ତି । କେବଳ ସେ ଏତିକି ଜାଣନ୍ତି ଯେ ସେ ବେପାର କରୁଛନ୍ତି, ମିତବ୍ୟୟିତା ଅବଲମ୍ବନ କରୁଛନ୍ତି । ବେପାର କରିବାର ସବୁ ଉପାୟ ତାଙ୍କୁ ଜଣା । ସେ ନିଜେ କାହାକୁ କେବେ ଠକିବାକୁ ଆବଶ୍ୟକ ପାଉନାହାନ୍ତି ! ଲୋକେ ନିଜେ ନିଜକୁ ଠକେଇ ହେବାକୁ ତାଙ୍କ ଗୋଡ଼ତଳକୁ ଧାଇଁ ଆସିଛନ୍ତି । ସେ କେବେ କାହାଠୁଁ ଚେଷ୍ଟା କରି ନାହାନ୍ତି । ଲୋକେ ଯାଚି ଯାଚି ଧନ ଦେଇ ଯାଇଛନ୍ତି, କାରଣ ସେମାନଙ୍କର ଅସୁବିଧା ଓ ଅଭାବବେଳେ ସେ ଧନ ଦେବାକୁ ପଛାଇ ନାହାନ୍ତି ।

ସେ ସଚ୍ଚୋଟ ଲୋକ । ସେ ଧାର୍ମିକ ଲୋକ । ଜୟପୁରରେ ଯେତେ ଦେବାଦେବୀ ଅଛନ୍ତି କାହାକୁ ସେ ଅଭକ୍ତି ଦେଖାଇ ନାହାନ୍ତି । ସବୁ ମନ୍ଦିରକୁ ସେ ଯାଆନ୍ତି, ସବୁଦିନେ ନ ହେଲେ ବି କେବେ କେବେ । ଦେବାଦେବୀଙ୍କ ଉପରେ ଫୁଲ ଚଢ଼ାଇଛନ୍ତି । ସାଷ୍ଟାଙ୍ଗ ପ୍ରଣାମ କରି ଗୁହାରି କରୁଛନ୍ତି, ମୋର

ବେପାର ସଫଳ ହେଉ, କୁବେର ସମ୍ପତ୍ତି ଆସି ମୋ ଭଣ୍ଡାରରେ ଠୁଳ ହେଉ, ମୁଣ୍ଡରେ ଅଦ୍ଭୁତ ଫୁଲ ଚଢ଼ାଇବ । ହେ ଦେବତା ! ଯେତେ ଯାହାର ଯେଉଁଠି ଧନରତ୍ନ ଗୋପଲକ୍ଷ୍ମୀ ଅଛି ସେ ସବୁ ତ ତମର, କେବଳ ଏତକ କର ଠାକୁରେ, ସେମାନଙ୍କ ଘରୁ ଆସି ମୋ ଭଣ୍ଡାରରେ ରହୁ । ସେମାନଙ୍କ ନାମରୁ କଟି ଭୂମିମାନ ମୋ ନାମରେ ରେକର୍ଡ ହେଉ । ତମରମାନଙ୍କର ସମ୍ପତ୍ତି ତ ଦେବତା, ସେଠାରୁ ଆସି ଏଠାରେ ରହିବ ।

କାହିଁକି ?

ଶୁଣ ଠାକୁରେ, ସେମାନେ ଭକ୍ଷକ, ମୁଁ ଯେ ରକ୍ଷକ, ତୁମର ଖମ୍ବାରୀ । ସେମାନେ ସବୁ ଖାଇପିଇ ଉଡ଼ାଇଦେବାକୁ ପଣ କରିଛନ୍ତି । ଜନମ, ମରଣ ବାହା ନିମିତ୍ୟରେ ସେମାନେ ସବୁ ବରବାଦ୍ କରି ଦେଉଛନ୍ତି । ଦେଖୁଛ ତ ସବୁ, ଆଉ ଅଧିକ କି କହିବ ? ମଦପାଣି ପିଇ କାୟା ନଷ୍ଟ କରୁଛନ୍ତି । ପର ଘର ଝିଅ ବୋହୂଙ୍କ ଆଡ଼କୁ ଦୃଷ୍ଟି ପକାଉଛନ୍ତି । ଟିକିଏ ପ୍ରଶଂସା କରି କହିଲେ ଆତ୍ମପ୍ରସାଦ ଲଭିକରି ଦାତା କର୍ଣ୍ଣ ହେଉଛନ୍ତି । ଅଳସୁଆ କଙ୍ଗାଳ ପଲଙ୍କୁ ବେଳେ ବେଳେ ଭୁଣ୍ଡ କରି ଖୋଇ ପେଇ ଗୁଡ଼ୁଛନ୍ତି, ଅଦ୍ଭୁତ ଅଳସୁଆ ନିଷ୍କର୍ମା କରାଉଛନ୍ତି । ସେମାନେ ପଙ୍ଗପାଳ ଦଳ ।

ହେ ଠାକୁରମାନେ, ନିଜ କଥା କହିବ କାହିଁକି ? ବୀରଭଦ୍ର ମୁଁ, ତମର-ମାନଙ୍କ ଦାସାନୁଦାସ । ମାଛ ମାଂସ କ୍ଷୀର ପୁରି ଛୁଏଁ ନାହିଁ । ଦକ୍ଷିଣି ଇଡ଼ଲି, ସଗୁଅସଗୁଅ ଟିକିଏ ପାଚେଡ଼ି, ମୁଠିଏ ଭାତ, ଦପଲା ସାଣି ତେଲ, ସଗୁଆ ଖଟାପାଣି ଦିଅ ତରକାରି ଟିକେ, ପାଚେଡ଼ି, ଅଗୃର, ତେନ୍ତୁଳି ପାଣି, ଖଟେଣ୍ଡି ପାମ୍ପଡ଼, ଚଳେ ଘୋଳ ଦହି ପାଣି, କେତେବେଳେ ଟିକିଏ କାଫି ଏତିକି ମୋର ଲୋଡ଼ା । ଏ ନିୟମ ମୁଁ ଅଦ୍ୟାପି ରଖିଛି । ମୋ ଘରଣୀ ଓ ପିଲାମାନଙ୍କର ଏଇ ଅଭ୍ୟାସ କରାଇଛି । ସମସ୍ତେ ଆମେ ସବଳ ଓ ସୁସ୍ଥ ରହିଛୁ । କିନ୍ତୁ ସେତିକି ହୋଇଛି ତମରମାନଙ୍କ କରୁଣାରୁ । ହେ ଦେବତା, ତମର ଖମ୍ବାରୀ ତ ମୁଁ !

ବୀରଭଦ୍ର ତଳୁ ଉଠି ଆଉଜେଇ ହୋଇ କରଯୋଡ଼ି ଆଖି ବୁଜି ଠିଆ ହୁଅନ୍ତି । ବାରମ୍ବାର ମୁଣ୍ଡରେ ହାତ ଲଗାଇ ଜଣାଣ କରନ୍ତି, ମୋତେ ପରୀକ୍ଷା କରିହେ ଠାକୁରେ, ମୁଁ ତମର ଧନ ସଞ୍ଚି ରଖିଛି କି ନାହିଁ ! ମଦପାଣି, ବଡ଼ ପିକ୍କା କେବେ ଛୁଇଁ ନାହିଁ । କାହା ଘରର କି ଦାଣ୍ଡ ହାଟର ଛିଇଲିଙ୍କୁ ପାପ ଆଖିରେ ଅନାଇଁ ନାହିଁ । ଅନ୍ୟମାନେ ସଗଟରେ ମୋତେ ଗାଳିଗୁଜବ କଲେ ପରେ ସେମାନଙ୍କୁ ଭଲରେ କହିଛି, ଶୁଣିଲେ ଶୁଣନ୍ତୁ ନ ଶୁଣିଲେ ନାହିଁ । ଯେହିଙ୍କି ଆସି ମୋ ଦେହରେ ହାତ ଲଗାଇଲେ ବି ମୁଁ କେବେ ଓଲଟି ହାତ ଟେକି ନାହିଁ । ହାଁ ହାଁ କରି ପଛକୁ ହଟି ଆସିଛି । ରହୁ ତାର ବଡ଼ପଣ ।

ଆରେ, ବୀରଭଦ୍ର ସାହୁକାର ଏତେ କଅଣ ପ୍ରାର୍ଥନା କରୁଛନ୍ତି ମ, ଅଢ଼ୁର ଧନ ଲୋଡ଼ୁଛନ୍ତି କି ? ଚତୁର୍ଥାବସ୍ଥା ତ ହେଲା, ଆଉ ଦୁଇଟା ମେଢ଼ ବାନ୍ଧିବେ କି ?

ନାଇଁ ମ, ମୁକ୍ତି ଚାହୁଁଛନ୍ତି ।

ପଛରୁ କିଏ ଭୁସ୍‌ଭାସ୍ ହେଉଛନ୍ତି । ବୀରଭଦ୍ରଙ୍କ କାନରେ ବାଜେ । ସେ ଶେଷ ପ୍ରଣାମ କରି ଗୋଟିଏ ନୂଆ ପଇସା ଠାକୁରଙ୍କ ଆଗରେ ରଖା ହୋଇଥିବା ଥାଳରେ ପକାଇ ବାହୁଡ଼ନ୍ତି । ଭାବନ୍ତି, ହଇଅଁ ଦର୍ଶନ କରିବାକୁ ଯେତେ ଯେଉଁଠି ଆସି ରୁଣ୍ଡ ହୁଅନ୍ତି, ସମସ୍ତେ କଅଣ ମାଗନ୍ତି । ସେତିକି ପ୍ରାର୍ଥନା ମନରେ ନ ଥିଲେ ସେମାନେ କାମଧନ୍ଦା ଛାଡ଼ି ଧାଇଁ ଆସନ୍ତେ ନାହିଁ କି ଦକ୍ଷିଣା ଦେଇ ପାଦୁକି ହଅନ୍ତେ ନାହିଁ । ନୂଆ ପଇସା ଯେତିକି ଭଲ ସେତିକି ମନ୍ଦ । ଗୋଟିଏ ପୁରୁଣା ପଇସାକୁ ଦଶଟି ନୂଆ ପଇସା; କିନ୍ତୁ ଦୁଇଟି ପୁରୁଣା ପଇସା ସମାନ ଛଅ ନୂଆ ପଇସା । ଯେଉଁମାନେ ବାହାଦୁରୀ ଦେଖାଇ ଧଳା ଦୁଇ ନୂଆ ପଇସା ଦକ୍ଷିଣା ଦେଉଛନ୍ତି ସେମାନେ ନିର୍ବୋଧ । ଗୋଟିଏ ନୂଆ ପଇସାରେ ତ କାମ ଚଳିଯିବ ।

ମୁକ୍ତି ଚାହିଁବେ ବୀରଭଦ୍ର କାହିଁକି ? ସେ ମୁକ୍ତି ଚାହିଁବେ ? ସେ ଶୁଆ ନୁହନ୍ତି କି ସାରି ନୁହନ୍ତି ଯେ ପଞ୍ଜୁରୀରେ ଆବଦ୍ଧ ରହି ଶିଖାଇଲା କବିତାର ଅଂଶ ଆବୃତ୍ତି କରି ବାରମ୍ବାର କହି ହେଉଥିବେ—ଚକ୍ରଧର, ପକ୍ଷୀ ଜନ୍ମରୁ ପାର କର ହେ କମଳାର ବର । ସେ ମଣିଷ, ଛେଳା ପିଠା ସ୍ୱାଧୀନ ମଣିଷ । ବଞ୍ଚିଥିବା ଯାଏ ଉଦ୍ୟମ କରୁଥିବେ, ଧନ ଅରଜୁଥିବେ, ସୁଖରେ ରହିବେ । ଠେଲି ପଡ଼ିଲେ କିଏ କାହାର ? ସେମାନେ ଯାହା ମନ ତାହା କରନ୍ତୁ । ଅଧିକ ଧନ କମାଉନ୍ତୁ ନୋହିଲେ ସଞ୍ଚିତ ଧନ ଗମାଉନ୍ତୁ । ସେ ଦେଖିବାକୁ ନ ଥିବେ ।

ବୀରଭଦ୍ର ପଲଙ୍କ ଉପରୁ ଓହ୍ଲାଇଲେ । କାନ୍ଧକୁ ଆଉଜା ହୋଇଥିବା ବାଡ଼ି ଖଣ୍ଡି ଧରି ମଝି ଘରକୁ ଆସିଲେ । ଅଣ୍ଟାର ବେଦନା ବଢ଼ିଛି । ଡାକ୍ତର ଦୁଇଥର ଆସି ଦେଖିଗଲେଣି । ଇଞ୍ଜେକ୍‌ସନ ଫୋଡ଼ିଲେଣି । ଔଷଧ ଦେଇଛନ୍ତି । ବାରମ୍ବାର କହି ଯାଇଛନ୍ତି, ଆପଣ ଭଲ ହୋଇଯିବେ । ଡାକ୍ତର ଧନ ନେଇଛନ୍ତି, ରୋଗ କି ବେଦନା କାଢ଼ି ନେଇ ନାହାନ୍ତି । ଚୁଲବୁଲ୍ କରିବାକୁ ମନା କରିଛନ୍ତି ।

ବେଳ ଆଠଟା ହେଲାଣି । ବାହାରେ ଖରାଦେଇ ଖରା । ପୁଅମାନେ ନିଜ ନିଜର କାମଧନ୍ଦା ଦେଖିବାକୁ ଚାଲିଗଲେଣି । ସେମାନେ ହୁସିଆର ହୋଇଛନ୍ତି ସତ, ମିତବ୍ୟୟିତା ଶିଖିଲେ ନାହିଁ । ବଡ଼ ପୁଅ ହାତରେ ସୁନା ଘଡ଼ି ବାନ୍ଧିଲାଣି । ମଝିଆଁ ପୁଅ ଓ ସାନ ପୁଅ ମଧ୍ୟ ସେଇଆ କଲେଣି । ତିନିଜଣଙ୍କର ତିନିଟା ରେଡ଼ିଓ । ସବୁବେଳେ ଘଡ଼ ଘଡ଼ ଶବ୍ଦ । ଦିନ ସାରା ସବୁବେଳେ ଗୀତ । କି ଲାଭ ମିଳିବ ? କଥା ମାନୁ ନାହାନ୍ତି । ମୁହଁ ଉପରେ ଜବାବ୍ ଦେଉଛନ୍ତି—ଆପଣଙ୍କ ଅମଳ ଗଲାଣି, ଏ ସବୁ ସଭ୍ୟତାର ସାଜ, ନ ରଖିଲେ ସମ୍ମାନ ରହିବ ନାହିଁ ।

ବୀରଭଦ୍ର ତ ଶକ୍ତିହୀନ । ପୁଅମାନଙ୍କୁ ଶାସନ କରିବାର ବୟସ ଗଡ଼ିଯାଇଛି । କହିଲେ କଥା ମାନିବେ ନାହିଁ । ତୁନି ରହିବା ଭଲ । କିନ୍ତୁ ମନ ହାଇଁପାଇଁ ହେଉଛି । ମନ କହୁଛି, ଅରେ ନିର୍ବୋଧ ଦଳ ! ଧନ ସଞ୍ଚୟ କର, ଅଳ୍ପରୁ କୋଠାବାଡ଼ି ତୋଳ । ଧନ ହିଁ ସଭ୍ୟତା, ଧନ ହିଁ ବଳ, ସମ୍ମାନ । ପାଞ୍ଚଲୋକ ନିନ୍ଦା କରିବେ, କିନ୍ତୁ ଦଶ ଲୋକ ହାତ ଯୋଡ଼ିବେ, କରୁଣା ଭିକ୍ଷା କରିବେ ।

ବୀରଭଦ୍ର ହାଣ୍ଡିକୁ ଯିବାକୁ ଚେଷ୍ଟା କଲେ । ଅଣ୍ଟା ବିନ୍ଧୁଛି । କଷ୍ଟ ହେଉଛି । ନା, ଯାଇହେବ ନାହିଁ । ଆଉ ଟିକିଏ ସୁସ୍ଥ ସବଳ ହୋଇଗଲେ ସେ ପଦାକୁ ବାହାରିବେ । ଏ ଘରର କଳ ବିଗିଡ଼ି ଯାଇଛି । ଯୁଆଡ଼େ ଚାହିଁଲେ ଆଖିରେ ପଡ଼ୁଛି ବିଶୃଙ୍ଖଳା । ଧାନ ଫସଲ କିପରି ହୋଇଛି ଦେଖିବାକୁ ଆଗ୍ରହ । ଖାତକମାନଙ୍କଠାରୁ ସୁଧ ଆଦାୟ ହେଉଛି କି ନାହିଁ ? ଭଡ଼ାଟିଆମାନେ ଛଅ ମାସର ଭଡ଼ା ବାକି ରଖିଛନ୍ତି । ତେଲ କଳ କିପରି ଚାଲିଛି ? କେତେ ବସ୍ତା ଶୋରିଷରେ କେତେ ବସ୍ତା ଅଳସି, ମୂଳା ମଞ୍ଜି, ଲଙ୍କାମରିଚ ମିଶାଇବାକୁ ହେବ ଓ କେତେ ବସ୍ତା ଗହମରେ କେତେ ବସ୍ତା ମାଣ୍ଡିଆ କି ତେନ୍ତୁଳି ମଞ୍ଜି ମିଶାଇଲେ ଜଣା ପଡ଼ିବ ନାହିଁ ସେ ସବୁ ମନ୍ତ୍ର ସେ ମଝିଆଁ ପୁଅକୁ ବାରମ୍ବାର ଶିଖାଇଛନ୍ତି । ଭୁଲ୍ କଲେ ସର୍ବନାଶ ହେବ ।

ଏବକା ବେପାର ମିଶାମିଶି କାରବାର । ଭଲ ଓ ନିଘେଲା ବୋଲି ପ୍ରଚାର କରିବାର ଦକ୍ଷତା ଉପରେ ବେପାର ନିର୍ଭର କରୁଛି । ସେତକ ଜାଣିଲେ ବେପାର ଭଲ ଚାଲିବ । ଟଙ୍କା ସୁନା ଘରକୁ ଆସିବ । ସାନ ପୁଅଟା ଏ ବିଦ୍ୟାରେ ପାରଙ୍ଗମ । ହାକିମ ହୁକୁମାଙ୍କୁ ବି ସେ ଖୁସି କରି ଜାଣେ । ସେ ଯଦି ଟିକେ ମିତବ୍ୟୟୀ ହୁଏ ତ ଭଲ ଘର କରିବ ।

ବୀରଭଦ୍ର ପଲଙ୍କ ଉପରକୁ ଫେରି ଆସିଲେ । ମୁଣ୍ଡ ତଳେ ତକିଆ ରଖି ସଳଖ ହୋଇ ଶୋଇଲେ । ଔଷଧ ସେବନର ସମୟ ହେଲାଣି । ବୋହୂମାନଙ୍କର କଜିଆ ଏବଯାଏ ଛିଣ୍ଡି ନାହିଁ । ପାଟିତୁଣ୍ଡ ଶୁଭୁଛି । ଛୋଟ ଛୋଟ ପିଲାଗୁଡ଼ିକ କନ୍ଦାକଟା କରୁଛନ୍ତି । ଝଗଡ଼ାର କାରଣ ବୁଝି ମିଳାମିଶା କରାଇଦେବାକୁ ମନ ହେଉଛି । ସେମାନେ କଣ ବୁଝିବେ ? ପରଘରର ଝିଅଗୁଡ଼ାକ, କେହି କାହାର ଶିରୀ ଦେଖିପାରୁ ନାହାନ୍ତି । ଭିନ୍ନେ ହେବାକୁ ମନ କରୁଛନ୍ତି । ପୁଅମାନଙ୍କୁ ନିଜ ଧର୍ମରେ ଦୀକ୍ଷିତ କରି ସାରିଲେଣି । ବୀରଭଦ୍ର ବଞ୍ଚି ରହିଛନ୍ତି ବୋଲି ସମସ୍ତେ ବାନ୍ଧିହୋଇ ଏକାଠି ପଡ଼ି ରହିଛନ୍ତି । ସମସ୍ତେ ଖୋଜୁଛନ୍ତି, ଏ ବୁଢ଼ାଟା ଏତେଦିନ ବଞ୍ଚି ରହିଛି କାହିଁକି ? ଯମ ଭୁଲିଯାଇଛି କି ?

ବୀରଭଦ୍ର ଆଖି ବୁଜିଲେ । ରାଜଲକ୍ଷ୍ମୀ ଆସି ପାଖରେ ଠିଆହେଲେ । ବୀରଭଦ୍ରଙ୍କର ଆତ୍ମା ସତେ କି ଦେହରୁ ବାହାରି ଶୂନ୍ୟରେ ବିଚରଣ କଲା । ଆଗେ ଆଗେ ରାଜଲକ୍ଷ୍ମୀ ଚାଲିଛନ୍ତି । ପୃଥିବୀର କେତେ ଉପରକୁ ସେ ଉଠି ଗଲେଣି ।

ଜଳଜଳ ହୋଇ ଆଖିକୁ ସବୁ ଦେଖାଯାଉଛି । ଜଣା ଅଜଣା ଅଗଣନ ନରନାରୀ କେଉଁ ସପନପୁରୀରେ ସମବେତ ହୋଇଛନ୍ତି । ସମସ୍ତେ ହସହସ, ସମସ୍ତେ ପ୍ରଫୁଲ୍ଲ । ବୀରଭଦ୍ରଙ୍କୁ ସମସ୍ତେ ଚାହିଁ ରହିଛନ୍ତି ।

ରାଜଲକ୍ଷ୍ମୀ ଆଗ କହୁଛନ୍ତି, ଏଠାରେ ସମସ୍ତେ ସମାନ ବୀରଭଦ୍ର, ଏଠାରେ ସମସ୍ତେ ତୁମର ବନ୍ଧୁ । ମୁଁ ସେ ଦୁନିଆର ରାଜଲକ୍ଷ୍ମୀ, ତୁମର ପତ୍ନୀ ହୋଇ ଖେଳିଥିଲି, ତୁମର ସେବା କରିଥିଲି । ରାଗରୋଷ, ଉତ୍ତେଜନା, ନିର୍ଯାତନା ସହିଥିଲି । ତୁମେ ତୁମର ଧନଲିପ୍ସା ଚରିତାର୍ଥ କରିବାକୁ ମୋତେ କାର୍ଯ୍ୟରେ ଲଗାଇଥିଲ । ତୁମର ରକ୍ତମାଂସର ଉତ୍ତରାଧିକାରୀଙ୍କୁ ଦୁନିଆଁକୁ ଆଣିବାକୁ ମୋତେ କେବେ କେବେ ସ୍ନେହ ଓ ଆଦର କରିଥିଲ । ସବୁ ଧନ ମୋତେ ସମର୍ପି ଦେଇଥିଲ ସେଇମାନଙ୍କ ପାଇଁ । ଚିହ୍ନି ପାରୁଛ ଏମାନଙ୍କୁ ?

ବୀରଭଦ୍ର ବଲବଲ କରି ଚାହିଁଲେ । ଦୋ ଦୋ ଚିହ୍ନା ହେଲେ । ସେମାନେ ଜଣ ଜଣ କରି କହିଲେ । ବୀରଭଦ୍ର ଅବିଚଳିତ ହୋଇ ଶୁଣିଲେ । ଯେଉଁମାନଙ୍କର ଧନସମ୍ପତ୍ତି ସେ ଅପହରଣ କରି ଦରିଦ୍ର କଙ୍ଗାଳ କରି ବାଟରେ ଛାଡ଼ିଥିଲେ, ଯେଉଁମାନଙ୍କୁ ଅଖାଦ୍ୟ ଖୋଇ ରୋଗରେ ଛଟପଟ କରିଥିଲେ ଓ ଯେଉଁମାନଙ୍କର ମରଣ ପାଇଁ କେବଳ ବୀରଭଦ୍ର ହିଁ ଦାୟୀ, ସେହିମାନେ ତାଙ୍କୁ ଘେରି ରହିଛନ୍ତି, ଜଣ ଜଣ କରି ତାଙ୍କର ଗୁଣ ବଖାଣୁଛନ୍ତି । ସେମାନେ ସମସ୍ତେ ଏକଯୋଟ ହୋଇ ପ୍ରତିଶୋଧ ନେବେ କି ? କି ପ୍ରତିଶୋଧ ନେବେ ?

ଯେତେ ଦେବାଦେବୀଙ୍କ ଉପରେ ସେ ଫୁଲ ଚନ୍ଦନ ଚଢ଼ାଇଥିଲେ, ଯାହାଙ୍କ ଆଗରେ ସାଷ୍ଟାଙ୍ଗ ପ୍ରଣିପାତ କରି ମନକାମନା ପୂର୍ଣ୍ଣ କରିବାକୁ ଆକୁଳ ନିବେଦନ କରିଥିଲେ, ସେମାନେ ଦେଖାଯାଉ ନାହାନ୍ତି । କୁଆଡ଼େ ଗଲେ ସେମାନେ ? ଏତେ ଶତ୍ରୁଙ୍କର କବଳରୁ କିଏ ତାଙ୍କୁ ଉଦ୍ଧାର କରିବ ?

ଡରୁଛ କି ବୀରଭଦ୍ର—ରାଜଲକ୍ଷ୍ମୀ କହୁଛନ୍ତି ।

ବୀରଭଦ୍ର ତାଙ୍କର ଆଡ଼କୁ ଅନାଇଁ ରହିଲେ । ଆଲୋକ ପରି ଉଜ୍ଜ୍ୱଳ ଓ ତେଜିଆନ ନାରୀମୂର୍ତ୍ତି । ସୁନ୍ଦର ଓ ହସ ହସ । କେବଳ ସେହି କହୁଛନ୍ତି, ଅଗଣନ ନରନାରୀ ଚାହିଁ ରହିଛନ୍ତି । ସମସ୍ତେ ସେମାନେ ସୁନ୍ଦର, ଉଲଗ୍ନ, ହସ ହସ । ଏ ଦେଶରେ ଘରଦ୍ୱାର, ଧନସମ୍ପତ୍ତି, ଦେହର ଆଭରଣ, କି ପେଟପାଇଁ ଅନ୍ନ ଲୋଡ଼ା ହୁଏନାହିଁ । ଏ ଦେଶରେ କାହାର କିଛି ଅଭାବ ହୁଏନାହିଁ, କାରଣ ଏଠାରେ କେହି ଘର ସଂସାର କରି ରହେନାହିଁ ।

ରାଜଲକ୍ଷ୍ମୀ ଅଙ୍ଗୁଳି ନିର୍ଦ୍ଦେଶ କରି ଦେଖାଇ ଦେଉଛନ୍ତି, କହୁଛନ୍ତି ଦେଖ ହେ ବୀରଭଦ୍ର—

ବୀରଭଦ୍ର ଦେଖୁଛନ୍ତି । ଯେଉଁ କୋଠା ସେ ତୋଳି ଆସିଥିଲେ ସେ କୋଠା ନିଶ୍ଚିହ୍ନ ହୋଇଛି । ସେହି ସ୍ଥାନଗୁଡ଼ିକରେ ନୂଆ ନୂଆ ଲୋକ ହସିହସିକା

ସେସବୁ ଘରଭିତରକୁ ଯାଉଛନ୍ତି ଓ ଆସୁଛନ୍ତି । ଯେଉଁସବୁ ଭୂମି ମୋଅର ବୋଲି ସେ କହୁଥିଲେ ସେଗୁଡ଼ିକର ଅଧିକାରୀ ହୋଇଛନ୍ତି ଆଉ କେଉଁମାନେ । ବୀରଭଦ୍ର ଛନ୍ତି ପାରୁନାହାନ୍ତି ।

ସେମାନେ କିଏ ରାଜଲକ୍ଷ୍ମୀ ?

ସେମାନେ ମଣିଷ ପିଲା ବୀରଭଦ୍ର । ସେ ଦୁନିଆଁ ସେମିତି ପଡ଼ି ରହିଥିବ, କେତେ ମଣିଷ ଯିବେ ଓ ଫେରିବେ ।

ରାଜଲକ୍ଷ୍ମୀ, ସେମାନେ ତୁମର ଓ ମୋଅର ରକ୍ତ ମାଂସ ମଜ୍ଜାର ଅଂଶ ଧରି ଆତଯାତ ହେଉଛନ୍ତି ତ ?

କେବଳ ତୁମର ଓ ମୋର ନୁହେଁ ବୀରଭଦ୍ର, ଯେଉଁମାନଙ୍କର ଧନ ଅପହରଣ କରିଛ, ଯେଉଁମାନଙ୍କର ଖାଦ୍ୟରେ ବିଷ ଦେଇ ମାରିଛ, ସେମାନଙ୍କର ରକ୍ତ ମଧ୍ୟ ମିଶିଯାଇଛି ତମର ଉତ୍ତରାଧିକାରୀଙ୍କ ଦେହରେ । ଗୋଟିଏ ସହସ୍ର ବର୍ଷ ଅତୀତ ହେଲାଣି । ମଣିଷ ଦେହର ଚାଳିଶି ପୁରୁଷ ଅତୀତ ହେଲାଣି । ସେମାନଙ୍କ ଦେହରେ ତମର ରକ୍ତ ମାଂସର କଣିକା କେତେ ? ସେମାନେ ତାଙ୍କର ପ୍ରପିତାମହର ନାମ ଜାଣନ୍ତି ନାହିଁ । ନିଜେ ତୁମେ ଜାଣ କି ? ଶୁଣ ବୀରଭଦ୍ର, ମଣିଷ ପାଇଁ ଉଦ୍ୟମ କର, କାରଣ ସବୁ ଉଦ୍ୟମ ମଣିଷର ଭଲ କି ମନ୍ଦ ପାଇଁ । ଦୁନିଆଁର ମଣିଷ ନିଜର ପ୍ରପିତାମହର ନାମ ଧାମ ମଧ୍ୟ ଜାଣେ ନାହିଁ । ଆଦି ପୁରୁଷଙ୍କୁ ଅନୁମାନ କରିବା ତା ପକ୍ଷେ ସମ୍ଭବ ନୁହେଁ ।

•

ଅଜା, ଅଜା—

ବୀରଭଦ୍ର କେଉଁ ଅଜଣା ସପନ ଦେଶରୁ ଫେରି ଆସିଲେ । ଆଖିଖୋଲି କଣେଇଁ ଚାହିଁଲେ । ପଲଙ୍କ ପାଖରେ ବଡ଼ ନାତୁଣୀ ଲକ୍ଷ୍ମୀ ଠିଆ ହୋଇଛି । ହାତରେ ଔଷଧ ଗ୍ଲାସ । କଅଁଳେଇ କହୁଛି—ଔଷଧ ନିଅ ଅଜା, ବେଳ ହେଲାଣି ।

ଔଷଧ ଢୋକିବାକୁ ବୀରଭଦ୍ର ଅଁ କଲେ ।

# ପ୍ରେତର ବିଳାପ

ସହଜରେ ମୁଁ ମରି ନ ଥିଲି । ଯେଉଁ ଜଡ଼ ଦେହଟାରେ ମୁଁ ଏକସ୍ତରୀ ବର୍ଷ ବାସ କରିଥିଲି ସେ ଦେହଟାକୁ ଛାଡ଼ି ଚାଲି ଆସିବାକୁ ମୋର ମୋଟେ ଇଚ୍ଛା ନ ଥିଲା । ସେ ଦେହଟା ଅତି ଦୁର୍ବଳ ଓ ବିକଳାଙ୍ଗ ହୋଇଥିଲା, ଏହା ମୁଁ

ଜାଥିଣିଲି ଓ ପ୍ରତି ମୁହୂର୍ତ୍ତରେ ଅନୁଭବ କରୁଥିଲି । ତଥାପି ସେ ଦେହକୁ ମୁଁ ନିର୍ବୋଧ ଅତ୍ୟଧିକ ସ୍ନେହ କରୁଥିଲି ।

ଦେହରୁ ବାହାରି ଆସିବା ଛଡ଼ା ମୋର ଅନ୍ୟ ଗତି ନ ଥିଲା । ମୁଣ୍ଡରେ ଯେଉଁ କେତେକ କେଶ କାଁ ଭାଁ ହୋଇ ଅଧୁରି ବାକି ରହିଥିଲା, ସେତକ ପାକଲା ଧୋବ ଫରଫର ହୋଇ ସାରିଥିଲା । ଭ୍ରୂଲତାର କେଶର ମଧ୍ୟ ସେହି ଅବସ୍ଥା । ଆଖି ଦିଓଟିର ଶକ୍ତି ଧୀରେ ଧୀରେ କମି ବିଯୁକ୍ତ ନଅ ହୋଇଥିଲା । ତେଣୁ ଆଖିରେ ମୋଟା କାଚର ଚଷମା ମୁଁ ବ୍ୟବହାର କରୁଥିଲି । ରୋଗ ଶଯ୍ୟାରେ ଯେତେଦିନ ଯାଏ ମୁଁ ଘାଣ୍ଟି ହେଉଥିଲି, ମୋ ଆଖିରେ ଚଷମା ନ ଥିଲା । ଯେଉଁମାନେ ମୋର ସେବା ଶୁଶ୍ରୂଷା କରୁଥିଲେ, କର୍ତ୍ତବ୍ୟବୋଧରୁ ହେଉ କି ମୋ ପ୍ରତି ସ୍ନେହ ଓ ଭକ୍ତି ପାଇଁ ହେଉ, ସେହି ଆତ୍ମୀୟ ସ୍ୱଜନମାନେ ମୋ ଆଖିରେ ଗୁଡ଼ିଏ ଛାୟାମୂର୍ତ୍ତି ପରି ଦେଖା ଯାଉଥିଲେ । ତେଣୁ ମୁଁ ବୁଝି ପାରୁଥିଲି ଯେ ଦୃଷ୍ଟିଶକ୍ତି ମୋର ସମ୍ପୂର୍ଣ୍ଣ ନଷ୍ଟ ହୋଇ ନ ଥିଲା । ଏ ଦେହରେ ଆଉ ଦିନାକେତେ ବାସ କଲେ ଦେଖିବାକୁ ମୋର ଅସୁବିଧା ହୋଇ ନଥାନ୍ତା । ଆବଶ୍ୟକ ମଣିଥିଲେ ମୁଁ ଚଷମା ବଦଳାଇ ପାରିଥାନ୍ତି ।

କର୍ଣ୍ଣର ଶ୍ରବଣ ଶକ୍ତି ହ୍ରାସ ହୋଇଥିଲା । ଲୋକେ ମୋତେ ବଡ଼ବୋଲା ବୋଲି ପ୍ରଚାର କରିବାକୁ ଆରମ୍ଭ କରି ଦେଇଥିଲେ । ପାଖ ଲୋକଙ୍କର ଭୁନ ଭୁନ କଥା ଦିନେ ମୋତେ ଶୁଭୁ ନ ଥିଲା କିନ୍ତୁ ଶୁଭୁ ନାହିଁ ଓ ମୁଁ ବୁଝି ପାରୁନାହିଁ, ଏପରି ଅପମାନିଆଁ ଧାରଣାର ରକ୍ଷା ପାଇବାକୁ ମୁଁ ମୁହଁକୁ ଚାହିଁ ହସ ହସ ହେଉଥିଲି । ବୟସର ବୃଦ୍ଧି ସଙ୍ଗେ ସଙ୍ଗେ ମୁଁ ଯେ ଧୀରେ ଧୀରେ ବଧିର ହୋଇ ଆସୁଥିଲି ଲୋକଙ୍କୁ ଏହା ମୁଁ ଜଣାଇଁ ଦେବାକୁ ଚାହୁଁ ନ ଥିଲି । କାହାରି ସହାନୁଭୂତି-ସୂଚକ ଆହା ଉହୁ ଶୁଣିବାକୁ ମୁଁ ପସନ୍ଦ କରୁ ନ ଥିଲି । ତେଣୁ ଭଲ ଶୁଭୁ ନ ଥିଲେ ବି ମୋର ଶ୍ରବଣ-ଶକ୍ତି ଯେ ଆଗପରି ତୀକ୍ଷ୍ଣ ଅଛି, ସମସ୍ତଙ୍କୁ ଏହା ଜଣାଇଁଦେବାକୁ ମୁଁ ଅଭିନୟ କରୁଥିଲି । ଠକାମି ମଧ୍ୟ କରଉଥିଲି ।

ଅଭିନୟ ଚିରଦିନ ସତ୍ୟ ହୋଇ ରହିପାରେ ନାହିଁ । ଦୁନିଆଁର ସବୁଲୋକ ସବୁଦିନ ପାଇଁ ନିର୍ବୋଧ ହୋଇ ରହିପାରନ୍ତି ନାହିଁ । ଦିନେ ମୁଁ ବୁଝିପାରିଲି ଯେ ସେମାନେ ନିର୍ବୋଧ ନୁହନ୍ତି, ମୁହିଁ ଏକା ନିର୍ବୋଧ । ସେମାନଙ୍କର ଭୁନ ଭୁନ କଥା, ଓଠର ଚଳନା, ଦୃଷ୍ଟିର ଇଙ୍ଗିତ, ମୁଣ୍ଡହଲା ଓ ଅବୟବର ଅବଲମ୍ବକୁ ଲକ୍ଷ୍ୟ କରି ମୋର ପ୍ରବଳ ପ୍ରଖର ଧୀ ଶକ୍ତିକୁ ଠାଉ ଠାଉ ମନ୍ଥନ କରି ସେମାନଙ୍କର ଭାବ-ନବନୀତକୁ ମୁଁ ଠୁଳ କରୁଥିଲି । ଅଳପ ହସି ଉତ୍ତର ଦେଉଥିଲି । ହାସ୍ୟରୋଳ ଛୁଟାଇ ପାରୁଥିଲି । ଭାବୁଥିଲି ମୋର ଉତ୍ତରକୁ ସେମାନେ ପସନ୍ଦ କରିଛନ୍ତି, ଗ୍ରହଣ କରିଛନ୍ତି, ଆମୋଦିତ ହୋଇଛନ୍ତି ।

ଆମୋଦିତ ହେଉଥିଲେ ସେମାନେ, କିନ୍ତୁ ମୋର ବୁଦ୍ଧି ପାଇଁ ନୁହେଁ, ମୋର ବୁଦ୍ଧିହୀନତା ପାଇଁ, ମୋର ଅବାନ୍ତର ଉତ୍ତର ପାଇଁ । ପରେ ମୁଁ ବୁଝି ପାରିଲି, ପୁରୁଷ ହୋଇ ସ୍ତ୍ରୀର ଭୂମିକାରେ ଅତି ସାବଧାନତା ଓ ନିବିଷ୍ଟତା ସହ ଅଭିନୟ କରିବାକୁ ଚେଷ୍ଟା କରୁଣୁ ନକଲି ବକ୍ଷୋଜର ଫାଶ ହୁଗୁଳିଛି । ପ୍ରେକ୍ଷାଳୟର ଦର୍ଶକବୃନ୍ଦ କୋଳାହଳ କରି କରତାଳି ଦେଇ ଏନ୍‌କୋର୍ ଶବ୍ଦ କରୁଛନ୍ତି । ହାସ୍ୟରୋଳରେ ପ୍ରେକ୍ଷାଳୟ ଫାଟିପଡ଼ୁଛି । ମୋର ଦୃଷ୍ଟି ଜନତା ଉପରେ ସିନା, ମୋର ବକ୍ଷ ଉପରେ ତ ନାହିଁ ? ଉତ୍ତମ ଅଭିନୟ ସେମାନଙ୍କର ମନକୁ ଛୋଇଛି ଜାଣି ରଙ୍ଗମଞ୍ଚ ଉପରେ ମୁଁ ଗର୍ବିତ ହୋଇଥିଲି, ଉତ୍ସାହିତ ହୋଇଥିଲି; କିନ୍ତୁ ସେତେବେଳେ ବୁଝିପାରୁ ନ ଥିଲି, ସମୟ ନ ହେଉଣୁ, ମୋ ଭୂମିକାର ନର୍ତ୍ତନ ଓ କଥନ ସମାପନ ନ ହେଉଣୁ, ମୋର ଉତ୍ସାହର ସହସା ପରିସମାପ୍ତି କରି କାହିଁକି ପରଦା ପତନ ହେଲା !

ବୁଝିଲି । ଦୁନିଆଁର ଅଭିଜ୍ଞତା ମୋତେ ବାରମ୍ବାର ଶିଖାଇଛି ନିର୍ଲଜ ନ ହେଲେ ଏ ଦୁନିଆଁକୁ ଜିତି ପାରିବ ନାହିଁ । ଯେଉଁମାନେ ମାଇକ୍ର, ମୁଖ-ମୁଖାଇକା ଯେଉଁମାନଙ୍କୁ ବାନ୍ଧିରଖିଛି, ପ୍ରଶଂସା ଓ ଚଟେକାଟେକ କଥା ଶୁଣି ଯେଉଁମାନେ ଆହ୍ଲାଦିତ ହୋଇ ମନ ଭିତରେ ସାମୟିକ ବଡ଼ ପଣିଆର ଗୌରବରେ ଫୁଲି ଫୁଲି ଉଠନ୍ତି, ଏ ଦୁନିଆଁର ପଙ୍କୁଆ ପୋଖରୀରେ ଘାଣ୍ଟି ଚକଟି ହୋଇ ଯେଉଁ ନିପାରିଲା ଅଭିଳାମାନେ ନିଜକୁ ନିଷ୍କଳଙ୍କ ଓ ସଚ୍ଚୋଟ କରି ରଖିବାକୁ ଉଦ୍ୟମ କରନ୍ତି ସେମାନଙ୍କର ଅବସ୍ଥା ଠ-ଠା-ଠି ହୁଏ ।

ଅନୁଭୂତି ମତେ ଶିଖାଇଥିଲା ଯେ ନିଲଜା ନିଲଠା ନ ହେଲେ ଏବକା ଦୁନିଆଁରେ ତିଷ୍ଠି ରହିବା କାଠିକର ପାଠ । ଟବେଲ ବେଲେ ଖୁଁଗୁଥିଲି ଭାରତୀୟ ପିଙ୍ଗଲ-କୋଡ଼ରୁ ଚୁଇଶ କୋଡ଼ିଏ ଦଫାଟା ଉଠାଇ ଦେବା ଉଚିତ । ଠକାମି ଧପ୍‌ପାବାଜି ପାଇଁ ଦଣ୍ଡବିଧାନ ଅଛି ଏ ଦଫାରେ । ଘରୁ ପଦାକୁ ଗୋଡ଼ କାଢ଼ିଲେ ଯେଉଁ ବ୍ୟକ୍ତିଟି ସଙ୍ଗରେ ପ୍ରଥମରେ ଦେଖା ହେବ ସେ ଜଣକ ଯେ ଚୁଇଶ-କୋଡ଼ିଏ ନୁହେଁ ଏହା ଦୃଢ଼ତାର ସହିତ କିଏ କହି ପାରିବ ?

ନିଜେ ମୁଁ କିଅଣ ଥିଲି, ଅଜି ମୋର ବନ୍ଧୁମାନେ, ଶତ୍ରୁମାନେ ଓ ମୋ ଦେଶରେ ସମ୍ମାନିତ ହେଉଥିବା ନେତା, ଉପନେତାମାନେ ଓ ପାଦ ପୂଜା ପାଉଥିବା ବିଭିନ୍ନ ମତାବଲମ୍ବି ଗୁରୁଦେବମାନେ ? ପିଙ୍ଗଳ କୋଡ଼ର ଚୁଇଶ କୋଡ଼ିଏ ଦଫାଟି ତେବେ ଥାଉ, ସାହସିଆ ନିର୍ବୋଧମାନେ ଯେଉଁମାନେ ଘାସକୁ ଗ୍ରେଟ ଓ ପାଲକୁ ଲମ୍ବ, ଯେଉଁମାନେ ଦେବ-ଦିଆଇବ-ଦେପଦ ବୋଲାଇବ ମନ୍ତ୍ର ଜାଣନ୍ତି ନାହିଁ, ଯେଉଁମାନେ ହାଇଁ ପାଇଁ ହେଉଥିଲେ ବି ନେଇ-ଆଣି-ଥୋଇପାରିବାର ଦକ୍ଷତା ହାସଲ କରି ପାରି ନାହାନ୍ତି, ସେଇମାନଙ୍କୁ ଶାସନ କରି ବାଟରୁ ଅବାଟକୁ ଆଣିବାରେ ସାହାଯ୍ୟ କରିବ । ଏ ବିଷୟରେ ଏତିକି ମୋର ବକ୍ତବ୍ୟ ।

ମୁଁ ପ୍ରେତ-ପୁରୁଷ । ଅଛି ଆପଣାର ଦେହଟିରୁ ବାହାରି ଆସି ସେଇ ଦେହଟାକୁ ଓ ସେ ଦେହରେ ଥିବା ସମୟରେ ଯେତେ ମୋର ଅପୂର୍ଣ୍ଣ ବାସନା ଥିଲା ସେଗୁଡ଼ିକୁ ଅଦ୍ୟାପି ଝୁରି ହେଉଛି । ବାକୀ ରହିଯାଇ ଥିବା ଆଶାଗୁଡ଼ିକ ମୋର ଶୂନ୍ୟ-ଶରୀରରେ ଚରିତାର୍ଥ ହେବାର ତ ସମ୍ଭାବନା ନାହିଁ ତେଣୁ ମୁଁ ଚଢ଼ଚଢ଼ ହେଉଛି, ଘର୍ମିବିଦାରି ଛଟପଟ ହେଉଛି । ମୋର ଭାଷା ତ 'କସ୍‌ମସିଆ', ବୁଝିବା ଲୋକେ ବୁଝିବେ, ନ ବୁଝିବା ଲୋକେ ତାଟିଆ ଉପର ଗୃଣ୍ଡିବେ, ରକ୍ତ ଗୃଡ଼ଲ ଗୃଵାଇବେ । ମୋର କି ଥାଏ ? ସେମାନେ ଏଠାକୁ ଆସିଲେ ଦେଖାଦେଖି ହେବା ।

ମୋର ଅତୀତ ସେରନ୍ଧ୍ରା ଦେହଟା ବିଷୟରେ କସ୍‌ମସ୍‌ରେ ସିଗ୍‌ନାଲ କରିବାକୁ ବସୁଣୁ ଆଉ କେତେ କଥା କହି ହୋଇଗଲା । କହୁଥିଲି ମୋର ଶ୍ରବଣ ଶକ୍ତିର ହ୍ରାସ ହେବା କଥା । ମୁଁ ଜାଣିଲି । ମୁଁ ଏହା ମଧ୍ୟ ଜାଣିଲି ଯେ ମୋର ଜାଣିବା ଆଗରୁ ଅନ୍ୟମାନେ ଏହା କେବଠଁ ଜାଣି ପାରିଥିଲେ । ମୁଁ ହଟିବାର ଲୋକ ନୁହେଁ । ପ୍ରତିଜ୍ଞାବଦ୍ଧ ହେଲି ଯେ ଶ୍ରବଣ ଶକ୍ତିକୁ ମୁଁ ଅଲବତ୍ ଫେରାଇ ଆଣିବି । ଆଣିଲି, କାନରେ ଇଅରଫୋନ୍ ଯନ୍ତ୍ର ଲଗାଇଲି । ମରଣ ଯନ୍ତ୍ରଣାରେ ଯେତେବେଳେ ଛଟପଟ ହେଉଥିଲି ଯନ୍ତ୍ରଟି ପାଖରେ ଥିଲେ ବି ମୁଁ ବ୍ୟବହାର କରିପାରୁ ନ ଥିଲି । ଆତ୍ମୀୟସ୍ୱଜନ ଓ ଗଲା-ଆଇଲା ଲୋକେ ମୋ ସମ୍ବନ୍ଧରେ କଅଣ ଭୁନ ଭୁନ କଥାଭାଷା ହେଉଥିଲେ ମୋର ଜାଣିବାର ଉପାୟ ନ ଥିଲା, ଆଗ୍ରହ ବି ନ ଥିଲା । ସମାଜର ଓ ଦେଶର ମୁଁ ଜଣେ ସମ୍ମାନିତ ଗଣ୍ୟମାନ୍ୟ ଲୋକ । ସେମାନେ ଅବଶ୍ୟ ମୋର ପ୍ରଶଂସା କରୁଥିବେ, ଗୁଣଗାନ କରୁଥିବେ । ମୋର ମୃତ୍ୟୁ ପରେ କପଟ ଆଡ଼ମ୍ବରରେ ସେମାନେ ମୋର ଶ୍ରାଦ୍ଧ-କ୍ରିୟା ସମ୍ପନ୍ନ କରି ମୋର ଆତ୍ମାର ସଦ୍‌ଗତି ବିଧାନ କରାଇବେ ବୋଧହୁଏ ସେହି ବିଷୟ ବିଚାରୁଥିବେ ।

କେଜାଣି ବା ମୋର ବନ୍ଧୁମାନେ ବିଚାରୁଥିବେ, କପଟ ଗୋଟିଏ ଶୋକ-ସଭା ଅନୁଷ୍ଠିତ କରାଇବେ । ଖବରକାଗଜରେ ଫଟୋ ବାହାରିବ, ଦୁଃ-ସମ୍ବାଦ ପ୍ରଚାରିତ ହେବ । ବିରାଟ ସଭାରେ ମୋର ଗୁଣ-କୀର୍ତ୍ତନ କରାହେବ । ମୋର ଗୁଣ ସ୍ମରଣ ସଭାରେ ବକ୍ତୃତା ଦେଉଣୁ କେତେଜଣ ପେଷାଦାର ଅଭ୍ୟସ୍ତ କହାଳୀ ଆଖିରୁ ଲୁହ ଗଡ଼ାଇବେ । ଭାବପ୍ରବଣ ହୋଇ, ଉତ୍ତେଜିତ ହୋଇ ବିରାଟ ଜନତା (—ହେବେ ପରା ତେରଜଣ, ଯେଉଁମାନଙ୍କ ମଧ୍ୟରୁ ନଅଜଣ-ନିଷ୍କର୍ମୀ ବାଟୋଇ ଘଟଣାଟା କଅଣ ବୁଝିବାକୁ ଅନ୍ୟମନସ୍କ ହୋଇ ସଭାଗୃହର ବାହାରେ ଥାଇ ଉଙ୍କି ମାରୁଣୁ ଭିତରକୁ ଅସନ୍ତୁ ଟଳାର ଶୁଣି ଶ୍ରାନ୍ତ ହରଣ କରିବାକୁ ସଭା ଗୃହରେ ପଶି ଏଠି ସେଠି ବସି ପଡ଼ିଥିବେ, ଆଉ ବିଚାର କରୁଥିବେ କେତେବେଳେ ଏ ବିରକ୍ତିକର ସଭାର ଅବସାନ ହେବ ଓ ନିଷ୍କୃତି ମିଳିବ—) ଆଗରେ

ମୋର କଳ୍ପ-କର୍ମର ବାହ୍ୟାରୂପ ଓ ନ କଳ୍ପ କର୍ମର ମନଗଢ଼ା ସ୍ୱରୂପ ଭଲକୁ ତାଲ କରି ବର୍ଣ୍ଣନା କରିବେ ।

ସେହି ବିଷୟରେ ବିତର୍କ ଚାଲିଥିବ ପରି ମୋର ଶେଗଶଯ୍ୟା ପାଖରେ, ତୁମ୍ଭୀ କ୍ଷମା ଯେପରିକ ବଧିର ମୁଁ ମୋଟେ ଶୁଣି ପାରିବି ନାହିଁ । (ସମସ୍ତେ ଠିଆ ହୋଇ ଦୁଇ ମିନିଟ ନୀରବ ପ୍ରାର୍ଥନା କରିବେ, ଭଗବାନଙ୍କ ଆଗରେ,ହେ ଭଗବାନ ! ଅମୁକ ଲୋକ ଥିଲ ସତ୍ୟନିଷ୍ଠ, ଚରିତ୍ରବାନ୍, ସହାନୁଭୂତିଶୀଳ, ନିର୍ଭୀକ, ଲୋକପ୍ରିୟ । ହେ ଅନ୍ତର୍ଯ୍ୟାମୀ, ଦେଶ ଓ ଦଶ ପାଇଁ ସଦାବେଳେ ତାଙ୍କର ମନ ଓ ଜୀବନ ବ୍ୟାକୁଳ ହେଉଥିଲା । ତାଙ୍କର ଆତ୍ମାର ସଦ୍‌ଗତି ବିଧାନ କର—) । ଦେଶର ଜନତାଙ୍କର ପ୍ରତିନିଧିମାନେ ´ ତେରଟି କାଳପାଇଁ ମୋଟେ ତେର ଜଣ—ପାଶ୍ଚାତ୍ୟ ଦେଶମାନଙ୍କରେ ଏହି ସଂଖ୍ୟାଟି ଅଶୁଭ ସୂଚକ ) ଅମୁକଙ୍କର ତିରୋଧାନରେ ଅତ୍ୟନ୍ତ ମର୍ମାହତ ହୋଇ ଏହି ପ୍ରସ୍ତାବ ସର୍ବସମ୍ମତିକ୍ରମେ ଗ୍ରହଣ କରୁ ଅଛନ୍ତି ଯେ ସେ ଦେଶର ଜଣେ କୃତୀ ସନ୍ତାନ ଥିଲେ ଓ ଦେଶପାଇଁ ତାଙ୍କର ଦରଦୀ ପ୍ରାଣ ଅହରହ କାନ୍ଦୁଥିଲା । ଦେଶର ଜନତାଙ୍କର ମଙ୍ଗଳ ପାଇଁ ସେ ଧନ ମନ ଓ ଏପରିକି ଜୀବନର ବହୁମୂଲ୍ୟ ସମୟ ଅର୍ପଣ କରିଥିଲେ । ତେଣୁ ତାଙ୍କର ତିରୋଧାନ ପାଇଁ ଦେଶର ଜନତା ଅତ୍ୟନ୍ତ ଦୁଃଖିତ ଏବଂ ତାଙ୍କର ଦୁଃଖ-ସନ୍ତପ୍ତ ପରିବାରଙ୍କର ଶୋକରେ ସମବେଦନା ଜଣାଉଛି ।

ସେମାନଙ୍କର ମନତଳେ ଛଟପଟ ହେଉଥିବା ଗୁରିଶ କୋଡ଼ଏ ମାର୍କା ସହାନୁଭୂତି, ସମବେଦନା ଓ ଉଦ୍ଦେଶ୍ୟ ମୁଁ ବେଶ୍ ଅନୁମାନ କରିପାରୁଥିଲି । ସେମାନେ ମୋର ମରଣ ହିଁ କାମନା କରୁଥିଲେ । ବୋଧହୁଏ ମୋର ଧନ ଓ ଯଶ ଉପରେ ତାଙ୍କର ଥିଲା ଗୋପନ ଦ୍ୱେଷ ଓ ଈର୍ଷା ଥିଲା ଏବଂ ସେମାନେ ମନେ ମନେ ଠାକୁରଙ୍କ ପାଖରେ ପ୍ରାର୍ଥନା କରୁଥିଲେ, ଅମୁକ ଆମର ସମ୍ମାନର ଗ୍ରାସ୍ୟ, ପ୍ରଶଂସାର ମାୟା, ସମବେଦନାର ନକଲ କାୟା ଗ୍ରହଣ କରନ୍ତୁ ପଛକେ ସେ ଯାଆନ୍ତୁ । ମାୟାଜାଲ ପକାଇ ଧୂଆଁ ବାଣ ମାରି ସେ ପାର୍ଥିବ ଯଶ ଅର୍ଜନ କରିଛନ୍ତି । ଧନ ଓ ମାନ ସଂଚୟ କରିଛନ୍ତି । ପ୍ରତିପତ୍ତିର ନୌକା ଅନ୍ୱେଷୀ ଏ ଯୁଗର ବିକ୍ଷୋଭିତ ଅଶାନ୍ତ ସମାଜର ବାତ୍ୟା-ବିତାଡ଼ିତ ସଲିଳ-ପ୍ରସାରର ଉତ୍ପାତ ଲହଡ଼ି ଉପରେ ନିର୍ବିଘ୍ନରେ ସେ ନୌକା ଚଳାଇଛନ୍ତି । ନୌକା ଦଦରା ହୋଇଛି । ଅଟକିଛି ସତ, କିନ୍ତୁ ସେ ଯଦି ରହିବେ ନୌକାକୁ ମରାମତି କରି ସଜାଡ଼ି ଦେବାକୁ କିମ୍ବା ନୂତନ ପାର୍ଟିର ନୂତନ ନୌକା ଅନ୍ୱେଷଣ କରିବାକୁ ସେ ଭଲେହେଲେ କୁଣ୍ଠିତ ହେବେ ନାହିଁ । ସେ ଅଧିକ ଧନ, ମାନ, ଯଶ, ପ୍ରତିପତ୍ତି ସାଉଁଟି ସଂଚୟ କରିବାକୁ ଚାହାନ୍ତି । ସେ ବାଟ ଛାଡ଼ି ନାହାନ୍ତି ।

ସେ ଯାଆନ୍ତୁ ଭଗବାନ । ତାଙ୍କର ଗୋଟାଏ ଆତ୍ମା ଅଛି କି ନାହିଁ ତୁମକୁ ଜଣା, ତେଣୁ ଆତ୍ମାର ସଦ୍‌ଗତି ହେବ କି ନାହିଁ ସେ ବିଷୟ ତୁମେ ଓ ତୁମର

ଦେବ-ସଭା କି ନେବ-ପରଷଦ୍ ସ୍ୱୀକାର କରିବେ । ସେଥିପାଇଁ ଆମର ଇଚ୍ଛା ନାହିଁ ।
ସେ ଲୋକଙ୍କୁ ହସାଇଛନ୍ତି, ମତାଇଛନ୍ତି ଓ ଶେଷକୁ ତତାଇଛନ୍ତି; କିନ୍ତୁ ତାଙ୍କର
କୂଟବୁଦ୍ଧିର ଜାଲ ସୁଦୂର-ପ୍ରସାରୀ, ଗୁଢ଼ଅଛେଦ୍ୟ । ତେଣୁ ଏବେ ଲୋକେ ତାଙ୍କୁ
ଗୁରୁ ଚଣ୍ଡାଳ ବୋଲି ଗାଳି ଦେଲେ କି ତାଙ୍କର ଫଟୋକୁ ପୋଡ଼ିଲେ ବି
ସେ ଭିଲେମାତ୍ର ବିଚଳିତ ନୁହନ୍ତି । ଡେଙ୍ଗା ଗଛ ଉପରେ ବସି ଗେଧ ମାଙ୍କଡ଼
ପରି ସେ ନକଲି ଦାନ୍ତ କଡ଼ମଡ଼ କରୁଛନ୍ତି । ଖତେଇ ହେଲେ ଉହୁଁ କି ଉଠୁଛନ୍ତି ।
ସେ ତୁମକୁ ହିଁ ଉପହାସ କରୁଛନ୍ତି ।

କାହିଁକି ନ କରିବେ ? ତୁମେ ତାଙ୍କୁ ସୁ-ରୂପ ସଙ୍ଗେ ସଙ୍ଗେ ପ୍ରଖର
କୂଟବୁଦ୍ଧି ଦେଇଥିଲ । କଥା କଥାକେ ହସିବାର କାଇଦା, ଆବଶ୍ୟକ ବେଳେ
କାନ୍ଦିବାର ଦକ୍ଷତା ତୁମେ ହିଁ ତାଙ୍କୁ ଦେଇଥିଲ । ବାଗ୍ମିତା ହାସଲ କରିବାର
ଯେଉଁ କୌଶଳ ତାଙ୍କ ଭିତରେ ସମ୍ପାଦିଥିଲ ତାହାରି ପ୍ରଭାବରେ ସେ ପବନରେ
ଗଣ୍ଠି ଓ ପାଣିରେ ଘର ପକାଇ ପାରୁଥିଲେ । ସେ ବୋଲ-ଝାଞ୍ଜି ପରି ଏପାଖ
ସେପାଖ ହେଲେ ମଧ୍ୟ ବାକ୍‌ଚାତୁରୀରେ ସମର୍ଥକ ନିର୍ବୋଧ ଅବା ବୁଦ୍ଧିଆ ଅନୁଗୃହୀତ
କି ଭବିଷ୍ୟତରେ ଅନୁଗ୍ରହ ଲାଭ କରିବାର ଲୋଭୀ ଆଶାୟୀମାନଙ୍କୁ ଅନୁପ୍ରାଣିତ
କରିପାରୁଥିଲେ । ହେ ଠାକୁରେ ! ବୟସର ବତାସ ତାଙ୍କର ସୁ-ରୂପ ଅପହରଣ
କରିଛି । ପାଟିରୁ ସବୁ ଦାନ୍ତ କେବଠୁ ଝଡ଼ାଇଛି । ଅଛି କେବଳ ଧୋବ ଫରଫର
ଦେଢ଼ ଗୁଖଣ୍ଡ ହେବ ନିଶ ଦାଢ଼ି । ତାଙ୍କୁ ନିଅ—

ମୁଁ ଅମୁକଙ୍କର ପ୍ରେତ-ପୁରୁଷ, ମୋର ଜରା-ଜୀର୍ଣ୍ଣ ଶରୀର ମଧ୍ୟରେ ଥାଇ
ରୋଗ-ଶଯ୍ୟାରେ ଛଟପଟ ହେଉଥିବା କାଳରେ ପ୍ରିୟ ଆତ୍ମୀୟବର୍ଗ ଓ ଦରଦୀ
ଅଭି ଆପଣାର ବନ୍ଧୁ ଓ ସହକର୍ମୀମାନଙ୍କର ମନର ଭାବନାକୁ ବେଶ୍ ଅନୁମାନ
କରି ପାରୁଥିଲି । ମୋର ଶରୀର ଦୁର୍ବଳ ହୋଇଛି ସତ, ଅଙ୍ଗ ବିକଳାଙ୍ଗ
ହୋଇଛି, ସେଥିରେ ଅନ୍ୟମାନଙ୍କର କି ଥାଏ ? ଅନ୍ୟ କାହାର ଦେହକୁ ନଜର
କରିବାକୁ ମୁଁ ମୋଟେ ଲାଳାୟିତ ନୁହେଁ । ମୋର ଦଦରା ଘରଟି ମୋର । ତାକୁ
ମୁଁ ବାରମ୍ବାର ମରାମତ୍ କରିଛି, ଆହୁରି କରିବି । ଏ ଯୁଗର ବିଜ୍ଞାନର ଏତେ
ଉନ୍ନତି ହେଲା କାହିଁକି ତେବେ, ଯଦି ନଜର ଦେହ, ମନ ଓ ଚଳନକୁ ପୁଣି
ନୂଆପରି କରାଯାଇ ନ ପାରିବ ?

ବହୁ ବର୍ଷ ହେଲା ନୁଇପାଟି ଦାନ୍ତ ମୋର ଝଡ଼ି ପଡ଼ିଥିଲା । ଧୀରେ ଧୀରେ,
ଗୋଟି ଗୋଟି ହୋଇ, ଆଉ ଗୋଟିଏ ଦାନ୍ତ ଝଡ଼ିବା ଆଗରୁ ସେ ଯେଉଁ କଷ୍ଟ
ଓ ଯନ୍ତ୍ରଣା ଦିଏ, ମନେ ପଡ଼ୁଛି ଏବେ, ମୋର ଭାଷାରେ ମୁଁ ବର୍ଣ୍ଣି ପାରିବି ନାହିଁ ।
ଭୁକ୍ତଭୋଗୀ ନ ହେଲେ ସେ ଦୁଃଖଦାୟକ ଅନୁଭୂତି କେହି ଗ୍ରହଣ କରିପାରିବେ
ନାହିଁ । ଦରଜ, ଫୁଲା, ବିନ୍ଧାଛିଟିକା, କଅଣ ଟିକିଏ ବାଜିଗଲେ ଦେହରୁ ଜୀବନ
ଛାଡ଼ିଗଲା ପରି ମନେହୁଏ । ଦାନ୍ତଗୁଡ଼ିକ ସତେକି ମୋ ଉପରେ ପ୍ରତିଶୋଧ

ନେବାକୁ ଦୃଢ଼ ପରିକର ହୋଇଥିଲେ । ସେମାନଙ୍କର ବହୁ ଯତ୍ନ ନେଇଥିଲି ଓ ସେମାନଙ୍କୁ ଜୀବନମୂର୍ଚ୍ଛା କାମରେ ଲଗାଇଥିଲି । ସବୁ ଯତ୍ନ ସତ୍ତ୍ୱେ ସେମାନେ ମୋତେ ଧୋକା ଦେବାକୁ ଆରମ୍ଭ କଲେ, ଶେଷକୁ ହେଲେ ଅକୃତଜ୍ଞ ନିମକହାରାମ । ମାନେ, ଗୋଟି ଗୋଟି ହୋଇ ସେମାନେ ଖସିବାକୁ ଆରମ୍ଭ କଲେ । ଯେଉଁ ଗୁଡ଼ିକ ନଡ଼ର ନଡ଼ର ହୋଇ ମୋତେ ଡରାଇ କଷ୍ଟ ଦେଇ ଉପହାସ କରୁଥିଲେ ସେମାନଙ୍କୁ ଉପୁଡ଼ାଇ ଦେଲି, ଫୋପାଡ଼ି ଦେଲି । ମୁଁ ବି ପ୍ରତିଶୋଧ ନେଲି ।

ପାକୁଆ ହୋଇ ରହିବାକୁ ମୋର ଲାଜ ନ ଥିଲା, କାରଣ ଆମ ମାନବ-ମାନଙ୍କର ପ୍ରଚଳିତ ପ୍ରବଚନ ଅଛି ଯେ ଦାନ୍ତ ଓ ବାଳରେ ଲାଜ ନାହିଁ । ପାକୁଆ ହେବା ଦ୍ୱାରା ଚର୍ବଣ କରିବାର ଯେଉଁ ଅସୁବିଧା ସେତକ ଆଙ୍ଗୁଠିମାନଙ୍କ ଦ୍ୱାରା ବହୁପରିମାଣରେ ଦୂର ହୋଇ ପାରୁଥିଲା, ତେଣୁ ସେଥିକି ମୋର ଚିନ୍ତା ନ ଥିଲା; କିନ୍ତୁ ମୁହଁଟି ମୋର ମୋ ଆଖିକୁ ଅତି ବିକୃତ ଦେଖାଗଲା । ପଶିଲା ଗାଲକୁ ପାକଲା ଦାଢ଼ି କେତେକ ପରିମାଣରେ ଘୋଡ଼ାଇ ରଖିବାକୁ ସକ୍ଷମ ହେଉଥିଲେ । ପଶିଯାଇଥିବା ଗାଲ ଲୁଚି ରହୁଥିଲା ।

ଅସଲ ଅସୁବିଧା ହେଲା, ଆବଶ୍ୟକମତେ ଦାନ୍ତ ଦ'ଧାଡ଼ିକୁ ପାଏ କି ଅଧେ କି ପୂରାପୂରି ଦେଖାଇ ମୋର ହସିବାର ଖଞ୍ଜ ପଡ଼ିଲା ନାହିଁ । ଏ ଦୁନିଆଁରେ ସବୁବେଳେ ଗମ୍ଭୀର ହୋଇ ରହିଲେ, କୌଣସି ଜଟିଳ ପରିସ୍ଥିତିରେ ପଡ଼ିଗଲେ କାମ ହାସଲ କରି ହେବ ନାହିଁ । ହସ ମାଡ଼ୁ ନ ଥିଲେ ବି ଅନେକ ସ୍ଥଳରେ ହସିବାକୁ ପଡ଼େ । ଅନେକ ଲୋକ ଖାଲି ସବୁବେଳେ ହସୁଥାଆନ୍ତି । ଅନେକ ଲୋକ ମୁହଁ ଭୂ କୁଣ୍ଡା କରି ଗମ୍ଭୀର ରହନ୍ତି । ଏଇ ଦୁଇ ଶ୍ରେଣୀର ଲୋକଙ୍କୁ ମୁଁ ପସନ୍ଦ କରେ ନାହିଁ । କେତେବେଳେ ହସ କେତେବେଳେ ଗାମ୍ଭୀର୍ଯ୍ୟ କେତେ-ବେଳେ ଆଖି ଛଳ ଛଳ କରି କ୍ରନ୍ଦନ କରିବାକୁ ହେବ । ଏସବୁ କଳା ଶିଖି ଅଭ୍ୟାସ କରି, ମାପଚୁପ କରି ପ୍ରୟୋଗ କରିପାରିଲେ ସଂସାରକୁ ଜିତି ପାରିବ ।

ମୋର ଜଡ଼ ଦେହରେ ବାସ କରୁଥିବା ବେଳେ ମୁଁ ଏସବୁ ଅଭ୍ୟାସ କରି ଆୟତ୍ତ କରି ପାରିଥିଲି । ମୋର ଅଭ୍ୟାସକୁ ମୁଁ ଜୀବିତ ରଖିବାକୁ ଅତି ସୁନ୍ଦର ନକଲି ଦାନ୍ତ ଦପାଟି ମୁଁ ବ୍ୟବହାର କଲି । ଦିନବେଳ ଓ ରାତିରେ ଶୋଇବା ଆଗରୁ ମୁଁ ନକଲି ଦାନ୍ତ ବ୍ୟବହାର କରୁଥିଲି । ଶୋଇବା ଆଗରୁ ତାକୁ ଖୋଲି ପାଣିରେ ବୁଡ଼ାଇ ରଖୁଥିଲି । ସବୁ ସିନା କରିହେଲା, ମୋର ଦୁର୍ବଳ ଦେହ ଓ ଅଖଞ୍ଜ ପାଦ ଆଉ ସୁଧାରି ହେଲା ନାହିଁ ।

କେତେ ଭିଟାମିନ୍ ପିଲ୍ ଟିକେଇଛି, ମୃତସଞ୍ଜୀବନୀ ସୁଧା ପିଇଛି । କୁକୁଡ଼ାଡିମ୍ବ, କୁକୁଡ଼ାଝୋଳ, ଦୁଧ ଛେନା ଖାଇଛି । ସେ ସବୁ ବିଫଳ ହୋଇନାହିଁ । ବିଦାକାଠିପରି ଟଣି ହେଉଥିବା ପିଞ୍ଜରା ହାଡ଼ ସମ୍ପୂର୍ଣ୍ଣ ଲୁଚି ପାରିଲା

ନାହିଁ । ଅବାଟରେ ପଡ଼ି କୋଡ଼ିଏ ବର୍ଷ ତଳେ ମୋର ପାଦ ଅଖଣ୍ଡ ହେଲା । ହାଡ଼ ଭାଙ୍ଗିଲା । ବହୁବିଧ ଚିକିତ୍ସା ପରେ ହାଡ଼ ଯୋଡ଼ି ହେଲା ସିନା, ପାଦ ସଳଖି ହେଲା ନାହିଁ । ବାଧ୍ୟ ହୋଇ ଅନ୍ୟର କାନ୍ଧରେ ହାତ ଭରା ଦେଇ ମୁଁ ଖୋଲେଇ ଖୋଲେଇ ଚାଲୁଥିଲି । ସବୁ ସବୁ ହାତ ଦିଓଟିର ଅବସ୍ଥା ମନ୍ଦ ନ ଥିଲା, ତେବେ ଲେଖିଲାବେଳେ ହାତ ଥରୁଥିଲା ।

ଏଇତ ହେଲା ମୋର ଦେହର ଅବୟବ ମାନଙ୍କର ଅବସ୍ଥା । ଭଲ କରି ଓ ବେଶି କରି ଗଣ୍ଡିଏ ଖାଇଲେ ଉଦରର ଯନ୍ତ୍ରଣା । ଦେହ ଘୋଡ଼ାଇବାକୁ ମୁଁ ଦେଶଭକ୍ତ, ଖଦଡ଼ ଲୁଗା ଓ ପୋଷାକ ପିନ୍ଧୁଥିଲି । ଟେରେଲିନ୍ ଫେରେଲିନ୍ ଇତ୍ୟାଦିର ଦାମିକା ପୋଷାକ ଖା ମୋର ହେବ କଅଣ ? ପାଦରେ ଦେଶୀ ଚପଲ ବ୍ୟବହାର କରୁଥିଲି । ପ୍ରେମ ? ସେଇଟା ତ ଟୋକା ବୟସର କାରମାଡ଼ । ଅନେକ ବର୍ଷ ହେଲା ସେ ମୋ ପାଖରୁ ମେଲାଣି ନେଇ ଚାଲି ଯାଇଥିଲା । ଆଉ କେବେ ମୁଁ ତାକୁ ଡାକେ ନାହିଁ କି ସେ ମୋ ପାଖକୁ ତା ମନକୁ ଆସେ ନାହିଁ । ଧନ ସମ୍ପତ୍ତି ? ବେଶି କିଛି ନ ଥିଲା । ଲକ୍ଷ୍ମୀଂଦୟା କଲେ, ଧୀରେ ଧୀରେ ସେ ସବୁ ଆସିଲା । ଦେଶକର୍ମୀ ହୋଇ ସ୍ୱାର୍ଥ ତ୍ୟାଗ କରି ଦଶ ଓ ଦେଶର ଚିନ୍ତା ଅନବରତ ଯିଏ କରେ ଧନ ସମ୍ପତ୍ତି ଆପେ ଆପେ ତା ପାଖକୁ ଝାଣି ହୋଇ ଆସେ ପରା ! ତୁମେ ନାହିଁ ନାହିଁ କରିବାକୁ ମନ କଲେ ମଧ୍ୟ ତୁଣ୍ଡ ଖୋଲ ନାହିଁ, ତୁମେ କେବଳ କଣେଇ ଚାହିଁ, ଅଳ୍ପ ହସ ।

ଠିକଏ ସହାନୁଭୂତି, ତେବେ ରହିରହି ହୋଇ ନଥି ଉପରେ ଦିଓଟି ପଦ—ମୁଁ ମଙ୍ଗ ଛାଡ଼ି—ତା ତଳେ ତୁମର ସନ୍ତକ । ତୁମେ ଦେଶର ଚାଳକ ହୋଇଛ, ତୁମର ଆଦେଶ ଯେ ବେଦର ଗାର । ତୁମକୁ ଏହା ଭଲକରି ଜଣା ଯେ ଯେଉଁମାନେ ଯେତେବେଳେ ତୁମର ଅଧୀନରେ କର୍ମ କରନ୍ତି, ସେମାନେ ତୁମର ନିର୍ଦ୍ଦେଶ ଓ ଆଦେଶକୁ ତଳେ ପକାଇବେ ନାହିଁ । ସେମାନଙ୍କର ବିଦ୍ୟା ଅଛି, ବୁଦ୍ଧି ଅଛି, ଦକ୍ଷତା ଅଛି, ସେମାନେ ପେଟ ପାଇଁ କେବଳ ଚାହିଁ, ଧନ ଅର୍ଜନ କରି ଧନୀ ହେବେ, ସମ୍ପତ୍ତି କରିବେ, ଏହି ଉଦ୍ଦେଶ୍ୟରେ ଦାସତ୍ୱର ସମ୍ମାନକୁ ଜୀବନର ବ୍ରତ କରିଛନ୍ତି ।

. ଅନ୍ୟ ବେପାର ପରି ସେମାନଙ୍କର ଦାସତ୍ୱ ବି ଗୋଟିଏ ବେପାର—ତଳୁ ଉପରେ ଯାଏ । ଉପରିକ ମାନଙ୍କର ଗୁପ୍ତ-ପଞ୍ଜିକାରେ ଧାଡ଼ିଏ ଧାଡ଼ିଏ ଭଲ କି ମନ୍ଦ ମନ୍ତବ୍ୟ ଉପରେ ସେମାନଙ୍କର ପଦୋନ୍ନତି ଓ ସ୍ଥାନ ପରିବର୍ତ୍ତନ ନିର୍ଭର କରେ । ତୁମେ ତ ସର୍ବୋଚ୍ଚ ଉପରିକ ହୋଇ ପାରିଛ ହେଉ ପଛେ ସାମୟିକ, ଯେ କୌଣସି ଉପାୟରେ ଯେ କୌଣସି କୌଶଳ ପ୍ରୟୋଗ କରି ପଛକୁ ତୁମେ ସେ ସ୍ଥାନ ଅଧିକାର କରିଥାଅ ।

ମୋର ଅତି ପ୍ରିୟ ଦେହଟି ଏପରି ଜରା-ଜୀର୍ଣ୍ଣ ହୋଇଥିଲା ଯେ ଯେତେ ଆକୁଳ ବିକଳ ହେଲି, ଗୁହାରିପିଟି ହେଲି ଦେବାଦେବୀଙ୍କ ପାଖରେ ଅଳି କଲି, ମାନସିକ ଯାଚିଲି ଯେ ଦଇବ ଦେହଟାକୁ ନୂଆ କରିଦିଅ, ଡାକ୍ତର କବିରାଜଙ୍କ ପାଖରେ ଶରଣ ପଶିଲି ଯେ ସେମାନେ ଦେହଟିକୁ ମରାମତ କରି ଦିଅନ୍ତୁ, ସେ ସବୁ କିଛି ଫଳପ୍ରଦ ହେଲା ନାହିଁ । ଗଣକ ମାନଙ୍କୁ ଡକାଇ କରି କପାଳ କୋଷ୍ଠୀ ଦେଖାଇଲି । ଆହୁରି କୋଡ଼ିଏ ବର୍ଷ ମୋର ସେହି ଦଇବ ଦେହ-ନାବରେ ମୁଁ ଆରୋହୀ ହୋଇ ରହି ପାରିବି ବୋଲି ସେମାନେ ନିର୍ଭର ଜବାବ ଦେଇଥିଲେ । କେଉଁଠି କିଅଣ ଗ୍ରହ-ଦୋଷ ରହି ଯାଇଛି ବୋଲି ଗ୍ରହ ମାନଙ୍କର ଶାନ୍ତି ଓ ସନ୍ତୁଷ୍ଟି ପାଇଁ ପୂଜା ଆରାଧନାର ବ୍ୟବସ୍ଥା କଲେ । ମୁକ୍ତ ହସ୍ତ ହୋଇ ମୁଁ ଧନ ଦେଇଥିଲି । କିନ୍ତୁ ସବୁ ଚେଷ୍ଟା ବିଫଳ ହେଲା । ଅତି ଦୁଃଖରେ, ଅତି ଅନିଚ୍ଛାରେ ମୁଁ ମୋର ଦଇବ ହେଲେ ବି ଅଭିନ୍ନ ଦେହ ଛାଡ଼ି ଆସିଲି । ଏବଯାଏ ଝୁରି ହେଉଛି—ମୁଁ ଅମୁକଙ୍କର ପ୍ରେତ ।

ଯେଉଁମାନେ ମୋର ଅଶରୀରୀ ବିଳାପ ଶୁଣି ପାରୁଥିବେ ସେମାନଙ୍କ ମନରେ ସ୍ୱତଃ ପ୍ରଶ୍ନ ଜାଗୁଥିବ—କାହିଁକି ଅମୁକଙ୍କର ପ୍ରେତଟା ଗଗନ ପବନ ଥରାଇ ରାତ୍ରିର ପବନକୁ ହୋହଲାଇ କରୁଣ ବିଳାପ କରୁଛି, ଅନୁତାପ କରୁଛି ଯେ, କଳିଷଠା ଷାଠିଏ ବର୍ଷ ଟପି ତ ସେ ଗୋଟାଏ ଅଚଳ ଦେହରେ ଏଗାର ବର୍ଷ ଅଧିକ ବାସ କଲା, ଆହୁରି କୋଡ଼ିଏ ବର୍ଷ ସେଥିରେ ଅଟକି ରହିବାକୁ ମନ କରିଥିଲା ? ଘାଣ୍ଟି ଚକଟି ହୋଇ ବହୁ କଷ୍ଟ ତ ସେ ପାଉଥିଲା । ଅଥବା ଅକର୍ମଣ୍ୟ ଦେହ ଛାଡ଼ି ଆନନ୍ଦରେ ସେ ଆଉ କେଉଁଠି ଜନ୍ମ ଲଭନ୍ତା କଣ ପ୍ରେତ ଦେହରେ ଅଧିକ ଛଟପଟ ଓ ଆକୁଳ ବିକଳ ହେଉଛି ?

ସେମାନଙ୍କର ମନଗହନରେ ଛଟପଟ ହେଉଥିବା ପ୍ରଶ୍ନ ଗୁଡ଼ିକର ଉତ୍ତର ଦେବାକୁ ବସିଲେ ମୋତେ ଅନେକ କଥା ବ୍ରଡ୍‌କାଷ୍ଟ୍ କରିବାକୁ ପଡ଼ିବ । ସଂସାରରେ ଥିଲାବେଳେ ମୋର ଜରା-ଜୀର୍ଣ୍ଣ, ନାନାରୋଗରେ ଆକ୍ରାନ୍ତ ଦେହ ଭିତରେ ରହିବାକୁ ମୁଁ ବିକଳ ହେଉଥିଲି । ଆଶା କରିଥିଲି, ଲମ୍ବା ଲମ୍ବା ଉପାଧିଧାରୀ ଡାକ୍ତରମାନେ ଅନ୍ତତଃ ରୋଗମାନଙ୍କୁ ଦୂର କରି ପାରିବେ । ସତକୁ ସତ ଚେଷ୍ଟାକରି ମୋ ପାଖରୁ ଧନ ନେଇ ସେମାନେ ହାରିଲେ କି ଯତ୍ନ ନ ନେଇ ସେମାନେ ମୋତେ ଠକିଲେ ଏବଂ ମୋ ଦେହ ଭିତରୁ ବାହାରି ଆସିବାକୁ ମତେ ବାଧ୍ୟ କଲେ, ମୁଁ ଏବଯାଏ ବୁଝି ପାରୁ ନାହିଁ ।

ସମସ୍ତେ ଜାଣନ୍ତି, ମୋ ନାମ ଅମୁକ ଓ ମୋର କର୍ମମୟ ଜୀବନ କ୍ଷେତ୍ରରେ ଯେଉଁମାନେ ମୋର ଅନୁଗମନ କରୁଥିଲେ, ସେମାନଙ୍କର ଅଗ୍ରଣୀ ଦ୍ୱୟ—ମୋର ଦୁଇ ହାତ ପରି, ଅତି ବିଶ୍ୱାସୀ ଓ ନିର୍ଭରଯୋଗ୍ୟ—ସେମାନଙ୍କର ନାମ ଥିଲା ସମୁକ ଓ ଧମୁକ । ମୁଁ ତାଙ୍କୁ ମଣିଷ କରିଛି, ଅନ୍ଧାରରୁ ଟାଣି ଆଲୁଅକୁ ଆଣିଛି ।

ଗଛଚଢ଼ା ବିଦ୍ୟା ଶିଖାଇଛି । ଯେଉଁ ଉପାୟରେ ମୁଁ ନିଜେ ଗଛ ଉପରକୁ ଉଠି ପାରିଥିଲି, ସେହି ଉପାୟ ଯେ ମୋର ବନ୍ଧୁ ଦ୍ୱୟ ବିନେ ପ୍ରୟୋଗ କରିବେ, ଏହା ମୋର ଆଗରୁ ଜାଣିବା ଉଚିତ ଥିଲା । ଶିଖି ଓ ମନାଇଁ ସବୁ ଯୁଗରେ ସବୁଠାରେ ଥାଆନ୍ତି । ସେହି ଦୁଇବନ୍ଧୁ ମୋର ଥକିଲା ଗୋଡ଼ ଅଣ୍ଟା ଭିକ୍ତରେ ଆଉଁସୁଥିଲେ । ମୁଁ କୃତକୃତ୍ୟ ହେଉଥିଲି । ସେମାନେ ଆଗରୁ କଅଣ ଶିଖାଶିଖି ମନାମନି ହୋଇଥିଲେ ମୋର ଜାଣିବାର ଉପାୟ ନ ଥିଲା । ସେମାନେ ଆଖି ଠାରଠାରି ହେଲେ ପରି—ଏକସଙ୍ଗେ ମୋର ଦୁଇଗୋଡ଼ ଟାଣିଲେ, ମୁଁ କଚୁଡ଼ି ହୋଇ ତଳେ ପଡ଼ିଲି ।

ଦୁହେଁ ସେମାନେ ଗଛରେ ଚଢ଼ିଲେ । ସବୁ ଫଳ ତୋଳି ଖାଇଲେ । ମୋ କପାଳକୁ ଥିଲା ଅଙ୍ଗୁଠା ଟାକୁଆ ମାଡ଼ । ମାନ ସମ୍ମାନକୁ ଜଗି ମନେ ମନେ ରକ୍ତ ଗୁଡ଼ିଲି ଗ୍ରେବାଇ ମୁଁ ଶ୍ରେଷ୍ଠ ହୋଇ ରହିଲି । ପ୍ରତିଶୋଧ ନେବାକୁ ଯେଉଁ ବନ୍ଧୁଙ୍କ ସଙ୍ଗେ ହାତ ମିଳାଇବାକୁ ହାତ ବଢ଼ାଇଲି, ସେମାନେ ମୁହଁ ମୋଡ଼ି ଗୁଲିଗଲେ । ଯେଉଁ କେତେଜଣ ଅନୁରକ୍ତ ବନ୍ଧୁ ପାଖେଇ ଆସିଲେ, ସେମାନଙ୍କ ମନରେ ସେତେବେଳକାର ହତାଶା ଓ ଭବିଷ୍ୟତ୍‌ର ଆଶା କାର୍ଯ୍ୟ କରୁଥିଲା । ଆଖି ବୁଲାଇ ଦେଖିଲି, ମୋର ଦୟା ଓ ସହାନୁଭୂତି ଲାଭକରି ଯେଉଁ ଅପଦାର୍ଥମାନେ ନାନା ଉପାୟରେ ଧନ ଅର୍ଜନ କରି ସମ୍ମାନିତ ଭଦ୍ରଲୋକ ହୋଇ ଆସୁଥିଲେ ସେମାନେ ଶିଖି-ମନାଇଁଙ୍କ ପାଖକୁ ଆଉଜି ଗଲେ । ହସିବା ଛଡ଼ା ମୋର ଅନ୍ୟଗତି ନ ଥିଲା ।

ବୋଧହୁଏ ସେହି ଦୁଃଖରେ ମୁଁ ବିଛଣା ଧରିଲି । ବିଛଣାରେ ପଡ଼ି ଛଟପଟ ହୋଇ, କପଟ ପ୍ରତିଶୋଧ ନେବି ସେହି ବିଷୟ ଦିନରାତି ଚିନ୍ତା କଲି । ସମସ୍ତେ ଆମେ ଗୋଟିଏ ଦଳର ଲୋକ ଥିଲୁ । ସେହି ଦଳହିଁ ଥିଲା ଆମର ଗେରସ୍ତ । କେବଳ ଉପାୟ ଚିନ୍ତା କରୁଥିଲି, କପଟ ଅକୃତଜ୍ଞ ମାନଙ୍କୁ ସାବାଡ଼ କରି ପାରିବି । ଗେରସ୍ତ ପଛେ ମରୁ ସଉତୁଣୀମାନେ ବିଧବା ହୁଅନ୍ତୁ ।

ଅକ୍ଷମ ପକ୍ଷରେ ରାମି ବିଦାର ହେବାହିଁ ସାର । ଆଶାର ସୌଧ ତୋଳିବା ଛଡ଼ା ସେ ଆଉ କଅଣ କରି ପାରନ୍ତା ? ଅଶରୀରୀ ପ୍ରେତ ମୁଁ, ଏ ପୁରରେ ଭଗବାନଙ୍କ ସଙ୍ଗେ ମୋର ଦେଖା ହେଉ ନାହିଁ । ହାବୁଡ଼ାଝଟକା ଯଦି ମୋର ଦେଖା ହୋଇ ଯାଆନ୍ତା ମୁଁ ଥରେ ତାଙ୍କୁ ପଚାରନ୍ତି—ମଣିଷର ଆୟୁ ସେ ଏତେ କ୍ଷୀଣ କରିଛନ୍ତି କାହିଁକି ? ଭଲ କରି ଗୁରୁପଦ ଝାଡ଼ିଦେଇ ପୁଣି ପଚାରନ୍ତି, ମଣିଷ ଠିକ ଠିକ ଠିକ ସବୁ ପ୍ରକାର ଅଭିଜ୍ଞତା ଅର୍ଜନ କରି, ବୁଦ୍ଧିକୁ ଶାଣ ଦେଇ ତୀକ୍ଷଣ କରି, କଅଣ ଗୋଟାଏ ବଡ଼ କାମ କରିବ ବୋଲି ସଜ ହେଉଥିବାବେଳେ କାହିଁକି ସେ ଘଣ୍ଟି ବଜାଇ ଦିଅନ୍ତି ?

ଦୁଃଖର କଥା ଯେ ତାଙ୍କ ସଙ୍ଗେ ମୋର ଦେଖା ହେଉ ନାହିଁ । ନର ଦେହରେ ଥିବାବେଳେ ତାଙ୍କ ନାମ ମୁଁ କେତେଥର ଉଚ୍ଚାରଣ କରିଛି । ତାଙ୍କର ଦୋହାଇ ଦେଇ ଲୋକଙ୍କୁ ଠକାଇ ମୁଁ ମୋର କାର୍ଯ୍ୟ ହାସଲ କରିଛି । ଅଡୁଆରେ ପଡ଼ିଗଲେ କି ରୋଗବଇରାଗ ଓ ଆପଦ ବିପଦ ହାବୁଡ଼ରେ ତାଙ୍କ ନାମ ସ୍ମରଣ କରିଛି । ଏତେ ଭକ୍ତ ମୋର ପାଣିରେ ପଡ଼ିଲା ପରି ମତେ ଲାଗୁଛି । କାହାକୁ କହିବି ଏ ଦୁର୍ଭାଗ୍ୟର କଥା । ହଁ, ସେ ଠିକଏ ବିରକ୍ତ ହୋଇଥିବେ, ହୁଏତ ଭାବୁଥିବେ, କାହିଁକି ମୁଁ ମଧ୍ୟ ଦୁନିଆଁରେ କେବଳ ସ୍ୱାର୍ଥପରତାର ବିଷ ମଞ୍ଜିକୁ ବୁଣି ଆସିଲି ?

ତୁମର ହିଁ ସେପରି ବିଧାନ ବୋଲି ମୋର ନର ଦେହରେ ଧାରଣା ଥିଲା ହେ ଭଗବାନ, କାରଣ ହେବୁ ପାଇଲା ଦିନରୁ ମୁଁ ଏହା ଦେଖି ଆସିଛି ଓ ଅଙ୍ଗେ ଅଙ୍ଗେ ଅନୁଭବ କରିଛି । କଙ୍କିକୁ ବେଙ୍ଗ ଗିଳି ହୃଷ୍ଟପୁଷ୍ଟ ହୁଏ, ଆଉ ସେ ବେଙ୍ଗ ପଲକୁ ଦଳେ ସାପ, ସାପକୁ ଭକ୍ଷଣ କରେ ମୟୂର । କିନ୍ତୁ ମଣିଷକୁ ଭକ୍ଷଣ କରେ ମଣିଷ । ଠାକୁ କରି ଗିଳି ଦେଇ ମଣିଷ ମଣିଷକୁ ଶେଷ କରିଦିଏ ନାହିଁ । ମଣିଷର ମନରେ ସ୍ୱାର୍ଥର ଯେଉଁ ବିଷସ୍-ପିଲାକୁ ତୁମେ ଲୁଚାଇ ଛପାଇ ରଖିଛ, ସେଇ ତାର ଜାତି ଭାଇଙ୍କୁ ଧୀରେ ଧୀରେ ଗୃଣ୍ଠି ଗୃଣ୍ଠି ଖାଏ । ତାକୁ ଯେ ଅନ୍ୟ ମନୁଷ୍ୟମାନେ ନ ଖାଆନ୍ତି ତାହା ନୁହେଁ, ଖାଇବାର କୌଶଳ ଯାହାକୁ ଜଣା, ବୁଦ୍ଧି ଯାହାର ଅଛି, ସେ ଠାଉଠାଉ କରି ମୁଖ ପୂର୍ଣ୍ଣ କରି ଖାଏ, ହୃଷ୍ଟପୁଷ୍ଟ ହୁଏ ।

ଗୋଟିଏ ବ୍ୟକ୍ତି ଅନ୍ୟ ବ୍ୟକ୍ତିମାନଙ୍କୁ, ଗୋଟିଏ କୁଟୁମ୍ବ ଅନ୍ୟ କୁଟୁମ୍ବମାନଙ୍କୁ, ଜାତି ଜାତିକୁ, ଦେଶ ଦେଶକୁ ଗ୍ରାସ କରିବାକୁ ସର୍ବଦା ଉଦ୍‌ଯୋଗୀ । ସ୍ୱାର୍ଥପରତାର ବିଷ-ମଞ୍ଜି ମୁଁ ବୁଣିଛି ବୋଲି କେଉଁ ବାହାପିଅ କହିବ କାହିଁକି ? ଯେବେ ମୁଁ ଅଭାବ ଓ ଅନାଟନର ଝିଙ୍କାଓଟରରେ ବ୍ୟତିବ୍ୟସ୍ତ ହେଉଥିଲି ସେତେବେଳେ ମଧ୍ୟ ଅନ୍ୟମାନେ ମୋତେ ଶୋଷୁଥିଲେ । କେବେ କେମିତି ମୁଁ [illegible] ଅନ୍ନପାଇଁ, ଖଣ୍ଡେ ବସନ ପାଇଁ, ପାଠ ପଢ଼ି [illegible] କେବଳ ପେଟ ପୋ[illegible] ପାଇଁ [illegible]

ହତା

ବକ୍ତୃତା ଦେଇଛି, ଗାଳି ଖାଇଛି, ମାଡ଼ ସହିଛି, କେତେଥର କାରାଗାର ବରଣ କରିଛି । ତୁମେ ତ ଜାଣ ହେ ଭଗବାନ୍, ମୁଁ ଥିଲି ନିଃସ୍ୱାର୍ଥ କର୍ମୀ । ଜନ-ସେବା ଥିଲା ମୋ ଜୀବନର ବ୍ରତ । ଯେଉଁ ଦଳର ସଭ୍ୟ ମୁଁ ଥିଲି ସେ ଦଳ ମୋର ଆନୁଗତ୍ୟ ଅତୁଟ ଥିଲା । ସମସ୍ତେ ମତେ ସ୍ନେହ କରୁଥିଲେ । ଦେଶଲୋକେ ମୋତେ ବିଶ୍ୱାସ କରୁଥିଲେ, ମୋ କଥା ଶୁଣୁଥିଲେ ଓ ମାନୁଥିଲେ । ମୁଁ ଥିଲି ସେମାନଙ୍କର ଦୁଃଖର ସାଥୀ । ଦେଶ ସ୍ୱାଧୀନ ହେଲା । ଦେଶକୁ ଚଳାଇବାର ଦାୟିତ୍ୱ ଦିନେ ପୁଣି ଆମରିମାନଙ୍କ ମୁଣ୍ଡ ଉପରେ ଲଦା ହେଲା ।

ତା ପରେ—

କେମିତି କଅଣ ହେଲା ଆମେ ଜାଣୁନାହିଁ, ତୁମେ ଜାଣ ଭଗବାନ୍—ସ୍ୱାର୍ଥର କୁହୁଡ଼ି ଘୋଟି ଆସିଲା, ଘୋଟି ଗଲା । ଧନ, ମାନ ଓ କ୍ଷମତାର ଲୋଭ ମନରେ ବଳବତ୍ତର ହେଲା । ଆମମାନଙ୍କ ଭିତରୁ ଯେଉଁମାନେ ଏ ସବୁର ମୋହକୁ ଦମନ କରି ପାରିଲେ, ସେମାନେ ଦୂରେଇ ଗଲେ । ଯେଉଁମାନେ ବୁଦ୍ଧିର ଜାଲ ଖେଳାଇ ପାରିଲେ, ଜନତାର ଅଜ୍ଞତାର ସୁଯୋଗ ନେଇ ସେମାନଙ୍କୁ ଭଣ୍ଡି ପାରିଲେ, ଯେଉଁମାନେ ଦଳ ଭିତରେ ଉପଦଳ ଗଢ଼ି କ୍ଷମତା ସଙ୍ଗେ ସଙ୍ଗେ ସୁଯୋଗକୁ ଅଳେଇ ବାହୁଡେ ବାନ୍ଧି ପାରିଲେ, ସେମାନେ ହେଲେ ଶାସକ । ସେମାନଙ୍କ ମଧ୍ୟ ମୁଁ ଥିଲି ଜଣେ ଏବଂ ପ୍ରଧାନ ଜଣେ ।

ମୁଁ ବୁଦ୍ଧିମାନ ଥିଲି, କୁଚକ୍ରୀ ଥିଲି, ଦଆନଅର ମନ୍ତ୍ର ଜାଣିଥିଲି । ଦେଶ ଓ ଦଶର ମଙ୍ଗଳ ପାଇଁ ମୁଁ ଯୋଜନାମାନ ଗଢ଼ିଲି, କାର୍ଯ୍ୟକାରୀ କରାଇଲି । ମୁଁ ସମ୍ମାନିତ ହେଲି । ମୁଁ ଧନ ସଂଗ୍ରହ କଲି, ଜମିବାଡ଼ିର ମାଲିକ ହେଲି, କୋଠାମାନ ତୋଳିଲି, ବ୍ୟାଙ୍କରେ ଧନ ସଞ୍ଚୟ କଲି । ମୁଁ କେତେ ବ୍ୟବସାୟର ପରୋକ୍ଷରେ ମାଲିକ ହେଲି । ଲୋକମାନଙ୍କୁ ନିଯୁକ୍ତି ଦେଇ ସେମାନଙ୍କର କୁଟୁମ୍ବଙ୍କର ଭରଣ-ପୋଷଣର ବ୍ୟବସ୍ଥା କଲି । ମୁଁ ନିଜର ଉନ୍ନତି କରିବା ସଙ୍ଗେ ସଙ୍ଗେ ଦେଶ... ...ଣ ସାଧନ କରିପାରିଲି । ମୋର ଆତ୍ମୀୟସ୍ୱଜନ, ବନ୍ଧୁ ବାନ୍ଧବ ...ଏ... ...ମୋର ଦଳର ଲମ୍ବକାରିଆ ...ନ୍ତି

ବୋଧହୁଏ ମୋତେ ସେ ଦୁର୍ବଳ ଅକର୍ମଣ୍ୟ ଘଣ୍ଟ ଓ ସ୍ୱାର୍ଥର ବଣରେ ଜରଜର ମୋର ଦେହକୁ ଗ୍ଲାଡ଼୍‌-ଗୃଲ୍‌ନିବାକୁ ହେବ !

ଅହା, ମୋର ସବୁ ସୁଖ ଦୁଃଖ ଅନୁଭବିଲା ଦେହରେ ଯଦି ଆଉ କେ ୨୫ଟି ବର୍ଷ ରହି ପାରିଥାନ୍ତି ! ମୋର ଅତି ଉର୍ବର ମସ୍ତିଷ୍କ ପ୍ରୟୋଗ କରି ମୁଁ ମୋର ପୂର୍ବ ଆସନରେ ଅବଶ୍ୟ ଅଧିଷ୍ଠିତ ହୋଇ ପାରିଥାନ୍ତି । ତା ପରେ ମୁଁ ଓଲଟି ପଡ଼ିଥାନ୍ତି, ଭଗବାନ୍ ! ନିଜ ଉପରେ ଯେଉଁ ବିଷ-ବୃକ୍ଷ ସବୁ ମୁଁ ପୋଷି ବିଷଫଳ ଫଳାଉଥିଲି ସେମାନଙ୍କ ଉପରେ ମୁଁ ପ୍ରତିଶୋଧ ନେଇଥାନ୍ତି । ମୋର ପ୍ରଥମ ଚକ୍ର ପଡ଼ିଥାନ୍ତା ଅସାଧୁ କର୍ମଗୃହୀ ବୃନ୍ଦଙ୍କ ମୁଣ୍ଡରେ, ସେଇଠୁ କଳାବଜାରୀ ବ୍ୟବସାୟୀ, ସେଇଠୁ ଦେଶ-କର୍ମୀ ବୋଲାଉଥିବା ଓ ପାଣିରେ ସର ପକାଇ ଘିଅ ଆହରଣ କରୁଥିବା ଦଳିଲ ଓକାଲତଙ୍କ ମୁଣ୍ଡରେ ! ଦେଶକୁ ନୂଆକରି ସୁନାକରି ମୁଁ ଗଢ଼ିଥାନ୍ତି !

ମୋର ମନକାମନା ସଫଳ ହେଲାନାହିଁ । ବାଧ୍ୟହୋଇ ଗୃଲି ଆସିଲି ତ ଏ ପୁରକୁ, ନିଜ କର୍ମ ପାଇଁ ମୁଁ ଅନୁତାପ କରୁଛି । ଦୁନିଆଁରେ ଥିଲାବେଳେ ଯାହା ଯାହା ମୁଁ କରି ଆସିଛି, ସେ ସବୁ ମୋର ଅଣସାଖ ଦେହରେ ଚିହ୍ନନିଖି ହୋଇ ଚହାର ଗାରରେ ଲେଖା ହୋଇଛି, ଆଜି ସେ ସବୁ ଅପେ ଅପେ ବଜ୍ର-ଗମ୍ଭୀର ସ୍ୱରରେ ଶବ୍ଦାୟମାନ ହୋଇ ମୋତେ ଉପହାସ କରୁଛି । ମୁକ୍ତି-ଲାଭର ପ୍ରଶ୍ନ ଉଠୁନାହିଁ । ମୋର ଅମୋକ୍ଷ ପ୍ରେତ ପୁଣି ସଂସାରକୁ ଫେରିଯିବ, ନୂଆ ମଣିଷଟିଏର ଅବତାର ନେବ—କିନ୍ତୁ କେବେ, କେଉଁଠି ?

ସେକଥା ମୁଁ ଜାଣି ପାରୁନାହିଁ । ଏ ପୁରରେ ଯେଉଁମାନେ ମୋର କର୍ମକୁ ପର୍ଯ୍ୟାଲୋଚନା କରୁଛନ୍ତି, ପାପପୁଣ୍ୟକୁ ସେମାନଙ୍କର ତରାଜୁରେ ଓଜନ କରୁଛନ୍ତି, ସେହିମାନଙ୍କର ସିଦ୍ଧାନ୍ତ ହିଁ ସ୍ଥିର କରିବ । ଏଠି ଆଡ୍‌ଭୋକେଟ୍ ନାହାନ୍ତି କି ... ପିଠିରେ ପଡ଼ିବାକୁ ଧାଇଁ ଆସନ୍ତି ନାହିଁ । ଏଠି ସମସ୍ତେ ଏକାକୀ—କର୍ମର ବୋଝରେ ଛଟପଟ ।

ସ ମା ପ୍ତ